# ତିରିଶ ବର୍ଷର ଗଳ୍ପ ଓ ଆଲାପ-୪

କିଶୋରୀ ଚରଣ ଦାସ



ତିରିଶ ବର୍ଷର ଗଳ୍ପ ଓ ଆଳାପ (ଚତୁର୍ଥ) ଲେଖକ : କିଶୋରୀ ଚରଣ ଦାସ, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଥମ ସଂସ୍କରଣ : ୨୦୦୦, ପ୍ରଚ୍ଛଦପଟ : ଅସିତ ମୁଖାର୍ଜୀ, ମୁଦ୍ରଣ ନନ୍ଦକିଶୋର ପ୍ରେସ୍, ଡଗରପଡ଼ା, କଟକ-୨ ।



**TIRISH BARSHARA GALPA O ALAPA ( VOL. IV )**
Author : Kishori Charan Das, Publisher : Sahadev Pradhan, Friends' Publishers, Binodbehari, Cuttack-2, Orissa (India), First Edition : 2000, Cover Design : Asit Mukherjee, Printer Nandakishore Press, Dagarpada, Cuttack-2.

PRICE : Rs. 260

ISBN 81-7401-341-5

# ଚତୁର୍ଥ ଭାଗର ଭୂମିକା

ଚତୁର୍ଥ ଭାଗରେ ମଧ୍ୟ ପୂର୍ବବର୍ତ୍ତୀ ତିନୋଟି ଭାଗପରି ଚାରିଗୋଟି ଗଳ୍ପ-ସଂକଳନରେ ଥିବା ଗଳ୍ପ ସ୍ଥାନ ପାଇଛି । ଏଗୁଡ଼ିକ ହେଲା 'ନୀଳସଜ୍ଜ' (୧୯୯୨), 'ଧବଳ ଆକାଶ' (୧୯୯୪), 'ଅରୂଢ଼ିଏ' (୧୯୯୭) ଏବଂ 'ତରଙ୍ଗ' (୧୯୯୭) । ଏହାପରେ ମଧ୍ୟ ଦୁଇଟି ଗଳ୍ପ ସଂକଳନ 'କାଢେ କାନ୍ତା' ଏବଂ 'ଶେଷଗଳ୍ପ'ର ପାଣ୍ଡୁଲିପି ପ୍ରକାଶକମାନଙ୍କ ପାଖରେ ରହିଛି, ଯଥାଶୀଘ୍ର ପ୍ରକାଶିତ ହେବ ବୋଲି । ସର୍ବମୋଟ ୧୮ ଗୋଟି ଗଳ୍ପ ସଂକଳନର ଇସ୍ତାହାର । ଏହାଛଡ଼ା ଇତିମଧ୍ୟରେ ମୋର ଚାରିଗୋଟି ଉପନ୍ୟାସ "ସାତୋଟି ଦିନର ସର୍ତ୍ତ" (୧୯୯୩), "ନେତା ଓ ନେତ୍ରମଣି" (୧୯୯୭), "ସକଳ ସନ୍ତାନ" (୧୯୯୫) ଏବଂ "ସ୍ୱର୍ଗସୀମା" (୧୯୯୮) ପ୍ରକାଶିତ ହୋଇ ସାରିଛି । ପଞ୍ଚମ ଉପନ୍ୟାସ "ବିଦେଶିନୀ" ଆଗାମୀ ସପ୍ତାହ ମଧ୍ୟରେ ପ୍ରକାଶ ପାଇବ ବୋଲି ଆଶା କରାଯାଏ ।

୧୯୯୧ ମସିହାରେ ଲେଖିଥିବା ତୃତୀୟ ଭାଗର ଭୂମିକାରେ ମୁଁ ଅନେକ କିଛି କହିଛି ମୋର ଏଇ ଆତୁର ଆତୁର ଲେଖିଯିବାର ଅଦମ୍ୟ ତଥା ଦମ୍ୟନୀୟ ବ୍ୟାକୁଳତାକୁ ନେଇ । ଟଲ୍‌ଷ୍ଟୟଙ୍କର ଏକ ଅବିସ୍ମରଣୀୟ ଗଳ୍ପ "How much land a man can acquire ?"ରେ ଥିବା ଚରିତ୍ର ପରି, ଯେ ସୂର୍ଯ୍ୟ ବୁଡ଼ିବା ପୂର୍ବରୁ ଧଇଁସଇଁ ହୋଇ ଝାଳନାଳ ହୋଇ ଆଗେଇ ଚାଲିଲା, ଧାଇଁଲା, ମାଡ଼ିଗଲା, କାହିଁକନା ତାକୁ କୁହାଯାଇଛି ଯେ ସେ ଯେଉଁଯାଏଁ ଚାଲିପାରିବ, ସେଇ ସୀମାକୁ ଛୁଇଁଥିବା ଯେତେକ ଭୂମି ତା'ର ଅଧିକାରକୁ ଆସିଯିବ । କିନ୍ତୁ ସୂର୍ଯ୍ୟାସ୍ତର ସୀମା ଛୁଇଁଲା ବେଳକୁ ବିଚରାର ହୃତ୍ପିଣ୍ଡ ଫାଟିଗଲା । ମୃତ୍ୟୁ ପରେ ତାକୁ କବର ଦେବା ଲାଗି କେତେ ପରିମାଣର ଭୂମି ଲୋଡ଼ା ହୋଇଥିବ, ତା' କହିବା ନିଷ୍ପ୍ରୟୋଜନ । କିନ୍ତୁ ମୁଁ ମୋର ସାହିତ୍ୟ ରଚନାକୁ ଏଭଳି ଏକ ବିଦ୍ରୁପାତ୍ମକ ପରିଣତି ବୋଲି ମନେ କରିପାରୁ ନାହିଁ । କାରଣ ମୁଁ ଯାହା ଲେଖିଗଲି, ସେ ଆଉ ମୋ ଦଖଲରେ ରହିଲା କେଉଁଠୁ ? ତାକୁ ତ ମୁଁ ଜାଣିଶୁଣି ମୋ ମନଅନ୍ଧାରରୁ ଜନ୍ମ ଦେଇ, ସାହିତ୍ୟ ସ୍ରୋତସ୍ୱତୀରେ ଭସେଇ ସାରିଲିଣି । ସେଇଠୁଁ ତାକୁ କିଏ ଗୋଟେଇ ନେଲା, ଏବଂ ସେଥିରୁ କ'ଣ ପାଇଲା, ତା' ସେଇ ଜାଣେ । ଏଇ ପରିପ୍ରେକ୍ଷୀରେ ମୁଁ ମୋର ଗୋଟିଏ ସଦ୍ୟଜାତ ଦୁଃଖର ଉଲ୍ଲେଖ ନକରି ରହିପାରୁ ନାହିଁ । ଜଣେ ବିଦୁଷୀ ସମୀକ୍ଷକ ମହାଶୟା ଏବେ ମୋର ଗଳ୍ପଗୁଡ଼ିକର ସମୀକ୍ଷା କରି ଲେଖିଲେ, ଗୋଟିଏ ଗଳ୍ପଇତିହାସର ତଳ୍ପରେ, ଯେ ମୁଁ ମୋ ଗଳ୍ପରେ ଯୌନଚେତନାକୁ ବିଶେଷ ପ୍ରାଧାନ୍ୟ ଦେଇଛି । ବେଶ୍ ! କିନ୍ତୁ ଏହି ପରିପ୍ରେକ୍ଷୀରେ ସେ କେତେକ ସାମାନ୍ୟ କଥନ ମଧ୍ୟ ଛୁଡ଼ି ଦେଇଛନ୍ତି । ଯଥା "ତାଙ୍କ ଦୃଷ୍ଟିରେ ଯେମିତି ଦୁଇଟି ନାରୀ ସେକ୍‌ସର ପ୍ରତୀକ ।

ଏମାନଙ୍କ ପାଖରେ ଯଥାର୍ଥ ବଡ଼ କଥା ନୁହେଁ, ବଡ଼ କଥା ହେଉଛି ଦେହର କ୍ଷୁଧାକୁ ପ୍ରଶମିତ କରିବା ।'' ଏହା ଆଦୌ ମୋର ଗ୍ରହଣୀୟ ନୁହେଁ । ମୋ ମତରେ ମୋ ଗଳ୍ପରେ ଅଧିକ ବହୁଳ ନାରୀ ଚରିତ୍ର ଭିନ୍ନ ଧାତୁରେ ଗଢ଼ା । ଏବଂ ସେହି ଦୃଷ୍ଟିରୁ କେତେକ ସମୀକ୍ଷକ ମଧ କହନ୍ତି ଯେ ମୋ ଗଳ୍ପରେ ନାରୀମାନେ ଅଧିକ ଉଦାରତା, ସହନଶୀଳତା ଇତ୍ୟାଦି 'ନାରୀତ୍ୱ'ର ପରିଚୟ ଦେଇଛନ୍ତି । ପୁଣି ଯେତେବେଳେ ସେ କୁହନ୍ତି ଯେ 'ଏହି ଭାବ' (ଅର୍ଥାତ୍ ଯୌନଚେତନା)କୁ ନେଇ ମୁଁ ଅମୁକ ଅମୁକ ଆଦି ଅନେକ ଗଳ୍ପ ଲେଖିଛି, ମୁଁ ତା' ବୁଝିପାରେ ନାହିଁ । କାରଣ ସେହିସବୁ ଗଳ୍ପରେ ଯୌନଚେତନାର ଚମତ୍କାରିତା ମୋର ବକ୍ତବ୍ୟ ନୁହେଁ, ତାହା ଗୌଣ କିମ୍ବା ଆନୁସଙ୍ଗିକ । ବକ୍ତବ୍ୟ ଆଉ କିଛି । ଅଥବା ସେଥିରେ ମୁଁ ପ୍ରେମ କିମ୍ବା ଅ-ପ୍ରେମର କେଉଁ ଏକ ନୂତନ ପରିଭାଷା ଶୁଣାଇବାକୁ ଚେଷ୍ଟା କରିଛି । ତା' ବୋଲି କ'ଣ ତାକୁ ସବୁ ଯୌନଚେତନାଧର୍ମୀ ବୋଲି କୁହାଯିବ ? ନା ନାରୀ-ପୁରୁଷ ସମ୍ପର୍କର ଗଳ୍ପ ମାତ୍ରେହିଁ ଯୌନଚେତନାଧର୍ମୀ, ଯାହା ପୃଥିବୀର ଅଧିକାଂଶ ଗଳ୍ପରେ ନଥାଏ ? ଛାଡ଼ନ୍ତୁ ସେକଥା । ଏସବୁ ପ୍ରଶ୍ନ ହୁଏତ ବିବଦମାନ ବୋଲି କୁହାଯାଇ ପାରେ । କିନ୍ତୁ ମୁଁ ଆକାଶରୁ ଖସିଲି ଯେତେବେଳେ ଭଦ୍ରମହିଳା କହିଲେ ଯେ ମୋ 'ରାତିକୁକୁର' ନାମକ ଗଳ୍ପରେ ଥିବା କୁକୁରମାନେ ସେକ୍ସର ପ୍ରତୀକ ! (ଯେପରିକି ଆଉ ଜଣେ ସମୀକ୍ଷକ ଥରେ ଲେଖିଥିଲେ ଯେ 'ଲକ୍ଷବିହଙ୍ଗ'ରେ ଥିବା ବିହଙ୍ଗମାନେ ସେକ୍ସର ପ୍ରତୀକ) ହେ ଭଗବାନ ! ମୋର ଯେଉଁ ଗପଟି ପୂରାପୂରି ସମାଜକୈନ୍ଦ୍ରିକ, ଏବଂ ସାମାଜିକ-ରାଜନୈତିକ କଦାଚାରରୁ ନିଜକୁ ଦୂରେଇ ରଖିଥିବା 'ଭଦ୍ରଲୋକ' ପ୍ରତି ଏକ ବିରାଟ ବିଦ୍ରୂପ, ସେଥିରେ ସେ ସେକ୍ସର ବାସ୍ନା କେଉଁଠୁ ପାଇଲେ ? ଏବଂ କାହିଁକି ? ସେଥିରେ ଗଳ୍ପର କେଉଁ ସାର୍ଥକତା ହୁଏତ ବିକୃତ ସାର୍ଥକତା ଦିଶିଗଲା ତାଙ୍କୁ ? କିନ୍ତୁ ମୁଁ କିଏ କହିବାକୁ ? ଜମି ତ ତାଙ୍କ ଦଖଲରେ ଆସିଯାଇଛି । ସେଥିରେ ସେ ଫୁଲବଗିଚା କରନ୍ତୁ କି ନାଳ ଖୋଳନ୍ତୁ ନର୍ଦ୍ଦମା ପାଣି ଯିବା ପାଇଁ, ସେ ବିଷୟରେ ମୁଁ କିଏ କହିବାକୁ ?

ସେହେତୁ ମୋର କେବଳ ଏଇ ସାମାନ୍ୟ ଅନୁରୋଧ ଯେ ନିରପେକ୍ଷ ଭାବରେ, ଅର୍ଥାତ୍ କେଉଁ ଏକ ପୂର୍ବନିର୍ଣ୍ଣିତ ଇମେଜର ବଶବର୍ତ୍ତୀ ନହୋଇ ମୋର ଗପଗୁଡ଼ିକୁ ମନଦେଇ ପଢ଼ିବା ହୁଅନ୍ତୁ । ଆଜିଠୁଁ ତିନିଦିନ ଉତ୍ତାରୁ ମୋତେ ୭୭ବର୍ଷ ପୂରିଯିବ । ତଥାପି ମୁଁ ଲେଖୁଛି ଏବଂ ଲେଖୁଥିବି ବୋଲି ଆଶା, ଆପଣମାନଙ୍କ ଆଶୀର୍ବାଦରୁ । ଖାଲି ଯାହା କିଛି ଦେଇଗଲି ଆପଣମାନଙ୍କୁ ଅର୍ଥାତ୍ ସାହିତ୍ୟ-ଇତିହାସର ଜିମାରେ, ଛାଡ଼ିଦେଇଗଲି, ତା' ପ୍ରତି ଅବିଚାର କରିବେ ନାହିଁ, ଏତିକି ମୋର ନିବେଦନ ।

**କିଶୋରୀ ଚରଣ ଦାସ**

୧୭, ଫେବୃଆରି, ୨୦୦୦

# ସୂଚୀ


| ବିଷୟ | | ପୃଷ୍ଠା |
|---|---|---|
| ୧ । ସୌର ଜଗତ | | ୧ |
| ୨ । ଧର୍ଷଣାସ୍ମୀ | | ୧୯ |
| ୩ । ଆଲିଙ୍ଗନ | | ୩୨ |
| ୪ । ନିଃସଂଗର ସ୍ୱର୍ଗ | | ୫୮ |
| ୫ । ଯେତେକ ବାଲିଗରଡ଼ା | ... | ୬୬ |
| ୬ । ଦୁଃସ୍ୱପ୍ନ, ଦିବାସ୍ୱପ୍ନ | ... | ୯୬ |
| ୭ । ମଣିଙ୍କ ମହିମା | ... | ୧୧୭ |
| ୮ । କଳା କୁହୁଡ଼ି | | ୧୩୨ |
| ୯ । ମଗ୍ନ | | ୧୫୯ |
| ୧୦ । ନିଜ ଘଣ୍ଟ | | ୧୮୦ |
| ୧୧ । ଘେର | ... | ୧୯୯ |
| ୧୨ । ଧୂସର ମଧୁର | ... | ୨୧୯ |
| ୧୩ । ପ୍ରମିଳା ପ୍ରତିଶ୍ରୁତି | | ୨୩୩ |
| ୧୪ । ବାଉଳି ଅପାଙ୍କ ଭୂତ | | ୨୪୮ |
| ୧୫ । ଆଶ୍ଚର୍ଯ୍ୟବତ୍ | | ୨୬୬ |
| ୧୬ । ମଗ୍ଲୀ | | ୨୮୦ |
| ୧୭ । ଶ୍ରଦ୍ଧାଞ୍ଜଳି | | ୨୯୭ |
| ୧୮ । ଖଦ୍ୟୋତ ଲୋକ | | ୩୧୬ |
| ୧୯ । ଯନ୍ତ୍ରଣା | | ୩୩୨ |
| ୨୦ । ନିମ୍ବଫଳ | | ୩୫୨ |
| ୨୧ । ଧବଳ ଆକାଶ | | ୩୮୩ |
| ୨୨ । ଥରୁଟିଏ | | ୪୦୬ |
| ୨୩ । ପୁଚୁଣା କବିତା | | ୪୨୭ |
| ୨୪ । ଅରବିନ୍ଦବାବୁଙ୍କର ଦୁଃଖ | | ୪୪୮ |
| ୨୫ । ଜିଜ୍ଞାସୁ ଜିତେନ୍ଦ୍ର | ... | ୪୬୩ |
| ୨୬ । ଘାଣ୍ଟି | ... | ୪୯୪ |

| ବିଷୟ | ପୃଷ୍ଠା |
|---|---|
| ୨୭ । ବାରନାଷ୍ଟ | ୫୧୩ |
| ୨୮ । ପାଣ୍ଡୁଲିପି | ୫୩୩ |
| ୨୯ । କୁକୁରଙ୍କ କାହଣୀ | ୫୫୧ |
| ୩୦ । ଭୟ, ପ୍ରେମ, ଗେଣ୍ଡୁଫୁଲ ଇତ୍ୟାଦି | ୫୬୧ |
| ୩୧ । କୋକୁଆ ଭୟର ଶେଷ କଥା | ୫୮୮ |
| ୩୨ । ଶଜହ୍ନିନୀ | ୬୦୩ |
| ୩୩ । ଭିନ୍ନ ସ୍ୱାଦୁ | ୬୧୩ |
| ୩୪ । ଦମ୍ପତୀଙ୍କ ଦୁଃଖ | ୬୩୧ |
| ୩୫ । ତରଙ୍ଗ | ୬୫୧ |
| ୩୬ । ସୁନେଲି ଶୀତ | ୬୭୦ |
| ୩୭ । ଦର୍ପଣ | ୬୮୮ |
| ୩୮ । ବୀରପୁତ୍ର ଓ ତା'ର ମାଆମାନେ | ୭୦୭ |
| ୩୯ । ଓଦାମାଟି | ୭୨୭ |
| ୪୦ । ଅନେକ ଦିନର ସୂର୍ଯ୍ୟ | ୭୪୫ |
| ୪୧ । ଆଈଙ୍କ ହୃଦ | ୭୬୩ |
| ୪୨ । ଅଜା ନାତୁଣୀ ରହସ୍ୟ | ୭୮୩ |
| ୪୩ । ଗର୍ଭଧାରିଣୀ | ୮୦୫ |



# ସୌରଜଗତ

ସୌରକୁ, ମାନେ ତା'ର କେନ୍ଦ୍ରବିନ୍ଦୁକୁ କେତେ ସମୟ ଯାଏଁ ଅନେଇଲେ ଆଖି ଅନ୍ଧ ହୋଇଯିବ ?

କିନ୍ତୁ ହେଇ ଭଲ । ଇଏ ନୁହେଁ, ଇଏ ନୁହେଁ । ଅନ୍ୟମାନଙ୍କର, ଏପରିକି ସ୍ତ୍ରୀ ପିଲଙ୍କର ଇଚ୍ଛା, ଅଭିଳାଷ ଆଦିକୁ ପୋଛିବା ପାଇଁ, ତାଙ୍କ କଙ୍କାନାଳି ଅଣ୍ଟା ଭିତରେ ଯାବତୀୟ ଆହାର ଗଳେଇବା ପାଇଁ, ଏଇ ଧାବନ, ଅନ୍ୱେଷଣ···କାହିଁକି ? କାହିଁକି ମୁଁ ଦିଲ୍ଲୀର ଉଦୁଉଦିଆ ଖରାରେ ଘୂରି ବୁଲିବି ? ଅମୁକ ମାର୍କେଟରୁ ସମୁକ ମାର୍କେଟ, ୟୁସୁଫ୍ ସରାଇରୁ ଅାଇ. ଏନ୍. ଏ., ଆଇ ଏନ୍. ଏ.ରୁ ସରୋଜିନୀ ନଗର, ସେଠୁ ଜନପଥ, ଚାଲିଥିବି ଏମିତି ? ମୁଁ କ'ଣ ଗ୍ରୁଇର ଯୋଗ୍ୟ ନୁହେଁ ? ନା ସନ୍ତ୍ରି ପାଖକୁ ଆସୁ ନଆସୁଣୁ ସେ ମୋତେ ଗୋଇଠାଏ ମାରି ଫେରେଇ ଦେଇଛି ସକାଳ ଆଡ଼କୁ ? ତେଣୁ ପୁଣି ଏଇ ମଧ୍ୟାହ୍ନ, ଅସହ୍ୟ ତାତି ?

ମଦନମୋହନ ପକେଟ୍‌ରୁ ରୁମାଲ କାଢ଼ି ମୁହଁ ପୋଛିଲେ । ଯଦିଓ ଦିଲ୍ଲୀର ମେ' ମାସିଆ ଗ୍ରୀଷ୍ମରେ ଝାଳ ବୋହିବାର ପ୍ରଶ୍ନ ଉଠୁ ନ ଥିଲି । କିନ୍ତୁ ମୁହଁରୁ ଝାଳ ନ ପୋଛିଲେ ଗ୍ରୀଷ୍ମର ତାଡ଼ନାକୁ ସହ୍ୟେଇ ହେବ କେମିତି ? ତା'ପରେ ସେ ଅାଖିରୁ କଳା ଚଷମା ଉତାରି ଦେଲେ । ଦରକାର ନାହିଁ, ଦରକାର ନାହିଁ ଖରାକୁ ଘୋଡ଼େଇ ଦେଖିବାର ଏଇ ପନ୍ଥଅାରି । ମୋତେ ବାଧୁଛି, ଅତମତ ବାଧୁଛି ।

କଉ, ବାଧୁଛି ଯଦି, କିଏ କହୁଥିଲି ଘରୁ ବାହାରିବାକୁ ? ହାଣ ମୁହଁକୁ ବେକ ଦେଖେଇବାକୁ ? କ'ଣ ତୁମକୁ ଜଣା ନ ଥିଲି ଯେ ଦିଲ୍ଲୀର ଏଇ ଜଳନ୍ତା ଖରାର ଦୟା ନାହିଁ, ମାୟା ନାହିଁ, ସେ ତୁମକୁ ଗୋଡ଼ରୁ ମୁଣ୍ଡଯାଏଁ, ଦେହରୁ ମନଯାଏଁ, ମନରୁ କୋଉ ଗୋପନ ଗହ୍ୱର ଅବଚେତନଯାଏଁ ଜାଳିବାକୁ ଚାହେଁ ? କହୁନ' ଯେ ଦହନ ଭଲଲାଗେ ତୁମକୁ ? ଅନ୍ତତଃ ଆପଣା ବୁଢ଼ାପଣକୁ ଜାତବା ପାଇଁ ? ମଦନମୋହନଙ୍କ ଅପରପକ୍ଷ ମୁର୍‌କେଇ ମୁର୍‌କେଇ ହସିବାକୁ ଲାଗିଲି । ଯାହା ତାଙ୍କ ସ୍ତ୍ରୀ ବିମଳାର ହସପରି ମନେହେଲି ।

ବିମଳା ଅବଶ୍ୟ ପ୍ରକାଶ୍ୟରେ ହସି ନ ଥିଲି । ବରଂ କାହିଁକି ଏଇ ଖରାଟାରେ ବାହାରିଛ ବୋଲି ମନା କରିଥିଲି । କିନ୍ତୁ ତଦ୍‌ଦ୍ୱାରା ସେ ଉସ୍‌କେଇ ଥିଲି । ତା'କୁ ଜଣାଅଛି ସେ ସ୍ୱାମୀଙ୍କୁ ଯେତିକି ମନା କରିବ, ସେ ସେତିକି ଜିଦ୍ଧ କରିବେ

ବାହାର୍ କରିବେ ବୋଲି । ଦୁନିଆକୁ ଚେତେଇଦେବେ ଯେ ସେ ବୁଢ଼ା ହୋଇନାହାନ୍ତି । କୋଉ ଉଦ୍ୟମକୁ ହଟିଲାବାଲା ନୁହଁନ୍ତି । ମଦନମୋହନ ଏହି ମର୍ମରେ ସ୍ତ୍ରୀଙ୍କ ବାରଣର ସମୀକ୍ଷା କଲେ ଏବଂ କହିଲେ, ଠିକ୍ ଅଛି, ତୁମ କଥାକୁ ମୁଁ ହଟିବାର ନୁହେଁ । ମୋତେ ଏଇ ବହନ ଭଲ ଲାଗୁଛି । ହେଲା ?

ଯାହାହେଉ, ଯୋଉ କାମଟା ବଆ ହୋଇଛି ମୋତେ, ତାକୁ ସାରିବାକୁ ପଡ଼ିବ । ନିର୍ଦ୍ଦିଷ୍ଟ ପାଣି ଭିତରେ ଏମିତି ଗୋଟାଏ ବେଙ୍ଗ କମ୍ବା ଠେକୁଆ କମ୍ବା ସେହି ପ୍ରକାର ଜନ୍ତୁ ଆଣିବାକୁ ହେବ, ଯାହା ଆଖିଦୃରୁଶିଆ ହୋଇଥିବ ଏବଂ ଫକ୍‌ଫକ୍ ହୋଇ ଡେଇଁ ପାରୁଥିବ, ଖଣ୍ଡେ ବାଟ ଯାଇ ଧିମେଇଗଲେ ଚଳିବ ନାହିଁ, ବେଶ୍ ଦୂରକୁ ଗୃଲିଯାଇ ପାରୁଥିବ; କିନ୍ତୁ ଫୁକୁରୁ ଫୁକୁରୁ ହୋଇ ନୁହେଁ, ଫକ୍‌ଫକ୍ ହୋଇ, ତେଜ ଦେଖେଇ ଡିଆଁ ମାରିଲା ପରି··· । ସତେ କି ତେଜ କାହାକୁ କୁହାଯାଏ ମୁଁ ଜାଣେନାହିଁ, ଅବା ମୁଁ ଡିଆଁ ମାରିବାର ଚମତ୍କାରିତା ଭୁଲିଗଲିଣି !

ଆସନ୍ତା ଶୁକ୍ରବାରକୁ ତାର ପହିଲି ଜନ୍ମଦିନ । ମୋର କୋଠିକରେ ଗୋଟିଏ ବଳବନ୍ତ ଗୁଣବନ୍ତ ନାତି । ଅଜା ଦେଇଥିବା ଭଲ ନାଆଁ ସୁବର୍ଣ୍ଣଶିଖର, ଡାକ ନାଆଁ ସୋମୁ ।

ମଦନମୋହନ ତାଙ୍କ କର୍ତ୍ତବ୍ୟରେ ହେଲାକଲେ ଏବଂ ହେଇଥିପାଇଁ ବହନର ମିଆଦ ବଢ଼ି ବଢ଼ି ଗଲା, ତା' ନୁହେଁ । ସେ ବିଭିନ୍ନ ବେଙ୍ଗ ଦେଖିଲେ, ବିଭିନ୍ନ ଖାଲୁ, ଠେକୁଆ ଓଗେର କିନ୍ତୁ ସେ ସେମାନଙ୍କୁ ଗ୍ରାହ୍ୟ କଲେନାହିଁ । ଏଇଥିରୁ ବୁଝାପଡ଼ିବ ଯେ ସେ ସହଜରେ ସନ୍ତୁଷ୍ଟ ହୋଇପାରିଲେ ନାହିଁ, କାରଣ ସେ ନିଷ୍ଠାର ସହିତ ଏକ ଉତ୍କୃଷ୍ଟ ବସ୍ତୁ ଖୋଜୁଥିଲେ, ଯେଉଁଥିରେ ତାଙ୍କ ଉତ୍କୃଷ୍ଟ ଭଲ ପାଇବା ପ୍ରମାଣିତ ହୋଇଯିବ । କିନ୍ତୁ ଏହିପ୍ରକାର ଭାବ ତାଙ୍କ ମନକୁ ଆସିଲାରୁ ସେ ନିଜ ଉପରେ ପାଟିକରି ଉଠିଥିଲେ—ପ୍ରମାଣିତ ନୁହେଁ, ପ୍ରମାଣିତ ନୁହେଁ, ପ୍ରତିଫଳିତ ହେବ । ମୁଁ ମୋ ନାତି ସୋମୁକୁ ଅତ୍ୟନ୍ତ ଭଲପାଏ, ଏଥିରେ ପୁଣି ପ୍ରମାଣ ଦରକାର ??

କହିଲେ, ଏଇ ଅତ୍ୟନ୍ତର ଅନ୍ୱେଷା ସମସ୍ତଙ୍କର ନଥାଏ । ଅସଲ କଥା ହେଉଛି ଏଇଠି । ଆମ ସମାଜର, ସଂସାରର, ଅନ୍ୟ କେଉଁ ଅଜା ତା' ନାତିପାଇଁ ଏଭଳି ପ୍ରଚଣ୍ଡ ଖରାରେ ଘୂରି ବୁଲିବ ନାହିଁ, ତା' ମନଲାଖି ବସ୍ତୁଟି ଆଣିଦେବା ପାଇଁ । ବିମଳା କ'ଣ କହିଲା ଯାଏ ଆସେ ନାହିଁ, ଜନ୍ମଦିନ ଉପଲକ୍ଷ୍ୟ ମାତ୍ର । ଏବଂ ସନ୍ଦେହ ନାହିଁ ଯେ ମୋତେ ବାଧୁଛି । ତଥାପି ଏଇ ବହନ ମୋତେ ଭଲ ଲାଗୁଛି ବୋଲି କହିଲେ ଭୁଲ୍ ହେବନାହିଁ, କାହିଁକନା, କାହିଁକନା ମୋର ଅଛି ଏଇ ଅନ୍ୱେଷା, ତାକୁ ବଢ଼େଇବାର ଏଇ ଅପ୍ରତିହତ ଆବେଗ । କଅଣ ବୁଝୁଛ କେହି ?

ଏହେତୁ ମଦନମୋହନ, ମୁଁ କଷ୍ଟ ସହୁଛି ବୋଲି ବାରମ୍ବାର କହିଲେ ମଧ୍ୟ ଏବଂ ଅଯଥାରେ ରୁମାଲରେ ମୁହଁ ପୋଛୁଲେ ମଧ୍ୟ, ଏକ ବିଶିଷ୍ଟ ଆତ୍ମପୀଡ଼ନର ଗୌରବ ଅନୁଭବ କରୁଥିଲେ ।

ଏବଂ ଏହେତୁ ସନ୍ଦେହ ହେଉଥିଲା ଯେ ସେ ଆଜି ଜାଣିଶୁଣି ଫେଲ୍ ମାରିବେ । କିଛି ନ କିଣି ଫେରି ଆସିବେ କାରଣ ଆସନ୍ତା ଶୁକ୍ରବାର ପୂର୍ବରୁ ଆହୁରି ପାଞ୍ଚଦିନ ହାତରେ ଅଛି । ନିଶ୍ଚୟ ଆଉ ଦିନେ ଆସିହେବ । ସେଦିନର ସୂର୍ଯ୍ୟ ଜଳୁଥିବ ଏମିତି । ହୁଏତ ପାରା ଶହେଦଶ କି ଶହେବାର ଉଠିଯାଇଥିବ । ଫୁଟପାଥ୍ ଏବଂ ପଡ଼ିଆକଡ଼ର ଦୋକାନ ବଜାର ଅଧେ ଗୁଡ଼େଇ ହୋଇଯାଇଥିବ । ହେଲେ ଆର ଅଧିକ ଥିବ । ତେଣୁ ମଦନମୋହନଙ୍କ ଉଦ୍ୟମ ଅତି ବିଶିଷ୍ଟ କି ପରମ ବିଶିଷ୍ଟ ବୋଲି ମନେହେବ ନିଜକୁ ।

ପ୍ରକୃତପକ୍ଷେ ଏହିପ୍ରକାର ଉଦ୍ଦେଶ୍ୟ ଗଜୁରି ଉଠୁଥିବ ତାଙ୍କ ମନରେ । ଅବଶ୍ୟ ଅନ୍ୟ ଭାବରେ । ଯେ ଏମିତି ସ୍ପେଶାଲ ଜିନିଷ ସହଜେ ମିଳିବାର ନୁହେଁ । ଆଜିପାଇଁ ଦକ୍ଷିଣ ଓ ମଧ୍ୟ ଦିଲ୍ଲୀର ଠିକଣା ଜାଗାମାନ ଚଷା ହୋଇସାରିଲାଣି, ମାନେ ଯେଉଁଠି ମିଳିବାର ଆଶା । ତେଣୁ ଆଉ ଗୋଟିଏ ଦିନକୁ ରଖାଯାଉ ପଶ୍ଚିମ ଦିଲ୍ଲୀ, ବିଶେଷତଃ କାରୋଲ୍‌ବାଗ୍, ଯାହାର ପ୍ରସିଦ୍ଧି ଅଛି ଏ ଦିଗରେ । ଅଥବା ପୁରୁଣା ଦିଲ୍ଲୀର ଚାନ୍ଦନୀଚୌକ, ଯାହାର ଜନାକୀର୍ଣ୍ଣ ଐତିହାସିକ ବିପଣୀକୁ ଜାଳିବା ପାଇଁ ସୂର୍ଯ୍ୟ ହୁଏତ ଆହୁରି ସୁନ୍ଦର ଏବଂ ପ୍ରଚଣ୍ଡ ରୂପ ଧାରଣ କରିଥିବ ।

ଏଇଠି ମଦନମୋହନ ଆପଣା ଭାବନାରେ ଅନୁପ୍ରାଣିତ ହେଲେ ଏବଂ ଯତମସ୍ତକା ଉପରକୁ ଅନେଇଲେ । ସୂର୍ଯ୍ୟଙ୍କ ତପ୍ତତରଳ ଗୋଲକକୁ ଦୁଇ ଆଖିରେ ଧରିପାରିଲେ ବୋଲି କୁହାଯିବ ନାହିଁ, କିନ୍ତୁ ସେ ଖୁସିଟାଏ ହେଲେ । ସତେ କି ସେ ପାରିଲେ । ନାତି ସୁଖପାଇଁ ଯେଉଁ ଦହନକୁ ଭୋଗୁଛନ୍ତି, ତଥାପି ଲେଢ଼ୁଛନ୍ତି, ତାହା ମିଛ ନୁହେଁ, ବାହାଦୁରୀ ନୁହେଁ । ତା'ର ସାର ସମ୍ପୂର୍ଣ୍ଣିକୁ ମଧ୍ୟ ଛୁଇଁପାରିବେ ସେ, ସେ ସାହସ ତାଙ୍କର ଅଛି ।

ଆଃ, କେତେ ସମସ୍ତ ପରେ··· ?

( ତା'ପରେ କ'ଣ ଆସିବ ? ଦିବ୍ୟଜ୍ୟୋତି ? )

“ହ୍ୟାଲୋ ଅଙ୍କଲ୍, ହାଓ ଆର୍ ୟୁ ?”

ଆଖିରେ ଏକ ବିରାଟ ଗୋଲ୍‌କାର କଳା ଚଷମା ଏବଂ ଢିଲା ପଟାଟୋପ୍ ପ୍ରାୟ୍ଯ ଡ୍ରେସ୍ ଉପରେ ଫୁରୁଫୁରିଆ ଚୁନ୍ନି ଲମ୍ବେଇ ଦେଇ ଅନଉଛି ତା ଆଡ଼କୁ ।

ଆଧୁନିକା ଅଳ୍ପବୟସୀ । ହେଲେ ତାକୁ ଚିହ୍ନି ହେଉନାହିଁ । ଜ୍ଞାତକୁଟୁମ୍ବର କେହି ହୋଇ ନଥିବ । ସମ୍ଭବତଃ କେଉଁ ବୃତ୍ତିଗତ ତଥାକଥିତ ବନ୍ଧୁଙ୍କ ଝିଅ ।

ଧାତ୍, ବଡ଼ ବିରକ୍ତ ଲାଗେ ଏଇ ନଚିହ୍ନିବା ପଣ । ଅଥଚ ମୋର ମନେହେଉଛି ତାକୁ ଦେଖିଛି ବୋଲି । ଅନେକଦିନ ତଳେ । ଏଇ ଦିଲ୍ଲୀରେ । ଜନକପୁରୀ···ନା ସାକେତ୍···ନା— ? ଉହୁଁ, ଅନେକଦିନ ତଳେ ଏ ଝିଅ ହୁଏତ ଗୁରୁଣ୍ଡୁଥିବ କମ୍ବା ଜନ୍ମ ହୋଇ ନଥିବ । ମଦନମୋହନ ଧୈର୍ଯ୍ୟ ହରାଇ ତାକୁ ତୁ କିଏ ବୋଲି ସିଧାସଳଖ ପଚାରିଥାଆନ୍ତେ କି କଅଣ, ଏଇ ସମୟରେ ସେ କହିଲା—

"ମୁଁ ହେଉଛି ଲଳିତା, ଲଳିତା ଶ୍ରୀନିବାସନ୍ ।"

"ଆଇ ସି ! ଆଉ କ'ଣ ଖବର ?" ମଦନମୋହନ ଖୁସି ହେବାର ଭାବ ଦେଖାଇଲେ । ଏଣେ ସ୍ମୃତି ଉପରେ ଆହୁରି ଚାପ ଦେଲେ ।

ଶ୍ରୀନିବାସନ୍ । ହଁ, ସେଇ ଯେଉଁ ପେଟୁଆ ଭଦ୍ରଲୋକ, କୁଞ୍ଚୁକୁଞ୍ଚିଆ ବାଳ, କୋଉ ସରକାରୀ ନିଗମରେ କାମ କରନ୍ତି । କଥାକଥାକେ ଜୋକ୍ ମାରନ୍ତି । ତା'ହେଲେ ଏବେକା କଥା । ଆର୍. କେ. ପୁରମ୍ । ମୁଁ ଯାହାଙ୍କ ଭଡ଼ାଟିଆ ହୋଇଥିଲି, ସେ ଜଣେ ମହା ଗପ୍ପୁ ଭଦ୍ରଲୋକ, ତାଙ୍କ ସ୍ତ୍ରୀ କେବଳ ଗପ୍ପୁ ନୁହନ୍ତି ଚଞ୍ଚଳା, ଥରେ ଯାହାହେଲା ନା···ସ୍ମୃତି ଘେନେଇ ଆସିଲା ଏବଂ ମଦନମୋହନ ମନକୁ ମନ ହସିବାକୁ ଲାଗିଲେ । କହିଲେ, ମୋର ଚାଳିଶ ପରେ ଶତକଡ଼ା ଅନେଶ୍ୱତ ଦଶମିକ ନଅ, ହେଲେ ରାଜଧାନୀର କୋଉ କୂଅରେ ପାଣି ନ ପିଇଛି ମୁଁ ! ମାନେ ପିଇଲା ପରି ମନେହୋଇଛି, ଯଦିଓ ମୁଁ ନିଜକୁ ଆୟତ୍ତରେ ରଖିଛି···

"ଭଲ ସବୁ । ···ଅଙ୍କଲ୍ ମୁଁ ଯାଉଛି, ମୋର ଡେରି ହୋଇଗଲାଣି । ମୁଁ ଇଣ୍ଟରନ୍ୟାସନାଲ୍ ମ୍ୟୁଜିକ୍ ଏକାଡ଼େମିରେ ଜଏନ୍ କରିଛି, କ୍ଲାସ ଆରମ୍ଭ ହୋଇଯିବଣି ।"

ଲଳିତା ଶ୍ରୀନିବାସନ୍ ଖବରକୁ ତା'ର ଚୁନ୍ନିରେ ଉଡ଼େଇ ଦେଲାପରି ଚୁହୁଁ ଚୁହୁଁ ଅନ୍ତର୍ଦ୍ଧାନ ହୋଇଗଲା । ମଦନମୋହନ ଉପସ୍ଥିତ ବର୍ତ୍ତମାନକୁ ଫେରି ଆସିଲେ । ଏବଂ ଝିଅର ହଠାତ୍ ଦେଖା ଦେଇ ଉଭାନ୍ ହୋଇଯିବା ଢଙ୍ଗ ତାଙ୍କୁ ଭଲ ଲାଗିଲା ନାହିଁ । ଆଉ ମିନିଟିଏ ରହିଥିଲେ ହୋଇ ନଥାଆନ୍ତା ? ତାହାହେଲେ ହୁଏତ ମୁଁ ତାକୁ ପଚାରି ପାରିଥାଆନ୍ତି ସେଇ ଭଦ୍ରଲୋକଙ୍କ କଥା···ଇଣ୍ଟରନ୍ୟାସନାଲ୍, ମାଇ ଫୁଟ୍ !

ନ୍ୟାସନାଲ୍ ହେଉ କି ଇଣ୍ଟରନ୍ୟାସନାଲ୍, ଏ ଝିଅ ତା'ର ଉଦ୍ୟମକୁ ଯଥେଷ୍ଟ ସମ୍ମାନ ଦେଇପାରିବ ନାହିଁ । କାହିଁକନା ସେ ଦଣ୍ଡେ ସ୍ଥିର ହୋଇ ରହିବାକୁ ଶିଖି ନାହିଁ । ଖରାରେ ବୁଲିବ, ଧାଇଁବ, ହ୍ୟାଲୋ କହିବ, ଚୁନ୍‌ନି ଉଡ଼େଇବ, କିନ୍ତୁ ସେ କ'ଣ କେବେହେଲେ ମୁହୂର୍ତ୍ତେ ଠିଆହୋଇ ସୂର୍ଯ୍ୟଙ୍କୁ ଅନେଇବାକୁ ମନ କରିବ ? ଦେଖିପାରିବ ବୋଲି କହୁନାହିଁ, କିନ୍ତୁ ଗୋଟାଏ କ୍ଷଣିକ ପ୍ରବୃତ୍ତି, ଖିଆଲ, ତା' ବି କଅଣ ଆସିବ ତା' ମୁଣ୍ଡକୁ ?

କୋଉ ବଡ଼ପଣ ଅଛି ସେ ଉଦ୍ୟମରେ, ଯଦି ମଣିଷ ଥରେ ହେଲେ ନୀରବରେ ନିଷ୍ଫଳରେ, ତା'ର ସୂର୍ଯ୍ୟକୁ ଅର୍ଥାତ୍ ଶେଷକଥାର ନିର୍ଯ୍ୟାସକୁ ଲଭିବାପାଇଁ ଇଚ୍ଛା ନ କରେ ?

ଗୁଡ଼, ମେଞ୍ଚଡ଼ ଛୋକି ଖଣ୍ଡେ, ତା' ସାଙ୍ଗରେ ନିଜକୁ ତୁଳନା କରିବା ହାସ୍ୟାସ୍ପଦ । ବରଂ ମୋତେ "ଇଣ୍ଟରନ୍ୟାସନାଲ୍" ପାଠ ପଢ଼େଇଲା, ଭଲ କଲା । ପୁଣିଥରେ ଚେତେଇ ଦେଇଗଲା ଯେ ଜ୍ଞାନର ଉଦ୍ୟମ, ଧନର ଉଦ୍ୟମ, ଯଶର ଉଦ୍ୟମ, ହ୍ୟାପ ସବୁ ମିଛ ।

ସାର ହେଉଛି କେବଳ ସେଇ ଉଦ୍ୟମ, ଯାହାର ଫଳାଫଳ ନାହିଁ, ଅର୍ଥ ନାହିଁ କହିଲେ ଚଳେ । କହିବାକୁ ଗଲେ ଯେଉଁ ଅତ୍ୟନ୍ତ ଭଲପାଇବା ନେଇ ମୁଁ ଫକ୍ ଫକ୍ ହୋଇଥିବା ବେଙ୍ଗ ଠେକୁଆ କିଣିବାକୁ ବସିଛି, ତାକୁ ମଧ୍ୟ ପ୍ରଥମଶ୍ରେଣୀରେ ବସେଇବା ଉଚିତ । କାରଣ ସିଏ ହେଉଛି ଏକତରଫା । ବର୍ତ୍ତମାନ କଥା ଗୁଡ଼ିଦିଅ । ଗ୍ରେଟରୁ ବଡ଼ ହେଲାପରେ, ଭଲପାଇବା ନାମକ ବସ୍ତୁକୁ ଜାଣିଲା ପରେ ମଧ୍ୟ ଶ୍ରୀମାନ ସୁବର୍ଣ୍ଣଶିଖର ଗୋଟିଏ ଅଧ-ବୁଢ଼ା, ଭେଣ୍ଡୁ ଅଜବ୍ ଜନ୍ତୁକୁ ଦେଖି ମନେ ମନେ ହସିବ । କିମ୍ବା ମୁଁ ସେତେବେଳକୁ ମରିହଜି ତା'ର ପିଲାଦିନଆ ସ୍ମୃତିର ଉଦ୍‌ବୃତ୍ତ ଖିଏ ହୋଇ ରହିଯାଇଥିବି । ତା' ବି ସନ୍ଦେହଜନକ ।

କିନ୍ତୁ ତଥାପି ମୁଁ ତାକୁ ଭଲପାଏ । ଅତ୍ୟନ୍ତ ଭଲପାଏ । ମୋ ଭଲପାଇବା ଅକାରଣ, ସେଇଥିପାଇଁ ଅତ୍ୟନ୍ତ, ଏତିକି ବୁଝିପାରୁ ନାହିଁ ?

ସେଇ ଅତ୍ୟନ୍ତ ପଣର ମଜା ପାଇଛି ବୋଲି ତ ମୁଁ ଏଇ ରୌଦ୍ରକୁ ଲୋଡ଼ୁଛି, ଭୋଗୁଛି ଏବଂ ତା'ର ଅନ୍ତଃସ୍ଥଳକୁ ପାଇବି ବୋଲି ଅଡ଼ି ବସିଛି !

ମଦନମୋହନଙ୍କ ମନର ଭାଷା ଯେପରି ଉଦ୍ଦୀପ୍ତ ଏବଂ ପ୍ରକ୍ଷିପ୍ତହୋଇ ଆଗେଇ ଚାଲିଛି, ସେଥିରୁ ମନେହେବ ଯେ ବିଚାରି ଅନେକ ସମୟ ଯାଏଁ ଉଦୁଉଦିଆ ଖରାରେ ଘୂରି ବୁଲୁଛନ୍ତି । ଧନ୍ୟ କହିବ ଲୋକଟାର ସହିବା ଶକ୍ତି ! କିନ୍ତୁ ପ୍ରକୃତପକ୍ଷେ

ସମସ୍ତର ଗତି ତାଙ୍କ ଗ୍ରହଣର ଗଣ୍ଡଠାରୁ ଅନେକ ପଛରେ ପଡ଼ୁଛି । ଖାସ୍ ସୌରବିତାନ ତଳେ ବୁଲିବାବୁଲିବା ଅଧଘଣ୍ଟାରୁ ବେଶି ହେବ ନାହିଁ । କିନ୍ତୁ ସେଇ କ'ଣ କମ୍ ହେଲାଣି ? ମଦନମୋହନଙ୍କ ପରିଣତ ବୟସ, ସାମାଜିକ ସ୍ଥିତି (ସେ ଦିଲ୍ଲୀରେ ଥିବା ବିଭିନ୍ନ ବେସରକାରୀ ସଂସ୍ଥାରେ ଗାଣିତିକ, କୋଷାଧ୍ୟକ୍ଷ, ସମୀକ୍ଷକ ଆଦି ଧୋବଧାଉଳିଆ କାମ କରି ଆସିଛନ୍ତି, ଅଧିକାଂଶ ପଦରେ ବସିଛନ୍ତି, ଏବଂ ଆଜିକାଲି ସେସବୁ କାମ ଛାଡ଼ିଦେଇ ଗୋଟିଏ ବୋଲି ଝିଅର ଘରେ ଚିରସ୍ଥାୟୀ ଅତିଥି ହୋଇ ଅଛନ୍ତି) ଇତ୍ୟାଦି ଦୃଷ୍ଟିରୁ ତାଙ୍କର ଏଇ ସୌରଭିବାସନ୍ନତାକୁ ଧନ୍ୟ ନ କହିବା କେମିତି ? ଅବଶ୍ୟ ତାଙ୍କ ଜୀବନରେ ସେ ଏମିତି କେତେଥର ବୁଲିଯିବାର, ଉଡ଼ିଯିବାର, ଉଚ୍ଚପର୍ବତ ତଳେ ଲୁଚିଯିବାର, ହୁଏତ ନଦୀସାଗରେ ପୋହ୍ରି ଜଳିଯିବାର ଉଲ୍ଲାସକୁ ଭୋଗିଛନ୍ତି । କିନ୍ତୁ ମାତ୍ର କ୍ଷଣକ ପାଇଁ । ଏତେ ସମୟ ଯାଏ ନୁହେଁ । ତା'ଛଡ଼ା ସେ ଏଥିପୂର୍ବରୁ କେବେହେଲେ ଏଭଳି ମହୋଲ୍ଲାସକୁ ଅକାରଣ ଭଲପାଇବା ସାଙ୍ଗରେ ଯୋଡ଼ିଛନ୍ତି ବୋଲି ମନେ ହେଉନାହିଁ ତ ?

ସତକଥା କହିବାକୁ ଗଲେ ମଦନମୋହନଙ୍କର ଲୋଭ ହେଉଥିଲା ଅଳ୍ପସମୟ ପାଇଁ ଖସିଯିବାକୁ, ମାନେ ମାର୍କେଟ ବିଲ୍ଡିଂଗ୍ସର ବାରଣ୍ଡା ଉପରକୁ ଉଠିଯିବାକୁ, ଯାହାର ଛାଇ ଅଛି । ସେଇଁଠି ସ୍ଥିତିବାନ୍ ଦୋକାନପସରମାନ ଲଗାଲଗି ହୋଇଅଛି ଏବଂ ଆହୁରି ଭିତରକୁ ଆହୁରି ଛାଇକୁ ଆସ ବୋଲି ନିମନ୍ତ୍ରଣ କରୁଛି । ତନ୍ମଧ୍ୟରୁ ଏଭଳି କେତୋଟି ବାତାନୁକୂଳିତ ଦୋକାନ ମଧ୍ୟ ଅଛି ଯାହା ଭିତରକୁ ଗଲେ ରୌଦ୍ରପୀଡ଼ା କେବେକାର ଦୁଃସ୍ୱପ୍ନ ବୋଲି ମନେହେବ । କିନ୍ତୁ ସେ ଲୋଭ ସମ୍ବରଣ କରି ରହୁଥିଲେ । ପ୍ରାକ୍ତିକାଳ ଦୃଷ୍ଟିକୋଣରେ ସଫେଇ ଦେଉଥିଲେ ଯେ ସେଠି ଯେଉଁସବୁ ଖେଳଣା ଦୋକାନ ଅଛି, ସେଗୁଡ଼ିକ ବେକାର । ଫାଙ୍କଫାଙ୍କ ହୋଇ ଦେଉଁଥିବା ବେଙ୍ଗ ଅଉ ମିଳିବ ନାହିଁ, ମିଳିଲେ ମଧ୍ୟ ଅମୂଲମୂଲ ହୋଇଥିବ । ଅବସରପ୍ରାପ୍ତ ମଧ୍ୟବିତ୍ତ ଅକାରି ନାତି ପାଇଁ ନୁହେଁ । କିନ୍ତୁ ଭିତରିଆ ଦୃଷ୍ଟିରୁ ଭାବୁଥିଲେ ଯେ ତା'ଛଡ଼ା ତାହା ସୌରଜଗତରୁ ଭିନ୍ନ । ଆଜିକାର ମୋର ଏଇ ଅପୂର୍ବ ବିଦଗ୍ଧ ଚେତନାକୁ ସୁହେଇବ ନାହିଁ ।

ନା, ମୁଁ ଉଠିବି ନାହିଁ ବାରଣ୍ଡା ଉପରକୁ । ଏଇଠି ଘୁରି ବୁଲିବି, ଏବଂ ମାର୍କେଟ ବିଲ୍ଡିଂଗ୍ସର କଡ଼େ କଡ଼େ ତା' ସାମନା ଖୋଲା ପଡ଼ିଆର ଧାରରେ ବସିଥିବା ମୁନିସିପାଲିଟିର ଆଣ୍ଡିରେ ଧୂଳିଦେଇ (ଅବା ସେଠିକାର କର୍ମକର୍ତ୍ତାମାନଙ୍କ ପକେଟ୍ ଗରମ କରି) ଜମି ଯାଇଥିବା କ୍ଷଣସ୍ଥାୟୀ ବଜାର ବିପଣୀର ଆଡ଼ମ୍ବରକୁ ଦେଖିବି । ରୌଦ୍ରତାପକୁ ପରୁଆ ନ କରି, ହୁଏତ ସାମାନ୍ୟ କେର୍‌ଚାଲ୍ ତଳେ ଆପଣାକୁ ବଞ୍ଚେଇ ରଖି, ପସରା ମେଲିଥିବା ଦୋକାନିମାନଙ୍କ ଉଦ୍ୟମକୁ ଲକ୍ଷ୍ୟ

କରିବ, ଖୁସି ହେବ, ଗହ୍ଵଖମାନଙ୍କର ଆଗ୍ରହ ଓ ଖାତ୍ରେ ଛୁଣ୍ଡେଇବାର ଭଡ଼ାଓଟର ପାଟିତୁଣ୍ଡକୁ ମଧ ଦେଖିବ, ଶୁଣିବ, ଖୁସି ହେବ ।

ଆଜି ଏଇମାନେ ମୋ ସୌରଜଗତର ସାଥୀ । ଯଦ୍ଦଓ ମୋର ଉଦ୍ୟମ ଅନେକ ଊର୍ଦ୍ଧ୍ୱରେ, ମୋ ବହନର ଗୁଣ ନଅର ।

ତେବେ ଏଇ ମେସିନ୍-ଅଣ୍ଡା ପାଣିଗାଡ଼ିରୁ ଗିଲାସେ ପାଞ୍ଚପଇସିଆ ପାଣି ପିଇଲେ ମନ୍ଦ ହେବ ନାହିଁ । ସ୍ୱାକୁ ସମ୍‌ଝୌତା ବୋଲି କୁହାଯାଇ ନପାରେ । ଶୋଷ ମେଣ୍ଟେଇଲେ ସୌରଦର୍ଶନରେ ଆଖି ଲାଗିବ, ଏଭଳି ପ୍ରଶ୍ନ ଉଠୁନାହିଁ । ଏପରିଭାବରେ ନିଜକୁ ବୁଝେଇଦେଇ ମଦନମୋହନ ପାଣିବାଲାଠାରୁ ପାଣି ଗିଲାସେ ପିଇଲେ । ଗିଲାସେରୁ ଦ'ଗିଲାସେ ପିଇଲେ । ସେଇଠୁ ତୃପ୍ତିର ବିରାମକୁ ସମ୍ମାନ ଦେଲାପରି ଠିଆ ହୋଇ ରହିଲେ କ୍ଷଣକ ପାଇଁ । ଭାବିଲେ ଟିକିଏ ଭଲ ଭାବରେ ଦେଖିନିଏ ଏମାନଙ୍କୁ, ମୋର ଏଇ ରୌଦ୍ରସାଥୀମାନଙ୍କୁ—କ'ଣ ଦେଇ ପାରୁଛନ୍ତି ମୋ ବେଙ୍ଗ କଣିବା ପାଇଁ ?

ଦେଖିଲେ । କେବଳ ଦେଖିଲେ ନାହିଁ, ଶୁଣିଲେ ଏବଂ ଏକ ଶବ୍ଦବର୍ଣ୍ଣସମ୍ବଳିତ ଧୂପ ଧୂଆଁ ଉପରକୁ ଉଠିଲା ପରି ଲାଗିଲା···ସତେ ଉଠି ଉଠି ପହଞ୍ଚିବ ସେଠି, ସୌରମଣ୍ଡଳର ସୂର୍ଯ୍ୟଙ୍କ ପାଖରେ । ସେଥିରେ ଥିଲା—

ଲେ-ଲେ ଲେ-ଲେ ବହ୍ ରୁବସ୍ତାର କୁହାଟ ଓ କୁଢ଼ କୁଢ଼ ହୋଇ ଜମା ହୋଇଥିବା ରଙ୍ଗବେରଙ୍ଗ ସାର୍ଟ, ବୁସ୍‌ସାର୍ଟ, ଟି-ସାର୍ଟର ମେଳା । ବସ୍ ରୁବସ୍ତା ନା ଟାସ୍ ରୁବସ୍ତା ଠିକ୍ ବୁଝାପଡ଼ୁନାହିଁ । କିନ୍ତୁ କ'ଣ ମିଳିବ ସେଥିରୁ ? କୁହାଟ ହିଁ ବଡ଼କଥା । ଦେଖ ଏଇ ନିର୍ଧୂମ ଖପ୍ପରେ ମୁଁ କେମିତି ପାଟି କରିପାରୁଛି, ମୋର ବେକତଳ ଶିରା ଫୁଲି ଉଠୁଛି, କାଳା ମୁହଁର ଝାଳ ଚମକୁଛି । ଦେଖ ଶୁଣ ଏଇ ମୋର ରୁଦ୍ର ସାଧନା ·· । କେଉଁଠି କାମିଜ ଓଗେର ତ କେଉଁଠି ପ୍ୟାଣ୍ଟ୍ ଓଗେର ଏବଂ କେଉଁଠି ପିଅଲା ଖଣ୍ଡା ହେଲା ପରି 'ବ୍ରା'ର ପାହାଡ଼ । କିଏ ଗର୍ଜୁଛି ତ କିଏ ସ୍ୱର ମେଳୁଛି ଏବଂ ଜାହାର ତର୍ଣ୍ଣି ପଡ଼ିଗଲାଣି । କିନ୍ତୁ ସମସ୍ତେ ଟୋକା, ଦୁର୍ଦ୍ଧର୍ଷ ଯୌବନ, ସେଠୁ ବାନ୍ଧୁଛି ଆକାଶକୁ ·· ।

—ବେଲୁନ୍‌ବାଲାର ବେଲୁନ୍ । ମୁଁ ସ୍ୱର ଉଞ୍ଚେଇବି ନାହିଁ । କାରଣ ତୁମର ବୁଝିବା ଦରକାର ଯେ ମୋ ପାଖରେ ଯେଉଁ ରଙ୍ଗ ଅଛି, ଯେତେ ରଙ୍ଗ ଅଛି; ସବୁ ଉପରକୁ ଉଠିବ । କାହିଁ କେଉଁଠି ପହଞ୍ଚିବ । ତୁମ ପିଲାକୁ ପଚାର । ହୋଇପାରେ

ମୁଁ ହକେ ବୁଢ଼ା, ମୁହଁରେ ଧଳା ବୁଢ଼ ମେଞ୍ଚାଏ, ମୁଁ ପାଟି କଲେ ବ' ତା'କୁ ଶୁଣି ପାରିବ ନାହିଁ । କିନ୍ତୁ ଦେଖ ଏଇ ରଙ୍ଗ, ରଙ୍ଗରେ ଖବର, ଖବରରେ ରଙ୍ଗ··· ।

—ଖବରଠାରୁ ଆହୁରି ପ୍ରଚଣ୍ଡ ମୋ ଥାଳରେ ଯାହାଙ୍କୁ ଦେଖୁଛ । ଶନି ଗ୍ରହ । ଆଜି କୋଉ ବାର ମନେ ଅଛି ତ ? ବେଶ୍ । ତାଙ୍କୁ ନମସ୍କାର କର । ଥାଳରେ ପଇସା ପକାଅ··· ।

—ମୋତେ ଗୁଇ ତଳେ ସିମେଣ୍ଟ୍ ଚଟାଣରେ ଘୁସୁରିବାର ଦେଖିଛ । କିନ୍ତୁ ଏଇକ୍ଷଣି ଦେଖ ମୁଁ କେମିତି ଧୂଳିରେ ଘୁସୁରୁଛି, ମୁଣ୍ଡଫଟା ଖବରତଳେ ଘୁଞ୍ଚୁରୁଛି (ମୋ ମୁଣ୍ଡର ମୁହଁ ଛେଚି ହୋଇଯାଇଛି, ନହାତ ଅପନା ଦେଖା ଯାଉଛି ହେଲେ ମୋ ମୁହଁ ବ କାନ୍ଦେ, ବିଶ୍ୱାସ କର , ଦେଖ ଏବଂ ଆହୁରି ତାତଉଠ, ନିଜ ଉପରେ କି ସିଷ୍ଟମ୍-ସରକାର ଉପରେ, ତା' ତୁମେ ଜାଣିଥିବ । ସେଇଠୁ ଗୁଟିଦିଅ କିଛି ଗୋଟାଏ ମୋ ଉପରକୁ ···

—ମୋ ପାଖକୁ ଆଉଥରେ ଆସିବ ନାହିଁ ? ହେଲା ଏବେ ଯେ ମୋ ବେଙ୍ଗ ମେଦା ହୋଇ ବସିଛି, ମୋ ଠେଙ୍ଗୁଆ ଖାଲି ଜୁଲୁଜୁଲୁ ହୋଇ ଗୁହିଁଛି, କିନ୍ତୁ ମୋ ଲାଲ୍ ଘୋଡ଼ାକୁ ଦେଖିପାର; ସେ କେମିତି ତା'ର ଖୁରାକୁ ଉଠଉଛି ପକଉଛି, ଗୃହୁଁ ଗୃହୁଁ ମାଡ଼ିଯିବ ତୁମ ଶତ୍ରୁ ଉପରକୁ । ଆଉ ଦେଖ ତା'ର ତେଜ, ସିଧାସଳଖ ଆସିଛି ଉପରୁ, ତୁମର ସେଇ ଉପରୁ । ନବ ଯଦ ନଅ, ନ ହେଲେ ମୁଁ ଉଠି ପଳେଇଯିବି, ଆଉ ମୋ ଘରବାଲୀ ମୁଣ୍ଡରେ ଅଜାଡ଼ ଦେବ ଏଇ ଯେତେକ ବାଜେ ମାଲ । ମୋ ନାଲି ଆଖି ଖାଲି ଖବରେ ନାଲି ହୋଇନାହିଁ ·· ।

—ଆମକୁ ଦେଖିବ ଯଦ ଦେଖ, ଶୁଣିବ ଯଦ ଶୁଣ । ଆମେ କିଣିଲାବାଲା, କିନ୍ତୁ ତୁମଭଳିଆ ନୁହଁ । ଆମେ କେତେ ସମୟ ଯାଏଁ ଖବରେ ବୁଲିବୁ ଜାଣୁନା । ଆମେ ଖାଲି ଆସିଛୁ ଝଲମଲ ଶସ୍ତା ମାଲ କିଣିବା ପାଇଁ, ମହଙ୍ଗା ଜମାନାର ବଡ଼ ବଡ଼ଗୁଙ୍କୁ ତୁନ କରିବା ପାଇଁ । ବବଙ୍କର ସତ-ମିଛ ସିଲ୍‌କ୍ ଶାଢ଼ି ଦରକାର, କୋଉ ନୂଆ ଲିପଷ୍ଟିକ୍···ଆରେ ସେ କଣ ସେଇ 'ବାଲି' ପାଖରେ ଲଖି ଯାଇଛି, ଫେରି ଆସିବାର ନାଆଁ ଧରୁ ନାହିଁ ? ସେମିତି କଥାକୁ ଏଇ ଯୋଉ ପିଲାଟା ମୋ କାନ୍ଧରେ ଶୋଇଛି, ତାକୁ ଚୁମୁଟିବ ଯଉଛି··· ।

—ଆମକୁ ମଧ୍ୟ ଦେଖିବା ଉଚତ, ଯଦିଓ ଆମେ ଖାଲି ଆସିଁଛୁ ଖବରବାଟ ଦେଇ ଉଡ଼ିଯିବା ପାଇଁ ଆଉ କେଉଁଠିକି । ଗୁଇତଳୁ ଆଉ କେଉଁ ଗୁଇତଳକୁ । କଲିକତା ଶ୍ରୀନିବାସନ ର ଜାତି ଭାଇ, ଆମେ ଉଡ଼ିଯିବୁ କୋଉ ନ୍ୟାସନାଲ୍ ଇଣ୍ଟର୍-ନ୍ୟାସନାଲ୍‌କୁ । ଏବା ଖବର ଅଡ଼୍ଡାଲରେ ଲୁଚି ରହିଥିବା ରେସ୍ତୋରାଁ, ଆଇସକ୍ରିମ

ଇତ୍ୟାଦିର ମଉଜକୁ । ହେଲେ ଆମେ ତୁମର ମିଚ୍ଛିମିଚ୍ଛିକା ରୌଦ୍ରସାର୍ଥୀ ନୋହୁଁ, ଆମେ ତୁମ ସଭ୍ୟତାର ସମାଜର ଖଇଭଉଣୀ କ ପୁଅନ୍ତିଅ । ସେଇଠୁଁ ଝିଲଖିଲିଆ ହସ, ଷ୍ଟୁପିଡ୍ ଖରାକୁ ବାହାରୁ ହଟେଇ ଦେବାର ହସ... ।

—ଆମେ ଯେଉଁମାନେ ଘରେ ନ ଶୋଇ ଗଛ ତ୍ରୁଇତଳେ ଶୋଉଛୁ, ଆମ ଉଦ୍ୟମ-ଉପଭୋଗ କିଛି କମ୍ ନୁହେଁ । ତୁମେ କେଉଁଠୁ ବୁଝିବ ? ହେଲା ଏବେ ଗଛରୁ କ'ଣ କେତେବେଳେ ପଡ଼ିବ ଅଫ୍‌କାନ, କିନ୍ତୁ କୌଣ ସାର୍ଟପ୍ୟାଣ୍ଟ୍ ପିନ୍ଧିଛୁ ଯେ କପଡ଼ା ମଇଳା ହୋଇବ ? ତେଣୁ ଆମ ଆରାମ ଘୁଙ୍ଗୁଡ଼ିକୁ ବ' ମିଶେଇ ଦିଅ ତୁମ ଚେତନାରେ, ଉପରକୁ ଉଠୁଥିବା କେଉଁ ଉତ୍ସବର ଧୂପଧୂଆଁରେ ଏବଂ ଯଦି ଆପତ୍ତି ନ ଥାଏ ଟିକିଏ ତରେଇ ଦିଅ ଆମ ଗୃହପାଖରେ କୁଦି ବୁଲୁଥିବା ଛେଳିଛୁଆ, ପାଣିକଳ ତଳେ ଚେଁ ଚେଁ-ଚବର ଚବର ହେଉଥିବା ଚଢ଼େଇ ଓ ହାଇ ଉପରେ ହାଇ ମାରି ଗୁଳିଥିବା ଷଣ୍ଢକୁ । ସତେକି ଆମେ ଶୋଇଯାଇଛୁ ବୋଲି ଏଇ ଖରାପଡ଼ିଆଟା ପୂରାପୂରି ତାଙ୍କର !

—ଆହୁରି ଅଛି; ଯାହାର ଜୀବନ ନାହିଁ ବୋଲି ଭାବୁଛ । ପି. ଡବ୍ଲୁ ବାଲି ଥୁଆଯାଇଥିବା ପଥରଗଦାରେ ଯେଉଁ ମଣିମୁକୁତା ଝକଝକ କରୁଛି, ପୁରୁଣା ବପଣୀ-ପ୍ରାନ୍ତରକୁ ହେସ୍ଯୁକ୍ତ କରି ନୂଆ ଆକାଶଛୁଆଁ ଦପ୍ତରର ଏଇ ଯେଉଁ କାଚଝରକା ଜକ ଜକ ହେଉଛି, ସନାତନ ମନ୍ଦିର ଚୂଡ଼ାରେ ଯେଉଁ ପତାକା ତଥାପି ଫରଫର ହେଉଛି, ଏବଂ ସର୍ବୋପରି ଯେଉଁ ମଳି ବାଲେଇ (ଗ୍ରାଇ ଲେଉଟିଲେ ସିନା କୋଉ ମେହେନ୍ତର ଆସିବ ତା'କୁ ଉଠେଇ ନେବାପାଇଁ ?) ତା'ର ଦୁର୍ଗନ୍ଧକୁ ଶୁଖେଇ ଉଡ଼େଇ ଦେଉଛି ଖରାରେ ··ଆମ୍ଭେ ଏଇମାନେ ମଧ୍ୟ ସଲାମ୍ କରୁଛୁ ମାର୍ତ୍ତଣ୍ଡକୁ । ଆମ ନିଜ ନିଜ ବଡ଼େଇକୁ ଚହ୍ଲେଇବା ପାଇଁ । ଚହ୍ଲୁଛ କି ନାହିଁ ?

ମଦନମୋହନ ଚହ୍ଲିଲେ । ଗୋଟି ଗୋଟି କରି ବେଶ୍ ଚହ୍ଲିପାରିଲେ ସେମାନଙ୍କୁ. ଅନ୍ତତଃ ସେଇପ୍ରକାର ଧାରଣା ହେଲା ତାଙ୍କର, ଏବଂ ସେମାନଙ୍କର ରୌଦ୍ରଜଣା ଉଦ୍ୟମକୁ ସାବାସ୍ ବୋଲି କହିଲେ । ଏହି ଉଦ୍ୟମ ହିଁ ପ୍ରଣାମ । ଉପରବାଲା ଏହାହିଁ ଗୃହେଁ ।

ମଦନମୋହନ ହସିଲେ ମଧ୍ୟ । ଯେ ବିଚରା ତୁମେମାନେ ତଥାପି ଅନେକ ପଛରେ ପଡ଼ିରହିଛ । ତୁମେ ଜାଣିପାରୁନାହଁ ସିନା, ତୁମ ଧୂପଧୂଆଁ ସେଯାଏଁ ପହଞ୍ଚିପାରିବ ନାହିଁ । ଅଧାରୁ କଟିଯିବ, ମିଳି ହଜିଯିବ । କାହିଁକିନା ତୁମ ଉଦ୍ୟମରେ ରହିଛି···ବଡ଼ ହରଫ୍‌ରେ ଲେଖା ଶବ୍ଦଟିଏ । ସ୍ୱାର୍ଥ । କେହି ଅକାରଣରେ ନମସ୍କାର କରୁନାହିଁ । କେହି ଭଲପାଇବା ହେତୁ ନମସ୍କାର କରୁନାହିଁ । କେହି ଅକାରଣରେ ଭଲ ପାଇବା ହେତୁ ନମସ୍କାର କରୁନାହିଁ ।

ସେଇଲାଗି କାହାର ଲୋଭ ହେଉନଥିବ, ସାହସ ହେଉନଥିବ ଉର୍ଦ୍ଧ୍ୱକୁ ଅନାଇବା ପାଇଁ—ନୁହେଁ ? ମୁଁ ଜାଣିଛି, ମୁଁ ଜାଣିଛି । ସମସ୍ତେ କ'ଣ ମଦନମୋହନ ଦାସ ହୋଇଛନ୍ତି ? ମୋର ଜୀବନଦର୍ଶନ, ଦୀର୍ଘ ଅନୁଭୂତିର ବରଦାନ, ଏକ ତିକ୍ତ-ମଧୁର ସତ୍ୟ । ଯେ ଅକାରଣ ହିଁ କାରଣ ବଞ୍ଚିବାର । ବାକିସବୁ ମିଛ, ମାନେ ଯେତେକ ତଥାକଥିତ ସୁଖ, ଯାହାକୁ କାରଣ ବୋଲି କୁହାଯାଏ । ଧନ, ମାନ, ଯଶ ଇତ୍ୟାଦି ଏବଂ ତୁମର ସେଇ ଝିଅଟିଆର ଭଲପାଇବା ।

ଏହି ସମୟରେ ତାଙ୍କର ମନେହେଲା ସେ ଦେଖୁଛନ୍ତି ଜଣେ ବିଶିଷ୍ଟ ଚରିତ୍ରକୁ । ତାଙ୍କର ଶ୍ରେଣୀର ଏବଂ ସେହିଭଳି ବେଶଭୂଷା ପରିହିତ (ଯଦିଓ ସେ ତା' ଆଖିରୁ କଳା ଚଷମା ଉତାରି ନାହିଁ) ଜଣେ ସୁପରିଚିତ ଭଦ୍ରଲୋକ । ବରୁଣ ଏଣ୍ଡ୍ କୋଃରେ ଥିଲାବେଳେ ସମ୍ପୃକ୍ତ ସରକାରୀ ଦପ୍ତରର ଅଧିକାରୀ ବିଶେଷ ଯାହା ପ୍ରତି ସମସ୍ତଙ୍କର ଦରଦ । କାହିଁକିନା ବିଚରା ଯେତେ ବଡ଼ଲୋକ, ଯେତେ ବଡ଼ ଅଫିସର ଏବଂ ଯେତେ ସୁଦର୍ଶନ ହେଲେ କ'ଣ ହେବ, ଟ୍ରାଜେଡ଼ି ତା' ପାଖ ଛାଡ଼ୁନାହିଁ । ତାକୁ କୁଣ୍ଢେଇ ଧରିଛି କହିଲେ ଚଳେ ।

ହଁ ସେଇ ଜଣକ ଗୌତମ କୁଣ୍ଡୁ । ମୁଁ ତା'କୁ ଭଲ ଭାବରେ ଜାଣେ । ମୋର ବି ତା' ପ୍ରତି ଦରଦ କାହିଁରେ କଅଣ ।

ଖାଲି ଠିଆ ହୋଇଛି । ମନେହେଉଛି କିଣା-ବିକା ସାଙ୍ଗରେ କିଛି ସମ୍ପର୍କ ନାହିଁ ତା'ର । ଖରି ପଡ଼ିଆର କାହାର ସାଙ୍ଗରେ କିଛି ସମ୍ପର୍କ ନାହିଁ ତା'ର । ଦୈବାତ୍ ପହଞ୍ଚି ଯାଇଛି ଏଠି ଏବଂ ଠିଆହୋଇ ରହିଛି । ତା'ର କଳା ଚଷମାର ଦୃଷ୍ଟି ଫିଙ୍ଗିଦେଇଛି କେଉଁ ଦୂରକୁ । ଆଉ କାହାକୁ ଅପେକ୍ଷା କଲାପରି ।

ନା ସେ ମଧ୍ୟ ଦହନ ଦୁଃଖକୁ ଲୋଡ଼ୁଛି, ଭୋଗୁଛି ? ଯେମିତିକି ସେଇଥିରେ ତା'ର ଜାଗତିକ ସାଂସାରିକ ଦୁଃଖ ଜାଳି ହୋଇଯିବ ? ଏବଂ ସେଇଲାଗି ଏମିତି ଅନ୍ଧା ହୋଇ ଠିଆହୋଇ ରହିଛି, ଖେଳଣାବାଲାର ପଛକୁକନ ଓ ଅନେଇଛି କେଉଁ ଶୂନ୍ୟକୁ ?

ଗୌତମ କୁଣ୍ଡୁଙ୍କ ପ୍ରତି ମଦନମୋହନଙ୍କ ଦରଦ ପ୍ରବଳ ହୋଇ ଉଠିଲା । ଭାବିଲେ ଯେ ଯେତେହେଲେ ମୋର ଏଇ ଆତ୍ମ-ପୀଡ଼ନ ଦାର୍ଶନିକ, ଅତି-ସୂକ୍ଷ୍ମ ଏବଂ ଅତି-ଗଭୀର ଅନୁଭବର ଶାନ୍ତି । କିନ୍ତୁ ସାଧାରଣ ଦୃଷ୍ଟିରୁ ଦେଖିବାକୁ ଗଲେ ମୋର ସେମିତି କିଛି ହୋଇନାହିଁ । ମାନେ କିଛି ଗୋଟାଏ ଘଟଣାର ସଂଘାତ ଅବା ଅତି-ଆପଣାର କାହାକୁ ହରେଇବାର ଆଘାତ, ଯାହା ପରେ···(କିଣ ହୁଏ ? ବୁଦ୍ଧି

ହୋଇଯାଏ ? ଦର୍ଶନ ବସ୍ତୁର କି ଧରାଛୁଆଁ ଥାଏ ନାହିଁ ?) ଆହା, ଲୋକଟା ସତେ ନିହାତ ଟ୍ରାଜିକ୍ ।

ପ୍ରଥମେ ବଡ଼ ଝିଅଟା ପୋଲିଓ ରୋଗରେ ଖୋଣ୍ଡୀ ହୋଇଯାଇଛି ପିଲାଟି ଦିନୁ । ଅବଶ୍ୟ ସେ ତଥାପି କେଉଁ ଦୟାଳୁ ପ୍ରେମିକ ଡାକ୍ତରକୁ ବାହାହୋଇ ଘର ସଂସାର କରୁଛି । ହେଲେ ବାପମାଆଙ୍କ ହୃଦୟ କେମିତି କରତ ହୋଇଯାଏ ତା'ପାଇଁ, ମୁଁ ନିଜେ ଦେଖିଛି । ଯେତେବେଳେ ତାଙ୍କ ଷ୍ଟେରିଓ ସିଷ୍ଟମ୍‌ରେ କେତୋଟି ବିଶିଷ୍ଟ କ୍ୟାସେଟ୍‌ର ଗୀତ ବାଜିଉଠେ । ଗୁହୁଁ ଗୁହୁଁ ମିସେସ୍ ସୋନାଲି କୁଣ୍ଡୁଙ୍କର ଆଖି ଛଳଛଳ ହୋଇଯାଏ । କହନ୍ତି, ମୋର ମୀନା କଥା ମନେପଡ଼ୁଛି, କ'ଣ ମନେପଡ଼ୁଛି, କାହିଁକି ମନେପଡ଼ୁଛି ବୋଲି ପଚାରିବାକୁ ସାହସ ହୁଏନାହିଁ । ମୁଁ ଗୌତମ ଆଡ଼କୁ ଅନାଏ କିନ୍ତୁ ଦେଖେ ସେ ବି ଅନ୍ୟମନସ୍କ ହୋଇ ଅନେଇଛି କାନ୍ଥକୁ (ଅନ୍ଧ ଯେମିତି ଅନେଇଛି ଶୂନ୍ୟକୁ, କି ମାର୍କେଟ୍ ବାରଣ୍ଡାର କେଉଁ ଖୁଣ୍ଟକୁ, ଭଗବାନ ଜାଣନ୍ତି)··· ଏଇ ଟ୍ରାଜେଡ଼ିର ଶୋକ ଅସ୍ଥିମଜ୍ଜାରେ ମିଳେଇ ଗଲା ପୂର୍ବରୁ ଆଉ ଗୋଟାଏ ଟ୍ରାଜେଡ଼ି । ଦଶବର୍ଷର ପୁଅ ଲିଉକୋମିଆରେ ମରିଗଲା ଢଳ ଢଳ ହୋଇ । କୋଉ ଡାକ୍ତର, ବଇଦ, ଗୁଣିଆ, କେଦାରନାଥ, ବଦ୍ରିନାଥ, ପୁରୀ ଜଗନ୍ନାଥ, ତିରୁପତି ଓଗେର ଓଗେର କେହି କିଛି କରିପାରିଲେ ନାହିଁ । ତା'କଥା ସିଧାସଳଖ ପଡ଼େ ନାହିଁ ଡ୍ରଇଁରୁମ୍‌ରେ ଅନ୍ତତଃ ଆମେ କେହି ଥିଲାବେଳେ । କିନ୍ତୁ ସୁଯୋଗ ପାଇଲେ ମିସେସ୍ କୁଣ୍ଡୁ ଡାକ୍ତର ବଇଦଙ୍କ ବଡ଼େଇ ତଥା ଠାକୁରପଣିଆ ଉପରେ ଗୋଟିଏ ଠିକ୍ 'ହୁଁଃ !'ର ନିଃଶ୍ୱାସ ନ ଛାଡ଼ି ରହିପାରନ୍ତି ନାହିଁ । ଗୌତମ ପାଖରେ ଥିଲେ ପତ୍ନୀଙ୍କ ଦେହରେ ହାତ ରଖେ, ତାଙ୍କ କ୍ରୋଧକୁ ଥାପୁଡ଼େଇଲା ପରି । ମୁଁ ଏସବୁର ଅର୍ଥ ବୁଝିଲି ପରେ ଅନ୍ୟମାନଙ୍କଠାରୁ । ବୁଝିଲି ଯେ କେତେ ବଡ଼ ଟ୍ରାଜେଡ଼ିକୁ ସେମାନେ ଚାପି ରଖିଛନ୍ତି ନିଜ ଭିତରେ । ଶେଷକୁ ଆଉ ଗୋଟାଏ ଟ୍ରାଜେଡ଼ି ଘଟିବାକୁ ଥିଲା ଗୌତମ କୁଣ୍ଡୁର ବୁଢ଼ା ବୟସରେ । ସେତେବେଳକୁ ଗୌତମ ଦିଲ୍ଲୀରୁ ନାଏରୋବି (ୟୁ. ଏନ୍. ଓ.) ବାଟ ଦେଇ କଲିକତାକୁ ଫେରିଗଲାଣି । ରିଟାୟାର କରିଯିବଣି ନିଶ୍ଚୟ । ଶୁଣିଲି ଯେ ସୋନାଲି କୁଣ୍ଡୁ ଚାଲିଗଲେ । ହଠାତ୍ ହାର୍ଟ୍ ଫେଲିଓର୍ । ସମବେଦନାର ଚିଠି ଦେଇଥିଲି ଅବଶ୍ୟ । କିନ୍ତୁ ବର୍ତ୍ତମାନ ତା'କୁ ଆଖି ସାମନାରେ ଦେଖିଛି ଯେତେବେଳେ ତା' ପାଖକୁ ଯାଇ କୁହନ୍ତି ନାହିଁ କିଛି ? କହି ନ ପାରିଲାପରି ସମବେଦନାର ପଦୁଟିଏ ?

ମଦନମୋହନ ଆଗେଇଲେ । ଖେଲଣାବାଲାର ଗୁହାଣିରେ ଜାଗି ଉଠିଥିବା ଆଶାର ଭାଷାକୁ ଅସ୍ୱୀକାର କଲେ ଏବଂ ତାଙ୍କର ଖିଆଲ ହେଲା ଯେ ଏଇ ଗୌତମ କୁଣ୍ଡୁ ଲୋକଟା ନିହାତ ଟ୍ରାଜିକ୍, ନିହାତ ସୁପୁରୁଷ, ତେଣୁ ନିହାତ ପ୍ରିୟ ସମସ୍ତଙ୍କର । ଅତଏବ

ତା'ପ୍ରତି ଦୟା ଦେଖାଇବା ନିରର୍ଥକ । ଆସି ବୁଢ଼ା ହେଲଣି, ମୋଠୁଁ ବଡ଼ ହେବ ପଛେ ସାନ ହେବ ନାହିଁ; କିନ୍ତୁ ତା' ଚେହେରା ସେମିତି ଅଛି—ଯେତିକି ଗୋରା ହେବାର କଥା, ଯେତିକି ପତଳା ହେବାର କଥା, ଓ ଯେତିକି ସରୁ ହୋଇଥିଲେ ନିଷ୍ଠୁର ନହୋଇ ରୋମାଣ୍ଟିକ୍ ମନେହୁଏ, ନାକ ଯେତିକି ଉଚ୍ଚ ଏବଂ ଧାରୁଆ ହୋଇଥିଲେ ଖରୁକତା ସାଙ୍ଗରେ ଭାବୁକତା ମିଶିଗଲାପରି ମନେହୁଏ, ଗାଲ ଠିକ୍ ଯେତିକି ହାଡ଼ୁଆ ହୋଇଥିଲେ ପୌରୁଷ ନାରୀସୁଲଭ ସୁନ୍ଦରପଣରୁ ବର୍ତ୍ତିଯାଏ, ଅଥଚ ରୋଗିଣା ଦିଶେ ନାହିଁ···ମୁଣ୍ଡବାଲ ଅବଶ୍ୟ ଅଧାଅଧି ଧଳା ହୋଇଗଲାଣି, କିନ୍ତୁ ସେଥିରେ ସେ ସୁଦର୍ଶନ ହେଲେ ମଧ୍ୟ ଯଥେଷ୍ଟ ପୁରୁଖା ଏବଂ ସମ୍ମାନନୀୟ ଦେଖାଯାଉଛି ।

ତା' ସାଙ୍ଗକୁ ସେ ଯେମିତି କଥା କୁହେ, ଧୀରେ ଧୀରେ, କାଳେ କାହାକୁ ବାଧିବ ପରି, ପୁଣି ଯେପରି ଭାବରେ ହସେ, ସତେ କି ହସ ହେଉଛି ସଂସାରଟାକୁ ସହି ନେଇ କ୍ଷମା କରିବାର ଦ୍ୟୁତି, ଅଭିବ୍ୟକ୍ତି··· ।

ଧାତ୍ ! ଏମିତି ଗୋଟିଏ ସୁନ୍ଦର ସୁପୁରୁଷ ହେବାକୁ କିଏ କହୁଥିଲା ତୋତେ ? ଟ୍ରାଜେଡ଼ି ତୋତେ ଛୁଇଁପାରିବ ନାହିଁ ତ କ'ଣ ଆସିବ ଆମ ଭଳିଆ ମାଟି କାଦୁଅର ମଣିଷ ପାଖକୁ ? ମଦନମୋହନ ନିଜ ଭାବନାରେ ଚମକି ପଡ଼ିଲେ । ତାଙ୍କର ମନେହେଲା ଯେ ଏଇ ଦୟାଭାବରେ କେବଳ କ୍ରୋଧ ନାହିଁ ଯାହା ବନ୍ଧୁ-ସୁଲଭ, ଆହୁରି କିଛି ଅଛି, ହୁଏତ ଈର୍ଷା ଅଳ୍ପ ବହୁତ··· ।

ନା, ନା···ଅନୁଚିତ ଭାବକୁ ମାଡ଼ିଦଳି ଦେଇ ମଦନମୋହନ ଉଚିତରୁ ଅଧିକ ହସି ହସି ମାଡ଼ି ଆସିଲେ ଗୌତମ କୁଣ୍ଡୁଙ୍କ ପାଖକୁ ଏବଂ ଇତରଜନଙ୍କ କୋଳାହଳକୁ ଠେଲି ଦେଲାପରି ପାଟିକରି ଉଠିଲେ—

"ହ୍ୟାଲୋ, ହ୍ୟାଲୋ···କେବେ ଆସିଲେ ଦିଲ୍ଲୀକୁ—କାହାକୁ ଅପେକ୍ଷା କରିଛନ୍ତି ନା କ'ଣ ?"

ଉତ୍ତରରେ ଗୌତମ କୁଣ୍ଡୁ ଆଖିରୁ କଳା ଚଷମା ଉତାରି ଦେଲେ ଏବଂ ହସିଲେ ତାଙ୍କର ସେଇ କ୍ଷମାଶୀଳ ହସ । ଯାହା ମଦନମୋହନଙ୍କୁ ବିଶେଷ ଭଲ ଲାଗିଲା ବୋଲି କହି ହେବନାହିଁ ଏବଂ ବଦଳା ପ୍ରଶ୍ନ ପଚାରିଲେ—

"ଆଉ ଆପଣ କୁଆଡ଼େ ଆସିଛନ୍ତି ଏଣେ ?"

କରମର୍ଦ୍ଦନ ସହିତ ମଦନମୋହନ ପ୍ରଥମେ ଯାହା କହିବାକୁ ଆସିଥିଲେ କହି ପକାଇଲେ, "ଆଇ ଆମ୍ ସରି ଟୁ ନୋ···ମୋତେ ଭାରି ଖରାପ ଲାଗିଲା—ମୋ ଚିଠି

ପାଇଥିବେ ନିଶ୍ଚୟ···(ଗୌତମ କୁଣ୍ଡୁଙ୍କ ମୁହଁରେ କୌଣସି ଭାବାନ୍ତର ଲକ୍ଷିତ ହେଲା ନାହିଁ) ମୁଁ ଆସିଥିଲି କ'ଣ କି, ମୋ ନାତିର ଜନ୍ମଦିନ ଆସନ୍ତା ଶୁକ୍ରବାର, ତା'ପାଇଁ ଆଉ ଗୋଟାଏ ବେଙ୍ଗ ଦରକାର, କିମ୍ବା ଠେକୁଆ, ଯିଏ କି ଫୁକ୍ରୁଫୁକୁରୁ ନ ହୋଇ··· ।”

କିନ୍ତୁ ସେ ବୁଝିପାରିଲେ ଯେ ଗୌତମ କୁଣ୍ଡୁ କଥାଟାକୁ ଶେଷଯାଏଁ ଶୁଣିବାର ଅବସ୍ଥାରେ ନାହିଁ । ଆଉ କୁଆଡ଼େ ଅନେଇଛି । ହସିଲା ମୁହଁରେ ଦେଖୁଛି, ଯାଇଲା ପରି । ଆଉ କିଏ ଆସି ପହଞ୍ଚିଗଲାଣି । ବୋଧହୁଏ ତା'ର ଅପେକ୍ଷାରେ ସେ ଠିଆହୋଇ ରହିଥିଲା ଏତେବେଳ ଯାଏଁ ।

ମଦନମୋହନ ଦୃଷ୍ଟି ଫେରାଇ ଦେଖିଲେ ମାଠିମୁଠି ହୋଇ ଗୋଡ଼ାଟିଏ । ଉଜ୍ଜ୍ୱଳ ଆଖି, ସାବନା ରଙ୍ଗ, ଓଠରେ ଗାଢ଼ ଲିପିଷ୍ଟିକ୍ । ଗୌତମ କୁଣ୍ଡୁ ଚିହ୍ନେଇ ଦେଲେ ।

“ମିଟ୍ ମିସେସ୍ କୁଣ୍ଡୁ । ମିସେସ୍ ମାଳବିକା କୁଣ୍ଡୁ । ଆଉ ଇଏ ହେଉଛନ୍ତି ମିଷ୍ଟର ମଦନମୋହନ ଦାସ, ମୋର ଜଣେ ବିଶିଷ୍ଟ ବନ୍ଧୁ, ବରୁନ୍ ଏଣ୍ଡ୍ କୋଃର ଜଣେ ବଡ଼ କାର୍ପଟଦାର୍ ଥିଲେ··· ।”

ମଦନମୋହନ ନିଜର ପ୍ରତିକ୍ରିୟା ସଜାଡ଼ିବାକୁ ସମୟ ପାଇଲେ ନାହିଁ । କିନ୍ତୁ ଯାହାହେଉ ଗୌତମ କୁଣ୍ଡୁ ତାଙ୍କର କ୍ଷମାଶୀଳ ଗୁଣରେ ବନ୍ଧୁଙ୍କୁ ବଞ୍ଚେଇ ଦେଲେ । ସେ ନିଜେ ଚଟ୍‌କିନା ବିଦାୟ ନେଲେ । କହିଲେ—

“କିନ୍ତୁ ମନେକରିବେ ନାହିଁ । ଆମର ଗୋଟାଏ ଜାଗାକୁ ଯିବାର ଅଛି । ଜରୁରୀ କାମ···।”

ମାଳବିକା କୁଣ୍ଡୁଙ୍କର ଲିପ୍‌ଷ୍ଟିକ୍‌ମଖା ବିଦାୟୀ ହସ ଅଟରେ ଅଦୃଶ୍ୟ ହୋଇଗଲା । ସେମାନେ ହାତ ଧରାଧରି ହୋଇ ଏବଂ ଖରିକୁ ପିଠିକରି ଗଲେ କେଉଁ ଜରୁରୀ କାମ ସାରିଦେବା ପାଇଁ ଏବଂ ମଦନମୋହନ ସହଜେ ସେଠୁଁ ଖସିଆସି ପାରିଲେ ନାହିଁ ।··· ମାଳବିକା ମୋଟେ ସୋନାଲୀଙ୍କ ପରି ନୁହେଁ । କୃଶାଙ୍ଗୀ ନୁହେଁ, ମାଂସଳା, ଗୋରୀ ନୁହେଁ; ସାବନା, ଚାହାଣି ଉଜ୍ଜ୍ୱଳ ହେଲେ କ'ଣ ହେବ, ଆଖି ଦି'ଟାକୁ ବଡ଼ ବୋଲି କୁହାଯିବ ନାହିଁ । ତା'ଛଡ଼ା ତା' ଲିପ୍‌ଷ୍ଟିକର ରଙ୍ଗ ଅତି ଉତ୍କଟ । ଆଉ ସ୍ତ୍ରୀଲୋକଟା ଉଚିତରୁ ଅଧିକ ହସେ ।

ହେଲେ, ସେ ଆଉ ପ୍ରକାରେ । ଭିନ୍ନ ସ୍ୱାଦୁ । କେବଳ ଧନରେ ନୁହେଁ । ସେଇଥିଲାଗି ଗୌତମ କୁଣ୍ଡୁ... ।

ଛି ! !

କେଉଁଥିପାଇଁ ମଦନମୋହନ ଗୌତମ କୁଣ୍ଡୁ ତଥା ତାଙ୍କ ନବ ପରିଣୀତାଙ୍କୁ "ଛିଃ" ବୋଲି କହିଲେ ତା'ର ବ୍ୟାଖ୍ୟା କରିବା ଅନାବଶ୍ୟକ । ତେବେ ତା'ର ଶେଷକଥା ହେଲା ଗ୍ଲାନି । ଯେ ତାଙ୍କର ଏଇ ସୌରଜଗତ୍ ଅପବିତ୍ର ହୋଇଗଲା ।... ତୁମ ଦୁ'ଜଣଙ୍କୁ ଛୁଇଁଲେ ଦେଖିଥିଲେ ବୋଧହୁଏ ମାନି ନେଇ ପାରିଥାଆନ୍ତ ଯେ ଏମିତି ହୁଏ । ପୃଥିବୀରେ ଅନେକ ଲୋକ ଅଛନ୍ତି ଯେଉଁମାନେ ମିଛ ସୁଖରେ ଲାଖି ହୋଇ ରହିଯାଆନ୍ତି ମରିବା ଯାଏଁ, ନାଲି ପିମ୍ପୁଡ଼ି କମ୍ବା ଜୋକପରି । କିନ୍ତୁ ସେଥିରେ ମୋର ଉଦ୍ଧରଣରେ ଆଖି ଲାଗନ୍ତା ନାହିଁ । କିନ୍ତୁ ଦୁର୍ଭାଗ୍ୟକୁ ତୁମକୁ ଦେଖିଲି ଏଇ ଖରାପଡ଼ିଆର ମଝିଟାରେ । ଆଉ ମୋର ବଢ଼ି ଉଠୁଥିବା ଗଢ଼ି ଉଠୁଥିବା ଦହନର ସ୍ୱର୍ଗ ଭୁଷୁଡ଼ିଗଲା ।

ହୁଏତ ତୁମଙ୍କୁ ହୁଏତ ଅନେଇ ହେବ ଏଇକ୍ଷଣି । କାହିଁକନା ତାଙ୍କ ଉପରେ ସ୍ୱାର୍ଥର ଅଶ୍ଳୀଳତା ବୋଲି ହୋଇଯାଇଛି । ସେ ଦୁ'ଜଣଙ୍କର ନୁହେଁ, ମୋର, ଖାସ୍ ମୋର । ତା'କୁ ହିଂସା କୁହ, ଈର୍ଷା କୁହ, ଲୋଭ କୁହ, କି ଆଉ ଯାହା... ।

ହଉ । ମୁଁ ବୁଝିଲି ଯେ ନାରୀର ସ୍ତନ ଜଘନ ଯାହା, ଶିଶୁର ପୁଚୁପୁଚିଆ ଗାଲ ସେଇଆ । ସବୁ ସେଇ ଦେହରେ ଗଢ଼ା, ଦଆନିଆର ବୋକଗୁବୁହା । କାମନା-କାରଣ ଅଛି ସେ ଭଲ ପାଇବାରେ ବେଶ୍ । ମୁଁ ତା'କୁ ବ ବାତିଲ୍ କରିଦେବ ।

ଖାଲି ଭଗବାନଙ୍କୁ ଭଲ ପାଇବ । ମାନେ ବିଶ୍ୱକୁ, ମାନେ ମହାଶୂନ୍ୟକୁ ଭଲ ପାଇବ—ଏଇଆ ତ ? କିଏ ଜାଣି ନାହିଁ ଏଇ ସାମାନ୍ୟ କଥା ?

ଖେଳଣାବାଲା ତଥାପି ଅନେଇ ରହିଥିଲା ତାଙ୍କ ମୁହଁକୁ । କିନ୍ତୁ ଏଥର ମଦନମୋହନ ତାକୁ ଆଢ଼େଇ ଦେଲେ ନାହିଁ । କହିଲେ ବେଙ୍ଗ କି ଠେକୁଆ ନହେଲେ ନାହିଁ, ଲାଲ୍‌ଘୋଡ଼ା କିଣା ହେବ ଆଜି । ସୋମୁ ଜାଣୁ, ତା' ମାଆ ଜାଣୁ, ଆଉ ଜାଣୁ, ଯେ ମୋ ଭଲ ପାଇବା କୋଉ ବରାଦିଆ ବସ୍ତୁ ନୁହେଁ । ମୁଁ ତାକୁ ତିଆରି କରିବ, ମୋର ମର୍ଜି, ମୋର ଖିଆଲ୍‌ରେ...ଚିଟା ଲାଗିବା ଯାଏଁ ।

ଏବଂ ମୂର୍ତ୍ତୀ କୋଉ ଗୋଟାଏ ଦିନରେ କି ଗୋଟାଏ ଜନ୍ମରେ ଶେଷ ହୋଇଯିବ ନାହିଁ । ଏମିତି ଜଳୁଥିବ, ଆଉ, ଅନେଇଥିବ ମୋତେ ଜାଳିବ ବୋଲି । ଦାୟିତ୍ୱ ଖାଲି ମୋଅର ନୁହେଁ, ତାଆର ।

# ସୌରଜଗତ୍

ମୋର ତ୍ରୟୋଦଶ ଗଳ୍ପ ସଂକଳନ 'ମନ ମନ'ର ଏଇ ପଦ୍ମଲ ଗପଟିକୁ ମୁଁ ବିଶେଷ ଭଲପାଏ ।

କିନ୍ତୁ ଇଏ ଏମିତି ଗୋଟିଏ ଗପ, ଯାହାର ଶେଷକଥାକୁ କେବଳ ବୁଢ଼ାବୁଢ଼ୀମାନେ, ଅର୍ଥାତ୍ ଯେଉଁମାନେ ଜୀବନ-ଅନୁଭୂତିର ଶେଷ ପର୍ଯ୍ୟାୟରେ ପହଞ୍ଚିଲେଣି, ସେଇମାନେହିଁ ବୁଝିଲା ପରି ବୁଝିବେ ବୋଲି ମୋର ଧାରଣା । କାରଣ ସମସ୍ତ ଅଭିଜ୍ଞତାର ବୈଚିତ୍ର୍ୟ ତଥା ଅଳୀକତାକୁ ପାର ହୋଇ ଆସିଲା ପରେ ତାଙ୍କର ମନେ ହେଉଥିବ ଯେ ମୁଣ୍ଡି ମାରିବାର ମହତ୍ତ୍ୱକୁ ଅନୁଭବ କରିବାକୁ ହେଲେ ଏହିପ୍ରକାର ଗୋଟିଏ ଉଦ୍ୟମ ଆବଶ୍ୟକ । ଯେଉଁଥିରେ ଏକ ତୀବ୍ର ଯନ୍ତ୍ରଣାକୁ ମହୋଲ୍ଲାସ ବୋଲି ବରି ନେଇ ହେବ । ସତେକି ଏହାହିଁ ଏକମାତ୍ର ଅସ୍ତ୍ର ଯେଉଁଥିରେ ଜୀବନର ସମସ୍ତ ଇତରତା, ପଣ୍ଡଆସ୍ତି, ଏବଂ ମିଛ ଅନୁଭବକୁ ବାତିଲ୍ କରିହେବ । ଦେବୀଙ୍କ ଦୁଆରରେ ଜିଭ କାଟି ଅଧିଆ ପଡ଼ିଲା ପରି । ରଡ଼ନିଆଁ ଉପରେ ପାଦ ଦ'ଟାକୁ ଚଲେଇଲା ପରି । ଅଥବା କୃଷ୍ଣପ୍ରେମରେ ବିଭୋର ହୋଇ ଚେତା ହରେଇଲା ପରି । କ୍ଷମା କରନ୍ତୁ, ମୁଁ କାହାକୁ କାହା ସଙ୍ଗରେ ମିଶେଇ ଦେଉଛି ବୋଲି ହସନ୍ତୁ ନାହିଁ । ଯେ କାହିଁ ଆତ୍ମପୀଡ଼ନର ଉଦ୍ଭଟ ଉଲ୍ଲାସ, ଆଉ କାହିଁ ଭଗବତ୍ ପ୍ରେମର ମହୋଲ୍ଲାସ ! କିନ୍ତୁ ଭାବି ଦେଖନ୍ତୁ, ଏଇ ଦୁଇଟି ଭିତରେ କ'ଣ ଗୋଟିଏ ଯୋଗସୂତ୍ର ନାହିଁ, ଯାହାକୁ 'ଅତ୍ୟନ୍ତପଣ' ବୋଲି କୁହାଯିବ ? ରୌଦ୍ରର କେନ୍ଦ୍ରବିନ୍ଦୁକୁ ଅନେଇବାର ଦୁଶ୍ଚେଷ୍ଟା, ଗୁଇକୁ କାଣି-ଝୁଣି ଆଡ଼େଇ ଦେଇ ଖରାରେ ଘୁରି ବୁଲିବାର ଜିଦ୍, କ'ଣ ନା, ତା'ହେଲେ ଯାଇଁ କାଉଁଠୋକା ପାଇଁ ଠିକଣା, ମାନେ ଫୁରୁରୁ ଫୁରୁରୁ ନ ହୋଇ ଫଳଫଳ ହୋଇ ତେଜ ଦେଖେଇ ଡିଆଁ ମାରୁଥିବା ବେଙ୍ଗ କି ଠିକଣା ଟାଏ ଜାଣି ହେବ, ଏଥିରେ କ'ଣ ଖାଲି ଆତ୍ମଦହନର ତଥାକଥିତ ବିକୃତି ରହିଛି, ଆତ୍ମତ୍ୟାଗର ଆଧ୍ୟାତ୍ମିକ ଉତ୍ତରଣ ନାହିଁ ? ମଦନମୋହନ ଜାଣିଛନ୍ତି ଯେ

ନାଚପ୍ରତି ତାଙ୍କର ଏଇ ଭଲପାଇବା ଅତ୍ୟନ୍ତ ଏବଂ ଏକତରଫା, କହିବାକୁ ଗଲେ ଅକାରଣ। କିନ୍ତୁ ସେଇ ତ ମଜା ! କହିଲେ—

ସେଇ ଅତ୍ୟନ୍ତପଣର ମଜା ପାଇଛି ବୋଲି ତ ମୁଁ ଏଇ ରୌଦ୍ରକୁ ଲୋଡ଼ୁଛି, ଭୋଗୁଛି, ଏବଂ ତା'ର ଅନ୍ତଃସ୍ଥଳକୁ ପାଇବି ବୋଲି ଅଡ଼ି ବସିଛି !

ଅଦ୍ଭୁତ ଭଦ୍ରଲୋକଟିଏ—ନୁହେଁ ? କିନ୍ତୁ ପ୍ରଶ୍ନ ହେଉଛି ଯେ ଅଦ୍ଭୁତ ହେଲେ ମଧ୍ୟ ତାଙ୍କୁ ହୁଏତ ଆବ୍‌ସର୍ଡ଼ ବୋଲି କହିପାର, କିନ୍ତୁ ସେ କ'ଣ ଆମର ସସ୍ନେହ ସହାନୁଭୂତି, ଅନ୍ତତଃ ଦୟାମିଶା ସହାନୁଭୂତିର ପାତ୍ର ନୁହଁନ୍ତି ?

ନା। ମଣିଷ ସହାନୁଭୂତି ଦେଖାଏ, ସମବେଦନା ଜଣାଏ, କେବଳ ସେହି ଲୋକ ପ୍ରତି, ଯାହାକୁ ନିୟତି, ବିଧାତା, କିମ୍ବା ସଂସାର ଦାରୁଣ ଦୁଃଖ ଦିଏ; ହେଲେ ଅଯଥାରେ। ଲୋକଟାର କୌଣସି ଦୋଷ ନ ଥିଲେ ମଧ୍ୟ। କିନ୍ତୁ ମଦନ-ମୋହନଙ୍କ ଜୀବନରେ ସେଭଳି କିଛି ଅକାରଣ ଦାରୁଣ ବିପର୍ଯ୍ୟୟ ଘଟିଛି ବୋଲି କୌଣସି ସୂଚନା ନାହିଁ ତ ଏଇ ଗପରେ ? ଯଦି ତାହାହିଁ ହୋଇଥାଏ, ମାନେ ସେ ଜଣେ ସର୍ବସାଧାରଣ ସୁଖ-ଦୁଃଖଭୋଗୀ ମଣିଷ, ଯେ ସାଧାରଣ କ୍ରମରେ ବୁଢ଼ା ହେଲେଣି, ତା'ହେଲେ—କ୍ଷମା କରିବେ—ତାଙ୍କର ଏଇ ଆତ୍ମଦହନର ବ୍ୟାକୁଳ କାମନାକୁ କଦାପି ସମ୍ମାନ ଦିଆଯାଇ ପାରିବ ନାହିଁ। ଅନ୍ୟ ଅର୍ଥରେ ତାହା କେବଳ ଆବ୍‌ସର୍ଡ଼। ହାସ୍ୟାସ୍ପଦ। ପୂର୍ଣ୍ଣଚ୍ଛେଦ। ଏହି ମର୍ମରେ କେତେକ ବୁଦ୍ଧିବାଦୀ ପ୍ରାକ୍‌ଟିକ୍ୟାଲ୍ ଏବଂ ସୂକ୍ଷ୍ମମନ୍ୟ ନାଗରିକ ଗୋଟାଏ ବ୍ୟଙ୍ଗ୍ୟ ଛାଡ଼ି ଦେଇପାରନ୍ତି ମଦନମୋହନଙ୍କ 'ସୂର୍ଯ୍ୟମୁଖୀପଣ' ଉପରେ।

କିନ୍ତୁ ରୁହନ୍ତୁ, କଥାଟା ସେତିକିରେ ଛିଣ୍ଡି ଯାଇ ପାରିବ ନାହିଁ। ସେହି ବିଜ୍ଞ ଲୋକମାନଙ୍କୁ ଆଉ ଗୋଟାଏ ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିବ, ତାଙ୍କ ଉପରୋକ୍ତ ବ୍ୟଙ୍ଗ୍ୟ ସଙ୍ଗରେ ଖାପ୍ ଖାଇଲା ପରି। ଯେ ତା'ହେଲେ କ'ଣ ଆପଣଙ୍କର ସହାନୁଭୂତି ମଦନମୋହନଙ୍କ ବନ୍ଧୁ, ଗୌତମକୁଣ୍ଡୁ, ଏବଂ ସେହି ଧରଣର ଲୋକଙ୍କ ପାଇଁ ? ହଁ ଆଜ୍ଞା, ମଦନମୋହନଙ୍କୁ ତ୍ୟାଜ୍ୟ କଲେ

ଆପଣଙ୍କୁ ଗୌତମ କୃଷ୍ଣଙ୍କ ଗଳାରେ ଫୁଲମାଳା ପିନ୍ଧେଇ ଦେବାକୁ ପଡ଼ିବ । ନହେଲେ ଆପଣଙ୍କ ଗ୍ରନ୍ଥରେ କୌଣସି ନ୍ୟାୟ୍ୟ କ ସଙ୍ଗତ ନାହିଁ ବୋଲି ଧରି ନେବାକୁ ହେବ ।

ସୁଦର୍ଶନ ତଥା ଚ୍ଚାଳେନ୍ଦ୍ର ପୁରୁଷ ଗୌତମ କୃଷ୍ଣ । ଝିଅଟିଏ ପିଲାଦିନୁଁ ପୋଲିଓ ରୋଗରେ ଆକ୍ରାନ୍ତ ହୋଇ ପ୍ରଙ୍ଗୀ ହୋଇ ରହିଛି । ଦଶ ବର୍ଷର ପୁଅ ଲ୍ୟୁକୋମିଆ ରୋଗରେ ଚାଲିଗଲା । ତାଙ୍କର ସ୍ନେହଶୀଳା ପତ୍ନୀ ସୋନାଲି ମଧ୍ୟ ତାଙ୍କୁ ହଠାତ୍ ଛାଡ଼ି ଦେଇ ପଳେଇଲେ ସେପୁରକୁ । ସ୍ୱଭାବତଃ ମଦନମୋହନଙ୍କ ପରି ଆପଣଙ୍କର ମଧ୍ୟ ଅସୀମ ସହାନୁଭୂତି ତାଙ୍କ ପ୍ରତି । ବେଶ୍ । କିନ୍ତୁ ପତ୍ନୀଙ୍କ ମୃତ୍ୟୁ ବାସି ନ ହେଉଣୁ ସେ 'ଭଲ୍ ସ୍ୱାଦୁ'ର ଲୋଭ ଦେଖାଉଥିବା କନୈକା ଶ୍ୟାମା, ମାଂସଳା, ଏବଂ ଗାଢ଼ ଲିପ୍‌ଷ୍ଟିକ୍ ମଖା ମାଳବିକାଙ୍କୁ ବାହା ହୋଇ ପଡ଼ିଲେ, ସେଥିରେ କ'ଣ ଟିକିଏ ବିସ୍ମିତ ତଥା ବିଚଳିତ ହେବା ଉଚିତ ନୁହେଁ ଆପଣଙ୍କର ? ଅବଶ୍ୟ ଉଚିତ ବୋଲି କୁହନ୍ତୁ ନାହିଁ । କାରଣ ମଦନମୋହନଙ୍କ ଆଚରଣ ଯଦି ହାସ୍ୟାସ୍ପଦ ହୁଏ, ତା'ହେଲେ ଏଇ ଭଦ୍ରଲୋକ ଜଣକ ଗୋଟାଏ ବୁଦ୍ଧିମାନର କାର୍ଯ୍ୟ କଲେ ବୋଲି କହିବାକୁ ପଡ଼ିବ । ତା'ହେଲେ ଯାଇଁ ଆପଣଙ୍କ ଗ୍ରନ୍ଥ ତିଷ୍ଠି ରହିପାରିବ ।

ଅର୍ଥାତ୍ ଯେଉଁ ଲୋକଟି ତା' ଭାବ ଭାବନାର ଯାବତୀୟ ଅଙ୍ଗେ ନଭେଇବା ଦୁଃଖ, ଯେଉଁଥିରେ ସଂସାରର ସେତେକ ମିଛକଥା, ଶଠତା, ଦୁଇରେ ଦୁଇ ମିଶି ଚାରି ହେଉ ନ ଥିବାର ଫଳାଫଳ ତଥା ଅସୁନ୍ଦରର ପାଉଡରମଖା ସୁନ୍ଦରପଣ ଖିନ୍ନ ହୋଇ ରହିଛି, ତାକୁ ସହି ନ ପାରି ତା' ବୁଢ଼ା ବୟସରେ ଲୋଡ଼େ କେଉଁ ଏକ ତୀବ୍ର ଦହନର ଜ୍ୱାଳା 'ଏଇ କରେଓ୍ୱ ଭାଲେ ନାଟୁର୍ ଏଇ କରେଓ୍ୱ ଭାଲୋ, ଏମନ କରେ ହୃଦୟେ ଆମାର ତୀବ୍ର ଦହନ ଜାଲୋ' ବୋଲି ଡାକ ଛାଡ଼େ ଭଗବାନଙ୍କୁ, ତାକୁ ଆପଣ ହାସ୍ୟାସ୍ପଦ ବୋଲି କହିବେ, ଅଥଚ ଯେଉଁ ଲୋକଟି ତା' ଜୀବନର ଆଖିଦୁରୁଶିଆ ଟ୍ରାଜେଡ଼ିମାନଙ୍କୁ ସହଜେ ଭୁଲି ଯାଇ, କହିବାକୁ ଗଲେ ଅମାନ୍ୟ କରି, 'ସୁଖ' କରିବା ଲାଗି ହମହମ ହୁଏ, ତା'କୁ ଆପଣ ବାହାବା କରିବେ । ସେ ତା'ର ପ୍ରତ୍ୟେକ ଅନୁଭବର ମୂଲ୍ୟ ଦିଏ, ଓ ସେଥିର ସତ୍ୟ-ଶିଖ-

ସୁନ୍ଦରକୁ ପରଖିବାକୁ ଯାଇ ବିପଦରେ ପଡ଼େ, କାହିଁକନା ସେ ସେଥିର ଇତରତା ତଥା ବୈଷମ୍ୟକୁ ଗ୍ରହଣ କରିପାରେ ନାହିଁ, ତେଣୁ ଆତ୍ମପୀଡ଼ନ ଓରଫ୍ ଆତ୍ମତ୍ୟାଗର ତୀବ୍ର ଦହନକୁ ଖୋଜି ବସେ ସିଏ ହେଲା ଆବ୍‌ସର୍ଡ, ଆଉ ଯେ ଯାବତୀୟ ଅନୁଭବକୁ ହେଳେଇ ଦେଇ କୌଣସିମତେ ସୁଖ କରିବାକୁ ଚାହେଁ, ସେଇ ହେଉଛି ଆପଣଙ୍କ ସୁନାପୁଅ। ଏଇ ହେଉଛି ଆପଣଙ୍କ ଗଳ୍ପର ସାରତତ୍ତ୍ୱ। ଉତ୍ତମ!

ଆପଣ ବୋଧହୁଏ ହସିବେ ମୋ ଅଭିମାନିଆ କଥାରେ। କହିବେ—କ'ଣ କରିଯିବ, କୌଣସିମତେ ସୁଖ ଲୋଡ଼ିବା ହିଁ ମଣିଷର ସ୍ୱଧର୍ମ, ଏବଂ ସେହେତୁ ପୃଥିବୀର ଅନେକ ଅଧିକ ଲୋକ ଗୌତମ କୁଣ୍ଡୁଙ୍କ ପରି, ମଦନମୋହନ ଦାସଙ୍କ ପରି ନୁହେଁ। ଇତ୍ୟାଦି। କିନ୍ତୁ ତା' ସାଙ୍ଗକୁ ବୋଧହୁଏ ଗୋଟାଏ ସନ୍ଦେହ ଆସିବ ଆପଣଙ୍କ ମନରେ, ଯେ ଯେଉଁମାନେ ମଦନ-ମୋହନଙ୍କ ତରଫରୁ ଏଭଳି ଏକ ନିର୍ଘ୍ରେଡ଼ିବନ୍ଧା ସଫେଇ ବାଢ଼ିବାକୁ ବସନ୍ତି, ସେମାନେ ସେଇ ଦମ୍ଭୀମାନଙ୍କ ସଂପ୍ରଦାୟର ଲୋକ, ଯାହାଙ୍କୁ କଳାକାର କୁହାଯାଏ। ଯେଉଁମାନେ ଅତି-ଅନୁଭବୀ ତଥା ଅତି-ଚିନ୍ତକ, କିନ୍ତୁ ବିଚରା ନା ଝୁରି ଝୁରି ଯାଇ ପାରନ୍ତି, ନା ବୁଝି କି ସିଦ୍ଧ ହୋଇପାରନ୍ତି!

ଏଥର ବୋଧହୁଏ ଆପଣଙ୍କ ବୁଝିବାରେ ବାକି ନାହିଁ ଯେ ମୁଁ ଏଇ ଗପଟିକୁ କାହିଁକି ଭଲପାଏ, ବିଶେଷ ଭାବରେ ଭଲ ପାଏ. ତା'ର ସାହିତ୍ୟିକ ମୂଲ୍ୟ ଯାହା ହେଉ ପଛେ ଆପଣଙ୍କ ସାହିତ୍ୟିକ ମାପକାଠିରେ। ତା'କୁ ମୋର ଘୋର ଆତ୍ମବଡ଼ିମା କୁହନ୍ତୁ, କି ଆଉ ଯାହା।

ତା'ଛଡ଼ା ମୁଁ ଦିଲ୍ଲୀର ରୌଦ୍ରତାପ ତଳେ ଆତଯାତ ହେଉଥିବା ତଥା ସୁଖ ଲୋଡ଼ୁଥିବା ପ୍ରାଣୀମାନଙ୍କର ଏକ ଛବିଳ ଦୃଶ୍ୟ ଆଙ୍କିବା ପାଇଁ ଚେଷ୍ଟା କରିଛି। ସେଦିଗରେ ମୁଁ କେତେଦୂର ସଫଳ ହୋଇ ପାରିଛି, ତା'ର ବିଚାର ଆପଣଙ୍କ ଉପରେ।



# ଧର୍ଷଣାଯ଼ୀ

"ଏକ୍‌ସ୍‌କ୍ୟୁଜ୍ ମି ସାର୍"

ଡାକ୍ତରଙ୍କ ପଛରେ ଆମେ ଥୋକେ ଜ୍ଞାତିବନ୍ଧୁ ପରିବାର ଭିଡ଼ ଜମେଇଥିଲୁ ପୁଅ ପାଖରେ । ଧିନସାରି ବାନ୍ତି କରି କରି ତା'ର ଅବସ୍ଥା କାହିଲ୍ । ତା'କୁ ପନ୍ଦର ନମ୍ବର ବେଡ୍‌ରେ ଶୁଆଇ ଦିଆ ହୋଇଥିଲା । ହାତର ଶିରାବାଟେ ସାଲାଇନ୍ ଦେବାର ବ୍ୟବସ୍ଥା କରାଯାଉଥିଲା । ଡାକ୍ତର ଆଶ୍ୱାସନା ଦେଇ କହୁଥିଲେ—କିଛି ଚିନ୍ତା ନାହିଁ, ଏଇ ଗୋଟାଏ ଯୋଡ଼ାଏ ଦିନ ଭିତରେ ଠିକ୍ ହୋଇଯିବ । ତା'ର ମାଆ ଆଶ୍ୱାସନା ପାଇଲେ ମଧ୍ୟ ନ ପାଇଲା ପରି ହେଉଥିଲେ । ଲୁହ ପୋଛୁ ଥିଲେ ଏବଂ ତାଙ୍କର ବିମୂଢ଼ତାକୁ ଦୋହରେଉଥିଲେ ଯେ ପିଇବା ପାଣିରୁ ଇନ୍‌ଫେକ୍‌ସନ୍ ଆସି ନ ଥିବ, ଯେହେତୁ ପାଣି ଫୁଟା ହୋଇ ଦିଆଯାଉଛି, କେକ୍‌ରୁ ଆସି ନ ଥିବ କାହିଁକିନା କେକ୍ ଘରତିଆରି, ସେ ନିଜ ହାତରେ ତିଆରି କରିଛନ୍ତି, ପକୋଡ଼ା ଗରମାଗରମ, ଜୀବାଣୁ ବଞ୍ଚିପାରିବ ନାହିଁ ତା' ଭିତରେ···ତଥାପି ଏମିତି ହେବାକୁ ଥିଲା ? ସାନଭଉଣୀର ଜନ୍ମଦିନ ପାର୍ଟିରେ କ'ଣ ଟିକିଏ ଭଲମନ୍ଦ ଖାଇବ ନାହିଁ ପିଲାଟା ? ମୁଁ ଗହଳର ସବା ପଛକୁ ଥିଲି । ମୁଁ ନିଜକୁ ସ୍ଥିତପ୍ରଜ୍ଞ ବୋଲି କହୁ ନାହିଁ । କିନ୍ତୁ ମୋର ଉଦ୍‌ବିଗ୍ନତା କେତେ ଆୟତ୍ତରେ ଥିଲା ତା'ର ପ୍ରମାଣ ଏଇଥିରୁ ବୁଝିବେ ଯେ ଉପରୋକ୍ତ ପରିସ୍ଥିତି ସତ୍ତ୍ୱେ ଷୋହଳ ନମ୍ବର ବେଡ୍‌ରୁ ଯେତେବେଳେ ରୋଗୀ ଜଣେ ଆରମ୍ଭ କଲା—"ଏକ୍‌ସ୍‌କ୍ୟୁଜ୍ ମି ସାର୍ ", ମୁଁ ତା' କଥାରେ କାନ ଦେଲି । ବୁଲି ପଡ଼ି ତା' ଆଡ଼କୁ ଅନେଇଲି ଏବଂ ତା' ପ୍ରଶ୍ନକୁ ଚଟ୍‌କିନା ଧରି ନେଇ ମୋ ହାତଘଡ଼ି ଦେଖି କହିଲି, "ସାତଟା ବାଜି ପନ୍ଦର ମିନଟ୍ ।" ସେଇଠୁ ସେ ହସିଲା ମୋ ଆଡ଼କୁ ଚାହିଁ । ମୋତେ ଭଲ ଲାଗିଲା ଯେ ମୁଁ ଗୋଟାଏ ଭଲ କାମ କରିଛି ।

ଏତିକିରେ କଥା ଛିଣ୍ଡି ଯାଇଥାଆନ୍ତା । କିନ୍ତୁ ମୋର ଧାରଣା ନ ଥିଲା ଯେ ଗହଳରେ ସାମିଲ ଥିବା ଜଣେକ ସିଷ୍ଟର୍ ମଧ୍ୟ ଆମର ସାମାନ୍ୟ ବାର୍ତ୍ତାଳାପ ଶୁଣି ପାରିଥିଲେ । ଏବଂ ସେ ଅଜବ ପ୍ରକାରେ ହସିଥିଲେ । ତେଣୁ ତା' ପରଦିନ (ସେତେବେଳକୁ ପୁଅ ଆରୋଗ୍ୟ ପଥରେ ଆଗେଇ ଗଲାଣି ଅନେକ ଦୂର) ସେଇ ଗୋଲ୍ଟି ଗେଡ଼ୀ ସିଷ୍ଟରଙ୍କଠାରୁ ଶୁଣିବାକୁ ପଡ଼ିଲା—

"ସେ ପୁଣି ଥରେ ଏକ୍ସ୍‌ରେଉଲ୍ ମାଗି ନାହାଁନ୍ତି ତ ଅପଣଙ୍କଠାରୁ ?"

"ନାଇଁ ତ..."

"ଭାଗ୍ୟ ଭଲ ଆପଣଙ୍କ ପେସେଣ୍ଟ୍ ଆଜି କାଲି ଭିତରେ ଡିସ୍‌ଚାର୍ଜ ହୋଇଯିବ। ନହେଲେ ସେ ଆପଣଙ୍କ ମୁଣ୍ଡ ଖାଇଦିଅନ୍ତା। ସେ ସମସ୍ତଙ୍କୁ ପଚାରେ ନାହିଁ ଏମିତି। ଆମ କଥା ଛାଡ଼ନ୍ତୁ, ସିଷ୍ଟର୍‌ମାନେ ତ ତା'ର ଶତ୍ରୁ। କିନ୍ତୁ ଯେଉଁ ଭଲଟେରେଟିଏ ତା' ମନକୁ ପାଇଯାଏ, ତାକୁ ସେ ଛାଡ଼େ ନାହିଁ ସହଜେ। ସାବଧାନ...।" ଏତିକି କହି ରହସ୍ୟମୟୀ ଟଗଡଗ ହୋଇ ଚାଲିଗଲେ ନିଜ ବାଟରେ।

ମୋର ସନ୍ଦେହ ରହିଲା ନାହିଁ ଯେ ସେ ମୋତେ ଅଦ୍ଭୁତ କେତେ କଥା କହିବେ ଏ ବିଷୟରେ ଏବଂ ମୁଁ ଶୁଣିବାକୁ ବାଧ୍ୟ।

ଯେଉଁ ଭଲଟେରେଟିଏ ତା' ମନକୁ ପାଇଯାଏ, କେବଳ ତା'କୁଇ...। ଅବଶ୍ୟ ମୋର ସ୍ୱଭାବଚରିତ୍ରରେ କ'ଣ ଅଛି କେଜାଣି ମୋ ସମାଜର ଅନେକ ଲୋକ, ପିଲାରୁ ବୁଢ଼ା ଯାଏଁ, ମୋ ଆଗରେ ତାଙ୍କ ଦୁଃଖ ଦୁର୍ଦ୍ଦଶାର କାହାଣୀ, ଗଭୀର ଗୋପନ କାହାଣୀ ଗପି ଆସିଛନ୍ତି ଏବଂ ନିଜକୁ ଖାଲାସ କରସାରିଲା ପରେ ମୋତେ କୃତଜ୍ଞତା ଜଣାଇ ଲଜ୍ଜା ଦେଇଛନ୍ତି। କାରଣ ମୁଁ ସାନ୍ତ୍ୱନାବାଣୀ ଶୁଣାଇ ପାରେ ନାହିଁ, ମାନେ ଯେମିତି ଶୁଣାଇବାର କଥା। ଠିକଣା ବାକ୍ୟ ପୂରା କରି ପାରେ ନାହିଁ। ଝୁଣ୍ଟୁଥାଏ ବାରମ୍ବାର ଏବଂ କ୍ୱଚିତ୍ ଲୁହ ଆସେ ମୋ ଆଖିକୁ। କିନ୍ତୁ ତଥାପି ସେମାନେ କିଛି ପାଉଥିବେ ମୋଠୁଁ। ହୁଏତ ମୋ ଅନ୍ତରର ଅକୁହା ଭାଷା ପଢ଼ି ପାରୁଥିବେ ମୋ ଚାହାଣିରୁ, ମୋର ଦ୍ରବୀଭୂତ ନୀରବତାରୁ।

କିନ୍ତୁ ଇଏ ତ ଗୋଟାଏ ପୂରାପୂରି ଅଚିହ୍ନା ଲୋକ ! କେଉଁ ହିସାବରେ ମୁଁ ତା' ମନକୁ ପାଇଗଲି ? ଖାଲି ମୋ ଚେହେରାରୁ ସେ ପାଇଗଲା ଯାହା ପାଇବା କଥା ! ଏହି କାରଣରୁ ମୁଁ ମଧ୍ୟ ଚାହିଁ ରହିଲି ଶୁଣିବା ପାଇଁ। ସମସ୍ତ କମ୍।

ଯାହାହେଉ ସେଇ ଦିନର ଖରାଟିଆ ପୂର୍ବାହ୍ଣରେ ରାଣୀ ଲକ୍ଷ୍ମୀ ଦାତବ୍ୟ ଚିକିତ୍ସାଳୟର କରିଡ଼ର୍‌ରେ ଥିବା ଗୋଟିଏ ଝୁମ୍ପୁଲଗା କୋଣରେ ଚପିହୋଇ ଏବଂ କେଉଁ ଏକ ମିଶ୍ରିତ ଅନିର୍ଦ୍ଦିଷ୍ଟ ଦୁର୍ଗନ୍ଧକୁ ଶୁଙ୍ଘି (ଇଏ ସିଏ ନୁହେଁ, ଇଏ ସିଏ ନୁହେଁ ବୋଲି ନିଜକୁ ବୋଧ ଦେଇ) ମୁଁ ଶୁଣିଗଲି ଏକ ଦୀର୍ଘ ଉପାଖ୍ୟାନ। ଡାକ୍ତର-ଖାନାର ଜଣେ ସିଷ୍ଟର ତାଙ୍କର ଅନେକ କାମଦାମ ଭିତରେ ଏତେ ସମୟ ଦେବେ ମୋ ପାଇଁ ବୋଲି ମୁଁ ଆଶା କରି ନଥିଲି। କିନ୍ତୁ ଉପାଖ୍ୟାନ ସରିଲା ବେଳକୁ ମୁଁ ବୁଝିପାରିଥିଲି ଯେ ସେ ତାଙ୍କ ସମୟ ବରବାଦ କରୁ ନାହାନ୍ତି ଖାସ୍ ମୋ ପାଇଁ। ସେ ଆପଣା ରାଗ ଉତାରିବାକୁ ଚାହୁଁଛନ୍ତି। ସମସ୍ତ ନର୍ସ ସମ୍ପ୍ରଦାୟ, ନାରୀଜାତି, ତଥା ଅଧସ୍ତନ କର୍ମଚାରୀମାନଙ୍କ ତରଫରୁ।

"…ଲୋକଟା କ'ଣ ବୋଲି ମନେ କରନ୍ତି କି ନିଜକୁ ? ହୋଇପାରେ ସେ ବଡ଼ ଲୋକ, ତା' ସ୍ତ୍ରୀ ବଡ଼ ଲୋକ । ତଥାପି କେହି ତା'କୁ ଘରେ ରଖି ପାରିଲେ ନାହିଁ । ବୁଝିଲେ ନା ? ଲୋକେ ଜାଣିବାକୁ ସେ ନିଜେ କୁଆଡ଼େ ଚାହିଁଲା ଯେ ସେ ହସପିଟାଲରେ ପଡ଼ି ରହିବ । ପୁଣି ପ୍ରାଇଭେଟ୍ ଓ୍ୱାର୍ଡ କି କେବିନରେ ନୁହେଁ, ଜେନେରାଲ୍ ଓ୍ୱାର୍ଡରେ, ଯେଉଁଠି ସେ ବିଭିନ୍ନ ବାହାର ଲୋକମାନଙ୍କ ସାଙ୍ଗରେ କଥା ଭାଷା ହେବାର ସୁଯୋଗ ପାଇ ପାରିବ । ସେ କୁଆଡ଼େ ବହୁତ ପାଠୁଆ, ଦେଶବିଦେଶ ଜ୍ଞାନ ବିଜ୍ଞାନ ବିଷୟରେ ଆଲୋଚନା ନ କଲେ ତା' ଖାଡ ହଜମ ହୁଏ ନାହିଁ, ହେଲା ବୁଝିଲି । ସେଇଥିପାଇଁ ଧୋବଧାଉଳିଆ ଭିଜିଟରଟିଏ ପାଇଲେ (ଭୁଲ ବୁଝିଛ ସିଷ୍ଟର, ମୁଁ ଧୋବଧାଉଳିଆ ବୋଲି ନୁହେଁ, ମୋ ଚରିତ୍ରର ଗୁଣ ଦୋଷରୁ) ତା'କୁ ମାଡ଼ି ବସେ ଏମିତି । 'ଏକ୍ସକ୍ୟୁଜ୍ ମି' କହି ଆରମ୍ଭ କରେ, ସେଇଠୁଁ ତା' ସାଙ୍ଗରେ ଦୋସ୍ତି ଜମେଇବାକୁ ଚେଷ୍ଟା କରେ, ଛେନାଗୁଡ଼ ଆଲୋଚନା କରିବାକୁ ଯାଇ ବିଚରାକୁ ବୋର୍ କରି ଦିଏ, ସେ ଯାହି ଯାହି ଡାକ ପଳେଇ ନ ଯିବା ଯାଏଁ ସ୍ୟାର ମନ ଶାନ୍ତ ହୁଏ ନାହିଁ…ସେ ଯାହା ହେଉ ପଛେ…ତା' ବୋଲି ଆମ ଉପରେ ଏମିତି ଖାଉଁ ଖାଉଁ ହୁଏ କାହିଁକି ? ବିଶେଷତଃ ସିଷ୍ଟର୍‌ମାନଙ୍କ ଉପରେ । ଉହୁଁ, ଯେତେକ ସ୍ତ୍ରୀ ଲୋକମାନଙ୍କ ଉପରେ । ଦିନେ କ'ଣ ହେଲା ନା ଜଣେ ପନ୍ଦର ନମ୍ବର ପେସେଣ୍ଟ୍‌ର ଦୟା ହେଲା ସ୍ୟା' ଉପରେ । ସ୍ୟା'ର କୁନ୍ଥାଣିକୁ ଦେଖି ପଚାରିଲେ—'କଣ ଖୁବ୍ କଷ୍ଟ ହେଉଛି ଆପଣଙ୍କୁ ? ଡାକିବି ସିଷ୍ଟର୍‌ଙ୍କୁ ?' ସେଇଠୁଁ ଇଏ ଯେମିତି ଭାବରେ ଚହିଁକି ଉଠିଲା, କ'ଣ କହିବି ଆଉ… ।"

ସିଷ୍ଟର୍ ଆନ୍‌ନା ମ୍ୟାଥିଆ ଏହି ଭାବରେ ଗାଇଗଲେ ଲୋକଟାର ଅହଂକାରୀ, ଅଶାଳୀନ, ନାରୀବିଦ୍ୱେଷୀ ଦୁର୍ବ୍ୟବହାରର ଇତିହାସ । ପ୍ରାୟ ମାସକର ଇତିହାସ । ମୁଁ ଶୁଣିଗଲି । ପ୍ରଶ୍ନ ପଚାରିଲି ନାହିଁ । କାହିଁକିନା ମୁଁ ଆସାମୀର ସସ୍ମିତ ବନ୍ଧୁଭାବାପନ୍ନ ଚେହେରାକୁ ଦୋଷୀ ବୋଲି ଠଉରେଇ ପାରିଲି ନାହିଁ । କିନ୍ତୁ ଏଇ ନାରୀବିଦ୍ୱେଷ କଥାଟା ମୋତେ ଅଖାଡ଼ୁଆ ଲାଗିଲା । ଧନ ଗର୍ବ, ବିଦ୍ୟା ଗର୍ବ, ଇତ୍ୟାଦି ନାନା ଗର୍ବର ଅସାରତତ୍ତ୍ୱ ଜଣାଅଛି ମୋତେ । କିନ୍ତୁ ଏଇ ନାରୀବିଦ୍ୱେଷ କେଉଁଥିପାଇଁ ?

କେତେବେଳେ ମୋର ଖିଆଲ ହେଲା ଯେ ସିଷ୍ଟରଙ୍କ କଥା ସ୍ରୋତରେ ଠେଲି ହୋଇଯାଇ ମୁଁ ଗୋଟାଏ ମୌଳିକ ପ୍ରଶ୍ନ ପଚାରି ପାରିନାହିଁ କି ସେ ମୋତେ କହି ନାହାନ୍ତି ତାଙ୍କ ଆଡ଼ୁ, ଯେ ଷୋହଳ ନମ୍ବରର କ'ଣ ହୋଇଛି । ପଚାରିଲାରୁ ସେ ଆଶ୍ଚର୍ଯ୍ୟ ହେଲା ପରି ଅନେଇଲେ ମୋ ଆଡ଼କୁ ଏବଂ ପାଟିଟାକୁ ଆଁ କରିଦେଲେ । କହିଲେ—

"ଜାଣନ୍ତି ନାହିଁ ଆପଣ ? ତା'ର ଅଣ୍ଟାରୁ ପାଦଯାଏ ଶୂନ୍ । ପୂରାପୂରି ଶୂନ୍ କହିଲେ ଚଳେ । ଟଏଲେଟ୍‌କୁ ଧରାଧରିକା ନବା ଆଣିବା କରିବାକୁ ପଡ଼େ ।"

"ପାରାଲିସିସ୍ ?"

"ମୋଟାମୋଟି ସେଇଆ । ଡାଏବେଟିସ୍‌ରେ ଗୋଡ଼ର ମାଂସପେଶୀଗୁଡ଼ାକ ସିଁକୁଡ଼ି ଗଲାଣି । ଡାକ୍ତର ଅବଶ୍ୟ କହୁଛନ୍ତି ଯେ ଶକ୍ତି ଫେରି ଆସିବ···

ଡାକ୍ତର କହୁଛନ୍ତି ଶକ୍ତି ଫେରି ଆସିବ···

ସମୟ ଲାଗିବ ସିନା, ଫେରି ଆସିବ··· ।

ନିଶ୍ଚୟ ଆସିବ, ଅଲବତ୍ ଆସିବ, ମୋତେ ଠାକୁରେ ସପନେଇଥିଲେ ସତ !"

ନୂଆବୋଉଙ୍କ କଜଳ-ଲେସା ଆଖିରେ ମେଞ୍ଚାଏ ଲୁହ । କଓ, ଠାକୁରେ ସପନେଇଥିଲେ ଯଦି, ଏଇ ଲୁହର ଲହଡ଼ି କାହିଁକି ?

ଆନ୍ନା ମେଇଆ ବିଦାୟ ନେଇ ଗଲେଣି । ମୋର ପୁଅ ପାଖକୁ ଯିବା କଥା ଏଇକ୍ଷଣି । କିନ୍ତୁ···କିନ୍ତୁ···ତା' ବେଡ୍ ପାଖରେ ଅଛି ସେଇ ଲୋକଟା, ଯାହାର ଅଣ୍ଟାରୁ ପାଦ ଯାଏଁ ଶୂନ୍ । ଏବଂ ଶୂନ୍ ହୋଇ ରହିଥିବ ତା' ମଲାଯାଏଁ । ମୁଁ ଜାଣିଛି, ଭଲ ଭାବରେ ଜାଣିଛି । ଯାହାକୁ ଧରାଶାୟୀ କରିଗଲା, ସେ ରହିଲା ସେଇଠି । ଚିତ୍ ହୋଇ ଦାନ୍ତ ନିକୁଟି ପଡ଼ିଛି । ମୋତେ ଦେଖ, ମୋ ମନୋବୃତ୍ତିକୁ ଦେଖ, ମୁଁ ଏମିତି ସେମିତି ନୁହେଁ ବୋଲି ପାଟି କରୁଛି । ଲୁଚେଇ ଲୁଚେଇ କାନ୍ଦୁଥିବ ହୁଏତ । କିନ୍ତୁ କଏ ଶୁଣୁଛି ତା' ଗପ, ତାର ପ୍ରଥମ ଶ୍ରେଣୀରେ ପ୍ରଥମ ହେବାର ଇତିହାସ ?

ସତେକି ଅଣ ଗୁଡ଼ାଏ ବିଦ୍ୟାବୁଦ୍ଧି ପାଇଛି ବୋଲି ଏତେକଥା ! ଏଇ ହେଉଛି ତା'ର ଶାସ୍ତି !

ଓ୍ୱାର୍ଡ଼ ଭିତରକୁ ଫେରିଯିବା ପାଇଁ ଗୋଡ଼ ଚଳିଲା ନାହିଁ ମୋର । କାରଣ ସ୍ମୃତିକୁ ସହଜେ ନିକାଲି ଦେଇ ହେଲା ନାହିଁ । ଅକ୍ଷୟଭାଇର ମୁହଁ ଆହୁରି ପାଖେଇ ଆସିଲା । ତା'ର ସେଇ ଫିତା ନିଶ । ସରୁ କପାଳ । ଲମ୍ବା ନାକ । ଆଉ ଓଠରେ ବୁଦବୁଦିକା ହସ । ସତେକି ଅସୁମାରି ନୂଆ ଭାବ ନୂଆ ଭାବନା ସୃଷ୍ଟି ହେଉଛି ତା' ଭିତରେ । ସବୁତକ ଶୁଣେଇବାକୁ ବେଳ ନାହିଁ, କିନ୍ତୁ ତା'ର ସନ୍ଦେଶ

ହେଉଛି—ମୋତେ କେହି ଜାଣି ନାହାଁନ୍ତି କି ଜାଣିପାରିବେ ନାହିଁ । ମଲା ଯାଏଁ ପଡ଼ିଥିବି ଏମିତି, କିନ୍ତୁ ମୋ ବୁଦ୍ଧି ଚମକୁଥିବ ଆଗ ଭଳି । ଶୁଣିବୁ ଯଦି ଆ' । ତୋ ଭଲ ପାଇଁ କହୁଛି । ଶୁଣିବୁନି ମୋ ସାନଭଉଣୀ, ମୋ ପ୍ରିୟବନ୍ଧୁ ଅଜୟ ?

ଆରେ, ଏଇ ଷୋହଳ ନମ୍ବର ବେଡ଼୍‌ର ଭିଆଣ କରାଯାଇଛି ଖାସ୍ ତୋର ପାଇଁ ପରା···ଏତକ ବୁଝିପାରୁନୁ ? ନହେଲେ ତୁ ମୋତେ ଭୁଲିଯାଇ ନ ଥାଆନ୍ତୁ ? କେତେ ବର୍ଷ ତଳେ ତୋ ମୁହଁ ଦେଖେଇଥିଲୁ ମୋତେ ମନେ ଅଛି ? ଆଉ ସ୍ୱା' ଭିତରେ କେତେଥର ପୁରୀକୁ ଆସିଛୁ ହାଉଆ ଖାଇ, ତା'ର ହିସାବ ରଖିଛୁ ?··· କିନ୍ତୁ ସେ ହସୁଛି । ମୋଟେ ରାଗିଲା ପରି ଦିଶୁନାହିଁ । ସତେକି ଆହତ ହେଲେ ମଧ ବଡ଼ ଭାଇମାନେ ରାଗନ୍ତି ନାହିଁ । ରାଗିଲେ ରାଗିବ ସାନଭାଇ ଅଜୟ । ସବୁଥିରେ ସାନ, ଖାଲି ବୟସରେ ନୁହେଁ ।

ହଁ ହଁ, ତୁ ବଡ଼, ମୁଁ ସାନ । ମୁଁ ମାନୁଛି, ହଜାର ବାର ମାନୁଛି । କିନ୍ତୁ ମୋ ଦୋଷ ନୁହେଁ, ମୋତେ ବିଶ୍ୱାସ କର ।

ନିଜର ନିର୍ଦ୍ଦୋଷପଣିଆକୁ ସାବ୍ୟସ୍ତ କରିବା ପାଇଁ ମୁଁ ସ୍ଥିର କଲି ଯେ, ଯେ-କୌଣସିମତେ ମୁଁ ଷୋହଳ ନମ୍ବର ରୋଗୀ ପାଖକୁ ଯିବି, ଉପରେ ପଡ଼ି ତା' ସାଙ୍ଗରେ ଗପିବି, ଅର୍ଥାତ୍ ନାନା ସାମାଜିକ, ରାଜନୈତିକ ଓ ତାତ୍ତ୍ୱିକ ଆଲୋଚନା କରିବି । ଜଣାଇ ଦେବି କେହି ବୁଝନ୍ତୁ ନବୁଝନ୍ତୁ ଅଜୟ ପ୍ରଧାନ ବୁଝିଛି ଯେ, ଅସଲ ହେଉଛି ମଗଜ । ମାନସ ହଂସ । ଦେହର ତଳ ଅଧିକ ନଷ୍ଟ ହୋଇଗଲେ ଯାଉ, ମଣିଷ ସମ୍ମାନର ପାତ୍ର, ମର୍ଯ୍ୟାଦାର ଅଧିକାରୀ, ଯେ ପର୍ଯ୍ୟନ୍ତ ତା' ବୁଦ୍ଧି ସିଧାସଳଖ ଅନେଇ ପାରୁଛି ।

ଯିବି । ପୁଅ କାଲି ସକାଳେ ଉତ୍ସର୍ଗ ହୋଇଯିବ ଡାକ୍ତର କହୁଥିଲେ । ତା' ମାନେ ଆଜି ଦିନୁଟା ଭିତରେ ତା' ସାଙ୍ଗରେ ଗପ ଜମେଇବାକୁ ହେବ । ହୁଏତ ଏଇକ୍ଷଣି ଛତି କଅଣ ?

କିନ୍ତୁ ଦେଖିଲି ସେ ଶୋଇ ରହିଛି । ଏବଂ ତା' ମୁହଁରେ ଦାରୁଣ ବ୍ୟଥାର ଚିହ୍ନ । ନା, ତୁ ଅକ୍ଷୟ ଭାଇ ପରି ନୁହଁ । ଯେତେ କଷ୍ଟ ପାଇଲେ ମଧ ତା' ମୁହଁ ହସିଲା ଦେଖାଯାଏ । ସେଇଥିପାଇଁ ମୁଁ କେବେ ହେଲେ ଭାବି ନାହିଁ ଯେ, ସେ ଦୟାର ପାତ୍ର ଏବଂ ମୋର ତା' ପାଖକୁ ବାରମ୍ବାର ଯିବା ଦରକାର, ତାକୁ ଦମ୍ଭ ଦେବା ଦରକାର···

ମିଛ, ମିଛ ! ତୁ ମୋ ପାଖକୁ ଆସିବାକୁ ଚାହିଁଲୁ ନାହିଁ, କାଳେ ମୋର ପରାଭବ ଛୁଇଁବ ତୋତେ—ନୁହେଁ ? କାହିଁକିନା, ପିଲାଦିନୁ ଆମେ ଦି'ଜଣ ହାତ

ଧସ୍ତାଧସ୍ତ ହୋଇ ଗ୍ଭଲିଛୁ । ମାଟ୍ରିକ୍, ବି.ଏ , ଏମ୍.ଏ. ବାହାଘର, ପିଲାଝିଲା, ଗ୍ଭକିରି । ମୁଁ ଟିକିଏ ଆଗକୁ, ତୁ ଟିକିଏ ପଛରେ, ମୋର କିଛି ଅଧିକ, ତୋର କିଛି ଊଣା । କିନ୍ତୁ ମୋର ଶତ୍ରୁ ହୋଇ ପଡ଼ିବା ଯାଏଁ । ସେଇଠୁଁ ତୁ ଡରିଲୁ, କାଳେ ତୋର ବି ସେଇ ଦଶା ହେବ—ନୁହେଁ ? କହୁସାର ହସୁଛି ତା'ର ସେଇ ସବ୍‌ଜାନ୍ତା ହସ ।

ଓଃ, ଅକ୍ଷୟ ଭାଇ, ମୋତେ କ୍ଷମା କର୍, ମୁଁ ସେମିତି କିଛି ଭାବୁ ନ ଥିଲି ।

ଡ୍ୟାମ୍ ଇଟ୍ ! ମୁଁ ଡାକ୍ତରଖାନାକୁ ଆସିଛି ମୋ ପୁଅର ଭଲମନ୍ଦ ବୁଝିବା ପାଇଁ । ଷୋହଳ ନମ୍ବର କି ଅକ୍ଷୟ ଭାଇକୁ ନେଇ ମୁଣ୍ଡ ଖରାପ କରିବାର କୌଣସି ଅର୍ଥ ନାହିଁ । ତା'ଛଡ଼ା ମୁଁ କୋଉ ବୁଦ୍ଧିରେ ସ୍ୟାଙ୍କୁ ଯୋଡ଼ୁଛି ତା' ସାଙ୍ଗରେ ? ଦୁ'ଜଣଯାକ ଧରାଶାୟୀ, ଦେହର ଅଧାଅଧି କି ବେଶି ଭାଗ ବେକାର, ତା' ବୋଲି କ'ଣ ସେମାନେ ସମାନ ହୋଇଗଲେ ?

ଏହି ଭାବରେ ମୁଁ ସେଦିନର ପୂର୍ବାହ୍ଣକୁ ନଷ୍ଟ ହେବାକୁ ଦେଲି ନାହିଁ । ଯଦିଓ ମୋ ମନରେ ଥାଏ ଯେ, ଅପରାହ୍ଣରେ ଷୋହଳ ନମ୍ବର ସାଙ୍ଗରେ କଥାଭାଷା ହେବ । ଗୋଟାଏ ଉତ୍ତମ ଆବେଗ ଆସିଛି ଯେତେବେଳେ ମୋ ମନ ଭିତରେ, ତାର ଅବହେଳା କରିବାର ନୁହେଁ ।

କିନ୍ତୁ ଦୁଃଖର ବିଷୟ ଯେ, ପୂର୍ବାହ୍ଣରୁ ଅପରାହ୍ଣ ଅନେକ ବାଟ । ସେଇ ସୁଯୋଗରେ ଡାକ୍ତରଖାନାରୁ ଘର, ଘରୁ ଅଫିସ୍, ଅଫିସ୍‌ରୁ ମାର୍କେଟ ଇତ୍ୟାଦି ଇତ୍ୟାଦି ଦିନର ସମସ୍ତ କାର୍ଯ୍ୟକ୍ରମ ଭିତରେ ଅକ୍ଷୟ ଭାଇ ମୋର ବାଟ ଓଗାଳୁଥାଏ । ଏବଂ ହସୁଥାଏ ମୋତେ ଛୁଗୁଲେଇଲା ପରି, ସତେକି ମୁହିଁ ପରାହତ, ଦୟାର ପାତ୍ର ।

ଏଣୁକରି ମୁଁ ମୂଳରୁ ଶେଷ ଯାଏ ଚିନ୍ତାଦିନ୍ଦୁ ତା'ର ଚତ୍ ହୋଇ ପଡ଼ିବା ଯାଏଁ, ଏଇ ଅକ୍ଷୟ-ଅଜୟ ଇତିହାସ ମନେ ପକାଇବାକୁ ବାଧ୍ୟ ହେଲି । ଏବଂ ଯଥାଶୀଘ୍ର ମୁକ୍ତ ପାଇବା ପାଇଁ ତା' କଥାରେ ହଁ ଭରିଲି । ହଁ, ହଁ, ହଁ, ଆମେ ଏକାଠି ଥିଲୁ, ଏକା ଭଳି ଥିଲୁ, ତୁ ଟିକିଏ ବଡ଼, ମୁଁ ଟିକିଏ ସାନ । ଆମେ ସାଧାରଣ ସଂସାରରୁ ଅଲଗା ଥିଲୁ, ସମସ୍ତେ ଆମକୁ "ପାଠୁଆ ଯୋଡ଼ି" ବୋଲି ଚିଡ଼ଉଥିଲେ । କିନ୍ତୁ ଆମେ ଆମ ସାରସ୍ୱତ ତଥା ଚଗଲା ସଂସାରରେ ମସ୍ତ ଥିଲୁ । ଯଥା :

—ଅନ୍ୟମାନେ ଖେଳ ପଡ଼ିଆରେ ଗୋଟାଏ ଚମଡ଼ା ବଲ୍‌କୁ ମିଛୁଟାରେ ଏପାଖରୁ ସେପାଖକୁ ଠେଲାଲବେଳେ ଆମେ ସ୍କୁଲ୍ ଲାଇବ୍ରେରୀର ଗ୍ଭତ ଉପରକୁ ଉଠିଯାଇ ସୂର୍ଯ୍ୟାସ୍ତ ଦେଖୁଥିଲୁ, ମୂଳରୁ ଶେଷ ଯାଏଁ । ଏକୁଟିଆ । ମାନେ

ଦ୍ୱ'ଜଣିଆ—ଏକୁଟିଆ । ପରସ୍ପର ସାଙ୍ଗରେ କଥାଭାଷା ହେଉ ନଥିଲୁ । କିନ୍ତୁ ମୁଁ ତାର ଅନୁଭବକୁ ଛୁଇଁପାରୁଥିଲି, ଆଉ ସେ ମୋତେ ଛୁଉଁଥିଲା ବୋଲି ଧାରଣା । ନ ହେଲେ କି ଆମେ ଯୁଗ୍ମ ଏବଂ ଯୁଗପତ୍ ଆନନ୍ଦରେ "ଆଃ !" ଟିଏ କହି ଉପମା ଯଗ୍‌ଯଚ ହେଉଥାଆନ୍ତୁ ? ବେଳେ ବେଳେ ଫାଜିଲ୍ ଉପମା । ଇଏ କିମିତି ଦେଖା-ଯାଉଛି ଜାଣିଛୁ ? ଘିଅ କଡ଼େଇରେ ଯେମିତି ଖଣ୍ଡି ଖଣ୍ଡିକା ଛେନା ଭାସୁଥାଏ, ପାଚ ଆସୁଥାଏ, କ୍ଷଣକରେ ଥାଳିରେ ଅଜାଡ଼ି ଦେଇ ହେବ, ଏବଂ ବେଳେ ବେଳେ ଗମ୍ଭୀର ଉପଲବ୍ଧିର ଉପମା । ବଉଦଶୂନ୍ୟ ନୀଳ ଆକାଶରେ ଲାଲ୍ ଝକମକ ସୂର୍ଯ୍ୟ, ବୁଡ଼ି ଯାଉଛି ତଳକୁ, ଆହୁରି ତଳକୁ । ଏବଂ ମନେ ହେଉଛି ସେଇ ଲାଲ୍ ପେଣ୍ଡୁଲା ଭିତରେ (ଅନିମେଷ ନୟନରେ ଅନେଇ ପାରିଲେ ହେଲା) କେତେ ଭାବ ତରଳି ଯାଉଛି, ପୁଣି ବାନ୍ଧି ଆସୁଛି ବୁନ୍ଦାଏ ପୂର୍ବରୁ କିଛି ଗୋଟାଏ ବନ୍ଦିଯିବାପାଇଁ । ମୁଁ ଯେ ସବୁବେଳେ ହାଲୁକା ଉପମା ଦେଇଥିଲି ଓ ସେ ଓଜନିଆ ଭାଗବତ ଉପମା ଦେଉଥିଲା, ତା ନୁହେଁ । କିନ୍ତୁ ମୋତେ ମାନିବାକୁ ପଡ଼ୁଛି ଯେ, ସାଧାରଣତଃ ତା'ର ଉପମା ଥିଲା ଅଧିକ ବିସ୍ମୟକର ଓ ଚମକପ୍ରଦ । ସତେ କି ମା'ଆ ସରସ୍ୱତୀ ଆମ ଦ୍ୱ'ଜଣଙ୍କୁ ଉସ୍କେଇଲେ ସିନା, ପ୍ରସାଦ ତୋଳି ଦେଲେ ତା'ରି ହାତକୁ । ସେତେବେଳେ ମୋର ଇଚ୍ଛା ହୁଏ ମୁଁ ଅକ୍ଷୟସ୍ୱାଇକୁ କୁଣ୍ଢେଇ ପକେଇବି, ଯେମିତିକି ମୁଁ ତା'ଠାରୁ କିଛି ପାଇବି, ପ୍ରସାଦରୁ ଟିକିଏ ଶେୟର କରି ନେବି, ଯେଉଁଥିରେ ମୋର ଅଭାବ ଘୁଞ୍ଚିଯିବ ।

—କଲେଜ୍‌ରେ ପଢ଼ିଲାବେଳେ ଆମେ ବି ଝିଅମାନଙ୍କୁ ଅନଉଥିଲୁ । ହେଲେ ଦୂରରେ ଥାଇ । ସିଟି ମାରୁ ନ ଥିଲୁ । ଅଶ୍ଳୀଳ ଇଙ୍ଗିତ କରୁ ନଥିଲୁ । କିନ୍ତୁ ତାଙ୍କୁ ଗୋଡ଼ରୁ ମୁଣ୍ଡଯାଏଁ ଅନେଇବାରେ ତ୍ରୁଟି କରୁ ନଥିଲୁ । ଏବଂ ତାଙ୍କ ନୟନ ଦଶନ ସ୍ତନ ଜଘନ ଆଦି କୌଣସି ଅଂଶକୁ ପ୍ରସିଦ୍ଧ କବିମାନଙ୍କର ବଜ୍ରୁ ବଜ୍ରୁ ଉପମାରୁ ବାଦ୍ ଦେଇପାରୁ ନଥିଲୁ । କିନ୍ତୁ ଏଠି ମଧ୍ୟ ଅକ୍ଷୟସ୍ୱାଇଁ ମୋଠୁଁ ବଳି ପଡ଼ିଲା । ଥରେ କାମୁକତାରେ ଏକ ଅଜବ ଦାର୍ଶନିକତା ଯୋଡ଼ି ଦେଇ ପାରିଲା । କହିଲା, "ବୁଝିଲୁ ଅଜୟ, ନିର୍ଦ୍ଦିଷ୍ଟ ଅଙ୍ଗର ମାଧ୍ୟମରେ ଅନଙ୍ଗ ଓରଫ୍ ଅଦେହ, ହୁଏତ ଆତ୍ମାର ଅନୁମାନ ନକରି ପାରିଲେ ଆମେ ଚିରଦିନ ଭକୁଆ ହୋଇ ରହିଯିବା । ମନୋମିତ ପଥରରେ ସିନ୍ଦୂର ଲଗେଇ ଭକ୍ତି କରିବା ଯାହା, ପ୍ରଣୟିନୀର ସୁନିର୍ବାଚିତ ଅଙ୍ଗକୁ ଏଇ ମୋର ଭଲପାଇବାର ବିଗ୍ରହ ବୋଲି ଆବୁରି ବସିବା ସେଇଆ । ହେଉ ପଛେ ସେ ତା'ର ଚେପ୍‌ଟା ନାକ, ଗାଲରେ ଟିପଚିହ୍ନ, ପୋଇଗୁଲିଆ ସ୍ତନାଗ୍ର କି ଆଉ କଅଣ···କିଛି ଗୋଟାଏ ବାଛିନିଅ, ଯାହାର ସାହାଯ୍ୟରେ ତୁମେ ତୁମର ସତ୍ତା ହଜେଇ ଦେଇ ପାରିବ, ଆଖି ବୁଜିଦେଇ ଊର୍ଦ୍ଧ୍ୱକୁ, ଅତି-ଅନୁଭବର ସ୍ୱର୍ଗକୁ ଛୁଇଁ ପାରିବ । ସେକ୍‌ସ ନୁହେଁ, ତୁଚ୍ଛା ସେକ୍‌ସ ନୁହେଁ, କାହିଁକି ନା ସେଥିରେ ବୈଶିଷ୍ଟ୍ୟ ନାହିଁ, ଅନ୍ଧାରରେ

ଖାଇଲେ ଗୁଡ଼, ଆଳୁଅରେ ଖାଇଲେ ଗୁଡ—କଅଣ ବୁଝିଲୁ ନା ମୁଁ କ'ଣ କହୁଛୁ ?" ମୁଁ କିଛୁ ବୁଝିଲି ନାହିଁ ଏବଂ ସେତିକବେଳେ ମୋ ମନରେ ପାପ ଛୁଇଁଥିଲି ଯେ, ଏଇ ଲୋକଟା ଶାନ୍ତି ପାଇବ । ତା'ର ଏଇ ଅତିବୁଦ୍ଧିର ଅହମିକାକୁ କୋଉ ବିଧାତା ସହି ପାରିବ ନାହିଁ ।

କଲେଜ ହତାରେ ବୁଲୁଥିବା କୁକୁର ବିଲେଇଙ୍କ ଗଣତନ୍ତ୍ରଠାରୁ ଆରମ୍ଭ କରି ସୁଦୂର ଇଟାଲିରେ ଚାଲିଥିବା ନିର୍ବାଚନ, ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ ମାଡ଼ୁଆ ଛଙ୍ଗର ଚମତ୍କାରିତା, ତଥା ନେତା ବିଶେଷଙ୍କ ମହାନୁଭବ ସ୍ୱାର୍ଥପରତା—କେଉଁଠୁ କେଉଁ-ଯାଏଁ ଆମେ ଗପିଯାଉ, ତା'ର ଠିକଣା ନଥାଏ । ଏବଂ ପ୍ରତ୍ୟେକ କଥାବସ୍ତୁରେ ଅକ୍ଷୟ ଭାଇ ତା'ର ଅତି ବୁଦ୍ଧିର ନଜର୍ ଗ୍ରୁଡ଼ଯାଏ ମୋ ପାଇଁ । ଗୋଟାଏ ଅଭିନବ ଉପମା, କେଉଁ ପଙ୍କରୁ ଉଙ୍କି ମାରୁଥିବା ପଦ୍ମ, କେଉଁ ପଦ୍ମର ଅନ୍ତଃସ୍ଥଳକୁ ଖୋଳିଉ-ଥିବା କୀଟ, କେଉଁ ଉଚ୍ଛନ୍ନ ଭଗବାନ୍, କେଉଁ ବିରସ ସଇତାନ୍...ସତେକି ଆମ ଦେବଦତ୍ତ ବୁଦ୍ଧିର କାମ ହେଲା ନିତ୍ୟ ନୂତନ ଏବଂ ଉଦ୍ଭଟ ଆବିଷ୍କାର, ସେଇ ହେଲା ତା'ର ସାର୍ଥକତା ।

ଥରେ ସେ ମୋତେ କହିଲା—"ବୁଝିଲୁ ଅଜୟ, ମୋ ଜୀବନରେ ଯେଉଁ ଦୁଃଖ ଆସିବ, ନ ଆସିବାର କୌଣସି କାରଣ ନାହିଁ, ତା'କୁ ବି' ମୁଁ ଚଢ଼େଇ ପାରିବି, ଛୁଗୁଲେଇ ପାରିବି, ଏବଂ ହସି ଉଡ଼େଇ ଦେଇ ପାରିବି । କିନ୍ତୁ..."

"କିନ୍ତୁ କଅଣ ?" ମୁଁ ପଚାରିଲି ।

"ତୁ ମୋ ପାଖରେ ଥିବା ଦରକାର, ତୁ କେବଳ ବୁଝିବୁ ତା'ର ମର୍ଯ୍ୟାଦା । ଅକ୍ଷୟ-ଅଜୟ ଦୁଇଟି ଭାଇ, ଖେଳ ଖେଳୁଛନ୍ତି ଜୀବନ ନେଇ..."

ସେଇଠୁଁ ସେ ହସିଲା ଠୋ' ଠୋ' ହୋଇ ଏବଂ ମୁଁ ଏଥର ସତସତିକା ତା'କୁ କୁଣ୍ଢେଇ ପକେଇଲି । ଏବଂ ମୋ ଗ୍ରୁଡିକୁ ପିଟି ଚାଲିଥିବା ଏକ ଅମାନିଆ ଦମ୍‌ଦମ୍‌କୁ ଆପୁଡ଼େଇଲି । ପାରିବୁ ତ ? ତୁଳେଇ ପାରିବୁ ଏଇ କୋଳାକୋଳିର ଅଙ୍ଗୀକାର ?

ଆଃ ! କିଏ ଜାଣିଥିଲା ସେ ମୋତେ ଏମିତି ଦଗା ଦେବ ବୋଲି ?

ଭଲରେ ଭଲରେ ଆମେ ଏକାଠି ପାସ୍ କରିଗଲୁ, ମାଟ୍ରିକ୍, ବି.ଏ., ଏମ୍.ଏ । ସେ ଫାଷ୍ଟକ୍ଲାସକୁ ମୁଁ ବି ଫାଷ୍ଟକ୍ଲାସ୍, କିନ୍ତୁ ସେ ଟିକିଏ ଉପରକୁ, ମୁଁ ଟିକିଏ ତଳକୁ । ଥରେ ଅଧେ ମୋତେ ଅବଶ୍ୟ ବିରକ୍ତ ଲାଗୁଥିଲା, ବିଧାତାଙ୍କ ଉପରେ ରାଗିବାକୁ ଇଚ୍ଛା ହେଉଥିଲା—କଅଣ ଲେଖା ହୋଇଛି ଯେ, ସେ ସବୁବେଳେ ଟିକିଏ ଉପରେ ଥିବ,

ଆଉ ମୁଁ ଟିକିଏ ଉଳେ ? ଅତେ ହେଲେ କ'ଣ ଏଇ ନିସ୍ତ୍ୱମର ବର୍ଦ୍ଧିତ ହେବ ନାହିଁ ? କିନ୍ତୁ ତା'କୁ ଈର୍ଷା କୁହାଯିବା ଅନୁଚିତ । ଗୋଟାଏ ନିରବଚ୍ଛିନ୍ନ ବୈଚିତ୍ର୍ୟର ସମତାରେ ବୋର୍ ହୋଇଯିବ ନାହିଁ ମଣିଷ ?

ଯଥାସମୟରେ ଏବଂ ପାଖାପାଖି ହୋଇ ଆମେ ବାହା ହୋଇ ପଡ଼ିଲୁ । ପ୍ରାୟ ଏକା ଧରଣର ସ୍ତ୍ରୀ ପାଇଲୁ । ତା' ସ୍ତ୍ରୀ ଟିକିଏ ଅଧିକ ସୁନ୍ଦର ଏବଂ ମୋ ସ୍ତ୍ରୀ··· ଏଭଳି ବକ୍ତବ୍ୟ ଏଠି ଚଳିବ ନାହିଁ ଅବଶ୍ୟ । କିନ୍ତୁ ଗୋଟିଏ କାରଣରୁ ମୋତେ ଯେତିକି ହସ ଲାଗିଲା, ସେତିକି ଚଟ ମାଡ଼ିଲା । ମନେ ହେଲା ଯେ, ଠାକୁରେ ଅକ୍ଷରେ ଅକ୍ଷରେ ତା'ର ମନୋବାଞ୍ଛା ପୂରଣ କରିବାକୁ ଚାହାଁନ୍ତି । କାହିଁକିନା ସତୀ ନୂଆବୋଉ ମୋଟାମୋଟି ସୁନ୍ଦର ହେଲେ ମଧ୍ୟ ଥିଲେ ଚେପ୍‌ଟାନାକୀ ! ପତ୍ନୀ-ପ୍ରଣୟିନୀର ସୁନିର୍ବାଚିତ ଅଙ୍ଗଟିଏ ରେଡିମେଡ଼୍ ହୋଇ ଆସିଛି ଆମ ବନ୍ଧୁ ପାଇଁ, ଯେମିତିକି ତା'କୁ ଆଶ୍ରା କରି ଆଖି ବୁଜିବାରେ, ଊର୍ଦ୍ଧ୍ୱକୁ ଉଠିବାରେ, ଆଦୌ ଅସୁବିଧା ହେବ ନାହିଁ ତା'ର ! ସେ ଯାହା ହେଉ, ସେ ତା'ର ସ୍ତ୍ରୀକୁ ଅତି ଭଲ ପାଉଥିଲା, ଏଥିରେ ସନ୍ଦେହ ନାହିଁ । ଦୁଃଖର ବିଷୟ ଯେ, ମୋ ସ୍ତ୍ରୀ ସୁମତି ସତୀ ନୂଆବୋଉଙ୍କୁ କ୍ଷମା କରି ପାରିଲା ନାହିଁ । ଛାଡ଼, ସେ କଥା ପରେ ··

ଯଥାକ୍ରମେ ସେ ଅନ୍ୟତମ ଅଗ୍ରଗଣ୍ୟ କଲେଜର ଅଧ୍ୟାପକ ହେଲା, ମୁଁ ହେଲି ଡେପୁଟି ମାଜିଷ୍ଟ୍ରେଟ୍ । ଏବଂ ମୋର ମନେ ହେଲା ଯେ, ଏଥର ବି ସେ ଦୁ' ଖୋଜ ଆଗେଇଗଲା ମୋଠୁଁ ।

ପ୍ରାୟ ଏକା ସମୟରେ ମୋର ସୁନାନାକୀ ଝିଅଟିଏ ହେଲା, ଆଉ ତା'ର ଗୋଟିଏ ସୁସ୍ଥସବଳ ପୁଅ ।

ସେଇଠୁଁ ହଠାତ୍ ଦିନେ ମୁଁ ଶୁଣିବାକୁ ପାଇଲି ଯେ, ଅକ୍ଷୟ ଭାଇ ଶକ୍ତ ବେମାର ହୋଇ ଡାକ୍ତରଖାନାରେ ପଡ଼ିଛି । ମୁଁ ଅବିଳମ୍ବେ ତା' ପାଖକୁ ଗଲି, ଘଣ୍ଟା ଘଣ୍ଟା ଧରି ତା' ପାଖରେ ବସି ରହିଲି । ଆମର ତଥାକଥିତ ବାକ୍‌ବିତଣ୍ଡାରେ ସତୀ ନୂଆବୋଉ ବି ତାଙ୍କ ଲୁହ ଭିତରେ ହସି ଉଠିବାକୁ ବାଧ୍ୟ ହେଲେ ।

କିନ୍ତୁ ସମୟ ଆସିଲା ଯେ, ଉଦ୍‌ବିଗ୍ନତାର ଗୁରୁତ୍ୱକୁ କଥାରେ କି ହସରେ କାଟି ଦେଇ ହେଲା ନାହିଁ । ସେତେବେଳକୁ ଅକ୍ଷୟଭାଇର ଡାକ୍ତରଖାନାରେ ପଡ଼ି ରହିବାର ବର୍ଷେ ଉପରେ ହୋଇଗଲାଣି । ସତୀ ନୂଆବୋଉଙ୍କ ଲୁହଧାରକୁ ଆଉ ବନ୍ଦ କରି ହେଲା ନାହିଁ । ହେଲେ ସେ ଲୁହକୁ ପୋଛି ପୋଛି କହି ଚାଲିଥାଆନ୍ତି—

ଡାକ୍ତର କହୁଛନ୍ତି, ଶକ୍ତ ଫେରି ଆସିବ···

ହମସ୍ୟ ଲଗିବ ସିନା, ଫେର ଆସିବ···

ନିଶ୍ଚୟ ଆସିବ, ଅଲବତ୍ ଆସିବ, ମୋତେ ଠାକୁରେ ସପନେଇଥିଲେ ପରା !

ଏଣେ ମୁଁ ଡାକ୍ତରଙ୍କଠାରୁ ଯାହା ବୁଝିଥିଲି, ତା'ର ତାତ୍ପର୍ଯ୍ୟ ଭିନ୍ନ । ଯେ ତା' ହାଡ଼ ଭିତରେ ଯକ୍ଷ୍ମାର ବୀଜାଣୁ ଘର କରି ସାରଲେଣି, ତାଙ୍କୁ ସେଠୁଁ କାଢ଼ି ଦେଇ ହେବ ଏଭଳି ଆଶା ପୋଷଣ କରିବା ବୃଥା । ଅତଏବ ଅକ୍ଷୟ ମହାପାତ୍ର କେତେ ଦିନ ଅକର୍ମଣ୍ୟ ହୋଇ ପଡ଼ିରହିବ ବିଛଣାରେ, କହି ହେଉ ନାହିଁ··· ହୁଏତ ସବୁଦିନ ପାଇଁ ।

ଅକ୍ଷୟ ଭାଇ ତା' ବୁଦ୍ଧିର ଆଲୋକ ସାହାଯ୍ୟରେ ଅନୁମାନ କରି ସାରଥିଲା ଯେ, ଏହିଭଳି କିଛି ଗୋଟାଏ ଘଟିବ । ତେଣୁ ସତୀ ନୂଆବୋଉ ଆଶାର ସଳିତାକୁ ତେଜିଲା ବେଳେ ସେ କେବଳ ହସୁଥାଏ । ଥରେ କହିଲା ଯେ, ହଁ, ଅବଶ୍ୟ ଫେରି ଆସିବ, ଶକ୍ତିର କ୍ଷୟ ନାହିଁ, କିନ୍ତୁ କେଉଁବାଟେ ଏବଂ କାହା ପାଇଁ ଆସିବ, କହି ହେଉ ନାହିଁ ।

ଅକ୍ଷୟ ଭାଇ ଚିତ୍ ହୋଇ ଶୋଇଗଲା । ଶୋଇ ରହିଛି ଆଜିଯାଏଁ ।

କହିବା ବାହୁଲ୍ୟ ଯେ, ସେ ଆଉ ମୋ ସାଙ୍ଗରେ ତାଳ ଦେଇ ପାରିଲା ନାହିଁ, ମୋତେ ଟପିଯିବା ଦୂରର କଥା । ମୁଁ ଉଠିଲି ଉପରକୁ ଆହୁରି ଉପରକୁ । ଆଇ. ଏ. ଏସ୍ କୁ ପ୍ରମୋସନ ପାଇଲି । ଆଉ ଗୋଟିଏ ପୁଅ ଏବଂ ଝିଅଙ୍କର ବାପ ହେଲି । ଏକ କେନ୍ଦ୍ରୀୟ ସରକାରୀ ନିଗମରେ ଯୋଗ ଦେଇ ଓଡ଼ିଶା ଛାଡ଼ିଲି ଏବଂ ମଝିରେ ମଝିରେ କବିତା ଲେଖିଲି, ଯାହା ପୂର୍ବରୁ କେବେ ଲେଖିବାପାଇଁ ସାହସ ହେଉ-ନଥିଲା । କିନ୍ତୁ ବେଳେ ବେଳେ ମନେପଡ଼େ ଏବଂ ଗ୍ରୀଷ୍ମରେ ଛନକା ପଶେ (ବିଶେଷତଃ ସୁଖରେ, ଦାମ୍ପତ୍ୟ ସୁଖରେ ନିଆଁ ଲଗିଲା ପରି) ଯେ ମୋର ପରମ ବନ୍ଧୁ, ଭାଇଲେଖା ବନ୍ଧୁ, ପଡ଼ି ରହିଛି ସେମିତି । ଡାକ୍ତରଖାନାରୁ ଖଲାସ ହେଲା ପରେ ପୁରୀରେ ଗୋଟାଏ ଘରଭଡ଼ା ନେଇ, ଗୋଡ଼କୁ ଟେକ ଛାତକୁ ଅନେଇ ଶୋଇ ରହିଛି । ଖାଲି ଭାବୁଛି, ଭାବ ଗୁଳୁଛି, ଯେତେକ ମହାମନୋହର ଭାବନା । ଏକୁଟିଆ । ହେଲେ ମୁଁ ନିଜକୁ ଆଶ୍ୱାସନା ଦିଏ ଯେ, ତଥାପି ସେ ହସୁଥିବ ମୁରୁକି ମୁରୁକି,—ହସୁ ନଥିବ ? ସେଇ ପରା ତା'ର ବିଶେଷତ୍ୱ ? ଅଦ୍ୱିତୀୟ ବ୍ୟକ୍ତିତ୍ୱ ?

ସହଜେ ଗୁଜର ଖଣ୍ଡିକ ଗଲା । କିନ୍ତୁ ସ୍ତ୍ରୀ ପିଲା ଚଳିବେ କେମିତି ? ଅଗତ୍ୟା ସତୀ ନୂଆବୋଉ ପୁଅକୁ ନେଇ ଗାଆଁରେ ରହିଲେ ପୈତୃକ ଜମିବାଡ଼ ବୁଝିବାପାଇଁ । ପୁରୀରେ ସ୍ୱାମୀଙ୍କ ସେବାପାଇଁ ଲୋକ ଖଞ୍ଜି ଦିଆଗଲା । ସେବାକାରୀ ପୂଜକ, ଯେ ତା'

ଧର୍ମଶାସ୍ତ୍ରୀ ମାଲିକର ଦେହକୁ ସଫା ରଖିବ । ମାଲିକର ମନୋବୃତ୍ତି ସାଙ୍ଗରେ କିଛି କାରବାର ନାହିଁ ତା'ର ।

ସେ କ'ଣ ଏକୁଟିଆରେ କାନ୍ଦୁ ନଥିବ ବେଳେ ବେଳେ ? ଟ୍ରାଜେଡ଼ି କ'ଣ ଏଭଳି ଏକ ମହାନ୍ ବସ୍ତୁ ଯେ, ତା'ର ଅନୁଭବରେ ମଣିଷ ଦେବତା ପାଲଟିଯାଏ ? ବାଜେ କଥା ! ଥରେ ଅଧେ ମୋର ମନ ହୁଏ, ମୁଁ ଚୁପ୍‌ଚାପ୍ ତା' ପୁରୀ ଘରର ବାଡ଼ିବାଟେ ଯାଇ ଝରକା ଫାଙ୍କ ଦେଇ ଅନେଇବି ତାକୁ । ଦେଖିବି ସେ କେଉଁ ସ୍ୱର୍ଗରେ ଅଛି । କିନ୍ତୁ ମୁଁ ସେଭଳି ଖିଆଲକୁ ଆଦୌ ପ୍ରଶ୍ରୟ ଦେଇନାହିଁ । ମୁଁ ଗଲେ ସିଧା ଦାଣ୍ଡବାଟେ । ତା' ପାଖରେ ଯାଇଁ ବସିବି ଏବଂ ଆମେ ପୂର୍ବପର ଜ୍ଞାନବୁଦ୍ଧି (ହୁଏତ ଆତ୍ମାର) ଖେଳରେ ମାତିଯିବୁ । ଯେପରିକି ତା'ର କୌଣସି ସନ୍ଦେହ ରହିବନାହିଁ ଯେ, ଉତ୍ତମାଙ୍ଗ ହେଲା ମସ୍ତିଷ୍କ ଏବଂ ତା'ର ସେତିକି ଅଭୁଟ ଅଛି । ତାକୁ ହିଁ ନେଇ ସେ କେତେ କାମ କରିଯିବ ବିଶ୍ୱ ପାଇଁ, କଳା ପାଇଁ, ସଂସ୍କୃତି ପାଇଁ । ମନେ ମନେ କେତେ ଫୁଲ ଫୁଟେଇବ । ମନେ ମନେ କେତେ ନାଗଙ୍କ ସାଙ୍ଗରେ···। ମନେ ମନେ ।

ଅକ୍ଷୟ ଭାଇ, ମୋତେ ବିଶ୍ୱାସ କର ଯେ, ଓଡ଼ିଶାରୁ ଦୂରେଇ ଗଲା ପରେ ମୋତେ ଯଥେଷ୍ଟ ସୁବିଧା ମିଳିନାହିଁ ତୋ ପାଖରେ ଯାଇ ବସିବାକୁ । ହଁ, ଛୁଟିରେ ଓଡ଼ିଶାକୁ ଗଲାବେଳେ ମୁଁ ପ୍ରାୟ ପୁରୀକୁ ଯାଏ ଜ୍ୟୋତିନନ୍ଦନ ପାଇଁ । କିନ୍ତୁ ମୋର ବହୁତ କାମ ଥାଏ । ସରକାରୀ ତଥା ବେସରକାରୀ । ଏବଂ ସନ୍ଧ୍ୟାବେଳେ ସମୁଦ୍ର କୂଳରେ କିଛି ସମୟ ପାଇଁ ଶାନ୍ତ ଲୋଡ଼ିବାର କାମ । ପତ୍ନୀ ସୁମିତ୍ରା ସାଙ୍ଗରେ ଥିଲେ ମଧ୍ୟ ସେ ବି ବୁଝେ ଯେ, ବର୍ଷସାରା କର୍ମକ୍ଷେତ୍ରରେ ଲଢ଼େଇ କଲା ପରେ ଏଇ ଶାନ୍ତିଟିକକ କେତେ ଦୂର ଆବଶ୍ୟକ ମୋ ପାଇଁ । ତେଣୁ ସ୍ୱଭାବମୁଖରୀର ପାଟିରୁ କଥା ବାହାରେ ନାହିଁ କିଛି ସମୟ ପାଇଁ । ତୋର ତ ଏତେ ବୁଦ୍ଧି, ତୁ କ'ଣ ବୁଝିବୁନାହିଁ ମୋର ଏଇ ଶାନ୍ତିକାମନାର ତତ୍ତ୍ୱ ? ତା'ର ଯଥାର୍ଥତା ?

ହଁ, ଏଇ ପତ୍ନୀ କଥାରୁ ମନେ ପଡ଼ିଲା । ତୁ ନିଶ୍ଚୟ ଅନୁମାନ କରି ପାରିଥିବୁ ଯେ, ଆଜି ଯିଏ ଯାହା ଭାବୁ ପଛକେ ମୁଁ ସଙ୍ଗିନୀଅପାବୋଉଙ୍କୁ ମୋଟେ ଦୋଷ ଦେଇ ନାହିଁ । ଲୋକେ କୁହନ୍ତି ଯେ, ତାଙ୍କ ଆତ୍ମହତ୍ୟା ପଛରେ ଗୋଟାଏ 'ଘଟଣା' ଅଛି । ମନ୍ତ୍ର ତନ୍ତ୍ର ଦେଇ ତାଙ୍କ ସ୍ୱାମୀଙ୍କୁ ସୁସ୍ଥ କରିବା ପାଇଁ ଆଗେଇ ଆସିଥିବା ଜଣେ ସାଧୁବାବାଙ୍କ ସାଙ୍ଗରେ ଲଟପଟ ହେବାର, ତହୁଁ ପାପଗର୍ଭ ହେବାର ଗ୍ଲାନି । ହେଲା ଏବେ ସେଇଆ । ତୁ କ'ଣ ବୁଝି ନଥିବୁ, ଯେ ସାଧାରଣ ମଣିଷ ତା' ଦେହର ଭୋକକୁ ସମ୍ଭାଳି ପାରେ ନାହିଁ ? ଏବଂ ତୋର ଚେତ୍‌ନାକାମୀ ପତ୍ନୀ ସେଥିରୁ ବାଦ୍ ଯାଇ ପାରିଲା ନାହିଁ ? ଆମର ବୌଦ୍ଧିକତା

କୋଉ କାମକୁ, ଯଦି ଆମେ ତା'କୁ କ୍ଷମା କରିବା ପାଇଁ କୁଣ୍ଠା କୁଣ୍ଠା ହେବା ?

ଅବଶ୍ୟ ତାଙ୍କର ଆତ୍ମହତ୍ୟା କରିବା ଉଚିତ ନଥିଲା । ମୁଁ ଓଡ଼ିଶାରେ ଥିଲେ କଥାଟା ଏତେଦୂର ଯାଇ ନଥାଆନ୍ତା । ଛାଡ଼—

ମୁଁ ତାଙ୍କ ପାଖକୁ, ଯଥାବିଧି ତୋ ପାଖକୁ ମଧ୍ୟ ଯାଇପାରିଲି ନାହିଁ ସିନା, ତୁ ନିଶ୍ଚୟ ଜାଣିଥିବୁ ଯେ, ମୁଁ ତୋର ଚିକିତ୍ସା ଏବଂ ତୋ ପୁଅ ମହାନନ୍ଦର କଲେଜ ପଢ଼ା ପାଇଁ କମ୍ ଆର୍ଥିକ ସାହାଯ୍ୟ କରି ନାହିଁ । ମୁଁ କିଛି ବଢ଼େଇ କରୁନାହିଁ ସେଥିପାଇଁ । ମୋର ସନ୍ଦେହ ନାହିଁ ଯେ, ସେଇଭଳି ପରିସ୍ଥିତିରେ ତୁ ବି ମୋତେ ସାହାଯ୍ୟ କରିଥାଆନ୍ତୁ । ତୁ ଏମିତି ହେମିତି ଭାଇ ନଥିଲୁ ମୋର !

ଆଚ୍ଛା, ମହାନନ୍ଦ କ'ଣ କଲେଜ ଛୁଟିରେ ଆସି ଘଣ୍ଟା ଘଣ୍ଟା ଧରି ବସିରହୁ ନଥିବ ତୋ ପାଖରେ ? ଆଉ ତମ ବାପପୁଅଙ୍କ ଭିତରେ ଚାଲୁ ନଥିବ ଗମ୍ଭୀରିଆ ମଧୁରିଆ ତର୍କ ? ଥାଇ ଥାଇ ଚମକୁ ନଥିବ ବିଜୁଳିର ସୁନା ? ସେ ତ ବାପ୍‌କା ବେଟା, ପଢ଼ାପଢ଼ିରେ ଫାଷ୍ଟ ଆସୁଛି, କଲେଜରେ ନାଆଁ କମଉଛି । ଅବଶ୍ୟ ଲୋକେ କୁହନ୍ତି ଯେ, ସେ ବାପ ପାଖରୁ ଦୂରେଇ ଦୂରେଇ ଥାଏ, ମୁହଁ ମାରି ଦେଇ ଫେରି ଆସେ ପୁରୀରୁ, ସତେକି ସେ ବାପଙ୍କୁ ଡରେ କିମ୍ବା ଘୃଣା କରେ··· ରବିସ୍ !

ମୋର ମନେଅଛି ପୁରୀ ଘରର ସେଇ ରୁମ୍, ଯେଉଁଠି ତୁ ଶୋଇଥିଲୁ । ଶୋଇଥିବୁ ଏଇକ୍ଷଣି । କାନ୍ଥରେ ଟଙ୍ଗା ହୋଇଛି ବିଷାଦସୁନ୍ଦର ଯୀଶୁ ଓ ତା'ର ପାଖାପାଖି ହୋଇ ଆନନ୍ଦମଧୁର କୃଷ୍ଣଙ୍କ ଫଟୋ । ତୁ ସେ ଦୁଇଟିଙ୍କୁ ନିଜେ ବାଛିକରି ଆଣିଥିଲୁ କେଉଁଠୁ ଏବଂ ସବୁଠି ତୁ ତାଙ୍କୁ ତୋ ଶୋଇବା ଘରେ ରଖିଥିଲୁ, ଯେମିତିକି ବିଛଣାରେ ପଡ଼ିଗଲା ପରେ ପ୍ରଥମେ ସେଇ ଦୁଇଜଣ ତୋ ଆଖିରେ ପଡ଼ିବେ ଓ ତୁ ତାଙ୍କୁ ନେଇ ଦର୍ଶନର କେତେ ରସିକତା କରିବୁ ମନେ ମନେ । ଯଥା, ବିଷାଦ ଯାହା ଆନନ୍ଦ ସେଇଆ, ଚେତନାରେ ରଙ୍ଗ ବୋଳିବା କଥା, ମହାଶୂନ୍ୟଙ୍କୁ ଲଞ୍ଚ ଦେବା କଥା, କାଳେ ସେ ପ୍ରସନ୍ନ ହୋଇ ଉତ୍ତରଟିକୁ ବଢ଼େଇଦେବ ତମ ହାତରେ, ହୁଃ ! ସେଇଠୁ ତୁ ହସିବୁ ମୁରୁକି ମୁରୁକି ହୋଇ, ଯେମିତିକି ଏଇ ରହସ୍ୟକୁ ଜିଣିବାକୁ ହେଲେ ଦରକାର ଗୋଟିଏ ବୋଲି ଅସ୍ତ୍ର— ଆମୋଦ, ଆମୋଦରୁ ଏକ ଶ୍ଳେଷ, ଶ୍ଳେଷରୁ ବଳି ଉପହାସ । ତୋ ମୁରୁକି ହସରେ କେତେ ମୋଡ଼ କେତେ ଭଙ୍ଗ ଅଛି, ମୁଁ କଣ ଦେଖିନାହିଁ ?

ରହସ୍ୟଟା ତୋ ପାଇଁ ନିହାତି ନିଷ୍ଠୁର ହୋଇଗଲା, ନୁହେଁ ? ହେଉ, ସେଥିରେ ତୁ ଦବିଯିବା ଲୋକ ନୁହଁ । ମୋର ସେ ଆସ୍ଥା ଅଛି ତୋ ଉପରେ ।

ହଁ, ମୋର ମନେ ଅଛି । ଥରେ ସେଇ ବାଟ ଦେଇ ଗଲାବେଳେ ମୋର ଖିଆଲ ହେଲା ଯେ, ତୁ ମୋତେ ଡାକୁଛୁ । ମୋର ଭ୍ରମ ହେଲା (ଭ୍ରମ ନୁହେଁ ତ ଆଉ କଅଣ ?) ଯେ, ତୋ ଆଖିରେ ଏକ ଅସ୍ୱାଭାବିକ କାନ୍ତିର ଗୁହାରି । ବ୍ୟାକୁଳ ନା ପାଗଳାମିପଣ ? ହେଲେ ମୁଁ ତାକୁ ଅସ୍ୱୀକାର କଲି । ଗଲିନାହିଁ ତୋ ପାଖକୁ । ତା' ମାନେ ମୁଁ କ'ଣ ତୋତେ ଡରିଲି ବୋଲି ଭାବୁଛୁ ? କାଳେ ମୁଁ ବି ଚିତ୍ ହୋଇ ପଡ଼ିଯିବି ତୋ ସାଙ୍ଗରେ ? ଛିଃ ! ମୁଁ ତୋତେ ଦେଖି ନପାରିଲି ପରି ଡରିଡରି ହୋଇ ଚାଲିଗଲି ପରେ ମଧ୍ୟ ତୁ ମୁରୁକି ହସିଥିବୁ । ସେଇ ହେଉଛି ତୋର ବଡ଼ପଣିଆ ;

ନା ନା, ମୋତେ ବିଶ୍ୱାସ କର୍ ଅକ୍ଷୟ ଭାଇ, ମୁଁ ଏଥର ଯିବି ତୋ ପାଖକୁ···

ଦେଖେ, ମୁଁ କେମିତି ଆଜି ଯିବି ଷୋହଳ ନମ୍ବର ପାଖକୁ । ସେ ମେରିଆର ଚେତାବନୀକୁ ଖାତିର୍ ନ କରି ମୁଁ ଉପରେ ପଡ଼ି କଥା କହିବ ତା ସାଙ୍ଗରେ । ଏବଂ ତା'ର ମନୋବୃତ୍ତିକୁ ପ୍ରୋତ୍ସାହନ ଦେବ । ସେଇଥିରୁ ତୁ ବୁଝିବୁ ।

× × ×

ସେଦିନ ରାତିରେ ମୁଁ ମୋର ପ୍ରତିଶ୍ରୁତି ପାଳନ କଲି । କାଲି ସକାଳେ ସେ ଉତ୍ସର୍ଗ ହୋଇଯିବ । ତେଣୁ ଆଜି ଯେମିତି ହେଲେ ମୁଁ ଭଦ୍ରଲୋକର ଇଚ୍ଛା ପୂରଣ କରିବ, ଯିଏ ଯାହା ଭାବୁ ପଛେ···ଏଇ ଭାବରେ ମୁଁ ପୁଅ ଶୋଇଗଲାପରେ ମଧ୍ୟ ତତ୍‌କ୍ଷଣାତ୍ ଘରକୁ ଫେରିଲି ନାହିଁ ।

ସେ ମଧ୍ୟରାତି ଖିଆ ପରେ ଶୋଇବାକୁ ଯାଉଥିଲା । କିନ୍ତୁ ମୁଁ ଲକ୍ଷ୍ୟ କଲି ଯେ, ସେ ବାରମ୍ବାର ମୋ ଆଡ଼କୁ ଅନାଉଥିଲା, ମୋତେ ଲୋଡ଼ୁଥିଲା । ତେଣୁ ତାକୁ କଷ୍ଟ କରିବାକୁ ନ ଦେଇ ମୁଁ ହିଁ ପ୍ରଥମେ ଆରମ୍ଭ କଲି—"ଏକ୍‌ସ୍‌କ୍ୟୁଜ୍ ମି···"

ମୁଁ ଅକ୍ଷରେ ଅକ୍ଷରେ ମୋର ପ୍ରତିଶ୍ରୁତି ପାଳନ କଲି । ଥରେ ହେଲେ ତା'ର ଦେହପା ବିଷୟରେ ପଚାରିଲି ନାହିଁ । ତା'କୁ ଜାଣିବାକୁ ଦେଲି ନାହିଁ ଯେ, ମୋର ସେ ଦିଗରେ କିଛି କୌତୂହଳ ଅଛି । ଅପରନ୍ତୁ ପଞ୍ଜାବ ସମସ୍ୟା, ଆଲ୍ଲାହାବାଦ ଉପନିର୍ବାଚନଠାରୁ ଆରମ୍ଭ କରି (ସେ ପଲିଟିକାଲ୍ ସାଇନସ୍‌ରେ ଏମ୍. ଏ. ବୋଲି କହିଲା), ଆମେରିକାର ବୁସ୍ ଓ ଡୁକାକିସ୍‌ଙ୍କ ଭିତରେ କିଏ ଜିଣିବାର ସମ୍ଭାବନା ବେଶି, ଇତ୍ୟାଦି ବିଷୟରେ ଗମ୍ଭୀର ଆଲୋଚନା ଭିତରକୁ ଟାଣି ନେଲି ତା'କୁ । ମୋର ସନ୍ଦେହ ନାହିଁ ଯେ, ସେ ଆପ୍ୟାୟିତ ହେଲା ।

ରାତ ବେଶୀ ଡେରି ହେଲା ପୂର୍ବରୁ ମୋତେ ଉଠିବାକୁ ପଡ଼ିଲା । କାଲେ ସିଷ୍ଟର୍ କ ଡାକ୍ତର କେହି ହେଲେ ପହୁଞ୍ଚି ଯିବେ ଓ ଆମକୁ କହିବେ ଦୁ'ପଦ । ସେ ମୋର ହାତ ଧରି ପକାଇ କହିଲା—"ଧନ୍ୟବାଦ ।"

ସେଇ ଗୋଟିଏ ପଦରେ ମୋର ସନ୍ତୋଷର ପାତ୍ର ପୂର୍ଣ୍ଣ ହୋଇ ଯାଇ ଥାଆନ୍ତା । କିନ୍ତୁ ତା' ପଛକୁ ସେ ଆଉ ଗୋଟିଏ ଅନୁରୋଧ କଲା, "ପୁଣି ଆସିବେ । ମୁଁ ଓ୍ୱାର୍ଡ଼୍‌ରୁ ହୁଏତ କେବିନ୍‌କୁ ଯିବି, ସେଠିକି ମଧ୍ୟ ଆସିବେ । ଆସିବେ ନା ?"

ମୁଁ ତା'କୁ କହି ପାରିଲି ନାହିଁ ଯେ, ସବୁ କଥାର ଗୋଟାଏ ସୀମା ଅଛି । ଯେତେହେଲେ ସେ ଗୋଟାଏ ଅଚିହ୍ନା ଅଜଣା ରୋଗୀ । ଧରଣାଶାୟୀ ହୋଇ ପଡ଼ିଛି ବୋଲି ସେ ଅକ୍ଷୟ ଭାଇର ସମକକ୍ଷ ହୋଇ ନ ପାରେ । ଅକ୍ଷୟଭାଇ ତା'ପରି ରାଗେ ନାହିଁ, ଅକ୍ଷୟ ଭାଇ ପରି ସେ କୋଉ ସତ ମିଛ ଦାର୍ଶନିକ ନୁହେଁ, ଅକ୍ଷୟ ଭାଇ ପରି ସେ ଦୁର୍ଭାଗ୍ୟକୁ ମୁରୁକିହସା ଦେଇ ପାରିବ ନାହିଁ, ମୋଟ ଉପରେ ସେ କେଉଁ ହିସାବରେ ହେଲେ ଅକ୍ଷୟ ଭାଇର ପାଖ ମାଡ଼ିପାରିବ ନାହିଁ । ମୋର କୌଣସି ଦାୟିତ୍ୱ ନାହିଁ ତା' ପ୍ରତି । କିଓ, ମୁଁ ସିଧା ହୋଇ ଚାଲିଛି ବୋଲି କ'ଣ କାହାଁରେ ମୁଣ୍ଡିଛି ଯେ, ଯେତେକ ଧରଣାଶାୟୀଙ୍କୁ ଟେକ ଧରିବା ମୋର କର୍ତ୍ତବ୍ୟ ?

ତେଣୁ ମୁଁ କେବଳ ସସ୍ମିତ ବିଦାୟଟିଏ ମାଗି ଚାଲିଆସିଲି ସେଠୁଁ । ସେଇ ଥିଲା ମୋର ତା' ସାଙ୍ଗରେ ଶେଷ ଦେଖା । ଏବଂ ମୋର ପ୍ରିୟ ଅକ୍ଷୟ ଭାଇ ସାଙ୍ଗରେ ଆଉ ଦେଖା ହୋଇ ନାହିଁ ସିନା, ଶେଷ ଦେଖା ଅନେକ ଦୂରରେ ଅଛି । କାରଣ ମୋର ବିଶ୍ୱାସ, ସେ ଶହେ ବର୍ଷ ବଞ୍ଚିବ ।

# ଧର୍ଷଣାପ୍ରୀ

ତା'କୁ ଦୁଃସ୍ଥ, ରୁଗ୍‌ଣ, ଲମ୍ବା ସେହଭଳି କିଛୁ କୁହାଯାଇ ନାହିଁ। ଦୁର୍ଭାଗା ବୋଲି କହିବା ମଧ୍ୟ ଉଚିତ ହେବ ନାହିଁ। କାରଣ ସେ ଧର୍ଷଣାପ୍ରୀ। ଅର୍ଥାତ୍ ଲୋକଟା ବେଶ୍ ଡେଙ୍ଗା, ବଡ଼ ନିଲୁଆ ହୋଇ ଆସୁଥିଲା, ଦେହରେ ନୁହେଁ, ମନରେ, ତେଣୁ ତମେ କ'ଣ କଲ ନା ତା' ଦେହଟାକୁ ନଷ୍ଟ କରିଦେଲ। ତା'କୁ ପୂରାପୂରି ତଳେ ଗଡ଼େଇ ଦେଲ ସବୁଦିନ ପାଇଁ। ଦେଖିବା ତୁ କ'ଣ କରିବୁ ଏଥର, ତୋ'ର ବିରାଟ ମନଟାକୁ ନେଇ—ବୋଧହୁଏ ଏଇ ମର୍ମରେ। ଏହାଠାରୁ ବଳି ନିଷ୍ଠୁରତା ଆଉ କ'ଣ ଆଇପାରେ ? ଅନ୍ୟ ଅର୍ଥରେ ତମେ ତା'କୁ ହତ୍ୟା କଲ। ଜାଣିଶୁଣି।

ଶୁଣ ଅଜୟବାବୁ, ସେଥିପାଇଁ ତମେ ନିଜକୁ ଦୋଷୀ ବୋଲି ଭାବିବାର କୌଣସି କାରଣ ନାହିଁ। ସ୍ୱଭାବତଃ ତମ ମନରେ ଟିକିଏ ଈର୍ଷା ଆସୁଥିଲା ତା' ପ୍ରତି, କାରଣ ସେ ବାରମ୍ବାର ପ୍ରମାଣ ଦେଇ ଚାଲିଥିଲା ତମକୁ, ଯେ ତା' ବିଦ୍ୟାବୁଦ୍ଧି ତମଠୁଁ ବେଶୀ। କେବଳ ପରୀକ୍ଷାର ଫଳ ଅନୁଯାୟୀ ନୁହେଁ, ସେ ତମଠୁଁ ଭଲ ଉପମା ବାଢ଼ି ଦେଇ ପାରୁଥିଲା, ଏବଂ ଅଧିକ ଅଭିନବ ଉପାୟର ତଥ୍ୟ ତିଆରି କରି ପାରୁଥିଲା, ଏଇ ଜୀବନଟାକୁ ଆହୁରି ଅର୍ଥାନ୍ୱିତ ଏବଂ ଉପଭୋଗ୍ୟ କରିବା ପାଇଁ। ଏଥିରେ ଯେକୌଣସି ବନ୍ଧୁ-ପ୍ରତିଦ୍ୱନ୍ଦ୍ୱୀର ଗାତ୍ରଦାହ ହେବା କଥା। ସେ ହିସାବରେ ତମକୁ ଭଲ ଲୋକଟିଏ ବୋଲି କହିବା କଥା। ତମେ କ'ଣ କେବେହେଲେ ତା'ର ମନ୍ଦ ମନାସିଛ ? ହେଲେ ଏବେ ତମକୁ ସଙ୍କୋଚ ଲାଗିଲା ତା'ର ଅସହାୟପଣକୁ ପାଖରୁ ଦେଖିବା ପାଇଁ, ଯଦିଓ ତମର ଥରେ ମନେ ହୋଇଥିଲା ଯେ ସେ ତମକୁ ଡାକୁଛି, କେଉଁ ଏକ 'ଅସ୍ୱାଭାବିକ କାହିଁବ ଗୃହାଣି'ରେ। ନାଇଁମ ଅଜୟବାବୁ, ଅତି ବେଶୀରେ ତୁମକୁ ଭୀରୁ ବୋଲି କୁହାଯିବ,

ଭଣା ଅଧିକେ ଆମ ସମସ୍ତଙ୍କ ପର । ତୁମେ ଗୋଟିଏ ସର୍ବସାଧାରଣ ଭଲମଣିଷ, ଯାହାର ହାଲୁକା ସ୍ୱାର୍ଥଟିଏ ଅଛି । ତେଣୁ ତୁମଠୁଁ କୌଣସି ପ୍ରକାରର ସ୍ୱାର୍ଥତ୍ୟାଗ ଓରଫ୍ ବୀରତ୍ୱ ଆଶା କରାଯାଏ ନାହିଁ । ତଥାପି ତମେ ତା' ଚକରା, ଆଉ ତା' ପୁଅର ପାଠପଢ଼ା ପାଇଁ ଯେଉଁ ଆର୍ଥିକ ସାହାଯ୍ୟ ଯୋଗାଇଦେଲ, ସେତକ ଆଉ କେତେଜଣ କରିପାରିବେ ? ତମର ଦୋଷୀଭାବ ମଧ୍ୟ ସେଇ ଭଲମଣିଷପଣିଆର ଅଂଶବିଶେଷ । ତେଣୁ ତମେ ଏମିତି ହମହମ ହେଉଥିଲ କିଛି ସମୟ ପାଇଁ, ଷୋଳନମ୍ବର ବେଡ୍‌ର ରୋଗୀକୁ ଖୁସି କରିବା ଲାଗି । ତା' ବୋଲି କ'ଣ ତମେ ଥରକୁ ଥର ଧାଇଁ ଯାଉଥାଆନ୍ତ ତା' ପାଖକୁ, ତା'ର ବ୍ୟାକୁଳ ଅନୁରୋଧକୁ ଏଡ଼ାଇ ଦେଇ ନପାରି ? ହୁଁଃ ! ମୁଁ ସିଧା ହୋଇ ଚାଲିଛି ବୋଲି କ'ଣ ନିଆଁରେ ମୁତିଛି, ଯେ ସେତେକ ଧର୍ମଶାସ୍ତ୍ରୀମାନଙ୍କୁ ଟେକି ଧରିବା ମୋର କର୍ତ୍ତବ୍ୟ ?' ଠିକ୍ କହୁଛ ବାବୁ । ଆମେ, ପ୍ରାୟ ସମସ୍ତେ, ତମ ପରି । ସୁସ୍ଥମନା, ତେଣୁ ଆମେ କେବେହେଲେ ହିରୋ ହୋଇପାରିବା ନାହିଁ ।

ଏବଂ ଶୁଣ ଧର୍ମଶାସ୍ତ୍ରୀ ଅକ୍ଷୟବାବୁ, ତମକୁ ଦୋଷ ଦେବାର ପ୍ରଶ୍ନ ଉଠୁ ନାହିଁ । ତମେ ସେକ୍ସପିଅରଙ୍କ ଅଥେଲୋ କି ହ୍ୟାମ୍‌ଲେଟ୍ ନୁହଁ ଯେ ତମ ଚରିତ୍ରରେ କିଛି ଦୋଷଦୁର୍ବଳତା, ମୁଣ୍ଡରେ ଗୋଟାଏ ଚୁଟା, ଥିଲା ଯେଉଁଥିପାଇଁ ତମକୁ ଏଇ ଦଶା ଭୋଗିବାକୁ ପଡ଼ିଲା । ସେ ହିସାବରେ ତମର ଟ୍ରାଜେଡ଼ି ଗ୍ରୀକ୍ ଟ୍ରାଜେଡ଼ିର ଦାୟାଦ ବୋଲି ମନେ ହୁଏ । ସତେକି ବିଧାତା ସହିପାରିଲେ ନାହିଁ ତମ ବିଦ୍ୟାବୁଦ୍ଧିର ଚମକ, ତାକୁ ଏକ ଅକ୍ଷମଣୀୟ ଆସ୍ପର୍ଦ୍ଧା ବୋଲି ମନେ କଲେ, ତେଣୁ ତମକୁ ତଳେ ଗଡ଼େଇ ଦେଲେ ! ନା ଅକ୍ଷୟବାବୁ, ତମର କିଛି ଦୋଷ ନାହିଁ । ତମେ ଅଭିଶପ୍ତ । ପୂର୍ଣ୍ଣଚ୍ଛେଦ ।

କିନ୍ତୁ ତମକୁ କ'ଣ କେଉଁ ବୀରତ୍ୱର ଗୌରବ ଆଣି ଦେଇ ହେବ, ଯାହା ଗ୍ରୀକ୍ ଟ୍ରାଜେଡିର ନାୟକମାନଙ୍କୁ ମିଳି ଯାଉଥିଲା ? ଭାବିବାକୁ ଇଚ୍ଛା ହୁଏ ଯେ ସେମିତି ହେବା ଉଚିତ । ତମ ମୁଣ୍ଡର ଚାରିପାଖରେ ମଧ୍ୟ ଗୋଟାଏ

କ୍ୟୋଟର ବଳସ୍ଥ ପୁରୁଷ ବୋଲି ମନେ କରିବା ଉଚିତ । ଏକାଧିକ ଆଧୁନିକ ସାହିତ୍ୟ ପଣ୍ଡିତ କହିଛନ୍ତି ଯେ ସେକାଳ ପଶିଲି ଗଲଣି । ସଫୋକ୍ଲିସ୍ଙ୍କର ହୁଅନ୍ତୁ କି ସେକ୍ସ୍‌ପିଅରଙ୍କର, ସେବେକାର ଟ୍ରାଜେଡ଼ିପୁରୁଷ 'ଜୀବନରୁ ବଳି ବୃହତ୍' (Larger than Life) ବୋଲି ମନେ ହେଉଥିଲା । ସେ କିଛି ଗୋଟାଏ କରୁଥିଲା କେଉଁ ଏକ ଅତିମାନୁଷୀ ଦୁଃସାହସୀ ବ୍ୟକ୍ତିତ୍ୱର ପରିଚୟ ଦେଉଥିଲା, ସେଥିର ସାରକଥା ହିଂସା ହେଉ କି ଅହିଂସା, ସାଧନା ଅଥବା ସଂଗ୍ରାମ । କିନ୍ତୁ ଆଜିର ବାସ୍ତବ ଦୁନିଆଁରେ ସେଭଳି ମଣିଷକୁ ଖୋଜିବା ବୃଥା । ଆଜିର ମଣିଷ ସାନ ଓ ସାମାନ୍ୟ, ତାହାହିଁ ତାର ପ୍ରକୃତ ପରିଚୟ । ତେଣୁ ତା'ର ଦୁଃଖଦୁର୍ଦ୍ଦଶାକୁ ହୁଏତ ଟ୍ରାଜେଡ଼ିର ଆଖ୍ୟା ଦେଇପାରି, ଯଦି ତାହା ଉଚିତରୁ ବଳି ତୀବ୍ର କିମ୍ବା ଅତିଶୟ ହୋଇଥାଏ କିନ୍ତୁ ସେଥିରେ ଗୌରବ ଆସିବ କେଉଁଠୁ ? ଏବଂ ସତକଥା କହିବାକୁ ଗଲେ ଆମର ଏଇ ଅକ୍ଷୟବାବୁ କ'ଣ ଏମିତି କଲେ କି, କେଉଁ ଦୁଃସାହସୀ କାମଟାଏ, ଯେଉଁଥିପାଇଁ ତାଙ୍କ ଟ୍ରାଜେଡ଼ିକୁ ଗୋଟାଏମୁକୁଟ ପିନ୍ଧେଇବା ଆବଶ୍ୟକ ? ହଁ, ସେ ଅନେକ ଉପରକୁ ଉଠିପାରି ଥାଆନ୍ତେ, ହୁଏତ ଗୋଟାଏ ସିଂହାସନ ଅଧିକାର କରିପାରି ଥାଆନ୍ତେ ତାଙ୍କ ବିଦ୍ୟାବୁଦ୍ଧିକୁ ନେଇ, ଯଦି ତାଙ୍କୁ ଏମିତି ଅକାଳରେ ତଳେ ଗଡ଼େଇ ଦିଆ ହୋଇନଥାଆନ୍ତା । କିନ୍ତୁ ସେ କଥା ଭିନ୍ନ ।

ହେଲେ 'ଅସ୍ତିତ୍ୱବାଦୀ' ଗୋଷ୍ଠୀର କେତେକ ପଣ୍ଡିତ ତର୍କ ବାଢ଼ି ଦିଅନ୍ତି, ବେଳବେଳେ, ଏଇ ହତଭାଗାମାନଙ୍କ ତରଫରୁ । କୁହନ୍ତି—ଆଜ୍ଞା, ଦାରୁଣ ଅକାରଣ ଦୁଃଖଟାକୁ ଧୈର୍ଯ୍ୟର ସହ ସହି ନେବାରେ ଯେଉଁ ଗୌରବ ଅଛି, ତାକୁ କ'ଣ ଊଣା ବୋଲି କହିବ ? ଆଉ ସେଇ ସହିନେବା ଢଙ୍ଗକୁ ଯଦି ଟିକିଏ ହସି ଦେଇ ପାରିଲ ନା, ତା' ହେଲେ ତ କଥା ସରିଲା ! କାମ୍ୟୁ କହିଲେ ପରା ?—ଏମିତି କିଛି ଦୁଃଖଦୁର୍ଦ୍ଦଶା ନାହିଁ, ଯାହାକୁ ମଣିଷ ହସି ଉଡ଼େଇ ଦେଇପାରିବ ନାହିଁ, ତା'କୁ ଛୁଗୁଲେଇଲା ପରି । ଅକ୍ଷୟବାବୁ ଠିକ୍ ସେଇଭଳି ଚଗ କରୁଥିଲେ ବୋଲି କହିନାହାନ୍ତି କି ଆମ ଅଜୟବାବୁ ? କଳ୍ପନାରେ ଦେଖିଲେ ଯେ ବନ୍ଧୁ ଅନେଇ ରହିଛି ତା' କାନ୍ଥରେ

ପାଖାପାଖି ହୋଇ ଟଙ୍ଗା ହୋଇଥିବା ବିଷାଦସୁନ୍ଦର ଯୀଶୁ ଏବଂ ଆନନ୍ଦମଧୁର କୃଷ୍ଣଙ୍କ ଫଟୋ ଦୁଇଟିକୁ । ଏବଂ ଅନୁମାନ କରିଗଲେ—"ସେଇଠୁଁ ତୁ ହସିବୁ ମୁରୁକ ମୁରୁକ ହୋଇ, ଯେମିତିକି ଏଇ ରହସ୍ୟକୁ ଜାଣିବାକୁ ହେଲେ ଦରକାର ଗୋଟିଏ ବୋଲି ଅସ୍ତ୍ର—ଆମୋଦ, ଆମୋଦରୁ ବଳି ଶ୍ଳେଷ, ଶ୍ଳେଷରୁ ବଳି ଉପହାସ ।"

କାମ୍ୟୁଙ୍କର ଜୟ ହେଉ ! କିନ୍ତୁ ଯଦି ଅଜୟବାବୁଙ୍କ କଳ୍ପନା ସତ ହୋଇଥାଏ, ଆଉ ଧର୍ମଶାସ୍ତ୍ରୀ ଜଣେ ହସୁଥାଏ ଏମିତି, ତା'ର ସେଇ ତଥାକଥିତ ଆମୋଦ କି ଉପହାସ କେତେ ତିକ୍ତ ଓ ମର୍ମନ୍ତୁଦ ହୋଇଥିବ, ତା' କ'ଣ ବୁଝେଇବାକୁ ପଡ଼ିବ ? ଏବଂ ଏହା ଯଦି ସୀରତ୍ତ୍ୱ ହୁଏ, ତା'ହେଲେ ମଣିଷ ଜାତିର କ'ଣ ଉଦ୍ଧାର ନାହିଁ ଏଇ ସୀରତ୍ତ୍ୱରୁ ?

ପରିଶେଷରେ ମୁଁ କେବଳ ଏତିକି କହିବି ଯେ ଦସ୍ତୋଏଭ୍ସ୍କି ଦୟା ଦେଖାନ୍ତି ନାହିଁ ଅକ୍ଷୟବାବୁଜାତୀୟ ଧର୍ମଶାସ୍ତ୍ରୀମାନଙ୍କ ଉପରେ । ମଧ୍ୟ ତାଙ୍କ ପାଇଁ ଗୋଟାଏ ମିଛିମିଛିକା ଗୌରବ ଆଣିଦେବାର ଚେଷ୍ଟା କରନ୍ତି ନାହିଁ ଦାର୍ଶନିକମାନଙ୍କ କଥାରେ ପଡ଼ି, ସେ ବିଚାରରେ ପଡ଼ି ହସୁଥାଆନ୍ତି କି ଆଖିବୁଜି ରହିଥାଆନ୍ତି ।

କେବଳ କ୍ରୋଧ ଆସୁ ସେଇ ବିଧାତା ଉପରେ, ଯେ ବିଷାଦସୁନ୍ଦର କି ଆନନ୍ଦମଧୁର ହସଟିଏ ଗ୍ରୁଣ୍ଡି ଦେବା ଛଡ଼ା ଆଉ କିଛି କରିବା ପାଇଁ ଅକ୍ଷମ । ତା'ହେଲେ ଯାଇଁ ଚେତା ହେବ କେତେବେଳେକେ ଯେ ମଣିଷ ଛଡ଼ା ଆଉ କେହି ସାହା ନାହିଁ ମଣିଷର । ଏବଂ ହୁଏତ ଅଜୟ ବଳ ପାଇବ କେଉଁ ଗନ୍ଧମାଦନ ପର୍ବତକୁ ଟେକି ଆଣିବା ପାଇଁ ଏବଂ ତା' ଜୀବନଟା ସାରିଦେବ ସେଥିରେ ଥିବା ବିଶଲ୍ୟକରଣୀକୁ ଖୋଜି ବାହାର କରିବା ଲାଗି ଯେମିତିକି, ନିରପରାଧ ବନ୍ଧୁ ସୁସ୍ଥ ହୋଇ ଉଠିବ ଏବଂ ତା' ମନୋବୃତ୍ତିର ପାଉଣାକୁ ଫେରି ପାଇବ । ଯୁଗୋପଯୋଗୀ ସୀରତ୍ତ୍ୱ ଆସନ୍ତା ନାହିଁ ସେଇ ବାଟ ଦେଇ, ଅଧିକରୁ ଅଧିକ ?



# ଆଲିଙ୍ଗନ

କାହାକୁ କହିବା କଥା ନୁହେଁ ଆପଣ ମଧ ଦୟାକରି ଚୁପ୍ ହୋଇ ରହନ୍ତୁ ମୋ ଗପ ସରିବାଯାଏଁ, ଚଟ୍ କରି ମୋତେ ରୁଗ୍‌ଣ ବିକାରଗ୍ରସ୍ତ ବୁଢ଼ା ତଥା ବେକୁବ୍ ବୋଲି ହସି ଉଡ଼େଇ ଦିଅନ୍ତୁ ନାହିଁ...

ଶୁଣିଲେ ଶୁଣି ପାରନ୍ତ ମୋ ଗ୍ରନ୍ଥି ଭିତରେ ଠେଲାପେଲା ହେଉଥିବା ନାନା ବିଚିତ୍ର ଶବ୍ଦ। ସେଗୁଡ଼ିକ କେଉଁ ପ୍ରକାର ଆବେଗର ପରିଭାଷା ଅବା ପ୍ରହାର ବୋଲି ଜାଣିପାରିଲେ ମୁଁ କେତେ ଖୁସି ନ ହୁଅନ୍ତ ! ତା'ହେଲେ ହୁଏତ ମୁଁ ଅବସ୍ଥା ବୁଝି ବ୍ୟବସ୍ଥା କରିପାରନ୍ତ। ମାନେ ଜନ୍ମଗଣ୍ଠି ପ୍ରକୃତରେ କ'ଣ, ପ୍ରେମ ନା ଘୃଣା, କ୍ରୋଧ ନା କାରୁଣ୍ୟ, ଯାହାର ଅବିରାମ ଆକ୍ରମଣରେ ଗ୍ରନ୍ଥିଟା ହେଉଛି ଏମିତି, ଉଦ୍‌ବେଗକୁ ପାରି ହେଉନାହିଁ, ଭୟ ଲାଗୁଛି, ଅଥଚ ମନେହେଉଛି ଯେ, ଏଇ ମୋର ଶେଷ ପରୀକ୍ଷା, ଏଥିରେ ଫେଲ୍ ମାରିଲେ ଆଉ ରକ୍ଷା ନାହିଁ ମୋର।

ସଂକ୍ଷେପରେ ମୋର ଇଚ୍ଛା ହେଉଛି ଚଳନ୍ତା ଟ୍ରେନ୍‌ରେ ମୋ ସାମନାରେ ବସିଥିବା ଜଣେଇକା ପରିଚିତା, ଗୋଟାଏ ହିସାବରେ ସୁପରିଚିତା, ଦରବୁଢ଼ୀ ସୋନୁବେନ୍‌ଙ୍କୁ କୁଣ୍ଢେଇ ଧରିବାକୁ। କିଛି ସମୟ ଗୋଟାଏ ଜବରଦସ୍ତି ଆଲିଙ୍ଗନରେ ବାନ୍ଧି ରଖିବାକୁ। କେବଳ ସେତିକି ଓ ସେତିକିଯାଏଁ। ଯାହାକି ମୋ ବାଞ୍ଛିତ ଆଲିଙ୍ଗନର ବିଶେଷତ୍ୱ। ବୁଝିଲେ ନା ମୁଁ କ'ଣ କହୁଛି ?

ସୋନୁ ମେହେତା ଓରଫ ସୋନୁବେନଙ୍କୁ ଷାଠିଏ ପାଖାପାଖି ହେବ। ମୁଣ୍ଡବାଳ ଶୁଭ୍ରତାରୁ ଉଣାଭାଗ ଧଳା। ଓଦାଳିଆ ଚିବୁକ। ମୁହଁରେ ଏକାଧିକ ରେଖା। ଏବଂ ବୟସସୁଲଭ କଳାକାଇ। ଅବଶ୍ୟ ଗାଲର ଟିପ ଚିହ୍ନ ପୁରୁଣା; ପିଲାଦିନର। ଯଦିଓ ଟିକିଏ ଗାଢ଼ୁଆ ହୋଇଯାଇଛି। ସବୁଠାରୁ ସୁଖର ବିଷୟ ଯେ, ତାଙ୍କ ହସ ସେମିତି ଅଛି, ଖାଲ ଖାଲ ହୋଇ ବୋହିଗଲା ପରି, ପାଞ୍ଚ ପଡ଼ୁ ପଚିଶ ପଡ଼ୁ, ବାପା ରାଗନ୍ତୁ କି ମଉସା, କିମ୍ବା କେଉଁ ମାନ୍ୟବର ଅତିଥି...କ୍ଷମା କରିବେ, ବର୍ତ୍ତମାନକାଳ ସାଙ୍ଗରେ ଭୂତକାଳ ମିଶିଯାଉଛି, ମୋର ଦୋଷ, ମୁଁ କହିପାରି ନାହିଁ ଏତେବେଳ-ଯାଏଁ ଯେ, ସୋନୁବେନ ମୋର ଅତୀତର ସୋନୁ, ଜଣେଇକା ବାଲ୍ୟସାଥୀ। ଯେବେ

ତାଙ୍କ ବାପା ଓଡ଼ିଶାର ଜଣେ ବଡ଼ ଅଫିସର ହୋଇଥିଲେ, ଏବଂ କଟକର କ୍ୟାଣ୍ଟନ୍‌ମେଣ୍ଟ ରୋଡରେ ଥିଲା ତାଙ୍କ ବିରାଟ ବଙ୍ଗଳା, ଲୁଚକାଳି ଖେଳିବାର ସ୍ୱର୍ଗ ।

ବର୍ତ୍ତମାନ ସେଇ ସୋନୁ ତଥା ଆଜିକାର ସୋନୁବେନଙ୍କୁ ଧରି ମୁଁ ଦିଲ୍ଲୀରୁ ପୁରୀ ଯାଉଛି । କହିବାକୁ ଗଲେ ସେ ଚାହିଁଥିଲେ ବୋଲି । ଅବଶ୍ୟ ସେ ଏକୁଟିଆ ଯିବାକୁ ବସିଥିଲେ । କିନ୍ତୁ ମୁଁ କହିଲି, ମୁଁ ନେଇଯିବି ସାଙ୍ଗରେ, ଯେତେହେଲେ ଓଡ଼ିଶା ମୋ ଦେଶ, ତେଣୁ ଆପଣ ମୋର ଅତିଥି । ସେଥିରେ ସେ ଖୁସି ହେବାର ଭାବ ଦେଖାଇଥିଲେ, ଏଥିରେ ସନ୍ଦେହ ନାହିଁ ।

କହିବା ବାହୁଲ୍ୟ ଯେ, ମୁଁ ତାଙ୍କ ସମବୟସ୍କ. ଦୁଇ ତିନି ବର୍ଷ ବଡ଼ ସାନରେ କିଛି ଯାଏ ଆସେ ନାହିଁ ।

ଆପଣ ହୁଏତ ଦୟା ଦେଖାଇବେ । ଏବଂ ନହସିବା ପାଇଁ ଚେଷ୍ଟା କରିବେ । କିନ୍ତୁ ପଚାରିଲେ ଆପଣ କେତୋଟି ଆପତ୍ତି ଉଠେଇବେ ବୋଲି ମୁଁ ବେଶ୍ ଜାଣିପାରୁଛି । ପ୍ରଧାନ ପ୍ରଶ୍ନ ହେଲା ଯେ, ପ୍ରେମ ହେଉ କି ଅପ୍ରେମ, କି ଯାହା କିଛି, ମୋଟ ଉପରେ ଆବେଗ ଅଛି ତ ?

ମୋର ମନେ ହେଉଛି ଯେ, ନୀଳାଚଳ ଏକ୍‌ସପ୍ରେସ୍‌ର ମହା ମହା ଚକର ଘର୍ଘର ମଧ୍ୟ ସେହି ପ୍ରଶ୍ନ ପଚାରୁଛି ମୋତେ । ଅଛି ତ ? ଅଛି ତ ?? ପ୍ରାୟ ପଚିଶ ବର୍ଷର ବ୍ୟବଧାନରେ ଯାହା ସାଙ୍ଗରେ ପୁଣି ଦେଖା ହେଲା ଦିଲ୍ଲୀରେ, ପ୍ରଥମେ କେହି କାହାକୁ ଚିହ୍ନି ପାରିଲୁ ନାହିଁ, ମୁଁ ଓଡ଼ିଶାର ଲୋକ କହିବାରୁ ଯାଇଁ ତାଙ୍କ ମୁହଁ ଉଜଳି ଉଠିଲା, ସେଇଠୁଁ ଅତୀତକୁ ଠିକଣା ପଡ଼ିଲା···ତା'ର ଭିତ୍ତିରେ ଗୋଟାଏ ଇଚ୍ଛାକୁ ତିଆରି କରି କହୁଛୁ କ'ଣ ନା ଇଏ ହେଉଛି ଆବେଗ ? ଆଉ ତୋ'ର ଛାତି ଧଡ଼ପଡ଼ ହେଉଛି ?

ତୋର ଆବେଗର ସତ ମିଛ କ'ଣ ଏଇଥିରୁ ବୁଝାପଡ଼ୁନାହିଁ ଯେ, ତୁ ଏତେବେଳଯାଏଁ ତାଙ୍କୁ ମାନ୍ୟାର୍ଥରେ ଆଜ୍ଞା ଆପଣ କରୁଛୁ ? କହୁଛୁ ସେ ଏମିତି କହିଲେ, ତାଙ୍କର ଏମିତି ହେଲା, ଇତ୍ୟାଦି । ବାଲ୍ୟସୁହୃଦର କରିମତି କାହିଁ ଜଣାପଡ଼ୁନାହିଁ ତ ?

ଆଃ ! ହେବ, ହେବ, ଆଜ୍ଞା ଆପଣରୁ ତୁମେ କହିବ ତାଙ୍କୁ । ସମୟ କ'ଣ ପଳେଇ ଯାଉଛି ? ଏଇ ଦୀର୍ଘ ରେଳଯାତ୍ରା ପରେ ସୁଦୀର୍ଘ ସାତଦିନ ଅଛି । ତାଙ୍କ ଓଡ଼ିଶା ରହଣିର ନିର୍ଘଣ୍ଟ । ସମ୍ଭବତଃ ସେ ଆହୁରି କେତେଦିନ ରହି ପାରନ୍ତି ।

ତା'ର ଭିତରେ କ'ଣ ପୁରୁଣା ଆତ୍ମୀୟସ୍ୱଜନର ଖିଅକୁ ଧରିପାରିବ ନାହିଁ ? ସୋନୁବେନ୍‌ଙ୍କୁ ସୋନୁ, ଆପଣରୁ ତୁମେ କରି ପାରିବ ନାହିଁ ? ହେଲା ଏବେ ମୋର ଇଚ୍ଛା ଇଚ୍ଛାକୃତ, ମୁଁହିଁ ମୋର ଆବେଗକୁ ଡାକ ଆଣିଛି । କିନ୍ତୁ ମୁଁ କ'ଣ ବୟସ୍କ ନୁହେଁ ? ତେଣୁ ଆପଣା ଆବେଗର ମାଲିକ ହୋଇପାରିବି, ଏଇ ସ୍ୱାଧିକାର କ'ଣ ମୋର ନାହିଁ ?

ଏଇ ମାତ୍ର କାନ୍‌ପୁର ଷ୍ଟେସନ୍ ହେଲା । ଆରେ, ଗାଡ଼ି ପ୍ଲାଟଫର୍ମରେ ଲାଗିଛି କି ନାହିଁ, ମ୍ୟାଡ଼ାମ୍ ଏମିତି ତରତର ହେଉଛନ୍ତି କାହିଁକି ଓହ୍ଲେଇବା ପାଇଁ ? ହଁ, କହୁଥିଲେ ଯେ, ଦୈବାତ୍ କେତେକ ପୁରୁଣା ସହକର୍ମୀଙ୍କ ସାଙ୍ଗରେ ଦେଖା ହୋଇ ଯାଇପାରେ । ବିଗ୍‌ଟ ଆଶାବାଦୀ ଆମ ସୋନୁବେନ୍ । ଅଜ୍ଞ ଏବାଟେ ଯାତ୍ରା କରିବାର ସମ୍ବାଦ ଦିଆ ହୋଇ ନାହିଁ କାହାକୁ, ତଥାପି ତାଙ୍କର ଧାରଣା ଯେ, କାହାର ନା କାହାର ସାଙ୍ଗରେ ଦେଖା ହୋଇଯିବ, କର୍ମମୟ ଅତୀତ ଜୀବନର କେତେ କଥା ପଡ଼ିବ, ନାନା ଉଦ୍ୟମ ଉତ୍ସାହର କାହାଣୀ, ଏବଂ ସେ ତା'ର କ୍ରମଶଃକୁ ଶୁଣି ଖୁସି ହେବେ । ଧରନେବେ ଯେ, ଫଳ ଫଳାଛି । ଏଠି ନ ହେଲେ ସେଠି । ଭାବିବେ ଯେ, କିଛି ନ ହେଲେ ମୁଁ ମୋର ଆଣ୍ଡିତାକୁ, ମୋର ଗଣିତକୁ, ଯେଉଁ ଦମ୍ଭ ଦେଇ ଆସିଛି, ଯଥା ଠାକୁରେ ଅଛନ୍ତି, ଗଣତନ୍ତ୍ର ଅଛି, ସମ୍ବିଧାନ ଅଛି, ଇତ୍ୟାଦି ତା'ର ପୁଞ୍ଜି ସରି ଯାଇ ନାହିଁ । ମନେ ମନେ ଲଡ୍‌ଡୁ ଖାଇବେ ଆମ ସୋନୁବେନ୍ । ସୁଖଦା ବରଦା ସୋନୁବେନ୍ ।

(ନା, ମୁଁ ଥଟ୍ଟା କରୁ ନାହିଁ ଆପଣଙ୍କୁ । ମୁଁ କ'ଣ ଜାଣି ନ ଥିଲି ଯେ, ସଦାନନ୍ଦମୟୀ ସୋନୁ ସମାଜର ସୋନୁବେନ୍ ହେଉ, କି ଅମୁକର ମିସେସ୍, ତା' ସ୍ୱର୍ଗ ଥିବ ସେମିତି ଗୋଲ ହୋଇ ?)

ଯାହା ହେଉ, ପାଠକ ଆପଣେ ଦେଖନ୍ତୁ ଯେ, ଏଇ ଦିଲ୍ଲୀଠାରୁ କାନପୁର ଭିତରେ ମୋର ଇନ୍ଦ୍ରିୟମାନେ କେମିତି କ୍ରମଶଃ ଆଉଜି ହୋଇ ଯାଉଛନ୍ତି ତାଙ୍କ ଆଡ଼କୁ । ପ୍ରଥମେ ତାଙ୍କ ଦେହର ବାସ୍ନା । ହୋଇପାରେ ଠିକ୍ ଦେହର ନୁହେଁ, ତାଙ୍କ ଶାଢ଼ି ବ୍ଲାଉଜର, କିମ୍ବା ହ୍ୟାଣ୍ଡବ୍ୟାଗ୍‌ର ଯାହା ପ୍ରାୟ ଖୋଲା ପଡ଼ିଥାଏ, ତା' ଭିତରେ ଥିବ କେଉଁ ଦେଶୀ ମୁଖବିଳାସ କି ଆଉ କ'ଣ (ପୁରୁଖା ସମାଜସେବିକା ଅତର ଲଗେଇଥିବେ ବୋଲି ମୁଁ କଦାପି ବିଶ୍ୱାସ କରି ପାରିବି ନାହିଁ)···ଯାହା ହେଉ ପଛେ, ଉଲ୍ଲେଖନୀୟ ବିଷୟ ହେଉଛି ଯେ, ମୋତେ ସେ ବାସ୍ନା ଭଲ ଲାଗୁଛି । ବିଶେଷତଃ ମୋ ପରି ଜଣେ ଲୋକକୁ ଯେ ବାସ୍ନା ବିଷୟରେ ନିହାତି ଏକଜିଦିଆ, ସାତ ମାଇକିନିଆଙ୍କଠାରୁ ବଳେ ବୋଲି ମୋ ସ୍ତ୍ରୀ ରେଖା ଥଟ୍ଟା କରେ ମୋତେ । ନୁହେ ଯେ, ଦିନୁଟାଏ ସେ ତା'ର ଯୁଇବାସ୍ନା ଅତର ନ ଲଗେଇଲେ ମୋର ମୁଡ଼୍

ଆଉ ପ୍ରକାରେ ହୋଇଯାଏ । ଦ୍ୱିତୀୟରେ ତାଙ୍କ କଣ୍ଠସ୍ୱର । ପଢ଼ିଲେ ପଢ଼ିଲେ ମୋର ମନେ ହେଲା ଯେ, ପିଲାଦିନର ସୋନୁ ଯେଉଁ ବିକଳ ବିକଳର ଝନତ୍କାର ଶୁଣାଉଥିଲା ମୋତେ, ଯାହା ତା'ର ଖିଲଖିଲ ହସ ସାଙ୍ଗରେ ମିଶି କେଉଁ ଏକ ଝରଣା ସଙ୍ଗୀତର ଭ୍ରମ ସୃଷ୍ଟି କରୁଥିଲା (ସେ ବୟସରେ କାବ୍ୟ କବିତାରେ ଦଖଲ ନ ଥିଲେ ମଧ୍ୟ ମୋ ଅଜାଣତରେ ସୃଷ୍ଟି କରୁଥିବ ବୋଲି ମୋର ବିଶ୍ୱାସ), ଏବଂ ମୋତେ ଉତ୍‌କାଉଥିଲା, ତା'ର ଶେଷ ମୂର୍ଚ୍ଛନା ମର ହଜିଗଲାଣି କୁଆଡ଼େ । ତାଙ୍କ ହସ ଅଛି ସେମିତି ସିନା, ପୂର୍ବପରି ଖିଲଖିଲ ଅର୍ଥାତ୍ ସାବଲୀଳ, କିନ୍ତୁ ସଙ୍ଗୀତର ଧ୍ୱନି ନାହିଁ ସେଥିରେ । କିନ୍ତୁ ଆପଣ ଆଶ୍ଚର୍ଯ୍ୟ ହେବେ ଯେ, ଏଇ ଦିଲ୍ଲୀଠାରୁ କାନ୍‌ପୁର ଭିତରେ କିମ୍ବା ହୁଏତ ତା' ଆଗରୁ ମୋତେ କ୍ରମଶଃ ଭଲ ଲାଗି ଆସୁଛି ତାଙ୍କ କଣ୍ଠସ୍ୱରରେ ଥିବା ଏକ ଭିନ୍ନ ଗୁଣର ଗରିମା । ଏକ ଅପୂର୍ବ ବାଗ୍ମିକତା, ଭାବୋଚ୍ଛ୍ୱାସକୁ ଅଟକେଇ ରଖିଲା ପରି । ତରଳମତି ଇଂରେଜୀ ନଭେଲ୍ ପଢ଼ା ଯୁବକ ତାକୁ 'ହସ୍କି', ତେଣୁ 'ସେକ୍‌ସି' ବୋଲି ଭାବିପାରେ, କିନ୍ତୁ ପ୍ରବୀଣ ଅନୁଭବୀ ହୋଇଥିବା ଯୋଗୁଁ ମୁଁ ସେଥିରେ ପାଉଛି ଗମ୍ଭୀରତାର ସ୍ପର୍ଶ । ପହଞ୍ଚିଲେ ମଧ୍ୟ ପହଞ୍ଚି ନ ପାରିବାର ଭାବ । ସେତେବେଳେ ମୁଁ ତାଙ୍କୁ ଫୁଲେଇ ବୋଲି ଭାବେ ନାହିଁ, ମୋତେ ବିଶ୍ୱାସ କରନ୍ତୁ, ବରଂ ମୋର "ଇଚ୍ଛା" ହୁଏ, ଉପରୋକ୍ତ ବିଶିଷ୍ଟ ଇଚ୍ଛା, ଯାହାର ହିସାବକିତାବ ଭିନ୍ନ ।

ଏବଂ ଭଲ ଲାଗିଛି ତାଙ୍କର ଚାହା ପିଇବାର ଦୀର୍ଘସୂତ୍ରୀ ଢଙ୍ଗ, ମାଟି ଖୁରିର ଗରମ ପାଣି ମୁନ୍ଦାଏ ହେଲେ ବି ଯାଏ ଆସେ ନାହିଁ । ସତେକି ତାଙ୍କ କର୍ମକ୍ଲାନ୍ତ ଜୀବନର ଏଇ ଗୋଟିଏ ବୋଲି ବିଳାସ, ତା'କୁ ସହଜେ ସାରିଦେଇ ହେଉନାହିଁ । ଭଲ ଲାଗିଛି ତାଙ୍କର ଶାଢ଼ୀକୁ ଗୋଟେଇ ନେବାର କାଇଦା । ଭଲ ଲାଗିଛି ସେ ଯେପରିଭାବରେ ମୋ କଥାକୁ ମନଧ୍ୟାନ ସହ ଶୁଣିଲା ପରି ଦେଖାଯାଆନ୍ତି । ସତେକି ଯେକୌଣସି ମୁହୂର୍ତ୍ତରେ କେଉଁ ଅମୂଲ୍ୟ ତଥ୍ୟ ମିଳିଯିବ ତାଙ୍କୁ, ଯେହେତୁ ମୁଁ କର୍ମୀ ଫର୍ମୀ ନ ହେଲେ ମଧ୍ୟ ଜଣେ ଉଚ୍ଚଶିକ୍ଷିତ ନାଗରିକ । ବେଳେବେଳେ ମୋତେ ହସ ଲାଗେ ଯେ ଟୋକୀ ସୋନୁ ମୋତେ ପିଲାଦିନେ କିଛି କୁହାଇ ଦେଉ ନଥିଲା । ମୁଁ ପଦେ କଥା କହିଲାବେଳକୁ ସେ ଶୁଦ୍ଧ ଇଂରେଜୀର ସୁଅ ଛୁଟେଇ ତା'କୁ ଭସେଇ ବୁଡ଼େଇ ଦେଉଥିଲା । ଇଏ ବୋଧହୁଏ ତା'ର କ୍ଷତିପୂରଣ !

ତାଙ୍କ ଭାବଭଙ୍ଗୀରେ ମୋତେ ଭଲ ନ ଲାଗିବାର ଅର୍ଥାତ୍ ଅଖାଡ଼ୁଆ ଲାଗିବାର ଲକ୍ଷଣ ମଧ୍ୟ ଅନେକ ଅଛି, ମୁଁ ମନା କରୁନାହିଁ । ଯେତେବେଳେ ଏଇ କେତେ ଦିନ ତଳେ ସେ ଥିଲେ ଜନୈକା ଭଦ୍ରମହିଳା । ଅପର ବ୍ୟକ୍ତି । କିନ୍ତୁ ଦେଖିବାକୁ ହେବ ଯେ, କ୍ରମଶଃ କହିବାକୁ ଗଲେ ଆଶାତୀତ ଦ୍ରୁତ ଗତିରେ କେମିତି ସେସବୁ

ପଛରେ ପଡ଼ିଯାଉଛୁ ଏବଂ ତାଙ୍କ ବ୍ୟକ୍ତିତ୍ୱର ଅନୁକୂଳ ଅନୁରାଗୀ ଅଂଶରକ ପାଖେଇ ଆସୁଛୁ ମୋ ଆଡ଼କୁ, ସେଥିରେ ଅତୀତ ସୋନୁର ସତ୍ତା ଥାଉ ବା ନଥାଉ ।

ହେଇ ସେ ପାଖେଇ ଆସୁଛନ୍ତି । ଏବଂ ସେଇ ବାସ୍ନା । ତଥା ସେଇ ପ୍ରବହମାନ ହସ । ଗୁଏଁ ଗୁଏଁ ମୋ ଓଠରେ ହସ ଫୁଟି ଉଠୁଛି ତାଙ୍କୁ ଦେଖି ପାଇଲା ପରେ । ଇଏ ପାରମ୍ପରିକ ପ୍ରେମର ଲକ୍ଷଣ ନ ହେଲା ନାହିଁ । କିନ୍ତୁ ସ୍ୱା'କୁ କ'ଣ ମୋର କଳ୍ପିତ, ନା ନା, କଳ୍ପିତ ନୁହେଁ, ନିଷ୍ପତ୍ତି ଏବଂ ନଥିବା ଅଭିଳାଷର ସବୁଜ ପତାକା ବୋଲି କୁହାଯାଇ ପାରିବ ନାହିଁ ? ମୋର ତଥା ତାଙ୍କର ଭଲ ପାଇଁ ?

କିନ୍ତୁ···ଦେଖୁଛି ଯେ, ଦୁଇ ତିନିଜଣ ଭଦ୍ରଲୋକ ଆସୁଛନ୍ତି ତାଙ୍କ ପଛରେ । ପଛରେ ଏବଂ ସାଥିରେ । ସେମାନେ ମଧ୍ୟ ତାଙ୍କ ହସରେ ହସ ମିଳାଉଛନ୍ତି ।

ବୁଝିଲି ଯେ, ସୋନୁବେନ୍‌ଙ୍କ ଆଶା ଅନ୍ୟଥା ହୋଇ ନାହିଁ । କାନପୁର ଷ୍ଟେସନରେ ତାଙ୍କର ଭେଟ ହୋଇଛି କେତୋଟି ପୁରୁଣା ବନ୍ଧୁ ଓ ସହକର୍ମୀଙ୍କ ସାଙ୍ଗରେ । ସେହିମାନେ ହିଁ ତାଙ୍କ ସାର୍ଥକ ଜୀବନର ଲଗାଲଗି, ପାଖାପାଖି । କେତେ ପାଖରେ, ସେଇ ଜାଣନ୍ତି । ମୁଁ ନୁହେଁ କି ହୋଇପାରିବ ନାହିଁ ।

ମୁଁ କୋଉ ପ୍ରେମିକ ହୋଇଛି ଯେ, ମୋର ରାଗିବା କଥା ବୋଲି କୁହନ୍ତୁ ନାହିଁ । ମୁଁ ରାଗୁଛି ଏଇଥିପାଇଁ ଯେ, ସେ ଠକ ହୋଇଯାଉଛନ୍ତି । କେଉଁଥିପାଇଁ ସେ ଏମାନଙ୍କୁ ଏଭଳି ପ୍ରିୟ-ପରମ ବନ୍ଧୁ ବୋଲି ମଣୁଛନ୍ତି ? ଏବଂ ସତେ ଗୁହାଁଳରୁ ପାଇଛନ୍ତି ବୋଲି ହସଖୁସିରେ ଫାଟି ପଡ଼ୁଛନ୍ତି ? ସମାଜସେବାର ସହକର୍ମୀ ଘରସଂସାର ଅବା ବ୍ୟବସାୟ ଦପ୍ତରର ସହକର୍ମୀଙ୍କଠାରୁ କ'ଣ ବେଶି ଗୁଣର ? ବେଶି ଆପଣାର ? ଧର ମୋ ଡିପାର୍ଟମେଣ୍ଟର ଯେଉଁ କେହି ପୂର୍ବତନ ଅଧିକାରୀ ଅବା କର୍ମଚାରୀ କୁଟି ଯାଇଥାଆନ୍ତି ଏଠି, ତା' ହେଲେ ମୁଁ କଦାପି ଏମିତ ସେମାନଙ୍କ ଭଳିଆ ଉଚ୍ଛୁଳୁ ନ ଥାଆନ୍ତି । ତା' ଛଡ଼ା ବୟସର ଗୋଟାଏ ଭାଉ ଅଛି, ଶୁକ୍ଳ କେଶର ଗାମ୍ଭୀର୍ଯ୍ୟ, ଯାହାକୁ ଭୁଲିଯିବା ଉଚିତ ନୁହେଁ ।

ପରିଚୟ ପଞ୍ଚାଟ ସରିଗଲାଣି । ଏମାନଙ୍କ ସାଙ୍ଗରେ ମୋର କିଛି ଗପିବାକୁ ନାହିଁ । ଜଣେ କେଉଁ ଶିଶୁକଲ୍ୟାଣ ସଂସ୍ଥା ସାଙ୍ଗରେ ସଂପୃକ୍ତ, ଆଉ ଜଣେ ଆଖି ଡାକ୍ତରଖାନା ସାଙ୍ଗରେ, ଆଉକ ବୋଧହୁଏ ତଥାକଥିତ ପଢାଗମାନଙ୍କ ସାଙ୍ଗରେ । ମୁଁ ଜାଣିଛି ଏମାନଙ୍କ ଧନ୍ଦା । ଦୟାଳୁ ଦାତାମାନଙ୍କ ଟଙ୍କା ନେଇ ଦ'ପଇସା କମେଇବାର ବ୍ୟବସାୟ । ନା ନା, ସୋନୁବେନ୍, ମୁଁ ଆପଣଙ୍କ କଥା କହୁ ନାହିଁ,

ଆପଣଙ୍କ କଥା ଭିନ୍ନ । ଆପଣ ବଡ଼ଲୋକ ଘରର ଝିଅ, ତଥା ଉଚ୍ଚଶିକ୍ଷିତା । ଖାଲି ଗୋଟାଏ ଆଦର୍ଶ ପଛରେ ଧାଇଁ ଗୃହକର୍ମ ବାକର କଲେ ନାହିଁ ବାହା ସାହା ବି ହେଲେ ନାହିଁ, ମନପ୍ରାଣ ଢାଳିଦେଲେ ଏଇସବୁ କାମରେ । କିନ୍ତୁ ଏମାନେ ଆପଣଙ୍କ ପରି ନୁହନ୍ତି, ତାଙ୍କ ଚେହେରାରୁ ଜଣାପଡ଼ୁଯାଉଛି । ସେଇ ଗାନ୍ଧୀଟୋପିବାଲା ତ ଗୋଟାଏ ଅସଲ ଟାଉଟରିଆ ବୋଲି ମନେ ହେଉଛି । ଆଉ ସଙ୍ଗୀର ସୁଟ୍‌ବାଲାକୁ ତ ବକାର୍ଣ୍ଣ ଛଡ଼ା ଆଉ କିଛି କୁହାଯିବ ନାହିଁ, ନ ହେଲେ ସେ ତା'ର ପାନଖିଆ ପାଟିକୁ ଗୁଳୁଳେଇ ହେଉ ନ ଥାଆନ୍ତା । ଏମିତ, ହୋ' ହୋ' ହୋଇ ହସୁ ନ ଥାଆନ୍ତା, ଗ୍ରୁଡ ବୋତାମ ଫିଟେଇ ଦେଇ ନ ଥାଆନ୍ତା । ହଜାରେ ସହଧର୍ମିଣୀ ହେଲେ ମଧ୍ୟ ତା'ର ମନେ ରଖିବା ଉଚିତ ଯେ, ସୋଲୁବେନ୍ ଜଣେ ଭଦ୍ରମହିଳା, ଉଚ୍ଚବଂଶୀୟା ଏବଂ ସମ୍ଭ୍ରାନ୍ତ ଭଦ୍ରମହିଳା ।

ନା, ମୋତେ ଶତ୍ତ ମାଡୁଛି । କହିବ ମୋର ମୁଣ୍ଡ ବଥଉଛି । ଯିବ ଉପର ବର୍ଥରେ ଶୋଇବା ପାଇଁ । ଅନ୍ତତଃ ଆଲହାବାଦଯାଏଁ, ସେଇଠି ଏମାନେ ଓହ୍ଲେଇ ଯିବେ ବୋଲି ଆଶା କରୁଛି । ଯିବ, ଆଉ ସୋଲୁବେନ୍‌ଙ୍କୁ ଅନେକ କଥା କହିବ ମନେ ମନେ । ଅନେକ ନିଜ କଥା, ହେଲେ ତାଙ୍କର ସୁଖ ଏବଂ ସୁରକ୍ଷା ପାଇଁ । ଶୁଣିଲେ ସେ ବୁଝିବେ ଯେ, ବ୍ୟକ୍ତିଗତ ଭାବଗତ ସମ୍ପର୍କ, ଯେଉଁଥିରେ ଆବେଗ ଥାଏ, ହୁଏତ ଉଦ୍‌ବେଗ, ତାହା ହିଁ ଜୀବନର ଧନ । ନିଃସ୍ୱାର୍ଥ ସମାଜ-ସେବା ନୁହେଁ, ସ୍ୱାର୍ଥର ଭଲ ପାଇବା । ଠିକ୍ ଭଲ ପାଇବା ନ ହେଲେ ମଧ୍ୟ ସେହିଭଳି କିଛି । ଅପରିହାର୍ଯ୍ୟରେ ତାହା ହିଁ ତାଙ୍କର ପାଥେୟ ହେବା ଉଚିତ, ନ ହେଲେ ବିଗୁଣି ଠକିଯିବେ, ଏକଦମ୍ ଠକିଯିବେ··· ।

ଗୋଟାଏ ଘଟଣା ଘଟିଲା ଏଇକ୍ଷଣି—ଦେଖିଲେ ? ନା, ଆପଣ ଦେଖିପାର ନ ଥିବେ । ଦେଖିଥିଲେ ବି ତା'ର ମୂଲ୍ୟ ଠଉରେଇବା ସହଜ ନୁହେଁ । ହେଲା, କ'ଣ କି. ଉପର ବର୍ଥକୁ ଉଠିଲା ବେଳକୁ ସେ ମୋତେ ସାହାଯ୍ୟ କଲେ । ମୋର ମନା ମାନିଲେ ନାହିଁ ଏବଂ ସେହି ପ୍ରକ୍ରିୟାର ଗୋଟିଏ ମୁହୂର୍ତ୍ତରେ ଆମ ଦୁହିଁଙ୍କ ହାତ କେବଳ ଛୁଇଁଲା ନାହିଁ ପରସ୍ପରକୁ, ମୁଠେଇଲା ପରି ହେଲା । ସେଇଠୁଁ ମୋ ଦେହରେ ବିଜୁଳିର ଶିହରଣ ଖେଳିଗଲା ବୋଲି କହିଲେ ନିଶ୍ଚୟ ହସିବେ ଆପଣ । ହସିବା କଥା । କିନ୍ତୁ ମୁଁ ଯଦି କୁହେ ଯେ, ମୋର ମନେ ପଡ଼ିଗଲା, କେଉଁ ଏକ ବିଗତ ଅତୀତରେ କ୍ୟାଣ୍ଟନମେଣ୍ଟ ରୋଡ ବଙ୍ଗଳାର ପଛପଟେ ଥିବା ଗୋଟାଏ ଖାଲରୁ ବେଣୀହଲା ବାଳିକା ମୋତେ ହାତଧରି ଉଠାଇ ଆଣୁଛି, ଲୁଚକାଳି ଖେଳରେ ଜିତିଗଲା ପରି ହସୁଛି ଏବଂ ମୋତେ ମୋର ପରାଜୟ ଠିକ ଭଲ ଲାଗୁଛି, ତା'ହେଲେ କ'ଣ ଆପଣ ମୋତେ ବିଶ୍ୱାସ କରିବେ ନାହିଁ ? କହିବେ ମୋ କଳ୍ପନା ଅମଡ଼ା

ମାଡ଼ି ଯାଉଛି, ଉପସ୍ଥିତ ଉଦ୍ଦେଶ୍ୟର ପୂର୍ତ୍ତି ପାଇଁ ? ଅନ୍ତତଃ ଆପଣଙ୍କୁ ମାନିବାକୁ ହେବ ଯେ, ଅକସ୍ମାତ୍ ହାତ ମିଳେଇବାର ମୁହୂର୍ତ୍ତକୁ ବଢେଇ ପାରିଥିଲେ ମୁଁ ବିଶେଷ ଖୁସୀ ହୋଇଥାଆନ୍ତି··· ।

କିଏ କହିଲା ଯେ ନାରୀକର୍ମୀମାନଙ୍କର ହାତ ନରମ ନୁହେଁ ଏବଂ ନରମ ହାତରେ ଉଠେଇ ଆଣିବାର, ତୋଳି ଧରିବାର ଗୁଣ ଅଧିକ ନୁହେଁ ?

ଆଉ ପାଖ ଉପର ବର୍ଥରେ କେହି ନାହାନ୍ତି । ଭଲ, ମନେ ହେଉଛି, କେବଳ ଦୁଇଟି ସତ୍ତା ବିଦ୍ୟମାନ, ମୁଁ ଓ ଚଳନ୍ତା ଗାଡ଼ି । ଯଦି ଗାଡ଼ି ସବୁବେଳେ ଚାଲୁଥାଆନ୍ତା ଏମିତି, ଷ୍ଟେସନ ବୋଲି କିଛି ନ ଥାଆନ୍ତା, ଆରମ୍ଭରେ କି ଶେଷରେ କି ମଝିରେ ! ତା'ହେଲେ ବିରାମ ନ ଥାଆନ୍ତା କି ବିଚ୍ୟୁତି, ଜନ୍ମ ହେବାର ଦାରୁଣ ବିଚ୍ୟୁତି ନ ଥାଆନ୍ତା, କି ମରିଯିବାର ଦାରୁଣ ବିରାମ, କିଛି ଭାବିବାକୁ ନ ଥାଆନ୍ତା, ଯେହେତୁ ଜୀବନଟା ଖାଲି ଚାଲୁଛି, ଚାଲିଥିବ, ଚାଲୁଛି, ଚାଲିଥିବ··· !

ରହନ୍ତୁ, ରହନ୍ତୁ, ପଳେଇ ଯାଆନ୍ତୁ ନାହିଁ । ମୁଁ ନିଶ୍ଚୟ ଭାବିବ ଯୋନୁବେନ୍‌ଙ୍କ କଥା ଓ ଆପଣ ତା'କୁ ଶୁଣିବେ । ମୋ ପିଲାପିଲାଙ୍କ କଥା ନୁହେଁ । ଦେଶ ବିଦେଶର ସମ୍ବାଦ, ରାଜନୀତି, ବୋଫର୍ସ ମାମଲା, ସତୀଦାହ ଓ ଶଙ୍କରାଚାର୍ଯ୍ୟ ଏସବୁ କଥା ପରେ । ଏବଂ ଜୀବନଦର୍ଶନକୁ ଏମିତି ଗୋଳେଇପୋଳେଇ ନୂଆ ବାକ୍ୟଟିଏ ଖଞ୍ଜିବା, ନୂଆ ଛବିଟିଏ ଅଙ୍କିବା (ମୋର ସବୁଠାରୁ ପ୍ରିୟ ଖେଳ, ଯେହେତୁ ମୁଁ ଅନ୍ୟତମ ଇଣ୍ଟେଲେକ୍‌ଚୁଆଲ), ଇଏ ବି ଥାଉ ସେତିକିରେ । ଏଇକ୍ଷଣି ଖାଲି ଯୋନୁବେନ, ଯୋନୁ ମେହେତା, ଯୋନୁ, ଏବଂ ତାଙ୍କ ସାଙ୍ଗରେ ଗଢ଼ିଉଠୁଥିବା ଉପରୋକ୍ତ ଅଭିନବ ସମ୍ପର୍କ । ହେଇ ହେଉଛି ମଜାକଥା ଆପଣଙ୍କ ପାଇଁ, ନ ହେଲେ ଆପଣ ବୋର୍ ହୋଇଯିବେ । ମୁଁ ଜାଣିଛି । କିନ୍ତୁ ମୁଁ ପୁଣି ଥରେ ଚେତାଇ ଦେଉଛି ଯେ ଆଲିଙ୍ଗନ ପଛକୁ ଆଉ କିଛି ରହିବ ନାହିଁ । ହୁଏତ ପୂର୍ଣ୍ଣଚ୍ଛେଦ ହିସାବରେ ଗୋଟାଏ ଚୁମ୍ବନ । ବାସ୍, ସେତିକି । ସେ ବିଷୟରେ ମୁଁ ଦୃଢ଼ନିଶ୍ଚୟ । ଅଇଁଷିଆ ସ୍ୱାଦୁ ମିଳିବ ନାହିଁ ଆପଣଙ୍କୁ, କି ଆପଣ ମୋତେ ବଦ୍‌ନାମ କରିପାରିବେ ନାହିଁ··· ସରି !

କାହିଁକି ମୋର ଏହି ପ୍ରକାର ନିର୍ଣ୍ଣୟ, ନିଜ ପ୍ରତି ଏହି କଠୋର ନିର୍ଦ୍ଦେଶ, ଜାଣନ୍ତି ? କାହିଁକିନା ପିଲାଦିନର ରାଜୁ ପିଲାଦିନର ଯୋନୁକୁ ନେଇ କେବଳ ଏଇଆ ଏବଂ ଏତିକି କରିବାକୁ ଚାହିଁଥିଲା । ତା'ଠୁଁ ଅଧିକ କିଛି କରିହେବ, କଲେ ଅଧିକ ସୁଖପ୍ରଦ ହେବ ବୋଲି ତା'ର ମୁଣ୍ଡରେ ପଶି ନ ଥିଲା । ବେଳେ ବେଳେ ରାଗିଯାଇ, ବେଳେବେଳେ ବିକଳ ହୋଇ ଖାଲି ଏଇ କାର୍ଯ୍ୟଟିର ସୁଖ ଲୋଡ଼ୁଥିଲା ସେ ମୋର

ମନେ ଅଛି, ଯେଉଁଦିନ ତାଙ୍କ ଘରକୁ ଯାଇଥିଲି ଶେଷଥର ପାଇଁ ଦେଖିଲି ତାଙ୍କ ଜିନଷପତ୍ର ବନ୍ଧା ହେଉଛି, ଆସନ୍ତାକାଲିକୁ ସୋନୁ ନ ଥିବ, ଏବଂ ଏ ଘର ଶୂନ୍ୟ ହୋଇଯିବ ମୋ ପାଇଁ । ସେଇଠୁଁ ସୋନୁ ମୋତେ ଡାକିଲା ଖେଳିବା ପାଇଁ, ଆଉ ମୁଁ ରାଗିଲି ତା' ଉପରେ, ଖେଳିଲି, ହେଲେ ପ୍ରତି ମୁହୂର୍ତ୍ତରେ ରାଗିଲି ଯେ, ସେ ପଳେଇ ଯାଉଛି, ଶେଷକୁ ବିକଳ ହେଲି, ଦୁଇ କିସମର ଆବେଗ ମିଶିଯାଇ ଏକ ପ୍ରଚଣ୍ଡ ରୂପ ଧାରଣ କଲା, ଏବଂ ମୋ ଦେହରୁ ଝାଳ ବୋହିଗଲା ·· । ହେଲେ ସେତିକି ବି ମିଳିଲା ନାହିଁ ତାଙ୍କୁ । ରାଜୁ ଓରଫ୍ ରାଜେନ୍ଦ୍ର ଚୌଧୁରୀର ପ୍ରଥମ ବିଫଳତା ।

ଆଜି ମୁଁ ସେହି ବିଫଳତାଟିକୁ ବାତିଲ କରିବାକୁ ଚାହେଁ । ବୁଝିଲେ ଏଥର ? ଦେଖେଇ ଦେବାକୁ ଚାହେଁ ଯେ, ଗୋଟାଏ କିଛି କଳ୍ପିତ ନିରୂପିତ ସାଧ ମେଣ୍ଟିଯିବ ମୋର, ଯେଉଁପରି ରୂପ ଦେଇ ଗଢ଼ିଥିଲି ତା'କୁ । ମୁଁ ଏତେ ଅପାରଗ ନୁହେଁ !

ମୋ ଗାଡ଼ି ତା'ର ଶେଷ ଷ୍ଟେସନରେ ପହୁଞ୍ଚିବା ପୂର୍ବରୁ କ'ଣ ମୋର ପିଲାଦିନଆ ସାମାନ୍ୟତମ ଇଚ୍ଛା ପୂରଣ ହୋଇପାରିବ ନାହିଁ ? ଆଜ୍ଞା, ପିଲାଦିନ, ଟୋକାଦିନ, ବୁଢ଼ାଦିନ, ସବୁ ତ ସେଇ ଜୀବନ ଜଣକର ଅଂଶବିଶେଷ । ତେଣୁ ଜୀବନ ଖୁସୀ ହେବ ନାହିଁ କେମିତି ? ଅବଶ୍ୟ ଖୁସୀ ହେବ ଏବଂ ଶାନ୍ତ ହେବ । ନା ଆପଣ ଭାବୁଛନ୍ତି ଯେ, ଗୋପନରେ ସିଏ ବି ମୋତେ ହସି ଉଡ଼େଇଦେବ ?

ମୋଟେ ନୁହେଁ । ମୁଁ ମୋ ଜୀବନକୁ ଜାଣେ । ତା'ର ବିଚାରଧାରା ଅତ୍ୟନ୍ତ ସୂକ୍ଷ୍ମ, ମାର୍ମିକ, କାବ୍ୟିକ । ଖାଲି ପ୍ରଶ୍ନ ହେଉଛି ଯେ, ମୁଁ ଯେତେବେଳେ ସୋନୁବେନଙ୍କୁ କୁଣ୍ଢେଇ ପକେଇବି, ସେତେବେଳେ କ'ଣ ସେ କାବା ହୋଇ ମୋତେ ଠେଲି ଦେବେ ଦୂରକୁ ? ଚିତ୍କାର ନ କଲେ ମଧ୍ୟ ନାକ ଟେକି ଭ୍ରୂରୁ କୁଞ୍ଚେଇ ଅନେଇବେ ମୋ ଆଡ଼କୁ, କେଉଁ ଏକ କୀଟର କୀଟତ୍ୱକୁ ଚିହ୍ନିଲି ପରି ?

ଅସମ୍ଭବ । ମୁଁ ଅବଶ୍ୟ ତାଙ୍କ ପରି ନିଛକ୍ ଆଶାବାଦୀ ନୁହେଁ । ସ୍ୱଭାବତଃ ଏତେ ବର୍ଷ ରାଜସେବା କଲା ପରେ ମୁଁ ମଣିଷ ଚରିତ୍ରକୁ ସହଜେ ପାସ୍ କରେଇ ଦେଇପାରେ ନାହିଁ । ତଥାପି ମୁଁ ଯେତେ ଭାବି ଦେଖୁଛି, ପୁନଃପରିଚୟର ପ୍ରତ୍ୟେକ ଛନ୍ଦରେ ସେ ଯେଉଁଭଳି ପ୍ରତିକ୍ରିୟାର ନମୁନା ଦେଖାଇଛନ୍ତି ମୋତେ, ସେଥିରୁ ମୋର ଧାରଣା ହେଉଛି (ଉଦ୍‌ବେଗଜନିତ ଛାତି ଧଡ଼ଧଡ଼ ଗୋଟାଏ ଯାନ୍ତ୍ରିକ ପ୍ରକ୍ରିୟା, ସେଥିକୁ ମୋର ହାତ ନାହିଁ) ଯେ, ମୁଁ ତାଙ୍କୁ କୁଣ୍ଢେଇ ପକେଇଲେ ସେ ହୁଏତ କାବା ହେବେ, କିନ୍ତୁ ନାକ ଟେକିବେ ନାହିଁ କି ଭ୍ରୂରୁ କୁଞ୍ଚେଇବେ ନାହିଁ । ଅପରନ୍ତୁ, ଆଶ୍ଚର୍ଯ୍ୟ

ରାଗ ଉତୁରିଗଲା ପରେ ସେ ଗୋଟାଏ ବିରାଟ ହସର ହାବୁକା ଛାଡ଼ିଦେବେ, ହୁଏତ ମୋ ପ୍ରବୀଣ ଗାଲକୁ ଆଉଁସି ଦେବେ, କିମ୍ବା ସରୁ ଚଟକଣିଟିଏ ମାରି 'ଦୁଷ୍ଟ' ବୋଲି କହିବେ, କିମ୍ବା…

ଅନ୍ତତଃ ତାଙ୍କ ଉଦାରପଣିଆ ମୋତେ କ୍ଷମା କରିଦେବ, ଯେତେବେଳେ ମୁଁ ତାଙ୍କୁ କହିବି ଯେ, ଇଏ ଥିଲା ମୋ ପିଲାଦିନର ସାଧ ।

ତାଙ୍କ ପ୍ରତିଦ୍ୱନ୍ଦ୍ୱିତାର ସର୍ବପ୍ରଥମ ଓ ସର୍ବଶ୍ରେଷ୍ଠ ନମୁନା କଥା କହୁଛି ଶୁଣନ୍ତୁ । ଯେତେବେଳେ ପ୍ରଥମେ ତାଙ୍କ ସାଙ୍ଗରେ ଦେଖା ହେଲା (ମାନେ ଏଇ ଉତ୍ତର ଜୀବନରେ) ଦିଲ୍ଲୀର ଗୋଟିଏ ଆର୍ଟ ଏକ୍‌ଜିବିସନରେ, ସେ ଗୋଟିଏ ଚିତ୍ରପଟ ସାମ୍ନାରେ ଏତେ ସମୟଯାଏଁ ଛିଡ଼ା ହୋଇ ରହିଥିଲେ ଯେ ମୋର କୌତୂହଳ ଜାଗ୍ରତ ହେଲା । ମୁଁ ପାଖକୁ ଯାଇ ଦେଖିଲି ଯେ, ଛବିରେ ସାନ ଝିଅଟିଏ ବନ୍ଧି ସିଲଟକୁ ଗ୍ଲାନିରେ ଚିପିଧରି ହସୁଛି, ହେଲେ ତା' ଆଖିରେ ଲୁହ, ଏବଂ ତା' ପଛରେ ମହରିଆ ବସ୍ତିର ଯେତେକ ନାଳନର୍ଦ୍ଦମା ତଥା ମଣିଷ ଓ ଜନ୍ତୁଙ୍କ ସାଲୁବାଲୁ । ପାରମ୍ପରିକ ଚିତ୍ରକଳା, ଯାହାର ଅର୍ଥ ସହଜେ ବୁଝା ପଡ଼ିଯାଉଛି । ତା'ହେଲେ ଭଦ୍ରମହିଳା ସେଥିରେ ଏମିତି ଡୁବି ଯାଇଛନ୍ତି କାହିଁକି ? ସତେକି ତାଙ୍କ ଦୟାର ଖଣ୍ଡି ଉଛୁଳି ପଡ଼ୁଛି। ଝିଅଟିକୁ "କିଛି" ନ ଦେବା ଯାଏଁ ସେ ସେଠୁଁ ଉଠିବେ ନାହିଁ ! ମୁଁ ତାଙ୍କ ଶଠତାକୁ ବରଦାସ୍ତ କରିପାରିଲି ନାହିଁ । ମୋର ବିଦ୍ୱେଷଭାଣ୍ଡ ବି ଭରିଗଲା ଓ ଉତ୍ତର ପଡ଼ିଲା ଠିକ୍ ତା' ନୁହେଁ, କିନ୍ତୁ ମୋ ପାଟିରୁ ବାହାରିଗଲା—

"କ'ଣ ଚିହ୍ନିଛନ୍ତି ଏ ଝିଅକୁ ?"

"ହଁ ।" ସେ କହିଲେ ସହଜ ସ୍ୱାଭାବିକ କଣ୍ଠରେ । ତାଙ୍କର ନିଜସ୍ୱ ଖିଲ ଖିଲ ହସ ନୁହେଁ, ପ୍ରଶ୍ନୋତ୍ତରର ଗୁରୁତ୍ୱକୁ ଖସେଇ ଦେଲା ପରି ଈଷତ୍ ହସ । ସତେକି ଇଏ ଗୋଟାଏ ସାମାନ୍ୟ ଘରୋଇ ମାମଲା, ବର୍ତ୍ତମାନ ଅନ୍ୟ କଥା ପଡ଼ୁ । ତା'ପରେ ଅବଶ୍ୟ ପରିଚୟ ସୂତ୍ରରେ ସେ ଜାଣିଲେ ଯେ, ମୁଁ ଓଡ଼ିଶାର ଲୋକ, ସେଇଠୁଁ ଜାଣିଲେ ଯେ, ମୁଁ କେବଳ ଜନୈକ ରାଜେନ୍ଦ୍ର ଚୌଧୁରୀ ନୁହେଁ, ମୁଁ ସେଇ ରାଜୁ, ଏବଂ ମୁଁ ଜାଣିଲି ଯେ, ସେ ଜନୈକା ଗୁଜରାଟୀ ମହିଳା ସୁହାସିନୀ ମେହେତା ନୁହଁନ୍ତି, ସେ ହେଉଛନ୍ତି ସେଇ ସୋନୁ, ତହୁଁ ଆମେ ବାଲ୍ୟସ୍ମୃତି ପ୍ରତି ଗଦ୍‌ଗଦ ହୋଇ ଉଠିଲୁ, ପରସ୍ପରକୁ ଚାହା ଖାଇବା ପାଇଁ ନିମନ୍ତ୍ରଣ କଲୁ ଇତ୍ୟାଦି । କିନ୍ତୁ ବିଶ୍ଳେଷଣପୂର୍ବକ ଟିପି ରଖିବା କଥା ଯେ, ସେ ମୋର ପ୍ରଗଲ୍‌ଭ ପ୍ରଶ୍ନରେ ରାଗିଲେ ନାହିଁ, କି ବିଚଳିତ ହେବାର କୌଣସି ଲକ୍ଷଣ ଦେଖେଇଲେ ନାହିଁ । ଦ୍ୱିତୀୟରେ ସେ ବାହାଦୁରି ବି ନେଲେ ନାହିଁ ଯେ ସେ ପ୍ରକୃତରେ ସେଇ ଝିଅକୁ ଜାଣନ୍ତି,

ବମ୍ବେର ଅନ୍ୟତମ ବସ୍ତିର ଏଇ ଅନ୍ୟତମ ଫୁଲଟିଏ ତାଙ୍କର ଯୋଗୁଁ ଫୁଟି ଉଠିଛି ଓ ଶିଳ୍ପୀର ଦୃଷ୍ଟି ଆକର୍ଷଣ କରୁଛି, କାହିଁକନା ସେ ହେଉଛନ୍ତି ସୋନୁବେନ ମେହେତା, ସୁପରିଚିତା ସମାଜସେବିକା, ବିଭିନ୍ନ ଆଞ୍ଚଳିକ ଏବଂ ରାଷ୍ଟ୍ରୀୟ ପୁରସ୍କାରରେ ସମ୍ମାନିତା, ଏବଂ ସୁହାସିନୀ ତାଙ୍କର ଅଙ୍କାତ ସରକାରୀ ନାଆଁ । ତାଙ୍କ ସାଙ୍ଗରେ ପରିଚୟ ହେବାର ଅନେକ ଦିନ ପରେ, ପୁଣି ଖୋଲା ତାଡ଼ ପଗୃଣିଲା ପରେ ଯାଇ ଜାଣିଲି ଏସବୁ କଥା । ବୁଝିଲି ଯେ ସେ ତାଙ୍କ ଖ୍ୟାତିକୁ ଲୁଚେଇଲେ ମୋ ଆଗରେ । ଏଭଳି ଜଣେ ସ୍ଥିତପ୍ରଜ୍ଞ, ତଥା ବନସ୍ପ୍ରୀ, ତଥା ହାସ୍ୟମୟୀଙ୍କୁ କୁଣ୍ଢେଇ ପକେଇଲେ କିଛି ଗୋଟାଏ ଅଘଟଣ ଘଟିବ, ଏଭଳି ଆଶଙ୍କା ଅମୂଳକ ନୁହେଁ ତ ଆଉ କଅଣ ?

ଦେଖନ୍ତୁ, ବଲ୍ ପୁଣି କେମିତି ଆସି ପଡ଼ିଲାଣି ମୋ କୋର୍ଟରେ । ମୋତେ ହିଁ ଆଗେଇବାକୁ ପଡ଼ିବ । ଯେତେ ଶୀଘ୍ର ପାରେ । ଦୀର୍ଘ ସାତ ଆଠଦିନ ବାକି ଅଛି ବୋଲି କହିଲେ ଚଳିବ ନାହିଁ । ଟ୍ରେନ୍‌ରେ ଚଢ଼ିଲା ବେଳଠୁଁ ଇଚ୍ଛା ପ୍ରବଳ ହେଲାଣି ସିନା, ତା'ର ମଞ୍ଜି ପୋତା ହେଲାଣି କେବେଠୁଁ । ଆବେଗ ବି ପୁରୁଣା ହୋଇଯାଇପାରେ, ଥକିଯାଇପାରେ । ନାଇଁ ନାଇଁ, ତା' ହେବ ନାହିଁ । ଆଖି ବଢ଼େଇବାକୁ ପଡ଼ିବ ! ନିଜ ଗଢ଼ା ଆବେଗର ଦମକୁ ଗ୍ରାଣ୍ଟ ମାରି ଦୌଡ଼େଇବାକୁ ପଡ଼ିବ । ଯେମିତିକି କ୍ଲାଇମାକ୍‌ସ, ଅର୍ଥାତ୍ ଆଲିଙ୍ଗନର ଚମତ୍କାର ଆସିଯିବ ଆପେ ଆପେ, ହୁଏତ ଏଇ ଯାତ୍ରା ପଥରେ, କମ୍ପାର୍ଟମେଣ୍ଟରେ କେହି ନ ଥିବେ ଯେତେବେଳେ··· ।

ତେଣୁ ମୁଁ କ'ଣ ଠିକ୍ କରୁଛି ଜାଣନ୍ତି ? ମାରି ଟୋଳି ମୋର ଏଇ ଇଚ୍ଛା ଭିତରେ 'କ'ଣ ଅଛି, କେତେ ଅଛି'ର ବିଗୃର । ଅଭିଳଷିତ କ୍ଲାଇମାକ୍‌ସକୁ ବାଟ କଢ଼େଇବାର ଏକମାତ୍ର ଚରିତ୍ରଗତ ଅସ୍ତ୍ର—କାମନା, ଦୈହିକ କାମନା । ଅନ୍ୟ ଉପାୟ ନାହିଁ ।

ବେଶ୍ । ଏଣିକି ମୋ ଚେତନା ଭିତରକୁ ଆସନ୍ତୁ ନାହିଁ ଆପଣ । କାହିଁକନା ଇଏ ହେଉଛି କାମନାକୁ ବଢ଼େଇବାର କାରସାଦି, ଯୌନତାର ଗୋପନୀୟ ଝଲକ, ଫ୍ୟାଣ୍ଟାସି, ଅଶ୍ଳୀଳ ସ୍ୱପ୍ନ—ଦୁଃସ୍ୱପ୍ନର ଖେଳ···।

ନାଃ ! ପାରିବି ନାହିଁ । ଝୁଣ୍ଟୁଛି, ଖାଲି ଝୁଣ୍ଟୁଛି ମୁଁ । ଏବଂ କଷ୍ଟ ହେଉଛି । ହାମୁଡ଼ି ପଡ଼ି ମାଟିରେ ନାକ ଘଷିବାର ଗ୍ଲାନିମାନିଆ କଷ୍ଟ । ସେଇଠୁଁ ରାଗ ଆସୁଛି ଜୀବନ ଉପରେ । ମୁଁ ଏମିତି କିଛି ଦୋଷ କରି ନାହିଁ ଯେ ଏଭଳି ଶାସ୍ତି ପାଇବାକୁ ଥିଲି !

ଏବଂ ତାଙ୍କ ଉପରେ । ମୋର ଛକ୍କଡ଼ା ସାଙ୍ଗରେ ମିଶି ଯାଉଛି ତଳ ବର୍ଥରୁ ଉଠୁଥିବା ହାସ୍ୟରୋଳ । ଏତେ ଆନନ୍ଦ ! ପ୍ରକୃତ ପକ୍ଷେ ଆପଣ ବଡ଼ ହୋଇପାରିଲେ ନାହିଁ ସୋନୁବେନ୍ । ସେଇ ସୋନୁ ହୋଇ ରହି ଯାଇଛନ୍ତି ।

ଆହ୍ଲାବାଦ ଆସିଗଲାଣି । ହଁ, ସେମାନେ ବି ପିବାକୁ ବସିଲେଣି । ଏଥର ଓହ୍ଲେଇଲେ ହେବ ତଳକୁ ।···ଆରେ ଇଏ କ'ଣ ? 'ହ୍ୟାଲୋ ମିସ୍ ମେହେତା, ଗୁଡ଼୍ ଇଭ୍‌ନିଙ୍ଗ୍' କହି ସୁଟ୍‌ବୁଟ୍ ପିନ୍ଧା ଭଦ୍ରଲୋକଟିଏ ଆସିଗଲେଣି କୁଆଡ଼ୁ । ମନେ ହେଉଛି ଏମାନେ ଗୋଟାଏ ଷଡ଼ଯନ୍ତ୍ର ଚଳେଇଛନ୍ତି ମୋର ଶୁଳୁଟ ଦେଖିବେ ବୋଲି । ଠିକ୍ ଅଛି । ସେମିତି କଥାକୁ ମୁଁ ମୋଟେ ଓହ୍ଲେଇବି ନାହିଁ ତଳକୁ । ଖାଇବି ନାହିଁ କି ପିଇବି ନାହିଁ କି ··ଶୋଇଯିବି କନ୍ଦରେ । କାଲିକୁ ଆଉ ଗୋଟିଏ ଦିନ । ସକାଳ ।

× × ସକାଳ ହୋଇଗଲାଣି । ଗାଡ଼ି ଦକ୍ଷିଣକୁ ଖସି ଆସିବଣି ଏଇକ୍ଷଣି । ପଶ୍ଚିମବଙ୍ଗ, କହିବାକୁ ଗଲେ ଅଧା-ଓଡ଼ିଶା ମେଦିନୀପୁର ଭିତର ଦେଇ ଗ୍ଳଲିଥିବ । ତା'ପରେ ଓଡ଼ିଶା ! ମୁଁ ନିଜକୁ ଏତେ ସ୍ୱଦେଶପ୍ରେମୀ ବୋଲି ଭାବି ନ ଥିଲି । କିନ୍ତୁ ହାଇ ମାରିବା ପରେ ପରେ ମୋର ସିଟି ବଜେଇବାକୁ ଇଚ୍ଛା ହେଉଛି । ଇଏ ଖାଲି ମୋର ଓଡ଼ିଶା ନୁହେଁ, ତୁମର ବି—ବୁଝିଲି ସୋନୁ ?

ଦେଖିଲେ ତ ? ଦେଖିଲେ ତ ? ଗ୍ଳଏଁ ଗ୍ଳଏଁ କେମିତି ମୋର ସମ୍ବୋଧନ ବଦଳି ଯାଉଛି ? ମନର ଆଳାପ ତୁଣ୍ଡକୁ ଆସିଯିବ ଏଇକ୍ଷଣି, ଅପେକ୍ଷା କରନ୍ତୁ । ଆଜି ଏଇ ସକାଳେ । କାହିଁକିନା ଆଜି ମୁଁ ଉତ୍‌ଫୁଲ୍ଲ । କେଜାଣି କାହିଁକି ମୋର ମନେ ହେଉଚି ଯେ ଉଦ୍‌ବେଗର ମିଆଦ କଟିଗଲାଣି (ଏବଂ କାଲି ରାତିର ଅପଚେଷ୍ଟା ମନେ ପଡ଼ିଲାରୁ ଯାହା ଲାଜ ଲାଗୁଛି ନା···), ଏଣିକି ଚିନ୍ତା ନାହିଁ । ସବୁ ଠିକ୍ ହୋଇଯିବ ।

କମ୍ପାର୍ଟମେଣ୍ଟରେ ଆମ ଦୁଇଜଣଙ୍କ ଛଡ଼ା ଆଉ କେହି ନାହାନ୍ତି ଏଇକ୍ଷଣି । ଉତ୍ତମ । ଏଥର ଲକ୍ଷ୍ୟ କରନ୍ତୁ ମୋତେ, ମୋର ସାହସୀ, ହେଲେ ଭଦ୍ରୋଚିତ ଉଦ୍ୟମ, କ୍ଲାଇମାକ୍ସ ଯାଏଁ ।

ସୋନୁବେନ ଚୁପ୍‌ଚାପ୍ ବସି ରହି ଅନେଇଛନ୍ତି ବାହାରକୁ । ଦୃଶ୍ୟ ଦେଖୁଛନ୍ତି ।

ସୁପ୍ରଭାତ ଜଣାଇ ମୁଁ କ୍ଷମା ମାଗିନେଲି ଯେ, କାଲି ରାତିରେ ମୁଁ ଏମିତି କଡ଼ଛଡ଼ା ଦେଇ ଶୋଇରହିଲି ଉପର ବର୍ଥରେ । ଖାଇବାକୁ ବି' ଆସିଲି ନାହିଁ ।

ଉତ୍ତରରେ ସେ ସନ୍ଦେହ ଭଙ୍ଗୀରେ କହିଲେ, "ବର୍ତ୍ତମାନ ଆପଣଙ୍କ ଦେହ ଭଲ ଅଛି ତ ?"

"ହଁ, ଧନ୍ୟବାଦ । କିନ୍ତୁ ମୋତେ ଆପଣ ନ କହି ତୁମେ କହିଲେ ଚଳନ୍ତା ନାହିଁ ? ନା ତୁମ ପାଇଁ ସ୍ୱାମୀର ଚିକିତ୍ସା କରି ସଂଜ୍ଞା ହଜିଗଲାଣି ?"

ତାଙ୍କର ସ୍ମିତହାସ୍ୟଟି ଠିକଏ କଡ଼ି ଗଲା କି କମିଗଲା କହିପାରିବି ନାହିଁ । କିନ୍ତୁ ତା'ର ଗୁଣ ବଦଳିଗଲା । ଚହଳପଣରେ ଥିବା ସେଇ ସାନ ଝିଅଟିର ହସ ପରି । ଆଖିରେ ଲୁହ ନାହିଁ ସିନା, ଗୁହାରି କହୁଛି—ଲୁହ ଥିଲେ କେତେ ନଥିଲେ କେତେ !

ଆଃ ! ଇଏ କ'ଣ ହେଲା ? ଏଡ଼େ ସୁନ୍ଦର ସକାଳୁଟାରେ ଇଏ କି ଭଙ୍ଗୀ ? ଇଏ କି ଭାବ ? କହିବା ବାହୁଲ୍ୟ ଯେ, ମୋର ଉତ୍ସାହ ତେଜି ଉଠିଲା ବେଳକୁ ତାଙ୍କର ଏହି ପ୍ରକାର ଅସହଯୋଗ ମୋତେ ମୋଟେ ଭଲ ଲାଗିଲା ନାହିଁ । କିନ୍ତୁ ମୁଁ ତାଙ୍କ ଉପରେ ଚଢ଼ି ଉଠି ପାରିଲି ନାହିଁ । ବରଂ ମୋତେ ଭୟ ଲାଗିଲା ଯେ, ତାଙ୍କ ଆଖି ଦୁଇଟା ଗ୍ଲେଟ ନ ହୋଇ ବଡ଼ ହୋଇଥିଲେ (ବୁଝି ପାରୁଥିବେ ଯେ ଏଇଥିପାଇଁ ତାଙ୍କ ଚେହେରାକୁ ଚିହ୍ନେଇଲା ବେଳେ ମୁଁ ତାଙ୍କ ଆଖିର ଉଲ୍ଲେଖ କରି ନ ଥିଲି), ମୁଁ ସେଥିର ଭରା ବିଷାଦ, ହୁଏତ ଲହଡ଼ି ମାରୁଥିବା ବିଷାଦରେ ଧସି ଯାଇଥାଆନ୍ତି ଏବଂ ମୋର ସବୁ ଉଦ୍ୟମ ପଣ୍ଡ ହୋଇଯାଇଥାଆନ୍ତା । ଏଇ ଭଲ । ବର୍ତ୍ତମାନ ମୁଁ ନିଶ୍ଚୟ ତାଙ୍କ ଭାବାନ୍ତରକୁ ସମ୍ଭାଳି ନେଇ ପାରିବି । ତାଙ୍କୁ ବାଗକୁ ନେଇ ଆସି ପାରିବି । ଧୀରେ ସୁସ୍ଥେ··· ।

ହଉ, ମୁଁ ତୁମର ନିରୁତ୍ତରତାକୁ ଗ୍ରହଣ କରିବି । ତା'ର କାରଣ କ'ଣ ପଚାରିବି ନାହିଁ । ତୁମକୁ ଅଡୁଆରେ ପକେଇବି ନାହିଁ । କିନ୍ତୁ···କିନ୍ତୁ···କାହିଁକି ଏ ବିଷାଦ ? ଗତକାଲିର ନାହିଁନଥିବା ଆନନ୍ଦ କ'ଣ ଏଇ ଘଡ଼ିଟା ଭିତରେ ଉଡ଼ି ପଳେଇଗଲା ? ତା'ଛଡ଼ା ଯେଉଁ ଶ୍ୟାମଳ ପୃଥିବୀକୁ ଅନେଇ ରହିଥିଲି ମୁଁ ଆସିବା ଆଗରୁ (ଏବଂ ପୁଣି ଅନେଇ ରହିଛ) ସେଥିରୁ କିଛି ପାଉ ନାହଁ ? ନାସ୍ତିଭାବ, ଅନ୍ତତଃ ପ୍ରାଣୀଭାବର ରୋମାଞ୍ଚ ?

ତୁମର ଶୁଖିଲା ଗୁଜରାଟ, ମହାରାଷ୍ଟ୍ର, କହିବାକୁ ଗଲେ ସାରା ଉତ୍ତରଭାରତ ପରେ ଏଇ ନୂଆ ମୌସୁମୀର ପୂର୍ବାଞ୍ଚଳଟି ଭଲ ଲାଗୁ ନାହିଁ ତୁମକୁ ? ଆହୁରି ଅଛି । ଶ୍ୟାମଳିମା ଆହୁରି ଗ୍ଲଇ ହୋଇଢିବ, ଝଳି ଉଠିବ, ଆଉ କିଛି ଦୂର ଗଲେ । ଏବଂ ଆହୁରି ସାନ ସାନ ଲୋକେ, ନେଳିଆ ଲୁଙ୍ଗି କଷ୍ଟାଶାଢ଼ି ପିନ୍ଧା ପ୍ରାଣୀମାନେ ଉଙ୍କି ମାରିବେ ଶ୍ୟାମ-ଘନ ଭିତରୁ । ପୁଣି ଦେଖ ଏଇ ଶ୍ୟାମରେ କେତେ ରଙ୍ଗ—

କୃଷ୍ଣଶ୍ୟାମ, ସବୁଜଶ୍ୟାମ, ହରିତଶ୍ୟାମ ଇତ୍ୟାଦି ଇତ୍ୟାଦି ଏକାଠି ହୋଇଛି, ହେଲେ ବାରି ହୋଇଯାଉଛି । ଗଛର ପତର, ଭୂଇଁର ଘାସ, ପାଣିର ଦଳ, ଖେତର ଧାନ··· ପୁଣି ତାଙ୍କୁ ଚହ୍ଲେଇ ଦେଉଥିବା ଚରୁଥିବା ଚଢ଼େଇ, ତାଙ୍କୁ ଚହ୍ଲେଇ ଦେଉଥିବା ସଜଉଥିବା କଇଁଫୁଲ, ଆଉ ତାଙ୍କ ସାଙ୍ଗରେ ଲଗି ପଡ଼ୁଥିବା ମଧୁରିଆ ମୁରୁକୁଟିଆ ମଣିଷ । ଏବଂ ସବୁରି ଉପରେ ନୂଆ ମୌସୁମୀର ମେଘ ତାର ଅଧିକାର ଜମଉଛି, ପ୍ରେମିକ ଅବା କର୍ତ୍ତୃପକ୍ଷ ପରି ।

ଆହୁରି ଅଛି ସୋନୁ, ଓଡ଼ିଶାକୁ ଆସିଲରୁ ଦେଖିବ ଏଇ ଶ୍ୟାମୋତ୍ସବ କେମିତି ଆହୁରି ସରସ, ସଜଳ, ଅନ୍ତରଙ୍ଗ ହୋଇ ଉଠିଛି । ସତେକି ଖାସ୍ ତୁମକୁ ହିଁ ଡାକୁଛି । ସେଣିକି କାଁ ଭାଁ ନାଲି ପତାକା ବି ଦେଖିବ ନାହିଁ । ହଁ, ହୁଏତ ତା'କୁ ଉଡ଼ିବାର ଦେଖିବ କେଉଁ କୁଞ୍ଜବନ ଭିତରୁ, ଗହନ ଶ୍ୟାମରେ ଲୁଚି ଯାଇଥିବା କେଉଁ ମନ୍ଦିରର ଚୂଡ଼ା ଉପରୁ···ମଲା, ମୁଁ ତୁମକୁ କ'ଣ କହୁଛି ମ ? ତୁମେ କ'ଣ ଦେଖିନାହଁ ନା ଜାଣିନାହଁ ? ବରଂ ତୁମର ବାଲ୍ୟସ୍ମୃତି ଆହୁରି କେତେ ଦେଖା ଅଦେଖାର ଲୋଭ ଦେଖାଉଥିବ ଆଉ ତୁମର ତର ସହୁ ନ ଥିବ··· ।

"ରାଜୁବାବୁ—।"

( ମୋତେ ରାଜୁ ଡାକ ବୋଲି ଛଆରବାକୁ ସମୟ ପାଇଲ କେଉଁଠୁ ? )

"ରାଜୁବାବୁ—ଗୋଟିଏ ସରୁ ରୁପେଲି ନଈ । ନଈ ପଛକୁ ଶ୍ମଶାନ । କିନ୍ତୁ ଥୁଣ୍ଟା ଶ୍ମଶାନ ନୁହେଁ, ନଈ ବାଲିରୁ ଲମ୍ବି ଯାଇଥିବା ବନ, ହାଲୁକା ବନ ଭିତରେ ଗ୍ରେଟ ବଡ଼ ସମାଧି, ସେମାନେ ଡାକୁଛନ୍ତି ତୁମକୁ ଟିକିଏ ବସିବାକୁ ତାଙ୍କ ପାଖରେ । ଚଳନ୍ତା ଟ୍ରେନରୁ ଖସି ଆସି ଟିକିଏ ବସିବାକୁ ତାଙ୍କ ସାଙ୍ଗରେ । ଜୀରବରେ । ମନେ ଅଛି ?"

"ଏଁ ?"

"ସରି" ଲାଜେଇଲି ପରି ହୋଇ, "ଆପଣଙ୍କର ମନେଥିବ ବୋଲି କ'ଣ କହୁଛି ମୁଁ ? ମୁଁ ପଗ୍ଭରୁଥିଲି କ'ଣ କ—ପିଲାଦିନେ ଦେଖିଥିଲି ତା'କୁ, ଏଇ ଟ୍ରେନରେ ଗଲାବେଳେ, ଛୁଟିରେ ଓଡ଼ିଶାରୁ ଉତ୍ତରକୁ ଗଲାବେଳକୁ କିମ୍ବା ଫେରି ଆସିଲା ବେଳକୁ, କିନ୍ତୁ କେଉଁଠି ମନେ ପଡ଼ୁନାହିଁ, ଓଡ଼ିଶା ନା ବେଙ୍ଗଲ୍, ନା ବିହାର··· ?

"ଓଡ଼ିଶାରେ ହୋଇଥିବ···!"

ସୁନ୍ଦରିଆ ଶ୍ମଶାନ ବି ଥିବ ଆମ ଓଡ଼ିଶାରେ, ଆଉ କେଉଁଠି ନୁହେଁ ! ଆପଣ ନିଶ୍ଚୟ କାବା ହେବେ ମୋର ଉତ୍କଟ ଉତ୍କଳୀୟତା ଦେଖି । କିନ୍ତୁ ଭୂୟକିନ ଯେମିତି ବାହାରିଗଲେ ମୋ ପାଖିରୁ କାହିଁକି, ଜାଣନ୍ତି ? ମୋର ମନେହେଲା ଯେ, ସେ ହାତଛଡ଼ା ହୋଇ ଯାଉଛନ୍ତି, ତେଣୁ ଯେତେ ଖାମଖିଆଲି ହୁଅନ୍ତୁ ପଛେ, ତାଙ୍କର ଫରମାଏସ ପୂରଣ ନ କଲେ ରକ୍ଷା ନାହିଁ । ହେଲେ, ଆଉ କିଛି ମିଳିଲା ନାହିଁ ତାଙ୍କୁ ? ସ୍ମୃତିର ଆଉ କେଉଁ ସୁନ୍ଦର ବସ୍ତୁ ଡାକିଲା ନାହିଁ ତାଙ୍କୁ ? ଖାଲି କୋଉ କୁଳୁକୁଳୁ ନଈ ଓ ଗୁରୁଚକ୍କଣ ସମାଧିଙ୍କ ମେଳା, ଯେହେତୁ ଅସନା ଦରଜଳା କାଠତକ ନଈରେ ଧୋଇ ପୋଛି ହୋଇଯାଇଛି । ତଥାପି ଭାବୁଛି ଯେ, ଇଏ ମଧ୍ୟ ତାଙ୍କର ରୋମାଣ୍ଟିକ୍ ମନୋବୃତ୍ତିର ପରିଚୟ ଦେଉଛି, ଯାହା ମୋର ଇଚ୍ଛାକୁ ହତାଦର କରିପାରିବ ନାହିଁ । ମୁଁ ମୋର ସଯତ୍ନ ପୋଷିତ ଆଶାକୁ ଆପୁଡେଇବି, ସାଳୁଳେଇବି, ଧୈର୍ଯ୍ୟ ଧରିବାକୁ କହିବି, ହଟିବି ନାହିଁ··· ।

ସେ ହଠାତ୍ ଦୃଶ୍ୟ ଦେଖାରୁ ମୁହଁ ଫେରାଇ ଅନେଇଛନ୍ତି ମୋତେ । ଶୁଣି ମୁଁ କ'ଣ କହୁଛି, ଏ ଭାବରେ । ହଉ ଶୁଣିଲି । ହେଲେ ବୁଝିହେଉ ନାହିଁ—

"ଖାଲି ମରିଗଲେ ଯେ ବିଶ୍ରାମ ମିଳିବ ସେଠି, ତା' କାହିଁକି ହେବ ? ଶେଷ ବିଶ୍ରାମ ପୂର୍ବରୁ ତା'ର ଦିବ୍ୟ ଆଗ୍ରମକୁ ଛୁଇଁ ହେବ ନାହିଁ ମଝିରେ ମଝିରେ ? ଅବଶ୍ୟ ସେ ଯଦି ଟାଣି ନେଲା ତୁମକୁ, ହାତ ବଢ଼େଇ ନେଇଗଲା ତା' କୋଳକୁ, କହିଲା ଏତେଦିନକେ ଆସିଛୁ ଲୋ ଝିଅ, ଏଥର ରହିବୁ ମୋ ପାଖରେ ସବୁଦିନ ପାଇଁ ତା' ହେଲେ କ'ଣ କରାଯିବ ?"

ସେଇଠୁଁ ସେ ହସୁଛନ୍ତି ତାଙ୍କର ମାର୍କାମରା ହସ । କିନ୍ତୁ ସ୍ୱା'କୁ ଖାଲି ଉଚ୍ଛଳ, ଖଳଖଳ କୁହାଯିବ ନାହିଁ । ସ୍ୱେ' ତ ଉନ୍ମାଦର ହସ । ବେପରୁଆ ବିଷାଦକୁ ଗ୍ରପୁଡ଼ାଏ କପିଦେଲା ପରି । ସୋନୁ, ସୋନୁ, କ'ଣ ହୋଇଛି ତୁମର ? ମୁଁ ପ୍ରମାଦ ଗଣିଲି ।

"ବୁଝିଲେ ରାଜୁବାବୁ, ପଚିଶ ପଇଁତିରିଶ ବର୍ଷ ହେଲା ଯେଉଁ ସମାଜ-ସେବା କରିଆସିଛି, ଆଜି ଯଦି ମନେହୁଏ ଯେ ସେଥିରେ ସମାଜର କିଛି ଲାଭ ହୋଇ ନାହିଁ, ଯେତିକି ଲାଭ ମୋ'ର, ମୋ'ର ଇଗୋ ମୋଟା ହୋଇଯାଇଛି··· କାହିଁକି ନା, କେଉଁ ଗୋଟିଏ ଚମ୍ପାକୁ ବେଶ୍ୟାଳୟରୁ ଉଦ୍ଧାର କଲାବେଳକୁ ପୁଣି କେତେ ମାଧବୀ ମଲ୍ଲିକା ଖୁନ୍ଦି ହୋଇଯାଉଛନ୍ତି ସେଠି, ଯେହେତୁ ଦଲାଲ୍‌ର ଟଙ୍କା ଦରକାର ଏବଂ ସମାଜର 'ସ୍ୱାସ୍ଥ୍ୟ' ଦରକାର··· । କେଉଁ ଗୋଟିଏ ବାରବର୍ଷିଆ

କାଲୁଆକୁ ଅନର୍ଦ୍ଦିଷ୍ଟ ଅକାରଣ ହାଜତରୁ ଖସେଇ ଆଣିଲା ବେଳକୁ ପୁଣି କେତେ ରମୁ ଶାମୁ ଭର୍ତ୍ତି ହୋଇଯାଉଛନ୍ତି ଜେଲରେ ଓ ପଡ଼ି ରହୁଛନ୍ତି ସେଠି । କାହିଁକିନା ଓ୍ୱାର୍ଡ଼ର—ଜେଲର—ପୁଲିସବାଲାଙ୍କ ଝୋଲ୍‌ଆ ଦରକାର, ତଥା ବନ୍ଧୁତ ଭୋଗ-ବିଳାସର ପାଉଣା···କେଉଁ ଗୋଟିଏ ସୁମିତାକୁ ଯୌତୁକ ନିଆଁରୁ ବଞ୍ଚେଇଲା ପରେ ପରେ ପୁଣି କେତେ ନିଆଁ ଜଳୁଛି, କୁହୁଳୁଛି ମୋ ଘରପାଖରେ, ଏବଂ ମୋ'ର ଖାନଦାନର ଗୀତା ବନିତାମାନଙ୍କୁ ଚଡ଼ଚଡ଼ କରୁଛି, ମୋତେ ଛୁଗୁଲେଇଲା ପରି··· (କହି ଚାଲିଛନ୍ତି ଧଇସଇଁ ହୋଇ···ଏଣେ କଳାଧନ ବଢ଼ୁଛି, ହେଲେ ଆହୁରି ଆହୁରି ଧଳା ହୋଇଯାଉଛି, ମଜା ହେଉଛି ଯେ, ସେଇ ଧନ ଆସୁଛି ଆମ ପାଖକୁ ସମାଜସେବା ପାଇଁ, ଆଉ ଆମେ ସେଇଥିରେ ଖୁସ୍—"

ମୁଁ କହୁ ନ ଥିଲି ସୋଲୁ ? ଏଇ ଜନସେବା ହେଉଛି ଗୋଟାଏ ଅନ୍ଧଗଳି, କଳି କାଳରେ ସାର ହେଉଛି ସ୍ୱାର୍ଥର ଭଲପାଇବା, ମଣିଷ-ମଣିଷର, ଅନ୍ତତଃ ନାରୀ-ପୁରୁଷର ସମ୍ପର୍କ, କିଛି ଖରାପ ଭାବିବ ନାହିଁ··· ।

"କାଲି ଆମେ ବହୁତ ହୋ-ହଲ୍ଲା ହେଉଥିଲୁ । ସେମାନଙ୍କ ସାଙ୍ଗରେ ମୁଁ କାମ କରିଥିଲି ୟୁ. ପି· ରେ ଥିଲାବେଳେ, ଆଲ୍ଲାହାବାଦରୁ ଯିଏ ଉଠିଲେ ସେ ଅବଶ୍ୟ ଜଣେ ସରକାରୀ ଅଫିସର, ମୋତେ ବହୁତ ସାହାଯ୍ୟ କରିଛନ୍ତି···ଆମେ ଗପୁଥିଲୁ ଆମର ଅତୀତ କୃତିତ୍ୱର କାହାଣୀ, ଆମ ଓକିଲର ବିଚକ୍ଷଣ ବୁଦ୍ଧି, ଆମ ଡାକ୍ତରଙ୍କର କାରସାଦି, ଇତ୍ୟାଦି । ହେଲେ ଆମେ ଡୁବେଇ ଦେବାକୁ ଚାହୁଁ ଥିଲୁ ଆଉ ଗୋଟିଏ ବଢ଼ି ଉଠୁଥିବା ଶବ୍ଦ, ହାହାକାରର ଗର୍ଜିଲା ଶୂନ୍ୟତା । ଏଣୁ ମୋର ବେଳେ ବେଳେ ମନେ ହେଉଥିଲା ଯେ, ଇଏ ଆମର ହସ ନୁହେଁ, ହେ୍ୱଷାରବ । ବିଫଳତାକୁ ନ ମାନିବାର ରଡ଼ି । ଆମେ ଫେଲ୍ ମାରିଛୁ । ପୂର୍ଣ୍ଣଚ୍ଛେଦ··· । "

ବିଫଳତା, ତୁମର ବି ବିଫଳତା ? ଫାଷ୍ଟକ୍ଲାସ୍ ! କିନ୍ତୁ ମୋ ବିଫଳତା କୋଉ କମ୍ ନା କ'ଣ ? ଚାହିଁଥିଲି ପ୍ରେମ କରିବି, ସ୍ତ୍ରୀକୁ ହେଉ କି ଆଉ କାହାକୁ ହେଉ, ଏବଂ ଜାଣିବି ଯେ, ଏଇ ହେଉଛି ପ୍ରେମ । ଚାହିଁଥିଲି ପିଲାଙ୍କ ଭିତରୁ କେହି ହେଲେ ଲେଖାଲେଖି କରିବ, କି ଛବି ଆଙ୍କିବ କି ଗୀତ ବୋଲିବ, ଏବଂ ନାଆଁ କମେଇବ । ଚାହିଁଥିଲି ଘରଟିଏ କରିବି ରହିବା ପାଇଁ, ବିରୋଳାରେ ସକାଳସଞ୍ଜର ଶୋଭା ଦେଖିବା ପାଇଁ, ଭଡ଼ା ଦେବା ପାଇଁ ନୁହେଁ, ଚାହିଁଥିଲି ବଜାଉ୍ ହାକିମ ସରଯୂ ପ୍ରସାଦର ଅକାଳ ମୃତ୍ୟୁ ନ ହେଲେ ମଧ କିଛି ଗୋଟାଏ ଘଟିବ, ଯେଉଁଥିରେ ସେ ବିଚ୍ ବଜାରରେ କାନ୍ଦିବ ଭେଁ ଭେଁ ହୋଇ । ଏବଂ ଚାହିଁଥିଲି ମୁଁ ବି ଥରେ କାନ୍ଦିବି, ନିଜକୁ ନିଃଶେଷ କରି କାନ୍ଦିବି, କିନ୍ତୁ ଏକୁଟିଆ । କିନ୍ତୁ କୋଉ ଗୋଟାଏ ଇଚ୍ଛା ପୂରଣ ହୋଇ ପାରିଲା ନାହିଁ ଆଜଯାଏ ।

ବେଣ୍ଟ୍ ! ତୁମ ବିଫଳତା ମୋ ବିଫଳତା ଏକାଠି ହୋଇଯିବ । ମୁଁ ତ ମୂରୁଣ୍ଡି, ତୁ ତ ମୂରୁଣ୍ଡି, ଏଥର ଆଉ ଡରିବାର କ'ଣ ଅଛି ? ଆଉ ଡେରି କାହିଁକି ?

ଗାଡ଼ି ଛୁଟିଚାଲିଛି । ଶ୍ୟାମଳ ବନକୁ କାଟି କାଟି ଆପଣା ମତଲବର ଷ୍ଟେସନ ଆଡ଼େ । ହଠାତ୍ ସୋନୁବେନଙ୍କ ନିଷ୍ଫଳ ନିଷ୍ପୀଡ଼ିତ ମୁହଁର ଚେହେରା, ବିଷାଦରୁ ବଳି ବେଦନାର ଦୟନୀୟ ରୂପ, ମୋତେ ଅଟକେଇ ରଖୁଛି । କାନ୍ଦୁଛି ଯେ ସେ ପାରିବେ ନାହିଁ । ଚଳନ୍ତା ଗାଡ଼ିରୁ ଓହ୍ଲେଇ ଯାଇହେବ ନାହିଁ । ତା'ଛଡ଼ା ସେ କୋଉ ସୀତା ହୋଇଛନ୍ତି ଯେ ଧରଣୀ ମାଆ ତାଙ୍କୁ ଟାଣିନେବ କୋଳକୁ ?

ତା'ହେଲେ ମୁଁ ବି ପାରିବି ନାହିଁ । କାହିଁକିନା (ଇଏ ମୋର ସହସା ଆବିଷ୍କାର କୁହନ୍ତୁ ଅବା ନିର୍ଭୀକ ସତ୍ୟପାଠ) ମୋ ସାମ୍ନାରେ ବସିଥିବା ଲୋକଟି ସୋନୁ, ସୋନୁବେନ୍ ଇତ୍ୟାଦିରୁ ଅଧିକ ଆଉ ଜଣେ । ଗୋଟିଏ ଅପୂର୍ବ ସ୍ନେହସାର ପ୍ରତିମା । ନାରୀ—ମାଆ । ଭିତରଆ ମନ ହେଉଥିଲା ତା'ର ଉଦାରକୋମଳ ବକ୍ଷରେ ମୁହଁ ଗୁଞ୍ଜି ପାରିବି, ମୋର ଯେତେକ ବିଫଳତା ଲୁଚେଇ ଦେଇପାରିବି । କୋଉ ପିଲାଦିନର ଇଚ୍ଛା, ବଡ଼ଦିନର ବେହେଲ ବ୍ୟାକୁଳତା । କିନ୍ତୁ ସିଏ ବି··· ଛୁଡ଼, ମାଆଟିଏ କ'ଣ ଏତେ ସହଜରେ ମିଳିଯିବ ଏ ବୟସରେ ?

# ଆଲିଙ୍ଗନ

ଏଇ ବଫଲଡା ନାମକ ଭାବଗତ ବସ୍ତୁଟି କେତେ ସାହାଯ୍ୟ କରି ନାହିଁ ମଣିଷକୁ ତା'ର ଓଲଟା ଆଚରଣ ପାଇଁ ! ଅର୍ଥାତ୍ ସୁସ୍ଥସାଧାରଣ ମଣିଷଟିଏ ନାନା ଢ଼ଙ୍ଗର ଦେଖାଇଛୁ, ଯାହା ତା' ଚରିତ୍ର ସାଙ୍ଗରେ ଖାପ୍ ଖାଏ ନାହିଁ । କିଏ କ୍ରୋଧରେ ହିଂସ୍ର ହୋଇଉଠିଛି ତ କିଏ ହତାଶାରେ ଜୀବନଟାକୁ 'ଛିଃ' କରି ଦେଇ ହିମାଳୟକୁ ଯିବ ବୋଲି ବାହାରିଛି । ଏବଂ ମହିମଣ୍ଡିତା ଅନେକେ ଦୁଃଖରେ ଦୁଃଖରେ କେତେ ବୈଚିତ୍ର୍ୟ ଦେଖାଇଛନ୍ତି ତାଙ୍କ ହାବଭାବକୁ ନେଇ । ଆମ ରାଜୁବାବୁ ତାଙ୍କ ପିଲାଦିନର ଗୋଟାଏ ଅରମାନ୍‌କୁ ମେଣ୍ଟାଇବା ଲାଗି ଅଣ୍ଟା ଭିଡ଼ିଛନ୍ତି, ତାହା ଯେତେ ହାସ୍ୟାସ୍ପଦ ହେଉ ପଛେ । ଏବଂ ହାସ୍ୟମୟୀ ସମାଜସେବିକା ସୋନୁବେନ୍ ଶାନ୍ତ ଲୋଡ଼ିଛନ୍ତି ସ୍ମୃତିର କେଉଁ ସମାଧି ଭୂଇଁରେ । କିନ୍ତୁ ଭାବିଲେ ଦେଖି, ସାଧାରଣତଃ ଏହି ବସ୍ତୁଟି ଏକ ଭ୍ରାନ୍ତ ଅନୁଭବକୁ ନେଇ ଗଢ଼ା ବୋଲି କହିଲେ କ'ଣ ଭୁଲ୍ ହେବ ?

କାରଣ ଗତକାଲି, ଆଜି, ଏବଂ ଆସନ୍ତାକାଲି ମଧ୍ୟରେ ଏକ ଅନିବାର୍ଯ୍ୟ ସମ୍ପର୍କ ରହିଛି ବୋଲି ଦାବି କରିହେବ ନାହିଁ । ହଁ, ସମ୍ପର୍କ ରହିଛି ଆକାଶର ଜ୍ୟୋତିଷ୍କମାନଙ୍କୁ ନେଇ, ପଦାର୍ଥ ଏବଂ ବାଷ୍ପକୁ ନେଇ, କିନ୍ତୁ ମଣିଷର ମନ କ'ଣ ଏତେ ଆଜ୍ଞାଧୀନ ହୋଇପାରିଛି ? ଗତକାଲି ତା'ର ରୂପଗୁଣ ଯାହା ଥିଲା, ଆଜି କ'ଣ ସେଇଆ ଏବଂ ଠିକ୍ ସେମିତି ଅଛି ? ଏବଂ ଭବିଷ୍ୟତର ଗୋଟାଏ ନକ୍ସା ତିଆରି କରିହେବ କି ତା' ପାଇଁ ? ନା । ଲେଖକ ଉଇଲିୟମ୍ ସାରୋୟାନ୍ କହିଲି ପରି, ତା'କୁ ଧରୁ ଧରୁ ସେ ଖସି ପଳେଇଯାଏ । ତେଣୁ ଏଇ ମନ

ଏକଦା ଯାହା ଆଶା କରିଥିଲ ତାହା ସେମିତ ହେଲ ନାହିଁ ବୋଲି ହାୟ ! ମୁଁ ଫେଲ୍ ମାରିଲି ବୋଲି ଦୁଃଖ କରିବା କେତେଦୂର ସମୀଚୀନ ? ମୋର ମନେହୁଏ ଯେ ସାଧାରଣତଃ ଏହି ଗ୍ଲାନିବୋଧ ଗୋଟାଏ କୃତ୍ରିମ ମାନସିକ ବିଳାସ ଛଡ଼ା ଆଉ କିଛି ନୁହେଁ । କେବଳ ନିଜକୁ କହିବା ପାଇଁ ଯେ ମୋର ଗୋଟାଏ ନିଦା ଏବଂ ଚିରସ୍ଥାୟୀ ଚରିତ୍ର ଅଛି, ଯାହା ନାନାଦି ବିଶିଷ୍ଟ ଗୁଣରେ ଗୁଣୀ । ଅତଏବ ମୁଁ କେଉଁ ପଦାର୍ଥ ପରି ଭାସି ଭାସି ଯାଉନାହିଁ ଏଇ ସଂସାର ସମୁଦ୍ରରେ, ମଣିଷ ପରି କେତେକ ଆଶା, ଇଚ୍ଛା, କଳ୍ପନାଜଳ୍ପନାକୁ ମୁଠେଇ ଧରିଥିଲି ମୋର ଚରିତ୍ର ଅନୁଯାୟୀ, କିନ୍ତୁ ଦୁଃଖର ବିଷୟ, ସେଗୁଡ଼ା ମୋର ହାତଛଡ଼ା ହୋଇଗଲା ।

ହଁ, ତମେ ଠିକ୍ ଯାହା ଚାହିଁଥିଲ, ତା' ହୁଏତ ପାଇଲ ନାହିଁ । କିମ୍ବା ତା'କୁ ଯେମିତ ଭାବରେ ଚାହିଁଥିଲ, ଠିକ୍ ସେମିତ ଭାବରେ ପାଇଲ ନାହିଁ । କିନ୍ତୁ ତାହା କ'ଣ ସ୍ୱାଭାବିକ ନୁହେଁ ? ଘଟଣା ଘଟେ, ପରିସ୍ଥିତି ବଦଳିଯାଏ, ଆଉ ତମ ଚଞ୍ଚଳ ମନ ବେଶ୍ ଖାପ୍ ଖୁଆଇପାରେ ନିଜକୁ, ଏଇ ପରିବର୍ତ୍ତନ ସାଙ୍ଗରେ । ଏଇ ଜିଜୀବିଷା, Survival inistinct ମଣିଷ ମନର ସୁପ୍ରଧାନ ସ୍ୱଗୁଣ । ଅତଏବ ଯାହା ନହେଲା ତମର ଏକକାଳୀନ ଆଶା-ଇଚ୍ଛା-କଳ୍ପନାଜଳ୍ପନା ଅନୁଯାୟୀ, ତା' ପାଇଁ ଏତେଟା ଝୁରି ହେବାଟା ଅଳ୍ପ ବହୁତ ଅସଙ୍ଗତ ତଥା ଅତିରଞ୍ଜିତ ନୁହେଁ କି ?

ଏହି ପରିପ୍ରେକ୍ଷୀରେ ଆଜି ଯେଉଁ ବିଫଳତା ପାଇଁ ଦୁଃଖ କରୁଛ, ତାହା ଅନ୍ୟ ଏକ ସମୟରେ ଏବଂ ଅନ୍ୟ ଏକ ସ୍ତରରେ ସଫଳତାର ସୁଖ ଆଣିଦେଇ ଥିଲା ତମକୁ, ଏକଥା କହିଲେ ମଧ୍ୟ ଭୁଲ୍ ହେବ ନାହିଁ । ଯଥା : ତମେ କେବେ ଚାହିଁ ନଥିଲ ସେଇ ରମଣୀଟିକୁ ଭୋଗ କରିବା ଲଗି ? ଯାହାହେଉ ତମ କାମନା ପୂର୍ତ୍ତି ହେଲ । କିନ୍ତୁ ଆଜି ତମେ କହୁଛ କ'ଣ ନା ସିଏ ଥିଲ ଗୋଟାଏ ନିମ୍ନିଭ ପ୍ରେମ ଅଥବା ଅପାତ୍ରରେ ପ୍ରେମ (ଝିଅଟା କେଡ଼େ ଅସୁନ୍ଦରୀ ଦେଖାଯାଉଛି ମ ଆଜିକାଲି ! ଆଉ ତା' ମନଟା ଏତେ ଥାଡ଼୍‌କ୍ଲାସ୍ ବୋଲି ଜଣା ନଥିଲା

ମୋତେ···), ଏହେତୁ ଇଏ ଗୋଟାଏ ବିଶ୍ରୀ ବିଫଳତା ତମ ଜୀବନର । ବେଶ୍ । କିନ୍ତୁ ସେତେବେଳର ସଫଳତାକୁ କ'ଣ ମିଛ କହିବ, ନା ସେଇ ଦେଶକାଳପାତ୍ରକୁ ନେଇ ଅନୁଭୂତ ଅନୁଭବ ତମ ଜୀବନର ଅଂଶ ନଥିଲି ? ଆଚ୍ଛା, ଅସଲ କଥା ହେଉଛି ଯେ ତମ କଳ୍ପିତ ଚରିତ୍ରର ଆତ୍ମତୁଷ୍ଟି ଆସିବ ନାହିଁ ଏଭଳି ଏକ 'ବିଫଳତା' ପାଇଁ ଦୁଃଖ ନକଲେ । ଏବଂ ପରସ୍ତ୍ରୀର ପାଖ ମାଡ଼ି ନଥିଲେ ମଧ୍ୟ ତମେ ଗୋଟାଏ ବିଫଳତାର ଗ୍ଲାନିକୁ କୁଣ୍ଢେଇ ଧରିବା ଅସମ୍ଭବ ନୁହେଁ, ଯଦି ତୁମେ ନିଜକୁ କବିତୁଲ୍ୟ ଭାବକାତର ବୋଲି ମନେ କରୁଥାଅ । ଯେ—ଆଃ ! ଆମ ସ୍ୱାମୀ-ସ୍ତ୍ରୀଙ୍କ ଭିତରେ ଯେଉଁଭଳି ପ୍ରେମ ଉଜଳି ଉଠିବ ବୋଲି ମୁଁ ଆଶା କରିଥିଲି, ତା' କ'ଣ ହୋଇପାରିଲି ? ହେଲି ନାହିଁ । ବିଫଳତା ।

ଯେମିତି ତମେ ଭାବିଥିଲ ସଙ୍ଗୀତଜ୍ଞ ହେବ, କମ୍ବା ଚିତ୍ରକର, ଖେଳୁଆଡ଼, ଇତ୍ୟାଦି, ମୋ 'ଚରିତ୍ର'ର ପ୍ରତିଶ୍ରୁତି ନେଇ । କିନ୍ତୁ ତା' କଣ ହୋଇପାରିଲି ? ହେଲି ନାହିଁ । ବିଫଳତା । କିନ୍ତୁ ସତ କହିଲ, ତମେ ଯେଉଁ କଲମପେଷା ଚାକିରିରେ ଜୀବନଟା ବିତେଇ ଦେଲ, ସେଥିର ଯେତେକ ଅନୁଭୂତି ବିଭିନ୍ନ ଦେଶକାଳପାତ୍ରର ପରିପ୍ରେକ୍ଷୀରେ, ତା'କୁ କ'ଣ ତମେ ମୋଟାମୋଟି ଉପଭୋଗ କରିନାହଁ ?

ତମ ପୁଅଝିଅଙ୍କୁ ନେଇ ମଧ୍ୟ କେତେ କ'ଣ ଆଶା କରିଥିଲ, କିନ୍ତୁ ଠିକ୍ ତା' ହେଲି ନାହିଁ, ଯେମିତି ହେଲି ନାହିଁ । କିନ୍ତୁ ସତ କହିଲ, ତମ ଅପାଠୁଆ ବ୍ୟବସାୟୀ ପୁଅର ମରସେଡ଼ିସ୍ କାର୍‌ରେ ବସିଲେ ତମେ କ'ଣ ଏଇ ପୁଅର ବାପ ବୋଲି ଖୁସିଟାଏ ହେଉ ନାହଁ ? ନା ତମ ଗରିବ ମାଷ୍ଟ୍ରାଣୀ ଝିଅ ଯୋଉ କବିତା ଲେଖୁଛି, ତା'କୁ ନ ବୁଝିଲେ ମଧ୍ୟ ତମେ ନିଜକୁ ଧନ୍ୟ ମନେ କରୁନାହଁ ? ନା ତମ ନାତି-ନାତୁଣୀଙ୍କ ଦିବ୍ୟ ସୁନ୍ଦର ହସଟିଏ ଦେଖିଲେ ତମର ମନେହେଉ ନାହିଁ, ବେଳେବେଳେ, ଯେ ତମକୁ ଭଗବାନ୍ ଜନ୍ମ ଦେଇଥିଲେ ଖାଲି ଏଇ ଫୁଲଗୁଡ଼ିକୁ ଫୁଟାଇବା ଲାଗି ?

ମୁଁ କହୁନାହିଁ ଯେ ବିଫଳତା ବୋଲି ଗୋଟିଏ ବସ୍ତୁ ନାହିଁ ମୋଟ ଉପରେ । ଅଛି । ଏବଂ ତାହା ବେଳେ ଟ୍ରାଜେଡ଼ିର

ରୂପ ଧାରଣ କରେ, ପ୍ରିୟଜନର ମୃତ୍ୟୁ କିମ୍ବା ସାଂସାରିକ କେଉଁ ଘୋର ଦୁର୍ବିପାକକୁ ନେଇ । କିନ୍ତୁ ମୋର କହିବା କଥା ଯେ ଅଧିକାଂଶ କ୍ଷେତ୍ରରେ ଏଇ ବିଫଳତାବୋଧ ଏକ କୃତ୍ରିମ ମାନସିକ ବିଳାସ, ନିଜର 'ଚରିତ୍ର'କୁ ମୂଲ୍ୟ ଦେବା ଲାଗି ।

ତେଣୁ କ୍ଷମା କରିବେ, ରାଜୁବାବୁଙ୍କ ତଥାକଥିତ ବିଫଳତାକୁ ନେଇ ମୁଁ ତାଙ୍କ ସମଦୁଃଖୀ ହୋଇପାରୁ ନାହିଁ । ମନେହେଉଛି ସେ ଖାଲି ନିଜ ଚରିତ୍ରକୁ ଟେକି ଧରିବାର ଚେଷ୍ଟା କରୁଛନ୍ତି, ଅଧିକାଂଶ ଆମମାନଙ୍କ ପରି । ଏବଂ ସେଇ ମାନସିକତାର ଜାଲରେ ପଡ଼ି ସେ ଯେଉଁ ହାସ୍ୟାସ୍ପଦ ଢଙ୍ଗ ଦେଖାଇଲେ ଗପଟା ଆରମ୍ଭ ହେଉ ନହେଉଣୁ, ଶେଷକୁ ମଧ୍ୟ ସେ ସେମିତି ଗୋଟାଏ କାମ କଲେ କ୍ଲାଇମାକ୍ସର ଚମତ୍କାରିତା ଦେଖାଇଲା ପରି । ପ୍ରଥମେ କହିଲେ କ'ଣ ନା ମୁଁ ସୋନୁ ଓରଫ୍ ସୋନୁବେନ୍‌ଙ୍କୁ ଆଲିଙ୍ଗନ କରିବି, ଯେମିତି ହେଲେ । ଆଲିଙ୍ଗନ କରିବି ମୋର ସେଇ ବିଗତ ଅଜ୍ଞାତର ସୁନେଲି ସକାଳକୁ, ଏବଂ ମୋ ବିଫଳତାକୁ ବାତିଲ୍ କରି ଦେବି । ଏବଂ ଶେଷକୁ କହିଲେ ମୁଁ ସେଇ 'ମାଆକୋଳ'ରେ ଟିକିଏ ମୁଣ୍ଡ ଗୁଞ୍ଜି ଦେଇପାରନ୍ତି ନାହିଁ, ଯେଉଁଥିରେ ମୋ ବିଫଳତା ଲୁଚିଯାଆନ୍ତା ସବୁଦିନ ପାଇଁ ! ହଁ, ଦୟା ଆସୁଛି ତାଙ୍କ ପ୍ରତି, କିନ୍ତୁ ସମ୍ବେଦନା ଭିନ୍ନ ଧାତୁରେ ଗଢ଼ା ।

ହେଲେ ସୋନୁବେନ୍‌ଙ୍କ ବିଫଳତାବୋଧକୁ ପୂରାପୂରି ହସି ଉଡ଼େଇ ଦେଇ ହେଉ ନାହିଁ । ହୋଇପାରେ ଯେ ସ୍ମୃତିର କେଉଁ ନଈକୂଳିଆ ସମାଧି ଭୂଇଁକୁ ଖୋଜିବା ଗୋଟାଏ ନିଛକ ରୋମାଣ୍ଟିକ୍ ପଣ, ଯାହାର ଅନ୍ୟ ନାଆଁ ଦୁର୍ବଳତା । କିନ୍ତୁ ଗୋଟାଏ ମୌଳିକ ପ୍ରଭେଦ ଥିଲା ପରି ମନେହେଉଛି ଦୁହିଁଙ୍କ ଦୁଃଖ ମଧ୍ୟରେ । ସୋନୁବେନ୍‌ଙ୍କ ଗ୍ଲାନି ନିଜ ପାଇଁ ନୁହେଁ, ଯେ ମୁଁ ଏମିତି ହୋଇପାରିଲି ନାହିଁ କି ଏକଥା କରିପାରିଲି ନାହିଁ । ତାଙ୍କ ଗ୍ଲାନି ସମାଜକୁ ନେଇ । ଯେ ମୁଁ ଏବଂ ମୋର ସହକର୍ମୀମାନେ ଯାହା କିଛି କଲୁ ସମାଜ ପାଇଁ, ସେଥିରେ କିଛି ଲାଭ ହେଲା ପରି ଦିଶୁ ନାହିଁ । ଧର୍ଷଣ, ବଧୂହତ୍ୟା, କଳାଧନ

ଇତ୍ୟାଦି ବଡ଼ କଥା କହିବାକୁ ନାହିଁ । ମୁଁ ଏଇ ବିଫଳତାବୋଧକୁ ଚିହ୍ନିଲା ପରେ ଓ ବୁଝିଲା ପରେ ମନେ ହେଉଛି, ଜଣେ ଲେଖକ ହିସାବରେ । କେବଳ ଲେଖକ ହିସାବରେ ।

ଅର୍ଥାତ୍ ଯଦି ଆଜିର ଜଣେ ବୁଢ଼ା ଲେଖକ ଭାବେ, ବେଳେବେଳେ, ଯେ ତା'ର ସାହିତ୍ୟ ସାଧନାକୁ ପୂରାପୂରି ଗୋଟାଏ ବୈଭିକ ମୁମୁକ୍ଷା ବୋଲି କହିବା ଅନୁଚିତ ହେବ, କାରଣ ସେଥିରେ ପ୍ରଚ୍ଛନ୍ନ ସାମାଜିକ ଆଭିମୁଖ୍ୟ ମଧ୍ୟ ଥିଲା, ଅନ୍ତତଃ ଚେତନାର ଉନ୍ମୀଳନ ଓ ସଂପ୍ରସାରଣ, ଯାହା ସମାଜକୁ ଆଉ ଟିକିଏ ବୁଦ୍ଧି ଦେବ ତା'ର ସାମୂହିକ କଲ୍ୟାଣ ପାଇଁ, କିନ୍ତୁ ସେଥିରେ କୌଣସି ଲକ୍ଷଣ ଦିଶୁ ନାହିଁ ଏବଂ ତାହାହିଁ ମୋର (ଆମର) ବିଫଳତା—ଏଇ ଗ୍ଲାନିକୁ କି' କ'ଣ ଗୋଟାଏ 'ବୌଦ୍ଧିକ ବ୍ୟାକୁଳତା' ବୋଲି କୁହାଯିବ ?



# ନିଃସଂଗର ସ୍ୱର୍ଗ

ଅହୋ ! ଏହି ସେ ହିମବନ୍ତ ! କେବଳ ଶୁଭ୍ର, କେବଳ ହିମ । ଏବଂ ସୁନ୍ଦର ! ଶୁଭ୍ରତାର ଫାଙ୍କରେ ଯଦି ଟିକିଏ ବୋଲି ଆଉ କିଛି ରଙ୍ଗ ଥାଆନ୍ତା, ଅନୁଭବରେ ଯଦି ଟିକିଏ ହେଲେ ଉତ୍ତପ୍ତ ଆସୁଥାଆନ୍ତା କେଉଁଠୁ ହେଲେ, ତାହାହେଲେ ତା'ର ସୌନ୍ଦର୍ଯ୍ୟ ଊଣା ପଡ଼ିଯାଇଥାଆନ୍ତା । ସେ ପୃଥିବୀର ଅନ୍ୟ ଯେକୌଣସି ବସ୍ତୁପରି ମନେ ହେଉଥାଆନ୍ତା, ଯେଉଁଥିରେ କଳାଧଳା, ସତମିଛ, ଭଲମନ୍ଦ ମିଶିକରି ଅଛି । ଯେକୌଣସି ମଣିଷର ଚରିତ୍ରପରି । କିନ୍ତୁ ଇଏତ ପୃଥିବୀର ନୁହେଁ, ଏଇଠୁ ଯେ ସ୍ୱର୍ଗର ଆରମ୍ଭ ! ନା ନା, ଇଏ କେବଳ ତା'ର ସୂଚନା, ସେଠିକି ପହଞ୍ଚିବାର ନିଶୁଣି । ଆହୁରି ଅନେକ ବାଟ ଅଛି, ଅନେକ ବାଟ ·· ।

ଆହୁରି ବେଗି ବେଗି ଉଠିବାକୁ ହେବ । ପବନ ପରି । ହେଉ । ଜୀବନଯାତ୍ରାର କେତେ ଶୃଙ୍ଗ, କେତେ ଶିଖର, ପାରିହୋଇ ଆସିଲିଣି, ଧର୍ମକୁ ମୁଠେଇ ଧରି । ଆଜି ଏଇ ଶେଷ ଆରୋହଣଟିକି ବଳେଇଯିବ ମୋତେ ? ଯୁଧିଷ୍ଠିର ଭଗବାନ ବିଷ୍ଣୁଙ୍କୁ ସ୍ମରଣ କଲେ, ଏବଂ ଅତ୍ୟାଶ୍ଚର୍ଯ୍ୟ ଅଭୂତପୂର୍ବ ବେଗରେ ଉପରକୁ ଉଠିବାକୁ ଲାଗିଲେ । ଥରେ ହେଲେ ତାଙ୍କ ପାଦ ଖସି ଯାଇନଥାଏ । ଅବଚ୍ଛିନ୍ନ ଶୁଭ୍ରତା ଥରେ ହେଲେ ନିଜକୁ ଛଡ଼େଇ ପାରୁନଥାଏ ତାଙ୍କଠୁ ।

"ଦୟାକର ସ୍ୱାମୀ ! ଏଇଠି ରହିଯାଅ । କଅଣ ମିଳିବ ଆହୁରି ଊର୍ଦ୍ଧ୍ୱକୁ ଗଲେ ? ହାଡ଼ମାଂସ ମିଳେଇ ଗଲାଣି ଆସି, ଶୋକଶୋଷରେ ପ୍ରାଣ ବାହାରି ଯାଉଛି···ଆଉ ପାରୁ ନାହିଁ, ଆଉ ପାରିବ ନାହିଁ··· ।"

ଯୁଧିଷ୍ଠିର ମୃଦୁ ମୃଦୁ ହସିଲେ । କହିଲେ, "ଦେବ ! ତୁମେ କଣ ଜାଣିନାହଁ ଯେ, ଏଇ ହେଉଛି ସ୍ୱର୍ଗକୁ ଯିବାର ବାଟ ? ଆସ, ଉଠି ଆସ । ସାମାନ୍ୟ ଶୋକଶୋଷକୁ ଭୁଲିଯାଅ । କେତେ ଦିବ୍ୟଫଳ ଭୁଞ୍ଜିବ ଉପରକୁ ଗଲେ । ତା'ଛଡ଼ା ଅସଲ ହେଉଛି ପୁଣ୍ୟ ଏବଂ ପୁଣ୍ୟର ଶେଷକଥା ହେଲା ସ୍ୱର୍ଗ—ଏତକ ବୁଝିପାରୁ ନାହଁ ?" କହୁ କହୁ ଯୁଧିଷ୍ଠିର ପୁଣି ଉଠିଗଲେ କାହିଁ କେତେ ଉପରକୁ । ଏବଂ ଦ୍ରୌପଦୀ ପଛରେ ପଡ଼ିରହିଲେ । ତାଙ୍କ ସାଙ୍ଗକୁ ତାଙ୍କର ଆଉ ଚାରିଜଣ ସ୍ୱାମୀ, ଅନ୍ୟ ଚାରି ପାଣ୍ଡବ । ଭୀମ, ଅର୍ଜୁନ, ନକୁଳ ଓ ସହଦେବ ।

ଦ୍ରୌପଦୀଙ୍କର ଉପାୟ ନଥିଲା ତାଙ୍କ ସ୍ୱାମୀଙ୍କୁ ମୁହାଁମୁହିଁ ଦେଖିପାରିବେ । ତଥାପି ତାଙ୍କର ମନେହେଲା ଯେ, ସେ ହସୁଛନ୍ତି । ହିମଶୁଭ୍ର ସେଇ ହସ, ଚିହ୍ନାଙ୍କ ଅବଜ୍ଞାର ହସ—ତା'କୁ କ'ଣ ଆଉ ଧରି ହେବ ନା ଛୁଇଁ ହେବ ? ସତକଥା କହିବାକୁ ଗଲେ ସେଇ ସୌଭାଗ୍ୟ କ'ଣ ମୋର ଅଛି କେବେହେଲେ, ପହିଲି ରାତିଠାରୁ ଆଜିଯାଏଁ ? ଆପେ ଆପେ ତାଙ୍କ ହାତ ଅଞ୍ଜଳି ହେଲା ଶୂନ୍ୟକୁ, ସତେକି ଆପଣାର ବୋଲି ଆଉ କାହାକୁ ଛୁଇଁବା ପାଇଁ ଆତୁର ହେଉଛି । ବୃକୋଦର ଭୀମ ଧରି ପକେଇଲେ ତାଙ୍କୁ, ଏବଂ ଆଉଜେଇ ଆଣିଲେ ନିଜ ଆଡ଼କୁ । କିନ୍ତୁ ଇଏ କଅଣ ? "କୃଷ୍ଣେ ! ପାଞ୍ଚାଳି ! କଅଣ ହେଲା ତୁମର ?" ଭୀମ ପାଟି କରି ଉଠିଲାବେଳକୁ ଦ୍ରୌପଦୀ ତାଙ୍କ ହାତରୁ ଖସି ଯାଇ ଭୂଲୁଣ୍ଠିତ ହୋଇ ସାରିଥିଲେ । ଏବଂ ଯେତେ ଅକାରଣ ହେଉ ନା କାହିଁକି, ସେ ବୁନ୍ଦାଏ ଉଷୁମ ଲୁହ ଗୁଡ଼ ଦେଇଥିଲେ ତଳକୁ । ଯଦ୍ୟପି କହିବା ବାହୁଲ୍ୟ ଯେ, ସ୍ୱାମୀମାନଙ୍କ କଥା ଗୁଡ଼ାଦିଅ, ବିଶାଳ ହିମବନ୍ତ ମଧ୍ୟ ତାଙ୍କ ଆଖିରୁ ହତାଶାର ଖବର ନେଇ ପାରିଲା ନାହିଁ ।

ଅବଶ୍ୟ ଭୀମ ତାଙ୍କୁ ତତ୍‌କ୍ଷଣାତ୍ ଟେକି ଧରିଲେ । ହା, ହା, ପ୍ରିୟାବୋଲି ଆଲିଙ୍ଗନ କଲେ । କିନ୍ତୁ ତାଙ୍କର ବୁଝିବାରେ ବାକି ରହିଲା ନାହିଁ ଯେ, ଦ୍ରୌପଦୀ ଆଉ ବଞ୍ଚିବେ ନାହିଁ । ଗୃହ୍ମୁଁ ଗୃହ୍ମୁଁ ପ୍ରାଣତ୍ୟାଗ କରିବେ ।

ସେଇଠୁଁ ଭୀମ ଚିତ୍‌କାର କରି ଉଠିଲେ, "ରହିଯାଅ ଧର୍ମରାଜ ! ରହିଯାଅ ଭାଇ ! ମୃତ୍ୟୁମୁଖୀ ଆମ ଦ୍ରୌପଦୀ । ତୁମର ପତ୍ନୀ, ଅନୁପମା, ତ୍ରୈଲୋକ୍ୟମୋହିନୀ ।"

କିନ୍ତୁ ଯୁଧିଷ୍ଠିର ଅଟକି ଯାଇ ପାରିଲେ ନାହିଁ । ଆରୋହଣରେ ଅଟକି ଯିବାର ପ୍ରଶ୍ନ ଉଠୁ ନାହିଁ । ଅବରାମ ତା'ର ଗତି, ଅପ୍ରତିହତ । ହେଲେ ତାଙ୍କର ଆଶଙ୍କା ହେଲା ଯେ, ଦ୍ରୌପଦୀ ସାଙ୍ଗକୁ ଭୀମ ବି ରହିଯିବ ଏଠି । ଅତି ଭାବପ୍ରବଣ ଏଇ ସାନଭାଇଟା ମୋର ! ଲୋକେ ଜାଣିବାକୁ ମହାପରାକ୍ରମୀ, କିନ୍ତୁ ଅତି ଦୁର୍ବଳ ତା'ର ହୃଦୟ । ଅନୁକମ୍ପାରେ ଭରିଗଲା ଯୁଧିଷ୍ଠିରଙ୍କ ମନ ।

ତା'ପରେ ସେ ଭାବିଲେ ଯେ, ଖାଲି ଅନୁକମ୍ପାରେ ଲାଭ ନାହିଁ । ଯେ ଗଲା ତ ଗଲା । ମୋର ଶତ ଚେଷ୍ଟା ସତ୍ତ୍ୱେ ବିଚାରୀ ଆଉ ଉପରକୁ ଉଠିପାରିଲା ନାହିଁ । ମୋର ଆଉ କିଛି କରିବାର ନାହିଁ ତା' ପାଇଁ । କିନ୍ତୁ ମୋର କର୍ତ୍ତବ୍ୟ, ଧର୍ମଗତ କର୍ତ୍ତବ୍ୟ ହେଉଛି ଭୀମକୁ ଦଣ୍ଡ ଦେବା । ଯେମିତିକି ସେ ପରାଜିତା ଧରାଶାୟିନୀକୁ କୁଣ୍ଢେଇ ଧରି ପଡ଼ି ରହିବନି ଏଠି । ତେଣୁ ସେ ପଛକୁ ଫେରି ନଚାହିଁ ଗତିବେଗକୁ କୋହଳି ନକରି ସମ୍ବୋଧିଲେ ଦ୍ୱିତୀୟ ପାଣ୍ଡବ ସାନଭାଇକୁ—

"ହେ ଭୀମ, ଛାଡ଼ ଆସ ଦ୍ରୌପଦୀଙ୍କୁ । କୋଳରୁ ଉତାର ଦିଅ ତା'କୁ । ତା'ର କର୍ମଫଳ ନେଇ ସେ ଏତିକି ବାଟ ଆସି ପାରିଲା, ଦେଖିକି କିଏ କ'ଣ କରିପାରିବ ? ତୁମେ କାହିଁକି ବାନ୍ଧିହୋଇ ରହିବ ତା' ପାଖରେ ? ତୁମ କର୍ମଫଳ ତୁମର । ଆଗରେ ସ୍ୱର୍ଗ, ପଛରେ ପୃଥ୍ୱୀ, ଏବଂ ପୃଥ୍ୱୀର ଯେତେକ ମୋହମାୟା, ସୋଦର ଭରସା ପୁତ୍ର ବନ୍ଧୁ ଆତ୍ମୀୟଙ୍କ ମିଛ କଲରୋଳ ।"

"ଏଁ, କ'ଣ କହିଲ ଭାଇ ? ଇଏ ସବୁ ମିଛ ? ଦ୍ରୌପଦୀ ମିଛ ?" ଶୋକାକୁଳ କଣ୍ଠରେ ଭୀମସେନ ପ୍ରତିବାଦ କଲେ । ପୁଣି କହିଲେ, "ବ୍ୟାସମୁନି ପ୍ରମୁଖ କୋଟିଏ ଋଷିଙ୍କୁ ନେଇ ଯେଉଁ ଯଜ୍ଞ ଅନୁଷ୍ଠିତ ହୋଇଥିଲା, ତା'ର ପବିତ୍ର ଅଗ୍ନିରୁ ଜନ୍ମିତା ଯାଜ୍ଞସେନୀଙ୍କୁ ମିଛ ବୋଲି କହିବ ? ଏଭଳି ସୁଲକ୍ଷଣା ଯେ, ତା'ର କଳାଡୋଳା ଭ୍ରମରକୁ ଭୁଲାଇ ଦିଏ, ଫୁଲଟିଏ ଭାଗି ହୁଏ ତା'ର ମଥାକୁ, ରଙ୍ଗାଧରକୁ ତାମ୍ବୁଳ ଲୋଡ଼ା ହୁଏ ନାହିଁ, ଆଙ୍ଗୁଳି ଚମ୍ପାକଢ଼ି ପରି, ସୁଲଳିତ ବଚନ କୋକିଳର ବାଣୀ ବୋଲି ଜାଣ, ତା'କୁ ପୁଣି ଛାଡ଼ିଯିବାକୁ ସତ ବଳୁଛି ତୁମର ? ଏବଂ ଏଭଳି ଗୁଣର ଯେ ପାଞ୍ଚଭାଇଙ୍କ ଅର୍ଦ୍ଧୋଳିକୁ କେଡ଼େ ସୁରୁଖୁରୁରେ ତୁଲେଇ ନେଇ ପାରିଲା, କୌରବଙ୍କଠାରୁ ଶତ ଅପମାନ ସହି ମଧ୍ୟ ଭାଙ୍ଗି ପଡ଼ିଲା ନାହିଁ, ତା'କୁ ଏମିତି ଅପନ୍ତରାରେ ଫିଙ୍ଗି ଦେଇ ଯିବ ? ଧର୍ମରାଜ ବୋଲାଉଛ ପରା, ତିଳେହେଲେ ଦୟାମାୟା ନାହିଁ ତୁମ ହୃଦୟରେ ?"

ସାନଭାଇର ଭର୍ତ୍ସନା ଶୁଣି ଯୁଧିଷ୍ଠିର ବ୍ୟଥିତ ହେଲେ ସତ, କିନ୍ତୁ ବିଚଳିତ ହେଲେ ନାହିଁ । ବ୍ୟଥାରେ ଯତ୍କିଞ୍ଚିତ୍ସାମାନ୍ୟ ଗ୍ଲାନି ମିଶି ରହିଥିଲା । କାରଣ ତାଙ୍କର ମନେ ପଡ଼ିଲା, ଯେ କେତେ ସୁଖ ରାତି ବିତାଇଛନ୍ତି ପାଞ୍ଚାଳୀକୁ ନେଇ । ଏବଂ ତାଙ୍କ ଆଖିରେ ନାଚିଗଲା ମାନିନୀର ଲୁହଧୁଆ ମୁହଁ, ତା'ର ପ୍ରଚଣ୍ଡ ଅଭିମାନର ଅନେକ କଥା, ଅନେକ ପ୍ରଶ୍ନ, ଅନେକ ଆହ୍ୱାନ, ଯଥା : ତୁମ ପତ୍ନୀର କ'ଣ କିଛି ମୂଲ୍ୟ ନାହିଁ ଧର୍ମରାଜ ? କିଛି ବୋଲି କିଛି କରିପାରିବନାହିଁ ତା'ର ମାନମର୍ଯ୍ୟାଦାକୁ ବଞ୍ଚାଇବା ପାଇଁ ? ଯାହାକୁ ମୁଁ ଟାଳି ଦେଉଛି, କିନ୍ତୁ ଭୀମ କିମ୍ବା ତା'ର ଆଉ କେଉଁ ସ୍ୱାମୀ ସହାନୁଭୂତି ସହକାରେ ଗୋଟେଇ ନେଉଛି । ହେଉ, ସେ କ'ଣ ଜାଣେ ନାହିଁ ଯେ, ସେଇ ହେଉଛି ମୋର ବଡ଼ପଣ ? ଯେ ତା'ର ପାଟସ୍ୱାମୀ ଏତେ ଦୁର୍ବଳ ନୁହଁନ୍ତି ଯେ କାମକ୍ରୋଧଜନିତ ଏଭଳି ମାନଅଭିମାନର ପାଲରେ ପଡ଼ିବେ ? ଦ୍ୱନ୍ଦ୍ୱ କନ୍ଦଳକୁ ବରିନେବେ ?

ତହୁଁ ତାଙ୍କ ଗ୍ଲାନି ମଧ୍ୟ ତୁଟିଗଲା । ଅଧିକନ୍ତୁ ସେ ସ୍ଥିର କଲେ ଯେ, ତାଙ୍କୁ ଟାଣ ହେବାକୁ ପଡ଼ିବ । ଧର୍ମ ନିଷ୍ଠୁର ନୁହେଁ, କିନ୍ତୁ କଠୋର । ମୋର କର୍ତ୍ତବ୍ୟ ହେଉଛି ଏଇ ପାଗଳ । ଭାଇଟାକୁ ଉଦ୍ଧାର କରିବା । ଯେକୌଣସିମତେ… ଦ୍ରୌପଦୀ ଚରିତ୍ରର ସହାର ! ହଁ, ସେଇ ହେଉଛି ଏକମାତ୍ର ଉପାୟ !

ସେଇଠୁଁ ଧର୍ମରାଜ ଗୋଟାଏ ଉଚ୍ଚ ହସ ଛାଡ଼ିଦେଲେ ବଦ୍ରୂପର ଭଙ୍ଗୀରେ । କହିଲେ—

"ଭାଇ ଭୀମସେନ, କହୁଛ ଦ୍ରୌପଦୀ ସର୍ବସୁଲକ୍ଷଣା, ସର୍ବଗୁଣସମ୍ପନ୍ନା ? ତୁମ ମୁହଁରୁ ଏଭଳି ହାସ୍ୟାସ୍ପଦ କଥା ଶୁଣିବ ବୋଲି ଆଶା କରି ନ ଥିଲି । ବାବୁ, ଯେ ପାଞ୍ଚପାଣ୍ଡବଙ୍କ ନାରୀ, ସେ ତ ସହଜେ ଦୁଷ୍ଟାଚାରୀ ! ଏବଂ କ'ଣ ଭାବିଛ ସେ ତୁମକୁ ବେଶୀ ସ୍ନେହ କରେ ? ଭୁଲ୍, ତା'ର ଯେତେକ ସ୍ନେହଶ୍ରଦ୍ଧା ମଝିଆଁ ପାଇଁ । ତା' ଛଡ଼ା ଭାବ ଦେଖ, ସେ କେତେ ଅନିଷ୍ଟ କରି ନାହିଁ ଆମର ! ଦୀର୍ଘ ପନ୍ଦର ବର୍ଷ ଯାଏଁ ତା'ର କେଶ ମୁକୁଳା କରି ରଖିଲା ପ୍ରତିଶୋଧ ନେବ ବୋଲି, ଏବଂ ଆମର ଅନେକଶତ ଭାଇଙ୍କୁ ମରାଇଲା ଆମ ହାତରେ, ତା' କେଶକୁ ବାନ୍ଧିବ ବୋଲି । ଏଭଳି ପାପିନୀକୁ ଛାଡ଼ି ଆସି ପାରୁ ନାହଁ ? ଛାଡ଼ିଦିଅ, ଛାଡ଼ିଦିଅ ମୁଁ କହୁଛି ।"

ଭୀମ ଦ୍ରୌପଦୀଙ୍କର ନିନ୍ଦା ଆଦୌ ଗ୍ରହଣ କରିପାରିଲେ ନାହିଁ । ଅପରନ୍ତୁ "ତୁମର ମନ ବିକୃତ, ତୁମେ ନିର୍ଦ୍ଦୟ" ବୋଲି କହି ଚାଲିଲେ । କିନ୍ତୁ ଧର୍ମରାଜଙ୍କୁ ଦୂରରୁ ଦୂରକୁ ଚାଲିଯିବାର ଦେଖି ତାଙ୍କ ଛାତିରେ ଛନକା ପଶିଲା । ନିଷ୍ଠୁର କ'ଣ ଆମକୁ ବି ଛାଡ଼ିଛାଡ଼ି ପଳେଇ ଯିବେ ? କିଛି ଅସମ୍ଭବ ନୁହେଁ ତାଙ୍କ ପକ୍ଷରେ । ଅଗତ୍ୟା ସେ ଡାକ ଛାଡ଼ିଲେ ।

"ରୁହ ଭାଇ, ଆମେ ଆସୁଛୁ ତୁମ ପଛେ ପଛେ । ତୁମର ଭ୍ରାତା ସହୋଦରଙ୍କୁ ବି କ'ଣ ତୁମେ ଛାଡ଼ିଦେଇ ପଳେଇବ ?"

ଯୁଧିଷ୍ଠିର ଆମୋଦିତ ହେଲେ । ଭାବିଲେ ଔଷଧ ଠିକ୍ କାମ କରିଛି ତା' ହେଲେ । ଏବଂ ମୁଁ କିଛି ମିଛ କହି ନାହିଁ । ଖାଲି ତା'ର ଅବଗୁଣଗୁଡ଼ିକୁ ଭଲ ଭାବରେ ଚହଲେଇ ଦେଇଛି, ତା' ସାଙ୍ଗକୁ ତା'ର ହଜାରେ ରୂପଗୁଣ ଥାଉ ପଛକେ । ଯେମିତିକି ଭୋଳ ସାନଭାଇଟା ସ୍ୱର୍ଗାରୋହଣରୁ ବିଚ୍ୟୁତ ହେବ ନାହିଁ । ଏଇଆକୁ କୁହନ୍ତି କର୍ତ୍ତବ୍ୟ । ଏଇଆକୁ କୁହନ୍ତି ଧର୍ମ । ଆସ ଭାଇମାନେ, ଯଥାଶୀଘ୍ର ଲାଗି ଆସ ମୋ ପାଖକୁ । ସ୍ୱର୍ଗ ଏମିତି କେତେ ଦୂର କି ?

କିନ୍ତୁ କିଛି ସମୟ ଉତ୍ତାରୁ ତାଙ୍କ ସୁଖବୋଧରେ ପୁଣି ବାଧା ପହଞ୍ଚିଲା । ମାଦ୍ରୀପୁତ୍ର ସହଦେବ ମିନତି କଲେ, "ଭାଇ, ଆଜି ଏଠି ରହିଗଲେ ହୁଅନ୍ତା ନାହିଁ ? କାୟା ସୁସ୍ଥ କରି କାଲି ପ୍ରଭାତରେ ଯାଆନ୍ତେ ।" ଏତିକି କହି କହୁକହୁ ସେ ତୁଷାରଖଣ୍ଡରେ ଝୁଣ୍ଟିଲେ ଏବଂ ବଜ୍ରସମାନ ଶବ୍ଦ କରି କରୁଢ଼ ହୋଇ ପଡ଼ିଲେ । ପୁଣି ଭୀମସେନ ସାନଭାଇକୁ କୋଳରେ ଧରିଲେ, ଏବଂ ଆକୁଳ କଣ୍ଠରେ ଡାକିଲେ ବଡଭାଇଙ୍କୁ—

"ହେ ଯୁଧିଷ୍ଠି ନୃପବର ! ଦଣ୍ଡେ ରହିଯାଅ ! ଦେଖ ଆମ ସହଦେବ ଅଚେତ ହୋଇଗଲାଣି । ଯମ ଆସି ହରି ନେଉଛି ତା'ର ପ୍ରାଣକୁ । ସେଇ ଗୁଣବନ୍ତ ମହାମନ୍ତ୍ରୀ ଭାଇ ଯାହାର ବୁଦ୍ଧି ବଳରେ ପୃଥ୍ୱୀକୁ ଜିଣିପାରିଲ ତୁମେ । ସେଇ ପଣ୍ଡିତ ସୋଦର ଆମର ଫେରି ଚାହିଁବନି ତା' ମୁହଁକୁ ? ଏଭଳି ଭାଇକୁ ଛାଡ଼ିଦିବ କେମିତି ? କ'ଣ ବା କରିବ ହିମବନ୍ତ ଶିଖରକୁ ଯାଇ ?"

ଆଉ କେହି ହୋଇଥିଲେ ମୂଢ଼ମତି ଅନୁଜର ପୁଣି ସେଇ ଭାବତରଳ କଥା-ଗୁଡ଼ାକ ଶୁଣି ଧୈର୍ଯ୍ୟ ହରାଇଥାଆନ୍ତା ହୁଏତ । କିନ୍ତୁ ଯୁଧିଷ୍ଠିର ନିଜକୁ ଦୃଢ଼ କରି ରଖିପାରିଲେ ନିଜକୁ । କହିଲେ ଯେ, ପୁଣି ସେହି କଷ୍ଟ ଔଷଧର ପ୍ରୟୋଗ କରିବାକୁ ପଡ଼ିବ, କଠୋର କର୍ତ୍ତବ୍ୟରେ ଟିକିଏ ବୋଲି ଫାଙ୍କ ରହିବା ଉଚିତ ନୁହେଁ, ନ ହେଲେ ଏ ଭାଇଟାକୁ ପାରି ହେବ ନାହିଁ । ଅତି ଦୁଃଖର ବିଷୟ ଯେ, ସହଦେବ ମଧ୍ୟ ଚାଲିଗଲା । କିନ୍ତୁ କାହାରି ଅଧିକାର ନାହିଁ ସ୍ୱର୍ଗର ବାଟ ଓଗାଳିବ । ମୋତେ ଯିବାକୁ ପଡ଼ିବ ସେଠିକି, ଅବଲମ୍ବେ ସାଙ୍ଗରେ ବାକି ଯେତେକ ଭାଇ । ତେଣୁ ସେ ବିନା ଦ୍ୱିଧାରେ ଚଆଁରିଲେ ଭୀମସେନଙ୍କୁ, କହିଲେ—

"ଛି. ଛିଃ, ବଡ଼ ପାପିଷ୍ଠ ଯେ, ଛାଡ଼ ଦିଅ ତାକୁ ।"

"ସହଦେବ ପାପିଷ୍ଠ ? ଅସମ୍ଭବ । କହିଲ ଦେଖି ତା'ର କ'ଣ ଅବଗୁଣ ଅଛି ?"

"ନାହିଁ ? ଯେ ଭୂତଭବିଷ୍ୟ ଜାଣିପାରେ, ଚନ୍ଦ୍ରପୁରର ବାର୍ତ୍ତା ଯାହା ପାଖରେ ପହୁଞ୍ଚିଯାଏ ଅନାୟାସରେ, ସେ କ'ଣଟା ସାହାଯ୍ୟ କଲା ଆମକୁ ? ପଶାଖେଳ ବେଳେ ସେ ଯଦି କହିଥାଆନ୍ତା ଯେ ତା'ର ଫଳାଫଳ ଏଇଆ ହେବ, ତାହାହେଲେ ଆମେ ରାଜ୍ୟ ଛାଡ଼ି କାହିଁକି ପଶିଥାଆନ୍ତୁ ବନସ୍ତରେ ? ବୁଝିଲ, ଅନେକ ଦୁଃଖ ପାଇଲୁ ଆମେ ଏହାରି ପ୍ରମାଦରେ । ମହାପାପୀଟିଏ ।"

ଭୀମସେନ ବୁଝିଲେ ନାହିଁ । ଆହୁରି ବିକଳ ହେଲେ । କ୍ରୋଧ କଲେ । କିନ୍ତୁ ଯୁଧିଷ୍ଠିର ଥରେ ହେଲେ ଫେରି ଚାହିଁଲେ ନାହିଁ । ତେଣୁ ସେ ଅଗତ୍ୟା ସହଦେବଙ୍କୁ ହିମଭୂମିରେ ଛାଡ଼ି ଦେଇ ଦ୍ୱିଗୁଣ ବେଗରେ ପାଦ ଚଳାଇଲେ, ଅନ୍ୟ ଭାଇଙ୍କ ପାଖ ହୋଇଯିବା ପାଇଁ । ସବା ଆଗେ ଧର୍ମରାଜ, ତାଙ୍କ ପଛକୁ ଅର୍ଜୁନ, ତା'ପରେ ନକୁଳ, ତାଙ୍କ ପଛକୁ ଭୀମସେନ ।

ହାୟ ! ସହଦେବଙ୍କ ପରେ ପରେ ନକୁଳଙ୍କର ସେଇ ଦଶା ହେଲା । କହିଲେ, ବଡ ବାଧା ହେଲାଣି ଭାଇ ଆଜିକ ରହିଯାଅ ।" ଯୁଧିଷ୍ଠିର ତାକୁ ଦନ୍ତ

ଦେଲେ । "ବ୍ୟସ୍ତ ହୁଅ ନାହିଁ ବାବୁ । ଆସ, ଉଠି ଆସ ଉପରକୁ ।" କିନ୍ତୁ ଦ୍ରୁତଗାମୀ ଭାଇଙ୍କ ବୋଲ ମାନ ପ୍ରାଣବକଳରେ ଧାଇଁ ଯାଉ ଯାଉ ତାଙ୍କ ପାଦ ଅଥିଯ୍ଯ ହେଲା. ଏବଂ ସେ ଝୁଣ୍ଟି ପଡ଼ିଲେ । ତହୁଁ ଚେତା ହରାଇଲେ ।

ପୁଣି ସେହି ଶବ୍ଦବୌଦ୍ଧ ଭୀମସେନଙ୍କର । ବକଳ ପ୍ରାର୍ଥନା ବଡ଼ଭାଇଙ୍କୁ— "ରହିଯାଅ ଭାଇ, ଦଣ୍ଡେ ରହିଯାଅ···।"

ଏବେ ଯୁଧିଷ୍ଠିରଙ୍କ ମନରେ, ଆଶଙ୍କା ହେଲା ଯେ, ଏମିତ ସମସ୍ତେ ତାଙ୍କୁ ଛାଡ଼ି ଯାଉଛନ୍ତି ଗୋଟି ଗୋଟି ହୋଇ । କିନ୍ତୁ ତତ୍‌କ୍ଷଣାତ୍ ସେ ନିଜକୁ ଚେତାଇ ଦେଲେ । କହିଲେ, ତୋର ଗୃହ ନାହିଁ । ତୁ କଦାପି ଅଟକ ଯାଇପାରିବୁ ନାହିଁ । ତୋତେ ତୁରନ୍ତ ଯିବାକୁ ପଡ଼ିବ ସେଠିକି, ସଶରୀରେ । ସ୍ୱର୍ଗର ତାଡ଼ନା । ବିଧାତାଙ୍କ ଅକୁହା ଡାକିବା—ଧର୍ମରାଜ, ଆସ ନେବ ତୁମ ଧର୍ମର ପୁରସ୍କାର, କିଏ ଆସିଲେ ଆସୁ କି ନଆସୁ ତୁମ ସାଙ୍ଗରେ ।

ତେଣୁ ଯୁଧିଷ୍ଠିର ପୂର୍ବବତ୍ ଭୀମସେନଙ୍କୁ ବୁଝେଇ ବସିଲେ ଏବଂ ପ୍ରାଣ ହରାଇ-ଥିବା ନକୁଳର ନିନ୍ଦା କଲେ । ଭୀମ ଯେତେବେଳେ କହିଲେ ସେ କେଡ଼େ ଧାର୍ମିକ, କେଡ଼େ ସୁକୁମାର ତଥା ମହାବଳୀ, ଲକ୍ଷ ରାଜାଙ୍କ ଉପରେ ବୋଲଏ ଭୂଜଙ୍ଗ, ଇତ୍ୟାଦି, ଇତ୍ୟାଦି, ଯୁଧିଷ୍ଠିର କହିଲେ ଯେ, ତା'ର ଦର୍ପ ବଢ଼ିଗଲା ନିଜର ସୁନ୍ଦରତା ଓ ପରାକ୍ରମ ନେଇ । ସେଇ ହେଉଛି ତା'ର ପାପ । ଆତ୍ମବଡ଼ିମାର କ୍ଷମା ନାହିଁ ।

କିନ୍ତୁ ମନେ ହେଲା ଭୀମସେନ ଆଉ ସହ୍ୟ କରିପାରୁ ନାହାଁନ୍ତି ଏଇ ଭ୍ରାତୃବିୟୋଗର ପାଳି । ବୃକୋଦର ଉଚ୍ଚସ୍ୱରରେ କାନ୍ଦି ଉଠିଲେ ।

ନିଷ୍ଫଳ ସେ କାନ୍ଦଣା । ଯୁଧିଷ୍ଠିର ପବନରୁ ବଳି ବେଗରେ ମାଡ଼ି ଚାଲି ଆଥାନ୍ତି । ସତେକି ସ୍ୱର୍ଗ ଯେତିକ ପାଖ ହୋଇ ଆସୁଛି, ତାର ଡାକରା ଆହୁରି ପ୍ରବଳ ହୋଇ ଉଠୁଛି, ଆହୁରି ଦୁରନ୍ତ, ଦୁର୍ନିବାର । ଅଗତ୍ୟା ଭୀମସେନ ନକୁଳଙ୍କୁ ମଧ୍ୟ ହିମାଞ୍ଚଳରେ ଶୁଆଇ ଦେଲେ ଏବଂ ଅନୁଧାବନ କଲେ ଅନ୍ୟ ଦୁଇ ଭାଇଙ୍କର । ଆଗରେ ଯୁଧିଷ୍ଠିର, ମଝିରେ ଅର୍ଜୁନ, ପଛକୁ ସେ ନିଜେ ।

ଏଣିକ ଶୁଭ୍ର ତୁଷାର ଅଗମ୍ୟ ଅନ୍ଧକାର । ଅର୍ଜୁନ ମଧ୍ୟ ନିଜକୁ ଅଶକ୍ତ ବୋଧ କଲେ । କ୍ଷଣକ ପାଇଁ ବିଶ୍ରାମ ନେବା ବୋଲି ଭାଇଙ୍କୁ ଅନୁରୋଧ କଲେ । କିନ୍ତୁ 'ତୁମେ ଆସୁଥାଅ ପଛେ ପଛେ' କହି ଧର୍ମରାଜ ଆହୁରି ବେଗି ବେଗି ଚାଲିବାକୁ ଲାଗିଲେ ।

ତାଙ୍କ ଦୋଷ ନୁହେଁ । କଏ ଜାଣିଥିଲା ଯେ ମହାପରାକ୍ରମୀ ଗାଣ୍ଡୀବଧାରୀ ଅର୍ଜୁନ ମଧ୍ୟ ଟଳି ପଡ଼ିବେ ? ହେଲେ ସେଇଆ ହେଲା । ଏବଂ ଆଶ୍ଚର୍ଯ୍ୟର ବିଷୟ, ଯୁଧିଷ୍ଠିର ମଧ୍ୟ 'ଅହା ମୋ ପ୍ରାଣସଖା, ତୁ ମଧ୍ୟ ଚାଲିଗଲୁ !' ବୋଲି କହି କାନ୍ଦି ପକାଇଲେ । କିନ୍ତୁ ଧର୍ମର ସ୍ୱଭାବ ହେଉଛି, ଯେକୌଣସି ପରିସ୍ଥିତିରେ ଏବଂ ଯେକୌଣସିମତେ ଦୁର୍ବଳତାକୁ ଜିଣିବା । ତେଣୁ ଯୁଧିଷ୍ଠିର ତାଙ୍କର ଆବେଗକୁ ତତ୍‌କ୍ଷଣାତ୍ ଆୟତ୍ତ କରି ନେଲେ, ଏବଂ ପୁନର୍ବାର ରୋଦନ ଆରମ୍ଭ କରି ଦେଇଥିବା ଭୀମସେନଙ୍କୁ ଜୀବନଦର୍ଶନର ତତ୍ତ୍ୱ ଶୁଣାଇଲେ । କହିଲେ—

"ଯେତେ ଶିର କୋଡ଼ି କାନ୍ଦିଲେ ମଧ୍ୟ ଅର୍ଜୁନ କୋଉ ଫେରିଯିବ ନା ବାହୁଡ଼ି ଆସିବ ? ଅନେକ ପୁଣ୍ୟ କରିଥିଲା ସେ, ସେଇଥିପାଇଁ ଏତେଦୂର ଆସିପାରିଲା । ଭୁଲିଯାଅ ତାକୁ, ମୋ ଭାଇଟା ପରି । ଆସ, ଉଠି ଆସ ଉପରକୁ, ଅର୍ଜୁନକୁ ଶୁଆଇ ଦେଇ ଚାଲିଆସ··· ।"

ଭୀମସେନ କଅଣ ସହଜେ ବୁଝିବା ଲୋକ ? ସେ ତଥାପି ମୃତ ଅର୍ଜୁନଙ୍କୁ କୋଳରେ ଧରି ସେଇଠି ବସି ରହିଲେ ଏବଂ କାନ୍ଦିବାକୁ ଲାଗିଲେ ।

ସେଇଠୁଁ ଯୁଧିଷ୍ଠିରଙ୍କୁ କହିବାକୁ ପଡ଼ିଲା, ଯାହା ନ କହିଥିଲେ ସେ ଖୁସି ହୋଇଥାଆନ୍ତେ ନିଶ୍ଚୟ । କହିଲେ—

"ଫାଲ୍‌ଗୁନର ମଧ୍ୟ କଅଣ କମ୍ ଗର୍ବ ହୋଇଯାଇଥିଲା ? ଏକଚ୍ଛତ୍ରପତି ବୋଲାଉଥିଲା ନିଜକୁ । କହୁଥିଲା ଯେ, ମୋରି ବଳରେ ଯୁଧିଷ୍ଠିର ମେଦିନୀକୁ ଜିଣିପାରିଲା । ଏଇ ମଣ୍ଡଗର୍ବ ପାପ ନୁହେଁ ତ ଆଉ କଅଣ ? ଛାଡ଼ ସେ ପାପୀକୁ, ଛାଡ଼ି କରି ଆସ । ଉଠି ଆସ ଉପରକୁ ।"

"କିନ୍ତୁ କାହିଁକି ? ହିମବନ୍ତର ଶିଖରରେ ଏମିତି କି ସୁଖ ମିଳିଯିବ ତୁମକୁ ?"

ସେଇ ଶେଷ ପ୍ରଶ୍ନ । ଯାହାର ଉତ୍ତର ଅତି ସହଜ ଓ ସାଧାରଣ, କିନ୍ତୁ ଏମାନଙ୍କ ମୁଣ୍ଡରେ ପଶିବାକୁ ନାହିଁ । ତଥାପି ଧର୍ମରାଜ ଧୀରବାଣୀ ଭାଷିଲେ, ସହାସ୍ୟରେ । କହିଲେ, "ଭାଇ ମୋର, ମର୍ତ୍ତ୍ୟମଣ୍ଡଳରେ ଜାତ ହେଲେ ଅବଶ୍ୟ ମରିବାକୁ ହେବ । ତହୁଁ ସ୍ୱର୍ଗଲାଭ, ଯଥାନୁରୂପ । କିନ୍ତୁ ଦେହ ଯେନି ସ୍ୱର୍ଗକୁ ଯିବାର ଯେଉଁ ଅମୃତ ଅନୁଭବ, ମରଜଗତର ସେହି ସର୍ବୋତ୍ତମ ଲକ୍ଷ୍ୟରୁ ତୁ କ'ଣ ଜାଣିଶୁଣି ଓହରିଯିବୁ ?" ତା'ପରେ ମୁହୂର୍ତ୍ତେ ରହିଯାଇ କହିଲେ ଦି'ପଦ କଥା, ଅନ୍ତରରୁ ଓଟାରି ଆଣିଲା ପରି ।

"ମୋ ଆତ୍ମାରୁ ଅଭିନ୍ନ ତୁମେ ଗୃହଜନଗୋକ, କିନ୍ତୁ ଜଣ ଜଣ କରି ଭିନ୍ନ ହୋଇଯାଉଛ, ଆପଣା ପାପପୁଣ୍ୟ ଅନୁଯାୟୀ… ।"

ବଢ଼ିଉଠୁଥିବା ନିଃସଙ୍ଗତାର ଗୋପନ, ହେଲେ ଦାରୁଣ ଦୁଃଖ କିଅଣ ଏଇଠି ଫୁଟି ଉଠିଲା ଧର୍ମରାଜାଙ୍କ କଣ୍ଠରେ, ଯାହାକୁ ଭୀମସେନ ଶୁଣି ପାରିଲେ ? ନା ଆପଣା ନିଃସଙ୍ଗତାର ଆଶଙ୍କା ତାଙ୍କୁ ମାଡ଼ିବସିଲା ? ଯାହାହେଉ, ଭୀମସେନ ଆର୍ତ୍ତନାଦ କରି ଉଠିଲେ ।

"ନା ନା, ମୁଁ ତୁମକୁ ଛାଡ଼ି କରି ଯିବି ନାହିଁ । ମୋତେ ତୁମେ ଛାଡ଼ି କରି ଯାଅ ନାହିଁ ପ୍ରଭୁ ! ମୋ ବିନୁନେ କେମିତି ଏକାକୀ ବଞ୍ଚି ରହିବ ଏଇ ନିର୍ଜନ ଗିରିରେ ?"

ସେଇଠୁଁ ଯୁଧିଷ୍ଠିର ତାଙ୍କୁ ବଡ଼ିଲା ପରି କହିଲେ, "ପାରିବ ତ ? ଅସମ୍ଭାଳ ତୁମ ଆତ୍ମା, ତୁମକୁହିଁ ଅଗୋଚର, ପାରିବ ତ ମୋ ସାଙ୍ଗରେ ଆସି ?"

ଭୀମସେନ ତାଙ୍କ ଆହ୍ୱାନକୁ ସ୍ୱୀକାର କରି ଧାଇଁବାକୁ ଲାଗିଲେ ଭାଇଙ୍କ ପଛେ ପଛେ । କିନ୍ତୁ ତାଙ୍କର ପାଦ ମଧ୍ୟ ଖସିଗଲା କିଛି ସମୟ ପରେ । ସେଇଠୁଁ ସେ ଭୂମିସାତ୍ ହେଲେ, ଏବଂ ମନ୍ଦରଗିରି ଭାଙ୍ଗିପଡ଼ିଲା ପରି ଏକ ବିରାଟ ଶବ୍ଦରେ ଆକାଶ ପୃଥିବୀ କମ୍ପି ଉଠିଲା । "ହେ ନିଷ୍ଠୁର, ମୋତେ ଛାଡ଼ି ଦେଇ ଯାଅ ନାହିଁ !" ବୋଲି ଭୀମ ଚିତ୍କାର କଲେ । ଯୁଧିଷ୍ଠିର ପଛକୁ ଫେରି ଚାହିଁଲେ, ବ୍ୟଥାଭରା ହୃଦୟରେ । ଶେଷ ସୋଦରଟିକୁ ହରାଇବାର ବ୍ୟାଥା । ତା' ସହିତ ଆସନ୍ନ ନିଃସଙ୍ଗତାର ଶୂନ୍ୟତା ମିଶି ରହିଥିଲା କି ନାହିଁ, କହି ହେବ ନାହିଁ । ଯାହାହେଉ, ହୃଦୟର ସମସ୍ତ କନ୍ଦଳକୁ ଚାପି ରଖି ସେ କହିଲେ ହସି ହସି—

"ହଉ, ଯେ ଯାହାର ପୁଣ୍ୟ ଘେନି ସ୍ୱର୍ଗପୁର ଯାଅ । ଆସି ନ ପାରିଲ ଯଦି, ଚୁନା ହୋଇ ଶୁଅ ।"

ମରଣ ମଧ୍ୟ ସହଜେ ଜିଣିପାରିଲା ନାହିଁ ଭୀମସେନଙ୍କୁ । ସେ ବାମଅଙ୍ଗ ଭରା ଦେଇ ଉଠି ଉଠି ଆସିଲେ । ଏବଂ ଧାଇଁଲେ ଯୁଧିଷ୍ଠିରଙ୍କ ପଛରେ । ହେଲେ ହିମବନ୍ତର ଶିଖର ଅଉ ଅଳପଦୂର ଅଛି, ସେ ଭୀମରଡ଼ି ଦେଇ ପୁଣି ପଡ଼ିଗଲେ ତୁଷାର ଭୂଇଁରେ । ତଥାପି ସେ ଉଠିବାକୁ ଚେଷ୍ଟା କଲେ । ଯୁଧିଷ୍ଠିରଙ୍କ କଥା ମାନି ଦକ୍ଷିଣ ଅଙ୍ଗକୁ ପେଲିଲେ । କିନ୍ତୁ ପାରିଲେ ନାହିଁ । ଇହଲୀଳା ସମ୍ବରଣ କଲେ ।

ଯୁଧିଷ୍ଠିର ଆସି ପହଞ୍ଚିଲେ ଶିଖରରେ । ଏକାକୀ । ହେଲେ ନିଜକୁ ନିରେଖି ଅନୁଭବ କରିବାର ସମୟ ମିଳିଲା ନାହିଁ ତାଙ୍କୁ । କାରଣ ସ୍ୱର୍ଗର ନିମନ୍ତ୍ରଣ ଅଜାଡ଼ି ହୋଇ ପଡ଼ିଲା ତାଙ୍କ ଉପରେ—ଶହ ଦିଗ ଦେବତାଙ୍କ ସାଧୁବାଦ, ଏବଂ ଦେବଦୁନ୍ଦୁଭିର ଧ୍ୱନି ।

ପଞ୍ଚାଶ ସହସ୍ର ଯୋଜନ ତଳକୁ ଦୃଷ୍ଟି ହେଉ ନାହିଁ । ସେଇଠି ଅଛନ୍ତି ମୋ ଚାରିବର ଦୃଶଭାଇ ଓ ଦ୍ରୌପଦୀ । କିନ୍ତୁ ସେଇ ଅନୁମାନର ବେଦନାଟିକ ମଧ୍ୟ ରହି ପାରିଲା ନାହିଁ ବେଶି ସମୟ । ସ୍ୱର୍ଗ ହାତପାହାନ୍ତାରେ । ଉଚ୍ଛନ୍ନ କରୁଛି ।

(୨)

ଦେହ ଟିକେ ଯାଉଛି । ରୋମ ଟାଙ୍କୁରି ଉଠୁଛି । ଯୁଧିଷ୍ଠିର ନିଜକୁ କହିଲେ ଯେ, ଏଇ ଶିହରଣ ସ୍ୱର୍ଗରୁ ଆସୁଛି । ଦିବ୍ୟ ଅନୁଭବ ଏଇଆକୁ କୁହନ୍ତି । କିନ୍ତୁ ସେଥିର ପୁଲକ କିଣ ଏମିତି ଥରାଇ ଦିଏ ଅସ୍ଥିମଜ୍ଜାକୁ ? ସମ୍ପୂର୍ଣ୍ଣ ରାଜବେଶ ପିନ୍ଧିଛି ମୁଁ, ହେଲେ ମନେ ହେଉଛି ମୁଁ ନଗ୍ନ, ଏକୁଟିଆ । ନା, ଯୁଧିଷ୍ଠିର ନିଜକୁ ବୁଝେଇଲେ । କହିଲେ, ତୁ ଏକୁଟିଆ ନୁହଁ, ତୁ ଅର୍ଦ୍ଧ ଶାସ୍ତ୍ର । ତୋ ଧର୍ମାଚରଣରେ ତୁଳନା ନାହିଁ, ସେଇଥିପାଇଁ ତୁ ଅର୍ଦ୍ଧ ଶାସ୍ତ୍ର । ଏତକ ଭୁଲିଗଲେ ଚଳିବ ନାହିଁ ।

ସେଇଠୁଁ ସେ ଚତୁଃପାର୍ଶ୍ୱକୁ ଅନେଇଲେ । ଆପଣା ଅର୍ଦ୍ଧ ଶାସ୍ତ୍ର ସ୍ୱରୂପକୁ ସ୍ୱସ୍ଥାନରେ ଆପନା କରି ଏଇ ଅଭିନବ ଜଗତର ଭାଉ ମୂଲେଇଲା ପରି । ଆଃ, ପୂର୍ବରେ ହିମଗିରି, ଯେଉଁଠି ସୂର୍ଯ୍ୟଦେବତାଙ୍କ ଆସ୍ଥାନ । ଦକ୍ଷିଣକୁ ଅନନ୍ତଗିରି, ତା'ଉପରେ ବସିଛନ୍ତି ଅନନ୍ତ ନାରାୟଣ । ପଶ୍ଚିମରେ ମେରୁପର୍ବତ, ଇନ୍ଦ୍ରଦେବଙ୍କ ଆସ୍ଥାନ । ଏବଂ ଉତ୍ତରକୁ କୈଳାସ । ତା'ଉପରେ ଢ଼ୁଲୁଢ଼ୁଲୁ ନେତ୍ରରେ ବସିରହିଛନ୍ତି ସ୍ୱୟଂ ସଦାଶିବ । ଅପୂର୍ବ ଅପରୂପ ଏଇ ଦୃଶ୍ୟ ଅଧାସ୍ୱର୍ଗର ପରିବେଶ । ସ୍ୱଚକ୍ଷୁରେ ଏହାକୁ ଦେଖିପାରିଲି, ଏହାଠାରୁ ବଳି ସୌଭାଗ୍ୟ ଆଉ କଅଣ ଥାଇପାରେ ? ଅବଶ୍ୟ ନିଜକୁ ନିଜେ ଦେଖିଲି, ନିଜପାଇଁ, ଆଉ କେହି ନାହାନ୍ତି ମୋ ପାଖରେ । ଏକାକୀ । କିନ୍ତୁ ଏକାକୀ ବୋଲି ତ ଅର୍ଦ୍ଧ ଶାସ୍ତ୍ର···ଆରେ ଇଏ କଅଣ ? ଏଠି ଏଇ ଜୀର୍ଣ୍ଣ କୁପଟାଏ କୁଆଡ଼ୁ ଆସିଲା ? ଏବଂ ଏମାନେ କିଏ ? ଯୁଧିଷ୍ଠିରଙ୍କ ଦୃଷ୍ଟି ପଡ଼ିଲା ତା'ଭିତରେ ଯନ୍ତ୍ରଣା ଭୋଗୁଥିବା ଛୟାନବେ ସହସ୍ର ରାଜାଙ୍କ ଉପରେ । ସେମାନେ ଥିଲେ ନର୍କର ଅନ୍ୟତମ ଅଂଶରେ ଦଣ୍ଡ ଭୋଗୁଥିବା ପାପୀଗଣ ।

ଧର୍ମରାଜଙ୍କ ଦୃଷ୍ଟି ପଡ଼ିଲାରୁ ତାଙ୍କ ପାପ କଟିଗଲା, ଅଭିଶାପର ସର୍ତ୍ତ ଅନୁଯାୟୀ । କିନ୍ତୁ ଯୁଧିଷ୍ଠିର ନର୍କ ଦେଖିଲେ । ତାଙ୍କୁ ନର୍କ ଦେଖିବାକୁ ପଡ଼ିଲା,

କାହିଁକନା ମହାଭାରତ ଯୁଦ୍ଧରେ ସେ ଅଧା ମିଛଟିଏ କହୁଥିଲେ ଦ୍ରୋଣାଚାର୍ଯ୍ୟଙ୍କୁ । ଖାଲି ହାତୀ ଅଶ୍ୱତ୍ଥାମା ମରିଛି ବୋଲି ଜାଣିଥିଲେ ମଧ କହିଲେ ଯେ, ହାତୀ ହେଉ କି ମଣିଷ ହେଉ, ଅଶ୍ୱତ୍ଥାମା ମରଯାଇଛି । ବେଶ୍, ସେତିକ ହେଲା ତାଙ୍କ ଦଣ୍ଡ । ସେଇ ଦୃଷ୍ଟିପାତ । ଗଣି ଗଣି ସତ୍ୟବଚନର ସ୍ତୁପକୁ ଆଡ଼େଇ ଦେଇ ଏଇ ସାମାନ୍ୟ ଅଧା ମିଛ (କମ୍ବା ଅଧା ସତ) ଟିକ ଆଉ କଅଣ କରପାର ଥାଆନ୍ତା ତାଙ୍କର ?

ଯାହାହେଉ, ସେତିକ ଦୁର୍ଦ୍ଦଶାରୁ ମଧ ସେ ଶୀଘ୍ର ରକ୍ଷା ପାଇଗଲେ, ତଥା ତା'ର ଯନ୍ତ୍ରସାମାନ୍ୟ ଉତ୍ତାପରୁ, ଏବଂ ପୁଣି ଫେର ଆସିଲେ ଶୁଭ୍ରହିମର ଆସ୍ତରଣକୁ; ଯେଉଁଠି କେବଳ ସେ, ଉପରେ ସ୍ୱର୍ଗ, ଏବଂ ପୁଣି ସେଇ ଅଭୂତପୂର୍ବ ଶିହରଣ ।

ଯଥାକ୍ରମେ ଯୁଧିଷ୍ଠିର ଶିହରଣକୁ ସମ୍ଭାଳନେଲେ । କନ୍ତୁ ସେ ତାଙ୍କର ଅର୍ନ୍ତଜିଜ୍ଞାସାପଣକୁ ସହଜେ ମୁଠେଇ ଧର ପାରଲେ ନାହିଁ କ ନଃସଙ୍ଗତାକୁ ଜଣିପାରଲେ ନାହିଁ । ଫଳରେ ବିଷାଦ ଘୋଟିଗଲା ତାଙ୍କ ମନରେ, ଏବଂ ତା' ସାଙ୍ଗକୁ ଗୋଟାଏ ଅକାରଣ ଦୋଷୀଭାବ । ଭାବଲେ—ଯେତେକ ବନ୍ଧୁ ସୋଦରଙ୍କୁ ମଗାଇ ଆସିଛି ମୁଁ । ସେଇଲାଗି ଆଜ କେହି ନାହାନ୍ତି ମୋ ପାଖରେ, କେହି ନାହାନ୍ତି ମୋତେ 'ଆହା' ପଦୁଟିଏ କହିବାପାଇଁ । ସ୍ନେହସହାନୁଭୂତିର ଧାପେ ଉଷୁମ ଆଣି ଦେବା ପାଇଁ । ହୋଇପାରେ ମୁଁ ଧର୍ମରାଜ, ଅତିମାନବ, ଅର୍ନ୍ତଜିଜ୍ଞାସୁ । କନ୍ତୁ ଅତିମାନବ ଯାହା, ଅଣମାନବ ସେଇଆ ନୁହେଁ କ ?

ସ୍ୱୟଂ ଧର୍ମଦେବତାଙ୍କ ମନରେ ଦୟା ଆସିଲା ତାଙ୍କର ଏଇ ଦୁରବସ୍ଥା ଦେଖି । ନଃସଙ୍ଗତାରେ ଏତେ ଦୁଃଖ ଥାଏ ? କଅଣ ମିଳେ ସେଇ ସଙ୍ଗ ସୁଖରୁ, ଯାହାର ପ୍ରତି ପଦରେ କଳହ କନ୍ଦଳ, ରାଗରୋଷ ଓ କ୍ରନ୍ଦନର ରୋଳ ଉଠୁଥାଏ ? ଅଦ୍ଭୁତ ଏଇ ନର-ମଣିଷର ଚରିତ୍ର ! ହେଲେ ସେ ତାଙ୍କ ପ୍ରିୟତମ ଭକ୍ତର କଷ୍ଟ ସହି ପାରଲେ ନାହିଁ । ବ୍ୟତିବ୍ୟସ୍ତ ହୋଇ ଉଠିଲେ । କନ୍ତୁ ଉପାୟ କଅଣ ? ଯୁଧିଷ୍ଠିରଙ୍କୁ ସଶରୀରେ ଯିବାକୁ ପଡ଼ିବ ସ୍ୱର୍ଗକୁ । ତେଣୁ କେହି ତାଙ୍କ ସାଙ୍ଗରେ ଯାଇପାରିବେ ନାହିଁ, ଅସମ୍ଭବ ।

କେହି ନରଦେହୀ ତାଙ୍କ ସାଙ୍ଗରେ ଯିବେ ନାହିଁ ସିନା, ମୋତେ କଏ ମନା କରିଛି ? ଧର୍ମଦେବଙ୍କର ହୃଦୟଭାବ ହଠାତ୍ ଏକ ସୁମଧୁର ସସ୍ନେହ ହସରେ ରୂପାୟିତ ହେଲା । ସତେକ ସେ ଗୋଟାଏ ରହସ୍ୟର ସେତୁ ବାନ୍ଧୁଛନ୍ତି ତାଙ୍କ ଭକ୍ତଙ୍କ ପାଇଁ ।

ଏହି ସମୟରେ ଯୁଧିଷ୍ଠିର ଗୋଟିଏ ଆବିଷ୍କାର କଲେ । ଦେଖିଲେ ଜଣେ ଅଛି ତାଙ୍କ ପାଖରେ, ଟିକଏ ଗୁଡ଼ା । ଧୋବଧାଉଳିଆ କୁକୁରଟିଏ ! କୁକୁରଟିଏ କେମିତି କୁଆଡ଼ୁ ଆସି ପହଞ୍ଚିଗଲା ଏଠି, ଏଇ ଘୋର ହିମ ଭୂଇଁରେ ? ପୁଣି ଅସି ବସିଯାଇଛି କେଡ଼େ ଆରାମରେ, ହିମବନ୍ତର ଶୁଭ୍ରତାରେ ମିଶେଇ ଦେଇଛି ନିଜକୁ !

ହେଲେ ସେ ଏଇ ରହସ୍ୟକୁ ନେଇ ମୁଣ୍ଡ ଘୂରାଇବାକୁ ଚାହିଁଲେ ନାହିଁ । ବଡ଼କଥା ହେଉଛି ଯେ, ଜୀବଟିଏ ଆସିଛି ତାଙ୍କ ପାଖକୁ । ରକ୍ତମାଂସର ପ୍ରାଣୀଟିଏ । ଆରୋହଣ ବନ୍ଦ ତଳେ ବସି ଯୁଧିଷ୍ଠିର ତା'କୁଇ ଚାହିଁ ରହିଲେ । ମନ ହେଉଥାଏ ତାକୁ ଆହୁରି ପାଖକୁ ଟାଣି ଆଣନ୍ତେ, ତା'କୁ ଆଉଁସି ଦିଅନ୍ତେ ଆଉ ତା'କୁ ବାରମ୍ବାର କୁହନ୍ତେ—ତୁଇ ମୋର ସାଥୀ, ତୁଇ ମୋର ସଖା !

ହଠାତ୍ ବାଘଟାଏ ବାହାରି ଆସିଲା ପର୍ବତ ତଳର ବନସ୍ତ ଭିତରୁ । ଏବଂ ଶ୍ୱାନକୁ ଖାଇବା ପାଇଁ ଅଗ୍ରସର ହେଲା । ତହୁଁ ଶ୍ୱାନ ପ୍ରାଣବିକଳରେ ବୋବାଳି ଛାଡ଼ିଲା ଯୁଧିଷ୍ଠିରଙ୍କ ଆଡ଼କୁ ଚାହିଁ— 'ମୋତେ ବଞ୍ଚେଇ ପାରିବ ନାହିଁ, ନେଇ ଯିବ ନାହିଁ ତୁମ ପାଖକୁ ?''

ଓଃ ! ପୂର୍ବରୁ କିଏ ଏମିତି ଡାକୁଥିଲା କି ମୋତେ ? ଯାହାର କାନ୍ଦଣାକୁ ମୁଁ ଶୁଣିଲି ନାହିଁ ? ନା ନା, ଏଇ ପ୍ରଥମ । ଏଇ କୁକୁର ହିଁ ଡାକୁଛି ମୋତେ ତାକୁ ରକ୍ଷା କରିବା ପାଇଁ । ଅଉ ମୋ ଅନ୍ତଃସ୍ଥଳ ମନ୍ଥି ହୋଇଯାଉଛି ତା'ର ଡାକରା ଶୁଣି । ମୋ ସଖାସୋଦର ସଭିଏଁ ନାଶ ଗଲେ, ହେଲେ କାହାରି ପାଇଁ ଦୟା ବସିଲା ନାହିଁ ମୋ ହୃଦୟରେ । କିନ୍ତୁ ଏଇକ୍ଷଣି ମନେ ହେଉଛି, ବୋଧହୁଏ ସେଇଥିପାଇଁ ମନେ ହେଉଛି ଯେ, ଏଥର ଆଉ କ୍ଷମା ନାହିଁ ମୋର । ମୁଁ ଶ୍ୱା'ର ମରଣ ଦେଖିପାରିବ ନାହିଁ, ସହି ପାରିବ ନାହିଁ ! ଶ୍ୱାର ବିନାଶରେ ମୋର ଧର୍ମନାଶ ହେବ, ଜୀଇଁବାରୁ ମରଣ ହିଁ ସାର ହେବ, ସେଇ ହେବ ମୋର ପୌରୁଷ···

ଭବଦଗ୍ଧ ଯୁଧିଷ୍ଠିର ଅବିଳମ୍ବେ କୁକୁରକୁ ଆବୁରି ବସିଲେ । ତାକୁ ରକ୍ଷାକଲେ ବ୍ୟାଘ୍ର ମୁଖରୁ ।

ସେଇଠୁଁ ବିଧାତା ପୁରୁଷ ବିଚାରିଲେ ଯେ, ଯଥେଷ୍ଟ ହେଲାଣି ଏଇ ଲୀଳାଖେଳାର ହୁନ୍ଦର । ବିଚରା ଧର୍ମରାଜାଙ୍କୁ ଅଧିକ ବିଭ୍ରାନ୍ତିରେ ପକାଇବା ଉଚିତ ହେବ ନାହିଁ । ଏଥର ତାଙ୍କୁ ତାଙ୍କର ପାଉଣା ଦେଇଦେବାକୁ ପଡ଼ିବ । ମଣଷ୍ପରେ ସ୍ୱର୍ଗ । ହେଇଠୁଁ ସେ ଇନ୍ଦ୍ରଙ୍କୁ ଆଜ୍ଞା ଦେଲେ ଯୁଧିଷ୍ଠିରଙ୍କୁ ପୁଷ୍ପକ ବିମାନରେ ବସାଇ ସସମ୍ମାନେ ନେଇଆସିବା ପାଇଁ ।

ଇନ୍ଦ୍ରଙ୍କୁ ଆସିବାର ଦେଖି ଯୁଧିଷ୍ଠିର ବାଟତଳୁ ଉଠି ଆସି ତାଙ୍କୁ ସ୍ତୁତି କରିବାରେ ଲାଗିଲେ । ଏବଂ ଜାଣିଲେ ଯେ, ମହାଯାତ୍ରା ଶେଷ ହେବାକୁ ଯାଉଛି । କିନ୍ତୁ ଇନ୍ଦ୍ର ଯେତେବେଳେ ଓହ୍ଲାଇ ଆସି ତାଙ୍କୁ ସାଦର ନିମନ୍ତ୍ରଣ ଜଣାଇଲେ ରଥକୁ ଉଠି ଆସିବା ପାଇଁ, ଧର୍ମରାଜା ଗୋଟାଏ ନିର୍ବୋଧ ପିଲାଳିଆ ପ୍ରଶ୍ନ ପଚାରିଲେ ତାଙ୍କୁ— "ସିଏ ଯେ, ଏକୁଟିଆ ଯିବ କେମିତି ? ସୋଦରମାନଙ୍କୁ ନାଶ କରି ଏକୁଟିଆ ଅମର ହୋଇ ବସିବ ?" ସତେକି ଯେଉଁଥିପାଇଁ ଏତେ କଥା, ଏତେ ବ୍ୟଥା, ସେଥିପ୍ରତି ତାଙ୍କର ପ୍ରକୃତରେ ସ୍ପୃହା ନାହିଁ ତିଳେ ହେଲେ । ସ୍ୱର୍ଗଲାଭରୁ ଓହରିଯିବାର କିଛି ଗୋଟାଏ ବାହାନା ଖୋଜୁଛନ୍ତି ଧର୍ମରାଜ ।

ଯାହାହେଉ ସସ୍ମିତ ଇନ୍ଦ୍ରଦେବ ତାଙ୍କୁ ବୁଝାଇଦେଲେ ଯେ, ଚିନ୍ତାର କୌଣସି କାରଣ ନାହିଁ । ଯେହେତୁ ନରଦେହ ତ୍ୟାଗ କଲା ପରେ ତାଙ୍କ ନିକ-ଲୋକଯାକ ବସିଲେଣି ଯାଇ ସ୍ୱର୍ଗରେ । ଗୃହପାଣ୍ଡବ, ତଥା ତାଙ୍କ କୁଳକୁଟୁମ୍ବ । ଏବଂ ସ୍ୱୟଂ ଶ୍ରୀକୃଷ୍ଣ । କହିଲେ, "ସେମାନେ କେବେଠୁଁ ତୁମର ବାଟ ଗୁହିଁ ବସିଛନ୍ତି ପରା ! ଆସ, ଆସ, ଚଞ୍ଚଳଆସ ଏଥର..."

ଇନ୍ଦ୍ରଙ୍କ କଥା ମାନି ଯୁଧିଷ୍ଠିର ରଥ ଆଡ଼କୁ ମୁହାଁଇଲେ । କିନ୍ତୁ ତା' ପୂର୍ବରୁ ସେ ଗୋଟାଏ ବିଚିତ୍ର କାର୍ଯ୍ୟ କଲେ । ସେଇ ଶୁକ୍ଳାମ୍ବର ଶ୍ୱାନଟାକୁ କୋଳରେ ଧରିଲେ । ଜଣାଇଦେଲେ ଯେ, ସେ ବି ଯିବ ତାଙ୍କ ସାଙ୍ଗରେ ।

"ଆରେ ଇଏ କ'ଣ କରୁଛ ଧର୍ମରାଜ ?" ଆଚମ୍ବିତ ହେଲା ପରି ଇନ୍ଦ୍ରଦେବ ପଚାରିଲେ ଯୁଧିଷ୍ଠିରଙ୍କୁ, ଯଦିଓ କୁକୁରର ପ୍ରକୃତ ପରିଚୟ ଜଣା ଥିଲା ତାଙ୍କୁ । କହିଲେ. "ଏଇ ଅପବିତ୍ର ଜନ୍ତୁଟାକୁ ସାଙ୍ଗରେ ନେବାକୁ ବସିଛ ? ଯାହାକୁ ଛୁଇଁଲା କ୍ଷଣି ସ୍ନାନ କରି ଶୁଚି ହେବାକୁ ପଡ଼େ, ଯାଗଯୋଗ ନଷ୍ଟ ହୋଇଯାଏ ଏବଂ ଯାହାର ପାଦଧୂଳି ଲାଗିଲେ ଆୟୁଷ ତୁଟିଯାଏ ? ଇଏ ପୁଣି ଯିବ ସ୍ୱର୍ଗକୁ ??"

କିନ୍ତୁ ଯୁଧିଷ୍ଠିର ତାଙ୍କୁ କୋଳରୁ ଓହ୍ଲେଇ ଦେବାକୁ ନାରାଜ । ଏବଂ ସେ ମିନତି କଲେ ଇନ୍ଦ୍ରଦେବଙ୍କୁ, "ଅନେକ ସୋଦର ଥିଲେ ମୋର । କିନ୍ତୁ କେହି ମୋର ସାହା ହୋଇ ରହିପାରିଲେ ନାହିଁ । ମୋତେ ଏକୁଟିଆ ଛାଡ଼ି ଦେଇ ଗଲେ । କେବଳ ଏଇ ଶ୍ୱାନ ଗୋଟି ରହିଲା ମୋ ପାଖରେ । କେବଳ ଏଇ ରକ୍ଷା କଲା ମୋତେ, ମୋର ଧର୍ମ, ମଣିଷ ହୋଇ ବଞ୍ଚି ରହିବାର ଧର୍ମ । ତେଣୁ ଦୟା କରି ଏହା'କୁ ନେବାକୁ ଦିଅନ୍ତୁ ମୋ ସାଙ୍ଗରେ, ମୁଁ କୃତଜ୍ଞ ହେଉଛି ! ସ୍ୱର୍ଗସୁଖ ଲୋଡ଼ା ନାହିଁ ମୋର, ଯଦି ଏ ମୋ' ସାଙ୍ଗରେ ନ ଆସେ ।"

ଏବେ ଧର୍ମଦେବ, ଇନ୍ଦ୍ରଦେବ, କମ୍ଭା ଉପରୁ ଏଇ ଦୃଶ୍ୟ ଦେଖୁଥିବା ଜିଦଶ ଦେବତାଙ୍କର ବୁଝିବାରେ ବାକି ରହିଲା ନାହିଁ ଯେ, ତଥାକଥିତ ପାଣ୍ଡବାର୍ଥୀଙ୍କ ଅଭାବ ପ୍ରକୃତରେ ଅତି ମାରାତ୍ମକ, ମରଦେହ ପାଇଁ । ନ ହେଲେ କି ଧର୍ମରେ ଅଟଳ ହୋଇ ରହିଥିବା, ଦୟାମାୟା ତେଜି ପ୍ରିୟଜନ ପ୍ରତି ଯେତେକ କଟୁକଥା କହି ଛାତିକୁ ପଥର କରିଥିବା ଧର୍ମରାଜାର ମଧ୍ୟ ଏଇ ଦଶା ହୋଇଆଆନ୍ତା ଶେଷବେଳକୁ ? ହାୟ !

ସେଇଠୁଁ ରହସ୍ୟର ଉନ୍ମୋଚନ ହେଲା । ଇନ୍ଦ୍ରଦେବ ପ୍ରକାଶ୍ୟରେ ହସିଉଠି ଜଣାଇଦେଲେ ଯେ, ଶ୍ୱାନଗୋଟି ଆଉ କେହି ନୁହେଁ—ଛଦ୍ମବେଶଧାରୀ ପରମଶୁଦ୍ଧ ଧର୍ମଦେବତା । ତହୁଁ ଧର୍ମଦେବ କ୍ଷଣକେ ଶ୍ୱାନରୂପ ତେଜି ଅନ୍ତର୍ଦ୍ଧାନ ହୋଇଗଲେ । ଏବଂ ଶୂନ୍ୟରେ ଥାଇ ସମ୍ବୋଧିଲେ ଯୁଧିଷ୍ଠିରଙ୍କୁ—"ହିମବନ୍ତରେ ଏକା ହୋଇ ପଡ଼ିଥିଲୁ ବତ୍ସ, ଦାଗମ୍ବର ପ୍ରାୟ । ସେଥିଲାଗି ମୁଁ ଆସିଥିଲି ତୋ ପାଖକୁ ଦୟାପରବଶ ହୋଇ । ତୋର ଆବରଣ ପରି । ଯାହାହେଉ, ପରୀକ୍ଷା ସରିଗଲା ତୋର । ଯେତେକ ଦୁଃଖକଷ୍ଟର ଅବସାନ ହେଲା । ଯା' ଏବେ ସ୍ୱର୍ଗପୁରକୁ, ଆନନ୍ଦରେ ।"

ଏଥର ଯୁଧିଷ୍ଠିର ରଥକୁ ଉଠିଲେ । ଏବଂ ବିଧିବିଧାନ ଅନୁଯାୟୀ ସଶରୀରେ ସ୍ୱର୍ଗଲାଭ କଲେ । ମହାଯାତ୍ରା ଶେଷ ହେଲା । କିନ୍ତୁ ସ୍ୱର୍ଗରେ ପହଞ୍ଚି ମରଦେହ ତେଜି ଅମର ହୋଇ ବସିଥିବା ପତ୍ନୀ ସୋଦର ଜ୍ଞାତିକୁଟୁମ୍ବ ଆଦିଙ୍କୁ ଦେଖିଲା ପରେ ମଧ୍ୟ ତାଙ୍କର ନିଃସଙ୍ଗତା ଦୁଃଖ କି ନିଃସଙ୍ଗତା ଦୋଷ ପୂର୍ବାପୂର୍ବ କଟିଯାଇଥିବ ବୋଲି ମନେ ହେଉ ନାହିଁ ତ ? କାରଣ ଦେବରାଜାଙ୍କ ନିର୍ଦ୍ଦେଶରେ ତାଙ୍କୁ ଏକା ହୋଇ ଭିନ୍ନ ଆସ୍ଥାନରେ ବସିବାକୁ ପଡ଼ିଲା, ଯେହେତୁ ସେ ଅନ୍ୟମାନଙ୍କ ପରି ସାଧାରଣ ଭାବରେ ଆସି ନାହାନ୍ତି ଏଠିକି । ସଶରୀରେ ଆସିଛନ୍ତି, ଅପାର ପୁଣ୍ୟର ଫଳ ସ୍ୱରୂପ । ଏକାକୀ, ଅଦ୍ୱିତୀୟ ।

ଯାହାହେଉ ଆଶା କରାଯାଏ ଯେ, କ୍ରମଶଃ ସେ ତାଙ୍କର ଅବଶିଷ୍ଟ ନିଜତ୍ୱକୁ ତ୍ୟାଗ କରି ପାରିଥିବେ । ଧ୍ୟାନମୁଦ୍ରାସ୍ଥିତ ଯୁଧିଷ୍ଠିର ଯେତେବେଳେ ମିଶି ଯାଇଥିବେ ଏକମେବ ବ୍ରହ୍ମଙ୍କଠାରେ, ଏବଂ ଜବଦଶାର ଯେତେକ ରଙ୍ଗରୂପ ଦୋଷଗୁଣ ଏକାକାର ହୋଇ ହଜି ଯାଇଥିବ ବସ୍ତୁତରେ, ଯେତେବେଳେ କ'ଣ କେଉଁ ଦୁଃଖ ଥିବ ଏକୁଟିଆପଣର ନା କେଉଁ ଅଦ୍ୱିତୀୟବୋଧର ଅହମିକା ?*

* ଶାରଳା ମହାଭାରତର ଆଧାରରେ ଲିଖିତ ।

# ନିଃସଙ୍ଗର ସ୍ୱର୍ଗ

ମହାଭାରତର ଚରିତ୍ରମାନେ କାଳ୍ପନିକ ନୁହଁନ୍ତି, ଏହା ଅନସ୍ୱୀକାର୍ଯ୍ୟ । ସେଥିର ନାୟକ ତଥା ଖଳନାୟକମାନଙ୍କ ଚରିତ୍ରରେ ଯଥାକ୍ରମେ ନାନାବିଧ ଦୋଷଦୁର୍ବଳତା ଏବଂ ଗାରିମା ଦେଖିବାକୁ ମିଳେ, ଯେଉଁଥିପାଇଁ ସେମାନେ ଆମର ବେଶୀ ନିଜର ମନେ ହୁଅନ୍ତି ଏବଂ ଆଧୁନିକ ଲେଖକମାନେ ସେମାନଙ୍କୁ ଆଜିର ବିଭିନ୍ନ ନୈତିକ ତଥା ସାମାଜିକ ଦ୍ୱନ୍ଦ୍ୱ ଭିତରକୁ ଟାଣିଦେବାକୁ ଭଲପାଆନ୍ତି, ସେ ଯୁଗର ବେଶ ପିନ୍ଧେଇ । ତେଣୁ ଯୁଧିଷ୍ଠିର ମଧ୍ୟ ସେଥିରୁ ବାଦ୍ ପଡ଼ିବେ କେମିତି ? ଅବଶ୍ୟ ଅନ୍ୟମାନଙ୍କ ତୁଳନାରେ ଧର୍ମରାଜା ଅତ୍ୟନ୍ତ କଠୋର, ତେଣୁ ସୁଦୂର ବୋଲି ମନେ ହୁଅନ୍ତି । ତା' ବୋଲି କ'ଣ ଆମେ ତାଙ୍କୁ ପାଖକୁ ଟାଣି ଆଣି ପାରିବା ନାହିଁ ? ମାହାଲିଆରେ ନିଜକୁ ଲେଖକ ବୋଲଉନ୍ତୁ ? ତେଣୁ ବ୍ୟାସ ଯାହା ଲେଖିଥିଲେ କି ନଲେଖିଥିଲେ, ଆମ ଆଦିକବି ଶାରଳା ଦାସ ତାଙ୍କ ଜୀବନକୁ ଆହୁରି ଜୀବନ୍ତ କରିପାରିଛନ୍ତି, ସେଥିର ମହାନତାକୁ କ୍ଷୁଣ୍ଣ ନ କରି । ଯାହା ସେ ମଧ୍ୟ କରିଛନ୍ତି ଅନେକ ଅନ୍ୟାନ୍ୟ ଚରିତ୍ରମାନଙ୍କୁ ନେଇ । ଜଣେ ଲେଖକ ହିସାବରେ ମୁଁ ମନେ କରେ ଯେ ଏହାହିଁ ତାଙ୍କର ସର୍ବଶ୍ରେଷ୍ଠ ଅବଦାନ ଏଇ ଦିଗଦର୍ଶନ ତାଙ୍କ ପରବର୍ତ୍ତୀ ଓଡ଼ିଆ ଲେଖକମାନଙ୍କ ପାଇଁ । ଯେମିତିକି ଚରିତ୍ରଟି ଆତ୍ମୀୟ ବୋଲି ମନେ ହେବ, ଏବଂ ଘଟଣା-ବିଶେଷ ଆମର ଅଞ୍ଚଳରେ ଘଟିଛି ବୋଲି ଲାଗିବ, ମୂଳଲେଖା କିମ୍ବା ଇତିହାସ ପ୍ରତି ଏକାନ୍ତ ଅନୁଗତ ନ ହୋଇ ।

ଯାହାହେଉ ଏହି କ୍ରମରେ ସେ ଧର୍ମାତ୍ମାଙ୍କର ମହାତ୍ମ୍ୟ ତଥା ଅନୁପମ ଗାରିମାକୁ ଏତେ ମର୍ମସ୍ପର୍ଶୀ କରିପାରିଛନ୍ତି ଯେ ବେଳେ ବେଳେ ଆମର ଦୟା ଆସେ ତାଙ୍କ ଉପରେ, "ଆହା, ଧର୍ମର ଠେକା ନେଇଛନ୍ତି ବୋଲି ମଣିଷଟିକୁ କେତେ କଷ୍ଟ

ରହିବାକୁ ନ ପଡ଼ନ୍ତା !" ଯଦିଓ ସହଜ ଅର୍ଥରେ ଏବଂ ଆଧୁନିକ ମନସ୍ତାତ୍ତ୍ୱିକ ପରିଭାଷାକୁ ନେଇ କୁହାଯାଇପାରନ୍ତା ଯେ ଯୁଧିଷ୍ଠିରେ ସ୍ୱର୍ଗ ଲାଭ କରିବାର କାମନା ଗୋଟାଏ ବିରାଟ ସ୍ୱାର୍ଥ ଛଡ଼ା ଆଉ କିଛି ନୁହେଁ, ଯେଉଁଥିପାଇଁ ସେ ଟିକିଏ ହେଲେ ଅଟକିଲେ ନାହିଁ, ପଥଶ୍ରମକୁ ସହି ନ ପାରି ବାଟରେ ଟଳି ପଡ଼ୁଥିବା ପତ୍ନୀ ଓ ଭାଇମାନଙ୍କ ପାଇଁ, କାଳେ ତାଙ୍କ ଆରୋହଣ ବ୍ୟାହତ ହେବ, ଏବଂ ଈପ୍‌ସିତ ସ୍ୱର୍ଗଟା ହାତଛଡ଼ା ହୋଇଯିବ । ଆଜିର ଦୁନିଆଁରେ ଯାହା ସଦାସର୍ବଦା ଦେଖିବାକୁ ମିଳେ । ମାନେ ପଛକୁ ଅନାଅ ନାହିଁ, କୋଉ ପ୍ରିୟଜନ ତଳକୁ ଖସିପଡ଼ିଲା, ହୁଏତ ଦଳା ଚକଟି ହୋଇଗଲା, ସେ ବିଷୟରେ ଭାବିବାକୁ ବେଳ ନାହିଁ । ତା' ପାଇଁ ଲୁହ ଗଡ଼େଇବା ଦୂରର କଥା । କାରଣ ଏଇ ହେଉଛି ସଫଳତାର ମୂଳମନ୍ତ୍ର । କିନ୍ତୁ ଶାରଳା ଦାସଙ୍କର ମହାଭାରତରେ ମୁଁ ଯାହା ପାଇଲି (ହୁଏତ ମୁଁ ମୋର ସୃଜନାତ୍ମକ ରଙ୍ଗ ଟିକିଏ ମାଖି ଦେଲି ତା' ଉପରେ); ତା'କୁ ନେଇ ମୁଁ ଏଇ ଧର୍ମବୀରଙ୍କ ପ୍ରତି ଅଳ୍ପବହୁତ ସହାନୁଭୂତି ନ ଦେଖାଇ ରହିପାରୁ ନାହିଁ । କାରଣ ଯଦିଓ ସେ ତାଙ୍କର ଧର୍ମନିର୍ଦ୍ଧାରିତ ପଥରେ ଅଟଳ ଏବଂ ହୋଇପାରେ ତାହା ତାଙ୍କ ସ୍ୱାର୍ଥସିଦ୍ଧିର ପନ୍ଥା। ତାହା ଯେତେ ପରମାର୍ଥକାମୀ ହେଉ ପଛେ, ସେହି ଅଟଳତାକୁ ବଜାୟ ରଖିବାକୁ ଯାଇ ସେ କେତେ କାନ୍ଦି ନାହାଁନ୍ତି !

ଦେଖନ୍ତୁ, ସେ କେତେ କାନ୍ଦୁଛନ୍ତି । ଶୁଣନ୍ତୁ, ତାଙ୍କ ବଢ଼ି ଉଠୁଥିବା କାନ୍ଦଣାର ବିଭିନ୍ନ ସ୍ୱର । ଯାହା ତାଙ୍କ ନିଜ ମୁହଁରୁ ବାହାରିଛି, ଅଥବା ଲେଖକ ତା'କୁ ବର୍ଣ୍ଣନା କରିଛି :

—ବ୍ୟଥାରେ ଯତ୍‌ସାମାନ୍ୟ ଗ୍ଲାନି ମିଶି ରହିଥିଲି । କାରଣ ତାଙ୍କର ମନେପଡ଼ିଲା ସେ କେତେ ସୁଖରତ ବିତାଇଛନ୍ତି ପାଞ୍ଚାଳୀକୁ ନେଇ । ଏବଂ ତାଙ୍କ ଆଖିରେ ନାଚିଗଲା ମାନିନୀର ଲୁହଧୁଆ ମୁହଁ, ତା'ର ପ୍ରଚଣ୍ଡ ଅଭିମାନର ଅନେକ କଥା, ଅନେକ ପ୍ରଶ୍ନ, ଅନେକ ଆହ୍ୱାନ, ଯଥା : ତୁମ ପତ୍ନୀର କ'ଣ କିଛି ମୂଲ୍ୟ ନାହିଁ ଧର୍ମରାଜ ? କିଛି ବୋଲି କିଛି କରିପାରିବ ନାହିଁ ତା'ର ମାନମର୍ଯ୍ୟାଦାକୁ ବଞ୍ଚାଇବା ପାଇଁ ? ଯାହାକୁ ମୁଁ ଟାଳି

ଦେଇଛୁ, କିନ୍ତୁ ଶ୍ରମ କମ୍ମା ତା'ର ଆଉ କେଉଁ ସ୍ୱାମୀ ସହାନୁଭୂତି ସହକାରେ ଗୋଟେଇ ନେଇଛୁ ।

—'ଆହା ପ୍ରାଣସଖା, ତୁ ମଧ୍ୟ ଚାଲିଗଲୁ !' (ଯୁଧିଷ୍ଠିର ଉବାଚ ଧରାଶାୟୀ ଅର୍ଜୁନଙ୍କ ପ୍ରତି)

—ଦିବ୍ୟ ଅନୁଭବ ଏଇଆକୁ କୁହନ୍ତି । କିନ୍ତୁ ସେଥିର ପୁଲକ କ'ଣ ଏମିତି ଅଟାଇ ଦିଏ ଅସ୍ଥିମଜ୍ଜାକୁ ? ସମ୍ପୂର୍ଣ୍ଣ ରାଜବେଶ ପିନ୍ଧିଛୁ ମୁଁ. ହେଲେ ମନେ ହେଉଛୁ ମୁଁ ନଗ୍ନ, ଏକୁଟିଆ ।

—ଯେତେକ ବନ୍ଧୁ ସୋଦରଙ୍କୁ ମରାଇ ଆସିଛୁ ମୁଁ । ସେଇଲାଗି ଆଜ କେହି ନାହାନ୍ତି ମୋ ପାଖରେ, କେହି ନାହାନ୍ତି ମୋତେ 'ଆହା' ପଦୁଟିଏ କହିବା ପାଇଁ । ସ୍ନେହ ସହାନୁଭୂତିର ଧାପେ ଉତ୍ତମ ଆଣିଦେବା ପାଇଁ । ହୋଇପାରେ ମୁଁ ଧର୍ମରାଜ, ଅତି ମାନବ, ଅଦ୍ୱିତୀୟ । କିନ୍ତୁ ଅତିମାନବ ଯାହା, ଅଣମାନବ ସେଇଆ ନୁହେଁ କି ?

ଇତ୍ୟାଦି । ଶେଷକୁ ସେ କେମିତି କୁକୁରଟାକୁ ତାଙ୍କ ସାଙ୍ଗରେ ସ୍ୱର୍ଗକୁ ନେଇଯିବା ପାଇଁ ଜିଦ କଲେ ବିକଳ ହୋଇ, ତା' ମଧ୍ୟ ଭାବିବା କଥା ।

କିନ୍ତୁ କେମିତି କେଜାଣି ମୋର ମନେ ହେଉଛୁ ଯେ ଆପଣମାନେ ଭଲ ପିବେ ନାହିଁ ଏଇ ଲେଖକାମ୍ଭ ସଫେଇରେ । କହିବେ—ମାର ଗୋଲି ତାଙ୍କ କାନ୍ଦଣାକୁ ! ହଁ, ଟିକିଏ ଦ୍ୱନ୍ଦ୍ୱ ଉପୁଜିଥିଲା ତାଙ୍କ ମନରେ, କିନ୍ତୁ ତା'କୁ ସେ କ୍ଷଣକରେ ଏବଂ କେତେ ସହଜରେ ପାର ହୋଇଗଲେ ତାଙ୍କ ଇପ୍ସିତ ସ୍ୱର୍ଗରେ ପହଞ୍ଚିବା ପାଇଁ, ତା' ଭୁଲିଗଲେ ଚଳିବ ନାହିଁ । ଏପରିକି ଧରାଶାୟୀ ପତ୍ନୀ ସୋଦରଙ୍କ ଚରମ ସତ୍କାର କରିବାକୁ ଅଟକିଇଲେ ନାହିଁ; ବଞ୍ଚି ରହିଥିବା ଶୋକାତୁର ଲୋକମାନଙ୍କୁ ଦମ୍ଭ ଦେବାଲାଗି । ଯେମିତିକି କେହି ହେଲେ ଉପରକୁ ଆସିବ,

ଏବଂ ତାଙ୍କୁ ଉଦ୍ଧାର କରିବ ବଢ଼ିଉଠୁଥିବା ନିଃସଙ୍ଗତାର ଦୁଃଖରୁ । କିଅଣ ଇଏ ସତ ନା ମିଛ ?

ହଁ ହଁ, ଇଏ ସତ । ଯୁଧିଷ୍ଠିର ଯେତେ ସହଜରେ ତାଙ୍କ ମାନବିକ ଦୁର୍ବଳତାକୁ ଦବେଇ ଦେଇପାରିଲେ ତାଙ୍କ କର୍ତ୍ତବ୍ୟ ପାଳନ କରିବା ଲାଗି, ତାହା ଅସାଧାରଣ । ସେହେତୁ ଧର୍ମ କଠୋର ନୁହେଁ, ନିର୍ମମ ବୋଲି କହିପାରି, ତାଙ୍କର ଭକ୍ତିକୁ ଓଲଟେଇ ଦେଇ । କିନ୍ତୁ ମୋର ନିବେଦନ କେବଳ ଏତିକି ଯେ ସେଥିପାଇଁ ଯୁଧିଷ୍ଠିରଙ୍କୁ ଦୋଷ ଦେବା ଉଚିତ ହେବ ନାହିଁ, ଯେତେଦିନ ଯାଏଁ 'କର୍ତ୍ତବ୍ୟ' ବୋଲି ଗୋଟାଏ ଜିନିଷ ଅଛି, ମନସ୍ତାତ୍ତ୍ୱିକ ଅଭିଧାନର 'ସୁପର୍-ଇଗୋ', ଯାହାକୁ ସମାଜସଂସ୍କାର ଲଦି ଦେଇଛି ଆମ ଉପରେ, ବ୍ୟକ୍ତିଗତ ଆବେଗର ସୁଖ-ଅସୁଖକୁ ଅମାନ୍ୟ କରି । ତା'ର ମୁକାବିଲା କରିବାକୁ ଯାଇ ଯେଉଁ ଦ୍ୱନ୍ଦ୍ୱର ସମ୍ମୁଖୀନ ହେବାକୁ ପଡ଼େ, ସେଥିର ଗୋଟିଏ ଚମତ୍କାର କାହାଣୀ ଶୁଣାଇଛନ୍ତି ଆମକୁ, ସୁପ୍ରସିଦ୍ଧ ଔପନ୍ୟାସିକ ଇ. ଏମ୍. ଫୋର୍ଷ୍ଟର୍ । କହିଲେ—

"ଯଦି ଏଭଳି ଏକ ପରିସ୍ଥିତି ଆସେ, ଯେଉଁଥିରେ ମୋତେ ସ୍ଥିର କରିବାକୁ ପଡ଼ିବ ଯେ ମୁଁ ମୋର ବନ୍ଧୁ ପ୍ରତି ବିଶ୍ୱାସଘାତକତା କରିବି କି ମୋର ଦେଶ ପ୍ରତି, ମୁଁ ପ୍ରାର୍ଥନା କରୁଛି ମୋର ସାହସ ହେଉ ଦେଶ ପ୍ରତି ବିଶ୍ୱାସଘାତକତା କରିବା ପାଇଁ ।"

ଇସ୍ ! ଏତେ ବଡ଼ ଲେଖକ ହୋଇ କେଡ଼େ ଜଘନ୍ୟ କଥାଟା କହିପାରିଲେ ସେ ! ଏହି ମର୍ମରେ ଆମର ଇଚ୍ଛା ହେବ ତାଙ୍କୁ 'ଛିଃ' ବୋଲି କହିବା ଲାଗି । ଏଇଥିରୁ ବୁଝିହୁଏ ଯେ କର୍ତ୍ତବ୍ୟ ଜିନିଷଟାର ପ୍ରଭାବ କେତେ ବେଶୀ ଆମ ମନ ଉପରେ, ରାମାୟଣ ମହାଭାରତ ବେଳରୁ ଆଜଯାଏଁ ।

ତେଣୁ ଦୋଷ ଦେଲେ ଦିଅନ୍ତୁ ଶାସ୍ତ୍ରଗତ ଅଥବା ସମାଜବ୍ୟବସ୍ଥାରୁ ଉଦ୍‌ଭୂତ କର୍ତ୍ତବ୍ୟବୋଧ ନାମକ ବଡ଼ବାପାକୁ,

ଯାହା ସବୁବେଳେ ଆମର ମାନୁଷୀ ଆବେଗ କିମ୍ବା ସହଜ ସାଧାରଣ ଭାବଭାବନା ସାଙ୍ଗରେ ଖାପ୍ ଖାଏ ନାହିଁ । ଏବଂ ତାହା ଯେ ସବୁବେଳେ ସମୂହ ସ୍ୱାର୍ଥର ରକ୍ଷା, ତେଣୁ ବ୍ୟକ୍ତିସ୍ୱାର୍ଥର ଅଗମ୍ୟ ତା' ମଧ୍ୟ ନୁହେଁ । ଅନେକ କ୍ଷେତ୍ରରେ ତାହା କେବଳ ଗୋଟାଏ ସଂସ୍କାରଧାରଣା, ନ୍ୟସ୍ତସ୍ୱାର୍ଥର କାରସାଦ, କିମ୍ବା ସେମିତି କିଛି ଯାହା ବୈଜ୍ଞାନିକ ତଥ୍ୟ ତଥା ନୈସର୍ଗିକ ସ୍ନେହସମ୍ବେଗର ବିରୋଧୀ । ମଣିଷକୁ ସେହି ତଥାକଥିତ କର୍ତ୍ତବ୍ୟମାନଙ୍କର ନିଷ୍ଠୁରତାରୁ ବଞ୍ଚାଇ ନ ପାରିବା ଯାଏଁ ଆମେ କୋଉ ମୁହଁରେ ଟୋଷ୍ଟିରଙ୍କୁ ଛିଃ କରିବା ନା ଯୁଧିଷ୍ଠିରଙ୍କୁ ହୃଦୟହୀନ ବୋଲି ଦୋଷ ଦେବା ?

(ଏହି ଗଳ୍ପଟି 'ଶାରଳା ସାହିତ୍ୟ ସଂସଦ'ଙ୍କ ଦ୍ୱାରା ପ୍ରକାଶିତ ସଂକଳନ 'ଶାରଳା କଥା ସଉତ'ରେ ସନ୍ନିବେଶିତ )



# ଚେପଟେକ ବାଲିଗରଡ଼ା

ଭର୍ତ୍ସନାର ଛନ୍ଦେ ଛନ୍ଦେ ତାଳେ ତାଳେ ମୁଁ ସେଇ ବାଲିଗରଡ଼ାମାନଙ୍କୁ ଫିଙ୍ଗୁଥିଲି ସମୁଦ୍ର ଉପରକୁ । ଗୁରୁଚିକ୍କଣ ବାଲିଗରଡ଼ା । କେଉଁଟି ଗୋଲ୍, କେଉଁଟି ଅଣ୍ଡାକାର, ଏବଂ ଗୋଟେ ଅଧେ ତ୍ରିକୋଣିଆ, କିନ୍ତୁ ସବୁଗୁଡ଼ିକ ଚିକ୍କଣ । କେଉଁଟି କଳା, କେଉଁଟି ଧଳା, କେଉଁଟି କଳା-ଧଳା-ଛିଟିଛିଟିକା, କେଉଁଟି ଅବା ଧୂସର, ବାଦାମି ଇତ୍ୟାଦି, କିନ୍ତୁ କାହାର ରଙ୍ଗ ଚିଗିଲି ପରି ବା ଜଳିଲା ପରି ନୁହେଁ । ତେଣୁ ପ୍ରତ୍ୟେକେ ସୁରୁଖୁରୁରେ ଆସୁଥାଆନ୍ତି ମୋ ହାତକୁ, ମୋ ହାତରେ ଘଷିହୋଇ ମୋତେ ସୁଖ ଦେଉଥାଆନ୍ତି, ଏବଂ କେଡ଼େ ମଜାରେ ଟୁବ୍‌କିନା ପଶି-ଯାଉଥାଆନ୍ତି ପାଣିର ଗର୍ଭରକୁ । ଅବଶ୍ୟ ତାଙ୍କ 'ଟୁବ୍' ଶବ୍ଦ ପ୍ରକୃତରେ ମୋତେ ଶୁଭିଯାଉଥିଲି ବୋଲି କହିହେବ ନାହିଁ । ତେବେ ମୁଁ ସେଥିର ସଙ୍ଗୀତକୁ ବେଶ୍ ଅନୁମାନ କରି ପାରୁଥିଲି । କାରଣ ନିକ୍ଷେପର କାର୍ଯ୍ୟକଳାପ କେବଳ ମୋ ଭର୍ତ୍ସନା ପଦାବଳୀର ମାତ୍ରା ନ ଥିଲି (ମୋର ଅସ୍ଥିର ଆବେଗକୁ କମାକୋଲନ୍ ଦେଇ ସଜାଡ଼ିଲା ପରି), ସେ ବି ଥିଲି ପଦାବଳୀର ଅଙ୍ଗଲତା ଅଂଶ । ଅନ୍ତସ୍ଥିଣ ।

ହେଲେ କିଛି ସମୟ ପରେ ମୋର ମନେ ହେଲି, ଏବଂ ଦୁଃଖର ସହିତ ଯେ, ପଦାବଳୀ ସରିଯିବାକୁ ବାଧ୍ୟ । ମୋର ଭାଷା ସୀମିତ । ତା'ଛଡା ମୁଁ ଥକିଯାଇ ପାରେ । କିନ୍ତୁ ବାଲିଗରଡ଼ାମାନେ ତଥାପି ଅନେଇ ରହିଥିବେ ମୋଆଡ଼କୁ । ଏବଂ ପ୍ରଶ୍ନ ପଚାରୁଥିବେ—କିଓ, କ'ଣ ହେଲି ? ଆମେସବୁ କ'ଣ ପଡ଼ି ରହିଥିବୁ ଏଠି ? ଯିବୁ ନାହିଁ ସମୁଦ୍ର ଭିତରକୁ ?

ଜାଣିସିଆଣିଆ ପ୍ରଶ୍ନ । କାରଣ ସେମାନେ ଅସଂଖ୍ୟ, ଅନନ୍ତ । ସେକଥାଟି ବେଶ୍ ଜଣାଅଛି ତାଙ୍କୁ । ତାଙ୍କୁ ସାରିବା ପାଇଁ ଜିଦିକରି ବସିଲେ ମୁଁ କେବଳ ଥକିଯିବି ନାହିଁ; ମୁଁ ମରିଯିବି ।

ତା'ବୋଲି ମୁଁ ହାର୍ ମାନିଯିବି ବୋଲି ଭାବୁଛ ? ସତେ ? ଦେଖିପାର ଯେ, ମୁଁ ମନବୋଧ କରି ଶୋଧୁଛି ଏ ଝିଅଟାକୁ, ଏବଂ ତତ୍‌ସହ ସେମାନଙ୍କୁ ଫିଙ୍ଗୁଛି ପାଣି ଭିତରକୁ । ମୋ ଅରମାନ ମେଣ୍ଟିବା ସାଙ୍ଗେ ସାଙ୍ଗେ ତାଙ୍କ ଅରମାନ ବି ମେଣ୍ଟିଯିବ, ଏଭଳି କୌଣସି ଯୁକ୍ତି ନାହିଁ । ଅତଏବ ଚାଲିଥାଉ ଏମିତି :

"ତୋ ମନେ ମନେ ତୁ ଗୋଟାଏ ବଡ଼କଥା କହିବାକୁ ଯାଉଛୁ, ନୁହେଁ ? କିନ୍ତୁ ମନେ ରଖିଥା, ତୋ ପୂର୍ବରୁ ଅନେକେ ଏଇ କାମ କରିଛନ୍ତି । ଆଉ ମରିଛନ୍ତି ଛଳ ଛଳ ହୋଇ । ମରିଛି ତାଙ୍କର ଶିକ୍ଷାଦୀକ୍ଷା, ସଭ୍ୟତା, ସଂସ୍କୃତି, ଆପଣା ଦେଶ ଓ ଜାତିକୁ ନେଇ ଗର୍ବ, ଆପଣାର ନିଜସ୍ୱ, ନିଜତ୍ୱ, ଆତ୍ମା···"

ଆସୁ ଆଉ ଗୋଟାଏ ବାଲିଗରଡ଼ା । ସିଲଟରଙ୍ଗର ଚୁମ୍ବାଟା ବେଶ୍ ପାଲିସ୍ । ତାକୁ ହାତରେ ଖେଳେଇଲା ପରେ ଗାଲରେ ଘଷିବାକୁ ମନ ହେଉଛି । ତା'ପରେ ହାତ ଉଞ୍ଚେଇ··ହାତଟା ଯେତେ ପଛକୁ ଯାଇ ଚକ୍କର କାଟି ପାରିବ ସେତେ ଭଲ··ତା'କୁ ଫିଙ୍ଗି ଦିଅ ପାଣି ଭିତରକୁ ଦୂରରୁ ଦୂରକୁ, ଆହୁରି ଦୂରକୁ···ଏବଂ ଶୁଣ ତା'ର ଟୁବ୍, ନିବିଡ଼ ନିଥର ଟୁବ୍, ନିମଜ୍ଜନର ଶେଷକଥା ।

"ଇଏ ହେଉଛି ଗୋଟି ଚମତ୍କାର ମୋହ, ଆଉ କିଛି ନୁହେଁ—ବୁଝିଲୁ ? ଏବଂ ସେଇ ଲୋକଟା ପାଇଁ କଲା ଚମତ୍କାର ଭିନ୍ନ ସ୍ୱାଦ । ସ୍ତ୍ରୀ'କୁ ଲଭ୍ କୁହାଯାଏ ନାହିଁ, ଲଭ୍ର ମାନେ ଯଦି ପ୍ରେମ ହୋଇଥାଏ । ପ୍ରେମ ହେଉଛି ପ୍ରତିଶ୍ରୁତି, ଯାହା ଜୀବନକୁ ନେଇ । ହଜାରେ କଳିକଜିଆ ସ୍ୱର୍ଗରୁକ୍ଷା ସତ୍ତ୍ୱେ ଗୋଟାଏ ଅଙ୍ଗୀକାର ଯେ, ଏଇ ମୋ ଜୀବନ, ଗୋଟିଏ ବୋଲି ଜୀବନ, ଏଇ ମୋ ସ୍ତ୍ରୀ, ମୋ ସ୍ୱାମୀ, ଗୋଟିଏ ବୋଲି । ଚିରନ୍ତନ, ଏଇ ସମୁଦ୍ର ଓ ତା' ଢେଉ ପରି ।"

ଆସୁ ପୁଣି ଗୋଟାଏ ବାଲିଗରଡ଼ା । କାଳିଆ-ଧଳା । କେଉଁ ଏକ ଚଢ଼େଇ ଅଣ୍ଡା ପରି । କିନ୍ତୁ ଚେପ୍ଟାଳିଆ । ଏବଂ ଅତି ବେଶୀ ପାଲିସ୍ । ତା ଛଡ଼ା ବିଶ୍ୱାସ ନାହିଁ ଏଇ ଦୋରଙ୍ଗୀମାନଙ୍କୁ । ଯାହାହେଉ ଇଏ ବି ଯିବ···ଆହୁରି ଦୂରକୁ···ଏବଂ ଶୁଣେଇବ ଟୁବ୍, ଅଲବତ୍ ଶୁଣେଇବ···

"ଭାବୁଛୁ ତୁ ତା'କୁ ନେଇ ଘର କରି ରହିବୁ ସବୁଦିନ ପାଇଁ ? ତୋ ମୁହଁକୁ ଟିକିଏ ଲାଜ ନାହିଁ ? ଶୁଣ୍ ମୋ ଦୀର୍ଘଜୀବନର ଅଭିଜ୍ଞତା, ସେଥିରୁ ଯଦି କିଛି···"

"ଆମର ଅଞ୍ଚଳର ଜଣେ ବିଶିଷ୍ଟ ନେତା, ତାଙ୍କ ନାଆଁ ଶୁଣିଥିବୁ ବୋଧହୁଏ । ଚୌଧୁରୀ ସନାତନ ଦାସ । ଜର୍ମାନୀରୁ ଜଣେ ସୁନ୍ଦରୀକୁ ଫୁସୁଲେଇ ଆଣିଥିଲେ । ତାକୁ ବନ୍ଦେ ମାତରମ୍ ଶିଖେଇଥିଲେ । ସୁନ୍ଦରୀ ଗାଇଲା ବନ୍ଦେ ମାତରମ୍ । ବେଶ୍ ଦଶବର୍ଷ ଯାଏଁ । କିନ୍ତୁ ଆଉ ପାରିଲା ନାହିଁ । ସନାତନବାବୁଙ୍କୁ ରୋଗଶେଯରେ ଛାଡ଼ି ଦେଇ ପଳେଇଲା । ଏବେକାର ଜଣେ ପ୍ରସିଦ୍ଧ ଆର୍କିଟେକ୍ଟ । ଦିଲ୍ଲୀର ଲୋକ ।

ଯେତେବେଳେ ନୂଆ ରାଜଧାନୀ ଗଢ଼ିବାରେ ତାଙ୍କ ହାତ ଅଛି । ସେ ତାଙ୍କ ଗାର୍ଲଫ୍ରେଣ୍ଡ୍‌କୁ ନେଇ ଆସିଥିଲେ ସୁଇଡେନ୍‌ରୁ । ଦ'ଦଣ୍ଟା ଭେଣ୍ଡା ପୁଅ, ସ୍ୱାମୀ ଶଣ୍ଟାସ୍କାର୍ କରିବା ପାଖ ହୋଇ ଆସିଲାଣି, ଏହି ସମୟରେ ବୁଢ଼ୀର ଚେତା ପଶିଲା ଯେ, ସେ କେଉଁ ଦୂର ବିଦେଶରେ ପଡ଼ିଛି । ଏବଂ ତା' ଜନ୍ମମାଟି ଡାକୁଛି ତାକୁ, ତା' କୋଳରେ ମରିବା ପାଇଁ । ବୁଢ଼ୀ ଗୋଟାଏ ଦିନରେ ଫଇସଲା କରିନେଲା । କହିଲା—ଡାର୍ଲିଂ, ତୁମେ ଏଠି ମର, ମୁଁ ସେଠି ମରିବି । ବାଏ !''

'ବାଏ' କହିଲାବେଳେ ମୁଁ ମୋ କଣ୍ଠସ୍ୱରକୁ କଅଁ ଳ କେଁ-କେଇଆଁ କରିଦେଲି, ଶ୍ୱେତାଙ୍ଗିନୀକୁ ଖତେଇ ହେଲା ପରି । ଆଶା କଲି ଝୋଙ୍କା ବୁଝିବ ଯେ, ମୁଁ ତା'କୁ ବି' ଖତେଇ ହେଉଛି । ତା'ର ଗୋରି ପ୍ରେମକୁ । କିନ୍ତୁ ମୋତେ ରାଗ ଲାଗିଲା ଯେ, ସେ ମୋ ମୁହଁକୁ ମୋଟେ ଅନେଇବାକୁ ନାହିଁ । ସେମିତି ବସି ରହିଛି ଆଣ୍ଠୁ ଦ'ଟା ଭିତରେ ମୁହଁକୁ ମାଡ଼ି ଦେଇ । ସେ ବି' ବାଲିଗରଡାଙ୍କ ସାଙ୍ଗରେ ଲାଗିଛି, ହେଲେ ତାଙ୍କ ସାଙ୍ଗରେ ଖେଳିଲା ପରି, କଥାବାର୍ତ୍ତା ହେଲା ପରି । ମୂର୍ଖ ! ମୋତେ ଅନେ-ଇଲେ, ମୋ ଭାବଭଙ୍ଗୀକୁ ଲକ୍ଷ୍ୟ କଲେ ସିନା ବୁଝିବ ମୋର ବିଦ୍ରୂପ କେତେ ବିଷାକ୍ତ, କେତେ ବିରାଟ !

ହଠାତ୍ ଗୋଟାଏ ଖିଆଲ ଆସିଲା ମୋ ମନକୁ । ଝିଅଲେ, ତୁ ଲୁଚେଇ ଲୁଚେଇ କାନ୍ଦୁ ନାହୁଁ ତ ? ସେଇଠୁ ମୁଁ ଉଲୁସି ଉଠିଲି । ହେଲେ ମୁଁ ସ୍ଥିର କରି ପାରିଲି ନାହିଁ ଯେ, କଥାଟା ପ୍ରକୃତରେ ସେଇଆ କି ଆଉ କ'ଅଣ । ନା, ଆହୁରି କମ୍ କଥା କହିବାକୁ ପଡ଼ିବ । ଦୃଷ୍ଟାନ୍ତ ଦେଇ ଲାଭ ନାହିଁ । ତା'ଛଡ଼ା ଦୁଃଖର ବିଷୟ ଯେ, କାଲି ଝିଅ ଗୋରି ପୁଅଙ୍କୁ ନେଇ କିଛି ମନେପଡ଼ୁ ନାହିଁ, ଖାଲି ଇଣ୍ଡିଆନ୍ ପୁଅ ଆଉ ବିଦେଶିନୀ···ରହ, ରହ ମନେ ପଡୁଛି । ଅଷ୍ଟ୍ରେଲିଆରେ ଦେଖିଥିବା ସେଇ ଯେଉଁ ତରୁଣ ସ୍ୱାମୀ-ସ୍ତ୍ରୀ । କାଳି ଝିଅ ଖଣ୍ଡିକ ସ୍ୱଦମତ କାଳୀ, ଦକ୍ଷିଣ ଭାରତରୁ ଆସିଛି; ଗୋଟାଏ ଡେଙ୍ଗା ଗୋରି ଇନ୍‌ସିଓରାନ୍‌ସବାଲାକୁ ବାହା ହୋଇଛି । କିନ୍ତୁ, ଡ୍ୟାମ୍ ଇଟ୍ । ଦ'ଜଣଯାକ ଖାଲି ହସୁଥିଲେ କଥାକଥାକେ । ଉଚ୍ଛୁଳୁଥିଲେ, ଉଦୁରୁଥିଲେ, କଳା ମୁହଁରେ ତା' ହେଡା ଦାନ୍ତଗୁଡ଼ାକ ଚକ୍‌ଚକ୍ କରୁଥିଲା ।

କିଛି ଲାଭ ନାହିଁ । ମାର ଗୋଲି ଦୃଷ୍ଟାନ୍ତକୁ । ଜଳଜଳ ହୋଇ ଦିଶି-ଯାଉଥିବା ସତକୁ ଚହ୍ଲେଇବା ପାଇଁ ନଜର ଲୋଡ଼ା ନାହିଁ । ଭର୍ତ୍ସନା ହିଁ ଯଥେଷ୍ଟ । ତାତିଲା ଓ ତାତ୍ତ୍ୱିକ ଭର୍ତ୍ସନା ।

"ଦେହର ହଓ଼ାଁ ଆସେ ଯାଏ । ଯାହାକୁ ଅଶ୍ଳୀଳ ଭାଷାରେ କୁହନ୍ତି ଗଲୁ କରୁଛି । ହୁଏତ ଗୋରୀକୁ କଳା କଳାକୁ ଗୋରାର ଆକର୍ଷଣ ଅଭିନବ ବୋଲି ମନେ

ହୁଏ, ତେଣୁ ଗଳୁ ପ୍ରବଳ ହୋଇଉଠେ । ଏକ୍‌ସ୍‌କଉକ୍ ମି, ସବୁଥିବୁ ଯେ, ମୁଁ ତୋ ଅଜା/ସ୍ୱସାବ, ପୁଣି ଜଣାଶୁଣା ବଦ୍ମାଶଟିଏ ହୋଇ କେମିତି ଏଭଳି ଖରାପ କଥା କହୁଛି । କିନ୍ତୁ ଇଏ ଖରାପ କଥା ନୁହେଁ, ଶାସ୍ତ୍ର କଥା । ଆଉ ସେଇଥିପାଇଁ ଠିକଣା ଭାଷା ଗୃହ । ବୁଝିଲୁ ?

"ନହେଲେ ଆମ ସଭ୍ୟ ଇଂରେଜୀ ଶବ୍ଦ କହୁଛି ଶୁଣ୍ । ସେକସ୍ ! ଗୁଡ୍ ଫିଜକାଲ୍ ସେକସ୍ ! ସେଇ ହେଉଛି ଗଳୁର ନାଆଁ ଓ ପାଉଁଶ । ତାକୁ ଆଡ଼େଇ ଦେଇ ହେବ ନାହିଁ, ନହେଲେ ଫ୍ରଏଡ଼ୀୟ ବିକୃତ ଦେଖାଦେବ । ତା' ବୋଲି କ'ଣ ତାକୁ ପ୍ରେମ ବୋଲି କହିବ ନା ତାକୁ ନେଇ ଘର କରିହେବ ? ଅସଲ ହେଉଛି କଲ୍‌ଚର । ସଂସ୍କାର । ଭଲମନ୍ଦକୁ ନେଇ ଏକାଭଳି ବିଗ୍ରହ । ଏକାଭଳି ସଙ୍ଗୀତ, ପୁରାଣ, ବୁଢ଼ୀମା କାହାଣୀ, ଛବି, ଦୃଶ୍ୟ, ଏମିତିକା ଅନ୍ନବ୍ୟଞ୍ଜନକୁ ନେଇ ପରସ୍ପରକୁ ପାଇବାର, ଏକାଠି ହେବାର ଆନନ୍ଦ । ସେଇସବୁକୁ ନେଇ ପ୍ରେମ ବସିଯାଏ ବହଳ ହୋଇ, ବସା ବାନ୍ଧେ, ଭବଭୂତିଙ୍କ ଭାଷାରେ 'ସ୍ନେହସାରେ ସ୍ଥିତଃ' ହୋଇ ଜମିଯାଏ ବୁଢ଼ାହେବା ଯାଏଁ । ଖୁରୁଡ଼ି ନଡ଼ିଆ ପରି । ବାହାରକୁ ଶୁଖିଲା, ହେଲେ ରସରେ ଜୁଡ଼୍‌ବୁଡ଼୍..."

ସଣତରେ ହସିଲି । ଭାବିଲି, ଅନ୍ତତଃ ଏଥର ସେ ମୋ ଆଡ଼କୁ ଅନେଇବ, ଓ ତା' ବୁଢ଼ା ଅଜାର ରସାଳ ଇମେଜ୍‌କୁ ହେଜିବ । କିନ୍ତୁ ତା'ର ଆଣ୍ଣୁପ୍ରଣା ମୁହଁ ଟିକିଏ ହେଲେ ଉଠିବାକୁ ନାହିଁ ଉପରକୁ । ସତେକି ତାକୁ ଶାସ୍ତି ଦିଆ ହୋଇଛି ମୋ'ଠାରୁ ବଡ଼ କୋଉ ଗୁରୁଜନ, କୋଉ ଦେବତାଠାରୁ ।

ମୁଁ ଆଉ ବରଦାସ୍ତ କରିପାରିଲି ନାହିଁ । ମୁଠାଏ ବାଲିଗରଡ଼ାକୁ ଏକାହାତରେ ଫିଙ୍ଗିଦେଲି ସମୁଦ୍ର ଭିତରକୁ । ସହଜେ ଗୋଟାଏ ଯୋଡ଼ାଏ ପାଣି ଯାଏଁ ଯାଇପାରିଲେ ନାହିଁ, ଦାଢ଼ର ପାଣି କାଦୁଅରେ ଆଣ୍ଠେଇ ପଡ଼ିଲେ । ଏବଂ ମୁଁ ଘୋଷଣା କଲି—

"ଦେଖ୍, ମୁଁ ତୋ ନିଜ ଅଜା, ଅଜା ନୁହେଁ ବାପ, ପୁରୁଣା ବନ୍ଧୁ ପରି କହୁଛି, ତୋତେ ସାବଧାନ କରି ଦେଉଛି ଯେ, ଇଏ ହେଉଛି ଗୁଡ୍ ସେକ୍‌ସ, କନ୍ଦର୍ପ ଉଭୟଙ୍କ ସେକ୍‌ସ୍, ଏଇ ଗୋରା-କଳା ହମହମ । ପାପ, ନିରୋଳା ପାପ !"

ଏଥର ବି ତା'ଦେହକୁ ଲାଗିବ ନାହିଁ ? ଟୋକା ଟିକିଏ ହେଲେ କାନ୍ଦିବ ନାହିଁ ?

ମୁଁ ତାକୁ କହିଦେଇବାକୁ ଚାହୁଁଥିଲି, ତା'ର ଅର୍ଥ ମୁଁ ଗୋଟାଏ ସାଡ଼ିଷ୍ଟ, ଅନ୍ୟକୁ କଷ୍ଟ ଦେବାକୁ ଭଲପାଏ ବୋଲି ମନେହେବା ସ୍ୱାଭାବିକ । କିନ୍ତୁ ପ୍ରକୃତରେ ତା' ନୁହେଁ । ମୁଁ ଅନୁ, ଅନୁପମାକୁ ଖୁବ ଭଲପାଏ । କିଓ ସେ ପରା ଆମ ଗୀତାର ଝିଅ ! ଯୋଉ ଗୀତା ମାଆକୁ ଖୁସୀ କରିବେ ବୋଲି ଦାମିକା ତାଜମହଲଟାକୁ ଖର୍ଚ୍ଚି ଦେଲି ଭୁଲିରେ, ଯୋଉ କାନ୍ଦୁଣିଟା ଆମେରିକା ଗଲା ପରେ କାନ୍ଦିବ ନାହିଁ ବୋଲି ଠିକ୍ କଲି ଆଉ ଯୋଉ ହୁଣ୍ଡୀ ବାହାଘର ଆଗରୁ ନାଲିଗୁଲୁଗୁଲୁ ସାଧବବୋହୂକୁ ଗୋଟାଉଥିଲି । ମନେ ନାହିଁ ? ଗୀତା ଆଜି ନାହିଁ, କିନ୍ତୁ ତା' ଝିଅଟା ତ ଅଛି । ଅବଶ୍ୟ ସେ ତା' ମାଆପରି ନରମ ନୁହେଁ, ବାପପରି ଟାଣ ଓ ପ୍ରାକ୍ଟିକ୍ୟାଲ୍ ବୋଲି ଦେଖେଇ ହୁଏ ନିଜକୁ, କିନ୍ତୁ ସେହେତୁ ତା'ପ୍ରତି ମୋର ଦରଦ କେଉଁ ହିସାବରେ ଊଣା ବୋଲି ଭାବ ନାହିଁ ।

ମୋଟ ଉପରେ ମୁଁ ତା'କୁ ଅତି ବେଶୀ ଭଲପାଏ, ଉଚିତରୁ ଅଧିକ । ପ୍ରକୃତରେ ଏ ବୟସରେ ମୁଁ ପୁଣି ଥରେ ଏଇ ମାର୍କିନ୍ ଦେଶକୁ ଆସି ନଥାଆନ୍ତି ଆଉ ଗୋଟାଏ ୟୁନିଭର୍ସିଟିରେ ଭାଷଣ ଦେବା ପାଇଁ, ଯଦି ଅନୁ ସେଠି ଆଉ ରିସର୍ଚ୍ଚ କରୁ ନ ଥାଆନ୍ତା । ହେଲେ ସେଇଥିପାଇଁ ମୁଁ ତାକୁ ହିଁ, ମାନେ ନିଜକୁ ଆଘାତ କରିବାକୁ ଚାହେଁ । ନିଦାରୁଣ ଆଘାତ. ଯେଉଁଥିରେ ଲିହିଲିହି ଏକାକାର ହେଇଯିବ । ଆଉ ମୁଁ ମୋର ଏଇ ଜୀବନଟାକୁ. ତା'ର ଦେହକୁ, ଆବ୍ରଜର୍ଭ ସତର ମିଛକୁ (କହିସାର ମିଛରେ ଲୁଚି ରହିଥିବା କେଉଁ ଆବ୍ସର୍ଡ଼ ସତକୁ) ପୂର୍ବାପୂର୍ବ ପଖାଳି ଦେଇ ପାରିବି । ଯେମିତିକି ସବୁକିଛି ଧୋଇ ପୋଛି ହୋଇଯିବ । ଏବଂ ମୋ ଭିତରଟା ଶୂନ୍ୟ ହୋଇଯିବ । ସେଣିକି ମୋ ଇଚ୍ଛା, ମୁଁ ଯାହାକୁ ବସେଇବି ତା' ଭିତରେ—ମୋର ସ୍ୱନିର୍ବାଚିତ ଦେବତା କି ଦାନବ, ମିତ୍ର କି ଶତ୍ରୁ, ପ୍ରିୟା କି ସଖୀ କି କୋଉ ବାରନାରୀ । ହୁଏତ ହୁଏପ କାହାକୁ ବସେଇବି ନାହିଁ ସେଠି, ଆଉ ନିଜେ ଡୁବ ଦେବି ସେଇ ଶୂନ୍ୟ ଭିତରେ । ସେଇ ହେବ ମୋର ସିଦ୍ଧି । ଆତ୍ମହତ୍ୟା ।

ଭାଗ୍ୟ ଭଲ, ମୋତେ ଏମିତି ଗୋଟାଏ ସୁବିଧା ମିଳିଗଲା । କାଲିଠୁଁ ଅନୁ ମୋତେ କ'ଣ କହିବ କହିବ ବୋଲି ହେଉଛି । ଭାବିଥିଲି, ସେ କହିବ ତା'ର ରିସର୍ଚ୍ଚ ବିଷୟରେ, ଅମୁକ ପ୍ରଫେସର ତାକୁ କେମିତି ହଇରାଣ କରୁଛି, ଫାଉଣ୍ଡେସନ୍ ତରଫରୁ ଗ୍ରାଣ୍ଟ ମିଳୁ ନାହିଁ ଯଥାସମୟରେ, ଅଥବା ସ୍ୱଦେଶରୁ ଗୁପ ଆସୁଛି ଶୀଘ୍ର ଫେରିଯିବା ପାଇଁ । ଏମିତି କିଛି । ଯେଉଁଥିରେ ମୁଁ ତାକୁ କିଛିଟା ସାହାଯ୍ୟ କରିପାରିବି । କିନ୍ତୁ ମୁଁ କଳ୍ପନା କରି ନ ଥିଲି ଯେ ସେ ଆଜି ସକାଳୁ ସକାଳୁ ଏମିତି ଗୋଟାଏ ସମ୍ବାଦ ଶୁଣେଇବ ମୋତେ । କ'ଣ ନା ସେ କୋଉ ସେନ୍ଫ୍ରାନ୍ସିସ୍କୋରେ କାମ କରୁଥିବା ଜନ୍ ଫିଲ୍ଡମ୍ୟାନ୍କୁ ବାହା ହେବାକୁ ଚାହେଁ ।

ସେ ବୁଆଡ଼େ ଅତି ଉତ୍ତମ ଲୋକ, ଘରଟାକୁ ଭଲ ପାଏ, ଏବଂ ସ୍ତ୍ରୀ'କୁ ତା'ଠୁ ବେଶୀ ଭଲ ପାଏ । କହିଲି—"ଘନୁଅଜା, ତମେ ତାକୁ ଦେଖି ମୁଗ୍ଧ ହୋଇଯିବ । ଇଣ୍ଡିଆକୁ ଫେରଗଲେ ବାପାଙ୍କୁ ଟିକିଏ ବୁଝେଇକରି କହିବ ହବୁକଥା । କହିବ ନା ?"

ଶୁଣିଲାକ୍ଷଣି ମୁଁ ଅବଶ୍ୟ ଖୁସି ହୋଇଯାଇଥିଲି । କ୍ଷଣକ ପାଇଁ । ଯେ ଯାହାହେଉ, ଝିଅଟା ଏଥର ଘରଦ୍ୱାର କରି ସୁଖରେ ରହିବ । ଶସର୍ଚ୍ଚର ଫଳାଫଳ ଯାହା ହେଉନା କାହିଁକି । କିନ୍ତୁ ସେଇଠୁଁ ମୋ ମୁଣ୍ଡକୁ ଭୂତ ଚଢ଼ିଲା । ଏବଂ ମୋ ଭିତରେ ଗୁପ୍ତ ହୋଇ ରହିଥିବା କ୍ରୋଧ, ଆକ୍ରୋଶ, ଅଭିମାନ (କାହା ଉପରେ ବୋଲି ପଚାର ନାହିଁ, ତା' ଜାଣିଥିଲେ ମୋର ଆବେଗ ବୋଧହୁଏ ଏତେ ଅସମ୍ଭାଳ ହୋଇ ନ ଥାଆନ୍ତା) ଦାବି କରି ବସିଲା ଯେ, ମୋତେ କିଛି ଗୋଟାଏ କହିବାକୁ ପଡ଼ିବ । ତାକୁ ମୁକୁଳେଇବା ପାଇଁ । ଏଇ ହେଉଛି ତା'ର ସୁଯୋଗ । ଝିଅଟାକୁ କଡ଼ିକରି ଶୋଧିବାକୁ ପଡ଼ିବ । ଯେମିତିକି ·· । ତେବେ ମୁଁ ସେଇ ପ୍ରଚଣ୍ଡ ଆବେଗକୁ କୌଣସିମତେ ସମ୍ଭାଳି ନେଲି । ହୁଏତ ବେଳକାଳ ଅନୁକୂଳ ନ ଥିଲା । ଆଖପାଖରେ ଅନ୍ୟମାନେ ଥିଲେ, ତା' ଆଈ ସମେତ । କିମ୍ବା ହୁଏତ ମୋ ପାଟିରୁ ଠିକଣା ଶବ୍ଦ ବାହାରିଲା ନାହିଁ ହଠାତ୍ । ମୁଁ ଖାଲି ଗମ୍ଭୀର ଲମ୍ବା "ହୁଁ !" ଟିଏ ଗୁଡ଼ାଇଦେଲି ତା'ର ଆବେଦନକୁ ଚିପି ରଖିଲାପରି । ଜଣେଇଦେଲି ଯେ, କଥାଟା ଏତେ ସହଜ ନୁହେଁ । ଏବଂ ମୋର ବି ଗୋଟାଏ ଦାୟିତ୍ୱ ଅଛି ତା'ର ପରମ ଶୁଭାକାଙ୍କ୍ଷୀ ଅଜା ହିସାବରେ । ତେଣୁ ଭାବିବା ସେ ବିଷୟରେ, ପରେ ମୁଁ ମୋ ଫଇସଲା ଶୁଣେଇବି । ସେଇଠୁଁ ଅନ୍ୟ କଥା ପକେଇଲି । ପଚାରିଲି— "ଆଜିକା ପ୍ରୋଗ୍ରାମ୍ କଅଣ ? ଆଜି ତ ମୋର ମିଟିଙ୍ଗ୍ ଫିଟିଙ୍ଗ୍ କିଛି ନାହିଁ । ତା'ହେଲେ କ'ଣ ଆମକୁ ନେଇଯିବୁ କୋଉ ପାହାଡ଼ ନା ଲେକ୍ ଦେଖେଇବା ପାଇଁ ?"

"କହିବ ? ଚାଲ ଯିବା ଗୋଟାଏ ସମୁଦ୍ରକୂଳକୁ । ନାମଜାଦା ବିଚ୍ ନୁହେଁ । କିନ୍ତୁ ମୋତେ ଖୁବ ଭଲ ଲାଗେ ।"

"କୋଉଥିପାଇଁ ଭଲ ଲାଗେ ?" ମୁଁ ଜେରକଲି ।

"କହିପାରିବି ନାହିଁ । ଢେଉଗୁଡ଼ାକ ସେମିତି କିଛି ବଡ଼ ନୁହେଁ କି ନୀଳ ନୁହେଁ । କିମ୍ବା ପାହାଡ଼ପଥରରେ ପିଟି ହେଉ ନାହିଁ । ଗର୍ଜୁନାହିଁ । ଧଳା ଚଢ଼େଇ-ମାନେ ମସ୍ତ ହେଉ ନାହାଁନ୍ତି । ପାଣିରୁ ପଥରକୁ ପଥରରୁ ପାଣିକୁ ଧାଉଁ ନାହାନ୍ତି କାଉଁକାଉଁ ହୋଇ, କ'ଣ ବୋଲି କ'ଣ ଖାଇବେ ବୋଲି । କିନ୍ତୁ ମୋତେ ସେଠି

ଖର ଭଲ ଲଗେ । ଶାନ୍ତ ଲଗେ । କାହିଁକନା ପାଣିରୁ ଗ୍ରହା ଯାଏଁ ସାଗ୍ ବଚ୍ହାଯାକ ଖାଲ ବାଲିଗରଡ଼ା, ଅଜସ୍ର ବାଲଗରଡ଼ା । ସତେକ ବାଲଗରଡ଼ା ସମୁଦ୍ରକୁ ଠେଲ ଠେଲ ନେଇଯାଉଛ ପଛକୁ, ବାଲଗରଡ଼ା ହିଁ ସମୁଦ୍ର, ଆଉ ସମୁଦ୍ର ହେଉଛ ତୁଚ୍ଛା ପାଣି...''

ମୁଁ କାବା ହୋଇ ଅନେଇଲ ଅନୁର ମୁହଁକୁ । ଫିଜକ୍ସ୍‌ର ଗ୍ରୁଞ୍ଜୀ କବ ହେଲ୍ କେବେଠୁଁ ? ଏବଂ ଏତେ କାବ୍ୟକତା ଗ୍ଲର ବାଲଗରଡ଼ାକୁ ନେଇ ?

କନ୍ତୁ ସେତେବେଳେ ମୁଁ ଦେଖି ନଥିଲ ଏଇ ସୃଷ୍ଟିଛଡ଼ା ଦୃଶ୍ୟ । ଆମେରିକାର ପଶ୍ଚିମକୁ ଥିବା ପ୍ରଶାନ୍ତ ମହାସାଗରର ଅନ୍ୟତମ ବେଳାଭୂମି । ଅପରେକ ଚକଚକିଆ ଟୁରିଷ୍ଟ ପର୍ଯ୍ୟଟକର ଅନ୍ୟତମ ଆକର୍ଷଣ । ତଥା 'ପ୍ରକୃଷ୍ଟ' ସମୁଦ୍ରଖାଦ୍ୟ ପରଷୁଥିବା ହୋଟେଲ ରେସ୍ତୋରାଁରେ ଭରପୂର । କନ୍ତୁ ପ୍ରକୃତରେ ଇଏ ଆଉ କାହାପର ନୁହେଁ । ସ୍ୱା'ର ନଜକଥା ନଆଁର୍ ।

ହଁ, ଏଠି ବାଲଗରଡ଼ା ହିଁ ସମୁଦ୍ର । ବାଲଗରଡ଼ା ହିଁ ରାଜା । କନ୍ତୁ ଏତେ ଆତ୍ମୀୟ ତା'ର ରାଜଦରବାର ! ମନେହେଲ ସେ କହୁଛ ଯେ, ଭୁଲଯାଅ ପଛରେ ଯାହାସବୁ ଅଛ, ହୋଟେଲ୍ ରେସ୍ତୋରାଁ ସଭ୍ୟତାର ଗ୍ରକଚକ୍ୟ । ଏବଂ ଅନେଇ ଲଭ ନାହିଁ ଆଗରେ ଥିବା ସେଇ ଅବରତ ନରର୍ଥକ ଡେଉମାନଙ୍କୁ । ଖାଲ ବସିରହ ଆମ ପାଖରେ, ଏବଂ ଭାବନଅ ଯେ, ତୁମେ ଆମର ଭିତରୁ ଜଣେ । ମଜା ଲଗୁନାହିଁ ? ଶାନ୍ତ ଲଗୁନାହିଁ ?

ଶାନ୍ତ ନା ଗ୍ରେପା । ଏମିତକା ସେ ଶାନ୍ତ ଯେ, ମନେ ହେଉଛ କ୍ରୋଧ-କ୍ରୋଧର କଛ ମୂଲ୍ୟ ନାହିଁ ଏଠି । ମଣିଷର କାମ ହେଉଛ ଶେଷକୁ ମିଶିଯିବା, ନଜକୁ ଗୋଲ୍ ଓ ଚକ୍‌କଣ କର ମିଶେଇଦେବା, ଅଣୁରେ ତଥା ଅଗଣିତରେ । ମୃତ୍ୟୁହୀନ ସାମାନ୍ୟ ସାଧାରଣରେ, ଯାହାଙ୍କର ଭୋକ ନାହିଁ ଶୋଷ ନାହିଁ, ରାଗ ନାହିଁ ସ୍ନେହ ନାହିଁ...କଛ ନାହିଁ । ଖାଲ ରହଥିବାର, କେବଳ ଅସ୍ତିତ୍ୱର ସୁଖ, ଯଦ ତାକୁ ସୁଖ କୁହାଯାଏ । ଯାହା ଜନ୍ମରୁ ବାହାର ନାହିଁ କ ମୃତ୍ୟୁରେ ସରଗଲ ପର ଲଗୁ ନାହିଁ ।

ଆସୁ ଆସୁ ଅନୁ ଧୂମ୍ରକାନ୍ନ ବସିପଡ଼ଲ ତଳେ, ସତେକ ସାଙ୍ଗମାନେ କେତେ-ବେଳଠୁଁ ଅନେଇ ବସିଛନ୍ତ ତା' ପାଇଁ । ଗୃହର ବନ୍ଧେଇ । ଏବଂ ସେ ତା' ଶ୍ୟାମଳ ଧାରୁଆ ମୁହଁକୁ ଦରଖୋଲ ଓଠରୁ ଦଶିଯାଉଥିବା ଭଙ୍ଗା ଗ୍ରମୁଦାନ୍ତ ଓ ଗୃହାଣିର ସଦାବସ୍ମୟଭାବକୁ (ଠିକ୍ ତା' ମାଆପର) ତୋଳ ଧରଲ ମୋ ଆଡ଼କୁ । ସତେକ

ସେ ମୋଠୁଁ କିଛି ଲୋଡ଼ିବା ଦୂରର କଥା, ତା'ର ବସ୍ତୁସ୍ଥ ଏଇଥିପାଇଁ ଯେ ମୋର ତଥାପି ସାହସ ହେଉ ନାହିଁ ତା'ସପଦରୁ ଅଳ୍ପ ବହୁତ ମାଗିବା ପାଇଁ । ଅର୍ବାଚୀନ ବଲଙ୍ଟେନାଙ୍କୁ ଝିଅ ହାତରୁ କୋଉ ଶାନ୍ତିର ଖିଙ୍ଖିରସା ପାଇବାପାଇଁ !

ଅସହ୍ୟ ମନେ ହେଲା ସେଇ ଶାନ୍ତିର ଚ୍ୟାଲେଞ୍ଜ୍ । ତତ୍କ୍ଷଣାତ୍ ମୁଁ ଗୋଟାଏ ବାଲିଗରଡ଼ାକୁ ଉଠେଇ ଆଣିଲି, ମର୍ଜି ଚଳିଳି ତା' ଦେହକୁ, ଏବଂ ଫିଙ୍ଗିଲି ସମୁଦ୍ରକୁ । ଏଣେ ଆରମ୍ଭ କଲି ମୋ ତିରସ୍କାରର ପର୍ବ । ଆଉ ରକ୍ଷା ନାହିଁ । ଏବେ ତା' ଆଈ ଆସିନାହିଁ ଆମ ସାଙ୍ଗରେ । କହିଲି ସେ ହୋଟେଲ୍‌ରେ ରହିବ, ତା' ମୁଣ୍ଡ ବଥଉଛି । ଯଦିଓ ତା' ପକ୍ଷରେ ଏଇ ନୂଆ ପୃଥିବୀକୁ ଆସି କିଛି ନୂତନ ଦୃଶ୍ୟ ନ ଦେଖିବାକୁ ଚାହିବା ନିହାତି ଅସୁନ୍ଦର କଥା । ଆଉ କଏ ହୋଇଥିଲେ ହୁଏତ ତା' ମୁଣ୍ଡବଥାର ଭିନ୍ନ ଅର୍ଥ କରିଥାଆନ୍ତା,-ଗୁଡ଼ଃ !) ଦ୍ୱିତୀୟରେ ଏଇ ଅଭିଲ ଶାନ୍ତିର ଢେଲାକ । ପଚାରିଲି ଟୋକାକୁ—

"ହଁ, କ'ଣ କହୁଥିଲୁ ଆଜି ସକାଳେ ? ତୁ କ'ଣ ପ୍ରକୃତରେ ବାହା ହେବାକୁ ଚାହୁଁ ସେଠି ? ସେଇ ଗୋରା ସସେଜ୍‌ବାଲାକୁ ?"

ସେ ମୁଣ୍ଡ ଟୁଙ୍ଗାଇଲା ।

ସେଇ ମୁହୂର୍ତ୍ତରୁ ଆସି ଏତେବେଳଯାଏ । କେଜାଣି କେତେ ବାଲିଗରଡ଼ାକୁ ଡ଼ୁବେଇ ସାରିଲଣି । କିନ୍ତୁ ତାଙ୍କ ପ୍ରତିପତ୍ତି କମିବାକୁ ନାହିଁ । ଆଉ ସେମାନେ ମୋତେ ଚିଡ଼େଇ ଚାଲିଛନ୍ତି । କୌତୁକରେ । ମୋ ମୁଣ୍ଡକୁ ଥଣ୍ଡା କରିବା ଛଳରେ । ଏଣେ ମୋ ଭର୍ତ୍ସନା ହାଲିଆ ହୋଇଗଲାଣି । ଧକେଇଲଣି କହିଲେ ଚଳେ ।

ସେଇଠୁଁ ମୋର ଇଚ୍ଛା ହେଲା ଯେ ଏଥର ମୁଁ ମୋ ଅଜାପଣିଆ, କହିବାକୁ ଗଲେ ଆତ୍ମସମ୍ମାନକୁ ଭୁଲିଯାଇ ଟୋକାର ହାତକୁ ଧରି ପକେଇବି । ଗାଲମନ୍ଦ ଛାଡ଼ିଦେଇ କାକୁତିମିନତିର ସୀମା ଯାଏଁ ଯିବି । କହିବି—ମୋ ସୁନା ଝିଅଟା ପରା, ଥରେ ହେଲେ କାନ୍ଦିବୁନି ମୋ ପାଇଁ? ମୁଁ କ'ଣ ଏଡ଼େ ଅଯୋଗ୍ୟ, ନା ଅକର୍ମଣ୍ୟ ?

କହିବି ତା'କୁ କହିବି ସବୁକଥା, ମୂଳରୁ ଶେଷଯାଏ । ସେଇଦିନଠାରୁ, ଯେଉଁଦିନ ମୋତେ କୁହାଗଲା ଯେ ମୁଁ କାନ୍ଦିବାର ଅଯୋଗ୍ୟ । ତେଣୁ ମାନବକ କରୁଣାର, ସମ୍ବେଦନାର । ଅତଏବ ଭଲପାଇବାର । ଶବ୍ଦବ୍ୟାଖ୍ୟା କରି କୁହା ନଗଲେ ମଧ୍ୟ ତା'ର ଅର୍ଥ ସେଇଆ । ଏଥିର ମୋର ସମବୟସ୍କ ଅଉ ଜଣେ ଅଛି, ଆଉ ଜଣେ ଅଧ୍ୟାପକ, ପ୍ରତିବେଶୀ, ବନ୍ଧୁ କହିଲେ ଚଳେ ସେତେବେଳେ ସେ

ପୁଙ୍ଗୁଡ଼ିକ ବନ୍ଦ ହୋଇ ନଥିଲା), ଯେ କାନ୍ଦିପାରେ। ଉଚିତ ସମୟରେ। ସେହେତୁ ମଣିଷ ହିସାବରେ ସେ ମୋଠୁଁ ଭଲରେ. ମୁଁ ତା' ତଳେ। ଅତି ସହଜ ଓ ସୁବୋଧ ଏଇ ସତକଥାଟିକି।

ଏବଂ ଉତ୍ତମ ପୁରୁଷ ହିଁ ଉତ୍ତମ ପ୍ରେମିକ। ସେ ଜଣକୁ ଖୋଲିଖୋଲି ପ୍ରେମ କରୁ ବା ନକରୁ, ଏବଂ ପ୍ରେମାସ୍ପଦା ତା'ଙ୍କୁ ପ୍ରଶ୍ରୟ ଦେଉ ବା ନଦେଉ ସେକଥା ଭିନ୍ନ। ଏଥିପାଇଁ କ'ଣ ନଥିଲା ଅନୁର ଆଇ ଓରଫ୍ ମୋର ପତ୍ନୀ ନଳିନୀ ଦେବୀଙ୍କ ସ୍ୱତଃସ୍ଫୂର୍ତ୍ତି ଟିପ୍‌ପଣୀର ଅର୍ଥ ? ଆଜିକି ପ୍ରାୟ ପଇଁତିରିଶ ବର୍ଷ ତଳେ ? ତା' ବୋଲି ମୁଁ ମୋର ପକ୍ୱକେଶୀ ଧର୍ମପତ୍ନୀକି ଯଥେଷ୍ଟ ଭଲପାଏ ନାହିଁ, ଅଥବା ସେ ମୋତେ ଯଥାବିଧି ଭଲପାଏ ନାହିଁ, ଏପରି ଭାବିବା ଭୁଲ୍। ଏକାନ୍ତ ଅନୁଚିତ। କହିଲି ପରା, ଖୁରୁଡ଼ି ନଡ଼ିଆ, ସ୍ନେହସାରେ ସ୍ଥିତ, ଘନୀଭୂତ ରସରେ ଜୁଡ଼ୁବୁଡ଼ୁ···ନା ନା, ମୁଁ ଖୋଲି କହୁଛି ଏଇ କାନ୍ଦିବା କଥାଟାକୁ ନେଇ। ଲୁହ ଗଡ଼େଇବାର ମାହାତ୍ମ୍ୟ ବିଷୟରେ। ସେମିତିକି ତୁ ଆଉ ଅଡ଼ି ବସିବୁ ନାହିଁ। ଟୋପାଏ ହେଲେ ଲୁହ ଝରେଇବୁ। ବୁଝିଲୁ ?

କହୁଛି ଶୁଣ। ସେଦିନର ସକାଳଟା ଅତି ଚମତ୍କାର ଥିଲା। ଏପରିକି ଆମ କ୍ୟାଂପସ୍‌ର ପ୍ରଫେସର ଭାରତେନ୍ଦୁ ମେହେଟା, ପ୍ରିୟ ମେହେଟାଜୀ, ଯଦି ଭୁସ୍‌କିନା ଆମ ଘରକୁ ପଶି ଆସି କାଖରେ ଜାକିଥିବା ଟେନିସ୍ ର୍‌ୟାକେଟକୁ ସୋଫାରେ ଫିଙ୍ଗି ଦେଇ କେବଳ ମୋତେ 'ହ୍ୟାଲୋ ପ୍ରଫେସର୍' ବୋଲି ନକହି ସିଧାସଳଖ ଭିତରକୁ ଯାଇ ନଳିନୀକି କୁଣ୍ଢେଇ ପକେଇ ଥାଆନ୍ତା, ସେଥିରେ ମୁଁ ଅବଶ୍ୟ ଚକିତ ହୋଇ ଉଠି ଥାଆନ୍ତି, ଏବଂ ପରେ ହୁଏତ ଲୋକଟାର ଏଡ଼େ ସାହସ ବୋଲି ରାଗିଥାନ୍ତି, କିନ୍ତୁ ସେହି ମୁହୂର୍ତ୍ତରେ ଭାବିଥାଆନ୍ତି ଯେ ଇଏ ତା' ଉଛୁଳା ଆନନ୍ଦର ଗୋଟାଏ ନୂତନ ଢଙ୍ଗ। ଯାହାର ମହତ୍ ଉଦ୍ଦେଶ୍ୟ ହେଉଛି ମୋର ସୁଖ ଭାବକୁ ତେଜିବା, ତା'କୁ ଲମ୍ବାଚଉଡ଼ା ସଲାମ୍‌ଟିଏ ପକେଇ ଜଣାଇବା—ପ୍ରଫେସର୍ ସାହେବ୍, ତୁମେ ସତରେ କେତେ ଭଲ, ଭାବୀଜୀ କେତେ ସୁନ୍ଦର, ଆଉ ଏଇ ଦୃଷ୍ଟିଖଣ୍ଡିକ କେତେ ବଢ଼ିଆ ! ଆମ ତିନିଙ୍କି ତିନିହେଁ ଏକାଠି ହୋଇଯିବା।

ସକାଳଟା କେଉଁଥିପାଇଁ ଏତେ ଚମତ୍କାର ଲାଗୁଥିଲା, ତା'ର କାରଣ ବୁଝେଇ ପାରିବି ନାହିଁ। ସେଦିନ ମୋର କୀନ୍‌ସ୍-ବିରୋଧୀ ଇକନମିକ୍‌ସ୍‌ର ଗୋଟାଏ ନୂଆ ଫରମୁଲା ହଜାରେ ହୋଇଗଲା, କୃଷ୍ଣଚୂଡ଼ା ଫୁଲ ହଠାତ୍ ଭରିଗଲା ମୋ ଡାଣ୍ଡ ଅଗଣାର ଗଛ ଢ଼'ଟାରେ, ମୋଟୁ ମେହେନ୍ତରର ସଦାକ୍ଳାନ୍ତ ଦୋଷଦିଆ ମୁହଁର ଚେହେରାରେ ହସ ଫୁଟି ଉଠିଲା, କି କ'ଣ ହୋଇଥିଲା ଭଗବାନ୍ ଜାଣନ୍ତି, ମୋତେ ଏଇ ସଂସାରଟା ପ୍ରକୃତରେ ଭାରି ଭଲ ଲାଗୁଥିଲା। ଗୋଟାଏ ବିଷ୍ଟୁସୁଲଭ ଉଦାରତା।

ହଠାତ୍‌କ ଯେତେବେଳେ ଏଇସବୁ ମୋର ଭୁଆଁଣ, ମୋର ଖିଆଲ୍, ମୋର ଚଗଲାମି ।

ଏଇ ମନୋଭାବ ନେଇ ମୁଁ ଅପେକ୍ଷା କରିଥିଲି କେତେବେଳେ ମେହେତାଜୀ ଆସି ହାଜର୍ ହେବ ମୋ ଦୁଆରରେ, ସବୁଦିନପରି । ସେ ହେଉଛନ୍ତି ଆମ ୟୁନିଭର୍ସିଟିକୁ ଉଧାରସୂତ୍ରେ ଆଣାହୋଇଥିବା ବୋଟାନି ପ୍ରଫେସର, ଖେଳୁଆଡ଼୍ ପ୍ରଫେସର୍, ଯେ ସବୁବେଳେ ନିଜକୁ ଉତ୍ତମ ଧରଣର ଦୋସ୍ତ୍, ମଧ୍ୟମ ଧରଣର ଖେଳୁଆଡ଼, ଏବଂ ନିକୃଷ୍ଟ ଧରଣର ପାଠୁଆବୋଲି ଦାବି କରେ, ଏବଂ ପରିହାସ ଛଳରେ ମୁହିଁ ଏକା କ୍ୟାମ୍ପସ୍‌ର ଯଥାର୍ଥ ପ୍ରଫେସର ବୋଲି କୁହେ, କାହିଁକନା ମୋର ଭାବୁକତା କୁଆଡ଼େ ଆଉ କାହା ପାଖରେ ନାହିଁ । ଅନେଇଥିଲି ସେ କେତେବେଳେ ଆସିବ, ଆଜ ମୁଁ ତା'କୁ କେତେଟା ଜୋକ୍ ଶୁଣେଇବି, ଯେଉଁଥିରେ ନଳିନୀ ବି' କାବା ହୋଇଯିବ (ମୁଁ ହୋ-ହଲ୍‌ଲା ହୁଏ ନାହିଁ ସିନା, ବଡ଼ୁ ବଡ଼ୁ ଜୋକ୍ ମନେ ରଖିପାରେ ଓ ନିଜେ ନହସି ଅନ୍ୟକୁ ହସେଇପାରେ ମୋ ମୁଡ଼୍ ହେଲେ); ଆଉ ମେହେତାଜୀ ହସିବ ଠୋ-ଠୋ ହୋଇ, ତା'ର ସେଇ ପୃଥ୍ୱୀଟାକୁ ଉଡ଼େଇଦେଲାପରି ହସ, ଅଜବ୍ ହସ, ଯାହାର ସ୍ୱରଭଙ୍ଗ ହୁଏ ଠିକ୍ ସରିଲାବେଳକୁ । ସେଥିରେ ନଳିନୀର ମୁହଁ ନିଷ୍ଟୟ ଉଦ୍‌ଭାସିତ ହୋଇ ଉଠିବ ଓ ସେ ଆହୁରି ସୁନ୍ଦର ଦେଖାଯିବ । ଏବଂ ମେହେତାଜୀ ଅନେଇବ ତା'ଆଡ଼କୁ ତା'ର ମାର୍କାମରା ଲୋଭିଲା ଚାହାଣିରେ ·· । ମୁଁ ସେ ଦୃଶ୍ୟଟିକୁ ଯଥାମତ ଉପଭୋଗ କରିବି । ଅବଶ୍ୟ କରିବି ।

କିନ୍ତୁ ସେ ଆସିବାକୁ ନାହିଁ । କଥା କଅଣ ? କେତେବେଳକେ ନଳିନୀ ଫୋନ ପାଖରୁ ଉଠି ଆସି ମୋତେ କହିଲା—

"ତୁମେ ଟିକିଏ ଯାଅ ମେହେତାଜୀଙ୍କ ଘରକୁ ।"

"କାହିଁକି···କ'ଣ ·· ?"

"ସେ କାନ୍ଦୁଛନ୍ତି ।"

"ଏଁ ? କ'ଣ ହେଲା କି ?"

"ତାଙ୍କ ସ୍ୱଦେଶରୁ, ମାନେ ଅହମଦାବାଦ୍‌ରୁ ଚିଠି ଆସିଛି । ଯାହା ଶୋଭାବେନ୍ କହିଲେ । କହିଲେ ମସୂଦ୍ ବୋଲି ତାଙ୍କର ଜଣେ ସାଙ୍ଗର ଡେଥ୍ ହୋଇଗଲା ବୋଲି ଲେଖାଅଛି ସେଥିରେ···"

ଅଜାଣତରେ ମୋ ଓଠରେ ହୁଏତ ଗୋଟିଏ କ୍ଷୀଣ ବିଦ୍ରୂପର ରେଖା ଦେଖା ଦେଲା, ସେଥିପାଇଁ ମୁଁ ଦାୟୀ ନୁହେଁ । ଯାହାହେଉ ମୁଁ ଟିକିଏ ଆଶ୍ଚସ୍ତ

ହେଲାପରେ କହିଲି, "ଆଚ୍ଛା ! ସେକଥା କହନ୍ତୁ ?" ମସୃଦ୍ ତା'ର ପିଲାଦିନର ସାଙ୍ଗ, ଇଞ୍ଜିନିଅର୍ । ମୁଁ ତା' ବିଷୟରେ ଅନେକ ଶୁଣିଛି ମେହେଭାଙ୍କ ମୁହଁରୁ । ସେଇଆ କୁହ ..."

"ଯେତେ ସାଙ୍ଗ ହେଲେ ବି (ନିଜମା ତା'ର ସ୍ଥିର ଗୃହାଣି ଆପିଲି ମୋ ଉପରେ, ଗୋଟାଏ ନିର୍ଭୟ ନିଃସନ୍ଦେହ ତଥ୍ୟ ଶୁଣେଇଲି ପରି)···ତୁମେ ପାରିବ ?"

ହୁଏତ ଓଲଟା ପ୍ରଶ୍ନ ପଚାରି ପାରଥାଆନ୍ତି । ଯେ ମୁଁ କ'ଣ ପାରିବ ନାହିଁ- ବୋଲି କହୁଛ, ମୁଁ ବୁଝିପାରୁ ନାହିଁ । ଯେହେତୁ ଏତ ଅଳୀକ, ଅବାନ୍ତର ତୁମର ପ୍ରଶ୍ନ । କିମ୍ବା ହୁଏତ କହିଥାଆନ୍ତି ଯେ ହଁ ମୁଁ ପାରିବ ନାହିଁ । କାହିଁକନା ମୁଁ ଜଣେ ପ୍ରାପ୍ତବୟସ୍କ ପୁରୁଷ, ନିଜ ପରିବାର ଅର୍ଥାତ୍ ଘନିଷ୍ଠ ଆତ୍ମୀୟ ବେଷ୍ଟନୀର ବାହାରେ ଆଉ କାହାର ମୁହଁରେ ଲୁହ ଗଡ଼େଇବା ମୋର ଅଭ୍ୟାସ ନୁହେଁ । ଏଭଳି ତରଳ ଭାବପ୍ରବଣତା ନାରୀମାନଙ୍କୁ ଶୋଭା ପାଏ, ଯେଉଁମାନେ ପଢ଼ଶାଘର ଝିଅ ବିଦା ହେଲାବେଳେ ଭେଁ ଭେଁ ହୋଇ କାନ୍ଦନ୍ତି, ଓ କ୍ଷଣକ ପରେ ଯେତେକ ରସରସିଆ କଥା କୁହନ୍ତି ମାଆଝିଅଙ୍କ ଚରିତ୍ର ନେଇ । ଇତ୍ୟାଦି । କିନ୍ତୁ ମୁଁ କିଛି କହିପାରିଲି ନାହିଁ । କାରଣ ମୋର ମନେହେଲା ଯେ ସେ ମୋତେ ଦୋଷ ଦେଲାପରି କହୁନାହିଁ । ମୋର ଗୋଟାଏ ସହଜାତ ଅବଗୁଣ କଥା କହୁଛି । ତା'ର ଉତ୍ତର ନାହିଁ ।

ମୁଁ ପାରିବ ନାହିଁ । ପୂର୍ଣ୍ଣଚ୍ଛେଦ । ମାଇଚିଆ ହେଉ, ଭାବପ୍ରବଣ ହେଉ କି ଯାହା ହେଉ, ତା' ପାଖରେ ଅଛି ଗୋଟାଏ ଗୁଣ, ବନ୍ଧୁବାନ୍ଧବ କାନ୍ଦି ପାରିବାର ଗୁଣ, ଯାହା ମୋ ପାଖରେ ନାହିଁ । ସେଇ ମାପକାଠିରେ ମୋତେ ହାର୍ ମାନିବାକୁ ପଡ଼ିବ । ମାନିବାକୁ ପଡ଼ିବ ଯେ ସେ ସକ୍ଷମ, ଓ ମୁଁ ଅକ୍ଷମ··· ।

ଯାହା ନାହିଁ ତା' ନାହିଁ । ବାସ୍ । ମନେପଡ଼ିଲା ଗୋଟାଏ ପିଲାଦିନର ଅନୁଭୂତ । ମୁଁ ଯେବେ ପ୍ରଥମେ ମାଟ୍ରିକ୍ ପରୀକ୍ଷାରେ ବୃତ୍ତି ପାଇ ନାଆଁ କମେଇଲି, ବାପମାଆଙ୍କଠାରୁ ଆରମ୍ଭ କରି ଯେତେକ ବନ୍ଧୁବାନ୍ଧବ ମୋତେ ବାହାବା କଲେ । କିନ୍ତୁ ଜଣେ ଭଦ୍ରଲୋକ, ବାପାଙ୍କ ସହକର୍ମୀ, ମୋ ଆଡ଼କୁ ଅନେଇ ରହିଲେ ବିଶ୍ୱାସ ନ କରିପାରିଲା ପରି । ଶେଷକୁ କହିଲେ—ଚେହେରାରୁ ମୋଟେ ଜଣାପଡ଼ୁ ନାହିଁ ! ତା'ପରେ କଥାଟାକୁ କଉତୁକ-ପରିହାସରେ ଉଡ଼େଇ ଦେଲେ ଓ ମୋତେ ପିଁଗଡ଼ା ରସଗୋଲା ଖୁଆଇଲେ । କିନ୍ତୁ ମୁଁ ବୁଝିଲି ଯେ ସେ ମୋ ଚେପ୍ଟା ନାକ ଓ ଡୋଳେଇଲା ଗୃହାଣିକୁ ନେଇ ଗୋଟାଏ ଖାରା କଥା ନକହି ରହିପାରିଲେ ନାହିଁ । ମୁଁ ଯେତେ ବିଦ୍ୟା ହାସଲ କଲେ, ନାଆଁ କମେଇଲେ ଯାଏ ଆସେ ନାହିଁ । ବୁଦ୍ଧିର ଦୀପ୍ତି ନାହିଁ ମୋ ଚେହେରାରେ । ହୁଏତ ଜ୍ଞାନର ଗରିମା ଅଛି, ଆତ୍ମର ଅସିବ ଓ ମୋର

ଅଭିବ୍ୟକ୍ତିକୁ ଆହୁରି ଓଜନିଆ କରିଦେବ । କିନ୍ତୁ ଦାର୍ଢ୍ୟ, ଦୃଢ଼ତା, ଷ୍ଟ୍ରେଙ୍ଗ...ଭୁଲିଯା' ସେ ସବୁକୁ !

ଇଏ ବି' ସେମିତି ଗୋଟାଏ ଅବଗୁଣ । ଅବଗୁଣ ନୁହେଁ, ଅକ୍ଷମତା । ଦୁର୍ଭାଗ୍ୟ ।

ମୁଁ ତୋତେ ସତ କହୁଛି ଲୋ ଝିଅ, ମୁଁ ସେଇ ଅକ୍ଷମତାକୁ ଖାଲି ସ୍ୱୀକାର କଲି ତା' ନୁହେଁ, ମୁଁ ତା'କୁ ଗଣ୍ଠିଧନ କରି ସାଇତି ରଖିଲି ମୋ ଭିତରେ । ସେମିତିକି ଇଏ ମୋର ଅନ୍ୟତମ ବିଶିଷ୍ଟତା । ଭଗବାନ୍ କରନ୍ତୁ ମୋ ଆଖିରେ ଲୁହ ଜକେଇ ନଆସୁ କେବେହେଲେ, କୌଣସି ଅପର ଲୋକ ପାଇଁ...

(ହଠାତ୍ ସେ ତା' ଆଣ୍ଠୁରୁ ମୁହଁ ଟେକି ଅନେଇଲା ମୋ ଆଡ଼କୁ । ସତେକି ସେ ପ୍ରକୃତରେ ଶୁଣୁଥିଲା ମୋର ସ୍ୱଗତ ମନଉକୁଣ୍ଡା କାହାଣୀ, ଲୁହ ବୋହିବା ନବୋହିବାର ତତ୍ତ୍ୱ । ହୁଏତ ସୁଆଙ୍ଗ । ହେଲେ ତା' ସଜାଗ ଚାହାଣି ମୋତେ ଚେତେଇ ଦେଲା ପରି ମନେ ହେଲା । ଯେ ମୁଁ ମୋର ଅକ୍ଷମତାକୁ ଧରି ରଖିପାରି ନାହିଁ । ଏବେକା କଥା ନୁହେଁ, କେତେ ବର୍ଷ ତଳର ଦାରୁଣ ଦୁଃସମ୍ବାଦ । ଯେତେବେଳେ ଖବର ଆସିଲା ଯେ ଗୀତା, ତା' ମାଆ, କାର୍ ଆକ୍ସିଡେଣ୍ଟ୍‌ରେ ପ୍ରାଣ ହରେଇଛି । ଆଉ ମୋ ଆଖିକୁ ଅନ୍ଧାର ଦେଖାଗଲା...

ଶୁଣ୍, ଶୁଣ୍; ମୁଁ ତୋ ପ୍ରଶ୍ନର ଠିକଣା ଉତ୍ତର ଦେବି । ଗୀତା ବେଳକୁ ବି' ମୁଁ କାନ୍ଦି ନଥିଲି—ଜାଣିଛୁ ? ହୋଇପାରେ ଯେ ମୋ ବଞ୍ଚିବାର ସରାଗ ଚାଲିଗଲା, କେଜାଣି କେତେଦିନ ଯାଏ ମୋ ପାଟିକୁ ଭାତ ଗଲା ନାହିଁ, କ୍ଲାସ୍‌ରେ ପାଠ ପଢ଼େଇ ପାରିଲି ନାହିଁ, ଇତ୍ୟାଦି । କିନ୍ତୁ ମୋ ଆଖିରୁ ଲୁହ ବୋହି ନଥିଲା । ଯଦିଓ ଗୀତା ମୋର ଅତି ଆପଣାର, ଝିଅ-ନଥିବା ବାପର ଝିଅଟି ବଳି ସୁନା, ସୁକୁମାରିଆ, ସୁନ୍ଦର...)

ଅବଶ୍ୟ ଭଗବାନ୍ ମୋ ଅକ୍ଷମତାକୁ ବଜାୟ ରଖି ଆସିଥିଲେ ଏତେଦିନ ଯାଏଁ । ସେଇଥିଲାଗି ଗତକାଲି ଯାହା ଘଟିଲା...ରହିଥା' କହୁଛି ସେକଥା, ତରତର ହେଲେ ଚଳିବ ନାହିଁ ।

ସଂକ୍ଷେପରେ କହିବାକୁ ଗଲେ ମେହେତାଙ୍କ ଝିଅ ପରି ଆସିଥିଲା, ଓ ଚାଲିଗଲା । ଯୋଡ଼ାଏ ବର୍ଷ ପାଇଁ ପଢ଼େଇଲା ଆମ ୟୁନିଭର୍ସିଟିରେ, ଜମେଇଲା ଆମ କ୍ୟାମ୍ପସ୍‌ରେ, ମୋ ସ୍ତ୍ରୀକୁ ପ୍ରେମ କଲା ଓ ମୋତେ ଭଲ ପାଇଲା । ନଳିନୀ ପ୍ରତି ତା'ର ପ୍ରେମ କେତେଦୂର ନିରାମିଷ ଥିଲା ଓ ସେଥି ସମ୍ପର୍କରେ ମୋର ଈର୍ଷା ଭାବ କେତେ ଉପରକୁ ଉଠିଥିଲା ତା'ର ଆଲୋଚନା କରି ଲାଭ ନାହିଁ । ସେ ହିସାବରେ

ମୁଁ ମଧ୍ୟ ଗୈରିକୁ ପ୍ରେମ କରିଛି ଓ ତା'କୁ ନିହାତି ନିରାମିଷ ବୋଲି କହି ହେବ ନାହିଁ । ନଳିନୀ ଜାଣିଛି ସେକଥା । କିନ୍ତୁ ସନ୍ଦେହ ନାହିଁ ଯେ ସେଇ ଦୁଇ ବର୍ଷର ଅନୁଭବ କିଛି ଗହୀରିଆ ଆଞ୍ଚ ଲଗେଇ ପାରି ନ ଥିଲା ଆମ ଦୁହିଁଙ୍କ ପ୍ରେମରେ, ଆମ ଦାମ୍ପତ୍ୟ ଜୀବନର ସୁଖରେ ।

ଯାହା ବା ଟିକିଏ ଥାଆନ୍ତା, ସ୍ମୃତିର ସାମାନ୍ୟତମ ପୋଡ଼ାଜଳା, ତା'ର ଅବକାଶ ଗୁଲିଗଲା, ଯେତେବେଳେ ମୁଁ ତା'କୁ ତା' ପରିବାର ଓ ଗଣ୍ଡିଲି ପଣ ସହିତ ଟ୍ରେନ୍‌ରେ ବସେଇ ଦେଇ ଆସିଲି ଶେଷଥର ପାଇଁ । ଏବଂ ମୁଁ ଦେଖିଲି ତା'ର ସେଇ ଶୁଖିଲା ଅରକ୍ଷିତିଆ ମୁହଁ । ବିଦାୟୀ କୋଳାକୋଳି, କରମର୍ଦ୍ଦନ ଇତ୍ୟାଦିର ଅନ୍ତରାଳରେ ଏବଂ ଠିକ୍ ଗାଡ଼ି ଛୁଟିବାବେଳକୁ ତା'ର ବିଧ୍ୱସ୍ତ ମୁହଁର ଚେହେରା । ଯାହାର ଅର୍ଥ କେବଳ ଗୋଟିଏ; ମୁଁ ପାଇଲି ନାହିଁ କି ଆଉ ପାଇବି ନାହିଁ । ମୁଁ ରିକ୍ତ !

ସେଇଦିନଠୁଁ ତା' ସାଙ୍ଗରେ ଆଉ ଦେଖା ହୋଇନାହିଁ ମୋର । କିନ୍ତୁ ତା'ର ସେଇ ଅବିସ୍ମରଣୀୟ ରିକ୍ତତାର ଛବି, ପ୍ରତେକ ହେଇ ହେଉଛି ମଣିପଦଶାର ଶେଷ କଥା, ମୋତେ ବାନ୍ଧି ରଖିଛି । ମୋ'ର ମନେ ହେଲା ସେ କହୁଛି—ପ୍ରଫେସର ସାହେବ, ଭାବୀ ସିନା ମୋଠୁଁ ଦୂରେଇ ଗଲେ ସବୁଦିନ ପାଇଁ, ତାଙ୍କର ଅନୁମାନ, ଆଶ୍ୱାସ ଟିକିକ କ'ଣ ପାଇବି ନାହିଁ ତୁମ ଜରିଆରେ ?

ହେମନ୍ତଙ୍କ ପରି ମୋତେ ବି' ଅନୁରୋଧ କରିଥିଲା ଚିଠି ଦେବା ପାଇଁ । କିନ୍ତୁ ମୋ ଜାଣିବାରେ କେବଳ ମୁହିଁ ତା'ର ଅନୁରୋଧ ରକ୍ଷା କରିଛି, ଅକ୍ଷରେ ଅକ୍ଷରେ ପାଳନ କରି ଆସିଛି । ଆମେ ପ୍ରତି ମାସେ ଦି'ମାସରେ ଖଣ୍ଡେ ଲେଖାଏଁ ଚିଠି ଦେଇ ଆସିଛୁ ପରସ୍ପରକୁ ।

ମୁହିଁ ତା'କୁ ବଞ୍ଚେଇ ରଖି ଆସିଛି ଏତେଦିନ ହେଲା । ଭବସାଗରରେ ଭସେଇ ଭସେଇ ଆଣିଛି, ବୁଡ଼ିବାକୁ ଦେଇ ନାହିଁ । ମୁଁ ତା'ର ବନ୍ଧୁ ।

ମୋତେ ବିଶ୍ୱାସ କରିଲେ ଅନୁ ଝିଅ, ମୁଁ ତା'କୁ ମୋର ବନ୍ଧୁ, ଅନ୍ତରଙ୍ଗ ବନ୍ଧୁ ବୋଲି ମଣିଛି ସେଇଦିନଠାରୁ ।

ଆମ ଚିଠିରେ ବନ୍ଧୁପ୍ରଣିଆର ଆବେଗ, କ୍ରମଶଃ ବୁଢ଼ା ହୋଇ ଆସିବାର ହା-ହୁତାଶ, ଅବା ସ୍ମୃତିଚାରଣର ମଧୁରିଆ ବ୍ୟଥା ନଥିଲା । ଏପରିକି ସେ ନଳିନୀ ବିଷୟରେ ବିଶେଷ କିଛି ପଚାରୁ ନ ଥିଲା କି ମୁଁ ଉପରେ ପଡ଼ି ତା' ଭଲମନ୍ଦର ବର୍ଣ୍ଣନା କରୁ ନ ଥିଲି । ଖାଲି କିଏ କେମିତି ସମୟ ବିତାଉଛି, ମୁଁ ଯା' ଭିତରେ

କେମିତ ଶ୍ରମ-ଅର୍ଥନୀତର ଆଦ୍ଭୁତ ଗହ୍ୱରକୁ ପଶିଲଣି ଏବଂ ମାର୍କସ୍ ଓ ମହାତ୍ମାଗାନ୍ଧୀ ଏକା ଧାତୁରେ ଗଢ଼ା ବୋଲ ନୂତନତମ ପ୍ରମାଣ ଯୋଗାଇ ସାରଲଣି, ଅପରପକ୍ଷେ ସେ କେମିତ ଉଟାମ୍ବାର କଲ୍ଲ ପରେ ପାହାଡ଼ତଡ଼ାରେ ମାଡଲଣି, ଗୋଟାଏ ବଚିତ୍ର ନାଲିମୁହାଁ ହଳଦିଆ ଫୁଲ ଆବଷ୍କାର କରିଛ, 'ସ୍ପେତ' ନାମକ ଅଦୃଶ୍ୟମାନ ଜନ୍ତୁର ଅକାଟ୍ୟ ପ୍ରମାଣ ପାଇଛ, ଏଇସବୁ କଥା । ଅବଶ୍ୟ ଠିକେ ଠିକେ ପଣବାର ବଷୟରେ ପଦେ ଅଧେ—କଏ କେଉଁଠି ବାହା ହେଲ, କଏ କେଉଁ ଧନ୍ଦାରେ ପଶିଛ, ଇତ୍ୟାଦ । କନ୍ତୁ ପ୍ରତ ଚଠିର ପ୍ରତଟି ଧାଡ଼ି ଓ ଶବ୍ଦର ନେପଥ୍ୟରେ ଥିଲ ଏକ ଉଗ୍ର, ହେଲେ ବକଳ ସଚେତନତା, ଯାହାକୁ ମୁଠେଇ ଧରିବାକୁ ହେବ ବଞ୍ଚିଥିବା ଯାଏଁ । କଅଣ ସେଇ ସଚେତନତା ? ପ୍ରେମ ? ନା ଭନ୍ନ ରଙ୍ଗର ଭଲ ପାଇବା ? ଏବଂ କାହା ପାଇଁ କେଉଁଟି ?

ତା'ଛଡ଼ା ଖାଲ ମୁଁ କ'ଣ ତା'କୁ ଭସେଇ ରଖିଥିଲ ବନ୍ଧୁପଣିଆର ଭେଳାରେ ? ସେ ବ' କଣ କଛ ମୂଲ୍ୟବାନ ବସ୍ତୁ ଦେଇ ନଥିଲ ମୋତେ ? ଯଥା କେଉଁ ଏକ ଉଷ୍ମ ଆତ୍ମ-ପ୍ରତ୍ୟୟ, ଯେ ମୁଁ ଭଲ, କହବାକୁ ଗଲେ ଅତ-ଭଲ ? ଯେହେତୁ ପୃଥିବୀରେ ବୋଧହୁଏ ମୋ ପର ଆଉ କେହ ନଥିବ ଯେ ତା' ପତ୍ନୀର ପ୍ରଣୟୀ (ହେଲ ଏବେ ପ୍ରାକ୍ତନ ଅଥବା ପ୍ଲାଟୋନକ୍ ପ୍ରଣୟୀ)'କୁ ଏମିତ ଭଲପାଇ ପାରବ···

ଝିଅ ଲୋ, ଏଇ ଗତକାଲ ତା'ର ସ୍ୱୀକୃତ ମିଳଗଲ ମୋତେ । ଏଇ ବଦେଶ ଭୂଇଁରେ ।

ଜାଣିଛ କ'ଣ ହେଲ ? କାଲ ସକାଳେ ହୋଟେଲରେ ଗୋଟାଏ ଚଠି ଆସି ପହଞ୍ଚିଲ । ଭାରତରୁ ରି-ଡାଇରେକ୍ଟ ହୋଇ ଆସିଛ । ମେହେଡାର୍ଙ୍ଗର ପୁଅ ଲେଖିଛ ଯେ ବାପା ଗତ ମଙ୍ଗଳବାର ଦନ ଚାଲଗଲେ । ଅଳ୍ପ କେଇଟା ଦନର କର୍ଣ୍ଡିସ୍ ରୋଗ, ସେଇଠୁ ପେଟଫୁଲା, ସେଇଠୁ ଶେଷ !

ମୁଁ ଚଠିଟିକୁ ପଢ଼ି ଶୁଣେଇଲ ନଳନୀକୁ । ଏବଂ ପଢ଼ୁ ପଢ଼ୁ ମୋ ଆଖିରେ ଲୁହ ଭରିଗଲ । ଖାଲ ଭରିଗଲ ନୁହେଁ, ଥୋପା ଥୋପା ହୋଇ ଝରଲ ଚଠି ଉପରେ, ଚଠି ବାଟ ଦେଇ ମୋ ଜାମା ଉପରେ, ସକାଳ ଖବରକାଗଜ ଉପରେ । ନଳନୀ ଚାହିଁ ରହଥିଲ ମୋତେ, ମାନେ ନଶ୍ଚୟ ଚାହିଁ ରହଥିବ । ମୋର ସାହସ ନଥିଲ ତା' ମୁହଁର ଭାବ ଲକ୍ଷ୍ୟ କରିବା ପାଇଁ ।

ମୁଁ ଖାଲ ମୋ ନଜର ଦୁଃଖ ଓ ତା'ର ଏଇ ଅଭୂତପୂର୍ବ ପରପ୍ରକାଶରେ ଅଭଭୂତ ହୋଇ ପଡ଼ିଥିଲ । ଆରେ, ତା'ହେଲେ ମୁଁ ବ' କାନ୍ଦଲ !

ମୁଁ ବି' କାନ୍ଦିଲି ମୋ ବନ୍ଧୁର ମୃତ୍ୟୁରେ । ଦେଖ, କେମିତି ଆପେ ଆପେ ମୋ ଆଖିକୁ ଲୁହ ଆସିଗଲା । ଆଉ ଧରା ରଖି ହେଲା ନାହିଁ ମୋର ଉଚ୍ଛିତ ଅକ୍ଷମତାକୁ । ନଳିନୀ ଦେଖିଛୁ, ଓ ତାର ନିଶ୍ଚୟ ମନେ ପଡ଼ୁଥିବ ସେଇ ପଚିଶଛବିଶ ବର୍ଷ ତଳର କଥା ।

ମୁଁ ହାତ ବଢ଼େଇଲି ନଳିନୀକୁ ଛୁଇଁବା ପାଇଁ, ଓ ସେ ହାତ ରଖିଲା ମୋ ହାତରେ ।

ଏବଂ କେଜାଣି କାହିଁକି ସ୍ୱତରେ ମୁଁ ବିଶେଷ ଭାବରେ ପ୍ରେମ କଲି ତା'କୁ । ମୋର ବର୍ଷ ସ୍ନାନ୍ ଶୀତଳ ହୋଇ ଆସୁଥିବା ଦେହ ଅପ୍ରତ୍ୟାଶିତ ଭାବରେ ଜାଗି ଉଠିଲି, ଓ ମୁଁ ମୋର ପକ୍ୱକେଶୀ ପତ୍ନୀକୁ ଦେହରେ ଦେହରେ, ଶିରାରେ ଶିରାରେ, ଅନୁଭବ କଲି । ଉପଭୋଗ କଲି । ଅନେକ ଦିନର ଅପୂରଣକୁ ମେଣ୍ଟାଇ ଦେଲି ପରି...

ଗ୍ଲାନି ଆସିଲା ପରେ । ରାତି କଟି ଯାଇ ଆଉ ଗୋଟିଏ ଦିନ ଆସିଲା ବେଳକୁ । ମନେ ହେଲା ମୁଁ ଧରା ପଡ଼ିଯାଇଛି । ମେଣ୍ଢା ଚମଡ଼ାପିନ୍ଧା ଗଧିଆ । ପ୍ରତିବାଦ କରି ଲଭ ନାହିଁ ଯେ ମୋ ଜାଣିବାରେ ମୁଁ ମେଣ୍ଢାଟିଏ, ଆଉ ଇଏ ମୋ ଦେହଲଗା ଚମ ।

ସତେକି ମୋ ଲୁହ ମିଛ ଥିଲା । ଅଥବା ମୋ ପ୍ରେମ ।

ଅବା ଶୋକ କି ପ୍ରେମଠାରୁ ବଳି ଆଉ ଗୋଟାଏ ଅଦ୍ଭୁତ ଭାବ କାମ କରି ଯାଉଥିଲା ମୋ ମନରେ, ଯାହାର ଶଙ୍ଖ ଶୁଭୁଥିଲା ଆମ ପ୍ରଚଣ୍ଡ ମିଳନର ସେକ୍‌ସରେ । ବୋଧହୁଏ କେଉଁ ଏକ ସାଥୀପଣରୁ, ଭଲପଣିଆର ଦାୟିତ୍ୱରୁ, ଖଲାସ ହୋଇ ଯିବାର ହେଣ୍ଟ ମସ୍ତ ଆନନ୍ଦ !

ଠିକ୍ ଏତିକିବେଳେ ତୁ ଆସି କହିଲୁ କ'ଣ ନା ତୁ ପ୍ରେମ କରୁଛୁ । ଗୋଟାଏ ଭିନ୍ନ. ଭିନ୍ନଦେଶୀୟ ପ୍ରେମ । ମାନେ ତୋ ବୁଢ଼ା ଅଜା ଆଗରେ ବଢ଼େଇ କରୁଛୁ ତୋ ତାରୁଣ୍ୟର, ସରଳସୁନ୍ଦର ଆବେଗର । ତେଣୁ ତୋତେ କଷ୍ଟ ଦେବି ନାହିଁ ତ ଆଉ କ'ଣଟା କରିବି ? ଆଉ କେମିତି ମୋ ଅପନା (ଏବଂ ଅକାରଣ) ଗ୍ଲାନିକୁ ବାଉଲ କରିଦେଇ ପାରିବି ?

ଚଳନ୍ତ ଚେଉଗୁଡ଼ାକ ସରିବାକୁ ନାହିଁ । ହ୍ୟାପ ଏଇ ଅଚଳନ୍ତ ବାଲି-ଗରଡ଼ା ବି' କମିବ ନାହିଁ, ଟିକିଏ ହେଲେ ସରିବ ନାହିଁ । ଦେଖିଲି ଏଇ ଅନ୍ଧାରୀ

ପଣକୁ ଚହ୍ଲେଇବା ପାଇଁ କୋଉ ମାଲିକର କୁକୁର ଦଉଡ଼ୁଛି ବାଲିଗରଡ଼ା ଉପରେ ଓ ସମୁଦ୍ରକୁ ଫିଙ୍ଗି ଦିଆଯାଇଥିବା କାଠଗଡ଼ଟାଏ ଉଦ୍ଧାର କରି ଆଣୁଛି । ବାରମ୍ବାର ।

କିନ୍ତୁ ବାଲିଗରଡ଼ାକୁ କେହି ଉଦ୍ଧାର କରି ଆଣି ପାରିବ ନାହିଁ । ସେଇ ହେଉଛି ମଜା ! ଅରେ ଉଦ୍ଧତ, ତ ଉଦ୍ଧତ । ଅତଏବ ମୁଁ ତାଙ୍କୁ ଫିଙ୍ଗିବି ଗୋଟି ଗୋଟି କରି । ଯଦିଓ ତଥାପି ସେମାନେ ପଡ଼ି ରହିବେ କୋଟି କୋଟି ହୋଇ ! ପଡ଼ି !

ଜଣେ ମହାମନୀଷୀ କହିଥିଲେ ବିନମ୍ରରେ ଯେ, 'ମୁଁ ଜ୍ଞାନୀ ନୁହେଁ, ମାତ୍ର ଉପଲଖଣ୍ଡ କେତୋଟିକୁ ସଂଗ୍ରହ କରୁଛି, ଆଉ ଜ୍ଞାନର ମହାସମୁଦ୍ର ପଡ଼ି ରହିଛି ମୋ ଆଗରେ ।' ଭାବିଲି ତାଙ୍କୁ କହିବି ପାଖରେ ପାଇଲେ, ଯେ ଆଜ୍ଞା, ତା'କୁ ବି ଫିଙ୍ଗି ଦିଅନ୍ତୁ ଦୟା କରି । କାରଣ ଦେଖିବାର କେଉଁ ଗୋଟେହେଲେ ଅନୁଭବ କ ତା'ର ନର୍ଣ୍ଣିଷ୍ଟ ଜ୍ଞାନ ନୁହେଁ, ତାର ଜାଣିବାଏ ନୁହେଁ । ହ୍ୟାପ ପ୍ରତ୍ୟେକେ ମିଛୁଆ···

ମୁଁ ପୁଣି ଗୋଟାକୁ ଉଠେଇ ଫିଙ୍ଗିବାକୁ ଯାଉଛି, ଏଇ ସମୟରେ ଅନୁ ହଠାତ୍ ପଛରୁ ଡାକିଲା ମୋତେ । ସ୍ୱର ଉଷ୍ଣେଇ, କୁରୁଳି ଖାଇଲା ପରି ।

"ଅଜା. ଦେଖ ଦେଖ । ଦେଖୁଛ ଏଇ ପଥରଟିକୁ ? ଚକ୍‌କଣ କଳା । ନିଖୁଣ ଶାଳଗ୍ରାମ···"

ମୁଁ ତା' ପାଖକୁ ଗଲି । ମୁରୁକିହସା ଦେଇ ପଥରଟିକୁ ନେଇ ଆସିଲା ମୋ ହାତକୁ ।···ହଉ, ବୁଝିଲି ତୁ କ'ଣ କହିବାକୁ ଚାହୁଁଛୁ । ଯେ ଯାହାହେଉ ପଛେ ତୁ ସେଠି ବାହା ହେବୁ । ଏବଂ ଯାହାହେଉ ପଛେ ପଥରକୁ ଦାଆଁ କରି ହେବ, ମିଛକୁ ସତ କରି ହେବ । ସେଇ ହେଉଛି ଆମ ବାହାଦୁରି ।

ହଉ ଲୋ ସୁନାଝିଅ ତୁ ଦେଉଛୁ ଯେତେବେଳେ ମୁଁ ତାକୁ ଅବଶ୍ୟ ନେବି । ହୁଏତ ପୂଜା କରିବି । କିନ୍ତୁ ସତ କହ, ତୁ କ'ଣ ଟିକିଏ ହେଲେ କାନ୍ଦ ନାହୁଁ ମୋ ପାଇଁ, ତା'ର ଚକ୍‌କଣ କଳା ଉପରେ ? ତା'ର ଦାଆଁ ପଣିଆ ଉପରେ ?

ଆଲୋ, ତୁ ମୋତେ ଠକି ପାରିବୁ ନାହିଁ । ଦେଖେ, କେତେ ଓଦା ଲାଗୁଛି ତା' ଦେହ—



# ଯେତେକ ବାଲିଗରଡ଼ା

ବିଚାରି ବାଲିଗରଡ଼ା ! କେତେ ବାର ତୁମକୁ ଗୋଟାଏ ଛୀରୁ ମଣିଷର ରୁଦ୍ଧ ଏବଂ ଭଲ ଭଲ ଆବେଗକୁ ଖଲାସ କରିବାକୁ ନପଡ଼ୁଛି ଏଇ ଗପରେ । କେବଳ କ୍ରୋଧ ନୁହେଁ, ତା' ସାଙ୍ଗକୁ ଅସହାୟତା (ଯ୍ଯା' ଛଡ଼ା ମୁଁ ଆଉ କିଛି କରିପାରିବି ନାହିଁ ମୋ ଜୀବନଟାକୁ ସୁଧାରିବା ପାଇଁ); ଦୁଃଖ (ମୁଁ ମେହେତାର ପ୍ରକୃତ ବନ୍ଧୁ ହୋଇପାରିଲି ନାହିଁ, ତା' ସରଳ ବନ୍ଧୁତ୍ୱର ପ୍ରତିଦାନ ଦେଇପାରିଲି ନାହିଁ, କାହିଁକିନା ମୁଁ ଗୋଟାଏ ଈର୍ଷାଭାବକୁ ପୋଷିରଖିଲି ମୋ ମନରେ); ପ୍ରତିବାଦ (ନା ! ମୋ ଆଖିରେ ଯେଉଁ ଲୁହ ଆସିଲା ତା'ର ମୃତ୍ୟୁ ଖବର ଶୁଣିଲା ପରେ, ତା'କୁ କଣ ମିଛ କହିବ ?), ଇତ୍ୟାଦି ।

ତେବେ ବାଲିଗରଡ଼ା କୂଳରେ ପଡ଼ିରହିଲେ ଯାହା, ସମୁଦ୍ରରେ ବୁଡ଼ି ରହିଲେ ସେଇଆ । ବରଂ ତାଙ୍କ ଜୀବନରେ କିଛିଟା ପ୍ରାଣର ସଞ୍ଚାର ହେଲା ବୋଲି କହିହେବ, ଏଇ ଗତିଗମନ ଦ୍ୱାରା । ତଥା ଯତ୍‌ସାମାନ୍ୟ ସାର୍ଥକତା ଯେ, ଭଲ ହେଉ ମନ୍ଦ ହେଉ, ସେମାନେ ଜଣେକର ଆବେଗକୁ ଏହିପରି ଭାବରେ ବ୍ୟକ୍ତ କରିପାରିଲେ । କିନ୍ତୁ ଅନୁ ? ବିଚାରିର କ'ଣ ସମ୍ପର୍କ ଥିଲା 'ଅଜା'ଙ୍କ ପ୍ରେମଜୀବନ ସାଙ୍ଗରେ ଯେ ସେଥିପାଇଁ ତା'କୁ ଏମିତି କଡ଼ା କଥା ଶୁଣିବାକୁ ପଡ଼ିଲା ତାଙ୍କଠାରୁ, ତା'ର ବିଶୁଦ୍ଧ ତରୁଣ ପ୍ରେମକୁ ନେଇ ? ସେ ମିଛୁଟାରେ ତା'କୁ ପଢ଼େଇଲେ କାହିଁକି ତାଙ୍କ କଳା-ଧଳା ବୈଷମ୍ୟର ପାଠ, ଯାହା ଗୋଟାଏ ଆଳ ଛଡ଼ା ଆଉ କିଛି ନଥିଲା ତାଙ୍କ ଉଦ୍‌ଗିରଣ ପାଇଁ ?

କିନ୍ତୁ ସତରେ କ'ଣ ଅଜାଙ୍କ ତିରସ୍କାର ତା'କୁ ବାଧିଥିଲା ନା ତା' ମନକୁ ଅଳ୍ପ ବହୁତ ଚହଲେଇ ଦେଇପାରିଥିଲା ? ସେ ବିଷୟରେ ଘୋର ସନ୍ଦେହ ରହୁଛି, ଯାହା ଅଜାଙ୍କ ମନରେ ମଧ୍ୟ ଅାସିଥିବ ବୋଲି ଆଶା କରାଯାଏ । ଯେତେବେଳେ ସେ

ତା' ଅଶ୍ରୁରୁ ମୁଣ୍ଡ ଟେକି ଅଜାଙ୍କୁ ଅନେଇଲା ପ୍ରଥମଥର ପାଇଁ, ସେତେବେଳେ ତା'ର 'ସଜାଗ ଗୃହୀଣି'କୁ ଅଜା ଲକ୍ଷ୍ୟ କରିଥିଲେ ପରା ? ପୁଣି ଗପର ଶେଷବେଳକୁ ସେ କହୁଛନ୍ତି ଯେ ଅନୁ ସ୍ୱର ଉଷ୍ଣେଇ କୁରୁଳି ଖାଇଲା ପରେ ହଠାତ୍‍ ପଛରୁ ଡାକ ଗୁଡ଼ାଇ ତାଙ୍କୁ ଗୋଟାଏ ଚକ୍‌କଣ କଳାପଥର, ନିଖୁଣ ଶାଳଗ୍ରାମ ଦେଖାଇବା ପାଇଁ । ଏଇଥିରୁ କ'ଣ ବୁଝାପଡ଼ୁ ନାହିଁ ଯେ ଅଜା ଯାହା ସବୁ କହୁଗଲେ ତା'ର ସାମାନ୍ୟ ଯେ ଗ୍ରାଇ ପଡ଼ୁନାହିଁ ତା'ର ଆତ୍ମବିଶ୍ୱାସ ଉପରେ ? ଏଭଳି ପ୍ରମାଣ ସତ୍ତ୍ୱେ କୋଉ ବୁଦ୍ଧିରେ ଆମ ଅଜାଜଣକ ଭାବିଲେ ଯେ ଶାଳଗ୍ରାମଟି ତା' ଲୁହରେ ଓଦା ହୋଇଯାଇଛି, ଏବଂ ଆଶା କଲେ ଯେ ସେ ତାଙ୍କ 'ଦୁଃଖ'ରେ କାନ୍ଦିବ ଟିକିଏ ?

ତେଣୁ ଜଣେ ସୁସ୍ଥ ସାଧାରଣ ପାଠକ/ପାଠିକା ଏହି ନିର୍ଣ୍ଣୟରେ ପହୁଞ୍ଚିବାକୁ ବାଧ୍ୟ ହେବ ଯେ ବାଲିଗରଡ଼ା କ ଅନୁ କାହାରିକୁ 'ବିଚାରି' ବୋଲି କହୁହେବ ନାହିଁ । କେବଳ ଗଳ୍ପର କଥକ ଓ ନାୟକ ହିଁ ତମ ଅନୁକମ୍ପାର ପାତ୍ର । କିନ୍ତୁ ସାବଧାନ, ତା'ପ୍ରତି ଦୟା ଦର୍ଶାଇବା ଉଚିତ ହେବ ନାହିଁ । କାରଣ ତା' ଚରିତ୍ରଟା ଏତେ ଜଟିଳ ଯେ ସେ ଅଖଣ୍ଡ, ଅନ୍ୟ ଅର୍ଥରେ ଅସୁସ୍ଥ ହୋଇପଡ଼ୁଛି ବୋଲି ମନେହୁଏ । ନହେଲେ ସେ କ'ଣ ଏମିତି ବିକଳ ହୁଅନ୍ତା 'ଆହା' ପଦେ ଶୁଣିବ ବୋଲି ଆଉ କାହାଠାରୁ, ଏମିତିକି ନାତୁଣୀ ଭଳି ଗୋଟିଏ ଝିଅଠାରୁ, ଯେଉଁଟି ଯାହାର ଖୁସିରେ ଖୁସି ହୋଇ ଆଶୀର୍ବାଦ କରିବା କଥା ତା'ର ନବଜାଗ୍ରତ ପ୍ରେମଜୀବନର ସଫଳତା ପାଇଁ ? ହୀନମନ୍ୟତାରେ ଜର୍ଜରିତ ଏଭଳି ଏକ ଲୋକଟିକୁ ଦୟା ଦେଖାଇଲେ ସେ ମଣିଷ ହେବ କେମିତି ?

ଅଥଚ ମାନିବାକୁ ପଡ଼ିବ ଯେ ଲୋକଟି କେବଳ ଭଲ ମଣିଷ ନୁହେଁ, ସେ ଆହୁରି ଭଲ ହେବାକୁ ଚାହିଁଛି । ବନ୍ଧୁ ଯେହେତୁ ତା' ସ୍ତ୍ରୀର ପ୍ରଣୟୀ, ହେଲେ ଏବେ ପ୍ଲାଟୋନିକ୍ ପ୍ରଣୟୀ, ଏବଂ ସ୍ୱପତ୍ନୀ ସେଇ ଲୋକଟିକୁ ସ୍ୱାମୀଠାରୁ ଅଧିକ ହୃଦୟବାନ୍ ବୋଲି ମନେ କରେ (ଯଥା, ବନ୍ଧୁ ପାଇଁ ସେ ଯେମିତି କାନ୍ଦିପାରେ, ତା' ତମ ଦେଇ ହେବ ନାହିଁ କହୁଥିଲା ସେ), ଏଇ ସରଳ ଓ ପ୍ରକଟିତ ସତ୍ୟକୁ ନେଇ ଦୁଇଟି ବିକଳ୍ପ

ଥିଲି ତା' ପାଖରେ : (୧) ଆଡ଼େଇ ହୋଇଯାଅ ବନ୍ଧୁ ପାଖରୁ, ଏବଂ ସ୍ତ୍ରୀକୁ ସିଧାସଳଖ କହିଦିଅ ଯେ ମୁଁ ବୁଝୁଛି କଭଳି ସମ୍ପର୍କ ଅଛି ତମ ଦି' ଜଣଙ୍କ ଭିତରେ ଯାହାକୁ—କ୍ଷମା କରିବ—ମୁଁ ଗ୍ରହଣ କରିନେଇ ପାରିବି ନାହିଁ, ଅଥବା (୨) ଉଦାରଭାବାପନ୍ନ ହୋଇ ଏଇ 'ଆଫେୟାର୍'ଟା ଉପରେ ଗୁରୁତ୍ୱ ଦିଅ ନାହିଁ, ଯେହେତୁ ତମକୁ ଜଣା ଯେ ତମ ସ୍ୱାମୀ-ସ୍ତ୍ରୀ ବୈବାହିକ ବନ୍ଧନ ଯଥାକ୍ରମେ 'ସ୍ନେହସୂତ୍ରରେ' ସ୍ଥିତ ହୋଇ ରହିବ । କିନ୍ତୁ ସେ କ'ଣ କଲି ନା ବନ୍ଧୁକୁ ତଥାପି ବନ୍ଧୁ ବୋଲି ଧରି ରଖିବାକୁ ଚାହିଁଲି, କିନ୍ତୁ ଭିତରେ ଭିତରେ ହନ୍ତସନ୍ତ ହେଲି ଯେ ମୋଠାରୁ ଭଲ ବୋଲି ସେ ମୋ ସ୍ତ୍ରୀକୁ ମୋଠୁଁ ଛଡ଼େଇ ନେଇଯାଇଛି । ତେଣୁ ସେ ବନ୍ଧୁ ବିୟୋଗରେ ଲୁହ ଗଡ଼େଇଲି ସତ, କିନ୍ତୁ ସେଦିନ ରାତିରେ ସେ 'ବିଶେଷ ଭାବରେ ପ୍ରେମ' କଲି ସ୍ତ୍ରୀ ସହିତ, 'ଅନେକ ଦିନର ଅପୂରଣ ମେଣ୍ଟାଇ ଦେଲିପରି' କିନ୍ତୁ ବୁଝି, ସେଥିକରେ ସଫଳ ନାହିଁ । ସେଇଠୁଁ ଆସିଲି ଗ୍ଲାନି । କାରଣ ତା'ର ମନେ ହେଲି ଯେ ଇଏ ହେଉଛି 'କେଉଁ ଏକ ଭ୍ରାନ୍ତିପଣରୁ, ଭଲପଣିଆର ଦାୟିତ୍ୱରୁ ଖଲାସ ହୋଇ ଯିବାର ହେଣ୍ଡିମିରି ଆନନ୍ଦ' ।

ଫଳରେ ହତଭାଗା ନା ହାରିହାରି ଭଲ ମଣିଷଟିଏ ହୋଇ ରହିପାରିଲି, ନା ତା'ର ସହଜପ୍ରବୃତ୍ତି ଉପରେ ସବାର୍ ହୋଇ ଦେବତ୍ୱ ଆଡ଼କୁ ଗତି କରିପାରିଲି । ସେଥିରେ ବି' ବିଶେଷ କ୍ଷତି ହୋଇ ନ ଥାଆନ୍ତା, ଯଦି ସେ ଏତେ ଅଧିକ ବିଶ୍ଳେଷଣ କରି ନ ଥାଆନ୍ତା ତା'ର ଗଣ୍ଡଗୋଳିଆ ଭାବ-ଭାବନାକୁ । ଅବଶ୍ୟ ମୁଁ ଆନ୍ଦ୍ରେ ଜିଡେଙ୍କୁ ଉଦ୍ଧାର କରି କହିଛି ଅନେକ ଥର, ଯେ 'ସତ୍ୟର ରଙ୍ଗ ଧୂସର', ଯାହା ମଣିଷର ଚରିତ୍ର ପ୍ରତି ବିଶେଷ ଭାବରେ ପ୍ରଯୁଜ୍ୟ । ମଧ୍ୟ ବାରମ୍ବାର କହିଛି ଯେ ଆତ୍ମସମୀକ୍ଷା ହିଁ ଅନେକ ଗ୍ରନ୍ଥିକୁ ଆଲୁଅ କରିପାରିବ, ଯେଉଁଥିରେ ବ୍ୟକ୍ତି ତଥା ସମାଜ ଠିକଣା କାମ କରିପାରିବ ପାରସ୍ପରିକ ମଙ୍ଗଳ ପାଇଁ । କିନ୍ତୁ ସବୁ କଥାର ଗୋଟାଏ ସୀମା ଅଛି । ଲୋକଟା ଉଚିତରୁ ଅଧିକ ଅନେଇଲି ନାହିଁ କି ନିଜ ଭିତରକୁ ? ନା କହିବାକୁ ଚାହିଁ ଯେ ସେ ଯେତିକି ଭାବୁକ ସେତିକି ଭାବତରଳ, ଯେତିକି ଇଣ୍ଟେଲେକ୍ଚୁଆଲ୍

ସେଥକ ସେଣ୍ଟିମେଣ୍ଟାଲ୍, ଏବଂ ଏହି ଉଭୟ ବିଶେଷର ଉତ୍କର୍ଷ ହିଁ କାଳ ହେଲା ତା' ପାଇଁ ?

ସୁଜାତା, ତା'ପ୍ରତି ଦୟା ଦେଖାନ୍ତୁ ନାହିଁ । କାରଣ ଶେଷକୁ ତା'ର ଅଡୁଆ ଉଡୁଆ ଚେତନାର ଫାଙ୍କରେ ଯେଉଁ ସ୍ଫୁରଣଟିଏ ଦେଖିବାକୁ ମିଳୁଛି, ଯେତେବେଳେ ସେ କହୁଛି ଯେ 'ଯାହା ହେଉ ପଛେ ପଥରକୁ ଢାଅଁ କରି ହେବ', ତା'ର ଆଲୁଅଟିକ ତା'କୁ ବାଟ କଢ଼େଇ ନେଉ । ଶାଳଗ୍ରାମଟିକୁ ପୂଜା କରୁ ବା ନକରୁ, ସେ ତା'ର ସହଜ ପ୍ରବୃତ୍ତିକୁ ଅଧିକରୁ ଅଧିକ ମିଶେଇ ଦେଇପାରୁ କେଉଁ କଳାଗତ, ସେବାଗତ, କି ଆଧ୍ୟାତ୍ମିକ ଉଦ୍ୟମରେ ଯାହାକୁ ସବ୍‌ଲିମେସନ୍ (Sublimation) କୁହନ୍ତି ମନସ୍ତାତ୍ତ୍ୱିକ ପରିଭାଷାରେ । ଯେମିତିକି ସେ ତା' ବୃନ୍ଦାବନେ ଯଥାର୍ଥରେ 'ସ୍ନେହସାରେ ସ୍ଥିତଃ' ହୋଇ ରହିବ, କେବଳ ନଳିନୀଦେବୀଙ୍କ ସାଙ୍ଗରେ ନୁହେଁ, ଅନେକ ନଭେଇଥିବା ଏଇ ବିଚିତ୍ର ଜୀବନଟା ସାଙ୍ଗରେ ।



# ଦୁଃସ୍ୱପ୍ନ, ଦିବାସ୍ୱପ୍ନ

ଯେଉଁମାନେ ସ୍ୱପ୍ନ ଦେଖୁଥିଲେ, ତାଙ୍କ ସ୍ୱପ୍ନ ବିଷୟରେ ବିଶେଷ କିଛି କହି ହେବ ନାହିଁ । ଅବଶ୍ୟ ତାଙ୍କ ନିଦ ତାଙ୍କର, ତା' ଭିତରକୁ କାହାର ପ୍ରବେଶ ନାହିଁ । କିନ୍ତୁ ଖାଲି ସେଥିପାଇଁ ନୁହେଁ । ନିଦରୁ ଉଠି ଦୃଷ୍ଟ ଅନୁଭବର କାହାଣୀକୁ ମୋଟା-ମୋଟି ବର୍ଣ୍ଣନା କରିବାର କ୍ଷମତା, ଯେପରିକି ବାହାର ଲୋକେ ତାକୁ ଯଥାକଥିତ୍ ବୁଝିପାରିବେ, ସେତିକି ତାଙ୍କର ନ ଥିଲା । କାରଣ ଦୁହିଁଙ୍କ ଭିତରୁ ଜଣେ ଅତି ବୁଢ଼ା । ବୟସ ପଞ୍ଚାନବେ । ଆଉ ଜଣକ ତାଙ୍କ ଅଣନାତୁଣୀ, ତା' ନାଆଁ ରାଣୀ । ବୟସ ଛଅ ପାଖାପାଖି ।

ତେଣୁ ଯେଉଁ ଦି'ଜଣ ନିଦରେ ଶୋଇବା ବଦଳରେ ଜଳଜଳ ହୋଇ ଅନେଇ ରହିଥିଲେ, ଡାକ୍ତରଙ୍କୁ, ରାଣୀକୁ, ତଥା ପରସ୍ପରକୁ, ସେମାନଙ୍କର କାହିଁକି ଏ ଦୁରବସ୍ଥା, ସେ ବିଷୟରେ ପ୍ରଥମେ କିଛି କହିଲେ ଭଲହେବ ପରା । ତାଙ୍କର ଭାବନା ଯେପରିଭାବରେ କଟାକଟି ହେଉଥିଲା, ତା'ର ନମୁନା ଏହି ପ୍ରକାର :

—ଲୀନା ଭୁଲ ବୁଝିଛି । ରାଣୀ ଜେଜେଙ୍କୁ ଭୂତ ବୋଲି କହିଲା ସିନା, ଠିକ୍ ସେମିତଭାବରେ କହି ନଥିଲା । ହସି ହସି କହିଥିଲା । ତେଣୁ ମୁଁ ମୋଟେ ବିଶ୍ୱାସ କରିବନାହିଁ ଯେ, ସେଇ ହେଉଛନ୍ତି ତା' ଦୁଃସ୍ୱପ୍ନର କାରଣ ।

—ଜଗନ୍ନାଥ ମାନିବାକୁ ଚାହେଁ ନାହିଁ । ସେ ତା'ର ଘରକୁ, ତା'ର କୁଅକୁ ଫେରି ଆସିଛି କି ନା ସେଇ ଲାଗି । ଏଠିକାର ସବୁ ବେଙ୍ଗ ସୁନ୍ଦର, ବିଶେଷତଃ ଅମର ହୋଇ ବସିଥିବା ବୁଢ଼ାହଡ଼ା ପହିଲି ନମ୍ବର ବେଙ୍ଗ ! ଲୀନା ହସିଲା ତା' ରଙ୍ଗବୋଲା ଓଠକୁ ବଙ୍କେଇକରି ।

ଲୀନା ଜାଣିଶୁଣି ତା' ଓଠକୁ ବଙ୍କେଉଛି ସେମିତି । ଯେମିତିକି ମୁଁ ବୁଝିବି ଯେ, ତା' ଅନ୍ତରର ବିଦ୍ରୂପ ଉପୁଜଉଠୁଛି ମୋର ଏଇ ଘର, ସହର, ଜେଜେ ଓଗେରଙ୍କ ପ୍ରତି । ଯଦିଓ ସେ ଆମ ମୁହଁ ଉପରେ କଟୂକ୍ତି କରିବାକୁ ଚାହେଁ ନାହିଁ ଭଦ୍ରତା ଖାତିର୍‌ରେ । କିନ୍ତୁ ସେ ଭୁଲିଯାଉଛି ଯେ, ତା'ର ଏଇ ଧରଣର ଢଙ୍ଗ ଦେଖିଲେ ମୋର ମନେହୁଏ ତା'ର ପିଲାଳିଆମି ମୋଟେ ଯାଇ ନାହିଁ । ମୁକ୍ତ କହିବାର ବଳ ନାହିଁ କି ରଗେଇବାର ସାହସ ନାହିଁ । ସେଇଥିପାଇଁ ତା'ର

ବ୍ୟଞ୍ଜନାକୁ ନଠେଇ ଲମ୍ୱେଇ ଦେଉଛ ମୋ ଆଖିରେ ପଡ଼ିବ ବୋଲି । ଅସଲ ଫୁଟିଲେଇଛିଏ । କିନ୍ତୁ ମୁଁ ଯଦି ତା'କୁ ବେଖାତିର କରି ତା' ଓଠରେ ଚୁମ୍ବାଟାଏ କସିଦିଏ, ତା'ହେଲେ ? ତା' ହେଲେ ଛୋକାର ମଜା ବାହାରିଯିବ । ନା, ମୁଁ ଆସିଛି ଏଠି ରହିବ ବୋଲି । ବାହ୍ ! ଗ୍ରାଣୀ ତା' ସ୍ୱପ୍ନରେ ଟିକିଏ ଚର୍‌ଚରେଇ ଉଠିଲା, ତା'ର ଅର୍ଥ ନୁହେଁ ଯେ, ସେ ଜେଜେଙ୍କୁ ଦେଖି ଡରୁଛି । ଏବଂ ସେହେତୁ ମୁଁ ଘରକୁ ଆସୁ ନଆସୁଣୁ ହାର୍ ମାନିବ । ପୁଣି ପଳେଇଯିବ ।

—ଜଗନ୍ନାଥ କେବେହେଲେ ସ୍ପଷ୍ଟଭାବରେ କହି ନାହିଁ ଯେ, ସେ ଏଠିକି ଆସିଛି ସବୁଦିନ ପାଇଁ । କିନ୍ତୁ ମୁଁ ଜାଣିଛି ତା'ର ମତଲବ ସେଇଆ । ଅବଶ୍ୟ କେଇଟା ବର୍ଷ ପରେ ସେ ନିଜେ ଛଟପଟ ହେବ ପଳେଇଯିବା ପାଇଁ । ଆମ ସେଠିକାର ଖୋଲା ପବନ ଖୋଲା ପଡ଼ିଆକୁ ମନେ ପକେଇବ । କାହିଁକିନା, ହୁଏତ ଏଇ ସହର-ମଫସଲରେ ବେଶୀ ପଡ଼ିଆ, ବେଶୀ ପବନ, କିନ୍ତୁ ତାକୁ କୋଉ ବୁଦ୍ଧିରେ ଖୋଲା ବୋଲି କହିବ ? ଯେଉଁଠି ଏତେ ଗନ୍ଧ, ଏତେଭଳି ପଶୁ ଗନ୍ଧର ରାଜତ୍ୱ, ସେଠି କେଉଁ ଅନୁଭବଟି ମୁକ୍ତ ? ନିରୋଳା କି ନିର୍ମଳ ? ଦୂର୍, ଜଗନ୍ନାଥ ପାରିବ ନାହିଁ । ତା'ର ଆଖି ଫିଟିବ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ତା' ଆଗରୁ ? ଅଯଥାରେ ଗୁଡ଼ାଏ ଦିନ କାହିଁକି କଷ୍ଟ ଦେବ ନିଜକୁ, ମୋତେ ଆଉ ରାଣୀକୁ ? ଏଇଠି ଲୀନା ସିଧାସଳଖ ଅନେଇଲା ଜଗନ୍ନାଥର ମୁହଁକୁ, ସତେକି ସେ କହିବାକୁ ଚାହେଁ ଯେ, ତୁମେ କଦାପି ଏତେ ନିର୍ବୋଧ ନୁହଁ । ତୁମର ବୁଝିବା ଉଚିତ । ଯଥାଶୀଘ୍ର । ବିଶ୍ୱାସ କରିବା ଉଚିତ ଯେ, ରାଣୀ ଜେଜେଙ୍କୁ ଦେଖି ଡରୁଛି, ସେଇଲାଗି ତା'ର ଏଇ ଦୁଃସ୍ୱପ୍ନ··· ।

କିନ୍ତୁ ଲୀନା ତା'ର ମୁହଁକୁ ସିଧାସଳଖ ଅନେଇଲା ମାତ୍ରେ ଏକ ବିଚିତ୍ର ଅନୁଭବ ଆକ୍ରମଣ କଲା ଜଗନ୍ନାଥକୁ । ଆବ୍‌ସର୍ଡ଼ର, ଏକ ଅଳୀକ ଫାର୍ସ ରଚିବାର ଅନୁଭବ । ଆରେ, ଆମେ ଆଲୁଅ ଘରଟାରେ ଏମିତି ଚେଇଁ ରହିଛୁ କାହିଁକି ? କିଏ ମନା କଲା ଆଲୁଅ ଲିଭେଇ ଦେବାକୁ ? ରାଣୀ ପୁଣି ଥରେ ଚର୍‌ଚରେଇ ଉଠିଲେ କ'ଣ କାହା କାନକୁ ଶୁଭିବ ନାହିଁ ଯେ, ତା'ର ଶବ୍ଦକୁ ଦେଖିବା କି ଦରକାର ? ତାକୁ ଦେଖି ଶୁଣି ପଢ଼ିବା ଦରକାର ? ଜଗନ୍ନାଥ ଅଭଦ୍ରଙ୍କ ପରି ହସି ଉଠିଲା, ଲୀନାର ଆହ୍ୱାନକୁ ଉପହାସ କଲା ପରି । ସେଥିକୁ ଲୀନାର ପ୍ରତିକ୍ରିୟା କ'ଣ ହୋଇଥାଆନ୍ତା କେଜାଣି, ତା' ପୂର୍ବରୁ ଜଗନ୍ନାଥ ଆହୁରି ଗୋଟାଏ ଆବିଷ୍କାର କଲା । ଖାଲି ସ୍ତ୍ରୀ'କୁ କେବଳ ଆବ୍‌ସର୍ଡ଼ କୁହାଯିବ ନାହିଁ । ବରଂ ଏଥିରେ ରାଗିବା କଥା । ମନେହେବ ଲୀନାଦେବୀଙ୍କର ଗୋଟାଏ ଅଭିସନ୍ଧି ଅଛି । ରାଣୀକୁ ବାଧ୍ୟ କରା ହେଉଛି ଚର୍‌ଚରେଇବା ପାଇଁ । ଝାଳେଇ ହାମ୍ପେଇ ସେତେକ ଦୁଃସ୍ୱପ୍ନ ଦେଖିବା ପାଇଁ । କାହିଁକିନା କେବଳ କବାଟ ନୁହେଁ, ଦାମ୍ପତ୍ୟ ସୁରକ୍ଷାର କବାଟ ନୁହେଁ,

ଆକାଶକୁ, ବାରବଟିଗୁଡ଼ିକୁ ଚାହିଁଉଥିବା ଛନଛନଟା ଝରକା ବି ବନ୍ଦ ଅଛି ! ନବୁଜ ହୋଇ ବନ୍ଦ ଅଛି ! ଜଗନ୍ନାଥ ହାସ୍ୟରସରୁ ଓହ୍ଲାଇ ଆସି ଟାଣି ହୋଇ କହିଲା, ପୂରାପୂରି ନଜଗିଲେ ବି ଉଷ୍ମ ଆଓ୍ୱାଜରେ କହିଲା—

"ଇଏ କଅଣ ? ଝରକା ସବୁ ବନ୍ଦ କରି ହୋଇଛି କାହିଁକି ? ପିଲାଟାକୁ ବାଧିବ ନାହିଁ ? ଖାଲି ପିଲା କାହିଁକି, ବଡ଼ ମଣିଷ ବି ଛଟପଟ ହେବ ଏଥିରେ, ବଳିବଲେଇବ···"

"ଭାବୁଛ ମୁଁ ସେଇଲାଗି ବନ୍ଦ କରି ଦେଇଛି ? ଜାଣିଶୁଣିକା ?"

ଘୋର ବିସ୍ମୟର ଭଙ୍ଗୀରେ ଲୀନାର ଓଠ ଉଚତରୁ ଅଧିକ ମେଲା ହୋଇଗଲା । କିନ୍ତୁ ଜଗନ୍ନାଥ ଭାବିବାକୁ ଭରସି ପାରିଲା ନାହିଁ ଯେ, ସେଥିରେ ଢଙ୍ଗ ଅଛି, ଛଳନା ଅଛି । "ଆଃ, ମୁଁ କ'ଣ କହିଲି ଯେ, ତୁମେ ଜାଣିଶୁଣି—?" ଏହିଭାବରେ ସେ କିଛି ଗୋଟାଏ ସଫେଇ ପ୍ରସ୍ତୁତ କରିବାକୁ ଯାଉଥିଲା, ଏହି ସମୟରେ ଲୀନାର ଖୋଲା ଓଠ ବୁଜି ହୋଇଗଲା, ଓ ସେ କଥା କହିବାକୁ ଆରମ୍ଭ କଲା—

"ହଁ, ଜାଣିଶୁଣିକା । କିନ୍ତୁ ରାଣୀକୁ କଷ୍ଟ ଦେବା ପାଇଁ ନୁହେଁ । ତାକୁ ନଷ୍ଟେଇ ରଖିବା ପାଇଁ । କାହିଁକିନା ଝରକା ଖୋଲିଦେଲେ ଯେଉଁ ଗନ୍ଧ ପଶି ଆସିବ, ସେଥିରେ ସେ ଉଧେଇ ପାରିବ ନାହିଁ ।"

"ଗନ୍ଧ ?"

"ମଲା, ଏଠିକାର ଗନ୍ଧ କ'ଣ ତୁମେ କେବେହେଲେ ଶୁଙ୍ଘି ନାହଁ ? ନା ଘରପୁଅ ବୋଲି ଗନ୍ଧଫନ୍ଧ କିଛି ବାଜେ ନାହିଁ ତୁମ ନାକରେ ? ଦିନର ଧୂଳିଧୂଆଁରେ ତା'ର ସତ୍ତା ମିଳେଇ ଯାଉଥିବ ହୁଏତ, କିନ୍ତୁ ରାତିରେ ? ଗୋଟିଏ ନୁହେଁ, ହରେକ କିସମର । ଖୋଲା ନର୍ଦ୍ଦମା ଯାଙ୍ଗକୁ ସେଥିରେ ଛଡ଼ା ହେଉଥିବା ଥେଲା ଥେଲା ମଣିଷ ବଳକାର । ମୁଣ୍ଡକଟା ମୂଷାର ଗନ୍ଧ । ଶୁକ୍ଲାଟା-ଶୁକ୍ଲାଟୀ ହଗୁରା-ହଗୁରୀଙ୍କ ଦିଅାନିଅା ଦେନାପେନାର ଗନ୍ଧ । ଆଉ ଯାବତୀୟ ମେଞ୍ଚାମେଞ୍ଚି ସାନ୍ଧୁରୁବାଲୁରୁ ସମ୍ପର୍କର ଗନ୍ଧ, ରାତି ଅନ୍ଧାରରେ ସ୍ୱାଧୀନତା ପାଇ ମେଲେଇ ହୋଇ ପଡ଼ିଥିବା ଯେତେକ ଅଘରଛନିଆ ଦେହ, ଦେହର କାମଅକାମ ଝାଳନାଳ ବାମ୍ପ ଓ ବାୟୁ—"

"ଇସ୍, କ'ଣ ବକୁଛ ଏସବୁ ? ଗନ୍ଧକାବ୍ୟ ନା ଦେହ ରାମାୟଣ ?"

"ଉଭୟ । କ'ଣ ଭୁଲିଯାଉଛ ଯେ, ତୁମ ସ୍ତ୍ରୀ ସାହିତ୍ୟରେ ଏମ୍. ଏ. ପାସ୍ କରିଛି ?" ଲୀନା ହସିଲା ।

ବନ୍ଧୁତ୍ୱ ··ବିସ୍ମୟ···କ୍ରୋଧ···ଆମୋଦ···କେତେ ସହଜରେ ସ୍ୱଚ୍ଛନ୍ଦରେ ସେ ତା' ଭାବର ଶାଢ଼ି ବ୍ଲାଉଜ ବଦଳେଇ ଚାଲିଛି ! ଜଗନ୍ନାଥ ଆଜ୍ଞାଙ୍କୁ ଦଶ ବର୍ଷ ହେଲା ତା'ର ସାଥୀ ଓ ପତ୍ନୀ ହୋଇଥିବା ରମଣୀର ପ୍ରତିଭାରେ ମୁଗ୍ଧ ହେଲା । ଠେକ୍‌ଠୋକ୍ ଯୁକ୍ତିତର୍କ ପାଇଁ ବଳ ନାହିଁ କି ରଗେଇବାର ସାହସ ନାହିଁ ସିନା, ଏମ୍. ଏ. ପଢ଼ାର ଭାଷା ଅଛି ଓ ତା' ସାଙ୍ଗକୁ ଏଇ ଭାବ ପ୍ରଦର୍ଶନର ଛଇ । ଭାବକୁ ନଠେଇ ଲମ୍ବେଇଦେବା, ପୁଣି ସୁହୁଁ ଚୁହୁଁ ବଦଳେଇଦେବା । ଯେମିତିକି ତୁମେ ବୁଝିପାରିବ ନାହିଁ ତା'ର ଦୁଃଖ କେତେ ଏବଂ ସେ ପ୍ରକୃତରେ କ'ଣ ଚାହେଁ । କିନ୍ତୁ ବୁଝିହେବ ଯେ, ସେ ଚାହେଁ । ବୋଧହୁଏ ଅସହାୟ, ସେଇଲାଗି । ଏବଂ ହୁଏତ ତୁମଠାରୁହିଁ ଚାହେଁ । ସେଇ ପ୍ରଥମ ଦିନର ସନ୍ଧ୍ୟା ପରି···

···ମହାନ ଗଙ୍ଗାର ବିସ୍ତୃତ ମହାତ୍ମାଗାନ୍ଧୀ ପାର୍କ ଉପରକୁ ଅନ୍ୟତମ ରାଜକୀୟ ସନ୍ଧ୍ୟା ନଇଁ ଆସୁଛି । ଯେଝାର ଯେଝା ଘରକୁ ଗଲେଣି, ଯିବା ପାଇଁ ବାହାରିଲେଣି, କିନ୍ତୁ ଏଇ ଝିଅଟି ପାର୍କର ଗୋଟିଏ କୋଣରେ ବସି ରହିଛି ଚୁପ୍‌ଚାପ୍ । ଖାଲି ବସି ରହିଥିଲେ କିଛି ନୂଆ କଥା ହୋଇ ନଥାଆନ୍ତା । କିନ୍ତୁ ସେ ଥୁଣ୍ଟା ହୋଇ ବସି ନାହିଁ । ଗୁଣୁଗୁଣୁ ହେଉଛି, ଏବଂ ଗୁଣୁଗୁଣୁର ଶବ୍ଦ ମୋର ମାତୃଭାଷାରେ ଛିଅଁର ହେଲା ପରି ଲାଗୁଛି । ବେଳେବେଳେ ମୁହଁକୁ ହାତରେ ଘୋଡ଼ଉଛି, ଲୁଚେଇଲା ପରି, ପୁଣି ବେଳେବେଳେ ହସି ଦେଉଛି ଫିକ୍‌କିନା । ଯେତେକି ତା'ର କେହି ନାହାନ୍ତି, ସେଇଲାଗି ବଗିଚାସାରା ଯେତେକ ଭାବନାବର ଖେଳ ଖେଳୁଛି ନିଜ ସାଙ୍ଗରେ । ମୁଁ ଝିହଲିଲା ପରି ଚାଲିଆସିଲି ତା' ପାଖକୁ । ହେଲେ କାଳେ ଅଭଦ୍ରାମି ହେବ ବୋଲି କିଛି ପଚାରି ପାରିଲି ନାହିଁ ଅନେକ ସମୟ ଯାଏଁ । ଶେଷକୁ ଅଧମତାରଣ ପନ୍ଥା । ପାଣିପାଗ ।

"ବର୍ଷା ହେବ ଆଉ ଟିକିଏ ପରେ—"

ତା'ର ସେଇ ପ୍ରଥମ ଦୃଷ୍ଟିର ଚାହାଣି । ବିମୂଢ଼ତା । ସେଇଠୁ ଆନନ୍ଦ, ଖାଲି ଆନନ୍ଦ । ତୁମେ କ'ଣ ସତରେ ଆସିଛ ମୋ ସାଙ୍ଗରେ କଥା କହିବାକୁ ? ମୋର ନିଃସଙ୍ଗତାକୁ ଛୁଇଁବାକୁ ? ବିଶ୍ୱାସ ହେଉ ନାହିଁ । ସତରେ ଆସିଛ ??

"ଏଁ ? ବର୍ଷା ହେବ ? ହେଉ । ଅର୍ଥାତ୍ ହେଲେ ହେଉ, ମୁଁ ଚିନ୍ତିବ । ତୁମର ଯାଏ କେତେ ଆସେ କେତେ ? ତା'ପରେ ଗୋଟିଏ ସମୁଜ୍ଜ୍ୱଳ ସ୍ମିତହାସ । ସେଇଠୁଁ ଆରମ୍ଭ । ଅନୁରାଗର ଉନ୍ମେଷ, ପ୍ରଥମ ପ୍ରତିଶ୍ରୁତି···

ତୁମ କବିତ୍ୱକୁ ଧନ୍ୟବାଦ, ତୁମ ରସବୋଧର ତୁଳନା ନାହିଁ, ତୁମର ଚପଳ ଆମୋଦକୁ ମୁଁ ସ୍ୱୀକାର କରୁଛି (ଏଇ ଦେଖନ୍ତା ମୁଁ ବି ହସୁଛି ? , ଏହି ପ୍ରକାର

ଖବର ପତ୍ରିକାଷ୍ଟା ଦେଖାଇ ଜଗନ୍ନାଥ ଖଟରୁ ଉଠିଯାଇ ପ୍ରତିଟି ଝରକା ପାଖକୁ ଗଲ ଓ ତାକୁ ଖୋଲିଦେଲ । ଝରକା ସବୁ ଖୋଲିଦେଲା ପରେ ସେ କିଛି ସମୟ ପାଇଁ ତା'ର ଏଇ ଘରକୁ ଘେରେଇଥିବା ସହରର ଗନ୍ଧକୁ ଶୁଙ୍ଘିଲ । ନଶୁଙ୍ଘି ରହି ପାରିଲ ନାହିଁ । ଗୋଟାଏ ଲମ୍ବା ନିଃଶ୍ୱାସରେ ଟାଣି ନେଲା ଭିତରକୁ । ଏବଂ ମନେ ମନେ କହିଲ ଲୀନାକୁ—

ଲୀନା, ମୁଁ ତୁମକୁ ଭଲପାଏ । ହୁଏତ ତୁମେ ଏ ଘରର, ପଡ଼ାର, ସହରର ନୁହେଁ ବୋଲି ମୁଁ ତୁମକୁ ଭଲପାଇ ପାରିଲି । କିନ୍ତୁ ଦୟାକରି ମୋତେ ଏଇ ଗନ୍ଧ ଶୁଙ୍ଘିବାକୁ ଦିଅ । ଇଏ ମୋର ପ୍ରିୟ ବୋଲି ମୁଁ କହିପାରିବି ନାହିଁ । ତା' ହୋଇଥିଲେ ଗ୍ରୁଟିପିଟି ହୋଇ ପଳେଇ ଯାଇ ନଥାଆନ୍ତି ତୁମ ବିଶାଳ ପୃଥିବୀକୁ । ତୁମ-ଅମ ମହାନଗରୀକୁ, ଯାହାର କୋଣରେ ତୁମେ ବସିଥିଲ ଏକୁଟିଆ ହୋଇ, ଓ ମୁଁ ତୁମକୁ ପରମ ଆଦରରେ ତୋଳି ଆଣିଲି । କିନ୍ତୁ ପ୍ରଣୟ କ'ଣ ଯଥେଷ୍ଟ ବଞ୍ଚି ରହିବା ପାଇଁ ? ନା, ମୋର ଲୋଡ଼ା ଏଇ ଗନ୍ଧ । ମୋର ଜନ୍ମ ଓ ଜାନ୍ତବ ପରିଚୟକୁ ଚେତାଇ ଦେଉଥିବା ଭିଟାମାଟିର ଗନ୍ଧ । ତୁମେ ବୁଝିପାରିବ ନାହିଁ, କାହିଁକିନା ତୁମେ ମୂଳରୁ ବଢ଼ିଛ ସେଠି, ଯେଉଁଠି ଅନେକ ଲୋକ । କିନ୍ତୁ ତାଙ୍କୁ ଗୋଟି ଗୋଟି କରି ଗଣିବାକୁ ପଡ଼ିବ । କାରଣ ଜଣକଠାରୁ ଆଉ ଜଣେ କାହିଁ କେତେ ଦୂରରେ ଥାଏ, ମଝିରେ ମହାକାଶ ମହୋଦଧି, ମରୁଭୂମି କି ଆଉ କ'ଣ ଏବଂ ସେଇଥିଲାଗି ମନ ଆତୁର ହୁଏ ଆଉ ଲୋକଟାକୁ ଛୁଇଁବା ପାଇଁ ।

କିନ୍ତୁ ଆଜି ମନେ ହେଉଛି ଯେ, ଏଇ ମାଲୁବାଲୁ ସମ୍ପର୍କ ବି ଦରକାର । ବୋଧହୁଏ ବୟସ ବଢ଼ିଲାରୁ ବେଶୀ ବେଶୀ ଦରକାର ହେଉଛି···

କାହିଁକିନା ଏଇ ଦେହମାନଙ୍କର—ଖାଲି ମଣିଷଙ୍କର ନୁହେଁ, ପଶୁ ପ୍ରାଣୀଙ୍କର, ଗଛଲତା ଗହଳର—ଅଶ୍ଳୀଳ ମାଲୁବାଲୁରେ ଅଛି ଗୋଟାଏ ଆଶ୍ୱାସନା । ପ୍ରେମଠାରୁ, ଘୃଣାଠାରୁ ବଳି ଅନ୍ତରଙ୍ଗତା । ନିତ୍ୟନୈମିତ୍ତ ନିମନ୍ତ୍ରଣ ··ଆ'ରେ ବାଣୁ ଲୋକ୍ତରୀଆଖିଆ ଷଣ୍ଢ, ତୋର କେଜେ ବି ବୋଧହୁଏ ଚଳି ଚଳି ଗଲୁଥିଲ ଏଇ ରାସ୍ତାରେ···ଆ'ରେ ଆଗୃର ଗାଡ଼ର ନବା ଲେଙ୍ଗଡ଼ା ( ଆଗୃର, ନବା ଲେଙ୍ଗଡ଼ାକୁ ପଗୃର ), ତୁ ପିଲାଦିନେ ଗୁଲିଡଣ୍ଡା ଶିଖଉଥିଲୁ ମୋତେ, କେତେ କୁଆଡ଼େ ଉଡ଼ିବୁ ବୋଲି ବସିଥିଲୁ, କିନ୍ତୁ ବାଟରେ କେଉଁଠି ଲେଙ୍ଗଡ଼ା ହୋଇଗଲୁ ଭଗବାନ୍ ଜାଣନ୍ତି···ଆ'ରେ ଶତ୍ରୁଘ୍ନଧୋବାର ପୁଅ ଭମରା, ମୋତେ ନାଆଁ ଧରି ଡାକୁଥିଲୁ ପିଲାଦିନେ, ଥରେ ତୋ ବାପାଠାରୁ ଗାଳି ଖାଇଲୁ ସେଥିପାଇଁ । ଯେ ବାବୁଘର ମର୍ଯ୍ୟାଦା ଜଣା ନାହିଁ ତୋତେ, ହେଲେ ତୁ ଖାଲି ଦାନ୍ତ ଦେଖେଇଲୁ, ତା' ପରଠୁ ମୋତେ 'ଜଗା' ନ ଡାକି 'ଜଗୁ' ଡାକିଲୁ, ଯଥାକ୍ରମେ ଚମତ୍କାର ଛତରଟିଏ ହୋଇ

ମଦ ଖାଇଲି, ବରବାଦ୍ ହୋଇଗଲି···ଆ'ଲୋ କେଉଁଠିପର କପିଳବୋଉ, ତୁ ଚାଲିଗଲୁ କଉଠାରୁ କାହିଁ ଦିନା, ତୁ ଲୁଚି ପର ଦେଖାଯାଉ ନାହିଁ ଆମ ଜେଜେଙ୍କ ପର, ତୁ ମୋ ବୋଉକୁ ବୋଉ ବୋଲି ଡାକୁଥିଲୁ, କୁଆଡ଼େ ତା' ମନଲଖି ବଡ଼ ଶଙ୍ଖ ଆଣି ଦେଉଥିଲୁ ତା' ପାଣିକୁ ରୁଚିବ ବୋଲି, ଯେତେବେଳେ ମୁଁ ତା' ପେଟରେ ଥିଲି···ଆ'ରେ କେମନଆ ମଣ୍ଡୁଆ, ଅଧାରୁ ପଢ଼ା ଛାଡ଼ିଦେଲୁ, ହେଲେ ଟିକମ ବଗିଚାରେ କାମ କରି ଦୁ' ଦୁ'ଟା କୋଠା ବାଢ଼େଇଲୁଣି···ଆଉ ମୋ ଯେତେକ ପିଲାଦିନର ସାଥୀ ସାହିପଡ଼ିଶାର ମନସା ମାଉସୀ ଶୁକୁଟା-ଶୁକୁଟୀ ହଗୁରା-ହଗୁରୁଙ୍କ ଦଳ, ବିଫଳ ବେପରୁଆ ମଦୁଆ ମସ୍‌ଗୁଲିଆ, ସଫଳ ବଦନାମିଆ, ଅଗଣେ ବୋଲି ଭୂଇଁରେ ଥେଇଥେଇକା ହରିବୋଲିଆ. ନିମନ୍ତ୍ରଣ ଖାଲି ତୁମଆଡ଼କୁ ନୁହେଁ, ମୁଁ ବି ଡାକୁଛି ତୁମକୁ···ଆହୁରି ଏକାଠି ହେବା; ଆହୁରି ମିଶିଯିବା ଆସ । ଉଠୁ ଯେତେକ ଗନ୍ଧ, ବାହାରର ବାୟୁର, ଜଳୀୟର ସ୍ଥଳୀୟର, ସବୁ ଆମ ଏକାକାର ଦେହର ଆଉ ମନର । ନିଜକଥା. ଘରକଥା । ଏବଂ ସେସବୁକୁ ଶୋଷିନେବ ଆମର ଏଇ ଗୋଟିଏ ବୋଲି ସାଉଟିଆ ଶେଯ । ଆମର ଲୀଳାଖେଳାରେ ଧର୍ଷିତ, ହେଲି ଏବେ ମୂହସିଦ୍ଧ । ଭୟ ନାହିଁ, ଲଜ ନାହିଁ···

ପଳେଇ ଯାଇଥିଲି ଦିନା, ଫେରି ଆସିଛି ଆଜି । କାହିଁକିନା ଏଣିକି ମୋତେ ଡର ମାଡ଼ୁଛି ସେଠି । ବୁଝିବ ଲୀନୁ ? ବୁଝିପାରିବ ?

ଜଗନ୍ନାଥ ତା'ର ଅନ୍ଧାର ସାଥୀମାନଙ୍କଠାରୁ ଦୃଷ୍ଟି ଫେରାଇ ଆଣି ଅନେଇଲା ଲୀନା ଆଡ଼କୁ । ହସହସ ମୁହଁରେ ଅନେଇଲା. କାଳେ ଲୀନା ରାଗିଯିବଣି ସ୍ୱା' ଭିତରେ, ଭାବୁଥିବ ଜଗନ୍ନାଥ କବାଟରେ ଝରକା ଖୋଲିଦେଲା । କିନ୍ତୁ ସେ ଦେଖି ଆଶ୍ଚର୍ଯ୍ୟ ହେଲା ଯେ ଲୀନା ହସୁନାହିଁ ଦିନା, ତା' ମୁହଁରେ କ୍ରୋଧର ଛଳେ ମାତ୍ର ଲକ୍ଷଣ ନାହିଁ । ହୁଏତ ସେ ସାମାନ୍ୟ ବିରସ, ସାମାନ୍ୟ ଭାବାକ୍ରାନ୍ତ ଦେଖାଯାଉଛି । କିଛୁ କ୍ଷତି ନାହିଁ । କ୍ଷଣ କ୍ଷଣକେ ତା'ର ଭାବାନ୍ତର ହୁଏ, କନ୍ୟାକୁମାରୀର ସମୁଦ୍ର ପରି । ସେଇ ତା'ର ଅଦ୍ୱିତୀୟ ନାରୀତ୍ୱ ପରା ! ଜଗନ୍ନାଥ ତା'ର ହସହସ ଭାବକୁ ଧରି ରଖିଲା । ଲୀନାଲପନର ପରବର୍ତ୍ତୀ ରଙ୍ଗକୁ ଅପେକ୍ଷା କରି ରହିଲା ।

ଅବଶ୍ୟ ଲୀନା ରାଗୁ ନ ଥିଲା । ପ୍ରାୟ ପର୍ଯ୍ୟନ୍ତଢରଶ ବର୍ଷର ଶ୍ୟାମଳୀ କୃଶାଙ୍ଗୀ ଖଟରେ ଲେପ୍‌ଟେଇ ପଡ଼ି ଶୂନ୍ୟକୁ ଅନେଇଥିଲା, ଏବଂ ତା'ର ଚାହାଣିରେ ଏକ ପ୍ରକାର ଦୀପ୍ତି ବହଳ ହୋଇ ବସିଥିଲା, ଯେଉଁଥିପାଇଁ ସେ ସାଧାରଣ ସ୍ତରରୁ ଉନ୍ନୀତା ହୋଇ ବିଶେଷଭାବରେ ସୁନ୍ଦର ଦେଖାଯାଉଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସତେକି ସେ ତା'ର ବ୍ୟଞ୍ଜନାତ୍ମକ ସମୁଦ୍ରପଣକୁ ଅଟକେଇ ରଖିଛି, ଅଧିକାରୀ ଆକାଶକୁ ଚ୍ୟାଲେଞ୍ଜ୍ କଲା ପରି । ଅଟକେଇ ରଖିଛି, କାହିଁକିନା ତା'ର

ଜ୍ଞାନୋଦୟ ହୋଇଛି । ସେ ବୁଝିପାରୁଛି ଯେ, ସ୍ୱାମୀ ଜଗନ୍ନାଥ ପ୍ରକୃତରେ ଆସିଛି ଏଠି ରହିବା ପାଇଁ । ତା'ର ପ୍ରତିରୋଧ କରିବାକୁ ହେବ । ଉପାୟ କ'ଣ ବୋଲି ଠିକ୍ କରି ହେଉ ନାହିଁ, କିନ୍ତୁ ମାମୁଲି ପତ୍ନୀସୁଲଭ ରାଗ ଅଭିମାନ ଯଥେଷ୍ଟ ନୁହେଁ, ଏଥିରେ ସନ୍ଦେହ ନାହିଁ । ଆହୁରି କିଛି ଆବଶ୍ୟକ, ଆହୁରି କିଛି··· । ଏବଂ ସେଥିପାଇଁ ନିଜକୁ, ନିଜତ୍ୱକୁ ପୂରାପୂରି ମୁଠେଇ ଧରିବାକୁ ହେବ, ଆହୁରି ସଚେତନ ହେବାକୁ ପଡ଼ିବ । ପରିସ୍ଥିତି ଆଦୌ ସହଜ ନୁହେଁ । ସୁବିଧାର ନୁହେଁ । ଶ୍ୟାମଳୀର ଆୟତ କଳାଡୋଳା ଗୁହାଣି ସ୍ଥିର ହୋଇ ରହିଲା ଅନେକ ସମୟଯାଏଁ ।

ଅଗତ୍ୟା ଜଗନ୍ନାଥର ହସହସ ଭାବ ତା' ସାଙ୍ଗରେ ତାଳ ଦେଇ ପାରିଲା ନାହିଁ, କୋହଳ ହୋଇଗଲା । କିନ୍ତୁ ସେ ବିବ୍ରତ ହେଲା ନାହିଁ । ନିଜକୁ କହିଲା ଯେ, ଯେତେହେଲେ ଇଏ ମିନାର ଘର ନୁହେଁ, ମୋ ଘର । ତେଣୁ ଏଇ ଦ୍ୱୈତ୍ୱ ସ୍ୱାଭାବିକ । ହେଲେ ସେ ଧୀରେ ଧୀରେ ବାଗକୁ ଆସିବ, ମାନିନେବ ଏଇ ତଥାକଥିତ ଗଣ୍ଡିକୁ । ଧର ମୋତେ ବାହା ହେଲା ପରେ ସେ ରହିଥାଆନ୍ତା ଏଇ ଶାଶୁଘରେ ସର୍ବସାଧାରଣ ଓଡ଼ିଆ ଝିଅଙ୍କ ପରି—ତା'ହେଲେ ?

ଜଗନ୍ନାଥ ନିଜକୁ ନିର୍ବିଚାର ମନେ କରି ଅଗ୍ରସର ହେଲା ଖଟ ଆଡ଼କୁ । ଭାବିଲା ଯେ, ସ୍ୱଇଚ୍ଛାରେ ଝରକା ଖୋଲି ଦେଲା ପରି ଆଲୁଅ ବି ଲିଭେଇ ଦେବ । ସପତ୍ନୀକ ଶୋଇ ପଡ଼ିବ । ମିଛୁଟାରେ ରାଣୀର କ'ଣ ହେଉଛି ବୋଲି ଜଗି ବସିବାର ପ୍ରହସନକୁ ବାତିଲ୍ କରିଦେବ ।

ହେଇଅଛି ହେଲା । ଜଗନ୍ନାଥ ଆଲୁଅ ଲିଭେଇ ଦେଇ ଶୋଇପଡ଼ିଲା, ଏବଂ ହାତ ବଢ଼େଇଲା ମିନାକୁ ଛୁଇଁବ ବୋଲି । ମିନା ସେହି ସ୍ପର୍ଶର ପ୍ରତ୍ୟୁତ୍ତର ଦେଲା ନାହିଁ କି ତା' ହାତକୁ ଉଠେଇ ଆଣିଲା ନାହିଁ ।

କିନ୍ତୁ ଯେଉଁ ରାଣୀର ଦୁଃସ୍ୱପ୍ନକୁ ନେଇ ମଞ୍ଚ ଆଲୋକିତ ହୋଇ ରହିଥିଲା ଏତେବେଳଯାଏଁ, ତା' ଆଡ଼କୁ କେହି ବିଶେଷ ଧ୍ୟାନ ଦେଇ ନଥିଲେ । ଦେଲେ ଜାଣିଥାଆନ୍ତେ ଯେ, ଅନ୍ତତଃ ଆଜିର ଏଇ ରାତିରେ ଦୁଃସ୍ୱପ୍ନର ପ୍ରଶ୍ନ ଉଠୁନାହିଁ । ଝିଅ ଥାଇ ଥାଇ ହସୁଛି । ମଧୁରିଆ ଆନନ୍ଦର ହସ ।

ଏବଂ ସତକଥା କହିବାକୁ ଗଲେ ରାତିର ଗନ୍ଧରେ ମଧ ଥିବା ଉଚିତ ଗୋଟାଏ ଉତ୍କଟ ସୁଗନ୍ଧରୁ ଧାପେ, ଅନ୍ୟତମ ଝରକାକୁ ଓହ୍ଲାଇ ଆସିଥିବା ସେଣ୍ଟାରେ ଧଳା ଫୁଲର ଅବଦାନ, ଯାହା ମିନା ପାଖରେ ନିଶ୍ଚୟ ପହଞ୍ଚୁଥିବ । କିନ୍ତୁ ମିନା ତାକୁ ଉପଭୋଗ କରିବାର ଅବସ୍ଥାରେ ନଥିଲା । ସେ ତଥାପି ସଚେତନତାର

ଶୀର୍ଷରେ ବସି ରହିଥିଲା । ଅନ୍ତତଃ ବସିଥିଲା ବୋଲି କହିଲେ ଭୁଲ ହେବ ନାହିଁ । ରାତି ପାହିବାକୁ ଡେରି ଅଛି ।

ହଠାତ୍ ଚେତନତା କେବେ ଉପରକୁ ଉଠିଲେ ଭାବଭାବନାଗୁଡ଼ାକ ଧସ୍ତାଧସ୍ତି ହୋଇ ତାଡ଼ି ଯାଆନ୍ତି, ଲହୁଲୁହାଣ ହୋଇଯାଆନ୍ତି ଏବଂ ମଣିଷ କିଛି ଗୋଟାଏ କାଣ୍ଡ କରିବାକୁ ବାଧ୍ୟ ହୁଏ ? ନୀନାର ମନେହେଲା ସେ ସେଇଭଳି ଉଚ୍ଚ ପର୍ବତରେ ପହଞ୍ଚିଲାଣି ଆସି । ବାହାରେ ରାତି ପାହିବାକୁ ଡେରି ନାହିଁ ଆଉ । ବେଶ୍ ଅନ୍ଦାଜ କରି ହେଉଛି—ଆସିବ ଗୋଟାଏ ପହିଲି ଚଢ଼େଇ, ଚୁଇଁ ଚୁଇଁ ଚୁଇଁ, ତା'ପରେ ଟିଁ-ଇଁ-ଇଁ-ଇଁ, ତା'ପରେ ଉହୁଁ-ଉହୁଁ-ଉହୁଁ, ତା'ପରେ କେତେ କ'ଣ. ଯେତେକ ମୂର୍ଖ ପାଗଳ ଚଢ଼େଇ, କୋଉଠି ଏତେ ଥାଆନ୍ତି କେଜାଣି ! ଆଉ ଜଗନ୍ନାଥ ନିଦଭଙ୍ଗା ଅଳସ ଗ୍ରହାଣି ଢାଳିଦେବ ମୋ ଉପରେ । ଏବଂ ସଯତ୍ନନିର୍ମିତ ମୁଚୁକିହସାଟିଏ ଗ୍ରୁଡ଼ିଦେଇ କହିବ—ଶୁଣୁଛ ତ ? ମ୍ୟା'କୁ ପାଇବ କି ସେଠି ତୁମର ସେଇ ନୁଆଁଖିଆ ମହାନଗରୀରେ ?

ପିଟିଦେବ । ଭାଙ୍ଗିଦେବ । କିଛି ଗୋଟାଏ କାଣ୍ଡ କରିବ । ଯେମିତିକି··· ଯେମିତିକି··· । ଯେମିତିକି କଅଣ ହେବ ? ଘର ଲୋକେ, ସାଇ ଲୋକେ, ଦୁନିଆ ସାରା ଜାଣିବେ ଯେ, ଜଗନ୍ନାଥର ମାଇପ ସତରେ ବିଦେଶିନୀ, ଆଉ ତା' ମୁଣ୍ଡ ଖରାପ ?

ନା, ମୁଁ ବିଦେଶିନୀ ନୁହେଁ କି ମୋ ମୁଣ୍ଡ ଖରାପ ନୁହେଁ । କି ମୁଁ ସହରଥାଣ୍ଡି ବୋଲି ନାକ ଟେକୁନାହିଁ ତୁମକୁ । କିନ୍ତୁ ମୁଁ ଟିକିଏ ଅଲଗା ହୋଇ ଶୁଖିଲରେ ରହିବାକୁ ଚାହେଁ । ଏତକ ବୁଝିବା କ'ଣ ଏତେ କଷ୍ଟକର ? ମୋ ମାଆ ମୋତେ ଉଠେଇ ନେଇ ଆସିଛି ମୋ ପିଲାଦିନେ, ଦେଶରୁ ବିଦେଶକୁ, ମଫସଲରୁ ବଡ଼ ସହରକୁ । ମାମୁଙ୍କ ପାଖକୁ । ମୋର ମନେ ଅଛି ତା' କାନ୍ଦୁରା ଚେହେରା । ଆଉ ମନେ ଅଛି···ଏମିତିକା ଘର, ଏମିତି ସାଲୁବାଲୁ ଲୋକ, ଗାଈଗୋରୁ, ପଶୁପକ୍ଷୀ, ବଣଜଙ୍ଗଲ, ଗହଳି ଓ ଗନ୍ଧ । ପାଣି ବରଷୁଛି । ବୋଉ କାନ୍ଦୁଛି । ସେମାନେ ବେତ ଯାଇଛନ୍ତି ତାକୁ । ସେତେବେଳେ ବାପା କୋଉଠି ଥିଲେ, କ'ଣ କରୁଥିଲେ, କିଛି ମନେ ପଡ଼ୁନାହିଁ । ପରେ ଜାଣିଲି ଯେ, କିଛି ଗୋଟାଏ ଘଟଣା ଘଟିଥିଲା, ଯେଉଁଥିପାଇଁ ବୋଉକୁ କନ୍ଦେଇଲେ ସେମାନେ । ଘରୁ ତଡ଼ିଦେଲେ କହିଲେ ଚଳେ । ବଡ଼ ହେଲାରୁ ଜାଣିବାକୁ ଚାହିଁଲି ନାହିଁ ଯେ ପ୍ରକୃତରେ ବୋଉ କୋଉ 'ପାପ' କରିଥିଲା ନା ସେମାନେ ରାକ୍ଷସ ଥିଲେ । ଯାହାହେଉ ବୋଉର କାନ୍ଦ ବି କେଇଟା ବର୍ଷ ଭିତରେ ବନ୍ଦ ହୋଇଗଲା, କାହିଁକିନା ସେ ମରିଗଲା । ମୋର ହେତୁ ହେବା ପୂର୍ବରୁ । ତେଣୁ ମୁଁ ପୁରାପୁରି ଶୁଖିଲାରେ, ସୁଖରେ ବଢ଼ିଲି ମୋ ମାମୁଙ୍କ ପାଖରେ ।

ଏବେକ୍ଷଣି ପୁଣି କାହିଁକି ଫେରିଆସିବ କାଦୁଅ ବଟବଟକୁ ? ଏଇ ସାଲୁବାଲୁ ମଫସଲକୁ ? ଜଗନ୍ନାଥ ସ୍ତ୍ରୀ'କୁ ଶ୍ରେଷ୍ଠ ସହର ବୋଲି ଯେତେ କହିଲେ କ'ଣ ହେବ, ଇଏ ବି ମଫସଲି । ଗୋଟିପଣେ ମଫସଲ । ସେଇ ଛନ୍ଦାଛନ୍ଦ ଲୋକ, ସମ୍ପର୍କ, ସମସ୍ତେ ବେଢ଼ିଯାଆନ୍ତି ତୁମକୁ, ତୁମ ଜୀବନକୁ । ସେଇଠୁ ମାଡ଼ି ବସନ୍ତି । ଆଉ ବେଳ ଉଣ୍ଡି କହାନ୍ତି । କୁହନ୍ତି, ହେଇ ଲୋ ଜଗା ମାଇପ ଏମିତି କଲା, ଖାଉଜ ସେମିତି କଲା, ହସିଲା, ଚୁର୍କିଲା, ପାପକଲା··· ।

ନନ୍‌ସେନ୍‌ସ, ମୁଁ ରହିବ ନାହିଁ ଏଠି ! କଦାପି ରହିବ ନାହିଁ !!

କିନ୍ତୁ ମୁଁ ଜଗନ୍ନାଥକୁ ଛାଡ଼ି ରହିପାରିବ ନାହିଁ···

ଭୁଚ୍‌କିନି କାନ୍ଦି ଉଠିବା ଛଡ଼ା ଅନ୍ୟ ଉପାୟ ନଥିଲା । ସେଇ ହେଲା ତା' ଜ୍ୱାଳାମୁଖୀ ପ୍ରବୃତ୍ତିର ଶେଷ କଥା । କିନ୍ତୁ ଲୀନା କାନ୍ଦଣାର ଶବ୍ଦକୁ ବେଶ୍ ଚପେଇ ଦେଇ ପାରିଲା । କହିଲା ଲୀନା ଦୁର୍ବଳ ନୁହେଁ । ଲୁହ ସିନା ଆସୁଛି ସିନା, ସମସ୍ତ ସିନା ନାହିଁ ।

ଲୁହ ଶୁଖିଗଲା ପରେ ଲୀନା ଆଲୁଅ ଜଳେଇ ଦେଲା । ଯାହାନ୍ତି ଆଲୁଅର ତେଜକୁ ଅସ୍ୱୀକାର କଲା ପରି । ଏବଂ ପାଖରେ ଶୋଇଥିବା ଦୁଇଜଣଙ୍କୁ ଦେଖିଲା । ଦେଖିଲା ବଡ଼ ଜଣକ ଶୋଇଯାଇଛି । କିନ୍ତୁ ··କିନ୍ତୁ ସନ୍ଦେହ ହେଉଛି ଯେ, ଦୁଇ ଆଖି ବୁଜି ହୋଇ ରହିଛି ସିନା, ତା' ଭିତରେ ବୋଧହୁଏ ନିଦ ନାହିଁ । ହେଲେ ସାନଟା ଦିବ୍ୟ ଆରାମରେ ଶୋଇଛି । ଖାଲି ସେତିକି ନୁହେଁ—ଲୀନା ସେଇ ପ୍ରଥମେ ଆବିଷ୍କାର କଲା—ଝିଅଟା କେଡ଼େ ମଜାରେ ହସୁଛି ! ସତେକି ଷଠୀବୁଢ଼ୀ ବି ଫେର ଆସିଛି ଏତେଦିନକେ, ଏଇ ମଫସଲକୁ ଆସିଲାରୁ ! କିନ୍ତୁ ଲୀନାର ଇଚ୍ଛା ହେଲା ରାଣୀକୁ ହଲେଇ ହଲେଇ ଉଠେଇ ଦେବ ନିଦରୁ । କହିବ—ଆଲୋ ବୋକୀ ଇଏ ମିଛ । ପୂରାପୂରି ମିଛ, ବୁଝିଲୁ ?

ହଉହେଉ ମିଛ ହେଉ ରାଣୀ ସୁଖନିଦରେ ଶୋଇଥିଲା ସେଦିନ, ଏଥିରେ କାହାର ଦ୍ୱିମତ ରହିବ ନାହିଁ । ଏବଂ କେହି ନଦେଖିଲେ କି ନଦେଖିବାକୁ ଚାହିଁଲେ ମଧ୍ୟ ତା'ର ବଡ଼ଜେଜେ ବି ମୁରୁକି ମୁରୁକି ହସୁଥିଲେ ତାଙ୍କ ସ୍ୱପ୍ନନିଦରେ, ଯାହା ଏକ ମହାର୍ଘ ଦର୍ଶନୀୟ ବସ୍ତୁ, ସୁନ୍ଦର ନହେଲେ ନାହିଁ । ସତେକି ଦୁହିଁଙ୍କ ଅଚେତନ ହସ ଭିତରେ କିଛି ଗୋଟାଏ ଯୋଗସୂତ୍ର ଥିଲା । ତା'ହେଲେ କିଏ କାହାକୁ ଡରେଇଲା, କିଏ ଭୂତ ଦେଖିଲା ଏବଂ ଦୁଃସ୍ୱପ୍ନର ଅବକାଶ ଆସିଲା କେଉଁଠୁ ?

କଥାଟାକୁ ମୂଳରୁ କହିବାକୁ ହେବ । ଜଗନ୍ନାଥ ତା'ର ସ୍ତ୍ରୀ ଲୀନା ଓ ଛଅବର୍ଷିଆ ଝିଅ ରାଣୀକୁ ନେଇ ଘରକୁ ଆସିଛି, ଏଇ ଦି'ଦିନ ହେଲା । ଜଗନ୍ନାଥ

ଆସିଛୁ ପ୍ରାୟ ବାର ବର୍ଷ ପରେ । ଲୀନା ମୋଟେ ଆସି ନଥିଲା, ରାଣୀ ତ ସହଜେ । ରାଣୀକୁ କୁହାହୋଇଥିଲା—ଜଗନ୍ନାଥ ତା'କୁ ଲଗିପଡ଼ି କହୁଥିଲା—ଯେ ସେଠିକା ଘର ଭଲେ, ମଣିଷ ଭଲେ, କିନ୍ତୁ ତୋତେ ନିଶ୍ଚୟ ଭଲ ଲାଗିବ । ଖୋଲା ଅଗଣାରେ ଖାଲି ଧାଉଁଥିବୁ ଏ ପାଖରୁ ସେ ପାଖ । ପୋଖରୀରୁ ମାଛ ଧରିବୁ । ଦୁଧ କୋଉଠୁ ଆସେ, କେମିତି ଗାଈର ପହ୍ନାରୁ ଦୁହାଁହୁଏ ଦେଖିବୁ । ବେଶୀ ପାଖକୁ ଯିବୁ ନାହିଁଟି, ଗାଈ ନାତ ମାରିବ । ବାପାଙ୍କ କଥା ମଝିରେ ରାଣୀ ପଚାରିଥିଲା ସେଠି ପିଲା ଅଛନ୍ତି କି ନାହିଁ । ତା'ର ଉତ୍ତର ଦେବାକୁ ଯାଇ ଜଗନ୍ନାଥ ଟିକିଏ ଥତମତ ହୋଇଥିଲା । କାହିଁକିନା ଅନେକ ବର୍ଷ ହେଲାଣି, ବଂଶର ବିରାଟ ପୁରାତନ ଘରେ କେହି ପିଲା ନାହାନ୍ତି । ମାନେ ଘର ପିଲା । କେତେବେଳେ କୋଉ ପୁଅଝିଅଙ୍କ ନାତିନାତୁଣୀ ଆସନ୍ତି ଯାଆନ୍ତି, କିନ୍ତୁ କେହି ରୁହନ୍ତି ନାହିଁ ବେଶୀଦିନଯାଏଁ । ରାଣୀକୁ କୁହାଯାଇଛୁ ଯେ, ସଦାସର୍ବଦା ରହୁଥାଆନ୍ତି ଜଣେ, ବଡ଼ଜେଜେ, ମାନେ ତା' ବାପାର ଜେଜେ ଏବଂ ଜେଜେମା, ତା' ବାପାର ମାଆ । କିନ୍ତୁ ତା' ବୋଲି କ'ଣ କେହି ପିଲା ନ ଥିବେ ? ଯାହାହେଉ ଜଗନ୍ନାଥ ଦମ୍ଭରେ କହିଲା ଯେ, ପାଖଆଖର କେତେ ପିଲା ଆସନ୍ତି ସେଠି ଖେଳିବା ପାଇଁ, ମାଛ ଧରିବା ପାଇଁ, ଗୁଡ଼ି ଉଡ଼େଇବା ପାଇଁ । ତେବେ ରାଣୀ ବିଶେଷ ଆଶ୍ୱସ୍ତ ହେଲା ପରି ମନେ ହେଲା ନାହିଁ । ସେଇଠୁ ଜଗନ୍ନାଥ ଗୋଟାଏ ନବୁଝିଆ କାମ କଲା । ନଭାବି ନଚିନ୍ତି କହି ପକାଇଲା—"ଆଲୋ, ତୁ ବଡ଼ଜେଜେଙ୍କ ସାଙ୍ଗରେ ଖେଳିବୁ ନାହିଁ ? ସେ ବି ଗୋଟିଏ ପିଲା ପରି !" ରାଣୀ ତା'ର ଅର୍ଥ କ'ଣ ବୁଝିଲା ନବୁଝିଲା ସେଇ ଜାଣେ । କିନ୍ତୁ ଏଠିକି ଆସି ବଡ଼ଜେଜେଙ୍କ ସାଙ୍ଗରେ ଦେଖାହେଲା ମାତ୍ରେ ସେ ପାଟି କରି ଉଠିଲା—"ପିଲା ନା ଛାଇ ! ଇଏ ତ ଗୋଟାଏ ଭୂତ !"

ନନ୍ଦ ମହାନ୍ତି ଓରଫ୍ ବଡ଼ଜେଜେଙ୍କ କାନକୁ କିଛି ଶୁଭେ ନାହିଁ ସତ, କିନ୍ତୁ ଜଗନ୍ନାଥ ଓ ଲୀନା ଉଭୟ ହତବୁଦ୍ଧି ହୋଇ ଯାଇଥିଲେ, କାହିଁକିନା ପାଖରେ ଅନ୍ୟ ଲୋକ ଥିଲେ । ତେଣୁ ସେମାନେ ତତ୍‌କ୍ଷଣାତ୍ ଝିଅକୁ ସେଠାରୁ ଟାଣି ଟାଣି ନେଇ ଯାଇଥିଲେ । ବୁଢ଼ାଙ୍କ ଜରାଜୀର୍ଣ୍ଣ ପାକୁଆ ପାଟିର ପାକୁପାକୁକୁ ଅଗ୍ରାହ୍ୟ କରି । ଅବସ୍ଥାଟାକୁ ଆପାତତଃ ସମ୍ଭାଳି ନେବା ପାଇଁ, କାଲେ ରାଣୀ ଆଉ କଅଣ କରି ବସିବ, ଆଉ ତାଙ୍କ ମୁଣ୍ଡ ତଳକୁ କରିବ ।

ସେଇ ପ୍ରଥମ ଦିନ ରାତିରେ ରାଣୀ ନିଦରେ ଚର୍ଚରେଇ ଉଠିଲା । ଯାହା ସେ ପୂର୍ବରୁ କେବେ କରିଥିଲା ବୋଲି ମନେ ପଡ଼ୁନାହିଁ । ଲୀନା କହିଲା ଯେ ଖରାପ ସ୍ୱପ୍ନ ଦେଖିଛି, ଜେଜେଙ୍କୁ ଦେଖି ଡରିଯାଇଛି । କିନ୍ତୁ ଜଗନ୍ନାଥ ବିଶ୍ୱାସ କରି ପାରିଲା ନାହିଁ । ହେବା ଉଚିତ ନୁହେଁ ।

ଯାହାହେଉ ଗତକାଲି ବିଶିଷ୍ଟ ବଜନର ସ୍ୱରରେ କିଛି ଘଟି ନାହିଁ । ଅପରନ୍ତୁ ରାଣୀ ବଦନରେ ମୁରୁକି ମୁରୁକି ହସିଛି । ବହୁବାର । ଏଣେ ତା'ର ବଡ଼ଜେଜେ ମଧ । ଯୋଗାଯୋଗ ନା ଯୋଗସୂଜ ?

ପ୍ରଥମ କଥା ହେଲ, ବଡ଼ଜେଜେ କେମିତକା ଭୂତ । ତାଙ୍କର ହାଡ଼ଚମ ଏକାଠି ହୋଇଗଲଣି । ତେଣୁ ତାଙ୍କ ଗାଡ଼ୁଆ ଆଖି, ଉଖ ନାକ, ପାକୁଆ ପାଟି ବଶିଷ୍ଟ ଲମ୍ବା ମୁହଁ ଅବଶ୍ୟ କଦାକାର ଦେଖାଯାଉଛି । ଖପୁର ହାଡ଼ର ମୁଣ୍ଡ ପର ଯାହା ବସିଥାଏ ନଡ଼ବଡ଼ଆ କଙ୍କାଳ ଉପରେ, ଓ ପାତଳା ଧଳା ଚଦରଟାଏ ଘଟାଟୋପ ପର ଦେହରେ ଗଳେଇ ଦେଇ ବାହାର ଆସେ କେଉଁ ଆଲମାରି ଭିତରୁ, କ ଦେଖାଦଏ ଶିତ୍ ମୁଣ୍ଡରେ । କନ୍ତୁ ରାଣୀ କ'ଣ ତା'ର କେତେ ଛବ ଦେଖି ନଥିବ ତା' ଗପ ବହମାନଙ୍କରେ, ଯେ ଆଜି ସତସତକା ସେମିତ ଗୋଟାଏ ଲୋକକୁ ଦେଖି ଡରଯିବ ? ହଁ, ଡରବା କଥା ଯଦ ସେ କେବଲ କଦାକାର ନୁହନ୍ତି, ବୀଭତ୍ସ ମଧ । ଧର ତାଙ୍କ ଓଠରୁ ଫାଲେ ଓଲଟି ଯାଇଛି, ଆଖିତଲ ଫୁଲିଛି ଝିଙ୍କ ପର, ତୋଳା ଦାଂତା ଖାଲି ପାଣିଚଆ ନୁହେଁ ନାଲଚଆ, ସେ ହସି ପାରୁ ନାହାନ୍ତି, ଯତ୍ସାମାନ୍ୟ ହସିବାକୁ ଚେଷ୍ଟା କଲେ କୁନ୍ଥେଇଲ ପର ଦଶୁଛନ୍ତି, କଥା କହପାରୁ ନାହାନ୍ତି, କହଲାରୁ ହାଉ ହାଉ ହେଲ ପର ଶୁଭୁଛି, ଇତ୍ୟାଦ । କନ୍ତୁ ନନ ମହାନ୍ତ ଏତେ ଦୂରକୁ ଗଲେଣି କ ? କାହିଁ, ନାହିଁ ତ ! ହୁଏତ ଆଉ ପାଞ୍ଚସାତ ବର୍ଷ ବଞ୍ଚିଲେ ସେମିତ ଦେଖାଯିବେ, ସେକଥା ଭିନ୍ନ । ବର୍ତ୍ତମାନ ସେ ଅବଶ୍ୟ ହସନ୍ତି ଏବଂ ହସ ହସିଲ ପର ଦେଖାଯାଏ । କଥା ମଧ କୁହନ୍ତି, ଯଦଓ କାନକୁ କିଛି ଶୁଭୁ ନଥିବାରୁ (ହୁଏତ ଅତ ସାମାନ୍ୟରେ ଶୁଭେ) ଅଯଥାରେ 'ଏଁ ?' 'ଏଁ' ? ବୋଲ ପାଟି କରନ୍ତି । ପୁଣି ଯାହା କହବାକୁ ଚାହାନ୍ତି ତା'କୁ ଲଗିପାଗି ଦୋହରେଇ ହୁଅନ୍ତି ଏବଂ ସେଇ ଦରଖଣ୍ଡିଆ ବାକ୍ୟଗୁଡ଼ାକ ଚଡ଼ାଚଡ଼ ହୋଇ ହଜ ଯାଅନ୍ତି କୁଆଡ଼େ । ଏଇ ଚେହେରାର ବଡ଼ଜେଜେ ସ୍ୱାଗତର ହସ ହସିଥଲେ ରାଣୀ ପାଇଁ, ତାକୁ ଦନଥର ଇଂରେଜୀ 'ହେଲୋ'ର ସମ୍ଭାଷଣ କରଥଲେ ଓ ରାଣୀର ମନ୍ତବ୍ୟକୁ ଶୁଣି ନପାର ବୁଝି ନପାର ଦେଖିଥଲେ ତା' କୁନ୍ଥୁମୁନ୍ଥଆ ଓଠ, କଭ ଓ ଆଖିର ତରଙ୍ଗାୟିତ ଚଞ୍ଚଳ ପ୍ରକ୍ରିୟା । ଯାହାକୁ ଦେଖି ଅଳ୍ପବହୁତେ ଉତ୍ତେଜତ ହୋଇ ଉଠିଥଲେ ବୋଲ ମନେ ହେଉଛି । କାହିଁକନା ତାଙ୍କ ଓଠ କମ୍ପି ଉଠିଲ, ଯେତେ ଅନେକଗୁଡ଼ାଏ କଥା କହ ପକେଇବେ ! ସେ ଆରାମ ଚଉକରୁ ଉଠି ବସିବା ପାଇଁ ବ୍ୟସ୍ତ ହୋଇ ପଡ଼ିଲେ ଏବଂ ତାଙ୍କ ଶିରାଳ ହାତ ବଢ଼େଇଦେଲେ ରାଣୀକୁ ଧରବା ପାଇଁ । ରାଣୀ ଅବଶ୍ୟ ଧରିଛୁଆଁ ଦେଲ ନାହିଁ । ତେବେ ସେ ଦୁହିଙ୍କର ଏଇ ପହିଲି ମିଳନର ଦୃଶ୍ୟରୁ କ'ଣ ମନେ ହେଉଛି ଯେ, ଜଣେ ଡରେଇଥିବ ଏବଂ ଆର ଜଣକ ଡରଥିବ ?

ରାଣୀ କଥା ଗୁଡ଼ାଏ । କାରଣ ତା'ର କଥାଁଳ ଲୁଚୁପୁଚୁଆ ମନର ଗମ୍ଭୀରକୁ ଚପିବା ଅନ୍ୟାୟ, ସେଥିରୁ କଛି ମିଳୁ ବା ନମିଳୁ । ବର୍ତ୍ତମାନ ପ୍ରଶ୍ନ ହେଉଛି ଯେ, ବୁଢ଼ାଙ୍କ ହୃଦୟରୁ କ'ଣ କିଛି ଖିଅ ବାହାର କରିହେବ, ଯାହା ରାଣୀପାଇଁ ଲମ୍ବିଛି ବୋଲି ଜଣାପଡ଼ିବ ?

ହଁ, ରାଣୀ ଥିବ ତାଙ୍କ ହୃଦରେ, ତାଙ୍କ ଖଣ୍ଡିଖଣ୍ଡିଆ ଛବିଳ ସ୍ୱପ୍ନରେ । କିନ୍ତୁ ତାଙ୍କ ସୁଖବୋଧ ଖାଲି ତାକୁଇ ନେଇ ଏବଂ ତା'ର ପାଇଁ ଗଢ଼ ଉଠିଥିଲା ବୋଲି କହିଲେ ନିଶ୍ଚୟ ଭୁଲ ହେବ । ଯେହେତୁ ତାଙ୍କ ସୁଖର ମୂଳପିଣ୍ଡ ଥିଲା ଗୋଟିଏ ନବଜାଗ୍ରତ ଓ ନଗ୍ରେଡ଼ବନ୍ଧା ଧାରଣା—ସେମାନେ ଆସିଛନ୍ତି । ମୋ ନାତି ଓ ତା' ପିଲାମାନେ । ଏବଂ ଏଥର ରହିବେ ଏଠି । ଆସିଛନ୍ତି ସତକଥା, କିନ୍ତୁ ଏଠି ରହିବେ ବୋଲି କିଏ କହିଲା ତାଙ୍କୁ ? କେହି କହି ନାହାନ୍ତି । ହେଲେ ସେ ଧରି ନେଇଛନ୍ତି । ମନେ ପଡ଼ୁଛି ଏଇ ନାତିଟା ମୋତେ କହିଥିଲା ଆଗଥର (ମୋର ଶ୍ରବଣଶକ୍ତି ଭଲ ଥିଲା ସେତେବେଳେ) ଯେ, ସେ ଦିନେ ପୁରାପୁରି ଫେରି ଆସିବ । ତା'ଛଡ଼ା କଗୁ ପିଲାଟା ପାଗଳା ପିନା, କବୁ'ଧିଆ ନୁହେଁ । ଏଠି ରହିବ ନାହିଁ, ତା' ନିଜ ଘରେ ରହିବ ନାହିଁ, ଆଉ କ'ଣ ସବୁଦିନେ ପଡ଼ିଥିବ କୋଉ ଦୂର ଅପନ୍ତରାରେ ? ବିଶେଷତଃ ତା' ବାପ ନାହିଁ ଯେତେବେଳେ, ଏଇ ସମ୍ପତ୍ତିକୁ ସମ୍ଭାଳିବ କିଏ ? ଆଉ ଏଠି ତା' ରୋଗିଣା ମାଆର ଦେଖାଶୁଣା କରିବେ ଯେତେକ ବାହାର ଲୋକ, ବନ୍ଧୁବାନ୍ଧବ, ସାହିମାଇପେ—ନେଡ଼ିବୋଉ, ଶୁକୁଟାମାଆ, ଗଣ୍ଡିଆ ଗଉଡ଼ର ବୋହୂ, ସୁନ୍ଦରିଆଟିଏ, କ'ଣ ତା' ନାଆଁ ତ ? ତା' ଦାଦାମାନଙ୍କ କଥା ଗୁଡ଼, ଯେଉଁମାନେ ଖାଲି ଆସନ୍ତି, ଯାଆନ୍ତି, କହନ୍ତି ଯେ, ସେମାନେ ଆଉ ତାଙ୍କ ପିଲାମାନେ ଯେଉଁ ଚାକିରି କରିଛନ୍ତି, ତାକୁ ଛାଡ଼ିଛୁଡ଼ି ଦେଇ ଘରେ ବସିହେବ ନାହିଁ । କିନ୍ତୁ ଇଏ କୋଉ ଚାକିରି କରିଛି ? ସେ ତା'ର ଯାହା ଇଚ୍ଛା କରିବ, ତା'କୁ କିଏ ମନା କରିବ ? ପାଗଳାଟାଏ ! କେତେବେଳେ ଥିଏଟର୍ କରିବ, କେତେବେଳେ ପଲିଟିକ୍ସ୍ କରିବ, କେତେବେଳେ କୁହେ ମୁଁ ଲୁହାଛଡ଼ ବିକୁଛି, ପୁଣି କେତେବେଳେ କୁହେ ମୁଁ କୁଲୁଡ଼ାକୁଆ ବିକୁଛି (ବୁଢ଼ାଙ୍କ ଓଠର ହସ ପ୍ରସାରିତ ହୁଏ)···ଏଇକ୍ଷଣି କ'ଣ ବିକୁଛି ? ବତକ କୁଆ ? ···ତା'ଛଡ଼ା ଦେଖୁନା, ସେମାନେ ଆସିଲାରୁ କେମିତି ମେଳା ଲାଗିଛି ଏଠି ? ମୁହଁ କେଁ ଗୁଡ଼ ନାହିଁ । ହେବ ନାହିଁ କେମିତି ? ବୁନ୍ଦାଏ ମହୁକୁ ଭେଲା ଭେଲା ପିମ୍ପୁଡ଼ି । ମୋ ପୁଅବୋହୂ, ନାତିନାତୁଣୀ, ଅଣନାତି, ଅଣନାତୁଣୀ (ସବୁ ମିଶି ବସ୍ତାଳିଶ ନା ପଇଁଚାଳିଶ ?) ସମସ୍ତେ ବୁନ୍ଦାଏ ବୁନ୍ଦାଏ ମହୁ, ମହୁ ନୁହେଁ ଅମୃତ···

ଏହି ସମୟରେ କେବଳ ତାଙ୍କର ହସ ସୁଦୃଶ୍ୟ ହୁଏ ନାହିଁ, ତାଙ୍କର ଖାଲୁଆ ମୁହଁ ଉଦ୍‌ଭାସିତ ହୋଇ ଉଠୁଛି ବୋଲି ମନେହୁଏ । କାରଣ ତାଙ୍କ

ସୁଖକଳ୍ପନାର ସାମ୍ନାକୁ ଆମେ ସୁନ୍ଦର ବନ୍ଦୁଟିଏ…ଚେପ୍ଟା ନାକ, ଦୁ'ପାଟି ଟିକିଟିକି ଦାନ୍ତ, ଭଙ୍ଗା ଦାନ୍ତଜନିତ ଗୋଟିଏ ଶୂନ୍ୟସ୍ଥାନ, ଖିଲ୍ ଖିଲ୍ ହସ, ଘଞ୍ଚ ଭ୍ରୂତଳେ କଳା ବଡ଼ ବଡ଼ ଆଖି, ଚୋକ୍ଷା ଖାଲ୍ ଉଡୁରୁଚ୍ଛୁ, କୁନ୍ଦୁଚ୍ଛୁ ପଡ଼ । ଖାଲି ସେଇ ଜଣକ ଥିଲେ ଆମ ଘରଦୁଆର, ବାଗଅଗଣା ପୂରିଉଠିବ ! ଆମ ପଦ୍ମଲ ଦେଖାରେ ସେ କଅଣ କହିଲା ତ ମୋତେ…

ତା'ହେଲେ କ'ଣ ତାଙ୍କ ସ୍ୱପ୍ନଦରେ ସେଇ ଜଣକ, ତା' ନାଆଁ ରାଣୀ, ବୟସ ଛଅ ପାଖାପାଖି, ଉଙ୍କି ହେଉଥିଲା ତାଙ୍କ ସ୍ୱପ୍ନରେ, ଭାବୀ ସୁଖବିଳାସର ସନ୍ତକ ପରି ? ବର୍ଗଭଗ୍ନଦାମ୍ପିକା ଦେବୀଟିଏ ପରି ? ଏବଂ ସେଇଥିପାଇଁ ବୁଢ଼ା ଏମିତି ହସୁଥିଲେ ତାଙ୍କ ନିଦରେ ?

ରାତିରେ ଶୋଇଥିଲା ବେଳେ ସିନା ନନ୍ଦବାବୁଙ୍କ ହସକୁ କେହି ଦେଖିପାରୁ ନଥିଲେ, ତା' ପରଦିନ ଆରାମ ଚଉକିରେ ପଡ଼ି (ସ୍ୱଭାବବଶତଃ) ଢୁଳାଇଲା ବେଳେ ତାଙ୍କ ଦିବାସ୍ୱପ୍ନର ହସ ସୁସ୍ପଷ୍ଟ ହୋଇ ଦିଶିଯାଉଥିଲା ଏବଂ ନେଡିବୋଉ, ଶୁକ୍ଲୁଟାମାଆ ଓଗେର ତା'ଉପରେ ଉଦାର ଓ ସସ୍ନେହ ପରିହାସରୁ ଛୁଟିକାଏ ଛାଡ଼ିଦେବାକୁ ଭୁଲୁ ନଥିଲେ । ଯଥା : ଦେଖ, ଦେଖମ, ବୁଢ଼ା କେମିତି ଢୁଳେଇ ଢୁଳେଇ ହସୁଛନ୍ତି ? କ'ଣ ବୁଢ଼ୀ ମନେ ପଡ଼ୁଛୁ ? ନା ଟିକି ରାଣୀଟିଏ ଆସିଗଲାଣି, ସେଇଥିଲାଗି ?

କ୍ରମଶଃ ଉତ୍ତମରୂପେ ଜଣାପଡ଼ିଲା ଯେ, ରାଣୀ ତା'ର ବଡ଼ଜେଜେଙ୍କୁ ଭୂତ ବୋଲି କହିଲେ କହିଥିବ, କିନ୍ତୁ ତାଙ୍କୁ ଡରିଯାଇଥିବାର ପ୍ରଶ୍ନ ଉଠୁ ନାହିଁ । କାହିଁକିନା ଦେଖାଗଲା ଯେ :

—ସେ ତାଙ୍କ ଆରାମଚଉକିର ପାଖରେ ପଡ଼ିଥିବା ବେତମୋଡ଼ା ଉପରେ ବସୁଛି, ଉଠୁଛି, ତା' ସାଙ୍ଗରେ ଖେଳୁଛି ଓ କୁରୁକୁରୁ ହୋଇ ହସୁଛି । ଏଣେ ବୁଢ଼ା ଗଡ଼ରଗଡ଼ର ହୋଇ କ'ଣ କହି ଯାଉଛନ୍ତି, ସତେ ତା'କୁ ଶୁଣେଇଲା ପରି ।

—ରାଣୀ କୋଉଠୁ ଗୋଟାଏ ପୋଇଗୁଲଆ ରଙ୍ଗର ଅନାବନା ଫୁଲ, ହୁଡା ବାଡ଼ର ଫୁଲ କି କଅଣ, ଧରେଇଦେଲା ବୁଢ଼ାଙ୍କ ହାତରେ । ଆଉ ସେ ତାକୁ ଥର ଥର ପାଞ୍ଚ ଆଙ୍ଗୁଳିରେ ମୁଠେଇ ଧରି ତାଙ୍କ ଧୋକଡ଼ା ଜାମାର ପକେଟ୍‌ରେ ପୂରେଇବାକୁ ଚେଷ୍ଟା କଲେ, ଯେମିତିକି ପାଖୁଡ଼ା କେଇଟା ବାହାରକୁ ଦିଶିବ ।

—ନନ୍ଦବାବୁ ରାଣୀକୁ ତାଙ୍କ ଥାଳିରୁ ଫାଳେ ମାଛଚପ୍ ଖୋଇବା ପାଇଁ ଅସଫଳ ହେଲେ ସତ, କିନ୍ତୁ ରାଣୀ ଓଲଟି ନିଜ ଥାଳିରୁ ଖାଦ୍ୟବିଶେଷ ଆଣି ଥୋଇଦେଲା ତାଙ୍କ ପାଖରେ । ସତେକି ଇଏ କି ଗୋଟାଏ କଉତୁକିଆ ଖେଳ ।

—ବୁଢ଼ା ଗାଧୁଆଘର କିମ୍ବା ଶୋଇବା ଘରକୁ ଯିବା ପାଇଁ ଆରାମ-ଚଉକିରୁ ଉଠି ଠିଆ ହେଲା ବେଳକୁ ରାଣୀ ଆସି ପହଞ୍ଚଯାଏ ସେଠି, ଯଦି ତା' ଆଖିରେ ପଡ଼େ । ଏବଂ ବୁଢ଼ା ହସି ହସି ତା'ର ଦୁଃସାହସୀ ସାହାଯ୍ୟ ସ୍ୱୀକାର କରନ୍ତି, ଅନ୍ତତଃ ସେହି ପ୍ରକାର ଭାବ ଦେଖାନ୍ତି, ଗୃହକରଣୋକା ଦାଳେଇ ହାଜର ହେବାଯାଏଁ ।

ଜଗନ୍ନାଥ ତଥା ଲୀନା କ'ଣ ଏହିସବୁ ଦୃଶ୍ୟ ଦେଖୁ ନଥିବେ ? ଅବଶ୍ୟ ଦେଖୁଥିଲେ । ଏବଂ ତଦ୍ଦ୍ୱାରା ଜଗନ୍ନାଥର ବିଶ୍ୱାସ ହେଲା ଯେ, ଲୀନା ବୁଝୁଥିବ ଯେ, ତା' ଦୁଃସ୍ୱପ୍ନର ଥିଓରି ଭୁଶୁଡ଼ି ଯାଇଛି ! ଏଠି ନ ରହିବାର ସର୍ବପ୍ରଧାନ ବାହାନା ମାଡ଼ ଖାଇଯାଇଛି । ହେଲେ ଲୀନା ସାମ୍ନାରେ ସେ ତା'ର ବିଜୟୋଲ୍ଲାସକୁ ଚପେଇ ରଖିଥିଲା । ନିଜକୁ କହୁଥିଲା ଯେ ମୁଁ ନିର୍ଦ୍ଦୟାତ୍ମକ, ବିଧାତ୍ମକ ସ୍ୱାମୀ ହୋଇ-ପାରେ, କିନ୍ତୁ ଏତେ ନିଷ୍ଠୁର ନୁହେଁ ।

ନିଷ୍ଠୁର ନୁହେଁ । ମୁଁ ତା ଉପରେ ମୋର ନିର୍ଦ୍ଦିଷ୍ଟକୁ ଲଦି ଦେବାକୁ ଚାହେଁ ନାହିଁ । କିନ୍ତୁ ସେ ଶିକ୍ଷିତା, ବୁଦ୍ଧିମତୀ । ସେ କାହିଁକି ବୁଝିବ ନାହିଁ ଯେ—ଏଠି ତା'ର ବ୍ୟକ୍ତିତ୍ୱରେ ଆଞ୍ଚ ଲାଗିବ କି ସହରିଆ ସୁଖ ରହିବ ନାହିଁ (ଅବଶ୍ୟ ଟିକିଏ କମିଯିବ, ଏବଂ କମିଗଲେ ଭଲ), ଏଭଳି ଆଶଙ୍କାର କାରଣ ନାହିଁ ? ବରଂ ଏଠି ସେ ରାଣୀ ମହମାଛି ପରି ଅଏସ୍ କରିବ । ମୋ ବୋଉ ତ ରୋଗିଣା, ଦୁର୍ବଳିଆ, ମାଈ ନୁହେଁ କି ଗାଈ ନୁହେଁ । ବାକି ଯେତେକ କାରବାର ହେଉଥାଆନ୍ତି ଦିନଯାକ, ଯାଲୁବାଲୁ ହୁଅନ୍ତି, ସମସ୍ତେ ତ ବାହାର ଲୋକ—ସାହିର କି କୁଟୁମ୍ବର । ତାଙ୍କୁ ନେଇ ତା'ର ମୁଣ୍ଡ ବିଥାଉଛି କାହିଁକି ? ଛିନଯୋଡ଼ା ଦାଦାଖୁଡ଼ୀ ଓ ତାଙ୍କ ପରି-ବାରଙ୍କ କଥା ଛାଡ଼ିଦିଅ, ସେମାନେ ଦି'ଦିନିଆ । ଆଉ ରହିଲେ କେଜେ । ଅକର୍ତ୍ତବ୍ୟ । ହେଲେ ଏକ ବିମ୍ଭ୍ରମକର ଅନୁଷ୍ଠାନ । ଖାନ୍ଦାନର ବିରାଟ ଖୁଣ୍ଟ । ଗୋଟାଏ ଖୁଣ୍ଟ ଦରକାର ନାହିଁ ଆମର ? ବିଶେଷତଃ ତା'ର ? ଉହ୍ୟ ରହିଗଲା ଯେ, ଲୀନା ପିଲାଦିନୁଁ ବାପମାଆଙ୍କୁ ହରେଇଛି, ପର ଘରେ ବଢ଼ିଛି ।

ହଁ, ଆମର ଏଇ ପ୍ରସିଦ୍ଧ ଗନ୍ଧ । ଲୀନୁ, ତୁମେ ତାକୁ ହସି ଉଡ଼େଇ ଦେଇ ପାରୁ ନାହଁ ? ଦେହସୁହା କରିପାରୁ ନାହଁ ? କିଓ ମନେ ନାହିଁ, ପହିଲେ ପହିଲେ ମୋ ଦେହ କେମିତି ଗନ୍ଧଉଥିଲା ତୁମକୁ, କାହିଁକିନା ତେଲ ମାଖି ଗାଧୋଇବା ମୋ ପିଲାଦିନର ଅଭ୍ୟାସ । ହେଲେ ସେଇ ଦେହ ତୁମର ବିଶିଷ୍ଟ, ଅନ୍ତରଙ୍ଗ, ହୁଏତ ଉତ୍ତେଜକ ହେଲା କି ନାହିଁ ?

ମୋଟ ଉପରେ ତୁମେ ଏମିତି ଗୁମ୍‌ସୁମ୍ ହୋଇ ରହୁଛ କାହିଁକି କହିଲ ? କୁଆଡ଼େ ଗଲା ତୁମର ଘଡ଼ିକୁ ଘଡ଼ି ବଦଳୁଥିବା ରଙ୍ଗ, ଭାବତରଙ୍ଗ ? ଶୁଣ, ମୁଁ ଏବେଠୁ

ଏଠି ରହିଯିବ, ତା'ନୁହେଁ । ତୁମେ ଜାଣିଛ ଯେ, ସେଠି କେଇଟା କାମ ଛୁଣ୍ଡେଇ ଆସିବାକୁ ପଡ଼ିବ । ତା'ଛଡ଼ା ଯେତେକ ଆସବାବପତ୍ର ଅଛି, ତାକୁ ବିକି ଖର୍ଚ୍ଚ··· । ଉଁଃ ! ଲୀନୁ, ତୁମେ ଟିକିଏ ହସିବନି ମୋ ଆଡ଼କୁ ଚାହିଁ ? ତା'ହେଲେ ଯିନା ମୁଁ ତୁମକୁ ପ୍ରାଞ୍ଜଳଭାବରେ ବୁଝେଇ ଦେଇପାରିବ ଯେ, ତୁମେ ଏଠି ସୁଖରେ ରହିବ, ଏଥିରେ ସନ୍ଦେହ ନାହିଁ !

ହେଲେ ଦିନ ପରେ ଦିନ ବିତିଗଲା । ଏବଂ ଲୀନାର ବିଷାଦ ଉତ୍ତରୋତ୍ତର ଘନ ଓ ପ୍ରତିଷ୍ଠିତ ହେଲା । କ୍ରମଶଃ ଜଗନ୍ନାଥର ଆଖି ଗୋଟାଏ ଭୟ ହେଲା ଯେ, ଲୀନା ଧୀରେ ଧୀରେ ଦୂରେଇ ଯାଉଛି, ଭରା ପାର୍କର ଏକୁଟିଆ କୋଣକୁ । ମନେ-ହେଉଛି ଯେ, ଉପରକୁ ଯେତେ ହେଲମେଲ ହେଲେ ମଧ ସେ ତା'ର ବସି ରହିବ ସେଠି । ଶୁଖିଲା ହୋଇ, ସ୍ୱାଧୀନ ହୋଇ । କେହି ତାକୁ ଉଠେଇ ପାରିବେ ନାହିଁ ସେଠୁଁ ।

ଏଇ ଭୟଟା ଚାହିଁଲା ତା'ର ଅଗ୍ରଜକୁ । ମହାନଗରୀର ଧାଁଧପଡ଼ରେ ହାଳିଆ ହୋଇଯିବାର, ସେମାନଙ୍କ ପଛରେ ପଡ଼ିଯିବାର ଭୟ ଆଡ଼କୁ । ଯାହାର ବଳ ପାଇ ଏଇ ସ୍ୱଦେଶର ଘର-ସହର ଡାକୁଛି ଜଗନ୍ନାଥକୁ, କହୁଛି ଆ'ରେ ପୁଅ ଫେରିଆ । ଦେଖେ, ଏଠି କେମିତି ସଫଳତା ତାସ ପାଳି ପକେଇଛି ବିଫଳତା ସାଙ୍ଗରେ, ଗ୍ରୀଷ୍ମାକଢ଼ରେ । ଆଉ ବୁଲକୁକୁରଟା ତାଙ୍କ ପାଖରେ ଥାଇ ଖୁସୁଖୁସୁ ହେଉଛି, ଧୂଳି ଘୁଞ୍ଚୁଛି ସମସ୍ତଙ୍କ ଉପରେ, ଶାନ୍ତିବାରି ଛିଞ୍ଚିଲା ପରି । ଏଠିକା ଧୂଳିମାଟିର ଗୋଟିଏ ବୋଲି ରଙ୍ଗ, ଏଠିକା ହାଉଆରେ ଗୋଟିଏ ବୋଲି ଗନ୍ଧ—ଜୀବନକୁ ନେଇ ଜୀଇଁବାର । ଯେମିତି ପାରୁଛି ସେମିତି । ଅତଏବ ମୁଁ ଯାହା, ତୁ ସେଇଆ, ସିଏ ସେଇଆ, କୁକୁର ବି ସେଇଆ···

ହେଲେ ଲୀନା ଜନିତ ଏଇ ନୂଆ ଭୟଟା ଉତ୍ପତ୍ତି ଚାହିଁଲା ପୁରୁଣାକୁ । ଜଗନ୍ନାଥ ଏମାନଙ୍କର ବାଦବୁଦ୍ଧିଆକୁ କେତେଦୂର ଠେଙ୍ଗେଇ ପାରୁଥିଲା କହିହେବ ନାହିଁ । ତେବେ ହଠାତ୍ ନଯାଉଣୁ ତା'ର ନିର୍ଣ୍ଣୟ ରୁଗ୍ଣ ରୁଗ୍ଣ ହୋଇ ବାନ୍ଧିବାକୁ ଆରମ୍ଭ କଲା···ଲୀନାକୁ ନେଇ କ'ଣ କରିବ ? ଅନ୍ୟମାନଙ୍କ ସାଙ୍ଗରେ ଲେସି ହୋଇଯିବ ସିନା, ମୋର ଏଇ ଏକାନ୍ତ ଅନ୍ୟଟିକୁ ଛୁଇଁବ କେମିତି, ପାଇବ କେମିତି ?

···ସପ୍ତମ ଦିନର ରାତି । ଝରକାଗୁଡ଼ାକ ଅବଶ୍ୟ ଖୋଲା ଥିଲା । କିନ୍ତୁ ଜଗନ୍ନାଥ ଆଲୁଅ ଲିଭେଇବା ପାଇଁ ତରତର ହେଲା ନାହିଁ । ତା'ର ଇଚ୍ଛା ହେଲା ଯେ, ସେ ଆଜି ଯେମିତି ହେଲେ ଲୀନାକୁ କହିବ, ସବୁ କଥା ବୁଝେଇ କରି କହିବ, ଏବଂ ସେଥିପାଇଁ ତା'ର ମୁହଁକୁ ଦେଖିବା ଦରକାର । ଯେ ବିଷାଦର ଅବଗୁଣ୍ଠନ

କେମିତି ଖୋଲି ଖୋଲି ଯାଉଛି । ବୋଧହୁଏ ତାକୁ ଆହୁରି ଖୋଲି ଦେବାକୁ ପଡ଼ିବ ନିଜ ହାତରେ ।

ମୀନା ସାଙ୍ଗରେ ଶରୀର କଥାଭାଷା କରି ହେଲା ନାହିଁ ବିଶେଷ । କିନ୍ତୁ ଦୁହେଁ ପରସ୍ପରର ମୁହଁକୁ ଚାହୁଁଥିଲେ, ବାରମ୍ବାର ଚାହୁଁଥିଲେ, ଦୁଃଖାମଣାର ବାଟ ଖୋଜିଲା ପରି । ତେଣୁ ଜଗନ୍ନାଥ ଆଲୁଅ ଲିଭେଇଦେଲା, ଯେମିତିକି ତଥାକଥିତ ବ୍ୟକ୍ତିତ୍ୱର ଚେହେରା ଅନ୍ତରାୟ ହେବ ନାହିଁ, ସେଇ ପୁରୁଣା ଦେହର ବାଟ ଦେଇ ଯିବା ପାଇଁ । ଯୋଡ଼ିଠିକ ହେଲେ ।

ମିଳନ ପୂରା ହୋଇ ନଥିଲା । ହେଲେ ଝରକା ଭିତର ଦେଇ ଯେଉଁ ପବନ ବହିଆସୁଥିଲା, ସେଥିରେ ଦୁର୍ଗନ୍ଧ ଆଉ ନଥାଉ, ଯଥେଷ୍ଟ ଉନ୍ମାଦନା ଥିଲା । ସତେକି ଏଇ ହେଲା ଶେଷ ଲଢ଼େଇ, ଅନ୍ତିମ ଆଳାପ, ଉପାସନା, ଏହା ପରେ ଏପାଖ, ନ ହେଲେ ସେପାଖ•••

ଏଇ ସମୟରେ ଅନୁଭବର ସୃଷ୍ଟି ଓ ସ୍ଥାପନା ହଠାତ୍ ଦ୍ୱି'ଖଣ୍ଡ ହୋଇଗଲା । ରାଣୀ ଚିର୍‌ଚିରେଇ ଉଠିଲା । ସେଇଠୁ ପାଟି କରୁଥାଏ—"ନାଇଁ—ନାଇଁ—ନାଇଁ—"

ରାଣୀକୁ ସାନ୍ତ୍ୱନା କରି ଆଲୁଅ ଜଳେଇ ପୁଣି ଯେତେବେଳେ ସେମାନେ ଚାହିଁଲେ ପରସ୍ପରକୁ, ତାଙ୍କ ଚାହାଣିରେ ଗୋଟାଏ ପ୍ରଶ୍ନ ଥିଲା । ହୁଏତ ହାସ୍ୟାସ୍ପଦ, ସେଇଥିପାଇଁ ପଚାରି ହେଉ ନାହିଁ, ହେଲେ ତାକୁ ଅଗ୍ରାହ୍ୟ କରିହେଉ ନାହିଁ । ଏତେଦିନ ପରେ ରାଣୀ ଅଜି କାହିଁକି, ପୁଣି ଠିକ୍ ଏଇ ସମୟରେ, ଆମେ ଏକାଠି ହେବାବେଳେ ··।

ମୀନା ହିଁ ପ୍ରଥମେ ଉତ୍ତର ଯୋଗାଇଲା ସ୍ୱାମୀକୁ ଆଶ୍ୱାସନା ଦେଲା ପରି । ଅଳ୍ପ ବହୁତେ ବିଜୟର ହସ ମଧ୍ୟ ଖେଳୁଥିଲା ତା' ଓଠରେ । କହିଲା—"ବ୍ୟସ୍ତ ହୁଅ ନାହିଁ । ସେ ଆମକୁ ସହିପାରିଲା ନାହିଁ ତା' ନୁହେଁ । ଆମର କିଛି ଦୋଷ ନାହିଁ । ଦୋଷ ହେଉଛି ତୁମ ଏଠିକା ଜଳବାୟୁର, ଯେଉଁଥିରେ ମିଠା ଫଳ ପାଚିଯାଏ ପାଚିବା ଆଗରୁ । କେମାଦେଇ କାନ୍ଦଣାରେ ଶୋକ ନୁହେ ନାହିଁ, ଖାଲି କାନ୍ଦଣା । ଆଉ ପ୍ରେମମିଳନରୁ ପ୍ରେମ ଝଡ଼ିଯାଏ, ରହିଯାଏ କେବଳ ସେକ୍‌ସ, ଦାନ୍ତ୍ରିକତା ସେକ୍‌ସ । ସେଇ ରାଣୀକୁ ଡରେଇଥିବ, ହୁଏତ ଅଚେତାରେ ··"

ତା' ପରଦିନ ଜଗନ୍ନାଥ ଘୋଷଣା କଲା ଯେ, ସେ ଟିକେଟ କରି ଆଣିଛି । ଆସନ୍ତା ସୋମବାର ରାତିରେ ଟ୍ରେନ୍ ଧରିବ, ମୀନା ଓ ରାଣୀଙ୍କୁ ସାଙ୍ଗରେ ନେଇ ।

ତା'ର ମନେ ନଥିଲା ସେ ଆଗରୁ କେବେ ଜେଜେଙ୍କୁ କହିଥିଲା ଯେ, ସେ ଫେରଆସିବ । ହେଲେ ସେ ପୁଣି ଥରେ ସେଇ କଥାଟାକୁ ପାଟିକରି କହିଲା—"ମୁଁ ଫେରଆସିବି ଜେଜେ, ନିଶ୍ଚୟ ଫେରିଆସିବି, ବୁଝିଲ ?"

କହିବା ବାହୁଲ୍ୟ ଯେ, ଜେଜେ ତା'ର ପ୍ରତିଶ୍ରୁତିକୁ ଶୁଣିପାରି ନଥିଲେ । ଶୁଣିଥିଲେ ବି କେତେଦୂର ଆଶ୍ୱସ୍ତ ହୋଇଥାଆନ୍ତେ ଭଗବାନଙ୍କୁ ଜଣା । ହେଲେ ସେ ବୁଝିଲେ ଯେ, ଏମାନେ ଯାଉଛନ୍ତି । ଏବଂ ବଦା ହେଲାବେଳେ ଶରୀର ଦେହକୁ ଆଉଁସିବାକୁ ଯାଇ ସେ କେବଳ ଗୋଟାଏ ପଦକୁ କହି ଚାଲିଲେ, ସତେକି ସେ ତାଙ୍କ ଜୀବତ ନିଃଶ୍ୱାସର ଶବ୍ଦ—ହୁଉ ହୁଉ ହୁଉ···ହୁଉ···ହୁଉ··· ହୁଉ···

ଫାଟକ ପାର ନହେଉଣୁ ଗ୍ରେଟା ହସିଲା ଖିଲିଖିଲି ହୋଇ ଓ କହିଲା ତା' ଡାଡ୍‌ଡୀ-ମମୀଙ୍କୁ—"ଏ ରଏଲ ଫନ୍ନି ଘୋଷ୍ଟ !" ଅର୍ଥାତ୍ ବେଶ୍ ମଜାର ଭୂତଟିଏ ।

# ଦୁଃସ୍ୱପ୍ନ, ଦିବାସ୍ୱପ୍ନ

ମୋତେ ଯଦି ପଚରାଯାଏ ଯେ ଲୀନା ଓ ଜଗନ୍ନାଥ, ଏଇ ଦୁହିଁଙ୍କ 'ଯୁଦ୍ଧ'ରେ କିଏ ପ୍ରକୃତରେ ଜିତିଲା, ଏବଂ ତାହା କେତେଦୂର ମୋ ମନକୁ ପାଇଲା, ମୁଁ ଆପଣଙ୍କୁ କହିବି ଯେ ଦୟାକରି ମୋତେ କ୍ଷମା କରନ୍ତୁ । କାରଣ ମୁଁ ଜଗନ୍ନାଥ ତରଫରୁ ଓକିଲାତି କରିବା ସ୍ୱାଭାବିକ । ଯେହେତୁ ଗୋଟିଏ କ୍ଷୁଦ୍ର ସହରର ସଂକୀର୍ଣ୍ଣ ଗଳି ହେଉଛି ମୋ ପୈତୃକ ଘରର ପରିବେଶ, ଯେଉଁଠି ମୁଁ ବଢ଼ିଛି ପିଲାଟି ଦିନୁଁ । ଏବଂ ଆଜି, ଅନେକ ଦେଶବିଦେଶ ଓ ମହାନଗରୀରେ ମୋର କର୍ମଜୀବନ ବିତେଇ ଆସିଲା ପରେ, ମୁଁ ଏଇଠି ଆସି ରହିଛି ଓ ମୋର ସାହିତ୍ୟ ଲେଖୁଛି । ଏବଂ ମୋର ଇଚ୍ଛା ମୁଁ ଏଇଠି ମୋର ଶେଷ ନିଃଶ୍ୱାସ ତ୍ୟାଗ କରିବି, ଭଗବାନଙ୍କ କରୁଣା ଯାହା ଥାଉ ପଛେ ।

କିନ୍ତୁ ପରିପାର୍ଶ୍ୱର ଅଳିଆ ଆବର୍ଜନା, ଗନ୍ଧ, ଓ ସାଲୁବାଲୁକୁ ନେଇ ଲୀନା ଯେମିତି ଚିଡ଼୍ଚିଡ଼ି ଉଠୁଥିଲା, ତା'କୁ ମୁଁ କଦାପି ଅକାରଣ ବୋଲି କହିବି ନାହିଁ । ସେଥିରେ ଅଛି ତା' ନିଜ ଅତୀତର ଦୁଃସ୍ୱପ୍ନ । କିନ୍ତୁ ତା'କୁ ଛାଡ଼ିଦେଲେ ମଧ୍ୟ ତା' କଥାର ଯଥାର୍ଥତା ଅଛି, ଯେତେବେଳେ ସେ କହୁଛି—"କିନ୍ତୁ ମୁଁ ଟିକିଏ ଅଲଗା ହୋଇ ଶୃଙ୍ଖଳରେ ରହିବାକୁ ଚାହେଁ । ଏତିକି ବୁଝିବା କ'ଣ ଏତେ କଷ୍ଟକର ?" ନା ଲୀନା, ଆଦୌ କଷ୍ଟକର ନୁହେଁ, ମୋତେ ବିଶ୍ୱାସ କର, ମୁଁ ଜଗନ୍ନାଥ ତରଫରୁ ଯେତେ ଓକିଲାତି କରେ ପଛେ ମୋ ନିଜ ଅତୀତର ସ୍ମୃତି ଓ ସେଥିର ସାଲୁବାଲୁ ପ୍ରତି ଅନ୍ତରଙ୍ଗତାର ମୋହରେ ପଡ଼ି ।

ତଥାପି ମୁଁ କିଛି କହିବାକୁ ଚାହେଁ କେବଳ ଜଣେ ଲେଖକ-ଦର୍ଶକ ହିସାବରେ, ମଧ୍ୟ ମୋର ବିଦ୍ୟାବୁଦ୍ଧିକୁ ନେଇ

ଏବଂ ମୋର ଆଶା ତାହା ସାପେକ୍ଷତା ଦୋଷରେ ଦୂଷିତ ହେବ ନାହିଁ । ବ୍ୟକ୍ତିବିଶେଷର ଅନୁଭୂତି ଯୋଗୁଁ ସେଥିର ବ୍ୟତିକ୍ରମ ହୋଇପାରେ, ସେକଥା ଭିନ୍ନ ।

ଶିଶୁ ଯେତେବେଳେ ଜନ୍ମ ହୁଏ ତା'ର 'କୁଆଁ' ଡାକ ଶୁଣି ତା' ବାପମାଆ ଓ ବୁଢ଼ାଆ ଯେତେ ଖୁସି ହୁଅନ୍ତୁ ନା କାହିଁକି, ମାନିବାକୁ ପଡ଼ିବ ଯେ ଇଏ ହେଉଛି ତା'ର ବିକଳ କାନ୍ଦଣା । ଯେ ମୋତେ କାହିଁକି ଓଟାରି ଆଣିଲ ମୋ ଅନ୍ଧାର ଉଷୁମ ନୀଡ଼ରୁ, ଯେଉଁଠି ମୁଁ ମହା ଆରାମରେ ଥିଲି । ବିଚ୍ଛିନ୍ନତା ବୋଧହିଁ ତା' ପହିଲି କାନ୍ଦଣାର ସ୍ୱର । ଅନୁଭବର ଏକ ଘୋର ବିପର୍ଯ୍ୟୟ, ଯାହାକୁ ମନସ୍ତାତ୍ତ୍ୱିକ ପରିଭାଷାରେ birth trauma ବୋଲି କୁହାଯାଏ । ତେଣୁ ପିଲାଦିନେ ସେ ପ୍ରଥମେ ଓ ସର୍ବୋପରି ତା' ମାଆକୁ ଜାବୁଡ଼ି ଧରେ, ଏବଂ ତା' ଉତ୍ତାରୁ ତା' ବାପା, ଭାଇଭଉଣୀ ଓ ଅନ୍ୟାନ୍ୟ ଆତ୍ମୀୟସ୍ୱଜନଙ୍କୁ, ଯେଉଁମାନେ ତା' ଅନ୍ତରଙ୍ଗ ପରିବେଶର ଅନ୍ତର୍ଭୁକ୍ତ ବୋଲି ତା'ର ମନେ ହୁଏ । ଯେମିତିକି ସେ ସେଇ ବିଚ୍ଛିନ୍ନତା ବୋଧରୁ ଉଦ୍ଧାର ପାଇବ । ନିଜକୁ ଅସହାୟ ବୋଲି ଭାବିବ ନାହିଁ । ତେଣୁ ପିଲାଦିନେ ଏଇ ଅନ୍ତରଙ୍ଗତା, ଏଇ ଛନ୍ଦାଛନ୍ଦି ଓ ସାଲୁବାଲୁ ହିଁ ତା'ର ରକ୍ଷାକବଚ ।

କିନ୍ତୁ ମାଆର ବାହୁବନ୍ଧନରୁ ମୁକ୍ତି ପାଇବାକୁ ମନ ହୁଏ, ମନ ନହେଲେ ମଧ୍ୟ ଦରକାର ପଡ଼େ, ବଡ଼ ହେଲାରୁ । ଯେତେବେଳେ ସେ ବୁଝେ ଯେ ତା'ର ଗୋଟାଏ ନିଜତ୍ୱ ଅଛି, ସ୍ୱତନ୍ତ୍ର ସତ୍ତା ଓ ସ୍ଥିତି ଅଛି ଏଇ ସଂସାରରେ, ଏବଂ ତା'କୁ କାହାର୍ କରିବାକୁ ହେଲେ ସେଇ ବନ୍ଧନ, ତଥା ସେଥିରୁ ସମ୍ପ୍ରସାରିତ ହୋଇଥିବା ପରିବାର ଓ ଜ୍ଞାତିକୁଟୁମ୍ବଙ୍କ ବନ୍ଧନରୁ ମୁକ୍ତ ହେବାକୁ ପଡ଼ିବ । ସ୍ୱାଧୀନ ହେବାକୁ ହେବ । ଏଇ ସ୍ୱାଧୀନତାବୋଧହିଁ ପିଲାକୁ ମଣିଷ କରେ, ମାନେ 'ମଣିଷ ପରି ମଣିଷ' ଯେମିତିକି ସେ ନିଜର କୌଣସି ପାଦଚିହ୍ନ ଛାଡ଼ିଦେଇ ପାରିବ ସଂସାରରେ । କିନ୍ତୁ ଏଇଠି ଗୋଟାଏ ଜିନିଷ ଭାବିବା କଥା, ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂସ୍କୃତିର ବିଭେଦକୁ ନେଇ । ବ୍ୟକ୍ତି ସ୍ୱାଧୀନତାର ଅନୁଭବ ଏବଂ ସେଥିର ତଥାକଥିତ ମର୍ଯ୍ୟାଦା ଏତେ

ଉଗ୍ର ହୋଇ ଉଠିଲାଣି ସେଠି ଯେ ମନେ ହୁଏ 'ଆଧୁନିକ ମଣିଷର ସ୍ୱାଧୀନତା ଯେତିକି ଅନିବାର୍ଯ୍ୟ ସେତିକି ଭୟାବହ', ଏଇ ସ୍ଥିତିବାଦୀ ଦର୍ଶନର ତଥ୍ୟ ଅକ୍ଷରେ ଅକ୍ଷରେ ପ୍ରମାଣିତ ହୋଇଯାଉଛି । ଅତି-ସ୍ୱାଧୀନ ମଣିଷକୁ ଘାରି ଡର ମାଡୁଛି, ତେଣୁ ସେ ଅନ୍ୟମାନଙ୍କୁ ଡରାଉଛି, ଏବଂ ସେହି କ୍ରମରେ କେତେ କ'ଣ ଅସାମାଜିକ, ବୀଭତ୍ସ ତଥା ଆତ୍ମଘାତୀ କାମ କରି ନଯାଉଛି ! ଏଣେ ଆମ ଦେଶମାନଙ୍କରେ ପିଲାଟା ବଡ଼ ହୋଇ ନାଆଁକୁ ସ୍ୱାଧୀନ ହେବାକୁ ଚାହିଁଲେ ମଧ୍ୟ, କାର୍ଯ୍ୟତଃ ନିଜକୁ ପରିବାର ଏବଂ ସୀମାବଦ୍ଧ (ତେଣୁ ଅନ୍ତରଙ୍ଗ) ସମାଜର ଗ୍ରାସରୁ ନିଜକୁ ଯଥାବିଧି ମୁକ୍ତ କରିନେଇ ପାରୁନାହିଁ । ଫଳରେ ବ୍ୟକ୍ତି-ଜୀବନର ପ୍ରତିଶ୍ରୁତି ଅଧାବାଟରେ ରହିଯାଉଛି, ସେ କେଉଁ ନିଜଗଢ଼ା ସାମ୍ରାଜ୍ୟର ରାଜା ହୋଇପାରୁ ନାହିଁ, ତେଣୁ ସାମାଜିକ ପ୍ରଗତି ବ୍ୟାହତ ହେଉଛି । ଅଥଚ, ଏବେ ଏହାହିଁ ଦୁଃଖର ବିଷୟ, ଯେ ସାଲୁବାଲୁ ସମଷ୍ଟିର ଅନ୍ତରଙ୍ଗତା ତା'କୁ ବଳ ଦେଉଛି ଜାତି ନାଆଁରେ, ଗୋଷ୍ଠୀ ନାଆଁରେ, ଧର୍ମ ନାଆଁରେ, ଏପରିକି 'ହାମ୍‌ହାଣ୍ଡି'ର ମର୍ଯ୍ୟାଦାର ଆଳରେ ଯେତେକ ଆତ୍ମଘାତୀ ବୀରତ୍ୱ ଦେଖାଇବା ପାଇଁ । ଏଇ ଦୁଇଟି ମଧ୍ୟରେ କଲ୍ୟାଣକର ମଧ୍ୟମ ପନ୍ଥା ନିଶ୍ଚୟ ରହିଛି. ଏବଂ ଆଶା କରାଯାଏ ଯେ ମଣିଷ ଜାତି ଯଥାକ୍ରମେ ତାକୁ ଆବୋରି ନେଇ ପାରିବ । କିନ୍ତୁ ଏହା ଅନସ୍ୱୀକାର୍ଯ୍ୟ ଯେ ମାଆ କୋଳରୁ ମୁକୁଳି ଆସିଲେ ମଧ୍ୟ ନାନାଦି ପରିସ୍ଥିତି ଏବଂ ନାନାଦି ସ୍ତରରେ ମଣିଷର ପୁଣି ଲୋଡ଼ା ହୁଏ ମାଆ କୋଳର ଉଷୁମ ଓ ଆଶ୍ୱାସନା, ଅର୍ଥାତ୍ ତା'ର ପାଖାପାଖି କେଉଁ ଏକ ଅନ୍ତରଙ୍ଗତା, ନିଜ ସ୍ତ୍ରୀ ପରିବାର ସମେତ । ବ୍ୟକ୍ତିର ସ୍ୱାଧୀନତାର ଶୁଖିଲାପଣ ତା'ର ଅନାବିଳ ଐଶ୍ୱର୍ଯ୍ୟକୁ ନେଇ ତୁଷ୍ଟି ରହିପାରେ ନାହିଁ, ଜୀବନର ମଧ୍ୟାହ୍ନରେ ମଧ୍ୟ ।

ବର୍ତ୍ତମାନ ପ୍ରଶ୍ନ ହେଉଛି ଯେ ସନ୍ଧ୍ୟାବେଳକୁ କ'ଣ ହେବ ? ଦିନର ମହାଭାରତ ଯୁଦ୍ଧ ପରେ ଯେତେବେଳେ ତମର ସବୁ ନିର୍ଦ୍ଦିଷ୍ଟ ସାଂସାରିକ କାମ ସରିଗଲାଣି, ଓ ପିଲାମାନେ ନିଜ ନିଜ ସ୍ୱାଧୀନତାକୁ ନେଇ ନାନାଦି ଖେଳ ଖେଳିବାରେ ବ୍ୟସ୍ତ, ଯେତେବେଳେ ପିଲାଦିନର ମୁଁଟି ତମକୁ ପୁଣି ଡାକିବ କି ନାହିଁ,

ଜନନୀ ଜଠରର ଉଷ୍ମକୁ ଫେରିଆ' ବୋଲି କହିଲି ପରି ? ନ ହେଲେ ସେ କେମିତି ଜାଣିପାରିବ ତା'ର ଏଇ ନିଃସଙ୍ଗତା, ଏଇ ନବୀକୃତ ଛିନ୍ନତାବୋଧର ଭୟରୁ ? କିନ୍ତୁ ସାଧୁ-ସାବଧାନ, ସ୍ମୃତି କେବଳ ଗୋଟାଏ ମରୀଚିକା ହୋଇପାରେ, ଯଦି ପୁରୁଣା ପରିବେଶର ବାସ୍ତବ ରଙ୍ଗରୂପ ବଦଳି ଯାଇଥାଏ ଏବଂ ତମେ ନିଜକୁ ଅଲେଡ଼ା ମନେ କର । ତେଣୁ ମୁଁ ଜଗନ୍ନାଥଙ୍କୁ ପରାମର୍ଶ ଦେବି ଯେ ଯଦି ତୁ ଏଠିକି ଫେରିଆସୁ ଶେଷଥର ପାଇଁ, ତା'ହେଲେ କିଛି ଗୋଟାଏ କାମ ଠିଆରି କରି ନେ' ନିଜ ପାଇଁ, ଯାହା ଏଇ ପରିବେଶକୁ ମଧ୍ୟ ଖାପ୍ ଖାଇବ ଓ ତୁ ନିଜକୁ ଅଲେଡ଼ା ବୋଲି ମନେ କରିବୁ ନାହିଁ । ନ ହେଲେ ତୋତେ କଦାପି ମିଳିବ ନାହିଁ ତୁ ଯାହା ଆଶା କରୁଛୁ ତୋର ଏଇ ଭିଟାମାଟିରେ, ସେଠି ହଜାରେ ଧଳା-ଫୁଲର ଉତ୍କଟ ସୁଗନ୍ଧ କି ଯାବତୀୟ 'ମେଣ୍ଟାମେଣ୍ଟି ସାଲୁରୁବାଲୁରୁ ସମ୍ପର୍କର ଗନ୍ଧ' ସୁରକ୍ଷିତ ଥାଉ ପଛେ ତୋ ପାଇଁ । ସେଭଳି କିଛି କାମ କରିବା ସମ୍ଭବ ହୋଇ ନପାରିଲେ ନାତିନାତୁଣୀଙ୍କ ମେଳରେ ମିଳୁଥିବା ଅନ୍ତରଙ୍ଗତାକୁ ଅନୁଭବ କରିବା ହିଁ ଶ୍ରେୟ ତୋ ପାଇଁ, ସେମାନେ କୋଉ ସାଇବେରିଆରେ ଥାଆନ୍ତୁ କି ଟିମ୍ବକ୍ଟୁରେ ।

ଛାଡ଼, ସଞ୍ଜ ଡେରି ଅଛି ତମ ପାଇଁ, ଆଦରଣୀୟ ଲୀନା ଓ ଜଗନ୍ନାଥ । ତେଣୁ ଅନ୍ତତଃ ଜେଜେ ବଞ୍ଚିଥିବା ଯାଏଁ ତମେ ଏମିତି ଫେରି ଆସୁଥିବ ମଝିରେ ମଝିରେ—ବୁଝିଲ ? ରାଣୀ ଓ ତା' 'ଫନ୍ନୀ ଘୋଷ୍ଟ'ଙ୍କ ମଧ୍ୟରେ ରଚିତ ପ୍ରେମକୁ ଦେଖି ଯେଉଁ ଅପୂର୍ବ ଆନନ୍ଦ ମିଳୁଥିବ ତମକୁ, ତା'ର ମୂଲ୍ୟ ବି' କିଛି କମ୍ ନୁହେଁ ବୋଲି ତମର ମନେ ହେଉ ନାହିଁ ?

( ଜନ୍ମମାଟିକୁ ଫେରି ଆସିବାର ଆକର୍ଷଣ କେମିତି ଓ କାହିଁକି ପୁଣି ଛୁଆଡ଼ି ଦିଏ ତମକୁ ଛାଡ଼ି ଦେଇ ଆସିଥିବା ଶୁଖିଲା 'ବିଦେଶ ଭୂଇଁ' ଆଡ଼କୁ, ସେ ବିଷୟରେ କିଛି କହିବ ମୋର 'ଓଦାମାଟି' ଶୀର୍ଷକ ଗପ, ଯାହା ମୋ ଷୋଡ଼ଶ ଗଳ୍ପ ସଙ୍କଳନର ଅନ୍ତର୍ଭୁକ୍ତ, ଏବଂ ପରେ ପଢ଼ିବାକୁ ପାଇବେ ଏହି ଗ୍ରନ୍ଥରେ । )



# ମଣିଙ୍କ ମହିମା

ଆଜିର ସକାଳଟାକୁ ଭଲ ପାଇବାର ଅନେକ କାରଣ ଥିଲା । ପ୍ରଥମ କଥା, ଗତ କେଇଦିନର ଅବିରତ ମେଘବର୍ଷା ପରେ ଆଜି ସୂର୍ଯ୍ୟଙ୍କ ଆଲୁଅ ସତରେ ଝଲମଲ ଦିଶୁଛି । ଆଲୁଅଖଣ୍ଡିକ ସାମନା ଗୁଳିଆ ଉପରେ ମାଡ଼ିଥିବା ପାଣିକଖାରୁର ଭେସେଡ଼ା ରଙ୍ଗକୁ ଉତ୍ତମରୂପେ ଚହଲେଇ ଦେଉ, କି ପାଖରେ ଶୋଇଥିବା ପତ୍ନୀ ସୌଦାମିନୀଙ୍କ କଳାବାଳରେ ଥିବା ଚକଡ଼ାଏ ରଙ୍ଗଛଡ଼ା ଧଳାକୁ ଚହଲା ପକେଇ ଦେଉ, ତା'ର ସେହିପ୍ରକାର ଦୃଷ୍ଟାମିକୁ ଧରିବାର ନୁହେଁ । ତା'ଛଡ଼ା ମେଘୁଆ ପାଗର ଗୋଟାଏ ବିଶେଷ ଅସୁବିଧା ଅଛି ଚନ୍ଦ୍ରମଣିବାବୁଙ୍କ ପାଇଁ । କାହିଁକିନା ତାଙ୍କ ଦେହଟା ଲେସେମା ବୋଲି ସଭିଏଁ ଜାଣନ୍ତି । ବଞ୍ଚିଥିଲା ବେଳେ ତାଙ୍କ ବୃଦ୍ଧ ଅକର୍ତ୍ତବ୍ୟ ବାପା କହି ଉଠୁଥିଲେ ବେଳେ ବେଳେ, ଯେତେବେଳେ ଚନ୍ଦ୍ରମଣିବାବୁ ମୁଣ୍ଡରେ ମାଙ୍କଡ଼ ଟୋପି, ଗଳାରେ ମଫଲର୍ ଅବା ଦେହରେ ଶାଲର ପରିକାଷ୍ଠା ଦେଖାଇ ଯାଆନ୍ତି ସେଇ ବାଟେ—"ଆମ ଚନ୍ଦରିର ଲେସେମା ଧାତୁ । ଆଉ କାହାର ସେମିତି ନୁହେଁ, ପରିଆର ନୁହେଁ, ଧନିଆର ନୁହେଁ । ନନ୍ଦର ବି ନୁହେଁ । ଲେସେମା ଧାତୁ···।" କଥାଟାକୁ ଦୋହରେଇ ହେଉଥିଲେ, ସତେକି ଇଏ ତାଙ୍କ ମଝିଆଁ ପୁଅର ଏକ ବିରାଟ ବୈଶିଷ୍ଟ୍ୟ । ସେତେବେଳେ ଚନ୍ଦ୍ରମଣିବାବୁ ମନେ ମନେ ଆହୁରି ଚିଡ଼ିଉଠନ୍ତି ବାପାଙ୍କ ଉପରେ ଓ ତାଙ୍କ ମୁହଁର ଚେହେରା ଆହୁରି କ୍ଳିଷ୍ଟ ଓ କୁଞ୍ଚିତ ଦେଖାଯାଏ । ଏହେତୁ ମେଘୁଆ ପାଗ କଟିଗଲା ପରେ, ସୂର୍ଯ୍ୟ ଚେଇଁ ଉଠିଲା ପରେ, ଚନ୍ଦ୍ରମଣିବାବୁଙ୍କୁ ସେହିପ୍ରକାର କୌଣସି ଆଚ୍ଛାଦନର ଆଶ୍ରୟ ନେବାକୁ ପଡ଼ିବ ନାହିଁ, ଏବଂ ତଦ୍ଦ୍ୱାରା ସାଧାରଣ ବସ୍ତ୍ର ପିନ୍ଧିଥିବା ଅନ୍ୟମାନଙ୍କର ଦୃଷ୍ଟିକଣ୍ଟକ ହେବାକୁ ପଡ଼ିବ ନାହିଁ କି ସ୍ୱର୍ଗୀୟ ବାପାଙ୍କର ସେଇ ଘୋଷଣାବିଶେଷର ସ୍ମୃତିରେ ସୂଚୀବିଦ୍ଧ ହେବାକୁ ପଡ଼ିବ ନାହିଁ । ଏହି ଅନୁକୂଳ ପରିସ୍ଥିତିଟିକୁ ଉଣା କରିହେବ କି ? ଦ୍ୱିତୀୟରେ ଗତକାଲି ରାତିରେ ସେ କ'ଣ ଗୋଟାଏ ସ୍ୱପ୍ନ ଦେଖିଥିଲେ, ସ୍ୱପ୍ନଟା ଠିକ୍ ଠିକ୍ ମନେପଡ଼ୁନାହିଁ, ହେଲେ ନିଦ ଭାଙ୍ଗିଲା ପରେ ତାଙ୍କୁ ଭଲ ଲାଗୁଥିଲା ବୋଲି କହିଲେ ଭୁଲ ହେବ ନାହିଁ ।

ସର୍ବୋପରି, ସ୍ୱପ୍ନ ହେଉ କି ଜାଗୃତି, ତାଙ୍କ ଭଲ ଲାଗିବାରେ ବୋଧହୁଏ ଗୋଟାଏ ଅନ୍ତର୍ନିହିତ କାରଣ ଥିଲା । ବର୍ତ୍ତମାନ ସେ ତାଙ୍କ ଘରବାହାରେ ଅଛନ୍ତି କିଛିଦିନ ହେଲା ଟିଆସ୍ଥି ନନ୍ଦତା ଓରଫ୍ ଟୁକୁନର ଘରେ, ଏବଂ ଏହି ବହିର୍ଦେଶ

ସର୍ବସାଧାରଣ ନୁହେଁ । ଏ ହେଉଛି ତାଙ୍କର ଜନ୍ମସ୍ଥାନ ବାଲେଶ୍ୱର । ଯେଉଁଠାକୁ ସେ ଆସିଛନ୍ତି କାହିଁ କେତେବର୍ଷ ପରେ । ତେଣୁ ସେଥିରେ କ'ଣ ମମତ୍ୱର ଓଜନିଆ ଭାବ, ବାଲ୍ୟସ୍ମୃତିର ଜକଜକ ଅବା ସେହିପ୍ରକାର କିଛି ପ୍ରୀତିକର ଅନୁଭବ ନଥିବ, ଯାହା ତାଙ୍କ ସୁଖଭାବକୁ ପ୍ରରୋଚିତ କରୁଥିବ ବୋଲି ଆଶା କରାଯାଏ ?

ହଁ, ଚନ୍ଦ୍ରମଣିବାବୁ ଏଇ ସକାଳଟାକୁ ନିଶ୍ଚୟ ଭଲ ପାଇଥିଲେ ।

କିନ୍ତୁ ପ୍ରଶ୍ନ ହେଉଛି ଯେ ସକାଳକୁ ଭଲ ପାଇଥିବାର ତଥା ନିଜକୁ ଭଲ ଲାଗିଥିବାର ଲକ୍ଷଣକୁ କେହିହେଲେ ଦେଖିପାରିଲେ କି ? ହୁଏତ ଦେଖିପାରି ଥାଆନ୍ତେ ତାଙ୍କ ଶଯ୍ୟାସଙ୍ଗିନୀ, କିନ୍ତୁ ସେ ତ ନିଦରୁ ଉଠି ନଥିଲେ ସେତେବେଳକୁ । ଅବା ଦେଖି ପାରିଥିବ ସୂର୍ଯ୍ୟଙ୍କର ସେଇ ଆଲୁଅ ଖଣ୍ଡିକ । କାହିଁକିନା ନିତ୍ୟକର୍ମ ସାରି ଦାଣ୍ଡପର ଚଉକିରେ ବସି ସକାଳ ଚା'କୁ ଅପେକ୍ଷା କରିଥିଲାବେଳେ ଯାହାର ଦୃଷ୍ଟି ପଡ଼ିଥିବ ତାଙ୍କ ମୁହଁ ଉପରେ, ତା'କୁ ସେଥିର କୌଣସିମାନେ ଭୂମିକମ୍ପ ଭାବ ଅସ୍ୱାଭାବିକ ଲାଗି ନଥିବ । ସେଇ ସବୁଦିନିଆ ଚନ୍ଦ୍ରମଣି ମହାନ୍ତି । ପଚାଶ ବର୍ଷିଆ ବୟସ ଅନୁପାତରେ ସ୍ୱଭାବତ ବୁଢ଼ା ଦେଖାଯାଆନ୍ତି । ବାଳତକ ପୂରାପୂରି ପାଚି ଯାଇ ନଥିଲେ ମଧ୍ୟ ମୁହଁରେ ଅତ୍ୟଧିକ ଗାର । ସେଇ ଚପା ଓଠ, ତଳ ଓଠ ଟିକିଏ ନେସେଡ଼ି ଯାଇଛି । କପାଳରେ ସେଇ କୁଞ୍ଚନ । ଏବଂ ଗ୍ରେଟ ଆଖିର ଚାହାଣିରେ ସେଇ ପ୍ରଲମ୍ବିତ କ୍ଳେଶ, ଅବିଶ୍ୱାସୀ ସଂସାରଟାକୁ ବାଧ୍ୟ ହୋଇ ଦେଖିଲାପରି । ହେଲେ ଏହି ସମଗ୍ର ଏବଂ ନିତ୍ୟନିମିତ୍ତ ପରପ୍ରକାଶକୁ ପିତାଟିଆପଣ ବୋଲି କହିହେବ ନାହିଁ । କାରଣ ପିତା ଖାଇଲେ ମୁହଁଟା ହଠାତ୍ ବିଚକଟିଆ ହୋଇଯାଏ ସିନା, ସେଇ ବିସ୍ୱାଦୁର ଧାରଣା କ'ଣ ସେଠି ବସା ବାନ୍ଧି ରହିଥାଏ ସବୁଦିନକୁ ? ତା'ଛଡ଼ା ସେଥିରେ କାହିଁ ଉକ୍ତତାର ତୀକ୍ଷ୍ଣତା ? କିମ୍ବା କେଉଁ ଏକ ଅତ୍ୟନ୍ତ, ହୁଏତ ବିକୃତ, ଉଚ୍ଚମନ୍ୟତା ? ନା, ତା'କୁ ଠିକ୍ ଏଇଆ ବୋଲି କହିହେବ ନାହିଁ ଅଳ୍ପକରେ । ଆଜ୍ଞା, ବିସ୍ୱାଦୁର ପର୍ବତରେ ସିନା ପତାକାଟିଏ ପୋତି ଦେଇ ହେବ ଚଟ୍‌କିନି, ବିରାଗୀ-ବିଦ୍ୱେଷୀ ଉପତ୍ୟକାକୁ କ'ଣ ସହଜେ ଆବୃତ ହେବ ?

ଯାହାହେଉ ଆଜିର ପ୍ରଭାତରେ ମଧ୍ୟ ଚନ୍ଦ୍ରମଣିବାବୁ ତାଙ୍କ ସ୍ୱାଭାବିକ ଗାମ୍ଭୀର୍ଯ୍ୟକୁ (ଅର୍ଥାତ୍ ଯାହାକୁ ସେ ଗାମ୍ଭୀର୍ଯ୍ୟ ବୋଲି ମନେ କରନ୍ତି, ସେଇ ମୁଦ୍ରାଟିକୁ) ପିନ୍ଧି କରି ବସିରହିଛନ୍ତି । ଅନେଇଛନ୍ତି ବାଲେଶ୍ୱର ରହଣିର, ତେଣୁ ଭିନ୍ନ ଦେଶୀୟ ଦାଣ୍ଡଅଗଣା ଏବଂ ରାସ୍ତାର ପରିପାର୍ଶ୍ୱକୁ । ସକାଳ ଚା' ଖାଇବାର ଟାଇମ୍ ଗଡ଼ିଗଲାଣି । କିନ୍ତୁ ସେଥିଯୋଗୁଁ ସେ କାଳେ ରାଗି ଉଠିବେ, ସେ ଆଶଙ୍କା ନାହିଁ । ଆଦୌ ନାହିଁ । ଇଏ ତାଙ୍କ ନିଜ ଘର ନୁହେଁ, ଝିଆଘର, ସେଇଥିପାଇଁ ଏଇ ସଂଯମ, ସେକଥା ନୁହେଁ । ନିଜ ଘରେ ମଧ୍ୟ ସେ କେବେହେଲେ

କ୍ରୋଧରେ ପାଟି କରି ଉଠିଛନ୍ତି, ହାତଗୋଡ଼ ଛାଟିଆଡ଼ିଛନ୍ତି, ଅଶ୍ଳୀଳ ଉଚ୍ଚାରଣ କରିଛନ୍ତି, କିମ୍ବା ଅନ୍ୟ କୌଣସି ଭାବର ତେଜ ଦେଖାଇଛନ୍ତି ବୋଲି କେହି କହି ପାରିବ ନାହିଁ । ଅପରପକ୍ଷେ ତାଙ୍କ ଆଡ଼ୁ ତେନାଏ ଉଲ୍ଲସିତ ଠୋ' ଠୋ' ହସ ବି' କେହି ଶୁଣି ନ ଥିବ । କଦବାକ୍ୱଚତ୍ ସୌଦାମିନୀଙ୍କ ସାଙ୍ଗରେ କଳିକଜିଆ ? ଛିଃ, ଛିଃ, ସେ ପ୍ରଶ୍ନ ଉଠୁ ନାହିଁ । ଘରେ ପରିବାରବର୍ଗ ଛଡ଼ା ଯେତେକ ଗୃହକରବାକର । ପୁଣି କାନ୍ଥର ବି' କାନ ଅଛି । ତେଣୁ ଚନ୍ଦ୍ରମଣିବାବୁଙ୍କ ପରି ଲୋକ ସେଭଳି ଏଇ ମୂର୍ଖଆଚରଣ କରିବ ନାହିଁ, ଏହା ନିଃସନ୍ଦେହ । ଏପରିକି—ଧରନ୍ତୁ ସତକୁ ସତ କେହି ଜଣେ କାନ୍ଥରେ କାନ ଦେବ, ବନ୍ଦ କବାଟର ଫାଙ୍କ ବାଟେ ଅନେଇବ, ତାଙ୍କ ଅନ୍ତରଙ୍ଗ ଦାମ୍ପତ୍ୟର ଆଭାସ ପାଇବା ପାଇଁ । ଏବଂ ରାତିଅଧରେ । ତଥାପି ସେ ଯେ କିଛି ଅସମ୍ଭାଳ ଧ୍ୱନି ଶୁଣିବାକୁ ପାଇବ, ପ୍ରେମର ଅଥବା ଘୃଣାର, ଏବଂ ଅନୁରୂପ ଅସମ୍ଭାବିତ ଦୃଶ୍ୟଟିଏ ଦେଖିବ, ସେଭଳି ଆଶା ସୁଦୂରପରାହତ । ହୁଏତ କେବେ କେମିତି ଦେଖିବ-ଶୁଣିବ ଗୋଟାଏ ଅଶ୍ଳୀଳ ଛନ୍ଦାଛନ୍ଦର ନୀରବତା । ବାସ୍, ସେତିକି ମାତ୍ର । ମୋଟ ଉପରେ, ଚେତା ଥିଲା ବେଳେ ସେ କଦାପି ତାଙ୍କର ଗାମ୍ଭୀର୍ଯ୍ୟରେ ଆଞ୍ଚ ଲଗେଇବାକୁ ଦିଅନ୍ତି ନାହିଁ, ତାଙ୍କର ଏଇ ସ୍ୱଗୁଣର ଗରିମା ଅନସ୍ୱୀକାର୍ଯ୍ୟ । ଆସିଲେ ଆସୁ ଗୋଟାଏ ନୂଆ ଅସନ୍ତୋଷ ପ୍ରିନ୍ସିପାଲଙ୍କ ବ୍ୟବହାରକୁ ନେଇ, ଅବା ଗୋଟାଏ ନୂଆ ବିରକ୍ତି ବାପାମାଆ ଭାଇଭଉଣୀ ଓଗେରେ, ଭଣ୍ଡୁଁ ସମାଜକୁ ନେଇ, ସେହେତୁ ହୁଏତ ଗୋଟାଏ ନୂଆ ଫାଟ ଦେଖା ଦେବ ସେଇ ବିରାଗୀ ଉପତ୍ୟକାରେ—ଆଉ କ'ଣଟା ହେବ ? ତା' ବୋଲି କ'ଣ ସେ ଏଡ଼େ ପାଟି କରି ଯୁକ୍ତି ଆରମ୍ଭ କରିଦେବେ ବଡ଼ଭାଇ ପରିବାବୁଙ୍କ ପରି, ନା ପେଟରୁ ଲୁଙ୍ଗି ଖସେଇ ଯାହାକୁ ପାରେ ତା'କୁ ଶଳା ବୋଲି କହିବେ ସାନଭାଇ ଧନିଆଁ ପରି ?

ଦୁନିଆଟା ତାଙ୍କୁ କଷ୍ଟ ଦେଇ ଆସିଛି ଜନ୍ମରୁ ଆଜିଯାଏ, ବାପମାଆଙ୍କଠାରୁ ଆରମ୍ଭ କରି ମ୍ୟୁନିସିପାଲିଟି (ଯେଉଁଠି ସେ ଚାକିରି କରନ୍ତି)ର ଲାଞ୍ଚଖୋର ହାକିମଙ୍କ ଯାଏଁ । ଦୁନିଆଟା ପ୍ରତି ତାଙ୍କର ଯଥେଷ୍ଟ ହିଂସା କରିବା କଥା, ଏଥିରେ ସନ୍ଦେହ ନାହିଁ । ତା' ବୋଲି କ'ଣ ସେ ହାରିଯିବେ ? ଏଇ ହେଲା ତାଙ୍କ ଗାମ୍ଭୀର୍ଯ୍ୟର ମନ୍ତ୍ର ଓ ମୌଳିକତା ।

ବର୍ଷା ରହିଛନ୍ତି । ସୂର୍ଯ୍ୟ ବେଶ୍ ଉପରକୁ ଉଠି ଆସିଲେଣି । ଚା' ଖାଇବାକୁ ନିହାତି ଡେରି ହୋଇଗଲାଣି । ତଥାପି ଚନ୍ଦ୍ରମଣିବାବୁଙ୍କର ସ୍ୱାଭାବିକ ମୁହଁର ଚେହେରାରେ କୌଣସି ଭାବାନ୍ତର ପରିଲକ୍ଷିତ ହେଉ ନଥିଲା ।

ତେବେ ଯାହା ତାଙ୍କ ଆଖିରେ ପଡ଼ୁଥିଲା, ଏବଂ ଯେଉଁ ପ୍ରକାର ମୃଦୁ ଚିତ୍ରାୟଣ ତାଙ୍କ ମନୋଭାବକୁ ଅଳ୍ପ ବହୁତ ଖେଳେଇ ଦେଉଥିଲା, ପୃଷ୍ଠଭୂମିର ପଛଆଡ଼େ, ତା'ର ଆକାରପ୍ରକାର ଏହି ଧରଣର :

—କର୍କଟାଏ ବସିଛି ଥୁଣ୍ଟା ଡାଳର ଅଗରେ । ବସୁଛି ଟିକଏ, ଉଡ଼ି ଆସୁଛି, ପୁଣି ବସୁଛି ତା' ଉପରେ । ସତେକି ସେ ହେଉଛି ଗୋଟାଏ ପ୍ରଜାପତି, ଓ ଯାହା ଉପରେ ବସୁଛି ଥରକୁ ଥର, ସିଏ ଗୋଟାଏ ଫୁଲ ! ବେଙ୍ଗୁଆ କ'ଣ କୋଉଠୁ ଗଛରେ ଫଳନ୍ତି ?

(ବାପା କହୁଥିଲେ, ମନେ ପଡ଼ୁଛି ଯେ ବାଲେଶ୍ୱରରେ ଥିଲା ବେଳେ ସେ ବହୁତ ବାଗବଗିଚା କରିଥିଲେ । କୁଆଡ଼େ ଏତେ ବଡ଼ ବଡ଼ ଗେଣ୍ଡୁ, କନିଆ, ଆଉ କେତେ କ'ଣ । ଆଉ ମୁଁ କୁଆଡ଼େ ସକାଳୁ ସକାଳୁ ଚାଲୁଥିଲି ତାଙ୍କ ପଛରେ । ଠୁକୁ ଠୁକୁ ହୋଇ । କ'ଣ ନା ମୁଁ ବି' ଫୁଲ ତୋଳିବ । ଥରେ କୁଆଡ଼େ ଗୋଟାଏ ଧଣ୍ଡସାପ ଗୁଡ଼େଇ ହୋଇଗଲା ମୋ ଗୋଡ଼ରେ, କିନ୍ତୁ କିଛି ହେଲା ନାହିଁ ମୋର । ମାନେ ମାନେ ଚାଲିଗଲା ବାପାଙ୍କୁ ଦେଖିଲାକ୍ଷଣି । ଯେତେକ ଗାଲୁ ଗପ ! ବାପା ଥିଲେ ଏଠିକା ବଡ଼ ଜମିଦାର ସେନ୍ ମହାଶୟଙ୍କ ଗୁମାସ୍ତା । କିନ୍ତୁ ଆମେ ଜାଣିବାକୁ ସେ ଥିଲେ ସେକ୍ରେଟେରି । କହିବାକୁ ଗଲେ ମାଲୀ ହୋଇ ଫୁଲ ତୋଳୁଥିଲେ ମାଲିକର ବଗିଚାରେ । କୋଠିର ଆଉଟ୍‌ହାଉସ୍‌ରେ ଥିଲେ, ଯେଉଁଠି ମୁଁ ଜନ୍ମ ହେଲି ··

କିନ୍ତୁ ଭାଇ ଜନ୍ମ ହୋଇଥିଲେ କେନ୍ଦ୍ରାପଡ଼ାରେ । ଅମ ପୈତୃକ ଘରେ । ଜେଜେ ବଞ୍ଚିଥିଲେ ସେତେବେଳକୁ । କୁଆଡ଼େ ପାଞ୍ଚଶହ ଲୋକ ଭୋଜି ଖାଇଥିଲେ ତାଙ୍କ ଏକୋଇଶାରେ । ଜେଜେ ମଲା ପରେ ଯାଇଁ ବାପା ଘର ଛାଡ଼ି ବାହାରକୁ ଆସିଲେ, ସ୍ୱା' ତା' ସିରସ୍ତାରେ ଚାକିରି କରିବା ପାଇଁ···

ଭାଇ ମୂଳରୁ ଭାଗ୍ୟବାନ୍ । ସମସ୍ତଙ୍କ ପ୍ରିୟପାତ୍ର । ଫେଭରିଟ୍ । ଖାଲି ବାପାଙ୍କର ନୁହେଁ, ଜେଜେଙ୍କର, ଭଗବାନ୍ଙ୍କର···)

ଚା'ପିଆର ଧୂମ୍ ଉଡ଼ୁଛି ସେଠି, ରିସ୍ତାକଢ଼ର ଚା' ଦୋକାନଟେ । ଜଣେ କିଏ ତା' ଗିଲସ ଉପରକୁ ମୁଠାଏ ମୁଢ଼ି କି ହୁଡ଼ୁମ ଛାଡ଼ିଦେଲା । ନିପଟ ବାଲେଶ୍ୱରିଆ !

ଝିଅଙ୍କ ଘର । ପୁଣି ସ୍ୱାଙ୍କର ଯେମିତି ଫେସନିଆ କାରବାର । ନହେଲେ ମୁଁ କେବେ ଯାଇ ଚା' ତିଆରି କରି ସାରନ୍ତିଣି ମୋ ପାଇଁ । ସାହେବୀ ଢଙ୍ଗ ସିନା, ସ୍ୱାଙ୍କ ଚା'ଗୁଡ଼ାକ ଉଚ୍ଛୁଡ଼ା ପାଣିଟିଆ । ହବ ନାହିଁ ? ଚା' ଟିକେ ବି' ନିଜ ହାତରେ କରିବେ ନାହିଁ, ଅପେକ୍ଷା କରିଥିବେ ତାଙ୍କ ଚାକର ଆସିବ, ଗାଧୋଇ ପାଧୋଇ, ଟେର ବାଗେଇ···

ଟ୍ରୁକୁନ ସେମିତକା ଟ୍ରେନିଂ ପାଇଛି ତା' ମା'ଆଠାରୁ । ଧନିଆଁର ଫୁଲ୍‌ଫାଙ୍କିଆ ସ୍ତ୍ରୀଠାରୁ । ନହେଲେ ତା' ସ୍ୱାମୀ ଯେତେ ବଡ଼ଲୋକ ହେଉ ପଛେ, ଘରଣୀ ହୋଇ ସେ ଏତିକ କାମ କରନ୍ତା ନାହିଁ ତା' ନିଜ ହାତରେ ? ପୁଣି ଯେତେବେଳେ ଘରେ ଗେଷ୍ଟ୍ ଅଛନ୍ତି, ଗୁରୁଜନ, ପୁଣି ତା' ନିଜ ବଡ଼ବାପା ବଡ଼ମା…

କିନ୍ତୁ ଏମିତ କି ବଡ଼ଲୋକ ମ ? ଯେତେହେଲେ କ'ଣ ଗ୍ରେଟମୋଟ ବିଜନେସ୍ କରୁଛି । କେମିକାଲ୍ କାରଖାନା । ଆଜି ଅଛି କାଲି ନାହିଁ । ପୁଣି ମୁଖ୍ୟମନ୍ତ୍ରୀଙ୍କ ଅନୁଗ୍ରହରେ । ହଜାର ଦିନକୁ ହଜାର ଇଣ୍ଡଷ୍ଟ୍ରିର ହାଉଆରେ । କାହିଁକନା ସ୍ତ୍ରୀ' ମାମୁଁ ହେଉଛନ୍ତି ତାଙ୍କ ପାଖଲୋକ । କିନ୍ତୁ ମୁଖ୍ୟମନ୍ତ୍ରୀଙ୍କ ଆସନ ତ ଟଳମଳ ହେଲିଣି, ଏଥର ·· ?

ଆମ ରାଜେନ୍ଦ୍ର କଥା ଭିନ୍ନ । କଂଗ୍ରେସ ଆସୁ କି ଜନତା ଆସୁ କି ଯେ ଆସୁ, ଓକିଲାତ କାହା ଅନୁଗ୍ରହ ଉପରେ ନାହିଁ । ମାଲିମକଦ୍ଦମା ଚାଲିଥିବ ଚିରଦିନ । ମୁଁ ଠିକ୍ କରିଛି,—ତା'କୁ ଓକିଲାତିରେ ପୂରେଇ ଦେଇଛି । ପାଠରେ ଫାଷ୍ଟକ୍ଲାସ୍ ନ ହେଲେ ନାହିଁ, ସେ ମୋର ବିଚକ୍ଷଣ ପୁଅ । ଦେଖିବ ସେ କୋଉଠି ଯାଇଁ ପହୁଞ୍ଚିବ । ମୋ ବଡ଼ଲୋକ ହାକିମ ଇଞ୍ଜିନିୟର୍ ଭାଇଭଉଣୀଙ୍କ କୋଉ ପିଲା ତା' ପାସଙ୍ଗରେ ପଡ଼ିବ ନାହିଁ । କିନ୍ତୁ…

'କିନ୍ତୁ'ର ସ୍ୱରୂପକୁ ଠିକ୍ ଧରି ହେଉ ନାହିଁ, ତେବେ ସେଥିରେ ଭାଗ୍ୟ ଓରଫ୍ ସମାଜର ସମ୍ଭାବ୍ୟ ଅବକ୍ଷୟର ମହଜୁଦ୍ ଥିଲା । )

କିଏ ଗୋଟାଏ ଫାଟକ ଖୋଲି ପଶି ଆସୁଛି ହତା ଭିତରକୁ । ଅଳ୍ପବୟସୀ ମାଇକିନିଆ, ସ୍ୱାଙ୍କ ଘରେ କାମ କରେ କି କଅଣ । ସାନ୍ତାଳ ଝିଅ । ଏମାନଙ୍କ ମୁହଁ ମାଉନ୍ଦା ହେଉ ପଛେ, ଦେହଟା ବେଶ୍ ଚୁସ୍ତ୍ ଥାଏ । ଆଉ କେଡ଼େ ଚକ୍କଣ କରି ତାଙ୍କ ବାଳକୁ କୁଣ୍ଡେଇ ଥାଅନ୍ତି, ଜୁଡ଼ା ବାନ୍ଧିଥାଆନ୍ତି, ପୁଣି ସେଥିରେ ଯାଉଣୁ ଆସୁଣୁ ଫୁଲଟାଏ ଖୋଷି ଦେଇ ଥାଆନ୍ତି । ସ୍ୱା'ର ମୁହଁଟା ବି' ମାଉନ୍ଦା ନୁହେଁ ମ, ଗ୍ଲେଟିଆ, ହେଲେ ଧାରୁଆ ନାକ, ଓଠ ଦି'ଟା ବି'…ଫୁଲେଇ ହସୁଛି ମନକୁ ମନ ··

( ବାପା ବଢ଼େଇ କରି କହୁଥିଲେ ଯେ ସେ ନିଜେ ବାଛିଛନ୍ତି ତାଙ୍କର ଏଇ ବୋହୂଟିକୁ । ଯେମିତ ରୂପର, ସେମିତ ଗୁଣର । ମୁଁ ମନା କରୁନାହିଁ ଯେ କାମିନୀ ପ୍ରକୃତରେ ସୁନ୍ଦରୀ, ବି. ଏ. ପାସ୍, ଚାଲାକଚତୁର । କିନ୍ତୁ କୋଉ ବଏସ୍ ଥିଲା

କି ମୋ ପାଇଁ ? କୋଉ ଦଶଆଡ଼୍ର ପ୍ରସ୍ତାବ ଅସିଥିଲା ଝିଅଙ୍କ ପରି ? ନା ଧନଆଁ ପରି ? ବାପା ଦିନେ କୁଆଡ଼୍ର ଗୋଟାଏ ଫଟୋ ଆଣି ପଠ୍ଠୁଇଲେ । ବୋଉକୁ କହିଲେ,—ଜାଣିଛ ଇଏ କିଏ ? ଇଏ ହେଉଛି ଗଡ଼ବାବୁ ଡାକ୍ତରଙ୍କ ଝିଅ । ଗଡ଼ବାବୁଙ୍କ ବାପା ହେଉଛନ୍ତି ଦାମ ମାଷ୍ଟ୍ରେ, ଦାମ ପଟ୍ଟନାଏକ । ସେ ମୋତେ ଟିଉସନ୍ କରୁଥିଲେ, ବଢ଼ିଆ ମାଷ୍ଟର୍ । ସାହିତ୍ୟ, ରଚନା, ମହାନଦୀ କୂଳରେ ସୂର୍ଯ୍ୟାସ୍ତ—ସେଇଠୁ ହୋ' ହୋ' ହସ—ଭଲ ହେବ ନାହିଁ ଆମ ଚନ୍ଦରା ପାଇଁ ? ବୋଉ ମୁଣ୍ଡ ହଲାଇଲା, ଯାହା ସେ ସବୁବେଳେ କରିଆସିଛି ବାପାଙ୍କ କଥାରେ । ମୁଁ ବ' ଥିଲି ସେଠି ପାଖରେ । କିନ୍ତୁ ମୁଁ ଯାଉଥିଲି ବସି · · !

ମାନୁଛି ଦାମିନୀ ଦେଖିବାକୁ ଭଲ । ଏତେ ବୟସରେ ବ' ବୁଢ଼ୀଙ୍କ ପରି ଦିଶୁ ନାହିଁ । ଅବଶ୍ୟ ତା' ବାଳକୁ ରଙ୍ଗେଇଛି; ଅନେକଟା ଦେଇଥିପାଇଁ । ମୁଁ ତା'କୁ ମନା କରି ନାହିଁ । କିନ୍ତୁ ମୁଁ କସ୍ମିନ୍‌କାଳେ ମୋ ବାଳକୁ ରଙ୍ଗେଇବି ନାହିଁ । ଯେଉଁ ବୟସରେ ଯେମିତି ଚେହେରା ହେବାର କଥା···

ତଏସ୍ । ଭିନ୍ନ ସ୍ୱାଦୁ । ବାହାଘର ପରେ ମଧ୍ୟ ଲୋକେ ଆଉ କୋଉ ସ୍ତ୍ରୀ ପାଖକୁ ଯାଆନ୍ତି । ଝିଅଙ୍କ ନାଆଁରେ ବ' କେତେ କଥା ଶୁଣାଯାଏ । କିନ୍ତୁ ମୁଁ ସେମିତିକା ଲୋକ ନୁହେଁ । ମଣିଷର ଗୋଟାଏ ପ୍ରିନ୍‌ସିପ୍‌ଲ୍ ଥିବା ଦରକାର·

ଦାମିନୀର କ'ଣ ହୋଇଛି ? କ'ଣ ଶୋଇଥିବ ଖରାବେଳ ଯାଏଁ ? )

ନନ୍ଦିତା, ତା' ସ୍ୱାମୀ ଜିଷ୍ଣୁ ନାଏକ, ଏବଂ ଅତିଥି ତଥା ବଡ଼ମାଆ ସୌଦାମିନୀ ମହାନ୍ତି ଏତେ ଡେରି ଯାଏଁ ଶୋଇନଥାଆନ୍ତି ସବୁଦିନେ । ଆଜିକା ବ୍ୟତିକ୍ରମର କାରଣ ହେଉଛି ଯେ ଗତକାଲି ରାତିରେ ବଡ଼ବାପା ସ୍ୱଭାବତମେ ଦଶଟା ବେଳକୁ, ମାନେ ଟି. ଭି. ରେ ଇଂରେଜି ନିଉଜ୍ ଦେଖିଲା ପରେ ପରେ, ଶୋଇଗଲା ଉତ୍ତାରୁ ସେମାନେ ଗପ କଲେ ଅନେକ ସମୟ ଯାଏଁ । ଯେଉଁ ଗପର ଅଂଶ ବିଶେଷକୁ ହୁଏତ ପରଚର୍ଚ୍ଚା କୁହାଯାଇ ପାରେ, କିନ୍ତୁ ପରନିନ୍ଦା କହିବା ଏକାନ୍ତ ଅନ୍ୟାୟ, କାରଣ ସେଥିର ମୁଖ୍ୟସ୍ୱର ଥିଲା ଆମୋଦ । କିଛି ଗୋଟାଏ ମଜାକଥା ଘଟିଥିବାର ଆମୋଦ, ଘଟଣା ନିଜ ଘରେ ଘଟିଥାଉ କି ଆଉ କାହା ଘରେ, ପ୍ରତ୍ୟକ୍ଷ ଅନୁଭୂତ ହୋଇଥାଉ କି ଶୁଣାକଥା । ଖାଲି ଆମୋଦ ନୁହେଁ, ହାଲୁକା ଆମୋଦ । କିଓ, ଯେଉଁଠି ଆସରର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ଚପଳା ଏବଂ ସଦାହାସ୍ୟମୟୀ ନନ୍ଦିତା ଓରଫ୍ ଟୁକୁନି, ସେଠି ଆଉ କ'ଣ ଆଶା କରିଯାଏ ? ତା'ଛଡ଼ା ମୁରବି ସ୍ଥାନୀୟା ହେଲେ ମଧ୍ୟ ବଡ଼ମାଆ ସୌଦାମିନୀ ସ୍ୱଚ୍ଛନ୍ଦରେ ନିଜକୁ ମିଶାଇ ପାରନ୍ତି ଏଭଳି ଆସରରେ, ଇଏ କ' କିଛି କମ୍ କଥା ନୁହେଁ । ବାକି

ରହିଲେ ଜଗୁବାବୁ । ତେବେ ସେ ଏଇ ଆସରରେ ଯୋଗ ଦେଇଥିଲେ ବୋଲି କହିଲେ ଭୁଲ୍ ହେବ । ସେ କେବଳ ଥିଲେ ସେଠି, ଏପାଖ ସେପାଖ ହେଉଥିଲେ, କଫି ତିଆରି କରି ଆଣୁଥିଲେ, ଏବଂ ଋଷଟି କେଉଁଠି ରହିଲା ବୁଝୁନ୍ତୁ କି ନବୁଝନ୍ତୁ, ମୁରୁକିହସାଟିଏ ଛାଡ଼ି ଦେଉଥିଲେ ଠିକଣା ସମୟରେ । ଜଗୁବାବୁଙ୍କ ଆନନ୍ଦର ମୂଳକଥା ହେଲା ଏଇ ଯେ ଆସରଟା ଜମିଛି, ଏବଂ ତାଙ୍କରି ଘରେ । ସତେକି ଇଏ ତାଙ୍କ ସଯତ୍ନରଚିତ ଆଉ ଗୋଟିଏ ପାର୍ଟି । ଅନ୍ୟତମ ଉପାଦାନ ତଥା ପରିଚୟ ତାଙ୍କ ମାଡ଼ି ଚାଲିଥିବା ସଫଳତାର ।

କାଲି ଆସରରେ ଟ୍ରେନ୍‌ର ବଡ଼ବାପା ଚନ୍ଦ୍ରମଣିବାବୁ ଯୋଗ ଦେଇନାହାନ୍ତି, ସେହେତୁ କ'ଣ ଜଗୁବାବୁଙ୍କର ସଫଳତାବୋଧ ଅଳ୍ପବହୁତ କମିଯାଇ ନଥିବ ? ନା କାରଣ ତାଙ୍କ ବିଷୟରେ ସେ ଯାହା ଶୁଣିଛନ୍ତି (ଯେ ସେ କେତେ ରକ୍ଷଣଶୀଳ ଅର୍ଥାତ୍ ପୁରୁଣାକାଳିଆ ) ଓ ତାଙ୍କୁ ପ୍ରତ୍ୟକ୍ଷରେ ଯେମିତି ଭାବରେ ଦେଖିଛନ୍ତି ( କୁଞ୍ଚେଇଲା ମୁହଁ, କୁଞ୍ଚେଇଲା ପରି ଖଣ୍ଡି ଖଣ୍ଡି କଥା, ଇତ୍ୟାଦି ) ତା'ର ପରିପ୍ରେକ୍ଷୀରେ ସେ ଯଥାର୍ଥରେ ନିଜକୁ ବାହାଦୁରି ଦେଇପାରିଛନ୍ତି ଯେ ଏଭଳି ଏକ ଗୁରୁଜନଙ୍କୁ ସେ ତାଙ୍କ ଗୁହାରୁ ଓଟାରି ଆଣି ନିଜର ଅତିଥି କରିପାରିଲେ ଏହାହିଁ ଯଥେଷ୍ଟ । ଅବଶ୍ୟ ସେଥିପାଇଁ ସେ ପତ୍ନୀର ପ୍ରବଳଚପଳ ଅଳିକୁ ମଧ ଧନ୍ୟବାଦ ଦିଅନ୍ତି, ଯାହାର ପ୍ରତିରୋଧ ବୋଧହୁଏ କରିପାରିଲେ ନାହିଁ ବଡ଼ବାପା । ତା'ଛଡ଼ା ତାଙ୍କର ପୂର୍ଣ୍ଣବିଶ୍ୱାସ ଯେ ଏଇ ବଡ଼ବାପା ଓରଫ୍ ଖୁଡ଼ୁଶାଶୁର ଭଦ୍ରଲୋକଙ୍କୁ ସେ ଯେକୌଣସିମତେ ଆପ୍ୟାୟିତ କରିପାରିବେ, ଅନ୍ତତଃ ଟୁରିଷ୍ଟ ହିସାବରେ । ଯଥା, ଗୃନ୍ଦପୁରରେ ସମୁଦ୍ରର କୂନି କୂନି ଢେଉ—ଆସୁଛି, ଆହୁରି ଆସୁଛି କହୁଆଳୁଅ ପଡ଼ୁଛି, ଏଣେ ବିଅରିପିଆ ଚାଲିଛି ·· । ଏଇ ଉପଭୋଗରୁ ବିଅରିପିଆ କାଟି ଦେଲେ ମଧ ଯେତିକି ବଳିଲା, ସେତିକିରେ ସେ କ'ଣ ତୁଗୁଲି ଯାଇପାରିବେ ନାହିଁ ? ନହେଲେ ପଞ୍ଚଲିଙ୍ଗେଶ୍ୱରରେ ପିକ୍‌ନିକ୍ । ନ ହେଲେ···ନ ହେଲେ ହୁଏତ ଭଦ୍ରକରୁ ଚଉବିଶ କିଲୋମିଟରରେ ଥିବା ସୁପ୍ରସିଦ୍ଧ ଆଖଣ୍ଡଳମଣି, ଯେତେ ଦୂରବାଟ କି ଖରାପ ରାସ୍ତା ହେଉ ପଛକେ···

ଅଗ୍ରାଧିକାର ନ ଥିଲା ମଣିଙ୍କର । ମଣିଙ୍କ କଥା ମଧ ଜଗୁବାବୁଙ୍କ ମନକୁ ଆସିଗଲା କାହିଁକିନା ଗତକାଲି ଡ୍ରାଇଭର ବାଞ୍ଛାନିଧି ଶୁଣେଇ ଶୁଣେଇ କହୁଥିଲା ଯେ ସେ ହେଉଛନ୍ତି ପୃଥିବୀର ସବୁଠାରୁ ପ୍ରତ୍ୟକ୍ଷ ଦେବତା, ଯେ ଏବେ ହେଉଛି ସବୁଠାରୁ ଉପଯୁକ୍ତ ସମୟ ସେଠିକି ଯିବା ପାଇଁ କାରଣ ଏଇକ୍ଷଣି ମେଳା ମଉଛବ କିଛି ନାହିଁ, ଏବଂ ବର୍ଷାଦିନ ଆସିଲେ ରାସ୍ତାଟା ଆହୁରି ଖରାପ ହୋଇଯିବ ଇତ୍ୟାଦି । ଯାହାହେଉ ଆଜି ସକାଳ ବଢ଼ିଲା ପୂର୍ବରୁ ଜଗୁବାବୁ ଗୋଟିଏ ନିଦଭଙ୍ଗା ଘୋଷଣା କଲେ ଯେ ସେ ଆଜି ଅଫିସକୁ ନଯାଇ ବଡ଼ବାପା ବଡ଼ମାଆଙ୍କୁ କେଉଁଠିକି ହେଲେ ବୁଲେଇ ନେବା ପାଇଁ ଚାହାନ୍ତି । ଚ୍ୟାଲେଞ୍ଜ କଲା ପରି ପଚାରିଲେ—କୁହ, କେଉଁଠିକି ଯିବ । ଗୃନ୍ଦପୁର

ନା ପଞ୍ଚଲିଙ୍ଗେଶ୍ୱର, ନା ଖୀରଚୋରା ଗୋପୀନାଥ···ନା···ଆଖଣ୍ଡଳମଣି···ନା ଆଉ କୁଆଡ଼େ ?

ସେଇଠୁଁ ଟୁକୁନି କହିଲା, "ତୁମେ ସାଙ୍ଗରେ ଥିବ ତ ?"

"ନିଶ୍ଚୟ ।"

"ତା'ହେଲେ ଚାଲ, ଆଖଣ୍ଡଳମଣି···"

ଏଁ ! ଟୁକୁନିର ଧର୍ମଭାବ ଏତେ ଆଗୁଆ ବୋଲି ଜଣା ନଥିଲା କାହାକୁ । ମୁହୂର୍ତ୍ତିକ ପାଇଁ ଜତୁବାବୁଙ୍କର ମନେହେଲା ଯେ ବାଞ୍ଛାନିଧି ବୋଧହୁଏ କିଛି ଗୋଟାଏ ଷଡ଼ଯନ୍ତ୍ର କରିଛି ତା' ମ୍ୟାଡ଼ାମ୍‌ଙ୍କ ସାଙ୍ଗରେ । ହେଲେ ପରେ ପରେ ଗୋଟାଏ ଅଦ୍‌ଭୁତ ସମ୍ଭାବନା ତାଙ୍କ ମନକୁ ଆସିଲା, ଓ ସେ ଠୋ ଠୋ ହୋଇ ହସି ଉଠିଲେ । କହିଲେ, "କ'ଣ କିଛି ଗୋଟାଏ ମାନସିକ କରିଛ ମୋ ପାଇଁ ? ମୋ ମୁଣ୍ଡ ନଣ୍ଡା କରେଇବ ସେଠି ?" କେଜାଣି କାହିଁକି ବୁଦ୍ଧିମତୀ ତାର ଜବାବ୍ ଦେଇ ପାରିଲା ନାହିଁ ଚଟ୍‌କିନି । ଅପରନ୍ତୁ ସେ ଲାଜେଇଗଲା । ସତେକି ସେ ପ୍ରକୃତରେ ଗୋଟିଏ ଗୋପନୀୟ ମାନସିକ କରିଛି ତା' ସ୍ୱାମୀକୁ ନେଇ, ଓ କଥାଟି ଧରା ପଡ଼ିଗଲା । ସୌଦାମିନୀ ଲକ୍ଷ୍ୟ କଲେ ତା'ର ପୁଟୁଳା ଗାଲ କେମିତି ରଙ୍ଗା ପଡ଼ିଯାଉଛି, ଏବଂ ହସିଲେ । ସେଥିରେ କେବଳ ଆମୋଦ ନ ଥିଲା, ମଧ୍ୟ ଥିଲା ଟିକିଏ ବିଦ୍ରୂପ, ନିଜକୁ ନେଇ । ମାନସିକ କଲେ ଯଦି ସତରେ କିଛି ହୋଇଯାଉଥାଆନ୍ତା ! ମୁଁ କେତେ ମିଛିମିଛିକା ମାନସିକ କରି ନଥିଲି କାର୍ତ୍ତିକ ନହେଲେ ଅର୍ଜୁନଙ୍କ ପରି ବରଟିଏ ପାଇବା ପାଇଁ !···

କିନ୍ତୁ ପ୍ରସ୍ତାବଟା ଯେତେବେଳେ ପହୁଞ୍ଚିଲା ଚନ୍ଦ୍ରମଣିବାବୁଙ୍କ ପାଖରେ ତାଙ୍କ ସକାଳ ଚା' ସାଙ୍ଗରେ, ତାଙ୍କ ମନରେ ଗୋଟାଏ ବିଚିତ୍ର ଭାବର ଉଦ୍ରେକ ହେଲା, ବିସ୍ମୟ ସାଙ୍ଗକୁ । ସତେକି ସେମାନେ ତାଙ୍କୁ ଛିଗୁଲେଉଛନ୍ତି । ପ୍ରଥମ କାରଣ ହେଲା ଯେ ଚା' କପ୍‌ଟି ଧରି କରି ଆସିଲା ସେଇ ସାନ୍ତାଳୀ ଝିଅ । ଆଜି ଟୋକୀଟା ଏବେ ବି ହସୁଛି ! ମନେ ହେବ ଯେ ମୋ ଉପରେ ଦୃଷ୍ଟି ପଡ଼ିଲକ୍ଷଣି··· । ତା'ପଛେ ପଛେ ଟୁକୁନି ତା'ର ସ୍ୱାଭାବିକ ହସ ଉଚ୍ଛୁଳେଇ ପ୍ରସ୍ତାବ କଲା—ବଡ଼ା'ପା ମ ! ଶୁଣ । ଚାଲ ଆମ ସାଙ୍ଗରେ ଯିବ ଗୋଟାଏ ଜାଗାକୁ । ପ୍ରସିଦ୍ଧ ଜାଗା । ପ୍ରତ୍ୟକ୍ଷ ଦେବତା । ଆଖଣ୍ଡଳମଣି—କ'ଣ କହୁଛ ?

କଥା ସାଙ୍ଗକୁ ଏତେଗୁଡ଼ାଏ ହସ ନଯୋଡ଼ିଲେ ଚଳନ୍ତା ନାହିଁ ? ତା' ଛଡ଼ା ସେ କ'ଣ ଜାଣେ ନାହିଁ ଯେ ମୋର ଏଇ ଧର୍ମଫର୍ମରେ ବିଶ୍ୱାସ ନାହିଁ ? ଅବଶ୍ୟ ମୁଁ ମନ୍ଦିରକୁ ଯାଏ ଅନ୍ୟମାନଙ୍କ ଗହଣରେ କିନ୍ତୁ ଭାଇଙ୍କ ପରି ଗଳବସ୍ତ୍ର

ହୋଇ ଲମ୍ବି ଯାଏ ନାହିଁ ଠାକୁରଙ୍କ ଆଗରେ···। ଚନ୍ଦ୍ରମଣି ବାବୁ ପ୍ରତ୍ୟାବର ପ୍ରତ୍ୟାଖ୍ୟାନ କରିବାକୁ ଯାଉଥିଲେ, ଅହଙ୍କାର ସହ । କିନ୍ତୁ ହଠାତ୍ ତାଙ୍କର ମନେ ପଡ଼ିଗଲା ଗୋଟିଏ ହାସ୍ୟାସ୍ପଦ କଥା । ପିଲାଦିନର ସ୍ମୃତି, ବୋଉକୁ ନେଇ । ତା' ମାଆପଣିଆ ତଥା ଠାକୁରଭକ୍ତିର ବଢ଼େଇ ।

ଠାକୁର ଦେବତା ଓ ରୋଗବଇରାଗ କଥା ପଡ଼ିଲା ବେଳେ ସେ କହୁଛି କେତେଥର । ବୋଧହୁଏ ବେଶିଭାଗ କହୁଛି ମୁଁ ଯେତେବେଳେ ପାଖରେ ଥାଏ । କୁହେ—"ପୁଅକୁ ସେଇ ବଞ୍ଚେଇ ଦେଲେ । ଆଖଣ୍ଡଳମଣି । ସପନେଇଲେ ମୋତେ, ବୁଢ଼ା ବାହ୍ମଣଟିଏ ହୋଇ । ଫୁଲ ବେଲପତ୍ର ବଢ଼େଇ ଦେଲେ ମୋ ହାତକୁ । ଆଉ କହିଲେ···"

ସୁସ୍ପଷ୍ଟ ହସଟିଏ ହସିଲେ ଚନ୍ଦ୍ରମଣି ବାବୁ । ଏବଂ ବେଶ୍ ଦୃଢ଼ ସ୍ୱରରେ କହିଲେ—'ଓ.କେ. !' ଏଥର ଥିଲା ଟିକୁନର ପାଳି, କାବା ହେବା ପାଇଁ ।

( ୨ )

ବାଟଯାକ ଚନ୍ଦ୍ରମଣି ବାବୁ ଉପଭୋଗ କରୁଥିଲେ ।

ରାସ୍ତାର ତଥାକଥିତ ଦୃଶ୍ୟକୁ ପଛରେ ପକାଇ ଏକ ଅପୂର୍ବ ଅନୁଭବର ଉପଭୋଗ । ଗୋଟାଏ ହାସ୍ୟାସ୍ପଦ ଜିନିଷଠାରୁ ଦୂରେଇ ନଯାଇ ତାକୁ ମିଛିମିଛିକା ଆବୁରିବାର, ସ୍ୱାଗତ ଜଣାଇବାର ମଜା ।···ସତେକି ମୋ ମନ ଉତଳା ହୋଇ ଉଠୁଛି ଆଖଣ୍ଡଳମଣିଙ୍କୁ ଦେଖିବା ପାଇଁ ଯେ ମୋତେ ମୋ ଜୀବନ ଫେରେଇ ଦେଇଥିଲେ ! କୁଆଡ଼େ ଯେତେବେଳେ ମୋ ଟାଇଫଏଡ୍ ରୋଗ ଶେଷସୀମାରେ ପହଞ୍ଚିଥିଲା, ଡାକ୍ତରମାନେ ବ' ଆଶା ଛାଡ଼ି ଦେଇଥିଲେ, ସେତିକିବେଳେ ବୋଉ ମହାଦେବଙ୍କ ଶରଣ ପଶିଲା, ଆଉ ସେଇଠୁଁ ସେ ଆସି ହାଜର୍ ହୋଇଗଲେ ତା' ସ୍ୱପ୍ନରେ । ପୁଣି ବୁଢ଼ା ବ୍ରାହ୍ମଣଟିଏ ହୋଇ । ହେ ଭଗବାନ୍ !

ସେ ତା' ରୋଗିଣା ଛୁଆଟାକୁ ଭଲ ପାଉଥିଲା । ଯେତେକ ଜୀବଜନ୍ତୁ ଯେମିତି ତାଙ୍କ ଛୁଆଙ୍କୁ ଭଲ ପାଆନ୍ତି । କିନ୍ତୁ ମୋତେ ନୁହେଁ । ଜୀବନଯାକ ସେ ପାତର ଅନ୍ତର କରି ଆସିଛି । ବାପା ଯେତେକ ଅନ୍ୟାୟ ବଣ୍ଟନ୍ କଲାବେଳେ ସେ ବାପାଙ୍କ କଥାରେ ହଁ ଭରୁଛି କିନ୍ତୁ ଭାଇଙ୍କ କ୍ଷତି ହେବାର ବାସ୍ନା ଟିକେ ପାଇଲାକ୍ଷଣି ସେ କେଁ କେଁ ହୋଇ ଲଢ଼େଇ କରି ବସେ । ବାପା ତାକୁ ମିନଟିକରେ ଦବେଇ ଦିଅନ୍ତି ସେ କଥା ଭିନ୍ନ । ଖାଲି ମୋତେ ନୁହେଁ, ମୋ ପିଲାଙ୍କୁ ବି···ଚନ୍ଦ୍ରମଣିବାବୁଙ୍କ ଆଖି ଆଗରେ ନାଚିଗଲା କେମିତି ଏଇ ଟିକୁନି ତା' ଜେଜେମାକୁ ହଲପଟା କରୁଥିଲା

ଫିଙ୍ଗିଦିଅନ୍ତେ, ହେଲେ ସେ ତା'ର ସବୁ ଅତ୍ୟାଗ୍ରହ ସତ୍ତ୍ୱେ ଥିଲା, ଆଉ ମିଠାଟିଏ ଧରି ଖା' ଖା' ବୋଲି ଗୋଡ଼ାଉଥିଲା ତା' ପଛରେ । କିନ୍ତୁ ସେଭଳି କୌଣସି ଦୃଶ୍ୟ ମନେ ପଡ଼ୁନି ନାହିଁ ତାଙ୍କ ପୁଅ ରାଜେନ୍ଦ୍ର କି ଝିଅ ସାମାକୁ ନେଇ, ଯେତେବେଳେ ସେମାନେ ପିଲା ହୋଇଥିଲେ ।

ସେ ବି' ମୋ ପ୍ରତି ଅନ୍ୟାୟ କରୁଛି, ଆଉ ସମସ୍ତଙ୍କ ପରି ପୂର୍ଣ୍ଣଚ୍ଛେଦ ।

ହେଲେ ଏଇ କାର୍‌ଟା ଦୌଡ଼ୁଛି ମଣିଙ୍କ ପାଖରେ ପହଞ୍ଚିବ ବୋଲି, ସତେକି ମୋର ତର ସହୁନାହିଁ ତାଙ୍କୁ ଦେଖିବା ପାଇଁ ।

ତାଙ୍କ ସାଙ୍ଗରେ ଦେଖା ହେଲେ ମୁଁ ପ୍ରଥମେ କ'ଣ ପଚାରିବି ଜାଣିଛ ? ପଚାରିବି ଯେ ଭୋଳାନାଥ, କେଉଁଥିପାଇଁ ମୋତେ ବଞ୍ଚେଇ ଦେଲ କହିଲ ଦେଖି ? ତୁମର ଉଦ୍ଦେଶ୍ୟ ମିଳୁଛି ତ ମୋର ଏଇ ପଚାଶ ବର୍ଷିଆ ଚେହେରା ଅର୍ଥାତ୍ ବ୍ୟକ୍ତିତ୍ୱ ସାଙ୍ଗରେ ? ତା'ର ସ୍ଥିତି, କୃତି ଓ ମାନମର୍ଯ୍ୟାଦା ସାଙ୍ଗରେ ?

ଜଡୁବାବୁ ଓ ଝୁଲୁନ କ'ଣ ଗଡ଼ାଗଡ଼ି ହେଉଥିଲେ ପରସ୍ପରକୁ । ତେଣୁ ଚନ୍ଦ୍ରମଣିବାବୁ ଯେତେବେଳେ ମଣିଙ୍କୁ ଚଢ଼େଇଲା ପରି ଏଇ ପ୍ରଶ୍ନଟିକୁ ପଚାରିଲେ, ଏବଂ ମୁରୁକି ହସାଟିଏ ଦେଲେ, ତାଙ୍କ ସୁଖବୋଧ ବେଶ୍ ପ୍ରାସଙ୍ଗିକ ମନେ ହେଲା ସହଯାତ୍ରୀମାନଙ୍କୁ । ଅଧିକନ୍ତୁ ଜଡୁବାବୁ ନିଜକୁ ପୁଣି ଏବଂ ପ୍ରମାଣବନ୍ତ ଧନ୍ୟବାଦ ଦେଲେ ଯେ ତାଙ୍କରି ଯୋଗୁଁ ବଡବାପାଙ୍କ ମୁଖମଣ୍ଡଳରେ ଆଜି ଏଇ ସୂର୍ଯ୍ୟାଲୋକ ।

ଉଦ୍ଦେଶ୍ୟ ମିଳିବ ନାହିଁ ? କାହିଁକି ମିଳିବ ନାହିଁ ? କେଉଁଥିରେ ମିଳିବ ନାହିଁ ? ମୁଁ ବି' ଜଣେ ଗ୍ରାଜୁଏଟ୍ । ମୁଁ ବି' ଟଙ୍କା ରୋଜଗାର କରୁଛି । ଭାଇଭଉଣୀଙ୍କ ପରି ଅଏସ୍ କରି ନାହିଁ, ଘୁରି ଚଉକିରେ ବସି ହୁକୁମ୍ ଦେଇ ନାହିଁ, କି ବିଦେଶର କୌଣସି ନାଇଟ୍‌କ୍ଲବ୍‌ରେ ବସି···ଗୁଡ । କିନ୍ତୁ ମୁଁ ଯାହା ହୋଇଛି ନିଜ ଚେଷ୍ଟାରେ ହୋଇଛି । କଳା ଧନ କରି ନାହିଁ କି କାହାରି ଅନୁଗ୍ରହକୁ ଅପେକ୍ଷା କରି ନାହିଁ । ସେଇ କେନ୍ଦ୍ରାପଡ଼ାରେ ପଡ଼ି ରହିଛି ହେଲେ ମୁଁ ବି' କୋଠାଖଣ୍ଡେ କରିଛି, ପିଲାଙ୍କୁ ମଣିଷ କରିଛି । ଆଉ କେହି କହିବ ନାହିଁ ଯେ ମୁଁ ବାପାଙ୍କ ଅଯୋଗ୍ୟ ପୁଅ । ଅନ୍ତତଃ ତାଙ୍କଠାରୁ ଭଲ ପୋଜିସନ୍ ପାଇଛି ମୋ ଜୀବନରେ । ମ୍ୟୁନିସିପାଲିଟିର ଜଣେ ବଡ଼ବାବୁ କୋଉ ଗୁମାସ୍ତାଠାରୁ ଶହଗୁଣରେ ଭଲ···

ଧାତ୍, ମୁଁ ମିଛୁଟାରେ କାହିଁକି କହୁଛି ଏତେ କଥା, ସଫେଇ ଦେଉଛି ପରି ? ସୂର୍ଯ୍ୟାଲୋକ ସ୍ତିମିତ ହୋଇଗଲା କ୍ଷଣକ ପାଇଁ, ହେଲେ ତା'କୁ କେହି ଲକ୍ଷ୍ୟ କରି ପାରିଲେ ନାହିଁ କାହିଁକିନା ତାହା ତତ୍‌କ୍ଷଣାତ୍ ଫେରି ଆସିଲା । ଦ୍ୱିଗୁଣ ଜ୍ୟୋତି ନେଇ ।

ଦ୍ୱିଗୁଣ ଜ୍ୟୋତି ଅସିଲା ଦର୍ପଣରୁ । ଅର୍ଥାତ୍ ତାଙ୍କର ମନେ ପଡ଼ିଲା ଆଜି ସକାଳେ ସେ ଯେଉଁ ପ୍ରତିଛବି ଦେଖିଥିଲେ, ଝୁଲୁନ ଘରେ ଥିବା ପୁରୁ-ଚେହେରା ଦର୍ପଣରେ । ମାନାମ ଆରମ୍ଭରେ । ମନେ ହେଲା ଯେ ଏଇ ପୁରୁ ଚେହେରା (ମୁହଁଖଣ୍ଡିକ ସବୁକିଛି ନୁହେଁ) ବେଶ୍ ଆଖିଦୁରୁଶିଆ । ଆଉ ସେମିତି କିଛି ବୁଢ଼ା ହୋଇ ନାହିଁ । କିନ୍ତୁ ବୁଢ଼ା ନ ହୋଇଥିବାର ଲକ୍ଷଣଗୁଡ଼ିକ କଅଣ ବୋଲି ସେ ଧରି ପାରି ନଥିଲେ ।

ମଣି ଦେଖନ୍ତୁ ମୋତେ, ଦେଖିଲେ ଅବଶ୍ୟ ଖୁସି ହେବେ । ସେ ବୋହରେଇ ହେଲେ ମନେ ମନେ ।

ଜାତୁବାବୁ ଲକ୍ଷ୍ୟ କଲେ ଯେ ସୂର୍ଯ୍ୟାଲୋକ ଲାଗି ରହିଛି ବଡ଼ବାପାଙ୍କ ମୁହଁରେ । ବାଃ ! ସେ ନିଜକୁ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ମଧ୍ୟ ଧନ୍ୟବାଦ ଜଣାଇଲେ ରାସ୍ତାକଡ଼ର ବିଭିନ୍ନ ଦୃଶ୍ୟ ଓ ଘଟଣାକୁ । ଯଥା ଜୈଅନ୍ତା କୁଲୁଡ଼ା-ମାନଙ୍କୁ ହାତରେ ଝୁଲେଇ ଧରାପରା ହୋଇ ଯାଉଥିବାର ଓ ବକବାର ଦୃଶ୍ୟ, କେଉଁ ବିଦ୍ୟାଳୟକୁ ମହାବିଦ୍ୟାଳୟ କରିବା ଅଭିପ୍ରାୟରେ କାର୍କୁ ଘେରାଉ କରି ଚାନ୍ଦା ଆଦାୟ କରିବାର ଘଟଣା, ଏକାଧିକ ଦଦରା କାଠ ପୋଲମାନଙ୍କ ଉପରେ ଗଡି କରିବାର ମରଣାନ୍ତକ ମଜା, ବିଶେଷତଃ ଯେତେବେଳେ ଆଖିରେ ପଡ଼େ ଯେ ପ୍ରତ୍ୟେକ ଜାଗାରେ ନୂଆ ପୋଲର ଶିଳାନ୍ୟାସ କରିଛନ୍ତି ଖୋଦ୍ ମୁଖ୍ୟମନ୍ତ୍ରୀ ପ୍ରାୟ ଦୁ' ବର୍ଷ ତଳେ (ଏଇଠି ଫାଜିଲ୍ ଝୁଲୁନ ଟିପ୍ପଣୀ ଦେଲା ଯେ ମୁଖ୍ୟମନ୍ତ୍ରୀଙ୍କ ଆସ୍ଥାନ ବି' ତ ଦଦରା ହେବାକୁ ବସିଲାଣି) ଇତ୍ୟାଦି । କିନ୍ତୁ କେମିତି ଜାଣିବ ଯେ ଏଇ ଆଲୁଅ ଗୋଟାଏ ପ୍ରଚ୍ଛନ୍ନ ଏବଂ ଅନ୍ତରଙ୍ଗ (ହେଲେ ଏବେ କୃତ୍ରିମ) ଆବେଗର ପରି-ପ୍ରକାଶ ? ଯେ ସେ ମିଛିମିଛିକା ଧାଉଁଛନ୍ତି ଜଣକୁ ଦେଖିବାକୁ ଯେ ତାଙ୍କୁ ତାଙ୍କ ଜୀବନ ଫେରାଇ ଦେଇଥିଲେ ଚାଳିଶ କି ପଇଁଚାଳିଶ ବର୍ଷ ତଳେ ? ଧାଉଁଛନ୍ତି ତାଙ୍କୁ କହିବାକୁ ଯେ ଧନ୍ୟବାଦ, ଯାହା କରିଛ ଭଲ କରିଛ, ଅନେକ ଧନ୍ୟବାଦ···?

ହୁଏତ ଆମେ ଦୁହେଁ ଟିକିଏ ଗୋପନୀୟ କଥାଭାଷା ହେବା ଏଇ ଜୀବନଟା ବିଷୟରେ । କେହି ତା'ର ଟେର୍ ପାଇବେ ନାହିଁ । କି'ଣ କହୁଛ ମଣିମା ? ଚନ୍ଦ୍ରମଣିବାବୁ କ୍ଲୁରୁଳ ଖାଇଲେ । ଏବଂ ଗୋଟାଏ ପ୍ରାକ୍ଟିକାଲ୍ ଦୁଃଖ କଲେ । ତୁମେ ତ କୋଉ ମୂର୍ତ୍ତି ନୁହଁ; ଶିବଲିଙ୍ଗଟିଏ । ମୋତେ ଦେଖିଲାରୁ ଖୁସି ହେଲ, କାନ୍ଦ କାନ୍ଦ ହେଲ, କି କୌଣସି କାରଣରୁ ଚଡ଼ି ଉଠିଲ, ମୁଁ ସେକଥା ଜାଣିବି କେମିତି ?

ଦୁ'ପହର ଖରାରେ ଏବଂ ଉପରୋକ୍ତ ପୋଲ ତଥା ଅାବୁଡ଼ାଖାବୁଡ଼ା ରାସ୍ତାରେ ଧକଡ଼ତକଡ଼ ହୋଇ, ଯଥାକ୍ରମେ···ଆଖଣ୍ଡଲମଣି ! ଥକା ଲାଗୁଛି ? ନାହିଁ, ନାହିଁ

ତ । ଚନ୍ଦ୍ରମଣିବାବୁ ସେମାନଙ୍କ ସହାନୁଭୂତିସୂଚକ ପ୍ରଶ୍ନରେ ମୁଣ୍ଡ ହଲେଇଲେ । ଲୋକ-ଗହଳି, ଧୂଳି କାଦୁଅ, ଧେଡ଼ କୁକୁର, ଗଣଗଣିଆ ମାଛି ତଥା ପଣ୍ଡାମାନଙ୍କର ଦୌରାତ୍ମ୍ୟ ମଧ୍ୟ ତାଙ୍କୁ ବିଶେଷ ବିଚଳିତ କଲପରି ମନେ ହେଲା ନାହିଁ । କେବଳ ଗୋଟିଏ ଜିନିଷ ଲକ୍ଷ୍ୟ କରିବା କଥା ଯେ ସେ ଭିତରେ ଭିତରେ ହେଉଥିଲେ । 'ଗୃହ ମ, ସେତିକ ବେଗ ଯଥେଷ୍ଟ', 'କ'ଣ ପୋଖରୀକୁ ଯିବାକୁ ଘଡ଼ିକ ଘୋଡ଼ ଧୋଇବା ପାଇଁ ?' 'ପଣ୍ଡା ହାତରେ ମୋଟ ଟଙ୍କା ଧରେଇ ଦେଲେ ଚଳିବ ନାହିଁ ?'...ଏହି ପ୍ରକାର ଅନଭିଜ୍ଞ ପ୍ରଶ୍ନରେ ସହଯାତ୍ରୀମାନଙ୍କୁ ବିସ୍ମିତ, ଏବଂ ବେଳେବେଳେ ଈଷତ୍ ବିରକ୍ତ କରି ଦେଉଥିଲେ । କିନ୍ତୁ ତା'ଙ୍କ ଧୈର୍ଯ୍ୟ ଧରିବାକୁ ପଡ଼ିଲା । କାରଣ ଟୁକୁନିର ପ୍ରକୃତରେ ମାନସିକ ଥିଲା, ଏବଂ ସେଥିପାଇଁ ବ୍ୟାପକ ଆୟୋଜନ କରିବାକୁ ପଡ଼ିଲା, ଠାକୁର ଦର୍ଶନ ପୂର୍ବରୁ ।

ଅଗତ୍ୟା ସେ ସେମାନଙ୍କଠାରୁ ବିଚ୍ଛିନ୍ନ ହୋଇ ମନ୍ଦିର ବେଢ଼ାରେ ବୁଲି ବୁଲୁଥିଲେ । ବିଭିନ୍ନ ତୀର୍ଥଯାତ୍ରୀମାନଙ୍କର କଥାଭାଷାକୁ କାନଉଥିଲେ । ଜଣେ ତା'ର ସ୍ତ୍ରୀ କି ଆଉ କେଉଁ ସମ୍ପର୍କୀୟାକୁ କହୁଛି—ତୁ କ'ଣ ଭାବୁଛୁ ଖାଲି ତୋତେ ହିଁ ନିସ୍ତା ମଡ଼ଉଛି ? ତୋର ଭକ୍ତି ଉଛୁଳୁଛି ? ଆଉ ମୋର ନୁହେଁ ? ଚନ୍ଦ୍ରମଣିବାବୁଙ୍କର ମନ ହେଲା ଏଇ ରହସ୍ୟର ଗଭୀରକୁ ଯିବେ । ଏବଂ ଅନୁମତିପୂର୍ବକ ତାଙ୍କ ପ୍ରତିଯୋଗିତାର ରେଫରି ହେବେ । ଯେହେତୁ ତାଙ୍କ କଉତୁକିଆ ଭକ୍ତି, ଯଦି ତା'କୁ ଭକ୍ତି କୁହାଯାଏ, ଭିନ୍ନ ଧାତୁରେ ଗଢ଼ା ।

ଏହି ସମୟରେ ହଠାତ୍ ସେ ତାଙ୍କ ପିଠିରେ ଏକ ବିରାଟ ଚପେଟାଘାତର ଆହ୍ୱାନ ଅନୁଭବ କଲେ । ଏବଂ ଶୁଣିବାକୁ ପାଇଲେ ଏକ ଉଚ୍ଚ ଉଚ୍ଛ୍ୱସିତ ଅଭିବାଦନ—

"ଚନ୍ଦ୍ରମଣି ! ଚନ୍ଦ୍ର ! ଚନ୍ଦ୍ରୁଲାଲ୍ !!"

ପଞ୍ଚ ଦାଢ଼ି ବିଶିଷ୍ଟ ହୃଷ୍ଟପୁଷ୍ଟ ଲୋକଟାଏ କହି ଚାଲିଛି—

"ମୁଁ ସେତେବେଳଠୁଁ ଲକ୍ଷ୍ୟ କରୁଛି ତୋତେ । ଭାବୁଛି—ଇଏ କ'ଣ ସେଇ ? ଏତେ ବୁଢ଼ା ହୋଇଗଲଣି ? ଅବଶ୍ୟ କୋଉ ଯୁଗର କଥା । ତା'ପରେ ଠିକ୍ କଲି ଯେ ହ୍ୟାପି ଚନ୍ଦ୍ର ଛଡ଼ା ଆଉ କେହି ହୋଇପାରେ ନାହିଁ । ସେଇ ଲମ୍ବା ଚେହେରା, ଆଖିରେ ସେଇ ତେଜ, ଅଉ ହାତ ଖୁଜୁବୁଜୁ ହେଉଛି—ଭଲିବଲ୍‌କୁ ହାତେଇବ, ବାଜା ବଜେଇବ, କି ଆଉ କ'ଣ କରିବ ...ହିଃ ହିଃ..."

ଚନ୍ଦ୍ରମଣିବାବୁ ତା'କୁ ଜଳଜଳ ହୋଇ ଚାହିଁ ରହିଲେ । କିଛି ମନେ ପଡ଼ୁନାହିଁ । କିନ୍ତୁ ସନ୍ଦେହ ନାହିଁ ଯେ ଇଏ ମୋ ସାଙ୍ଗ । ବୋଧହୁଏ ନୂଆ ନୂଆ

କଲେଜରେ ଜଏନ୍ କରିଥିଲାବେଳେ । ମନେପଡ଼ୁନାହିଁ ସିନା, ତାଙ୍କୁ କୁଣ୍ଢେଇ ପକେଇବାକୁ ଇଚ୍ଛା ହେଉଛି ··

( ମୁଁ କହୁ ନଥିଲି ? ଦର୍ପଣରେ ମୋର ସେଇ ପୂରା ଚେହେରାଟାକୁ ଦେଖିଲାକ୍ଷଣି ଭଲ ଲାଗିଲା । ପ୍ରକୃତରେ ମୋର ଚେହେରା ଖାଡ଼ମତ ଲମ୍ବା ନୁହେଁ କି ? ଫ୍ୟାମିଲିରେ ସବୁଠୁଁ ଲମ୍ବା । ପୁଣି ଏତେ ବୟସ ହେଲାଣି, ହେଲେ ପେଟ ବ' ବାହାରି ନାହିଁ ସେମିତି କିଛି )

"ଆରେ ଭୂତ ଦେଖିଲା ପରି ଏମିତି ଅନେଇଛୁ କ'ଣ ମ ? ଚିହ୍ନିପାରୁ ନାହୁଁ ମୁଁ କିଏ ?"

କିନ୍ତୁ ଚନ୍ଦ୍ରମଣିବାବୁ ତଥାପି ଅନେଇ ରହିଥିଲେ । ଏବଂ ତାଙ୍କ ହସିଲା ମୁହଁ ଏକାଧାରରେ ଅନୁରାଗୀ ଏବଂ ତେଜସ୍ୱୀ ଦିଶୁଥିଲା । ହଠାତ୍ ପୁଳାଏ କ'ଣ ପାଇଲା ପରି, ଏବଂ ଆହୁରି ପୁଳାଏ ପାଇବ ବୋଲି ।

(କହିଲି—ଆଖିରେ ସେଇ ତେଜ । ସାଙ୍ଗ ବୋଲି ସିନା ସେ ତା'କୁ ସାଙ୍ଗେ ସାଙ୍ଗେ ଚିହ୍ନି ପକେଇଲି ! ଯେତେ ବୁଢ଼ା ହେଲେ ବି ଆଖି ଗହ୍ୱରର ଜିକିଜିକି, ଅଙ୍ଗାର ତଳର ନିଆଁଟାକୁ ଦେଖିପାରିଲି ।···ରହ, ରହ, ତୁ କିଏ ବୋଲି କହ ନାହିଁ । ତୋ ନାଆଁ ଯାହା ହେଉ ଯାଏଆସେ ନାହିଁ । ଅସଲ କଥା ହେଉଛି ଯେ ତୁ ମୋ ସାଙ୍ଗ, ସେ ବେଳର ସାଙ୍ଗ, ସେଇ ହେଉଛି ମୋ ସତବେଳ)

"ମନେ ପକା । ସୁଭାସ ହଷ୍ଟେଲ୍ । ଜାଲିଆ ଜଗଦୀଶ୍ । ମାଇଚିଆ ମଣ୍ଟୁ । ଡ୍ୟାସ୍ ଗୋବିନ୍ଦ···ହିଁଃ ହିଁଃ···ଆଉ ତୁ ହେଲୁ ଚଗଲା ଚନ୍ଦ୍ରୁ । ଆରେ, କୋଉ ଯାଏ ଗଲୁ ତୋର ଏଇ ହାତ ଦି'ଟାକୁ ନେଇ ? ବ୍ୟାଡ଼୍‌ମିଣ୍ଟନ୍, ଭଲିବଲ୍, ଗିଟାର୍—ସେଇଠୁଁ ? ସେଇଠୁଁ କ'ଣ ଧରିଲୁ ? କେତେ ଦୂରକୁ ଗଲୁ ?···"

( ମୁଁ ଗିଟାର୍ ବଜଉ ନଥିଲି । ବେଳେବେଳେ ତବଲା ବଜଉଥିଲି । କିନ୍ତୁ ବଢ଼ିଆ ଗୀତ ବୋଲୁଥିଲି । ଏତକ ଭୁଲ୍ ହୋଇଗଲା ବନ୍ଧୁର । କିନ୍ତୁ ବାକି ସବୁ ଠିକ୍ । ପୂରାପୂରି ଠିକ୍ । ତା'ଛଡ଼ା କିଏ ଭଲିବଲ ଖେଳୁ କି ଫୁଟ୍‌ବଲ୍, ସେ ହେଉଛି ଖେଳୁଆଡ଼୍ । କଣ୍ଠସଙ୍ଗୀତ ହେଉ କି ବାଦ୍ୟସଙ୍ଗୀତ, ତା'କୁ ଯେ ବାଡ଼ି ଦେଇ ପାରେ ଅନ୍ୟମାନଙ୍କ ଆଗରେ, ସେ ହେଉଛି କଳାକାର )

"ମୋ ନାଆଁ ହେଉଛି ପ୍ରମୋଦ ଖୁଣ୍ଟିଆ, ଚିହ୍ନିଲୁ ଏଥର ? ପାଗଳା ପ୍ରମୋଦ, ସ୍ୟାପନେଟ୍ ପ୍ରମୋଦ—ହୋଃ-ହୋଃ-ହୋ···ଶୁଣ୍, ତୁ କୋଉଠି ଅଛୁ

କହିଲୁ ?···ବାଲେଶ୍ୱର ? ଠିକଣାଟା ଦେ’, ମୁଁ ବି ଯାଉଛି ସେଠିକି । ଯିବି ତୋ ଝିଆସ୍ତ ଘରକୁ, ଆମ ସ୍ତ୍ରୀଙ୍କୁ ବି ନେଇ କରି ଯିବି।···ବଟ୍ ଆଇ ହାଭ୍ ଟୁ ଗୋ ନାଓ, ଗୋଟାଏ ଜରୁରୀ କାମ ଅଛି···

(ନା-ନା-ପ୍ଲିଜ୍, ତୁ ଗୁଲଯାଆ ନାହିଁ ଏତେ ଜଲ୍‌ଦି । ଅନେକ କଥା କହିବାର ଅଛି ତୋ ସାଙ୍ଗରେ । ସେବେଲର କଥା । ତଥାପି ମନେ ପଡ଼ୁନାହିଁ ତୁ କିଏ, ହେଲେ ତୁ ଯାହା କହୁଛୁ ସବୁ ସତ, ଷୋଳଅଣା ସତ । ଚେହେରାରୁ ଆରମ୍ଭ କରି ଆଖିର ତେଜ ଯାଏଁ, ଖୁଜୁବୁଜୁ ହାତର କର୍ମମତ ଯାଏ · ମନେ ଅଛି ନା ପ୍ରମୋଦ, ବର୍ଣ୍ଣନଙ୍କ ଇକନମିକ୍ସ ଟିଉଟୋରିଆଲରେ ମୁଁ ଯେଉଁ ନୂଆ ତଥ୍ୟ ବାଢ଼ିଲି ସ୍ୱାଧୀନ ମାର୍କେଟ୍‌ର ମତଗତ ଉପରେ, ଆଉ ବର୍ଣ୍ଣନ୍ ସାହେବ ହସି ହସି କହିଲେ ଯେ ଇଏ ଗୋଟାଏ ଜବର୍‌ଦସ୍ତ ଥିଓରି, କହିଲେ ମୁଁ ଗୋଟାଏ ଇକନମିଷ୍ଟ ହେବି ବଡ଼ ହେଲେ···ଆଉ···ଆଉ ମନେ ଅଛି ମୀରା କଥା, ଯେ ଉପରେ ପଡ଼ି ମୋ ସାଙ୍ଗରେ ହାତ ମିଳେଇଲା, କେଉଁଦିନ ଆମ ଭଲିବଲ୍ ଟିମ୍ ଚାମ୍ପିଅନ୍ ହେଲା··· ଆଉ···)

ଚନ୍ଦ୍ରମଣିବାବୁ ଅଚାନକ, ହେଲେ ନିଷ୍ଠାରେ ଜଣେ ବନ୍ଧୁକୁ ଏଇସବୁ କଥା ଏବଂ ଆହୁରି କେତେ କଥା ପଚାରିବେ ବୋଲି ଆତୁର ହେଲେ । ସେହେତୁ ତା’ର ହାତକୁ ମୁଠେଇ ଧରିଲେ । କିନ୍ତୁ ବନ୍ଧୁ ଅଟକି ରହି ପାରିଲା ନାହିଁ ।

ଝଡ଼ ପରି ଆସିଥିଲା । ଗୁଲିଗଲା କୁଆଡ଼େ । ହେଲେ ତା’ର ଫେରନ୍ତା ପଥକୁ ଅନାଇ ଅନାଇ ଚନ୍ଦ୍ରମଣିବାବୁଙ୍କ ଦେହ ରୋମାଞ୍ଚିତ ହେଲା । ସତେକି ଦେବଦୂତ ଜଣେ ଆସିଥିଲା । ଅନନ୍ୟ ଅନୁଭବର ଦୂତ । ଆସିଥିଲା ମୋତେ କିଛି ଗୋଟାଏ କହିଯିବ ବୋଲି । ମନେ ପକେଇ ଦେବ, ଚେତେଇ ଦେବ, ଯେ ଏଇ ଥିଲା ତୋର ସତ, ତୋର ପ୍ରବଣତା, ସମ୍ଭାବନା । ଏବେ ମଧ୍ୟ ଅଛି ।

( ୩ )

ସେଦିନ ଚନ୍ଦ୍ରମଣିବାବୁଙ୍କ ନବକଳେବର ଏଭଳି ଅପୂର୍ବ ରୂପ ଧାରଣ କଲା, ବିଶେଷତଃ ମଣିଙ୍କ ପାଖରୁ ଫେରିଲା ପରେ, ଯେ ସେମାନେ ସେ ବିଷୟରେ କୁହାକୁହି ହେଲେ । ବିନୟରେ ଜଟୁବାବୁ କହିଲେ ନାହିଁ ଯେ ଇଏ ତାଙ୍କର କ୍ରେଡିଟ, କିନ୍ତୁ ତାଙ୍କ ଗୁହ ଆହୁରି କୁଣ୍ଠେମୋଟ ହୋଇଗଲା । ସୌଦାମିନୀ କହିଲେ—ନାଇଁ ମ, ସେମିତି କିଛି ନୁହେଁ । ଏତେଦିନ ପରେ ଗୋଟାଏ ଆଉଟିଂ, ବିଶେଷତଃ 'ଟୋକା-ଟୋକିଙ୍କ ସାଙ୍ଗରେ (ସହାଦ୍ୟ ଆଖିମିଟିକା) ତା’ର କିଛି ଗୋଟାଏ ପ୍ରଭାବ ପଡ଼ିବ

ପଢ଼ିବନାହିଁ ବାବୁଙ୍କ ଉପରେ ? କିନ୍ତୁ ଟିକିନି ବାରମ୍ବାର ସେଇ ଗୋଟିଏ ପଦ କହି ଚାଲିଥାଏ—ମଣିଙ୍କ ମହିମା !

ସମସ୍ତେ ଦେଖିଲେ ତାଙ୍କର ଏଇ ଅଭିନବ ଶୁକ୍ଳପକ୍ଷର ବିକାଶ । କିନ୍ତୁ କେହି ଜାଣିପାରିଲେ ନାହିଁ ସେ କେମିତି ବିକଳ ହେଉଛନ୍ତି ଚନ୍ଦ୍ରକଳାଟିକୁ ଧରି ରଖିବା ପାଇଁ, ତା'କୁ ବଢ଼େଇବା ପାଇଁ । ଉତ୍ତରୋତ୍ତର, ଏବଂ ପୁରାପୁରି ହାସଲ କରିବା ପାଇଁ ସେଇ ସ୍ମୃତିର ସତକଥାମାନଙ୍କୁ, ପ୍ରବଣତାମାନଙ୍କୁ, ଯାହା ପ୍ୟାସ୍‌ନେଟ୍ ପ୍ରମୋଦ ଚହଟେଇ ଦେଇ ଗଲା । ବର୍ଷ୍ଟା ତ ପଳେଇଗଲା । ବାଲେଶ୍ୱରରେ ବି ତା'ର ଦେଖାଦର୍ଶନ ନାହିଁ । ଆଉ କାହାକୁ ପଚାରି ହେବ ? ମୋ ପ୍ରଶ୍ନ ଗୋପନୀୟ, ଖାଲି ସେଥିପାଇଁ ନୁହେଁ । କିଏ ଅଛି ମୋର ସେଇ ସତବେଳର ମଣିଷ ? ଏମାନେ ତ ଆସିଛନ୍ତି କାହିଁ କେତେ ପଛରେ !

କେବଳ ମଣି । ମୁଁ ତାଙ୍କୁ ପଚାରିଥିଲି ସେଦିନ । କିନ୍ତୁ ସେ ଖାଲି ମୁରୁକି ମୁରୁକି ହସିଲା ପରି ଲାଗିଲେ । ଲଙ୍ଗର ଆଖି ମୁହଁ ନାହିଁ ବୋଲି କିଏ କହୁଛି ମ ? ଚନ୍ଦନ ପ୍ରଲେପର ସେଇ ଝିଧାରୀ, ତା'ର ବ୍ୟଞ୍ଜନା କିଛି କମ୍ ନୁହେଁ । କିନ୍ତୁ ଅରମାନ ମେଣ୍ଟିଲା ନାହିଁ । ସେ ଖାଲି ମୋତେ ଉତ୍ସାହିତ କଲେ । ପରିଷ୍କାର ଖୁଲାସା କହିଲେ ନାହିଁ । ଯେ କେଉଁଠି କେମିତି ତାଙ୍କର ହଜିଆ ଜୀବନଟାକୁ ପୁଣି ମୁଠେଇ ଧରି ପାରିବି, ଛିଅ ଧରି ପାରିବି, ମୋର ସେଇ ସୁବର୍ଣ୍ଣ ଯୁଗର ।

କିଛି କ୍ଷତି ନାହିଁ । ମୁଁ ପାରିବି ।

କିନ୍ତୁ···କିନ୍ତୁ···ଦିନ ପରେ ଦିନ ବିତିଗଲା । ଏବଂ କ୍ରମଶଃ ତାଙ୍କ ମନରେ ଗୋଟାଏ ଅହେତୁକ ଭୟ ଆସିଲା । ଧର ଏଇ ଜନ୍ମଦାନ କଥାଟା ମୂଳରୁ ମିଛ. ଆମ ବୋଉର କିଛିକ୍ କଳ୍ପନା···କି ହୁଏତ ମୁଁ ଭୁଲ୍ ଶୁଣିଛି···

ଶେଷୁ କେନ୍ଦ୍ରାପଡ଼ାରେ ପହଞ୍ଚି ନପହଞ୍ଚୁଣୁ ସେ ଗୋଟାଏ ଅତି ଅସ୍ୱାଭାବିକ କାମ କଲେ । ପ୍ରଥମେ ଗଲେ ତାଙ୍କ ପୈତୃକ ଘରେ ଏକୁଟିଆ ରହିଥିବା ବୋଉଙ୍କ ପାଖକୁ । ଯେଉଁଠିକି ସେ କ୍ୱଚିତ୍ ଯାଆନ୍ତି, ଯାହାଙ୍କ ସାଙ୍ଗରେ ସେ କ୍ୱଚିତ୍ କିଛି ଆଳାପ କରନ୍ତି । (ସେ ଯୁଆଡ଼େ ଦୂରରେ ଥାଇ ମଉଜ କରିବେ ବୋଲି ମୋର ମୁଣ୍ଡରେ ଟୀକା ଛୁଡ଼ୁଛି ?) ଏବଂ ସିଧାସଳଖ ଘୋଷଣା କଲେ—ଜାଣିଛୁ ବୋଉ, ମୁଁ ଯାଇଥିଲି ଆଖଣ୍ଡଳମଣିଙ୍କ ପାଖକୁ । ଆଶା କଲେ ଯେ ବୋଉ ନିଜେ କହି ବସିବ, ନିଜ ଆଡ଼ୁ ।

କିନ୍ତୁ ନୀରବତା ।

ପୁଣି ନୀରବତା ।

କ'ଣ ହେଲା ? ତା'ହେଲେ କ'ଣ ସବୁ ମିଛ, ସବୁ ଭୁଲ୍, ମୂଳରୁ ଶେଷ ଯାଏ ?

ଅବଶେଷରେ ସେ ଆଉ ଧୈର୍ଯ୍ୟ ଧରି ପାରିଲେ ନାହିଁ । ପଚାରି ଉଠିଲେ, "ବୋଉ, ମଣି କ'ଣ ତୋତେ ସତରେ ସପନେଇଥିଲେ ?"

"ଏଁ ?"

ବୁଢ଼ୀଙ୍କର ବୁଝିବାକୁ ସମୟ ଲାଗିଲା । କିନ୍ତୁ ବୁଝିଲା ପରେ ସେ ଯେତେବେଳେ ହସିଲେ, ଏକ ବିସ୍ମୃତ ପାକୁଆ ପାଟିର ହସ, ତା'ର ମୌଳିକ ଉପାଦାନ ହେଲା—ମୋର ଏଇ ପୁଅଟା ଏତେ ସନ୍ଦେହୀ କାହିଁକି ?

ସେଇଠୁଁ ସେ ଆରମ୍ଭ କଲେ । ଗୋଟାଏ ବିରାଟ ମହାଭାରତ ସୁରୁ କଲାପରି—"ତତେ ସେତେବେଳେ ଛଅ ପୂରି ସାତ । ଦୁବଳିଆ ପିଲାଟା । ସବୁବେଳେ ବେମାର ପଡ଼ୁଥିଲୁ । ସେଥିରେ ପୁଣି ହେଲା ଟାଇଫଏଡ୍...."

ଅନେକ ସମୟଯାଏଁ ଗୁଡ଼ାଇଲା ସେଇ କାହାଣୀର ଅପ୍ରତିହତ ସୂଅ । ହେଲେ ଚନ୍ଦ୍ରମଣିବାବୁ ବସି ରହିଲେ । ଏବଂ ତା'ଙ୍କୁ ପିଇଗଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ କିଛି ସମୟ ପରେ ସୌଦାମିନୀ, ଓ ତାଙ୍କ ପଛେ ପଛେ ଟୁକୁନ—ଯେ ଆସିଥିଲା ଜେଜେମାଙ୍କ ପାଖରେ କିଛିଦିନ ରହିବ ବୋଲି—ଏବଂ ଅନ୍ୟ କେତେକ ଜ୍ଞାତି କୁଟୁମ୍ବ ଆସି ପହଞ୍ଚିଲେ । ତେଣୁ ଚନ୍ଦ୍ରମଣିବାବୁ ତାଙ୍କ ମୁହଁକୁ ପୁଣି ଝୁଲେଇ ଦେଲେ, ଯେତେକ ଛପି ରହିଥିବା ଗାରଗୁଡ଼ାଙ୍କୁ ଫେରେଇ ଆଣିବାକୁ ଚେଷ୍ଟା କଲେ, ଓଠକୁ ଆହୁରି ଚିପିଲେ, ଆଖିକୁ କୁଞ୍ଚେଇଲେ...ମୋଟ ଉପରେ ତାଙ୍କର ସେଇ ମାର୍କାମରା ମୁହଁର ଚେହେରାକୁ ପୁଣି ଥରେ ତୋଳି ଧରିଲେ । ଯତେକ ଏଭଳି ଉଦ୍ଭଟ ଗାଲୁଗପ ସେ ଶୁଣି ନ ଥିଲେ ତାଙ୍କ କାନ ଉଠିବା ଦିନୁ ।

କିନ୍ତୁ ଦୁଃଖର ବିଷୟ ତାଙ୍କୁ କେହି ବିଶ୍ୱାସ କଲେ ନାହିଁ । ଅଧିକନ୍ତୁ ଟୁକୁନ ଆବିଷ୍କାର କଲା ଯେ ବଡ଼ବାପାଙ୍କ ମୁହଁ ବି ଗୋଳ ହୋଇଯାଏ ବାପାଙ୍କ ପରି, ଯେତେବେଳେ ତାଙ୍କୁ କିଛି ଗୋଟାଏ ନିଧି ମିଳିଯାଏ, ହେଲେ ସେ ତାକୁ ଲୁଚେଇବାକୁ ଚେଷ୍ଟା କରନ୍ତି ବଡ଼ପଣ ଦେଖେଇ । ନାଇଁ, ନାଇଁ, ପାଇଲା ମୁହଁ ଲୁହେଁ, ମାଗିଲା ମୁହଁ, ସ୍ତନଖିଆ ଶିଶୁର ଦିଠ ଦିଓଠିର...

ଟୁକୁନର ଆମୋଦରସ ଉଛୁଳି ଉଠିଲା । କିନ୍ତୁ ସେ ହସି ପାରିଲା ନାହିଁ, ଏବଂ ସେଠୁଁ ଭୁରୁକିନା ପଳେଇ ଆସିଲା, କାରଣ ସେଥିରେ ଆତ୍ମଗ୍ଲାନି ମିଶିଗଲା କୁଆଡ଼ୁ ଆସି । କାହିଁକିନା ତାର ମନେ ପଡ଼ିଗଲା ସେ ଯେଉଁ ମାନସିକ କରିଥିଲା ମଣିଙ୍କ ପାଖରେ । ତାଙ୍କୁ ଡାକିଥିଲା ତା' କୋଳରେ ପିଲାଟିଏ ଦେବାପାଇଁ । ଆଉ କହିଥିଲା ଯେ ସେ ସୁନ୍ଦର ନ ହେଲେ ନାହିଁ, ଖୁସିବାସିଆ ହେଉ । ମାନେ ବଡ଼ବାପାଙ୍କ ପରି ଦେଖା ନଯାଉ । ଛିଃ, ଛିଃ, ମୁଁ ଏମିତ କେମିତି ଭାବିଲି ?

# ମଣିଙ୍କ ମହିମା

ମଣିଙ୍କ ମହିମା ବିଷୟରେ ମୁଁ ଏକମତ ଟୁକୁନ ସାଙ୍ଗରେ । କାରଣ ଭାବି ଦେଖନ୍ତୁ, ଷଟ୍‌ତ୍ରିଂଶବର୍ଷ ବୟସର ମଣିପଟିଏ ଯେ କ୍ରୋଧ, ଉଲ୍ଲାସ, ପ୍ରେମ, ଘୃଣା ଆଦି କୌଣସି ତୀବ୍ର ଭାବାବେଗକୁ ତା’ ମୁହଁର ‘ବିରାଗୀ-ବିଦ୍ୱେଷୀ ଉପତ୍ୟକା’ ଭିତରେ ପ୍ରବେଶ କରିବାକୁ ଦିଏ ନାହିଁ, ତେଣୁ ସେଥିର ଗରିମା ସଦା ଅମଳିନ ହୋଇ ଦିଶେ, ତାହା ହଠାତ୍ ଏକ ଭିନ୍ନରୂପ ଧାରଣ କଲା କେମିତି ? କାହୁଁ ଆସିଲା ସେଇ ‘ଅଭିନବ ଶୁକ୍ଳପକ୍ଷର ବିକାଶ’ ?

ମନେହେବ ଯେ ତାଙ୍କ ଟୋକାବେଳର ସାଙ୍ଗ ‘ପ୍ୟାସନେଟ୍ ପ୍ରମୋଦ’ ହେଉଛି ଏଇ ନବକଳେବରର ବିନ୍ଧାଣି । ସେଇ ଜଣକ ଫେରାଇଆଣିଲା ତାଙ୍କ ଆତ୍ମବିଶ୍ୱାସ ଯେ ‘ମୋର ତଥାପି ରହିଛି ସେଇ ଲମ୍ବା ଚେହେରା, ଆଖିର ସେଇ ତେଜ ଆଉ ହାତ ଖୁକୁବୁକୁ ହେଉଛି—ଭଲିବଲ୍‌କୁ ହାତେଇବ, ବାଜା ବଜେଇବ, କି ଆଉ କ’ଣ କରିବ…’ ଯାହାକୁ ଆଜିର ଦର୍ପଣ ଦେଖା ପ୍ରତିଛବି ଚହଲେଇଲେ ମଧ୍ୟ ଭଲଭାବରେ ଚହଲେଇ ପାରୁ ନଥିଲା । କିନ୍ତୁ ପ୍ରମୋଦର ଆବିର୍ଭାବ ମଧ୍ୟ ଗୋଟାଏ ଆକସ୍ମିକ ଘଟଣା ନୁହେଁ କି ? କେଉଁଠି ଥିଲା ସେ ଏତେଦିନଯାଏଁ ଏବଂ ଆଜି ଝଡ଼ପରି ଆସି ପଳେଇଗଲା ଏମିତି, ମଣିଙ୍କ ଦୁଆରରୁ ? ସତେକି ସେ ଏଠିକି ଆସିଥିଲା ଖାସ୍ ଏଇଥିପାଇଁ । ନା, ମଣି ଗୋଟାଏ ପ୍ରସ୍ତୁତ ତିଆରି କରୁଥିଲେ ଉପତ୍ୟକାର ପୁନର୍ଗଠନ ପାଇଁ । ପ୍ରଥମେ ଜନ୍ମସ୍ଥାନ ବାଲେଶ୍ୱରକୁ ଆସିଲା ପରେ ଆଜିର ସକାଳକୁ ଏମିତି ଭଲ ପାଇବାର ବିସ୍ମୟ, ଯାହା ତାଙ୍କୁ ତାଙ୍କ ନିଜକୁ ଭଲପାଇବା ପାଇଁ ଉତ୍ସୁକେଇଥିଲା, ଏବଂ ସେଥିର ଲକ୍ଷଣ ନିଶ୍ଚୟ ଫୁଟି ଉଠୁଥିବ ତାଙ୍କ ମୁହଁରେ, ଯଦିଓ ତାକୁ ସୂର୍ଯ୍ୟଙ୍କର ଆଲୁଅ ଛଡ଼ା ଆଉ କେହି ଦେଖିପାରି ନଥିବ । ହଉ, ଆଖଣ୍ଡଳମଣି ଏତେ

ସହଜରେ ହିଂଚିଯିବା ଦେବତା ନୁହଁନ୍ତି । ତେଣୁ ସେ ନାନା ଅଭିନବ ଏବଂ ଆମୋଦକର ଦୃଶ୍ୟ ଦେଖାଇଲେ ତାଙ୍କୁ, ନିଜକୁ ପ୍ରଜାପତି ପରି ମନେ କରୁଥିବା କଂକଠାରୁ ଆରମ୍ଭ କରି ସେଇ ଫୁଲେଇ ସାନ୍ତାଲୀ ଗୃହକର୍ତ୍ତ୍ରୀ ଯାଏଁ, ଯାହା ସେଇ ଉପତ୍ୟକାକୁ ଯତ୍ସାମାନ୍ୟ କୁତୁକୁତୁ କରୁଥିବ ବୋଲି ଆଶା କରାଯାଏ । ସେଇଠୁଁ, ମଣିଙ୍କ ପାଖକୁ ଯିବା ବାଟରେ, ସେ ତାଙ୍କୁ ମନେ ପକାଇ ଦେଲେ ଦର୍ପଣରେ ପ୍ରତିଫଳିତ ତାଙ୍କ ପୂର୍ବ-ଚେହେରାଟାକୁ, ଯାହାକୁ ଦେଖି ସେ ସେମିତି କିଛି ବୁଢ଼ା ହୋଇନାହାନ୍ତି ବୋଲି ତାଙ୍କର ମନେ ହେଉଥିଲା । ଏବଂ ସବା ଶେଷକୁ ପ୍ରସ୍ତରରେ ମୁଣ୍ଡି ମାରିଲା ପରି ଆସି ପହଞ୍ଚିଗଲା ପ୍ରମୋଦ ଝୁଣ୍ଟିଆ ନାମକ ଲୋକଟାଏ, ଯେ କେତେ 'ସତକଥା'ମାନ ଶୁଣେଇଗଲା ତାଙ୍କୁ, ଚନ୍ଦ୍ରମଣି ଓରଫ୍ 'ଚଗଲା ଚନ୍ଦୁ'ର ନାନା ପ୍ରବଣତା ଓ ସମ୍ଭାବନାର ସତକଥା । ସହଜେ, ସେ ତାକୁ ଚିହ୍ନିପାରିଲେ ନାହିଁ ସିନା, ତାଙ୍କର ଇଚ୍ଛା ହେଲା ତା'କୁ କୁଣ୍ଢେଇ ପକେଇବେ ।

ଏଭଳି ପ୍ରସ୍ତୁତି ପରେ ମଣି ତାଙ୍କୁ ମୁରୁକି ମୁରୁକି ହସିଲା ପରି ଲାଗିଲେ, ଏବଂ ଚନ୍ଦ୍ରମଣିବାବୁ ଭାବିଲେ (ଯଦିଓ ଧର୍ମ କର୍ମରେ ସେ ବିଶ୍ୱାସ କରନ୍ତି ନାହିଁ) ଯେ ଲିଙ୍ଗର ଆଦିମୂହଁ ନଥିଲେ କ'ଣ ହେବ 'ଚନ୍ଦନ ପ୍ରଲେପର ସେଇ ତ୍ରିଧାରା, ତା'ର ବ୍ୟଞ୍ଜନା କିଛି କମ୍ ନୁହେଁ, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

ଅବା ଆଶ୍ଚର୍ଯ୍ୟ ହେବାର କ'ଣ ଅଛି, ଯଦି ଶେଷକୁ ଚନ୍ଦ୍ରମଣିବାବୁଙ୍କର ମନେହେଲା ଯେ ସତରେ ଆଖଣ୍ଡଳମଣି ତାଙ୍କ ବୋଉକୁ ସପନେଇଥିଲେ, ସେ ଯେତେବେଳେ ଭୀଷଣ ବେମାର ଥିଲେ ତାଙ୍କ ପିଲାଦିନେ, ଆଉ ବୁଢ଼ା ବ୍ରାହ୍ମଣଟିଏ ହୋଇ ତା' ହାତକୁ ଫୁଲ ବେଲପତ୍ର ବଢ଼େଇ ଦେଇଥିଲେ ? ଆଶ୍ୱାସନା ଦେଇଥିଲେ ଯେ ତୋ ପୁଅ ବଞ୍ଚି ଉଠିବ, ଯେହେତୁ ତା'ର ଅନେକ କିଛି କାମ କରିବାକୁ ଏଇ ସଂସାରରେ ? ଏବଂ ସେଇଥିପାଇଁ ସେ ତାଙ୍କ ବୋଉଙ୍କୁ ପୁଣି ପଚାରିଲେ ସେ ବିଷୟରେ, ଯେଉଁ ବୋଉ ସାଙ୍ଗରେ ସେ କ୍ୱଚିତ୍ କଥାଭାଷା ହୁଅନ୍ତି, ଏଇ ଅତ୍ୟାଶ୍ଚର୍ଯ୍ୟ ଘଟଣାଟିକୁ ମଧ୍ୟ ଗ୍ରହଣ କରିବାକୁ ହେବ । ଏମିତି ହୁଏ ।

ନା ଚନ୍ଦ୍ରମଣିବାବୁ, ତମେ ତମ ସଦାବହାର ଅସନ୍ତୋଷର ଗରିମାକୁ ଆଉ ଫେରାଇ ଆଣିପାରିବ ନାହିଁ । ତମ ମୁହଁକୁ ପୁଣି ଝଟ୍‌କେଇ ଦେଇ ଯେତେକ ଛପି ରହିଥିବା ଗାରଗୁଡ଼ାକୁ ଫେରାଇ ଆଣିପାରିବ ନାହିଁ, ଓଠକୁ ଯେତେ ଚିପିରଖ କି ଆଖିକୁ କୁଞ୍ଚଉଥାଅ । ତମର ସେଇ ଅର୍ଦ୍ଧ-ବିଶିଷ୍ଟ ଉପତ୍ୟକାକୁ ଆଉ କେହି ବିଶ୍ୱାସ କରିବେ ନାହିଁ, ସତ ବୋଲି ମଣିବେ ନାହିଁ । ମଣି ତାଙ୍କ ଦେହିଲି କାମ ପୂରା କରିସାରିଛନ୍ତି ।

ହେ ବାସ୍ତବବାଦୀ ଲେଖକ ! ତମେ କ'ଣ ସତରେ ଭାବୁଛ ଯେ ଏମିତ ହୁଏ, କାୟାପଲଟର ଏଭଳି ଏକ ଅଲୌକିକ ଘଟଣା, କେଉଁ ଠାକୁର ଦେବତାଙ୍କ କୃପାରୁ ? ତା'ର ଉତ୍ତରରେ ମୁଁ କହିବ ଯେ ଅବଶ୍ୟ ମୁଁ ଠିକଣା ମନସ୍ତାତ୍ତ୍ୱିକ କାରଣ ଯୋଡ଼ି ଦେଇ ପାରିବି ଚନ୍ଦ୍ରମଣିବାବୁଙ୍କର ଏଇ ଅପ୍ରତ୍ୟାଶିତ ନବକଳେବରକୁ ନେଇ । କହିପାରିବ ଯେ ଏଭଳି ଏକ ବିରଳ 'ବିରାଗୀ-ବିଦ୍ୱେଷୀ' ଉପତ୍ୟକା ଚିରସ୍ଥାୟୀ ହୋଇ ରହିବା ସ୍ୱାଭାବିକ ନୁହେଁ । କାରଣ ପଚିଶବର୍ଷ ପାର ହୋଇଗଲେ ମଧ୍ୟ ମଣିଷର ସହଜ ପ୍ରବୃତ୍ତି ଭିତରେ ଭିତରେ ଗୁହୁଁଥିବ ସେଇ ଗରିମାର କ୍ଳେଶରୁ ମୁକ୍ତ ପାଇବା ପାଇଁ । ତମ ଆମଙ୍କ ପରି ଖୋଲି ହସ ହସିବା ପାଇଁ, କାନ୍ଦିବା ପାଇଁ, କି ରାଗି ଉଠିବା ପାଇଁ । ତେଣୁ ଦିନେ ହେଲେ ବଢ଼ିଉଠୁଥିବା ପ୍ରବୃତ୍ତିର କୁଟ୍‌ରୁ କୁଟ୍‌ରୁ ଗୋଟାଏ ସ୍ୱରଚିତ ଗଣ୍ଠିକୁ ଖୋଲିଦେଲା, ସୁନ୍ଦର ସକାଳଟିଏ ଆଣି ପହଞ୍ଚେଇଲା କର୍ତ୍ତାଙ୍କ ପାଖରେ, ଏବଂ ତାଙ୍କ ଆତ୍ମପ୍ରତ୍ୟୟର ଗୁଣୁଗୁଣୁ (auto-suggestion) କୃତକାର୍ଯ୍ୟ ହେଲା, ଏକ 'ପ୍ରତ୍ୟକ୍ଷ ଦେବତା'ଙ୍କ କୃପାକୁ ଆବାହନ କରି, ଏହାକୁ ଅବୈଜ୍ଞାନିକ ବୋଲି କହିବା କାହିଁକି ?

ତେବେ ମୁଁ ସେଭଳି ତର୍କର ଆଶ୍ରୟ ନେବି ନାହିଁ । ମୁଁ କହିବାକୁ ଚାହେଁ ଯେ ଯେତେ ବାସ୍ତବବାଦୀ ହେଲେ ମଧ୍ୟ ମୁଁ କ'ଣ ପ୍ରାର୍ଥନାର ଯୋଗ୍ୟ ନୁହେଁ ? 'ସର୍ବେ ଭବନ୍ତୁ ସୁଖିନଃ' ଜନଗଣର ଏଇ ସହୃଦୟ ସମବେତ ପ୍ରାର୍ଥନାରେ ମୁଁ କ'ଣ ଯୋଗ ଦେଇପାରିବି ନାହିଁ ? ହଁ, ହୁଏତ ମୁଁ ଗୋଟାଏ ବିଶ୍ଳେଷଣ ମୂଳକ ସଫେଇ ବାଢ଼ିଥାଆନ୍ତି ଏହି ଅସାଧାରଣ ଚରିତ୍ର ତରଫରୁ, ଯାହାକୁ ମୁଁ ଅତି ପାଖରୁ ଏବଂ ଦୀର୍ଘ ଦିନ ଧରି

ଦେଖି ଆସିଛି । କିନ୍ତୁ ମୋର ମନେହେଲା ଯେ ଭାଇ-ଭାଇ ଈର୍ଷା, ବାପମାଆଙ୍କ ପାତରଅନ୍ତର, ତଥା ଅଦୃଷ୍ଟର ଅନ୍ୟାୟ, ଇତ୍ୟାଦି ତଥ୍ୟ ଅର୍ଦ୍ଧସତ୍ୟ ଛଡା ଆଉ କିଛି ନୁହେଁ । କାରଣ ସହଜେ ବାପମାଆ ତାଙ୍କ ସବୁ ପିଲାଙ୍କୁ ଭଲପାଆନ୍ତି, କାହାକୁ ହୁଏତ ଟିକିଏ ଅଧିକା, ଏବଂ ସେମାନେ ଜାଣିଶୁଣି ପାତର-ଅନ୍ତର କରନ୍ତି ନାହିଁ । ସୋଦର-ସ୍ନେହ ମଧ୍ୟ ଏକ ନୈସର୍ଗିକ ସତ୍ୟ, ଯାହାର-ଅପର ଦୁନିଆଁର ପ୍ରତିପକ୍ଷ ହେଲା ପର । ଏବଂ ଅଦୃଷ୍ଟ ମାନେହିଁ ଅବାଗିଆ ବୋଲି କିଏ କହିଲା ? ନା, ଏତେସବୁଗୁଡ଼ାକ ଜଣକର ମନକୁ ଦିବ ନାହିଁ । ସେଇଠୁଁ ମୁଁ ଭାବିଲି ଯେ ଉପତ୍ୟକାର ଏଇ ଅଶ୍ଳୀଳତାକୁ ଦୂର କରିବାକୁ ହେଲେ ପ୍ରାର୍ଥନା ଛଡା ଅନ୍ୟ ଉପାୟ ନାହିଁ । ଦୁନିଆଁର ସମସ୍ତ ବାସ୍ତବତା ଚିରସ୍ଥାୟୀ ହୋଇ ରହିବ ବୋଲି କୋଉଠି ଲେଖା ହୋଇନାହିଁ । ନା, ଉପତ୍ୟକା ପୁଣି ସରସ ସଜଳ ହୋଇ ଉଠିବ, ଜୀବନ୍ତ ମଣିଷର ମୁହଁ ପରି ଦେଖାଯିବ । ଏହି ଭାବରେ ମୁଁ ଡାକିଲି ଆଖଣ୍ଡଳମଣି ଏବଂ ତାଙ୍କର ଦୂତମାନଙ୍କୁ, ମୋତେ ସାହାଯ୍ୟ କରିବା ଲାଗି—ଏଥିରେ କ'ଣ କିଛି ଭୁଲ୍ ରହିଲା ?

ନା, ମୁଁ ଟୁକୁନୁ ସାଙ୍ଗରେ ପୂରାପୂରି ଏକମତ—ଇଏ ହେଉଛି ମଣିଙ୍କ ମହିମା ! ତା' ଛଡ଼ା ମୁଁ ପ୍ରାର୍ଥନା କରୁଛି ତା'ର ମାନସିକ ପୂର୍ଣ୍ଣତି ହେଉ, ଏବଂ ତା' କୋଳକୁ ପିଲାଟିଏ ଆସୁ । ଆଉ ହୁଣ୍ଡୀ, ଅଯଥାରେ କାହିଁକି ଡରୁଛି ଯେ ତା' ପିଲାର ମୁହଁଟା ଗୁଲୁଗୁଲିଆ ନହୋଇ କୁନ୍ଥେଇଲା ପରି ଦେଖାଯିବ, 'ତାଁ' ବଡବାବାଙ୍କ ପରି ? ଏମିତି କୋଉଠି ହେଲାଣି ?



# କଳା କୁହୁଡ଼ି

ଆମର ଏଇ ଅମ୍‌ମୁ ଜଣକ ଅନ୍ୟମନସ୍କ ହେବାକୁ ଭଲ ପାଏ । ଯେମିତିକି ତାକୁ ସମସ୍ତେ କବି କିମ୍ବା ଭାବୁକ ବୋଲି ମନେ କରିବେ । ନହେଲେ ସେ ମିଛୁଟାରେ କଥା ମଝିରେ କୁହୁଡ଼ିକୁ ଅନଉଛି କାହିଁକି ? କୁହୁଡ଼ିରେ କଅଣ ଅଛି— କୋଉ ଆକାର, ପ୍ରକାର ନା ରଙ୍ଗ ?

ଅନିମା ଏହି ମର୍ମରେ ମନେ ମନେ ଥଟ୍ଟା କଲି ଅମରେଶକୁ । କିନ୍ତୁ ପରିହାସରେ ବିଦ୍ରୁପ ଲଖି ରହି ନ ଥିଲି ବୋଲି କହିହେବ ନାହିଁ । ବରଂ ଆଶଙ୍କା ହେଉଥିଲା ଯେ ସେ ରାଗିଯାଇପାରେ ଯଦି ଅମରେଶ ବେଶି ସମୟ ଯାଏଁ ଅନେଇ ରହେ କୁହୁଡ଼ିକୁ । କାରଣ ସକାଳୁ ସକାଳୁ ସେ ଏଇ ତଥାକଥିତ ପ୍ରଗତିଶୀଳ ଯୁବ ଛାତ୍ରାବାସକୁ କେବଳ ଉଚ୍ଚସ୍ତରୀୟ ଗସିପ୍ କରିବାକୁ ଆସିନାହିଁ । ସେ ଆସିଛି ଅମରେଶ ପାଇଁ । ଉଭୟଙ୍କ ଧାରଣା ଯେ ସେମାନେ ପରସ୍ପରକୁ ଭଲ ପାଆନ୍ତି, କିନ୍ତୁ ଅନିମାର ଧାରଣାରୁ ବଳି ବିଶ୍ୱାସ ଯେ ଆଜି ନ ହେଲେ କାଲି ଅମରେଶ ଖୋଲିଖୋଲି କହିବ ସେଇ କଥାଟା ।···କହିବା ଉଚିତ । ଆମେ ଆଧୁନିକ, ଏକବିଂଶ ଶତାବ୍ଦୀର ଅବିବାହିକ କହିଲେ ଚଳେ । ଆମକୁ କୋଉ ଡର ମାଡ଼ୁଛି ନା ଲାଜ ଲାଗୁଛି ? କିନ୍ତୁ ଲୋକଟାର ଏଇ ଯୋଉ ଅଦ୍ଭୁତ ଢଙ୍ଗ, ଢଙ୍ଗ ହେଉ କି ବଦଭ୍ୟାସ···ଅନିମା ଧୈର୍ଯ୍ୟର ସହିତ ଅପେକ୍ଷା କଲି । ଆଶା କଲି ଯେ ଏଇ କ୍ଷଣିକ ବ୍ୟତିକ୍ରମ କ୍ଷଣିକ ହୋଇ ରହିବ ।

ହେଇଥା ହେଲି । ତେଣୁ ଅନିମା ଜାଣିପାରିଲି ନାହିଁ ଯେ ଅମରେଶ ଯଥାର୍ଥରେ ଅନ୍ୟମନସ୍କ ହୋଇଥିଲା । ମିଛୁଟାରେ କୁହୁଡ଼ିକୁ ଅନଉ ନ ଥିଲା । ଯେତେବେଳେ ପ୍ରେମାସ୍ପଦା ଅନିମା ତା'ର ସ୍ୱାଭାବିକ ଉତ୍ତେଜିତ ଭଙ୍ଗୀରେ (ଯେହେତୁ ତା'ର ଆଖିପତା ଦି'ଟା ଅତ୍ୟଧିକ ଚଞ୍ଚଳ ହୋଇଉଠେ, ସେ ଥରକୁ ଥର ତା'ର ଚୁନାକେଶକୁ କପାଳରୁ ଘଉଡ଼େଇ ଦିଏ, ତା' ଦାନ୍ତି ଝଟକି ବାଜିଯାଏ, ଏବଂ ସେ ଲେଡ଼ିକେନିଯ୍ଯ ଦେଖାଯାଏ) ତରୁଣ ମନ୍ତ୍ରୀ ଶକ୍ତି ବର୍ମନ୍‌ଙ୍କ ଅଖିଦେଖା କୁକର୍ମ ବିଷୟରେ କେତେ କ'ଣ କହିଯାଉଥିଲା, ଅମରେଶ ଆଉ ଜଣକୁ ଦେଖୁଥିଲା । କୁହୁଡ଼ି ଭିତରେ । ମନେ ହେଉଥିଲା ଯେ କୁହୁଡ଼ି ଯୋଗୁ ସେଇ ଲୋକଟିର ଆକାର, ପ୍ରକାର

ଓ ରଙ୍ଗ ଆହୁରି ଉଜ୍ଜ୍ୱଳ ହୋଇ ଫୁଟିଉଠିଛି । ସେ ରମଣୀ ନ ହେଲେ ମଧ୍ୟ ରମଣୀୟ, ଲୋଭନୀୟ ନ ହେଲେ ମଧ୍ୟ ବରଣୀୟ ।···କାହିଁକି ନା ସେ ମୋ ବାପା ! ଉତ୍କୃତ ଚିହ୍ନ ଭିତରେ ଥିବା ବାପା । ଯାହାଙ୍କୁ ମୁଁ ନିଜେ ବାଛିନେଇଛି ।

ତା'ଛଡ଼ା ବୋଧହୁଏ ଅନିମା ପୁରାପୁରି ଚିହ୍ନି ନାହିଁ ଆଜିଯାଏ ଅମରେଶଙ୍କୁ । ଚିହ୍ନିଥିଲେ ବୁଝିଥାଆନ୍ତା ଯେ ଏଇ ସ୍ୱଳ୍ପଭାଷୀ ଖେଳୁଆଡ଼ ଯୁବକ ତା'ର ସାଙ୍ଗସାଥୀମାନଙ୍କଠାରୁ କିଛି ଅଧିକ ଏକୁଟିଆ । ତେଣୁ ତା' ପାଖରେ ପ୍ରକୃତରେ ଅଛି କିଛି ସ୍ୱପ୍ନ, କିଛି ଭାବୁକତା । ଯଦିଓ ସେ କବିତା ଲେଖେନାହିଁ କି ତାଙ୍କୁ ଭାବନାଗ୍ରସ୍ତ ଇଣ୍ଟେଲେକ୍‌ଚୁଆଲ୍ ବୋଲି କୁହାଯିବ ନାହିଁ ।

ତେବେ କବି ହେଉ କି ଯାହାହେଉ, ସେ ଯେ ସ୍ୱତନ୍ତ୍ର ଯୁବକ ଏଥିରେ ସନ୍ଦେହ ନାହିଁ । କାହିଁକିନା ଦେଖାଯାଉଛି ଯେ ସେ ଅବଲମ୍ବେ ଗୋଟିଏ ଭାବର ଛାଇରୁ ଆଉ ଗୋଟିଏ ଭାବର ତାତିକୁ ଡିଆଁ ମାରିପାରେ । ଯଥା କିଛିକ୍ଷଣ ଭିତରେ ଥିବା କେଉଁ ଏକ ବାପା ତାଙ୍କୁ ଅବଶ୍ୟ ଅନ୍ୟମନସ୍କ କରିଦେଇଥିଲେ ମୁହୂର୍ତ୍ତିକ ଆଗରୁ, କିନ୍ତୁ ଏଇକ୍ଷଣି ସେ ସମ୍ପୂର୍ଣ୍ଣ ଭିନ୍ନ ଅନ୍ୟ ଏକ ଭାବରେ ମନସ୍ଥ । ଅନିମା ଜବାବର ରସରସିଆ ଶେଷକଥାକୁ ପୁରାପୁରି ଶୁଣିପାରୁନାହିଁ । ଯେହେତୁ ତା'ର ହଠାତ୍ ଆଖିରେ ପଡ଼ୁଛି ଅନିମାର ଶାଢ଼ି ଖସା ବ୍ଲାଉଜ ତଳୁ ଫୁଟିଉଠିଥିବା ମୁନଟିଏ ।···ତାକୁ ମୁଁ ଭଲ ଭାବରେ ଛୁଇଁନାହିଁ । ତା' ସାଙ୍ଗରେ ଖେଳିବା ଦୂରର କଥା । ଯଦିଓ ସେ ମୋ ଗାର୍ଲ୍ ଫ୍ରେଣ୍ଡ । କିନ୍ତୁ କାହିଁକି ସେମିତି କରିବ ନାହିଁ ? ମୁଁ ଜାଣେ ସେ ଆପତ୍ତି କରିବ ନାହିଁ । ସେ ଚୁମା ଲୁ ମନା କରିନାହିଁ ପ୍ରଥମ ଦିନଠୁଁ । ସ୍ତ୍ରୀ'କୁ ନାହିଁ କରିବ କାହିଁକି ?···

"ମୂଲ୍ୟବୋଧ, ମାଇ ଫୁଟ୍ ! ମନେଅଛି ଆମର ଏଇ ନେତା କେମିତି ଗର୍ଜୁଥିଲେ ସେଦିନ ବୋଟ୍‌କ୍ଲବ ପଡ଼ିଆରେ ? ଯେ ଭାରତୀୟ ପ୍ରଜା ପରିଷଦର ମୂଲ୍ୟନୀତି ନାହିଁ, ମୂଲ୍ୟବୋଧ ନାହିଁ, ଇତ୍ୟାଦି ଇତ୍ୟାଦି ? ଅବଶ୍ୟ ଗୋଟାଏ ହିସାବରେ ସେମାନଙ୍କର ଅଛି ସେଥିରୁ କିଛି—ନା କ'ଣ କହୁଛି ? ଧର୍ମନିରପେକ୍ଷତା, ସିକ୍ୟୁଲାରିଜିମ୍ । ନ ହେଲେ କ'ଣ ସେ କୁଳୀନ ବ୍ରାହ୍ମଣ ହୋଇ ବୁଢ଼ୀ ଶବ୍‌ନମ୍ ଅହମଦ୍‌ଙ୍କ ସାଙ୍ଗରେ ଏମିତି ଲଟପଟ ହୋଇ ପାରୁଥାଆନ୍ତେ ?" ଅନିମା ହସି ଉଠିଲା । ଏବଂ ଅମରେଶ ଦେଖିଲା ତା' ଦାନ୍ତପାଟିର ସେଇ ସାମାନ୍ୟ ବୈଶିଷ୍ଟ୍ୟଟିକୁ, ଗୋଟିଏ ଦାନ୍ତ ଉପରେ ପଡ଼ୋଶୀର ମଧୁରିଆ ଆକ୍ରମଣ, ଅନିମା ଚେହେରାର ବଶିଷ୍ଟ ସୁନ୍ଦର ଆତ୍ମଦୋଷ ।

"ଆରେ, ଇଏ କ'ଣ କରୁଛ ?" ଅନାମା ମିଛ ଆତଙ୍କରେ ପାଟି କରିଉଠିଲେ ।

କିନ୍ତୁ ଅମରେଶ ତା'ର ମିଛକୁ ବୁଝିଥିଲା । ତେଣୁ ସେ ଝରକାର ପରଦାକୁ ଟାଣିଆଣି କ୍ଷୁଦ୍ରତ୍ର ଆଲୁଅକୁ ଆପାତତଃ ଦୂରେଇ ଦେବାରେ ହେଲା କଲାନାହିଁ । ସେଇଠୁଁ ତତ୍‌କ୍ଷଣାତ୍ ଅନାମା ପାଖକୁ ଯାଇ ତା'ର ଦେହକୁ ଚୁପି ଧଇଲା, ଏବଂ ଅନୁଭବ କଲା ତକ୍ତି ଅପ୍ରତିହତ ମୁନ ଦୁଇଟିକୁ ।

ପ୍ରବଳ ଆବେଗର ଘର୍ଷଣରେ ଭ୍ରୂତର ଯେଉଁ ଶବ୍ଦ ଶୁଣାଗଲା, ସେଥିରେ ପ୍ରେମ ସାଙ୍ଗକୁ ଆଉ ଗୋଟାଏ ଖବର ନିର୍ଘୋଷ ଶୁଣାଗଲା । ଯେଉଁଥିରେ ଅମରେଶ ନିଜେ ଅଧୈର୍ଯ୍ୟ ହେଲା । ଏବଂ ଖୁସି ହେଲା । ସେ ପ୍ରଥମର ତା' ଅତି-ଅନୁଭବ ତାଙ୍କୁ ସେହି ଉନ୍ନତ ଭାବ ତଥା ଭବିଷ୍ୟତର ପ୍ରବୁଦ୍ଧ ଚିହ୍ନଉଛି ନିଜକୁ···ଭାରତୀୟ ପ୍ରଜା-ପରିଷଦ ! ଆମେ ଦୁଇଜଣ ଦଳୀ ସମାଜର ଅନ୍ୟତମ ପ୍ରେମିକ ପ୍ରେମିକା ନୋହୁଁ । 'ଆମେ ହେଉଛୁ ଏଇ ନବୋଦିତ କାନ୍ତିକାରୀ ପାର୍ଟିର କର୍ମୀ । କାର୍ଡ ଧାରୀ ସଦସ୍ୟ ନ ହେଲେ ମଧ ହେବୁ କାଲି ସକାଳେ, ପରୀକ୍ଷା ସରିଲା ପରେ ଏବଂ ଯଥାଶୀଘ୍ର ମୁଁ ହେବ ତା' ଯୁବଶାଖାର ସଭାପତି, ଅନ୍ତତଃ ସାଧାରଣ ସଚିବ ଓ ସେ ହେବ ଉପ-ସଚିବ କିମ୍ବା ସେଇଭଳି କିଛି । ମୁଖ୍ୟ ଓ ଉପମୁଖ୍ୟ ଏମିତି କୁଣ୍ଢାକୁଣ୍ଢି ହେବେ, ଯାହେଣୁ ଅସୁଣୁ କୁଣ୍ଢାକୁଣ୍ଢି ହେବେ, ଦେଶ ଓ ଦଶର ମଙ୍ଗଳ ପାଇଁ···

"ଛାଡ଼, ଛାଡ, କିଏ କୋଉଠୁ ଅସି ପହଞ୍ଚିଯିବ ।"

କହିବା ବାହୁଲ୍ୟ ଯେ ଛଡ଼ାଛଡ଼ି ହେବାକୁ ସମୟ ଲଗିଲା । କିନ୍ତୁ ପରଦା ପୁଣି ଖୋଲିଦେଲା ବେଳକୁ କ୍ଷୁଦ୍ରତ୍ର ତଥାପି ମହଜୁଦ୍ ଥିଲା । ତଥାପି ସେ ସହଜେ ଚାଲିଯିବା ପାଇଁ ଆସିନାହିଁ । ତା'ର ଅଜି କିଛି କହିବାର ଅଛି ଅମରେଶକୁ, ଯେତେ ଡେରି ହେଉ ପଛେ ।

"ପୁଣି କେବେ ଆସୁଛ ?"

"ଅରେ, ମୁଁ କ'ଣ ଅସିବି ମ ? ତୁମେ ଆସିବ ବୋଲି ନିଜେ ଠିକ୍ କରିଥିଲ ପରା ? ଭୁଲିଗଲଣି ଏତେ ଶୀଘ୍ର ? ଏମିତିକା ଭୁଲାମନ ମୁଁ ଦେଖିନାହିଁ ପୃଥିବୀରେ ! ···ଆଚ୍ଛା, ଶୁଣ ? ଆଉ ମନେରଖ ଏଥର । ଆସନ୍ତା ଶୁକ୍ରବାର ସନ୍ଧ୍ୟା ଏସିଆଡ୍ ଭିଲେଜ୍, 'ଆମେରିକାନ୍ ପାଇ' ରେସ୍ତୋରାଁ । କହୁଥିଲ ତୁମର କ'ଣ କାମ ଅଛି ସେଅଡ଼େ । ମୋର ବି ଜଣେ ସାଙ୍ଗ ଅଛି ସେଠି, ମୋତେ ମେଣ୍ଟାଏ ସ୍ପେଶାଲ୍ ନୋଟ୍ ଦେବ ବୋଲି କହିଛି, ଆଇ. ଏ. ଏସ୍. ପ୍ରିଲିମିନାରୀ ପାଇଁ । ତା' ଦାଦିପୁଅ ଭାଇର ନୋଟ୍, ଯେ ୧୯୮୭ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲା । ତୁମ ପାଇଁ ଗୋଟାଏ ଜେରକ୍ସ କପି କରିଦେବି କି ?"

ଅନିମା ବିଦାୟ ନେଲା ପରେ ଅମରେଶ ଅନେକ ସମୟ ଯାଏ ଅନେଇ ରହିଲା କୁହୁଡ଼ିକୁ । ଯେମିତିକି ସେ ସେଇ ବିଳମ୍ବିତ ଶୀତ ଧୂସରକୁ ମନଉଥିଲା । ବିଗତ ମୁହୂର୍ତ୍ତର ସ୍ପର୍ଶସୁଖକୁ ତା'ର ଉଷ୍ମତାକୁ ସ୍ୱୀକାର କରିବା ପାଇଁ ଫୁସୁଲଉଥିଲା ।... ମୁଁ ଯେତେହେଲେ ତରୁଣ, ଏବଂ ସେ ହେଉଛି ମୋ ତରୁଣୀ । ଆମେ ଏକାଠି ହେବୁ, ଏଇ ହେଉଛି ଜୀବଧର୍ମ । ଏଥିରେ କାହାର ଆପତ୍ତି ରହିବ କାହିଁକି ?

ଅନିମା ଆଇ. ଏ. ଏସ୍. ପରୀକ୍ଷା ଦେବାକୁ ଚାହେଁ । କୃତିଗ୍ରାହୀ, ସ୍ୱାଭାବିକ ଉଚ୍ଚାକାଙ୍କ୍ଷା । ଯେତେଦୂର ସମ୍ଭବ ସେ ପାଇଯିବ କିଛି ନା କିଛି, ଆଇ. ଏ. ଏସ୍. ନହେଲେ ବି ଆଲାଏଡ୍ ସର୍ଭିସ୍ । ମୁଁ ସେଥିରେ ବାଧା ଦେବନାହିଁ । ପରିଷଦ ପାଇଁ କାମ କର ବୋଲି ବାଧ୍ୟ କରିବି ନାହିଁ । ପାର୍ଟିର ଗୋପନ ପ୍ରେମୀ ହୋଇ ରହିଲେ ସେଇ ଯଥେଷ୍ଟ । ହେଲା ଏବେ ଲୋକେ ଜାଣିବାକୁ, ସରକାର ଜାଣିବାକୁ, ଅନିମା ମିଶ୍ର ଅଇ. ଏ. ଏସ୍. ଓ ବି. ପି. ପି.ର ନେତା ଅମରେଶ ମିଶ୍ର କେବଳ ପତିପତ୍ନୀ । ସହକର୍ମୀ ନୁହଁନ୍ତି । ନହେଲା ନାହିଁ ! ତା'ବୋଲି କ'ଣ ମୋ ଦେଶକାମ କୋହଳ ହୋଇଯିବ, ନା ଅନିମାଙ୍କ ସଙ୍ଗରେ ମୋର ଯେଉଁ ଭିନ୍ନ କାମ କରିବାର ଅଛି, ସେଥିରେ ଗଣ୍ଡଗୋଳ ହେବ ? ଅମରେଶ କୁହୁଡ଼ି ଉଦ୍ଦେଶ୍ୟରେ ହସିଲା ।

ସେଇଠୁଁ ସେ ସାହସ ପାଇଲା ପରି ଟିକିଏ ଆଖିମିଟିକା ବି ମାରିଲା । ଧାତ୍, ସେ ଅଫିସରଆଣୀ ହେଲେ ମୁଁ କ'ଣ ଖୋଲାଖୋଲି କାମ କରିବି ପରିଷଦ ପାଇଁ ? ମୁଁ କ'ଣ ଜାଣେନାହିଁ ଯେ, ସେଥିରେ ତା' ଚାକିରିରେ ଆଞ୍ଚ ଲାଗିବ ? ନା, ଭାବୁଛି ମୁଁ ବି ପାର୍ଟିରେ ମିଶିବି ନାହିଁ, ଭିତରଆ କାମ କରିବି । ଇଚ୍ଛା ଥିଲା ଓକିଲ କି ସାମ୍ବାଦିକ ହୋଇ ପେଟ ପୋଷିବାକୁ । ହୁଏତ ସେ ସବୁଥିରେ ମୁଣ୍ଡ ନ ପୂରେଇ ମୁଁ ବି ଗୋଟିଏ ସରକାରୀ ଚାକିରି ଧରିବି । ଆଉ ଆମେ ଶାସନକଳର ପେଚ ମୋଡ଼ିବା, ଆମ ଦ୍ୱାରା ଯେତେଟା ସମ୍ଭବ । ଯେମିତିକି ପରିଷଦବାଲା ଆଗେଇ ଆସିବେ, ଅଧିକାଂଶରେ ତାଙ୍କୁ ହିଁ ଉନ୍ନୟନର ଟଙ୍କା ମିଳିବ, ସେମାନେ ବିଶେଷ ଭାବରେ ଲୋକଙ୍କ ଉପକାର କରିପାରିବେ, ତାଙ୍କୁ ବଶ କରିପାରିବେ, ଅର୍ଥାତ୍ ତାଙ୍କୁ ବୁଝେଇ ଦେଇପାରିବେ ଯେ, ପରିଷଦ ହିଁ ତାଙ୍କର ବନ୍ଧୁ, ସଚ୍ଚା ବନ୍ଧୁ...କିଛି କ୍ଷତି ଅଛି ସେଥିରେ ? ଆଃ ମୁଁ କହୁନାହିଁ ଯେ, ଆମେ ଭୋଟ କାଗଜର ହେରଫେର କରିବା, ଦୁର୍ନୀତି କରିବା ସ୍ୱାର୍ଥର ପରି । କିନ୍ତୁ କଥା ହେଉଛି ଯେ, ଅଳ୍ପ ବହୁତ 'ଶଠେଶାଠ୍ୟଂ ସମାଚରେତ୍' ନ କଲେ ଚଳିବ କେମିତି ? ସହଜେ କ'ଣ ଏଇ ସାମନ୍ତବାଦୀ ପୁଞ୍ଜିବାଦୀ ସରକାରକୁ ହଟେଇ ହେବ ?

କୁହୁଡ଼ି ପାତଳା ହୋଇ ଆସୁଛି । ଅମରେଶର ସେଥିରେ ଚିନ୍ତିତ ହେବାର କଥା । ଯେ ଧର୍ମବିକକୁ ଉପଯୁକ୍ତ ଉତ୍ତର ମିଳିଛି, ସେଇଥିପାଇଁ ସେ ବାଟ ଛାଡ଼ିଦେଇ

ଫେରିଯାଉଛି । କିନ୍ତୁ ତା'ର ସନ୍ଦେହ ହେଲା ଯେ, ଯିଏ ଆସିଥିଲା, ସେ ହଠାତ୍ ଗୁଟିପିଟି ହୋଇ ପଳେଇ ଯାଉଛି । ସତେ କି ସେ ଭୁଲ୍‌ରେ ଅଟକି ଯାଇଥିଲା ଏଠି, ଏଭଳି ଗୋଟାଏ ଇତର ନୀଚ ପ୍ରକୃତିର ଲୋକକୁ କୌଣସି ଗୁରୁତ୍ୱର ପ୍ରଶ୍ନ ପଗ୍ଚାରିବାର ନୁହେଁ ।

ହଠାତ୍ ଦିଶିଯାଉଛି ଏ.ଟି.ସି. ବସ୍‌ର ଅପରିଚ୍ଛନ୍ନିଆ ଶାଗୁଆ-ହଳଦିଆ ଦେହ । ଏବଂ ଦପ୍ତର ପାଇଁ, ଦପଣୀ ବଜାର ପାଇଁ, ଟଙ୍କା ରୋଜଗାର ପାଇଁ, ସ୍ତ୍ରୀ ପିଲାଙ୍କ ତଥାକଥିତ ଭବିଷ୍ୟତ ପାଇଁ ଠେଲା-ପେଲା ହେଉଥିବା ଯେତକ ଅଦରକାରୀ ଲୋକମାନଙ୍କ ବିକଳିଆ ମୁହଁର ଚେହେରା । ଶୀତ ଧୂସର କଦାପି ଆସି ନ ଥିଲା ତାଙ୍କ ବିକଳିଆ ପଣକୁ ଘୋଡ଼େଇବା ପାଇଁ, ସେ ଆସିଥିଲା କେବଳ ଜଣଙ୍କର ମହାନତାକୁ ବଢ଼େଇବା ପାଇଁ । କାରଣ ଦୁହେଁ ସମ୍ପର୍କୀୟ, ଏକା ଶ୍ରେଣୀର । ଜଣେ ବିରାଟ ହେଲେ ଆରଟି ବ୍ୟାପକ । ଏବଂ ମୁଁ ଅଲବତ୍ କହିବି ଯେ, ସେ ମୋ ପାଖରେ ଟିକିଏ ରହି ଯାଇଥିଲା । ମୋତେ ଚହଲିବା ପାଇଁ ଚେତେଇବା ପାଇଁ ଏବଂ ଗୋଟାଏ କ'ଣ ପ୍ରଶ୍ନର ଉତ୍ତର ପାଇବ ବୋଲି । ପାଇଲା ନାହିଁ ? କାହିଁକି, ମୋତେ କ'ଣ ବୋଲି ଭାବିଥିଲା କି ?

କଅଣ ସତରେ ଭାବିଥିଲା ଯେ, ସେଇ ଅଖାଡୁଆ ପୁରୁଣାକାଳିଆ ବିରାଟ ବ୍ୟକ୍ତି ହେଉଛନ୍ତି ମୋ ବାପା ? ?

ଅମରେଶ ଆଖିବୁଜି ତାଙ୍କ ପ୍ରତିମୂର୍ତ୍ତିକୁ ଦେଖିଲା । ଯାହାଙ୍କୁ କୁହୁଡ଼ି କୋଳେଇ କାଖେଇ ଦେଖେଇ ଦେଇଗଲା କ୍ଷଣକେ ପାଇଁ । ବୋଧହୁଏ ବେଳ ଦେଖି ଠିକଣା ସମୟରେ । ଯେତେବେଳେ ଅନିମା ଥିଲା ମୋ ନିକଟରେ, ଏବଂ ଆମେ ପୁଣି ଗୋଟାଏ ଦିନର ବିହାରକୁ ନେଇ ଆହୁରି ଟିକିଏ ପାଖେଇ ଆସିଲୁ । ଦେଖ୍ କିଛି ପାଖେଇ ଆସିଲୁ କହିଲେ ଚଳେ । କିନ୍ତୁ ତା' ମତଲବ କଅଣ ? ମୋ ପ୍ରେମିକା ତା' ଘରେ, ମୋର ଗୋପନ ବାପା ତାଙ୍କ ଘରେ । ମୁଁ କ'ଣ ଏତେ ଅପାରଗ ହୋଇଛି ଯେ, ଦୁହିଁଙ୍କୁ ଯଥାସ୍ଥାନରେ ରଖି ନିଜର କରିପାରିବି ନାହିଁ ? ନା ତା'ର ଅହଙ୍କାର ମୋ ଯୌବନ ଉପରେ ?···ଅମରେଶ କୁହୁଡ଼ିଆ ପ୍ରଶ୍ନଟାକୁ ମୁଠେଇବାକୁ ଚେଷ୍ଟା କଲା । ତା'ର ପ୍ରତ୍ୟେକ ଶବ୍ଦ, ପ୍ରତ୍ୟେକ ଶବ୍ଦର ଅକ୍ଷର ।

କୁହୁଡ଼ି ତାଙ୍କୁ କୋଳେଇ କାଖେଇ ନେଇ ଆସିଥିଲା, ଅମରେଶର ଏଇ କଳ୍ପନାଟିକିକ ଅନ୍ୟଥା ନୁହେଁ । କାରଣ ଯେତେ ବିରାଟ ହେଲେ ବି ବାବୁ ରଘୁନନ୍ଦନ ଦାସ ଗ୍ରେଟିଆ ଲୋକଟିଏ । ଏବଂ ଶ୍ୟାମମତ କଳା । ଯେଉଁଥିପାଇଁ ହୁଏତ ତାଙ୍କ ପ୍ରାତଃଭ୍ରମଣରେତ ଚେହେରା କୁହୁଡ଼ି ଭିତରେ ଫୁଟିଉଠୁଥିଲା ବୋଲି କହିଲେ ବାସ୍ତବ ଦୃଶ୍ୟର ଅତିରଞ୍ଜନ ହେଲା ବୋଲି କହିହେବ ନାହିଁ । କିନ୍ତୁ ତା'ଛଡ଼ା ଆଉ କ'ଣ

ଅଛି ? ଏବେ ମଧ୍ୟ କ'ଣ ଅଛି କେଉଁ ଅଲକ୍ଷ୍ୟ ଜ୍ୟୋତିର ସଙ୍କେତ ? ଏକଦା ଅବଶ୍ୟ ଏକାଧିକ ବନ୍ଧୁ ତାଙ୍କ ଚେହେରା ଦେଖିଥିଲେ ଏକ ଅପ୍ରତ୍ୟାଶିତ ବହ୍ନିର ଚମକ । ଉଚ୍ଚ କପାଳ, ଗ୍ରେଟ ଆଖି, ଆଗକୁ ବାହାରି ଆସିଥିବା ଯୋମଣି, ଓ ଚଉଡ଼ା ଓଠ ବିଶିଷ୍ଟ ପ୍ରାୟ କଦାକାର ଚେହେରାର ଏକ ବିଚିତ୍ର କରିସମା । ଯାହା ଫୁଟିଉଠୁଥିଲା ତାଙ୍କ ଅଳ୍ପସ୍ୱଳ୍ପ କଥାବାର୍ତ୍ତାରେ, ଏବଂ ସୁଦୀର୍ଘ ନୀରବତାରେ । ଏବଂ ସୁନିର୍ଦ୍ଦିଷ୍ଟ ହସରେ । ମନେ ହେଉଥିଲା ଯେ, ଏଭଳି ଅଗ୍ନି ନିଆଁ ସହଜେ ଦେଖିବାକୁ ମିଳେନାହିଁ । ଯେଉଁଥିରେ ଜ୍ୱାଳା ନାହିଁ; ଅଛି କେବଳ ଦଂଶନ । କ୍ରୋଧ ନାହିଁ; ଅଛି ନ୍ୟାଯ୍ୟ ତିକ୍ତତା, ଉଦ୍‌ବୋଧନ ନାହିଁ; ଅଛି ଟାଣୁଆ ଚ୍ୟାଲେଂଜ୍, ଏବଂ ଶେଷକୁ ବିଷାଦର ଅଳରେ ତାଙ୍କ ବଡ଼ପଣର ଗର୍ବ—ତୁମେ ମୋତେ ସ୍ୱୀକାର କରିବାକୁ ବାଧ୍ୟ । ମୋତେ ଅନୁସରଣ କର ବା ନକର, ତୁମ ଇଚ୍ଛା । ମୁଁ କେବଳ ଗାନ୍ଧୀବାଦୀ ସମାଜବାଦୀ କି ଆଦର୍ଶବାଦୀ ନୁହେଁ, ମୁଁ ଅନନ୍ୟ—ମାନେ ଗୋଠଖଣ୍ଡିଆ—ମାନେ ଶାନ୍ତି ପାଇଁ ସାଲିସ୍ କରିବା ମୋ ଧାତୁରେ ଥିବ ନାହିଁ—ମାନେ ମୁଁ ନିହାତି ନିହାତି ଏକୁଟିଆ । ଆସିବ ମୋ ପାଖକୁ ? ଆସି ପାରିବ ? ଆସିଲେ ଅବଶ୍ୟ ମୁଁ ଭାରି ଖୁସି ହେବି, ଆଉ ମୋ ଆନନ୍ଦର ହସ ହସିବି । ଏଇ ଝଲକଟିଏ ହେଲା ତା'ର ଗ୍ରେଟମୋଟ ନମୁନା—ବୁଝିଲ ?

ଏବେ ମଧ୍ୟ ଅଛି ସେଇ ନିଆଁର ଧାସେ ? ମନେ ହେବ ଯେ ଅଛି, ନ ହେଲେ ଅମରେଶର ଆଖିରେ ପଡ଼ି ନ ଥାଆନ୍ତା । କିନ୍ତୁ ବୀରଯୁଗ ତ କେବେଠୁ ଗଲାଣି, ଆଜିକାଲିକାର ଚତୁର ଗୃହଶୀଳ ବୋଫର୍ସ ଯୁଗରେ ଅମରେଶର ଏଭଳି ଜ୍ୟୋତିଦର୍ଶନକୁ କ'ଣ ନମିଲ କୁହାଯିବ ? ନା ତା' ଚରିତ୍ରର ବୈଜ୍ଞାନିକ ବିଶ୍ଳେଷଣ କରିବା ଉଚିତ, ଯେ କେଉଁଥିପାଇଁ ସେ ନିଜକୁ ଏମିତି ନିରକ୍ଷ ଭାବୁଛି, ଖୋଜୁଛି କେଉଁ ଅସଲ ଦେଶ କି ଅସଲ ବାପ ? ସହଜେ ଏଭଳି ପ୍ରଶ୍ନର ଉତ୍ତର ଦେଇହେବ ନାହିଁ । ସେଥିପାଇଁ ଆଉ ଗୋଟାଏ କାହାଣୀ ଲେଖିବାକୁ ପଡ଼ିବ ।

ଯାହାହେଉ ବର୍ତ୍ତମାନର ବୃଦ୍ଧ, ଚନ୍ଦାମୁଣ୍ଡିଆ ଏବଂ ଐତିହାସିକ ରଘୁବାବୁଙ୍କୁ ଅମରେଶ ଜାଣିଥିଲା ସିନା, ତାଙ୍କୁ ସ୍ୱଚକ୍ଷୁରେ ଦେଖି ନ ଥିଲା କେବେ, ଏଇ ମାସେ ଦି'ମାସ ପୂର୍ବରୁ । ଦେଖିଲା ଏଇ ଦିଲ୍ଲୀରେ, ଗୋଟିଏ ଆଞ୍ଚଳିକ ସମାରୋହରେ । ତେବେ ସେଇଦିନଠୁଁ ସେ ଲକ୍ଷ୍ୟ କରିଛି ଯେ, ଭଦ୍ରଲୋକ ପ୍ରାୟ ହସନ୍ତି ନାହିଁ, କିନ୍ତୁ ଯେତେବେଳେ ହସନ୍ତି ନା, ଅମରେଶର ଦେହ ଉଲୁସି ଉଠେ ତାକୁ ମନେ ପକାଇ । ସେ ଭାବେ ଯେ, ଏଇ ମହାର୍ଘ ହସର ଉଦ୍ଦେଶ୍ୟ ଓ ଅଭିପ୍ରାୟ ଖାସ୍ ତା'ରି ପାଇଁ । ଯାକୁ'ଇ ପାଇବା ପାଇଁ ସେ ଅପେକ୍ଷା କରିଥିଲା ଅଜଯାଏଁ । ସେ ବି ଦେଶ କାମ କରିପାରିବ, ସଚ୍ଚା ଦେଶକାମ—ନିଃସ୍ୱାର୍ଥ, ନିରଳସ । ଯାଙ୍କ ନିଆଁରେ ନିଜକୁ ପୋଡ଼ିଲା ପରି, ତିଳତିଳ କରି । ଦେହ ମୁହୂର୍ତ୍ତରେ ସେ ଯେଉଁ ରୋମାଞ୍ଚ ଅନୁଭବ କରେ,

ତା'ର ଅର୍ଥ କଅଣ ସେ ବୁଝିପାରେ ନାହିଁ । (ଅରେ ସେ ନିଜକୁ ଧିକ୍କାରିଲେ ବିକାରଗ୍ରସ୍ତ ରୋଗୀ ବୋଲି ଭାବିଲେ, କାହିଁକିନା ତା'ର ମନେପଡ଼ିଲା ଯେ, ପିଲାଦିନର ପ୍ରେମିକା ସୁନନ୍ଦା ସାଙ୍ଗରେ ଯେଉଁ ସେକମ୍ ହୋଇଥିଲା ସେଥିରେ ବି ଠିକ୍ ଏମିତିକା ରୋମାଞ୍ଚ ଆସିଥିଲା—ନିଜକୁ ଅଜାଡ଼ି ଦେବାର, ସାରି ଦେବାର···) କିନ୍ତୁ ସେ ନିଜକୁ ବୁଝେ ଯେ, ସ୍ନୀ'ର ମୂଳ୍ୟ ନିଅରା, ରଘୁବାବୁଙ୍କ ଅବଦାନ । ସେ ଯାହା ହାସଲ କରିଛନ୍ତି ତାଙ୍କ ସାରା ଜୀବନର ସାଧନାକୁ ନେଇ, ତା'ର ପ୍ରଶ୍ନବାଚୀ ବରଦାନ । ସତେ କି ସେ ସେଥିରୁ ଟିକିଏ ବଢ଼େଇ ଦେବାକୁ ଗୃହାନ୍ତି ମୋ ହାତକୁ । ଅତି ଶରଧାରେ । ହଁ, ତାଙ୍କ ଅପରୂପ ସ୍ନିଗ୍ଧହାସର ମତଲବ ସେଇଆ । ମାନେ— । ଏଇଠି ସେ ଥମକିଯାଏ, ଆଗକୁ ଭାବିବାର ସାହସ କରିପାରେ ନାହିଁ । ମୁଁ ଯିନା ତାଙ୍କୁ ବାପା ବୋଲି ମଣୁଛି, ସେ କ'ଣ ମୋତେ ସେଇ ଦୃଷ୍ଟିରେ ଦେଖନ୍ତି ? ଆପଣା ପୁଅ ପରି ?

ଅମରେଶ ଜାଣେ ଅଞ୍ଚଳର ଅନ୍ୟମାନଙ୍କ ପରି, ଯେ ରଘୁବାବୁ ସ୍ୱଇଚ୍ଛାରେ ମନ୍ତ୍ରୀପଦକୁ ନାହିଁ କରିଛନ୍ତି । ସରକାରଙ୍କ ହାତରୁ ଟେନାଏ ଜମି କି ଘରଖଣ୍ଡିଏ ନେବାକୁ ଗୃହିଁ ନାହାନ୍ତି, କାହିଁକିନା ସେ ଏଇ କଳୁଷିତ ସରକାରର କାଣିଚାଏ ଅନୁଗ୍ରହ ପାଇବାକୁ ଭୟ କରି ଆସିଛନ୍ତି । କାଳେ ସେଥିରେ ତାଙ୍କର କାଯ୍ୟା ନଷ୍ଟ ହୋଇଯିବ ! ଏପରି କି ତାଙ୍କର ଦ୍ୱିତୀୟ ହାର୍ଟ ଅପରେସନବେଳେ, ଯେତେବେଳେ ତାଙ୍କୁ ବମ୍ବେ ଯାଇ ଅନେକ ଖର୍ଚ୍ଚାନ୍ତ ହେବାକୁ ପଡ଼ିଲା, ସେ ସରକାରଙ୍କ ପ୍ରତିନିଧିଙ୍କୁ କ୍ଷମା ମାଗିଲେ । କହିଲେ—ମୋର ସାହାଯ୍ୟ ଲୋଡ଼ା ନାହିଁ, ଧନ୍ୟବାଦ । ମୋର ନିଜ ଲୋକ ଅଛନ୍ତି । ଯଦିଓ ତାଙ୍କର ସ୍ୱଚ୍ଛଳ ତଥା କ୍ଷମତାପନ୍ନ ନିଜ ଲୋକ ବିଶେଷ କେହି ନାହାନ୍ତି ବୋଲି କହିଲେ ଭୁଲ୍ ହେବନାହିଁ । ଲୋକଟା ଜାଣିଶୁଣି ନିଜକୁ ନିଃସ୍ୱ, ନିର୍ଧନ, ରିକ୍ତ କରି ରଖିଛି, ଆପଣା ଆଦର୍ଶର ଗରିମାକୁ ବଜାୟ ରଖିବା ପାଇଁ । ସେଇଲାଗି ଅଦୃଷ୍ଟ ବି କ'ଣ ରିକ୍ତତାର ନଳାତାବଡ଼ା ଲଦିଦେଲା ତାଙ୍କ ଉପରେ, ମଜା ଦେଖିଲା ପରି ? ଅଳ୍ପ ବୟସରେ ତାଙ୍କ ସ୍ତ୍ରୀକୁ ନେଇଗଲା ? ଏବଂ ଟେଣ୍ଟୀ ମଫସଲଅଣୀ (ଯାହା ଲୋକମୁଖରେ ଶୁଣିବା କଥା) ଝିଅଟିଏ ଛଡ଼ା—? ଅମରେଶର ରାଗ ଆସେ ଭଗବାନଙ୍କ ଉପରେ ।

କିନ୍ତୁ ତା' ବୋଲି ସେ ଯେ ପୁଅଟିଏ ପାଇବା ପାଇଁ ଭୋକେଇଛନ୍ତି ଓ ମୁଁ ଆସି ପହଞ୍ଚିଗଲି ତାଙ୍କ ବୁଢ଼ା ବୟସରେ, ସେ କଥା ନୁହେଁ । ମୁଁ ଏତେ ବୋକା ନୁହେଁ କି ଲୋଭୀ ନୁହେଁ ! ଅମରେଶ ନିଜକୁ ତିଆରିବାରେ ହେଳା କରେ ନାହିଁ ।

ଏଇକ୍ଷଣି ତାଙ୍କ ସ୍ୱରୂପକୁ ହେଜିଲାବେଳେ ଅମରେଶର ମନେହେଲା ଯେ, କୁହୁଡ଼ି ଭିତରେ ତାଙ୍କର ସେଇ ଅନବଦ୍ୟ ହସ ବି ଦିଶିଯାଉଥିଲା, ଯେତେବେଳେ

ସେ ଆମ ହଷ୍ଟେଲ ବାଟ ଦେଇ ଗଲେ, ମୋର ଏଇ ଧରକାର ସାମ୍ନାସାମ୍ନି ହୋଇ ଏବଂ ସେ ବୁଝିଲି ଯେ ପ୍ରଶ୍ନ କୁହୁଡ଼ିର ନୁହେଁ, କୁହୁଡ଼ିର ପରଦା ତଳେ ତାଙ୍କର, ଗୋପନ ପୁଅ ପ୍ରତି ବାପର । ଏବଂ ପ୍ରଶ୍ନର ଶବ୍ଦ, ଶବ୍ଦର ଅକ୍ଷରକୁ ମଧ୍ୟ ବେଶ୍ ପଢ଼ି ହେଉଛି । କହୁଛନ୍ତି,

—ଯାହା କରୁଛୁ କର ପଛେ (ଅନିମାକୁ ନେଇ କି ତନିମାକୁ ନେଇ) ଆସିବୁ ତ ମୋ ପାଖକୁ ? ଆସିବୁ ନା ?

ସେଇଠୁଁ ସେ ବି ତା'ର ଉତ୍ତର ଦେଲି ଆଧୁନିକ ପୁଅପଣିଆର ନିର୍ଭୀକତା ସହ ।

—ଅବଶ୍ୟ ଆସିବି । ମୋତେ କ୍ଷମା କର ମୁଁ କ୍ଷଣକ ପାଇଁ ଗୃହଛଡ଼ା ହେବାକୁ ବସିଥିଲି । ତୁମକୁ ନିଶ୍ଚୟ ବାଧୁଥିବ ମୋ କଥା । ଯେ ମୁଁ ଭଡ଼ରିଆ ଫିସାଦିଆ କାମ କରିବି ବୋଲି ଗୃହଁ ଛି ଏଇ ଖଳ ସରକାରକୁ ଓଲଟେଇବା ପାଇଁ । ନା, ମୁଁ ତୁମ ପୁଅ । ଅନିମା ଆଇ.ଏ.ଏସ୍. ହେଲେ ହେଉ, ମୁଁ ସିଧାସଳଖ ଲଢ଼େଇ କରିବି ଏଇ ସରକାର ସାଙ୍ଗରେ ।

ମାନେ ପ୍ରଜା ପକ୍ଷଦଳରେ ମିଶିବି । ତୁମର ତ କିଛି ଦଳବଳ ନାହିଁ, ଖାଲି ଗୋଟାଏ ଆଦର୍ଶ, ତା'ହେଲେ ଆଉ କ'ଣ କରିପାରିବ କହୁନା ? ଆଜି କେଉଁଠି କୋଉ ପାଞ୍ଚଜନ୍ୟ ବାଜୁଛି ଆମ ପାଇଁ ? ସ୍ୱାଧୀନତାର ଡାକ ? ସ୍ୱାଧୀନତା ମିଳିଗଲାଣି କେବେଠୁଁ । ବୁଢ଼ା ହୋଇଗଲାଣି କହିଲେ ଚଳେ, ତା'ର ଚେହେରା ଯାହା ହେଉନା କାହିଁକି । ବାହାରୁ କୋଉ ଶତ୍ରୁ ବି ମାଡ଼ିଆସୁନାହିଁ ସ୍ୱାଧୀନତାକୁ ଲୁଟି ନେବ ବୋଲି । ଧର୍ମରକ୍ଷା ? ସେ ତ ନବୁଧିଆ ହାଣୁଆ ଜଗପନ୍ଥୀମାନଙ୍କ ପାଇଁ । ଏବଂ ଲାଲ୍‌ପତାକାର ବିପ୍ଳବ ବି ପୁରୁଣାକାଳିଆ ହୋଇଗଲାଣି—ଦେଖୁନା ଚୀନ, ରୁଷିଆ ଆଦି ଦେଶରେ କ'ଣ ସବୁ ଘଟୁଛି ? ତା'ହେଲେ ଉପାୟ କଅଣ ? ଏମାନେ ଅନ୍ତତଃ ନୂଆ, ଏମାନଙ୍କର କିଛି ଆଦର୍ଶ ଅଛି, ଗୋଟାଏ ଜବରଦସ୍ତ ଶତ୍ରୁ ଅଛି, ତା' ନାଆଁ ଦୁର୍ନୀତି, ଏବଂ ଏମାନଙ୍କର ଜଣେ ନେତା ଅଛି ଯେ, ନୀତିନିର୍ମଳ ସଚ୍ଚା ସୁନ୍ଦର ବୋଲି ମନେହୁଅନ୍ତି ।

ହଁ, ଆସିବି ତୁମ ପାଖକୁ । ମାନେ ମିଶିବି ସେଇ ଦଳରେ । ମୁଁ ତୁମକୁ କଥା ଦେଉଛି । ଅନିମାକୁ ବାହା ହେବା ସାଙ୍ଗରେ କିଛି ସମ୍ପର୍କ ନାହିଁ ତା'ର । ଆଉ ତୁମେ ମୋତେ ଆଶୀର୍ବାଦ କରିବ । ଅଲବତ୍ କରିବ । ନ କରିବାର କୌଣସି କାରଣ ନାହିଁ । ତୁମେ ନିଜେ ସେଦିନ କହୁଥିଲ ପରା, ଯେ ଏତେଦିନକେ ଏଇ ଦଳେ

ବାହାରଛନ୍ତି ସତେଅବା କିଛି କରିବେ ବୋଲି, ଏମାନେ କି ପ୍ରକୃତରେ ଗାନ୍ଧୀଙ୍କୁ ମନେପକାଉଛନ୍ତି ?

ନା, ଏମିତି ଚଳିବ ନାହିଁ । ମୁଁ ଦିନେ ତୁମକୁ ନିମନ୍ତ୍ରଣ କରି ଆଣିବି ଏଠିକି ! ଅନିମା ବି ଥିବ । ଆଉ ମୁଁ ତୁମକୁ ସାଫ୍ ସାଫ୍ କହିଦେବି ସବୁକଥା । ମୋ ଜ୍ୱଳନ୍ତ ଅଭିଳାଷର କଥା । ଯେ ତୁମେ ହେଉଛ ମୋ ପ୍ରେରଣା ଆଉ ଅନିମା ମୋ ପ୍ରିୟ, ଏବଂ ଦୁହିଁଙ୍କ ଭିତରେ ଥାଇ ଆଓ୍ୱାଜ୍ ଦେଉଛି ମୋ କର୍ମଭୂମିର ଶଙ୍ଖ, ଭାରତୀୟ ପ୍ରଜା ପରିଷଦ ।

ଅମରେଶ ଗୋଟାଏ କୁଦା ମାରିଲା ତା'ର ଗୋଟିକିଆ ରୁମ୍‌ରେ । ସତେ ଅବା ସେ ଜଣାଇବାକୁ ଚାହୁଁ ଥିଲା ଯେ, ତା'ର ଆନନ୍ଦରେ କେବଳ ପ୍ରକୃଷ୍ଟ ଆଦର୍ଶ ନାହିଁ । ତା' ସାଙ୍ଗକୁ ଅଛି ପ୍ରଭୂତ ଯୌବନ, ଦମ୍ଭ ଓ ବେପରୁଆପଣ ।

ଖେଳୁଆଡ଼ ଅମରେଶ ଉତୁରି ଆସିଛି ମଇଦାନ ଉପରକୁ । ସମ୍ଭାଳ ଏଥର !

( ୨ )

ନରହରି ନାଏକ ଏମ୍.ପି.ଙ୍କ ଦିଲ୍ଲୀସ୍ଥିତ ବାସଭବନ । ସନ୍ଧ୍ୟାର ଅନ୍ଧାର ଆସିବି ଆସିବି ବୋଲି ହେଉଛି । ଅଳ୍ପସମୟ ପରେ ଶୀତଦିନିଆ ଲମ୍ବା ରାତି ଆରମ୍ଭ ହୋଇଯିବ । ନରିବାବୁ ତାଙ୍କ କାମରୁ ଫେରିବେ । କର୍ମକ୍ଷେତ୍ର ଅବଶ୍ୟ ଲୋକସଭା, କିନ୍ତୁ ସେଠି ଖାଲି ମୁହଁ ଦେଖେଇଲେ ହେଲା । ଅସଲି କାମ ବାହାରେ, ଦଳଗତ କାମ, ଏବଂ ସାମୂହିକ କଲ୍ୟାଣ ପାଇଁ ନାନା ଧିଆନିଆ, ଧର୍ମଘଟ ଓ କୁହାବୋଲାର କାମ । ଘରକୁ ଫେରିଲା ପରେ ମଧ୍ୟ ତା'ର ଅନୁକ୍ରମଣ—ବିଭିନ୍ନ କିସମର ବନ୍ଧୁ ଗଡ଼ିବେ ତାଙ୍କ ପାଖକୁ ଏବଂ ଦେଶର ପ୍ରଗତିକୁ ନେଇ କେତେ ଆଳାପ ଆଲୋଚନା ଚାଲିବ । ଯେତେଦୂର ସମ୍ଭବ ରାତି ଦଶଟା ଯାଏଁ, ମାନେ ଦୂରଦର୍ଶନରେ "ସଂସଦ ସମାଚାର" ଶୁଣିବା ଯାଏଁ । ଆଲୋଚନାର ମୁଖ୍ୟ ଅଂଶ ହେଲା ଏଇ, ଯେ ବର୍ତ୍ତମାନ ଅନ୍ୟ ସଦସ୍ୟମାନଙ୍କ ଡ୍ରଇଂରୁମ୍‌ରେ କେଉଁପ୍ରକାର ଆସର ଜମିଥିବ, କିଏ କାହା ସାଙ୍ଗରେ ମିଶୁଥିବ, କିଏ କୋଉ ଗୋଷ୍ଠୀକୁ ଫଟେଇବାର କି ଯୋଡ଼ିବାର ପ୍ରଚେଷ୍ଟା କରୁଥିବ ଇତ୍ୟାଦି ବିଷୟର ବଳିଷ୍ଠ ଅନୁମାନ କରି ତା'ର ଯଥାଯୋଗ୍ୟ ପ୍ରତିକାର କରିବା । ଯେପରିକି ଦେଶ ଠିକଣା ବାଟରେ ଚାଲିବ—ନରିବାବୁ ଓ ତାଙ୍କ ସାଙ୍ଗସାଥୀମାନଙ୍କର ଉପଯୁକ୍ତ ସାହାଯ୍ୟ ସହକାରେ । ଅନେକ ପାର୍ଟିଗୁଣ୍ଡ ହୁଏ, ଗରମାଗରମ ତର୍କ ହୁଏ, ବେଳେବେଳେ ଚାହା ମଧ୍ୟ ଇଡ଼ି ହୋଇଯାଏ ସରକାରୀ

କାର୍ପେଟ୍ ଉପରେ । କିନ୍ତୁ ଗୋଟିଏ କଥା ବୁଝିବାରେ ବାକି ରହେ ନାହିଁ—ଏଇ ଦେଶକାମ କରିବାଟା ମଜାର ବ୍ୟାପାର !

ରଘୁବାବୁଙ୍କ ଆଖି ସାମ୍ନାରେ ସାଂପ୍ରତିକ ନେତା ଭାଇମାନଙ୍କର ଏହି ପ୍ରକାର ଆନନ୍ଦ ଉଚ୍ଛଳ ଓ ମୁଖରିତ ହୁଏ ପ୍ରତ୍ୟେକ ସନ୍ଧ୍ୟାରେ । ସେ ଅବଶ୍ୟ ଯୋଡ଼ିଯୋଡ଼ି ହୋଇ ବସନ୍ତି ନାହିଁ ତାଙ୍କ ସାଙ୍ଗରେ । ମୋଟାସେଟ୍ରୁ ଦୂରରେ ଥିବା ଗୋଟିଏ ଭୁଷିଁଲଗା ଗଦି ଉପରେ ଚକା ମାଡ଼ି ବସିଥାଆନ୍ତି । ଚୁପ୍ ହୋଇ ବସିଥାଆନ୍ତି । ବହି ଖଣ୍ଡେ ପଢ଼ୁଥାଆନ୍ତି କି କଅଣ ଲେଖାଲେଖି କରୁଥାଆନ୍ତି । କିନ୍ତୁ ପ୍ରଗତିର ଏଇ ଆଧୁନିକତମ ଦୃଶ୍ୟକାବ୍ୟରୁ ସେ କ'ଣ ନିଜକୁ ପୂରାପୂରି ବିଚ୍ଛିନ୍ନ କରି ରଖିପାରୁଥିବେ ? କିଛି ଦେଖୁ ନ ଥିବେ ? ଶୁଣୁ ନ ଥିବେ ? ତେଣୁ ପ୍ରଶ୍ନ ହେଉଛି ଯେ ସେ ଏଠି ବସି ରହୁଥାଆନ୍ତି କାହିଁକି ? ନରିବାବୁ ତାଙ୍କ ବରିଷ୍ଠ ଓ ସମ୍ମାନୀୟ ତଥା ସମ୍ପର୍କୀୟ ଅତିଥିଙ୍କୁ ଗୋଟାଏ ସ୍ୱତନ୍ତ୍ର ରୁମ୍ ଛାଡ଼ି ଦେଇଛନ୍ତି । ସେଠି ଏକୁଟିଆରେ ବସିବାକୁ ତାଙ୍କୁ କିଏ ମନା କରୁଥିଲା ?

ମୋଟ ଉପରେ ସେ କାହିଁକି ଦିଲ୍ଲୀକୁ ଆସିଛନ୍ତି ଏବଂ ଏଠି ରହିଲେଣି ଏତେ ଦିନ, ତା'ର ରହସ୍ୟ ମଧ୍ୟ ବୁଝିହୁଏ ନାହିଁ ।

ସ୍ୱାଧୀନତା ସଂଗ୍ରାମୀଙ୍କ ତାଲିକାରେ ତାଙ୍କ ନାଆଁ ଥିବାରୁ ତାଙ୍କ ପାଖକୁ ମଧ୍ୟ ଗୋଟିଏ ନିମନ୍ତ୍ରଣପତ୍ର ଆସିଥିଲା । ସେ ଅଗଷ୍ଟ ବିପ୍ଳବର ଅର୍ଦ୍ଧଶତାବ୍ଦୀ ଉପଲକ୍ଷ୍ୟରେ ସମୁଚିତ କାର୍ଯ୍ୟପନ୍ଥା ପ୍ରସ୍ତୁତ କରିବା ପାଇଁ ଗୋଟିଏ ତିନଦିନିଆ ବୈଠକ ବସିବ ଦିଲ୍ଲୀରେ ଏବଂ ସେଥିରେ ମହାଶୟ ଯୋଗଦାନ କରିପାରିଲେ ଆମେ ଉପକୃତ ହେବୁ । କିନ୍ତୁ ସେ ଏମିତିକା କେତେ ସରକାରୀ ନିମନ୍ତ୍ରଣକୁ ସଦାସର୍ବଦା ଉପେକ୍ଷା କରି ଆସିଛନ୍ତି, ତାଙ୍କର ହଠାତ୍ କାହିଁକି ମନ ବଳିଲା ତା'ର ଖାତିର୍ କରିବା ପାଇଁ ? ପୁଣି ଦିଲ୍ଲୀ କୋଉ ପାଖ ବାଟ ନୁହେଁ, ଏବଂ ତା'ର ଶୀତକଷ୍ଟ ସାଧାରଣ ନୁହେଁ…ବୁଢ଼ାଙ୍କର କଅଣ ହୋଇଛି ? ନବଯୌବନର ଭେଳକି ? ନା କେଉଁ ବାର୍ଦ୍ଧକ୍ୟସୁଲଭ ଅଜବ୍ ତାଡ଼ନା ?

ହଁ, ଯଦି ସେ ସେ ବୈଠକରେ କିଛି ଗୋଟାଏ ନୂଆ କଥା କହିବାକୁ ଚାହୁଁଥିଲେ, ତାହାହେଲେ ତାଙ୍କ ଅଭିନବ ଆଗ୍ରହକୁ ବୁଝିହୁଅନ୍ତା ଅଳ୍ପ ବହୁତ । କିନ୍ତୁ ତା' ମଧ୍ୟ ନୁହେଁ । ସେଠି ସେ ବସିଥିଲେ ଗୁମ୍ ହୋଇ, ତାଙ୍କ ଚନ୍ଦାମୁଣ୍ଡକୁ ସାଉଁଳଉଥିଲେ, ଚଉଡ଼ା କପାଳର ଭ୍ରୂରୁକୁ ବାରମ୍ବାର ଟେକୁଥିଲେ, ନାକପୁଡ଼ାକୁ ଫୁଲଉଥିଲେ, ଏବଂ ଆଇ ଥାଇ ଓଠକୁ ବଙ୍କଉଥିଲେ । ମନେ ହେବ, ସେ ସଭାସଦ୍‌ମାନଙ୍କୁ ଜଣାଇଦେବାକୁ ଚାହୁଁଥିଲେ ଯେ, ଏହି ସଭାର କାର୍ଯ୍ୟକ୍ରମ ପ୍ରତି

ଏହିପ୍ରକାର ବିଦ୍ୱେଷ ଓ ବିଦ୍ରୂପର ଇଙ୍ଗିତ ହିଁ ଯଥେଷ୍ଟ, ମୋ ଶବ୍ଦଗୁଡ଼ାଙ୍କୁ ବ୍ୟସ୍ତ କରିବା ଅନାବଶ୍ୟକ । କେବଳ ଏତିକି କହୁଛି, ଯେତେବେଳେ ପ୍ରସ୍ତାବ ପଡ଼ିଥାଏ ଯେ, ଗ୍ରାମାଞ୍ଚଳର ପ୍ରତି ପଞ୍ଚାୟତ କେନ୍ଦ୍ରରେ ଅଗଷ୍ଟ ବିପ୍ଳବର ପ୍ରଦର୍ଶନୀ ଅନୁଷ୍ଠିତ ହେବ, ବିପ୍ଳବୀମାନେ କିପରି ଭାବରେ ବ୍ରିଟିଶ୍ ସରକାରଙ୍କୁ ନାକେଦମ୍ କଲେ, ତା'ର ସାଧନ ଉପାଦାନମାନଙ୍କୁ ଦର୍ଶାଇବାକୁ ପଡ଼ିବ, ଯୁବଜନତାର ଅବଗତି ପାଇଁ, ସେତେବେଳେ ସେ ବି ଗୋଟିଏ ମନ୍ତବ୍ୟର ବୋମା ଛାଡ଼ି ଦେଇଥିଲେ । କହିଲେ—

"ଆଜ୍ଞା, ସେଥିରେ କ'ଣ କିଛି ଲାଭ ହେବ ? ଅବଶ୍ୟ ଯଦି କେଉଁଠି ଏ-କେ-୪୭ ଗୁଡ଼ାକ ଗ୍ରାଇଫଲ୍ ରଖା ହୁଏ ସେଠି, ତା'ହେଲେ ହୁଏତ ସେମାନେ ଆପ୍ୟାୟିତ ହେବେ । ବୁଝିବେ ଯେ, ଆମ ବାପ ଦାଦାଙ୍କର ଅକଲ୍ ଥିଲା···।"

ସଭାସଦ୍‌ମାନେ ହସି ଉଠିଲେ ଏବଂ ମୁହଁ ଚାହାଁଚାହିଁ ହେଲେ । ସତେକି ସେମାନେ ସଭା ମଧ୍ୟରେ ଗୋଟିଏ ଗାନ୍ଧିବାଦୀ ଜରଦ୍‌ଗବର ଉପସ୍ଥିତିକୁ ସ୍ୱୀକାର କରିପାରୁଛନ୍ତି ।

ଏନଦନିଆ ବୈଠକ ବି ସରିଲା । ତା'ପରେ ମଧ୍ୟ କାହିଁକି ପଡ଼ିରହିଛି ଦିଲ୍ଲୀରେ ? ତୁମର ସଫେଇକୁ କ'ଣ ବୋଲି ବିଶ୍ୱାସ କରିବେ ? ଯେ ଏଠି ଜଣେ ବିଶିଷ୍ଟ ଯୁନାନି ହାକିମ ଅଛନ୍ତି, ତାଙ୍କର ଚିକିତ୍ସାରେ ରହିବା ପାଇଁ ଦିଲ୍ଲୀ ରହଣିକୁ ବଢ଼େଇବାକୁ ପଡ଼ୁଛି ?

ଏବଂ ବସି ରହୁଛ ଏଇ ବୈଠକଖାନାରେ, ଘଣ୍ଟା ପରେ ଘଣ୍ଟା, ଯେତେକ ଦୁର୍ନୀତି ଓ ଭ୍ରଷ୍ଟାଚାରର ମନ୍ତ୍ରଣା ଶୁଣିବା ପାଇଁ ?

ବିଶ୍ୱାସ କରିହେଉନାହିଁ ଯେ ଭିତରେ ଭିତରେ ତୁମକୁ ପାପକଥା ଶୁଣିବାକୁ ଭଲ ଲାଗେ । ଯେମିତିକି ଆଜନ୍ମ ଭଦ୍ରପୁରୁଷକୁ ଖଣ୍ଡକଥା ଶୁଣିବାକୁ ଭଲ ଲାଗେ ବେଳେବେଳେ, ଅଳ୍ପବହୁତ ଉତ୍ତେଜିତ ହେବା ପାଇଁ । ତେଣୁ ମନେ ହେଉଛି ଯେ ବୁଢ଼ା ବୟସରେ ତୁମେ ତୁମର ନୈତିକତାକୁ ଖୁଲୁଲେଇବାକୁ ଚାହୁଁ । ବୋଧହୁଏ ତୁମର ଇଚ୍ଛା ହେଉଛି ଯେ ଏଣିକି ଦରକୋଠରେ ନ ବସି ପାପୀ ସଂସାରର ଗତିବିଧିକୁ ପ୍ରକାଶ୍ୟରେ ଦେଖିବ, ଶୁଣିବ ଓ ତୁମର ଶୁଖିଯାଇଥିବା ପିତା ନଳୀକୁ ରସବନ୍ତ କରିବ । ଆଉ ସେଇଥିକୁ ଗୈରିବଉଥିବ, ଗୈଳୁଥିବ, ମରିବା ଯାଏଁ । କାହିଁକି ନା କେବଳ ସେତିକି ରହିଯାଇଛି ତୁମ ପାଖରେ । ଆଉ କିଛି ଦେଇ ହେବନାହିଁ କି ଦେଖେଇ ହେବ ନାହିଁ ଏଇ ବୟସରେ । ଏବଂ ଏଇ ଯୁଗରେ ।

କିନ୍ତୁ ବର୍ତ୍ତମାନ ଖାଲି ଟିଏ ଘୋଡ଼େଇ ହୋଇ ସେ ଯେମିତି ଘୂରି ବୁଲୁଛନ୍ତି ନବାବୁଙ୍କ ଲନ୍‌ରେ, ଏବଂ ବେଳେବେଳେ ମୁହଁଟାକୁ ତୋଳି ଧରୁଛନ୍ତି ସନ୍ଧ୍ୟାର

ଆକାଶଆଡ଼େ, ସେଇଠୁଁ ଆକାଶ ତା'ର ନରମ ଆଲୁଅ ଦେଇ ତାଙ୍କ ମୁହଁର କ୍ଲିଷ୍ଟ କୁଞ୍ଚିତ ଇତିହାସକୁ ଆଉଁସି ଦେଉଛି, ସେଥିରୁ ମନେହେବ ଯେ ସେ ତିକ୍ତତାକୁ ମଧ୍ୟ ତ୍ୟାଜ୍ୟ କରିସାରିଲେଣି । ଅଣ୍ଡା ନାଆଁରେ ନାଆଁର ଚକ୍ରବର୍ତ୍ତୀ ନାହିଁ । ବଂଶନର ପ୍ରବର୍ତ୍ତିତା ଗ୍ଲାନିଗଲାଣି, ଚ୍ୟାଲେଞ୍ଜ କରିବାକୁ ବଳ ନାହିଁ । ଖାଲି ଥିଲା ଏଇ ଆତ୍ମଭୁକ୍ ତିକ୍ତତା, ତାକୁ ବି ଆଉ ଧରି ରଖିହେବ ନାହିଁ ବେଶିଦିନ । ଅବସାଦକୁ ଆଉ ମିଛ ବୋଲିହେଉ ନାହିଁ । ହୁଏତ ତା'ର ନାଆଁ ଦେଇପାରି ଘୋରତର ବିଷାଦ । ମନ ଭୁଲେଇବା ପାଇଁ ।

ଅନ୍ଧାର ଘୋଟିବା ଆଗରୁ ସେ କେତୋଟି ନିର୍ଣ୍ଣୟ କରିନେଲେ ନିଜ ପାଇଁ । କହିଲେ ମୁଁ ଆଜି ନିରର ଡ୍ରଇଁରୁମ୍‌ରେ ବସିବି ନାହିଁ । ଯଥେଷ୍ଟ ହେଲାଣି । ତା' ଛଡ଼ା ଦିଲ୍ଲୀରେ ବି ଆଉ ପଡ଼ିରହିବ କାହିଁକି ? ଫେରିଯିବି । ନିଜ ପାଇଁ ଆଉ ଗୋଟାଏ ଗୁହା ଖୋଜିନେବି, ଝିଅ ବି ତା'ର ପତ୍ତା ପାଇବ ନାହିଁ କି ଧେଣ୍ଡୁରା ପିଟିବ ନାହିଁ ଯେ ବାପା ଏଇଠି ଅଛନ୍ତି । ଆତ୍ମଚରିତଟାକୁ ସାରିଦେବି ଶୀଘ୍ର । ସେଇଠୁଁ ? ସେଇଠୁଁ ଦେଖାଯିବ···ନିରକୁ କ'ଣ ଭୂତ ଲଗିଥିଲା ଯେ ତା' ପିଲାପିଲିଙ୍କୁ, ମାନେ ତା' ସ୍ତ୍ରୀ ମଞ୍ଜୁଲାକୁ ପଠେଇଦେଲା ଗାଆଁକୁ ? ତା'ର କୋଉ ରାଜମାତ ଭଣ୍ଡୁର ହୋଇଯାଉଥିଲା ତା' ଯୋଗୁ ? ମଞ୍ଜୁଲା ମୋ ନିଜ ଶାଳୀ ନୁହେଁ, ଶ୍ୱଶୁରର ମାମୁଁଝିଅ ଭଉଣୀ, ହେଲେ ଦି'ଜଣଙ୍କ ଚେହେରା ବହୁତ ମିଶେ । ସେମିତିକା ଗାଲଫୁଲା ହସ, ଆଉ ଧଇଁସଇଁଆ ତରବରିଆ କଥା, ସତେ କି ସମସ୍ତ ସତରେ ପଳେଇ ଯାଉଛି । କିନ୍ତୁ ଭାବିନାହିଁ ଯେ ତାକୁଇ ଦେଖିବି ବୋଲି ମୁଁ ଆଉ କୋଉଠିକି ନ ଯାଇ ନିରି ଘରେ ଆସି ରହିଲି । ମୁଁ ସେମିତିକା ସେଣ୍ଟିମେଣ୍ଟାଲ୍ ଫୁଲ୍ ନୁହେଁ । ଯାହାହେଉ ଦିଲ୍ଲୀ କାମ ସରିଲା । ଯିବା ଏଥର ।

ତେବେ ଯିବା ଆଗରୁ ସେଇ ଟୋକାଟାକୁ ଜଣେଇଦେବାକୁ ପଡ଼ିବ । ଅମରେଶ । ଖାଲି ଆମ ଅଞ୍ଚଳର ପିଲା ବୋଲି ନୁହେଁ । ତା'ର ରଙ୍ଗଢଙ୍ଗ ଭିନ୍ନେ, ଅନେକଟା ସେ ଯୁଗର ଭାବଭୋଳା ଭକ୍ତଙ୍କ ପରି, ଯେଉଁମାନେ ଗାନ୍ଧୀ ଆଶ୍ରମକୁ ଆସୁଥିଲେ ପ୍ରତ୍ୟେକଦିନ । ପଛରେ ବସୁଥିଲେ, କିନ୍ତୁ ଆସୁଥିଲେ, ଶୁଣୁଥିଲେ ଓ ମନେ ହେଉଥିଲା ଯେତ ନପାହୁଣୁ କିଛି ଗୋଟାଏ କରିବେ ଦେଶ ପାଇଁ । ଇଏ ବି ସେମିତ ଢ଼ିମା ଢ଼ିମା ଆଖି କରି ମୋର ଜିଦଖୋର ସତ୍ୟାଗ୍ରହୀ ଅର୍ଥାତ୍ ମାଡ଼ଖିଆ କଥାଗୁଡ଼ାକ ଶୁଣିଯାଏ । ପିଇଯାଏ କହିଲେ ଚଳେ । ସେଉଁଥିପାଇଁ ମୁଁ ବି ବୋଧହୁଏ ଟିକିଏ ବେଶୀ ଗପିଯାଏ କି କଅଣ । ବେଳେବେଳେ ସନ୍ଦେହ ହୁଏ ଯେ ଆମ ବେଳର ହୋଇଥିଲେ···କ'ଣ ହୋଇଥାଆନ୍ତା ? ମନ୍ତ୍ରୀ ହୋଇ ବସନ୍ତାଣି ଏଇକ୍ଷଣି ? ନା ଗୁଳିମାଡ଼ ଖାଇ ଖତମ୍ ହୋଇଯାଆନ୍ତାଣି କେବେଠୁଁ ?

ନା, ତା'କୁ କହିକରି ଦିବ । (ତା'ର ପାଇଁ କ'ଣ ମୁଁ ଦିଲ୍ଲୀରେ ରହିଗଲି ଏତେଦିନ, ଏଇ ପ୍ରଶ୍ନ ଅବଶ୍ୟ ତାଙ୍କ ମନକୁ ଆସିବାର ସମ୍ଭାବନା ନଥିଲା ।) ବହୁତ ଦିନ ହେଲା ସେ ଆସିନାହିଁ ମୋ ପାଖକୁ । କହୁଥିଲା ପରୀକ୍ଷାରେ ବ୍ୟସ୍ତ ରହିବ । କିନ୍ତୁ ବାପଧନ, ମୋର ଅନୁମାନ ଯେ ଆଉ ଗୋଟାଏ ବିଶେଷ କାରଣ ଅଛି । ଡନ୍‌ଲୁପାଡଲୀ ଝିଅଟିଏ ଆସେ ତୋ ପାଖକୁ, ମୁଁ ଦେଖିଛି । ତାକୁଇ ନେଇ ଟିକଏ ବେଶି ବ୍ୟସ୍ତ ହୋଇପଡ଼ିଛୁ—ନୁହେଁ ? ଭଲ, ଭଲ । ହେଲେ ସେଇଆ କହିଦେଲୁନି କାହିଁକି ? ଭୟ ଲାଗିଲା କହିବାକୁ ? ମୁଁ କ'ଣ ତୋର ଲୋକାଲ୍ ଗାର୍ଜେନ୍ ? ନା ମୁଁ ତୋ ବାପ ?

ରଘୁବାବୁଙ୍କର ଠୋ ଠୋ ହୋଇ ହସିବାକୁ ଇଚ୍ଛା ହେଲା । କିନ୍ତୁ ସେ ଉଦ୍‌ଗମର ଆରମ୍ଭରେ ରହିଗଲେ ଅଟ୍‌କିନା । ସତେ କି ତାଙ୍କର ଖିଆଲ ହେଲା ଯେ ଟୋକାଟା ଅଛି ସେଇଠି କୋଉଠି, ତାକୁ ବାଧିବ ପରା !

( ୩ )

କଥେଇ ଦେବା ପାଇଁ ବେଶି ଡେରି ହେଲ୍‌ନାହିଁ । ରଘୁବାବୁଙ୍କୁ ନିଜକୁ ଯିବାକୁ ପଡ଼ିଲାନାହିଁ ତା'ର ସେଇ ଟୋକାଟାକିଆ ହଷ୍ଟେଲକୁ, ସେଠି ତାଙ୍କ ହୋ' ହଲ୍ଲାରେ ମୁଣ୍ଡ କ'ଣ ହୋଇଯିବ ମଣିଷର । ଦି'ଦିନ ପରେ ଅମରେଶ ଆସି ପହଞ୍ଚିଗଲା ସକାଳୁ ସକାଳୁ । କ'ଣ ଗୋଟାଏ ଜରୁରୀ କାମ ଥିଲା ପରି ମନେ ହେଉଥିଲା । କିନ୍ତୁ ତା' ଆଗରୁ ରଘୁବାବୁଙ୍କ ପାଟିରୁ ବାହାରିଗଲା ଯେ ସେ ଆସନ୍ତା ସପ୍ତାହରେ ଚାଲି-ଯାଉଛନ୍ତି । ସେଥିରେ ଟୋକାଟା ଏମିତି ତରକି ଉଠିଲା କାହିଁକି ? ଖାଲି ସେତିକି ନୁହେଁ, ମିନିଟିଏ ଭାବିଲା ପରି ହୋଇ ହଠାତ୍ ଗୋଟାଏ ନିମନ୍ତ୍ରଣ ଥୁଇଦେଲା—"ସାର୍, ଆପଣ ଆସନ୍ତା ମଙ୍ଗଳବାର ଦିନ ଆସି ପାରିବେ ଆମ ହଷ୍ଟେଲ୍‌କୁ ? ଡିନର୍ ଖାଇବେ ମୋ ସାଙ୍ଗରେ"—ତା'ପରେ ତାଙ୍କ କୁଣ୍ଠାର କାରଣ ବୁଝିପାରିଲା ପରି, "ନା' ଡାଇନିଙ୍ଗ୍ ହଲ୍‌ରେ ନୁହେଁ, ମୋର ରୁମ୍‌ରେ । ନିରୋଳାରେ । କାହିଁକିନା ମୋର ଗୋଟାଏ ବିଶେଷ କଥାବାର୍ତ୍ତା କରିବାକୁ ଅଛି ଆପଣଙ୍କ ସାଙ୍ଗରେ ।"

"ତୁମ ପରୀକ୍ଷା ସରିଯାଇଥିବ ତ ?"

"ହଁ ହଁ, ସରିଥିବ ଠିକ୍ ତା' ପୂର୍ବଦିନ ।"

"ଆଉ କାହାକୁ ଡାକିନାହଁ ?"

"ନା···ଆଇ ମିନ୍, ଆଉ ଜଣେ ହୁଏତ ଥିବ । ସେ ମୋ ସାଙ୍ଗରେ ପଢ଼େ । ତା' ନାଆଁ ଅନିମା । ଭଲ ଝିଅଟିଏ । ଆପଣଙ୍କ ସାଙ୍ଗରେ ଚିହ୍ନା କରେଇଦେବି···"

ରଘୁବାବୁଙ୍କର ଇଚ୍ଛା, ହେଲ ଟୋକାକୁ ଚଢ଼େଇବେ । ଭଲ ଝିଅଟିର ଗହଣରେ ବିଶେଷ କଥାବାର୍ତ୍ତା ! ଉତ୍ତମ । କିନ୍ତୁ ବାବୁ, ମୋତେ କାହିଁକି ପୂରାଉଛ ହେଥିରେ ? ଆଉ କେହି ମିଳିଲେ ନାହିଁ ତୁମକୁ ? ହେଲେ ସେ ପରିହାସର ପାଖ ମାଡ଼ିଲେ ନାହିଁ ! ଉଦ୍ବେଗଚିତ ଭଙ୍ଗୀରେ କହିଲେ, "ଧନ୍ୟବାଦ । ମୁଁ ଅସିବି, ନିଶ୍ଚୟ ଅସିବି ।" ଏବଂ ତାଙ୍କ ପ୍ରତିଶ୍ରୁତିରେ ଆନ୍ତରିକତାର ଅଭାବ ନ ଥିଲା । ଆସିବ ନାହିଁ କେମିତି ? କେଇଟା ପ୍ରଥିବିଅ ଅଛନ୍ତି ମୋ ସଂସାରରେ ଯେଉଁମାନେ ମୋତେ ଡାକିବେ ଏମିତି, ତାଙ୍କ ଜୀବନର ଖାସ୍ ସୁଖବର ଶୁଣେଇବା ପାଇଁ ? ଏବଂ ବୋଧହୁଏ ମୋତେ ହିଁ ପ୍ରଥମ···

କିନ୍ତୁ ପରବର୍ତ୍ତୀ ମଙ୍ଗଳବାରଦିନ ଇସ୍ତିକରା ଗଲାବନ୍ଦ କୋଟ୍ ପିନ୍ଧି ଅମରେଶର ହଷ୍ଟେଲକୁ ଗଲାବେଳେ ରଘୁବାବୁ ଗୋଟାଏ ରହସ୍ୟର ଦଶା ମଧ୍ୟ ଅନୁଭବ କରୁଥିଲେ, ଏବଂ ତା'ର ଉଦ୍‌ବେଗକୁ ଉପଭୋଗ କରୁଥିଲେ । ଡାକିଲା ତ ଡାକିଲା ସାକ୍ଷୀ ହେବା ପାଇଁ, ଗୁରୁଜନଙ୍କଠାରୁ ଆଶୀର୍ବାଦ ପାଇବା ପାଇଁ କି ଅଉ ଯୋଉଥିପାଇଁ । ସେଥିରେ "କଥାବାର୍ତ୍ତା" କରିବାର କଅଣ ଅଛି ? ନା ଏତେଦିନ ବାହାରେ ରହି ଟୋକାଟା ତା' ମାତୃଭାଷା ଭୁଲିଗଲାଣି ?

ଏଣେ ଅମରେଶ ତା'ର ଉଦ୍‌ବେଗକୁ ନେଇ ଉଦ୍‌ବେଳିତ ହେଉଥିଲା । ଏଇ ପହିଲବାର ସେ ଆସୁଛନ୍ତି ଏଠିକି । ଏବଂ ମୁଁ ତାଙ୍କୁ ଚମକେଇଦେବି । ସର୍‌ପ୍ରାଇଜ୍ ପରେ ସର୍‌ପ୍ରାଇଜ୍ । ସବାଶେଷକୁ ଏମିତି ଗୋଟିଏ କାବାକଥା ଶୁଣେଇବି ତାଙ୍କୁ ଯେ ସାର୍ ଚିତ୍‌ହୋଇ ଗଡ଼ିଯିବେ । ମୂର୍ଚ୍ଛା ଓ ପତନ ! କିନ୍ତୁ ସେତିକିବେଳେ ମୁଁ ତାଙ୍କ ଜ୍ୟୋତିର୍ମୟ ତ୍ୟାଗପୂତ ମୁହଁକୁ ପୂରାପୂରି ଦେଖିବି, କାହିଁକିନା ତା'ର ଦୃଷ୍ଟିଭୂତ ଆଲୁଅ ପଡ଼ୁଥିବ ମୋ ଉପରେ । ଏବଂ ପାଇବି···

ପ୍ରଥମେ ସାର୍ ଦେଖିବେ ମୁଁ କେମିତି ତାଙ୍କ ରୁଚିକୁ ଚିପି ରଖିଛି । ଭଜା ମୁଗଡାଲି, ସଜନା ଶାଗ, ବଡ଼ି ଭଜା । ଖୋଜି ଲୋଡ଼ି ସେଇ ବିଦ୍ୱରେ ରନ୍ଧେଇଛି ତାଙ୍କ ପାଇଁ ।

ସେଇ ହେବ ତାଙ୍କ ବିସ୍ମୟାନନ୍ଦର ପହିଲ ପାଦ । ତା'ପରେ ସେ ଶୁଣିବେ ଯେ ମୁଁ ରାଜନୀତିରେ ଝାସ ଦେବାକୁ ଯାଉଛି । ମତଲବ ରାଜନୀତି ନୁହେଁ । ଆଗାମୀ ସୂର୍ଯ୍ୟକୁ ଓଟାର ଅଣିବାର ରାଜନୀତି, ଯାହାର ପ୍ରତୀକ ହେଉଛନ୍ତି ଭାଇ ଚନ୍ଦ୍ରମାଧବ ଚୌଧୁରୀ, ଭାରତୀୟ ପ୍ରଜା ପରିଷଦର ସଭାପତି । ମୁଁ ଖାଲି ତାଙ୍କ ପାର୍ଟିର ସଭ୍ୟ ହେବି ତା' ନୁହେଁ, ମୁଁ ତାଙ୍କ କ୍ରାନ୍ତିକାରୀ ଆନ୍ଦୋଳନରେ ମିଶିଯିବି, ହକେଇ ଦେବି ନିଜକୁ । ଗାଁରୁ ଗାଁ, ସହରରୁ ସହର ବୁଲି ବୁଲିବି, ଆଉ ପ୍ରାଣମୂର୍ଚ୍ଛା ଲଢ଼େଇ

କରିବ ଶତ୍ରୁମାନଙ୍କ ସାଙ୍ଗରେ—ଆମ ଦେଶର ଯେତେକ ଦୁର୍ନୀତି, ମାନେ ସୌଖିକ, କଳାପୋତେଇ, ହାତଗୁଞ୍ଜା, ଖଚଣ୍ଡି ସାଙ୍ଗରେ । ସାର୍‌ଙ୍କ ବେଳର ଲୋକେ ଯେମିତି ଲଢ଼େଇ କରୁଥିଲେ ନିଜର ସବୁ କିଛି ଛାଡ଼ିଛୁଡ଼ି ଦେଇ ।

ସବୁ ଛାଡ଼ିଛୁଡ଼ି ଦେଇ । ସେଇ ହେଲା ମୂଳମନ୍ତ୍ର । ଯାହାକୁ ନେଇ ଦେଶ ସ୍ୱାଧୀନ ହେଲା । ଏବଂ ଯାହାକୁ ନେଇ ଆଜି ଏଇ ଦେଶଟାକୁ ଉଦ୍ଧାର କରିହେବ । ନ ହେଲେ ରକ୍ଷାନାହିଁ ।

ସାର୍ ଶୁଣିବେ । ହୁଏତ ପ୍ରଥମେ ବିଶ୍ୱାସ କରିବେ ନାହିଁ । ଭାବିବେ ଇଏ ହେଉଛି ମୋର କ୍ଷଣିକ ଉନ୍ମାଦନା । ସେପରିଆ । ଉପରଠାଉରିଆ ।

କିନ୍ତୁ ସେ ବୁଝିବେ । ଯେତେବେଳେ ଜାଣିବେ ଯେ ମୁଁ କ'ଣ ସବୁ ଛାଡ଼ିବାକୁ ଯାଉଛି । ଖାଲି ଅର୍ଥଲାଭ ନୁହେଁ, ବସ୍ତୁର ସୁଖ ନୁହେଁ, ଆହୁରି ନିବିଡ଼ ଅନ୍ତରଙ୍ଗ ସୁଖ । ଶୁଣି ହେବେ··ଆଉ ମୋତେ କୁଣ୍ଢେଇ ପକେଇବେ । ବୋଧହୁଏ ତାଙ୍କ ପାଟିରୁ କଥା ବାହାରିବ ନାହିଁ । ହୁଏତ ତାଙ୍କ ଆଖିରୁ ଲୁହ ଝରିବ ଗଳଗଳ ହୋଇ ଆନନ୍ଦାଶ୍ରୁ !

କିନ୍ତୁ ସେ କ'ଣ ବୁଝିବେ ଯାହା ବିତିଛି ମୋ ଉପରେ ଏଇ କେଇଟା ଦିନ ଭିତରେ ? କେମିତି ମୁଁ ରାତି ପରେ ରାତି କଅଁଳ ଜୋଛନାକୁ ଦୂରେଇ ଦେଇଛି ମୋ ପାଖରୁ, ହେଲେ ସୁଦୂର ଶୀତଳ ଜହ୍ନକୁ ନମସ୍କାର କରିଛି ? ଖାଲି ଉଷୁମ ଶେଯକୁ ଫିଙ୍ଗି ଦେଇଛି ନୁହେଁ, ଅରୁଟାଏ ଲୁଗାପଟା ବି ଉତାରି ଦେଇଛି ଦେହରୁ, ·ଶୀତର ପ୍ରକୋପକୁ ଚ୍ୟାଲେଞ୍ଜ୍ କରିବା ପାଇଁ । ଲଢ଼ିଛି ନିଜ ସାଙ୍ଗରେ । ଏବଂ ଶେଷକୁ ଅନୁଭବ କରିଛି···ଯେ, ଅସଲ ତ୍ୟାଗ କାହାକୁ କହନ୍ତି । ସେଥିର ଅଭିନବ ଉଲ୍ଲାସ, ଅପରୂପ ଯନ୍ତ୍ରଣା । ଆଃ ! ମନେ ହୋଇଛି ମୁଁ ବି କିଛି ପାଠ ପଢ଼େଇ ପାରିବ ପଞ୍ଜାବର ଭ୍ରାନ୍ତ ଶିଖଯୁବକମାନଙ୍କୁ, ଆଉ ତାଙ୍କୁ ବାଟକୁ ଆଣିପାରିବ । ସେଇଠୁଁ ଟିଆଲ୍ରର ଟୁଂ ଟାଂ, ଚୁଡ଼ିର ରୁଣୁଝୁଣୁ, ରମରସିଆ ଆଳାପ, ସାନସାନ ଓଠର ଗୁଲୁଗୁଲୁ କଥା, ଇତ୍ୟାଦି ଇତ୍ୟାଦିର ଲୋଭକୁ ତିରସ୍କାର କରିଛି । କହିଛି ଇଏ ନୁହେଁ ଇଏ ନୁହେଁ, ଇଏ ନୁହେଁ । କାହିଁକନା ଏସବୁ ହେଉଛି ପଞ୍ଚକରଣର ଇତର ସାଧାରଣ ଉଷୁମ । ସ୍ୱାର୍ଥବଦ୍ଧ ସାଲିସ୍‌ରେ ତିଆରି, ଗୋଡ଼ରୁ ମୁଣ୍ଡ ଯାଏଁ । ଅନିମା ତା'କୁ ଛାଡ଼ିପାରିବ ନାହିଁ ··ଦୁଃଖର ବିଷୟ । ଆଇ. ଏ. ଏସ୍. ହେଉ ବା ନହେଉ ।

ଏଇ ଗତକାଲି ରାତିରେ ମୁଁ ମୋ ଶେଷ ଫଇସଲା ଶୁଣେଇଲି । ତାକୁ ସାମ୍ନାରେ ରଖି । ଯେ ଅନିମା ଆଉ ଦେଶ କାମ ଏକାଠି ହୋଇପାରିବେ ନାହିଁ । ଭୋଗ ଓ ତ୍ୟାଗର ସହବାସ ଅସମ୍ଭବ । ଅତଏବ—

ମୁଁ ଅନୁପମାକୁ ବି ଛାଡ଼ିଦେବି, ଭୁଲିଯିବି !

ତତ୍‌କ୍ଷଣାତ୍ ମୁଁ ଅନୁପମାକୁ ଫୋନ୍ କଲି । କହିଲି ଡିନର୍ ନିମନ୍ତ୍ରଣକୁ ଭୁଲିଯାଅ । ମୋର ଅନ୍ୟ କାମ ଅଛି ।

ସାର୍ ନ ବୁଝିଲେ ଆଉ କିଏ ବୁଝିବ ମୋର ଏଇ ଆତ୍ମତ୍ୟାଗର ମହିମା ? ନ ବୁଝିଲେ ନାହିଁ, ସ୍ୱୀକାର କରିବେ ତ, ଟିକିଏ ହସିବେ ତ ମୋ ଆଡ଼କୁ ଚାହିଁ !

...ରଘୁବାବୁ ଅସି ପହଞ୍ଚିଲେ ଯଥାସମୟରେ ଏବଂ ଅମରେଶର ଅସାମାନ୍ୟ ତତ୍ପରତା ଓ ଝୁସିବାସିଆ ଭାବକୁ ଲକ୍ଷ୍ୟ କଲେ । ଖାସା ପିଲାଟାଏ ! କିନ୍ତୁ ମୁହୂର୍ତ୍ତ ପରେ ମୁହୂର୍ତ୍ତ ବିତିଗଲା, ହେଲେ ତାଙ୍କର କୌତୂହଳ ଚରିତାର୍ଥ ହେଲାନାହିଁ । "କଥାବାର୍ତ୍ତା" ଆରମ୍ଭ ହେବ କେତେବେଳେ ? କଅଣ ଏମିତିକା ଗୁରୁତର ବିଷୟ ଯେ, ତାକୁ ଡିନର୍ ସରିବା ଯାଏଁ ଅଟକେଇ ରଖିବାକୁ ପଡ଼ୁଛି ?

ତା'ଛଡ଼ା ସେ ଝିଅ ଖଣ୍ଡିକ କାହିଁ ?

ଟେବୁଲ୍‌ରେ ଥାଳି ବଢ଼ା ହେଲା । ମାତ୍ର ଦୁଇଟି ଥାଳି । କଥା କଅଣ ?

ରଘୁବାବୁ ଆଉ ସବୁର୍ କରିପାରିଲେ ନାହିଁ । ପଚାରିଲେ—"ସେଇ ଝିଅ, ତାଙ୍କ ନାଆଁ ଅନୁପମା ପରା, ଆସୁନାହାନ୍ତି ସେ ?"

"ନା, ଅନୁପମା ଆସୁନାହିଁ । ମୁଁ ତାକୁ ମନା କରିଦେଇଛି ।"

ସେଇଠୁ ଅମରେଶ ବାଧ୍ୟ ହେଲା କହିବାକୁ, ଯାହା କହିବା ପାଇଁ ପଣ କରିଥିଲା । ସାର୍‌ଙ୍କ ବିଦ୍ରୂପ ଚାହାଣିକୁ ଉପେକ୍ଷା କରିହେବ ନାହିଁ ଆଉ । କହିଗଲା । ଉଦ୍ଦୀପ୍ତ ଅବାରିତ ଶବ୍ଦର ଭାଷା, ବକ୍ତୃତା ଦେଲା ପରି । ହେଲେ ରହିଯାଉଥିଲା ମଝିରେ ମଝିରେ, ଚାହୁଁଥିଲା ସାର୍‌ଙ୍କ ମୁହଁକୁ ।

ରଘୁବାବୁ ଜଳଜଳ ହୋଇ ଅନେଇ ରହିଥିଲେ । ଶୁଣି ଯାଉଥିଲେ । ଅନେକ ଅନେକ ଦିନ ହେଲାଣି, ଶୁଣି ନ ଥିଲେ ଏମିତିକା କଥା, ଯାହା ବକ୍ତୃତା ପରି ଶୁଭୁଛି, କିନ୍ତୁ ବକ୍ତୃତା ନୁହେଁ । ଆପଣା ଜ୍ୱାଳାର ଯାତନା, କାମନା, ସ୍ୱପ୍ନ ଓ ସାହସ କିନ୍ତୁ ସେ ମୋ ମୁହଁକୁ ଚାହୁଁଛି କାହିଁକି ଏମିତି ? ମୁଁ କ'ଣ କହିବି ? ତେବେ ସେ ଅବଶ୍ୟ ଧରିନେବ, ତା'ର ଧରିନେବା ଉଚିତ, ଯେ ମୋର ଶୁଭେଚ୍ଛା ଅଛି ତା' ପଛରେ ।

"...ତ୍ୟାଗ କରିବାକୁ ହେବ, ଦେହକୁ କାଟିବା ପାଇଁ, ଅସ୍ଥିମଜ୍ଜା ବାନ୍ଧ ଉଠିବା ପାଇଁ—ନା କ'ଣ କହୁଛନ୍ତି ସାର୍ ?"

ସାର୍ ତଥାପି ନିରୁତ୍ତର । କହିପାରିବ ନାହିଁ, କିଛି କହିପାରିବ ନାହିଁ । କିନ୍ତୁ ମୋ ଆଶୀର୍ବାଦ ରହିଛି ତୋ ପଛରେ, ପୂରାପୂରି ଅଛି ।

"...ଶେଷକୁ ମୁଁ ଠିକ୍ କଲି ଯେ ଅନିମାକୁ ବି ଛାଡ଼ିଦେବି । ବାହା ହେବନାହିଁ ।"

କଥାଟାର ତାତ୍ପର୍ଯ୍ୟ ବୁଝିବା ପାଇଁ କିଛିଏ ସମୟ ଲାଗିଲା ରଘୁବାବୁଙ୍କର । କିନ୍ତୁ ବୁଝିଲାକ୍ଷଣି ସେ ଚମକି ଉଠିଲେ ପରି ମନେହେଲା । ସତେକି ଅମରେଶ ଅତର୍କିତରେ ଗୋଟାଏ ତୀର ଛାଡ଼ିଲା ତାଙ୍କ ଉପରକୁ, ଯାହା ଗଳିଗଲା ତାଙ୍କ ସାର୍ଟର କେଉଁ ଫାଙ୍କ ଭିତରେ ।

"କେବେ ହୁଏତ ବାହା ହେବି, ଯେତେବେଳେ ଉପଯୁକ୍ତ ସାଥୀ ମିଳିବ, ଯେ ପରିଷଦରେ ମିଶିଥିବ, ଆଉ ମୋ ତ୍ୟାଗଧର୍ମ ସାଙ୍ଗରେ ତାଳ ଦେଇପାରିବ ।"

ସେଇଠୁ ସହସା ଗୋଟାଏ ବିସ୍ମୟକର ଘଟଣା ଘଟିଲା । ରଘୁବାବୁଙ୍କର ମୁହଁ କଳାକାଠ ପଡ଼ିଗଲା । ଚେହେରା କଳା ହେଲେ ବି ତା' ଭିତରେ ଥିବା ଯେତେକ ରକ୍ତ ତରମର ମୁହଁରେ ଜମିଗଲା ପରି ଦିଶିଲା । ସତେକି ସେ ଏଭଳି ଗୋଟାଏ ଗ୍ରେଟ ପାଇବେ ବୋଲି ଭାବି ନ ଥିଲେ । ଏଭଳି ଗୋଟାଏ ନିଷ୍ଠୁରତା... ...କିନ୍ତୁ ନିଷ୍ଠୁରତା ମୋ ଆଡ଼ୁ ନୁହେଁ, ତା'ରି ଅଡ଼ୁ । ହୋଇପାରେ ଟୋକାଟା ପାଗଳ ମୂର୍ଖ, କିନ୍ତୁ ସେଥିପାଇଁ ମୁଁ ଦାୟୀ ନୁହେଁ...ହଁ, ମୁଁଇ ଦାୟୀ । ମୋର ଜୀବନ, ଜୀବନର ଇମେଜ୍, ଯାହାକୁ ମୁଁ ଆଜିର ବଢେଇଛି ଏଠିକି ଆସି, ମୋ ସତ୍ୟାଗ୍ରହୀ ବୀରତ୍ୱର ଇତିହାସ ଶୁଣେଇ । ମୁଁଇ ତାକୁ ଆଣିଛି ଏଇ ଅବସ୍ଥାକୁ, ତେଣୁ ମୋତେ ହିଁ କିଛି କରିବାକୁ ପଡ଼ିବ, ଯେମିତିକି ଟୋକାଟା ବଞ୍ଚିଯିବ ।

...ଆରେ, ମୁଁ କ'ଣଟା କରିବି ? ମୁଁ ମଧ୍ୟ ଭାବିଥିଲି ଯେ ଗୀରୁଟା ମଫସଲିଆଣୀ, ମୋ ମନଲାଖି ହେଲା ନାହିଁ, ଯେ ସେ ନଥିଲେ ମୁଁ ଜଣେ ଉପଯୁକ୍ତ ସାଥୀକୁ ବାଛିଥାଆନ୍ତି, ହୁଏତ ସରିତା ପରି ଜଣେ କର୍ମକୁଶଳା (ଏବଂ ହାସ୍ୟକୁଶଳା) ସହକର୍ମିଣୀକୁ—ଇଏ କ'ଣ ସତ ? ଚଳି ବଉଦଟାକୁ ସତ ବୋଲି କହିବ କିଏ ? ନା ସେଇଥିପାଇଁ ଗୀରୁ ଗୀଲିଗଲା, ଆଉ ଗୋଟାଏ ରୋଗିଣା ନାକକାନ୍ଦୁଣ୍ଡି ଝିଅ ଛାଡ଼ିଗଲା ମୋ ପାଇଁ ? କହିବ ଯେ ଏଇ ଦୋଷୀ ଭାବ ରହିଛି ମୋ ଚିନ୍ତାଧାର ପଛକୁ ? ଆଉ କ'ଣ ରହିଛି କହୁନା ? ରହିଛି ଯେ ଥୋକେ ଥିଲେ ମୋ ସାନଭାଇ ପରି, ଦ୍ରାବକ ପରି, ଯଥା ରାମେଶ୍ୱର ମାହାନ୍ତି, ଅଗଣି କର, ଧନ ମିଶ୍ର, ଯେଉଁମାନେ ଠିକଣା

ବେଳେ ଗାଦିକୁ ମାଡ଼ିବସିଲେ, ମୋତେ ପଗୃରଲେ ବି ନାହିଁ ? ମିଛ, ମିନ୍ତୁ, ପଗୃରଲେ ବି ମୁଁ ନାହିଁ କରିଦେଇଥାଆନ୍ତି । ଏଥିରେ ଆଦୌ ସନ୍ଦେହ ନାହିଁ…

କହିଲେ କହିବ ଯେ, କେଇଟା ବର୍ଷ ଭିତରେ ତୋ'ର ସ୍ୱପ୍ନ ଭାଙ୍ଗିଯିବ । ତୁ ବୁଝିବୁ ଯେ, ଏଇ ପରିଷଦ ବି ଗୁଚ୍ଛା ଅନ୍ୟତମ ଦଳ, ଗାଦିରେ ବସିବା ପାଇଁ । ତାଙ୍କ ଭିତରେ ବି କେହି ମହାତ୍ମା ନାହାନ୍ତି, ସେଠି ବି ଦୁର୍ନୀତି ଛପି ରହିଛି, ଠିକଣା ବେଳେ ବାହାରି ଆସିବ, ଘାଲୁବାଲୁ ହେବ । ଆଉ ତୁ ଛଟପଟ ହେବୁ । ହେଲେ ନେଡ଼ିଗୁଡ଼ି କହୁଣିକୁ ବୋହିଯିବଣି ସେତେବେଳକୁ । ଅଗତ୍ୟା ତୋ ପାଟି ପିତା ହୋଇଯିବ । ପିତାରୁ ବଳି ପିତା ହେବ, ବୟସ ବଢ଼ି ବଢ଼ି ଗଲାରୁ । ବୁଢା ହୋଇ ମରିବା ଯାଏଁ । ନାରେ ପୁଅ, ତୁ ସେ ଭୁଲ୍ କର୍ ନାହିଁ, ବାହା ହୋଇପଡ଼ ଅନିମାକୁ, ଆଉ ଘର ସଂସାର କର ଅନ୍ୟମାନଙ୍କ ପରି । ତୋର ବାପମାଆ ସେଇଆ ଚାହାନ୍ତି ନିଶ୍ଚୟ, ତୋର ସମାଜ ସେଇଆ ଚାହେଁ । ମୁଁଟା କିଏ ?

କିନ୍ତୁ ଅମରେଶଙ୍କୁ ତାଙ୍କ କଳାକାଠ ମୁହଁ ଆଉ ପ୍ରକାରେ ମନେ ହେଲା । ସତେକି ସେ ଏମିତି ଦିଶୁଛନ୍ତି, କାହିଁକନା ବାଷ୍ପ ଜମିଯାଇଛି । କଳା ଯାହା କାନ୍ଦୁରି ସେଇଆ । ପାଣି ଥପ୍ ଥପ୍ ହୋଇ ଝରିବ ଏଇକ୍ଷଣି, ମୁଁ ତାଙ୍କୁ ରକ୍ଷା ନ କଲେ ।—ମୁଁ କିଛୁ ନ ଥିଲି ?

ନା, ରଘୁବାବୁ କାନ୍ଦିଲେ ନାହିଁ । ସେଇ ହିସାବରେ ଅମେରଶର କଳ୍ପନା କାମ ଦେଲା ନାହିଁ । କିନ୍ତୁ ସେ ହସିଲେ ।…ଟୋକାଟା ବୋକା ବୋଲି ମୁଁ ବି କ'ଣ ବୋକା ହୋଇଛି ? ମୋ ସ୍ୱାର୍ଥର ଘରଖଣ୍ଡିକ ପୋଡ଼ିଯାଇ ନାହିଁ । ମୋର ସୌଭାଗ୍ୟ ଯେ, ଏତେଦିନକେ ମୁଁ ଗୋଟାଏ ପୁଅ ପାଇଛି. ମାନେ ଆମ ଦେଶ ଗୋଟାଏ ପୁଅ ପାଇଛି । ତା'ଗୁଡ଼ା ତା'ର ପାଟି ପିତା ହେଲା ବେଳକୁ ମୁଁ କୋଉ ବଞ୍ଚିଥିବ ଯେ, ଦୋଷ ମାଡ଼ ପଡ଼ିବ ମୋତେ ?

ରଘୁବାବୁ ହସିଲେ ଏବଂ ତା' ପିଠିରେ ହାତ ରଖିଲେ । ଅମରେଶ କୃତକୃତ୍ୟ ହେଲା । ଏତକି ଲୋଡ଼ା ଥିଲା ମୋର…

# କାଳା ହୁଣ୍ଡି

ଅନିମା ଜଣେ କୃତୀ ଗୃହିଣୀ ହୋଇପାରେ, ଏବଂ ଆଶା କରାଯାଏ ଯେ ସେ ଯଥାଶୀଘ୍ର ଜଣେ ସୁଦକ୍ଷ ପ୍ରଶାସିକା ହୋଇପାରିବ । କିନ୍ତୁ ମନେ ହେଉଛି ସେ ତା'ର ପ୍ରେମିକକୁ ଚହ୍ନିପାରିଲା ନାହିଁ, ଯେମିତି ଚହ୍ନିବା କଥା । ନହେଲେ ସେ କ'ଣ ଅମରେଶର ଅନ୍ୟମନସ୍କତାକୁ ସାମାନ୍ୟ ପରିହାସରେ ଉଡ଼େଇ ଦେଇଥାଆନ୍ତା ? କ'ଣ ନା ଆମର ଏଇ ଅମୁ ଜଣେକ ଅନ୍ୟମନସ୍କ ହେବାକୁ ଭଲପାଏ, ଯେମିତିକି ତା'କୁ ସମସ୍ତେ କବି କିମ୍ବା ଭାବୁକ ବୋଲି ଭାବିବେ । ବୁଝିଲାନାହିଁ ଯେ ଅନ୍ୟମନସ୍କତା ମଧ୍ୟ ଗୋଟାଏ ସତ ଏବଂ ଅନନ୍ୟ ଭାବାବେଗର ଲକ୍ଷଣ ହୋଇପାରେ, ସାମାନ୍ୟ ସାଧାରଣ ଜୀବନଯାପନରୁ ଦୂରେଇ ଯାଇ କେଉଁ ଏକ ଦିଗନ୍ତକୁ ଛୁଇଁବାର ବ୍ୟାକୁଳ କାମନା, ଯାହାକୁ ଆଦର୍ଶବାଦ କୁହାଯାଏ । ତା'ହେଲେ ହୁଏତ ସେ ତା'କୁ ବାନ୍ଧି ରଖିପାରିଥାଆନ୍ତା । ହୁଏତ ତା' ନାରୀତ୍ୱର ଯୌନ ଆକର୍ଷଣକୁ ଆହୁରି ଶକ୍ତ ଓ ମୁନିଆଁ କରିପାରିଥାଆନ୍ତା, ଯେମିତିକି ପ୍ରେୟସୀର ପ୍ରଣୟକାମନା ତା'ର ଅନ୍ୟ କେଉଁ ଅପହୁଞ୍ଚ କାମନାକୁ ଘଉଡ଼େଇ ଦେଇପାରିଥାଆନ୍ତା । ଅଥବା ସେ ତା' ମନରେ ଏଇ ଧାରଣାଟିକୁ ଆଣି ଦେଇପାରିଥାଆନ୍ତା, ଯେ ମୋର ସ୍ୱଭାବ ଚରିତ୍ର କି ସରକାରୀ ଚାକିରି ତମ ଆଦର୍ଶର ପ୍ରତିକୂଳ ହେବ ଏଭଳି ଭାବିବା ନିତାନ୍ତ ଅନ୍ୟାୟ ଏବଂ ଅସଙ୍ଗତ—କିଓ, ତମର ପ୍ରାଣ ଖାଲି ଦେଶ ପାଇଁ କାନ୍ଦୁଛି, ଆଉ କାହାର ନୁହେଁ ? ଶୁଣ ମାଇଁ ଡିଅର୍, ଏଇ ବୟସର ଟୋକା-ଟୋକୀ ଗୃହସ୍ଥଗୃହିଣୀ, ଆମେ ପ୍ରାୟ ସମସ୍ତେ ସେହିଭଳି କାନ୍ଦ ଶୁଣିବାକୁ ପାଉ ଆମ ହୃଦୟରେ, ଏବଂ ପ୍ରଣୋଦିତ ହେଉ ବିଶେଷ କିଛି କରିବା ଲାଗି ଏଇ ହତଭାଗା ଦେଶଟା ପାଇଁ । ଏବଂ ସେହି ପ୍ରବଣତା ଆମର ଦରକାରୀ ସଂସାର କାମ (ଧର ମୋ

ଗୃହିଣୀଙ୍କୁ ଅବଶ୍ୟ ପ୍ରଭାବିତ କରିପାରିବ । ଅନ୍ତତଃ ମଧ୍ୟବୟସ ଯାଏଁ । ତେଣୁ ତମେ କୋଉ ବୁଦ୍ଧିରେ ଭାବୁଛ ଯେ ମୋତେ ବାହା ହେଲେ ତମ ଆଦର୍ଶକୁ ବାଧା ହେବ, ଆଉ ସେଇଥିଲାଗି ତମେ ମୋତେ ବି ଛାଡ଼ିଦେବ ? ଇତ୍ୟାଦି ।

ତେବେ କୁହାଯାଇପାରେ ଯେ ଅମରେଶ ଅନିମାକୁ ଯଥେଷ୍ଟ ସୁଯୋଗ ଦେଇ ନାହିଁ ତାକୁ ଭଲଭାବରେ ଚିହ୍ନିବା ଲଗି । ତା'ଛଡ଼ା ଅମରେଶ ବି' କୋଉ ଲୋକ ଚିହ୍ନିପାରିଲା ? କାହିଁକିନା ରଘୁବାବୁଙ୍କୁ ଗୁରୁ ତୋ ବାପାର ଆସ୍ଥାନରେ ବସେଇଲୁ ଠିକ୍ ଅଛୁ, କିନ୍ତୁ ତାଙ୍କ ପିତାଖିଆ ମୁହଁର ଚେହେରାରେ ଆଜୀବନ ତ୍ୟାଗର ଛବି ଫୁଟି ଉଠୁଛି ବୋଲି ଧରି ନେଲୁ, ତେଣୁ ତାଙ୍କୁହିଁ ତୋ ଗୁରୁ ବୋଲି ମାନିନେଲୁ କେମିତି ? ହଁ, ତୋର ଜାଣିବାର ଉପାୟ ନଥିଲା ଯେ ତାଙ୍କ ଅଭକ୍ତତାରେ କେତେକ ବ୍ୟକ୍ତିଗତ ଅପୂରଣର ଉପାଦାନ ମଧ୍ୟ ଥିଲା । ଯଥା, ଜଣେ ଉପଯୁକ୍ତ ସାଥୀ, ଯେ ସହଧର୍ମିଣୀ ହେବା ଛଡ଼ା ମଧ୍ୟ ଜଣେ କର୍ମକୁଶଳା ଓ 'ହାସ୍ୟକୁଶଳା' ସହକର୍ମିଣୀ ହୋଇପାରିଥାଆନ୍ତା ସରିତା ପରି, ଯଥାସମୟରେ ମିଳି ନଥିବା ପ୍ରଭୁତ୍ୱର ଚାକିରି, ଇତ୍ୟାଦି, ଯାହାର ସତ-ମିଛକୁ ରଘୁବାବୁ ନିଜେ ମଧ୍ୟ ସ୍ଥିର କରିପାରି ନାହାଁନ୍ତି ଆଜିଯାଏଁ । ଏବଂ ଏହା ମଧ୍ୟ ସତ ଯେ ସେ ତ୍ୟାଗ ଓ ସ୍ୱାଭିମାନର ଅନେକ ନମୁନା ଦେଖାଇଛନ୍ତି ତାଙ୍କ ଜୀବନରେ । ବିଳମ୍ବରେ ଯଦି ହୋଇଥିବା ମନ୍ତ୍ରିତ୍ୱ ଏବଂ ନାନାଦି ରାଜ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବା ଛଡ଼ା, ସେ ଯେଉଁ ସତ୍ୟାଗ୍ରହୀ ବୀରତ୍ୱ ଦେଖାଇଛନ୍ତି ସ୍ୱାଧୀନତା ସଂଗ୍ରାମ ବେଳେ, ତା' କିଏ ନ ଜାଣେ ? ହେଲେ ତୁ ଏତିକ ବୁଝିପାରିଲୁ ନାହିଁ ଯେ ଖାଣ୍ଟି ସୁନା ହୋଇଥିଲେ ତ୍ୟାଗପୂତ ଆଦର୍ଶର ଇମେଜ୍ ଏମିତି ପିତାଖିଆ ହୁଏ ନାହିଁ ? ଅପରନ୍ତୁ ମହାତ୍ମା ଗାନ୍ଧୀଙ୍କଠାରୁ ଆରମ୍ଭ କରି ସେବେଳର ସମସ୍ତ ସଚ୍ଚା ସତ୍ୟାଗ୍ରହୀମାନଙ୍କର ଯେଉଁ ପ୍ରସନ୍ନତା ଫୁଟି ଉଠୁଥିଲା, ତେଣୁ ଦ୍ୱିଧାଗ୍ରସ୍ତ ଜନତାକୁ ବଳଶାଳୀ ପ୍ରେରଣା ଯୋଗାଉଥିଲା ତାଙ୍କୁ ଅନୁସରଣ କରିବା ଲଗି, ସେଥିର ଇତିହାସ କ'ଣ ଜଣା ନାହିଁ ତୋତେ ? ତା'ଛଡ଼ା ସେକାଳ ପଖାଳ ଗଲାଣି । ସେ ଯୁଗର ଏଇ ଭଗ୍ନାବଶେଷକୁ ତୁ କେମିତି ବରି ନେଇ ପାରିଲୁ, ଆଜିର ଏକାଧିକ ସଫଳ-ସମ୍ପନ୍ନ ନେତାମାନଙ୍କୁ ଛାଡ଼ି ଦେଇ ?

ଚୁହନ୍ତୁ, ଏଇଠି ମୁଁ ଆମ ଅବାଗିଆ, ଅନ୍ୟମନସ୍କ, ଏବଂ ଶେଷକୁ ନିର୍ବୋଧ ବୋଲି ପ୍ରମାଣିତ ହୋଇଥିବା ଅମ ତରଫରୁ ଦି'ପଦ କହିବାକୁ ଚାହେଁ । ପ୍ରଥମେ ମାନି ନେବାକୁ ପଡ଼ିବ ଯେ ଅମରେଶର ଆଦର୍ଶବୋଧ ସମସାମୟିକ ତରୁଣ ତରୁଣୀଙ୍କର ପ୍ରାକ୍ଟିକାଲ୍ ଓ ସହଜିଆ ଆଦର୍ଶବୋଧଠୁ ଅନେକ ଊର୍ଦ୍ଧ୍ୱରେ ଥିଲା । ଯେତେ ଅସାଧାରଣ ହେଲେ ମଧ୍ୟ ଏହାକୁ ଏକ ଅସମ୍ଭାବ୍ୟ ଘଟଣା ବୋଲି କହି ହେବ କି ? କିନ୍ତୁ ସେହିପ୍ରକାର 'ପାଗଲାମି'ର ସମ୍ଭାବନାକୁ ଯଦି ସ୍ୱୀକାର କରାଯାଏ, ସେଥିର ପ୍ରତିଶ୍ରୁତିକୁ ବଞ୍ଚେଇ ରଖିବାକୁ ହେଲେ କେତୋଟି ଟାଣୁଆ ଖୁମ୍ବତୁଲ୍ୟ ସାମାଜିକ ସ୍ଥିତି ଏବଂ ମାନସିକତାର ଆବଶ୍ୟକତା ଅଛି ବୋଲି ମୁଁ ମନେ କରେ । ଯଥା, ତମେ ନିହାତି ବେକାର ହୋଇ ନଥିବ, ଅର୍ଥାତ୍ ତମ ପଛକୁ ପାରିବାରିକ ସ୍ୱଚ୍ଛଳତା ଥିବ ଅନ୍ତତଃ କିଛିଟା, ତମ ଉତ୍ସାହ-ଉନ୍ମାଦନା ପଛକୁ ପ୍ରତିକୂଳ ପରିସ୍ଥିତିକୁ ସହି ନେଇ ପାରିବାର ପ୍ରଭୂତ ଧୈର୍ଯ୍ୟର ସମ୍ବଳ ଥିବ, ଇତ୍ୟାଦି । ଏବଂ ସର୍ବୋପରି ଦିଅଁଟିଏ, ଅର୍ଥାତ୍ 'ବାପୁଜୀ' ତୁଲ୍ୟ ଜଣେ ବାପାଙ୍କ ଜୀବନ୍ତ ଆଦର୍ଶ । ରୋଲ୍ ମଡେ଼ଲ୍ । ତେଣୁ ଯଦି ଆମେ କହିବା ଯେ ରଘୁବାବୁଙ୍କୁ ସେହିଭଳି ଗୋଟିଏ ଦିଅଁ ରୂପେ ବାଛି ନେବା ଉଚିତ ହୋଇନାହିଁ, ତା'ହେଲେ ପ୍ରଶ୍ନ ଉଠୁଛି ଯେ ଅମରେଶ ଆଉ କାହାକୁ ପାଇ ପାରିଥାଆନ୍ତା ତାଙ୍କ ବଦଳରେ ? ନବୋଦିତ କ୍ରାନ୍ତିକାରୀ ପାର୍ଟିର ନେତା ଯେତେହେଲେ ଜଣେ ନେତା, ଦିଅଁ ନୁହଁନ୍ତି । ଏବଂ ନରିବାବୁ-କାତୀୟ ପୁରୁଖା ନେତା ଯେତେ ସଫଳ-ସମ୍ପନ୍ନ ଏବଂ ଖୁସିବାସିଆ ହୁଅନ୍ତୁ ନା କାହିଁକି ତାଙ୍କ ଭାବମୂର୍ତ୍ତି କ'ଣ କେଉଁ ତ୍ୟାଗର ପ୍ରେରଣା ଯୋଗାଇ ପାରିଥାଆନ୍ତା ଅମରେଶକୁ ? ଅପରନ୍ତୁ ସନ୍ଦେହ ହୁଅନ୍ତା ନାହିଁ କି ଯେ ସ୍ୱାଁ'ର ଚେହେରା ଏତେ ଉଜ୍ଜ୍ୱଳ ଦେଖାଯାଉଛି, କାରଣ ସେ ତା'ର ଦୁର୍ନୀତିକୁ ଠିକଣା ଭାବରେ ଘଫେଇଦି କରିପାରିଛି ? ଅବା ଆଶଂକା ହୁଅନ୍ତା ନାହିଁ ଯେ କାଲି ସକାଳେ ବଡ଼ା ବଡ଼ା ହଜାରଟଙ୍କିଆ ନୋଟ୍ ଆବିଷ୍କୃତ ହେବ ତା' ବଙ୍ଗଳାରୁ, ପୂଜାପରେ ଥିବା ଠାକୁରଙ୍କ ପଛକୁ ? ନା, ମୋର ସନ୍ଦେହ ନାହିଁ ଯେ ଆଜିର ପରିସ୍ଥିତିରେ ଏଭଳି ଉଜ୍ଜ୍ୱଳତାଠାରୁ ଭକ୍ତିତାର କଳା କୁହୁଡ଼ି ହିଁ ଅଧିକ ପ୍ରେରଣା ଯୋଗାଇବ ତରୁଣ ଅମରେଶମାନଙ୍କୁ ।

ମୁଁ କହୁ ନାହିଁ ଯେ ପ୍ରେମାସ୍ପଦା ଅଳମାଙ୍କୁ ଗ୍ରହଣ କରି ସେ ଆତ୍ମତ୍ୟାଗର ଗୋଟାଏ ଗୌରବ ଆଣି ଦେଇପାରିଲେ ନିଜକୁ, ଯାହା ତା'ର ଦେଶପ୍ରେମୀ ଭବିଷ୍ୟତକୁ ଆହୁରି ଆଲୋକିତ କରିବ । ସେ ହିସାବରେ ତା'କୁ ନିଷ୍ଟସ୍ୟ ନିର୍ବୋଧ ବୋଲି କହିବାକୁ ହେବ । କିନ୍ତୁ ଦାଆଁଟିଏ ଯୋଗାଡ଼ କରିବା ବାଗରେ ରଘୁବାବୁଙ୍କୁ ବରି ନେବା ଛଡ଼ା ତା'ର କ'ଣ ଆଉ କିଛି ଗ୍ରସ୍ତ ଥିଲା, ତା'ର ପାର୍ଶ୍ୱପାର୍ଶ୍ୱକୁ ନେଇ ?

ସେହେତୁ ଆଶା ବାହୁନେ ଆଶା କରିବା କଥା ଯେ ତା'ର ମହାନ୍ ଉଦ୍ଦେଶ୍ୟ ସାଧିତ ହେଉ । ଅନ୍ତତଃ ରଘୁବାବୁଙ୍କ ଭୟ, ଯେ ତା' ମୁହଁଟା ବି ପିତାଖିଆ ଦିଶିବ ସେ ବୁଢ଼ା ହେଲ ବେଳକୁ, ତାହା ମିଛ ବୋଲି ପ୍ରମାଣିତ ହେଉ ଏବଂ କିଏ ଜାଣିଛି ଯେ ଅପ୍ରତ୍ୟାଶିତ ଏଇ 'ପୁଅ'ଟିକୁ ପାଇଲା ପରେ ରଘୁବାବୁଙ୍କ ମୁହଁରେ ବି ହସ ଫୁଟିପାରେ ତାଙ୍କ ନାତିନାତୁଣୀଙ୍କ ଭାରତର ଭବିଷ୍ୟତକୁ ନେଇ ।

(ଏଇ ଗପଟିର ସ୍ୱରଚିତ ଇଂରାଜୀ ଅନୁବାଦ "The Dark Mist" କେନ୍ଦ୍ର ସାହିତ୍ୟ ଏକାଡେମୀଙ୍କ ଦ୍ୱାରା ପ୍ରକାଶିତ ହେବାକୁ ଯାଉଥିବା ଗୋଟିଏ ଗଳ୍ପ ସଂକଳନ ପାଇଁ ଗୃହୀତ ହୋଇଛି ।)



# ମଗ୍ନନ୍

ଦିଲ୍ଲୀ ନଗରୀ । ସ୍ଥାନ—ମଗ୍ନନ୍ । ସମୟ—ମଧ୍ୟାହ୍ନ ।

( ଏକ )

ମହାପାତ୍ର ମାଧବ ଦାସଙ୍କର ବାରମ୍ବାର ରାଜଧାନୀକୁ ଆସିବା ବିଚିତ୍ର ନୁହେଁ । କାରଣ ସେ ଜଣେ ପ୍ରତିଷ୍ଠିତ 'ଏ' କ୍ଲାସ କଣ୍ଟ୍ରାକ୍ଟର୍, ତଥା ଏକ୍ସ୍‌ପୋର୍ଟର୍, ଏବଂ ଓଡ଼ିଶାର ପ୍ରଭାବଶାଳୀ ଶିଳ୍ପମନ୍ତ୍ରୀ ଯଯାତି ବେହେରାଙ୍କର ହାତବାରିସି । ସହଜେ ତାଙ୍କୁ ବିଭିନ୍ନ ସ୍ତରରେ ଦେଶର ରାଜଧାନୀ ସହିତ ଯୋଗସୂତ୍ର ରଖିବାକୁ ହେବ । ରଖିବାକୁ ହେବ ଓ ତା'କୁ ଅଧିକରୁଅଧିକ ଟାଣ କରିବାକୁ ପଡ଼ିବ, ଯେପରିକି କୌଣସି ପ୍ରତିଦ୍ୱନ୍ଦ୍ୱୀ ତା'କୁ ହୁଗୁଳେଇବାର ଦୁଃସାହସ ନ କରେ । ଆଜିକାଲି କାହାରିକୁ ବିଶ୍ୱାସ ନାହିଁ । ତା'ଛଡ଼ା କେତେବେଳେ କିଏ ଗାଦିରୁ ଖସିଯିବ ତା'ର ଠିକଣା ନାହିଁ । ଏପରିକି ଯଯୁ ଭାଇନା (ନା ନା, ସେ ସବୁଦିନେ ମୋର ବନ୍ଧୁ ହୋଇ ରହିବେ, ରହିବା ଉଚିତ)···ସେ ଯାହାହେଉ ରାଜଧାନୀର ବିଭିନ୍ନ ଅବିନାଶୀ ଚୁଟିଆ ମୂଷାମାନଙ୍କୁ ଖୁସ୍ ରଖିବା ବୁଦ୍ଧିମାନର ଲକ୍ଷଣ । ମୁଁ ଯଥେଷ୍ଟ ରୋଜଗାର କଲିଣି, ଯଥେଷ୍ଟ ସଞ୍ଚୟ କଲିଣି, ମୋର ପିଲାଛୁଆ ବେଶ୍ ଅଗେଇଗଲେଣି, ଏଭଳି ଆତ୍ମସନ୍ତୋଷକୁ ନେଇ ଆରାମ କରିବା ମୂର୍ଖତା । ସେଇଥିପାଇଁ ତ ଆମ ଅଞ୍ଚଳର ଲୋକେ ଏମିତି ପଛୁଆ ହୋଇ ରହିଯାଇଛନ୍ତି । ଏହି ପ୍ରକାର ମନୋଭାବ ତାଙ୍କୁ ଯଥାର୍ଥରେ ଉସ୍‌କାଏ ଦିଲ୍ଲୀକୁ ଆସିବା ପାଇଁ । ବାରମ୍ବାର । ଆସି ବିଭିନ୍ନ ଦପ୍ତର, କଲୋନି, କାରଖାନା, ପେଣ୍ଠ ଇତ୍ୟାଦିରେ ବସ୍ତା ବସ୍ତା ବନ୍ଧୁମାନଙ୍କୁ ସଙ୍ଗୁଳିବା ପାଇଁ, ଏବଂ ମଝିରେ ମଝିରେ ଜଣେ ଅଧେଙ୍କୁ ଉଚାଙ୍ଗ ହୋଟେଲ୍ ରେସ୍ତୋରାଁରେ ଆପ୍ୟାୟିତ କରିବା ପାଇଁ ।

ଅତଏବ ସେ ଝରିଦିନୁ ଟାରେ ଦିଲ୍ଲୀ ଆସିଛନ୍ତି, ଏବଂ ତାଜ୍ ହୋଟେଲ୍‌ରେ ଥିବା ସୁପ୍ରସିଦ୍ଧ 'ମଗ୍ନନ୍' ରେସ୍ତୋରାଁରେ ବସି ଜନୈକ ବନ୍ଧୁଙ୍କୁ ଧୀରେ ସୁସ୍ଥେ ବିଅର୍ ପିଆଉଛନ୍ତି, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏବଂ ମନୋରମ ସନ୍ଧ୍ୟା ବଦଳରେ କାହିଁକି ଏଇ ପ୍ରଚଣ୍ଡ ମଧ୍ୟାହ୍ନ, ହୁଇସ୍କି କାଣ୍ଡିସ୍ ଠୋସ୍ ପାନୀୟ ବଦଳରେ ବିଅର୍ ପରି ଗୋଟାଏ ହାଲ୍‌କା ବସ୍ତୁ, ଏଭଳି ଜିଜ୍ଞାସା ମଧ୍ୟ ଇତର ତଥା ଅବାନ୍ତର । ମଗ୍ନନ୍ ଭିତରଟା ସବୁବେଳେ ମନଲାଖି ଥଣ୍ଡା କିମ୍ବା ଉଷୁମ, ଋତୁ ଅନୁଯାୟୀ । ଏବଂ ଏଠି ଦିନ ରାତିଠାରୁ ଭିନ୍ନ ନୁହେଁ ବୋଲି ଭାବିବା ଉଚିତ । କାହିଁକିନା—ଦେଖୁନା ଏଇ ବିରାଟ ଲଣ୍ଠନମାନଙ୍କୁ ? ମଞ୍ଚାର ଅନୁରୂପ ସାଜସଜ୍ଜାକୁ ? ଦେଖୁନା' ମେନୁକାର୍ଡ଼ରେ

କଅଣ କେମିତି ଲେଖା ହୋଇଛି ? ଯଥା 'ଶିକାର' ପୂର୍ବରୁ ମେନୁ ହେଲା ସୁପ୍, ଗ୍ରେଟ ଚାଇନା ବିଶିଷ୍ଟ ଖଟାଳିଆ ସାଲାଡ଼ ଆଦି, ସେଇଠୁଁ ଆସିବ ଅସଲ ଶିକାରର ସ୍ୱେକ୍‌...ଆଃ ! ତୁମର କଳ୍ପନା କଅଣ ଏତେ ଦୁର୍ବଳ ଯେ ତୁମ ମନରେ କିଛି ଗୋଟାଏ ବିଶିଷ୍ଟ ଉତ୍ତେଜନା ଆସିବ ନାହିଁ ତନ୍ଦୁର ଚିକେନ୍‌କୁ ଦାନ୍ତେଇଲା ବେଳେ ? ମୋଟ ଉପରେ ଏଇ ଉଭୟଙ୍କ ଆହାର-ବିହାରର ପରିବେଶରେ ? କଅଣ ଅନୁମାନ କରିପାରିବ ନାହିଁ ଯେ ଦିନ ହେଲେ କି ରାତି, ମଇ ମାସ କି ଡିସେମ୍ବର, ଇଏ ହେଉଛି ତୁମର ମଞ୍ଚା, ଆଉ ତୁମେ ଏଠିକି ଆସିଛ ଶିକାର କରିବା ପାଇଁ ?

ଉପମାଟାକୁ କ'ଣ ଆଉ ଟିକିଏ ଗହନ କରି ଭାବି ପାରିବ ନାହିଁ ଯେ ତୁମେ ସତରେ ଊର୍ଦ୍ଧ୍ୱକୁ ଉଠି ଆସିଛ, ଏବଂ ଅନ୍ଧାରର ଆଳରେ ସୁନିର୍ଦ୍ଦିଷ୍ଟ ଜନ୍ତୁମାନଙ୍କୁ, ଅର୍ଥାତ୍ ସ୍ୱାର୍ଥସିଦ୍ଧିର ବାଧାବିଘ୍ନକୁ ଦେଖିଗୁଡ଼ିଏ ଶିକାର କରିବାହିଁ ତୁମର ଉଦ୍ଦେଶ୍ୟ ? ତା'ହେଲେ ଯିନା ଏଇ ବିଶିଷ୍ଟ ରେସ୍ତୋରାଁର ନାମକରଣ ସାର୍ଥକ ହେବ ।

କହିବାକୁ ଗଲେ ମାଧବବାବୁ କଅଣ ଏଠିକି ଆସିନଥିବେ କେଉଁ ଏକ ଶିକାରସୁଲଭ ମନୋବୃତ୍ତି ନେଇ ? ଏବଂ ଏଇ ବିଅରପ୍ରିଆ ବନ୍ଧୁ, ମାନେ ତା' ହାତରେ ଥିବା କଲମ କିମ୍ବା କଣ୍ଠିଜ୍ଜ୍ୱ ହେଉଛି ତାଙ୍କର ଈପ୍ସିତ ଶିକାର, ଉଦ୍ଦିଷ୍ଟ ଲକ୍ଷ୍ୟରେ ପହୁଞ୍ଚିବା ପାଇଁ ?

ନା ! ଅନ୍ତତଃ ଆଜି ତା' ନୁହେଁ । ଏଇ ବନ୍ଧୁଜଣକ ଦୋହରି । ଏବଂ ଯଦିବା ସ୍ୱା'କୁ ଶିକାରର ଆୟୋଜନ ବୋଲି କୁହାଯାଏ, ତାଙ୍କ ଲକ୍ଷ୍ୟ ନୁହେଁ କେଉଁ ପରମିଟ୍‌ଲାଇସେନ୍‌ସ, ବା ଯେହିପରି କିଛି । ଖାଲି ଟିକିଏ ରିହାତି । ଏଇ କେଇଟା ବର୍ଷ ହେଲା ଯେଉଁ ଅସ୍ୱସ୍ତି ବଢ଼ି ଉଠୁଛି ଦିଲ୍ଲୀକୁ ନେଇ, ତା'ଠାରୁ ଦୂରେଇ ଯିବାର କାମନା । ହୁଏତ ସେଇଠୁଁ ଗୋଟାଏ ଆଶ୍ୱାସନା ମିଳିବ । ଯେ କଥାଟା ଏତେ ବିଷମ ନୁହେଁ, ସେ ଯେମିତି ଭାବୁଛନ୍ତି ।

କେଉଁଥିପାଇଁ ଏଇ ଅସ୍ୱସ୍ତି ? ଅବା ଅସନ୍ତୋଷ ?

ମନେହୁଏ ତା'ର ବିବିଧ ବିଭିନ୍ନ ଉପାଦାନ । ସେଗୁଡ଼ାକ କେତେଦୂର ନୂଆ ବୋଲି କହିହେଉ ନାହିଁ । ପୁଣି ତା'କୁ ସବୁ ଏକାଠି କରି କଥାଟା ମୋଟ ଉପରେ ଏଇୟା ବୋଲି ଚିହ୍ନେଇବା କଷ୍ଟ । ଯଥା :

—ରାସ୍ତାରେ ଧାଉଁଥିବା ଯାନବାହନର କାନଅତଡ଼ା କେଁ କୋଁ ପେଁ ପାଁ, ବହୁମୁହାଁ ଯାତ୍ରୀଙ୍କର ଦଳାଚକଟା ଦୌଡ଼, ଢନଚକିଆ ଅଟୋରିକ୍‌ସାର ଉଠାପକା ଝିଲ୍ଲାପ, ଓ ତା' ପଛଆଡ଼ୁ ଭୁସ୍ ଭୁସ୍ ହୋଇ ବାହାରୁଥିବା ଧଳାଧଳା ଧୂଆଁ... (କଅଣ ଆଗରୁ ନଥିଲା ଏମିତି ?)

—ବିଶ୍ରାମ ବେଳେ ବସେଇ ଉଠେଇ ଦେଉ ନଥିବା ବେଖାଛଅଆ ମଶା ଓ ମାଛି···(ବାବୁ ଇଏ ବି ଥିଲ, ମଝିରେ ହୁଏତ କମି ଯାଇଥିଲ ।)

—ଲମ୍ବାଚଉଡ଼ା ଲତାଦ୍ରୁମବେଷ୍ଟିତ ଆଭିନଉମାନଙ୍କରେ ଯେଉଁଠି ଏତେ ଘୋଘା' ନାହିଁ କି ଧୂଳାଁଆଁ ନାହିଁ, ହେଲେ ନୀରବତା ବ' ନାହିଁ, ଅପରନ୍ତୁ ଏକ ମଖମଲ ପଞ୍ଝାର ସ୍ତବ୍ଧତା । ବଙ୍ଗଲାକୁ ଜଗିଥିବା ପୁଲିସ୍‌ଚୌକିର ସେଇ ଲୋକଟାକୁ ଦେଖିନା', ଦେଖିନା' ସେ କେମିତି ଛକି ରହିଛି ତୁମକୁ ··?(ଧ୍ୟାତ୍, ଭି.ଆଇ.ପି.ମାନଙ୍କର ସୁରକ୍ଷା ଆଉ କାହାକୁ କୁହାଯାଏ ?)

—ଦୋକାନ ବଜାରର କଣାବଙ୍କା, ଯେଉଁଠି କୁଣ୍ଠିତ ହସର ଚେନାଏ ଆସୁ ଆସୁ ଲିଭିଯାଉଛି, ସତେକି ଦୋକାନୀ କି ଗରାଖ କେହି କାହାରିକୁ ଲୋଡ଼ୁ ନାହାନ୍ତି, ଖାଲି ଗୋଟାଏ କାମ ଛୁଣ୍ଡେଇ ଦେବା କଥା, ନହେଲେ ବିପଦ, ଚାଲିଯ୍ୟେ ଭାଇସାହେବ, ଆଗେ ବଢ଼ିଯ୍ୟେ···(ସୌଜନ୍ୟ ବିଳାସ ପାଇଁ ସମୟ କାହିଁ ?)

—ସରକାରୀ ଅଧାସରକାରୀ ଭବନମାନଙ୍କରେ ମଧ୍ୟ ଗୋଟାଏ ଆତ୍ମରକ୍ଷାର ଭାବ । ଲଙ୍ଗୁଡ଼ ଟେକି ଉଦ୍ୟତ ହୋଇ ରହିଥିବାର ଖରନିଶ୍ୱାସ, କାଳେ ତୁମେ ତୁମ ନଖଦନ୍ତ ଚଳେଇଦେବ, ସେ କିଛି କହିବା ପୂର୍ବରୁ, ଅତର୍କିତରେ···(ସଦା ସତର୍କ ହୋଇ ରହିବା ବୁଦ୍ଧିମାନର ଲକ୍ଷଣ)

ଇତ୍ୟାଦି, ଇତ୍ୟାଦି । ଆଗରୁ କ'ଣ ଥିଲି କେମିତି ଥିଲି ସେକଥା ଭିନ୍ନ, କୋଉ ଗୋଟାକ ମିଶିଛି କାହା ସାଙ୍ଗରେ ଯେ ମାଧବବାବୁ ତାଙ୍କ ଅସ୍ୱସ୍ତିର ସାମୂହିକ ରୂପଗୁଣକୁ କିଛି ଗୋଟାଏ ନାଆଁ ଦେଇ ପାରିଥାଆନ୍ତେ ? ଯେମିତିକି ଇଏ ହେଉଛି 'ବଢ଼ି' ଉଠୁଥିବା ରାଜଧାନୀର ଅତି ଦର୍ପ, ଅତି ଭୟ, ଅତ୍ୟଧିକ ଭାବକାତରତା ବା ସେହିପରି କିଛି···ଏବଂ ଫଳରେ ଗୋଟାଏ ଅପରିଚୟର ଖଣ୍ଡି ଖଣ୍ଡି ଭାବ ? ଯେଉଁଥିରେ (ଅଭ୍ୟାସ ନଥିଲେ) ମୁଣ୍ଡ ବଥେଇବାକୁ ବାଧ୍ୟ ଏବଂ ମଶା ମାଛି ବି ତୁମକୁ ପାସଙ୍ଗରେ ପକେଇବେ ନାହିଁ ?

ତେବେ ତାଙ୍କର ଦୃଢ଼ବିଶ୍ୱାସ ଥିଲି ଯେ ଏଇ ମୁଣ୍ଡବଥା ଖାଲି କାର୍ବନ୍ ମନୋକ୍‌ସାଇଡ଼୍‌ର ପ୍ରାଦୁର୍ଭାବ ଯୋଗୁଁ ନୁହେଁ, ତା' ପଛରେ ଆଉ କିଛି ଅଛି ଯାହା ଆଗରୁ ନଥିଲି ।···ନ ଥିଲି ମୁଁ ଯେତେବେଳେ କଲିକତାରୁ ପଳେଇ ଆସିଲି ଏଠିକି, ଓ ଏମ୍. ପି. ଗଗନଭାଇଙ୍କ ସୁପାରିଶରେ ଗୃହକର ଖଣ୍ଡେ ପାଇଗଲି କୁଟୀର ଧାତୁଶିଳ୍ପ ନିଗମରେ । ଏବଂ ମୋର ମନେହେଲା ଯେ ଇଏ ପ୍ରକୃତରେ ଗୋଟାଏ ରାଜଧାନୀ, ମୂର୍ତ୍ତି ଓ ଶାନ୍ତିର ଶେଷକଥା ।···ଏବଂ ତତ୍‌ସହ ଗୋଟାଏ ସାଧାରଣ ବିଶ୍ୱାସ, ଯେ ବ୍ୟାଧି ଦୂରାରୋଗ୍ୟ ନୁହେଁ ।

ଏଥର ମନେପଡ଼ିଲ ଜଣକ କଥା । ନଗମରେ କାମ କଲା ବେଳର ଜଗ୍‌ମୋହନ୍ ଭଟିଆ । ଜଗମୋହନ୍ ଙ୍କ ।···ମୋର ବନ୍ଧୁ, ସହକର୍ମୀ । ଅନ୍ୟତମ ଡାଇରେକ୍ଟର୍, ତେଣୁ ଅଧିକାଂଶ ପାହ୍ୟାରେ ଥିଲେ ମଧ୍ୟ ସାଥୀ । ଖାଲି ମୋର ନୁହେଁ, ନଗମରେ କାମ କରୁଥିବା ପ୍ରତ୍ୟେକ ଲୋକର ସାଥୀ, ସେ ହାକମ ହେଉ କି ଚପରାସୀ । କାହିଁକନା ସେ ସବୁର ସାମ୍‌ନାରେ ହସିପାରେ ତା'ର ସେଇ ତେଉତେଉକା ହସ । ଏବଂ ଗୁର୍‌ବାଣୀ ଗାଇପାରେ । ସତେକି ଗୁରୁଙ୍କ ଗୁହ ତଳେ ସମସ୍ତେ ସମାନ, ସମସ୍ତେ ସୁଖୀ । 'ଐସା ନାମୁ ନରଞ୍ଜନୁ ହୋଇ, ଜେକୋ ମଂନ ଜାଣେ ମନ କୋଇ···'

ଅଜ୍ଞ ସେଇ ଲୋକଟି ତାଙ୍କ ଅତଥି । ଏବଂ ମାଧବବାବୁ ତାକୁ'ଇ ପାଇ କହି ଚୂଲିଛନ୍ତି ନଜକୁ, ଯେ ଦଲ୍ଲୀରେ ଖାଲି ଏଇ ଗୋଟିକି ମୋର ବନ୍ଧୁ (ହୁଏତ ଆଉ ଜଣେ ଦ'ଜଣ ଥିବେ ସେ ବେଳର ଲୋକ, ମନେ ପକେଇଲେ ହେବ), ଖାଲି ସ୍ୟା'ର ସାଙ୍ଗରେ ମୋର ମେଳ ଅଛି, ମାନେ ଆତ୍ମାର ମେଳ । ହ୍ୟାପ ଆଉ ସମସ୍ତେ ଫାଲ୍‌ତୁ !

ପିଉ । ମନ ଭର ଖାଉ, ପିଉ, ଭଜନ ବୋଲୁଥାଉ । ସେଇଥିରେ ମୋର ଖୁସି । ଯେମିତ ଆମ ବାପମାଆ ମଝିରେ ମଝିରେ ବାବାଜୀ ବୈଷ୍ଣବମାନଙ୍କୁ ଖୁଆଉଥିଲେ ଘରକୁ ଡାକିଆଣି । ଏବଂ ଅତଥି ବଶେଷ ଖାଇସାର ତୃପ୍ତି ର ହାକୁଟି ମାରିଲାବେଳେ ତାଙ୍କ ଗୋଡ଼ତଳେ ପଡ଼ି ଯାଉଥିଲେ ଲମ୍ବ ଲମ୍ବ ହୋଇ । ମାଧବବାବୁ ହସିଲେ ।··· ଉଦାହରଣଟା ଠିକ୍ ନୁହେଁ । ଚପଳ । ମୁଁ କ'ଣ କୋଉ ଧର୍ମ କମେଇବ ବୋଲି ଡାକିଆଣିଛୁ ତା'କୁ ? ଯେ ଯଥେଷ୍ଟ ଅର୍ଥଲୁବ୍ଧ ହୋଇଗଲିଣି, ଏଣିକି କଛି ଧର୍ମର ଫାଇଦା ଉଠେଇଲେ ହେବ ? ନା । ଲୋକଟାକୁ ମୋତେ ଭଲ ଲାଗେ । ସେଇଥିପାଇଁ ।

ତେବେ ଏଇ ଫାଇଦାଶୂନ୍ୟ ନମନ୍ତ୍ରଣର ପଛରେ କ'ଣ ଗୋଟାଏ ଆତୁରିଆ ଆଶା ଛପି ରହି ନ ଥିଲା ? ଯେ ତଦ୍ଦ୍ୱାରା ତାଙ୍କ ଦଲ୍ଲୀଗତ ଅସ୍ୱସ୍ତି ର ଉପଶମ ହେବ, ଯତ୍‌କିଞ୍ଚିତ୍ ? ନହେଲେ ସେ କ'ଣ ଗତକାଲି ଏତେ ସମସ୍ୟ ନଷ୍ଟ କରି, ସ୍ୟା'କୁ ତା'କୁ ପଚାରି, ସେଇଠୁଁ ଟ୍ୟାକ୍‌ସିରେ ଏତେଗୁଡ଼ାଏ ଟଙ୍କା ଖର୍ଚ୍ଚ କରି ଜଗ୍‌ମୋହନ୍‌ଙ୍କୁ ଖୋଜ ବାହାର କରିଥାଆନ୍ତେ ଯମୁନା ସେପାରିର କେଉଁ ସୁଦୂର କଲୋନରେ ? ଏବଂ ଦ'ପଦ କଥାଭଷା ନହେଉଣୁ ନମନ୍ତ୍ରଣ ଜଣାଇ ଥାଆନ୍ତେ ମଗୃନ୍‌ରେ ଏକାଠି ହେବା ପାଇଁ ?

ଜଗ୍‌ମୋହନ୍‌ଙ୍କ ଅବଶ୍ୟ କାବା ହୋଇଯାଇଥିଲେ ।···ହଁ, ଇଏ ଆମ ନଗମ୍‌ରେ ଥିଲା । ଉଡ଼ିଶ୍ୟାକା ଦାହ୍‌ବାବୁ । ବେଶ୍ ମୋଟେଇ ଗଲିଣି । ସିଲ୍‌କ୍‌ର ସଫାରି ସୁଟ୍ । ମୁଣ୍ଡବାଳକୁ ରଙ୍ଗେଇଛି ବୋଧହୁଏ । ଆଉ ଗୋଟାଏ ମହୁଆ ଅତର

ବାସ୍ନା ଆସୁଛି ତା' ବାଳରୁ କି ପୋଷାକରୁ । ହଁ, ସେ ମୋ ପାଖକୁ ଆସୁଥିଲା ମଝିରେ ମଝିରେ । ଧର୍ମକଥା କହୁଥିଲାବେଳେ ଶୁଣୁଥିଲା ମନ ଦେଇ । ଅନ୍ୟମାନଙ୍କ ପରି ତରତର ହେଉ ନଥିଲା ଖସି ପଳେଇଯିବା ପାଇଁ । ବିଶେଷତଃ ମୁଁ ନପ୍‌ଜା ସାହେବ ବୋଲିଲା ବେଳେ ତା' ଆଖି ବଡ଼ ବଡ଼ ହୋଇ ଉଠୁଥିଲା । ଦୋହର ଅର୍ଥ ପଗୃରୁଥିଲା, ବୁଝୁଥିଲା, କହୁଥିଲା ଯେ ତାଙ୍କ ଭାଗବତରେ ବି' ଏମିତକା କ'ଣ ସବୁ ରହିଛି, କିନ୍ତୁ ସେଥିରୁ ପଦ ମନେପଡ଼ୁନାହିଁ । ହେଲେ କହୁଥିଲା ଯେ କଲିକତାରୁ ଏଠିକି ଆସି ତା'କୁ ଭଲ ଲାଗୁଛି ନିଶ୍ଚୟ, କିନ୍ତୁ ଏଇ କିରାଣିଗିରି ଆଉ ପୋଷଉ ନାହିଁ । ମନ ହେଉଛି ଚାକିରି ଛାଡ଼ି ଦେବ, ବ୍ୟବସାୟ କରିବ । ହଠାତ୍ ହଦିନେ ଶୁଣିଲି ବେଲକୁ ସେ ସତରେ ଚାକିରି ଛାଡ଼ି ଦେଇଛି···

ମୋ ରୁମ୍‌କୁ ଆସି ବିଦାୟ ନେଇ ନ ଥିଲା ମୋଠୁଁ । ଖାଲି ଯାହା ହାତ ମିଳେଇଥିଲା ଫେୟାରୱେଲ୍ ମିଟିଂରେ । ଆଜି ଏତେଦିନ ପରେ ··ପୁଣି କ୍ୟାପିଟାଲ୍‌ର ଗୋଟାଏ ନାମ୍‌ଜାଦା ରେସ୍ତୋରାଁକୁ ନିମନ୍ତ୍ରଣ ବାବୁର ମତଲବ କଅଣ ?···

ବିସ୍ମୟ ପରେ ସତର୍କତା । ଜଗ୍‌ମୋହନ୍‌ଙ୍କ ସ୍ୱଭାବକୋମଳ ଚାହାଣିରେ ଯେଉଁ ତେଜ ଫୁଟି ଉଠିଥିଲା; ତା'ର ରଙ୍ଗ ବଦଳିଗଲା । ଯାହାର ସଂପର୍କ ଅଛି ଲିଙ୍ଗୁଲିଟେକା ଜନ୍ତୁର ନିଃଶ୍ୱାସ ସଙ୍ଗରେ, ତେଣୁ ମାଧବବାବୁ ତା'କୁ ନିଶ୍ଚୟ ଚିହ୍ନିପାରି ଥାଆନ୍ତେ । ଏବଂ ହୁଏତ ମୂଳରୁ ହତାଶ ହୋଇ ପଡ଼ୁଥାଆନ୍ତେ । କିନ୍ତୁ ଭାଗ୍ୟ ଭଲ ସେମିତି ହେଲା ନାହିଁ, କାରଣ ରଙ୍ଗଟା ନିମେଷକେ ପୁଣି ବଦଳିଗଲା । ବର୍ତ୍ତମାନ ସେଥିରେ କିଛି ଗୋଟାଏ ନିଧି ମିଳିଯିବାର ଆନନ୍ଦ । ସେହେତୁ ତା'କୁ କେବଳ ଉଜ୍ଜ୍ୱଳତା କୁହାଯିବା ଉଚିତ । ସେଇଠୁଁ ଆସିବ ସ୍ନିଗ୍ଧତା···

ସେହେତୁ ଜଗ୍‌ମୋହନ୍‌ଙ୍କ ଭାବିଲେ ଯେ କଥାଟା ବୁଝିହେଲା ଏଥର । ବ୍ୟବସାୟରେ ମୋଟେଇ ଗଲା ପରେ ଟୋକାର ମନ ଘର ଧରିଲାଣି । ଯେ ଏସବୁ ମିଛ, ବେକାର ତୃଷ୍ଣା ଅଶାନ୍ତିର ମୂଳ । ତେଇଲାଗି ସେ ଖୋଜିଲୋଡ଼ି ଆସିଛି ମୋ ପାଖକୁ ଏତେଦିନ ପରେ । ପୁଣି ଥରେ ମୋ ପାଖରୁ ଗୁରୁବାଣୀ ଶୁଣିବ ବୋଲି ।

ସ୍ନିଗ୍ଧତାର ଆବେଶରେ ଆଖିପତା ନଇଁ ଆସିଲା । ଚଟକା ମୁହଁର ମାଂସଳ ଓଠରେ ଗୋଟିଏ ପ୍ରଶନ୍ତ ସ୍ମିତହାସ ଖେଳିଗଲା ଏକୁଳରୁ ସେକୁଳ । ଜଗ୍‌ମୋହନ୍‌ଙ୍କ କହିଲେ—''ଥ୍ୟାଙ୍କ୍ୟୁ, ମୁଁ ଆସିବି । ଡିନର୍ ସୁବିଧା ହେବ ନାହିଁ ମୋ ପାଇଁ, ବୁଢ଼ା ହେଲିଣି କନା, ଲଞ୍ଚ୍‌କୁ ଆସିବି—ଓକେ ?''

(ଲଞ୍ଚ୍‌କୁ ସେ ଅଧିକ ଉପଯୋଗୀ ମନେ କଲେ ତା'ର ଅନ୍ୟ ଏକ ସାମାନ୍ୟ କାରଣ ମଧ୍ୟ ଥିଲା । ସାମାନ୍ୟ ଭିତରେ ସେ ବିଅର୍‌କୁ ବେଶୀ ଭଲ ପାଆନ୍ତି, ଯାହା ମଧ୍ୟାହ୍ନକୁ ସୁହାଏ । ଏବଂ ମଗ୍ଲିନ୍ ପରି ରେସ୍ତୋରାଁର ବିଅର୍ ଖୁବ୍ ଉଚ୍ଚ ଧରଣର ହୋଇଥିବ ନିଶ୍ଚୟ···। ତେବେ କାରଣଟା ଥିଲା ସାମାନ୍ୟ । ତଥା ଆନୁଷଙ୍ଗିକ) ।

ଆଜି ମାଧବବାବୁ ତାଙ୍କୁ ଏପର୍ଯ୍ୟନ୍ତ କିଛି ପଚାରି ନାହାନ୍ତି ଧର୍ମ ବିଷୟରେ । ଯଦିଓ ବିଅର୍‌ରେ ଚୁମୁକଟିଏ ଦେଇଛନ୍ତି କି ନାହିଁ ଜଗ୍‌ମୋହନ୍‌ଜୀ ଗୋଟାଏ ଗୁଣୁଗୁଣୁ ଆରମ୍ଭ କରିଦେଇଥିଲେ । ଗୁରୁ ନାନକ୍‌ଙ୍କର ଗୋଟାଏ ଜବର୍ ଆମନ୍ତ୍ରଣ, ପୃଥିବୀର ପାପୀତାପୀଙ୍କୁ—

ସୁଣିଏ ସିଧ ପୀର ସୁର୍ ନାଥ ।
ସୁଣିଏ ଧରତି ଧବଲ ଆକାସ ।
ସୁଣିଏ ଦୀପ ଲୋଅ ପାତାଲ···
ନାନକ ଭଗତା ସଦା ବିପାସୁ ।
ସୁଣିଏ ଦୁଖ ପାପକା ନାସୁ ।

ତା' ସାଙ୍ଗକୁ ତାଙ୍କର ସେଇ ତନ୍ମୟ ଭାବ । ଚଇତନଆଙ୍କ ପରି । ମାଧବବାବୁଙ୍କର ମନେ ପଡ଼ିଲା । ଥରେ ତାଙ୍କୁ ବିଚିତ୍ର ଲାଗିଥିଲା ଯେ ଲୋକଟା କେମିତି ହଠାତ୍ ପଳେଇ ଯାଇପାରେ ପୃଥିବୀରୁ । ଏବଂ ପୁଣି ଫେରିଆସେ ତତ୍‌କ୍ଷଣାତ୍ । ନିଗମର କେଉଁ ଗୋଟାଏ ସମସ୍ୟା ନେଇ ଆଲୋଚନା ଚାଲିଛି, ଏଇସମୟରେ ଜଣେ ଆଲୋଚକ କ୍ଷଣିକ ବିରତିର ଫାଙ୍କରେ ଜଣାଇଲା ଯେ ସେ ଦି'ଦିନ ହେଲା ଫେରିଛି ଅମୃତସରରୁ । ବାସ୍ ! ଜଗ୍‌ମୋହନ୍‌ଜୀ ଅନେଇ ରହିଲେ ତା' ଆଡ଼କୁ, ଗୋଟାଏ ନୂଆ କଥା ଶୁଣିଲା ପରି । ଏବଂ ଗୁହୁଁ ଗୁହୁଁ ତାଙ୍କ ଗ୍ରୀବା ଟଳିବାକୁ ଲାଗିଲା, ଆଖି ଢୁଳୁଢୁଳୁ ହୋଇ ଆସିଲା ଓ ପାଟିରୁ ଗୁର୍‌ବାଣୀ ବାହାରିଲା । ଏଭଳି ଏକ ମନୋମୁଗ୍ଧକର ଦୃଶ୍ୟ, ଯେ ମନେହେଲା ସେ ଏଠି ନାହାଁନ୍ତି, ଅଛନ୍ତି ଯାଇଁ ସେଇ ମହାମନ୍ଦିରର ପ୍ରାଙ୍ଗଣରେ, ସରୋବର କୂଳରେ । ଏବଂ ଗୁର୍‌ବାଣୀର ଦୋହା ଭାସି ଆସୁଛି ମାଇକ୍‌ରେ, ଶରୀର ଓ ସରୋବର ଉଭୟଙ୍କୁ ଛୁଇଁ ଛୁଇଁ, ପୁଲକିତ କରି···ଆଃ ! କିନ୍ତୁ ଅଳ୍ପସମୟ ପରେ ସେ ରହିଗଲେ ହଠାତ୍ । ଏବଂ ପଚାରିଲେ,—ଆଚ୍ଛା, ଭୋପାଲ୍‌ବାଲାଙ୍କ ଉପରେ ଯେଉଁ ଟଙ୍କା ବାକୀ ଥିଲା, ସେଥିପାଇଁ ରିମାଇଣ୍ଡର୍ ଯାଇଛି କି ନାହିଁ ?

ଏମିତ କେମିତ ହୁଏ ? ପୃଥିବୀରୁ ଏକ୍‌ଦମ୍ ପଳେଇ ଯାଇ ପୁଣି ଫେରି ଆସି ହୁଏ ଦ'ମିନଟ୍‌ରେ ସୁଇଚ୍ ଟିପିଲା ପରି ? ସୁବିଧା ଦେଖି ମାଧବବାବୁ ତାଙ୍କୁ ପଚାରିଥିଲେ ଏଇ ପ୍ରଶ୍ନ । ତା'ର ଉତ୍ତରରେ ଜଗ୍‌ମୋହନ୍‌ଙ୍କ ତାଙ୍କର ସେଇ ଅମାୟିକ ହସ, ହାବୁକା ହସର ପୂର୍ବକଥା (ଟଙ୍କା ଗୋଲ୍ ମୁହଁରେ ଦରଖୋଲା ଓଠକୁ ଲମ୍ବେଇ ଦେଇ, ସତେ ଶୁଦ୍ଧ ବ୍ରହ୍ମାନ ରାମକୃଷ୍ଣ···)ଟିକୁ ପ୍ରଦାନ କରି କହିଥିଲେ—"ଆରେ ଦାସ୍‌ବାବୁ, ଆପଣଙ୍କୁ ଜଣା ନାହିଁ ଆମ ବୁଲେଣାହା କ'ଣ କହିଥିଲେ ? ସେ ଥରେ ତାଙ୍କ ଷେତରେ ଧାନ ରୋଉଥିଲେ । ଜଣେ ପଚାରିଲା—ସନ୍ତ୍‌ଜୀ, କହିଲେ ମୋ ମନଟାକୁ କେମିତ ନେଇଯିବ ଭଗବାନଙ୍କ ପାଖକୁ ? ସନ୍ତ୍‌ଜୀ ତାଙ୍କ ରୁଆରୋଇ କାମ ଜାରି ରଖିଲେ । ମୁଣ୍ଡ ବି' ଟେକିଲେ ନାହିଁ ଉପରକୁ । କହିଲେ ମାତ୍ର ପଦୁଟିଏ—"ଏମିତ । ମାନେ ଆତ୍ମସ୍ୱାଧୀନ ଏଇ ଧାନଗଛକୁ ଏପାଖରୁ ସେପାଖ । ତତ୍‌କ୍ଷଣାତ୍ । ନହାତ ସହଜ । ଖାଲି ମନ ଥିଲେ ହେଲା । ବୁଝିଲେ ଦାସ୍‌ବାବୁ ?"

ଲୋକଟାକୁ ଖାଲି ଅନେଇ ରହିବା କଥା । ତା'ର ସେଇ ସହଜିଆ ଭକ୍ତି ଓ ସଦାସୁଖୀ ଭୋଳାପଣକୁ ଅନୁଭବ କରିପାରିଲେ ସେଇ ଲକ୍ଷେ ଟଙ୍କା । ପ୍ରକୃତରେ ବୁଢ଼ା ହୋଇଗଲଣି । ମୁଣ୍ଡବାଳ ପ୍ରାୟ ପୂରାପୂରି ପାଚିଗଲାଣି । କିନ୍ତୁ ସେଇ ଲୋକ । ସେଇ ଭାବ । ନା, ତା'କୁ ଏଣ୍ଡୁତେଣ୍ଡୁ କିଛି ପଚାରିବ ନାହିଁ । ବୋଲୁ ତା'ର ଗୀତ, ବୋଲିବ ଯେତେବେଳେ ଯାଏଁ । ନିଜେ କହିଯାଉ, ଯାହା କହିବ । ମୁଁ ଖାଲି ଦେଖୁଥିବି··· ଶୁଣୁଥିବି···

ତେଣୁ ମାଧବବାବୁ ବିଶେଷ କିଛି ପଚରାଉଚରା କଲେ ନାହିଁ । ଧର୍ମକଥା ଛାଡ଼, ମାମୁଲି ବ୍ୟକ୍ତିଗତ ପ୍ରଶ୍ନ, ଯଥା : ସ୍ୱାସ୍ଥ୍ୟ କେମିତ ଅଛି, ରିଟାୟାର୍ କଲା ପରେ କେମିତ ସମୟ କଟୁଛି ଇତ୍ୟାଦି କୁଶଳବାର୍ତ୍ତାର ସୌଜନ୍ୟକୁ ମଧ୍ୟ ଲମ୍ବେଇବାକୁ ଚାହିଁଲେ ନାହିଁ । ତେବେ ତାଙ୍କର ଖିଆଲ୍ ନଥିଲା ଯେ ସେ ଗୋଟିଏ କୁଶଳ ପ୍ରଶ୍ନକୁ ଦ'ତିନି ଥର ପଚାରି ସାରିଲେଣି ବିଭିନ୍ନ ଢଙ୍ଗରେ ।—"ଆଉ ଆପଣଙ୍କର ସେଇ ସାନପୁଅଟା—ତା' ନାଆଁ ଗୁର୍‌ଡେଜ୍ ନା ? ଯାହାଙ୍କୁ ଆପଣ ଗୁରୁଙ୍କ ହାତରେ ଟେକି ଦେଇଥିଲେ—ତା' ଖବର କଅଣ ? କେତେଥର ଆସିଛି ଆମ ଦପ୍ତରକୁ । ଭାରି ସ୍ମାର୍ଟ ଟୋକା । ଯାହା ପଚାରିବ, ତା'ର ଫଟାଫଟ୍ ଉତ୍ତର ଦେଇଦେବ, ଟିକିଏ ହେଲେ ଲାଜ ନାହିଁ କି ସଂକୋଚ ନାହିଁ···ବଡ଼ ହେଲେ କ'ଣ କରିବୁ ବୋଲି ପଚାରିଲାରୁ କହିଲା ମୁଁ ଆଇ.ଏଫ୍.ଏସ୍. ହେବି, ଦୁନିଆଁ ଦେଖିବି···ହୋଇଥିବ ନିଶ୍ଚୟ, ଆଇ.ଏଫ୍.ଏସ୍. ନହେଲେ ବି ସେମିତକା କିଛି···"

ଜଗ୍‌ମୋହନ୍‌ଙ୍କ ଖାଲି କହିଲେ—'ହଁ ହଁ, ହୋଇଥିଲା, ହୋଇଥିଲା...' । କିନ୍ତୁ କ'ଣ ହୋଇଥିଲା କି ହୋଇଛି କିଛି ବୁଝାପଡ଼ିଲା ନାହିଁ । ତେଣୁ ଅଜାଣତରେ ମାଧବବାବୁ ତା'ର ବିଷୟରେ ପଚାରି ସାରିଲେଣି ଥରକୁ ଥର, ତାଙ୍କର ସନ୍ଦେହ କୌତୂହଳକୁ ମେଣ୍ଟେଇବା ପାଇଁ ।

...ଆରେ ତା'ର ଢ଼'ଗିଲାସ ସରିଟଲିଣି ସ୍ୱା' ଭିତରେ ? ଅଥଚ ମୋର ଗୋଟାଏ ବି ସରିବାକୁ ନାହିଁ ? ଚଅଁ ଚଅଁ କରି ପିଇ ଯାଉଛି...ହଉ ହଉ, ପିଉ ଯେତେ ପିଇବ । ମାଧବବାବୁ ଅଳ୍ପବହୁତ ଆଶ୍ଚର୍ଯ୍ୟ ହେଲେ ମଧ୍ୟ ଆଡଥ୍ୟରେ ତୃଣା କଲେ ନାହିଁ । ମେନୁକାଡ଼୍ ଧରି ପହୁଞ୍ଚିଥିବା ତନ୍ୱୀତରୁଣୀକୁ ପୁଣି ଥରେ 'ନୋ, ଥ୍ୟାଙ୍କ୍ସ୍, ଆଉ ଟିକିଏ ପରେ' କହି ବିଦା କରି ଦେଲେ । ଏବଂ ଆଉ ଗୋଟାଏ ବୋତଲ ମଗେଇଲେ ।

କିନ୍ତୁ କ୍ରମଶଃ ବୋତଲ ପରେ ବୋତଲ ମଗେଇବାକୁ ପଡ଼ିଲା । ଜଗ୍‌ମୋହନ୍‌ଙ୍କ ! କଣ ହୋଇଛି ତୁମର ? ଏତେ ଶୋଷ ? ନା ବିଅର ବୋଲି ଗୋଟାଏ ବସ୍ତୁ ଚାଖିନାହିଁ ଯୁଗେ ହେଲା ? ମାଧବବାବୁ ଆମୋଦିତ ହେଲେ ।

ହେଲେ ତାଙ୍କ ଆମୋଦ ବେଶି ରହି ପାରିଲା ନାହିଁ । ଯେତେବେଳେ ସେ ଦେଖିଲେ ଯେ ଢୋକ ପରେ ଢୋକ ବିଅର୍ ସାଙ୍ଗକୁ 'ଶବ୍ଦ' ପରେ 'ଶବ୍ଦ'ର ଗୀତିନ ଚାଲିଥିଲେ ମଧ୍ୟ (ଏମିତ ଚାଲିଛି ଯେ ପାଖ ଟେବୁଲ୍‌ର ଲୋକେ ଅନଉଛନ୍ତି ଆମ ଆଡ଼କୁ) ଶବ୍ଦଗୁଡ଼ାକ ଅଡ଼ୁଆଡେଡ଼ୁଆ ହୋଇଯାଉଛି । ସ୍ୱରଭଙ୍ଗ ହେଉଛି । ସତେକି ବନ୍ଧୁ ତାଙ୍କର ସ୍ୱଗୁଣବିନ୍ୟାସକୁ କୌଣସିମତେ ଚାଲୁ ରଖିବାକୁ ଚାହାଁନ୍ତି । ଏଥର ସେ ସହଜରେ ଫେରି ଆସିବାକୁ ନାରାଜ । ମଗ୍ନ ନ୍‌କୁ, ଅବା ଏଇ ପୃଥିବୀକୁ । ତା'ଛଡ଼ା ସେ ବେଶ୍ କିଛି ସମୟ ଯାଏଁ ଚୁପ୍ ହୋଇ ରହିଯାଉଛନ୍ତି । ଏବଂ ରାଗିଲାପରି ଅନଉଛନ୍ତି ସାମ୍ନାକୁ...ମୋ ଆଡ଼କୁ ? କଥା କଅଣ ?

ଧ୍ୟାତ୍, ଜଗ୍‌ମୋହନ୍‌ଙ୍କ ରାଗିବା ଲୋକ ନୁହେଁ । ଅସମ୍ଭବ ! ହୁଏତ ପିଆପିଇର ଅଭ୍ୟାସ ନାହିଁ ବିଶେଷ । ସେଇଲାଗି ନିଜକୁ ଧରି ରଖିପାରୁ ନାହିଁ । ତଥାପି...ସେ ହୁଏତ ଅଯଥାରେ ହସିପାରେ, କାନ୍ଦିପାରେ, ଚୁପ୍ ହୋଇ ବସିଯାଇପାରେ—କିନ୍ତୁ ରାଗିବ କେମିତି ? ମୁଁ କ'ଣ ତା'କୁ ଚିହ୍ନି ନାହିଁ ସେଦିନୁ ? ନା ଇଏ ବି ଏତେ ବଦଳି ଯାଇଛି ସ୍ୱା' ଭିତରେ ?

ମାଧବବାବୁ କ୍ଷୁବ୍ଧ ହେଲେ । ଏବଂ ଭାବିଲେ—କଅଣ କିଛି ଗଳତି ହେଲା ମୋ'ଅଡ଼ୁ ? କିଛି ଭୁଲ୍ କଥା କହିଲି କି ? ନା ଇଏ ବି ହିଂସା କରୁଛି ମୋତେ, ମୋ କାଲିକା କଗଣିଟାଏ କେମିତି ଏତେ ବଡ଼ ଲୋକ ହେଲାଣି ? ହେ ଭଗବାନ୍ !

ମାଧବବାବୁଙ୍କର ସନ୍ଦେହ ସତ ନଥିଲା । ଅନ୍ତତଃ ପୂରାପୂରି ସତ ନଥିଲା । କାରଣ ଜଗମୋହନଙ୍କ ମୋଟେ ହିଂସା କରୁ ନଥିଲେ ତାଙ୍କର ପ୍ରାକ୍ତନ ସହକର୍ମୀଙ୍କୁ, ତା'ର ସୁଖସମୃଦ୍ଧିକୁ । ଏବଂ ଯଦିବା ସେ ଚାହୁଁଥିଲେ, ଚାରିଟା ଏତେ ଅଡ଼ୁଆଉଡ଼ୁଆ, ତାଙ୍କ ଶବ୍ଦକଣ୍ଠିନର ଗଣ୍ଡଗୋଳଘର, ଯେ ତା'କୁ କିଏ ସତ ବୋଲି ମଣିବ ? ଏବଂ ଯେଉଁ ଭୁଲଭୁଲ ଗୃହାଣି ଭିତରୁ ଓହରଯାଇ ମଦନଶାଙ୍କୁ ଆବୁରିଛ, କହିବାକୁ ଗଲେ ପ୍ରାଣବିକଳରେ ଜାବୁଡ଼ି ଧରିଛ, କାଲେ କୋଉ ଦମ୍ଭହୀନ ଦୁଃଖ ଧରାପଡ଼ିଯିବ, ତା'ର ଯନ୍ତ୍ରଣାକୁ କ'ଣ ଦେଖିପାରୁନାହାନ୍ତି ମାଧବବାବୁ ?

ଦେଖିପାରୁ ନାହାନ୍ତି । ପାରିବେ ନାହିଁ । କେହି ହେଲେ ପାରିବ ନାହିଁ । କାରଣ ସେଇ ଯନ୍ତ୍ରଣାର ମର୍ମକଥା ଅତି ଗହ୍ୱରରେ ଅଛି, ଏବଂ ଅନେକ ଆଡ଼କୁ ବ୍ୟାପିଛି । ଯେହେତୁ ସିଏ ଖାଲି ବୁଢ଼ାର ନୁହେଁ କି ଭକ୍ତର ନୁହେଁ···ଅଧିକନ୍ତୁ, ବାପର । ତାକୁ ଦେଖେଇ ହେବ ନାହିଁ, ଯେମିତି ହେଲେ ଲୁଚେଇବାକୁ ପଡ଼ିବ । ବୁଡ଼େଇବାକୁ ପଡ଼ିବ । ନିଶାରେ ହେଉ କି କ୍ରୋଧରେ । ତା'ର ବିରୂପକୁ ଘୋଡ଼େଇବାକୁ ପଡ଼ିବ ।

(କାହିଁକି ପଚାରି ଚାଲିଛ ହଜାରଥର ? ଜାଣିସିଆଣା ? ନା, ମନେ ହେଉ ନାହିଁ ସେମିତି । ଯାହାହେଉ ସେ ମୋ ପୁଅ ନା ତା' ପୁଅ ?···ହଁ, ମୋ ପୁଅ ସ୍ମାର୍ଟ, ବୁଦ୍ଧିଆ ମୋଠୁଁ ଆଉ କିଏ ବେଶୀ ଜାଣିଛି ତା' ବିଷୟରେ ? ଜାଣିଛି, ହେଲେ କହିପାରିବ ନାହିଁ । ସାଧାରଣ ବାପଙ୍କପରି ଛାତି ଫୁଲେଇ ବଡ଼େଇ କରି ପାରିବ ନାହିଁ ।

···ତା'ଛଡ଼ା ମୁଁ ତମକୁ କାହିଁକି କହିଛ କହିବାକୁ ଯିବି ? ତମେ କ'ଣଟା ବୁଝିବ ତା' ସ୍ୱପ୍ନ କି ଦୁଃସ୍ୱପ୍ନର କଥା ? ତା' ଜାତଭାଇ ବୁଝିଲେ ନାହିଁ, ଭାରତ ସରକାର ବୁଝିଲା ନାହିଁ, ବାପ ହୋଇ ମୁଁ ବି ସବୁତକ ବୁଝିପାରୁ ନାହିଁ । ଆଉ ତମେ ତ କୋଉ—

ପୁଅ ପହଞ୍ଚିଥିଲା ତା' ପହିଲି ସ୍ୱପ୍ନ ପାଖରେ । ଆଇ. ଏଫ. ଏସ. ହୋଇଥିଲା । ହବ ନାହିଁ କେମିତି ? ପଢ଼ାରେ ଫାଷ୍ଟ, ଡିବେଟ୍‌ରେ ଫାଷ୍ଟ, ଖେଳକୁଦରେ ବି କେତେ କପ୍ ପାଇଛ । ସବା ଶେଷକୁ ଲିଡ଼ର୍ । ହବ ନାହିଁ କେମିତି ? କିନ୍ତୁ ଜାଣିଛ ? କପ୍‌ଟା ସାହେବ ତା'ର ପୂରାପୂରି ମୁଖିଷ୍ଟ । ଥରେ ଥରେ ମୋତେ କି' ବୁଝେଇ ବସିବ ତା'ର ଗୂଢ଼ ତତ୍ତ୍ୱ ! ପାଗଳା !

···ବାବୁ, ଜାଣିଛୁ, ତୁ ସେଇ ଦିନଠୁଁ ଆସିନୁ ମୋ ପାଖକୁ—ଅସ୍ତି ପାଞ୍ଚ ବର୍ଷ ହୋଇଗଲାଣି ? ନା ନା, ଥରୁଟାଏ ଆସିଥିଲୁ ତୋ ବେମାର ମାଆକୁ ଦେଖିବୁ ବୋଲି । କିନ୍ତୁ ପାଞ୍ଚମିନଟ୍ ବି ବସିଲୁ ନାହିଁ ମୋ ପାଖରେ । ମୋତେ ଥରେ

ହେଲେ ବୁଝେଇବାକୁ ଦେଲୁ ନାହିଁ । ଯେ ସନ୍ତ୍ ସିପାହୀମାନେ ଖଣ୍ଡା ଧରିଥିଲେ ଧର୍ମକୁ ବଞ୍ଚେଇବେ ବୋଲି ବିଚରା ଗରିବଗୁରୁବା, ଝିପିଲିଙ୍କ ରକ୍ତ ବୁହାଇବା ପାଇଁ ନୁହେଁ ।

ଶୁଣ୍, ଶୁଣ୍, ରାଗ୍ ନା । ମୁଁ କ'ଣ କହୁଛି ଶୁଣ୍ । ପ୍ରତିଶୋଧର ଅର୍ଥ ଅଛି । ଭାରତ ସରକାର ନ ବୁଝିଲେ ବି ମୁଁ ବୁଝିଛି । କିନ୍ତୁ···କିନ୍ତୁ ତା' ବୋଲି କ'ଣ ତୁ ତୋ ଶତ୍ରୁକୁ ଚିହ୍ନିବୁ ନାହିଁ ? ବଜାରଘାଟରେ ବୁଲୁଥିବା ଖେଳତାମସା ଦେଖୁଥିବା, ଏପରିକି ଶୋଇଥିବା ଲୋକଗୁଡ଼ାଙ୍କୁ ଗୁଳିକରି ମାରିଦେବୁ ଏମିତି ? ତାଙ୍କ ଦେହ କ'ଣ ଦେହ ନୁହେଁ ନା ତାଙ୍କ ରକ୍ତ ନାଲି ନୁହେଁ ?

ନା ମ, ତୁ କେବେ ମାରୁ ନଥିବୁ ତାଙ୍କୁ । ତୋ ମନରେ ଏତେ ହିଂସା ଆସିବ କୋଉଠୁ ? କୋଉ ତୋ ବାପର ଥିଲା ନା ମାଆର ଥିଲା ଯେ···ହିଁ ହିଁ, ଥିଲା ଆମ ଟୋକାବେଳେ, ଯେତେବେଳେ ଆମେ ପ୍ରେମ କରୁଥିଲୁ । ଗୋଟାଏ ମିଚ୍ଛିମିଚ୍ଛିକା ହିଂସାର ଆନନ୍ଦ—ଇସ୍ !

···ଆରେ ଦାସ୍‌ବାବୁ, ମୋ ଆଡ଼କୁ ଅନେଇଛ କାହିଁକି ଏମିତି ? ଦେଖୁନା' ମୁଁ କେମିତି ହସୁଛି ଆମ ପ୍ରେମକଥା ମନେ ପକେଇ ? ମୋତେ ଡରୁଛ ନା କଅଣ ? ଡର୍‌ପୋକ୍ କହିଁକା ! ମଗାଅ ଆଉ ଗୋଟାଏ ବିଅର !

ବୁଝିଲି, ସବୁ ଦୋଷ ତୁମର । ତୁମପରି ଯେତେକ ଚାକିରିଆ, କିରାଣି, ଓକିଲ, ବ୍ୟବସାୟୀଙ୍କର ଯେଉଁମାନେ ଗୀତା କି ଗୁରୁବାଣୀ, କିଛି ପଢ଼ନ୍ତି ନାହିଁ କି ବୁଝନ୍ତି ନାହିଁ । ଖାଲି ଟଙ୍କା କମାନ୍ତି, ଆଉ ହାଁକରି ଶୁଣିଯାଆନ୍ତି ଆମେ କ'ଣ କହୁଛୁ । ଯେମିତିକି ଖାଲି ସେତିକରେ ସ୍ୱର୍ଗକୁ ଯିବେ !

ତୁମେ ସବୁ ଭଗେଇଛ ମୋ ପୁଅକୁ । ତା'କୁ ଅପମାନ ଦେଇଛ । ତା' ଦେଉଳ ଭିତରେ ପଶି···

ହୁଏତ ସେ ଆଉ ଫେରିବ ନାହିଁ । ପୁଲିସ୍ ପାଖକୁ କି ତା' ବାପ ପାଖକୁ । ଆଉ ସେଥିପାଇଁ ତମେ'ଇ ଦାୟୀ···)

ଏହି ସମୟରେ ଜଗ୍‌ମୋହନ୍‌ଙ୍କ ନିଶାଗ୍ରସ୍ତ କ୍ଳାନ୍ତ ଚେହେରା ଏଭଳି ଭୟାବହ ଦେଖାଗଲା ଯେ ମାଧବବାବୁଙ୍କର ମନେ ହେଲା ଏଇକ୍ଷଣି କିଛି ଗୋଟାଏ ଘଟିବା ଉଚିତ । ଫଇସଲା ହୋଇଯିବା ଉଚିତ ଯେ ଦିଲ୍ଲୀ ବଦଳି ଯାଇଛି ନା ତାଙ୍କର ମୁଣ୍ଡ ବିଗିଡ଼ି ଯାଇଛି ।

କେହି ଲକ୍ଷ୍ୟ କରିପାରି ନଥିଲେ ଯେ ପାଖ ଟେବୁଲ୍‌ରୁ ଜଣେ ଭୋଜନାର୍ଥୀ ଅନେଇ ରହିଛି ଏଆଡ଼କୁ । ବୋଧହୁଏ ଜଗମୋହନଙ୍କ ଆଡ଼କୁ ।

( ୨ )

ଯେଉଁ ଭଦ୍ରଲୋକ ତାଙ୍କୁ ବାରମ୍ବାର ଅନଉଥିଲେ, ବୋଧହୁଏ ଠିକଣା ସ୍ଥାନରେ ଚିହ୍ନିବାପାଇଁ, ସେଇଠୁ ଅନ୍ୟମନସ୍କ ହୋଇପଡ଼ୁଥିଲେ ଏବଂ ସାମ୍ନାରେ ବସିଥିବା ଅତିଥିଙ୍କ ସହାସ୍ୟ ଫଟ୍ ଫଟ୍ କଥାବାର୍ତ୍ତାରୁ କିଛିଟା ଧରିପାରୁ ନଥିଲେ, ତାଙ୍କର ଉପସ୍ଥିତି ଟିକିଏ ବେଖାପ ମନେହେବ ଏମିତିକା ଜାଗାରେ । ଅନ୍ତତଃ ମନେହେବ ଯେ ଆତିଥ୍ୟର ବିଲ୍ ତାଙ୍କର ପକେଟ୍‌କୁ ଯିବ ନାହିଁ । କାରଣ ଅଧ୍ୟାପକ ତାପସ ବନ୍ଦ୍ୟୋପାଧ୍ୟାୟ ଜଣେ ସାଧାରଣ ଅର୍ଥାତ୍ ସ୍ୱଳ୍ପସମ୍ବଳ ବିଶିଷ୍ଟ ନାଗରିକ । ପିନ୍ଧିଛନ୍ତି ମୋଟା ଖଦର କୁର୍ତ୍ତା ପାଇଜାମା । ପୁଣି ଗୋଟାଏ ଝୁଲିମୁଣି, ଯାହାକୁ ସେ ଏପର୍ଯ୍ୟନ୍ତ କାନ୍ଧରୁ ଓହ୍ଲାଇବା ଆବଶ୍ୟକ ମନେକରି ନାହାନ୍ତି ।

କିନ୍ତୁ ଇଏ ହେଉଛି ଗୋଟାଏ ପୁରୁଣାକାଳିଆ ଏବଂ ଉପରଠାଉରିଆ ଅନୁମାନ ଯେ କୌଣସି ଅତ୍ୟାଧୁନିକ ନାଗରିକର ଜାଣିବା ଉଚିତ ଯେ ଠିକଣା ସ୍ଥାନରେ ପିନ୍ଧିଥିଲେ ଏଭଳି ବେଶଭୂଷାକୁ 'ଏଥ୍‌ନିକ୍' ଅର୍ଥାତ୍ ଆଞ୍ଚଳିକ ଗରିମାରେ ଗୁଣୀ ବୋଲି କୁହାଯାଏ । ଏବଂ ଝୁଲିମୁଣି ସାଙ୍ଗରେ କେବଳ ଭିକ୍ଷା ଅଥବା ସମାଜସେବାର ସମ୍ପର୍କ ନାହିଁ । ଅଛି ମଧ୍ୟ କଳାତ୍ମକ ତଥା ସାଂସ୍କୃତିକ ଆହାର, ଯାହାର ଶୋଷ ସହଜେ ମେଣ୍ଟେ ନାହିଁ । ଏବଂ ଯାହାର ନାନା ଜ୍ଞାତବ୍ୟ ତଥ୍ୟକୁ ଗୋଟେଇ ରଖିବା ପାଇଁ ଝୁଲିମୁଣି ହିଁ ସବୁଠାରୁ ଉପଯୋଗୀ । ବିଶେଷତଃ ଯେତେବେଳେ ନିତ୍ୟପ୍ରତ୍ୟହ ଘୂରିବୁଲିବାକୁ ପଡ଼େ ରାଜଧାନୀର ବିଭିନ୍ନ ଉଚ୍ଚାଙ୍ଗ କଳାପ୍ରଦର୍ଶନୀ, ପୁସ୍ତକ ମେଳା ଏବଂ ନୃତ୍ୟଗୀତର ଗବେଷକ ହିସାବରେ । ଏହେତୁ ତାପସ ବନ୍ଦ୍ୟୋପାଧ୍ୟାୟ କେଇଟା କ୍ଲାସ୍ ନିଅନ୍ତି ଏବଂ କ'ଣ ପଢ଼ାନ୍ତି, ତା'ଙ୍କୁ ନେଇ ହୁଏତ ଲୋକେ ବାରକଥା କହିପାରନ୍ତି, କିନ୍ତୁ, ତାଙ୍କ ଶୁଭାକାଙ୍କ୍ଷୀ ବନ୍ଧୁମାନେ ଆଶା କରନ୍ତି ଯେ ସେ ଯଥାସମୟରେ ରିଡ଼ର୍ କି ପ୍ରଫେସର୍ ନ ହୋଇ ପାରିଲେ ନାହିଁ, ଅତିଶୀଘ୍ର କିଛି ଗୋଟାଏ ହେବେ । ପଦ୍ମଶ୍ରୀ ବି କେଉଁଠି ନା କେଉଁଠି । ତାପସଦା ରାଜଧାନୀର କେଉଁ କଳାକାର, ପତ୍ରକାର, ତଥା କଳା-ସଂସ୍କୃତିର ଅଧିକାଂଶଙ୍କୁ ଜାଣେ ନାହିଁ କହିଲ ?

ହେଲା । କିନ୍ତୁ ଯେତେ ଉଚ୍ଚାଙ୍ଗ କଳାପ୍ରେମୀ ହେଲେ ମଧ୍ୟ ତାଙ୍କ ପୁଞ୍ଜି ମଧ୍ୟ କ'ଣ ଏତେ ଉଚ୍ଚ ଧରଣର ଯେ ସେ ମଗୃନ୍ ଭଳିଆ ରେସ୍ତୋରାଁରେ ଜଣେ ସୌଖୀନ ଓ ସାହେବିଆ ବନ୍ଧୁଙ୍କୁ (ଯାହା ତାଙ୍କ ବେଶଭୂଷା, ହାବଭାବ, ବିଶେଷତଃ ଇଂରେଜୀ କହିବାର ଟାଣି ଓ ଉଚ୍ଚାରଣରୁ ଜଣାପଡ଼ୁଛି) ଆପ୍ୟାୟିତ କରିବାର ସାହସ କରିପାରିଲେ ? ନୁହେଁ, ମୋଟେ ନୁହେଁ । ତଥାପି ତାଙ୍କୁ ଏଭଳି ଏକ ଉଦ୍ୟମ କରିବାକୁ ପଡ଼ିଲା, କାରଣ ଅତିଥିବିଶେଷ ଯଥାର୍ଥରେ ବନ୍ଧୁ ହୁଅନ୍ତୁ କି

ନାହିଁ, ସେ ହେଉଛନ୍ତି ଜଣେ ମୂଲ୍ୟବାନ୍ ଅଧିକାରୀ । ଦିଲ୍ଲୀ ଦୂରଦର୍ଶନରେ ବିଭିନ୍ନ ଧରଣର ସାଂସ୍କୃତିକ ଛବି ଦେଖାଇବାକୁ ହେଲେ ତାଙ୍କର ବାଟ ଦେଇ ଯିବାକୁ ପଡ଼ିବ । କଥା ହେଉଛି କ'ଣ କି, ତାପସ୍‌ଦା ପୂର୍ବାଞ୍ଚଳର ଅନ୍ୟତମ ପ୍ରେମ କମ୍ପଦନ୍ତୀକୁ ଆଶ୍ରା କରି ଗୋଟିଏ ନୃତ୍ୟନାଟ୍ୟ ଲେଖିଛନ୍ତି, ଯାହାକୁ ଦୂରଦର୍ଶନରେ ରୂପାୟିତ କରିହେବ । ଏବଂ କରିବା ଉଚିତ । ବିଶେଷତଃ ଏହି ଅଧିକାରୀ ଜଣକ 'ହଁ' ଭରିବା ଉଚିତ, କାରଣ ସେ ହେଉଛନ୍ତି ପୂର୍ବାଞ୍ଚଳର ଲୋକ । ତାଙ୍କ ନାଆଁ ନିରଞ୍ଜନ ମିତ୍ର । କିନ୍ତୁ ଅନୁସନ୍ଧାନ କରିବାରୁ ଜଣାପଡ଼ିଲି ଯେ ଖାଲି ସେତିକରେ ଚଳିବ ନାହିଁ । ପ୍ରତିଦ୍ୱନ୍ଦ୍ୱୀ ଅନେକ । ତେଣୁ ଆଉ କିଛି ଆବଶ୍ୟକ । ହାତଗୁଞ୍ଜା ନ ହେଲି ନାହିଁ (ସେ ଦିଗରେ ତାଙ୍କର ସମ୍ବଳ ନାହିଁ), କେଉଁ ଏକ ସୁନ୍ଦରୀ କଳାବତୀ ସାଙ୍ଗରେ ଚିହ୍ନା ନକରେଇ ପାରିବା ଦୁଃଖର ବିଷୟ (ସେ ଦିଗରେ ତାଙ୍କର ଦକ୍ଷତା ନାହିଁ), କିନ୍ତୁ ମିତ୍ର ସାହେବଙ୍କୁ କିଅଣ ଅନ୍ତତଃ ଗୋଟିଏ ଲଞ୍ଚ୍ ଖୁଆଇ ହେବ ନାହିଁ କୌଣସି ବଡ଼ ରେସ୍ତୋରାଁରେ ? ଶିକ୍ଷକ ହେଉ କି ଲେଖକ, ଏତିକି ପୁଞ୍ଜି ନ ଖଟେଇଲେ ସେ କୋଉ ମୁହଁରେ ଦୂରଦର୍ଶନ ପରଦାରେ ପହଞ୍ଚିବାକୁ ବସିଛି ? ଏହେତୁ ମିତ୍ରସାହେବ ଆଜି ତାପସ୍‌ଦାଙ୍କ ନିମନ୍ତ୍ରିତ ଅତିଥି । ବିଶିଷ୍ଟ ମଗ୍ନନ୍ ରେସ୍ତୋରାଁରେ । ଏବଂ କଥାଟାକୁ ବିଚିତ୍ର ବୋଲି ମନେ କରିବା ଅନ୍ୟାୟ ।

ତା'ଛଡ଼ା ପଲେନ ପରିଚୟତେ । ସନ୍ଦେହ ନାହିଁ ଯେ ମିତ୍ରସାହେବ ଏଇ ଆତିଥ୍ୟକୁ ବେଶ୍ ଉପଭୋଗ କରୁଛନ୍ତି । ବାରମ୍ବାର କହିସାରିଲେଣି ଯେ ଏଠିକାର ସର୍ଭିସ୍ ଡାମ୍‌ଡ୍ ଗୁଡ୍, ଫୁଡ୍ ବି ଟପ୍‌ସ୍, ବିଶେଷତଃ ତନ୍ଦୁର ଚିକେନ୍‌ଟା ସାଙ୍ଘାତିକ । ଏବଂ ପ୍ରକାରାନ୍ତରେ ଜଣେଇ ଦେଲେଣି ଯେ ବନ୍ଦ୍ୟୋପାଧ୍ୟାୟଙ୍କର ନୃତ୍ୟନାଟିକା ଗ୍ରହଣଯୋଗ୍ୟ । କୁଆଡ଼େ ସେଥିରେ ଗୋଟାଏ ମିଷ୍ଟିକ୍ କ୍ୱାଲିଟି ଅଛି ଯାହା ଏକାଧାରରେ ଆସାମର 'ବିହୁ' ନାଚ ଓ ପୁରୁଲିଆର 'ଛଉ' ସାଙ୍ଗରେ ମିଶି ଯାଉଛି (କେମିତି ମିଶୁଛି ତାପସ୍‌ଦା ବୁଝିପାରିଲେ ନାହିଁ, କି ବୁଝିବାକୁ ଚାହିଁଲେ ନାହିଁ), ତେଣୁ ତାକୁ ପ୍ରାଇମ୍ ଟାଇମ୍ ନ ହେଲେ ମଧ୍ୟ ପାଖାପାଖି କେଉଁଠି ଖଞ୍ଜି ଦେଲେ ମନ୍ଦ ହେବ ନାହିଁ । ମୋଟ ଉପରେ ତାପସ୍‌ଦା ଧରି ନେଲେଣି ଯେ ଫଳ ଫଳୁଛି, ତେଣୁ ତାଙ୍କ ଧାରୁଆ ଶୁଖିଲା ମୁହଁ ଝଲ ଦିଶିଲଣି । ସେହେତୁ ସେ କିଛି ଅଧିକ ଟଙ୍କା ଖର୍ଚ୍ଚ କରି ମିତ୍ରସାହେବଙ୍କ ପ୍ରିୟ ଭୋଜନ ଶେଷର ପାନୀୟ ଚେରିବ୍ରାଣ୍ଡି (ଅନୁସନ୍ଧାନରୁ ମିଳିଥିବା ଅନ୍ୟତମ ତଥ୍ୟ) ମଗେଇବେ କି ନାହିଁ ଭାବୁଛନ୍ତି, ଏଇ ସମୟରେ ତାଙ୍କ ଆଖି ପଡ଼ିଲି ପାଖ ଟେବୁଲରେ ବସିଥିବା ଗଣଗଣିଆ ଗୀତ ବୋଲୁଥିବା ଓ ବିଅର୍ ପିଉଥିବା ଭଦ୍ରଲୋକଙ୍କ ଉପରେ ।

ସେଇଠୁଁ ସେ ତାଙ୍କ ଆଡ଼କୁ ବାରମ୍ବାର ଚାହିଁଲେ । ଏବଂ ବିଚଳିତ ହେଲେ ।

ବିଚଳିତ ହେଲେ, ଯେତେବେଳେ ଚହ୍ଲାଚହ୍ଲା ମୁହଁଟାକୁ ପୂରାପୂରି ଚହ୍ନି ହେଲି ।···ଇଏ ହେଉଛନ୍ତି ଗୁରୁକାନ୍ତର ବାପ ! ସନ୍ଦେହ ନାହିଁ ଏଥିରେ । ମୁଁ ତା'ଙ୍କୁ କେତେଥର ଦେଖିଛି । ଆମ କଲେଜକୁ ଆସୁଥିଲେ ବିଭିନ୍ନ ଉତ୍ସବ ଅନୁଷ୍ଠାନରେ । ତା' ପୁଅକୁ ଦେଖିବା ପାଇଁ । ଏବଂ ଫୁଲେଇ ହେବା ପାଇଁ । ମାନେ, ଦେଖ ମୋ ପୁଅ କେତେ ପ୍ରାଇଜ୍ ପାଉଛି, କେମିତି ଏଇ କଲେଜକୁ କମ୍ପାଉଛି । ଉପରେ ପଡ଼ି କଥା କହୁଥିଲେ ଆମ ସାଙ୍ଗରେ, ତା'ର ପିତୃତ୍ୱକୁ ପ୍ରଚାର କରିବା ପାଇଁ । ପ୍ରଥମେ ପ୍ରଥମେ ମୁଁ ବିଶ୍ୱାସ କରି ପାରି ନଥିଲି ଯେ ଇଏ ତା' ବାପା ହୋଇଥିବ, କାରଣ ଗୁରୁକାନ୍ତ ହେଉଛି ସର୍ଦ୍ଦାର ଟୋକା, ଆଉ ଏମାଙ୍କ ମୁହଁରେ ନିଶଦାଢ଼ି ନାହିଁ । କିନ୍ତୁ ପରେ ବୁଝିଲି ଯେ ଇଏ ହିନ୍ଦୁ ହେଲେ ମଧ୍ୟ ତା'ର ଗୋଟିଏ ପୁଅ ଗୁରୁଙ୍କୁ ଦେଇ ଦେଇଛି । ଘରେ ଘରେ ଏଇ ପ୍ରଥା ରହିଛି ପଞ୍ଜାବରେ । ଆଉ ଭଦ୍ରଲୋକ କୁଆଡ଼େ ଜଣେ ମହାନ୍ ଗୁରୁଭକ୍ତ । ତେଣୁ ସେଇଥିପାଇଁ ଏହି ମହା ମୂଲ୍ୟବାନ୍ ଭେଟି ଗୁରୁଙ୍କ ପାଇଁ ।

ଗୁରୁକାନ୍ତ । ଦେଖିବାକୁ ମୋଟେ ତା' ବାପ ପରି ନୁହେଁ । ଜଳିଲା ପରି ଆଖି । । ତାଙ୍କ ସହିତ ସମସ୍ତ କଥା ଗୁଡ଼. ଡିବେଟ୍‌ରେ ବି ଯେଉଁସବୁ କଥା କୁହେ ଆଉ ଯେମିତି ଭାବରେ, ସେଥିରେ ସାଧାରଣ ଲୋକ ତାତି ଉଠିବ । ଯେ ଏଭଳି ଘୋର ଅନ୍ୟାୟ କରାଯାଇଛି ନିରୀହ ଜନତା ପ୍ରତି । ଟୋକା ମୋତେ ବି ଦିନେ ତତେଇବାକୁ ବସିଥିଲା ! ହେଲେ ମୁଁ ଯଥାସମୟରେ ଖସି ଆସିଲି ତା' ପାଖରୁ । କଲ୍‌ଚର୍‌ର ଖସି ଆସିବା କଥା କ୍ରୋଧ ପାଖରୁ ।

କିନ୍ତୁ କିଏ ଜାଣିଥିଲା ତା' ରାଗ ଏତେ ଉପରକୁ ଉଠିବ ? ଆଇ. ଏଫ୍. ଏସ୍. ଭଳିଆ ଚାକିରିଟାକୁ ଛାଡ଼ିଛାଡ଼ି ଦେଇ ମିଶିବ ଗୋଟାଏ ବଦ୍‌ମାସଙ୍କ ଦଳରେ ? ବୋମା ଛାଡ଼ିବ, ଗୁଳି ମାରିବ···

ଶିକ୍ଷକ ହିସାବରେ ମୁଁ ତା'କୁ କ୍ଷମା କରିପାରିବି ନାହିଁ । ଅସମ୍ଭବ !

ମନେ ପଡ଼ିଯାଉଛି ଦୁ' ବର୍ଷ ତଳର କଥା । ଏଠିକା ଦର୍ଗାହିଲ୍ଲୀ । ଆମର ଶ୍ୟାମାପୂଜା । ପେଣ୍ଡାଲ୍‌ରେ କେତେ ହସଖୁସି, ହୋହଲ୍ଲା ଚାଲିଛି । କିଛି ସମୟ ପରେ 'ଡାସେର୍ ଦେଶ୍' ନାଟକ ଦେଖା ହେବ । ମୁଁହିଁ ଥିଲି ତା'ର ନିର୍ଦ୍ଦେଶକ । ଏଇ ସମୟରେ ହଠାତ୍ ଗୁଡ଼ାଏ ଡୋ' ଡା'···ଦର୍ଗାହିଲ୍ଲୀର ବାଣ ପରି ନୁହେଁ, ଆଉ କିସମର । ଭାଗ୍ୟ ଭଲ ମୋର ତତ୍‌କ୍ଷଣାତ୍ ମନେ ହେଲା ଯେ ଇଏ ଆଉ କିସମର । ଏବଂ ମୁଁ ଚଟ୍‌କିନା ଖସି ଆସିଲି ସେଠୁ, ଘର ଭିତରକୁ ।

ପାଞ୍ଚ ମିନଟ୍ ଭିତରେ ସବୁ ସାଫ୍ । ରକ୍ତାକ୍ତ ପେଣ୍ଡାଲ୍ । ବାରଜଣ ମରିଗଲେ । ପୁଣି ତା' ଭିତରେ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ । ଡାକ୍ତର ନୀଲ ବସାକ୍, ପରିବାର ବନ୍ଧୁ, ଦିଲ୍ଲଦିନର ବନ୍ଧୁ···

ତୁ ସେଇ ଦଳରେ ଥିଲୁ କି ନାହିଁ, ଆଉ କେଉଁଟା ଗୁଳି ଚୁଡ଼ିଥିଲୁ କାହା ଉପରେ, ସେ କଥା ମୁଁ କହିପାରିବ ନାହିଁ । କିନ୍ତୁ ତୁ ତାଙ୍କର ଭିତରୁ ଜଣେ ।...ଓଃ, ମନେପଡ଼ିଲା ଷଣ୍ଢି ଗୁଡ଼ ଭିତରେଟା କ'ଣ ହୋଇ ଯାଉଛି...

ମୋ ବନ୍ଧୁଙ୍କୁ ମାରିଛୁ ତୁ । ସେ ହିସାବରେ ମଧ୍ୟ ମୁଁ ତୋତେ କ୍ଷମା କରିପାରିବ ନାହିଁ, ବୁଝିଲୁ ଗୁର୍‌ଜିତ୍ !

ସେଇଠୁ ସେ ନିଜକୁ ଉତ୍ତେଇଲେ । ଏବଂ କହିଲେ ମନେ ମନେ...

—ଇଚ୍ଛା କଲେ ମୁଁ ତୋତେ ଧରା ପକେଇ ଦେଇପାରିବ । କାହିଁକିନା ମୋ ପାଖରେ ଅଳ୍ପବହୁତ ଖବର ପହୁଞ୍ଚିଛି ତୁ କେଉଁମାନଙ୍କ ସାଙ୍ଗରେ ମିଶିଛୁ, ଆଉ ସେମାନଙ୍କୁ ମୁଁ ଜାଣେ । ଅନ୍ତତଃ ତାଙ୍କ ଭିତରୁ କେତେଜଣଙ୍କୁ...

—ତୋ କଲେଜ୍ ବେଳର କଣ୍ଢ୍ୱର ଅଛି ଆମ କଲେଜ୍‌ର କ୍ୟାସେଟ୍‌ରେ, ପୁଣି କେତେ ଫଟୋ, କେତେ ହସ୍ତାକ୍ଷର । ମୁଁ ସେସବୁକୁ ପହଞ୍ଚେଇ ଦେଇପାରିବ ପୁଲିସ୍ ଗୁଇଣୀରେ, ଏପରିକି ଗଭର୍ଣ୍ଣରଙ୍କ ପାଖରେ...

—ଇଚ୍ଛା କଲେ ମୁଁ ଅବିକା ଉଠିଯିବ ଏଇ ଟେବୁଲ୍‌ରୁ । ଆଉ ତୋର ଏଇ ନିପଟ ବୋକାଭଳି ହସୁଥିବା, ବିଅର୍ ପିଇ ମାତାଲ ବନିଥିବା ବାପର କାନ୍ଧଟାକୁ ହଲେଇ ହଲେଇ ତୋର ସନ୍ଧାନ ନେଇ ଯାଇବ, ଯାହା ପୁଲିସ୍ ପାରି ନଥିବେ ।

—ଇଚ୍ଛା କଲେ...

ତାପସ୍‌ବାଙ୍କର ଇଚ୍ଛା ବଳବତୀ ହେବାକୁ ଲଗିଲା । କିନ୍ତୁ ସେ ଗୁଣୀ ଏବଂ ବାରମ୍ବାର ନିଜକୁ ଚେତାଇ ଦେବାରେ ହେଳା କଲେ ନାହିଁ ଯେ କ୍ରୋଧ ସାଙ୍ଗରେ କଲ୍‌ଚରର ସମ୍ପର୍କ ନାହିଁ । ବରଂ କ୍ରୋଧ ହେଉଛି ତା'ର ଶତ୍ରୁ । ଏବଂ କଲ୍‌ଚର୍‌କୁ ବଞ୍ଚାଇବାକୁ ପଡ଼ିବ ଯେମିତି ହେଲେ । ବିଶେଷତଃ ତାଙ୍କର ଏଇ ନୃତ୍ୟନାଟିକା, ଏଇ ବିଶିଷ୍ଟ ଉଦ୍ୟମକୁ...

କିନ୍ତୁ ମିହିରସାହେବଙ୍କ ଆଡ଼କୁ ଫେରି ଚାହିଁଲା ବେଳକୁ ସେ ବି ଅନେଇଛନ୍ତି ଆଉ କୃଆଡ଼େ । ଏବଂ ତାଙ୍କ ଚାହାଣିରେ ଗୋଟାଏ ରସରସିଆ ଭାବ...

( ୩ )

ମିହିରସାହେବ ଦେଖିବାକୁ ପ୍ରଚଣ୍ଡ କଳା ଓ ଗେଧେଡା ହୋଇପାରନ୍ତି, ତା'ବୋଲି ସେ ରସିକ ନହେବାର କୌଣସି କାରଣ ନାହିଁ । ଦେଖିପାରି ତାଙ୍କ

କେଶବିନ୍ୟାସର ଠାଣି, ତା'ର ଊର୍ଦ୍ଧ୍ୱଗାମୀ ଚପଳତା । ତାଙ୍କ ବର୍ତ୍ତିଷ୍ଣୁ ବୁଦ୍ଧିମତ୍ତା । ବିଶେଷତଃ ତାଙ୍କ କଥାକୁହାର ଉଚ୍ଛଳ ପ୍ରବାହ, ଯାହା ସୁନିର୍ବାଚିତ ଏବଂ ପ୍ରାଞ୍ଜଳ ଭାଷାରେ ଶବ୍ଦାୟିତ ହୁଏ । ହେଲେ ଏ ସବୁଥିରେ ଅଛି ଏକ ମସୃଣ ପରିଚ୍ଛନ୍ନତା, ଯେଉଁଥିପାଇଁ ତାଙ୍କ ରସିକତା ସବୁଥା ସଂଯତ ଓ ଶାଳୀନ ମନେ ହୁଏ । ଧାରଣା ହୁଏ ଯେ ଇଏ ବୋଧହୁଏ ଉଚ୍ଚାଙ୍ଗ ସଭ୍ୟସମାଜର କାଇଦା—ଏଇ ଶବ୍ଦାୟିତ ରଙ୍ଗ, ଶ୍ଳେଷାତ୍ମକ ଢଙ୍ଗ । ଯଥା ସେ ଯେତେବେଳେ ତାଙ୍କ ପାଖକୁ ଆସିଥିବା ଏବଂ ଦୂରଦର୍ଶନର ଶୁଭଦୃଷ୍ଟି ଲୋଡ଼ୁଥିବା କୌଣସି ନାରୀ ପ୍ରତ୍ୟାଶୀଙ୍କୁ କୁହନ୍ତି—'ସତେ ଆଜି ଚମତ୍କାର ଦେଖାଯାଉଛନ୍ତି ଆପଣ !' 'ବସନ୍ତୁ, ମୁଁ ଆସୁଛି ଦୁ'ମିନିଟ୍‌ରେ, ଦୟାକରି ମୋତେ କ୍ଷମା କରି ଯାଆନ୍ତୁ ନାହିଁ', 'ଦୂରଦର୍ଶନ କଥା ଭୁଲି ଯାଆନ୍ତୁ, ନିକଟ ଦର୍ଶନ ହିଁ ମଣିଷର କାମ୍ୟ—ନା କ'ଣ କହୁଛନ୍ତି ?' ଇତ୍ୟାଦି ସେତେବେଳେ କେହି ଦାବି କରି ପାରିବ ନାହିଁ ଯେ ସେ ଅଣ-ସୁନ୍ଦରୀ ମହିଳା-ବିଶେଷଙ୍କୁ ଛୁଗୁଲେଇଲେ ଅଥବା ପଉଡ଼େଇଲେ । ଏବଂ ଯଦି ସେ ଠିକ୍ ସେହିପ୍ରକାର ଭାଷା ପ୍ରୟୋଗ କରନ୍ତି କେଉଁ ସୁଦର୍ଶନାଙ୍କ ପ୍ରତି, ସେତେବେଳେ ମଧ୍ୟ କେହି ଦମ୍ଭରେ କହିପାରିବ ନାହିଁ ଯେ ତାଙ୍କର ଉଦ୍ଦେଶ୍ୟ ସୁବିଧାଜନକ ନୁହେଁ । ଯଦିଓ ସେ ନାରୀସଙ୍ଗକୁ ଉଚିତରୁ ଅଧିକ ଭଲପାଆନ୍ତି ବୋଲି ଅନେକଙ୍କ ଧାରଣା ।

ତେଣୁ ସେ ଯେତେବେଳେ ସେଇ ବାଟ ଦେଇ ଯା'ଆସ କରୁଥିବା ମଫସଲର ଜଣେ ଅଭିଧିସତ୍‌କାରିଣୀ ତଥା ତରୁଣୀଙ୍କ ଆଡ଼କୁ ଗ୍ରୀବା ବଦାନ୍ୟ ହସଟିଏ ଦେଲେ, ଏବଂ କହିଲେ—"ଏକ୍‌ସିଉଜ୍ ମି ମାଇ ଡିଅର୍, ମୁଁ ତୁମ ସମୟରୁ କିଛି ନେଇ ପାରେ କି ?", ଏବଂ ସେ ପାଖକୁ ଆସିଲାରୁ ତା'କୁ କ'ଣ କହିଲେ କଅଁଳ ସ୍ୱରରେ, ତା'କୁ ଦୂଷଣୀୟ ବୋଲି କହିହେବ ନାହିଁ । ପ୍ରକୃତରେ ସେ ଗୋଟାଏ ମାମୁଲି କଥା କହିଥିବେ, କର୍ଣ୍ଣାଗ୍ରମୁଚ୍ କି ନ୍ୟାପ୍‌କିନ୍‌କୁ ନେଇ । ତେବେ ତାକୁ ନ ଶୁଣି ପାରିଲେ ମଧ୍ୟ ସେଥିକୁ ଆପତ୍ତି କରିବାର କିଛି ନ ଥିଲା, ରାଗିବା ଦୂରର କଥା । ବିଶେଷତଃ ତରୁଣୀ ସେତେବେଳେ ତା'ର ମାର୍ଜିତ ସ୍ମିତହାସର ପ୍ରତିଦାନ ଦେଲା ।

କିନ୍ତୁ ଜଣେ ରାଗିଲା । ଖାଲି ରାଗିଲା ନୁହେଁ, ଦାନ୍ତ ଚିପି 'ବିଚ୍' ବୋଲି କହିଲା ସସ୍ମିତା ତରୁଣୀ ଉଦ୍ଦେଶ୍ୟରେ । ହେଲେ ତାର ଏଇ ଉଗ୍ର ତଥା ଅଶୋଭନୀୟ ପ୍ରତିକ୍ରିୟାକୁ ନିହାତି ଅସ୍ୱାଭାବିକ ବୋଲି କେମିତି କହିବା ? ପ୍ରଥମ କଥା ସେ ରାଜଧାନୀର ଗୋଟିଏ ଦିବ୍ୟ ତରୁଣ ନାଗରିକ । ଦ୍ୱିତୀୟରେ ଏବଂ ପ୍ରଧାନତଃ ସେ ରାଜଧାନୀର ଅନ୍ୟତମ ମହା ବଡ଼ଲୋକ ବଂଶର ଦାୟାଦ । ତା'ର ଏକ୍‌ସ୍‌ପୋର୍ଟର ବାପାଦାଦା ମାଧବବାବୁଙ୍କ ପରି ତଥାକଥିତ ବଡ଼ଲୋକଙ୍କୁ ଯଥାର୍ଥରେ ନାକ ଟେକି

ପାରିବେ । ଟେକଚନ୍ଦ୍ର ମଧ୍ୟ, ଆବଶ୍ୟକ ଅନୁଯାୟୀ, ନ ହେଲେ ଧୂଆ ମୂଳା ଅଧୂଆ ମୂଳା ଭିତରେ କିଛି ପ୍ରଭେଦ ଅଛି ବୋଲି ଜଣାପଡ଼ିବ ନାହିଁ । ତେଣୁ ଏଇ ଭାଗ୍ୟଶାଳୀ ପୁତ୍ରମଣିର କଳା ଓ କଲ୍‌ଚର୍ ଭିନ୍ନ ଧାତୁରେ ଗଢ଼ା, ଯାହା ମିଶ୍ର-ସାହେବ ଙ୍କ ଡାପଦ୍‌ଦା ବୁଝି ପାରିବେ ନାହିଁ, ମାଧବବାବୁ ତ ସହଜେ । ହଞ୍ଜୀବ୍ ମେହେଗ୍ରା ଓରଫ୍ ବଣ୍ଟି ନାମକ ଏଇ ନବଯୁବକ ଯାନ ମଡେଲ୍‌ର ମାରୁତି ଗାଡ଼ିରେ ମହାବେଗର ଆବେଗ ଦେଖାଇ, ଟ୍ରାଫିକ୍ ଆଲୁଅ ତଥା ଗ୍ରୁର ପୁଲିସ୍‌ବାଲାଙ୍କୁ ଭ୍ରୁକ୍ଷେପ ନକରି ମଗ୍ରୁନ୍‌ରେ ଅସି ପହଞ୍ଚିଛି ଏଇ ଅଳ୍ପସମୟ ହେଲା । ମଗ୍ରୁନ୍ ଗ୍ରେଟ୍ରୋଗାଁ ଙ୍କ ଗ୍ରାଣ୍ଡ୍ରାକଢ଼ର ଛାବା ଏକା କଥା ତା' ପାଇଁ । ଇଚ୍ଛା କଲେ ସେ (ମାନେ ତା'ବାପା), ଏଇ ସାରା ହୋଟେଲଟାକୁ କିଣିପାରିବ; ଅନ୍ତତଃ ତାହାହିଁ ତା'ର ବିଶ୍ୱାସ । ଏଣେ ମନ ହେଲେ ସେ ଦୋସ୍ତମାନଙ୍କ ସାଙ୍ଗରେ ଛାବାରେ ବସି ଦାରୁ ପିଇପାରିବ, ମଉଜ କରିପାରିବ । ଏଇ ହେଲା ତା'ର ନିଃସନ୍ଦିଗ୍ଧ ବଡ଼ପଣର ସାରକଥା । ଏବଂ ତହିଁରୁ ଉତ୍ପନ୍ନଥିବା ଆତ୍ମପ୍ରତ୍ୟୟ ।

ଆଜି ତା'ର ଏଠିକି ଆସିବାର ଉଦ୍ଦେଶ୍ୟ କେବଳ ଗୋଟିଏ । ସେ ଶୁଣିଛି ଯେ ଏଠି ଗୋଟିଏ 'ଡିସ୍' ଅଛି (ଏଠି ଡିସ୍‌ର ଅର୍ଥ ବ୍ୟଞ୍ଜନ ନୁହେଁ, ଲୋଭନୀୟା ନାରୀବସ୍ତୁ), ସେ ହୋଟେଲ୍ ମ୍ୟାନେଜ୍‌ମେଣ୍ଟ୍‌ରୁ ଡିଗ୍ରୀ ନେଇ ଏଇଠି କାମ କରୁଛି, ଏବଂ ତା'ର ହସ କୁଆଡ଼େ ଛୁରୀ ପରି ଗଳିଯାଏ ଦେହରେ । ବଣ୍ଟି ଏଠିକି ଆସିଛି ତା'କୁ ଦେଖିବା ପାଇଁ, ଏବଂ ମନ ମାନିଲେ ତାକୁ ଡିନର ପାଇଁ ଡାକିବା ପାଇଁ... ସେଣିକି ଅନ୍ୟ କଥା । ଆନନ୍ଦର ବିଷୟ ଯେ ସେ ଆସୁ ଆସୁ ଡିସ୍‌ଟିର୍ ସନ୍ଧାନ ପାଇଛି; ତା' ନାଆଁ ପିଙ୍କି, ଏବଂ ତା' ହସ ପ୍ରକୃତରେ ନିଆରା । କିନ୍ତୁ ତାକୁ ମୋଟେ ଭଲ ଲାଗିଲା ନାହିଁ ଝିଅଟାର କାରବାର । କାହିଁକନା ତାକୁ ଟିକିଏ ହେଲେ ମନେଇବାକୁ କି ଫୁସୁଲେଇବାକୁ ପଡ଼ିଲା ନାହିଁ । ଡିନର୍ ପାଇଁ ନିମନ୍ତ୍ରଣ କଲାକ୍ଷଣି ସେ ତତକ୍ଷଣାତ୍ "ଓ ସିଓର୍-ହ୍ୱାଏ ନଟ୍" ବୋଲି କହିଲା । ଏମିତି କେବେ ହୁଏ ନାହିଁ । ତା' ମାନେ ସେ କ'ଣ ମୋତେ ଅଣ୍ଟା କରୁଛି ? ଠିକଣା ବେଳେ ମୋତେ ଗୋଟାଏ ଶିକ୍ଷା ଦେବ ବୋଲି ବସିଛି ? ସେମିତି କଥାକୁ ମୁଁ ତା' ମଜା ଚଖେଇ ଦେବ । ମୁଁ ଠିକଣା ବେଳେ ମାନେ ସେ ରେଡ଼ି ହେଲା ପୂର୍ବରୁ କହିବ "ଥ୍ୟାଙ୍କ୍ ୟୁ, ବାଏ !" ଏତିକରେ ଟୋକୀକୁ ଯଥେଷ୍ଟ ଅପମାନ ହେବ କି ଆଉ କ'ଣ କହିଲେ ଭଲହେବ, ନା କଥାଟାକୁ ସହଜ ଅର୍ଥରେ ନେଇ ନେଲେ ଯାଏ, ଏହି କ୍ରମରେ ଭାବୁଥିଲା ବେଳେ ବଣ୍ଟି ଦେଖିବାକୁ ପାଇଲା ଉପରୋକ୍ତ ଦୃଶ୍ୟ । ପିଙ୍କି ଓ ମିଶ୍ର-ସାହେବଙ୍କ ମଧ୍ୟରେ ଅନୁଷ୍ଠିତ ସେଇ ସଂକ୍ଷିପ୍ତ ଏବଂ କୋମଳ କଣ୍ଠର ଆଦାନପ୍ରଦାନ । ଏଥିରେ ସେ ରାଗିବ ନାହିଁ କେମିତି ?

( ୪ )

ଅଶୁଭ ଅନିଶ୍ଚିତ, ହେଲେ ହଇରାଣିଆ କ୍ରୋଧର ଏଇ ଫିସନ୍ଧରେ ନିଆଁ ଲାଗିଲା ।

ନିଆଁ ଲାଗିଲା ? କେଉଁଠି, ଏଇ ମସ୍ତିନ୍‌ରେ ? …ହଁ, ମସ୍ତିନ୍‌ରେ ନୁହେଁ ତ ଆଉ କେଉଁଠି ? ଦେଖୁନା' ଲୋକମାନେ କେମିତି ଯେଝା ଯେଝା ଆସ୍ଥାନରୁ ଉଠି ଆସୁଛନ୍ତି ତରତର ହୋଇ, କ'ଣ ହେଲା କ'ଣ ହେଲା ବୋଲି ପଚାରୁଛନ୍ତି ? ଗୃହାଗ୍ନିରେ ଭସ୍ମ, ଭସ୍ମରୁ ଆତଙ୍କ ବେଶି ଦୂର ନୁହେଁ, ଗୁଞ୍ଜରଣରୁ ଚିତ୍କାର, ଯେଉଁଠୁ ପ୍ରାଣବେକଳରେ ପଳେଇଯିବା କଥା ··

ତେବେ ସେମିତି ହେଲା ନାହିଁ । ଯଥାଶୀଘ୍ର ଜଣାପଡ଼ିଲା ଯେ ନିଆଁ ଏଠି ଲାଗି ନାହିଁ, ଲାଗିଛି ବଙ୍ଗଳା ଭବନରେ । ସେଇ ଖବରଟା କେମିତି କେଜାଣି ଖେଳେଇ ହୋଇଗଲା ଏଠି । ମିଛ ନିଆଁ, ମିଛ ଗୁଜବ ··ଧାତ୍ ! ଆସ, ଫେରି ଆସ ଆପଣା ଆପଣା ଆସ୍ଥାନକୁ ।

ଆମ ଲୋକମାନେ ମଧ୍ୟ ଅଳ୍ପ ବହୁତ ଉଠି ଯାଇଥିଲେ, ଏବଂ ହସି ହସି ଫେରିଆସିଲେ । କେବଳ ଜଣକ ଛଡ଼ା । ସେ ହେଉଛନ୍ତି ମହାପାତ୍ର ମାଧବ ଦାସ । ସେ ମୂଳରୁ ତାଙ୍କ ଆସନ ଛାଡ଼ି ନଥିଲେ । ନିଶ୍ଚେଷ୍ଟତା, କି ବକ୍ରତା, କି ଏକ ଆରକ ସାଙ୍ଗରେ ମିଶିଗଲା ଭଗବାନଙ୍କ କୃପାରୁ, କହିହେବ ନାହିଁ ।

ମିଛ ନିଆଁ ତାପସଦା ତଥା ବର୍ଣ୍ଣିଙ୍କୁ ତାଙ୍କ କ୍ରୋଧରୁ ବଞ୍ଚେଇ ଦେଲା, ଜଗ୍‌ମୋହନ୍‌ଙ୍କୁ ଫେରାଇ ଆଣିଲା ତାଙ୍କ ପ୍ରାର୍ଥନାର ଶାନ୍ତିକୁ, କି 'ଘଟଣା' ଘଟି ନଥିଲେ ମଧ୍ୟ ସେମାନେ ଯେଝା ଯେଝା ସିଧାବାଟକୁ ଫେରିଆସି ଥାଆନ୍ତେ, ସେ ବିଷୟରେ ଟିପ୍ପଣୀ ଦବା ଅନାବଶ୍ୟକ । ଖାଲି ଆମ ମାଧବବାବୁ ଯାହା କହିଗଲେ ମନେ ମନେ, ସେତକ ଉଲ୍ଲେଖଯୋଗ୍ୟ । କହିଲେ—

ପୋଡ଼ିଯାଉ, ପୋଡ଼ିଜଳି ଯାଉ ତୁମ ବଙ୍ଗଳା ଭବନ, ଯେଉଁଠୁ ନିର୍ମାଣ ଭବନ, କୃଷିଭବନ···ତୁମ ରାଜଧାନୀରେ ଯେତେକ ଭବନ, ସଦନ, ଉଦ୍ୟାନ । ଇଏ ମୋ ରାଜଧାନୀ ନୁହେଁ, କଦାପି ନୁହେଁ । ଏଠି ଜଣେହେଲେ ମଣିଷ ନାହାନ୍ତି, ଗୋଟିକ ଗୋଟି ନଷ୍ଟ ହୋଇଗଲେଣି, ପଚି ସଢ଼ି ଗଲେଣି ।

ଭୁବନେଶ୍ୱର ବ ଦନେ ବଦଳିଚିବ, ମୁଁ ଜାଣିଛି । ତା'ବୋଲି ମୁଁ କ'ଣ ବଦଳିଯିବି ? ଟିକିଏ ବଡ଼ଲୋକ ହୋଇଯାଇଛି, ହୁଏତ ସେଇଥିପାଇଁ କ'ଣ ଟିକିଏ ହେରଫେର ଲକ୍ଷ୍ମୀମିଛ କରିବାକୁ ପଡ଼ିଲା, ତା'ବୋଲି ମୁଁ କ'ଣ ସ୍ୱାଙ୍କ ପରି ହୋଇଛି ? ମୁଁ ମୋ ରାଜଧାନୀ ବାଛି ନେବି । ଦରକାର ହେଲେ ତଆର କରିପାରିବି । ମୋତେ କ'ଣ ବୋଲି ପାଇଛ କି ?

# ମଟନ୍

'ପୋଡ଼ିଯାଉ, ପୋଡ଼ିଜଳିଯାଉ ତୁମ ବିଜ୍ଞାନ ଭବନ, ଯେଉଁଠି ନିର୍ମାଣ ଭବନ...' ଯାହାର ମନର୍ଗହ୍ୱରରୁ ଏଭଳି ସତ୍ୟାନାଶିଆ ଚିତ୍କାର ବାହାରେ ? ଯାହାର ସବୁ ସରି ଯାଇଛି, ନୁହେଁ କି ? ସେଇଲାଗି ସେ ମଧ୍ୟାହ୍ନକ୍ରୋଧରେ ତାକୁ ଗୁଡ଼େ ବଧାଉନ୍ତି, ଯେ ପୃଥିବୀର ବାକି ସବୁ ସରିଯାଉ, ପୋଡ଼ି ଜଳିଯାଉ । ସତେକି ସେଇଥିରେ ତା'କୁ ଶାନ୍ତି ଲାଗିବ ! କିନ୍ତୁ ମାଧବ ଦାସ ମହାପାତ୍ର ଜଣେ ପ୍ରତିଷ୍ଠିତ 'ଏ' କ୍ଲାସ୍ କଣ୍ଟ୍ରାକ୍ଟର୍ ତଥା ଏକ୍ସପୋର୍ଟର, ତାଙ୍କର ତ ସବୁ କିଛି ଅଛି, ଏବଂ ବଢ଼ି ବଢ଼ି ଚାଲିଛି ବୋଲି ମନେହୁଏ (ସହଜେ 'ସବୁ'ର ଅର୍ଥ ଧନ, ତହୁଁ ପ୍ରତିଷ୍ଠା, ତା' ପରେ ଆଉସବୁ), ତାଙ୍କର ଏମିତି କ'ଣ ହେଲା ଯେ ସେ ମଟନ୍‌ରେ ଉଠିଥିବା 'ବ୍ୟାଁ !' ଡାକକୁ ଖାତିର୍ ନ କରି ସେଇଠି ବସି ରହିଲେ, ପୁଣି କଥାଟା ମିଛ ବୋଲି ଜଣାପଡ଼ିଲା ପରେ ସ୍ୱସ୍ତିର ନିଃଶ୍ୱାସ ମାରିବେ କଅଣ ନା, କହୁଛନ୍ତି 'ପୋଡ଼ିଯାଉ ତୁମ ରାଜଧାନୀର ଯେତେକ ଭବନ, ସଦନ, ଉଦ୍ୟାନ' ? ଲୋକଟା ପାଗଳ ନା ଜନ୍ମସିଦ୍ଧ ସଇତାନ୍, ଯାହା ଜଣାପଡ଼ିଲା ଯାଏଁ ଏତେବେଳକୁ, ଗପର କ୍ଲାଇମାକ୍ସ ହୋଇଗଲା ପରେ ?

ନା; ଲୋକଟି ନିହାତି ନିର୍ମଳ, ହେଲେ ଆଧୁନିକ ଯୁଗର । କେଉଁ ଯୁଗର ସୁସ୍ଥ ଏବଂ ସାଧାରଣ ବିଦ୍ୟାବୁଦ୍ଧି ସମ୍ପନ୍ନ ମଣିଷକୁ ବୁଝାଯାଏ, ତା'ର ହେତୁ ହେଲାଦାନୁ, ଯେ ଏଇ ଜୀବନର ସାର୍ଥକତା ହେଉଛି ପାଖ ଲୋକଟାକୁ ଟପିଯିବା, ଏବଂ ସେଇଠୁଁ କ୍ଷମତା ହାସଲ କରିବା, ଯାହା ଖଟେଇ ହେବ ସେମାନଙ୍କ ଉପରେ, ପରିସ୍ଥିତି ଅନୁଯାୟୀ । ଏଇ କ୍ଷମତାର ଗୁରୁକାଠି ହେଉଛି ଧନ । ମାଧବବାବୁ ଏହି ତତ୍ତ୍ୱର ଅନ୍ୟତମ ଗରାଖ । ଏ ହେତୁ ଯୁଗଧର୍ମୀ ଭିତ୍ତି ଅନୁଯାୟୀ ତାଙ୍କୁ ଉଚ୍ଚାଭିଳାଷୀ କୁହାଯିବ ।

ସେହି ଅଭିଳାଷକୁ ପୂରଣ କରିବା ବାଟରେ ସେ ତାଙ୍କ କାର୍ଯ୍ୟ ମୃକେର ଛାଡ଼ିଦେଇ ଧନଲାଭର ବିଭିନ୍ନ ଉପାୟ କଲେ (ସବୁ ଉପାୟ ଯେ ସିଧାସଳଖ ଏବଂ ଆଇନ୍ ଅନୁମୋଦିତ ହେବାକୁ ବାଧ୍ୟ, ତା' କିଏ କହିଲା ?), ଏବଂ ତାଙ୍କ ଆଡ୍‌ଭେଂଚର୍ ସଫଳ ନହୋଇଛି ବୋଲି କହିହେବ ନାହିଁ, ଯଦିଓ ସେ କେତେ ଉଚ୍ଚର ଏଭରେଷ୍ଟ୍‌ରେ ପହଞ୍ଚିବାକୁ ଚାହୁଁଥିଲେ, ତା' ସେ ଜାଣନ୍ତି । ଅତଏବ ସେ ପ୍ରଶଂସାର ପାତ୍ର ଏବଂ ସେଥିର ଝଙ୍କ ହୁଲହୁଲି ତାଙ୍କ କାନକୁ ଶୁଭୁଥିବ ନିଶ୍ଚୟ, ଈର୍ଷା ଓ ବିସ୍ମୟ ସମେତ, ଯାହା ତାଙ୍କୁ ଆହୁରି ସୁଖ ଆଣି ଦେଉଥିବ । ତଥାପି ସେ ଏମିତି ସପୁଛନ୍ତି ପୃଥିବୀକୁ, ଏହାହିଁ ବିଚିତ୍ର ।

ପାଗଳ ନୁହେଁ, ରୁଗ୍‌ଣ ନୁହେଁ, ସଇତାନ୍ ନୁହେଁ, ପୁରାପୁରି ନର୍ମାଲ୍, କହିବାକୁ ଗଲେ ଆମ ସମସ୍ତଙ୍କ ପରି, କେବଳ କେତେକ ଖିରୁ ଦୁର୍ବଳ ମଣିଷଙ୍କୁ ଛାଡ଼ିଦେଲେ, ଯେଉଁମାନେ ଯୁଗୋପଯୋଗୀ ନୁହନ୍ତି । ତଥାପି···

କାନ୍ଦୁ ଦେଖନ୍ତୁ, ତା'ର କାରଣଟାକୁ ସେ କ'ଣ ସ୍ପଷ୍ଟ କରିଦେଇ ନାହାନ୍ତି ତାଙ୍କର ଘରପୋଡ଼ିଆ ଚିତ୍‌କାର ଭିତରେ ? କହିଲେ, ଇଏ ମୋ ରାଜଧାନୀ ନୁହେଁ । ଆଜିର ଦିଲ୍ଲୀ ନୁହେଁ କି ଆସନ୍ତାକାଲିର ଭୁବନେଶ୍ୱର । ତେବେ କ'ଣ ସେ ସହରର ନାଆଁ, କେଉଁଠି ଅଛି ସେ ? ମାଧବବାବୁ ତା'ର ଉତ୍ତର ଜାଣିଥିଲେ ମଧ୍ୟ, ତାଙ୍କୁ ଠିକଣା ଖବରେ ବୁଝେଇ ପାରିଥାଆନ୍ତେ ବୋଲି ମୋର ମନେହେଉ ନାହିଁ, ଯେହେତୁ ଲେଖକ ବାଧ୍ୟ ହେଉଛି ସେଇ କାମଟା କରିବା ପାଇଁ ତାଙ୍କ ତରଫରୁ ।

ରାଜଧାନୀ ହେଉଛି ମାନସିକତାର କେନ୍ଦ୍ରବିନ୍ଦୁ, ଯାହାର ଆଦର୍ଶ ସ୍ଥିରତା, ଶାନ୍ତି । ସେ ଦେଇ ଜିନିଷଟାକୁ ଖୋଜିବାରେ ଲାଗିଛନ୍ତି ଏବେ, ହେଲେ ପାଉନାହାନ୍ତି । ଯେଉଁଥିପାଇଁ ସେ ଆଜି କୋଉ ଶିକାର କରିବାକୁ ଆସି ନଥିଲେ ଏଇ ସ୍ୱନାମଧନ୍ୟ ମଗୃନ୍‌କୁ । ଆସିଥିଲେ ଜଗ୍‌ମୋହନ୍‌ଙ୍କ 'ଜପ୍‌ନ୍ଜ ସାହେବ' ଶୁଣିବା ଲାଗି । ସିଏ ବି କାମ ଦେଲା ନାହିଁ ମନେ ହେଉଛି । ଦେହେତୁ ଏଇ ଅନ୍ତିମଘାତ । ଅଭିମଘାତ ନୁହେଁ, ଘତ ଜାଆଁକୁ

ଆହ୍ୱାନ ।—ଆରେ ତୁ ମିଛ କୁହେଁ ମ, ସତ, ସତ, ତୋର ସତ ହେବା ଉଚିତ । ତୋର ଜାଳଦେବା ଉଚିତ, ଏଇ ମିଛ ଗୁଳଧାମାଗୁଡ଼ାଙ୍କୁ···

କେଉଁଥିପାଇଁ ଏଇ ଦୁରବସ୍ଥା ହେଲା ମାଧବବାବୁଙ୍କର, କହିହେବ କି ? ଜଗ୍‌ମୋହନ୍‌ଙ୍କୁ ଯେଉଁ ଉଦ୍ଦେଶ୍ୟରେ ଡକା ହୋଇଥିଲା, ସେ ସେଥିରେ ଫେଲ୍ ମାରିଲେ ? ମାନେ ତାଙ୍କର ଅସ୍ୱସ୍ତି ଅବା ଅସନ୍ତୋଷକୁ ଦୂର କରିପାରିଲେ ନାହିଁ ? କିଓ, ଜଗ୍‌ମୋହନ୍‌ଜୀ ତ 'ଶବଦ୍' ପରେ 'ଶବଦ୍'ର କୀର୍ତ୍ତନ କରି ଚାଲିଛନ୍ତି । ହେଲା ଏବେ ତା' ସାଙ୍ଗକୁ ସେ ଗିଲାସ ପରେ ଗିଲାସ ବିଅର୍ ପିଇ ଚାଲିଛନ୍ତି, ସେଥିରେ ଯାଏ କେତେ ଆସେ କେତେ ? ତୁଚ୍ଛଟାକୁ ମାଧବବାବୁ କାହିଁକି ଭାବି ବସିଲେ ଯେ ସେ ହିଂସା କରୁଛନ୍ତି ତାଙ୍କ ପ୍ରାକ୍ତନ ସହକର୍ମୀ ଉପରେ ? ନା, ବିଚରା ଜଗ୍‌ମୋହନ୍‌ଜୀଙ୍କୁ ଦୋଷ ଦେବା ଉଚିତ ହେବ ନାହିଁ । ଅପରନ୍ତୁ ତାଙ୍କ ବ୍ରିଲିୟାଣ୍ଟ୍ ପୁଅଟା ଆଇ.ଏଫ୍.ଏସ୍ ଚାକିରି ଛାଡ଼ିଦେଇ ବନ୍ଧୁକ ଚଳଉଛି ସନ୍ତ୍ରାସବାଦୀମାନଙ୍କ ପାଲରେ ପଡ଼ି, ଏଥିରେ କୋଉ ବାପଟା ମାଗଣା ବିଅର୍‌ରେ ମାତାଲ୍ ହେବାକୁ ଚାହିଁବ ନାହିଁ, କହିଲେ ? ତା'ହେଲେ କ'ଣ ମାଧବବାବୁ ଆଉ କେଉଁ ଅପଦୃଶ୍ୟ ଦେଖିଥିଲେ, ମଗୃନ୍‌ରେ 'ନଆଁ' ଲାଗିବା ପୂର୍ବରୁ, ଯାହା ତାଙ୍କର ଅସହ୍ୟ ହୋଇ ଉଠିଲା ? ତା' ବି କହି ହେବନାହିଁ । ସଂସ୍କୃତିପ୍ରେମୀ ତାପସ ବନ୍ଦ୍ୟୋପାଧ୍ୟାୟ ଯେଉଁ ଶିକାରରେ ଆସିଥିଲେ, ହେଲେ ତାଙ୍କୁ ଆପାତତଃ ଭୁଲିଯାଇ ଗୋଟାଏ ଗୋଷ୍ଠୀଗତ ପ୍ରତିଶୋଧର କାମନାକୁ ପ୍ରଶ୍ରୟ ଦେଲେ, ଗୁର୍‌ଜିତ୍‌ର ବାପକୁ ଦେଖିଲା କ୍ଷଣି, ଏଇ କମିକ ମନୋଭାବକୁ ଦୁଷ୍ଟ ବୋଲି କହିପାରି ହୁଏତ, କିନ୍ତୁ ମାଧବବାବୁ ତା'ର ସନ୍ଧାନ ପାଇଲେ କୋଉଁଠୁ ? ନା ମିନ୍ସସାହେବଙ୍କ ବଶିଷ୍ଟ ସୌନ୍ଦର୍ଯ୍ୟବୋଧ ଅଥବା ବର୍ଣ୍ଣିର ଉଚାଙ୍ଗ କୋଧର ବାସ୍ନା ମିଳିଗଲା ତାଙ୍କୁ ବୋଲି କହିହେବ ? ନା ମାଧବବାବୁ ସେମାନଙ୍କର ଶିକାର ମନୋବୃତ୍ତିକୁ ପଢ଼ି ପାରିଥିବେ, ଏହାର କୌଣସି କାରଣ କି ଲକ୍ଷଣ ପରିଲକ୍ଷିତ ହେଉ ନାହିଁ । ତା'ହେଲେ କାହିଁକି, କାହିଁକି ଆମ ମାଧବବାବୁ ଏମିତି ଗୋଟାଏ ବୋବାଳି ଛାଡ଼ିଲେ ମନେ ମନେ, ତାଙ୍କୁ ଭୂତ ଲାଗିଲା ପରି ?

ସେହେତୁ କେବଳ ଏତକ କହିହେବ ବୋଲି ମୋର ମନେହୁଏ ଯେ ପୁଞ୍ଜୀଭୂତ ଅପୂରଣରେ ଏମିତ ନିଆଁ ଲାଗିଯାଏ ମଝିରେ ମଝିରେ, ଯେକୌଣସି ଅନୁଭବର ମାଚିସ୍‌କୁ ଜଳେଇ ଦେଇ । ଯଦି ସେହି ସୁସ୍ଥ ସାଧାରଣ ସଫଳକାମୀ ମଣିଷଟି ମଧ୍ୟ ଭାବକାତର ହୋଇଥାଏ । ଏବଂ ଦିନେ ନା ଦିନେ ଏହିପ୍ରକାର ନିଆଁ ଲାଗିବ ନାହିଁ ତାପସ ବନ୍ଦ୍ୟୋପାଧ୍ୟାୟଙ୍କ ମିଜସାହେବଙ୍କ ମନରେ, ତା' କିଏ କହିବ ? କେବଳ ବର୍ଣ୍ଣି ବୟସରେ ଟିକିଏ ସନ୍ଦେହ ଆସୁଛି, କାରଣ ସେ କେବେହେଲେ ନିଜକୁ ନିର୍ଧନ ବୋଲି ଅନୁମାନ କରିବ ବୋଲି ଭାବହେଉ ନାହିଁ ।

କାରଣ ୯ଇଆକୁ କୁହନ୍ତି 'ଉଦ୍‌ବେଗ' । ଅନିଶ୍ଚିତତା, ଭୟ ଏବଂ ଅଧିକ ବିଶେଷର ଲୋଭକୁ ନେଇ ଗଢ଼ା ଏକ ଯୁଗଧର୍ମୀ ମାନସିକତା, ଯାହାକୁ ସ୍ଥିତିବାଦୀ ଦର୍ଶନର ପରିଭାଷାରେ 'ଆଙ୍ଗ୍‌ଷ୍ଟ୍' (angst) ବୋଲି କୁହନ୍ତି, ସେ ଦେଶର ପଣ୍ଡିତମାନେ । ବ୍ୟାଧି ଯେଉଁଆଡ଼ୁ ମାଡ଼ିଆସିଛି, ସେହି ଦେଶର ବିଶେଷଜ୍ଞ ପଣ୍ଡିତମାନେ ଏବଂ ସେମାନେ କୁହନ୍ତି ଯେ ଏହାର ନିଦାନ କିଛି ନାହିଁ । ଭଗବଦ୍‌ଗୀତାର ଭାଷାରେ ତାହା 'ହବିଷା କୃଷ୍ଣବର୍ତ୍ମେବ ଭୂୟ ଏବା ଭିବର୍ଦ୍ଧତେ' । କିନ୍ତୁ ଷମତାର ଉପଭୋଗକୁ ମଝିରୁ ଛାଡ଼ିଦେବ କେମିତି ? ନିଅଁରେ ଘିଅ ନଢାଳି ବଞ୍ଚିପାରିବ କେମିତି, ଏଇ ବସ୍ତୁବାଦୀ ସମାଜର ନାଗରିକ ହୋଇ ?

ତେବେ ବେଳେବେଳେ ମଧ୍ୟ ଏମିତ ବୋବାଳି ଛାଡ଼ିବାକୁ ପଡ଼େ ଯଦି ତମେ ଯତ୍‌ସାମାନ୍ୟ ଭାବକାତର ହୋଇଥାଅ । ବିଶେଷତଃ ଯଦି ତମେ ପାଖ ସଂସ୍କୃତିର ଦାୟାଦ ହୋଇଥାଅ । ତା'ର ପରିଣାମ ସ୍ଥାୟୀ ହୋଇ ରହିବ ବୋଲି କହିହେବ ନାହିଁ, ତେବେ ଆଶା କରାଯାଏ ଯେ ତଦ୍ୱାରା ଆପାତତଃ ତମକୁ ଖଲାସ ହେଲା ପରି ମନେ ହେବ ଉଦ୍‌ବେଗରୁ । ଯେକୌଣସି ଅନୁଭବକୁ ନେଇ, ଅଥବା ତାର ଆଳରେ, ଏଇ ନିଷ୍କାସନ-ନିଦାନ, କ୍ୟାଥାର୍‌ସିସ୍ (Catharsis), ଢେଣା ଅଧିକେ ଆମ ସମସ୍ତଙ୍କର କାମ୍ୟ ବୋଲି ମୋର ମନେହୁଏ ।

●

# ନିଜସ୍ୱ

ଗୋପାଳବାବୁ ଅନେଇ ରହିଲେ ତା' ଆଡ଼କୁ । ଯେତିକି ଅନେଇଲେ ସେତିକି ଖୁସି ହେଲେ । ଏବଂ ତାଙ୍କର ମନେହେଲା ଯେ ଏ ଖୁସି କେବଳ ଭିନ୍ନ ନୁହେଁ ଅଭିନବ ନୁହେଁ···ବୋଧହୁଏ ଠିକ୍ ଏମିତିକା ଖୁସି ମୋର ଲୋଡ଼ା ଥିଲା । ଗୁଡ଼ାଇ ଲେଉଟିଲା ବେଳକୁ ।

ମୁଁ ଯାହା ଆଡ଼କୁ ଅନେଇଛୁ ସେ ମୋ ପିଲା ନୁହେଁ । ମୋ ପିଲାର ପିଲା ନୁହେଁ । ମୋର କେହି ନୁହେଁ । କିନ୍ତୁ ଲଙ୍ଗଳାଙ୍ଗୋଟା ଗୁରୁଣ୍ଡି ଗୁରୁଣ୍ଡି ଆସୁଛି ମୋ ପାଖକୁ । ଆଉ ମୋତେ ଚାହିଁ କରି ହସୁଛି । ଏବଂ ତା' ହସରେ ହସ ମିଳାଇଲା ବେଳେ ମୋର ଯେଉଁ ଆନନ୍ଦ ଆସୁଛି, ସେଥିରେ ମମତ୍ୱର ଧାପେ ନାହିଁ—ମମତ୍ୱର ମମତା, ତହୁଁ ପୀଡ଼ା, ଉଦ୍‌ବେଗ, ସୁଖଦୁଃଖର ଯେତେକ ଗଣ୍ଡଗୋଳ । ପରୋକ୍ଷରେ ମଧ୍ୟ ନାହିଁ କେଉଁ ସ୍ମୃତିର ଜରିଆରେ, ଯାହା ମୋ ମନକୁ ଚହଲେଇ ଦେବ କି ତା'କୁ ଆଙ୍କୁଡ଼ି ଧରିବ ।

ସ୍ମୃତି ନାହିଁ ! ହଁ, ସେଇ ହେଉଛି ଅସଲ କଥା । ସେଇଲାଗି ଏଇ ଉନ୍ମୁକ୍ତ ଆନନ୍ଦ । ଏଠିକାର ଖୋଲା ପବନ ପରି, ଯେଉଁଥିରେ ଧୂଳି ନାହିଁ କି ଧୂଆଁ ନାହିଁ । ଧୂଆଁ ଥିଲେ ଥିବ ହୁଏତ, କିନ୍ତୁ ତା'ର ରଙ୍ଗ କି ଗନ୍ଧ ପବନରେ ଲାଖି ଯାଉ ନାହିଁ, ଆପଣା ବସ୍ତୁତରେ ଭସି ଭାସି ଯାଉଛି, ଏଇ ଆଗଚଲା ପାଙ୍କର ହସ ପରି । ତେଣୁ ଅନୁଭବ ଦାଗଟିଏ ଗୁଡ଼ିହିବ ବୋଲି ଡରିବାର ନାହିଁ ।

ପଣ୍ଡିତଗିରି ଦେଖେଇ କହିପାରେ ଯେ ନା ନା ସ୍ମୃତି ଅଛି ଅଳ୍ପବହୁତ, ମାନେ ତା'ର ଧାରଣା ତା'ର ସଙ୍କଳ୍ପନୀ ଚେତନା । କିନ୍ତୁ କଥା ହେଉଛି ଯେ ତା'ର ଦେହ ନାହିଁ କି ଚେହେରା ନାହିଁ । ତା'କୁ ଚହ୍ଲଟ କରିହେବ ନାହିଁ । କେବଳ ଗୋଟାଏ ଭାବ, ଅଭାବର ଦୁଃଖକୁ ଘୁଞ୍ଚେଇଲା ପରି । ଯେମିତିକି ଏଇ ଶିଶୁର ହସ ହେଉଛି ସବୁ ଶିଶୁଙ୍କର ହସ, ମୋର ଜନ୍ମ ହୋଇ ବଞ୍ଚିବାର ସ୍ମୃତି, ଜୀବନ—ଆନନ୍ଦର ସ୍ୱୀକୃତି । ଆଉ କିଛି ନୁହେଁ । ସେଥିରେ କେଉଁ ଅତୀତର ଅନୁଭୂତି ଜଳି ଉଠୁ ନାହିଁ । ରୁଗୁରୁଗୁ ବି' ହେଉ ନାହିଁ । ହେଲେ ଅଛି ତା'ର ମନୋରମ ଆବେଗ···

ଯେମିତକି ଏଇ ମୋର ଗାଆଁ । ମୋ ନିଜ ଗାଆଁ, କିନ୍ତୁ ତା'କୁ ନେଇ ମୋର ଯାହା କିଛି ମନେ ପଡ଼ୁଛି, ସେସବୁ ଖାଲି ଲୁଚିଯାଉଛି ମୋତେ । ତା'କୁ ଅନୁଭବ କରି ହେଉଛି କିନ୍ତୁ ମୋଟେ ଧରିହେଉ ନାହିଁ । ହେଲେ ଭଲ ଲାଗୁଛି । ଖୁବ୍ ଭଲ ଲାଗୁଛି । ବାଟଚଲାର ଯେତେକ କ୍ଳାନ୍ତି ଉଭେଇ ଯାଉଛି । ଆଃ ! ଏଇ ଆଉିଯାଚିକ ଲେଡ଼ା ଥିଲି ମୋର...

ମୁଁ ଏଇଠି ରହିବି । ମୋର ଗାଆଁରେ ରହିବି, ମରିବା ଯାଏଁ । ଏଇ ହେଉଛି ମୋ ନିଜସତ୍ତା !

ହେଲା ? ହେଲା ତ ଏଥର ? ଗୋପାଳବାବୁ ବାରମ୍ବାର ତାଙ୍କ ସଦ୍ୟ-ପ୍ରସ୍ଫୁଟିତ ଅବସ୍ଥାର ଓ ତା'ର ଚମତ୍କାରକୁ ଦୋହରେଇଲେ । ତା'କୁ ସିଦ୍ଧାନ୍ତ ସ୍ୱରୂପ ଥୋଇଲେ ନିଜ ଆଗରେ । ସତେକି କଥାଟା ଛିଣ୍ଡିଯାଉ ଶେଷଥର ପାଇଁ । ଆଜିର ଏଇ ସନ୍ତବେଳେ ।

ଗୋପାଳବାବୁ ପଦ୍ମପୁର ନାମକ ଗୋଟିଏ ଗାଆଁରେ ଥିବା ଧାନ ଖେତର ଅନ୍ୟତମ ହିଡ଼ ଉପରେ ବସିଥିଲେ । ଧୀର ସମୀରଣ ତାଙ୍କ ଦେହମୁଣ୍ଡକୁ ଛୁଇଁ ଛୁଇଁ ଏବଂ ବେଳେବେଳେ ସେଥିରେ ପିଟି ହୋଇ ପଳେଇ ଯାଉଥାଏ । ଅଦିନିଆ ଅଡୁଥିଙ୍କ ଆଗରେ ଦେଖେଇ ହେଲା ପରି ।

ହିଡ଼ର ଗୋଟିଏ ପାଖ ଖେତରେ ହଳ ବାଜି ନାହିଁ । ଗୋପାଳବାବୁ ସେଇ ଆଡ଼କୁ ମୁହଁ କରିଥିଲେ । ଏବଂ ତା'ରି ଉପରେ ଦୁଖେଇର ପିଲା ଗୁରୁଣ୍ଡୁଥିଲା । ଦୁଖେଇ ତା' ପଛରେ ଥାଇ ନସରପସର ହେଉଥିଲା, କାଠିକୁଟା ଆଦି ଗୋଟଉ-ଥିଲା । ସେ ବି ହସିଲା ।

ଦୁଖେଇର ହସ ବି ଭଲ ଲାଗିଲା ଗୋପାଳବାବୁଙ୍କୁ । ସେହି ପ୍ରକାର । ସତେକି ପୃଥିବୀର ଯେତେକ ମୂଲିଆଣୀ ଯୁବତୀ ଏମିତି ହସନ୍ତି । ପୃଥିବୀର ଅନ୍ୟତମ ଅବଦାନ । ଏବଂ, ତା'କୁ ପହୁଞ୍ଚେଇ ଦେଉଛି ଏଇ ତାଙ୍କ ଗାଆଁ । ପଦ୍ମପୁର ।

ତାଙ୍କ ଆଖିକୁ ଦିଶିଗଲା ଆଉ ଗୋଟିଏ ଯୁବତୀର ହସ । କନୈକା ନରି ଖରଯାର ଖିଲିଖିଲି ହସ । ନରି କୁଆଡ଼େ ତାଙ୍କ ପୁତୁରା ହେବ, ତା'ରି ସ୍ତ୍ରୀ । ଅଜିକା ବୈଠକରେ ସେ ବି ଥିଲା ଯଦିଓ ତା'ର ସେଠି ରହିବାର କୌଣସି କାରଣ ନଥିଲା, ଆଉ କଥାକଥାକେ ଦାନ୍ତ ଦେଖଉଥିଲା । ସେଇଠୁ କାନରେ ମୁହଁ ପୋଛୁଥିଲା, ଅଭଦ୍ରାମିକୁ ପୋଛି ଦେଲା ପରି । ଗୋପାଳବାବୁଙ୍କର ମନେହେଲା ଯେ ତାକୁ ବି

ପଦ୍ମପୁର ଆଣି ଦେଇଛନ୍ତି ତାଙ୍କ ପାଇଁ ଏଭଳି ଏକ ବିଶୁଦ୍ଧ ଏବଂ ଅଦମ୍ୟ ଆମୋଦର ପ୍ରତିମୂର୍ତ୍ତି । ସେଥିରେ କେଉଁ ସ୍ମୃତିବିଶେଷର ତାଡ଼ନା ନାହିଁ, ଯାହା ତାଙ୍କୁ ହଇରାଣ କରିବ । ତାଙ୍କ ନିରୋଳା ଉପଭୋଗରେ ଧୂଳି ପକେଇବ ।

ଭାବିଲେ ଯେ ସେମିତି ଆସିବ ଆଉ କେତେ ସ୍ମୃତିର ମାୟା । ଅଙ୍ଗେ ନଭେଟିଲା ଅନୁଭୂତିକୁ କାହିଁ କେତେ ଦୂରରେ । ହୁଏତ ପ୍ରେମର । ଯୌନ-ପ୍ରେମ ହେଉ କି ବନ୍ଧୁ-ପ୍ରେମ, କି ଆଉ କେଉଁ ପ୍ରେମ । ତଥା ଦୟାର, କରୁଣାର, ସହାନୁଭୂତିର । ଏବଂ ସେସବୁ ଖାପିଯିବ ତାଙ୍କ ଚେତନାରେ । ଏଇଠି ରହିଲେ । ତାଙ୍କ ସନ୍ତୁସୁଖର ବିଭିନ୍ନ ଉପାଦାନ ହୋଇ ।

ଆହା, ଆରପାଖର, ମାନେ ବିରାଗର ଆବେଗ ବି ଆସିବ—ଆସିବ ନାହିଁ କେମିତି ? ଯଥା ଘୃଣାର, କ୍ରୋଧର. ହିଂସାର ।…କିନ୍ତୁ ସେଥିରେ ବି ମୋ ସନ୍ତୁସୁଖ ଊଣା ହେବ ନାହିଁ । ବରଂ ଟିକିଏ ପିତାକଷାର ସ୍ୱାଦୁ ଆସିଲେ ଭଲ, ପାଟି ବାଧି ହୋଇଯିବ ନାହିଁ । ମିଠାରେ । କାରଣ ସେଥିରେ ବି ସ୍ମୃତି ନଥିବ, ଥିବ ଖାଲି ତା'ର ହାଲୁକା ଭାବ ଟିକେ । ତୀର୍ଥଯାତ୍ରୀକୁ ବେତରେ ଠୁକେଇଲା ପରି । ସେଇଠୁଁ ମୁଁ ଟିକିଏ ଚିଡ଼ିଯାଇ ପାରେ । ଅବା ହସିପାରେ, ଆହା ଚୂ'ଚୂ କି ଛୁଃ ଛୁଃ କହିପାରେ, ମୋ ଇଚ୍ଛା । କିନ୍ତୁ କେବଳ ଏତିକି ଜଣାଇବା ପାଇଁ ଯେ ମୁଁ ବି ମଣିଷ ସମାଜର ଜଣେ । ପ୍ରକୃତରେ କିଛି ହେଲେ ନଥିବ ସେଥିରେ, ଯାହା ମୋ ମନକୁ ବାନ୍ଧି ରଖିବ, ତାକୁ ଟହଲେଇ ଦେବ ।

ଗୋପାଳବାବୁ ପୁଣି ସ୍ଥିର କଲେ ଯେ ଖାଲି ଏଇଠି ତା' ସମ୍ଭବ ।…ଏଇ ମୋର ନିଜ ଗାଆଁରେ । ଯେଉଁଠି ସ୍ମୃତିଗୁଡ଼ାକ କେବେକା ପିଲାଦିନର, ବିସ୍ମୃତିର, ସ୍ୱପ୍ନର । ତଥା କଳ୍ପନାର, ତେଣୁ ଇଚ୍ଛା କଲେ ମୁଁ ତା'ର ମଙ୍ଗ ମୋଡ଼ି ଦେଇ ପାରିବି, ମୋ ସନ୍ତୁସୁଖକୁ ବଢ଼େଇବା ପାଇଁ ।

ଏବଂ ଏମିତି ମିଶିଯିବ ଧୀରେ ଧୀରେ ··ମହା ବିସ୍ମୃତିରେ···ଅନ୍ଧାରରେ···

"ବାବୁ କାଲି ହଳ ବୁଲିବ ନା ଏଠି ?"

"ନା !"

କୁଣ୍ଟେଇର ପ୍ରଶ୍ନ କ'ଣ ଏତେ ସାଙ୍ଘାତିକ ଥିଲା ଯେ ଗୋପାଳବାବୁ ଚମକି ପଡ଼ି ଏତେ ବଡ଼ 'ନା'ଟାଏ କହିଲେ ? ନା ଗୁରୁଣ୍ଡି ଗୁରୁଣ୍ଡି ଆସୁଥିବା ପିଲା ଏତେ ପାଖ ହୋଇ ଆସିଲାଣି ଯେ ଗୃହୁଁଗୃହୁଁ ତା' ଦେହକୁ ଲଦି ଦେବ ତାଙ୍କ ଉପରେ, ଏଇ ଆଶଙ୍କାରେ ସେ ଚିହିଁକି ଉଠିଲେ ? ହୁଏତ ଅଧା-ଅଜାଣତରେ ?

ମନେ ହେଉଛୁ ଉଭୟ ଆଶଙ୍କା ଏକା ପର, ତେଣୁ ଏକାଠି ହୋଇଗଲା । ଭୂମିର କର୍ଷଣ, ଦେହର ଆକ୍ରମଣ । ମେଦଓ ଭୂମିଖଣ୍ଡକ ନଜର, ଏବଂ ଦେହଟା ସାମାନ୍ୟ ଶିଶୁର । ସତେକି ସେଥିକରେ ଶରତ୍ ଗୋପାଳବାବୁ ଅନ୍ତରଙ୍ଗତା କ ଗମ୍ଭୀରତାର ଭୂତ ଦେଖିଲେ । ଏବଂ ଡରିଗଲେ । କାଲେ ତାଙ୍କ ନିଜସ୍ୱ ମାରି ହୋଇଯିବ !

ଧର ନିଅ ଯେ ଦେହ ମାନେ ବିଶ୍ୱାସଘାତକ, ତାଙ୍କ କୁଳୁମୁନିଆଁ କଅଁଳିଆ ସ୍ମୃତିର ବସ୍ତୁଟିକୁ ବଦଳ କରିଦେବ, ତେଣୁ ସେ ଶିଶୁ ଦେହରୁ ବି ଘୁଞ୍ଚିଗଲେ । କିନ୍ତୁ ଏଇ ଭୂମିଖଣ୍ଡକ ? ନୁଖୁରି ହୋଇ ପଡ଼ି ରହିଥିବା ଏଇ ପାଂଚଗୁଣ୍ଠ ଜମି, ଯାହା ନିଜର ବୋଲି ସାବ୍ୟସ୍ତ ହୋଇଗଲା ଏବଂ ଖାସ୍ ସେଇଥିପାଇଁ ସେ ଆସିଥିଲେ ତାଙ୍କ ଗାଆଁକୁ, ସେଥିରେ ହଳ ବୁଲିବ ନାହିଁ କାହିଁକି ? ପ୍ରଶ୍ନଟାକୁ ଆହୁରି ମୁନିଆଁ କରିହେବ ଏମିତି—

ପାଖ ଜମି, କହିବାକୁ ଗଲେ ଗାଆଁର ଆଉ ଯେତେକ ଜମି ଚଷା ହୋଇ-ଗଲଣି । ବୁଣାବୁଣି କାମ ବି ଆରମ୍ଭ ହୋଇଗଲଣି । ଖାଲି ତମ ଜମି କ'ଣ ପଡ଼ିଆ ପଡ଼ିଥିବ ? ତା'ଛଡ଼ା ଯେଉଁ ଜମି ତୁମ ଆସିବାର କାରଣ, ତୁମ ନିଜସ୍ୱ ଭାବନାକୁ ଡାକିଆଣିଲା, ପୁଣି ସେଇ ହେବ ତୁମ ସମ୍ଭାବିତ ରହଣିର ପଥଆରି, ସେଥିରେ ହଳ ବୁଲେଇବାକୁ ଡରୁଛ କାହିଁକି ? କଥା କଅଣ ?

ଗୋପାଳବାବୁ ତା'ର ଉତ୍ତର ଦେଇପାରିବେ ନାହିଁ । କହିବେ, ହଁ ମୋ ଜମି ଚାଷ ହେବ, ନହେଲେ ମୁଁ ଏଠିକି ଆସିଥାଆନ୍ତି କାହିଁକି ? ତେବେ ସବୁର୍ କର, ସବୁର୍ କର, ଏତେ ଶୀଘ୍ର ନୁହେଁ । ସତେକି ଇଏ କର୍ଷଣ ନୁହେଁ, ଅନୁଢ଼ା କୁମାରୀର ଧର୍ଷଣ, ସେଇଠୁ ତାକୁ ଅଗତ୍ୟା ବାହା ହେବାକୁ ପଡ଼ିବ !

···ଏତେ ଡର ବାହା ହେବାକୁ ! କିଓ, ତମେ ପରା କହୁଥିଲ ଯେ ତମେ ଏଇ ଗାଆଁରେ ରହିବ ମରିବା ଯାଏ, କାହିଁକିନା ଏଇ ତୁମ ନିଜ ସତ୍ତା ? ପୁଣି କ'ଣ ହେଲା ତୁମର ?

ନା ନା କିଛୁ ହୋଇ ନାହିଁ । ଗୋପାଳବାବୁ ଦୁଃଖ କଲେ ଯେ ତାଙ୍କ ସିଦ୍ଧାନ୍ତକୁ ସ୍ଥୂଳ ଅର୍ଥରେ ବୁଝେଇବାକୁ ଗଲେ ଯେତେକ ଅସୁବିଧା । ନିଜକୁ କହିଲେ ଯେ ବର୍ଷର ତିନିଶହ ପଞ୍ଚଷଠି ଦିନ, ଏବଂ ବର୍ଷ ପରେ ବର୍ଷ, ସେ ଏଇଠି ରହିବେ ମରିବା ଯାଏଁ, ଠିକ୍ ତା ନୁହେଁ । କିନ୍ତୁ କଥା ହେଉଛୁ ଯେ ପୃଥିବୀଯାକର, ମାନେ ଦେଶବିଦେଶର ଡଜନେ ଉପରେ ମହାନଗରୀ, ବଡ଼ ସହର, ଶ୍ରେଷ୍ଠ ସହରର ଅନୁଭୂତିକୁ ସାଉଁଟିଲା ପରେ ସେ ବାଛି ନେଇଛନ୍ତି ଏଇ ଥାନଟିକୁ । କାରଣ ଆଉ

କେଉଁଠି ବୋଧହୁଏ ସେ ପୂରାପୂରି ଦୂରେଇ ଯାଇ ପାରିବେ ନାହିଁ । ଅନ୍ତତଃ ।
ଯେତେ ଯାହା କଲେ ବି ମନେ ପଡ଼ିବ । ସେଠିକାର କେଉଁ ପଢ଼ୁଆ କ ପରିଙ୍କ, ରୁମ୍
କ ରେସ୍ତୋରାଁ ତାଙ୍କୁ ଟାଣି ନେବ ସେଥିରେ ଲାଗି ରହିଥିବା ସେତିକ ଗଣ୍ଡଗୋଳିଆ
ଗନ୍ଧ ଆଡ଼କୁ । ··· ଅତଏବ ଏଇ ମୋର ଗାଆଁ ! ଜନ୍ମସତ୍ତର ସୁନାକଳଙ୍କୁ
ଯ୍ୟା'ଣ ମୁଣ୍ଡରେ ଢାଳିବ । ତା'ର ଅର୍ଥ ଏଠିକି ଆସିବ, ପୁଣି ଆସିବ, ଆହୁରି ଅସିବ ।
ଆହୁରି ଆହୁରି ଅସିବ ଆପଣା ଶାନ୍ତି ପାଇଁ । ଇଏ ହେଲା ମୋର ଆଧ୍ୟାତ୍ମିକ ନୀଡ଼ ।
ଯ୍ୟା'ଣ ବଳ ପାଇ ମୁଁ ସ୍ୱଚ୍ଛନ୍ଦରେ ଲଢ଼ି ଲଢ଼ି ଯିବି, ମିଶିଯାଇ ପାରିବି···ଅନ୍ଧାରରେ···

କ'ଣ ଏଥର ବୁଝିହେଉଛି କ ନାହିଁ ? ଅବୋଧ ଗୁହକୁ ତଥାପି ବୁଝେଇ ନ
ପାରିଲା ପରି ଗୋପାଳବାବୁ ସ୍ଥାନତ୍ୟାଗ କଲେ । ଠିଆ ହୋଇପଡ଼ି ଉଠିଗଲେ
ଜମି ସେ ପାଖର ନାଳବନ୍ଧ ଉପରକୁ । ତାଙ୍କ ମନହେଲା ସେ ସେଇ ବାଟ ଦେଇ
ଚାଲି ଚାଲି ଯିବେ । ଗାଆଁର କଡ଼େ କଡ଼େ । ବୁଲି ଆସିବେ ତା' ଚାରିପାଖ ଦେଇ,
ରାତି ହେଲା ଆଗରୁ । ନହେଲେ ଜମିଟାକୁ ନେଇ ଏମିତିକା ଅଭଦ୍ର ପ୍ରଶ୍ନ
ଶୁଣିବାକୁ ପଡ଼ିବ ।

ସେ ଦୁଖେଇକୁ ଝିଙ୍ଗାସିଲେ ମନେ ମନେ ।···ହଁ, ହଳ ବୁଲିବ ଏଇ
ଖେତରେ, ଅବଶ୍ୟ ବୁଲିବ । କିନ୍ତୁ ତୋ ମୁଣ୍ଡ କାହିଁକି ବଥଉଛି ସେଥିରେ ? ହେଲା
ଏବେ ତୋ ଗିରସ୍ତ ପୁରସ୍ତମ ହଉଛି ମୋ ହଳିଆ । ସେଇ ମୋ ହଳିଆ ବୋଲି
ମୋତେ ବାରମ୍ବାର ଚହେଇ ଦିଆ ହୋଇଥିଲା, ଆଉ ତାର ସାକ୍ଷୀପ୍ରମାଣ ମୋତେ
ଖୁବ୍ ସାହାଯ୍ୟ କଲା, ନହେଲେ ଏ ଜମିଖଣ୍ଡିକ ହାତଛଡ଼ା ହୋଇଯାଇଥାଆନ୍ତା ।
ତା' ବୋଲି ତୁ ଏତେ ହମହମ ହଉଛୁ କାହିଁକି ସେଥିରେ ହଳ
ବୁଲିବ ବୋଲି ?

କ'ଣ ଭଲ ଲାଗେ ଭଳି ମାଟିକୁ ଖୋଳି ପକେଇଲେ ? ତାକୁ ଖୋଳିବ,
ଓଠେଇବ ପକେଇବ, ପୁଣି ଖୋଳିବ, ସେତିକି ତା' ଭିତରକୁ ନଯିବା ଯାଏଁ ରକ୍ଷା
ନାହିଁ । ସେତିକି ଅନୁଭବକୁ ଖୋଳିବା ଦରକାର, ସେଥିରୁ ଲୁହ ଲହୁ, ରକ୍ତ କ ଝାଳ
ନିଗିଡ଼େଇବା ଦରକାର, ନହେଲେ ସେ ତୁମ ନିଜର ହୋଇ ରହିବ ନାହିଁ ! ଏଇଠି
ଭୁଲ୍, ମହାଭୁଲ୍ । ସାରା ଜୀବନର ଭୁଲ୍ ।

ଯାହାହେଉ, ଚାଲୁ ଚାଲୁ ତାଙ୍କ ମନଟା ପୁଣି ହାଲୁକା ହୋଇ ଆସିଲା,
ଜନ୍ମସ୍ଥଳର ପ୍ରତିଶ୍ରୁତିକୁ ଫେରି ପାଇଲା ପରି । ଏବଂ ସେ ଜମିକୁ ଫେରି ପାଇବାର
କାହାଣୀକୁ ହେଜିଲେ, ଆମୋଦର ସହ ।

···ମୁଁ କ'ଣ ସତେ ସେ ସଭାରେ ପକ୍ଷ ନେଇଥିଲି, ବାଦୀ କ ପ୍ରତିବାଦୀ
ହୋଇ ? ଚାହୁଁଥିଲି କେମିତି ଜମିଟା ମୋର ବୋଲି ଫଇସଲା ହୋଇଯିବ ? ନା

ଗୋଟାଏ ଆତ୍ମୀୟ ନାଟକର ଦୃଶ୍ୟ ଦେଖୁଥିଲି ? ଲୋକଙ୍କୁ ମୁଁ ଥାଇ ଥାଇ ହସି ଉଠୁଁ ନଥିଲି ନରଭାରସା ପର । ନହେଲେ ସେମାନେ ବୋଧହୁଏ ଭାବିଥାଆନ୍ତେ ମୁଁ ଫେରୁକାମି କରିବା ପାଇଁ ଅାସିଛୁ ଏଠିକି । ମୋର ଆସ୍ଥା ନାହିଁ ଜମି ପ୍ରତି, କି ଗାଆଁର ଲୋକମାନଙ୍କ ପ୍ରତି । ଯେ ମୋର ଉଦ୍ଦେଶ୍ୟ କଅଣ ବୋଲି ଜଣାପଡ଼ୁ ନାହିଁ ସିନା, ହେଲେ ନିଶ୍ଚୟ ମନ୍ଦ ହୋଇଥିବ ।

ଗୋପାଳବାବୁ କଥାଟାକୁ ମୂଳରୁ ହେଜିବାକୁ ଚାହିଁଲେ, ତା'ର ସମ୍ୟକ୍ ଉପଭୋଗ ପାଇଁ । ଗାଆଁକୁ ଆସିବାର ପୂର୍ବକଥା···

ଶଙ୍କୁଆଦା' (କେଉଁ ହିସାବରେ ସେ ମୋ ଦାଦା ମୁଁ ଜାଣେ ନାହିଁ, ପ୍ରକୃତରେ ସେ ଆମ ନୂଆ ଗୁମାସ୍ତା) ହଠାତ୍ ଦିନେ ଆସି ପହଞ୍ଚିଲି ମୋ ପାଖରେ । କହିଲା, ଗୋପବାବୁ, ଗାଆଁକୁ ଚାଲ । ମୁଣ୍ଡ ହଲେଇ, ହାତ ଛାଟିଆଡ଼ି, ଏବଂ ଘୃଣ ପକେଇ କହିଲା ଯେ ଗାଆଁରେ ବଡ଼ିଆ ଜମି ଖଣ୍ଡେ ଅଛି ଯାହା ପ୍ରକୃତରେ ଆମର । କହିଲା ବନ୍ଦୋବସ୍ତ ରେକର୍ଡ଼ରେ ବ ବଟକୃଷ୍ଣ ଦାସ ଓଗେର ବୋଲି ଲେଖା ହୋଇଛି, ଏବଂ 'ଓଗେର'ର ମାନେ ନୁହେଁ ଯେ ଆମକୁ ଡଡ଼ି ଦେଇ ସାନଅଂଶର ଲୋକେ ତାକୁ ଭୋଗ କରିବେ । ବଟଭାଇ ବୁଢ଼ା ହୋଇଗଲାରୁ ନିଜେ କିଛି ଦେଖାଶୁଣା କରିପାରିଲେ ନାହିଁ, ତମେ ବ କୁଆଡ଼େ ବୁଲିଲି ଏଣେ ତେଣେ, ତା' ବୋଲି କ'ଣ ସେମାନେ ଜମିଟାକୁ ମାଡ଼ି ବସିବେ ? କହିଲା, ମିଛୁଆନା' (ଆମ ପୁରୁଣା ଗୁମାସ୍ତା)—କ'ଣ କହିବ ସେକଥା—ଭଗବାନ୍ ତାକୁ ସେପୁରକୁ ଉଠେଇ ନେଇ ବଞ୍ଚେଇ ଦେଲେ ଆମକୁ, ନହେଲେ ସେ ଆଉ କେତେ କ'ଣ ଅନିଷ୍ଟ କରିଥାଆନ୍ତା ଆମର !

ମୋଟାମୋଟି ତା'ର ବକ୍ତବ୍ୟ ହେଲା ଏଇ ଯେ ଆମ ଆଦାନବାଯ ପଦ୍ମପୁର ଗାଆଁରେ ଗୋଟାଏ ମୂଲ୍ୟବାନ୍ ସମ୍ପତ୍ତି ହାତଛଡ଼ା ହୋଇଯାଉଛି । ସାନଅଂଶର, ଅର୍ଥାତ୍ ମୋର କେଉଁ ଝୁମାଦାଦାଙ୍କ ନାତି ଯୋଗିଆ ପାଞ୍ଚଗୁଣ ବିଶିଷ୍ଟ ଗୋଟାଏ ନାଳକୁଳିଆ ଜମି ଚାଷ କରି ଆସୁଛି ଆଜିକୁ ଚାରି ପାଞ୍ଚ ବର୍ଷ ହେଲା । ଯଦିଓ ଜମିଟା ଆମର । ମାନେ ବଟକୃଷ୍ଣ ଦାସଙ୍କର ମୃତ୍ୟୁ ପରେ ତାଙ୍କ ଏକମାତ୍ର ଜୀବିତ ପୁତ୍ରସନ୍ତାନ ଗୋପାଳକୃଷ୍ଣଙ୍କର । ଏବଂ ବଡ଼ ଅଂଶର ଗଜବଡ଼ବାପାଙ୍କ ପୁଅ ନାଟୁଭାଇର, ଯେ ସପରିବାର ଅମେରିକାରେ ଅଛି । ତେଣୁ ଏ ବର୍ଷ ଶଙ୍କୁଆଦା' ଯୋଗିଆକୁ ସେଥିରେ ହଳ ବୁଲେଇବାକୁ ଦେଇ ନାହିଁ । ଅପରନ୍ତୁ ଧମକେଇଛି । କିନ୍ତୁ ତା'ର ସବିନୟ ନିବେଦନ—ବାବୁ, ତମେ ନ ଆସିଲେ ହବ ନାହିଁ, ବୁଝିଲ ? ନହେଲେ କଥାଟା ଫଙ୍ଗୀନ ହୋଇଯିବ !···

ହାସ୍ତୁ, ତଥାପି ଗୋପାଳବାବୁ ଖାଲି 'ଆଚ୍ଛା ? ଆଚ୍ଛା ?' ବୋଲି କହି ଚାଲିଲେ, ଗାଆଁକୁ ଯିବାର ନାଆଁ ଧରିଲେ ନାହିଁ । ଶଙ୍କୁଆଦା' ନିରାଶ ହେଲ ।

ହେଲେ କ୍ରମଶଃ ତାଙ୍କୁ ବୁଝିବାକୁ ପଡ଼ିଲା ଯେ କିଛୁ ନକରି ବସିଯିବାର ମୂର୍ଖତାକୁ ଉଦାରତା ବୋଲି କୁହାଯିବ ନାହିଁ । ତେଣୁ ଗାଆଁକୁ ଯିବାକୁ ହେବ । ଯେଉଁ ଗାଆଁମାଟି ସେ ମାଡ଼ି ନାହାନ୍ତି, ଆଜକୁ ପଇଁତିରିଶ ବର୍ଷ ହେଲ, କି ତାଠୁଁ ବେଶୀ । ଖାଲି ବାପାଙ୍କୁ ସେଇଠି ପୋଡ଼ି ଦେଇ ଆସିବା ଛଡ଼ା…

ବାପାଙ୍କ ମୃତ୍ୟୁର ପରେ ହିଁ ଗାଆଁକୁ ଯିବା ଉଚିତ ଥିଲା । ତା'ହେଲେ କଥାଟା ଏତେ ଦୂରକୁ ଯାଇ ନଥାଆନ୍ତା । ଯାହାହେଉ ଏଭଳି ଏକ ସମସ୍ୟା ଦେଖା ଦେଲା ପରେ ମଧ୍ୟ ହାତଗୋଡ଼ ଟେକି ବସି ରହିବାର ଢଙ୍ଗକୁ ଖାଲି ମୂର୍ଖତା ବୋଲି କୁହାଯିବ ନାହିଁ…ମୂର୍ଖତାରୁ ବଳି, ଅନାସ୍ଥାରୁ ବଳି…ଗୋଟାଏ ଘୋର ବିକୃତି !

ପ୍ରଥମ ଓ ଶେଷ କଥା ହେଲା ଏଇ ଯେ ଶଙ୍କୁଆଦା' ଫିଡ଼ିକିବ । ମିଛୁଆନା' ପରେ ଶଙ୍କୁଆଦା' ଚାଲିଗଲେ ଆଉ କିଏ ରହିବ ସେଠି, ଆମ ଲୋକ ହୋଇ ? ସେଇ ଗୋଟିଏ ବୋଲି ଯୋଗସୂତ୍ରକୁ ଏମିତି ଜାଣିଶୁଣି ଛିଣ୍ଡେଇ ଦେବାର ଅର୍ଥ ଗାଆଁକୁ ଭୁଲିଯିବା…

ଗୋପାଳବାବୁ, ତମର କ'ଣ ଗାଆଁ ଉପରୁ ମାୟାମମତା ତୁଟିଗଲଣି ଏକାବେଳେକେ ?

ଆଉ ସହି ହେଲା ନାହିଁ ଏହିପ୍ରକାର ଭର୍ତ୍ସନା, ପତ୍ନୀ କରଣଠାରୁ ଆରମ୍ଭ କରି ପାଖପଡ଼ଶା ଓ ସହରିଆ ବନ୍ଧୁବାନ୍ଧବଙ୍କ ମୁହଁରୁ । ତଥା ଆପଣା 'କର୍ତ୍ତବ୍ୟପରାୟଣ' ବିବେକଠାରୁ । ସ୍ଥିର ହେଲା ଯେ ସେ ମାତ୍ର ଗୋଟିଏ ଦିନ ପାଇଁ ଯିବେ ଓ ତା'ପର ଦିନ ଫେରି ଆସିବେ ।

ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁଯାୟୀ ସେ ଆଜି ସକାଳେ ପହଞ୍ଚିଥିଲେ ପଦ୍ମପୁରରେ । ପ୍ରଥମେ ଗଲେ ଜନୈକ ବାଳବିଧବାଙ୍କ ଘରକୁ । ସେଠି ଜଣେ ଖୁଡୁ ବଡ଼ବାପା ତାଙ୍କୁ କୁଣ୍ଡେଇ ପକେଇଲେ, ଚିବୁକ ଟେକି ଅନେଇଲେ ତାଙ୍କ ମୁହଁକୁ, ଏବଂ କହିଗଲେ କେତେ କ'ଣ ପୁରୁଣା କଥା, ଯାହାର ଅଗମୂଳ ଧରି ହେଲା ନାହିଁ । ପୁଣି ସେ କାନ୍ଦ କାନ୍ଦ ହେଲେ । ଜନୈକା ବିଧବା ଲେଖା ପଦବୋଉ, ହେଲେ

ବୟସରେ ସାନ ହେବେ, ତଥାକଥିତ ରସିକତା କଲେ, ଯଥା—ଆହା, କେମିତି କରଣକୁ ଗ୍ରାହ୍ୟ କରି ରହିବ ଗୋଟାଏ ଗାଡ, ଯାହାକୁ ଶୁଣି ସାନମାନେ ମୁହଁ ବୁଲେଇ ଦେଲେ । ମାନେ ବୁଢ଼ା ବାଁଅର ଭାଉଜଙ୍କ ଏଇ ରଙ୍ଗରସକୁ ଧନ୍ୟ କହିବ !

ସଭା ବସିଲା ପୁରୁଷ ସ୍ଥାମାସ୍ଥ ଘରେ ପରେ । ଘରୁ କୁଆଡ଼େ ସେପକ୍ଷର ଯେତିକି ନିକଟ, ଏପକ୍ଷର ମଧ୍ୟ ସେତିକି । କାରଣ ସେ ହେଉଛନ୍ତି ମଝିଆଁ ଅଂଶର ପିଲା । ଏବଂ ସେଠି ଥିଲେ ଶରମଉସା (ଯୋଗିଆର ଅଜା), ନାରଣ ମଉସା (ବାଳଭାଇର ମଉସା), ତଥା କୁଟୁମ୍ବର ଏକାଧିକ ଦାଦା, ବଡ଼ବାପା, ଦାଦିପୁଅ ଓ ବଡ଼ବାପାପୁଅ ଭାଇ, ଏବଂ ଯୋଗିଆ ପିଢ଼ିର ଲୋକେ ଯାହାଙ୍କୁ ପୁରୁଷ କୁହାଯିବ । ଯୋଗିଆର ବାପା ସ୍ୱର୍ଗବାସୀ, ତେଣୁ ତିନି ପିଢ଼ିର ଏହିପ୍ରକାର ବସାଟ ଆୟୋଜନ କରିବାକୁ ପଡ଼ିଲା ବୋଲି ଗୋପାଳବାବୁଙ୍କୁ କୁହାଗଲା । ଗୁଡ଼ାଏ ପିଲା ଲୁଚକାଳି ଖେଳୁଥିଲେ ସଭା ବାଟ ଦେଇ, ଏଘରୁ ସେଘର, ଏ ଖମ୍ବାରୁ ସେ ଖମ୍ବା । କୁରୁକୁରୁ ହେଉଥିଲେ, ବେଳେବେଳେ ଭେଁ ଭେଁ ବି ହେଉଥିଲେ । ତଳେ ମସିଣା ପରା ହୋଇଥିଲା ସଭାସଦ୍‌ମାନଙ୍କ ପାଇଁ । ଖାଲି ନାରଣ ମଉସା ଗୋଟାଏ ହାତବାଲା ଚଉକି ଉପରେ ବସି ରହିଥିଲେ, ଯେହେତୁ ସେ ବାତରୋଗୀ । ମାଇପେ ଆସୁଥିଲେ, ଯାଉଥିଲେ । କେବଳ ଜଣେକା ବିଧବା ନେଡ଼ଗୁଣ୍ଡୀ ପିଣ୍ଡାରେ ବସି ବଡ଼ବଡ଼ ହେଉଥିଲା । ମନେ ହେଉଥିଲା ସେ ଅତୀତକୁ ଏକାଧାରରେ ଝୁଙ୍କୁଛି ଓ ଫମ୍ପୁଛି । ତା'ଛଡ଼ା ଆଉ ଜଣେ । ନରଭାରିଯା । ସେ ପିଣ୍ଡାକୁ ଆସି ଠିଆହୋଇ ରହିଲା ଗୋଟାଏ ଖୁଣ୍ଟକୁ ଧରି । ଏବଂ ମୋଟେ ଟଳିଲା ନାହିଁ ସେଠୁଁ । ଅଧିକନ୍ତୁ ଥାଇ ଥାଇ ଦାନ୍ତ ଦେଖାଉଥାଏ । ସତେକି ଏଭଳି ଅପୂର୍ବ ଇନ୍ଦ୍ରସଭା ସହଜେ ଦେଖିବାକୁ ମିଳେ ନାହିଁ । ମାଇପିଟାକୁ କେହି ତଆଁରଲେ ନାହିଁ କେମିତି ? ଯାହାହେଉ ଗୋପାଳବାବୁଙ୍କୁ ପୁଣି ଦିଶିଗଲା ତା'ର ସେଇ ପଣତପୋଗ୍ରା, ହେଲେ ହାଂଶଙ୍କ ନଗ୍ନେଉ଼ବନ୍ଦା ହସ । ଏବଂ ତା'କୁ ମଜା ଲାଗିଲା । ଆଚ୍ଛା, କୋଉ କଥାରେ ସେ ହସି ପକେଇଲା କହିଲ ? ଗୋପାଳବାବୁ ଗଣିବାକୁ ଲାଗିଲେ—

…ଯେତେବେଳେ ସେପକ୍ଷର ଧଉ଼ଭାଇ ବନ୍ଦୋବସ୍ତ ରେକର୍ଡ଼କୁ ହସି ଉଡ଼େଇ ଦେଲେ । କିନ୍ତୁ ଉଡ଼େଇ ଦେଲେ କି ଅଟକେଇ ଦେଲେ ବୁଝିହେଲା ନାହିଁ । କାରଣ ସେ "ହେଁ"ଟାଏ କହିଦେଇ ତାଙ୍କ ପାଟିକୁ ମେଲେଇ ରଖିଲେ କିଛି ସମୟ । ଗୁମୁଦାନ୍ତ ଦାଂଟା ନିହାତ ଲଣ୍ଡା ତଥା ଆକର୍ଷକ ମନେ ହେଲା । ପାଟି ବୁଜିଲା ପରେ ଅବଶ୍ୟ ଯାହା କହିବାର କହିଲେ । ଯେ ଦଶଟା ଟଙ୍କାର ପାନଖିଆ ଦେଲେ ରେକର୍ଡ଼ ବଦଳାଯିବ ·ଶଳା ଯେତେକ ଭଡ଼ୁଆ !

…ସେତେବେଳେ ଖଗୁ ବଡ଼ବାପା ଚୁଲଉ ଚୁଲଉ ହଠାତ୍ ଉଠି ପଡ଼ିଲେ, ଏବଂ ନାରଣମଉସାଙ୍କ ଆଡ଼କୁ କଟମଟ କରି ଗୁହିଁଲେ ।

…କାହିଁକନା ନାରଣ ମଉସା "ଖେଓ୍ୱାଟ୍" ବୋଲି ଗୋଟାଏ ଶବ୍ଦକୁ ଉଚ୍ଚ ସ୍ୱରରେ ଉଚ୍ଚାରଣ କଲେ । କହିଲେ ଯଦି ବା ଦୁଇ ପକ୍ଷରୁ କୁହାଯାଉଛି ଯେ ସେମାନେ ପୂର୍ବ ଖଜଣା ଦେଇ ଆସୁଛନ୍ତି ଏକା ଜମି ପାଇଁ ଏବଂ ପାଉତିରୁ ବିଶେଷ କିଛି ବୁଝା ପଡ଼ିବ ନାହିଁ, କାରଣ ସେଥିରେ ବିଭିନ୍ନ ଅଂଶ ଏକାଠି ହୋଇଯାଇଛି, ଆଉ ଗୋଟାଏ ଠିକଣା ରେକର୍ଡ଼ ଅଛି ରେଭିନିଉ ଅଫିସରେ…ତା' ନାଆଁ ଖେଓ୍ୱାଟ୍ । ଖେଓ୍ୱାଟ୍ । ଖେଓ୍ୱାଟ୍ । ଶବ୍ଦଟାକୁ ସେ ତାଏ ତାଏ କରି ଗ୍ରୁଡ଼ିଲେ ତାଙ୍କ ଉଚ୍ଚ ଆସନରୁ ।

…ପୁରୁଷୋତ୍ତମ ହଳିଆ ତା' ଦ' ହାତକୁ ଦ' ଆଖିରେ ମାଡ଼ି ଦେଇ କହିଲା ଯେ ମୋ ଅଖି ଫୁଟିଯିବ ଯଦି ମୁଁ ମିଛ କହୁଥାଏ, ମୁଁହିଁ ଥିଲି ବଡ଼ବାବୁ (ଅର୍ଥାତ୍ ବଟକୃଷ୍ଣଙ୍କର ହଳିଆ, ମୁଁହିଁ ଗୃଷ କରି ଆସୁଛି ଏଇ ଜମି ଖଣ୍ଡିକ । ତିଦଶ୍ତା ସାଲ ମୁଁ ଗୃଆବାଗାନକୁ ନଯାଏ କି ଏତେ କଥା ନହୁଏ ।

…ଶିରମଉସା ଅନେକ ଥର କିଛି କହିବେ କହିବେ ହେଲେଣି, କିନ୍ତୁ ତା'ର ବାଟ ପାଉ ନାହାନ୍ତି । ବୋଧହୁଏ ତାଙ୍କ କଣ୍ଠସ୍ୱର ନିହାତି ସରୁ, ସେଇଥି-ପାଇଁ । ଶେଷକୁ ସେ ସ୍ୱର ଉଞ୍ଚେଇ ଗୋଟାଏ ଖାଣ୍ଟି କଥା କହିଲେ । କହିଲେ ଜମି ଯୋଗିଆର ନୁହେଁ କି ଗୋପାଳର । ଜମି ହେଉଛି ପୁରୁଷୋତ୍ତମର । ଆଜିର ହଳିଆ କାଲିର ଭାଗଗୃଷୀ…ନା କ'ଣ କହୁଛୁରେ ପୁଅ ?

…ଏତିକିରେ ପୁରୁଷୋତ୍ତମ ଗୋଟାଏ ବିଚିତ୍ର ଶବ୍ଦ କରି ଭଗବାନଙ୍କୁ ଡାକିଲା । କହିଲା ଯେ ସେମିତି କଥାକୁ ସେ ପୁଣି ଗାଆଁ ଗ୍ରୁଡ଼ି ପଳେଇଯିବ କୁଆଡ଼େ ବୋଲି କୁଆଡ଼େ ।

ଗୋପାଳବାବୁଙ୍କ ସନ୍ଦେହ ନଥିଲା ଯେ ଏଭଳି ଆହୁରି ଅନେକ କଉତୁକିଆ ଘଟଣା ଘଟିଥିବ, ଯେଉଁଥିପାଇଁ ନିରଞ୍ଜନିଆ ଏତେ ଅଧିକ ହସିପାରିଲା, ତାଙ୍କ ଆମୋଦ ରସକୁ ଆହୁରି ଅଧିକ ଚପ୍‌କେଇଲା, ଏବଂ ସେ ଜମିଜମାଗତ ଗୁରୁତ୍ୱପୂର୍ଣ୍ଣ ଆଲୋଚନାରୁ ଓହରିଯାଇ ଦ୍ରବ୍ୟ ଆଡ଼କୁ ଗଲେ ପଛକୁ । ବସ୍ତୁତଃ ଅତୀତର ସ୍ମୃତି ଆଡ଼କୁ ।

…ଏମାନଙ୍କୁ ମୁଁ ନ ଜାଣିଥିଲେ ନାହିଁ, ତଥାପି ଏମାନେ ମୋର ଆତ୍ମୀୟ । ଖାଲି ସାଧାରଣ ଅର୍ଥରେ ନୁହେଁ, ନିରବଚ୍ଛିନ୍ନ ଅନୁଭୂତିର ଅର୍ଥରେ,

କାହିଁକନା କେଉଁ ପିଲାଦିନରୁ ମୋର ସମ୍ପର୍କ ରହିଛି ସ୍ମୃତିଙ୍କ ପୂର୍ବଜ ଅବା ସ୍ମୃତିଙ୍କ ପିଲାଦିନ ସାଙ୍ଗରେ ।

ଯେଉଁ ପିଲାଦିନେ ଯେତେକ ମାଆମାଉସୀ ମୋତେ ପାଖରେ ବସେଇ କେତେ କ'ଣ ଖୁଆଉଥିଲେ । ନାଲିଚଅ ମୋଟା ଭାତ, ସଦ୍ୟମେଞ୍ଚ ଘିଅରେ ସରସର, ତହିଁକୁ ବଡ଼ଭଜା, ଶାଗୁଆଡ଼ ଭୁଣ । ଦେହରୁ ଦେହରୁ କେତେ କିସମର ବାସ୍ନା, ତେଲ ହଳଦୀର, ଚୂଆଚନ୍ଦନର, ପାନ ମସଲାର । ବେଳେବେଳେ ମନେ ହେଉଥିଲା ଖାଇବା ଛାଡ଼ି ଦେଇ ସେଇ ଦେହରେ ମୁଣ୍ଡଗୁଞ୍ଜି ଦେବାକୁ, ସେଥିରେ ବୋଧହୁଏ ବେଶି ସୁଆଦ ।

ଯେଉଁ ଅତୀତରେ ଜେଜେବାପା ବୋଲି ଜଣେ ପ୍ରାଣୀ ଥିଲେ ଯେ ମୋତେ ଗୋପକୃଷ୍ଣ ବୋଲି ଡାକୁଥିଲେ, ମୋ ଦେହରେ (ତଥା ତାଙ୍କ ଦେହରେ) ଶକ୍ତି ଆଣିବା ପାଇଁ ଭଜା ବାଦାମରୁ ଚୋପା ଛଡ଼େଇ ବଢ଼େଇ ଦେଉଥିଲେ ମୋ ପାଟିକୁ, ଗୋଟିକ ପରେ ଗୋଟିଏ ।

ମୁଁ ଖୁଡ଼ୁବଡ଼ବାପାଙ୍କ କି ଆଉ କେଉଁ ବଡ଼ବାପାଙ୍କ କାନ୍ଧରେ ବସି ବୁଲୁଥିଲି ଗାଆଁ ଯାକ । ଗାଆଁର ମହଲରେ, ଗାଆଁର ଜଙ୍ଗଲରେ ଯେତେକ ତାଳ, ନଡ଼ିଆ, ଆମ୍ବ, ପଣସର ଫୁଲକୁ ପାଚିଲା ଛୁଇଁ ଛୁଇଁ, ଶୁଙ୍ଘି ଶୁଙ୍ଘି । ପୁଣି କାନ୍ଧରୁ ଓହ୍ଲେଇ ଡିଆଁଟାଏ ମାରି ପୋଖରୀ କୂଳକୁ । କାହିଁକନା ପୋଖରୀ କୂଳରେ ଛୁଇଁ, ପୋଖରୀ ମଝିରେ କଇଁ !

ଗୋଟାଏ ପୁରୁଣା ପାଲିଙ୍କି ଝୁଲୁଥିଲା ଦାଣ୍ଡପିଣ୍ଡାରେ । ତା' ପଛଆଡ଼ ଅଦୃଶ୍ୟ । ସେଇ ଆଡ଼ୁଆଳରେ ମୁଁ ତାକୁ ଛୁଇଁକି କାବୁଡ଼ି ଧରିଲି, ସେ ବି କାବୁଡ଼ି ଧରିଲା ମୋତେ, ଗୁଡାକୁ ଗୁଡା, ଖବାକୁ ଫୁଙ୍ଗୁଲା, ତହିଁଙ୍କ ବୟସ ଛଅ କି ସାତ । ଦେହର ବାସ୍ନା କ'ଣ ଏତେ ଧୂଳିଆ, ନା ଇଏ ଧୂଳିଧୂସର ପାଲିଙ୍କିର ଗନ୍ଧ ?...

ଆଜିକା ସହରର ଆଡ଼ୁଆଳରେ ସେ ଯେଉଁ ଅତୀତକୁ କାବୁଡ଼ି ଧରିଥିଲେ, ବର୍ତ୍ତମାନ ଗୋପାଳବାବୁ ତା'ର ଅନୁଭବକୁ ମନ ପୂରେଇ ପାଇବାକୁ ଚାହୁଁଥିଲେ । ସତେକି ପାଗଯୋଗ ବେଶି ଅନୁକୂଳ ଏଇକ୍ଷଣି । ଏଣେ ସନ୍ଧ୍ୟା ନଇଁ ଆସୁଥିଲା ପଦ୍ମପୁର ଉପରକୁ ।

"ଓଲଟି ଯାନ ସାଆନ୍ତେ ।"

(ଲୋକଟି କିଏ ? କୁଟୁମ୍ବର କେହି ହୋଇ ନଥିବ ନିଶ୍ଚୟ । ହୁଏତ ମୂଲିଆ କି ଚାକର ଶ୍ରେଣୀସ୍ଥ । ମୁଁ ତଥାପି ଯାନ ହେଲେ ହେଲି ତା' ହିସାବରେ, କିନ୍ତୁ ସାଆନ୍ତ

ସମ୍ବୋଧନଟା ଉଚିତ ନୁହେଁ । ସାମନ୍ତ ମନୋବୃତ୍ତି । ହେଲେ ତା'ଙ୍କୁ କିଛି କହିହେବ ନାହିଁ । ମାଟିରୁ ଉଠିଛି ଏଇ ଆନୁଗତ୍ୟ, ତା'କୁ ସହଜେ ଉପାଡ଼ି ଦେଇ ହେବ ନାହିଁ...)

ମାଇପିଟିଏ ଅର ଦାଣ ବଣରେ ଚାଲୁଥିଲା । ତଥାପି ସେ ଲମ୍ବା ଓଢ଼ଣାଟାଏ ଟାଣି ଦେଲା ଗୋପାଳବାବୁଙ୍କୁ ଦେଖି ।

(ତା' ମାନେ ମୁଁ ତା'ର ଦେଢ଼ଶୁର ସ୍ଥାନୀୟ । ଏତେଗୁଡ଼ାଏ ଲାଜ ଭଲ ନୁହେଁ ଆଜିକାଲିକା ଯୁଗରେ । କିନ୍ତୁ ଆତ୍ମୀୟତା ବୋଧର ଉତ୍ତର ନାହିଁ ...)

ବିପରୀତ ଦିଗରୁ ଆସୁଥିବା ଆଉ ଜଣେ ଲୋକ କେବଳ ଟିକିଏ ମୁଣ୍ଡ ଢୁଙ୍କାଇଲା ଓ ହସିଲା ତାଙ୍କ ଆଡ଼କୁ ଚାହିଁ । ଧୋଡି ପଞ୍ଜାବି ପିନ୍ଧିଥିଲା ।

(ଅବଶ୍ୟ ଇଏ ବି ଅଚିହ୍ନା । ହେଲେ ଇଏ ବି ଆତ୍ମୀୟ । ଖାଲି ମୁଁ ବି ଧୋବଧାଉଳିଆ ତୁ ବି ଧୋବଧାଉଳିଆ, ସେ ଅର୍ଥରେ ନୁହେଁ । ଏଭଳି ଆତ୍ମୀୟତା ଉତ୍କୃଷ୍ଟ ସଭ୍ୟତାର ଲକ୍ଷଣ, ଯାହା କେବଳ ଆମ ଗ୍ରାମାଞ୍ଚଳରେ ଦେଖିବାକୁ ମିଳେ । ବିଦେଶରେ ଅଜଣା ଅଚିହ୍ନା ଲୋକ ବି ଯେମିତି ପାର୍କରେ କି ରାସ୍ତାରେ ମୁହାଁମୁହିଁ ହେଲେ 'ହାଏ' ବୋଲି କୁହନ୍ତି, ହସିଦିଅନ୍ତି ଟିକିଏ...)

ଗୋପାଳବାବୁ ଆଶ୍ୱସ୍ତ ହେଲେ । ଏବଂ ଭାବିଲେ ଯେ ନାଳିବନ୍ଧର ଏଇ ଯତ୍‌ସାମାନ୍ୟ ଟ୍ରାଫିକ୍, ଇଏ ମଧ୍ୟ ସୂଚେଇଦେଲା ଯେ ତାଙ୍କ ବିଚାର ଖାମ୍‌ଖିଆଲ୍ ନୁହେଁ । ଏମାନେ ବି ଆସିଥିଲେ ତାଙ୍କ ପ୍ରସ୍ତାବ, ପ୍ରସ୍ତାବ ନୁହେଁ ନିଷ୍ପତ୍ତିକୁ ଅନୁମୋଦନ କରିବା ପାଇଁ । ବସ୍ତୁତଃ ଏବଂ ବିଶେଷତଃ ଏଇ ଆତ୍ମୀୟତା ଜନିତ ଗୋଟାଏ ଆବେଶ, ପରିବେଶ, ଉର୍ଦ୍ଦୁରେ ଯାହାକୁ କହନ୍ତି 'ମାହୋଲ୍', ଇଂରେଜୀରେ ଆଟ୍‌ମସ୍‌ଫିଅର୍, ନୁହେଁ କି ?

ତା'ଛଡ଼ା ଏଭଳି ହାଲୁକା, ଓସାରିଆ, ହେଲେ ନାଡ଼ଲଗା ଆବେଶରେ ଆବେଗ ନାହିଁ ବୋଲି କିଏ କହିଲା ? ଅଛି, ହେଲେ ଯେଥିରେ ତାତି ନାହିଁ କି ଝାଳ ନାହିଁ କି— ।...କିଓ ମୋ ଧୂଳିଧୂସର ଦେହରୁ କୋଉ ଝାଳ ବହୁଥିଲା କି, ମୁଁ ଯେତେବେଳେ ଚାନ୍ଦିଙ୍କୁ କୁଣ୍ଢେଇ ଧରିଥିଲି ?...ଗୋପାଳବାବୁ ତାଙ୍କର ଏଇ ବଙ୍କା-ଚତୁର ଟୀପ୍‌ପଣୀକୁ ନେଇ ଏମିତି ଖୁସିଟାଏ ହେଲେ ଯେ ସେ ସଶବ୍ଦରେ ନହସି ରହି ପାରିଲେ ନାହିଁ ।

ହେଲେ କ୍ଷଣକ ପାଇଁ ତାଙ୍କର ମନେ ହେଲା ଯେ ତେଇଁ ତେଇଁ ଚାଲୁଥିବା ଲମ୍ବାଲିଙ୍କି ଚଢ଼େଇଟା ଅଟକି ଯାଇଛି ତାଙ୍କ ମୁହଁକୁ ଦେଖିବା ପାଇଁ । ସତେକି ଭାବୁଛି ଯେ ତାଙ୍କ ସାହସ କିଛି କମ୍ ନୁହେଁ !

…ଅରେ, କଅଣ ଭୁଲ୍ କଲି ମୋ ସାହସ ? କ'ଣ ଭାବୁଛ ଯେ ମୁଁ ମୋ ସ୍ବତନ୍ତ୍ରତାକୁ ବାଧ କରୁଛି ମିଛ କହିବାକୁ ? କଳ୍ପନାରୁ କି ମହାପାତ୍ର ନୀଳମଣି ସାହୁଙ୍କର 'ଅଭିଶପ୍ତ ଗନ୍ଧର୍ବ'ରୁ କିଛି ମିଶେଇ ଦେଲି ତା'ସାଙ୍ଗରେ ? ଯେନତେନ-ପ୍ରକାରେଣ ମୋର ଏଇ ନିଜସନ୍ତର ଭାଗ୍ୟ ବଢ଼େଇବା ପାଇଁ ?

ବେଶ୍ କରିଛି । ଅଲୌକିକ ମିଛକୁ ଆବୁରି କରିବା ଟିଏ ନହେଲେ ମୁଁ ମୋ ନିଜସନ୍ତକୁ ପାଇବି ନାହିଁ । ଆଉ ବେଳ ନାହିଁ…

କ୍ରମଶଃ ସନ୍ଧ୍ୟା ଘନେଇ ଆସିଲା ପଦ୍ମପୁରରେ । ବିଜୁଳି ଆଲୁଅ ଜଳିଲା ନାହିଁ ରାସ୍ତାରେ କି କାହାରି ଘର ଅଗଣାରେ । ଇଏ ସେମିତିକା ଗାଆଁ ନୁହେଁ ଯାହାର ବିଦ୍ୟୁତିକରଣ ଆବଶ୍ୟକ ଆସନ୍ନା ନିର୍ବାଚନ ପୂର୍ବରୁ । ଆଜିକା ଆକାଶରେ ଜହ୍ନ ବି ଉଇଁବାର ନାହିଁ ଏଇ ସନ୍ଧ୍ୟାବେଳୁ । ତେଣୁ ଅନ୍ଧାର ଲେପି ହୋଇଗଲା ତା'ର ଖେତବାଡ଼ି, ଗଛପତର ଓ ପ୍ରାଣୀମାନଙ୍କ ଉପରେ । ଏବଂ ଜଣାପଡ଼ିଲା ନାହିଁ ଯେ କେତେବେଳଯାଏଁ ଗୋପାଳବାବୁ ତାଙ୍କ ହଠାତ୍ ହସି ଉଠିଥିବା ମୁହଁକୁ ସେଇ ଚେହେରାରେ ଧରି ରଖି ପାରିଲେ । ତେବେ ସେ ନିଜକୁ କହିଲେ ଯେ ଏଇ ଭଲ । ନିଜସନ୍ତର ଯଥାଯୋଗ୍ୟ ପ୍ରତୀକ । ସନ୍ଧ୍ୟା ପରେ ପରେ ଅନ୍ଧାର, ଖାଲି ଅନ୍ଧାର, ଯେଉଁଥିରେ ପୂର୍ବାପର ମିଶିଯାଇ ହେବ, ନିଜକୁ ଲୁଚେଇ ଦେଇ ହେବ · ହେଇଆ ତ ମୁଁ ଚାହେଁ ।

କାରଣ କ'ଣ ଚାହେଁ, ତା'ର ଗୋଟାଏ ନିଜସନ୍ତ ଦରକାର କି ନାହିଁ ଏବଂ ସେ ତା'କୁ କେଉଁଠି ବସେଇବ, ସେଇ ଜାଣେ । ମୁଁ ତା'ର ଠିକା ନେଇ ନାହିଁ । ପିଲାମାନଙ୍କ କଥା ଛାଡ଼, ସେମାନେ ତ କେବେଠୁଁ ବଡ଼ ହୋଇଗଲେଣି, ଅଲଗା ହୋଇଗଲେଣି ।

ଗୋପାଳବାବୁଙ୍କୁ ହସ ମାଡ଼ିଲା ଯେ ଯଦିନେ କେବେ ଜୀବନର ଅଧାବାଟ ନ ସରୁଣୁ ସେ ଭାବୁଥିଲେ ଯେ ମୋତେ ଲୋକେ ଚିହ୍ନନ୍ତୁ । ଯେ ମୁଁ ଗୋଟାଏ ବ୍ୟକ୍ତି । ମୁଁ ବି ଜଣେ, ଅଦ୍ୱିତୀୟ । ବୋମା କି ବଜ୍ର ମୋତେ ଦେଖିସାରି ଚିହ୍ନିଟ କରି ମାରିବା ଉଚିତ ! କିନ୍ତୁ ବର୍ତ୍ତମାନ ମୁଁ ଚାହେଁ ମୁଁ ଖସିଯିବି ଚୁପ୍‌କିନା, କେହି ଦେଖିବେ ନାହିଁ, କେହି ଜାଣିବେ ନାହିଁ । ହେଲେ ଗୋଟାଏ ପ୍ରୀତିକର ପରିବେଶ ଭିତରେ, ଆତ୍ମୀୟତାର ଘେର ଭିତରେ, ଯେଉଁଠି ସ୍ମୃତି ନାହିଁ, ଅଛି ତା'ର ମଧୁରିଆ ଭାବ, କଳା ଓ କଳ୍ପନା । ଦେହ ଅଛି, ହେଲେ ତା'ର ଝାଳ ନାହିଁ, ଖାଲି ଗୋଟାଏ ଧୂଳିସୂହର ବାସ୍ନା…

( କିଏ କହୁଥିଲା ଚାଳିଶର ଗୁଡ଼ାଏ ପିଲା, ସ୍ୱାମୀ ମରିଗଲେଣି, ବଡ଼ କଷ୍ଟରେ ଅଛି ବିଚାରୀ । ମାରି ଗୋଲି, ସେ ସ୍ତ୍ରୀଲୋକଟାକୁ ମୁଁ ଚିହ୍ନେ ନାହିଁ… )

ଗୋପାଳବାବୁ ଖୋଳିବାକୁ ଲାଗିଲେ । ମନେ ହେଲା ସେ ଜାଣନ୍ତି ନାହିଁ କି ଜାଣିବାକୁ ଚାହାନ୍ତି ନାହିଁ ସେ କୁଆଡ଼େ ଯାଉଛନ୍ତି । କାରଣ ବଳେବଳେ ତାଙ୍କ ପାଦ ବାଟ କଢ଼େଇ ନେବ···ଘରକୁ । ସନ୍ଧ୍ୟାର କାମ ହେଉଛି ସେଇଆ ।

ଏହିପରି ଭାବରେ ସେ ନାଳବନ୍ଧରୁ ଖସିଆସିଲେ ଗାଆଁ ମୁଣ୍ଡକୁ । ଯେଉଁଠି ଗଛବୁରୁଛ ପାତଳା ହୋଇ ଯାଇଛି । ଗୋଟାଏ ପଳାସ୍ତ୍ରଗୀଜର ସାନ ଦେଉଳ ତଥାପି ବାରି ହୋଇଯାଉଛି ଅନ୍ଧାରରେ । ତା'ଭିତରେ ଠାକୁରାଣୀ ଅଛନ୍ତି । ଏବଂ ତା' ଚାରିପାଖରେ ଚକଡ଼ାଏ ଡ଼ିପ ଭୂଇଁ । ସେଇଠୁଁ ତାଙ୍କୁ ଖୋଉଁକାନ ଲାଗିଲା ।

···ବାପା ଏଇଠିକି ଆସିଥିଲେ ପୋଡ଼ା ହେବା ପାଇଁ । ମୋତେ ଓ ଯେତେକ ବନ୍ଧୁବାନ୍ଧବଙ୍କୁ ବାରମ୍ବାର ମନେ ପକେଇ ଦେଇଥିଲେ ଯେ ଭୁଲିବ ନାହିଁ, ମରିଗଲା ପରେ ମୋତେ ଆମ ଗାଆଁକୁ ନେଇଯିବ, ସେଇଠି ପୋଡ଼ିବ । ତେଣୁ ଯେତେ ଅସୁବିଧା ହେଉ ପଛେ ଆମେ ତାଙ୍କୁ ସେଇଦିନ ନେଇ ଆସିଲୁ ଗାଆଁକୁ, ଏଇ ଠାକୁରାଣୀ ପଡ଼ିଆକୁ । ସଞ୍ଜ ପାରି ହୋଇଗଲାଣି ଘଡ଼ିରେ ହେଲା ।

ଏବଂ ତାଙ୍କୁ ଜଳେଇଲୁ । ବର୍ଷାଦିନଆ କାଠଗୁଡ଼ା ଜଳୁ ନଥିଲା ଭଲ କରି, ତଥାପି ତାକୁ ଖୋଞ୍ଚିଖାଞ୍ଚି ସଜାଡ଼ୁଥିଲୁ, ନିଆଁକୁ ତେଜୁଥିଲୁ ।

କାହାକୁ ଖୋଞ୍ଚିବାକୁ ପଡ଼ିଲା—କାଠକୁ, ନା ଦେହକୁ ? ହଁ ହଁ, ଦେହକୁ, ମୋ ବାପାଙ୍କ ଦେହକୁ । ଯେଉଁ ଦେହ ଦିନେ ଇଜିଚେୟାରରେ ବସି ରାଏ ଦେଉଥିଲା । ଲମ୍ବା ଲମ୍ବା ପାହୁଣ୍ଡ ପକେଇ ଚାଲୁଥିଲା । ଛଡ଼ି ହଲଉଥିଲା, ହୁକୁମ୍ ଦେଉଥିଲା ଏବଂ ଜବର୍ ଗେହ୍ଲା ବି କରୁଥିଲା । ସେଇ ଦେହ, ସେଇ ବାପା ।

ଜଳଜଳ ହୋଇ ଦିଶିଯାଉଛି ସେଇ ଜଳିବାର ଲୀଳା । ମୋ ବାପାଙ୍କୁ ନେଇ ।

ସତେ କି ବାପା ତାଙ୍କ ଦେହଟାକୁ ତ୍ୟାଗ କଲେ । ଶାନ୍ତି ଦେଲା ପରି । ଜାଣିଶୁଣି । ନହେଲେ ସେ କାହିଁକି ଜିଦ କରି ଆସିଥାଆନ୍ତେ ଏଠିକି ? ଆସିଲାରୁ ଏତେ ଅବସ୍ଥା ହେବାକୁ ପଡ଼ିଲା । ସେମାନେ ଦେହଟାକୁ ଉଠେଇଲେ, ବସେଇଲେ, ଏପାଖକୁ ମୁହଁ କରେଇଲେ, ପୁଣି ସେପାଖକୁ, କ'ଣ ସବୁ ମନ୍ତ୍ର ପଢ଼ିଲେ ତା'ଉପରେ ହାତ ପକେଇ । ଏଣେ ଦେହଟା ଖାଲି ଟଳଟଳ ହେଉଥାଏ, ମୁଣ୍ଡଟା ନଡ଼ବଡ଼ ହେଉଥାଏ···ଆଉ ତା'ର ହାତମାନକୁ ଟହେଲେଇ ଦେଉଥାଏ ପେଟ୍ରୋମାକ୍ସ୍ ଆଲୁଅର ହାଲୁକା, ଅନ୍ଧାର ଭିତରେ ଖାଲି ତାକୁଇ ଦେଖେଇଲା ପରି । ତା'ପରେ ତାକୁ ଶୁଆଇ ଦିଅ ଚିତା ଉପରେ । ହେଲେ ଅଦରଖା ଦେହଟା ଜଳୁ ନାହିଁ ଭଲ କରି,

ତା'କୁ ଖୋଞ୍ଚ, ଆହୁରି ଖୋଞ୍ଚ ··ଯେମିତି କି ଦେହରସ ପିଚକି ଉଠିବ, କାଆଁରେ ଚଡ଼ଚଡ଼ ହେବ, ଆଉ ହାଡ଼ ଫୁଟିବ ଥାଇ ଥାଇ, ସେଥିରେ ଡାଲି ଦେଲ ପରି···

ଷ୍ଟୁପିଡ୍ ଇଡିଅଟ୍! ଗୋପାଳବାବୁ ଚିତ୍କାର କରି ଉଠିଲେ ମନେ ମନେ। ଏବଂ କହିଲେ ମୁଁ ଏଡ଼େ ବୋକା ନୁହେଁ ବାପାଙ୍କ ପରି। ହୋଇପାରେ ଇଏ ମୋ ନିଜସନ୍ତ୍ରି, ତା' ବୋଲି ମୁଁ ଏଇଠି ପୋଡା ହେବ ନାହିଁ। ମୋ ମଲି ଦେହଟାକୁ ଦେଖେଇ ହେବ ନାହିଁ!

ଗୋପାଳବାବୁ! ତା'ହେଲେ କୋଉଠିକି ଯିବ ବୋଲି ଭାବୁଛ? ଯମୁନା-କୂଳ,କେଓଡ଼ାତଳି, ସତୀଚଉରା ନା ସ୍ୱର୍ଗଦ୍ୱାର? ନା ଦେଶବିଦେଶର କୋଉ ଇଂମାଟୋରିଅମ୍, ଯେଉଁଠି ଚିତା ଜଳେଇବାର ଗଣ୍ଡଗୋଳ ନାହିଁ? ବାବୁ, ଯୋଉଠିକି ଯାଅ ପଛେ, ତମ ଦେହଟାକୁ ଲୁଚେଇ ପାରିବ ନାହିଁ। ତା'ର ନଡ଼ବଡ଼ିଆ କୁରୂପକୁ। ଯେଉଁଥିରେ ସାରା ଜୀବନର ଯେତେକ ଝାଳ, ଲୁହ, ଲହୁ, ସ୍ୱାର୍ଥ, ଆଉ କେତେ କ'ଣ, ଇନ୍ଦ୍ରିୟ ଆବେଗର ଯେତେଲି ଉତ୍କ୍ଷିପ୍ତ ଅଶାନ୍ତ ନିର୍ଯ୍ୟାସ ଜମାଟ ବାନ୍ଧି ଯାଇଛି। କଷ୍ଟ ପାଉଛି। ଆଉ ତୁମକୁ ନେହୁରି ହେଉଛି, କହୁଛି ମୋତେ ଶାନ୍ତି ଦିଅ, ଶାନ୍ତ ଦିଅ!

ସୁଖେ ସୁଖେ ଧୀରେ ସୁସ୍ଥେ ଜଳିଯାଇ ହେବ ନାହିଁ। ସ୍ମୃତିରୁ ବିସ୍ମୃତିକୁ, ସତ୍ତ୍ୱରୁ ରିକ୍ତକୁ। କାହିଁକନା ଏଇ ସ୍ଥୂଳ ଅସନା ଦେହଟା ଛାଡ଼ିବ ନାହିଁ ତୁମକୁ। ବାଟ ଓଗାଳିବ। କହିବ ଆଗେ ମୋତେ ଟେକି ଧର। ଲୁଚେଇ ପକେଇଥିବା, ଫିଙ୍ଗି ଦେଇଥିବା, ଭୁଲି ଯାଇଥିବା କି ହେଲେଇ ଦେଇଥିବା ଲକ୍ଷେ ସ୍ମୃତିର ଜମାନତ୍, ଏଇ ପାପବୁଜୁଳିଟାକୁ ଟୋକି ଧରି ଆକାଶକୁ। ଦେଖେଇ ଦିଅ ତୁମ ମାଲିକକୁ। ତାପରେ ଯୋଉ କଥା।

ନା, ମୁଁ ମୃତର ସନ୍ତାନ ନୁହେଁ ଅମୃତର···

ହେଲେ ଆଗ ଏଇ ଦେହଟାକୁ···

ଗୋପାଳବାବୁ ଯଥାଶୀଘ୍ର ପଳେଇ ଆସିଲେ ସେଠୁ। ଏବଂ ଗାଆଁ ଭିତରକୁ ଗଲେ। ଯେଉଁଠି କେତେ ଘରଆଲୁଅ ଜୁଳୁଜୁଳୁ ହେଲାଣି।···ସେଠି ମୋର ବୋଲି ଗୋଟାଏ ଘର ଅଛି ଯାହାକୁ ବାପା ତୋଳିଥିଲେ, ମାନେ ଋଣପୁଟୁଣିଭ ଗୁଳାଆଟାକୁ ମରାମତ କରିଥିଲେ ଭବିଷ୍ୟତ ପାଇଁ। କହିଲେ, ମୁଁ ଯିନା ରହିଲି ନାହିଁ ଗାଆଁରେ, ଗୋପାଳ ବି ରହିଲା ନାହିଁ; ହେଲେ ଘରଖଣ୍ଡେ ଥିବା ଦରକାର ଦେଠି। ଘର-ଖଣ୍ଡେ, ଅଉ ଜମି କେଇଗୁଣ୍ଠ···

କିନ୍ତୁ ଗୋପାଳବାବୁ ତା' ଭିତରକୁ ଗଲେ ନାହିଁ । ଯଦିଓ ନଟିଆ ନାମକ ଜଣେ ମୂଲିଆ ସେଠି ମହଜୁଦ୍ ଥିଲା ତାଙ୍କ ପାଇଁ । ମସିଣାଟିଏ ପକେଇ, ଲଣ୍ଠନଟିଏ ଜଳେଇ । ସେ ଭୂସ୍ କିନା ଆଉ ଗୋଟିଏ ଘର ଭିତରକୁ ପଶିଗଲେ, ସେ ଯାହାର ହେଉ ପଛେ । କହିଲେ—ଏଠି ତ ସମସ୍ତେ ମୋର, ସମସ୍ତେ ମୋ ନିଜର, କାହିଁକି ଯିବି ନାହିଁ ଆଉ କାହା ପାଖକୁ, ଦି'ପଦ କଥା ହେବାପାଇଁ ?

ସେଠି ଯାହାକୁ ଦେଖିଲେ ପ୍ରଥମେ, ସେ ହେଉଛି ନରଭିରଯା । ସେ ତାଙ୍କୁ ଡାକି ଆଣିଲା ଘର ଭିତରକୁ । ଏବଂ ତାଙ୍କ ଧଇଁସଇଁ ଭାବକୁ ଯାଷ୍ଟାମ କଲା ପରି ବସେଇଲା ଗୋଟାଏ ଖଟ ଉପରେ । ସେଇଠୁ ହସିଲା ତା' ପଣତ ପୋଷ୍ତ୍ର ହସ, ଓ ପଚାରିଲା···

"ଦାଦା, କଅଣ ଜମି ପାଖକୁ ଯାଇଥିଲେ କି ? ଗୃହ ଆରମ୍ଭ ହୋଇଗଲାଣି ଆଜିଠୁଁ ?"

ଗୋପାଳବାବୁ ଜାଣି ନଥିଲେ ଯେ ନରଭିରଯା ଆଡ଼ପାଗଳୀ । ଯେଉଁଥି-ପାଇଁ କେହି କିଛି କୁହନ୍ତି ନାହିଁ ତାକୁ । କହିଲେ ସେ ଦୁନିଆଁ କଟାସମ୍ପା ଆରମ୍ଭ କରିଦିଏ । ହଉବାକ୍ ଗୋପାଳବାବୁ ମଧ୍ୟ ପଦୁଟିଏ ଉତ୍ତର ଦେଇ ନ ଥିଲେ । ହେଲେ ତା' ସ୍ୱଭାବ ଚରିତର ପରିଚୟ ପାଇଥିଲେ ତାଙ୍କର ଯନ୍ତ୍ରଣା ଏତେ ଦୁଃସହ ହୋଇ ନଥାଆନ୍ତା ବୋଧହୁଏ । କାରଣ ସେ ଭାବ ନେଇ ପାରିଥାଆନ୍ତେ ଯେ ଏଇ ଅଚହ୍ନା ଏବଂ ଅସାଧାରଣ ନାସ୍ତିର ବିଦ୍ରୂପ ବ୍ୟକ୍ତିଗତ ନୁହେଁ । ଇଏ ମଧ୍ୟ ଶାଶ୍ୱତ । ସବୁ ପାଗଳୀଙ୍କର । ଅଥବା ନିସ୍ପୃହର ।

# ନିଜସଙ୍ଗୀ

ଧନ୍ୟ କହିବ ଆମର ଏଇ ଗୋପାଳବାବୁଙ୍କୁ ! ଲୋକଟା ଜଣେ ସର୍ବସାଧାରଣ ଗୃହସ୍ଥ, ଅଳ୍ପବହୁତ ପାଠ ପଢ଼ିଛି, ନେତା ନୁହେଁ କି ଅଭିନେତା, କ'ଣ ଗୋଟାଏ ଛୋଟିଆ ମୋଟିଆ, ହେଲେ ସମ୍ମାନାସ୍ପଦ (ଯାହା ତା'ର ବିଶ୍ୱାସ), ଚାକିରି କରେ— ତେଣୁ ପ୍ରଶ୍ନ ଉଠୁଛି ଯେ ଏଭଳି ଏକ ମଧ୍ୟବିତ୍ତ ମଧ୍ୟବର୍ଗୀୟ ଲୋକ ଏତେ ଭାବେ କାହିଁକି ମଣିଷଦଶାକୁ ନେଇ, ଯେଉଁ ଭାବନାକୁ ଏକାଧାରରେ ଜଟିଳ ଏବଂ ଗମ୍ଭୀର କୁହାଯିବ ? ସତେକି ସେ ଗୋଟାଏ ମହା ଦାର୍ଶନିକ !

ତା'ଙ୍କୁ ଆପଣ ପ୍ରଥମେ ଭେଟିଥିବେ ମୋର 'ବୋମା ପଡ଼ିବ !' ନାମକ ଗପରେ, ଯେଉଁଠି ଯୁଦ୍ଧବେଳର ବ୍ଲାକ୍-ଆଉଟ୍ ବେଳେ ସେ ଏମିତି ଭାବିବାକୁ ଲାଗିଲେ ମଣିଷର ତଥାକଥିତ ସ୍ୱତନ୍ତ୍ର ସତ୍ତାକୁ ନେଇ, ଏବଂ ଜିଦ୍ଧ କରି ବସିଲେ ଯେ ସେ କେବଳ ଗୋଟାଏ ସଂଖ୍ୟା ହୋଇ ମରିବାକୁ ପ୍ରସ୍ତୁତ ନୁହଁନ୍ତି । ଶତ୍ରୁପକ୍ଷର ବୋମା ତାଙ୍କୁ ଚିହ୍ନିବା ଓ ଚିହ୍ନେଇବା ଦରକାର, ତାଙ୍କର ବିଶିଷ୍ଟ ଭଲଗୁଣ ଅଥବା ମନ୍ଦଗୁଣକୁ ନେଇ । କାରଣ ସେ ଜଣେ ବ୍ୟକ୍ତି, ଏବଂ ତାଙ୍କର 'ବ୍ୟକ୍ତିତ୍ୱ' ଅଛି । ନହେଲେ ହ୍ୟାପ ଜନ୍ମ ହେଲି କାହିଁକି ଏଇ ପୃଥିବୀରେ ? ଏମିତି ସେ ଅଯଥାରେ ନିଜକୁ ବ୍ୟତିବ୍ୟସ୍ତ କରିପକାନ୍ତି, ନାନାଦି ତାତ୍ତ୍ୱିକ ପ୍ରଶ୍ନ ଓ ସେଥିର ସମ୍ଭାବ୍ୟ ଉତ୍ତରକୁ ଖିନ୍‌ଭିନ୍ କରି । ହେଲେ ମନେ ହେବ ଯେ ସେ କୋଉ ଗପର ନାୟକ ହୋଇପାରିବେ ନାହିଁ । କିଓ, ଘଟଣା-ବିହୀନ ତର୍କବିତର୍କକୁ କ'ଣ ଗପ କୁହାଯିବ ? କିନ୍ତୁ ମୁଁ ମାନିଲି ନାହିଁ । କହିଲି ରୁହନ୍ତୁ ଗୋପାଳବାବୁ, ମୁଁ ଆପଣଙ୍କର ଏଇ ଅଭିଳ ଓଗାଳ-ଉତାଳକୁ ଗଳ୍ପ ସାହିତ୍ୟର ସମ୍ମାନ ଦେବି । କହିଲି ନାହିଁ ଯେ ଏଇ କାରବାରରେ ମୋ ନିଜର ସ୍ୱାର୍ଥ ଅଛି । କାରଣ ଗଳ୍ପରେ ଯାହା କହିହେଲା ନାହିଁ,

ମାନେ ପୁରପୂର ଓ ଠିକଣା ଖବରେ ବୁଝେଇ ଦେଇ ହେବ ନାହିଁ, ତା'କୁ ଏଇ ବାଟରେ କହିହେବ ହୁଏତ, ଏବଂ ମୋତେ ଶାନ୍ତ ଲଗିବ । ପରେ ଏଇ ଲଢ଼େଇ ପାଳକୁ ଅଧିକ ବ୍ୟାପକ ଓ ବିଶ୍ୱାସନୀୟ କରିବା ଉଦ୍ଦେଶ୍ୟରେ ମୁଁ ବିକାଶବାବୁ ନାମକ ଜଣେ ଲେଖକ ବନ୍ଧୁଙ୍କୁ ଜୁଟେଇ ଦେଲି ତାଙ୍କ ସାଙ୍ଗରେ । ସେମାନଙ୍କୁ ନେଇ ରଚିତ ଏହି ପ୍ରକାର କେତୋଟି 'ଗପ'କୁ ମୁଁ ନିକଟରେ "ମୋର ତୁମେ" ନାମକ ଗୋଟିଏ ସଙ୍କଳନରେ ପ୍ରକାଶିତ କରିଛି । ସେଥିରେ ଦେଖିବେ ସେମାନେ କେମିତି ଉବୁଟୁବୁ ହେଉଛନ୍ତି ନାନାଦି ତାତ୍ତ୍ୱିକ ପ୍ରଶ୍ନକୁ ନେଇ, ଗୋଟାଏ ନାମମାତ୍ର ଗପର ଫର୍ମାକୁ ଆଶ୍ରା କରି, ଯଥା—ଅତୀତ ଓ ସ୍ମୃତି ଭିତରେ ସମ୍ପୂର୍ଣ୍ଣ ଏବଂ ବାସ୍ତବ ସମ୍ପର୍କ ରହିଛି କି ? ଯଦି ନଥାଏ ତା'ର ମୂଲ୍ୟ କଅଣ ଆମର ତଥାକଥିତ ବ୍ୟକ୍ତିତ୍ୱକୁ ଚହ୍ନେଇବା ଓ ଧରିରଖିବା ଦିଗରେ ? ଜୈବିକ ତଥା ମାନସିକ ସ୍ତରରେ ଏଇ ମଣିଷ ଜାତିଟା କ'ଣ ସତେ ଉପରକୁ ଉଠୁଛି ନା ତଳକୁ ଖସୁଛି ?...ଲେଖକ କ'ଣ ସ୍ୱଭାବତଃ ଜଣେ ଭଲ ମଣିଷ ହୋଇଥିବ ବୋଲି ଆଶା କରିବା ଉଚିତ ?...ମୋର ପରି ଆଉ ଜଣେ ମଣିଷ କ'ଣ କେବେହେଲେ ମୋର 'ତୁମେ' ହୋଇ ପାରିବ, ଯେଉଁଥିରେ ମୁଁ ପରିପୂରିତ, ତେଣୁ ମୁକ୍ତ ହୋଇ ପାରିବି ?...ଇତ୍ୟାଦି । କିନ୍ତୁ ଯେହେତୁ ସେ ଦିହିଁଙ୍କ ପାଖରେ ଦାର୍ଶନିକର ଦାମ୍ଭିକତା ନାହିଁ, କିମ୍ବା ସିଦ୍ଧିର ଉପଲବ୍ଧି, ସେମାନେ କେମିତି ଧନ୍ଦାଳି ହେଉଥିବେ, ଛଟପଟ ହେଉଥିବେ, ଏହିପ୍ରକାର ପ୍ରଶ୍ନ ଉଠେଇ, ତାହା ସହଜେ ଅନୁମେୟ ।

'ନିଜସତ୍ତା' ସେହିଭଳି ଗୋଟିଏ ଗପ, ଏବଂ ଏଠି ଗୋପାଳବାବୁ ସେମିତି ଗୋଟାଏ ବିଚିତ୍ର ପ୍ରଶ୍ନ ଉଠାଉଛନ୍ତି, ଯାହାର ପରିଣାମ ତାଙ୍କୁହିଁ ଭୋଗିବାକୁ ପଡ଼ିବ, ଆଉପାଗଳୀ ନରଭକ୍ଷୀ ତାଙ୍କୁ ଦେଖି ସରଗରେ ହସୁ, କି ଅଣ୍ଟା କଲି ପଡ଼ୁ । ଯେ ଖୁବ ଚିନ୍ତା ଚେଷ୍ଟା କଲେ କ'ଣ ମଣିଷ ତା' ନିଜସତ୍ତାର ଶାନ୍ତ ପ୍ରମ୍ତୁତ କରିପାରିବ ନାହିଁ ? କିଓ, ତମେ ତ କୋଉ ପଲ୍ଲୀଦନର ବସ୍ତୁତ ଗାଆଁକୁ ଆସିଥିଲ, ପୈତୃକ ଜମିଜମାର ପାଞ୍ଚଗୁଣ୍ଠିଆ ବାଦବିବାଦରେ ଟଣା ହୋଇ, ଆଉ ତମର ଖୁସି ହୋଇ ଫେରିଯିବା ଉଚିତ ଯେ ଜମିଟା ତମର ବୋଲି ସାବ୍ୟସ୍ତ

ହୋଇଗଲା, କିନ୍ତୁ ତମେ କାହିଁକି ହଠାତ୍ ଭାବି ବସିଲ, ଭୂତ ଧରିଲା ପରି, ଯେ ଏଇଟା ତମ ନିଜ ଗାଆଁ, ଏବଂ ଏଇଆକୁ ବୋଧହୁଏ ତମ ନିଜସ୍ୱତ୍ତର ଆଦର୍ଶ ଗୋଚର ଭାବରେ ଦଖଲ କରିନେଇ ହେବ ? କଅଣ ନା ଏଠିକାର ସ୍ନିଗ୍ଧତାଗୁଡ଼ାକ ଏତେ କଅଁଳ ଏବଂ ଝାପ୍‌ସା, ଯେ, ତା'ର ମାଧୁରିମାକୁ ଆହୁରି ନିଜର କରି ନେଇ ହେବ, ହୁଏତ ସେଥିରେ ଟିକିଏ କଳ୍ପନାର ରଙ୍ଗ ବୋଳି ଦେଇ ଏବଂ ତା'ରି ଆବେଶରେ ଆପ୍ଳୁତ କି ଆଚ୍ଛାଦିତ ହୋଇ ତମେ ଚମତ୍କାର ଭାବରେ ମିଶିଯାଇ ପାରିବ ତମର ଅନିବାର୍ଯ୍ୟ ସ୍ୱପ୍ନ ସାଙ୍ଗରେ । କେଉଁଠି ହେଲେ ଝୁଣ୍ଟିବ ନାହିଁ । କବି ଟି. ଏସ୍. ଇଲିଅଟ୍‌ଙ୍କ ଭାଷାରେ ଶେଷକୁ ଗୋଟାଏ ଧୂମ୍‌ଧଡ଼ାସ୍‌ର ଶବ୍ଦ (bang) ଶୁଣେଇବ କି ହାନ୍ନମାନିଆ କୁଁଇକୁଇଁ (whimper), ସେଭଳି ଉଦ୍‌ବିଗ୍ନତାର ପ୍ରଶ୍ନ ଉଠୁ ନାହିଁ, କାରଣ ତମେ ଲିଭିଯିବ ନାହିଁ, ଲିଭି ଲିଭି ଯିବ, କେଉଁ ଏକ ସୁନେଲି ସନ୍ତର ଅନ୍ୟତମ ରଙ୍ଗଟିଏ, ଧ୍ୱନିଟିଏ, ଭାବଟିଏ ହୋଇ । ଇମ୍ ! ରୋମାଣ୍ଟିକ୍ କ'ଣ କୋଉ ଗଛରେ ଫଳନ୍ତି ?

କିନ୍ତୁ ହାୟ, ଗୋପାଳବାବୁ ତମେ ସଚ୍ଚା ରୋମାଣ୍ଟିକ୍ ହୋଇପାରିବ ନାହିଁ । କାରଣ ତମେ ଗୋଟିଏ 'ଦାର୍ଶନିକ' ପରି ? ତମର କୁହୁଡ଼ିଆ କଳ୍ପନା କେତେ ସମୟ ଯାଏଁ ତିଷ୍ଠି ରହି ପାରିବ, ତମ ମନର ଜଟିଳ-ଗମ୍ଭୀର ତଥା ନିର୍ମମ ସୂର୍ଯ୍ୟା-ଲୋକକୁ ଅଟକେଇ ରଖି ?

ତେଣୁ ସେଦିନର ସନ୍ଧ୍ୟା ବହଳ ନହେଉଣୁ ତମେ ଝୁଣ୍ଟିଲ ତମ ନିଜସ୍ୱତ୍ତର ଗୋଚର ଭୂଇଁରେ । ଯେଉଁଠି ତମ ବାପା ପୋଡ଼ା ହୋଇଥିଲେ । ଏବଂ ବୁଝିଲ ଯେ ଦେହ ବୋଲି ଗୋଟାଏ ସ୍ଥୂଳ ଜିନିଷ ଅଛି, ଯାହା କେଉଁ ସୂର୍ଯ୍ୟାସ୍ତର ଅନ୍ୟତମ ରଙ୍ଗ କି ଧ୍ୱନି ହୋଇପାରିବ ନାହିଁ । କାରଣ ତମେ ଦେଖିବ ତମ ସଞ୍ଜ ବେଳକୁ, ଯେ ସେଥିରେ 'ସାରା ଜୀବନର ଯେତେକ ଝାଳ, ଲୁହ, ଲହୁ, ଈର୍ଷା, ଆଉ କେତେ କ'ଣ ଇନ୍ଦ୍ରିୟ ଆବେଗର ଉତ୍‌କ୍ଷିପ୍ତ ଅଶାନ୍ତ ନିର୍ଯ୍ୟାସ' ଜମାଟ ବାନ୍ଧି ହୋଇ ଯାଇଛି । ଆଉ ତମକୁ ବାନ୍ଧି ରଖିଛି । ଏବଂ ଛଟପଟେଇ ହେଉଛି । କହୁଛି ମୋ କଥା ଆଗେ ବୁଝ, ତା'ପରେ ତମେ ଯିବ କେଉଁ ସ୍ୱର୍ଗକୁ ସୁବର୍ଣ୍ଣ ରଥରେ ଚଢ଼ି !

କେଉଁ ଦେଶ୍ୱ ଭଲ ବୁଝିପାରିବ ନାହିଁ ଏଇ ଯନ୍ତ୍ରଣା କେମିତିକା. ଅନ୍ତତଃ ତା' ସନ୍ଧ୍ୟାବେଳକୁ ? ଏଇଆ କହୁଛ ନା ଗୋପାଳବାବୁ ? ଧନ୍ୟବାଦ, ବୁଝିଲିବାଲା ନିଶ୍ଚୟ ବୁଝିବ । ହୁଏତ ସେ ତା'ର ଏଇ ଯନ୍ତ୍ରଣାରୁ ରକ୍ଷାପାଇ ପାରିଥାଆନ୍ତା, ଯଦି ବେଳ ଥାଉଁ ଥାଉଁ ସେ ସ୍ୱାମୀଜୀଙ୍କ ଚମକପ୍ରଦ ନିର୍ଘୋଷ ଶୁଣିଥାଆନ୍ତା, ଶୁଣିଥାଆନ୍ତା ଏବଂ ତାକୁ ଅଙ୍ଗେ ଅଙ୍ଗେ ଅନୁଭବ କରିଥାଆନ୍ତା, ଅଙ୍ଗର ବିନାଶ ହେବା ଯାଏଁ, ଯେ—ମଣିଷର ଦେହ ଗୋଟାଏ ନିର୍ଘାତ୍ ମିଛକଥା !

ତେବେ ସନ୍ଧ୍ୟା ହେଲାଣି ବୋଲି ବେଳ ସରିଗଲାଣି ବୋଲି କିଏ କହିଲା ? ଏଇ ସାନ୍ତ୍ୱନା ବୋଧହୁଏ ସ୍ୱାମୀଜୀ ଶୁଣେଇ-ଥାଆନ୍ତେ ତମକୁ, ତମ କଲବଲ ଦେଖିଲେ । ଅନ୍ତତଃ ତାଙ୍କ ଗୁରୁ ପରମ କାରୁଣିକ ପରମହଂସ । ତେଣୁ ଆଶା ଅଛି, ତଥାପି ଅଛି ଗୋପାଳବାବୁ···

× × ଆଉ ଗୋଟିଏ ନିଜ କଥା କହିଦିଏ ମୋର ତ୍ରୟୋଦଶ ଗଳ୍ପ ସଙ୍କଳନର ଏଇ ଶୀର୍ଷକ ଗପଟିକୁ ନେଇ । ସାରାଜୀବନଟା ଦେଶବିଦେଶର ଶ୍ରେଷ୍ଠ ସହର, ବଡ଼ସହର ଓ ମହାନଗରରେ ବିତେଇ ସାରିଲା ପରେ ମୋର କ'ଣ ଘୋଷଣା କରିବାକୁ ମନ ହୋଇ ନଥାଆନ୍ତା ଯେ ମୋର ବି ଗୋଟାଏ ଗାଆଁ ଅଛି ? ହେଲେ ଏବେ ତାକୁ ଖାଲି ଅନୁଭବ କରି ହେଉଛି, ଧରିହେଉ ନାହିଁ । କିନ୍ତୁ ସେଇ ଅନୁଭବଟିକ ମୋତେ ଭଲ ଲାଗୁଛି, ଏବଂ ଏକ ଅପୂର୍ବ ଆଶ୍ୱାସନା ଆଣି ଦେଉଛି, ଏତିକ କ'ଣ କହିବାକୁ ମନା ?



# ଚଘର

ଖୋଲାମୁକୁଳା ଗଳି ଭିତରେ ହଠାତ୍ ଗୋଟାଏ ଘେର । ଗୁଳିଆ ଘରଟାର ଦାଣ୍ଡପିଣ୍ଡା ଆଉ କାହାପର ଦିଶୁନାହିଁ । କାରଣ ତା'ର ଫାଳେ କଛଟା ଅଖା ଓ କଛଟା ଛିଣ୍ଡା ଗୁଦରରେ ଘେରା ହୋଇ ରହିଛି । ଅବଶ୍ୟ ଅଖାର ବହୁଳ ଛିଦ୍ର ଓ ଗୁଦରର ଏକାଧିକ ଆଖିବୁରୁଣିଆ କଣା ଭିତର ଦେଇ ଗଳିର ଅନେକ ଶବ୍ଦ ଶୁଭୁଥିବ ଏବଂ ବିଭିନ୍ନ ଗନ୍ଧ ପଶି ଆସୁଥିବ । ତେବେ ଘେର ଖଣ୍ଡିକ ଗଳିକୁ କୌଣସି-ମତେ ଉହାଡ଼ କରିଛି ବୋଲି କହିଲେ ଭୁଲ ହେବ ନାହିଁ ।

"କଅଣ ଏଇଟା ?"—ରଞ୍ଜନବାବୁ ପଚାରିଲେ । କାହାକୁ ପଚାରିଲେ ବୁଝାଗଲା ନାହିଁ । ଯାହାହେଉ କେହି ତା'ର ଉତ୍ତର ଦେଲେ ନାହିଁ ।

"ଶଳା, ଏଇଟା କ'ଣ ବେ ?"—ଏଥର ଗଣଗଣିଆ ଉଚ୍ଚ ଆଓ୍ୱାଜ୍‌ର ପ୍ରଶ୍ନ । ଛିଣ୍ଡା ଚପଲ୍ ଓ ମଇଳା ଫତେଇ-ପାଇଜାମା ସତ୍ତ୍ୱେ ପ୍ରଶ୍ନକର୍ତ୍ତାଙ୍କ ଠାଣି ହାତବନ୍ଧା ଘଣ୍ଟା ଓ ହାତରେ ଧରା ହୋଇଥିବା ସିଗାରେଟ୍ ଟିଣରୁ ଜଣାପଡ଼ୁଛି ଯେ ସେ ଉଚ୍ଚ ଶ୍ରେଣୀର ଲୋକ ।

ତଥାପି ଉତ୍ତର ମିଳିବାକୁ ନାହିଁ । କାରଣ ଗଳିମୁଣ୍ଡରେ ଥିବା ଜରାଜୀର୍ଣ୍ଣ 'ବାସନ୍ତୀ ନିବାସ'ର ଏଇ ଭଦ୍ରଲୋକ, ଯେ କେଜାଣି କେଉଁଠି ବାହାରେ ଥାଆନ୍ତି ଓ ମଝିରେ ମଝିରେ ଆସି ପହଞ୍ଚିଯାଆନ୍ତି ଏଠି, ତାଙ୍କୁ ଗଳିର ବାସିନ୍ଦାମାନେ ଅଳ୍ପବହୁତ ଡରନ୍ତି । କାହିଁକନା ତାଙ୍କ ଅଧିକାଂଶ ସମୟ ନିଶାରେ ଚୁର୍ ହୋଇଥିବାର ଦେଖାଯାଏ । ମଦୁଆ ବାବୁଘର ପିଲା, କେତେବେଳେ କ'ଣ କରି ବସିବ—ଏଇ ହେଲା ତାଙ୍କ ଭୟ ।

ହେଲେ ଦଶବର୍ଷିଆ ଅଧାଲଙ୍ଗଳା ସନ୍ତୁ ଟୋକାର ଡର ଭୟ ଆସିବ କୋଉଠୁ ? ସେ ଯାତ୍ରାରେ ଉତ୍ତର ଆସିଲା ପରି ଦେଖାଯାଉଥିବା ଭିନ୍ନଦେଶୀୟ ବାଙ୍ଗରା ନିଶୁଆ ଲୋକଟାକୁ ଅନେଇଲା ମିନିଟିଏ । ସେଇଠୁଁ ଦାନ୍ତ ନିକୁଟିଲା ଆଉ କହିଲା—

"ସିଏ ତ ଗୋଟାଏ ଘର । ପାଣ୍ଡୁ ଅଜାର ।"

"କୋଉ ପାଣୁଅଜା ?"

"ନବା ମଉସା ମ···ତା' ବାଆ ।"

ପ୍ରଶ୍ନକର୍ତ୍ତା ତାଙ୍କ ରକ୍ତିମ ଚକ୍ଷୁକୁ ସ୍ଥିରକରି ରଖିଲେ ସନ୍ତୁ ଉପରେ । ସେଇଠୁଁ ସନ୍ତୁ ଉପରୁ ଫେରାଇଆଣି ପୁଣି ଘେର ଉପରେ । କିଏ ସେଇ ଲୋକଟା ବୋଲି ଠଉରେଇବାକୁ ଚେଷ୍ଟା କଲେ । ହେଲେ ପାରିଲେ ନାହିଁ । ···କେତେ ନବା, କେତେ ପାଣୁଆ, କେତେ ଧଡ଼ିଆ ଥିବେ ଏହି ଗଳି ଭିତରେ ଯାହାଙ୍କୁ ମୁଁ ଚିହ୍ନିଥିବି । ଅବଶ୍ୟ ଚିହ୍ନିଥିବି । ଯେଉଁଠି ଥିଲେ କି ଯେତେ ଯୁଆଡ଼େ ବୁଲି ଆସିଲେ ବି ମୁଁ ଏଇ ଗଳିର ପିଲା । କିନ୍ତୁ ବ୍ୟାପ କାହାର ଚେହେରା ମନେପଡ଼ୁ ନାହିଁ । ଶାଳେ ମୋତେ ଦେଖିଲାଣି ନମସ୍କାରଟା ପକେଇ ଆଡ଼େଇ ହୋଇଯିବେ । ମଣିଷ କରିବ କଅଣ ? ···ରଞ୍ଜନବାବୁ ଭୀଷଣ ବିରକ୍ତ ହେଲେ ଏଠିକାର ଏଇ ଲୋକଗୁଡ଼ାଙ୍କ ଉପରେ । ଏବଂ ତାଙ୍କର ମନେ ହେଲା ଯେ ଅପରିଛନ୍ନିଆ ଘେରଟା ତାଙ୍କର ଏଇ ନିପାରିଲାପଣକୁ ଛୁଗୁଲେଉଛି ।

ଛୁଗୁଲେଉଛି, ମାନେ, ତା' ଅପରିଛନ୍ନିଆପଣକୁ ଦେଖେଇ ହେଉଛି । କହୁଛି —ଦେଖ, ଇଏ ହେଉଛି ଗୋଟାଏ ପୁରୁଣା ବଛଣାଗୃଦର । ଫଡ଼ା ଫଡ଼ା ଛିଣ୍ଡି ଯାଇଛି ସିନା, ଦେଖ ତା'ର ପଟା ପଟା ହଳଦିଆ—ପୋଇଗୁଲିଆ ଗାର । ଆଉ ଗୋଲେଇ ଖଣ୍ଡିକ କୋଉଠୁ କୋଉ ଯାଏଁ ଲମ୍ବିଛି ଦେଖୁଛ ତ ? ଜାଣୁଛ ତ ମୂତଦାଗଟା କେଡ଼େ ଜବରଦସ୍ତ ? ହେଲେ ଅନେକ ଦିନର । ଗନ୍ଧ ଲାଖି ରହି ନାହିଁ ଯେ ନାକକୁ ଉଠେଇବ ପକେଇବ । ପୁଣି ଗୃଦର ସାଙ୍ଗକୁ ଅଖା କେମିତି ଯୋଡ଼ି ହେଇ ରହିଛି, ସେଥିରେ କଭଳି ସୁତୁଳି ବନ୍ଧା ହୋଇଛି, ତା'କୁ କେମିତି ଇଟା ମାଡ଼ି ବସିଛି ତଳକୁ, କେଉଁ ପ୍ରକାର କଣ୍ଟା ଟାଣି ଧରିଛି ଉପରକୁ । ବାବୁ, ଆଗେ ମୋତେ ଚିହ୍ନ, ତା'ପରେ ଚିହ୍ନିବ ଆଉ କାହାକୁ, ଗଳିର ମଣିଷମାନଙ୍କୁ···

ଘେରର କସୁର୍ ନୁହେଁ ଯେ ତା' ଦେହରେ ଦାଆ-ଘିମିରି ଏମିତି ଗଣି ହୋଇ ଯାଇଛି, ଏତକ ଭାବି ପାରିଲେ ନାହିଁ ରଞ୍ଜନବାବୁ । ବୁଝିଲେ ନାହିଁ ଯେ ଦୋଷ ତାଙ୍କର ପ୍ରଖରସ୍ମୃତି ଦୃଷ୍ଟିଶକ୍ତିର । ଚତୁରାନଶାର ଗୁଣ, ଚେତନାକୁ ଚତୁ କଲା ପୂର୍ବରୁ । ନ ହେଲେ ଘେରଖଣ୍ଡିକ ଗଳିର ଅନ୍ୟତମ ଅପଦୃଶ୍ୟ ହୋଇ ରହି ଯାଇଥାନ୍ତା, ଏବଂ ସେ ତାକୁ ହିକିଏ ଅନେଇ ଦେଇ 'ହ୍ୱାଟ୍ ଦ' ହେଲ୍' କହି ବାଟେ ବାଟେ ଚାଲି ଯାଇଥାଆନ୍ତେ । କିନ୍ତୁ ଏଇକ୍ଷଣି ତାର କୁରୂପ ଜଳଜଳ ହୋଇ ଦିଶିଯାଉଛି, ତା'କୁ ଆଡ଼େଇ ଦେଇ ହେଉ ନାହିଁ । ଖାଲି ତା'ର ନୁହେଁ, ଠିକ୍ ତା ତଳକୁ ଥିବା ନଳାର । ସତେକି ଗଳିର ଏମୁଣ୍ଡରୁ ସେମୁଣ୍ଡ ଯାଏଁ

ଲମ୍ବିଥିବା ନର୍ଦ୍ଦମାନଳା ଠିକ୍ ଏଇଠି ତା'ର ପରାକାଷ୍ଠା ଦେଖାଇବାକୁ ଗ୍ଭହେଁ । ତା'ର ବହଳକଳ କେତେ କଳା, କେତେ ଚକଚକ, ତଥା ତା' ଉପରେ ମେଞ୍ଚା ମେଞ୍ଚା ହୋଇ ଭାସୁଥିବା ଦ୍ରବ୍ୟମାନ ଏକାଧାରରେ କେତେ ଉଦ୍‌ବୃତ୍ତ ଏବଂ ଉଦ୍ଭଟ । ଘେର ତଳକୁ ନଳା, ନଳା ଉପରକୁ ଘେର । ସ୍ମା' ପାଇଁ ସିଏ, ତା'ପାଇଁ ଇଏ ।

"ଆବେ, ତୋ ଦାନ୍ତ ଦେଖେଇଛୁ କାହିଁକି ?" ରଞ୍ଜନବାବୁ ପାଟିଟାଏ କଲେ ସନ୍ତୁ ଉପରେ । ସେଥିରେ ବିଶେଷ ଭାବ ନ ଥିଲେ ନାହିଁ, ସନ୍ତୁ ଟୋକାର ଅବଚଳିତ ଆମୋଦର ଠାଣିକୁ ଦ୍ୱନ୍ଦ୍ୱରେ ଗ୍ରହଣ ଯାଇଥାଆନ୍ତା କେମିତି ?

ଏହି ସମୟରେ ଅଖା-ଗ୍ଭଦର ଆନ୍ଦୋଳିତ ହେଲା ଏବଂ ଗୋଟାଏ ଶବ୍ଦ ଶୁଭିଲା ଘେର ଭିତରୁ । ପ୍ରବୀଣ ଓ ପ୍ରଲମ୍ବିତ ଶବ୍ଦ । ଗୁହା ଭିତରୁ ଟାଣି ହୋଇ ଆସୁଥିବା, ଆହୁରି ଟାଣିହୋଇ ଆସୁଥିବା ଏବଂ ଛିଣ୍ଡୁ ନଥିବା ଖଙ୍କାରର । ସେଇଟା ପଦାକୁ ବାହାରି ଆସିଲେ ସିନା ଆସାମୀ ତା' ମୁହଁ ଦେଖେଇବ ଓ ଉଦ୍‌ବୃତ୍ତ ବିଶେଷକୁ ଗ୍ଭଡ଼ିଦେବ ତଳକୁ, ତା'ରି ପାଇଁ ଖଣ୍ଡା ହୋଇ ରହିଥିବା ନଳାକୁ ?

ରଞ୍ଜନବାବୁ ମଧ୍ୟ ଉତ୍କଣ୍ଠିତ ହେଲେ । ଗୋଟାଏ କିଏ ମୁହଁ ଦେଖେଇବ ଏଇକ୍ଷଣି । ଇଏ ଯାହାର ଘେର ଆଉ ଘର (ଶଳା କି ଷ୍ଟୁପିଡ୍ ଘର !), କୋଉ ପାଣୁଆ···

ଶେଷକୁ ଘେର ଖୋଲିଗଲା । ଏବଂ ତା ଭିତରୁ ବାହାରି ଆସିଲା ଗୋଟାଏ ଶୁଖିଟା ଶିରାଳ ବୃଦ୍ଧର ଫୁଙ୍ଗୁଲା ଦେହ ଏବଂ କ୍ଲାନ୍ତକୁଞ୍ଚିତ ମୁହଁ । ନଳା ଉପରକୁ ଉହୁଙ୍କି ଯାଇ ଉପସ୍ଥିତ ଯନ୍ତ୍ରଣାରୁ ରକ୍ଷା ପାଇବା ପାଇଁ ।

କିନ୍ତୁ ସାଷ୍ଟମ୍ ହେଲା ପରେ ଯେଉଁ ଜଣକ ଅନେଇଲା ସାମ୍ନାରେ ଠିଆ ହୋଇଥିବା ବ୍ୟକ୍ତିକୁ, ତା' ମୁହଁରେ କ୍ରମଶଃ ଗୋଟାଏ ଆବିଷ୍କାରର ଆନନ୍ଦ ଉକୁଟି ଆସିଲା । ଏବଂ ସେ ଧୀରେ ଧୀରେ ଓ ଥରିଥରିକା ତା' ହାତ ଉଠାଇଲା ଆଗନ୍ତୁକକୁ ନମସ୍କାର କରିବା ପାଇଁ । ନମସ୍କାର କଲା ଓ କହିଲା ବସେଇ ବସେଇ—

"ନମସ୍କାର ରଞ୍ଜୁବାବୁ !"

ଅନ୍ତତଃ ଏଇ ଲୋକଟା ନମସ୍କାର କରି ପଳେଇ ଯାଇ ନାହିଁ । ପଳେଇ ଦିବାର ଅବସ୍ଥାରେ ନାହିଁ, ଅତଏବ ତାକୁ ଚହ୍ନିବାକୁ ହେବ । ଅନୁସ୍ମରଣର ତାଡ଼ନା । କହୁଛି—କ'ଣ ରଞ୍ଜୁବାବୁ, ଏଥର କୋଉ ଶଳାଟାର ଦୋଷ ? ଦେଖ ସେ କେମିତି ଖୁସି ହେଉଛି ତମକୁ ଦେଖି । ତା' ଘରକୁ ଫେରି ନଯାଇ ଅନେଇଛି ତମ ଆଡ଼କୁ । ବୁଢ଼ା କାଶି କାଶି କ୍ଳାନ୍ତ ହୋଇଗଲାଣି, କେଡ଼େ ଜୋର୍‌ରେ ଧରି ପେଲୁଛି, ହେଲେ ମୁରୁକିହସା ଦେଉଛି । ତମ ଆଡ଼କୁ କିଛି ଗୁହାଁରୁଛି । ମାନେ ଖାଲି ଚଟପଟ ନମସ୍କାରଟାଏ ଛୁଡ଼ି ଦେଲେ ଚଳିବ ନାହିଁ । କଥାଭାଷା ହେବାକୁ ପଡ଼ିବ । ମନେ ହେଉଛି ସେ ତମ ପିଲାଦିନର ଦୋସ୍ତ !

ହୋଇଥିବ । ନହେବାର କୌଣସି କାରଣ ନାହିଁ । ଆ-ହା କି ହସ ! ଗୋଟାଏ ବୁଢ଼ା ଖରଗୋସ ! ବଗ୍‌ସ୍ ବନ୍‌ନି । ଗ୍ରାମୁଦାନ୍ତଠାରୁ ଆହୁରି କଉରୁକିଆ ତା' ଓଠ । କଥାକୁହା ଓଠ । ଉପରକୁ ଉଠୁଛି, ପୁଣି ତଳକୁ ଖସିଯାଉଛି । ବେମାରି ଯୋଗୁଁ କମ୍ପୁଛି ନା କଅଣ ? ନାଇଁ, ନାଇଁ, ନାଇଁ, ତା' କୋରଡ଼ ଆଖି ବି କେମିତି ମିଞ୍ଜି ମିଞ୍ଜି ହେଉଛି ଦେଖ । ସିଏ ବି ହସୁଛି । ନିର୍ଭେଜାଲ ନିଗ୍ରେଡ଼ବନ୍ଦା ହସ ।

ମୋ ରାଗକୁ ଅଣ୍ଟା କଲି ପରି ନୁହେଁ, ଶୀତଳେଇଲା ପରି । କହୁଛି—ହେ' ହେ' ରଞ୍ଜୁବାବୁ, ଏତେ ରାଗୁଛ କାହିଁକି ମ ? ଆମ ଗଳାରେ ମଜା କଲା ପରି ଏତେ ଜିନିଷ ଥାଉଁ ଥାଉଁ ତମକୁ ରାଗିବାକୁ କିଏ କହିଲା ? ଗଳି ଆଗକୁ ହାମ୍ ସାହି, ସେଇଠୁଁ ମଇଦାନ, ନଈକୂଳ, ରେଲ୍‌ଷ୍ଟେସନ । ନଈରେ ମାଛ, ଆସମାନ୍‌ରେ ଗୁଡ଼ି । ଆଉ ଭୂଇଁରେ ଯେତେକ ନେଥେଇଫୁଲେଇ ସିଙ୍ଘାଣିନାକୀ । ଏଥର ହସୁଛ ନା ? ହସ, ହସ, ଆଉ ଟିକେ ହସିଲ ? ଆସ ପଳେଇ ଆସ, ଆଗେ ତମର ସେଇ ହତା ଭିତରୁ ପଳେଇ ଆସିଲ ? ···ଆରେ, କ'ଣ ଏଇ ଖାଲି ଦେହରେ ବାହାରିବ ? (ୟେସ୍ !) ହଉ, 'ୟେସ୍', ମୁଁ ତମକୁ ମୋର ଗୋଟାଏ ଜାମା ଦେବି ପିନ୍ଧିବାକୁ । ଆସ ମୋ ସାଙ୍ଗରେ ।

···ସେମିତିକା ହସ । ଆଉ ଠିକ୍ ସେମିତିକା କଥା, ଦୋସ୍ତିର ଅଭୁଲା କଥା, ତା' ମୁହଁରୁ ବାହାରି ଆସିବ ବୋଲି ହେଉଛି । ହେଲେ ପାରୁ ନାହିଁ । କିନ୍ତୁ···ସେ କ'ଣ ସତେ ସତେ ବୁଢ଼ାହାଡ଼ା ଆଉ ରୋଗିଣା ହୋଇଗଲାଣି ? ପୁଣି ପଡ଼ିରହିଛି ଏଇ ଅପରିଚ୍ଛନ୍ନିଆ ଘେର ଭିତରେ ?

ପାଣୁ···ପ୍ରାଣବନ୍ଧୁ···ବନ୍ଧୁ···

ହାତ ଠାରୁଛି ବସିବାକୁ ତା' ପାଖରେ । ଅଖାକୁ ଆଡ଼େଇ ନେଇ ସେଇ ପିଣ୍ଡା ଉପରେ । ତା'ର କ'ଣ ମୁଣ୍ଡ ଖରାପ ? ମୁଣ୍ଡ ଖରାପ ନୁହେଁ, ଭାବୁଛି ଏଇକ୍ଷଣି ବି ମୁଁ ତା'ର ବନ୍ଧୁ !

ଅବଶ୍ୟ ମୁଁ ତୋର ବନ୍ଧୁ । ହୋଇପାରେ ମୁଁ ମଦୁଆ, କିନ୍ତୁ ସେଇ ଦଲ୍ ଏବେ ବି ଅଛି ମୋ ପାଖରେ । ସେଇ ସଚ୍ଚା ଦଲ୍ । ଆଉ ଏଇକ୍ଷଣି ବି ମୁଁ କାହାରିକୁ ପରୁଆ କରେ ନାହିଁ । ସେତେବେଳେ ଯେମିତି ବାପକୁ ପରୁଆ କରୁ ନଥିଲି । ତାଙ୍କ ଗାଳିର ଶବ୍ଦମାନଙ୍କୁ ଅଣ୍ଡରଲାଇନ୍ କରି ସେଇ ମୁତାବକ କାମ କରିବାକୁ ପଛେଇଲି ନାହିଁ । ଅର୍ଥାତ୍ ତାଙ୍କ ମୁହଁ ଉପରକୁ ମୋ ଜାମାଟା ଫୋପାଡ଼ି ଦେଇ ଡମଡମ ହୋଇ ପଳେଇ ଆସିଲି ବାହାରକୁ । ଖାଲି ଜଙ୍ଘିଆଟା ପିନ୍ଧି । ଆଉ ମୋତେ ହାତଠାରି ଡାକିଲୁ ଛତା ଭିତରୁ ବାହାରି ଆସିବା ପାଇଁ । ମୋ ଗ୍ରଗକୁ ସମ୍ଭାଳି ନେଇ ହଜାରେ ଖେଳ ଦେଖେଇବୁ । ନଗର ବୁଲେଇ ନେବୁ । ଆଉ ଶଳା ଯେତେକ ବଗୁଲିଆ କଥା ଶିଖେଇବୁ ମୋତେ । ଯେମିତିକି ମୋ ମନ ଭୁଲିଯିବ ।

ହଁ, ତୁ ମେଇ, ତୁ ସେଇ···ତୁ ମୋ ମଦନଶାର ଭୂତ ନୁହେଁ, ତୁ ସତ । ତୁ ମୋ ପିଲାଦିନର ଦୋସ୍ତ !···

ରଞ୍ଜୁ ବାବୁ ଉଲ୍ଲାସ ଓ କ୍ରନ୍ଦନକୁ ଏକାଠି କଲା ପରି ଗୋଟାଏ ତୀବ୍ର ଆନୁ-ନାସିକ କଣ୍ଠରେ ଚିତ୍କାର କରି ଉଠିଲେ—

"ଆରେ ଶଳା, ତୁ ପ୍ରାଣବନ୍ଧୁ ନା ? ତୁ ପରା କେବେଠୁଁ କଲିକତା ପଳେଇଥିଲୁ ? ଫେରିଲୁ କେବେ ?"

(କିନ୍ତୁ ତୁ କ'ଣ ଏଇଠି ଥିଲୁ ? ଚୂନିଆ ଘର ହେଲେ ବି ପକ୍କା ପିଣ୍ଡା, ଦାଣ୍ଡ କବାଟରେ ଫୁଲପକା ପରଦା । ଘରଭିତରୁ ହାରମୋନିଅମ୍‌ର ସ୍ୱର । ତୋ ବାପା ନାଆଁ ମୁକୁନ୍ଦ, ବଣିଆପର ହେଲେ ବି ଗ୍ରେଟମୋଟ ବଡ଼ଲୋକ । ଇଏ ସେଇ ଘର ପରି ଦିଶୁ ନାହିଁ ତ ? ତା' ଛଡ଼ା ସିଏ ଗଳିର ସେ ମୁଣ୍ଡକୁ ନଥିଲା କି ? ···କିଛି ମନେ ପଡ଼ୁ ନାହିଁ ଠିକଣା ହୋଇ । ତା' ମାନେ କ'ଣ ନିଶାରେ ମୋ ସ୍ମରଣଶକ୍ତି ନଷ୍ଟ ହୋଇଗଲାଣି ? ନନ୍‌ସେନସ୍ !)

ଯେରବୁଢ଼ା ଉତ୍ତର ଦେବାକୁ ନାହିଁ । ହସୁଛି ଯେମିତି । ହେଲେ ତା' ହସ ବୋଧହୁଏ ଟିକିଏ ସଙ୍କୁଚିତ ହୋଇ ଆସିଲାଣି । ମନେ ହେଉଛି ପୁଣି କାଶ ଉଠି ଆସିବ, ସେଇଥିପାଇଁ ସେ ଅସୁବିଧାରେ ପଡ଼ିଛି, ତ୍ୱହିଁଲେ ମଧ୍ୟ ଉତ୍ତର ଯୋଗେଇ ପାରୁ ନାହିଁ ।

ଏଣେ ସନ୍ତୁ ସାଙ୍ଗକୁ ଗଳିର ଆଉ କେତୁଟା ପିଲା ଏବଂ ବଡ଼ ମଣିଷ ଦି'ଜଣ ପହଞ୍ଚି ଗଲେଣି ! ସୁନେଇ ମେହେନ୍ତ୍ରାଣୀ ମଧ୍ୟ ତା' ଝୋକେଇ ଓ ଝାଡ଼ୁକା

ପହଁଚ୍ଛ ସମେତ ଅଟକ ଯାଇଛ ମୁହୂର୍ତ୍ତିକ ପାଇଁ. କିଛୁ ଗୋଟାଏ ନୂତନ ଦୃଶ୍ୟ ଦେଖିବ ବୋଲ । କିନ୍ତୁ କେହି କିଛୁ କହୁନାହାନ୍ତି । ସତେକି ରଞ୍ଜୁବାବୁଙ୍କୁ ଭରସା ଦେବା ଦାଗରେ ଥିଲେ ମାତ୍ର ଦାୟିତ୍ୱ ନାହିଁ ସେମାନଙ୍କର !

ସେଇଠୁଁ ରଞ୍ଜୁବାବୁ ସ୍ଥିର କଲେ ଯେ ଦାୟିତ୍ୱ ତାଙ୍କର ।

ଏମାନଙ୍କର ମୂର୍ଖତା, ଘେରର କୁରୂପ, ଏବଂ ଏଇ ବାନ୍ଧବନ୍ଧୁର ଦୁଃଖ ଦୂର କରିବା ପାଇଁ ।

ଏହି ପ୍ରକାର ନିଷ୍ପତ୍ତି ସେ ବାରମ୍ବାର ନେଇ ଆସିଛନ୍ତି ତାଙ୍କ ଜୀବନରେ । ମାନେ ଯେତେବେଳେ ଜୀବନବୋଧ ଏମିତି ଉତ୍ତୁଙ୍ଗରେ ଥାଏ । ହୁଇସ୍କି ତାର ଠିକଣା କାମ କରି ସାରିଥାଏ । ସେତେବେଳେ ରଞ୍ଜୁବାବୁଙ୍କର କୌଣସି ସନ୍ଦେହ ରହେ ନାହିଁ ଯେ ସେ ସଂସାରକୁ ଆସିନାହାନ୍ତି ଖାଲି ଆସିବା ପାଇଁ ଏବଂ ଫେରିଯିବା ପାଇଁ । ଅଫିସ୍‌ର, ଘରକରଣାର, ବଜାରହାଟରୁ ପନିପରିବା କିଣିବାର, ପୁଅମାନଙ୍କ ମାଷ୍ଟରଙ୍କୁ ଖୋସାମତ କରିବାର, କୋଉ ବଳଭରୁ ଆସୁଥିବା ବଡ଼ ସାହେବ ପାଇଁ ତା' ମନଲାଖି ତଥ୍ୟ ଓ ମନୋରଞ୍ଜନ ପ୍ରସ୍ତୁତ କରିବାର, ଇତ୍ୟାଦିର ସର୍ବସାଧାରଣ ଓ ସ୍ୱାର୍ଥପର କାମ କରିବାପାଇଁ । ତାଙ୍କର ମଧ୍ୟ ଦାୟିତ୍ୱ ଅଛି ସଂସାରରେ ଅସନା ଓ ଅନ୍ୟାୟକୁ ପୁଞ୍ଛେଇବା ପାଇଁ । ଭାବନ୍ତି—ନହେଲେ ଶଳା ମଣିଷ ହେଲି କାହିଁକି ? ବଲେଇ-କୁକୁର ହେଲି ନାହିଁ କାହିଁକି ? (ଏଇକ୍ଷଣି ତାଙ୍କ ମନରେ ଆସୁଥିଲା ଯେ ସେ ଗଳ୍ପର ଅନ୍ୟତମ ନିବୃତ୍ତ, ଅନାସକ୍ତ, ହୋଲି ଦୋହଲି ଚାଲୁଥିବା ଷଣ୍ଢ ନୁହଁନ୍ତି) ତହୁଁ ସେ ବର୍ଦ୍ଧିଷ୍ଣୁ କ୍ରୋଧ, ଶୋକ, ଅବା ଉଲ୍ଲାସକୁ ଛାଡ଼ିଦିଅନ୍ତି ତା' ବାଟରେ, ଏବଂ ଶେଷକୁ କରି ବସନ୍ତି କିଛି ଗୋଟାଏ କଲ୍ପ ପର କାମ । ଯିଏ ଯାହା ଭାବୁ, ଯିଏ ଯାହା କହୁ, ଏବଂ ସେଥିରେ ପାଞ୍ଚ ପଡ଼ୁକି ପଚିଶ । ତା'ପରେ ଯାଇଁ ଶାନ୍ତି !

ଅବଶ୍ୟ ମଦନଶାର ପ୍ରୋତ୍ସାହାନ ମିଳିବା ପୂର୍ବରୁ ମଧ୍ୟ ସେ ତାଙ୍କ ସତ୍‌ଆବେଗକୁ ଅଟେକେଇବାକୁ ଚାହିଁ ନଥିଲେ । 'ତମେ ସବୁ ବାପ ପଇସାରେ ବଡଲୋକ ଦେଖଉଛ, ନୁହେଁ ?' ଏଇ କଥା ପଦକରେ ସେ କେମିତି ପିତୃଦତ୍ତ ଜାମାପଟା ଦେହରୁ ଉତାରି ଦେଇ ଘରୁ ଚାଲିଯାଇଥିଲେ ତା'ର ଉଲ୍ଲେଖ ତ ପୂର୍ବରୁ କରିସାରିଛି ! ଯେତେବେଳେ ପ୍ରାଣବନ୍ଧୁ ତାଙ୍କ କ୍ରୋଧକୁ ଶୀତଳେଇ ଥିଲା । ଟୋକାବେଳର ମଧ୍ୟ ଅନେକ ଦୃଷ୍ଟାନ୍ତ ରହିଛି । ଯଥା ପ୍ରଣୟିନୀ ବିଜୟିନୀ ତାଙ୍କୁ ଛାଡ଼ି ଆଉ କାହାକୁ ବାହା ହୋଇ ପଡ଼ିବାରୁ ସେ ଯେଉଁ ସଚ୍ଚା ଏବଂ ନିର୍ଭେଜାଳବନ୍ଦା ପ୍ରେମିକତ୍ୱ ତଥା ମଣିଷପଣିଆର ପରାକାଷ୍ଠା ଦେଖାଇଥିଲେ । ଯେତେବେଳେ ସେ ବିଜୟିନୀର ବାପା ଅର୍ଜୁନ ପାତ୍ରଙ୍କ ଦାଣ୍ଡଦୁଆରରେ ଧକ୍କା ମାରିଲେ, ଏବଂ

ଘୋଷଣା କଲେ ଯେ 'ମୁଁ କାହାର ଶୁଭାକାଂକ୍ଷୀ, ମୁଁ ତା'ର କିଛି କ୍ଷତି କରିବି ନାହିଁ, ଖାଲି ମୁଁ ତାକୁ ମୋର ଶେଷକଥାଟିକ କହିଯିବାକୁ ଚାହେଁ ।' କିନ୍ତୁ କେହି ତାଙ୍କ ବେଦନା କିମ୍ବା ଆବେଦନକୁ ଧେନା କଲେ ନାହିଁ । ଅପରନ୍ତୁ ତାଙ୍କୁ ଅପମାନ ଦେଇ ଠେଲିଦେଲେ ବାହାରକୁ ।

କେହି କାହିଁକି ମୋ କଥା ଶୁଣନ୍ତି ନାହିଁ ? ଯଦି ମୋର ଯୁକ୍ତି କି ପ୍ରତିବାଦରେ କିଛି ଭୁଲ୍‌ଭଟକା ଥାଏ ତାକୁ ବୁଝେଇ ଦିଅନ୍ତି ନାହିଁ ? କହନ୍ତି ନାହିଁ ଯେ ବାଣଆଡ଼େ ବାଟଟା ଅଛି, ତେଣୁ ରାତିରେ ସେଠିକି ଯିବା ପାଇଁ ଜିଦ କରିବା ଅନୁଚିତ ? ଅଧିକନ୍ତୁ ମୋତେ ଗାଳିମାଡ଼ ଦେଇ ଟାଣି ନେଇ ଆସନ୍ତି ଭିତରକୁ ।

ରଞ୍ଜୁବାବୁଙ୍କ ଏଇ ଅଭିଯୋଗ ପୂରଣ ହୋଇପାରି ନାହିଁ ପିଲାଟିଦିନୁ । ହେଲେ ବଡ଼ ହେଲାରୁ ଓ ନିଜ ଗୋଡ଼ରେ ଠିଆହୋଇ ଦି' ପଇସା କମେଇଲା ପରେ ତାଙ୍କୁ ଏଇ ବିଶେଷ ସାହାଯ୍ୟ ଟିକିକ ମିଳି ଯାଇଛି । ନିଶାପାଣିର ଉମ୍‌କାନ । କେବେ ଓ କେଉଁ ଘଟଣାକୁ ନେଇ ତାର ଭୂମିକା ସ୍ପଷ୍ଟ ହୋଇ ଉଠିଲା କହିହେବ ନାହିଁ । ତେବେ ଏବେ ସେ ନିଃସନ୍ଦେହରେ ଶୁଣିଲେ ତାଙ୍କ ଉତ୍ତେଜିତ ବିବେକର ତାଡ଼ନା, ପ୍ରରୋଚନା, ଉଦ୍‌ବୋଧନ—ଆରେ କାହିଁକି କହିବୁ ନାହିଁ ? କାହିଁକି କରିବୁ ନାହିଁ ? କାହିଁକି ମୁକାବିଲା କରିବୁ ନାହିଁ ଏଇ ଘୋର ଅନ୍ୟାୟର ସ୍ୱପକ୍ଷ ସାଙ୍ଗରେ । ତୁ କ'ଣ ପିଲା ହୋଇ ଅଛୁ ? ତୁ କ'ଣ ମଣିଷ ନୁହଁ ?

ସେହେତୁ ଉତ୍‌ଥିତ, ପ୍ରରୋଚିତ ଓ ସ୍ୱବପ୍ରଣୋଦିତ ହୋଇ ସେ ଅନେକ 'କାମ' କରି ଆସିଛନ୍ତି । ନିଶାପାନର ମାତ୍ରାକୁ ବଢ଼େଇବା ସଙ୍ଗେ ସଙ୍ଗେ ବେଶି ବେଶି କାମ କରିଛନ୍ତି । ନ୍ୟାୟ, ନୀତି, ମାନବିକତା ତଥା ନିଜକର ମର୍ଯ୍ୟାଦା ପାଇଁ । ଯଦିଓ ସେ ଉଦ୍ଧ୍ୱୀର ପ୍ରମୋସନ୍ ପାଇ ପାରି ନାହାନ୍ତି, ପେଟ ତଥା ଲିଭରକୁ ବଢ଼େଇଛନ୍ତି, ନିଜକୁ ଲୋକହସା କରେଇଛନ୍ତି, ଏବଂ ସ୍ତ୍ରୀ ପିଲାଙ୍କୁ କାନ୍ଦେଇଛନ୍ତି ।

ଏଇ ପୈତୃକ ଗଳି ଘରକୁ ଆସିଲେ ତାଙ୍କର କର୍ତ୍ତବ୍ୟପରାୟଣତା ଆହୁରି ପ୍ରବଳ ହୋଇଉଠେ । ଗଳିକୁ ସଫା ରଖିବା, କେଉଟଘର କଳିହୁଡ଼ୀ ଶାଶୁ-ବୋହୂଙ୍କୁ ଆକଟ କରିବା, ଗ୍ରେଟା ହୋଇଯାଇଥିବା ଲାଲୁ ପହିଲ୍‌ବାନ୍‌କୁ ସାହସ ଦେବା, ଇତ୍ୟାଦି କର୍ତ୍ତବ୍ୟ ପାଳନ କରିବାକୁ ଯାଇ ସେ ନାନା ବିଚିତ୍ର—ବିଶିଷ୍ଟ କାମର ଚମତ୍କାର ଦେଖାଇଛନ୍ତି । ଥରେ ଅଧେ ଲୋକ ଚିହ୍ନିବାର ଭୁଲ୍ ହୋଇଛି ।

ଯେମିତକ ଅରେ ସେ ଗଳରେ ବା‌ଟ ଗ୍ଲୁଥିବା ଅଲ୍ପବୟସ୍କାଙ୍କୁ ଆଦରରେ ସମ୍ବୋଧିଲେ "ଆଲୋ, ଏଇ ଛଣ୍ଡା ଶାଡ଼ି ଖଣ୍ଡକ ଫିଙ୍ଗିଦେ", ଆମ ଘରକୁ ଆ, ତୋତେ ଗୋଟେ ଭଲ ଶାଢ଼ି ଦେବି" ବୋଲି କହିଲେ । କାହିଁକନା ତାଙ୍କର ମନେ ହେଲ ଯେ, ଇଏ ହେଉଛୁ ପୂନର ଝିଅ । ଠିକ୍ ସେଇ ମୁହଁ, ସେଇ ଚେହେରା । ଯେଉଁ ପୁନ ପ୍ରତ ତାଙ୍କର ଗୋଟାଏ ବିଶେଷ ଦରଦ ଥିଲ ପିଲାଦନେ, ଆଉ ସିଏ ଅଲ୍ପବୟସରେ ବିଧବା ହୋଇ ଦୁଃଖରେ ଅଛୁ ବୋଲ ଶୁଣାଯାଏ । କନ୍ତୁ ଝିଅଟା ଆଉ କଏ ହୋଇଥିବାରୁ ସେ ତାଠୁଁ ଶୁଣିଲେ ଦ'ପଦ ଖାସ୍ କଥା, ଏବଂ ବନ୍ଧୁପର ଟପାହସ ମଧ ଶୁଣାଗଲ ଅନ୍ୟମାନଙ୍କଠାରୁ । ତଥାପି ସେ ତାଙ୍କ କର୍ତ୍ତବ୍ୟ ପାଳନର ପ୍ରବଣତାରୁ ଓହରି ଯାଇନାହାନ୍ତି । ଏବେ ସେ ଏଠିକି ଆସିଥାଆନ୍ତି ଛୁଟିରେ, ଯେତେବେଳେ ହାତରେ ଅନେକ ସମୟ ଥାଏ, ତେଣୁ ମଦ୍ୟପାନର ଅଧିକ ସୁଯୋଗ । ଦ୍ୱିତୀୟରେ ସେ ମନେ କରନ୍ତି ଯେ ନୈତକ ଦୃଷ୍ଟିରୁ ସେ ତଥାପି ଏଇ ଗଳବାସୀଙ୍କର ଶୁଭାକାଂକ୍ଷୀ, ଏବଂ ଜନ୍ମସିଦ୍ଧ ବଡ଼ଭାଇ, କାହିଁକନା ତାଙ୍କ ଜେଜେ ପ୍ରଥମେ କୋଠା ତୋଲଥିଲେ ଏଇ ଗଳରେ, ଏବଂ ତାଙ୍କ ବାପାଙ୍କୁ ସମସ୍ତେ ମାନୁଥିଲେ ବାପା କମ୍ବା ରଜାପର—ଯାହା ତାଙ୍କର ଧାରଣା ।

ତେଣୁ ସେ ଠିକ୍ କଲେ ଯେ ଦାୟିତ୍ୱ ତାଙ୍କର । ପାଣୁଆ ତାଙ୍କ ପିଲାଦନର ପ୍ରାଣବନ୍ଧୁ ନହୋଇପାରେ (ଅବଶ୍ୟ ନହେବାର କାରଣ ନାହିଁ), ହେଲେ ତାକୁ ସେ ଏମିତ ଏଇ ପେରରେ ପଡ଼ି ମରିବାକୁ ଦେବେ ନାହିଁ । କଦାପି ନୁହେଁ ।

ସେଇଠୁଁ ସେ ଡାକ ଛାଡ଼ିଲେ ।

'କଏ ଅଛ ଘର ଭିତରେ ?'

ଜଣେ ହୃଷ୍ଟପୁଷ୍ଟ ଟୋକା ବାହାରି ଆସିଲା ଘର ଭିତରୁ । ସେ କଛୁ କହିବା ଆଗରୁ ସନ୍ତୁ ତାର ପରିଚୟ ବାଢ଼ିଦେଲ "ଇଏ ନବାମାମୁ । ପାଣୁଅଜାର ପୁଅ ।"

"ଶୁଣ ନବାମାମୁ", କଣ୍ଠରେ କର୍ତ୍ତୃପକ୍ଷସୁଲଭ ହେୟଜ୍ଞାନ, "ଏଇ ପେର କାହିଁକ ?"

"ସାର୍ ?"

"ରଖ୍ ତୋ ସାର୍ । ପଚାରୁଛୁ, ଏଇ ପେର କାହିଁକ ?"

"ସାର୍, ଏଠି ବାପାଙ୍କୁ ରଖିଛୁ ।"

"ବା-ପା-ଙ୍କୁ ।" ରଣ୍ଟୁବାବୁ ଟିକେ ଖଡେଇ ହେଲେ, ହ୍ୟାପ, ତାଙ୍କୁ ଘରେ ରଖିପାରିଲ୍ ନାହିଁ ? ଦାଣ୍ଡ ପିଣ୍ଡାରେ ଫୋପାଡ଼ି ଦେଇଛୁ ଏମିତ ? ତୁ ତୋ ବାପର ପୁଅ ନା ଆଉ କାହାର ବେ ?"

ଗୃହସ୍ୱାମୀ ନବକିଶୋର ସାହୁ ଗୋଟିଏ ପ୍ରେସ୍‌ରେ କାମ କରେ । ତଳିଆ କମ୍ପୋଜିଟର । ମାଲିକଶ୍ରେଣୀର ଲୋକମାନେ କିଭଳି କଥା କୁହନ୍ତି ଓ ତାଙ୍କ କିସମତ କେଉଁ ପ୍ରକାର ସେ ବିଷୟରେ ସେ ଅନଭିଜ୍ଞ ନୁହେଁ । ତେଣୁ ତା'ର ଗୋଦି ଓ ଗୋଲଗାଲିଆ (ଅଳ୍ପବୟସ୍କ ମାଇଚିଆ) ମୁହଁ ଏଇ ଅପ୍ରତ୍ୟାଶିତ ଆକ୍ରମଣରେ ଲାଲ୍ ହୋଇଗଲେ ମଧ୍ୟ ସେ ସାର୍‌ଙ୍କୁ ତା'ର ସଫେଇ ଦେବା ପାଇଁ ଚେଷ୍ଟା କଲା । ବିନମ୍ରସ୍ୱର ସହ କହିଲା—

"ଘରେ ଜାଗା ନାହିଁ ସାର୍, ଦେଢ଼ବଖରା ଘର, ଖଟ ପକେଇବାକୁ ଜାଗା ନାହିଁ···

ଏହି ସମୟରେ ଆଉ ଜଣେ ଘର ଭିତରୁ ବାହାରି ଆସିଲା । ଗୃହସ୍ୱାମିନୀ ବୋଲି ମନେ ହେଉଛି । ତରୁଣିମା ସୁସ୍ପଷ୍ଟ । ତଥା ତା'ର ପ୍ରତିରୋଧୀ ଗୃହିଣୀ । ସତେକି ସେ କର୍ତ୍ତୃପକ୍ଷ ଜନପଟିର ହସାବକିତାବ ଜାଣେନାହିଁ । ଅପରନ୍ତୁ ତା'ର ଆଶଙ୍କା ଯେ ତା'ର ନରମପନ୍ଥୀ ସ୍ୱାମୀ ଏଇ ଲୋକଟା ପାଖରେ ନଇଁଯିବ (ବାବୁଘରର କି ବଡ଼ଲୋକ ଘର ପିଲା ହେଉ ପଛେ ଗୋଟାଏ ଭୂତ ପରି ଦେଖାଯାଉଛି), ଆଉ ତା' ମରମର ହେଉଥିବା ବାପକୁ ଫେରେଇ ଆଣିବ ଘର ଭିତରକୁ । ତା'ର ମନ ହେଉଥିଲା ସ୍ୱାମୀର ସଫେଇ ସାଙ୍ଗକୁ ଯୋଡ଼ିଦେବ ନିଜ କଥା ପଦେ—

ହେଉକି କ'ଣ, ତା ଯୋଗୁଁ ଏଠି ଘଇତା ମାଇପ ହୋଇ ରହିହେବ ନାହିଁ । ଏକାଠି ଶୋଇ ହେବ ନାହିଁ । କାହିଁକିନା ମନେ ହେଉଥିବ ସେ ତମକୁ ଚୁପ୍‌ଚାପ୍ ଅନେଇଛି ଅନ୍ଧାର ଭିତରୁ । ଅଉ ବୁଢ଼ା ଅସଲ ବେଳେ କାଶିବ, ଡରେଇ ଦେବ ତମକୁ··ସେଇଲାଗି ତ ମୋତେ ବାଆ କରି ରଖିଥିଲା ଆଜଯାଏଁ । ଯାହାହେଉ ···ଧାନ୍ତ୍, ତୁ ତ ଆରକି ବୁଢ଼ା, ତୁ କଣଟା ବୁଝିବୁ ସେଥିରୁ ?

ଏଣେ ନବକିଶୋର କହି ଗ୍ଲାଲିଛି :"···ତା'ଛଡ଼ା ବାପାଙ୍କ ସୁବିଧା । ତଳକୁ କିନ ନଳା ରହିଛି । ତାଙ୍କ ପାଇଁ···ମାନେ ନିତ୍ୟକର୍ମ ପାଇଁ···"

ରଞ୍ଜୁବାବୁଙ୍କ ସୁସ୍ଥସୌଖୀନ ଆତ୍ମା ଆହୁରି ତାତି ଉଠିଲା—

"କ'ଣ ହେଲା ? ତୁ ତୋ ବାପର ଘୁଅମୂତ ସଫା କରି ପାରିବୁ ନାହିଁ ଦରକାର ପଡ଼ିଲେ ? କହିଲୁ କ'ଣ ନା ନଳା ରହିଛି—ଓ ଗଡ୍ !···ହଇରେ, ସେମିତି କଥାକୁ ହାସ୍‌ପାତାଳରେ ଛାଡ଼ି ଦେଲୁ ନାହିଁ ?"

"ସେମାନେ କହିଲେ ବେଡ୍ ନାହିଁ । ତଳେ ବି ଜାଗା ନାହିଁ ଏମିତିକା ରୋଗୀଙ୍କ ପାଇଁ ।"

"କେମିତକା ରୋଗୀ ?"

"ମୁଁ ଜାଣେ ନାହିଁ ସାର୍ । କହୁଲେ ଯେ ଅବସ୍ଥା ଭଲ ନାହିଁ, ଆଉ ଯେତେବେଳେ ବୁଢ଼ା ହେଲେଣି । ଏଣେ ଆମେ କେତେ ଜବାନ୍ ରୋଗୀଙ୍କୁ ଫେରେଇ ଦେଉଛୁ ବାଧ ହୋଇ । କଅଣ ସବୁ ଔଷଧ ଲେଖି କରି ଦେଲେ, କିନ୍ତୁ ଏତେ ଦାମ୍ ଯେ···"

'ଚୁଲ୍‌ଶିଟ୍ ! ତୁ ନେଇ ଯାଆ ତାକୁ ଘର ଭିତରକୁ । ବୁଝିଲୁ ମୁଁ କ'ଣ କହୁଛି ? ଅବିକା, ଏଇକ୍ଷଣି ··ହଁ ତାଙ୍କ ଔଷଧପାତ୍ର ପାଇଁ କେତେ ଟଙ୍କା ଦରକାର କହ (ଗ୍ରୁଡ ପକେଟ୍‌ରୁ ଗୁଡ଼ାଏ ନୋଟ୍ କାଢ଼ି ଆଣି), ନେ ଯ୍ୟାକୁ, ଶହେ କି ଦେଢ଼ ଶ' ଥିବ···"

ସମ୍ଭବତଃ ନବକିଶୋର ଦାନ ଗ୍ରହଣକୁ ଆପତ୍ତି କରିଥାଆନ୍ତା । କିନ୍ତୁ ପେର୍-ବୁଢ଼ାର କଣ୍ଠରୁ ଭୟ ପାଇ ଯାଇଥିବା ମୁହଁ ପୁଣି ହସହସ ହୋଇ ଉଠିଲା, ଏବଂ ସେ ହାତ ବଢ଼େଇଲା ବାବୁଙ୍କ ଆଡ଼କୁ । ତେଣୁ ରଞ୍ଜୁବାବୁ ତାର ହାତରେ ନୋଟ୍‌ଗୁଡ଼ିକ ଗୁଞ୍ଜି ଦେଇ ପୁଣି ପାଟି କରି ଉଠିଲେ—

"ଆଉ ନିକାଲ୍ ଏଇ ପେରଟାକୁ, ଅଭି, ଏଇକ୍ଷଣି, ନହେଲେ ବୁଝିଚୁ ମୁଁ କିଏ ।"

ଘଟଣାସ୍ଥଳରେ ଗୁଡ଼ିଏ ଲୋକ ଜମା ହୋଇଗଲେଣି ସେତେବେଳକୁ । କିନ୍ତୁ, କେହି ପାଟି ଫିଟେଇଲେ ନାହିଁ । ମୋଟ ଉପରେ ଆଖି ଠାରାଠାରି ଆମୋଦ ଛଡ଼ା ଅନ୍ୟ କୌଣସି ଭାବ ଫୁଟି ଉଠୁନଥିଲା ତାଙ୍କ ଚେହେରାରେ । ଯେମିତକି ରଞ୍ଜୁବାବୁ ଜନିତ ଏଭଳି ଘଟଣା କିଛି ନୂଆ ନୁହେଁ ସେମାନଙ୍କ ଅନୁଭୂତିରେ ।

ଜୁଗୁପ୍ସାବିରି ଜ୍ୟୋତି ଫୁଟି ଉଠୁଥିଲା ଖାଲି ଜଣକ ଚାହାଣିରେ । ନବରି ସ୍ତ୍ରୀ ଲବଣ ସିଧାସଳଖ ଅନେଇଥିଲା ରଞ୍ଜୁବାବୁଙ୍କ ଆଡେ । ସତେକି ସୁବିଧା ହେଲେ ସେ ମଧ୍ୟ ତାକୁ ଅଭି, ତତ୍‌କ୍ଷଣାତ୍ ଭସ୍ମ କରିଦିଅନ୍ତା । ତେବେ ସେ ସ୍ଥିର କରିଥିଲା ଯେ ଯାହାହେଉ ପଛେ ସେ ଘରକୁ ଉଠେଇ ଦେବ ନାହିଁ । ଦେଖିବା କିଏ କ'ଣ କରିବ ତା'ର ।

ରଞ୍ଜୁବାବୁ ପିଠି ବୁଲେଇଲେ । ଏବଂ ଆଗକୁ ମାଡ଼ି ଚାଲିଲେ ଧପ୍‌ଧପ୍ ହୋଇ ।

× × × ଦୋଉ, ଶୁଣିଲୁଣି ବାପା କେମିତକା ସିନ୍ କଲେ ଆଜି ?

ଶୋଭାଦେବୀ ଚୁପ୍ ରହିଲେ । 'ହୁଁ'ଟିଏ ମଧ୍ୟ କହିଲେ ନାହିଁ, ଯଦିଓ ସେ ଘଟଣାର ମୋଟ କଥା ଶୁଣି ସାରିଥିଲେ ଗୃହକର୍ମଚାରୀ ରଞ୍ଜନା ପାଖରୁ । ଅଧିକନ୍ତୁ ଗୁରୁଗମ୍ଭୀର ହୋଇ ତାଙ୍କ ଦୃଷ୍ଟି ତଳକୁ କଲେ । ଯେମିତିକି ସେ ଆଶା କରିଥିଲେ ଯେ ପୁଅ ବୁଝିବ । ସାନପୁଅ ହେଲେ ବି କାଲି ସକାଳେ ଗ୍ରାଜୁଏଟ୍ ହେବାକୁ ଯାଉଛି, ସେ ତା ମାଆର ଆହତ ଅଭିମାନକୁ ବୁଝିବ, ଏବଂ ଆଉ କିଛି ପଚାରିବ ନାହିଁ ।

ହେଲେ ସୁବୁ (ସୁବ୍ରତ) ତା' ବୋଉର ଦୁଃଖକୁ ଅଗ୍ରାହ୍ୟ କଲା, କାହିଁକି ନା ସେ ଭାବିଲା ଯେ ତା'ର ଆତ୍ମସମ୍ମାନ ବି କିଛି ଊଣା ନୁହେଁ ।···ବୋଉ ତ ଯେତେ ହେଲେ ଘରେ ବସି ରହିଛି । ମୋପରି ନିଜ କାନରେ ଶୁଣି ନାହିଁ ସେମାନେ ବାପାଙ୍କ ବିଷୟରେ ଯାହା କହୁଥିଲେ ଆଜି ।··· ଏବେ ସେ ଏଇ ଗଳାଟାକୁ ସାତମତ ଘୃଣା କରେ । କୋଉଥିପାଇଁ ବାପା ଦି'ତିନି ବର୍ଷରେ ଥରେ ଏଠିକି ଆସନ୍ତି ଓ ଦି'ପୁଅଙ୍କୁ ବି ଡକେଇ ପଠାନ୍ତି ଯେଉଁଠି ଯେଉଁଠି ସ୍କୁଲ କଲେଜରୁ, ହଷ୍ଟେଲରୁ, କୁହନ୍ତି ଯେ ଏଇ ହେଉଛି ଆମ ଭିଟାମାଟି, ତାର ତାତ୍ପର୍ଯ୍ୟ ସେ ବୁଝିବାକୁ ନାରାଜ । ଭିଟାମାଟି ହେଉ କି ଯୋଉ ମାଟି ହେଉ, ଦୁର୍ଗନ୍ଧକୁ ସେ ସହି ପାରେ ନାହିଁ । କେତେଥର ସେ ବାହାନା କରି ଖସିଯାଇଛି, କିନ୍ତୁ ଏଥର ପାରିଲା ନାହିଁ । କାରଣ ବଡ଼ ଭାଇ ଅନେକ ଦୂରରେ ଅଛି, କୋଉ କମ୍ପିଟିସନ ପାଇଁ ପଢ଼ାପଢ଼ି କରୁଛି ବୋଲି ଲେଖିଲା । ତେଣୁ ତାକୁଇ ଆସିବାକୁ ପଡ଼ିଲା । ନହେଲେ କୁଆଡ଼େ ବାପା ରାଗିଯାଆନ୍ତେ । ହୁଏତ କାନ୍ଦିଥାଆନ୍ତେ ବୋଲି ବୋଉ କହୁଥିଲା । ···କାନ୍ଦିବେ ନାହିଁ କେମିତି ? ସକାଳୁ ସଞ୍ଜ ଯାଏ ମଦ ପିଇ ଗୁଲିଲେ ଅଉ କ'ଣ ହୁଅନ୍ତା ?

ଯାହା ହେଉ, ମୋର ଗୋଟାଏ ଲାଭ ହେଲା, ସୁବୁ ନିଜକୁ କହିଲା, ଟିକି ଆନନ୍ଦର ଛଳରେ । ଗଳାର ଅଧିକାଂଶ ଲୋକେ ମୋତେ ଚିହ୍ନନ୍ତି ନାହିଁ । ସେଇଲାଗି ମୁଁ ଚୁପ୍‌ଚାପ୍ ଠିଆହୋଇ ଶୁଣିପାରିଲି, ଏବଂ ଜାଣିଲି ସେମାନେ ବାପାଙ୍କୁ କେଉଁ ଦୃଷ୍ଟିରେ ଦେଖନ୍ତି । ଜଣ ଜଣ କରି କହୁଥିଲେ । ଜଣକ ପାଟିରୁ କଥା ନସରୁଣୁ ଆଉ ଜଣେ ମାଡ଼ି ବସୁଥିଲା, କାଳେ ତା'ର ବକ୍ତବ୍ୟ ବାଦ୍ ପଡ଼ିଯିବ । କହିଲେ ବାପା କୁଆଡ଼େ ପିଲାଦିନେ ଭୀଷଣ ଛଟରା ଥିଲେ, କେତେଙ୍କଠାରୁ ମାଡ଼ଗାଳି ଖାଉଥିଲେ । ସେଇଲାଗି ଏଇକ୍ଷଣି କାଡ଼ି ଦେଖାଉଛନ୍ତି ଅନ୍ୟମାନଙ୍କ ଉପରେ । କହିଲେ, ନିଜ ଘର ଖଣ୍ଡିକ ଭାଙ୍ଗି ରୁଜି ଗଲାଣି, ମରାମତି କରିବାକୁ ପଇସା ନାହିଁ, ଏଣେ ଅଡ଼ର ଚଳାଉଛି ଆମ ଉପରେ । ଆମେ ଆମ ପିଣ୍ଡାରେ ଅଖା ବାନ୍ଧିଲୁ କି ଗୁହୁଆ ପକେଇଲୁ, ତୋର ସେଥିରେ କ'ଣ ଗଲା ? ଏଥର ସେ ତମକୁ 'ଶଳା' କହିଲେ, କୁହ ମୁଁ ଗୋଟାଏ ମନ୍ତ୍ର ଦେଉଛି, ଅସଲ (ଏ଼ଟି, କାନରେ ଶୁଣିହେବ

ନାହିଁ ସେଇ ଅସଭ୍ୟ ଭାଷା)…ଆମେ ଆମ ବାପଙ୍କୁ ମୁଣ୍ଡେଇଲୁ କି ଫୋପାଡ଼ି ଦେଲୁ, ହ୍ୟାପ ତୋ ମୁଣ୍ଡ କାହିଁକି ବଥଉଛୁ ? ଶଳା ମଦୁଆ ଆମକୁ କ'ଣ ବୋଲି ପାଉଛୁ କି ? ଏବଂ ତାମ୍‌ସାର ଠାକୁର ପରି ଗୋଟାଏ ଅପରିଚ୍ଛନ୍ନିଆ ବୁଢ଼ା ବସିଥାଏ ପିଣ୍ଡା ଉପରେ । କନାକତିଗିର ଘେର ଭିତରେ । ଆଉ ଭୁଚ୍ଛାଟାକୁ ହସୁଥାଏ । ହସୁ ହସୁ କାଶୁଥାଏ ।

…ବୋଉକୁ ଏସବୁ କଥା କହିହେବ ନାହିଁ । କିନ୍ତୁ ତା'ର ଜାଣିବା ଦରକାର ଯେ ବାପାଙ୍କ ପୁଅମାନଙ୍କର ବି ଗୋଟାଏ ଆତ୍ମସମ୍ମାନ ଅଛି ଓ ସେ ଦିଗରେ ତା'ର କିଛି କରିବା ଦରକାର । ଟାଣ ହୋଇ ବାପାଙ୍କ ହାତରୁ ବୋତଲ ଛଡ଼େଇ ନେବା ଦରକାର…

ଏହେତୁ ସୁବ୍ରୁ ଚୁପ୍ ହୋଇ ରହିପାରିଲା ନାହିଁ । ଘଟଣାର ବ୍ୟାଖ୍ୟା ନକରି ତା'ର ଶେଷ କଥା ଶୁଣାଇଲା । କହିଲା—

"କାହିଁକି—କାହିଁକି ବାପା ଆମ ମୁଣ୍ଡ ତଳକୁ କରି ଦେଇଛନ୍ତି ? ନିଜ ମୁଣ୍ଡ ତ ତଳକୁ ଗଲା, ତାଙ୍କ ସାଙ୍ଗମାନେ କାହିଁ କେଉଁଠି ହେଲେଣି, ଆଉ ଇଏ ସେଇ ସୁପରିଣ୍ଟେଣ୍ଡେଣ୍ଟ୍ ହୋଇ ବସିଛନ୍ତି, ମାନେ ବଡ଼ କିରାଣି…"

"ସୁବ୍ରୁ !"

"ମୁଁ କ'ଣ ମିଛ କହୁଛି ? ମଦୁଆ ବୋଲି ବଦନାମ୍ ହୋଇ ନଥିଲେ…"

"ମିଛ ! ଜାଣିଛୁ ବାପାଙ୍କୁ କାହିଁକି ପ୍ରମୋସନ ମିଳିଲା ନାହିଁ ? ଏଇଥିପାଇଁ ଯେ ବାପା ତାଙ୍କ ଅଧୀନରେ ଥିବା ମଙ୍ଗୁ ମାହାନ୍ତି ବୋଲି ଗୋଟିଏ ଲୋକକୁ ପ୍ରମୋସନ୍ ଦେବା ପାଇଁ ରାଜି ହେଲେ ନାହିଁ । ଅଡ଼ି ବସିଲେ । କହିଲେ ସେ କାମରେ ଯେତେ ଧୂରନ୍ଧର ହେଲେ ବି ଗୋଟିଏ ଖରାପ ଲୋକ । ସ୍ୱାର୍ଥପର, ନୀଚ । ବୋହୂଟା ଉପରେ ଅତ୍ୟାଚାର କରେ ଯୌତୁକ ପାଇଁ । ଗରିବ ଗୁରୁବାଙ୍କୁ ଭୁଲେଇ ଭାଲେଇ ତାଙ୍କ ଜମି ହଡ଼ପ୍ କରିନଏ । ଏ କଥା ସମସ୍ତେ ଜାଣନ୍ତି । କିନ୍ତୁ ସିଏ ଥିଲା ମ୍ୟାନେଜରଙ୍କ ହାତବାରିସି । ଲାଞ୍ଚ ଦିଅାନିଆର ଦଲାଲ୍ । ଫଳରେ ସେଇଠୁଁ ଆରମ୍ଭ ହେଲା ମ୍ୟାନେଜରଙ୍କ ରାଗ ବାପାଙ୍କ ଉପରେ…ହଁ ତାଙ୍କର ଏତେ ମଦ ପିଇବା ଉଚିତ ନୁହେଁ । କିନ୍ତୁ ସେ ଭଲ ଲୋକ, ନିହାତି ଭଲ ଲୋକ, ବୁଝିଲୁ ସୁବ୍ରୁ । ତାଙ୍କ ଦୋଷ ଭିତରେ ଏତିକି ଯେ ସେ ମନ୍ଦକୁ ବରଦାସ୍ତ କରିପାରନ୍ତି ନାହିଁ…"

ସୁବୁ ମନେ ମନେ ହସିଲା ।···ବସ୍ତୁତଃ ପୁଅ ଆଗରେ ସ୍ୱାମୀର ଇମେଜ୍‌କୁ ବଞ୍ଚେଇ ରଖିବ ବୋଲି ବସିଛି, ଯେଉଁ ଇମେଜ୍ କେବେଠୁଁ ଗଳିଣି କୋଉ ରସାତଳକୁ · ଯାହାହେଉ ସେ ବୋଉ ମନରେ ଆଉ କଷ୍ଟ ଦେବାକୁ ଚାହିଁଲା ନାହିଁ । ଉଠି ପଡ଼ିଲା ।

କିନ୍ତୁ ସେ ସହଜେ ଉଠି ଆସି ପାରିଲାନାହିଁ । କାରଣ ଶୋଭାଦେବୀ ଗୋଟାଏ ଅସ୍ୱାଭାବିକ କାମ କଲେ । ଅସ୍ୱାଭାବିକ ଏଇ ହିସାବରେ ଯେ ସେ ତାଙ୍କ ସାନପୁଅକୁ ଏଭଳି ପ୍ରାଧାନ୍ୟ ଦେଇ ନଥିଲେ ଆଜିଯାଏଁ । ସେ ତା' ହାତକୁ ଧରି ପକେଇ କହିଲେ—

"ସୁବୁରେ, ଗୋଟାଏ କାମ କରିବୁ ମୋ ପାଇଁ ? ଦେଖିବୁ ଯେମିତି ବାପା ପୁଣି ଥରେ ନଯାଆନ୍ତି ସେଇ ବାଟରେ···"

ପୁଅ କାରଣ କଅଣ ବୋଲି ପଚାରିଲା ନାହିଁ । ମୁଁ ବେଶ୍ ଜାଣିଛି, ବୋଲି ଭାବିଲା ଏବଂ ତା' ବୋଉକୁ ଗୋଟାଏ ଜବରି 'ଆଚ୍ଛା'ର ପ୍ରତିଶ୍ରୁତି ଦେଲା । ଆଉ ହ'ହନ କଥା । ମୁଁ କ'ଣ କିଛି ଗୋଟାଏ ଉପାୟ କରିପାରିବ ନାହିଁ ମୋ ବୋଉ ପାଇଁ ? ଆଉ ବାପାଙ୍କ ପାଇଁ ?

କିନ୍ତୁ ସୁବୁ ପ୍ରକୃତରେ ଜାଣିନଥିଲା । ବାପା ପୁଣି ସେବାଟେ ଗଲେ ସେମାନେ ତାଙ୍କୁ ମୁହେଁ ମୁହେଁ ବାରି କଥା କହିବେ, ଏଇ ଥିଲା ତାର ଭୟ । କିନ୍ତୁ ଶୋଭାଦେବୀଙ୍କର ଆଶଙ୍କା ଭିନ୍ନ ପ୍ରକାର । ସେ ଡରୁଥିଲେ ରଞ୍ଜନ୍‌ବାବୁ କାଳେ ଦେଖିବେ ଯେ ଯୋଉ କଥାକୁ ସେଇ କଥା । ଯେ ତାଙ୍କ ଗର୍ଜନତର୍ଜନକୁ କେହି ପାସଙ୍ଗରେ ପକେଇ ନାହାନ୍ତି । ଯେର ମହଜୁଦ୍ ଅଛି । ତା'ଠାରୁ ବଳି ଅଧିକ ଅପମାନ ଆଉ କଅଣ ହୁଅନ୍ତା ?

ରଞ୍ଜନ୍‌ବାବୁ କ'ଣ ଏହି ଧରଣର ଅପମାନ ପାଇ ନାହାନ୍ତି ତାଙ୍କ ଜୀବନରେ ? ଯଥେଷ୍ଟ ପାଇଛନ୍ତି । ଲକ୍ଷ୍ୟ କରୁଥିବା ଯେକୌଣସି ଲୋକ କହିବ ଯେ ଫଳାଫଳର ନିକଟ ଅନେକ ଅଧିକ ଅଣେଇ ହୋଇଯାଇଛି ବିଫଳତା ଆଡ଼କୁ । ନିଜେ ରଞ୍ଜନ୍‌ବାବୁ ମଧ୍ୟ ଜାଣିଛନ୍ତି ସେକଥା । ତାଙ୍କୁ ଅସ୍ୱୀକାର କରିବାର ଦାମ୍ଭିକତା, ଯଥା ମୁହଁରେ ଗାଳିଗୁଲଜର ଛାପ, ହାତରେ ସିଗାରେଟ୍ ଟିଣ (ମଦ୍ୟପ ହେଲେ ବି ସେ ପ୍ରାୟ ସିଗାରେଟ୍ ଟାଣନ୍ତି ନାହିଁ), ଧପ୍ ଧପ୍ ଚାଲି, ଇତ୍ୟାଦିର ସତ୍ତ୍ୱେ । ତେବେ ରଞ୍ଜନ୍‌ବାବୁଙ୍କର ଯେଉଁ ପ୍ରକାର ସମ୍ପର୍କ ଏଇ ଗଳି ସାଙ୍ଗରେ, ରାଜା-ପ୍ରଜାର ରୋମାଣ୍ଟିକ୍ ସମ୍ପର୍କ, ସେଥିରେ କ'ଣ ଏଠିକା ବିଫଳତା ତାଙ୍କୁ ଉଚିତରୁ ଅଧିକ ବାଧନ୍ତା ନାହିଁ ? ଏବଂ ସେ ସେଇଠୁଁ ଉଚିତରୁ ଅଧିକ ପିଅନ୍ତେ ନାହିଁ ? ଏହେତୁ

ଶୋଭାଦେବୀଙ୍କର ପୁଅ ହାତଧରା ଆତୁରଆ ପଣକୁ ହସିବାର ନୁହେଁ । ବରଂ ତାଙ୍କୁ ଧନ୍ୟବାଦ ଦେବା କଥା ଯେ ସ୍ୱାମୀଙ୍କର ମଙ୍ଗଳ ପାଇଁ ଯେତେ ଦୂରକୁ ସମ୍ଭବ, ସେ ସେତେ ଦୂରକୁ ଯିବାରେ ହେଳା କରନାହାନ୍ତି । ଦରକାର ହେଲେ ହୁଏତ ଆହୁରି ଦୁଃସାହସୀ ହୋଇପାରିବେ ।

ଭାଗ୍ୟକୁ ମାଆ ଓ ପୁଅ ରକ୍ଷା ପାଇଗଲେ । କାରଣ ସେଇଦିନ ଟେଲିଗ୍ରାମ୍ ଆସିଲା ମଞ୍ଜୁଲା କେମିକ୍ୟାଲ୍‌ସ୍‌ର ମ୍ୟାନେଜରଙ୍କ ପାଖରୁ ଯେ ତୁରନ୍ତ ଫେରିଆସ କାମକୁ । ଜରୁରୀ ଅବସ୍ଥା । ଅଫିସ୍‌ରେ ଷ୍ଟ୍ରାଇକ୍ । ତେଣୁ ରଞ୍ଜନ୍‌ବାବୁ ସସ୍ତ୍ରୀକ ଫେରିଗଲେ ତାଙ୍କ କର୍ମସ୍ଥଳୀ ବମ୍ବେକୁ । ଫଳରେ ଖାଲି ସୁବ୍ରତର ଆଖିରେ ପଡ଼ିବାକୁ ଥିଲା, ସେ ତା' ହଷ୍ଟେଲକୁ ଫେରିଯିବା ପୂର୍ବରୁ, ଯେ ସବୁ ସେମିତି ଅଛି । ଘେର । ଏବଂ ଘେର ଭିତରୁ ଶୁଭୁଥିବା ଅସଣ୍ଟିଆ କାଶ । ସେଇଠୁଁ ସେ ବଞ୍ଚିକନ ପରି ମୁକ୍ତ ହେଲେଇ ଆଗେଇଲା—ମୁଁ ଜାଣିଥିଲି ! ଜାଣିଥିଲି ଏଇଆ ହେବ !

ଏଇଠି କଥାଟି ଛିଣ୍ଡି ଯାଇ ଥାଆନ୍ତା । ପୁଣି ଦି'ତିନି ବର୍ଷ ପରେ ତାଙ୍କ ଗାଁ ଘରକୁ ଆସିଲା ବେଳକୁ ରଞ୍ଜନ୍‌ବାବୁ ସମ୍ଭବତଃ ଘେରର ସ୍ଥିତିକୁ ନେଇ ବିଶେଷ ବିଚଳିତ ହୋଇ ନଥାଆନ୍ତେ । କାରଣ ସେଥିମଧ୍ୟରେ ସେ ନିଶ୍ଚୟ ଅନେକ ନୂଆ କାମ କରିଥାଆନ୍ତେ ଓ ତା'ର ଫଳାଫଳକୁ ନେଇ ମୁଣ୍ଡ ଖେଳାଉ ଥାଆନ୍ତେ । କିନ୍ତୁ ଦୈବାତ୍ ତାଙ୍କୁ ପ୍ରାୟ ଛଅମାସ ପରେ ଫେରିବାକୁ ପଡ଼ିଲା । ଝିଆସ ବାହାଘରକୁ । ଏବଂ ଗାଁ ବାଟେ ଗତି କଲାବେଳେ ସ୍ୱାମୀସ୍ତ୍ରୀ ଦେଖିଲେ ଓ ମନେ ମନେ ଖୁସିଟାଏ ହେଲେ—ଏଇଠି ସେ ଥିଲା । ନାହିଁ ଏଇକ୍ଷଣି !

ଘେର ନାହିଁ । ତା'ର ଚନ୍ଦ୍ରବର୍ତ୍ତୀ ନାହିଁ । ଅଶିଣ ମାସରେ ଯେଉଁ ପବନ ବହୁଛି, ସୁନାଛୁଆଁ ସୁଲୁସୁଲିଆ ପବନ, ଲେସେମା—ଅସନା ଗଳଟାକୁ ମଧ୍ୟ ହସିବା ପାଇଁ ବାଧ୍ୟ କରୁଛି, ତାକୁ କୋଉ ମୃତ ଗୃହର କ ଅଖାଡ଼ୁଆ ଅଖା ହଇରାଣ କରୁ ନାହିଁ । ପ୍ରତ୍ୟେକ ଦାଣ୍ଡପିଣ୍ଡା ଖୋଲା ମୁକୁଳା । ସ୍ୱାଧୀନ !

ଆଃ ! ଏଇ କ'ଣ ସେଇ ଅସଭ୍ୟ ଘେରଦିଆ ପିଣ୍ଡା ଯେଉଁଠି ଆଜି ଲଙ୍ଗଳା ମାଧବଟିଏ ଗୁ ରୁଣ୍ଡୁଛି ? ଏବଂ ମୁକ୍ତକେଶୀ ତା' କେଶକୁ ନିଃସଙ୍କୋଚରେ ଝୁଲେଇ ଦେଉଛି ସୂର୍ଯ୍ୟଙ୍କ ଆଡ଼କୁ, ଗଳରାଜ୍ୟର ରାଣୀ ପରି ?

ଇଏ ଥିଲା ସକାଳର ଦୃଶ୍ୟ । ଉପରବେଳା ରଞ୍ଜନ୍‌ବାବୁ ଘୋଷଣା କଲେ ସେ ଟିକିଏ ବୁଲି ଆସିବେ ବାହାରୁ । ମୂଳ ଉଦ୍ଦେଶ୍ୟ, ତାଙ୍କର କୀର୍ତ୍ତିସ୍ତମ୍ଭ ପାଖରେ ଠିଆହେବେ ଦି'ମିନିଟ୍, ଓ ତାଙ୍କ କୃତିତ୍ୱକୁ ପ୍ରତ୍ୟକ୍ଷରେ ଉପଭୋଗ କରିବେ । କିନ୍ତୁ

ଶୋଭାଦେବୀ ତାଙ୍କ ବାଟ ଓଗାଳିଲେ, "କଅଣ ବାହାଘରକୁ ଆସିଛ ଟିକିଏ ସାହାଯ୍ୟ ହେବ ନା ବାହାରେ ବୁଲିବ ଟେଁ ଟେଁ ହୋଇ ? କଅଣ ଆଜିଯାଏଁ ଦେଖି ନା ତମ ନେଫେଡ଼ା ଗଳାକୁ ନା ସହରକୁ ?" ଏତିକିରେ ସରିଲା ନାହିଁ, ଆହୁରି କହି ଗ୍ଲିଲେ । ସନ୍ଦେହ ହେଲା (ସନ୍ଦେହ ମିଛ ନୁହେଁ) ଯେ ତାଙ୍କ ପ୍ରତିରୋଧର ବିଶେଷ କାରଣ ଅଛି । ଏବଂ ତା' ପଛକୁ କୌଣସି ସଦ୍ୟ ଆବିଷ୍କୃତ ତଥ୍ୟ ।

କିନ୍ତୁ ଦୁଃଖର ବିଷୟ ରଞ୍ଜୁବାବୁ ତାଙ୍କ କଥା ମାନିଲେ ନାହିଁ ।

ରଞ୍ଜୁବାବୁ ଫେରିଲେ ସନ୍ଧ୍ୟାବେଳକୁ । ଆସୁ ନଆସୁଣୁ ଖଟରେ ପଡ଼ି ରହିଲେ । ଏବଂ କଟମଟ ହୋଇ ଅନେଇଲେ ଶୋଭାଦେବୀଙ୍କ ଆଡ଼କୁ । ସତେକି ଶରବିଦ୍ଧ କପୋତ ତା'ର କପୋତୀ ଠାରୁହିଁ କୈଫିୟତ୍ ଗ୍ହେଁ । ସବୁ ଦୋଷ ତାଆର । ତାଆର ମିଛ କଥା । ମିଛ ପ୍ରେମ । ମିଛ ଆଶ୍ୱାସନା ··

ଶୋଭାଦେବୀ ବୁଝିଲେ । ବେଶ୍ ଅନୁମାନ କରି ପାରିଲେ ଯେ ସେ ସେର-ମୁକ୍ତ ପିଣ୍ଡା ପାଖକୁ ଯାଇଥିଲେ ଏବଂ ଜାଣିପାରିଥିବେ ଯେ ସେର ବୁଢ଼ା, ହୁଏତ ତା ପ୍ରାଣବନ୍ଧୁ ତାଙ୍କ ଦଲଦାଣିଆ ଦାନକୁ ଜାବୁଡ଼ି ଧରି ଗ୍ଲିଗଲାଣି ଉପରକୁ । ଯଥାଶୀଘ୍ର ଓ ଯଥାସମୟରେ ଏବଂ ସେଥିପାଇଁ ସେର ହଟିଗଲାଣି । ମାଧବ ଗୁରୁଣ୍ଡୁଛି ମୁକ୍ତକେଶୀ ବଳିପୁଛି । କିନ୍ତୁ ସେ ବୁଝି ପାରିଲେ ନାହିଁ ଯେ ଖାଲି ସେତିକିରେ ସ୍ୱାମୀ କାହିଁକି ଏମିତି ଲହୁଲୁହାଣ ହୋଇ ଫାଁଗାଳି ପଡ଼ି ଯାଇଛନ୍ତି । ଯେହେତୁ ସେ ଶୁଣି ନ ଥିଲେ ମୁକ୍ତକେଶୀର ମନବୋଧିଆ ଭର୍ତ୍ସନା । ତାଙ୍କୁ ଛୁଇଁ ନଥିଲା ତା' ପ୍ରତିହିଂସାର ଜ୍ୱାଳା ଓ ବିଷ—

"ମଲାଣି ଗୋ ମଲାଣି । ତମ ସାଙ୍ଗ ଆଉ ତମ ଭଲପଣିଆ (ହିଁଃ, ହିଁଃ)···"

ତେଣୁ ଶୋଭାଦେବୀ ବିମୂଢ଼ ଦୃଷ୍ଟିରେ ଅନେଇଲେ ତାଙ୍କ ସ୍ୱାମୀଙ୍କୁ । ଏବଂ ତାଙ୍କ ଗ୍ହାଣିରେ ଗ୍ହାଣି ମିଳେଇ ନ ପାରିଲାରୁ ବିବ୍ରତ ହେଲେ । କହିବାକୁ ଗ୍ହିଁଲେ ଯେ ହେଲା, ମାଡ଼ ଖାଇଲ, ତା'ବୋଲି ମୋ ଉପରେ ରାଗିବା ଉଚିତ ନୁହେଁ । ସତେକି ସବୁ ଦୋଷ ମୋର !

···ହଁ, ଦୋଷ ମୋଅରି । ମନେ ଅଛି ଥରେ ବାହାଘର ପରେ ପରେ ତମେ ମୋତେ ଗୋଟାଏ ଅଦ୍ଭୁତ ପ୍ରଶ୍ନ ପଗ୍ରିଥିଲ, ମୋ ଛାତିରେ ମୁଣ୍ଡ ଦେଇ । ଝରକାବାଟେ ଜୋଉ ଜହ୍ନକୁ ଅନେଇଥିଲ କି ନାହିଁ ଭଗବାନ୍ ଜାଣନ୍ତି । ପଗ୍ରିଲ —ତୁମେ କଅଣ ଆଉ କାହାକୁ ବାହା ହୋଇଥିଲେ ଏତେ ସୁଖୀ ହୋଇପାରିଥାଆନ୍ତି ?

ଆଉ ମୁଁ ଅଲକ୍ଷଣୀ ତମ କଥାରେ ଫିକ୍‌କିନା ହସି ଦେଉଥିଲି । ଏବଂ ଗେହ୍ଲାରେ ତମ ଓଠକୁ ଚମୁଟି ଦେଇ କହୁଥିଲି—ସିଲ୍‌ଲି ! ଆଉ କାହାକୁ ବାହା ହୋଇଥିଲେ ସେ କ'ଣ ମୋ ସ୍ୱାମୀ ହୋଇ ନଥାଆନ୍ତା ? ସେଇଠୁଁ ତମେ ଝାଉଁଳିଗଲ । ବୋଧହୁଏ ସେଇ ଦିନଠୁଁ ଭାବି ନେଇଛ ଯେ ମୋ ଭଲପାଇବାରେ କିଛି ମୂଲ୍ୟ ନାହିଁ, ଯେମିତିକି ଏଇ କାଉଁଛୁଣା ସଂସାରର କେଉଁ ଜାଗାରେ ନାହିଁ କି ନିୟମରେ, ଆବେଗରେ, ଉଦ୍ୟମରେ, ସ୍ନେହଶୀଳତା ଆଉଁସାରେ । ସେଇଥିପାଇଁ ତମେ ସବୁବେଳେ ଫେଲ୍ ମାରିବ । ଶତ ଚେଷ୍ଟା କଲେ, ଶହେ ହଜାର ବୋତଲ ପିଇଗଲେ ବି ଫେଲ୍ ମାରିବ ।

···ଆରେ, ଭୁଚ୍ଛାଟାକୁ ସେମିତି ଅନେଇଛ କାହିଁକି ମ ? ତମେ ଆଜି ସୁଦ୍ଧା ପିଲା ହୋଇ ରହିଗଲ, ସତକଥାଟା ଦିନ-ରାତି ପରି ସିଧା, ଦୁଇରେ ଦୁଇ ମିଶିଲେ 'ଶଳା' ଶୂନ୍‌ ହେବାକୁ ବାଧ ବୋଲି ଭାବିଲ, ସେଥିପାଇଁ କ'ଣ ମୁଁ ଦାୟୀ ? ଜାଣିଛ—ସତକଥା ହେଉଛି ଏଇ, ଯେ ଆଉ କେଉଁ ଦେଶ ଆଉ କେଉଁ ସମାଜ ହୋଇଥିଲେ ମୁଁ ତମକୁ କେବେଠୁଁ···

କେଜାଣି । ଅନ୍ତତଃ ମୋ ସାମ୍‌ନାରେ ବସିଥିବା ଏଇ ବୁଢ଼ାଟିକୁ ଗ୍ରାହ୍ୟ ଦେଇପାରି ନଥାଆନ୍ତି । ଯାହାର ଦୋହଦିଆ କଟମଟ ଚାହାଣି କ୍ରମଶଃ ଜୁଳୁଜୁଳୁ ହୋଇ ଆସୁଛି···ତା'ପରେ ଢୁଳୁଢୁଳୁ ହେବ । ଏଇ ଅନବଗୁଣ୍ଠନ, ତା'ର ମାୟା-ମାଧୁରୀକୁ କିଏ ବୁଝିବ ମୋ ଛଡ଼ା ?

ଦୁଃଖର ବିଷୟ ଶୋଭାଦେବୀ ହସି ପକେଇଲେ । ଅଗତ୍ୟା ରଞ୍ଜୁବାବୁଙ୍କୁ ପୁଣି ରାଗିବାକୁ ପଡ଼ିଲା, ତାଙ୍କ ସ୍ତ୍ରୀଙ୍କ ଉପରେ ।

## ଚଘର

ବୁଦ୍ଧିମତୀ ପତ୍ନୀ ଶୋଭାଦେବୀ ମଧ୍ୟ ତାଙ୍କ ମଦୁଆ ସ୍ୱାମୀଟିକୁ ଭଲପାଆନ୍ତି, ସେଇ ଭଲ ପାଇବାରେ ଗଣି ଗଣି ଦୟା ଥାଉ ପଛେ । 'ଆଉ କେଉଁ ଦେଶ ଆଉ କେଉଁ ସମାଜ ହୋଇଥିଲେ ମୁଁ ତମକୁ କେବେଠୁଁ ଛାଡ଼ି ଚାଲି ଯାଇଥାଆନ୍ତି' ବୋଲି ଯେତେ ମନେ ମନେ କହିଲେ ମଧ୍ୟ ପରେ ପରେ ସେ ତାଙ୍କ ପ୍ରତି ସଦୟ ହୋଇ ଉଠନ୍ତି । ବଡ଼ପଣରେ ହସଟିଏ ବି ହସିଦିଅନ୍ତି । ଏଇଠି ଲେଖକ ମହାଶୟ, ଆପଣ ଭାରତୀୟ ସଂସ୍କୃତିର ଗୀତଟିଏ ଗାଇଛନ୍ତି, ନୁହେଁ ?

ପିଲାଦିନେ ଯେ ତା' ବାପାଙ୍କ ଉପରେ ରାଗି ତାଙ୍କ ମୁହଁ ଉପରକୁ ପିନ୍ଧା ଜାମାପଟା ଫୋପାଡ଼ି ଦେଇ ବାହାରକୁ ଚାଲି ଆସୁଥିଲା, ଆଉ ସେଇ ପ୍ରଚଣ୍ଡ ରାଗ ଆଜି ମଧ୍ୟ ତା' ଚରିତ୍ରର 'ବିଶେଷ' ଗୁଣ, ଯାହା ମଦନଶାରେ କୋଉ ଆକାଶକୁ ଛୁଏଁ 'ଶଳା' ଆଜି ଯେତେକ ଗାଳିଗୁଲଜର ଶବ୍ଦ ପ୍ରୟୋଗ କରି, ସେଇ କ୍ରୋଧୀ ଲୋକଟା ପ୍ରତି ଏତେ ଦରଦ ଆପଣଙ୍କର, ଲେଖକ ମହାଶୟ ? ଶେଷକୁ ତାଙ୍କ ସ୍ତ୍ରୀଙ୍କୁ ମଧ୍ୟ ଚାହୁଁ ଚାହୁଁ ଖସେଇ ଆଣିଲେ ଏକ ନ୍ୟାଯ୍ୟ ବିଦ୍ରୋହୀ ଭାବର ଅନୁଭବରୁ ? ଭାରତୀୟ ସଂସ୍କୃତି କଥା ମିଛ, ଅସଲ କଥା ହେଉଛି ଆପଣଙ୍କର ଏକ ଅହେତୁକ ଦୁର୍ବଳତା ଏଇ ଦୁର୍ବଳ ଲୋକଟା ପ୍ରତି ।

ଆପଣ ପ୍ରକାରନ୍ତରେ ଶୋଭାଦେବୀଙ୍କ ମୁହଁରେ ଗୋଟାଏ ହାସ୍ୟାସ୍ପଦ ସଫେଇ ବାଢ଼ିଛନ୍ତି ଲୋକଟାର ରାଗ ଓ ମଦୁଆପଣକୁ କ୍ଷମଣୀୟ ବୋଲି କହିଲା ପରି । କ'ଣ ନା ସେ ଆଜି ସୁଦ୍ଧା ପିଲା ହୋଇ ରହିଗଲା, ବୁଝିଲା ନାହିଁ ଯେ ସତକଥାଟା ଦିନରାତି ପରି ସିଧା ନୁହେଁ, କି ଦୁଇରେ ଦୁଇ ମିଶେଇଲେ ଚାରି ହୁଏ ନାହିଁ ସବୁବେଳେ । ସ୍ତ୍ରୀ'କୁ କଣ ସରଳ ସୁନ୍ଦର ପିଲାପଣ

କହିବ, ନା ଘୋର ଜନବୋଧତା ? ନା ମୂଢ଼ ଅଗୁଆଁ ରପଣ ଯେ ମୁଁ ଯାହା ଭାବୁଛି ତାହାହିଁ ଠିକ୍, ଏବଂ ବାକୀ ସବୁ ଭୁଲ୍ ? ଶିକ୍ଷିତ ବଡ଼ ମଣିଷଟିଏ କ'ଣ ଏତକ ବୁଝିବାକୁ ଅକ୍ଷମ ଯେ ପ୍ରତ୍ୟେକ ବିବାଦୀୟ ଘଟଣାକୁ ସବୁ ଦିଗରୁ ବିଗ୍ରୁର କରି ତା'ର ଗହିରକୁ ଯାଇ ଦେଖିଲେ ଯାଇଁ ଜଣାପଡ଼ିବ କେଉଁଟା ସତ ଓ କେଉଁଠି କାହାର ଭୁଲ୍ ରହିଗଲା ? ଯେ ଏଇ ଯେଉଁ ଅପରିଚ୍ଛନ୍ନ 'ଘେର'ଟା ଆଖିରେ ପଡ଼ୁଛି ତା'କୁ ଗ୍ଭଗିମାଗି ହଟେଇ ଦେଲା ପୂର୍ବରୁ ଭାବିବାକୁ ପଡ଼ିବ ଯେ କେଉଁଥିପାଇଁ ଏଇ ଅଘଟଣର ଆବିର୍ଭାବ ? କିନ୍ତୁ ମଦନଶାରେ ଚୁର୍ ହୋଇ ଗାଳି ବୃଷ୍ଟି କରି ଗ୍ଭଲିଥିବା ବାବୁଘର ପୁଅ ରଞ୍ଜୁବାବୁର ସମୟ କାହିଁ ଭାବିବା ପାଇଁ ? ନା କାହାର ସାହସ ଅଛି ତାଙ୍କୁ ବୁଝେଇବା ଲାଗି ଯେ ଶୁଣନ୍ତୁ ବାବୁ, କଥାଟା ଠିକ୍ ତା' ନୁହେଁ ? ସହଜେ ଏଇ ଲୋକମାନେ ଶୋଧା ଖାଇପାରନ୍ତି ଲବନ କାଉସ୍ଥ ଅସଭ୍ୟ ନାସ୍ତିମାନଙ୍କଠାରୁ, କିନ୍ତୁ କେହି ତାଙ୍କୁ ବୁଝେଇ ବସିବାର କଷ୍ଟ କରେ ନାହିଁ ।

ଧର ଏବେ ସେ ଭାବଲେ ଏବଂ ତାଙ୍କ ହିସାବରେ ଯଥାର୍ଥରେ ଭାବଲେ ଯେ ଅନେକ ନିର୍ଦ୍ଦୋଷଙ୍କ ପ୍ରତି ଅନ୍ୟାୟ କରାଯାଉଛି ଆମ ସମାଜରେ, ତା'ର ପ୍ରତିକାର ପାଇଁ କ'ଣ ବୋତଲ ପରେ ବୋତଲ ପିଇ ଗ୍ଭଲିବା ଦରକାର ? କ'ଣ ଲାଭ ହେଉଛି ସେଥିରେ—ତାଙ୍କର ନା କୋଉ ହତଭାଗାର ?

ବୁଝିଲେ ଲେଖକ ମହାଶୟ, ଆପଣ ଏଇ ଯେଉଁ ଚରିତ୍ରଟିକୁ ସୃଷ୍ଟି କରିଛନ୍ତି, କୌଣସି ସୁଧୀ ପାଠକ କିମ୍ବା ପାଠିକାର ଉଚିତ ନୁହେଁ ତାକୁ ଭଲପାଇବା । ତା' ସାଙ୍ଗରେ ଯେତେ ଦୟା କି ସହାନୁଭୂତି ମିଶେଇଲେ ମଧ୍ୟ । ବରଂ ଶୁଭକାଙ୍କ୍ଷୀମାନଙ୍କର ତାକୁ ଯଥାବିଧି ତିଆରିବା ଉଚିତ, ଶାସନ କରିବା ଉଚିତ । ବୋଧହୁଏ ମୂଳରୁ ତା' ବାପମାଆ ହେତୁକ କରିପାରିଲେ ନାହିଁ ବୋଲି, ତା'ର ଏଇ ଅବସ୍ଥା ଆଜି···

ଆଜି ଗପଟିକୁ ପୁଣି ଥରେ ପଢ଼ିଲା ବେଳେ ମୋର ମନେ ହୁଏ ଯେ ମୋତେ ଏହିପ୍ରକାର ସମାଲୋଚନାର ଶରବ୍ୟ

ହେବାକୁ ସମ୍ଭବ । କାରଣ ଏଥିରେ ବେଶ୍ ଜଣାପଡ଼ିଯାଉଛି ଯେ ଚରିତ୍ରଟିର ଶତ ଦୋଷ ଦୁର୍ବଳତା ସତ୍ତ୍ୱେ ମୁଁ ଟିକିଏ ଢଳି ଯାଇଛି ତା' ଆଡ଼କୁ । ତା'ର ଦୁଇଟି କାରଣ ଥାଇପାରେ । ହୁଏତ ମୁଁ ସେଇ ରୋମାଣ୍ଟିକ୍ ଗୋଷ୍ଠୀର ଜଣେ, ଯେଉଁମାନେ ବଳିଷ୍ଠ ଚରିତ୍ରଠାରୁ ଦୁର୍ବଳ ଦେବଦାସ୍‌ମାନଙ୍କୁ ହିଁ ବେଶି ଭଲପାଆନ୍ତି—ତାଙ୍କର ନିଷ୍ଫଳ କ୍ରୋଧ, କାନ୍ଦଣା, ତଥା ତାଙ୍କର ଆତ୍ମଘାତୀ ନିଶାସେବନ ସମେତ । ଅଥବା ସେ ମୋର ଆତ୍ମୀୟ, ଶୋଭିଦେବଙ୍କ ପରି, ତେଣୁ ମୁଁ ସମ୍ପୂର୍ଣ୍ଣ ନିରପେକ୍ଷ ହୋଇପାରିଲି ନାହିଁ ତାଙ୍କ ବିଷୟରେ କିଛି କହିବାକୁ ଯାଇ ।

ଏହି ସମସ୍ତ ସମାଲୋଚନାକୁ ମୁଁ ମୁଣ୍ଡପାତି ମାନି ନେଉଛି । କାରଣ ସେଥିରେ ଅଳ୍ପବହୁତ ସତ୍ୟତା ନାହିଁ ବୋଲି ମୁଁ କହିବ ନାହିଁ । ମୁଁ କେବଳ ଦି'ପଦ କଥା କହିବାକୁ ଚାହେଁ, ମୋର ସାପେକ୍ଷତାର ସ୍ୱରୂପକୁ ଚହ୍ନାଇବା ଲାଗି । ଭାବନ୍ତୁ ଦେଖି—

ବଳିଷ୍ଠର ଅନାସ୍ଥା ଭାବଠାରୁ ଦୁର୍ବଳର ସମ୍ବେଦନା କ'ଣ ବେଶୀ ଆକର୍ଷଣୀୟ ନୁହେଁ ?

ବୁଦ୍ଧିମାନ୍‌ର ନିଷ୍କ୍ରିୟତା ଠାରୁ ନିର୍ବୋଧର ସକ୍ରିୟ ଭାବାବେଗ କ'ଣ ବେଶୀ ସ୍ୱାଗତଯୋଗ୍ୟ ନୁହେଁ ?

ହଁ, ରଞ୍ଜୁବାବୁ ଚଟ୍‌କିନି ଚିଗିଯାଆନ୍ତି, ଉଚିତରୁ ଅଧିକ ପିଆପିଇ କରନ୍ତି, ଇତ୍ୟାଦି । ହେଲେ କୋଉ ମନେପଡ଼ୁ ନଥିବା ପିଲାଦିନର ସାଙ୍ଗ ପାଇଁ ତାଙ୍କ ପ୍ରାଣ ଏମିତି କାନ୍ଦି ଉଠେ ଯେ ହାଙ୍ଗେ ସାଙ୍ଗେ ଦୁଇଟା ନୋଟ୍ ପକେଟରୁ କାଢ଼ି ବଢ଼େଇ ଦିଅନ୍ତି ତା' ପୁଅ ହାତକୁ ତା'ର ଚିକିତ୍ସା ପାଇଁ । ଭାବାବେଗର ଏଇ ଅତିଶଯ୍ୟତା କ'ଣ ଅପୂର୍ବ, ତେଣୁ ସୁନ୍ଦର, ନୁହେଁ ଆଜିର ସମାଜରେ, ଯେଉଁଠି ପରୋପକାରର କାଦୁଅରୁ ନିଜକୁ ବଞ୍ଚେଇ କରି ବାଟ ଚାଲିବା ହିଁ ସୁସ୍ଥ ନାଗରିକତାର ଲକ୍ଷଣ ?

ହଁ, ସେ ମୋର ଆତ୍ମୀୟ । ମୁଁ ତାକୁ କେତେ ଗାଳି ଦେଇଛି ମଦପିଆ ସମେତ ତା'ର ନାନାଦି ପ୍ରବୃତ୍ତିକୁ ନେଇ । କିନ୍ତୁ ଯେତେବେଳେ ଦେଖେ ଯେ ଅନ୍ୟର ସୁଖ ଦୁଃଖରୁ ସେ ନିବୃତ୍ତ ହୋଇ ରହିପାରେ ନାହିଁ, ହେତୁକ ମୋତେ ଟାଣିନିଏ ତା' ଆଡ଼କୁ, ଏବଂ ମୁଁ ତାକୁ ଭଲ ନପାଇ ରହି-ପାରେ ନାହିଁ । ଏଇ ଗପଟି ସେଇ ଭଲପାଇବାର ଅଙ୍ଗୀକାର ଛଡ଼ା ଆଉ କିଛି ନୁହେଁ । ଏବଂ ସେଥିପାଇଁ ଲଜ୍ଜିତ ହେବାର କୌଣସି କାରଣ ନାହିଁ ବୋଲି ମୁଁ ମନେ କରେ ।



# ଧୂସର ମଧୁର

ଆକାଶଟା ଯେତକ ଧୂଳିଆ ସେତକ ନାଲିଚିଆ ଦିଶୁଛି । ଶୁଭ୍ର ତେଜର ତାତ ଦେହକୁ ଜାଳିପୋଡ଼ି ଦେଉ ନାହିଁ, ଯେମିତି ଲାଗୁଥିଲି ଏଇ ହପ୍ତାକିଯାକ । ସତେକି ରାଗିଲା ସୂର୍ଯ୍ୟ ଆଉ ରାଗିପାରୁ ନାହିଁ । ଆଖିର ନାଲି ଫଉଳ ଯାଉଛି ସିନା, ଏହି ହେଉଛି ଅଭିମାନିଆ ନାଲି, କିଂକର୍ତ୍ତବ୍ୟବିମୂଢ଼ତାର କ୍ଲାନ୍ତ୍ରଡ଼ିଆ ନାଲି, କାନ୍ଦ ପକାଇବାର ପୂର୍ବ ଲକ୍ଷଣ ।

ଇଏ ଦିଲ୍ଲୀ ଅଞ୍ଚଳରେ ଗୋଟିଏ ଅଶୋଭନୀୟ ଦୃଶ୍ୟ, ଯାହା ହଠାତ୍ ବେଳେ ବେଳେ ଦେଖାଦିଏ ନିଦାରୁଣ ଗ୍ରୀଷ୍ମ ମଝିରେ । ସେଇଠୁଁ ପାଣି ଟିକିଏ ଝରେ ହୁଏତ, କିମ୍ବା ଆଖିର ଛଳଛଳ ପଣିଆଁ ସାର ହୁଏ । କିନ୍ତୁ ଦେହମନ ଅଳ୍ପବହୁତ ଥଣ୍ଡା ହୋଇଯାଏ ଧୂଳି-ନାଲିର ଆସ୍ତରଣ ତଳେ । ସତେକି କ'ଣ ବରଣୀୟ ନୁହେଁ ?

ଦିଲ୍ଲୀକୁ ଲାଗିଥିବା ଯୋଧାବାଇ ନଗରରେ ଏହି ଦୃଶ୍ୟକୁ ଅଶୋଭନୀୟ ବୋଲି ମଧ୍ୟ କହି ହେଉ ନଥିଲା । ମହନୀୟା ରାଜପୁତ ରମଣୀଙ୍କୁ ସ୍ମରଣ କରୁଥିବା ପ୍ରାଇଭେଟ୍ କଲୋନିର ଅନ୍ୟତମ ବିଶେଷତ୍ୱ ହେଉଛି ଏଇ ଯେ ଏଠିକାର ଧନୀମହଲ ଫ୍ଲାଟ୍-ବିଶିଷ୍ଟ କୋଠାମାନ ରାଜଧାନୀର ଡି. ଡି. ଏ. ଫ୍ଲାଟ୍ ପରି ସାଦା ଓ ସାଧାରଣ ମନେହୁଏ ନାହିଁ । ଛାତଆରଙ୍ଗର ପ୍ରତ୍ୟେକ ବ୍ଲକ୍ ରାଜପୁତ ବୀରଙ୍କ ଗୋଟିଏ ଗୋଟିଏ ଦୁର୍ଗ ପରି ଲାଗେ । ତେଣୁ ଅଜିକା ଆକାଶର ଧୂଳିଆ-ନାଲିଆ ବ୍ୟାପକତା କଲୋନିର ନିଦା-ଛାତିଆ ବିଶାଳତା ସାଙ୍ଗରେ ଖାପ ଖାଇଯାଉଥିଲା । ଦୃଷ୍ଟିକୁ କାଟୁ ନାହିଁ, ବରଂ ସମ୍ମାନ ଦେଉଛି ବୋଲି ଭ୍ରମ ହେଉଥିଲା ।

ତେବେ ଧୂଳିଆ ହେଉ କି ନାଲିଚିଆ ହେଉ, ତେଜଟା ପୂରାପୂରି ମଉଳି ଯିବା ପୂର୍ବରୁ କିଏ କ'ଣ ବାହାରକୁ ବାହାରେ ଆଜିକାଲି, କିଛି ଜରୁରୀ କାମ ନଥିଲେ ? ପୁଣି ଛୁଟି ଦିନଟାରେ ? ହେଲେ କଲୋନିକୁ ନୂଆ ହୋଇ ଆସିଥିବା ବ୍ରିଗେଡ଼ିଅର ଚନ୍ଦ୍ରମୋହନ ବାହାରକୁ ବାହାରି ଆସିଛନ୍ତି । ଥରେ ଆକାଶକୁ ଓ ଥରେ ପୃଥିବୀକୁ ଅନାଉଛନ୍ତି । ହାତଧରା ଛଡ଼ିରେ କଲୋନିର ସିମେଣ୍ଟ୍ ଫୁଟ୍‌ପାଥ୍‌କୁ ଠକ୍‌ଠକ୍ କରୁଛନ୍ତି । ସତେକି ସେ ବାହାରେ ବୁଲିବା ପାଇଁ କୃତନିଶ୍ଚୟ, କିନ୍ତୁ କେଉଁଠିକି ଯିବେ ବୋଲି ସ୍ଥିର କରିପାରୁ ନାହାନ୍ତି ।

ତାଙ୍କ ଚନ୍ଦାମୁଣ୍ଡର କଡ଼େ କଡ଼େ ଲାଗିଥିବା ଧଳାବାଳରୁ ସ୍ପଷ୍ଟ ଜଣାପଡ଼ୁଛି ଯେ ସେ ବୁଢ଼ା । ତାଙ୍କ ସ୍ଥୂଳ-ବଳିଷ୍ଠ ମୁହଁର ଚପା ଓଠରୁ ମନେ ହେବ ଯେ କର୍ତ୍ତବ୍ୟ ଗୁଳାଗଲା ପରେ ଅଥବା, ଯେକୌଣସି କାରଣରୁ ସେ ଜୀବନ ପ୍ରତି ବିଶେଷ ଅନୁରକ୍ତ ନୁହଁନ୍ତି । ତେଣୁ ସେ ଯାଗଯୋଗକୁ ଧନ୍ୟବାଦ ଦେବା ପାଇଁ ଘରୁ ବାହାର ଆସିଛନ୍ତି, ଏକଥା କହିହେବ ନାହିଁ । ତା' ହେଲେ ବୁଢ଼ାଙ୍କର ବିରାଗ କ'ଣ ଏମିତି ବଢ଼ିଗଲା ଏଇ ଧୂଳିଆ-ନାଲିଚଆ ଦୃଶ୍ୟ ଦେଖି ଯେ ସେ ବାହାରକୁ ବାହାରି ଆସିଲେ ତାକୁ ଉତ୍ତମ ରୂପେ ଅନୁଭବ କରିବା ପାଇଁ ? ଇଏ କୋଉ ଆଡ଼ର ଉଚ୍ଛୁଳା ପଣ ? ନା ମୁଣ୍ଡବିଗିଡ଼ା ବିକୃତ ମ ? ବୁଢ଼ାଜଣକ କ'ଣ ଏତେ··· ବୁଢ଼ା ? କାହିଁ, ତାଙ୍କ ଗୁଳି କି ଦେହେରୁ ସେମିତି ଜଣାପଡ଼ୁନାହିଁ ତ ?

ନା, ତାଙ୍କର ଘରୁ ବାହାରି ଆସିବା ପଛରେ ଗୋଟିଏ ବିଶେଷ କାରଣ ଥିଲି ଯାହାକୁ କେହି ଠଉରେଇ ପାରି ନ ଥାଆନ୍ତେ । ଆଜି ପାଞ୍ଚଟା ବେଳକୁ ଘୋଷଣାର ଖବର ଆସିବ ରେଡ଼ିଓ-ଟେଲିଭିଜନରେ । ଘରେ ଲୋକବାକ ହାଉଯାଉ ହେବେ । ଜ୍ୱାଇଁର ଯେତକ ସାଙ୍ଗ, ଝିଅର ବି ହୁଏତ ନାତିର ବି···ଗୋଟାଏ ପାଲ ଲାଗିବ ! ମୁଁ କାହିଁକି ମିଛୁଟାରେ ସେଠି ବସି ରହିବି ? କି ତାଙ୍କ ସାଙ୍ଗରେ ଥେଇ ଥେଇ ହେବି ? ମୋତେ କ'ଣ ମିଳିବ ସେଥିରୁ ?

ମୋଟ ଉପରେ ଏଇ ଗୁଣ୍ଡାଗିରିକୁ କ'ଣ ତମୋଜାସି କହିବ ? ଯେଉଁଠି ଖାଲି ହଣାକଟା ଗୁଳାଛି ମୂଳରୁ ଶେଷ ଯାଏଁ, ଅନାମଧେୟ ସ୍ୱାଧୀନପ୍ରାର୍ଥୀଠାରୁ ଆରମ୍ଭ କରି ରାଜୀବ ଗାନ୍ଧୀ ଯାଏଁ, ସେଠି କୋଉ ଗୁଣ୍ଡାଦଳ ଜିତିଲା କି ହାରିଲା···ଡ୍ୟାମ୍ ଇଟ୍ ! ମୁଁ ତା' ଭିତରେ ନାହିଁ । ସେମାନେ ଭାବିଲେ ଭାବନ୍ତୁ (ଭାବିଲେ ହିଁ ଭଲ) ଯେ ମୁଁ ଜାଣିଶୁଣି ପଳେଇ ଆସିଛି । ମୁଁ ଘୃଣା କରେ ତମର ଏଇ ତମୋଜାସିକୁ । ବ୍ରିଗେଡ଼ିଅର୍ ଚନ୍ଦ୍ରମୋହନ ସେ ଯୁଗର ଲୋକ । ଯେତେବେଳେ ସବୁ କଥାକୁ କିଛି ଗୋଟାଏ ନୀତି ଥିଲା, ଆଗୁର ବଗୁରର ନିୟମକାନୁନ୍, ଭଲ-ମନ୍ଦ, ସତ-ମିଛ ଭିତରେ ଗୋଟାଏ ଟାଣୁଆ ଲକ୍ଷ୍ମଣଗାର । ଯାହା ଆଜିକା ସଂସାରରେ ଲିଭିଯାଇଛି, ହ୍ୟାପ ପୂରାପୂରି ଲିଭି ବଳିବଲି ହୋଇଯାଇଛି । କାହିଁ କେଉଁଠୁ ।

ଦେଖ, ମୁଁ ଆଜି ମୋଟେ ଫେରିବି ନାହିଁ ରାତି ଦଶଟା ଆଗରୁ । ସେତେବେଳକୁ ତମ ହୋ-ହଲ୍ଲା ସରି ଯାଇଥିବ ବୋଲି ଆଶା କରାଯାଏ···

ପଳାୟନ । ମଣିଷର ସ୍ୱାଭାବିକ, ହେଲେ ସାମୟିକ ପ୍ରବୃତ୍ତି । କିନ୍ତୁ ଇଏ ସିନା ଗୋଟିଏ ଅପରାହ୍ଣର ପଳାୟନ, କହିଲେ ଅଯୁକ୍ତି ହେବ ନାହିଁ ଯେ ଚନ୍ଦ୍ର-ମୋହନ ବାରମ୍ବାର ପଳେଉଛନ୍ତି ଏମିତି, ଗତ ସାତଆଠ ବର୍ଷ ହେଲା । ଗାଆଁରୁ ସହରକୁ, ଗୋଟିଏ ସହରରୁ ଆଉ ଗୋଟିଏ ସହରକୁ, ଗୋଟିଏ ସନ୍ତାନ ପାଖରୁ

ଆଉ ଗୋଟିଏ ସନ୍ତାନ ପାଖକୁ । ଏବଂ ସବୁଠିଁ ତାଙ୍କର ମନେ ହେଉଛୁ ଯେ ଇଏ ନୁହେଁ, ଇଏ ନୁହେଁ ମୋର ମନଲାଖି ଗୃହା କପ୍ ।

ସେ ସାମରିକ ବାହିନୀରେ ଥିଲେ । ଯୁଦ୍ଧ କରିବାକୁ ପଡ଼ି ନଥିଲା, କାରଣ ସେ ଡାକ୍ତର ଥିଲେ । ତଥାପି ଅବସର ନେଲାପରେ ସେ ଯେଉଁ ଅସାମରିକ ସମାଜ ଭିତରକୁ ଆସିଗଲେ ତାର ଅସଂଯମ ତଥା ଅପରିଚ୍ଛନ୍ନତା କ'ଣ ତାଙ୍କୁ ଏଭଳି କଷ୍ଟ ଦେଉଛି ଯେ ସେ କେଉଁଠି ହେଲେ ତାଙ୍କ ଛିଡାକମୂଳ ପକେଇ ପାରୁ ନାହାଁନ୍ତି ? କିଓ, ଚାକିରିରେ ଥିଲାବେଳେ ସେ କ'ଣ ଏଇ ଭିନ୍ନ ସଂସାରର ଚେହେରା ଦେଖି ନ ଥିଲେ ଯେ ଏମିତି ଛଟପଟ ହେଉଛନ୍ତି ତା' ଭିତରକୁ ଆସିଲାକ୍ଷଣି ?

ତାଙ୍କର ଗୋଟିଏ ଗୃହିଣୀ ଥିଲା, ପଚିଶ ବର୍ଷର ପରିଣୀତା । ପ୍ରାୟ ପାଞ୍ଚ ବର୍ଷ ତଳେ ସେ ତାଙ୍କୁ ଛାଡ଼ି ଚାଲିଗଲା ଚିରଦିନ ପାଇଁ । ସେଇଦିନଠୁଁ କ'ଣ ସେ ସଂସାର ପ୍ରତି ଅତ୍ୟଧିକ ବିମୁଖ ହୋଇ ଉଠିଛନ୍ତି ? ଏଇ ସଫେଇ ମଧ୍ୟ ଯଥେଷ୍ଟ ନୁହେଁ ବୋଲି ମନେ ହେବ, କାରଣ ମୀନାଦେବୀ ଜଣେ ସାଧାରଣ ମହିଳା ଥିଲେ ରୂପରେ, ଗୁଣରେ ତଥା ରଙ୍ଗଢ଼ଙ୍ଗରେ, ଏବଂ ଔପଚାରିକ 'ଡାର୍ଲିଙ୍ଗ୍' ସମ୍ବୋଧନ ଛଡ଼ା ବୋଧହୁଏ ଅନ୍ୟ କୌଣସି ଅନ୍ତରଙ୍ଗ ଆଦାନ ପ୍ରଦାନ ନଥିଲା ଦୁହିଁଙ୍କ ଭିତରେ, ଅନ୍ତତଃ ସେ କର୍ଣ୍ଣେଲ ପାହ୍ୟାକୁ ଆସିଲା ଦିନଠୁଁ । ଅବଶ୍ୟ ଦେହର ଡାକ ବେଳେ-ବେଳେ ଶୁଣିବାକୁ ପଡ଼ୁଥିବ, ସେକଥା ଭିନ୍ନ ।

ତାଙ୍କର ଗୋଟିଏ ପରିବାର ଅଛି । ପିଲାମାନଙ୍କ କାରବାର ତାଙ୍କର ପସନ୍ଦ ନୁହେଁ—ଯଥା ବିଜନେସ୍ କରୁଥିବା ବଡ଼ପୁଅ ତା'ର ଉପହାର ଦିଅନ୍ତା ପଇସାକୁ ଅଯଥାରେ ଘୁଷ୍ ବୋଲି କୁହେ, ଏବଂ ହସି ହସି କୁହେ; ଇନ୍‌କମ୍ ଟ୍ୟାକ୍ସରେ ଥିବା ସାନପୁଅ ଭାରତୀୟ ସଂସ୍କୃତି ବିଷୟରେ କିଛି ଜାଣେ ନାହିଁ କି ଜାଣିବାକୁ ଚାହେଁ ନାହିଁ ( ଚନ୍ଦ୍ରମୋହନ ଭାରତର ସ୍ଥାପତ୍ୟ ଓ ଚିତ୍ରକଳା ଉପରେ ଏକାଧିକ ବହି ପଢ଼ିଛନ୍ତି ); ବାହାହେଲା ଝିଅ ଦି'ଜଣ ତାଙ୍କ ଉପରେ ମା'ଆପଣିଆ ଦେଖାନ୍ତି, ଏବଂ ଜ୍ୱାଇଁମାନେ ତାଙ୍କ ପ୍ରତି ଅତ୍ୟଧିକ ସମ୍ମାନ ଦେଖାନ୍ତି ଏଇସବୁ କାରଣରୁ ସେ କ'ଣ କାହାର ଘରେ ରହିପାରୁ ନାହାଁନ୍ତି ବେଶିଦିନ ? ଛଟପିଟି ହେଉଛନ୍ତି ସେଠୁଁ ପଳେଇ ଆସିବା ପାଇଁ ? ସେ କ'ଣ ଏତେ ଭାବପ୍ରବଣ, ଅର୍ଥାତ୍ ଆଣ୍ଟୁଆ ?

ବେଶ୍, ତା'ହେଲେ ସେ ନିଜକୁ ନିଜେ ହୋଇ ରହୁ ନାହାଁନ୍ତି କେଉଁଠି ହେଲେ ? ତାଙ୍କ ପୈତୃକ ଗାଆଁରେ, କିମ୍ବା ଦେଶ ବିଦେଶର ଯେକୌଣସି ମନପସନ୍ଦ ସହରରେ ? ନିଜକୁ କର୍ମରତ କରିବା ପାଇଁ ପ୍ରାଇଭେଟ୍ କ୍ଲିନିକ୍ ବି ଖୋଲି ପାରନ୍ତି । ପାଣ୍ଠିର କୋଉ ଅଭାବ ଅଛି ?

ଏହି ପ୍ରକାର ଇନ୍‌କ୍ୱାରରେ ସାକ୍ଷ୍ୟ ଦେବାକୁ ହେଲେ ବ୍ରିଗେଡିଅର୍‌ଙ୍କ କ୍ଲୁଷ୍ଟକଠୋର ମୁହଁ କିଛିଏ ନରମି ଯାଆନ୍ତା ପରା ! କାରଣ ତାଙ୍କୁ ସୁଯୋଗ ମିଳନ୍ତା ଉନ୍ମନା ଏବଂ ତାଚ୍ଛଲ୍ୟଭରା ହସଟିଏ ହସିବା ପାଇଁ ! ···ତମେ ସବୁ ବୁଝିବ ନାହିଁ । ବୁଝିବ ନାହିଁ ଯେ ପାରିବାରିକ ସୁଖଦୁଃଖର କମ କି ତୁମ ଜେନେରେସନ୍‌ର ବଟାନ୍ଧ ବ୍ୟବହାର ମୋତେ ବାଧୁନାହିଁ ସେମିତି । ବାଧୁଛି ଯେ ତୁମ ଆଖିକୁ ମୋଟେ ଦିଶିବାକୁ ନାହିଁ ଯେ କେଉଁଠି ହେଲେ ଗାର ପଡ଼ୁଛି, ଭଲ-ମନ୍ଦ ଭିତରେ, ସତ-ମିଛ ଭିତରେ । ତେଣୁ ମୋତେ ତମର ଯେତେକ କାରବାର ମୂଲ୍ୟହୀନ ଲାଗୁଛି । ଆଳାପ ଆଲୋଚନା ତୁଚ୍ଛା କୋଳାହଳ ପରି ଲାଗୁଛି । ଇତର କୋଳାହଳ । କିଛି କ୍ଷତି ନାହିଁ, ମୁଁ ବେଶ୍ ଏକୁଟିଆ ରହିପାରିବ ମୋର ହାଭେଲ୍, କୁମାରସ୍ୱାମୀ, ଇତ୍ୟାଦିଙ୍କୁ ନେଇ । କିନ୍ତୁ ମୋତେ ଦୁଃଖ ଲାଗୁଛି ତୁମମାନଙ୍କ ପାଇଁ । ସେଇଥିଲାଗି ମୁଁ ପଳେଇ ଆସୁଛି ସ୍ତ୍ରୀ ପାଖରୁ ତା'ପାଖକୁ । ଏଥର ବନ୍ଧୁମାନଙ୍କ ପାଖରେ ରହିଲେ ହେବ· କିଛି ଦିନ । କିନ୍ତୁ ସମବୟସ୍କ ବନ୍ଧୁମାନେ ସ୍ୱଭାବତ ବୁଢ଼ା । କାହା ପେଟରେ ବାୟୁ ଚଢ଼ୁଛି ତ କାହା ଆଖିରେ ପରଳ ମାଡ଼ୁଛି । ଏବଂ ସେମାନେ ବି ହ୍ୟାପି ଖସି ଯାଉଛନ୍ତି ଗୋଟି ଗୋଟି ହୋଇ···

ବ୍ରିଗେଡିଅର୍ ଏଇ ଦୁ'ସପ୍ତାହ ହେଲା ଆସିଛନ୍ତି ଦିଲ୍ଲୀ ପାଖରେ ଥିବା ଯୋଧାବାଇ ନଗରକୁ । ଯେଉଁଠି ତାଙ୍କର ସାନଜ୍ୱାଇଁ ଅଛି । ଝିଅ ରୂପା ଲେଖିଥିଲା ଯେ ଦିଲ୍ଲୀଠାରୁ ଦୂରରେ ଥିବାରୁ ତଥା ନୂଆ କଲୋନି ହୋଇଥିବାରୁ ଏଠି ଭାରି ଫର୍‌ଗ୍ସ ଲାଗିବ ଆପଣଙ୍କୁ । ପ୍ରଶସ୍ତ ରାସ୍ତା, ଉନ୍ମୁକ୍ତ ପଡ଼ିଆ, ଗାଡ଼ିଘୋଡ଼ାର ଘୋ' ଘା' ନାହିଁ । ତା'ଛଡ଼ା ତାଙ୍କର ଆଶା ଥିଲା ଯେ ଜ୍ୱାଇଁ କ୍ୟାପ୍‌ଟେନ୍ ବିରାଜ ବି ଫଉଜି, ଆର୍ମି ଇଂଜିନିଅର୍, ତେଣୁ ତା'ର କାରବାର କିଛିଏ ଅଧିକ ଖାପ୍ସ ହୋଇଥିବ ।

···ହାୟ ! କିଏ ଜାଣିଥିଲା ଯେ ସେ ବି ଏମିତି ଗୋଟାଏ ଇତରତା, ଇତରତା ନୁହେଁ, ପଲିଟିକ୍‌ସ୍ ନାମକ ଅଶ୍ଳୀଳତାରେ ଜରି ଯାଇଥିବ ? ଅମୁକ ପାର୍ଟି, ଅମୁକ ପ୍ରାର୍ଥୀର ଗୁଣ ଗାଉଥିବ, ଓ ଘମାଘୋଟ ଆଲୋଚନା ଚଳଉଥିବ ଭିନ୍ନ ମତର ସାଙ୍ଗମାନଙ୍କ ସାଙ୍ଗରେ ? ଇଲେକ୍‌ସନ୍ ବେଳେ କ'ଣ କୋଉଠି ହେଲେ ରକ୍ଷା ନାହିଁ ମଣିଷର ?

ଯାହାହେଉ ଏଇ ଚନ୍ଦ୍ୟାବେଳଟା ତା'ଘରେ ବସି ପାରିବ ନାହିଁ । କଦାପି ବସିବ ନାହିଁ । ସ୍ପଷ୍ଟ ଭାବରେ ଜଣାଇ ଦେବ ଯେ ମୁଁ ଘୃଣା କରେ ତମର ଏଇ ଇତର କୋଳାହଳ, ମତହୀନ ବୁଦ୍ଧିହୀନ ତୁଚ୍ଛ କୋଳାହଳ । ଯାହାର ମୁଣ୍ଡ ନାହିଁ କି ଗଣ୍ଡି ନାହିଁ । ମେରୁଦଣ୍ଡ ବି ନାହିଁ । ଖାଲି ଗୋଟାଏ ସାନ-ହାନ ଫୁଙ୍କଭିବା ।

ଚନ୍ଦ୍ରମୋହନ ତାଙ୍କ ବ୍ଲକ୍ ସୀମାରେ ଥିବା ଅପରଣତ, କ୍ଷେଣ୍ଡ ଗୁଉଗୁଉକା ଲତାଗୁଳ୍ମର ବାଡ଼ ପାଖରେ ଠିଆହୋଇ ରହିଲେ ବେଶ୍ କିଛି ସମୟ, ଏବଂ କେଉଁଠିକି ଯିବେ ବୋଲି ଭାବିହେଲେ । ମୋର କୌଣସି କର୍ତ୍ତବ୍ୟ ସାମାନ୍ୟ ନୁହେଁ, ଏହି ଭାବରେ ।...କୁଆଡ଼େ ଯିବ ? ନୂଆ କଲୋନିର ଉନ୍ମୁକ୍ତ ପଡ଼ିଆରେ ଅବଶ୍ୟ ଟହଲ ମାରିହେବ । ମନଇଚ୍ଛା । ତାର ପ୍ରଶସ୍ତ ଖୋଲା ରାସ୍ତାରେ ଚାଲିହେବ । ମନ ଇଚ୍ଛା । କିନ୍ତୁ (ପ୍ରଶ୍ନରେ ଚ୍ୟାଲେଞ୍ଜ୍ର ଭାବ) ମୁଁ କାହା ଘରକୁ ବୁଲି ଯିବି ନାହିଁ କାହିଁକି ? ଆମ ନ୍ୟାଇଁ ମେଲାପି ଟୋକା । ପ୍ରାୟ ସମସ୍ତଙ୍କ ସାଙ୍ଗରେ ତା'ର ଚିହ୍ନା, ଅନ୍ତତଃ ଏଇ କେଇଟା ବ୍ଲକ୍‌ରେ । ତେଣୁ ଯେକୌଣସି ଫ୍ଲାଟ୍‌ରେ ପହଞ୍ଚିଯାଇ ଘରର ବାପଅଜାମାନଙ୍କୁ ମୁଁ ଅମୁକ ବୋଲି କହି ହାତ ବଢ଼େଇଲେ ତାଙ୍କୁ କଦାପି ଅଡୁଆ ଲାଗିବ ନାହିଁ । ବରଂ ଉଭୟଆଡ଼ୁ ଖୁସି ହେବା କଥା । କିନ୍ତୁ...କିନ୍ତୁ ଦୁଃଖର ବିଷୟ ଯେ ସେମାନେ ବୁଢ଼ା ହୁଅନ୍ତୁ କି ଦରବୁଢ଼ା, ସମସ୍ତେ ଏଇ ଅବାଞ୍ଛିତ ଆବ୍‌ହାଓ୍ୱାରେ ମିଶିଗଲେଣି ବୋଲି ମନେହୁଏ । ସତେକି ସେମାନେ ଏକୁଟିଆ ପଡ଼ିବାକୁ ଚାହାଁନ୍ତି ନାହିଁ । ଜାଣିଶୁଣି ଆପଣା ମୁଣ୍ଡ ଓ ମେରୁଦଣ୍ଡକୁ ଛୁଟି ଦେଇଛନ୍ତି ଆଜକା ସଂସାରରେ ଖାପ୍ ଖାଇବା ପାଇଁ ।...

ଏଣେ ଆକାଶର ଧୂଳିଆ-ନାଲିଟିଆ ଆବ୍‌ହାଓ୍ୱା ଆହୁରି ଧୂଳିଆ ଓ ଆହୁରି ନାଲିଟିଆ ହୋଇ ଆସିଲାଣି । ତା'ର ଘନୀଭୂତ ପ୍ରବଣତା ଦେହକୁ ଛୁଉଁଛି ।...ଖାଲି ଛୁଉଁଛି ନା ଛଗୁଲେଉଛି ? କହୁଛି—ଯାଉ୍, ସ୍ମା'କୁ ସୁନ୍ଦର ବୋଲି କହିପାରୁନାହାନ୍ତି ? ଲଜମାଡ଼ୁଛି ଆପଣଙ୍କୁ ? ଶୁଣନ୍ତୁ, ସୁଖ କରନ୍ତୁ । କହୁଛନ୍ତି ସୂର୍ଯ୍ୟ ନାହିଁ, ବଉଦ ବି ନାହିଁ ? ଆକାର ପ୍ରକାର ସୀମାସରହଦ, କିଛି ବୋଲି କିଛି ନାହିଁ, ଖାଲି ଗୋଟାଏ ବଳବଳି ନାଲି ଆଉ ଧୂଳିର କୁହୁଡ଼ି ? ବେଶ୍, ସେଥିରେ ଯାଏ କେତେ ଆସେ କେତେ ? ତଥାପି କ'ଣ ଜନପଟା, ମାନେ ତା'ର ଅନୁଭବ, ମଧୁରିଆ ଲାଗୁ ନାହିଁ ?

କ୍ରମଶଃ ଚନ୍ଦ୍ରମୋହନଙ୍କ ମନେ ହେଲା ଯେ ସମସ୍ତେ ସେପାଖରେ । ତାଙ୍କ ସାଲସ୍‌କର୍ ପାଲସ୍‌କର୍ ଜୀବନକୁ ନେଇ ସୁଖ କରୁଛନ୍ତି । ପିଲାରୁ ବୁଢ଼ା ଯାଏଁ । ...ଖାଲି ମୁହିଁ ଠିଆହୋଇଛି ଏ ପାଖରେ, ମୋର ଅଭଙ୍ଗା ଅଟଳ ମୁଖକୁ ନେଇ । ଆଉ ସେମାନେ ମୋ ଆଡ଼କୁ ଅନେଇ କଣ ହସୁଛନ୍ତି । ସତେକି ମୁଖର ଅନ୍ୟ ନାଆଁ ଖଣ୍ଡିଆଭୂତ ! ମୁଁ ଗୋଟାଏ ଆବ୍‌ସର୍ଡ୍ ବୁଢ଼ା !

ସେଇଠୁଁ ତାଙ୍କୁ ହଠାତ୍ ବୁଦ୍ଧି ଦଶିଲା, ଏବଂ ସେ ସ୍ଥିର କଲେ ଯେ ସେ ଯିବେ ଜଣକ ଘରକୁ । ଯା' ସାଙ୍ଗରେ ତାଙ୍କର ପରିଚୟ ଅଛି । ସେ କେବଳ ସମବୟସ୍କ, ଅନ୍ୟତମ ବୁଢ଼ା ନୁହେଁ । ଫଉଜି ବୁଢ଼ା । ତେଣୁ ଭିନ୍ନ ଧାତୁରେ

ଗଢ଼ା ଏବଂ ଜ୍ୟାଁ ପର ଏ ଯୁଗର ନୁହେଁ, ସେ ଯୁଗର । ଏକୁଟିଆ ଥାଏ, ଏବଂ କ୍ଳବ୍‌ର ଆରମ୍ଭରେ ସେ ଖାସ୍ କଥା ଗପିବ, ସ୍ୱର୍ଣ୍ଣଯୁଗର ଇତିହାସ ହେଉ, କି ତା' ପରିକଳ୍ପିତ ବାଗବଗିଚାର ଡାଲିଆ, କାର୍ନେସନ୍ ଇତ୍ୟାଦି । ପ୍ରଥମ ଦେଖାରେ ସେଇଆ ଗପୁ ନଥିଲା କି ?

...ତା' ଦୋଷ ଭିତରେ ଏତିକ ଯେ ସେ ଟିକିଏ ବେଶୀ ହସେ । ହସେ ଆଉ ପିଏ । ଅନ୍ତରର କେଉଁ ଦାରୁଣ ଦୁଃସହ ଦୁଃଖକୁ ବୁଡ଼େଇ ଦେଲା ପରି । କିଛି କ୍ଷତି ନାହିଁ । ବରଂ ମୋ ସାଙ୍ଗରେ କଥାଭାଷା ହେଲେ ତା' ଦୁଃଖର ଯତ୍‌ସାମାନ୍ୟ ଲାଘବ ହୋଇଯିବ ।

ଆରେ. ଆଜି ତ ଶୁକ୍ରବାର ! କହୁଥିଲା ଯେ ସେ ଶୁକ୍ରବାର ଦିନଟା ପିଏ ନାହିଁ । ସେଇ ହେଉଛି ତା' ପିଇବାର ମେଥ. ଡିସିପ୍ଲିନ୍ । ତା' ପଛରେ କେଉଁ ମୂର୍ତ୍ତି ଛପି କରି ଅଛି ସେଇ ଜାଣେ । ତା'ମାନେ ଆଜି ସେ ଥିଣ୍ଟା ହୋଇ ବସିଥିବ, ଖୋଜୁଁ ଥିବ ସୋଦରଟିଏ ଆସୁ ତା' ପାଖକୁ । କେହି ଜଣେ ଏକା ବୟସର, ଏକା ମତିଗତି ଓ ଫିଲସଫିର ମଣିଷ...

ଆଉ ଦ୍ୱିଧା ନାହିଁ । ଚନ୍ଦ୍ରମୋହନ ବାଡ଼ ଡେଇଁଲେ । ଅଚିରମ୍ଭେ ପହୁଞ୍ଚିଲେ ଯାଇଁ କର୍ଣ୍ଣେଲ୍ ଜଗାର୍ଡ଼ଙ୍କ ତଳମହଲା ଫ୍ଲାଟରେ । ଏବଂ ସତକୁ ସତ ଦେଖିଲେ ଯେ ବୁଢ଼ା ବାଲ୍‌କନିରେ ଏକୁଟିଆ ହୋଇ ବସିଛି ଗୋଟିଏ ବେତ ଚଉକିରେ । ନିଃସଙ୍ଗର ସାଥୀ ସ୍ୱରୂପ ଟ୍ରାନ୍‌ଜିଷ୍ଟର୍‌ର ରେଡ଼ିଓଟିଏ ହାତରେ ଧରିଛି, ତା'ର କଣ୍ଟାକୁ ଚଳଉଛି ଏମୁଣ୍ଡରୁ ସେମୁଣ୍ଡ । ତା'ର କଟରକଟର ସାଉଁସାଉଁକୁ ପରୁଆ ନକରି । କିନ୍ତୁ ଆଗନ୍ତୁକଙ୍କୁ ଦେଖିଲା ଛଣି କର୍ଣ୍ଣେଲ୍ ତତ୍‌କ୍ଷଣାତ୍ ଉଠି ପଡ଼ିଲେ, ଓ ତାଙ୍କୁ ତାଙ୍କର ସ୍ୱାଭାବିକ ଉଚ୍ଚ ହସରେ ପଖାଳି ଦେଲେ । କହିଲେ—

"ଆସନ୍ତୁ, ଆସନ୍ତୁ, ମୁଁ ଆପଣଙ୍କୁ ହିଁ ଖୋଜୁଥିଲି ।"

"ମୋତେ ଖୋଜୁଥିଲେ ?" (ମିଛ ନୁହେଁ । ନିଃସହାୟତାର ଲକ୍ଷଣ । ହେଇଲାଗି ଯାହାକୁ ପାଖରେ ପାଇଲେ ଆଙ୍କୁଡ଼ି ଧରିବାକୁ ଚାହାଁନ୍ତି, ପିଲାଦିନର ଦୋସ୍ତ ପରି) ।

"ସିଓର୍ । ଆପଣଙ୍କୁ କ'ଣ ଖୋଜିବା ଲୋଡ଼ିବା ମନା ? ନୋ ଆଡ଼ମିସନ୍ ୱିଦାଉଟ୍ ପର୍‌ମିସନ୍ ? ହୋ-ହୋ-ହୋ...ଆସନ୍ତୁ, ଆସନ୍ତୁ..."

ଜଗାର୍ଡ଼ ପୁଣି ରେଡ଼ିଓକୁ କୁଣ୍ଢେଇ ଧରି ତାକୁ ସାଉଁସାଉଁ କଲେ । ଏବଂ ଆଉ ଗୋଟିଏ ବେତ ଚଉକି ପାଖକୁ ଟାଣି ଆଣି ଚନ୍ଦ୍ରମୋହନଙ୍କୁ ସେଇଠି ବସିବାର ଇଙ୍ଗିତ କଲେ ।

ଚନ୍ଦ୍ରମୋହନ ବସି ପଡ଼ିଲେ । କିନ୍ତୁ ନିଜଆଡ଼ୁ କିଛି କହିବାର ସମୟ ପାଇଲେ ନାହିଁ । ଜଗାର୍ଡ଼ଙ୍କ ଚଞ୍ଚଳ ଆନନ୍ଦ ତାଙ୍କୁ ବାଟ ଛାଡ଼ିଲା ନାହିଁ ।

ଚନ୍ଦ୍ରମୋହନ ସମବୟସ୍କ ସମପେଶୀଜ ବନ୍ଧୁଙ୍କୁ ଅନେଇ ରହିଲେ । ତାଙ୍କର ଅକାରଣ ଉତ୍‌ଫୁଲ୍ଲତା ଦେଖି ଏଭଳି ଆଶ୍ଚର୍ଯ୍ୟ ହେଲେ ଯେ ବୋଧହୁଏ ଈର୍ଷା କରିବାର ବାଟ ବି ମିଳାଇ ନାହିଁ ତାଙ୍କୁ ।

ଦେଖିଲେ ସେ କେମିତି ବାରମ୍ବାର ରେଡ଼ିଓ ହାଙ୍ଗରେ ଲାଗୁଛନ୍ତି, ଉତଲା ହେଉଛନ୍ତି କ'ଣ ଗୋଟାଏ ଖବର ଶୁଣିବେ ବୋଲି; ସେଇଠୁଁ ଅତିଥିଙ୍କ ଆଡ଼କୁ ଅନଉଛନ୍ତି ହସହସ ହୋଇ, ତାଙ୍କୁ ମଧ୍ୟ ତାଙ୍କ ଆବେଗର ସାଥି କରି ପରି । ଏମିତି କରୁ କରୁ ସେ ହଠାତ୍ ଥିର ହୋଇଗଲେ । ମନ ଦେଇ ଶୁଣିଲେ । ଏବଂ ସଶବ୍ଦ ହସଟିଏ ଛାଡ଼ି ଦେଇ କହିଲେ—

'ଆସିଗଲା ! ଆରମ୍ଭ ହୋଇଗଲା !"

"କଅଣ ?"

"ଆଜ୍ଞା, ଏଇ ଲେଟେଷ୍ଟ୍ ଖବର ମ ! ଏଠିକାର ପାଣ୍ଡେ ଜିତିଲା, ପ୍ରସାଦ ହାରିଗଲା···ଚୁହିଲୁ, ରୁହିଲୁ···ଦିଦରରେ ଖନ୍ନାଙ୍କ ଜିତିଲା, ଗୋପାଳ ଦାସ ହାରି-ଗଲା । ଏମିତି ଚାଲିବ ଏଣିକି, ଅଧରାତି ଯାଏଁ···"

"(ମୁହୂର୍ତ୍ତେ ଅଟକିଯାଇ ଓ ରେଡ଼ିଓକୁ ବନ୍ଦ କରିଦେଇ) ହେଇ ଶୁଣନ୍ତୁ, ଶୁଣିପାରୁ ନାହାନ୍ତି ? ଗୁରୁଗୁରୁ ଶବ୍ଦ, କୁହାଟର ଚେନାଏ ଚେନାଏ · ନିଶ୍ଚୟ ଗୋଟାଏ ଜବର ପ୍ରୋସେସନ୍, ବିଜୟ ଯାତ୍ରା । ଆସୁଛି ଆମ ଆଡ଼େ । ଗୃହୁଁ ଗୃହୁଁ ଆମ କଲୋନି ଭରି ଉଠିବ । କେତେ ସ୍ଲୋଗାନ୍, କେତେ ଭାଙ୍ଗ୍‌ଡ଼ା ନାଚ···ଫାଷ୍ଟ୍ କ୍ଲାସ !"

"କିଏ ଏଇ ପାଣ୍ଡେ ? କୋଉ ପାର୍ଟିର ?"

"(ବିରାଟ ହସର ହାଲୁକା ସହ) ମୁଁ ଜାଣେ ନାହିଁ । ଜାଣି ଲାଭଟା କଅଣ ? ଅସଲ ହେଉଛି ଗୋଟାଏ ଭିକ୍ଟ୍ରି, ଭି ଫର୍ ଭିକ୍ଟ୍ରି···ଆଃ ! ତା' ସାଙ୍ଗକୁ ଆଜି ପାଗଟା ବି କେମିତି ବଢ଼ିଆ ହୋଇଛି ଦେଖୁନାହାନ୍ତି ?"

ଚନ୍ଦ୍ରମୋହନଙ୍କ ବଲବଲ ଚାହାଣିକୁ ଉପେକ୍ଷା କରି ଜଗନ୍ନାଥ ଘର ଭିତରକୁ ପଶିଗଲେ ଏବଂ ହୁଇସ୍କି ବୋତଲ ସହ ବରଫରେ ଥଟକିଥିବା ଯୋଡ଼ାଏ ଲମ୍ବା ଗ୍ଲାସ୍ ନେଇ ଆସି ଥୋଇଲେ ପାଖ ଟି'ପୟ ଉପରେ । କହିଲେ, 'ଆସନ୍ତୁ, ଆମେ ବି ସେଲିବ୍ରେଟ୍ କରିବା, ବିଜୟ ମନେଇବା !"

''କଲୁ···କର୍ଣ୍ଣେଲ୍ ସାହେବ, ଆଜ ପରା ଆପଣଙ୍କର ଶୁକ୍ରବାର ?'',

ଏଥର ଜଗାଗ୍ରଓ ହସରେ ହସରେ ଫାଟି ପଡ଼ିଲେ । କହିଲେ, ''ଆଚ୍ଛା ? ଆପଣଙ୍କର ମନେ ଅଛି ସେକଥା ? ହେଲେ ବୁଝୁନାହାନ୍ତି ? ଇଏ ହେଉଛି, ବଜାସ୍ତ୍ର, ଇଏ ହେଉଛି ଆନନ୍ଦ । ଆଜ ପରା ଦିନରେ ଗାରଟାକୁ ହଟେଇବାକୁ ପଡ଼ିବ, ଆସନ୍ତା ଶୁକ୍ରବାର ଯାଏଁ । ନହେଲେ ମଣିଷ ବଞ୍ଚିବ କେମିତି କହୁନାହାନ୍ତି ?''

ଚନ୍ଦ୍ରମୋହନ ସ୍ତବ୍ଧ ହେଲେ, ତାଙ୍କ କୋଧ ଓ ଘୃଣାର ପାରାକୁ ବଢ଼େଇବାକୁ ଲଗିଲେ, ଏଇ ନୀତିହୀନ ଅର୍ବାଚୀନ ବୃଦ୍ଧ ପ୍ରତି । କିନ୍ତୁ ଗୃହୁଁ ଗୃହୁଁ ସେ ମଧ୍ୟ ହଠାତ୍ ହସିଉଠିଲେ । ମନେହେବ ସେ ଏଭଳି ହସ ହସିନାହାଁନ୍ତି ଅନେକ ଦିନ ହେଲା ।

'ଚିଅରସ୍' କହି ସେ ମଧ୍ୟ ପାନପାତ୍ରରେ ଚୁମୁକ ଦେଲେ । ଏବଂ କହିଲେ ମନେ ମନେ—

ହଁ । ଖାସା କଥା । ଗାରଟା ଅବଶ୍ୟ ଥିବ, କିନ୍ତୁ ଦରକାର ବେଳେ ତା'କୁ ଟିକିଏ ଆଗକୁ ହଟେଇ ଦେଲେ ଭଲ । ଉପଯୁକ୍ତ କାରଣ ଦର୍ଶାଇ । ନହେଲେ ମଣିଷ ବଞ୍ଚିବ କେମିତି ?

ଗାରଟା ଅବଶ୍ୟ ଥିବ, କିନ୍ତୁ ତା'କୁ ଅନାୟାସରେ ଘୁଞ୍ଚେଇ ଦେଇ ହେଉଥିବ । ଉପହାରଠାରୁ ଘୁଷ୍ ଯାଏ ଟିକସ ଫାଙ୍କି ଦେବାଠାରୁ ଦି'ହାତିଆ ଟଙ୍କା ଖାଇବା ଯାଏଁ, ପର ନାରୀ ସାଙ୍ଗରେ ହାଲୁକା ରଙ୍ଗରସ ହେବାଠାରୁ··· । ଧାତ୍, ମୋର କ'ଣ ସେ ଦିଗରେ ଅନୁଭୂତି ଅଛି ନା କଣମ !

କଥା ହେଉଛି, ମୁଁ କାହିଁକି ପଳଉଥିବି ଏଠୁ ସେଠିକି ? ସତେକି ମୁଁ ନିଜଠାରୁ ପଳେଇ ଯାଉଛି, ମୋ ନିଜର କେଉଁ ଗଲ୍ତି, ଗଫଲତି ପାଖରୁ ! ଯଦିବା ଥାଏ ସେମିତି କିଛି, ସିଏ ଠୋସ୍ ଦୋଷ ନୁହେଁ କି ପାପ ନୁହେଁ । ବରଂ ସେହେତୁ ମୁଁ କହିପାରିବି ଯେ ମୁଁ ବି ଅଛି ତମେ ସାଙ୍ଗକୁ, ତମର ଦୋସ୍ତ୍ (ଥରେ, କର୍ଣ୍ଣେଲ୍ ସାହେବ ମୋ ଆଡ଼କୁ ଅନେଇଛି କାହିଁକି ସେମିତି, ମୋ ଦୋସ୍ତପଣିଆକୁ ବଢ଼ିଲ ପରି ? )

ହଁ, ତାକୁ ଖାଲି ଟିକିଏ ହଟେଇ ଦେଲେ ହେଲା, ସେଇଠୁଁ ଆଉ ଟିକିଏ··· କାରଣରେ ଆନନ୍ଦ ପାଇଁ, ଆନନ୍ଦର କାରଣ ପାଇଁ, ମୃତ୍ୟୁର ଜୀବନ ପାଇଁ, ଜୀବନର

ବିଜୟ ପାଇଁ···ଡ୍ୟାମ୍ ଇଟ୍ ! ଲକ୍ଷ୍ମଣ କ'ଣ ଏତେ ବେରସିକ ଥିଲେ ଯେ ତାଙ୍କ ରେଖା ସାଙ୍ଗରେ ଖେଳ ହେବ ନାହିଁ, ମାନେ ଅଳବହୁତ ଫ୍ଲର୍ଟ୍ କରିହେବ ନାହିଁ ଭଦ୍ର ଭାବରେ ?

ସେଇଠୁଁ ବର୍ଷା ଥିଲେ । ଚନ୍ଦ୍ରମୋହନଙ୍କର ଗରଜ ପଡ଼ିଥିଲା ତାକୁ ଆନନ୍ଦାଶ୍ରୁ କି ଶୋକାଶ୍ରୁ ବୋଲି ଠିକଣା କରିବେ ! ତେବେ ସେ ସ୍ୱଗତଃ ଗୋଟାଏ କଉତୁକର ଅନୁମାନ କରି କୁରୁଳି ଖାଉଥିଲେ । ଭାବିଲେ—ଘରେ ପହୁଞ୍ଚି ମୁଁ ରୂପାକୁ ବିରାଜକୁ, ଆଉ ତାଙ୍କ ଯେତେକ ସାଙ୍ଗସାଥୀଙ୍କୁ ଚମକେଇଦେବି । ବିଚରା ଆକାଶରୁ ଖସିବେ । ହର୍ଷୋଲ୍ଲାସରେ ପାଟି କରି ଉଠିବ, ଘରେ ପାଦ ନଦେଉଣୁ ।

'ପାଣ୍ଡେ ଜିତିଲା ନା ? ଓ୍ୟାଣ୍ଡରଫୁଲ୍ । ମୁଁ ଜାଣିଥିଲି ସେଇଆ ହେବ···'

# ଧୂସର ମଧୁର

ସେଦିନର ସନ୍ଧ୍ୟାରେ ବ୍ରିଗେଡ଼ିୟର ଚନ୍ଦ୍ରମୋହନଙ୍କ ମନୋଭାବ କ'ଣ ସତରେ ବଦଳିଗଲା ସବୁଦିନ ପାଇଁ, ଯେ ଲକ୍ଷ୍ମଣରେଖାଟା ଅବଶ୍ୟ ଥିବ, କିନ୍ତୁ ଦରକାର ବେଳେ ତାକୁ ଟିକିଏ ଆଗକୁ ହଟେଇ ଦେଲେ ଭଲ ? ସୁଖରେ ବଞ୍ଚି ରହିବା ଲାଗି ଏଇ ଯେଉଁ ରଣନୀତି ବାଛି ଦେଲେ କର୍ଣ୍ଣେଲ୍ ଜଗାଗିଓ, ସେଇଟା ତାଙ୍କୁ ମଜା ଲାଗିଲା, ଏବଂ ଆପାତତଃ ସେ ଗୋଟାଏ ଚମକ ସୃଷ୍ଟି କରି ପାରିଲେ ନିଜକୁ ନେଇ, ତାହାଁ ଜିତିଗଲେ ଖାଲି ସେଦିନର ଝୁଲିଆ-ନାଲିଚିଆ ଅସନ୍ତୋଷଟାକୁ, ନା ତାଙ୍କର ଏଇ ନବକଳେବର ସ୍ଥାୟୀ ହୋଇ ରହିବ ବୋଲି ଆଶା କରାଯାଏ ? ଏହି ପ୍ରଶ୍ନଟି କେବଳ ତାଙ୍କ ପାଇଁ ନୁହେଁ, ଆମ ସମସ୍ତଙ୍କ ପାଇଁ ଯେଉଁମାନେ ସ୍ୱଭାବତଃ ସୁଖରେ ବଞ୍ଚିବାକୁ ଚାହାଁ, ହେଲେ ଆତ୍ମସମ୍ମାନ ସହ ।

ତିନୋଟି ବିକଳ୍ପର ପ୍ରଶ୍ନ : (୧) ଦୁନିଆଁ ଗ୍ରସିଯାଉ ପଛେ, ନିଜକୁ ନିତାନ୍ତପୂଣା ଯଦିବା ସ୍ଥିରକୁ, ଯେଉଁ ଲକ୍ଷ୍ମଣ-ରେଖାମାନ ଟାଣିଛ ନିଜ ଜୀବନର ବିଭିନ୍ନ ଦିଗକୁ ନିୟନ୍ତ୍ରିତ କରିବା ପାଇଁ ତାକୁ କଦାପି ଉଲ୍ଲଙ୍ଘିବ ନାହିଁ । ହୁଡ଼ିଲେ ବିପଦ । ରାକ୍ଷସ ଗ୍ରେଶକର ନେବ ତମକୁ ଓ ତମକୁ ହଜାରବାର ନିଆଁରେ ପଶିବାକୁ ପଡ଼ିବ ନିଜର 'ସତୀତ୍ୱ'କୁ ପ୍ରମାଣିତ କରିବା ଲାଗି । (୨) ଆଜିର ସଂସାରରେ ଲକ୍ଷ୍ମଣରେଖା ଗୋଟାଏ ଅସଭ୍ୟ, ଅସୁନ୍ଦର ଏବଂ ଅନାବଶ୍ୟକ ପ୍ରତିବନ୍ଧକ । କିଓ, କୌଣସି ନୀତିକୁ ପୂର୍ବରୁ ନିର୍ଦ୍ଧାରିତ କରିବ କାହିଁକି ? ଠିକଣା ସମୟରେ ତମ ଦେଖିଲ କାମ କରିଯିବ, ଯେଉଁଥିରେ ତମ ସ୍ୱାର୍ଥକୁ ହାନି ହେବ ନାହିଁ । ଗତକାଲି ସେଭଳି କାମ ନ କରିଥିଲେ ନାହିଁ, ଏବଂ ଆସନ୍ତା କାଲି କ'ଣ କରିବ ତାହା ସେହି ମୁହୂର୍ତ୍ତର ପରିସ୍ଥିତି ଉପରେ ନିର୍ଭର କରେ । (୩) ଉ-ହୁଁ । ତମ ନିଜକୁ

ଭଲ ଲାଗିବ ନାହିଁ, ଯଦି କେଉଁଟା ଲକ୍ଷ୍ମଣରେଖା ଟାଣି ନଦିଅ ନିଜ ପାଇଁ । ହେଲେ କଣ୍ଡେନ୍ସ୍ କଗାର୍ଡଙ୍କ ପ୍ରେସ୍କ୍ରିପ୍‌ସନ୍ ଅନୁଯାୟୀ, ତମକୁ କିଏ କହୁଛି ଗାରଗୁଡ଼ାକୁ ଏମିତି ଗାଢ଼ୁଆ କରିଦେବ ଯେ ତମେ ନିଜେ ଝୁଣ୍ଟିବ ସେଥିରେ ଆଉ ଗୋଡ଼-ହାତ ଭାଙ୍ଗିବ । ନା, ଲକ୍ଷ୍ମଣରେଖା ଥାଉ । କିନ୍ତୁ ତମର ସେଇ ସତ୍‌ସାହସ ମଧ୍ୟ ଥିବା ଉଚିତ ତା'କୁ ଡ଼ିଙ୍ଗେଇ ଦେବା ଲାଗି, ଆବଶ୍ୟକତା ଅନୁଯାୟୀ । ତାହାହିଁ ବୁଦ୍ଧିମାନର କାର୍ଯ୍ୟ । ନବଜାଗୃତ ବ୍ରିଗେଡ୍‌ୟରଙ୍କ ଭାଷାରେ ଲକ୍ଷ୍ମଣ କ'ଣ ଏତେ ବେରସିକ ଥିଲେ ଯେ ମନା କରିଛନ୍ତି ତାଙ୍କ ରେଖାକୁ ନେଇ ଖେଳିବା ପାଇଁ, ଉଦ୍ଭାବରେ ଅଳ୍ପ ବହୁତ ଫ୍ଲର୍ଟ୍ କରିବା ପାଇଁ ତା' ସାଙ୍ଗରେ ?

ବର୍ତ୍ତମାନ ବ୍ରିଗେଡ୍‌ୟରଙ୍କ ତରଫରୁ ଭାବିବା ହେଉ ଯେ ପଚିଶିରୁ ବୟସରେ, ଅର୍ଥାତ୍ ବିବିଧ ବିଚିତ୍ର ଅନୁଭୂତିକୁ ନେଇ ପାଚିଲେ ହେଲା ପରେ କେଉଁ ଗୋଟିକ ଗ୍ରହଣୀୟ ।

ଏକ—କାଳକ୍ରମେ କେତୋଟି ଲକ୍ଷ୍ମଣରେଖା ଟାଣିଛ ନିଜ ପାଇଁ । ଭଲ କଥା । ତମେ ଜଣେ ବ୍ୟକ୍ତି, ଏବଂ ଆଶା କରାଯାଏ ଯେ ତମ ସ୍ୱତନ୍ତ୍ର ବ୍ୟକ୍ତିତ୍ୱର ଅଧିକାରକୁ ନେଇ ତମେ ସ୍ଥିର କରିବ ଯେ ଏହାହିଁ ଭଲ ତମ ପାଇଁ । କେବଳ କ୍ଷଣିକ ଆତ୍ମାନନ୍ଦକୁ ନେଇ ନୁହେଁ, ସବୁଦିନିଆ ଆତ୍ମତୃପ୍ତିର ପରି-ପ୍ରେକ୍ଷୀରେ । ଆଉ ତା'ପରେ ତାକୁ ଡ଼ିଙ୍ଗିବ କାହିଁକି ଯେ ? ନା, ମଣିଷପଣିଆ ହେଉଛି ତାକୁ ହିମାଳୟ କମ୍ବା ମହୋଦଧି ପରି ମଣିବ, ଯାହାକୁ କଦାପି ଲଙ୍ଘି ହେବ ନାହିଁ । ଏଭଳି ଲୋକ ଅବଶ୍ୟ ଅଛନ୍ତି ଆମ ସମାଜରେ, ଯେଉଁମାନଙ୍କୁ ଆମେ ଜିଦିଖୋର୍, ଅବାଗିଆ, ଆଣ୍ଡୁଆ ଇତ୍ୟାଦି କହିଲେ ମଧ୍ୟ ଅଳ୍ପବହୁତ ସମ୍ମାନ ଦେଉ ତାଙ୍କ ସାହସ ପାଇଁ । ଏବଂ ସେମାନେ ଗୋଠଖଣ୍ଡିଆ ତଥା ସାଧାରଣ ସୁଖରୁ ବଞ୍ଚିତ ହୋଇ ଯେତେ କଷ୍ଟ ପାଇଲେ ମଧ୍ୟ ସେଇ ସମ୍ମାନବୋଧକୁ କୁଣ୍ଢେଇ ଧରନ୍ତି । ସେଇଥିରେ ତାଙ୍କ ସୁଖ । କିନ୍ତୁ ଏଇ ସୁପର୍-ଇଗୋର ସମ୍ପଦ କ'ଣ ସତରେ ସୁଖ ଦେଇପାରିବ ତମକୁ ? ତା' ଯଦି ହୋଇଥାଆନ୍ତା, ତା'ହେଲେ ଆମ ବ୍ରିଗେଡ଼ିୟର ଏମିତି ହନ୍ତସନ୍ତ

ହେଉ ନଥାଆନ୍ତେ ଆଜିର ସଂସାର, ଅର୍ଥାତ୍ ସେଥିର 'ଇତରତା' ସାଙ୍ଗରେ ନିଜକୁ ଖାପ୍ ଖୁଆଇ ନପାର, ଏବଂ ଏଠୁ ସେଠିକି ପଳାଉ ନଥାଆନ୍ତେ ଶାନ୍ତି ପାଇବା ଲାଗି । ତେଣୁ ମୋର ମନେହୁଏ ଯେ ନିଜଗଢ଼ା ସୀମାବଦ୍ଧତାର ବଡ଼ପଣ କେବଳ ସେଇମାନଙ୍କୁ ସୁହାଏ ଯେଉଁମାନେ ସଂସାରକୁ ପ୍ରକୃତରେ 'ନାହିଁ' କରିପାରିଛନ୍ତି । ମାନେ ବିଭିନ୍ନ ଧରଣର ତ୍ୟାଗୀ ଓ ସନ୍ନ୍ୟାସୀ-ମାନଙ୍କୁ । ସଂସାରୀ ବ୍ରିଗେଡ଼ିୟର୍‌ମାନଙ୍କୁ ନୁହେଁ । ଆଉ ଗୋଟିଏ କଥା । ପ୍ରତ୍ୟେକ ଲକ୍ଷ୍ମଣରେଖା ଅର୍ଥାତ୍ ନିର୍ଦ୍ଧାରିତ ନୀତି ପଛକୁ ଗୋଟାଏ ସୁସ୍ପଷ୍ଟ ସତ୍ୟର ଅବବୋଧ ଥିବା ଦରକାର । କିନ୍ତୁ ଫରାସୀ ଦାର୍ଶନିକ ଆନ୍ଦ୍ରେ ଗିଦେ (Andre Gide) କହିଲି ପରି, ସତ୍ୟର ରଙ୍ଗ ଧୂସର ପରା ? ହୁଏତ ତା'ର ରଙ୍ଗରୂପ ଆମେହିଁ ସ୍ଥିର କରିବା କଥା, ଧୂସରତାର ଅନ୍ୟ ନାଆଁ ଜଟିଳତା । କିନ୍ତୁ ମୋର କ୍ଷୁଦ୍ର ବୁଦ୍ଧିରେ ଜଣେ ବ୍ୟକ୍ତି କଦାପି ଦାବି କରିପାରିବ ନାହିଁ, ଆମର ଏହି ସୀମିତ ଜ୍ଞାନ ଓ ଅନୁଭୂତିର ବର୍ଣ୍ଣିଷ୍ଟ କୋଳାହଳ ଭିତରେ, ଯେ ଏହାହିଁ ସତ୍ୟ, ଅବଶ୍ୟ ଯଦି ତାକୁ କୋଉ ବାଇବଲ୍ ହିସାବରେ ମାନି ନିଆ ନଯାଏ । ସେହେତୁ କ'ଣ ଭାବୁନାହିଁ ଯେ ତମ ଲକ୍ଷ୍ମଣରେଖା ଯେତେହେଲେ ଆପେକ୍ଷିକ, ତେଣୁ ତାକୁ ନେଇ ଗର୍ବ କରିବାରେ କିମ୍ବା ତାକୁ ଆହୁରି ଧରି କଷ୍ଟ ପାଇବାରେ କିଛି ବାହାଦୁରି ନାହିଁ ?

ଦୁଇ—ଲକ୍ଷ୍ମଣରେଖା ଗୋଟାଏ ମିଛ କଥା । ଜୀବନର ସୀମାବଦ୍ଧତା କେବଳ ଜନ୍ମ ଓ ମୃତ୍ୟୁକୁ ନେଇ । ଆଉ କୌଣସି ସୀମା ଧାର୍ଯ୍ୟ ହୋଇ ନାହିଁ ତମ ପାଇଁ । ଏବଂ କୌଣସି କାରଣ ନାହିଁ ତମେ ସେଥିରୁ ଗୋଟାଏ ଯୋଡ଼ାଏ ଗଢ଼ି ବସିବ, ପରିବାର, ସମାଜ ଓ ସରକାରଙ୍କ ଆଡ଼ୁ ହଜାରେ ଆଇନ୍‌କାନୁନ୍ ଥାଉଁ ଥାଉଁ । ତେଣୁ ଉପସ୍ଥିତ କ୍ଷେତ୍ରରେ ଯାହା ତମ 'ସ୍ୱାସ୍ଥ୍ୟ'ର ଅନୁକୂଳ ବୋଲି ଭାବୁଛ, ତାହାହିଁ ନୀତି, ଓ ତା'ର ଲକ୍ଷ୍ମଣରେଖା ସହଜେ ଦିଶିଯିବ ତମକୁ । ଉତ୍ତମ । କିନ୍ତୁ ତାହା ହୁଏ ନାହିଁ, ଯଦି ତମର ତଳେ ହେଲେ ସ୍ୱାଭିମାନ ଥାଏ ନିଜର ବ୍ୟକ୍ତିତ୍ୱକୁ ନେଇ । ଯେ ମୁଁ ଜଣେ ବ୍ୟକ୍ତି, ତେଣୁ ମୁଁ ଅନନ୍ୟ । ଠିକ୍ ଏହି ପ୍ରକାର ଆଗ୍ରହ ବ୍ୟବହାର, ଭାବଭାବନା, ତଥା ଧର୍ମଧାରଣା

ଆଉ କାହାର ନାହିଁ । ଆଉ ତା'କୁ ଯଦି ମୁଁ କିଛି ନୁହେଁ ବୋଲି କୁହେ, ତା'ହେଲେ ଆଉ ରହିଲା କଅଣ ? ଅନ୍ୟତମ ପୋକଟାଏ ଜୋକଟାଏ ପରି ମୁଁ କ'ଣ ଅନ୍ୟତମ ମଣିଷଟାଏ ? ନାହିଁ ଆଜ୍ଞା, ମୁଁ ସୀମା ଗଢ଼ିବାକୁ ବାଧ୍ୟ ମୋ ନିଜ ପାଇଁ, ଅନ୍ତତଃ ମୋର ଆତ୍ମସମ୍ମାନ ଦୃଷ୍ଟିରୁ । ତା'ଛଡ଼ା ନିଜ ପାଇଁ ସୀମା ଗଢ଼ି ନ ପାରିଲେ ସମଷ୍ଟି ପାଇଁ କୋଉ ସୀମା ଗଢ଼ିବାରେ ଆସ୍ଥା ଆସିବ କେଉଁଠୁ ? ନା ପ୍ରବଣତା ଆସିବ ତାକୁ ମାନିବା ପାଇଁ କି ବଦଳେଇବା ପାଇଁ ? ବସ୍ତୁତଃ ଯେଉଁ ସୀମାହୀନତାର ବାତାବରଣ ସୃଷ୍ଟି ହେବ, ସେଥିରେ ତମକୁ ହାଲଆ ଲଗିବ ଡଷ୍ଟୋଭସ୍କି 'ବ୍ରଦର୍ସ କାରାମୋଜଭ'ରେ ଥିବା ସେହି ଚରିତ୍ର ପରି, ଯେ ଦେଖୁଛି ଯେ ଏଠି 'ସବୁ କିଛି ଚଳେ' (Everything is permitted) ତେଣୁ କେଉଁଥିରେ କିଛି ମାନେ ନାହିଁ, ମୂଲ୍ୟ ନାହିଁ, କି ମୂଲ୍ୟ ନାହିଁ ଏଇ ସଂସାରରେ । ଅତଏବ ମୋର ମନେ ହୁଏ ଯେ ସ୍ୱକୀୟ ଲକ୍ଷ୍ମଣରେଖାର ପ୍ରସ୍ତୁତି ଅତ୍ୟାବଶ୍ୟକ । ତାକୁ ତମେ କିଭଳି ସମ୍ମାନ ଦେବ ତମ ଜୀବନରେ, ତାହା ଭିନ୍ନ କଥା ।

ତିନି—ତା'ହେଲେ କ'ଣ ଶେଷକୁ କର୍ଣ୍ଣେଲ୍ ସାହେବଙ୍କର ସୁବିଧାବାଦୀ ପ୍ରେସ୍କ୍ରିପ୍ସନ୍‌ହିଁ ମାନିବାକୁ ପଡ଼ିବ ? ଅର୍ଥାତ୍ ଲକ୍ଷ୍ମଣରେଖାଟିଏ ଥାଉ, ହେଲେ ତାକୁ ସହଜିଆ କରି ରଖ, ଯେମିତିକି ତାକୁ ଘୁଞ୍ଚେଇ ହେବ ଦରକାର ହେଲେ, ଦେଶକାଳ-ପାତ୍ରର ଗୁହାରି ଅନୁଯାୟୀ । ଯେଉଁଥିରେ ତମର ବିବେକକୁ ବିଶେଷ ବାଧା ହେବ ନାହିଁ କି ହୃଦୟକୁ ଯନ୍ତ୍ରଣା ହେବ ନାହିଁ, ଏବଂ ତମର ବ୍ୟକ୍ତିତ୍ୱଧର୍ମୀ ଆତ୍ମସମ୍ମାନ ବଜାୟ ରହିବ । ତା'ହେଲେ ଏହାହିଁ କ'ଣ ପ୍ରକୃତରେ ବୁଦ୍ଧିମାନର କାର୍ଯ୍ୟ, ଏବଂ ସଂସାରରେ ଆତଯାତ ହେଉଥିବା ଆମେ ଯେତେକ ବ୍ରିଗେଡ଼ିୟର୍ ଓକିଲ, ଡାକ୍ତର, ମାଷ୍ଟର, ଶିଳ୍ପୀ, ଲେଖକ ଆଦି ବୁଦ୍ଧିଜୀବୀଙ୍କର ଏହାହିଁ କରଣୀୟ ? ଆତ୍ମାନନ୍ଦ ଓ ଆତ୍ମସମ୍ମାନର ଏହି ଚମତ୍କାର ସମନ୍ୱୟ ?

ଆପଣମାନେ ହୁଏତ ହସିବେ । କହିବେ ଯେ ଏଇ ତଥାକଥିତ ସମନ୍ୱୟ ଆତ୍ମଶଠତା ଛଡ଼ା ଆଉ କିଛି ନୁହେଁ । ସାଲିସ୍‌ଧର୍ମୀ ଶଠକୁ କ'ଣ ଶଠ କୁହାଯାଏ ? କହିବେ ଯେ ଗପର

କ୍ଲାଇମାକ୍ସଟା ମଜାର ହୋଇଛି ଲେଖକ ମହାଶୟ, ତାକୁ ରସୋତ୍ତୀର୍ଣ୍ଣ କହିଲେ ମଧ୍ୟ ଭୁଲ୍ ହେବ ନାହିଁ, କିନ୍ତୁ ଆପଣ କ'ଣ ସତରେ ଚାହାଁନ୍ତି ଯେ ଏଇ ରସିକତା ହିଁ ହେବ ଗୋଟାଏ ସ୍ବତନ୍ତ୍ର ପନ୍ଥା ଆମମାନଙ୍କ ପାଇଁ ?

ତା'ର ଉତ୍ତରରେ ମୁଁ କେବଳ ଏତିକି କହିବାର ଅନୁମତି ନେଉଛି ଯେ ଦସ୍ତାକରି କର୍ଣ୍ଣେଲ୍ ସାହେବଙ୍କର ପ୍ରେମ୍‌ କି ପ୍‌-ସନ୍‌ଟାକୁ ଗୋଟାଏ ତଥ୍ୟ ଅଥବା ସରକାରୀ ବିଜ୍ଞପ୍ତିର ମର୍ଯ୍ୟାଦା ଦିଅନ୍ତୁ ନାହିଁ । ନିଜକୁ ଖରାପ ଲାଗିବ, ଏଇ ସୁପାରିଶକୁ ଖୋଲାଖୋଲି ଭାବରେ ମାନିନେଲେ । କିନ୍ତୁ କଥା ହେଉଛି ଯେ ବାସ୍ତବରେ ଆମେ ଏହା ହିଁ କରୁ । ସାଧାରଣତଃ । ଫ୍ଲର୍ଟ୍ କରିଥାଉ ଆମ ଲକ୍ଷ୍ମଣରେଖାକୁ ନେଇ, ହେଲେ ସେଭଳି କିଛି ଅପକର୍ମର ଧାରଣା ଆମ ମନକୁ ଆସେ ନାହିଁ । ଆସିଲେ ମଧ୍ୟ ଆମେ ନିଜକୁ ସଫେଇ ଦେଇପାରୁ ଯେ ଆମେ କୌଣସି ରେଖାକୁ ଘୂଞ୍ଚେଇ ଦେଇ ନାହୁଁ, ତମର ବୁଝିବା ଭୁଲ୍ । ତେଣୁ ମୋର ନିବେଦନ ଯେ ନିଜକୁ ଆଉ ଟିକିଏ ନିରେଖି ଦେଖି ସଚେତନ ହୁଅନ୍ତୁ, ବିଭିନ୍ନ କ୍ଷେତ୍ରରେ ଅନୁମିତ ଏଇ ଆତ୍ମଶଠତାର ସତ୍ତମିଛ ଓ ବାସ୍ତବ ସ୍ୱରୂପ ବିଷୟରେ । ତା'ହେଲେ ବୋଧହୁଏ ଆପଣ ଜାଣିପାରିବେ ଯେ କାହାକୁ ପ୍ରକୃତରେ ସୁବିଧାବାଦ କୁହାଯିବ, ଏବଂ କାହାକୁ କାର୍ଯ୍ୟକାରୀ ସାଧାରଣଜ୍ଞାନ, ପ୍ରାକ୍ଟିକ୍ୟାଲ୍ କମନ୍‌ସେନସ୍ ବୋଲି ମନେ କରିବା ଉଚିତ, ଯାହାର ଆବଶ୍ୟକତାକୁ ମହାତ୍ମାଗାନ୍ଧୀଙ୍କର ଆଦର୍ଶବାଦ ମଧ୍ୟ ସ୍ୱୀକାର କରିଥିଲା । ସେଇଥିଁ ମୋର ବିଶ୍ୱାସ ଆପଣ ନିଜକୁ ଯଥାବିଧି ଚଳେଇ ନେଇ ପାରିବେ ଆପଣା ଅଭିରୁଚି ଅନୁଯାୟୀ, ଯେଉଁଥିରେ ଆତ୍ମାନନ୍ଦ ଓ ଆତ୍ମସମ୍ମାନ ମଧ୍ୟରେ ସାଧୁ ସମନ୍ୱୟ ସ୍ଥାପିତ ହୋଇପାରିବ । ମଲା, ଲକ୍ଷ୍ମଣରେଖାଟାକୁ ଘୁଞ୍ଚେଇ ଦେବାକୁ କିଏ କହୁଛି ମ ? ବୁଝିବାକୁ ସେତେବେଳକୁ ସିନା ସେଇଟା ସେଇଠି ଥିଲା କିନ୍ତୁ ଏଇକ୍ଷଣି ଏଇଠି ଅଛି ବୋଲି ମାନିନେଲେ କ'ଣ ମାନହାନି ହୋଇଯିବ ?



# ପ୍ରମିଜ୍ ପ୍ରତିଶ୍ରୁତି

ଏମ୍. ଏସ୍. ମୀନା ତଥାପି ବସିବାକୁ ନାହିଁ । ଏବଂ ଶାନ୍ତଶୀତଳ ଲାଇବ୍ରେରୀକୁ ଅନଉଛି ଏମୁଣ୍ଡରୁ ସେମୁଣ୍ଡ ଯାଏଁ । ଏମିତି ଅନଉଛି ଯେ ଶାୟିତା ଶାନ୍ତମୟୀକୁ ସଙ୍କୋଚ ଲାଗିପାରେ ବୋଲି ଭ୍ରମ ହେବ । ଅପ୍ରତିଭ ହୋଇ ସେ ବୋଧହୁଏ ନିଜକୁ ଅଣ୍ଡାଳିବ, ଲୁଗାପଟା କେଉଁଠି ଖସିଯାଇଛି କି କ'ଣ ବୋଲି ଖିଳିବିଳି ହେବ । ସିଏ ବି ଅସ୍ଥିର ହେବ । ଦେଖିନା, କେମିତି ଜଣେ ବିଦ୍ୟାର୍ଥିନୀ ତା' ବହିରୁ ଆଖି ହଟେଇ କ'ଣ ଭାବୁଥିଲା ବସି, କିନ୍ତୁ ସେ ଯଥାକ୍ରମେ ଫେରିଆସି ପାରୁନାହିଁ ତା' ଅଧ୍ୟୟନକୁ ? ବୋଧହୁଏ ତା' ଭାବନା ଗଣ୍ଡଗୋଳ ହୋଇଯାଉଛି । ତା' ଭିତରକୁ ଆସିଯାଉଛି ତୁଲ୍ଲାକୁ ଠିଆହୋଇ ରହିଥିବା ଓ ପୁଅମାନଙ୍କ ପରି ବାଳ କାଟିଥିବା ଗୋଟିଏ ପ୍ୟାଣ୍ଟ ପିନ୍ଧା ଡେଙ୍ଗା ଝିଅ, ଯେ ଖାଲି ଅନଉଛି ଗୃହଆଡ଼କୁ (ମୋତେ ବି ଅନଉଛି !), ଟଙ୍ଗଟଙ୍ଗ ହୋଇ ନୁହେଁ, ରହି ରହି, ଗୋଟିରୁ ଗୋଟିକୁ ବଢ଼ିଲା ପରି, ଗିଳିଲା ପରି···ସତେକି ସେ କୋଉ ମାଷ୍ଟ୍ରାଣୀ, ଦେଖୁଛି ମୁଁ ସତରେ ବହି ପଢ଼ୁଛି କି ଆଉ କଅଣ···ଧାତ୍ ! ସେମିତି ଆଉ କେତେକ ବିଦ୍ୟାର୍ଥୀ ଓ ବିଦ୍ୟାର୍ଥିନୀ ତଥା କର୍ମଚାରୀମାନେ ମୀନାର ବିଚିତ୍ର ଆଚରଣ ପ୍ରତି ଟାଣି ହୋଇଗଲେ ମୁହୂର୍ତ୍ତିକ ପାଇଁ, ଏବଂ ତାକୁ 'ଧାତ୍ !' ମର୍ମରେ ଆଡ଼େଇ ନେଇ ଫେରି ଆସିଲେ ଯେଝା ଯେଝା ବିଦ୍ୟାବନ୍ତ ନୀରବତା ଅଥବା ଗୁଞ୍ଜନକୁ । କିନ୍ତୁ ମନେହେବ ଯେ କ୍ଷଣେକ ପାଇଁ ସେମାନେ ବି ଟହଲିଗଲେ ମୀନାର ଦୃଷ୍ଟିପାତରେ, ଏବଂ ଆପଣା ଲୁଗାପଟାକୁ ସଜାଡ଼ି ବସିଲେ ।

ସେମାନେ ଯଦି ତତ୍‌କ୍ଷଣାତ୍ ଫେରି ନଆସି ମୀନାକୁ ଲକ୍ଷ୍ୟ କରିଥାଆନ୍ତେ କିଛି ସମୟ ପାଇଁ, ତା'ହେଲେ ତା' ଅସ୍ଥିରତାର ଅନ୍ତତଃ ଗୋଟିଏ କାରଣ ଅନୁମାନ କରିପାରିଥାଆନ୍ତେ । କାରଣ ସେମାନେ ଦେଖିଥାଆନ୍ତେ ଯେ ସେ ଥରକୁ ଥର ତା' ପ୍ୟାଣ୍ଟ ପକେଟ୍‌କୁ ଥାପୁଡ଼ଉଛି, ସେଥିରୁ କିଛି ଗୋଟାଏ ଆଶ୍ୱାସନା ପାଇଲା ପରି । ମନିପର୍ସ ପକେଟ୍‌ମାର୍ ହୋଇଛି କି ନାହିଁ ଜାଣିବା ପାଇଁ ? କିନ୍ତୁ ଥରେ ଦେଖି ନେଲେ କ'ଣ ହେଲା ନାହିଁ, ତା'କୁ ବାରମ୍ବାର ଥାପୁଡ଼ଉଇବା ଦରକାର ? ସେଇଠୁଁ ତା' ଭିତରେ ହାତ ପୂରଉଛି । ହେଲେ ଶୂନ୍ୟ ହାତକୁ ଫେରାଇ ଆଣୁଛି । ସତେକି ସେ ବସ୍ତୁବିଶେଷକୁ କାଢ଼ି ଆଣି ତା'ର ସଦ୍‌ବ୍ୟବହାର କରିବାକୁ ଚାହେଁ ।

କିନ୍ତୁ ତା'ର ସୁଯୋଗ ମିଳୁନାହିଁ ଏଠି । ଏବଂ ସେଥିପାଇଁ ସେ ରାଗୁଛି, ଅସ୍ଥିର ହେଉଛି । ବୁଝିବାକୁ ଡେରି ଲାଗିବ ନାହିଁ ଯେ ଝିଅ ସିଗାରେଟ୍ ଫୁଙ୍କିବାକୁ ଚାହେଁ । ସଂସାରଟାକୁ ଧୂଆଁରେ ଧୂଆଁରେ ଉଡ଼େଇ ଦେବାକୁ ଚାହେଁ । କିନ୍ତୁ ସେତିକ ସମ୍ଭବ ହେଉ ନାହିଁ ଏଠି । ବିଶେଷତଃ ଦିଲ୍ଲୀର ସମ୍ଭ୍ରାନ୍ତ ଓ ସୁରକ୍ଷିତ 'ଆମେରିକାନ୍ ସେଣ୍ଟର୍ ଲାଇବ୍ରେରୀରେ ।

କିନ୍ତୁ ଏଇ କି'ଣ ସେ' ଅସ୍ଥିରତାର ମୂଳ କାରଣ ?

ମୋଟେ ନୁହେଁ ! ଯେଉଁମାନେ ମୀନାକୁ ଜାଣିଛନ୍ତି ବୋଲି ମନେ କରନ୍ତି, ଯଥା ତା'ର ନାନା ସାଙ୍ଗସାଥୀ ସହକର୍ମିଣୀମାନେ, ଦାବି କରି କହିବେ ଯେ ଝିଅଟା (ଅବଶ୍ୟ ତା' ପ୍ରତି ଆମର ଯଥେଷ୍ଟ ସହାନୁଭୂତି ଅଛି) ସବୁବେଳେ ସେମିତି । କହିବେ ଯେ ଯେତେବେଳେ ସେ ଅବାଧରେ ସିଗାରେଟ୍ ଫୁଙ୍କୁଥାଏ, ନିଜ ଗୋଟିକିଆ-ବେଡ଼୍‌ରୁମ୍ 'ବର୍‌ସାତି'ର ଛାତ ଉପରକୁ, କିମ୍ବା କେଉଁ ବାନ୍ଧବୀର ଘରେ ତା' କଥାକୁହା ମୁହଁ ପାଖରେ, ଏପରିକି ବାନ୍ଧବୀର ବୃଦ୍ଧ ବାପାମାଆଙ୍କ ଦୃଷ୍ଟିପଥକୁ ତାଙ୍କ ଶଙ୍କିତ ଉଦାରତାକୁ ଛୁଇଁଗଲେଇଲା ପରି, ସେଠି କୋଉ କାରଣ ମାନିବାକୁ ପଡ଼େ ଯେ ତାକୁ ଛଟପଟ ଲାଗେ ? ତଥାପି ସେ ସେଠି ବି କାହିଁକି ଥିର ହୋଇ ବସିପାରେ ନାହିଁ ? ଏବଂ 'ମୋତେ କି'ଣ ବୋଲି ଭାବିଛ କି' ଏଇ ଭାବରେ ଅନଉଥାଏ ଯାହା' ମୁହଁରୁ ତା' ମୁହଁକୁ ? ନା ଆଜ୍ଞା, ଇଏ ଖାଲି ଅସ୍ଥିରତା ନୁହେଁ, ଇଏ ହେଉଛି ନିଜପ୍ରତି ଦୃଷ୍ଟି ଆକର୍ଷଣ କରିବାର ପିଲାଳିଆମି । ବଡ଼୍ ହିଏ ହୋଇ ନିଜକୁ ଚାରିପାଞ୍ଚବର୍ଷିଆ ଦୁଷ୍ଟପିଲା ବୋଲି ଦେଖେଇ ହେବାର ଚ୍ୟାଲେଞ୍ଜ୍ !

କିନ୍ତୁ ସେଇ ଜାଣିବାଶୁଣିବା ସାଙ୍ଗମାନେ ବୁଝିପାରନ୍ତି ନାହିଁ ଏବଂ ବୁଝି ନପାରି ବିରକ୍ତ ହୁଅନ୍ତି ଯେ ଏମିତିକା ସ୍ମାର୍ଟ ଚାଲାଖ୍‌ଚତୁର ଝିଅଟା (କେବଳ ବି. ଏ. ପାସ୍ କରିଥିଲେ ମଧ୍ୟ ତା'ର ଅନେକ ଅଧିକ ବିଦ୍ୟାବୁଦ୍ଧି ଓ କଳା-କୌଶଳ ଅଛି, ଜାପାନିଜ୍ 'ହାଇକୁ' ଶୈଳୀରେ ଚାରିଧାଡ଼ିଆ କବିତା ଲେଖିବାଠାରୁ ଆରମ୍ଭ କରି ପାର୍ଟିପାଇଁ ବଟର୍ ଚିକେନ୍ ରାନ୍ଧିବା ଯାଏଁ) କୋଉଥିପାଇଁ ଏମିତିକା ଢଙ୍ଗ କରେ । ଧୂଆଁ ଫୁଙ୍କିବାରେ ହେଉ କି ଆନନ୍ଦର ହସରେ, କ୍ରୋଧର ଭର୍ତ୍ସନାରେ, ସଂଯମର ସୀମା ଟପିଯାଏ । ଏବଂ ଅଣାୟତ୍ତ ହୋଇ ନୁହେଁ । ମନେ ହେବ ଜାଣିଶୁଣି । ସଚେତ...ସଚେତ...

ସେତିକି ସେମାନେ ଭାବିପାରନ୍ତି ନାହିଁ । ଅନୁମାନ କରିପାରନ୍ତି ନାହିଁ ଯେ ଏଇ ସୀମା ଟପିଯିବାରେ ସେ ଗୋଟାଏ ନିଜ ଗଢ଼ା ଉଲ୍ଲାସ ଅନୁଭବ କରେ, ଏବଂ ତା' ସାଙ୍ଗକୁ ଏକ ଅଦମ୍ୟ ଇଚ୍ଛାର ତାଡ଼ନା—ଏଇ ସମ୍ପର୍କରେ ମୋଟେ କେହି

ଜଣେ ଚଟକଣିଟାଏ ମାରି ଗେଲ୍ହା କରନ୍ତା ନାହିଁ ! ଯେମିତିକି ମୁଁ ପ୍ରକୃତରେ ଗୋଟାଏ 'ବ୍ରାଟ୍', ହେଲେ ତା' ଅତି ନିଜର । ମା'ଆ ହେଉ କି ବାପା ନା, ନା, ବାପ ନୁହେଁ, କୋଉ ପୁରୁଷ ନୁହେଁ···। ସେଇଠୁଁ ମୁଁ ତା' କୋଳରେ ମୁଣ୍ଡ ଗୁଞ୍ଜି ଦିଅନ୍ତି । ହୁଏତ ଟିକିଏ କାନ୍ଦନ୍ତି । ମଜା ଲାଗନ୍ତା ।

ଏଇଠି ମାନିବାକୁ ପଡ଼ିବ ଯେ ଦୃଷ୍ଟି ଆକର୍ଷଣ କରିବା ପାଇଁ (ଧରିନିଅ ଯେ କଥାଟା ପ୍ରକୃତରେ ସେଇଆ) ସେ ଆଉ ଯାହା କରୁ ପଛେ, ତାକୁ କେହି ଆଖିରୁ ଲୁହ ଝରାଇବାର ଦେଖି ନାହିଁ ।

କେତେବେଳକେ ମୀନା ଗୋଟିଏ ଚଉକିରେ ବସି ପଡ଼ିଲା । ଏବଂ ତା' ହାତଧରା ବ୍ୟାଗରୁ ନୋଟ୍ ବହିଟିଏ ଆଣି ସେଥିରେ ଏଣୁତେଣୁ ଗାରେଇବାକୁ ଲାଗିଲା । ଗାରଉ ଗାରଉ ଗୋଟିଏ ଛବି ଆଙ୍କି ହେଇଗଲା କି କଅଣ । ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କାରଣ ଛବି ଆଙ୍କିବା ମଧ୍ୟ ତାର ବହୁମୁଖୀ କଳାକୌଶଳରେ ଗଣା । କିନ୍ତୁ ଦେଥିରେ କଣ୍ଟାଅୂଣ୍ଟାର ବୋଧ କାହିଁ ? ଅସ୍ଥିରତା କାହିଁ ? ବରଂ ମନେ ହେବ ସେ ଗୋଟାଏ ଫୁଲ ଅଙ୍କିବାକୁ ଚାହୁଁଛି । ପାଖୁଡ଼ାରେ ପାଖୁଡ଼ାରେ ସୁସଂଯତ ଫୁଲ । ସମାହିତ, ସୁଚିମାନ୍ୟତା···

ଆରେ, ଝିଅଟା କ'ଣ କରୁଛି ମ ? ପଦ୍ମଫୁଲ କି କେଉଁ ଗୋଟିଏ ସୁନ୍ଦରିଆ ଆକାରପ୍ରକାର ଗଢ଼ି ହୋଇ ଆସୁଥିଲା । ହେଲେ ସେ ତା' ଉପରେ ଛକ ପକଉଛି । ଥରେ ନୁହେଁ, ଦି'ଥର ନୁହେଁ, ବାରମ୍ବାର । ସତେକି ଫୁଲ ସାଙ୍ଗରେ କି ଛବିଅଙ୍କା ସାଙ୍ଗରେ ତା'ର କୌଣସି ସମ୍ପର୍କ ନାହିଁ । ଆଉ ନାହିଁ, ତୁଟି ଯାଇଛି । ନାହିଁ, ନାହିଁ, ନାହିଁ ।

ମୁଁ କାହାର ଦୟା ମାଗୁ ନାହିଁ । ମୁଁ ସେମିତିକା ଝିଅ ନୁହେଁ । କିନ୍ତୁ କୋଉ ନ୍ୟାୟରେ କୋଉ ଅଧିକାରରେ ସେମାନେ ମୋ କଥାକୁ ବିଶ୍ୱାସ କରିବେ ନାହିଁ ? ମାନେ ବିଶ୍ୱାସ ନକଲା ପରି ଗମ୍ଭୀରତାର ଛଳ କରିବେ, ମୁଣ୍ଡ ଝୁଙ୍କାଇବେ ? ସତେକି ମୋ ମିଛକୁ ଉତ୍ତର ନାହିଁ, ତେଣୁ ତାଙ୍କ ପାଟି ଫିଟୁ ନାହିଁ । ଆଉ ତାଙ୍କର ସେଇ ଯୋଉ ଦରବୁଢ଼ୀ ମଙ୍ଗଳଆର୍ଣୀ ମାଉସୀ, କମ୍ପା ଏଠିକାର ଶୋଭା ଲଲ୍ଫୁଓ୍ୱାମୀ—ସରୋଜର ବିଶିଷ୍ଟ ବନ୍ଧୁ ବୋଲି ଦେଖେଇ ହୁଏ କାରଣ ସେ ଯୁକ୍ତରାଷ୍ଟ୍ରରେ ପାଠ ପଢ଼ିଛି, ତେଣୁ ସେ ଉତ୍କୃଷ୍ଟ ପାଠ ପଢ଼ାଏ ସରୋଜକୁ, ଯାହା ଆମକୁ ମାଲୁମ୍ ନାହିଁ—ତାଙ୍କ ଓଠରେ ଯେଉଁ ମୁରୁକିହସା ଫୁଟି ଉଠେ ତା'ଠାରୁ ବଳି କୁଟିଳତା ପୃଥିବୀରେ ନାହିଁ । ସତେକି ମୁଁ ଖାଲି ମିଛ କହୁନାହିଁ, ମୋ ମିଛରେ ମତଲବ ଅଛି !

କଅଣ ମତଲବ ଅଛି ? ମୁଁ ମନା କରୁ ନାହିଁ ଯେ ତମେ ସବୁ ବି ସରୋଜର ବନ୍ଧୁ ପ୍ରିୟଜନ, ଶୁଭକାଙ୍କ୍ଷୀ । ସରୋଜ ସେମିତିକା ଝିଅ, କାହାର

ମନରେ ଦୁଃଖ ଦେବାକୁ ଚାହେଁ ନାହିଁ, ତାକୁ କେହି ଭଲ ନପାଇ ରହିପାରିବ ନାହିଁ । କିନ୍ତୁ ସମସ୍ତଙ୍କ ଭିତରୁ ସେ ମୋତେ ହିଁ ବାଛି ନେଇଥିଲା ତା'ମନର ଗମ୍ଭୀର କଥା କହିବା ପାଇଁ, ସେ ମୋତେ ହିଁ ପ୍ରମିଜ୍ କରେଇଥିଲା ଯେ ଯଦି ତା'ର କିଛି ହୋଇଯାଏ, ତା'ହେଲେ ମୁଁ ତା' ଦୁ'ପିଲା ଶ୍ରେୟସ ଓ ରଜନୀଙ୍କ ଯତ୍ନ ନେବି, ବାହାର ମାଉସୀ ପର ନୁହେଁ ନିଜ ମାଆ ପରି—ଏତିକି ବିଶ୍ୱାସ କରିବାକୁ ଏତେ କଷ୍ଟ ହେଉଛି ତୁମକୁ ? ନା ହିଂସାରେ ଜଳିଯାଉଛ ଯେ ଏତେ ଭାବ ଥିଲା ଆମ ଭିତରେ ?

କହିପାର ଯେ ସେ କାହିଁକି ଭାବିଲା ତା'ର କିଛି ହୋଇଯିବ ବୋଲି । ଫୁଲ ପରି ଚେହେରା, ସତେସତିକା ସରୋଜଟିଏ, ମୁହଁରେ ସଦାବେଳେ ହସ, କାହିଁକି ତା' ମୁଣ୍ଡକୁ ଭୂତ ଚଢ଼ିଲା ଯେ ତା'ର କିଛି ହୋଇଯିବ ? କେମିତି ସେ ଜାଣିଲା ଯେ କେଇଟା ମାସ ପରେ ସେ ଚାଲିଯିବ ଦୁ'ଦିନିଆ ଜ୍ୱରରେ । ତମେ ସବୁ ବୁଝିବ ନାହିଁ । ଶିଶିରକଣାରେ ବ୍ରହ୍ମାଣ୍ଡ ଦୃଶ୍ୟ ହୁଏ । ସେନ୍‌ସିଟିଭ୍ ମଣିଷକୁ ଆଗତଭବିଷ୍ୟ ଦିଶିଯାଏ ଜଳଜଳ ହୋଇ । ଯଦିଓ ଆଉ କାହାକୁ କହି ହୁଏ ନାହିଁ ସେ କଥା, ଅତି-ଅନ୍ତରଙ୍ଗ ଜଣକ ଛଡ଼ା ।

ହୁଏତ ସେ ମୋତେ ସିଧାସଳଖ କହି ନାହିଁ ସେମିତି । କିନ୍ତୁ ଇଙ୍ଗିତରେ କହିଛି । ମାନେ ମୁଁ କହିଲାରୁ ମୋ ହାତକୁ ଧରପକେଇଛି ଗଦ୍‌ଗଦ ହୋଇ । ଯାହାର ପରୋକ୍ଷ ହେଉଛି—ହଁ ହଁ, ମୁଁ ସେଇଆ ଚାହେଁ । ଥ୍ୟାଙ୍କ୍ସ୍, ଥ୍ୟାଙ୍କ୍ସ୍···

ସେଦିନ ଘରେ ସେମାନଙ୍କର ବର୍ଥ୍‌ଡେ ଟିବାର ଥିଲା । ସ୍ୱାମୀ ଆଲୋକର କୋଉ ଫ୍ରେଣ୍ଡାଲ୍ ସାଙ୍ଗର ବାହାଘର । ସଞ୍ଜବେଳକୁ ମୁଁ ତା' ସାଙ୍ଗରେ ମିଶି ଭଲମନ୍ଦ ତିଆର କରୁଥିଲି, ବାଟ ଚାହିଁ । ସେତ ସୁକୁମାରଅଟା, ଟିକକରେ ଥକିଯାଏ । ମୁଁଇ ସବୁ କରୁଥିଲି ଜାଣ । ତା ମୁହଁ ଝାଳରେ ଭିଜି ଯାଇଥାଏ । ମନେ ହେଉଥାଏ ସେ ଆଉ ପାରୁ ନାହିଁ ସଂସାରର ଦଉଡ଼ମଉଡ଼କୁ । ଜଣ୍ଟଲ୍‌ମ୍ୟାନ୍ ଆଲୋକ ତ ସବୁବେଳେ ତାକୁ ଗୁଡ଼ି ପଳାଏ ଏଠିକି ସେଠିକି, କ'ଣ ନା ନହେଲେ ଖବରଟା ବାସି ହୋଇଯିବ । ପିଲା ଦୁ'ଟା ଯୋଉ ଦୁଷ୍ଟ ହେଲେଣି କହିବାର ନୁହେଁ । ତା' ପିଲାଦିନର ଛବିଙ୍କା ସଉକ୍ ମରି ଆସିଲାଣି (ଯଦିଓ ମୁଁ ସେଦିଗରେ ତାକୁ ଅନେକ ସାହାଯ୍ୟ କରିଛି, ଦମ୍ଭ ଦେଇଛି) ସେଇଠୁଁ ହଠାତ୍ ମୋ ଛାତିରେ ଛନକା ପଶିଲା । ଯଦି ଏ ଝିଅଟା ସୁପ୍ରସୁପ୍ର ଭାଙ୍ଗିପଡ଼େ···ଯଦି ତା'ର କିଛି ହୋଇଯାଏ !

ତା'ହେଲେ, ତା'ହେଲେ, ଅନ୍ତତଃ ମୁଁ ତା' ପିଲା ଦୁ'ଟାଙ୍କୁ କୋଳକୁ ନେଇ ଆସି ପାରିବି ନାହିଁ ? ସେତେବେଳେ ସରୋଜ ମୋ କୋଳରେ ଶୋଇଯାଏ ଓ ମୁଁ

ତା' ମୁଣ୍ଡବାଳକୁ ସଳସଳ କରେ, ଗୋଟେ ଅଧେ ପାଚିଲାବାଳକୁ ଚୁଟ୍ କିନା ଟାଣି ଆଣେ, ଆଉ ସେ ମୋ ମୁହଁକୁ ଚାହିଁ ହସିଦିଏ, ସେତେବେଳେ ମୋର ମନେହୁଏ ମୁଁ ପାଇଛି । ପାଇଛି ଏତେଦିନକେ । ଚାହିଁ ବସିଲା ନହେଲା ନାହିଁ, ଉଙ୍କିଲା ଦ୍ୱିତୀୟା ଚାନ୍ଦ । ଶେତାସୁନ୍ଦର, ଧୀରମଧୁର । ଏଣିକି କୋଉ ମାଆ କି ବାପା କି ଲଭର୍-ବନ୍ଧୁ ମୋତେ ଭଣ୍ଡେଇ ପାରିବ ନାହିଁ, ଡରେଇ ପାରିବ ନାହିଁ । କିନ୍ତୁ ତା'ର (ମୋର) ଏଇ ସୁଖଟିକି କ'ଣ ଖସିଯିବ ମୋ ହାତରୁ ? ଶେତାଚାନ୍ଦ ଚାହୁଁଚାହୁଁ ଲିଭିଯିବ ଆକାଶରେ ? ସେଇଠୁଁ ମୁଁ ଗୁନଥା ହୋଇ କହି ପକେଇଲି ତା' ମନର କଥା—

"ସରକୁ, ମାଇ ଡାର୍ଲିଙ୍ଗ୍, ତୋର ଯଦି କିଛି ହୋଇଯାଏ, ତା'ହେଲେ ମୁଁ ପ୍ରମିଜ୍ କରୁଛି ତୋ ପିଲା ଦି'ଜଣଙ୍କର ଯତ୍ନନେବି । ନିଜ ମାଆ ପରି । ପ୍ରମିଜ୍..."

ସେ କାବା ହୋଇ ଅନେଇଲା ମୋ ଆଡ଼କୁ ମୁହୂର୍ତ୍ତକ ପାଇଁ, ତା'ପରେ ମୋ ହାତକୁ ଧରି ପକାଇଲା । କୃତଜ୍ଞତାରେ ଗଦ୍‌ଗଦ ହୋଇ...

ତା' ମାନେ ମୁଁ କ'ଣ ମିଛ କହିଲି ?

ନା ସେଥିରେ ମୋର କିଛି ମତଲବ ଥିଲା ??

ସେମାନେ ନ ବୁଝିଲେ ନାହିଁ । ସରୋଜ ବୁଝିବ, ସ୍ୱର୍ଗରେ ଥାଇ ବୁଝିବ । କିନ୍ତୁ...କିନ୍ତୁ ମୁଁ ତା' ଘରକୁ ଯିବି କେମିତି ? ସେଇସବୁ ଅପର ଲୋକ, ଯେଉଁମାନେ ଭାବନ୍ତି ଯେ ମୁଁ ମିଛ କହୁଛି, ଅଯଥାରେ ଦଖଲ-ଦେଉଛି ତାଙ୍କ ସରୋଜ ସଂସାରରେ, ତାଙ୍କ ଅନାତ୍ମୀୟଭାବକୁ ଆଉ କେତେଦିନ ବରଦାସ୍ତ କରିପାରିବି ? ଅର୍ଦ୍ଧଚନ୍ଦ୍ର ସହି ତଡ଼ା ଖାଇଲା ଯାଏଁ ? ପାରିବି ନାହିଁ । ମୋର ବି ଗୋଟାଏ ଆତ୍ମସମ୍ମାନ ଅଛି, ବେଳେବେଳେ ମୋର ମନେ ହୁଏ ଯେ ଆଲୋକ ବି ସେଇ ଦଳରେ ଅଛି, ତା'ର ବି ହିଂସା ମୋ ଉପରେ । ଯେ ସରୋଜ ତା'ଠାରୁ ବି ବେଶୀ ଭଲପାଉଥିଲା ମୋତେ...

...ଯାଆ ! ନହେଲେ ତୁ ଆସିଥିଲୁ କାହିଁକି ଏଠିକି ? କ'ଣ ପ୍ରକୃତରେ ଆସିଥିଲୁ ପିଲାଙ୍କ ଗପ ପାଇଁ ନୂଆ ଖୋରାକ୍ ଯୋଗାଡ଼ କରିବା ପାଇଁ, ଯେମିତିକି 'ମର୍ଣ୍ଣିଂ ଷ୍ଟାର୍'ର ସମ୍ପାଦକ ପ୍ରେମୀ ଦଲାଲ୍‌ର ଶୁଭଦୃଷ୍ଟି ପଡ଼ିବ ତୋ ଉପରେ ଆଉ ସେ ଗୋଟାଏ ନୂଆ କଣ୍ଟ୍ରାକ୍ଟ ବଢ଼େଇ ଦେବ ତୋ ହାତକୁ ? ଏତେ ଲୋଭ ସେଇ ଦାନ୍ତୁଣୀ ବୁଢ଼ୀର ଅନୁଗ୍ରହକୁ ? (ଜାନା ହସିଲା ମନକୁ ମନ ଓ ପୁଣି କେଇଟା ଗାର ଆଙ୍କିଲା, ମଣିଷ ମୁହଁ ଗଢ଼ିଲା ପରି) ନା ତୋ' ପାଦ ବୁଝିବାକୁ ଟାଣି

ହୋଇଗଲା ଏଇ ଆଡ଼କୁ, କାହିଁକିନା ଆଉ ଟିକିଏ ଆଗକୁ ଗଲେ କିନଟ୍ ଷ୍ଟ୍ରିଟ୍, ତା'ର ଡି' ବ୍ଲକ୍ ଉପର ମହଲାରେ ଆଲୋକ ଜଳୁଥିବା ଓଏ ଜର୍ଣ୍ଣାଲିଷ୍ଟ୍‌ର ଫ୍ଲାଟ୍ ? ତା' ଭିତରକୁ ପଶିଲା କ୍ଷଣି ଚନ୍ଦନ ଧୂପର ବାସ୍ନା, ପାଖୁଡ଼ା ଝଡ଼ା ଗୋଲାପ ଓ ଟୁମୁରୁମିଆ କାନ କୁକୁରର ଅଭ୍ୟର୍ଥନା, ସେଇ ହେଉଛି ସରୋଜର ବାସ୍ନା, ସରୋଜର ଅଭ୍ୟର୍ଥନା । ଅପେକ୍ଷା କରିଛି ତୋ ପାଇଁ । ଆସି ଛଅଦିନ ହେଲାଣି ଯାଇନାହୁଁ ସେଠିକି । ଆଉ କେତେଦିନ ଦୂରେଇ ରହି ପାରିବୁ ?

ଯାଆ—ସଂସାରର ଯେତେକ ବାଜେ ଲୋକ, ନଚ୍ଛୁଁ ଧିଆ ଅପରିଚ୍ଛନ୍ନିଆ ଲୋକ, ତୁ ତାଙ୍କ ନାପସନ୍ଦକୁ କ'ଣ କେବେହେଲେ ପରୁଆ କରିଛୁ ? ନରୋଲା ଅବଜ୍ଞାରେ ଧୂଆଁରେ ଧୂଆଁରେ, ତାଙ୍କ ବିରାଗକୁ ଉଡ଼େଇ ଦେଇ ନାହୁଁ ? ଯେମିତିକି ମୋର ଲ୍ୟାଣ୍ଡ୍-ଲେଡ଼ି । କଂଟ୍ରାକ୍ଟ୍‌ରେ ଅଛି ଯେ ସେ ମୋତେ ସକାଳ ବ୍ରେକ୍‌ଫାଷ୍ଟ୍ ଦେବ । କିନ୍ତୁ କଂଟ୍ରାକ୍ଟ୍‌ରେ ନାହିଁ ଯେ ସେଥିପାଇଁ ମୋତେ ସକାଳୁ ସକାଳୁ ଉଠିବାକୁ ପଡ଼ିବ । ତେଣୁ ଆମ ନିତିଦିନିଆ ଝଗଡ଼ା । ମୁଁ କେବେହେଲେ ଉଠେ ନାହିଁ ଦିନ ଦଶଟା ପୂର୍ବରୁ, ଆଉ ସେ ପ୍ରତିଦିନ ବଡ଼ବଡ଼ ହୁଏ ବ୍ରେକ୍‌ଫାଷ୍ଟ୍ ଆଣି ଥୋଇଲା ବେଳେ । ମୁଁ ପାଟିତୁଣ୍ଡ ନ କରି ଧୂଆଁ ଗୁଡ଼େ ତା'ର ଫାଲୁଆ ମୁହଁ ଉପରକୁ, ଆଉ 'ସରି ଆଣ୍ଟି' ବୋଲି କୁହେ ମଝିରେ ମଝିରେ, ସତେ କ୍ଷମା ମାଗିଲା ପରି । ମୁଁ ଜାଣେ ସେ ମୋତେ କଦାପି ଓପାସ ରଖିବନାହିଁ, କାହିଁକିନା ତା'ର ଗୋଟାଏ ଦୟାମାୟା ଅଛି ମୋ ଉପରେ । ବିଦେଶୀ ଏକୁଟିଆ ଝିଅଟିଏ, ଅଭିଆଡ଼ୀ, ପୁଣି ବାପମାଆ ନାହାନ୍ତି, ଆ-ହା···

ଆଲୋ ଯାଆ—କାହିଁକି ଫାଇଦା ଉଠେଇବୁ ନାହିଁ ଏଇ ଅଲଣା ଦୟା-ମାୟାର ? ଠିକ୍ କଥା । ତା'ଠାରୁ ବଳି ବଢ଼ିଆ ଜୋକ୍ ଅଉ କଅଣ ଅଛି ମୋ ପାଇଁ ? ଦୁନିଆଁ ଜାଣେ ଯେ ମୁଁ ସମ୍ପୂର୍ଣ୍ଣ ସ୍ୱାଧୀନ, ସ୍ୱାଧୀନ ଓ ଶକ୍ତ, କାହାରିକୁ ଡରେ ନାହିଁ କି ଡରିବ ନାହିଁ । ହେଲେ ଥୋକେ ନହପଢ଼ା ପାଠକୁ ନେଇ ଭାବନ୍ତି ଯେ ଯେତେହେଲେ ମୁଁ ଏକାକିନୀ, ଅବଳା, ଇତ୍ୟାଦି । ସେଇଲାଗି ମୋ ମୁହଁ ଉପରେ କିଛି କହିବାକୁ ସାହସ କରନ୍ତି ନାହିଁ । ମୋର ନଲଠାପଣକୁ ସହିଯାଆନ୍ତି । ତେଣୁ ସରୋଜ ଘରର ସେଇ କୁଟିଳାମାନେ କ'ଣଟା କରିପାରିବେ ମୋର ? ହୁଏତ ତାଙ୍କ କୁଟିଳ ହସକୁ ଆଉ ଟିକିଏ ଲମ୍ବେଇ ଦେବେ, କିନ୍ତୁ ରୋହିତ-ରଜନୀଙ୍କୁ କଅଣ ଛଡ଼େଇ ନେଇ ପାରିବେ ମୋ ହାତରୁ ?

ଯିବୁ ନାହିଁ ? ରୋହିତକୁ ଗାଧୋଇ ଦେଲା ବେଳେ ଦୋ ହେବୁ ନାହିଁ ତା' ସାଙ୍ଗରେ ? ତା' ଦୋ ହରସବୁ ଗୋଟା ଦେହରେ ତୋ ଗାଲକୁ ଆସିବୁ ନାହିଁ ଆଉ ଟିକିଏ ? ରଜନୀକୁ ବେଶ କଲା ପରେ ତା'ର କଜଳଲଗା ଡବା ଡବା ଆଖି ଉପରେ (ତା' ମାଆ ପରି ବଡ଼ ଆଖି, ସତେକି ଦୂରଦୂର ଅନେଇ ରହିଛି ମୁଁ ଆଉ

କ'ଣ ଆଣି ଦେବ ତା' ପାଇଁ, ଆଉ ଟିକିଏ ଦମ୍ଭ, ଆଶ୍ୱାସନା) ଗୋଟାଏ ଲମ୍ବା ଚୁମ୍ବା ଦେଲାବେଳେ ତୁ କ'ଣ ପୁଣି ଥରେ ପାଇବୁ ନାହିଁ ମଗ୍ରେଜକୁ ? ଟିକିଏ ଡେରି କରି ଆସିଲା ସେ ମୋ ଜୀବନରେ, କିନ୍ତୁ ଆସିଥିଲା ତ ! ଆଉ ମୁଁ ପାଇଥିଲି । ଏବଂ ମନେ ହୋଇଥିଲା ଯେ ସେ ଯେଉଁ ଯେଉଁ ଅଦ୍ଭୁତ ଇଚ୍ଛା ହୁଏ ବେଳେବେଳେ ଯେ ମୋତେ କୋଉ ଶାନ୍ତିଦାୟିନୀ (ଶାନ୍ତିଦାୟୀ ନୁହେଁ, ସାବଧାନ) ତା' କୋଳକୁ ଟାଣିଆଣି ଚଟକଣିଟିଏ ମାରନ୍ତା, ସେସବୁ ପିଲାଳିଆମି ଗୁଲିଗଲାଣି । କାହିଁକନା ଏଇ ସୁକୁମାରିଆ, ଶେତା, ସୁନ୍ଦରୀ ଝିଅଟାଏ ମୋ କୋଳକୁ ଆସିଛି । ମୁଁ କ'ଣ ଖାଲି ବେଷ୍ଟ ଫ୍ରେଣ୍ଡ୍ ହୋଇଥିଲି ନା କଣ ମ ? ମୁଁ ତା'ର ମାଆ ହୋଇ ଯାଇଥିଲି ପରା ! ସେଇ ଅନୁଭବଟିକୁ କ'ଣ ଛାଡ଼ି ଦେବ ଏତେ ସହଜରେ ? କାହିଁକି ଛାଡ଼ି ଦେବ ?

ସତ ହେଉ କି ମିଛ ହେଉ କୋଉ ନ୍ୟାୟରେ, କୋଉ ଅଧିକାରରେ ସେମାନେ ମୋ ପ୍ରମିକ୍‌କୁ ପୂରା କରିବାକୁ ଦେବେ ନାହିଁ ?

···ଆଚ୍ଛା, ଏଇ ଯୋଉ ଭଲପିଲାମାନେ ଜ୍ଞାନବିଜ୍ଞାନକୁ ଗିଳି ଯାଉଛନ୍ତି ଚୁପ୍‌ଚାପ୍ ହୋଇ, ସେମାନେ କ'ଣ କେବେ ଏମିତି ହନ୍ତସନ୍ତ ହୁଅନ୍ତି ନାହିଁ ମୋ ପରି ? ପାଉଣା ହାସଲ କରିବା, ହେଲେ କେମିତି କରିବାର ଦୁଃଖ ପାଆନ୍ତି ନାହିଁ ? ପାଉଥିବେ ନିଶ୍ଚୟ । କିନ୍ତୁ ଗାଈଗୋରୁଙ୍କ ପରି ସେମାନେ ପୁଣି ଫେରି ଆସନ୍ତି ହଳ କରିବା ପାଇଁ, କି ଖୁଣ୍ଟରେ ବନ୍ଧା ହୋଇ କୁଣ୍ଡାତୋରାଣି ଠୁଙ୍କିବା ପାଇଁ । ବିଶେଷତଃ ଝିଅମାନେ । ଡଗ୍ରୀଲାଭ, ସ୍ୱାମୀଲାଭ, ପିଲାଛୁଆ, ଶାଢ଼ିଗହଣା, ଗସିପ୍ ଇତ୍ୟାଦିର ଜମ । ପ୍ରତି ପଦରେ ଯେତେ ସମ୍ଭବ ସେତେ ସ୍ୱାଭିମାନ ଥାଉ ନା କାହିଁକି । କାହିଁକନା ସେମାନେ ସ୍ୱାଧୀନ ନୁହନ୍ତି । ପଛରେ ଭୂତମାନେ ଜଗି ବସିଛନ୍ତି ଟ୍ରୁବ୍ରୁକ୍ ଧରି—ବାପମାଆ, ବନ୍ଧୁବାନ୍ଧବ, ତଥାକଥିତ ସମାଜ, ଆଉ ଲୋକେ କ'ଣ କହିବେର କୋକୁଆ ଭୟ !

ଅବଶ୍ୟ ସମସ୍ତଙ୍କ ବ୍ୟାକ୍‌ଗ୍ରାଉଣ୍ଡ୍ ମୋ ପରି ନୁହେଁ । ବାପ ଦକ୍ଷିଣରୁ ପଳେଇ ଆସିଥିବା ବ୍ରାହ୍ମଣ, ମାଆ ଟେନିସ୍ ଖେଳରେ ଗ୍ଲାମର୍‌ଆନ୍ ପଞ୍ଜାବୀ, ଜନ୍ମ ହୋଇଥିଲି ବମ୍ବେରେ, ବଢ଼ିଛି ଦିଲ୍ଲୀରେ···କୋଉ ଭୂତଟା ଆଖି ଦେଖେଇବ ମୋତେ, ମୋର ବାଟ ଓଗାଳିବ ?

ମୋ ଇଚ୍ଛା ମୁଁ ଦିନ ଦଶଟା ଏଗାରଟା ଯାଏଁ ଶୋଇ ରହିବି । ମୋ ଇଚ୍ଛା ମୁଁ ଧୂଆଁ ଛାଡ଼ିବି ଯେତେ ପାରେ ସେତେ । ଆଉ ମୁଁ ମୋ ଜନ୍ମସ୍ଥିତିକୁ ଖେଳେଇବି, ଅମୁକ ତମୁକ କେରିଅର୍‌କୁ ଲୋଭ କରି ଖୁଆଡ଼ରେ ପୁରେଇବି ନାହିଁ । ଫ୍ରିଲାନ୍ସ ଛବି ଆଙ୍କିବି, ଗପ ଲେଖିବି, ଫିଚର୍ ଲେଖିବି, ଫଟୋ ଉଠେଇବି ।

(ଆଲୋକ ଗ୍ରାଏ ପରି ବାନ୍ଧ ହୋଇ ରହିବ ନାହିଁ କୌଣସି ପେଣ୍ଟୁଆ ସାଙ୍ଗରେ) ସେଇଥିରୁ ଯାହା ମିଳିବ ସେଇ ଯଥେଷ୍ଟ ମୋ ପାଇଁ । ମନ ଖୁସିରେ ଡକେନ୍ ବି ରାନ୍ଧିବ । ମନ ଖୁସିରେ ସେକ୍ସ୍ ବି କରିବ, ସୁବିଧା ଦେଖି । ଅବଶ୍ୟ ସେକ୍ସ କଲାବେଳେ ବେଳେ ବେଳେ ରାଗ ଆସେ ଆଉ ଲୋକଟା ଉପରେ । କାହିଁକି, ମୁଁ ବୁଝିପାରେ ନାହିଁ । ହେଲେ ମନେହୁଏ ଯେ ମୋ ପାଇଁ ଏମିତିକା ରାଗ ଓ ଆନନ୍ଦ ଏକା ଧାତୁରେ ଗଢ଼ା । କିନ୍ତୁ ହାୟ ! ···ମୀନା ମିଛିମିଛିକା ଦୁଃଖ କଲା, ମୁଣ୍ଡ ହଲେଇଲା···କେହି ହେଲେ ମୋତେ ବାହା ହେବା ପାଇଁ ପ୍ରପୋଜ୍ କରି ନାହାନ୍ତି । ମୋର ଉଗ୍ର ସ୍ୱାଧୀନ ଚେହେରା ଦେଖି ଡରି ଯାଇଛନ୍ତି !

ମୋ ଇଚ୍ଛା ମୁଁ ଯିବ ସେଠିକି । ସରୋଜକୁ ପୁଣି ଆଉ ଥରେ ପାଇବ । ତା'ଶେଯରେ ଶୋଇବ । ଏମିତିକା ଉଷୁମ ଶେଯ ଆଉ କେଉଁଠି ନାହିଁ । ତା' ବାଥ୍‌ଟବ୍‌ରେ ଗାଧୋଇବ, ସେଥିରେ ଆରାମ ଆଉ କେଉଁଠି ନାହିଁ । ଆଉ ତା' ଫିଲ୍ମକୁ ନକଲ କରିବ । ଏକ୍‌ଦମ୍ ନକଲ । ଗୁଡିରେ ମିଶେଇବ. ଚୁମା ପରେ ଚୁମା ଦେବ । ସରୋଜ ବେଳେ ଯାହା ଅଧା ରହିଯାଇଥିଲା ତାକୁ ପୂରା କରିଦେବ । କେହି କିଛି କହିପାରିବେ ନାହିଁ ମୋର ।

ଯିବ ।

ମୀନା ଯିବା ପାଇଁ ଉଠି ଠିଆହେଲା । ଏଇ ସମୟରେ ତା' ଆଖିରେ ପଡ଼ିଲା ଯେ ଯୋଡ଼ାଏ ଟେବୁଲ୍ ସେ ପାଖରେ ଆଉ ଜଣେ ଉଠି ଠିଆହେଉଛି । କେଉଁ ଗୋଟେ ନଦା ନପଟ ବିଦ୍ୟାର୍ଥିନୀ । କାଳୀ ଭୂଷୁଣ୍ଡୀ । ତା'ର ପରି ଗୋଟେ ମୋଟା ବହିକୁ ବୁଜି ଦେଇ ସମାପ୍ତିର ସଙ୍କେତ ଦେଉଛି । ସତେକି ଦାସଦାସୀ ମାନେ ଧାଇଁ ଆସିବେ, ଏଇକ୍ଷଣି ରାଣୀମା'ଙ୍କୁ ପାଲ୍ଲେଙ୍କି ନେବା ପାଇଁ ! ଏଁ ? ମନେ ମନେ ହସୁଛି ନା କଅଣ ? ···ଆରେ ଇଏ କ'ଣ କାଦମ୍ବିନୀ ? କାଦମ୍ବିନୀ ମିଶ୍ର ? ସରୋଜର ବାରଦାନକୁ ଆସିଥିଲା, ପ୍ରାର୍ଥନାସଭାକୁ । କହୁଥିଲା ସେ ସରୋଜର ଭଲ ସାଙ୍ଗ, ତା' ବାପଘରଆଡ଼ୁ । କିନ୍ତୁ ସେ ଏବେ ଦିଲ୍ଲୀକୁ ଆସିଛି, ମ୍ୟୁଜିକ୍ ଶିଖୁଛି କି ପଢ଼ୁଛି ।

ମୋ ଆଡକୁ ଅନଉଛି. ଆହୁରି ଖୁସି ହେଲା ପରି, ଆହୁରି ଲାଜେଇଲା ପରି । ଅସଲ ଢଙ୍ଗୀଟିଏ !

ହେଲେ ସେ ତତ୍‌କ୍ଷଣ ଆସୁନାହିଁ ମୋ ପାଖକୁ । ଆସିବ କେମିତି ? ମହଲକେ ଏବେ ମଫସଲରୁ ଆସିଛି । ପୁଣି ଗଜଗାମିନୀ । ମାନେ ପୃଥୁଳା । କଥା ବି କହୁଛି ସେମିତି, ଅନ୍ତଃସ୍ଥଳରୁ ଉଦ୍ଧାର କଲାପରି ।

ତେଣୁ ଆକସ୍ମିକ ଭଙ୍ଗୀରେ ମୀନା ତା' ପାଖକୁ ଚାଲି ଯାଇ କହିଲା— 'ହାଏ !'

କାଦମ୍ବିନୀ ଦୁଇ ହାତ ଯୋଡ଼ି ନମସ୍କାର କଲା ।

ହେଲେ ପୁନଃପରିଚୟ ପରେ ସେମାନେ ବେଶୀ ସମୟ କଥାଭାଷା ହୋଇ ପାରିଲେ ନାହିଁ । ଜଣାପଡ଼ିଲା ତୁହେଁ ଭିତରର ହେଉଛନ୍ତି ଯିବା ପାଇଁ କେଉଁଠିକି । ଜରୁରୀ କାମ । ପୁଣି ତୁହିଁଙ୍କ ହାତେ କନ୍‌ଟ୍ରାକ୍ଟ୍ ବାହାରିଛନ୍ତି ।

"ସପିଙ୍ଗ୍ ?" ମୀନା ପଚାରିଲା ।

"ନା । ମୁଁ ଯିବି···ସରୋଜ ଘରକୁ । ମାନେ ଅଲୋକବାବୁଙ୍କ ଘରକୁ ।"

"କାହିଁକି ?"

କାଦମ୍ବିନୀ ତା'ର ଏଇ ଅନଧିକାର ପ୍ରଶ୍ନରେ ବିଚଳିତ ହେଲା ନାହିଁ । ବରଂ ମନେ ହେଲା ସେ ଏଇ ପ୍ରଶ୍ନଟିକୁ ଅପେକ୍ଷା କରିଥିଲା । ଆପଣା ସୌଭାଗ୍ୟରେ ଅଭିଭୂତ ହେଲା ପରି (ଏବଂ ଆହୁରି ଲାଜେଇଲା ପରି) କହିଲା—

"କାହିଁକିନା ମୁଁ ପିଲା ଦୁ'ଜଣଙ୍କୁ ସିତାର୍ ଶିଖେଇବି । ପ୍ରତିଶ୍ରୁତି ଦେଇଛି । ଏବେ ନୁହେଁ, ସରୋଜ ବଞ୍ଚିଥିଲା ବେଳୁ । ସମସ୍ତେ ଜାଣନ୍ତି । ସରୋଜ ଚାଲିଗଲା ପରେ ସେମାନେ ବେଶୀ ଲାଗେଇଛନ୍ତି ମୋ ସାଙ୍ଗରେ···

ମୀନାର ମୁହଁରେ ଯେଉଁ ଅନ୍ଧାର ଘୋଟିଗଲା ତାକୁ କଣ ବିଦ୍ୱେଷ କହିବ କି ପାଉଁଶିଆ ହତାଶା, କି ଆଉ କଅଣ, କାଦମ୍ବିନୀ ଶଙ୍କିଗଲା । ଆଉ କିଛି କହି ନ ପାରି ପୁଣି ନମସ୍କାରଟିଏ ପକେଇ ସେ ବିଦାୟ ନେଲା ।

···ପ୍ରତିଶ୍ରୁତି, ମାଇଁ—ଫୁଟ୍ ! କହିଲା କ'ଣ ନା ସମସ୍ତେ ଜାଣନ୍ତି । କାହିଁ ସରୋଜ ମୋତେ କିଛି କହିନାହିଁ ତ ! ସବୁ ମିଛ, ବାହାନା ।

ପ୍ରତିଶ୍ରୁତି, ମାଇଁ—(ଜୀବନ୍ୟ ଶବ୍ଦକୁ ଅଶ୍ଳୀଳ କୁହାଯିବ) ! ବସେଇ ବସେଇ ଲାଜେଇ ଲାଜେଇ ଗୋଟାଏ ଫମ୍ପୁଡ଼ିଆ ଶବ୍ଦ କହିଦେଲେ କ'ଣ ତା'ର ମୂଲ୍ୟ ବଢ଼ିଗଲା ?

ହେଲା ! ସିତାର ଶିଖିବା କ'ଣ ଏତେ ବଡ଼ କଥା ? ଏତେ ଜରୁରୀ ? ପିଲାଙ୍କୁ ପାଠ ପଢ଼େଇବା, ଖୋଇବା, ପେଇବା, ଗାଧୋଇ ଦେବା, ତାଙ୍କ ପାଖରେ ଶୋଇ ତାଙ୍କୁ ଗପ ଶୁଣେଇବା କଅଣ ତା'ଠାରୁ ଅନେକ ଅଧିକ ଦରକାରୀ, ଜରୁରୀ ନୁହେଁ ?

ମୋଟୀ କେଉଁଠା ଖୁଡଗୁଣ୍ଡା ଖୋଇ ପାଶବ ଗ୍ରେହ୍ଡକୁ, ତା' ଭଲ ପାଇବାରେ ଗୋଳେଇ ? କେତେ ବହଲର ଭଲ ପାଇବା ଲେପି ଦେଇ ପାଶବ ରଜ୍‌ନୀକୁ ଆଉଁଶିଲା ବେଳେ ?

ଏହୁ ଖବରେ ମାନା କାଦମ୍ବିନୀ ତଥା ତା'ର ପ୍ରତଶ୍ରୁତକୁ କୋଧରେ, ଘୃଣାରେ, ତାଚ୍ଛଲ୍ୟରେ ହାଣିବାକୁ ଲଗିଲା । ଏତେ ଅସମ୍ଭାଳ ଏବଂ ଉନ୍ମନ୍ତ ହୋଇ ହାଣି ଗ୍ଲଲା ଯେ ଫେରନ୍ତା ବାଟରେ ତାକୁ ଏକାଧିକ ଟ୍ୟାକ୍‌ସି ଓ ଅଟୋରିକ୍‌ସା ଗ୍ଳକମାନଙ୍କର ଗାଳ ଶୁଣିବାକୁ ପଡ଼ିଲା । ହେଲେ ସେ ସେଥିକୁ ଧ୍ୟାନ କଲା ନାହିଁ । ଏବଂ ଥରେ ହେଲେ ସ୍ୱୀକାର କଲା ନାହିଁ ଯେ କାଦମ୍ବିନୀ ସତ କହୁ ଥାଇ ପାରେ । ସେ ଲୁକେଇ ଲୁଚେଇ କଥା କହିବା ତା'ର ସ୍ୱଭାବ, ସେଥିରେ ଜତାପଟର ବନସ୍ତ ନାହିଁ କ ବଦ୍ରୂପ ନାହିଁ । ଏବଂ ସେ ଜାଣିଶୁଣି ପ୍ରତଶ୍ରୁତ ନାମକ ଗୁରୁଗମ୍ଭୀର ଓଜନଆ ଶବ୍ଦ ଗ୍ରହଣ ଦେଲା ନାହିଁ । ତା'ର ଦେଶଜ ସଂସ୍କୃତରୁ ସେଇ ଶବ୍ଦଟି ସହଜେ ଉଠି ଆସିଲା, ତେଣୁ ତାକୁ ଅଭିଜାତ କହିବା ଅନୁଚିତ ।

କନ୍ତୁ ଆପଣା ଫ୍ଲାଟ୍‌କୁ ଫେରିଆସି ବିଛଣାରେ ଲମ୍ବିଗଲା ବେଳକୁ ତା' 'ହେଲ୍' ଓ 'ମାଇଁ—' ଇତ୍ୟାଦିର ପସରା ସରିଯାଇଥିଲା । ହେଉତକବେଳେ ଗୋଟାଏ ମର୍ମନ୍ତୁଦ ବିଳାପର ଶବ୍ଦ ତା' ଗ୍ଭତ ଭିତରୁ ଉଠିଆସିଲା—

ମୋର ଜରୁରୀ ଥିଲା ସବୁଠୁଁ ବେଶୀ ! ଏତକ କାହିଁକ ବୁଝିପାରୁ ନାହାନ୍ତ ?

ସେଇଠୁଁ ସେ କାନ୍ଥରେ ଟଙ୍ଗା ହୋଇଥିବା ମମ୍ମୀର ଫଟୋକୁ ଅନେଇଲା । ଅନେଇ ରହିଲା । ଡାଡ଼ିଙ୍କ ଫଟୋ କାନ୍ଥରେ ନାହିଁ କ କୋଉ ଆଲ୍‌ବମ୍‌ରେ ନାହିଁ, ଯେହେତୁ ସେ ସ୍ଥିର କରିଛି ଯେ ସେ ଡାଡ଼ିଙ୍କୁ ଭଲ ପାଏ ନାହିଁ । ହେଲେ ଏଇକ୍ଷଣି ଡାଡ଼ିଙ୍କ ଚେହେରା ବ ମନେ ପଡ଼ିଲା । କହିବାକୁ ଗଲେ ଦୁହିଁଙ୍କର ଗୋଟାଏ ଯୁଗ୍ମ ଦୃଶ୍ୟ ସ୍ମୃତିରେ ଭାସି ଉଠିଲା । ଅନେକ ଅନେକ ପିଲାଦିନର କଥା···

ମମ୍ମୀ ଲେଟି ଯାଇଥିଲା ବିଛଣାରେ । ଏବଂ ଡାଡ଼ି ଲେଟି ପଡ଼ିଥିଲେ ତା' ଉପରେ । ଦୁହେଁ ହସୁଥିଲେ, ଏବଂ କୁତୁକୁତୁ ହେଉଥିଲେ କ ଆଉ କ'ଣ କରୁଥିଲେ । କନ୍ତୁ ହଠାତ୍ ମମ୍ମୀ ଚୁପ୍ ହେଇଗଲା । ଏବଂ ଓଠରେ ଆଙ୍ଗୁଳି ରଖି ଡାଡ଼ିଙ୍କୁ ଚୁପ୍ କରେଇଲା । ସେଇଠୁଁ କଏ କ'ଣ କହିଲା କାହାକୁ, ଭଗବାନ୍ ଜାଣନ୍ତ । କନ୍ତୁ ଗୋଟିଏ ଶବ୍ଦର ଆଦାନପ୍ରଦାନ ମନେ ଅଛି । କାରଣ ଦୁହେଁ ମୋ ମୁଣ୍ଡ ଛୁଇଁ ଥିଲେ ।

ମନ୍ତ୍ରୀ କହିଲ—ପ୍ରମିଜ୍ !

ଡାକ୍ତ୍ରୀ କହିଲେ—ପ୍ରମିଜ୍ !

ଆଖିର ଲୁହକୁ ଘୋଟିବା ପାଇଁ ମିନା ଗୋଟାଏ ଛକ୍ତି ଓ ଚପଳ ପ୍ରଶ୍ନ ପଚାରିଲ ଦୁ'ଜଣଙ୍କୁ । କେହି ହେଲେ ପରସ୍ପରକୁ ପ୍ରତିଶ୍ରୁତି ଦେଇପାରିଲେ ନାହିଁ ? ଡାକ୍ତ୍ରୀ, ମନ୍ତ୍ରୀ ସିନା ପଞ୍ଜାବୀ ଝିଅ, ତମେ ତ ଦକ୍ଷିଣର ବ୍ରାହ୍ମଣଘର ପିଲା, ତମ ପାଟିରୁ ବି ଏଇ ଶବ୍ଦଟା ବାହାରିଲ ନାହିଁ ? ତା'ହେଲେ ହୁଏତ ମନ୍ତ୍ରୀ ଏତେ ଚଞ୍ଚଳ ମରିଯାଇ ନଥାଆନ୍ତା ମୁଁ ବଡ଼ ହେବା ଆଗରୁ, କି ତମେ ଆଉ ଜଣକୁ ବାହା ହୋଇ ନଥାଆନ୍ତ । ଆଜି ମୁଁ କିଛି ହେଲେ ପାଇଥାଆନ୍ତି ତମଠୁଁ । ମୋ ମୁଣ୍ଡକୁ ଛୁଇଁ ପଣ କରିବାର ମୂଲ୍ୟ, ପାଉଣା, ନ୍ୟୂନତମ ଅଧିକାର । ଯାହାକୁ ମୁଁ ଅନାୟାସରେ ଦେଇ ପାରିଥାଆନ୍ତି ଅନ୍ୟମାନଙ୍କୁ । କେହି ମୋତେ ଭିକମଗା କି ମିଗ୍ରେଇ ବୋଲି ଭାବନ୍ତା ନାହିଁ ।

× × ସେଦିନ ସନ୍ଧ୍ୟାରେ ଆଲେକ ଗ୍ରେଙ୍କ ଘରେ ଆସିର ଜମେଇଥିବା ଶୁଭାକାଂକ୍ଷୀମାନେ ପୁଣି ଥରେ ନିଶ୍ୱାସ ମାରିଲେ । ସେ ଆଜି ବି ମିନା ଭିକ୍ଷା ଆସି ନାହିଁ । ଉତ୍ତମ । ମନେ ହେଉଛି ସେ ଆସିବ ନାହିଁ ଆଉ । ବୁଝିଗଲଣି ଯେ ସେ ସରଳିଆ ସର୍ଦ୍ଦାରଜୀକୁ ସିନା ଭଣ୍ଡେଇ ପାରୁଥିଲା, ଆମକୁ ଭୁଲେଇ ପାରିବ ନାହିଁ । ଏବଂ 'ଉଦଣ୍ଡୀ', 'ଉପରେ ପଡ଼ିଲା ଝିଅ', 'ମାନ୍ୟଧର୍ମ ଟିକିଏ ବୋଲି ନାହିଁ', ଇତ୍ୟାଦି ଜଣାଶୁଣା ଟିପ୍ପଣୀ ଛଡ଼ା ଗୋଟିଏ ନୂଆ ଟିପ୍ପଣୀ ଶୁଣିବାକୁ ମିଳିଲ ତା' ବିଷୟରେ । ଜନୈକ ତରୁଣ ଅଧ୍ୟାପକ ସୋମନାଥ ଶର୍ମାଙ୍କ ପାଖରୁ । କହିଲେ—ବିଶେଷତଃ ଝିଅଟାର ଚରିତ୍ର ଖରାପ । ମନ୍ଦ ପ୍ରଭାବ ପକେଇବ ପିଲାଙ୍କ ଉପରେ ।

କାହାର ଜାଣିବାର ଉପାୟ ନଥିଲ ଯେ ସେ ଅନ୍ୟତମ ଯୁବକ, ଯାହା ଆଡ଼କୁ ମିନା ଆଙ୍ଗୁଳି ଦେଖାଇ କହି ପାରିଥାଆନ୍ତା—ଇଏ ତାଙ୍କର ଭିତରୁ ଜଣେ । ଯେ ମୋତେ ପ୍ରପୋଜ୍ କରିପାରିଲେ ନାହିଁ ତା' କାମ ସରିଲା ପରେ । ବିଚରା ଡ଼ରିଗଲ !

# ପ୍ରମିକ୍ ଓ ପ୍ରତିଶ୍ରୁତି

ଆପଣମାନେ କ'ଣ ଏଇ ମହା ଅର୍ଦ୍ଧିର ସିଗାରେଟ୍ ଫୁଙ୍କୁଥିବା, ଏବଂ କେଉଁ ମାଆଛେଉଣ୍ଡ ପିଲଙ୍କର 'ମାଆ' ହେବାକୁ ବିକଳ ହେଉଥିବା ମୀନା ଝିଅଟା ପ୍ରତି ସହାନୁଭୂତି ଦେଖାଇ ପାରିବେ ? କ୍ଷମା କରିବେ, ମୁଁ ଯଥାସମ୍ଭବ ଚେଷ୍ଟା କରୁଛି ସେ ଦିଗରେ । ନହେଲେ ମୁଁ ଗପର ଶେଷବେଳକୁ ଆଙ୍ଗୁଳି ନିର୍ଦ୍ଦେଶ କରି ନଥାଆନ୍ତି ତା' ବାପମାଅଙ୍କ ଆଡ଼କୁ । ଯେ ତମେମାନେ ନିହାତି ଅନ୍ୟାୟ କରିଛ ତା' ପ୍ରତି । ପ୍ରେମରେ ଥେଇ ଥେଇ ହେଲ ବେଳେ ତମେ କ'ଣ 'ପ୍ରମିକ୍' କରିଥିଲ ପରସ୍ପରକୁ, ତା' ଭଗବାନ୍ ଜାଣନ୍ତି, କିନ୍ତୁ ପ୍ରେମରୁ ଉତ୍ପନ୍ନ କନ୍ୟାଟିକୁ ସେଥିରେ ସାମିଲ୍ କରିଦେଇ ପାରିଲ ନାହିଁ ? ମାଆ ଛାଡ଼ି ଦେଇ ଚାଲିଗଲା ତାକୁ, ସେ ବଡ଼ ହେବା ଆଗରୁ, ଆଉ ବାପାକୁ ତର ସହିଲା ନାହିଁ ଆଉ ଜଣକୁ ବାହା ହେବା ଲଗି । ତେଣୁ ଝିଅଟା ଯଦି ଏମିତି ଅବାଗିଆ ହୋଇ ଦୁଃଖ ପାଉଛି ଆଜି, ସେଥିପାଇଁ କ'ଣ ତା' ବାପମାଆ ମଧ୍ୟ ଦାୟୀ ନୁହଁନ୍ତି ?

ହେଲେ ମୋର ସନ୍ଦେହ ହେଉଛି ଯେ ତଥାପି ଆପଣଙ୍କର ଦରଦ ଆସିବ ନାହିଁ ଏଇ ତଥାକଥିତ (ମାନେ ସେ ଯେମିତି ଭାବେ ନିଜକୁ) ଶକ୍ତ, ସ୍ୱାଧୀନ, କିନ୍ତୁ ଦୁଃଖିନୀ ଝିଅ ପ୍ରତି । କହିବେ ଯେ ହଁ, ବାପର କିଛି ଗୋଟାଏ ବ୍ୟବସ୍ଥା କରିବା ଉଚିତ ଥିଲା ବାଲୁତ ଝିଅଟାକୁ ବଢ଼େଇବା ଦିଗରେ । ହୁଏତ କେଉଁ ମାଉସୀ ପିଉସୀଙ୍କ ଘରେ ରଖେଇ ଦେଇ । ଯଦିଓ ଇଏ ଯୋଉ ଝିଅ, ଯିଏ ତା' ଲ୍ୟାଣ୍ଡ୍ ଲେଡୀଙ୍କ ଫାପୁଲା ମୁହଁ ଉପରକୁ ଧୂଆଁ ଛାଡ଼ିପାରେ, ସେ କେଇଟା ଦିନ ଭିତରେ ସେଠୁଁ ପଳେଇ ଆସି ନଥାଆନ୍ତା ବୋଲି କହିହେବ ନାହିଁ । ଯାହାହେଉ ସେଇଥିପାଇଁ ସେ ଏମିତି ଉଦଣ୍ଡୀ ହେବାକୁ ବାଧ

ହେଲା, ଏଇ ସଫେଇ ଆଦୌ ଗ୍ରହଣଯୋଗ୍ୟ ନୁହେଁ । ଆମ ଦେଶରେ ଏମିତି ହୁଏ ନାହିଁ । ଅନ୍ତତଃ ହେବା ଉଚିତ ନୁହେଁ । କିଓ, ଯେତେହେଲେ ତା' ବାପ ତାକୁ ପାଠ ପଢ଼େଇ ମଣିଷ କରିଛି ନା ନାହିଁ ? ତଥାପି ତା'ର ଏତେ ରାଗ ତା' ବାପ ଉପରେ କି ସମାଜ ଉପରେ, ଯେ ଜାଣିଶୁଣି ଏମିତି ଅଶ୍ଲୀଳ କରିଦେଲା ନିଜକୁ ? ସେଇଠୁଁ ବୋଧହୁଏ ଆପଣଙ୍କ ଭିତରୁ ଜଣେ ଦି'ଜଣଙ୍କର ଇଚ୍ଛା ହେବ ତାକୁ ପାଖକୁ ଟାଣି ଆଣି ଉପଯୁକ୍ତ ଶାସ୍ତି ଦେବା ଲାଗି । ତା' ମାଆ ଦୋଷ ନୁହେଁ, ଯାହା ତା'ର ଭିତରିଆ ଇଚ୍ଛା, ତରୁଣ ଅଧ୍ୟାପକ ସୋମନାଥ ଶର୍ମା ପରି, ଯେ ତାକୁ ଆଗେ···ଗ୍ରୁଡନ୍ତୁ ··

ମୁଁ ବୁଝୁଛି, ମୋର ଓଡ଼ିଶାବାସୀ ଭାଇ ଓ ଭଉଣୀମାନେ, ଆପଣଙ୍କର କାହିଁକି ଏତେ ବିଦ୍ୱେଷ ତା' ପ୍ରତି । କାରଣ ଆପଣ ଯାହା କହିଲେ, ଆମ ଦେଶରେ ଏମିତି ହୁଏ ନାହିଁ । ଓଡ଼ିଆ ଝିଅଙ୍କ ଭିତରୁ କ୍ୱଚିତ୍ ଏଭଳି କେଉଁ 'ଶକ୍ତ ଓ ସ୍ୱାଧୀନ' ସତ୍ତ୍ୱ ଉତୁରି ଆସେ ଯେକୌଣସି କାରଣରୁ । ଆମ ସମାଜର, ବିଶେଷତଃ ମଧ୍ୟବିତ୍ତ ସମାଜର, ସହସ୍ର ହାତ ଅଛି ତାକୁ ଠିକଣା କରିବା ଲାଗି । ତେଣୁ ମୀନା ପରି ଝିଅଟାଏ ନିଶ୍ଚୟ ଅଜବ୍ ଲାଗିବ ଆପଣଙ୍କୁ, ଏବଂ ସହାନୁଭୂତି ଦେଖାଇବା ପୂର୍ବରୁ (ଯଦିବା ସେଭଳି ଭାବ ଆସେ ଆପଣଙ୍କ ମନରେ), ଆପଣଙ୍କର ପ୍ରଥମେ ଇଚ୍ଛା ହେବ ତାକୁ ଉଚିତମତ କିଛି ଗୋଟାଏ ଶାସ୍ତି ଦେବା ଲାଗି ।

କିନ୍ତୁ ଦୟାକରି ବୁଝନ୍ତୁ ଯେ ମୁଁ ଯେଉଁ ଝିଅ କଥା ଲେଖିଛି ସେ ଷୋଳଅଣା 'ଆମ ଦେଶ'ର ନୁହେଁ, କାହିଁକିନା ସେ ମହାନଗରୀ ଦିଲ୍ଲୀରେ ବଢ଼ିଥିବା ଗୋଟିଏ ଅତ୍ୟାଧୁନିକା ଝିଅ । ଦକ୍ଷିଣୀବାପା ଓ ଟେନିସ୍ ଖେଳାଳୀ ପଞ୍ଜାବୀ ମାଆ ଯେଉଁ ମୁକ୍ତ ଆବହାୱାରେ ତାକୁ ଜନ୍ମ ଦେଇଥିଲେ ସେ ସେଇ ଜନ୍ମଜାତକ ନେଇ ବଢ଼ିଛି, ଏବଂ ସେଇଥିରେ ତା'ର ଆନନ୍ଦ । ଗୋଟାଏ ଟ୍ରାଜେଡ଼ି ସେଇ ଆନନ୍ଦକୁ ଭଣ୍ଡୁର କରିଦେଲା ସେକଥା ଭିନ୍ନ । ଏମିତିକା ଝିଅ ମୋଟେ ଅଜବ୍ ନୁହେଁ ସେଠି ।

କିନ୍ତୁ ଏଇ ହେଉଛି ଦୁଃଖ ଯେ ଅଳବ୍ ନହେଲେ ମଧ୍ୟ ମହାନଗରୀମାନଙ୍କରେ ଥିବା ଏଇଭଳି କେତେଜଣ ଘରଛଡ଼ା ଲଗାମ୍‌ଛଡ଼ା ଝିଅ ପ୍ରକୃତରେ ଦୁଃଖୀ । କହିବାକୁ ଗଲେ ଅସହାୟ, ସେମାନେ ତାହା ସ୍ୱୀକାର କରନ୍ତୁ ବା ନକରନ୍ତୁ । କାରଣ ଦିଲ୍ଲୀ ଏମିତି କେତେଦୂର କି କଟକଠାରୁ ? ତଥାପି ସେଇ ଭାରତୀୟ ସଂସ୍କୃତିର ଘେର ଭିତରେ ରହିଛି । କେଉଁଠି ଘେରଟା ବେଶ୍ କାମ ଦେଉଛି ତ କେଉଁଠି ବିଦେଶୀ ହାଉଆରେ ପିଟି ହୋଇ କେଇଟା ଫାଙ୍କ ହୋଇଗଲଣି ତା' ଭିତରେ, ତେଣୁ ମୀନାମାନେ ନିଜକୁ କହୁଛନ୍ତି ଯେ ଆମେ ସ୍ୱାଧୀନ, ଆମେ ଶକ୍ତ, ଆମେ ଡର ନାହୁଁ କାହାକୁ । କିନ୍ତୁ ହାୟ ! ସେମାନେ କଷ୍ଟ ପାଉଛନ୍ତି କାରଣ ଘେରଟା ତଥାପି ହଇରାଣ କରୁଛି ତାଙ୍କୁ । ପରିବାର ବନ୍ଧନର ପରମ୍ପରା ତଥାପି ଡାକୁଛି ତାଙ୍କୁ କେଉଁଠି ହେଲେ ଆପି ହୋଇଯିବା ପାଇଁ । ଦେଖନ୍ତୁ, ମୀନା ଛଡ଼ା ସରୋଜର ଅନ୍ୟାନ୍ୟ ଅନେକ ବନ୍ଧୁ ଅବଶ୍ୟ ଅଛନ୍ତି, ଯଥା କାଦମ୍ବିନୀ ଯେ ପ୍ରତିଶ୍ରୁତି ଦେଇଥିଲା ତା' ପିଲାଙ୍କୁ ସିତାର୍ ଶିଖେଇବ ବୋଲି । କିନ୍ତୁ ମୀନାର ଧାରଣା ସେଇ ଥିଲା ସରୋଜର ବେଷ୍ଟ୍ ଫ୍ରେଣ୍ଡ୍, ଏବଂ ସେ ଯେଉଁ ପ୍ରମିଜ୍ କରିଥିଲା ଯେ ତା'ର ଯଦି ଇଚ୍ଛା ହୁଏ ସେ ତା' ପିଲାଙ୍କ ଯତ୍ନ ନେବ, ସେଇ ପ୍ରମିଜ୍‌କୁ ସେମାନେ ପୂରଣ କରିବାକୁ ଦେଉ ନାହାନ୍ତି । ସରୋଜ ପରିବାର ଅଗୁଆଁର ଲୋକମାନେ । ଏଇଟା ଅନ୍ୟାୟ, ନିହାତି ଅନ୍ୟାୟ ! ବିଚାରୀ ବୁଝିପାରୁ ନାହିଁ ଯେ ତା'ର ଏଇ କ୍ରୋଧ କି କାନ୍ଦଣା ପହଞ୍ଚି ପାରିବ ନାହିଁ ଆମ ଦେଶର, ମାନେ ଆମ ଭାରତ ଦେଶର, ସୁସ୍ଥ ନାଗରିକମାନଙ୍କ କାନରେ । କହିବେ ଯେ ସେ ସରଳିଆ ସରୋଜକୁ ସିନା ଭଣ୍ଡେଇ ପାରୁଥିଲା, ଆମକୁ ଭୁଲେଇ ପାରିବ ନାହିଁ । ଏବଂ ସୋମନାଥ ଶର୍ମାମାନେ ତାକୁ ଶାସ୍ତି ଦେବାକୁ ଚାହିଁବେ ତାଙ୍କ ନିଜ ହିସାବରେ ।

କିନ୍ତୁ ମୁଁ ଏକାଧିକ ଶକ୍ତ ଓ ସ୍ୱାଧୀନ ମୀନାମାନଙ୍କୁ ଦେଖିଛି ମୋର ପାଶ୍ଚାତ୍ୟ ବିଦେଶର ପରିକ୍ରମାରେ ଯେଉଁମାନେ ଆଦୌ ଦୟା ଦରଦର ପ୍ରାର୍ଥୀ ନୁହଁନ୍ତି । ନାନାଦି କାରଣରୁ, କିନ୍ତୁ ବିଶେଷତଃ ଭାଙ୍ଗି ନଷ୍ଟ ହୋଇଯାଇଥିବା ବାପାମାଆଙ୍କ

ସଂସାରରୁ ବିଚ୍ଛିନ୍ନ ହୋଇଯାଇ ସେମାନେ ମନଇଚ୍ଛା ଘୂରି ବୁଲୁଛନ୍ତି ଏଇ 'ସ୍ୱାଧୀନ ବିଶ୍ୱ'ର ହାଟ ବଜାରରେ । ବିଭିନ୍ନ ଭାବରେ ନିଜକୁ ପୋଷୁଛନ୍ତି ଏବଂ ସୁଖ କରୁଛନ୍ତି । ମାନୁଛି ଯେ ସେମାନଙ୍କୁ ଶାନ୍ତ ସମାହିତ ବୋଲି କୁହାଯାଇ ପାରିବ ନାହିଁ, ଆମ ସାଂସ୍କୃତିକ ଅଭିଧାନର ଭାଷାରେ । ଏବଂ ବୟସ ହେଲାରୁ ସେମାନଙ୍କର ବିଚ୍ଛିନ୍ନତା ବୋଧ ହୁଏତ ଅଧିକ ତୀବ୍ର ହୋଇ ଉଠିବ, ଓ ସେମାନେ କଷ୍ଟ ପାଇବେ । କିନ୍ତୁ ଯେଉଁ ଦେଶରେ 'ନର୍ମାଲ୍' ପରିବାରର ବୁଢ଼ାବୁଢ଼ୀମାନେ ମଧ୍ୟ ନିତାନ୍ତ ଏକୁଟିଆ ହୋଇପଡ଼ନ୍ତି ଯାହା ଆମ ଦେଶର ଜେଜେବାପା-ଜେଜେମାମାନେ କଦାପି ବୁଝିପାରିବେ ନାହିଁ, ସେଠି ଏଇ ପ୍ରାଣୀମାନଙ୍କର ଉତ୍ତର-ଜୀବନ ବିଶେଷ ଯନ୍ତ୍ରଣା-ଦାୟକ ହେବ ବୋଲି ଭାବିବା କାହିଁକି ?

ତେଣୁ ପୁଣି ଥରେ ଭାବନ୍ତୁ ଆମ ଦେଶର ଏଇ ହତଭାଗ୍ୟ ଅଳ୍ପ-ବୟସୀ ମୀନାମାନଙ୍କ କଥା, ବିଶାଳ ଭାରତର ପରିପ୍ରେକ୍ଷୀରେ ସେମାନେ ଯେତେ ଅଳ୍ପସଂଖ୍ୟକ ହୁଅନ୍ତୁ ନା କାହିଁକି । ଏବଂ ଅନ୍ତତଃ ମାନବିକତା ଦୃଷ୍ଟିରୁ ପ୍ରାର୍ଥନା କରନ୍ତୁ ଏଇ ମୀନା ପାଇଁ (ତା'ର ଶକ୍ତ-ସ୍ୱାଧୀନ ପଣର ବାହାଦୁରୀକୁ ଖାତିର୍ ନକରି) ଯେ ସେ ଲଖିଯାଉ କେଉଁଠି । କେଉଁ ସୋମନାଥ ଶର୍ମା ହେଲେ ତାକୁ ପ୍ରପୋଜ୍ କରୁ ବାହା ହେବା ପାଇଁ, ଯେଉଁଥିରେ ଇଚ୍ଛା ଦୟା ଥାଉ କି ଭଲପାଇବା ।



# ବାଉଲି ଅପାଙ୍କ ଭୂତ

"ମାଇପିଟାକୁ ଭୂତ ଧରିଛି ନା କ'ଣ ମ ? ଦେଖେ, ଦେଖେ, ଶଙ୍କର କ'ଣ ଲେଖିଛି"—ଏଇଆ କହି ବୃଦ୍ଧା ସ୍ନେହଲତା ଦେବୀ ପୁଅ ହାତକୁ ଖଣ୍ଡେ ମୋଟା ଲଫାପା ସମେତ ଚିଠି ବଢ଼େଇ ଦେଲେ । ଅଧୀରଭାବ ପର । ସତେକି ତାଙ୍କର ଏ ବୟସରେ ଧୈର୍ଯ୍ୟ ନାହିଁ ଏଭଳି ଅଦ୍‌ଭୁତ କାହାଣୀର ଶେଷକଥା ଜାଣିବା ପାଇଁ । ତୋର ଦୁରବସ୍ଥା ମୁଁ ବୁଝିପାରୁଛି, ଏହି ଭାବରେ ବଡ଼ପୁଅ ସୀତାନାଥବାବୁ ଚିଠିଟିକୁ ଗ୍ରହଣ କଲେ । ବିରକ୍ତ ହୋଇ ।···ଶଙ୍କରଭାଇ ମୋ ପାଖକୁ ଲେଖିଲା ନାହିଁ କାହିଁକି ? ମୁଁ କ'ଣ ଘରର ବଡ଼ପୁଅ ନୁହେଁ ନା ହେଡ୍ ଅଫ୍ ଦ' ଫ୍ୟାମିଲି ହେବାର ଯୋଗ୍ୟ ନୁହେଁ ଯେ ବୋଉ ପାଖକୁ ଲେଖା ହୋଇଛି ଗୋଟାଏ ଛଅସାତ ପୃଷ୍ଠାର ରାମାୟଣ ? ···ତେବେ ସ୍ୱଭାବଶୀତଳ ସୀତାନାଥବାବୁଙ୍କ ଚେହେରାରେ ବିରକ୍ତିର ଲକ୍ଷଣ ଫୁଟି ଉଠିଲା ବୋଲି କହିହେବ ନାହିଁ । କପାଳରେ କୁଞ୍ଚନର ରେଖା ବଢ଼ିଗଲା ହୁଏତ । ହେଲେ ସୀତାନାଥବାବୁଙ୍କର ପ୍ରଶସ୍ତ କପାଳକୁ କେହି କେବେ ଦେଖିଛି କି ସମତୁଲ ଥିବାର ? ବରଂ ସେଇ କେଇଟା ଗାର ଜୀବନମୟରେ ସେ ପରିବାର ତଥା ବିରାଦରିର କେତେ ବିପଦକୁ ସମ୍ଭାଳି ନେଇଛନ୍ତି, ପ୍ରାୟଶଃ ରାଗି ନାହାନ୍ତି, କାହାରିକୁ ଶାସ୍ତି ଦେଇ ନାହାନ୍ତି ଏବଂ କର୍ଣ୍ଣଧାରର ଦାୟିତ୍ୱ ତୁଲେଇ ନାଆକୁ ଠିକଣା ବାଟରେ ଚଳେଇ ନେଇଛନ୍ତି, ଏଇ ଇତିହାସର ଆଇଟେମ୍ ଗଣିବାକୁ ହେଲେ ଦିନ ପାହିଯିବ । ତାଙ୍କର ଏଇ ବିଶିଷ୍ଟ ବଡ଼ପଣ କାହାର ଅଜଣା ନୁହେଁ । ବୋଉ, ସାନଭାଇ, ଆପଣା ସ୍ତ୍ରୀପିଲାଙ୍କଠାରୁ ଆରମ୍ଭ କରି ଯେତେକ ଅଫିସ୍‌ବାଲାଙ୍କ ଯାଏଁ । ସ୍ତ୍ରୀ ନନ୍ଦିତା ଅବଶ୍ୟ ବେଳେବେଳେ ପରିହାସ ଛଳରେ କୁହନ୍ତି ଯେ ଦାନ୍ତୁଆର ହସିବା କାନ୍ଦିବା ସମାନ, ମାନେ ତମର ରାଗିବା ଯାହା ଖୁସିହେବା ସେଇଆ, କିନ୍ତୁ ସେଥିରେ ତାଙ୍କ ଗୁରୁଗମ୍ଭୀର ପଣରେ ଆଞ୍ଚ ଲାଗେ ନାହିଁ । ତାକୁ ସେ ଅନ୍ୟତମ ମାଇପି କଥା ହିସାବରେ ଆଡ଼େଇ ଦିଅନ୍ତି ।

ଯାହାହେଉ 'ମାଇପିଟାକୁ ଭୂତ ଧରିଛି', ବୋଉର ଏଇ ରୂପକଳିତ ବୋଉ ନିଶ୍ଚୟ କହୁଛି ଶଙ୍କରଭାଇର ସ୍ତ୍ରୀ ବାଉଲି ଅପାଙ୍କ କଥା) ତାଙ୍କ ବିରକ୍ତିକୁ ଟିକିଏ ହାଲୁକା କରିଦେଲା । କାରଣ ସେ ଭାବିଲେ ଭୂତଟା ନିହାତି ନଗଣ୍ୟ ହୋଇଥିବ । ·· ଏକେ ମାଇପି ଲୋକ, ଦୁକେ ବାଉଲି ଅପା । କୁଅତେ ଟିକିଏ କଥାରେ ବାଉଳା

ହୁଅନ୍ତି ବୋଲି ତାଙ୍କ ନାଆଁ ବାଉଳା, ଯେଉଁଥିରୁ ସ୍ତ୍ରୀଲୋକଙ୍କରେ ବାଉଳା ହୋଇଚନ୍ତି । ତା'ଛଡ଼ା ଯେଉଁ ପ୍ରକାର ଝଡ଼ଝଞ୍ଜା ବହିଯାଇଛି ତାଙ୍କ ଜୀବନରେ ସେଥିରେ ଟିକିଏ କଥାରେ ବ୍ୟସ୍ତ ହୋଇ ଉଠିବା, କନ୍ଦାକଟା କରିବା କିଛି ଅସମ୍ଭବ ନୁହେଁ । ଆଉ କେହି ନଜାଣନ୍ତୁ ପଛେ, ମୁଁ ଜାଣେ ସେ କେତେ ବଡ଼ ବିପଦରୁ ଉଦ୍ଧାର ପାଇଛନ୍ତି । ନିଜେ ବଞ୍ଚି ଯାଇଛନ୍ତି, ଆଉ କୁଳକୁଣ୍ଡୁମ୍ବର ମାନ ରହିଯାଇଛି... ସୀତାନାଥବାବୁ ଗୋଟାଏ ଲମ୍ବା ଦୀର୍ଘନିଃଶ୍ୱାସ ପକାଇଲେ । ବିଗତ ବିପୁଳ ଉଚ୍ଛ୍ୱାସକୁ ପୁଣି ଥରେ ଅନୁଭବ କଲା ପରି । ସେଇଠୁଁ ଚିଠି ପଢ଼ାରେ ମନ ଦେଲେ ।

ଲମ୍ବା ଚଉଡ଼ା ଆବେଦନ, ଆକ୍ଷେପ, ପ୍ରତିବାଦ ଇତ୍ୟାଦିକୁ ଅଳଙ୍କାରରେ ଆଚ୍ଛାଦିତ କରି ତା'ର ସାରାଂଶଟିକୁ ହାକିମଙ୍କ ଦୃଷ୍ଟିକୁ ଆଣିବା ତାଙ୍କର ଦୈନନ୍ଦିନ କାମ ଏବଂ ଅଭ୍ୟାସ । ଯେହେତୁ ସେ କମିସନର୍ ସାହେବଙ୍କ ପ୍ରାଇଭେଟ୍ ସେକ୍ରେଟେରୀ ! ତେଣୁ ଶଙ୍କରଖିଆଇର ନିରିଟ ମଫସଲିଆ ଏବଂ ଅମାର୍ଜିତ ବାହୁଲ୍ୟକୁ (ସ୍ୱର୍ଗତ ଦାଦାଙ୍କର ଗୁଣଗ୍ରାମ ଗାଇବା, ତାଙ୍କର ଋଣ ଶୁଝି ହେବ ନାହିଁ ବୋଲି ଦୁଃଖ କରିବା, ଦୟାବତୀ ଖୁଡ଼ୀ ତଥା ତାଙ୍କ ମହାବଳୀୟାର ଦ'ପୁଅ, 'ମୋର ଦ' ବାବୁ ବୋଲି କଣଙ୍କ ପ୍ରତି ଗମ୍ଭୀର ଆସ୍ଥା ଜଣାଇବା, ଇତ୍ୟାଦିକୁ ନେଇ ଦୀର୍ଘ ତିନିପୃଷ୍ଠାରୁ ଅଧିକ) ପାର ହୋଇଯିବା ପାଇଁ ସମୟ ଲାଗିଲା ନାହିଁ । ଅବିଳମ୍ବେ ଧରି ନେଇ ହେଲା ମୂଳ କଥାଟାକୁ । ଯେ ଲଳିତା, ତାଙ୍କର ବଢ଼ିଲା ବଡ଼ ଝିଅ ବାହା ହୋଇ ପାରୁ ନାହିଁ । ଯେତେ ରୂପଗୁଣ ଥାଉ ନା କାହିଁକି, ବିଶୃଙ୍ଖଳ ବାହା ହୋଇ ପାରୁ ନାହିଁ । ଖାଲି 'ଭମ ବୋହୂ' ବାଉଳି ଯୋଗୁଁ । ଗୋଟିଏ ଭଲ ପାତ୍ର ମିଳିଥିଲା ଏତେ ଦିନକେ । ତହସିଲଦାର ଅଫିସ୍‌ରେ କାମ କରେ ବେଞ୍ଚ୍ ଉପରି ଦ' ପଇସା, ଏବଂ ଏତେ ଭଦ୍ରଲୋକ ସେମାନେ ଯେ ଯୌତୁକର ନାଆଁ ଧରୁ ନାହାନ୍ତି, କହୁଛନ୍ତି ଯେ ଲକ୍ଷ୍ମୀଟିଏ ତ ଘରକୁ ଆସିବ, ଆଉ କୋଉ ଧନରୁ କ'ଣ ମିଳିବ ତାଙ୍କୁ... ଇତ୍ୟାଦି, କିନ୍ତୁ ବାଉଳଟା ଅଡ଼ି ବସିଛି । କହୁଛି ମୋର ପସନ୍ଦ ନୁହେଁ—ବାସ୍ ! ଏମିତିକି ସେ ଗଳାରେ ଦଉଡ଼ି ଦେଇ ମରିବ ପଛେ, ରାଜି ହେବ ନାହିଁ ସେଠି ବାହା ଦେବା ପାଇଁ । ଆହୁରି ବି କେତେ ପାତ୍ର ଆସୁଛନ୍ତି, କିନ୍ତୁ ତାଙ୍କ ଖାଉ କାହିଁରେ କଅଣ । କିଏ ହଜାର ହଜାର ନଗଦ ମାଗୁଛି ତ କିଏ ସୁନାଗହଣାର ଫର୍ଦ୍ଦ ବଢ଼େଇ ଦେଉଛି । ହେଲେ ଖୁଡ଼ୀ କ'ଣ ଜାଣନ୍ତି ନାହିଁ ତାଙ୍କ ହତଭାଗା ପୁତୁରା କେତେକର ମୁଣ୍ଡ ? ତେଣୁ ମନେ ହେଉଛି ସୁନାନାକୀ ଝିଅଟା ଅଭିଆଡ଼ୀ ରହିଯିବ । ବାଉଳା ନୁହେଁ, ଆଗେ ତା' ଝିଅ ଦଉଡ଼ି ଦେଇ ମରିବ !

ଏଇ ହେଲା ଚିଠିର ସାରାଂଶ । ଶଙ୍କରଖିଆଇର ଅନ୍ତରଙ୍ଗତ ଯନ୍ତ୍ରଣାର କାହାଣୀ । କିଛି ନୂଆ କଥା ନୁହେଁ । ଶଙ୍କରଖିଆଇ ଏମିତିକା ଚିଠି ଲେଖି ଆସୁଛି

ଏଠୁଁ ଫେଲ୍ ମାରି ଗାଆଁକୁ ଫେରିଯିବା ଦିନୁ । ଯେ ଦାଦା ତା'ଙ୍କୁ 'ମଣିଷ' କରି-ଥିଲେ, ହେଲେ ଭାଗ୍ୟ ଦୋଷରୁ ସେ ଆଜି ଭିଖାରିଠାରୁ ହୀନ ହେଲେଣି । ପିଲାମାଇପ ସେଇ ସାତପ୍ରାଣୀ କୁଟୁମ୍ବ, ହଳିଆ ମୂଲିଅଙ୍କ ଅଦରକତ, ଭାଇଭଗାରିଙ୍କ ହିଂସା, ଏଣେ ଦରଦାମ୍ ବଢ଼ିଚାଲିଛି ହୁ' ହୁ ହୋଇ, ଏଥିରେ କ'ଣ କରିବ ମଣିଷ···ଅର୍ଥାତ୍ ତିରିଶଟଙ୍କା ପଠାଉଥିଲେ ବି ମୋ ପାଖରେ, ତମର ମଙ୍ଗଳ ହେବ, ବଂଶର ମାନ ରହିବ । ସୀତାନାଥବାବୁ ମଧ୍ୟ ତାଙ୍କୁ ଯଥାସାଧ୍ୟ ସାହାଯ୍ୟ କରି ଆସିଛନ୍ତି, ବୋଉ ସାଙ୍ଗରେ ପରାମର୍ଶ କରି । ତେଣୁ ଏଇ ଚିଠିରେ ବି ସେହିପ୍ରକାର ଅଭିମାନ ଏବଂ ଆବେଦନ ପ୍ରଚ୍ଛନ୍ନ ରହିଛି ବୋଲି କହିଲେ ଭୁଲ୍ ହେବ ନାହିଁ । ଯେ ଆଶାନୁରୂପ ସାହାଯ୍ୟ ମିଳିଲେ ଝିଅଟାକୁ ହୁଏତ ଉଠେଇ ଦେଇ ହେବ, ଏଠିକି ନହେଲେ ସେଠିକି । ନା, ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ତେବେ ମାନିବାକୁ ପଡ଼ିବ ଯେ ବାଉଳିଅପାଙ୍କୁ ସତରେ ଭୂତ ଧରିଛି । ନହେଲେ ସେ ଜାଣିଶୁଣି ଏଭଳି ଗୋଟାଏ ଭଲପାତ୍ର ଛାଡ଼ି ଦିଅନ୍ତେ ନାହିଁ ହାତରୁ । ପୁଣି କହୁଛନ୍ତି କ'ଣ ନା ମରିବେ ପଛେ···ଭଗବାନ୍ ସାହାଭରସା !

ସେଇଠୁଁ ସେ ସ୍ଥିର କଲେ ଯେ ସେ ଯିବେ ତାଙ୍କ ଗାଆଁକୁ । ଶଙ୍କରଭାଇ ତଥା ନିଜ ପିତୃପୁରୁଷଙ୍କ ଗାଆଁ ମଲ୍ଲିକାପୁର । ଏଭଳି ଏକ ସମସ୍ୟା ଯେ ନିଜେ ଯିବାକୁ ହେବ । ଏବଂ ତତ୍‌କ୍ଷଣାତ୍ । ତାଙ୍କର ଗୋଟାଏ ଦାୟିତ୍ୱ ଅଛି···

ଦାୟିତ୍ୱ ଅଛି ଆମ ବଂଶ ପ୍ରତି । ଏଇ ସଚେତନତାର ଊର୍ଦ୍ଧ୍ୱକୁ ମଧ୍ୟ କିଛି ଥିଲା, ଯାହା ତାଙ୍କୁ ବିଶେଷ ଭାବରେ ପ୍ରରୋଚିତ କଲା । ଯେ ସେ ସମାଜ ପାଇଁ କିଛି କରିବାକୁ ଯାଉଛନ୍ତି । ଲଳିତା କେବଳ ଘଟନାଏକ ବଂଶର ନୁହେଁ, ଓଡ଼ିଆ ସମାଜର ଅନ୍ୟତମ ଦୁଃଖିନୀ ନିରପରାଧିନୀ କନ୍ୟା, ଯାହାକୁ ସେ ଅକାଳରେ ମଉଳିଯିବାକୁ ଦେବେ ନାହିଁ । ସେ ବାହା ହେବ, ଘର କରିବ । ଏବଂ ବିନା ଯୌତୁକରେ, ସମ୍ମାନର ସହ ।

ଏହି ପରିପ୍ରେକ୍ଷୀରେ ସ୍ୱର୍ଗୀୟ ବାପାଙ୍କ କଥା ମନେ ପଡ଼ୁଥିଲା । ···ମୁଁ ତୁମର ପୁଅ, ତୁମର ଆଦର୍ଶର ପୁଅ । ଯେଉଁ ଆଦର୍ଶର ପ୍ରତିପାଳନ ପାଇଁ ମୁଁ ତୁମ ଡାହାଣ ହାତ ହୋଇଥିଲି, କେତେ ଜରୁରୀ ଅବସ୍ଥାର ଦାୟିତ୍ୱ ତୁଲେଇ ନେଇଛୁ, କେତେ ଗମ୍ଭୀର ଗୋପନ କଥାକୁ ପଶ୍ଚ ଘୋଡ଼େଇ ରଖିଛି···

ଏବଂ ଏହି ଗରିମାବୋଧ ଯାଙ୍କୁ ତାଙ୍କ ଆଖି ସାମ୍ନାରେ ଆସି ଠିଆ-ହେଲେ ଖୋଦ୍ ବାଉଳିଅପା । ଏବେକାର ନୁହେଁ (ଯୁଗେ ହେଲା ଦେଖା ହୋଇ ନାହିଁ ତାଙ୍କ ସାଙ୍ଗରେ), ତିରିଶ ପଚିଶବର୍ଷ ତଳର ବାଉଳିଅପା । ଅଳ୍ପବୟସ୍କୀ ନୂଆବୋହୂ । ଯେତେବେଳେ ଶଙ୍କରଭାଇ ଏଇଠି ଆଶ୍ରା କରି ରହୁଥିଲେ ଏବଂ 'ବୁଢ଼ା'

ବୟସରେ ସୁନ୍ଦରୀ ଟୋକୀଟିଏ ପାଇ ଭୋଳ ହୋଇଯାଇଥିଲା । ଦାଦାଖୁଡ଼ୀଙ୍କ ଯୋଗୁଁ ତା'ର ଏଇ ସୌଭାଗ୍ୟ ବୋଲି କହି ବୁଲୁଥିଲା । କିନ୍ତୁ ବାଉଳଅପା ସ୍ୱଚ୍ଛା ହରିଣୀଟିଏ ପରି ଦେଖାଯାଉଥିଲେ । ବିଶେଷତଃ ପୁରୁଷକୁ ଦେଖିଲାକ୍ଷଣି, ସେ ତାଙ୍କ ଉପର କି ପୁରୁଷ ଭଳିଆ ସ୍ୱାମୀସ୍ୱ ହେଉ ପଛେ । ···କିନ୍ତୁ ମୋତେ ଏକୁଟିଆରେ ଦେଖିଲାରୁ ସେ ମଧ୍ୟ ତାଙ୍କ ଓଠ କାମୁଡ଼ୁଥିଲେ । ଗୁହୁଁ ଗୁହୁଁ କାନ୍ଦ ପକେଇବେ, ଏଇ ଭାବରେ । ହେଲେ ଦୁଃଖରେ ନୁହେଁ; ନା, ମୋଟେ ଦୁଃଖରେ ନୁହେଁ, କୃତଜ୍ଞତାରେ ଭାଙ୍ଗି ପଡ଼ିଲା ପରି । ଯେତେ ଅଶ୍ରୁଳ ହେଉ ପଛେ, ହରିଣୀ ଆଖିରୁ ଲୁହବରେ ନାହିଁ ମୁଁ ତାଙ୍କ ପାଖରେ ଥିଲା ବେଳେ । ବରଂ ମୋର ମନେହୁଏ ହସଟିଏ ଉକୁଟି ଆସୁଛି ମୋତେ ଚଧେଇ ଦେବା ପାଇଁ । ତାଙ୍କ ଅନ୍ତର ଭିତରୁ । ଫୁଲିଫୁଲି ନଇଁ ଯାଉଥିବା ବକ୍ଷର ଗହ୍ୱର ଭିତରୁ । ହେଲେ ପଦାକୁ ଆସିପାରୁ ନାହିଁ, ଲୋକ ଲାଜରେ । ସେତେବେଳେ ମୋର ଇଚ୍ଛା ହୁଏ ତାଙ୍କୁ ମୋ ଦେହକୁ ଆଉଜେଇ ଆଣିବି (କାମନାରେ ନୁହେଁ, ଛିଃ ! ), ଆପୁଡ଼େଇ ଦେବି, ଭାବାକୁଳ ତରଙ୍ଗକୁ ଭୁନ କରି ଦେବି । ବଡ଼ଭାଇ ପରି । ମାନ୍ୟରେ ସେ ଭାଉଜ କି ଯାହା ହୁଅନ୍ତୁ ପଛେ । ସେଇଲାଗି ତ ତାଙ୍କୁ ଭାଉଜବୋହୂ ବୋଲି ଡାକି ପାରିଲି ନାହିଁ । ଡାକିଲି ବାଉଳ-ଅପା, ଆଦୁରି ନଜର, ଗେହ୍ଲା ଭଉଣୀଟିଏ, ଖାଲି ମାନ୍ୟାର୍ଥେ ଅପା । ମୋ ଦେଖାଦେଖି ଅନ୍ୟମାନେ ବି ସେଇଆ ଡାକିଲେ । ଶେଷକୁ ଆମେ ଯେତେକ ପୁଅ-ପିଲା ଥିଲୁ, ମୁଁ, ମୋ ସାନଭାଇ ରଙ୍ଗ, ଆଉ ଆମର ସାହିପଡ଼ଶା ସାଙ୍ଗ, ମିଛୁ, ବନା, ଉତ୍ପଳ, ଓଗେର ଆମେ ତାଙ୍କୁ କ'ଣ କମ୍ ହଇରାଣ କରୁଛୁ ? ମଧୁରିଆ ମିଛିମିଛିକା ହଇରାଣ, ଯେମିତକି ସେ ବାଧ୍ୟ ହୋଇ ହସିବେ । ଏବଂ ସେ ହସିଥିଲେ । ଖିଲିଖିଲି ସରଳିଆ ହସ, କୁଆଁରୀ ଯୌବନର ସେଇ ନିଆଁ ଲଗା ହସ ··ଯାହାର ଯୋଗୁଁ···ଗୁରୁତଃ । କହିଲେ କ'ଣ ନା ଆତ୍ମହତ୍ୟା କରିବେ ! ଖାଇ କଲାବାଳି ? ରୁହ, ମୁଁ ଯାଉଛି ତମକୁ ପାଠ ପଢ଼େଇବି, ସିଧା କରିଦେବି । ଆମ ଲଳିତା ବାହା ହେବ ସେଇ ତହସିଲ୍ ଅଫିସର ଯୋଗ୍ୟ ପାତ୍ରକୁ । ଯୌତୁକ ଦେବାର ପ୍ରଶ୍ନ ଉଠୁନାହିଁ । ବୁଝିଲ ?

ବାଉଳଅପା, ତମେଇ' ତ ନୂତନ ଯୁଗର ନାରୀ । ଏକାଧାରରେ ଆଦ୍ୟା ଓ ଆଧୁନିକା, ଯେ ନଇଁଗଲେ ବି ମୁଣ୍ଡ ଟେକି ପାରେ, ଯାହାର ସାହସ ଅଛି ବଞ୍ଚିବା ପାଇଁ । ତମେ ପୁଣି ଭାଙ୍ଗି ପଡ଼ିଲେ ଚଳିବ ? ଜିନାଥ ପଟ୍ଟନାଏକଙ୍କ ବଡ଼ପୁଅ ସୀତାନାଥ ପଟ୍ଟନାଏକ ଆଉଁ ଆଉଁ···

ସେ ଯେତେବେଳେ ବୋଉଙ୍କୁ ଯାଇ କହିଲେ ଯେ ସେ ନିଜେ ବାହାହେଉଛନ୍ତି ମଲ୍ଲିକାପୁର, ବାଉଳଅପାଙ୍କ ଭୂତ ଛଡ଼େଇବା ପାଇଁ, ବୁଢା ଦେଖିଲେ ଅବଶ୍ୟ ଖୁସି ହେଲେ । ଏବଂ ପୁଅକୁ ବାରମ୍ବାର 'ଭଲ, ଭଲ, ଠିକ୍ କରୁଛୁ' ବୋଲି କହିଲେ । କିନ୍ତୁ ତା' ସାଙ୍ଗକୁ ଗୋଟାଏ ଅଯଥା ଓ ଅଖାଡ଼ୁଆ ପରାମର୍ଶ ଦେଲେ ଯାହା

ସୀତୁବାବୁଙ୍କୁ ଆଦୌ ଭଲ ଲାଗିଲା ନାହିଁ । କହିଲେ, ରଙ୍ଗୁଙ୍କୁ ବି ସାଙ୍ଗରେ ନେଇ ଯାଅ ।...ରଙ୍ଗୁ ଗଲେ ଅଧିକାଟା କ'ଣ ହେବ ? ମୁଁ କ'ଣ କାହା ସାଙ୍ଗରେ ଲଢ଼େଇ କରିବାକୁ ଯାଉଛି ଯେ ଭାଇଟାଏ ସାଙ୍ଗରେ ଥିବା ଦରକାର ? ବୋଉର ମୁଣ୍ଡ ବିଗିଡ଼ିଗଲାଣି । ମୁଁ ଯିନା ଚାକିରିଆ, ସେ ହେଲା ଓକିଲ—ବ୍ୟବସାୟୀ । ଦିନୁଟାଏ ମାରି ହେଲେ ଶହ ଶହ ଟଙ୍କାର ଲୋକସାନ୍ । ହେଲେ ବୋଉକୁ କିଏ ବୁଝେଇବ ?

କିନ୍ତୁ ବୋଉର ହାସ୍ୟାସ୍ପଦ ପ୍ରସ୍ତାବକୁ (ହସି ହସି) ସାନଭାଇ ରଙ୍ଗୁ ଆଗରେ ବାଢ଼ିଲା ବେଳକୁ ସୀତାନାଥବାବୁ ଆଶ୍ଚର୍ଯ୍ୟ ହେଲେ ଯେ ସେ ମୋଟେ ହସୁ ନାହିଁ । ଅପରନ୍ତୁ ଗମ୍ଭୀର ହୋଇ କଥାଟାକୁ ଭାବୁଛି, ସତେକି ଇଏ ଗୋଟାଏ ସଙ୍ଗୀନ୍ ମାମଲାର ବ୍ରିଫ୍ ! କିଛି ସମୟ ପରେ, ମାନେ ଭାଇଙ୍କୁ ପାଖ ଚଉକିରେ ବସେଇ ଖଣ୍ଡେ ବାଟ ଏପାଖ ସେପାଖ ହୋଇ ବୁଲି ଆସିଲା ପରେ ରଙ୍ଗନାଥବାବୁ ଘୋଷଣା କଲେ—"ହଉ, ମୁଁ ଯିବି ।" ସୀତାନାଥବାବୁ ଅବାକ୍ ହେଲେ । କଥା କଅଣ ? ଏଥରେ ବି କ'ଣ ବଡ଼ଭାଇ ସାଙ୍ଗରେ ବାଦ କରିବା ଦରକାର ?

ବାଦ କୁହ କି ପ୍ରତିଯୋଗିତା, କି ଅଳ୍ପବହୁତ ଈର୍ଷା, ରଙ୍ଗନାଥବାବୁଙ୍କ ମନରେ ସେପରି ଭାବର ଉଦ୍ରେକ ହୋଇ ନଥିଲା ନୁହେଁ । ସବୁଥର ପରି ଭାବିଥିଲେ —ମୁଁ ବି କ'ଣ ଯିନାଥ ପଟ୍ଟନାଏକଙ୍କର ଯୋଗ୍ୟ ପୁଅ ନୁହେଁ ନା ମୋତେ ବଂଶର ଜଣେ ବିଶିଷ୍ଟ ବ୍ୟକ୍ତି ହିସାବରେ ଗଣିବାର ନୁହେଁ ? ତା'ହେଲେ ଭାଇ କାହିଁକି ଏକୁଟିଆ ବାହାଦୁରି ନେବ ? ଦେଖେଇ ହେବ ଯେ ତା'ରି ଯୋଗୁଁ ସମସ୍ୟାର ସମାଧାନ ହୋଇଗଲା, ବଂଶର ମଙ୍ଗଳ ହେଲା, ଅମୁକକୁ ଚାକିରି ମିଳିଲା, ସମୁକକୁ ଲୋନ୍ ମିଳିଗଲା ? ତେବେ ତାଙ୍କ ହାତରେ କେତେଗୁଡ଼ିଏ ଲାଭଦାୟକ କେସ୍ ଥିଲା, ଯାହାକୁ ସେ ସହଜେ ଛାଡ଼ି ଦେଇ ପାରି ନଥାଆନ୍ତେ । ତଥାପି ସେ ଯିବା ପାଇଁ ବାହାରିଲେ । କାରଣ ସେ ବୁଝିଲେ ଯେ ଇଏ ପଟ୍ଟନାଏକ ବଂଶର ଅନ୍ୟତମ କାରବାର ନୁହେଁ, କି ଲଳିତା ନାମକ ଦୂରସମ୍ପର୍କୀୟ ଝିଆରୀର ସମସ୍ୟା ନୁହେଁ—ଇଏ ହେଉଛି ବାଉଳାଅପାଙ୍କ ବ୍ୟାପାର । ଯାହାର ରଙ୍ଗରୂପ ନିଆରା ।

ବାଉଳାଅପା—ଅନେକ ଦିନ ତଳର ବାଉଳାଅପା । ତାଙ୍କ କଥା ପଡ଼ିଲେ ରଙ୍ଗନାଥବାବୁ ମନକୁ ମନ ହସନ୍ତି । କିନ୍ତୁ ଅତି ସାବଧାନତାର ସହ । ଯେପରିକି ଆମୋଦର ଲକ୍ଷଣ ମୋଟେ ଜଣାପଡ଼ିବ ନାହିଁ ବାହାରକୁ । ହସନ୍ତି ଏଥିପାଇଁ ଯେ ତାଙ୍କୁ ନେଇ କେଡ଼େ ବଡ଼ ସଉଟା ମିଛ ହୋଇଗଲା ! ପୁଣି କେଡ଼େ ସହଜରେ ! ତାଙ୍କ ଓକିଲତି ଜୀବନର ମିଛ-ସତ ମ୍ୟାଜିକ୍‌କୁ ବି ବଳି ଯାଉଛି । ଯଦିଓ ଏଇ ଓକିଲ ପୁଅଟା ମଧ୍ୟ ସେକଥା ଜାଣେ ବୋଲି କେହି

ଜାଣନ୍ତି ନାହିଁ । ହେଲେ ତା' ହୁଏତ ସେ ଗୋଟାଏ ଅସ୍ୱସ୍ତି ଅନୁଭବ କରନ୍ତି । ହାରଯିବାର ଭାବ । ଯେ ସେ ମଧ୍ୟ ସେଇ ବିଚିତ୍ର ଗ୍ରାମାୟଣରେ ଭାଗ ନେଇ ପାରିଥାଆନ୍ତେ । କାହାଣୀର ଅନ୍ୟତମ ନାୟକ ହୋଇ ପାରିଥାଆନ୍ତେ । କିନ୍ତୁ କଥାଟା ଅଧାରୁ ରହିଗଲା···

ତେବେ କାଳକ୍ରମେ ତାଙ୍କ ମନର ସେଇ ଆମୋଦ-ଅସ୍ୱସ୍ତି ଭାବ ଯଥେଷ୍ଟ ଊଣା ହୋଇ ଆସିଛି । ବାଉଲିଅପା କେବେଠୁଁ ଗାଆଁରେ ଯାଇ ଅଛନ୍ତି । ବେଳେ ବେଳେ ଅବଶ୍ୟ ଆସନ୍ତି ଶଙ୍କରଭାଇ ସାଙ୍ଗରେ । ତେବେ ତାଙ୍କ ସହିତ ପ୍ରାୟ ଦେଖା ହୁଏ ନାହିଁ । ରଙ୍ଗନାଥବାବୁ କ'ଣ ଜାଣିଶୁଣି ନିଜକୁ ଦୂରେଇ ଦିଅନ୍ତି ? ଧାତ୍, ତା' କାହିଁକି ହେବ ? ଯାହାହେଉ ଆଜିକାଲି ବାଉଲିଅପାଙ୍କ କଥା ପଡ଼ିଲେ ତାଙ୍କ ମନରେ ଗୋଟାଏ ଉଦାରଭାବ ଉଦ୍‌ବେଳିତ ହୁଏ । ଯେ ଯଦିଓ ସେ ନିଜର ଅପା ନୁହଁନ୍ତି କି ଭାଉଜ ନୁହଁନ୍ତି, ଶଙ୍କରଭାଇ ଆମ ଘରେ ମଣିଷ ହୋଇ ନଥିଲେ ସେ ଗାଆଁ ଗୋଷ୍ଠୀର ଅନ୍ୟତମ ଅନାମଧେୟ ଅପା ହୋଇ ରହିଯାଇ ଥାଆନ୍ତେ, ଏବଂ ସେ କେବେ କେଉଁ ନାଟକର ନାୟିକା ହୋଇଥିଲେ ସେକଥା ଗୁଡ଼, ଯେତେହେଲେ ସେ ଜଣେ ଦୁଃଖିନୀ । ଶଙ୍କରଭାଇ ପରି ବୁଢ଼ା, ପୁଣି ନିଷ୍କର୍ମା ସ୍ୱାମୀଟିଏ ପାଇବାର ଭାଗ୍ୟ, ତା'ପରେ ପାଞ୍ଚ ପାଞ୍ଚଟା ଛୁଆ ଜନ୍ମ କରି ବାଳବୟସ ସାରିବାର ଦୁଃଖ···ଗୁଡ଼ଃ, ବାପାବୋଉ କୋଉ ମୋର ପରାମର୍ଶ ନେଇଛନ୍ତି, ନା ମୋତେ କୋଉ ସୁବିଧାସୁଯୋଗ ଦିଆଯାଉଛି ଯେ ମୁଁ ତାଙ୍କ ଦୁଃଖର ଲାଘବ କରିପାରିଥାଆନ୍ତି ? ସେହେତୁ ଆଜି ବୋଉର ଅପ୍ରତ୍ୟାଶିତ ନିର୍ଦ୍ଦେଶ, ଯେ ରଙ୍ଗୁକୁ ବି ସାଙ୍ଗରେ ନେଲେ ଭଲ ହେବ, ଏଥିରେ ସେ ବିସ୍ମିତ ହେବା ଛଡ଼ା ବିଶେଷ ଭାବରେ ପ୍ରୋତ୍ସାହିତ ହେଲେ । ଏବଂ ଝିଅ ବାହାଘର ନେଇ ଦୁଃଖିନୀଙ୍କ ଏଇ ନୂତନ ଦୁଃଖ ହିଁ ତାଙ୍କୁ ଠେଲିଲା ସେଠିକି ଯିବା ପାଇଁ । ଯେ ଯେତେ କେସ୍ ପଡ଼ିଥାଉ ପଛେ, ତାଙ୍କର ସେଠିକି ଯିବା ଉଚିତ । ବାଉଲି-ଅପାଙ୍କ ସାହାଯ୍ୟ ହେବା ଉଚିତ ଏବଂ ସେ ମନେ ମନେ ତାଙ୍କ ଭାଇଙ୍କୁ କହିଲେ, ବୁଝିଲ, ବାଉଲିଅପା ପ୍ରକୃତରେ ତମଠାରୁ ସାନ, ମୁଁ ହେଉଛି ଏକା ବୟସର, ତେଣୁ ମୁଁହିଁ ତାଙ୍କ ଦୁଃଖକୁ ବୁଝିପାରିବି, ତମେ ନୁହେଁ ।

ସ୍ନେହଲତା ଦେବୀ ଜାଣି ଖୁସି ହେଲେ ଯେ ବାପପୁଅ ଦୁହେଁ ଏକାଠି ଯାଉଛନ୍ତି ଗାଆଁକୁ, ତାଙ୍କ କଥା ମାନି । କାହିଁକିନା ତାଙ୍କର ଆଶଂକା ଥିଲା ସୀତୁଟା ନିହାତି ଉଦାରିଆ, ଶଙ୍କର-ବାଉଲିଙ୍କ ବାହୁନାରେ ଭଲି ଯାଇପାରେ, ଘରୁ ମୋଟା ଟଙ୍କାସୁନା କାଢ଼ି ଦେଇପାରେ ଝିଅର ବାହାଘର ପାଇଁ । ହେଲେ ରଙ୍ଗୁ ଘରକରଣା, ସେ ସହଜେ ମଙ୍ଗିବ ନାହିଁ । ଆଉ ମାଇପିଟାକୁ ସାବାଡ଼ କରିବ, ଠିକଣା ବାଟକୁ ନେଇ ଆସି ପାରିବ ।

···ମଲ୍ଲିକାପୁରରେ ପହୁଞ୍ଚିଲା ବେଳକୁ ସନ୍ଧ୍ୟା ହୋଇ ନ ଥିଲା । ତେଣୁ ଧାନ କ୍ଷେତ ଉପରେ ପଡ଼ିଥିବା ସୁନେଲି ଖରା ଦ'ଭାଇଙ୍କୁ ସ୍ୱାଗତ ଜଣାଉଥାଏ ପୈତୃକ ଗାଆଁକୁ ଆସିବା ପାଇଁ । ଯେଉଁଠିକି ସେମାନେ କ୍ୱଚିତ୍ ଆସିଛନ୍ତି ବଡ଼ ହେଲା ଦିନୁ, ସେହେତୁ କେବେ କେମିତି ଆସିବାକୁ ହେଲେ ସେମାନେ ତାଙ୍କ ଝାପ୍ସା ସ୍ମୃତିଗୁଡ଼ାଙ୍କୁ କେଉଁଠି ବୋଲି କେଉଁଠି ପହଞ୍ଚେଇ ଦିଅନ୍ତି, ଯାଗଯୋଗ ଓ ମୁଡ୍‌ ଅନୁଯାୟୀ । ଅଙ୍କ ସୀତାନାଥବାବୁଙ୍କ ମୁଡ୍‌ ସାରରସରେ ଆପ୍ଳୁତ ଥିଲି ବୋଲି କହିଲେ ହେବ, 'କାର୍ଯ୍ୟଂ ବା ସାଧୟେତ୍···'ର ପାଖାପାଖି, ସେଇଲାଗି ତାଙ୍କ ପାହୁଣ୍ଡ ସାନଭାଇଠାରୁ ଅଧିକ ଟାଣରେ ଓ ବେଗରେ ଆଗେଇ ଯାଉଥାଏ । ସାରତ୍ୱ ଦେଖାଇବାର ସୁଯୋଗ ମିଳି ନାହିଁ ଅନେକ ଦିନ ହେଲା, ସେଇଥିପାଇଁ ହେଉ, କମ୍ବା ଭାରୁ ଓ ସ୍ନେହାସ୍ପଦା ବାଉଳିଅପାଙ୍କ ପ୍ରତି ଦାୟିତ୍ୱଭାବ ଉଚ୍ଛୁଳି ଉଠିଲାରୁ । କିନ୍ତୁ ରଙ୍ଗନାଥବାବୁ ଉଚିତରୁ ଅଧିକ ଭାବିଲା ପରି ମନେ ହେଉଥାଆନ୍ତି, ତେଣୁ ବସ୍‌ଯାତ୍ରା ପରେ ଅଙ୍କାବଙ୍କା ବିଲହୁଡ଼ାରେ ଚାଲିଲା ବେଳକୁ ସେ ଥରକୁ ଥର ଝୁଣ୍ଟି ପଡ଼ୁଥାଅନ୍ତି ଏବଂ ଅଗତ୍ୟା ତାଙ୍କ ଗତି ଧୀମେଇ ଯାଉଥାଏ । ଯଦିଓ ତାଙ୍କ ଭାବନା ଜଟିଳ, ଗମ୍ଭୀର, କି ବହୁମୁଖୀ ନ ଥିଲା । ସେ କେବଳ ଅତୀତରେ ବାଉଳିଅପାଙ୍କୁ ମନେ ପକାଉଥିଲେ, ତାଙ୍କର ଗୋଟିଏ ବେଳର ସ୍ମରଣୀୟ ଚେହେରାକୁ ଠିକଣାଭାବେ ଆଙ୍କିବାକୁ ଚେଷ୍ଟା କରୁଥିଲେ, ଏବଂ ବାରମ୍ବାର ବ୍ୟତିବ୍ୟସ୍ତ ହୋଇ ଉଠୁଥିଲେ ଯେ ସ୍ମୃତି ତାଙ୍କୁ ଚଡ଼ଉଛି । ରମଣୀମଣିଙ୍କ ଟହ୍ଟହ ଓଠ ଦ'ଟା ଥରଥର ହେଉଥିଲା ନିଶ୍ଚୟ, କିନ୍ତୁ ତା'ର ଅର୍ଦ୍ଧସ୍ଫୁଟ ବର୍ଣ୍ଣମାଳାକୁ ପଢ଼ି ହେଉ ନାହିଁ ଏତେଦିନ ପରେ (ସେ ଧରି ନେଲେ ଯେ ପୂର୍ବରୁ ବେଶ୍ ପଢ଼ି ହେଉଥିଲା । ···'ଆଜି, ଏଇକ୍ଷଣି ନୁହେଁ'···'ନା-ନା-ନା'··· 'ଆରେ, ଇଏ କ'ଣ ମ ?' ···ଠିକ୍ କ'ଣ କହିବାକୁ ଚାହୁଁ ଥିଲା ସେଇ ଓଠ ଦ'ଟା ? ଧାତ୍ରି, ସେ ନାକରେ ନାକମାଛି ପିନ୍ଧିଥିଲେ କି ନାହିଁ, ସଦ୍ୟସ୍ନାତା ତାଙ୍କ ମୁଣ୍ଡବାଳକୁ ଖେଳେଇ ଦେଇଥିଲେ କି ଗଣ୍ଠି ପକେଇଥିଲେ, ଏପରିକି ତାଙ୍କ ଶାଢ଼ିର ରଙ୍ଗ କ'ଣ ଥିଲା ତା' ବି ମନେ ପଡ଼ୁ ନାହିଁ ! କିନ୍ତୁ ସନ୍ଦେହ ନାହିଁ ଯେ ତାଙ୍କ ଓଠରେ ସୁନ୍ଦରିଆ ହସଟିଏ ଥିଲା । ଅନ୍ତତଃ କ୍ଷଣକ ପାଇଁ । ନା ଡରିଲେ ମଣିଷ ସେମିତି ହସେ ବେଳେବେଳେ, ଅସନ୍ନ ଆକ୍ରମଣରୁ ରକ୍ଷା ପାଇବା ପାଇଁ ? ବାଜେ କଥା । ମୁଁ ଜାଣିଛି ସେ କ'ଣ କହିବାକୁ ଚାହୁଁଥିଲେ, ଓ ତାଙ୍କ ମନରେ କ'ଣ ଥିଲା । ନାବାଳକାତ ବୟସରେ ମୋତେ କେହି ପାଠ ପଢ଼େଇ ପାରିବ ନାହିଁ ।

ଶଙ୍କରଭାଇର ଦାଣ୍ଡଦୁଆରରେ ପାଦ ଦେଲା ବେଳେ ସନ୍ଧ୍ୟା ଖରା ଦେଖି ସୁନେଲି ହୋଇ ଉଠିଥିଲା, କି ଆନ୍ ଅଠାରୁ ଭ୍ରାଇ ବଳି ପଡ଼ିଥିଲା, ଏବଂ ସେଇଥିପାଇଁ ଏମିତିକା ଭ୍ରମ ହେଲା କହିହେବ ନାହିଁ । ଯାହାହେଉ ଲଳିତା ଯେତେବେଳେ ଆସି ପ୍ରଣାମ କଲା ରଙ୍ଗନାଥବାବୁଙ୍କୁ, ସେ ଅବଶ୍ୟ ବୁଝିଲେ ଯେ ଏଇ ହେଉଛି ତାଙ୍କ ଅଡ଼ୁଆଡ଼ୀ ଝିଆଣ୍ଟି, ଉପସ୍ଥିତ ସମସ୍ୟାର ଆଧାର । ହେଲେ ତାଙ୍କ ଛାତିଟା ଧପ୍‌କିନା

ହେଲି । ମନେ ହେଲା ଯେ ନିଜେ ବାଉଳିଅପାହିଁ ମାର୍ଜିତ ଓ ଆଧୁନିକ ରୂପରେ ଆସି ଠିଆହୋଇଛନ୍ତି ତାଙ୍କ ସାମ୍ନାରେ ।

ତେଣୁ ସତ ବାଉଳିଅପା ଯେତେବେଳେ ଦାଣ୍ଡଘରକୁ ଆସି ମୁହଁ ଦେଖାଇଲେ, ଏବଂ ସ୍ୱାମୀଙ୍କ ଉପରେ ଚଢ଼ିଲା ପରି ହୋଇ କହିଲେ—'ଆରେ, ଦି'ଘଇ ହାଲିଆ ହୋଇ ଆସିଛନ୍ତି, ଆଗେ ଟିକିଏ ଧୂଆଧୋଇ ହୋଇ ସୁସ୍ଥ ହୁଅନ୍ତୁ, ଚା' ଜଳଖିଆ ଖାଆନ୍ତୁ, ଆସୁ ଆସୁ ଗପ କରି ବସିଲ ତାଙ୍କ ସାଙ୍ଗରେ ? ଏବଂ ତାଙ୍କ ଆଡ଼କୁ ଅଭ୍ୟର୍ଥନାସୂଚକ ସ୍ନିଗ୍ଧହାସଟିଏ ଛାଡ଼ି ଦେଲେ, ରଙ୍ଗନାଥବାବୁଙ୍କ ଅଦ୍ଭୁତ ଖିଆଲ ହେଲା ଯେ ଇଏ ନୁହେଁ, ଇଏ ନୁହେଁ, ଇଏ ସେଇ ବାଉଳିଅପା ନୁହେଁ । ଆଉ ଜଣେ । ମିଛ । ଫଳରେ ହସର ପ୍ରତିଦାନ ଦେବା ଦୂରର କଥା, ସେ ତାଙ୍କ ଆଡ଼କୁ ଚାହିଁଲେ ଜଳଜଳ ହୋଇ ।

ପ୍ରକୃତରେ ଯେଉଁ ନାରୀମୂର୍ତ୍ତି ଆବିର୍ଭୂତ ହେଲେ ଦୁଇଭାଇଙ୍କ ସାମ୍ନାରେ, ଖୁଡ଼ୀଙ୍କ ଦେହପାସମେତ ନାନା କୁଶଳ ପ୍ରଶ୍ନ କଲେ, ଏବଂ ଆତିଥ୍ୟ ପରଷିଲେ ତାଙ୍କ ଚେହେରାରେ ଘୋର ପରିବର୍ତ୍ତନ ଘଟିଛି ଇତିମଧ୍ୟରେ, ଏ ବିଷୟରେ ସନ୍ଦେହର ଅବକାଶ ନ ଥିଲା । ଆଖି କୋରଡ଼ରେ ପଶିଯାଇଛି, ଯଦିଓ ତା'ର ଜ୍ୟୋତି ବୋଧ-ହୁଏ ବିଚ୍ଛୁରିତ ନହୋଇ ଦ୍ୱିଗୁଣିତ ଓ ଘନୀଭୂତ ହୋଇ ଦିଶୁଛି ସେଇ କୋରଡ଼ ଭିତରେ । ଗାଲ ସେମିତି ଯାଇଛି । ନା, ନାକରେ ନାକମାଛି ପିନ୍ଧିନାହାନ୍ତି, ତେବେ ପିନ୍ଧିଥିଲେ ଯେ ତାଙ୍କର କାନ୍ତିକୋମଳତା ଫେରି ଆସିଥାଆନ୍ତା । ତା'ର କୌଣସି ସୂଚନା ମିଳୁ ନାହିଁ । ନିବୁଜ ଓଠ । ସତେକି ତାକୁ ନିର୍ଦ୍ଦେଶ ଦିଆଯାଇଛି ଯେ ଆବଶ୍ୟକ ହସ କିମ୍ବା ଭାଷା ଛଡ଼ା ତା'ର ଆଉ କିଛି କାମ ନାହିଁ । ଅମାନିଆ କି ଆଗଚଲା ଉର୍ମି ହେବା ଦରକାର ନାହିଁ, କେଉଁ ଭିତରି ଆବେଗର । ଛାତିର ସ୍ଥାପତ୍ୟ ଯେଉଁ ଅବସ୍ଥାରେ ଥାଉ ନା କାହିଁକି, ମନେ ହେଉ ନାହିଁ ସିଏ ମଧ୍ୟ ତରଙ୍ଗର ଭଙ୍ଗ କରିପାରେ ଆବେଗକୁ ଚହଲେଇବା ପାଇଁ । ମୋଟ ଉପରେ ନିସ୍ତେଜ ନ ହେଲେ ମଧ୍ୟ ସେ ନିହାତି ଶୁଙ୍ଖିଲ ଦେଖାଯାଉଛନ୍ତି । ଅଥଚ ଶକ୍ତ, ସତେକି ନିବୃତ ତେଜକୁ ବିଶ୍ୱାସ ନାହିଁ । କିନ୍ତୁ ଖାଲି ବୟସ ବଢ଼ିଲାରୁ କ'ଣ ସେ ଦିଶୁଛନ୍ତି ଏମିତି ?

କାହିଁକନା ଦିହିଙ୍କି ଦିହେଁ ଯେଉଁ ନୂଆ ରୂପକୁ କଳି ପାରିଲେ ନାହିଁ, ସେଥିରେ କେବଳ ପ୍ରୌଢ଼ତ୍ୱର ପରିଭାଷା ନଥିଲା । ସୁଦୀର୍ଘ ଗୃହିଣୀପଣ କି ମାତୃତ୍ୱର ଯୋଗଡ଼ାଚିହ୍ନ ନଥିଲା, ଯାହାକୁ ଅବସାଦ ବୋଲି କୁହାଯାଇ ପାରେ । ସେଇଥିପାଇଁ ରଙ୍ଗବାବୁ ମନେ ମନେ ପାଟି କରି ଉଠିଲେ ଯେ ଇଏ ସିଏ ନୁହେଁ, ଏବଂ ପୀତୁବାବୁ ତାଙ୍କର ବିସ୍ମୟକୁ ସଜାଡ଼ି ପାରୁନଥିଲେ ।

ତମର ଏଇ ହସରେ ଗୁଣ ନାହିଁ କି ଖୁଣ ନାହିଁ । ରଙ୍ଗନାଥବାବୁ ଏଇ ମର୍ମରେ ଆଜିକାର ବାଉଳିଅପାଙ୍କୁ ଅସ୍ୱୀକାର କଲେ ।···ଇସ୍ ! ସତେକି ଚତ୍ୱାରିଶତ ପୁରୁଖା ଭାଉଜଟିଏ ! ପୂରାପୂରି ସରକାର୍ଣ୍ଣ । ସେଠି ଅତୀତର କିଛି ଗଣ୍ଡଗୋଳ ନାହିଁ କି ନଥିଲା । କେଡ଼େ ସହଜରେ କହିଯାଉଛନ୍ତି—'କଥା କ'ଣ ରଙ୍ଗୁବାବୁ ? ସେମିତି ଚୁପ୍ ହୋଇ ବସିଛ କାହିଁକି ? ପିଲାଏ ଭଲ ଅଛନ୍ତି ତ ? ନା କୋଉ ସ୍ରୈତକୁ ଖଲାସ କରେଇ ପାରିଲ ନାହିଁ ବୋଲି ମନ ଦୁଃଖ କରୁଛ ? ହେଇଠୁଁ ପରିହାସମୂଳକ ହସ । ରଙ୍ଗନାଥବାବୁ ଆମୋଦିତ ହୋଇ ପାରିଲେ ନାହିଁ ।···ବେଶ୍, ବୁଝିଲି ତୁମେ ଦୁଃଖିନୀ ନୁହଁ, ତା'ବୋଲି ଏଇ ଦେଖାଣିଆ ଚଙ୍ଗ କୋଉଥିପାଇଁ ? ଏମିତିକା ଭାଉଜପଣକୁ ନିଃସଙ୍କୋଚ କୁହାଯିବ ନାହିଁ । ଯାହା କୁମାରୀସୁଲଭ, ହୁଏତ ତୁମ ଝିଅ ଲଳିତାକୁ ଶୋଭାପାଏ । ସ୍ୱାଙ୍କୁ କୁହାଯିବ ନିର୍ଲଜ୍ଜତା । ଆମ କଟକ ବଜାରର ଭାଷାରେ ତମ ଚେହେରା ଖରାପ ହୋଇଯାଇଛି—ବୁଝିଲ ବାଉଳିଅପା ? ମୁଁ ଚୁପ୍ ହୋଇ ବସିବି ନାହିଁ ତ ଆଉ କ'ଣଟା କରିବି ? ପେରେମ ହେବ ତମ ସାଙ୍ଗରେ ?

କିନ୍ତୁ ସୀତାନାଥବାବୁ ଅବାକ୍ ହେଉଥିଲେ ଏଇଥିପାଇଁ ଯେ ଭୟ ବୋଲି ଗୋଟାଏ ଜିନିଷ ତୁଟିଗଲା ପରି ଲାଗୁଛି ତାଙ୍କ ସ୍ୱଗୁଣରୁ । ତା' କେମିତି ହେବ ? ଏଣେ ଭାବୁଥିଲେ ଯେ ଭଲ ହେଲା । ତା' ମାନେ ସେ ପୂରାପୂରି ମୁକୁଳି ଆସିଛନ୍ତି ତାଙ୍କ ଅତୀତରୁ । ମୁଁ ଖାଲି କଥାକୁ କହୁ ନଥିଲି, ସେ ସତସତିକା ନୂତନ ଯୁଗର ନାରୀ ହୋଇ ପାରିଛନ୍ତି । କହୁଛନ୍ତି ତାଙ୍କୁ କେହି ଡରେଇ ପାରିବ ନାହିଁ ଆଉ । କାହିଁକିନା ସେ ଅନୁଭୂତିର ଯେତେକ ଭୟ, କଷଣ, ପରାଭବ, ସବୁ ହଜମ କରି ସାରିଲେଣି । ଭଲ, ଭଲ । ତା' ମାନେ ସେ ପ୍ରକୃତରେ ବଦଳି ଯାଇଛନ୍ତି । ପୁରୁଣା ବାଉଳାପଣକୁ ବହିଷ୍କାର କରି ପାରିଛନ୍ତି । ଏଇଆ ତ ଦରକାର ଥିଲା ! ହେଲେ ସେ ଅସ୍ୱସ୍ତି ବୋଧ କଲେ । ସତେକି ଏଇ ସ୍ପର୍ଦ୍ଧିତା ଜଣକ ସ୍ନେହାସ୍ପଦା ହୋଇ ପାରିବ ନାହିଁ । ଏଇ ନାରୀଟିକୁ ସେ ଜାଣନ୍ତି ନାହିଁ, ଯାହା ପାଇଁ ସେ ହମହମ ହୋଇ ଧାଇଁ ଆସିଛନ୍ତି, କ'ଣ ନା ତାଙ୍କୁ ଭୂତ ଧରିଛି । ଭୂତଫୁତ ବାଜେ କଥା । ଖାଲି ଗୋଟାଏ ଜିଦ୍, ମାଇପି ଜିଦ୍ । ମୁଁ ବେକ୍‌ଠୋକ୍ ବଢେଇବି ତାଙ୍କୁ, ମୋର ଯାହା କହିବା କଥା । ମୋର ଗୋଟାଏ ଦାୟିତ୍ୱ ଅଛି—ଲଳିତା ପ୍ରତି, ସମାଜ ପ୍ରତି ।

ଏବଂ ଏ' ଭାଇଯାକ ବିରକ୍ତ ହେଲେ ଯେ ଆତୁରର ବୃଦ୍ଧ, ଦୁଃସ୍ଥ ଓ ଦରିଦ୍ର ମନେ ହେଉଥିବା ଶଙ୍କରଭାଇ ଆତୁର ଅସୁନ୍ଦର ଦେଖାଯାଉଛି, ତାଙ୍କ ପାଖରେ ଯାଇ ଉତ୍‌ଫୁଲ୍ଲ ହେଲାବୁ । ତା'ର ବେହେଡ଼ା କସରା ଭ୍ରମୁଦାନ୍ତକୁ ନେଇ ହସିଲାରୁ । ପୁଣି ଆସିଲା ବେଳଠୁଁ ସେ ନେଇ ଗୋଟିଏ ପଦକୁ ଦୋହରେଇ ହେଉଛି—

'ହେଁଃ, ହେଁଃ । କି ଭାଗ୍ୟ ମୋର ଆଜି ! ରାମ ଲକ୍ଷ୍ମଣ ଦ'ଭାଇଯାକ ଆସିଛନ୍ତି ମୋ କୁଡ଼ିଆକୁ । ଆଉ କିଛୁ ଭାବିବାର ନାହିଁ ମୋର । ତମେଇ ବୁଝିବ । ଯାହାକିଛୁ ଫଇସଲା କରି ଦିବ । ଲଳିତା ତମରି ଝିଅ...'

ଶେଷକୁ ସୀତାନାଥବାବୁ ଉତ୍ତରରୁ ଅଧିକ ଗମ୍ଭୀର ହୋଇ କହିଲେ, "ହଉ, ଥାଉ । କଥାଟା ବୁଝେଇ କରି କୁହ ଏଥର ।" ଜଣେଇ ଦେଲେ ଯେ ଫଇସଲା କରିବାହିଁ ତାଙ୍କର କର୍ତ୍ତବ୍ୟ, ତାଙ୍କର ଅଦୃଷ୍ଟ । ରଙ୍ଗନାଥବାବୁ ତୁନ ହୋଇ ରହିଲେ । ଏବଂ ବାଉଳିଅପା ଭିତରକୁ ଚାଲିଗଲେ ।

ଛଅକଣଯାକ ଚଟାଣରେ ମସିଣା ପାରି ବସିଥିଲେ । ଲଣ୍ଠନର ଆଲୁଅରେ ମୁହଁକୁ ମନଇଚ୍ଛା ଦେଖେଇ ହେବ, ଲୁଚେଇ ହେବ । ସେଇ ସୁବିଧାରେ ସୀତାନାଥ-ବାବୁ ଦେଖେଇ ରହିଲେ ତାଙ୍କର ନିରପେକ୍ଷ ଜଜ୍‌ପଣିଆ ଓ ରଙ୍ଗନାଥବାବୁ ତାଙ୍କର ମୌନ ବିଦ୍ରୂପକୁ ମିଶେଇ ଦେଲେ ଅନ୍ଧାର ଦାଢ଼ିରେ ।

ଏବଂ ଶଙ୍କରଭାଇ ଗାଇଗଲେ ତାଙ୍କର ରାମାୟଣ । ଖାଲି ତାଙ୍କ ଚିଠିର ପୁନରାବୃତ୍ତି ନୁହେଁ, ତା'ର ବିସ୍ତୃତ ଉପକ୍ରମଣିକା, ଏବଂ ବାଉଳି-ଲଳିତା କାହାଣୀ ନାଗ କାଢକୁ ନେଇ ତାଙ୍କ ମରଣାନ୍ତକ ଯନ୍ତ୍ରଣାର ବ୍ୟାଖ୍ୟା । ହେଲେ ଆଶ୍ଚର୍ଯ୍ୟ କଥା ଯେ ସୀତାନାଥବାବୁ ଖାଲି ଶୁଣିଲେ, ଶୁଣିଗଲେ, ଶଙ୍କରଭାଇକୁ ବାଧା ଦେଲେ ନାହିଁ, ବାଟକୁ ଆସ ବୋଲି ଡାକିଲେ ନାହିଁ । ସତେକି ଜଜ୍ ଚାହୁଁଥିଲେ ଯେ ଶୁଣାଣିର ଫର୍ଦ୍ଦ ଲମ୍ବିଯାଉ, ଆହୁରି ଲମ୍ବିଯାଉ । କାରଣ ସେଇ ସମୟତକ ଶାନ୍ତି । ଚେତଣିକି ବିପଦ ।

କାରଣ ତାଙ୍କର ମନେହେଲା ଯେ ଅଭିଯୋଗରେ ଯେତେ ସତ ଓ ସହିତ ଥାଉ ନା କାହିଁକି, ଆସାମୀକୁ ଡାକ ହେବ ନାହିଁ କାଠଗଡ଼ା ଭିତରକୁ । ଏଇ ଭିନ୍ନ ବାଉଳିଅପାଙ୍କୁ ଦହଜେ ଜେରା କରି ହେବ ନାହିଁ । କୁଣାଙ୍କିମା କାନ୍ଦିବ ନାହିଁ, ଭାଙ୍ଗି ପଡ଼ିବ ନାହିଁ । ଓଲଟି ତା' ନବଲବ୍ଧ ଅସ୍ତ୍ର ପେଷିବ ମୋ ପାଖକୁ । ତୀବ୍ର ଚାହାଣିର ଆଗ୍ନେୟାସ୍ତ୍ର—'କେଉଁ ଅଧିକାରରେ ମୋତେ ଜେରା କରିବାକୁ ବସିଛ ? କାହିଁକିନା ତମେ ମୋର ଉପକାର କରିଛ ? ମୋତେ ଉଦ୍ଧାର କରିଛ ? ଲାଜ ନାହିଁ ତମ ମୁହଁକୁ ? ଫେରିଯାଅ ଦୟା କରି । ମୁଁ ମୋ ଝିଅକୁ ନଈକୁ ପେଲିଦିଏ କି ଜଙ୍ଗଲକୁ ଠେଲିଦିଏ; ତମର ସେଥିରେ କିଛୁ କହିବାର ନାହିଁ । ତମର ନାହିଁ କି କୋଉ ପୁରୁଷର ନାହିଁ, ସମାଜର ନାହିଁ ।' ଏମିତିକା ଅବିରତ ଅବାନ୍ତର ଚେଉ, ଯେ ଟିକିଏ ଫାଙ୍କ ରହିବ ନାହିଁ ମୋର ଉଚିତ ଉତ୍ତର ପାଇଁ । ତା' ବୋଲି ମୁଁ ଯେ ତାଙ୍କୁ ଛାଡ଼ ଦେବି, ମୋ କର୍ତ୍ତବ୍ୟରେ ହେଳା କରିବି, ତା' ନୁହେଁ । ମୋର ଗୋଟାଏ ଦାୟିତ୍ୱ ଅଛି...

ତଥାପି ସେ ଖାଲି ଶୁଣିଗଲେ । ଏବଂ ନିଜକୁ ଉତ୍ତରୋତ୍ତର ଦମ୍ଭ ଦେବାକୁ ଲାଗିଲେ । ଗୋଟାଏ ଅଳୀକ ମାଇପି କନ୍ଧର ମୁକାବିଲା କରିବା ପାଇଁ ।

ଶୁଣୁଶୁଣୁ ସେ ହଠାତ୍ ଚେଇଁ ଉଠିଲେ । ବ୍ରହ୍ମପୁର ? ପଚାରିଲେ, "କୋଉ ବ୍ରହ୍ମପୁର ?"

"ମଲା, ଏଇ ଆମ ରାଜଗାଁ ଥାନାମ ? ଏଠୁ ତିନି କୋଶରୁ କମ୍ ହେବ ପଛେ, ବେଶି ହେବ ନାହିଁ ।"

ସୀତାନାଥବାବୁ ତଥାପି ନବୁଝିଲା ପରି ହେଲେ । ସେଇଠୁଁ ଶଙ୍କରାଭାଇ ଅସହିଷ୍ଣୁତାର ଭଙ୍ଗୀରେ କହିଲେ ସ୍ୱର ଉଞ୍ଚେଇ ।

"କହିଲି ପରା—ଯୋଉ ପିଲା କଥା ପଡ଼ିଛି, ତା'ଜେଜେ ଥିଲେ ବ୍ରହ୍ମପୁରର ମୁଖିଆ, ମହାପ୍ରତାପୀ କ୍ଷେତ୍ରବାସୀ ମହାନ୍ତି, ତା' ବାପା ବସନ୍ତ ମହାନ୍ତି, କାଠବାଉଁଶ କେତେ କ'ଣ ଚାଲାଣ କରେ ବାହାରକୁ, ବେଶ୍ ମାଲଦାର୍, ସ୍ୱା'ର ଚାକିରି ନ କଲେ ଚଳନ୍ତା..."

ବସନ୍ତ ମହାନ୍ତି...ବସନ୍ତ କୁମାର ମହାନ୍ତି, ତରୁଣ ଏମ୍. ଏଲ୍. ଏ....କଥା ଚାତୁରୀରେ କେହି ବଳିଯିବ ନାହିଁ ତାକୁ । କେତେ କ'ଣ ପ୍ରତିଶ୍ରୁତି ଦେଇଥିଲା ଏଇ ଅଞ୍ଚଳର ପ୍ରଗତି ପାଇଁ, କେତେ ନୂଆ ରାସ୍ତା, ସ୍କୁଲ୍, ହସ୍ପିଟାଲ୍ ଇତ୍ୟାଦି । ତେବେ ହୁଏତ ତା' ଦୋଷ ନୁହେଁ, ତାଙ୍କ ନୂଆ ପାର୍ଟି ହାରିଗଲା, ପୁରୁଣା ସରକାର ଫେରି ଆସିଲା...ଧାତ୍, ଇଏ ଆଉ କିଏ ହୋଇଥିବ । ସୀତାନାଥବାବୁ ତାଙ୍କ ଆଶଙ୍କାକୁ ଉଡ଼େଇ ଦେବାକୁ ବସିଲେ । ପଚାରିଲେ—

"ଆଚ୍ଛା, ସିଏ କ'ଣ ଦିନାକେତେବେଳେ ଏମ୍. ଏଲ୍. ଏ. ହୋଇଥିଲେ, ଅନେକ ଦିନ ତଳେ ?"

"ହଁ ମ, ସେ ତମ ବାଉଲିଅପାଙ୍କ ଏମ୍. ଏଲ୍. ଏ. ନଥିଲେ କି ? ବ୍ରହ୍ମପୁର ଲାଗିଛି ପରା ଶଙ୍ଖାମୁଠାକୁ..."

ବୁଝିବାରେ ବାକି ନାହିଁ ଆଉ । ସେ ଖାଲି ଏମ୍. ଏଲ୍. ଏ. ନଥିଲେ ବାଉଲିଅପାଙ୍କ, ଆହୁରି ଅନ୍ତରଙ୍ଗ ଥିଲେ । ହେଲେ ମଫସଲିଆଣୀ ଝିଅଖଣ୍ଡିକ ଯେତେ ସୁନ୍ଦରୀ ହେଉ, ହାସ୍ୟମୟୀ କି ଲାସ୍ୟମୟୀ, ଯୁବନେତା କୋଉ ବୁଦ୍ଧିରେ ଗୋଟାଏ ପ୍ରତିଶ୍ରୁତି ବଢ଼େଇ ଦେଇଥାଆନ୍ତେ ତା' ହାତକୁ ? ସେଥିରେ କୋଉ ଭୋଟ ଲଢ଼େଇ ଜିତି ହୋଇଥାଆନ୍ତା ? ନା ସେ କ'ଣ ସତରେ କିଛି ଗୋଟାଏ

ପ୍ରତିଶ୍ରୁତି ଦେଇଥିଲେ, କିନ୍ତୁ ତାକୁ ତୁଳେଇ ପାରିଲେ ନାହିଁ, ସେଇଲଗି ଏତେ କଥା ହେଲା ?

ମୁହୂର୍ତ୍ତିକ ପାଇଁ ସୀତାନାଥବାବୁ ରାଗି ଉଠିଲେ । ତା'ପରେ ଝାଉଁଳା ଗଲେ । ଫୁଲ୍‌ଫୁଲ୍‌ ହାରିଗଲା ପରି । ଏବଂ କଳବଲ ହୋଇ ଅନେଇଲେ ଶଙ୍କରବାଇର ମୁହଁକୁ ।

"କଅଣ ହେଲା କି ସୀରୁ ? ହାଲିଆ ଲାଗୁଛୁ ? ଆଉ କପେ ଚା' ଆଣି ଦେବି ?"

ହଁ, ହାଲିଆ ଲାଗୁଛି । କିନ୍ତୁ ତମେ ବୁଝିବ ନାହିଁ କୋଉଥିପାଇଁ । ତମେ କୋଉଠୁଁ ବୁଝିବ ଶଙ୍କରବାଇ, ଯାହା ତମଠୁଁ ଲୁଗୁ ହୋଇଛି, ଖାସ୍ ତମରି ଭଲ ପାଇଁ ? ତଥା ବାଉଲିଅପାଙ୍କୁ ଉଦ୍ଧାର କରିବା ପାଇଁ ? ତମେ ଜାଣିପାରିବ ନାହିଁ ସନ୍ତାନବତୀ କେମିତି ଚାହୁଁଛନ୍ତି ଏଇକ୍ଷଣି ମୋ ଆଡ଼କୁ । ପୃଥିବୀର କି ପୁରାଣରେ କୌଣସି କୁପିତା ବୋଧହୁଏ ଚାହିଁନି ଏମିତି । ଦୁର୍ଗା, ଦ୍ରୌପଦୀ, କି ଆଉ କେହି । ହୁଏତ ଚିରଦୁଃଖିନୀ ସୀତା, ଯେ ତାଙ୍କର ସବୁତକ ରାଗ ଠୁଳ କରି ରଖିଥିଲେ ନିଜ ଭିତରେ, କେବେହେଲେ ଅଜାଡ଼ି ଦେବେ ବୋଲି । ଏ ଜନ୍ମରେ ନ ହେଲେ ବି ପର ଜନ୍ମରେ, ଅନ୍ୟ କେଉଁ ଯୁଗରେ । ଯେବେ କେହି ହେଲେ ମୂଲ୍ୟ ଦେଇପାରିବ ତାଙ୍କ ରାଗ ଲୁହର । କହୁଛନ୍ତି—ପ୍ରତିଶ୍ରୁତି ଖୋଜୁଛ ଜଜ୍‌ସାହେବ, ରେଜିଷ୍ଟ୍ରୀ ଦଲିଲ୍ ? ଯେତେହେଲେ ପୁରୁଷ, ତମଠୁଁ ଆଉ କ'ଣ ଆଶା କରାଯାଏ ? ଆଜ୍ଞା ଯେଉଁ ଦେହ ଛୁଇଁଲା ମୋ ଦେହକୁ, ତାକୁ ଦଳି ମକଚି ଭୋଗ କଲା, ତା' ପଛରେ କ'ଣ ମଣିଷର ମନ ବୋଲି କିଛି ନଥିଲା ? ନଥିଲା ରକ୍ତର, ରକ୍ତରୁ ବଳି ବୀର୍ଯ୍ୟର ଋଣ ? ଆଉ କହୁଛ କ'ଣ ନା, ସେଇ ପଶୁର ପୁଅ ସାଙ୍ଗରେ ବାହା ଦେବି ମୋ ଝିଅକୁ ? ଏଇ ବିଚାର ତମର ?

କିନ୍ତୁ···କିନ୍ତୁ ବାଉଲିଅପା, ବସନ୍ତବାବୁଙ୍କ ପୁଅ ତ ଆଉ ଜଣେ ମଣିଷ । ତା'ଛଡ଼ା ସେ ଯୌତୁକ ମାଗୁ ନାହାନ୍ତି, ଯୌତୁକ ଦେବା ମାନେ ଝିଅକୁ ଅପମାନ ଦେବା, ନାରୀଜାତିକୁ ଅପମାନ ଦେବା, ପୁଣି ତମର ଯେଉଁ ଆର୍ଥିକ ଅବସ୍ଥା···ନା ନା, ମୋ ଆଡ଼କୁ ଅନାଅନା ସେମିତି ବାଉଲିଅପା !···ଆରେ ଶଙ୍କରବାଇ, ତମେ ବି କାହିଁକି ସେମିତି ଚାହିଁଛ ମୋ ଆଡ଼କୁ ? ଠକ ହେବାରେ ହିଁ ତମ ସୁଖ ପରା, ତମେ ପୁଣି ରାଗୁଛ କୋଉ ସାହସରେ ?

ନା, ହବ ନାହିଁ ମୋ ଦେଇ । ମୁଁ ପାରିବ ନାହିଁ । ତା'ଛଡ଼ା ମୁଇଁ କ'ଣ ଠେକା ନେଇଛି ଫଇସଲା କରିବି ବୋଲି ? ବଂଶକୁ ଉଦ୍ଧାର କରିବି ? ଆଉ ସେ ହେଣ୍ଟି ମାରୁଥିବ ସାନଭାଇ ବୋଲି ?

ସେଇଠୁଁ ସୀତାନାଥବାବୁ କହିଲେ, "ଆଜି ଏତିକିରେ ଥାଉ" । ସଭା ଥିଲିଗଲା ପରେ । କିନ୍ତୁ ସେଇ ରାତିରେ ଏବଂ ନଗ୍ନେଲାରେ ସେ ରଙ୍ଗନାଥବାବୁଙ୍କ କାନରେ ଫୁସ୍‌ଫୁସ୍ ହେଲେ; ସଯତ୍ନରକ୍ଷିତ ଗଣ୍ଠିଟିକୁ ଫିଟେଇ ଦେଲେ, ଏବଂ ମିନତି କଲା ପରି ସାନଭାଇର ପରାମର୍ଶ ମାଗିଲେ—"ତା' ହେଲେ କ'ଣ କରିବା କହିଲୁ ?"

ରଙ୍ଗନାଥବାବୁ ଶୁଣିଲେ, ଯାହା ସେ ମୋଟାମୋଟି ଜାଣିଥିଲେ ଆଗରୁ । ମାମୁଘର ଗାଆଁ ଶଙ୍ଖାମୁଠାର ସୁନ୍ଦରୀ ଝିଅଟିଏ, ତା' ନାଆଁ ବାଉଲି ତା'ର ପାପଗର୍ଭ ହୋଇଥିଲା କୋଉ ବଡ଼ଲୋକ ଘରର ଟୋକାରୁ ନେଇ, ଯେ ଘରେ ଧରାଛୁଆଁ ଦେଲା ନାହିଁ । ସେଇଠୁଁ ଗର୍ଭନଷ୍ଟ କରାଗଲା, ଏବଂ ଝିଅ କୁଆଡ଼େ ବିଷଖାଇ ମରିବାକୁ ବସିଥିଲା । କିନ୍ତୁ କଥାଟା ଆମ ବାପାଙ୍କ କାନକୁ ଗଲାରୁ ସେ ଗୋଟାଏ ମହତ୍ କାମ କଲେ । ବଡ଼ପୁଅକୁ ପାଖକୁ ଡାକି ପାଠ ପଢ଼େଇଲେ । କହିଲେ— ଆରେ, କାହା ଘରେ କ'ଣ ଘଟୁ ନାହିଁ ଆଜିକାଲି ? ହେଲେ କୁଳର ମାନ ବଢ଼େଇବା, ବଂଶର କଲ୍ୟାଣ କରିବା, ସେଇ ହେଉଛି ମଣିଷର ଧର୍ମ । ତେଣୁ ମୁଁ କହୁଛି କ'ଣ କି···ଆମ ଶଙ୍କର···ଧନପୁରୁଷ ଛଡ଼ା ହେଉ ପଛେ ଆମରି ବଂଶର ପୁଅ, ଏଇ ଘରେ ମଣିଷ ହୋଇଛି, ତାକୁ ଦରବୁଢ଼ା କୁହ କି ଅକର୍ମଣ୍ୟ···ତା' ସାଙ୍ଗରେ କୁଳର (ତୋ ମାମୁଘର ଝିଅ କ'ଣ ଆମ କୁଳର ନୁହେଁ ?) ପଦ୍ମଟାକୁ ଯୋଖିଲେ ଭଲ ହେବ ନାହିଁ ? ଯୋଡ଼ାଏ ଚଢ଼େଇ ଝଡ଼ି ପଡ଼ିବେ ଗୋଟାଏ ଟେକାରେ । ମଣିକାଞ୍ଚନ ସଂଯୋଗ । ମୋର ବିଶ୍ୱାସ ତୁ ପାରିବୁ । ତା' ବାପମାଆଙ୍କୁ ଆଉ ଶଙ୍କରକୁ ମନେଇ ପାରିବୁ । ନା କ'ଣ କହୁଛୁ ? ହେଲେ ସାବଧାନ, ଶଙ୍କର ଯେମିତି ଘଟଣାର ଟେର୍ ନପାଏ, ମୋଟ ଉପରେ ଝିଅର ଚରିତ୍ର କଥାଟା ଯେମିତି ଆଉ କାହା କାନକୁ ନଯାଏ···

ରଙ୍ଗନାଥବାବୁ ମୃଦୁ ମୃଦୁ ହସିଲେ ।···ମନେ ମନେ ଗୁଡ଼ ଖାଉଥିଲା ଦି'ଜଣ ଯାକ । ମୋତେ କିଛି କହିଲା ନାହିଁ, କାହିଁକିନା ମୁଁ ଚଗଲା ସାନପୁଅଟା । ହେଲେ ମୁଁ ଜାଣିନେଲି, କାହିଁକିନା ମୋ ନାଆଁ ରଙ୍ଗନାଥ । ଭୂତ୍ରୋବାଇଦ ଆଗେ ଶୁଭିଯାଏ ମୋତେ । କିଓ, ଜାଣିଥିଲି ବୋଲି ତ ସେଦିନ—

···ମୁଁ କିନ୍ତୁ ତମ କାନରେ ଫୁସ୍‌ଫୁସ୍ ହେବ ନାହିଁ । ମୁଁ ଏତେ ବୋକା ନୁହେଁ । କହିବ ନାହିଁ ମୁଁ କେମିତି ଏକୁଟିଆରେ ଭେଟିଲି ତାଙ୍କୁ, ସୁନ୍ଦରୀତରା ବାଉଲିଙ୍କୁ । ଆମ ବାରିଆଡ଼ କୂଅମୂଳେ । ସଦ୍ୟସ୍ନାତା ନବବଧୂଙ୍କ ଆଡ଼କୁ ଅନେଇଲି । ଏବଂ ହସିଲି । ଅର୍ଥପୂର୍ଣ୍ଣ ଶୃଙ୍ଗାର ନିମନ୍ତ୍ରଣ ଜଣେଇଲି । ଭାବିଲି ଅନୁଜବଧୂଙ୍କୁ ଆଉ ଗୋଟିଏ ମିଠା ଚଖେଇବି । ସୁଖ ଦେବି, ଆନନ୍ଦ-ଉପଭୋଗର

ସ୍କୁଲଟିଏ, ବୁଢ଼ାବରର ଶେଷରେ ପଚହଢ଼ି ମଣବା ଆଗରୁ । ସେ ତରକଲେ, 'ନା-ନା' ହେଲେ, ଖେଳଲେ ମୋ ସାଙ୍ଗରେ ।

···ଶୁଣ ବାଉଳଅପା, ଭାବୁଛ କ ମୁଁ ଡରଗଲ ସେଦନ ? ତମ ମିଛ ମୁଣ୍ଡହଲକୁ ବଶ୍ୱାସ କର ଆଗେଇ ଯାଇପାରଲ ନାହିଁ ? ହୁଁଃ ! ମୁଁ ତୁମକୁ ଛାଡ଼ ଦେଲ ଜାଣ । ମାଠେଇ ଗଲ । ଭାବଲ କଏ ଏତେ କଷ୍ଟ କରୁଛ ବେଧେଇ ଚୋକାଟା ପାଇଁ । ଯାହାହେଉ···ଆଜ ମୁଁ ତୁମକୁ ସୁଖୀ କରବ । ତୁମର ବଶେଷ ଉପକାର କରବ । ହେଲେ ଭାବ ନାହିଁ ଯେ ଇଏ ହେଉଛ ମୋ ଦୋଷୀଭାବର ଦାସ୍ୟାଦ । ଷତପୂରଣ, ପ୍ରାୟଶ୍ଚିତ୍ତ, କ ସେମିତକା କଛ ଭାବପ୍ରବଣ ନନ୍‌ସେନ୍‌ସ । ଇଏ ହେଉଛ ତମ ନର୍ଲଜ୍ଜ ନର୍ବିକାର ନାସ୍ତିକ୍ୱ (ଆଉ ମୋ ବାପଭାଇଙ୍କ ମହାନୁଭବତା) ମୁହଁରେ ଚାଣୁଆ ଚାପୁଡ଼ାଏ । ସେଇଠୁଁ ସେ ଭାଇଙ୍କୁ ଉତ୍ତର ଦେଲେ—

"ବେଶ୍, ସେଠି କ ହେଲ ନାହିଁ । ଶଙ୍କରଭାଇ ସେଇ ଯେଉଁ ସ୍କୁଲ୍‌ମାଷ୍ଟର୍ କଥା କହୁଥିଲ, ପିଲଟା ଦେଖିବାକୁ ଭଲ···ଯେଉଁମାନେ ପନ୍ଦରହଜାର ଟଙ୍କା ମାଗୁଥିଲେ···"

"ହଁ—"

"ମୁଁ ଦେବ ସେ ଟଙ୍କା ନଜ ହାତରୁ ।"

"ଏଁ ? ଯୌତୁକ ?"

ରଙ୍ଗନାଥବାବୁ ଘର ଅନ୍ଧାରକୁ ଫଟେଇ ହସି ଉଠିଲେ ଠୋ ଠୋ ହୋଇ । କହିଲେ, "କ'ଣ କହୁଛମ ଭାଇ ? ବଂଶର ମାନମହତ୍ତ ପାଇଁ ଆମେ ଏତକ ସ୍ୱାର୍ଥତ୍ୟାଗ କରପାରବା ନାହିଁ ? ଗୋଟାଏ ଅଲଣା ଆଦର୍ଶକୁ କୁଣ୍ଢେଇ ଧରବା ?"

"କନ୍ତୁ ବୋଉ—"

"ମଲା, ବୋଉ କ'ଣ ଆମ ବଂଶର ନୁହେଁ ? ତାକୁ କ'ଣ କଥାଟା ବୁଝେଇ ଦେଇ ହେବ ନାହିଁ ?"

କହିବା ବାହୁଲ୍ୟ ଯେ ସୀତାନାଥବାବୁ ସାନଭାଇର ବଚାରକୁ ମାନ ନେଲେ । କନ୍ତୁ ତା'ର ହସ ତାଙ୍କୁ ବଷ ପର ଲାଗିଲ । କାହିଁକନା ସେ ଭାବଲେ ଯେ ଗୃହକର୍ତ୍ତା ନହୋଇ ଖାଲି କ ବ୍ୟବସାୟୀ ହୋଇଥିଲେ, ରଙ୍ଗୁ ପର ଅଳ୍ପବହୁତ ଟଙ୍କା ଜମେଇ ପାରଥିଲେ, ସେ ନ୍ୟାୟତଃ ବଳ ସ୍ୱାର୍ଥତ୍ୟାଗ କରପାର ଥାଆନ୍ତେ । ବାଉଳଅପାଙ୍କ ସୁଖ ପାଇଁ ।

# ବାଉଳିଅପାଙ୍କ ଭୂତ

ବାଉଲଅପାଙ୍କ କଥା ରହିଲ । ବସନ୍ତ ମହାନ୍ତର ପୁଅ ସାଙ୍ଗରେ ତାଙ୍କ ଝିଅ ବାହାଘର ହେବ ନାହିଁ ବୋଲି ସ୍ଥିର ହେଲ । ସୀତାନାଥ ଓ ରଙ୍ଗନାଥ ଦୁଇ ଭାଇ ବାହାରିଥିଲେ ଯେଉଁ ଅଭିଯାନରେ, ମାନେ ବାଉଲଅପାଙ୍କ ଭୂତ ଛଡ଼େଇବା ଲଗି, ତାହା ଆପାତ ଦୃଷ୍ଟିରୁ ବିଫଳ ହେଲେ ମଧ୍ୟ, ତା'ର ମୌଳିକ ଉଦ୍ଦେଶ୍ୟ ସାଧିତ ହେଲ । ଭୂତ କାଏମ ରହିଲ ହେଲେ ଲଳିତା ଯଥାଶୀଘ୍ର ଭଲରେ ଭଲରେ ବାହା ହୋଇଯିବ, ଏ ବିଷୟରେ ଆଉ କୌଣସି ସନ୍ଦେହ ରହିଲ ନାହିଁ । ସମସ୍ତେ ଖୁସି । ଉଚିତ ସମାଧାନ ଆଉ କାହାକୁ କୁହାଯାଏ ?

କିନ୍ତୁ ଆମର ଏଇ ଶଠ ସଂସାରରେ ପ୍ରତ୍ୟେକ ସୁନ୍ଦର ସମାଧାନ ପଛକୁ ଗୋଟାଏ ଚମତ୍କାର ସାଲିସ୍ ମଧ୍ୟ ରହିଥାଏ ବୋଲି ଅନେକେ କୁହନ୍ତି । ଏବଂ ମାନିବାକୁ ପଡ଼ିବ ଯେ ଏଠି ମଧ୍ୟ ସେଇଆ ହୋଇଛି । ବାଉଲଅପାଙ୍କ ବାହାଘର ବେଳେ ଗୋଟାଏ ଧରଣର ସାଲିସ୍ ଦାନ୍ତ ଦେଖାଉଥିଲ, ଏଠି ଆଉ ଗୋଟାଏ ଧରଣର; ପ୍ରଭେଦ ଭିତରେ ମାତ୍ର ଏତିକି ।

ପ୍ରଥମେ ବାଉଲଅପାଙ୍କ ବାହାଘର ବିଷୟରେ କିଛି କହିବାକୁ ପଡ଼ିବ । ଶଙ୍କରଭାଇଙ୍କ ସାଙ୍ଗରେ ବାହାଘର କରେଇ ତାଙ୍କୁ ଉଦ୍ଧାର କରିଗଲ ବୋଲି ଜାଣିଲବାଲଙ୍କ ମତ । ସୀତାନାଥବାବୁଙ୍କର ମନେପଡ଼ୁଛି ଯେ ବାହାଘର ପରେ ପରେ ସେ କେମିତି ତାଙ୍କୁ ଦେଖିଲକ୍ଷଣି ଓଠ କାମୁଡ଼ୁଥିଲେ, ସତେକି ଏଇକ୍ଷଣି କାନ୍ଦି ପକେଇବେ । ଏବେ ତାହା କୁଆଡ଼େ ଦୁଃଖ ନୁହେଁ, ଅସ୍ଫୁଳ କୃତଜ୍ଞତା । ସତେ ? ବାଉଲଅପା କ'ଣ ଏମିତି ଦୋଷ କରିଥିଲେ ଯେ ତାଙ୍କୁ ଗୋଟାଏ ବେକାର ଦରବୁଢ଼ା ବର ସାଙ୍ଗରେ ଛନ୍ଦି ଦିଆଗଲ ? ଆଉ ଯଦିବା ତାଙ୍କର କିଛି

ଦୋଷ ଥିଲା ଖୋଲାଖୋଲି ଭାବରେ ତାଙ୍କୁ ଶାସ୍ତି ଦେଲି ନାହିଁ କିମ୍ବା କ୍ଷମା କଲି ନାହିଁ କାହିଁକି ? ଶଙ୍କରଭାଇଙ୍କୁ କାହିଁକି କୁହାଗଲା ନାହିଁ ଯେ ଏଇ ହେଉଛି ପ୍ରକୃତ କଥା, କିନ୍ତୁ ଯେହେତୁ ସେ ଦେଖିବାକୁ ଭଲ ଏବଂ ତାଙ୍କର ବିଶେଷ କିଛି ଦୋଷ ନାହିଁ ଏ ଦିଗରେ, ତମେ ତାଙ୍କୁ ବାହା ହୁଅ ବୋଲି ଆମେ ପ୍ରସ୍ତାବ କରୁଛୁ ? କିନ୍ତୁ ସେଭଳି କୌଣସି ବ୍ୟବସ୍ଥା କରାଗଲା ନାହିଁ । ସତ୍ୟ ସାଙ୍ଗରେ ସାଲିସ୍ କରାଗଲା । ସତେକି ସତଟା ସ୍ୱଭାବତଃ ଲଙ୍ଗଳା, ତେଣୁ କୁତ୍ସିତ, ତେଣୁ ତା'କୁ ଅଳ୍ପବହୁତ ଢାଙ୍କି ନ ଦେଲେ ଚଳିବ ନାହିଁ !

ତଥାପି ମଣିଷର ଭାବିବାକୁ ଇଚ୍ଛା ହୁଏ ଯେକୌଣସି ସତ ଅଛପା ରହେ ନାହିଁ ସବୁଦିନ ପାଇଁ । ଏବଂ ଏଇଠି ଯାହା ଦେଖାଗଲା, ଶିକ୍ଷିତା ସହରୀ ଝିଅମାନଙ୍କ କଥା ଛାଡ଼, ଗାଆଁ-କିନିଆଁ ବାଉଳିଅପାମାନେ ମଧ୍ୟ କାଳକ୍ରମେ ବିଦ୍ରୋହ କରି ବସନ୍ତି । ଯୁଗ ବଦଳୁଛି । ଲେଖକ ମହାଶୟ ଯେଉଁ ବୀରତ୍ୱର ମୁକୁଟ ପିନ୍ଧେଇଛନ୍ତି ତାଙ୍କୁ ଏଇ ଗପରେ, ସେଭଳି ବୀରତ୍ୱ ବିରଳ ନୁହେଁ ବିଂଶ ଶତାବ୍ଦୀର ପାଦଦେଶରେ । ଇତ୍ୟାଦି । ହଁ, ଭାବିବାକୁ ଇଚ୍ଛା ହୁଏ ସେମିତି । ସେତିକି ସମ୍ବଳ ଆଶାବାଦୀର ।

ବର୍ତ୍ତମାନ ଆସିବା ଉପସ୍ଥିତ ସମସ୍ୟା ଭିତରକୁ । ହଁ, ବାଉଳିଅପାଙ୍କ ଭୁଲକୁ ଅବଶ୍ୟ ସ୍ୱୀକାର କରାଗଲା । ସେଥିରେ ବସନ୍ତ ମହାନ୍ତିଙ୍କୁ କୌଣସି ଶାସ୍ତି ହେଲା ନାହିଁ କି ତା' ପୁଅର କିଛି କ୍ଷତି ହେଲା ନାହିଁ, ହେଲେ ଗୋଟାଏ ମାନ ରହିଲା ଓ ବାଉଳିଅପାଙ୍କର ! ଏମିତି ଭାବିବାକୁ ଇଚ୍ଛା ହୁଏ, ଏବଂ ମନେ ହୁଏ ଯେ ଭବିଷ୍ୟତରେ ଏଭଳି ବିଦ୍ରୋହ ଆହୁରି କାର୍ଯ୍ୟକାରୀ ହେବ, ପ୍ରତିଶୋଧ ଓ ପ୍ରତିକାର ଆହୁରି ମୂର୍ତ୍ତିମନ୍ତ ହୋଇ ଉଠିବ ।

ହଉ, ଆଶାର ତୁଣ୍ଡ ସୁତୁଣ୍ଡ ହେଉ । କିନ୍ତୁ ଅଳ୍ପ ଏଇ ଯେଉଁ ସମାଧାନ ରଚିତ ହେଲା ଆମ ଦି' ଭାଇଙ୍କ ଦ୍ୱାରା, ଯେହେତୁ ସେମାନେ ବାଉଳିଅପାଙ୍କୁ ଏତେ ଭଲପାଆନ୍ତି, ସେଥିରେ ରହିଥିବା ସାଲିସ୍‌କୁ କଡରେଖି ଦେଖିଲେ ଭଲ ହୁଅନ୍ତା ନାହିଁ କି ?

ଏବେ ଯୌତୁକ । ଏବଂ ରଙ୍ଗନାଥ ପଟ୍ଟନାଏକଙ୍କ ଠୋ' ଠୋ' ହସ ! କହିଲେ, "କ'ଣ କହୁଛମ ଭାଇ ? ବଂଶର ମାନମହତ ପାଇଁ ଆମେ ଏତିକ ସ୍ୱାର୍ଥତ୍ୟାଗ କରପାରିବା ନାହିଁ ? ଗୋଟାଏ ଅଳଣା ଆଦର୍ଶକୁ କୁଣ୍ଢେଇ ଧରିବା ?" ସୀତାନାଥବାବୁ ତାଙ୍କର ଅନୁରୋଧକୁ ବେଶି ବାଟ ନେଇ ପାରିଲେ ନାହିଁ । ସାନଭାଇର ସୁପାରଶକୁ ମାନି ନେଲେ । ଅଧିକନ୍ତୁ ବୁଝିଥିଲେ ମନେ ମନେ ଯେ ଗ୍ରହକରଣିଆ ନହୋଇ ଓକିଲ ବ ବ୍ୟବସାୟୀ ହୋଇଥିଲେ ସେ ବ ରଙ୍ଗୁ ପରି ଅଳ୍ପବହୁତ ଟଙ୍କା ଜମେଇଥାଆନ୍ତେ, ଏବଂ ସ୍ୱା'ଠୁଁ ବଳି ସ୍ୱାର୍ଥତ୍ୟାଗ କରିପାରିଥାଆନ୍ତେ ବାଉଲିଅପାଙ୍କ ସୁଖ ପାଇଁ । ସୀତାନାଥବାବୁଙ୍କର ଏହି ଆଚରଣକୁ କଦାପି ଅସ୍ୱାଭାବିକ ବୋଲି କୁହାଯିବ ନାହିଁ । ଆଜି ମଧ୍ୟ କ'ଣ କେଉଁ ସ୍ୱାଭିମାନୀ ପରିବାରର କର୍ତ୍ତା ବଂଶର ତଥାକଥିତ ମାନମହତକୁ ଜଳାଞ୍ଜଳି ଦେବ କେଉଁ ଗୋଟାଏ ଆଦର୍ଶ ପାଇଁ, ତାକୁ ଅଳଣା କୁହ ବା ନକୁହ ? ତଥାପି ଭାବିବାକୁ ଇଚ୍ଛା ହୁଏ ଯେ ଯୌତୁକର ଦୁର୍ଗନ୍ଧ ଏତେ ଉତ୍କଟ ହୋଇ ଉଠିବ ଭବିଷ୍ୟତରେ, ଯେ ବଂଶର ମାନମହତ ମଧ୍ୟ ସେଥିରେ ଦୂଷିତ ହେବ ବୋଲି ମନେ ହେବ କର୍ତ୍ତାମାନଙ୍କର ।

ଯାହାହେଉ ବାଉଲିଅପାଙ୍କୁ କେତେ ଭଲପାଆନ୍ତମ ଦ'ଭାଇଯାକ ! ନହେଲେ କ'ଣ ଏଇ 'ସ୍ୱାର୍ଥତ୍ୟାଗ' ସମ୍ଭବ ହୋଇଥାଆନ୍ତା ? ଏଇ ସୁଖବୋଧ ଉପରେ ମଧ୍ୟ ଦ'ପଦ କହିଲେ ମନ୍ଦ ହେବନାହିଁ । ଆଗେ ସୀତାନାଥବାବୁ । ଉଦାର ଓ ଧର୍ମ୍ମମିଜାଜ୍ ବଡ଼ଭାଇ, ଯେ କର୍ଣ୍ଣଧାରର ଦାୟିତ୍ୱ ନେଇ ବଂଶର ନାଆଟାକୁ ଠିକଣା ଭାବରେ ଚଳେଇ ନେଇଛନ୍ତି ବୋଲି ଜନସାଧାରଣଙ୍କର (ତଥା ତାଙ୍କ ନିଜର) ବିଶ୍ୱାସ । ସେ କହିଛନ୍ତି ତାଙ୍କର ମନ ହେଉଥିଲା ନବବିବାହିତା ଏବଂ କାନ୍ଦି କାନ୍ଦି ହେଲା ପରି ଦିଶୁଥିବା ବାଉଲିଅପାଙ୍କୁ ତାଙ୍କ ଦେହକୁ ଆଉଜେଇ ଆଣିବେ । ଆଉଜେଇ ଆଣିବେ, ଆଉଁଷି ଦେବେ, ଏବଂ ଭାବାକୁଳ ତରଙ୍ଗକୁ ଚୁନ କରି ଦେବେ । ଛିଃ ! ସେଥିରେ କୋଉ କାମନା ନଥିଲା ବୋଲି ସେ କୁହନ୍ତି । ଧନ୍ୟବାଦ, କିନ୍ତୁ ନିଜ ମନଟାକୁ ଏତେ ସଫେଇ ଦେଉଛ କାହିଁକି ? ଇଂରେଜରେ

ଯେଉଁ ପ୍ରବଚନ ଅଛି, ଯେ ଭଦ୍ରମହିଳାଙ୍କ ପ୍ରତିବାଦ ଉଚିତରୁ ଅଧିକ, ସେଥିର ସତ୍ୟାସତ୍ୟ ସୂଚନା ମିଳେ ନାହିଁ କି ଆମକୁ ?

ସେହି ହିସାବରେ ରଙ୍ଗନାଥବାବୁଙ୍କୁ ସାବସ୍ ଦେବା କଥା ଯେ ସେ ମାନି ନେଇଛନ୍ତି ଯେ ତାଙ୍କ 'ଭଲପାଇବା' ଇଚ୍ଛା କାମନା ଛଡ଼ା ଆଉ କିଛି ନୁହେଁ । ତାର ସ୍ମୃତି । ସେଦିନ ସେ ତାକୁ ଚରିତାର୍ଥ କରିପାରିଲେ ନାହିଁ ତା'ର କାରଣ ନୁହେଁ ଯେ ବାଉଲିଅପା ତାଙ୍କୁ ବାରଣ କଲେ (ନାଗ୍ଣକାନ୍ତ ବୟସରେ ତାଙ୍କୁ କେହି ପାଠ ପଢ଼େଇ ପାରିବ ନାହିଁ), ଖାଲି ଭାବିଲେ ଯେ 'କିଏ କେତେ କଷ୍ଟ କରୁଛି ବେଧେଇ ପାଇଁ' କିନ୍ତୁ ଏଇ କ'ଣ ସତ କଥା ? ପ୍ରକୃତରେ ତା' ସନ୍ଧ ହୋଇଥାଆନ୍ତା ସେ କ'ଣ ଚଟ୍‌କିନି ପନ୍ଦର ହଜାର ଟଙ୍କାର ପ୍ରତିଶ୍ରୁତି ଦେଇପାରି ଥାଆନ୍ତେ ଲଳିତାର ଯୌତୁକ ପାଇଁ ? ସେ ଅବଶ୍ୟ ଆମମାନଙ୍କୁ କହିଛନ୍ତି ମନେ ମନେ ଯେ ଇଏ କୋଉ କ୍ଷତିପୂରଣ, ପ୍ରାୟଶ୍ଚିତ୍ତ, କି ସେମିତିକା କିଛି ସ୍ୱବପ୍ରବଣ ନନ୍‌ସେନ୍‌ସ ନୁହେଁ । କିନ୍ତୁ ଏଇ କ'ଣ ସତକଥା ? ପ୍ରତ୍ୟେକେ ସ୍ୱବଣ ବଢ଼େଇ କରେ ତା'ର ସୁପ୍ରସିଦ୍ଧ ରାକ୍ଷସ ପ୍ରବୃତ୍ତିକୁ ନେଇ, କେବେହେଲେ ସ୍ୱୀକାର କରେ ନାହିଁ ତା'ର ଗୋଟାଏ ଭିତରିଆ ଭକ୍ତ ଅଛି ଶ୍ରୀରାମଙ୍କ ପ୍ରତି । ତେଣୁ ରଙ୍ଗନାଥବାବୁଙ୍କ ଅନ୍ତରାତ୍ମା କ'ଣ ସ୍ୱୀକାର କରୁ ନଥିବ ଯେ ତାଙ୍କର ଗୋଟାଏ ଦାୟିତ୍ୱ ଅଛି ସରଳା ଓ ନରପଗ୍ରାଧିନୀ ବାଉଲିଅପାଙ୍କ ପ୍ରତି ? ଏହି ଫାକାନ୍ତରେ 'କ୍ରାଇମ୍ ଓ ପନିସ୍‌ମେଣ୍ଟ' ଉପନ୍ୟାସରେ ଥିବା ଡଷ୍ଟୋଭସ୍କିର ଦର୍ଶନକୁ ମଧ୍ୟ ସତ୍ୟ ମଣିବାକୁ ଇଚ୍ଛା ହୁଏ, ଯେ ପ୍ରତ୍ୟେକ ଦୋଷ ଆପେ ଆପେ ଲେଢ଼େ ତା'ର ଶାସ୍ତି, ତା'ର ପ୍ରତିକାର, ଦୋଷୀ ସେ ବିଷୟରେ ସଚେତନ ହେଉ ବା ନହେଉ । ଭାବିବାକୁ ଇଚ୍ଛା ହୁଏ ଯେ ଏଠି ସେଇଆ ହୋଇଥିବ ପରା...

ଆଚ୍ଛା, ଲେଖକଙ୍କୁ କ'ଣ ଭଲ ଲାଗେ ଏଇ ଅସନ୍ତୋଷିଆ ବାସ୍ତବତାର ଛବି, ସେ ଯେତେ ବଢ଼େଇ କରୁ ପଛେ, ତା'ର ଶ୍ଳେଷାତ୍ମକ ଚତୁରୀକୁ ନେଇ ? ନା, ତା'ର ବି ଭାବିବାକୁ ଇଚ୍ଛା ହୁଏ ଏମିତି । ସତେକି ସେ କେବଳ ଆଜିର ଲେଖକଟିଏ ନୁହେଁ, ମଧ୍ୟ ଭବିଷ୍ୟତର ଆବାହକ !



# ଆଶ୍ଚର୍ଯ୍ୟବତ୍

ସେ ମୋତେ କହି ସାରିଛି ତା'ର ଯାହା କହିବାର ଥିଲା ।
(ହୁଏତ କହି ନାହିଁ, ଯାହା କଦାପି କହି ପାରି ନଥାଆନ୍ତା)
ଧାନ୍ତୁ, ସେ ଗୋଟିଏ ସାଧାରଣ ଝିଅ ।
ତା'ଛଡ଼ା ସେ ଠିକ୍ କେଉଁଥିପାଇଁ ମଲା କଏ ଜାଣିଛି ?
ତା'ଛଡ଼ା ତାକୁ ନେଇ ମୋର ଏତେ ମୁଣ୍ଡବ୍ୟଥା କାହିଁକି ?

ଭାବନା-ଘୂର୍ଣ୍ଣିପାକର ଏଇ ମୋଡ଼ରେ ଗଗନବାବୁ ଟିକିଏ ହସିଦେଲେ ତାଙ୍କର ସେଇ ବିଶିଷ୍ଟ ହସ । ଯାହା ବନ୍ଧୁ,ପରିବାର ତଥା ସହକର୍ମୀଙ୍କ ସହ ଆଳାପ ଆଲୋଚନା ବେଳେ ମଧ୍ୟ ଦେଖିବାକୁ ମିଳେ । ତାକୁ ମନ୍ଦମଧୁର ବୋଲି କୁହାଯିବ ନାହିଁ, କାରଣ ତାହା ଚଟ୍‌କିନା ଆସି ଚାଲିଯାଏ, ଲାଗି ରହେ ନାହିଁ ତୁମ ଚେତନାରେ ଗାର ପକେଇବା ପାଇଁ । ତୁମକୁ ଉସ୍‌କେଇବା ପାଇଁ କି ଛୁଗୁଲେଇବା ପାଇଁ । ପୁଣି ନୀରବ ନୁହେଁ, ସେଥିରେ ସାମାନ୍ୟ 'ହିଁ-ହିଁ' ଶବ୍ଦ ମଧ୍ୟ ଥାଏ । ମୋଟ ଉପରେ ମନେ ହେବ ଯେ ଇଏ ଏକପ୍ରକାର ନିର୍ବୋଧ ହସ, ଅକାରଣ, ନିରର୍ଥକ, ଏବଂ ମୂଲ୍ୟହୀନ । ଏବଂ ଅସୁନ୍ଦର, ଯେହେତୁ ତାଙ୍କ ତଳ ଓଠ ଉପରଠାରୁ ଅଧିକ ମୋଟା, ଏବଂ ଆଗକୁ ମାଡ଼ିଆସେ ହସିଲା ବେଳେ । କିନ୍ତୁ କାହାର ସାଧ୍ୟ ଅଛି ସୁପ୍ରସିଦ୍ଧ ଅଧ୍ୟାପକ ଓ ବିଦ୍ୱାନ ଡକ୍ଟର୍ ଗଗନ ସେନାପତିଙ୍କୁ ନିର୍ବୋଧ ବୋଲି କହିବ ? ତେଣୁ ଯୋକେ ଭାବନ୍ତି ଯେ ସେ ଶାସ୍ତ୍ରୀୟ ମତରେ ଜ୍ଞାନୀ, ତେଣୁ ଜାଣିଶୁଣି ନିଜକୁ ନିର୍ଭୁନ କରିଦିଅନ୍ତି । ତୁମେ ସବୁ କେତେ ବଢ଼ିଆ କଥା କହୁଛ, କେତେ ଚମତ୍କାର କଥା କହୁଛ, ମୁଁ ଆଉ କ'ଣ କହିବି ତା'ଉପରେ ଖାଲି ହସିଦେବା ଛଡ଼ା—ଏଇ ଭାବରେ । ସତେକି ସେ ଶିଶୁଟିଏ, ତାଙ୍କୁ ଖାଲି ମଜା ଲାଗୁଛି, ସଭାର ଓଳିତଳେ ଠିଆହୋଇ ବଡ଼ମାନଙ୍କର ସାରଗର୍ଭ କଥାର ସ୍ୱାଦୁଟିକେ ପାଇ । ତାକୁ ପୂରାପୂରି ନବୁଝିଲେ ନାହିଁ । ଅଦ୍ଭୁତ ଭଦ୍ରଲୋକ ! କିନ୍ତୁ କେତେକ ଭାବନ୍ତି ଯେ ପ୍ରଫେସର ସାହେବଙ୍କ ମତଲବ ଭିନ୍ନ । ତୁମ ତର୍କବିତର୍କର ଆଡ଼ମ୍ବର ତାଙ୍କୁ ଏତେ ସାମାନ୍ୟ ଏବଂ ଅସାର ମନେ ହୁଏ ଯେ ସେ ଫମ୍ପା ହସଟାଏ ହସିଦିଅନ୍ତି । ମାନେ ପିଲାଗୁଡ଼ାଙ୍କ କଥାକୁ ଟିକିଏ ହସିଦେଲେ ଯାଏ । ପ୍ରକୃତରେ ଲୋକଟାର ବିଦ୍ୟାବୁଦ୍ଧି ଏତେ ଉଚ୍ଚରେ ଯେ ବିଚରା ଆଉ କ'ଣ କରିପାରନ୍ତା ?

ଗଗନବାବୁ ଉଭୟ ଧାରଣାର ଅନୁମାନ କରିପାରିଛନ୍ତି, ଏବଂ ଉଭୟଙ୍କୁ ନେଇ ସେ ଗୋଟିଏ ଅସାମାନ୍ୟ ସ୍ୱପ୍ନମୂର୍ତ୍ତି ଗଢ଼ି ନେଇ ପାରିଛନ୍ତି ନିଜ ପାଇଁ । ସେ ସେ ଏକାଧାରରେ ଜ୍ଞାନୀ ତଥା ବନସ୍ପୀ, ଜ୍ଞାନୀ ତଥା ଗଣମାନ୍ୟ, ଜ୍ଞାନୀ ତଥା···

କିନ୍ତୁ ଜ୍ଞାନୀ ଯେତେବେଳେ ଏମିତି ଏକୁଟିଆରେ ହସେ ନିଜ ଭାବନାକୁ ନେଇ ସେତେବେଳେ ତାର ଅର୍ଥ କଅଣ ? ଅର୍ଥ ହେଉଛି ଏଇ, ଯେ ଦେଖ ମୁଁ କେମିତି ମିଛୁଟାରେ ଖେଳୁଛି ନିଜ ସାଙ୍ଗରେ । କିଓ, କୋଉ ସାଧାରଣ କି ଅସାଧାରଣ ଝିଅକୁ ନେଇ ମୁଣ୍ଡବଥା କଥା ଗୁଡ଼, ତା' ବିଷୟରେ ଏତେ ଭାବିବାର କ'ଣ ଅଛି ? ତଥାପି ମୁଁ ଭାବୁଛି, ମୋର ସମୟ ନଷ୍ଟ କରୁଛି, ଏଇ ହେଉଛି ମଜାକଥା । ବାହାରକୁ ମନେ ହେବ ଯେ ମୋ ଅନବଦ୍ୟ ଇମେଜ୍‌ର ଖୋଳପାରେ ଫାଟ ଧରିଲାଣି । ଅନୁ-ଭୂତିର ପାଲିସ୍ ଓ କମଳ୍‌ଟକର୍ ପେଣ୍ଡ ଭିତରୁ ଗୋଟାଏ ଚଗଲା ପିଲା, ଅବେଗ ସରସର ଦୁଷ୍ଟ ପିଲ ବାରମ୍ବାର ମୁଣ୍ଡ ଟେକୁଛି, ଓ ମୁଁ ତାକୁ ଦବେଇ ପାରୁ ନାହିଁ । ଉ-ହୁଁ ତା' ନୁହେଁ, ତା' ନୁହେଁ । ଗଗନ ସେନାପତି ଜାଣେ ଯେ ନାନା ଦ୍ୱନ୍ଦ୍ୱ, ନାନା କନ୍ଦଳ, ମିଛ-ସତ, ଭଲ ମନ୍ଦର ଅନୁଭୂତିକୁ ନେଇ ଏଇ ଜୀବନ । ହେଲେ ସେଥିରେ ପାଣ୍ଡି ହେବା ଭୁଲ୍ । ଭୁଲ୍ ମାନେ ଦୋଷ, ପାପ, ଯାହା କୁହ । ଖାଲି ତାକୁ ଚହ୍ନିବା କଥା । ଚହ୍ନିବ, ଏବଂ ଯତ୍ନରେ ସଜାଡ଼ି ଦେବ ପେଡ଼ି ଭିତରେ । ତାହାହିଁ ଜ୍ଞାନ । ତଥାପି କାହିଁକି କେଜାଣି ଏଇ ଗୋଟାଏ ତର୍କବିତର୍କ ଚାଲିଛି ମୋ ମନ ଭିତରେ । ଚାଲିଛି ତ ଚାଲିଛି । ଭାବନାର ଭଉଁରୀ, କୂଳରେ ପହଞ୍ଚି ନ ପାରିବାର ଦୁଃଖ, ପୁଣି ସେଇ ଗୋଟିଏ ଝିଅକୁ ନେଇ, କେବେକାର ଜଣେ ଗୁଣୀ, ହୁଏତ ଉଚ୍ଛଳ ତେଣୁ ପ୍ରାଣବନ୍ତ, ଏବଂ ଆଦରଣୀୟା···ସତେକି ଗଗନବାବୁ— । ଗୁଡ, ମଜାକଥା ଆଉ କାହାକୁ କହନ୍ତି ?

ଆରେ, ଏଏ ଯଦି ମୋର ଗୋଟାଏ ଜସ୍‌ଓ୍ୱାର୍ଡ଼ ପଜଲ୍ ! ନିଜଗଢ଼ା ଗୋଲକଧନ୍ଦା । ଆଉ କିଛି ନୁହେଁ । ମଧ୍ୟ ଦୁଃଖ କରିବା ଦରକାର ନାହିଁ ଯେ ସମୟଗୁଡ଼ାକ ନଷ୍ଟ ହୋଇଗଲା । ମନେ କର ଯେ ଇଏ ସମୟ ନଷ୍ଟ କରିବାର ଅନ୍ୟତମ ଫନ୍ଦି । କାରଣ ସମୟଗୁଡ଼ାକ ମାଡ଼ି ପଡୁଛି ମୋ ଉପରେ, ଆମେରିକାକୁ ଆସିଲା ପରେ । ଜ୍ଞାନକୁ ପାଇବା ପାଇଁ ଧନ୍ଦାଳି ହେଉଛନ୍ତି ଏମାନେ, କିନ୍ତୁ ନିରୋଳ ଚିନ୍ତା କରିବାକୁ ନାରାଜ । ସେଥିରୁ ସମୟ ନାହିଁ ତାଙ୍କର, ଧୈର୍ଯ୍ୟ ନାହିଁ । ଏବଂ ମୁଁ ହେଉଛି ଜଣେ ପ୍ରାଚ୍ୟରୁ ଆସିଥିବା ପଣ୍ଡିତ, ବୁଦ୍ଧଙ୍କ ଦାୟାଦ । ମୋଠୁଁ ଅଧଘଣ୍ଟାଏ ଭାଷଣ ଶୁଣିଲେ ସେଇ ଯଥେଷ୍ଟ, ତାକୁଇ ହଜମ କରିବା କଷ୍ଟ । ଅତଏବ ଡକ୍ଟର ସେନାପତିଙ୍କୁ ଏକୁଟିଆ ଗୁହ୍‌ଦିଅ ଧ୍ୟାନ କରିବା ପାଇଁ । ତା'ହେଲେ ମୁଁ ବସିରହି କ'ଣ କରିବ କହନ୍ତୁ ? କେତେ ପଢ଼ିବ ? କେତେ ଲେଖିବ ? ଗୋଟାଏ ମିଛୁମିଛିକା ଗୋଲକଧନ୍ଦା ତିଆରି କରିବା ଛଡ଼ା ଅଉ ଉପାୟ କଅଣ ଅଛି ? ଅନ୍ତତଃ ଡକ୍ଟର୍

ହ୍ୱାଇଟ୍‌ମୋର୍, ଡକ୍ଟର୍ ବିଶ୍ୱନାଥନ୍ ଆଦି କେତେଜଣ ସମ-ପଣ୍ଡିତମାନଙ୍କ ସାଙ୍ଗରେ ପୁଣି ଭେଟ ହେବା ପୂର୍ବରୁ ?

ଏହିପରି ଭାବରେ ଗଗନବାବୁ ତାଙ୍କ ଭାବନା-ଭଉଁରୀରୁ ଉତ୍ତୁରି ଆସିଲେ । ବର୍ତ୍ତମାନ ପାଇଁ ।

କିନ୍ତୁ ସେ ସ୍ୱୀକାର କଲେ ଯେ ମଜାକଥା ହେଉ କି ଗୋଲକଧନ୍ଦା, କି ଆଉ ଯାହା, ଏଇ ଭାବନାର ପୁନଶ୍ଚ ନୂଆ ନୁହେଁ । ଯଦିଓ ଏଠିକି ଆସିଲା ପରେ ତା'ର ଆକ୍ରମଣ ବଢ଼ିଯାଇଛି । ଆଜକୁ ପ୍ରାୟ ବର୍ଷେ ହୋଇଗଲାଣି । ଯେବେଠୁଁ ସେ ଶୁଣିବାକୁ ପାଇଲେ ଯେ ସୁଧା ହଠାତ୍ ମରିଗଲା । କିଏ କୁହେ ଆତ୍ମହତ୍ୟା କଲା । କିଏ କୁହେ ଆତ୍ମହତ୍ୟା ନକଲେ ମଧ୍ୟ କଥାଟା ବସ୍ତୁତଃ ସେଇଆ । କାରଣ ତା'ର ସ୍ୱାମୀ ଲକ୍ଷ୍ମଣ ଦାସ, ବିଚକ୍ଷଣ ଓକିଲ, ନିକଟ ଭବିଷ୍ୟତରେ ହାଇକୋର୍ଟ ଜଜ୍ ହେବା ସୁନିଶ୍ଚିତ, ସେ ତାକୁ ବଞ୍ଚିବାକୁ ଦେଲା ନାହିଁ । ଅତ୍ୟାଚାର କଲା । ଘୋର ମାନସିକ ଅତ୍ୟାଚାର । ତା'ର ବ୍ୟକ୍ତିତ୍ୱକୁ ମୋଡ଼ିମାଡ଼ି ଅଳିଆଗଦାରେ ଫିଙ୍ଗିଦେବାର ନିଷ୍ଠୁରତା । ଜଣେ ଅଧେ ଏମିତି ବି କହିଲେ ଯେ ସେ ସୁଧାକୁ ଘାତମତ ମାଡ଼ ମାରୁଥିଲା···

ହେଲା । ଅତ୍ୟନ୍ତ ଦୁଃଖର ବିଷୟ । ଲକ୍ଷ୍ମଣ ଦାସକୁ ଶାସ୍ତି ମିଳିବା ଉଚିତ । କିନ୍ତୁ ତା' ସାଙ୍ଗରେ ମୋ ପ୍ରହେଳିକାର ସମ୍ପର୍କ କଅଣ ?

ସେଇଠୁଁ ଭଉଁରୀ ଗୋଟାଏ ନୂଆ ରୂପ ଦେଖେଇଲା । ଗଗନବାବୁ ଭାବି ବସିଲେ—ଆଚ୍ଛା, ସେ ମୋତେ କିଛି କହିବାକୁ ଆସିଥିଲା ନା ପଚାରିବାକୁ ? ମନେ ପଡ଼ୁଛି । ଗୋଲ୍ ମୁହଁରେ ହସହସ ଭାବ । ସତେକି ଏଥର ସିଏ ଗୋଟାଏ ଟାଣୁଆ ପ୍ରଶ୍ନ ସଜାଡ଼ି ରଖିଛି ସାର୍‌ଙ୍କ ପାଇଁ, ଏଥର ସାର୍ ସହଜେ ବର୍ତ୍ତି ଯାଇ ପାରିବେ ନାହିଁ । ଖାଲି ହମହମ ନୁହେଁ ଅସ୍ତମ୍ଭାଳ । ଆବେଗ ଜମି ଯାଇ ଟ୍ଳଟ୍ଳ ହେଉଛି । ଫାଟିଫୁଟି ପଡ଼ିବ କି କଅଣ । କଳା ମେଘ କିଷ୍ଟ ପାଇଲା ପରି । କିନ୍ତୁ ମନେ ହେବ ଯେ ସେଥିରେ ଗୋଟାଏ ଗୋପନୀୟତା ଥିଲା । ନ ହେଲେ ସେ ସବୁଥର ପରି ମୋ ରୁମ୍‌କୁ ଝଡ଼ ପରି ପଶି ନଆସି ଫୋନ୍‌ରେ ଆପଏଣ୍ଟମେଣ୍ଟ୍ ମାଗି ନଥାଆନ୍ତା । ଏବଂ ମୋର ସ୍ପଷ୍ଟ ମନେ ପଡ଼ୁଛି ଯେ ଆସି ପହଞ୍ଚିଲାକ୍ଷଣି ସେ ଟିକିଏ ଅପ୍ରତିଭ ହେଲା । ଲାଜେଇଗଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଚଉକିରେ ବସିବ, ଠିଆହୋଇ ରହିବ, କି ଫିକ୍‌କିନା ହସିଦେଇ ପଳେଇଯିବ ଠିକ୍ କରିପାରୁ ନାହିଁ । ମୁଁ ତାକୁ ଦମ୍ଭ ଦେଇ ବସିବାକୁ କହିଲି । ସେଇଠୁଁ ସେ ନର୍ଭସ୍ ହସଟିଏ ହସି ଦେଇ ଆରମ୍ଭ କଲା—ସାର୍, ମୁଁ ଗୋଟାଏ କଥା କହିବାକୁ ଆସିଛି ଆଜି ···ମତେ ଭୁଲ୍ ଭାବିବେ ନାହିଁ···

କହିବାକୁ ନା ପଚାରିବାକୁ ?

ମୁଁ କ'ଣ ସତରେ ଭାବୁଥିଲି ଯେ ସେଦିନ ବି ମୋ ପଚାରିବ କିଛି ଗୋଟାଏ ମୂର୍ଖ-ପଣ୍ଡିଆ ପ୍ରଶ୍ନ ? ଯଥା : ସେକ୍ସପିଅର୍ କ'ଣ ଆନ୍ନା ହାଥାୱେଙ୍କୁ ପ୍ରକୃତରେ ଭଲ ପାଉଥିଲେ ? ତା' ଯଦି ହୋଇଥାଆନ୍ତା ସେ ତାଙ୍କ ଉପରେ ସନେଟ୍ ନଲେଖି କୋଉ କାଳୀ ଝିଅ ଉପରେ ସନେଟ୍ ଲେଖିଥାଆନ୍ତେ କାହିଁକି ? (ଗୋଟିଏ ପୁଚୁକା ମୁହଁରେ ଅନାହତ ସ୍ୱଚ୍ଛ ଦାନ୍ତର ହସ, ଅର୍ଥାତ୍ ଅବିମିଶ୍ରିତ ଚପଳତା) ···ଫ୍ରଏଡ୍‌ଙ୍କ ମନସ୍ତତ୍ତ୍ୱ ଯଦି ସତ ହୋଇଥାଏ, ତା' ହେଲେ ମଣିଷମନ ତ ପୂରାପୂରି ଗଢ଼ା ହୋଇ ସାରୁଛି ପାଞ୍ଚ-ଛଅ ବର୍ଷ ଭିତରେ, ସେଣିକି ସେ ଆଉ କଣଟା କରି-ପାରିବ ? ମନଇଚ୍ଛା ସାଧୁ ହୋଇ ପାରିବ ନାହିଁ କି ବଦ୍‌ମାସ୍ ! (ମଣିଷକାଠି ପ୍ରତି ତାସ୍ଥା ଦେଖେଇବାର ଢଙ୍ଗ)···ଆମ ଦେଶର ଦର୍ଶନ ଯଦି ଏତେ ଉଚ୍ଚରେ, ତା'ହେଲେ ଆମେ ଏତେ ତଳେ ପଡ଼ି ରହିଛୁ କାହିଁକି ? (ମୋତେ ଅଠାକାଠିରେ ପକେଇବାର ଠାଣି, କାହିଁକନା ମୁଁ ଭାରତୀୟ ଦର୍ଶନର ଉଗ୍ର ବଡ଼ପଣ୍ଡା ବୋଲି ସମସ୍ତେ ଜାଣନ୍ତି···ସେତିକି ସୃଷ୍ଟିଛଡ଼ା ପ୍ରଶ୍ନ । ସାହିତ୍ୟ, ଦର୍ଶନ, ଇତିହାସ, ସେଇଥିରୁ ତୋଳି ଆଣେ । ଯଦିଓ ସେ ହେଉଛି ସାହିତ୍ୟର ଛାତ୍ରୀ । ଏବଂ ମୋର ବିଦ୍ୟା ହେଲା ସମାଜବିଜ୍ଞାନ, ମୁଖ୍ୟତଃ । କିନ୍ତୁ ଝିଅଟା ମୋର ଉତ୍ତରକୁ ଶୁଣେ ମନ ଦେଇ । ପିଇଗଲା ପରି । ସତେକି ପ୍ରଶ୍ନ ପଚାରିବା ଗୋଟାଏ ବାହାନା । ସେ ଖାଲି ଶୁଣିବାକୁ ଚାହେଁ ମୋ ପାଟିରୁ ବାହାରୁଥିବା କଥା. ସାରଙ୍କ ବଚନାମୃତ । କିନ୍ତୁ···ସେଦିନ କ'ଣ ସେ ସେମିତିକା ପ୍ରଶ୍ନ ପଚାରିବାକୁ ଆସିଥିଲା ? ତା'ହେଲେ ଆବେଗ ସାଙ୍ଗକୁ ଅଲଗବହୁତ ଭୟ କେଉଁଥିପାଇଁ ? ମୁଁ କାଳେ ଭୁଲ୍ ଭାବିବି, ଏଇ ପ୍ରଶ୍ନ ଆସିଲା କେଉଁଠୁ ? ନା ନା, ପ୍ରଶ୍ନ ନୁହେଁ, ପ୍ରଶ୍ନ ନୁହେଁ, ମୋର ସ୍ପଷ୍ଟ ମନେ ଅଛି ··

ସେ ଯାହାହେଉ ଗଗନବାବୁ, ତମେ ତାକୁ କାହିଁକି କିଛି କହିବାକୁ ଦେଲ ନାହିଁ କି ପଚାରିବାକୁ ଦେଲ ନାହିଁ ? ତମ ନିଜକୁ କ'ଣ ସତ୍ରିକଥିତ୍ ନର୍ଭସ୍ ଲାଗିଲା ?

ଡ୍ୟାମ୍ ଇଟ୍ ! ଗଗନବାବୁ ରାଗି ଉଠିଲା ପରି ହେଲେ । ସତେକି ଏଭଳି ଇଙ୍ଗିତପୂର୍ଣ୍ଣ ଆକ୍ଷେପ ସେ ନିଜଛଡ଼ା ଆଉ କାହାଠାରୁ ଶୁଣି ନଥିଲେ ଏଥିପୂର୍ବରୁ । ସେଇଠୁ ସେ ନିଜକୁ ନିଜେ ଦାଇଗଲେ ସେଦିନର ସମ୍ପୂର୍ଣ୍ଣ ରାମାୟଣ । ଟିପ୍ପଣୀ ସହ ।—

ହଁ, ମୁଁ ତା'ର ଅଭିଳା ଆବେଗକୁ ଅବଶ୍ୟ ଅଟକେଇଦେଲି ଜୋର୍ କରି । ନ ହେଲେ ତା'କୁ ପାରି ହୋଇ ନଥାଆନ୍ତା । ମୋର ଜରୁରୀ ଓ ପ୍ରାକ୍‌ଟିକ୍ୟାଲ୍

ବକ୍ତବ୍ୟ ବାକ୍ୟ ପଡ଼ିଯାଇ ଥାଆନ୍ତା । ତେଣୁ କହିଲି, "ଶୁଣ୍, ଆଗେ ମୋର ତୋତେ ଗୋଟାଏ କଥା କହିବାର ଅଛି । ତୁ ଜାଣିଥିବୁ ତୋର ବାହାଘର ପ୍ରସ୍ତାବ ପଡ଼ିଛି ଲକ୍ଷ୍ମଣ ଦାସ ସାଙ୍ଗରେ । ତୋ ବାପା କହୁଥିଲେ ମୋତେ । ହେଲେ ତୁ କୁଆଡ଼େ ଧରାଛୁଆଁ ଦେଉ ନାହୁଁ । ଅଥଚ ତୁ ମୋଟେ ବାହା ହେବୁ ନାହିଁ କି ଆଉ କାହାକୁ ବାହା ହେବାକୁ ଚାହୁଁ, ସେକଥା ବି କହୁନୁ । ଯାହାହେଉ, ତୋର ସାର୍, ଶୁଭାକାଂକ୍ଷୀ ଓ ଫ୍ୟାମିଲି ଫ୍ରେଣ୍ଡ୍ ହିସାବରେ ମୋର ସୁପାରିଶ ହେଉଛି ଯେ ତୋର ସେଇଠି ବାହା ହେବା ଉଚିତ । ବୁଝିଲୁ ? ଲକ୍ଷ୍ମଣ ଖାଲି ମୋ କ୍ଲାସ୍‌ର ଗ୍ରୁପ୍ ବୋଲି କହୁ ନାହିଁ । ବ୍ରିଲିୟାଣ୍ଟ୍ ଷ୍ଟୁଡେଣ୍ଟ୍, ଉଚ୍ଚବଂଶର ପିଲା, ତା'ର ଭବିଷ୍ୟତ ଉଜ୍ଜ୍ୱଳ···" ଏମିତି କହୁ କହୁ କେଉଁ ଯାଏ ଯାଇଥାଆନ୍ତି ଜାଣେ ନାହିଁ, ଏଇ ସମୟରେ ଲକ୍ଷ୍ୟ କଲି ଯେ ତା ମୁହଁର ଚେହେରା ବଦଳି ଯାଇଛି । ନାଲି ରଙ୍ଗ ପାଉଁଶିଆ ପଡ଼ିଯାଇଛି ବୋଲି କହିଲେ ଭୁଲ୍ ହେବ ବୋଧହୁଏ । ତେବେ ସ୍ପଷ୍ଟ ଭାବରେ ଦେଖିଲି ଯେ ତାର ଆବେଗକୁ ବାଧା ହୋଇଗଲା । ଏମିତିକା ବାଧା ଯେ ସେ ସହଜେ ଫେରିଆସି ପାରୁ ନାହିଁ । ଥମକି ରହିଯାଇଛି । ନର୍ବାକ୍, ନିଷ୍ପନ୍ଦ । ତେଣୁ ମୁଁ ମୋ କଥା ମଝିରେ ଗାର ଟାଣି ଦେଇ ପଚାରିଲି ତାକୁ, "ଆଚ୍ଛା, ଏଥର କହ—କ'ଣ କହିବାକୁ ଆସିଥିଲୁ ପରା ?" ସେ ପ୍ରଥମେ କିଛି ଶୁଣିପାରିଲା ନାହିଁ । ଅନ୍ତତଃ ମୋର ସେମିତି ମନେ ହେଲା । ତା'ପରେ ମୁଁ ତାକୁ ପୁଣିଥରେ ମୋର ଆମନ୍ତ୍ରଣ ଜଣାଇଲି । "କହୁନୁ, ଯାହା କହିବାକୁ ଆସିଥିଲୁ ?"

ତଥାପି···ତଥାପି ସେ ଚୁପ୍ ରହିଲା । ଏଥିରେ କ'ଣ ମୋ ଦୋଷ ? ସିଧାସଳଖ କହିପାରିଥାଆନ୍ତା ଯେ ସାର୍ କ୍ଷମା କରିବେ ମୁଁ ଲକ୍ଷ୍ମଣ ଦାସକୁ ବାହା ହେବାକୁ ଚାହେଁ ନାହିଁ ଏବଂ ସେ ଯେଉଁ ଉଦ୍ଦେଶ୍ୟ ନେଇ ଆସିଥିଲା ମୋ ପାଖକୁ, ତାକୁ ପୂରା କରିପାରି ଥାଆନ୍ତା । କିନ୍ତୁ ତା ମୁହଁରୁ କଥା ବାହାରିଲା ନାହିଁ । ଅପରନ୍ତୁ ତାର କଅଁଳ ଫୁଲ୍‌କା ମୁହଁ ଏମିତି ଥମଥମ ହୋଇ ଉଠିଲା ଯେ ମନେ ହେବ ମୁଁ ତାକୁ ଶାସ୍ତି ଦେଲି । ତାର ଉଚ୍ଛୁଳା ଆବେଗ ପାଇଁ, ତା'ର ଜିଦଖୋର ପ୍ରଶ୍ନ ପାଇଁ, କି ଯେଉଁଥିପାଇଁ ହେଉ । ଖାଲି ପଦୁଏଟି କହିଦେଇ ପଳେଇଗଲା ମୋ ପାଖରୁ । କହିଲା, "ହଉ ସାର୍ । ଧନ୍ୟବାଦ । ମୁଁ ସେଇଠି ବାହା ହେବି ।" ମୋ ଉପରକୁ ଗୋଟାଏ ଅଭିମାନ କି ଚ୍ୟାଲେଞ୍ଜର ପେଣ୍ଡ୍ ଫିଙ୍ଗିଦେଲା ପରି । ଅଦ୍ଭୁତ ପିଲା !

କାଲିକା ପିଲା । ଗୋଲ୍‌ମୁହାଁ ହୁଣ୍ଡୀ । ମୋ ଝିଅ ବୟସର । ତା'ର ଶୁଭାକାଂକ୍ଷୀ ସାର୍ ବୋଲି ମୁଁ କ'ଣ ତା ପଛରେ ଗୋଡ଼େଇ ଯାଇଥାଆନ୍ତି ? ଆଲୋ କହ, ତୋ ମନକଥା ଖୋଲି କରି କହ ବୋଲି ଅନୁରୋଧ କରିଥାଆନ୍ତି ? ବରଂ ମୁଁ ଠିକଣା କାମ କଲି । ତା ସାଙ୍ଗରେ ଆଉ ଦେଖା କରିବାକୁ ଚାହିଁଲି ନାହିଁ । ତା' ବାହାଘର

ଷ୍ଟେକକୁ ମଧ୍ୟ ଯାଇ ପାରିଲି ନାହିଁ । ଜାଣିଶୁଣି ନୁହେଁମ, କ'ଣ ଗୋଟାଏ ଜରୁରୀ କାମ ଥିଲା ବୋଲି । କିନ୍ତୁ ତା' ବାପାଙ୍କ ପାଖକୁ ଖଣ୍ଡେ ଚିଠି ଦେଇଥିଲି, ନବଦମ୍ପତିଙ୍କ ପ୍ରତି ମୋର ଆନ୍ତରିକ ଶୁଭେଚ୍ଛା ଜଣାଇ ।

ସନ୍ଦେହ ନାହିଁ ଯେ ମୁଁ ତାକୁ ବିଶେଷ ସ୍ନେହ କରୁଥିଲି । କାର୍ଯ୍ୟବଶତଃ (ମୁଁ ଓଡ଼ିଶା ବାହାରେ ରହିଗଲି ଅନେକ ଦିନ) ତା' ସାଙ୍ଗରେ ଆଉ ଦେଖା ନ ହେଲେ ମଧ୍ୟ ମୁଁ ତାକୁ ସ୍ମରଣ କରୁଥିଲି ବେଳେବେଳେ ଓ କାମନା କରୁଥିଲି ଯେ ତାର ସତେଜ ସରଳ ଜିଜ୍ଞାସା (ତାକୁ ପିଲାଳିଆ କୁହ ବା ପଣ୍ଡିତିଆ) କଦାପି ମରି ନ ଯାଉ, ସେ ସୁଖରେ ରହୁ...

କିନ୍ତୁ ତାର କାହିଁକି ଏମିତି ହେଲା ?

ଆଉ ସେଦିନ ସେ କଅଣ କହିବାକୁ ଆସିଥିଲା ମୋ ପାଖକୁ ?

ଏଥର ଗଗନବାବୁ ଜୋର୍ କରି ତାଙ୍କ ଦୋମୁଣ୍ଡିଆ ଭାବନା ଭଉଁରୀରୁ ଉତୁରି ଆସିଲେ । ଏବଂ ନିଜକୁ କହିଲେ ଯେ ଆଉ ନୁହେଁ, ଆଉ ନୁହେଁ । ଏକେ ଗ୍ଲାନିର କୌଣସି କାରଣ ନାହିଁ । ମୋର ଜାଣିବାର ଉପାୟ ନ ଥିଲା ଯେ ସେ ଲକ୍ଷ୍ମଣ ସାଙ୍ଗରେ ସୁଖୀ ହୋଇ ପାରିବ ନାହିଁ । ଅବଶ୍ୟ ବ୍ରିଲିଆଣ୍ଟ୍ ପିଲାମାନେ ଅଳ୍ପବହୁତ ଗର୍ବୀ ଓ ଅସହିଷ୍ଣୁ ହୋଇଥାଆନ୍ତି । ତା' ବୋଲି କଅଣ...ନା ଗ୍ଲାନିର ପ୍ରଶ୍ନ ଉଠୁ ନାହିଁ । କୌତୂହଳଟାକୁ ବି ବଢ଼େଇବା ଉଚିତ ନୁହେଁ । ମୋତେ ଏତେ ନିର୍ମମ କି ସ୍ୱାର୍ଥୀ ବୋଲି ଭାବି ନାହିଁ ଯେ ସ୍ନେହାସ୍ପଦାର ଟ୍ରାଜେଡ଼ିକୁ ଆଡ଼େଇ ଦେଇ ସେ ମୋତେ କ'ଣ କହିଥାଆନ୍ତା କି ନକହିଥାଆନ୍ତା, ସେଇ ଅଙ୍କ କଷୁଥିବି ବସି । ମଜାକଥାର ବି ଗୋଟାଏ ସୀମା ଅଛି । ନାଃ ! ପ୍ରକୃତରେ ଅନେକ କାମ କରିବାର ଅଛି ଏଇ ବିଦେଶ ରହଣି ଭିତରେ । ଆଉ କେତେ ନୂଆ ବହି ପଢ଼ିବାର ଅଛି ଲାଇବ୍ରେରୀରେ, ଡକ୍ଟର୍ ହ୍ୱିଟ୍‌ମୋର୍‌ଙ୍କ ସାଙ୍ଗରେ ଆହୁରି କେତେ ଆଲୋଚନା କରିବାର ଅଛି...

ତଥାପି ସେଇ ଭାବନା ଭଉଁରୀ ନିତ୍ୟପ୍ରତ୍ୟହ ହଇରାଣ କଲା ଡକ୍ଟର୍ ଗଗନ ସେନାପତିଙ୍କୁ । ତାଙ୍କୁ ଡୁବେଇଲା, ଉଠେଇଲା, ପକେଇଲା, ଚଢ଼େଇଲା । ସତେକି ସେ ଏଠି ଦ୍ୱୀପ୍ୟ ଏକୁଟିଆ ପାଉଛି ତାଙ୍କୁ, ଏଠି ସେ ତାଙ୍କୁ ପୂରାପୂରି ପାଇବ, ତାପରେ ଯାଇଁ ଛାଡ଼ିବ । କେଉଁ ଗୋଟାଏ ମନର ଭୂତ, ନିଉକ୍ଲିଣା ଅବ୍‌ସେସନ୍ !

ଗଗନବାବୁ ବାରମ୍ବାର ନିଜକୁ କହି ଆସିଛନ୍ତି ଯେ ଅନୁଭୂତିର ସମସ୍ତ ଦ୍ୱନ୍ଦ୍ୱକନ୍ଦଳ ଭିତରେ ସମ୍ପର୍କର ଜଟିଳତା ହେଉଛି ସବୁଠୁଁ ଇତର । ତାକୁ କେବଳ

ଚାହିଁଲେ ଗଲା । ସେଇଠୁଁ ତାଙ୍କୁ ପେଡ଼ର ତଳେ ଭେଟି ଦେବା କଥା । କାହିଁକି ନା ତା ଭିତରେ ଅଛି ଅଜ୍ଞାନର ମନ୍ତ୍ର । ତା ନାଆଁ ହେଉଛି ଆବେଗ । ବୌଦ୍ଧିକତାର ଶତ୍ରୁ ସେହେତୁ ସେ ସ୍ତ୍ରୀ, ସନ୍ତାନ, ବନ୍ଧୁମାନଙ୍କ ସାଙ୍ଗରେ ଗଢ଼ି ଉଠିଥିବା ନାନା ଆବେଗସଙ୍କୁଳ କନ୍ଦଳକୁ ଉଚିତ ଭାବରେ ଗୁଡ଼େଇ ଗୁଡ଼େଇ ମୂଢ଼ ସତ୍ତ୍ୱାର କେଉଁ କନ୍ଦରକୁ ଠେଲି ଦେଇଛନ୍ତି । ତେଣୁ କାବା ହେବା କଥା ଯେ ଯାହା ସାଙ୍ଗରେ କୌଣସି ସମ୍ପର୍କ ନାହିଁ ବୋଲି ତାଙ୍କର ଧାରଣା, ସେ ତାଙ୍କ ସ୍ତ୍ରୀ ନୁହେଁ, ଝିଅ ନୁହେଁ, ବୋହୂ ନୁହେଁ, ପ୍ରିୟାର୍ଥିନୀ ସ୍ତ୍ରୀ କିଛି ନୁହେଁ, ଖାଲି ଗୋଟିଏ ଚପଳା ଗୋଲ୍-ମୁହାଁ ଝିଅଟି, ଆଜିଠାରୁ ପ୍ରାୟ ପନ୍ଦର ଷୋଳବର୍ଷ ତଳର ବ୍ୟାପାର, ତାକୁ ନେଇ ଏଇ ଭୂତଟି କେଉଁଠୁ ଆସି ପହଞ୍ଚିଗଲା । ଅଯଥାରେ…

ସତେକି ଖୋଦ୍ ସୁଧା, ନନ୍ଦତା ସୁଧାର ଭୂତ, ପୁଣି ଆସିଛି ତାଙ୍କ ସାଙ୍ଗରେ ଲଗିବା ପାଇଁ ! ଅହେତୁକ ପ୍ରଶ୍ନ ପଗୃର ତାଙ୍କୁ ହଇରାଣ କରିବା ପାଇଁ ··

ସେଇଠୁଁ ଗଗନବାବୁ ହାଲ୍ ଛାଡ଼ିଦେଲେ । ଠିକ୍ କଲେ ଯେ ଯାହା ସାଙ୍ଗରେ ଲଢ଼େଇ କରିବା ବେକାର, ତାକୁ ଉପଭୋଗ କରିବା ଶ୍ରେୟସ୍କର । ମିଛମିଛିକା ଉପଭୋଗ । ଏଇଆକୁ ପରା ରୋମାନ୍ସ ବୋଲି କୁହନ୍ତି ?

କିନ୍ତୁ ରୋମାନ୍ସ—ଅନୁଭବର କୌଣସି ଲକ୍ଷଣ ଜଣାପଡ଼ିଲା ନାହିଁ ତାଙ୍କ ଚେହେରା କି ହାବଭାବରେ । ବରଂ ଲକ୍ଷଣ ଓଲଟା ମନେ ହେଲା । ଯଥା ତାଙ୍କ ଆମେରିକାନ୍ ସହକର୍ମୀ ପ୍ରଫେସର ହ୍ୱିଟ୍‌ମୋର୍ (ଯାହାଙ୍କ ନିମନ୍ତ୍ରଣ ରକ୍ଷା କରି ସେ ଏଠିକି ଆସିଛନ୍ତି, ପ୍ରାଚୀନ 'ମାୟା' ସଭ୍ୟତା ଓ ହିନ୍ଦୁ ସଭ୍ୟତା ମଧ୍ୟରେ ପାର୍ଥକ୍ୟ-ସାମଞ୍ଜସ୍ୟର ଗବେଷଣା କରିବା ପାଇଁ) ସ୍ଥାନୀୟ ଭାରତୀୟ ପ୍ରଫେସର୍ କୃଷ୍ଣନାଥନ୍ (ସେ ଯାହାଙ୍କ ଘରେ ଅତିଥି ହୋଇ ରହିଛନ୍ତି), ତଥା ତାଙ୍କ ଘରକୁ ଯା'ଆସ କରୁଥିବା କେତେଜଣ ବିଦ୍ୟାର୍ଥୀ ଲକ୍ଷ୍ୟକଲେ ଯେ ବୋଧହୁଏ ସ୍ୱନାମଧନ୍ୟ ଏଇ ପ୍ରଫେସର୍ ଜଣକ ବୁଢ଼ା ହୋଇ ଆସିଲେଣି । ହୁଏତ ଖାଲି ଚୁଟିଏ ଚୁଟିକ ଚୁଟିନାହିଁ, ମୁଣ୍ଡବାଳ ବି ଅଧାଅଧି କଳା ହୋଇ ରହିଛି···ତଥାପି । ମନେ ହେଉଛି ସେ ଆହୁରି ଅଳ୍ପ କଥା କହୁଛନ୍ତି । କ'ଣ ଆଉ କହିବ, କେତେ କହିବ, ଏଇ ଭାବରେ । ଏବଂ ଯେତେବେଳେ ସେ ହସୁଛନ୍ତି ତାଙ୍କର ସେଇ ଜ୍ଞାନାତ୍ମକ ହସ, ଦେଖିଲେ ଟିକିଏ ଦୁଃଖ ଆସି ପହଞ୍ଚିଲା ପରି ମନେ ହେଉ ନାହିଁ କି ?

ଦୁଃଖ ? ଜ୍ଞାନୀର ବିଷାଦ ? କିନ୍ତୁ ସିଏ ତ ତାର ସବୁଦିନିଆ ଭେକ । ଆଜି କାହିଁକି ହଠାତ୍ ଆଖିଦୃଷ୍ଟିଆ ହୋଇ ଉଠୁଛି ? ନା ସ୍ନା'କୁ ବି ରୋମାଣ୍ଟିକ୍ ଓରଫ୍ ମିଛମିଛିକା ଦୁଃଖ ବୋଲି କହିବାକୁ ହେବ ?

ପ୍ରଫେସର୍ ହ୍ୱିଟମୋର୍ ତାଙ୍କ ପରିବାରକୁ ନେଇ, ଏବଂ ଅବସର ଉତ୍ତରୁ ତାଙ୍କ ପରିକଳ୍ପିତ ଯୋଜନାକୁ ନେଇ ନାନା ପ୍ରଶ୍ନ ପଚାରିଲେ, ଦୁଃଖର ମଞ୍ଜି କେଉଁଠି ଅଛି ଜାଣିବା ପାଇଁ । କିନ୍ତୁ ଟିକେ ହେଲେ ଆଲୁଅ ଦିଶିଲା ନାହିଁ ତାଙ୍କୁ ।

ପ୍ରଫେସର୍ ବିଶ୍ୱନାଥନ୍ ବନ୍ଧୁତା ଖାତିର୍‌ରେ ଗୋଟାଏ ଭୁଲ୍ କାମ କଲେ । ପଚାରି ବସିଲେ—'ଏକ୍‌ସିଉଜ୍ ମି, ଗଗନ୍‌ଜ୍, ଏବେ ଯେଉଁ କ୍ୟାନସର୍ ଟେଷ୍ଟ୍ ହେଲା ଆପଣଙ୍କର, ନିୟମିତ ରକ୍ତସ୍ରାବର କାରଣ ଜାଣିବା ପାଇଁ, ସେଥିପାଇଁ ଆପଣ ଟିକିଏ ଚିନ୍ତିତ ଅଛନ୍ତି କି ? କିନ୍ତୁ ମୁଁ ଲେଖି ଦେଉଛି ସିଏ ଅର୍ଶ ଛଡ଼ା ଆଉ କିଛି ନୁହେଁ । କୋଲନ୍‌ର କ୍ୟାନ୍‌ସର୍ ହୋଇଥିଲେ ଆପଣ ଶୁଖି ଶୁଖି ଯାଆନ୍ତେ…' । ଯେତେ ଜ୍ଞାନୀ ହେଲେ ମଧ୍ୟ, ହୁଏତ ଜ୍ଞାନୀ ହୋଇଥିବାରୁ, ମଣିଷ ଚଢ଼ି ଉଠିବ ନାହିଁ ଏମିତିକା ବ୍ୟକ୍ତିଗତ ପ୍ରଶ୍ନରେ ? ସେହି ହିସାବରେ ଗଗନବାବୁଙ୍କୁ ଧନ୍ୟବାଦ ଦେବା କଥା ଯେ ସେ ନିଜର କ୍ରୋଧକୁ ଚୁପି ରଖିଲେ ।

ଅଧିକନ୍ତୁ ସେ ତାଙ୍କର ନବନିର୍ମିତ ରୋମାନ୍‌ସକୁ ଉସ୍‌କେଇବାକୁ ଲାଗିଲେ । …ଆ'ଲୋ ସୁଧା, ମୁଁ ତୋ ପ୍ରଶ୍ନ କି ବକ୍ତବ୍ୟକୁ ଯଥାର୍ଥ ବୋଲି ମଣୁଛି । ଆଦୌ ପିଲାଳିଆ ବୋଲି ଭାବୁ ନାହିଁ । ମୁଁ ତୋତେ ଆଶ୍ୱାସନା ଦେଉଛି…ଆ'…କହି ଦେ' ତୋର ଯାହା କହିବାର ଅଛି । ତାର ଗ୍ରୀଷ୍ମଛବି ଫୁଟି ଉଠୁ ଏଠିକାର ଏଇ ଧୂଳିଧୂଆଁ ବିବର୍ଜିତ ଦର୍ପଣରେ, ଶାନ୍ତସମୃଦ୍ଧ ବିପଣୀରେ ସୁନୀଳରେ, ଶ୍ୟାମଳରେ, ପାଣିରେ, ପବନରେ…

—ପୋଷ୍ଟକାର୍ଡ଼ ଛବି ପରି ସୁନ୍ଦରିଆ କଟେଜ୍‌ମାନ, ପ୍ରତି ଘର ଆଗରେ ଚେନାଏ ଚେନାଏ ସୁଶ୍ୟାମଳ ଲନ୍, ଯାହାର ପ୍ରତିଟି ଲୋମ ଟାଙ୍କୁରି ଉଠୁଛି, ତାର ପ୍ରବଣତା ସାଙ୍ଗରେ ମିଶେଇ ଦେ ତୋର ଅକୁହା କଥା । କେହି ଲୋକବାକ ନାହାନ୍ତି ଯେ ତୋ କଥାକୁ ଶୁଣିନେବେ । ଖାଲି ଗୋଟେଅଧେ ଫାପୁଲି ବଲେଇ ଅନେଇଛନ୍ତି ମୋ ଆଡ଼କୁ, ନୀରବ ରହସ୍ୟର ଜଗୁଆଳି ପରି…

—ବେଲାଭୂଇଁ ବି କଥା କହୁଛି । କିନ୍ତୁ ମାଡି ଉଠିଲା ପରି । ସତେକି ତାର ଶବ୍ଦକୁ ବୁଝିବା ଦରକାର ନାହିଁ, ଖାଲି ତାର ଉଚ୍ଛ୍ୱାସକୁ ଅନୁଭବ କର । ସୁ ସୁ ହୋଇ ଉଠିପଡ଼ି ଧାଇଁ ଯାଉଥିବା ମୋଟର୍ ବୋଟ୍‌ରେ, ଖୋଲମୁକୁଳା ଦେହମାନଙ୍କ କଗ୍ରେଡ଼ବନ୍ଧା ଚୁମ୍ବନରେ, ତଥା ନିର୍ଲଜ୍ଜ ସୂର୍ଯ୍ୟର ଶୋଷିଲାପଣରେ, କେମିତି ସେ ପିଇଯାଉଛି, ଚମକଉଛି ସେଇ ନୀଳାୟିତ ଦେହମାନଙ୍କୁ । ଏସବୁକୁ ଦେଖି ତୋ ଲାଜ ଗ୍ରୁଡ଼ିଯିବ ହୁଏତ, ଆଉ ତୁ କହି ପକେଇବୁ ଯାହା କହି ପାରିଲୁଁ ନାହିଁ ସେଦିନ…

—ହୁଏତ ଏଠିକାର ବନବନାମାଉନ୍ଥ ପାର୍କରେ, ଯେଉଁଠି ମାରବଡା ମିଡ ବସିଛୁ ଦାଖ ଶ୍ୟାମଳମା ସାଙ୍ଗରେ । ତାର ଶଦ କାହିଁ କେଉଁ ପାଇନ୍‌ର ମଥା ଉପରେ ଫୁରୁଫୁରୁ ହେଉଛୁ, ତାର ରଙ୍ଗ କାଁ ଭାଁ ବଣଫୁଲରେ ରୂପାୟିତ ହେଉଛୁ, ଆଉ ତାର ଉତ୍କଟ ମହୁଆ ବାସ୍ନା···ଆଃ, ତୁ ସେଇ ନବଢ଼ ମାରବଡାକୁ ଭଲ ପାଇବୁ ମ ! ଅନ୍ତତଃ ତୋ ଯୌବନ ଭଲ ପାଇବ, ଓ ତାର ଅବରୁଦ୍ଧ କାମନା କ କାନ୍ଦଣା ଆପେ ଆପେ କଥା କହି ଉଠିବ, ତୋ ଅଜାଣତରେ···

—କିମ୍ବା ନବଡଲ ସୁପର୍‌ଷ୍ଟାର୍‌ର ଆଖିଝଲସା ବିପଣୀର ବିବିଧବହୁଳ ଭୋଗ୍ୟବସ୍ତୁର ଗହଳରେ ତୁ ଖୁଣ୍ଡ଼ ଦେବୁ ତୋର ଓଜନିଆ କଥା ପଦେ, ଯାହାର ମୂଲ୍ୟ କେହି କଳି ପାରିବେ ନାହିଁ ମୋ ଛଡ଼ା, ତେଣୁ ମୋତେ ହିଁ ଆସିବାକୁ ପଡ଼ିବ···

ଆଲୋ, ଏଠିକା ପ୍ରକୃତି ତଥା ମଣିଷର ଅପୂର୍ବ ତଥା ଭିନ୍ନଦେଶୀୟ ସମ୍ପଦ ଭିତରେ ତୋତେ ଯଥେଷ୍ଟ ସୁଯୋଗ ମିଳିବ ତୋର ସେଇ ଅକୁହା କଥାଟିକ କହି ଦେବା ପାଇଁ । ବିଶେଷତଃ ଏବେକାର ଦୀର୍ଘ ଓ କୋମଳ ଖରାଦିଆ ଦିନ ଭିତରେ, ସକାଳୁ ସଞ୍ଜ ଯାଏଁ ଷୋଳ ଘଣ୍ଟାର ସମୟ, ସୂର୍ଯ୍ୟ ସାଙ୍ଗରେ ଏକାଠି ଉଠିବା ଓ ଶୋଇବା କଥା—ତଥାପି ତୋତେ ସମୟ ମିଳୁ ନାହିଁ ଟିକିଏ ମୁହଁ ଦେଖେଇବୁ ମୋତେ ? ମୁହଁ ଦେଖେଇବୁ ଆଉ କହିବୁ କେଇଟା କଥା···ତୋ ସେଦିନର ଆବେଗ, ଏବେକାର ଟ୍ରାଜେଡ଼ି, ମୋତେ ଦେଖେଇଥିବା ସଲଜ ହସ, ମୋଠୁଁ ଲୁଚେଇଥିବା ପନ୍ଦରବର୍ଷବ୍ୟାପୀ କାନ୍ଦଣା, ସବୁ ଜଣାପଡ଼ିଯିବ ସେଥିରୁ···କଲୋ, କହିବୁ ନାହିଁ ? ଫୁଲେଇଟା ।

କିନ୍ତୁ ଦୁର୍ଭାଗ୍ୟ ଯେ ସୁଧୀର ଆତ୍ମା ତାଙ୍କ ଷୋଳଘଣ୍ଟିଆ ଉପଭୋଗୀ ଚେତନାକୁ ସ୍ୱୀକାର କଲା ନାହିଁ । ତାର ଆସିବାକୁ ଥିଲା ଅନ୍ଧାର—ଅଚେତନର ମଝିଟାରେ । ଥରେ ଯେତେବେଳେ ଗଗନବାବୁ ହଠାତ୍ ନିଦରୁ ଉଠି ପଡ଼ିଲେ, ଏବଂ ଝରକାବାଟେ ଦେଖି ପାରିଲେ ଜଣକ ମୁହଁ···

ଗୋଲ୍‌ମୁହାଁ ଜହ୍ନର ମୁହଁ···ଏତେ ପାଖରେ !

ଆବେଗରେ ଥମଥମ ମୁହଁ···ଏତେ ପାଖରେ !!

କହୁଛୁ, ଆଃ, ଏମିତି ଚମକି ଉଠୁଛ କାହିଁକିମ ? ମୁଁ କ'ଣ ଆଉ ଦିନୁଟାରେ ଆସିଥାଆନ୍ତି ତୁମ ପାଖକୁ ? ତା ଛଡ଼ା ଯେଉଁ ଦେଶର ଗ୍ରୀଷ୍ମଋତୁରେ ସଞ୍ଜ ବୋଲି କିଛି ନାହିଁ, ଖାଲି ଦିନ ଓ ଶୋଇବା-ରାତି, ସେଠି ମୋତେ ଦେଖିଥାଆନ୍ତ ବା କେମିତି ? ସେଇଥିପାଇଁ ମୋର ଏଇ ହଠାତ୍-ଦେଖା । ବସ୍ତୁତଃ

ଗୋଲ୍‌ମୁହାଁର ପୁନରାଗମନ, ତୁମ ଚେତନ ଓ ଅଚେତନର ମଝିରେ କିଛୁ । କିଛି ଆପତ୍ତି ଅଛି ?

ଗଗନବାବୁଙ୍କ ଛାତି ଧପ୍‌କିନ ହେଲା । ସତେକି ସେ ଏଭଳି ମୁକାବିଲା ପାଇଁ ପ୍ରସ୍ତୁତ ନଥିଲେ । ରୋମାନସ୍ ଠିକ୍ ଅଛି, କିନ୍ତୁ ତାର ଏଇ ପ୍ରତ୍ୟକ୍ଷ ପ୍ରଚଣ୍ଡରୂପକୁ ସହ୍ୟ ହେଉ ନାହିଁ । ସେଇଠୁଁ ସେ ଫେରିଯିବାକୁ ବସିଥିଲେ ତାଙ୍କ ଶୋଇବା ଶେଯକୁ । କିନ୍ତୁ ଗୋଲ୍‌ମୁହାଁ ତାଙ୍କୁ ଅଟକେଇଲା । ଗୃହୀ-ଉପଯୋଗୀ ସମ୍ମାନ ଦେଖାଇବାକୁ ବି ଭୁଲିଗଲା । ସାଙ୍ଗେ ସାଙ୍ଗେ ଡାକ ଛାଡ଼ିଲା—

ଶୁଣ !

ମୁଁ କହୁଛି ଶୁଣ । ଭସ୍ମ କରି ଫେରିଯାଅ ନାହିଁ । ତୁମ ପ୍ରଶ୍ନ କି ଗୋଲକ-ଧନ୍ଦାର ଉତ୍ତର, ତୁମ ରୋମାନସ୍-ଚ୍ୟାଲେଞ୍ଜ୍‌ର ଜବାବ୍ । ଏବେ ଶୁଣିବନାହିଁ ତ ଆଉ ଶୁଣିବ କେବେ ? ମଲାବେଳକୁ ? ସେତେବେଳକୁ ଯେଉଁ ଦେହକଷ୍ଟ ହେଉଥିବ, ଏଣେ ବୁଦ୍ଧିବୃତ୍ତି ନଷ୍ଟ ହୋଇ ଯାଇଥିବ ସେଥିରେ କଣଟା ବୁଝିବ ? ନା, ଏଇ ହେଉଛି ଠିକଣା ସମୟ । ବେଳ ଥାଉଁ ଥାଉଁ । ଜ୍ଞାନର ଜ୍ଞାନ ଥାଉଁ ଥାଉଁ । ମାନେ ଯେତେବେଳେ ବିଷାଦରୁ ଅବସାଦ ଆସିଗଲାଣି, ହେଲେ ବୁଦ୍ଧି ଜ୍ଞାନ ରହିଛି, ତଥାପି ରହିଛି···

ତୁମକୁ କ୍ୟାନ୍‌ସର୍ ହୋଇଛି କି ନାହିଁ ଯାଏଆସେ ନାହିଁ । ତେବେ ମରଣକୁ ଯୁଗାନ୍ତରେ ବୋଲି ଆଶା ନକରି ଅଦ୍ୟେବ ବୋଲି ଧରି ନେବାହିଁ ଶ୍ରେୟସ୍କର । ଏଇ ସମୟରେ ବୁଝିବା ଉଚିତ ତୁମ ଅବସାଦର ଅର୍ଥ କଅଣ । ଅର୍ଥ ହେଉଛି, ତୁମେ ଥକି ଯାଇଛ ।

ଜ୍ଞାନର ଅପୂରଣକୁ ନେଇ । ତଥା ଆବେଗର ଅପହୁଞ୍ଚକୁ ନେଇ । ଯାହାକୁ ତୁମେ ଡରି ଆସିଛ ଏତେଦିନ ହେଲା, କିନ୍ତୁ ସିଏ ବାରମ୍ବାର ମୁଣ୍ଡ ଟେକୁଛି ତୁମର କେଉଁ ନିଭୃତ କନ୍ଦର ଭିତରୁ, ଆଉ ତୁମକୁ ଖୁଞ୍ଚା ମାରୁଛି । ସେଇଲାଗି ଆଜି ତୁମେ ସୁଧା ନାଆଁରେ ଗୋଟାଏ ପ୍ରଶ୍ନବାଚୀକୁ ମୁଠେଇ ଧରିଛ, ଅଗଡ଼ର ଗଡ଼ ପରି । ମିଛିମିଛିକା ନୁହେଁ, ବାଧ୍ୟ ହୋଇ ।

ଶୁଣ । ଭାବ ନାହିଁ ମୁଁ ରୋମାନ୍‌ସପଣକୁ ଖୁସ୍ କରିବା ପାଇଁ କହିବି ଯେ ମୋର ତୁମ ପ୍ରତି ଗୋଟାଏ ଦୁର୍ବଳତା ଥିଲା । ତୁମ ଅନୁଭୂତିର ଜଟିଳତା ଭିତରେ ଅନ୍ୟ ଏକ ଜଟିଳତା, ଯାହାକୁ ତୁମେ ତୁମ ଅଦ୍ୱିତୀୟ ହସରେ ସାମିଲ୍ କରିଦେଇ ପାରିବ ।

ଭାବନାହିଁ ଯେ ମୁଁ ତୁମକୁ ଛୁଗୁଲେଇବି । କହିବି ଯେ ତୁମେ ନର୍ଭସ୍ ହେଲ ସେଦିନ ମୋ କଥା ଶୁଣିବା ପାଇଁ, କାଳେ ମୁଁ ପ୍ରେମର ନିବେଦନ କରିବାକୁ ଆସିଛି, ଏବଂ ସେଇଲାଗି ମୋତେ ଆଗଭର ହୋଇ ପରାମର୍ଶ ଦେଲ ଲକ୍ଷ୍ମଣବାବୁଙ୍କୁ ବାହା ହେବା ପାଇଁ ।

ଭୟ ନାହିଁ । ମୁଁ ତୁମକୁ ଦୋଷ ବି ଦେବି ନାହିଁ । ଯେ ତୁମ ସ୍ନେହଶ୍ରଦ୍ଧାର ଜଟିଳତା ଭିତରେ ବିକୃତିର ଧାପେ ଥିଲା, ସେଇଲାଗି ତୁମେ ଜାଣିଶୁଣି ମୋ ଜୀବନଟାକୁ ନଷ୍ଟ କରିବାକୁ ଚାହିଁଲ । ଯେମିତିକି ତୁମ ବ୍ରିଲିଆଣ୍ଟ୍ ଷ୍ଟୁଡେଣ୍ଟ୍‌ର ତେଜରେ ମୋର ସରଳଆ ଜିଜ୍ଞାସାଗୁଡ଼ାକ ପୋଡ଼ି ଜଳି ଯିବ, ଆଉ ତୁମେ ପରୋକ୍ଷରେ ଦାଉ ସାଧିବ ମୋ ଉପରେ ।

ଛାଡ଼, ମୋ କଥା ଭୁଲିଯାଅ । ମୁଁ ଖାଲି ତୁମକୁ ଦି'ପଦ କହିବାକୁ ଆସିଛି ।

କହୁଛି କ'ଣ କି, ମୁହୂର୍ତ୍ତିକ ପାଇଁ ସ୍ଥିର ହୋଇ ଅନାଅ ମୋ ଆଡ଼କୁ । ନୂଆ ଦେଖିଲି ପରି । ଆଶ୍ଚର୍ଯ୍ୟବତ୍ । କିନ୍ତୁ ତାର ଅର୍ଥ ଖୋଜିବା ଦରକାର ନାହିଁ, ପ୍ଲିଜ୍ !···

ଜଟିଳତାକୁ ମାର ଗୋଲି । ବିଶ୍ୱାସ କର ଯେ ସବୁ ଜଟିଳତା ଏବଂ ଯେତେକ ଦ୍ୱନ୍ଦ୍ୱ-କନ୍ଦଳ-ଗଣ୍ଡଗୋଳ ଭିତରେ ତୁମେ ତଥାପି ଭଲପାଅ ତୁମ ସ୍ୱାମୀଙ୍କୁ, ପିଲାଙ୍କୁ···ଦେଶକୁ ମଧ୍ୟ । ମୋତେ ବି । ଭଲ ପାଇଥିଲ, ଭଲ ପାଇବ । ଯତ୍‌ସାମାନ୍ୟ ଏବଂ ଯେଉଁ ଭାବରେ ହେଲେ ମଧ୍ୟ ଅଭୁଲା କେତୋଟି ମୁହୂର୍ତ୍ତର ଆବେଗରେ, ବିସ୍ମୟରେ । ସେତିକି ଜୀବନର ସାରକଥା, ବାକି ସବୁ ମିଛ ଅର୍ଥାତ୍ ଅଦରକାରୀ । ଯେମିତିକି ଆଜିକାର ଏଇ ମୁହୂର୍ତ୍ତ···

ଜୀବନ ଜଟିଳ ସିନା, ମୃତ୍ୟୁ ନୁହେଁ । ତେଣୁ ଏଠୁ ସେଠିକି ସୁରୁଖୁରୁରେ ପାର ହେବାକୁ ହେଲେ···ବୁଝୁଛ ନା ମୁଁ କ'ଣ କହୁଛି ? ଏଥର ହସିଲ ଠିକ୍‌ଏ, ହସ ତୁମର ସେଇ ମାର୍କାମରା ହସ । ବସ୍ତୁଟି ସତହିଁତିକି ସୁନ୍ଦର ଦେଖାଯାଉଛି ଏଇକ୍ଷଣି, ମୁଁ ସତ କହୁଛି । କାହିଁକିନା ମୁଁ ତାକୁ କଦାପି ଜ୍ଞାନୀ, ବିଦୁଷୀ, କି ଆଉ କ'ଣ ବୋଲି କହିବି ନାହିଁ । କେବଳ ନିର୍ବୋଧ, ପୂରାପୂରି ନିର୍ବୋଧ···

ଗଗନବାବୁ ଭାବି ପାରିଲେ ନାହିଁ ଯେ ଏଇ ହେଉଛି ଅସଲ ମଜାକଥା । କିନ୍ତୁ ସେ ଖୁସିଟାଏ ହେଲେ । ଉପଲବ୍ଧିର ପାଖାପାଖି । ହେଲେ ଦୁଃଖର ବିଷୟ, ତାକୁ କେହି ଦେଖିବାକୁ ନ ଥିଲେ, ଗୋଲ୍‌ମୁହାଁ ଛଡ଼ା ।

# ଆଶ୍ଚର୍ଯ୍ୟବତ୍

କ୍ଷମା କରିବେ ମୁଁ ଏଇ ଗପ ଉପରେ ଯଥାଯଥ ଟୀପ୍ପଣୀ ଦେବାକୁ ଅକ୍ଷମ । ଇଏ କୋଉ ଗପ ନୁହେଁ, ଅର୍ଥାତ୍ ଘଟଣା-ଚରିତ୍ରର ଉତ୍ଥାନ ପତନ, ଏବଂ ଶେଷକୁ ଗୋଟାଏ ଆଖିଝଲସା ଆଲୋକଦର୍ଶନ, ତେଣୁ ତାର ସମୀକ୍ଷା ଦୁଃସାଧ୍ୟ, ସେଥିପାଇଁ ନୁହେଁ । ନା, ମୋଟେ ସେଥିପାଇଁ ନୁହେଁ । ମୁଁ ମଝିରେ ମଝିରେ ଏମିତି ଗପ ଲେଖିଥାଏ, କେବଳ କେଉଁ ଅନୁଭବମାନଙ୍କୁ କୌଣସିମତେ ଭାଷା ଦେବା ଲାଗି । ହେଲେ ମୁଁ ପଛେଇ ଯାଇ ନାହିଁ, ପରେ ତା' ଉପରେ କିଛି କହିବା ପାଇଁ । କିନ୍ତୁ ଏଇ ଗପଟି ମନଗହନ ଅନୁଭବରେ ଜୁଡ଼ୁବୁଡ଼ୁ, ଖାଲି ତା' ନୁହେଁ । କଥା ହେଉଛି ଯେ ଯେଉଁ ଅନୁଭବର ଯନ୍ତ୍ରଣା ପରିବେଷିତ ହୋଇଛି ଏଥିରେ, ତାକୁ ପାରି ହୋଇ ଆଗକୁ ଯାଇ ହେଉ ନାହିଁ ।

ଗୋଲମୁହାଁ ଜହ୍ନଟା ସତେ ଏତେ ପାଖରେ, ଭାବା-ବେଗରେ ଥମଥମ ହେଉଛି ମୋ ଆଡ଼କୁ ଚାହିଁ, ମୋ ଜ୍ଞାନବୁଦ୍ଧିକୁ ଏକାଧାରରେ ଭଲ ପାଇ ତଥା ଉପହାସ କଲାପରି, ତେଣୁ ମୋର ବାଟ କାହିଁ କିଛି କହିବା ପାଇଁ ?

ଇଏ କୋଉ ଆଖିଝଲସା ଆଲୋକଦର୍ଶନ ନୁହେଁ, ଯେଉଁଥିରେ ରହସ୍ୟ ଫିଟିଯାଇଛି ଏବଂ ସତ୍ୟର ଚେହେରା ଦିଶିଯାଉଛି ବୋଲି ମନେ ହେବ । ବରଂ ଇଏ ଡାକୁଛି ତମକୁ, ଚ୍ୟାଲେଞ୍ଜ୍ କରୁଛି, ରହସ୍ୟକୁହିଁ ଅନୁଭବ କରିବା ପାଇଁ, ତାକୁ ଅଧିକରୁ ଅଧିକ ଅନ୍ତରଙ୍ଗ କରିବା ଲାଗି. ଯେମିତିକି ସତ୍ୟକୁ ଆଉ ଖୋଜିବାକୁ ପଡ଼ିବ ନାହିଁ । ହାୟ, ସେଇ ଚ୍ୟାଲେଞ୍ଜକୁ ଫିଙ୍ଗି ଦେଇ ହେଉନାହିଁ କି ଗ୍ରହଣ କରିହେଉନାହିଁ, ଏହାହିଁ ଯନ୍ତ୍ରଣା ।

ଡକ୍ଟର ଗଗନ ଅଧିକାରୀଙ୍କ କଥା ଛାଡ଼, ସେ ତ ସହଜେ ଜଣେ ଚିନ୍ତାଶୀଳ ବ୍ୟକ୍ତି ହିସାବରେ ଗଣା, ତେଣୁ ତାଙ୍କୁ ଏଇ

ଚ୍ୟାଲେଞ୍ଜ୍ କେମିତି କଲବଲ କରୁଥିବ ତା' ବେଶ୍ ବୁଝି ହେଉଛି । କିନ୍ତୁ ମୋର ମନେହୁଏ ତାହା ବିଶେଷ ଭାବରେ ଲେଖକମାନଙ୍କ ପ୍ରତି ପ୍ରଯୁଜ୍ୟ ଯେଉଁମାନେ ଅନୁଭବର ଆଗ୍ରହୀ ବୋଲି କହି ହୁଅନ୍ତି, ହେଲେ ତାକୁ ତାର ନ୍ୟାଯ୍ୟ ପରିଣତି (logical conclusion) ଆଡ଼କୁ ନେଇ ଯାଇପାରନ୍ତି ନାହିଁ । ଜ୍ଞାନବୃକ୍ଷର ତାଡ଼ନା ତାଙ୍କୁ ଅଟକେଇ ଦିଏ । କୁହେ ଯେ ସାବଧାନ, ଅନୁଭବର ପାଖକୁ ବଢ଼େଇ ଗଲେ ତା' ବିଷୟରେ କିଛି ଲେଖି ହେବ ନାହିଁ ଆଉ । ରାମକୃଷ୍ଣ ପରମହଂସଙ୍କ ଭାଷାରେ ଲୁଣ ହୋଇ ମହାସମୁଦ୍ରରେ ମିଳେଇ ଗଲା ପରି । ସେଠୁ ଫେରିବ ନା କହିବ ତମକୁ କ'ଣ ଲାଗିଲା, କେମିତି ଲାଗିଲା !

ସେଇ ହେଉଛି ଲେଖକର ଡର । ଯାହାକୁ ଛୁଗୁଲେଉଛି ଏଇ ଜହ୍ନଟା, ଏବଂ ମୁଁ ତାର ଉତ୍ତର ଦେବାକୁ ଅକ୍ଷମ ।

ମୋତେ ଛୁଗୁଲେଉଛି ଯେ ମଣିଷ-ମଣିଷ ସମ୍ପର୍କକୁ ନେଇ ମୁଁ ସତମିଛର କେତେ ସାରକଥା କି ମଜାକଥା କହିଥାଇ ପାରେ କିନ୍ତୁ ମୁଁ ଜୀବନଯାକ ଡରି ଆସିଛି ସେଥିରେ ଥିବା କେଉଁ ଗଭୀର-ତୀବ୍ର ମହା ଅନୁଭବକୁ ଏକାନ୍ତ ନିଜର କରିବା ଲାଗି, କାଳେ ମୁଁ ସେଥିରୁ ଉଧୁରି ଆସି ପାରିବି ନାହିଁ, ଲେଖକଟିଏ ହୋଇ ।

ତା' ପ୍ରେମଉପହାସର ଭୟାନକ ଶେଷ କଥା ହେଲା ଏଇ, ଯାହାକୁ ମୁଁ ମାନିବାକୁ ପ୍ରସ୍ତୁତ ନୁହେଁ (ହେଲେ ସିଧାସଳଖ ଅନେଇ ହେଉ ନାହିଁ ତା' ଆଡ଼କୁ ସେତିକି କହିବା ପାଇଁ), ଯେ ଅନୁଭବର ଆମନ୍ତ୍ରଣକୁ ଏମିତି ଜଗି ଜଗି ଡରି ଡରି ମୁଁ ଭଲ ଲେଖକଟିଏ ହେଲି ହୁଏତ, ହେଲେ ସାର୍ଥକ ମଣିଷଟିଏ ହୋଇପାରିଲି ନାହିଁ । ମୁଁ ଚାହେଁ ତାକୁ କହିବି ଯେ, କବି ୟେଟ୍ସ୍ (W. B. Yeats)ଙ୍କ ଭାଷାରେ, କେତେଜଣ ଜନ୍ମ ହୋଇଛନ୍ତି ଜୀବନକୁ ନେଇ ବଞ୍ଚିବା ଲାଗି, ଏବଂ ଆଉ କେତେଜଣ ଜନ୍ମ ହୋଇଛନ୍ତି ସେଇ ବଞ୍ଚିବା ବିଷୟରେ କିଛି କହିବା ଲାଗି । ଦୁହିଁଙ୍କ ଇଲାକା ପୂରାପୂରି ଅଲଗା । ସେଇଥିଲାଗି ମୋର ଏଇ ଦୁରବସ୍ଥା, ଯେଉଁଥିକୁ ମୁଁ ନାଚାର । କିନ୍ତୁ ସେ ହସୁଛି । କହୁଛି— ସତେ ? ଆଗେ ମଣିଷ ନା ଆଗେ ଲେଖକ ମ ? ଇସ୍, ପାରି ହେବ ନାହିଁ ଝିଅଟାକୁ !

କହୁଛି, ଜଟିଳତାକୁ ମାର ଗୋଲି । ଇଏ ଗୋଟାଏ କଥାର କଥା ? କେଉଁ ସ୍ୱାଭିମାନୀ ଲେଖକ ଭଲ ମାନି ନେଇ ପାରିବ ଏଭଳି ଗୋଟାଏ ନିର୍ବୋଧ ସୁପାରିଶ ?

କହୁଛି, ମୁହୂର୍ତ୍ତିକ ପାଇଁ ସ୍ଥିର ହୋଇ ଅନାଅ ମୋ ଆଡ଼କୁ ନୂଆ ଦେଖିଲାପରି । ଆଶ୍ଚର୍ଯ୍ୟବତ୍ । ମୋର ଗରଜ ପଡ଼ିଛି !

ହେଲେ ତାର ଗୋଟିଏ କଥା ବେଳେ ବେଳେ ଗୃଉଁକନ ଲାଗିଯାଉଛି ଦେହରେ । ଯେତେବେଳେ ସେ କହୁଛି ଯେ ଜୀବନ ଜଟିଳ ସିନା, ମୃତ୍ୟୁ ନୁହେଁ । ତେଣୁ ଏଠୁ ସେଠିକି ସୁରୁଖୁରୁରେ ପାର ହେବାକୁ ହେଲେ··· । ଗୃଉଁକନ ଲାଗିଯାଉଛି କାହିଁକନା ସେଇ 'ସରଳ' ମୃତ୍ୟୁ ଆଉ ବେଶି ଦୂର ନୁହେଁ, ଚଉସ୍ତରି ବୟସର ବୁଢ଼ା ଲେଖକ ପାଇଁ । ହେଲେ ସାରା ଜୀବନଟା ବୁଲିଗଲି ଜଟିଳମନ୍ୟ ଅନୁଭବଗୁଡ଼ାକୁ ଖାଲି ଚିହ୍ନି ରଖିବାରେ । ନା ନା, ଚିହ୍ନିଲିରୁ ଚରିତ୍ରମାନଙ୍କ ପଛରେ ଗୋଡ଼େଇ ଗୋଡ଼େଇ ଅନେକ ବାଟ ଗଲି, ସହ-ଅନୁଭବର ଅଭିନୟ କରି, କିନ୍ତୁ ସେଇଠୁଁ ତାକୁ ରଖିଦେଲି ମୋ ଜ୍ଞାନବୁଦ୍ଧିଗତ ଅନୁଭୂତିର ପେଡ଼ି ଭିତରେ । ଲେଖକ ହୋଇଥିବାରୁ ଅଳ୍ପବହୁତ ପାଗଳ ହେଲି ସର୍ବସାଧାରଣ ସଂସାରୀମାନଙ୍କ ତୁଳନାରେ, କିନ୍ତୁ ସେଇ ରାମକୃଷ୍ଣ ପରମହଂସଙ୍କ କହିଲା ପରି—ମୋତେ ପାଗଳ କହୁଛ ଭଲ କଥା, କିନ୍ତୁ ମୁଁ ପାଗଳ ପରି ପାଗଳ ହୋଇପାରିଲି କୋଉଠୁ ?

ନା, ଆଉ ଲେଖି ପାରିବ ନାହିଁ କିଛି ଏଇ ଗପ ବିଷୟରେ । ଗୋଲିମୁହାଁଟା ନିହାତି ଚଡ଼ଉଛି ମୋତେ । ଯେ ବିଚରା, ଉପଲବ୍ଧି ଜିନିଷଟା ତମ କପାଳରେ ନାହିଁ, କାରଣ ତମେ ଅନୁଭବକୁ ଡରିଲ । ହଉ ହେଲା, କିନ୍ତୁ ପୁଣି ପାଗଳ ଠାକୁରଙ୍କ କହିଲା ପରି—ଏଇ ଗୋଟାଏ ଜନ୍ମରେ କଣ ସରିଗଲା ସବୁ କଥା ? ଆଉ କେତେ ଜନ୍ମ ବାକି ଅଛି ଜାଣେ ନାହିଁ, କିନ୍ତୁ ମୋ ମାଆ ତଥାପି ଅନେଇ ରହିଛି ମୋ ପାଇଁ ।



# ମଗଲୀ

ହାସ୍ୟରୋଳରେ ଘର ପଡ଼ିଲା ଉଠିଲା । ସତେକି ମହିଳାଦଳଙ୍କ ଆମୋଦ ଖଣ୍ଡ ପୂରି ଯାଇଥିଲା, ହେଲେ ଚୁପି ହୋଇ ରହିଥିଲା ଏତେବେଳ ଯାଏଁ । ବରିଷ୍ଠ 'ସମ୍ପର୍କୀୟା' କମଳୀଅପା ତାଙ୍କ ଗହଣରେ ଥାଇ ଆପଣାର ଅଶ୍ଳୀଳ ହସ, କାନ୍ଦ, କଣ୍ଠାସମ୍ପା, ଏବଂ ତଥାକଥିତ କୌତୁକରେ ମଞ୍ଚକୁ ଦଖଲ କରି ରଖିବା ଯାଏଁ । କିନ୍ତୁ ସେ ଯେମିତି ହଠାତ୍ ଠିଆହୋଇପଡ଼ି କହିଲେ "ଯାଉଛି ଲୋ ଯାଉଛି, ମୋ ବରର ହଂସା ଉଡ଼ିଯିବଣି ମୋତେ ନଦେଖିଲାରୁ ଏତେବେଳ ଯାଏଁ", ତା' ପରେ ପାଟି ମେଲଇ ଆଉ ଗୋଟାଏ ହସ ଛାଡ଼ିଦେଲେ, ଏବଂ ତତ୍କ୍ଷଣାତ୍ ପ୍ରସ୍ଥାନ କଲେ··· ସେଇଠୁଁ ଦର୍ଶକବୃନ୍ଦ ଫାଟି ଫୁଟି ପଡ଼ିଲେ । ମାମୁନଅପା ତଳେ ଗଡ଼ିଗଲେ, ଗୁଣ୍ଠିରୁ ଲୁଗା ଖସିଗଲା ପୂରାପୂରି, ଏବଂ ଲୋ-କଟ୍ ବ୍ଲାଉଜ୍‌ତଳୁ ଯେଉଁ ସନ୍ଧିସୀମା ସୁଦୃଶ୍ୟ ହେଲା, ତାକୁ ଝିଲେମାନେ ପରୁଆ କଲେ ନାହିଁ । ସ୍ୱାଭାବିକ ! ସମସ୍ତ ସମ୍ଭ୍ରମହୀନା ଦରବୁଢ଼ୀ କହିଲେ ଚଳେ । ଯେଉଁ ଜଣଙ୍କୁ ବୃଦ୍ଧା ଓ ଗୁରୁଜନସ୍ଥାନୀୟା ବୋଲି କୁହାଯିବ ସେ ତ ତାଙ୍କ ତାମସା ଦେଖଇ ଚାଲିଗଲେଣି । ବଡ଼ବେଳା ଦ୍ୱିପହର, ପୁରୁଷ ମଣିଷେ କାହିଁ କେତେ ଦୂରରେ ଅଛନ୍ତି, ସ୍କୁଲ୍, କଲେଜ୍, ଅଫିସ୍ ଇତ୍ୟାଦିରେ । ଏଇକ୍ଷଣି ଆଉ ଲାଜ କାହାକୁ ? ଶୁକୁଟୀ ଜନ୍ମଦେଇ ହୁଏତ ତାଙ୍କ ହସକୁ ବିଶେଷ ଉଞ୍ଚକୁ ଉଠେଇ ପାରି ନଥିଲେ । କିନ୍ତୁ ସେ ଆହୁରି ଜୋର୍‌ରେ ତାଙ୍କ ନଖକୁ କାମୁଡ଼ିବାକୁ ଲାଗିଲେ । ତାହାହିଁ ତାଙ୍କ ଉତ୍ତେଜନାର ପ୍ରଧାନ ଲକ୍ଷଣ । ରଜନୀ କେବଳ ହସି ଉଠିଲେ ତା' ନୁହେଁ, ସେ ତାଙ୍କ ପାଖରେ ବସିଥିବା ମାଉସୀଝିଅ ଭଉଣୀ ମିଞ୍ଜିଦେଈଙ୍କୁ ଅତ୍ୟଧିକ ଆବେଗରେ କୁଣ୍ଢେଇ ପକେଇଲେ ଏବଂ ମନେହେଲା ଯେ ସେହି ପ୍ରବଳ ଚାପ ହେତୁ ମିଞ୍ଜିଦେଈଙ୍କ ମୁହଁରୁ ବାହାରୁଥିବା ଧ୍ୱନି (ତାକୁ କୁରୁଳି-ଖିଆ ହସ କୁହ ବା ଆଉ ଯାହା) ଆହୁରି ଆନୁନାସିକ ଅଥବା କେଁକେଁଇଆଁ ହୋଇ ଉଠୁଛି । ଏବଂ ସଦ୍ୟବିଧବା ସାରବୋଉ ଖୁଡ଼ୀ ମୁହଁରେ କାନି ଦେଇ ତଳା ତଳା ହସିଲେ । ଖାଲି ତାଙ୍କର ମୁହଁରୁ କଥା ପଦେ ଶୁଣାଗଲା ସ୍ପଷ୍ଟ ହୋଇ । ଥରକୁ ଥର । —'ହେ ଭଗବାନ୍ !' 'ହେ ଭଗବାନ୍ !'

ହସିଲେ ନାହିଁ କେବଳ ଜଣେ । ହସିଲେ ନାହିଁ କି କଥା ପଦେ କହିଲେ ନାହିଁ । ପୂର୍ବପରି ବସି ରହିଲେ । ନୀରବ ନିଶ୍ଚଳ ଭାବମୂର୍ତ୍ତି । ପ୍ରତ୍ୟକ୍ଷ ବିଷାଦ,

ପ୍ରଚ୍ଛନ୍ନ ବିଦ୍ରୂପ । ଯଦିଓ ବିଦ୍ରୂପର ପ୍ରଚ୍ଛନ୍ନତାକୁ କେହି ଧରି ପାରି ନଥିଲେ ମିଷ୍ଟର ଦେଓଙ୍କ ଛଡ଼ା । ଏବଂ ତାର ସାରାଂଶ ହେଲା ଏଇ, ଯେ ଯେଉଁ ଜଣକ ପ୍ରସ୍ଥାନ କଲେ, ଏବଂ ଯେଉଁମାନେ ତାଙ୍କ ପଛରେ ତାଳି ମାରିଲେ, ସମସ୍ତେ ସମାନ । ନିଜଭିତ୍ତିହୀନା ନିର୍ବୋଧ ନାରୀଙ୍କ ଦଳ, ଯାହାଙ୍କ ସୁଖ କି ଦୁଃଖ କେଉଁଥିରେ ସତ ନାହିଁ । ସତ ନାହିଁ କି ଯଶ ନାହିଁ । ବୋଧହୁଏ ସେତିକିବେଳେ ତାଙ୍କ ମନରେ ଆସିଥିବ ଯେ ସେ କେତେ ଭିନ୍ନ ଏମାନଙ୍କଠାରୁ । ବିଶିଷ୍ଟ ସୁନ୍ଦର ରୂପ ଛଡ଼ା ଅନନ୍ୟ ସଂଯମ, ସୌଷ୍ଠବ, ଶାଳୀନତା ଇତ୍ୟାଦିର ବଡ଼ପଣରେ । ସତେକି ଇତର ଅପରିଚ୍ଛନ୍ନ ବଗମାନଙ୍କ ମଧ୍ୟରେ ଗୋଟିଏ ବୋଲି ହଂସ ! ତାଙ୍କ ନାଆଁ ସୁରଭି ମହାପାତ୍ର ।

ବର୍ତ୍ତମାନ ଭିନ୍ନ-ଅଭିନ୍ନ ମହିଳାମାନଙ୍କର ପରିଚୟ, ଏବଂ ସେମାନେ କେମିତି କାହିଁକି ଏକାଠି ହେଲେ ତାର ଯତ୍କିଞ୍ଚିତ୍ ସୂଚନା ଦେବାକୁ ପଡ଼ିବ । ପ୍ରଥମେ କମଳୀଅପା, ଯଦିଓ ସେ ଏଇ ଦଳର ସାଧାରଣ ସଭ୍ୟା ନୁହଁନ୍ତି । ସେ ବୟସରେ ଯଥେଷ୍ଟ ବଡ଼, ଏବଂ ଅନେକ ଦୂରରେ ଥାଆନ୍ତି, ବଡ଼ଝିଅ ବନିତା ପାଖରେ । ତେବେ ଝିଅଘର ଲେଖା ରଜନୀ ସାଙ୍ଗରେ ଫୋନ୍‌ରେ କଥାବାର୍ତ୍ତା ହେଲା ବେଳେ ସେ ଜାଣିବାକୁ ପାଇଲେ ଯେ ଏମିତି ଗୋଟାଏ ଆସର ବସିବ ଆଜି । ବିଶେଷ ଅଧିବେଶନ । ତେଣୁ ସେ ଆସିଗଲେ । ଆସୁ ନଆସୁଣୁ ଜଣାଇଦେଲେ ଯେ ସେ ସାଢ଼େ ଛଅଟଙ୍କା ଖର୍ଚ୍ଚ କରି (ତାଙ୍କର ଦୁର୍ନାମ ଯେ ସେ ଦେହର ମଳି ମୁରୁଛି ପାରନ୍ତି ନାହିଁ) ରିକ୍‌ସାରେ ଆସିଛନ୍ତି, ଖାସ୍ ପୁତୁଲ ପାଇଁ । ପୁତୁଲ ହେଉଛି ସୁରଭିଙ୍କର ଲୁପ୍ତ ଡାକନାଆଁ, ଏବଂ ସେ କ୍ଲାଆଡ଼େ ସୁରଭିଙ୍କର ମାଇଁ ଲେଖା ହୁଅନ୍ତି । ଆଶ୍ଚର୍ଯ୍ୟ ଲାଗିପାରେ ଯେ ଭଣିଜୀକୁ କୁଣ୍ଢେଇ ପକାଇଲା ବେଳେ ସେ ହଠାତ୍ ଚିଆଁ ଲାଗିଲା ପରି ଘୁଞ୍ଚି ଆସିଥିଲେ, ତେବେ ତାର କାରଣ ଅଛି । ଯାହାହେଉ ସେ ଅବିଳମ୍ବେ ତାଙ୍କ ଅଭିନୟର ପରାକାଷ୍ଠା ଦେଖାଇଲେ, ଏବଂ ଆସରକୁ ଦଖଲ କରି ନେଲେ । ସବୁଥର ପରି ତାଙ୍କ ସ୍ୱର୍ଗତ ସ୍ୱାମୀଙ୍କୁ ମନେ ପକାଇ କାନ୍ଦିଲେ, ପରକ୍ଷଣରେ ଅମୁକ ଘଇତା-ମାଇପଙ୍କ, ତୁଏତ ୟାର ଘଇତା ତାର ମାଇପଙ୍କ, ରାସଲୀଳାର ଗୁପ୍ତକଥା ବର୍ଣ୍ଣନା କରି ହାତେ ଜିଭ କାମୁଡ଼ି ପକେଇଲେ, ହସିଲେ, ଏବଂ କ୍ରମଶଃ ହଂସୁକୁଟୀ ଶବ୍ଦମାନଙ୍କୁ ନିପାତ କଲେ, କଟାସମାର ବଛା ବଛା ଶବ୍ଦ ପ୍ରୟୋଗ କରି ।

କିନ୍ତୁ ତାଙ୍କ ପଛରେ ଯେଉଁ ଅମୋଦ ରସ ଉଛୁଳି ଉଠିଲା, ତା'ର ଏକମାତ୍ର କାରଣ ନୁହେଁ ଯେ ତାଙ୍କ ଅଭିନୟ ଉଚ୍ଚକୋଟୀର । ଅନ୍ୟ କାରଣ ହେଉଛି ଯେ ସେ ଅସୁନ୍ଦରୀ । ନିପଟ କାଳୀ, ମୋଟୀ ଓ ବୁଢ଼ୀ ହେବା ଛଡ଼ା ବିଧିମତ ଅସୁନ୍ଦରୀ—ଫାଳୁଆ ମୁହଁ, ପାଳୁଆ ପାଟିରେ କେଇଟା ଅହନା ଅବଶିଷ୍ଟ ଦାନ୍ତ,

ଅବିନ୍ୟସ୍ତ ଧଳାବାଳ, ଅଯତ୍ନକାମ୍ଯ ଓହଳା ଗୁଡ଼, ଇତ୍ୟାଦି । ସେହେତୁ ବନ୍ଧବାଡ଼ ତୁଟିଗଲା ଏମିତି ତାଙ୍କ ଯିବା ପରେ ପରେ, ଏତେ ବେଗ ଓ ଆବେଗର ଝଲକ ଦେଖାଇ ।

କହିବାକୁ ଗଲେ ଆଜିକା ବୈଠକର ମହିଳାମାନଙ୍କ ମଧ୍ୟରେ ସୁରଭିଙ୍କୁ ସୌନ୍ଦର୍ଯ୍ୟର ଶୀର୍ଷସ୍ଥାନରେ ବସାଇଲେ ବିମଳୀଅପାଙ୍କୁ ଠିକ୍ ତାର ବିପରୀତ ସ୍ଥାନରେ ବସାଇବା ସମୀଚୀନ ହେବ । ଅନ୍ୟମାନଙ୍କୁ ଏପାଖ ସେପାଖ କହିଆଁ ମହିଁ ।

ଡାକ୍ତର ସୁବୋଧ ମହାନ୍ତିଙ୍କ ସ୍ତ୍ରୀ ରଜନୀ ହେଉଛନ୍ତି ଏଇ ଘରର ଘରଣୀ । ଯେ ଏଇ ଆସରର ଆୟୋଜନ କରିଛନ୍ତି । ଆମନ୍ତ୍ରିତା ମନୋରମା ଓରଫ୍ ମିଙ୍କି ଦେଈଙ୍କ ପରମବନ୍ଧୁ, ତଥା ସୁପ୍ରସିଦ୍ଧ ନେତା ଓ ଶିଳ୍ପପତି ସାରଥି ମହାପାତ୍ରଙ୍କ ଘରକୁ ଫେରିଥିବା ସ୍ତ୍ରୀ ଏବଂ ଅନ୍ୟ ହିସାବରେ ସ୍ୱନାମଧନ୍ୟା ସୁରଭି ମହାପାତ୍ରଙ୍କ ଖାତିରରେ । 'ଅନ୍ୟ ହିସାବ' ହେଉଛି ଏଇ ଯେ ସହରରେ, ବିଶେଷତଃ ଆପଣା କୁଳର ନାରୀମହଲରେ ସେ ତାଙ୍କର ସୌନ୍ଦର୍ଯ୍ୟ ପାଇଁ ପ୍ରସିଦ୍ଧ । ସେ କେବେଠୁଁ ବାହାରେ ବାହାରେ ଅଛନ୍ତି ତାଙ୍କ ସ୍ୱାମୀଙ୍କ ବହୁମୁଖୀ ଧନ୍ଦା ଅନୁଯାୟୀ, ଦିଲ୍ଲୀ ବମ୍ବେ ଏବଂ ବିଲାତ-ଆମେରିକାରେ । ସେହେତୁ ବୋଧହୁଏ ତାଙ୍କ ସୌନ୍ଦର୍ଯ୍ୟର ଖ୍ୟାତି ଆହୁରି ବଢ଼ିଯାଇଛି । ଅତୀତର କିମ୍ବଦନ୍ତୀକୁ ଆଶ୍ରାକରି । କିନ୍ତୁ ସମାଜବାଦୀ ଅର୍ଥାତ୍ ଅତ୍ୟନ୍ତ ମେଳାପି ରଜନୀଙ୍କ ପାଇଁ ସେ ହେଉଛନ୍ତି 'ଆମ ସୁରଭି ଅପା', ଏତେଦିନକେ ଆସିଛନ୍ତି ଆମର ଏଠିକି, ନିଜ ଘରକୁ । ତା' ଛଡ଼ା— ତେଣୁ ପ୍ରାୟ ସମସ୍ତେ ରଜନୀଙ୍କ ନିମନ୍ତ୍ରଣ ରକ୍ଷା କରି ପହଞ୍ଚିଥିଲେ ତାଙ୍କ ଘରେ । ଠିକଣା ସମୟରେ । ଏପରିକି ବିମଳୀଅପା, ଯେ ନିଜକୁ ନିମନ୍ତ୍ରଣ କରି ଆଣିଥିଲେ ।

ଯାହା ଉହ୍ୟ ରହିଗଲା, ମାନେ ରଜନୀ ମୁହଁ ଖୋଲି କହି ପାରିଲେ ନାହିଁ, ସେଇ ଅଧିକ ବିଶେଷ କାରଣ ହେଉଛି ଯେ ସୁରଭିଙ୍କ ଜୀବନରେ ପୁଣି ଗୋଟାଏ ଟ୍ରାଜେଡ଼ି ଘଟିଯାଇଛି । ଗୋଟିଏ ବୋଲି ପୁଅ ଏବଂ ସନ୍ତାନର ଆକସ୍ମିକ ମୃତ୍ୟୁର ପ୍ରାୟ ଦୁଇବର୍ଷ ପରେ ସେ ସ୍ତନର କ୍ୟାନ୍‌ସର୍ ରୋଗରେ ଆକ୍ରାନ୍ତ ହୋଇ ପଡ଼ିଲେ । ସେହେତୁ ଏବେ ତାଙ୍କ ବାଆଁ ପାଖ ସ୍ତନର ଉଚ୍ଛେଦନ କରାଯାଇଛି । ଅପରେସନ୍‌ରୁ ଉଠି ସୁସ୍ଥ ହେଲା ପରେ ସେ ସ୍ୱାମୀଙ୍କ ସାଙ୍ଗରେ ଏଇ ଜନ୍ମସ୍ଥାନ ଓ ପିଲାଦିନର ସହରକୁ ଆସିଛନ୍ତି କିଛିଦିନ ପାଇଁ । ଶୀଘ୍ର ଫେରିଯିବେ । ତେଣୁ ସଭାର ଉଦ୍ଦେଶ୍ୟ ହେଲା 'ଆମ ସୁରଭିଅପା'ଙ୍କୁ ସ୍ୱାଗତ ଜଣାଇବା ଛଡ଼ା ତାଙ୍କ ଦୁଃଖର ଲଘବ କରିବା, ମାଇପି ଖୁସିଗପ ସାହାଯ୍ୟରେ ତାଙ୍କ ମନ ଭୁଲେଇବା । ଅନୁମାନ କରାଯାଇ

ପାରେ ଯେ ବିମଲୀଅପା ମଧ୍ୟ ସେଦିଗରେ ବିଶେଷ ଚେଷ୍ଟା କରିବାରୁ ତାଙ୍କ ଅଭିନୟ ଏତେ ମନୋରଞ୍ଜକ ହୋଇ ପାରିଥିଲା ।

ବିମଲୀଅପାଙ୍କ ପରେ ମଞ୍ଚକୁ ଅଧିକାର କଲେ ମାମୁନିଅପା । ସୁନ୍ଦର-ପଣରେ ତାଙ୍କୁ ଦ୍ୱିତୀୟ ସ୍ଥାନ ଦିଆଯାଇ ପାରେ, ଯଦିଓ ମୁଣ୍ଡବାଳ ରଙ୍ଗେଇ ନଥିଲେ ଏବଂ ହାଲୁକା ଲିପ୍‌ଷ୍ଟିକ୍ ଲଗେଇ ନଥିଲେ ତାଙ୍କଠାରୁ ସାନ ରଜନୀ କମ୍ବା ମିଷ୍ଟି-ଦେଈ ବୋଧହୁଏ ଅଧିକ ଆକର୍ଷଣୀୟା ହୋଇ ପାରିଥାଆନ୍ତେ । ସେ ରଜନୀଙ୍କର ଖୁଡ଼ିଜଲେଖା, ହେଲେ ଜନମତ ଅନୁଯାୟୀ ରଜନୀ ମଧ୍ୟ ତାଙ୍କୁ ଅପା ବୋଲି ଡାକନ୍ତି । ତାଙ୍କୁ ଏଭଳି ଆସରକୁ ଯେମିତି ହେଲେ ଡାକିବା କଥା, କାରଣ ସେ କଥାଟାକୁ ବେଶ୍ ଜମେଇ ପାରନ୍ତି । ଚଟଣି ଓ ଚୁଙ୍କବାସ୍ନା ସହ । କିନ୍ତୁ ତାଙ୍କର ବିଶେଷ ପରିଚୟ ହେଉଛି ଯେ ସେ ସାଇକୋଲଜି ଜାଣନ୍ତି । କଲେଜ୍‌ରେ ତାଙ୍କର ସାଇକୋଲଜି ନଥିଲା, କି ସେ ବି.ଏ.ଟା ମଧ୍ୟ ପାସ୍ କରି ନାହାନ୍ତି । କିନ୍ତୁ ସେ ଜାଣନ୍ତି । ଯଥା ସେ ଅବଲମ୍ବେ ବିମଲୀଅପାଙ୍କ ସାଇକୋଲଜି ପ୍ରସ୍ତୁତ କରି ଥୋଇଦେଲେ ସଭାସୀନାଙ୍କ ସାମ୍‌ନାରେ । କହିଲେ ଯେ ଯେହେତୁ ସେ ନିଜକୁ କାଳୀଭୃଷୁଣ୍ଡୀ ବୋଲି ଜାଣନ୍ତି, ଏବଂ ତାଙ୍କ ସୁପୁରୁଷ ସ୍ୱାମୀଙ୍କୁ ପାଇ ପାରି ନ ଥିଲେ, ସେ ବିକଳ ହୁଅନ୍ତି କୌଣସିମତେ ଆଉ କାହାକୁ ପାଇବେ, ବଶ କରିବେ । ସେଇଥିପାଇଁ ତାଙ୍କ ଦି'ଝିଅଙ୍କ ଭିତରେ ଯୋଉ ଝଗଡ଼ା ଲଗିଛି, ସେଥିରୁ ବି ସେ ନିଜକୁ ଦୂରେଇ ରଖି ପାରି ନାହାଁନ୍ତି । ଜାଣିଶୁଣି ସେ ବଡ଼ଝିଅକୁ ଆବୁରିଛନ୍ତି, ତା' ଠିକ ପୁଅକୁ 'ବରି' କରିଛନ୍ତି, ଆଉ ସାନ ଝିଅକୁ ଫିପୁଛନ୍ତି । ସତକଥା କହିବାକୁ ଗଲେ ବୁଢ଼ୀଙ୍କ ସ୍ପିରିଟ୍ ବଢ଼ିଯାଇ ନାହିଁ କି ସ୍ୱାମୀ ମଲାପରେ ?…

ସାଂଘାତିକ ସାଇକୋଲଜି । ସଦ୍ୟ ବିଧବା ହୋଇଥିବା ସାରବୋଉ ଖୁଡ଼ୀଙ୍କୁ କଥାଟା ଭଲ ଲଗିଲା ନାହିଁ । ଏବଂ ତାଙ୍କର ଇଚ୍ଛା ହେଲା ସେ ବକ୍ତାଙ୍କ ସାଇକୋଲଜି ଉପରେ କିଛି କହିପାରନ୍ତେ । ପ୍ରକାରାନ୍ତରେ । ଯେ ସେ ତାଙ୍କର ଖିଟିଖିଟିଆ ଧେଡ଼ଆ ମର୍ଦ୍ଦକୁ ନେଇ ସୁଖୀ ହୋଇ ପାରି ନାହାନ୍ତି । ଖଡ଼ାଖିଆ ଓକିଲ ସ୍ୱାମୀ କୋଉ ଧନସମ୍ପତ୍ତି ବି ଢାଳି ଦେଇ ନାହାନ୍ତି ତାଙ୍କ ହାତରେ । ସେଇଲାଗି ଟିକିଏ ସୁବିଧା ପାଇଲେ ସେ ଘରୁ ବାହାରି ଆସନ୍ତି, ଆଉ ସବ୍‌ଜାନ୍ତାପଣ ଦେଖେଇ ହୁଅନ୍ତି ମାଇପି ମହଲରେ । କିନ୍ତୁ ସାରବୋଉ ଝୁଡ଼ୀ ଏକେ ଖୁଡ଼ୀ ସ୍ଥାନୀୟା, ମାମୁନିଙ୍କର ଲେଖାଯୋଖା ଖୁଡ଼ୀ, ଏବଂ ଦ୍ୱିତୀୟରେ ତାଙ୍କୁ କଥାଟାକୁ ସଜେଇ କରି କହି ଆସେ ନାହିଁ । ମଝିରୁ ଅଟକିଯାଏ. ଶବ୍ଦଗୁଡ଼ାକ ଓଲଟପାଲଟ ହୋଇଯାଏ, ଯାହା ତାଙ୍କର ଶିକ୍ଷକ ସ୍ୱାମୀ ତାଙ୍କୁ ବରାବର କହି ଆସିଛନ୍ତି । ତା' ଛଡ଼ା ତାଙ୍କର ଡର ହେଲା ଯେ ମାମୁନିଅପା ତାଙ୍କ ପଛରେ କହିବେ ଯେ ସେ ବି ଉଡୁରୁଛନ୍ତି ତାଙ୍କ ସ୍ୱାମୀ ଗଲା ପରେ । ସେହେତୁ ସେ ଚୁପ୍ ରହିଲେ ।

ମାମୁନିଅପାଙ୍କ ପରେ ପାଳି ଫିଟିଲା ଜନଦେଈଙ୍କର । ନଖକାମୁଡାର ସଙ୍ଗରେ ସେ କେତେବେଳଠୁଁ କ'ଣ କହିବେ କହିବେ ବୋଲି ହେଉଥିଲେ । କିନ୍ତୁ କେହି ସେଥିପ୍ରତି ଧ୍ୟାନ ଦେଉ ନଥିଲେ । କାରଣ କିମ୍ବଦନ୍ତୀ ଅଛି ଯେ ଜନଦେଈଙ୍କ ଖଦଡ଼ପିନ୍ଧା ସାମ୍ୟବାଦୀ ସ୍ୱାମୀ ଦିନେ ସୁରଭିଙ୍କ ପ୍ରେମରେ ପାଗଳ ହୋଇଯାଇଥିଲେ । ସରୋଜନୀ ଓରଫ୍ ଜନଦେଈଙ୍କୁ ବିଭା ହେବା ପୂର୍ବରୁ । କୁଆଡ଼େ ଦିନ ଦି'ପହରେ ସୁରଭିଙ୍କ ବାପା ଜମିଦାର ସୁହାସ ପଟ୍ଟନାୟକଙ୍କ ସିଂହଦ୍ୱାରରେ ପହୁଞ୍ଚି ପାଟିତୁଣ୍ଡ କରିଥିଲେ, ଯେ ସୁରଭିଙ୍କୁ ଆପଣ ଆଉ କେଉଁଠି ବାହା ଦେଇ ପାରିବେ ନାହିଁ । ମୋର ଅଧିକାର ଅଛି ତା' ଉପରେ, ପ୍ରେମର ଅଧିକାର । କିଏ କୁହେ ସେ ହାତରେ ବନ୍ଧୁକ ଧରି ଯାଇଥିଲେ । ପୁଣି କେହି କେହି କୁହନ୍ତି ଯେ ସେ ସାଙ୍ଗରେ 'ଗାନ୍ଧିବାଣୀ' ନେଇ ଯାଇଥିଲେ, ସମାଜରେ ନାରୀ ପ୍ରତି ଯେଉଁ ଅବିଚାର ହେଉଛି, ତାର ପାଠ ଶୁଣେଇବାପାଇଁ । ତେବେ ଯାହାହେଉ ପ୍ରାୟ ବାଇଶି ବର୍ଷ ହେଲା ଜନଦେଈ ଓ ଶିବନାଥବାବୁ ଯେଉଁ ମୁହଁ ଦେଖାଇଛନ୍ତି ସଂସାରକୁ, ସେଥିରେ ଗଣି ଗଣି କର୍ତ୍ତବ୍ୟର ଗାମ୍ଭୀର୍ଯ୍ୟ । କାହାର ସାହସ ଅଛି କହିବ ଯେ ତା' ଭିତରେ କେଉଁ ଦାମ୍ପତ୍ୟ ଅପୂରଣ ଲୁଚି ଯାଇଛି ? ବିଶେଷତଃ ଜନଦେଈ । ଶୁଷ୍କ୍ରାଙ୍ଗୀ ଭଦ୍ରମହିଳା ସଦାସର୍ବଦା ନଖ କାମୁଡ଼ୁଥାଆନ୍ତି, ଏବଂ କଥା ଆରମ୍ଭ କଲେ ତାକୁ ଏମିତି ଧୀରେ ଲମ୍ବେଇ କରି କୁହନ୍ତି ଯେ ମଣିଷକୁ ବୋର୍ କରିଦିଅନ୍ତି । ତା' ଛଡ଼ା ସେ କୁଆଡ଼େ ହୁଣ୍ଡୀ, ନ କହିବା କଥାକୁ କହି ପକାଇବା ତାଙ୍କର ସବୁଠୁ ବଡ଼ ବଦଭ୍ୟାସ । ଯଥା, ମାମୁନି-ଅପାଙ୍କ 'ସାଇକୋଲଜି' ନସରୁଣୁ ସେ ଗୋଟାଏ ପ୍ରଶ୍ନ ପଚାରିଲେ ସୁରଭିଙ୍କୁ । ବୋଧହୁଏ କର୍ତ୍ତବ୍ୟ ଦୃଷ୍ଟିରୁ । ପଚାରିଲେ—

"ସେଠି ଆଉ ବିଆ ହେଉ ନାହିଁ ତ ? ଆଉ ବ୍ରେଷ୍ଟକୁ ଚେକ୍ କରଉଛ ମଝିରେ ମଝିରେ ?"

ସୁରଭି ବିରକ୍ତ ହେଲେ ନାହିଁ । ବରଂ ଏଇ ପ୍ରଥମେ ତାଙ୍କ ଓଠରେ ସ୍ମିତହାସର ରେଖାଟିଏ ଦେଖାଦେଲା, ଯାହାର ସମ୍ଭ୍ରାନ୍ତ ଶୋଭନୀୟତାକୁ ଖୁଣି ହେବ ନାହିଁ, ତା ପଛରେ ଯେତେ ତିକ୍ତତା, ବିଦ୍ରୂପ କି ଆଉ ଯାହା କିଛି ଥାଉନା କାହିଁକି । ସେ କହିଲେ, "ନାଇଁ । ବିଆ ହେଉ ନାହିଁ । ହବ କେମିତି ? ମୁଣ୍ଡ ଥିଲେ ସିନା ମୁଣ୍ଡବିଆ···"

ଅଲଗିବହୁତ ସମସ୍ତଙ୍କ ଓଠ ମେଲେଇ ହୋଇଗଲା, ଚକ୍ଷୁ ବିସ୍ଫାରିତ ହୋଇ ଉଠିଲା । ହାୟ ! ଯେଉଁଥିପାଇଁ ଏତେ ଆୟୋଜନ, ତା'ର ଉଦ୍ଦେଶ୍ୟ କଣ ମାଟି ହୋଇଯିବ ? କିନ୍ତୁ କିଛି କରି ହେଲା ପରି ଦିଶୁ ନାହିଁ । କାରଣ ସୁରଭି ପ୍ରଶ୍ନର ସମ୍ପୂର୍ଣ୍ଣ ଉତ୍ତର ଦେବାପାଇଁ ବଦ୍ଧପରିକର ବୋଲି ମନେ ହେଉଥାନ୍ତି ଓ ଜନଦେଈ ମନ ଦେଇ ଶୁଣୁଥାଆନ୍ତି । ତାଙ୍କ ସଦ୍ୟଘଟିତ ମ୍ୟାସେକ୍ଟୋମି ଅର୍ଥାତ୍

ସ୍ତନଚ୍ଛେଦନର ବର୍ଣ୍ଣନା, ଏବଂ ମେଟାଷ୍ଟାସିସ୍ ଅର୍ଥାତ୍ କର୍କଟର ପହଞ୍ଚି କେଉଁଯାଏ ଗଲାଣି, ତାକୁ ନେଇ ଯେଉଁ ପରୀକ୍ଷା ନିରୀକ୍ଷା ଚାଲିଛି, ତାର ଆଇଟେମ୍-ସମ୍ବଳିତ ସୂଚନା । କାହାଣୀର ଶେଷକଥା ହେଲା ଏଇ ଯେ ଦ୍ୱିତୀୟ ସ୍ତନ ରକ୍ଷା ପାଇଯିବ, ତା'ର ସମ୍ଭାବନା କମ୍ ।

ସେଇଠୁଁ ଜିନଦେଈ କହିଲେ, "ଆଚ୍ଛା ? ମୋ ନଣନ୍ଦଙ୍କର ଜଣେ ଯାଆ, ତାଙ୍କର ବି ଏଇଆ ହୋଇଥିଲା । କିନ୍ତୁ ତାଙ୍କ ସେକେଣ୍ଡ୍ ବ୍ରେଷ୍ଟ୍‌ର କିଛି ହେଲା ନାହିଁ । ଅବଶ୍ୟ ସେ ଭେଲୋର୍‌ରେ ଚିକିତ୍ସା କରାଇଥିଲେ । ତାଙ୍କ ଡାକ୍ତର ଥିଲେ ଡାକ୍ତର ଜଗନ୍ନାଥନ୍, ଏଇ ରୋଗ ପାଇଁ ସବୁଠାରୁ ବଡ଼ ଡାକ୍ତର..."

ରଜନୀ ମନେ ମନେ କାନ୍ଦି ଚାଲିଥାଆନ୍ତି । ଏବଂ ନିଜକୁ କୋସୁଥାଆନ୍ତି ଯେ ମୁଁ କାହିଁକି ଏ ବୁଦ୍ଧି କଲି, ଜିନଦେଈଙ୍କୁ ଡାକିଲି ଆମ ଗହଣକୁ । ମୋତେ କ'ଣ ଜଣା ନଥିଲା ଯେ ସେ କେବଳ ହୁଣ୍ଡ୍ରୀ ନୁହଁନ୍ତି, ତାଙ୍କ ନିର୍ବିକାର ନିରପେକ୍ଷତାର ତୁଳନା ନାହିଁ ? ତେଣୁ ସେ ସଦ୍‌ଭାବନା ପୂର୍ବକ ଅତିଥିଙ୍କ ରୋଗ ବିଷୟରେ ପଚରା-ଉଚରା କରିବେ, ଏତିକି ଅନୁମାନ କରିପାରିଲି ନାହିଁ ? ସବୁ ସେଇ ମିଂକିଅପାର ଦୋଷ । ସେଇ ମୋତେ ବାଧ୍ୟ କଲା । କହିଲା ଯେ ଯେତେହେଲେ ଜିନଦେଈ ତାଙ୍କୁ ଭଲ ଭାବରେ ଜାଣନ୍ତି, ବିଶେଷତଃ ତାଙ୍କ ସ୍ୱାମୀ ଶିବନାଥବାବୁଙ୍କଆଡୁ, ଶିବନାଥବାବୁ ସୁରଭିଅପାଙ୍କୁ ଏତେ ଭଲପାଉଥିଲେ ଦିନେ, ତେଣୁ ଜିନଦେଈଙ୍କୁ ବାଦ୍ ଦେଲେ ତାଙ୍କୁ ଜାଣିଶୁଣି କାଟି ଦେଲା ପରି ମନେ ହେବ । ମୁଁ ତା' କଥାର ଗଣ୍ଠି ମୁଣ୍ଡ ବୁଝିପାରିଲି ନାହିଁ, କିନ୍ତୁ ରାଜି ହୋଇଗଲି । ମୋତେ ସମସ୍ତେ ଏମିତି ଭକୁଆ କରି ଦିଅନ୍ତି । କାହିଁକିନା ମୁଁ କାହାରି କଥାକୁ ଟାଳି ଦେଇ ପାରେ ନାହିଁ । ତା'ଛଡ଼ା ମୁଁ ସବୁଠୁଁ ସାନ, ଏମାନଙ୍କ ଭିତରେ । ଏହିପରି ଭାବରେ ରଜନୀ ଅତ୍ୟନ୍ତ ଛଟପଟ ହେଲେ ହୋଷ୍ଟେସ୍ ହିସାବରେ, କିନ୍ତୁ ସାନ ଓ ସରଳ ଭଲମଣିଷର ଏଇ ଦଶା ହୁଏ ବୋଲି ମନେ କରି କିଛି କହିପାରିଲେ ନାହିଁ ।

ଜିନଦେଈ ଓ ସୁରଭିଙ୍କ ମଧ୍ୟରେ ଗଢ଼ି ଉଠିଥିବା ବାର୍ତ୍ତାଳାପ ଆହୁରି କେତେ-ଦୂର ଯାଇଥାଆନ୍ତା ଓ କେଉଁ ମୋଡ଼ରେ ପହଞ୍ଚିଥାଆନ୍ତା ଭଗବାନ୍ ଜାଣନ୍ତି । କିନ୍ତୁ ମିଂକିଦେଈ ତା'କୁ ଜୋର୍ କରି ଅଟକେଇ ଦେଲେ । ସୁରଭିଙ୍କ ଘନିଷ୍ଠ ବନ୍ଧୁ ହିସାବରେ ସେ ତାଙ୍କ ପାଖକୁ ଲାଗି କରି ବସିଥିଲେ । ସେ ହଠାତ୍ ତାଙ୍କ ହାତକୁ ମୁଠେଇ ଧରିଲେ ଓ ସ୍ୱାଧିକାର ଖଟେଇଲା ପରି ସ୍ୱର ଉଠେଇ କହିଲେ ଦି'ଜଣଙ୍କୁ—"ହଉ, ଥାଉ ସେତିକିରେ !"

ବାର୍ତ୍ତାଳାପ ରହିଗଲା ଅଦ୍‌କିନ, ନିଆଁ ରେ ପାଣି ପଡ଼ିଲା ପରି । ଜିନଦେଈଙ୍କ ଛଡ଼ା ସମସ୍ତେ ବୁଝିଲେ ଯେ ଏହାହିଁ ଆଶା କରାଯାଉଥିଲା ମିଂକିଦେଈଙ୍କଠାରୁ ।

ସୁରଭି ମହାପାତ୍ର ଖାଲି ତାଙ୍କ ପିଲାଦିନର ସାଙ୍ଗ ନୁହେଁ, ସହପାଠିନୀ ନୁହେଁ, ପରମବନ୍ଧୁ ବୋଲି କିଏ ନଜାଣେ ? ଭଲ ହେଲା । ମିଷ୍ଟି ଦେଈ ଠିକଣା କାମ କରିଛନ୍ତି । ନହେଲେ ବ୍ୟାପାର ବିଷମ ହୋଇ ଉଠିଥାଆନ୍ତା । ସଭାସୀନାଗଣ ଆପ୍ୟାୟିତ ହେଲେ । ରଙ୍ଗରଜର ପୁନରାଗମନକୁ ଅପେକ୍ଷା କଲେ ।

ମିଷ୍ଟି ଦେଈଙ୍କ ହାତମୁଠା ସହଜେ କୋହଳ ହେଲା ନାହିଁ । କିନ୍ତୁ ଯେଉଁ ଭାବନାର ଗୁପ ତାଙ୍କୁଇ ମାଡ଼ି ବସିଥିଲା, ତା'ର ଚକଚକ ଧାରୁଆ ମୁନ ଥିଲା ଏଇ, ଯାହା କାହାର ଆଖିରେ ପଡ଼ିବା ସମ୍ଭବ ନଥିଲା—ସୁରଭି ମହାପାତ୍ର ତମ ଆମ ପରି ସାଧାରଣ ନୁହେଁ, ବୁଝିଲ ? ତାକୁ କଦାପି ଜିଣି ହେବ ନାହିଁ । ତା'ର ଯୋଡ଼ା ଯୋଡ଼ା ସ୍ତନ କଟିଯାଉ, କି ତା'ର ସ୍ୱାମୀ ପିଲା ସମସ୍ତେ ମରନ୍ତୁ ଗୋଟି ଗୋଟି ହୋଇ···

···ମୁଁ ତାକୁ ଚହ୍ନିଛି ପିଲାଟି ଦିନୁ । ମୁଁ ତା'ର ବେଷ୍ଟ୍ ଫ୍ରେଣ୍ଡ୍ ପରା ! ମାନେ ମୁଁ ତା'ର ଦେହଲଗା ଛାଇ । ଯାହାର କାମ ହେଉଛି ତା' ପଛେ ପଛେ ଚାଲିବା, ତା'ର ଲେଟି ପଡ଼ୁଥିବା ଗବକୁ ଟେକି ଧରିବା, ଖସି ପଡ଼ୁଥିବା ଗରମାକୁ ଗୋଟେଇ ନେବା, ଆଉ ଦୁଃଖ ବେଳେ ତା' ବଡ଼ପଣକୁ ଫୁଇଯିବା ।

ମୋ ବନ୍ଧୁ ଖାଲି ସୁନ୍ଦର ବୋଲି ନୁହେଁ, ହେଲେ ସେଇଠୁଁ ଆରମ୍ଭ ।

ମୁଁ ଯେତେବେଳେ ମୋ ହୋମ୍‌ୱାର୍କ୍ ବଢ଼େଇ ଦିଏ ସାର୍‌ଙ୍କ ହାତକୁ, ସେ ଗୁରୁଗମ୍ଭୀର 'ହୁଁ'ଟିଏ କୁହନ୍ତି । କିନ୍ତୁ ସେ ଯେତେବେଳେ ସବାପଛରେ ତା'ର ଅଧାପନ୍ତରିଆ ଲେଖାକୁ ନେଇ ହାଜର ହୁଏ, ଅଙ୍ଗେଇ ଅଙ୍ଗେଇ କୁହେ, 'ସା-ର୍, ହେଲା ନାହିଁ ଠିକ୍···' ସାର୍ କୁହନ୍ତି 'ଖୁନ୍ଦାଖାଇ ହାତରେ କିଛି ହେବ ନାହିଁ ।' ଆଉ ହସନ୍ତି ତା' ମୁହଁକୁ ଚାହିଁ । ସତେକି ଇଏ ଗୋଟିଏ ମଜାର ଖେଳ । ଖାଲି ସାର୍ ନୁହେଁ, ମ୍ୟାଡାମ୍ ବି । ସେମାନେ ଖୁନ୍ଦାଖାଇ ବୋଲି ବି କହି ପାରନ୍ତି ନାହିଁ । କୁଆଁରର ନାଗାଭିରେ ଶଙ୍କ ଗଲା ପରି । ତାକୁ ଗୀତ ଗାଇ ଆସେ ନାହିଁ, ହେଲେ ସମବେତ ସଂଗୀତରେ ତା'ର ସାମିଲ୍ ହେବା ଦରକାର । ପୁଣି ମଝିରେ କିନା ଠିଆ-ହେବା ଦରକାର । ଖୋଦ୍ ପ୍ରିନ୍‌ସିପାଲ୍‌ଙ୍କ ବରାଦ୍ । କୁଆଡ଼େ ସେ ଖାଲି ପାଟି ପାକୁ ପାକୁ କଲେ ଯଥେଷ୍ଟ । ଅବଶ୍ୟ ସେ ସବୁବେଳେ ଚାହେଁ ଯେ ମୁଁ ତା' ସାଙ୍ଗକୁ ଥିବି । କୋଉ ଭି. ଆଇ. ପି ଙ୍କ ଗଳାରେ ମାଳା ପିନ୍ଧେଇବା ପାଇଁ ହେଉ, କି କ୍ଲାସ୍ ତରଫରୁ କୋଉ କଥାରେ ଫେରାଦ ହେବା ପାଇଁ ଟିଚର୍‌ଙ୍କ ଆଗରେ । କିନ୍ତୁ ପ୍ରଥମେ ତାକୁଇ ଖୋଜା ପଡ଼େ । ଆଉ ସେ ମୋତେ ଡାକି ଆଣେ ତା' ପାଖକୁ । ବନ୍ଧୁ ବୋଲି ହାତ ଧରି ଉଠେଇ ଆଣେ ଉପରକୁ । ଦୟା ! ଅପରସୀମ ଦୟା !

ସେ ବାହାହେଲା ବ୍ୟବସାୟୀ ସାରଥି ମହାପାତ୍ରଙ୍କୁ । ସେତେବେଳକୁ ସେ ନେତା ହୋଇ ନ ଥଲେ କି ଏମିତିକା ବଡ଼ଲୋକ ହୋଇ ନ ଥିଲେ । ମୁଁ ବାହାହେଲି ଡେପୁଟି ମାଜିଷ୍ଟ୍ରେଟ୍ କୁମୁଦ ନାଏକଙ୍କୁ । ମୋ ସ୍ୱାମୀ ତା' ସ୍ୱାମୀଠାରୁ ସୁନ୍ଦର, ଏଥିରେ ସନ୍ଦେହ ନାହିଁ । ପ୍ରତିଷ୍ଠା କି ବିଦ୍ୟାବୁଦ୍ଧିରେ ବି ଊଣା ନୁହଁନ୍ତି । ସାରଥିବାବୁ ନେତା ବୋଲାଇଲେ, ଏମାଙ୍କର ବି ଯଥେଷ୍ଟ ସୁନାମ ଅଛି ବିଚକ୍ଷଣ କମିସନର୍ ହିସାବରେ । ତଥାପି ସେ ମୋ ପ୍ରତି ଉଦାରତା ଦେଖାଏ । ବାହାହେଲା ଦିନଠୁଁ । ମୁଁ ମୋ ସ୍ୱାମୀ ପରିବାର ବିଷୟରେ ଗପି ଯାଏ ଗଡ଼ଗଡ଼ ହୋଇ, ହେଲେ ସେ ତା' ଆଡ଼ୁ କିଛି କୁହେ ନାହିଁ । ମାନେ ଠିକେ ଠିକେ ଦି'ପଦ କୁହେ, ସମ୍ବାଦ ଯୋଗାଇଲା ପରି । ସତେକି ସେ ସବୁ ଉପରମହଲର କଥା—ମୁଁ କ'ଣଟା ବୁଝିବି ? ମୁଁ ତାକୁ ଆଇଁଷିଣିଆ ଥଟ୍ଟା କଲେ ସେ ଖାଲି ହସିଦିଏ ତା'ର ସରୁ ସୁନ୍ଦରିଆ ହସଟିକି । ସତେକି ସିଏ ବି ହେଉଛି ଉପରମହଲର ପ୍ରେମ—ମୁଁ କ'ଣଟା ବୁଝିବି ସେଥିରୁ ? (ଆଃ—ହା, ବେଳେବେଳେ ମନେ ହୁଏ ଯେ ସେମିତି କଥାକୁ କହିଦେବି ତା' ସ୍ୱାମୀଙ୍କ ଗୁଣ···)

ତଥାପି ସେ ମୋତେ ସବୁବେଳେ ଖୋଜେ ଲୋଡ଼େ, ବରାବର ମୋ ପାଖକୁ ଚିଠି ଦିଏ ଆଉ ସାରା ଦୁନିଆଁ ଆଗରେ ଦେଖେଇ ହୁଏ ଯେ ମୁଁ ତା'ର ବେଷ୍ଟ୍ ଫ୍ରେଣ୍ଡ୍ । କାହିଁକି ? କାହିଁକି ? ଆଉ ବୋକୀ ମୁଁ ବି କାହିଁକି ଟାଣି ହୋଇ ଆସେ ତା'ପାଖକୁ ? ଯେମିତିକି ମୋର ବି ସତରେ କିଛି ଦେବାର ଅଛି ତାକୁ, ନହେଲେ ବିଚାରୀ ଦୁଃଖ ପାଆନ୍ତା !

ପ୍ରକୃତରେ ମୋର ଦୟା ହେଉଛି ତୋ ପ୍ରତି । ସେଇଲାଗି ତୋ ହାତକୁ ଚିପିଧରିଛି । କିନ୍ତୁ ତୋର ଶକ୍ତି କାହିଁ ବୁଝିବୁ ସେ କଥା ? କାହିଁକିନା ତୁ ସବୁବେଳେ ଭାବି ଆସିଛୁ ଯେ ତୁ ଭିନ୍ନ । ଇତର ସାଧାରଣ ମଣିଷଙ୍କ ଭିତରେ ଦେବୀଟିଏ, ପ୍ରତିମାଟିଏ । ଆରାଧ୍ୟା ପ୍ରତିମା । ବୁଝିପାରୁ ନାହୁଁ ଯେ ପ୍ରତିମା ମାନେ ହିଁ ନିର୍ଜୀବ, ନିଷ୍ପ୍ରାଣ (ଆଜି ମନରେ ଆସୁଛି ଯେ ଯଥେଷ୍ଟ ହେଲାଣି, ପ୍ରତିମାକୁ କଆଁଇ ଦେବି ଏଥର । କହିଦେବି । ଯାହାକୁ ଶୁଣିଲେ ତୋ ସ୍ତନର ଅଭ୍ୟନ୍ତର ବି କଟିଗଲା ପରି ଲାଗିବ, ତୁ ଆଉ ସହିପାରିବୁ ନାହିଁ···)

ମଜାକଥା ହେଉଛି ଯେ ସେ ତା' ହାତକୁ ଟାଣି ନେବ ନାହିଁ, ମୁଁ ତାକୁ ନଛାଡ଼ିବା ଯାଏଁ ।

ଦୁଃଖ ? କାହାର ଦୁଃଖମ ? ଦୁଃଖ ହେଉଛି ତା' ସ୍ଥାପତ୍ୟର ଅନ୍ୟତମ ଠାଣି । ବୋଧହୁଏ ସବୁଠାରୁ ଉତ୍କୃଷ୍ଟ । ସେଥିରେ ତା' ଗ୍ରୀବା ଆଉ ଟିକିଏ ସଳଖିଯାଏ, ଅଙ୍କା ହେଲା ପରି ଓଠ ଦି'ଟା ଆତୁର ଗମ୍ଭୀରରେ ଆଙ୍କି ହୋଇଯାଏ

ପଥରରେ ଖୋଲା ହେଲା ପରି, ଏବଂ ଅପଲକ ଗୃହିଣୀ ଗଳିଯାଏ ତମ ଭିତରକୁ । ସତେକି ତମେ ଗୋଟାଏ ରୁଚ୍ଛ ବସ୍ତୁ, କାହିଁକିନା ତମ ଜୀବନରେ କିଛୁ ଘଟିବାକୁ ନାହିଁ, ତମେ ସାଲୁବାଲୁ ପିଲଝୁଅ ଯଉକରଣୀକୁ ନେଇ ପାଣ୍ଡି ହେଉଛ, ସୁଖ କରୁଛ—ଇସ୍ ! ହଁ, ମୋତେ ଠିକ୍ ସେମିତି ଲାଗିଥିଲା, ମୁଁ ଯେତେବେଳେ ଧାଇଁ ଯାଇଥିଲି ତା' ପାଖକୁ, ହଜାରେ ମାଇଲ ଦୂରକୁ, ତା'ର ପୁଅ, ଏକମାତ୍ର ସନ୍ତାନ ପାର୍ଥର ମରିବା ପରେ ପରେ । ସେତେବେଳେ ବି ତା' ହାତକୁ ଏମିତି ଚୁପି ଧରିଥିଲି, ଘଣ୍ଟା ଘଣ୍ଟା ଧରି, କିନ୍ତୁ ସେ ନିଜେ କେବେହେଲେ ହାତ ବଢ଼େଇ ନଥିଲା ମୋ ଆଡ଼କୁ । କେବେହେଲେ ଲେଟି ପଡ଼ି ନଥିଲା ମୋ ଉପରେ । କେମିତି କରିବ, ବିଗୃହିଙ୍କୁ କଷ୍ଟ ହେବ ନାହିଁ ? ତା'ର ସୁଦୀର୍ଘ ତନୁକୁ ଏତେ ନୁଆଁଇବ ନା ? ତା'ର ଗୋରା ପଦ୍ମଫୁଲିଆ ହାତକୁ ଏତେ ନିଉନ କରିଦେବ ? ମୋର ସାଧାରଣ ସୁଖରେ ତା'ର ମହାନ୍ ଦୁଃଖକୁ ମିଶେଇ ଦେବ···ତା' କେମିତି ହେବ ? ଖାଲି ଯେତେବେଳେ ମୁଁ ତା' ପୁଅର ଫଟୋ ଦେଖି କହିଲି, 'ଠିକ୍ ତା' ମାଆ ପରି ଦେଖିବାକୁ । ରଜାପୁଅଟାଏ !' ସେତିକିବେଳେ ସେ ଆପ୍ୟାୟିତ ହେଲା ପରି ହସିଲା ମୋ ଆଡ଼କୁ ଚାହିଁ । ସତେକି ମୁଁ ଗୋଟାଏ ସାରସ୍ୱତ୍ୟ ବୁଝିପାରିଲି ଯାହା ହେଉ । ଆଉ କହିଲା—'ସେ ସେମିତି ରହିଥିବ ସବୁଦିନେ, ମୋ ପାଇଁ ଅପେକ୍ଷା କରିଥିବ···' ।

ଏଣେ ରଜନୀ ବହୁତ ଚେଷ୍ଟା କଲେ ଆସରକୁ ଟେକିବାକୁ । କିନ୍ତୁ ଯେତେ ଆଗ୍ରହ ଓ ସଦିଚ୍ଛା ଥିଲେ ମଧ୍ୟ ସେ କୋଉ ଅଭିନୟ କରିପାରନ୍ତି ବିମଳୀଅପାଙ୍କ ପରି ନା ସାଇକୋଲଜି ଜାଣନ୍ତି ମାମୁନିଅପାଙ୍କ ପରି ? ହେତୁରୁ ସେ ଶୀଘ୍ର ହାରିମାନି ବସିଗଲେ । ସ୍ୱାମୀଙ୍କ ମୁହଁରୁ ଶୁଣିଥିବା ଯେଉଁ ମଜାଗପଟିଏ ଆରମ୍ଭ କରିଥିଲେ, ବାହାରୁ ଆସିଥିବା ଜଣେ ତେଲଙ୍ଗା ଡାକ୍ତରାଣୀ ଓ ଓଡ଼ିଆ ରୋଗୀଙ୍କ ପ୍ରଶ୍ନୋତ୍ତରକୁ ନେଇ, ତାକୁ ଅଧାରୁ ସାରିଦେଲେ । ଏବଂ ଦୁଃଖର ସହିତ ଅନେଇଲେ ମିଷ୍ଟିଦେଈଙ୍କ ଆଡ଼କୁ—ମୋ ଛଇଳା ଅପା, ସେଇ ଏକା ପାରିଥାଆନ୍ତା ! ତା ଆଖିକୁ ନଚେଇ, ଓଠକୁ ଥରେଇ (ମୋ ଦି । ଓଠ ଥରି ଉଠିଲେ କୁଆଡ଼େ ଭିନ୍ନ ଦେଖାଯାଏ, ତାକୁ କାମୁଡ଼ି ଦେବାକୁ ଇଚ୍ଛା ହୁଏ ବୋଲି ଇଏ କୁହନ୍ତି, କୁହନ୍ତୁ ତମ ଭଉଣୀଟି ଶ୍ୟାମଳୀ ହେଲେ କ'ଣ ହେବ, ଅସଲ ସେକ୍ସୀ) କେତେ କ'ଣ ଗାଇ ଯାଇଥାଆନ୍ତେ ତା'ସରୁ କଣ୍ଠରେ, ଯାହାକୁ କହି ହେଲେଇ ଦେଇପାରନ୍ତା ନାହିଁ । ଆଉ ସୁରଭିଅପାଙ୍କୁ ଯେଉଁ ବାଧା ହୋଇଥିବ ଜନଦେଈଙ୍କ କୃପାରୁ, ତା' ଟିକିଏ ଊଣା ହୋଇଯାଇଥାଆନ୍ତା ହୁଏତ । କିନ୍ତୁ ସେ ତ ଏଇକ୍ଷଣି ତା' ସାଙ୍ଗରେ ଦୁଃଖରେ ହଜେଇ ଦେଇଛନ୍ତି ନିଜକୁ । ତାଙ୍କ ହାତକୁ ମୁଠେଇ ଧରିଛନ୍ତି କେତେବେଳଠୁଁ, ଆଉ ଅନେଇ ରହିଛନ୍ତି ତାଙ୍କ ମୁହଁକୁ··· ।

ମିଞ୍ଜି ଦେଇ ଅନେଇ ରହିଥିଲେ ସୁରଭିଙ୍କ ମୁହଁକୁ । କହିବାକୁ ଗଲେ, ଅଲାଜୁକ ଭଙ୍ଗୀରେ । କାହିଁକନା ତାଙ୍କର ଦୁଷ୍ଟ କାମନା ଭିତିରେ ଅନ୍ତରର ହିଂସ୍ର ହୋଇ ଉଠୁଥାଏ । ···ଏଇ ବିଷାଦ-ସୁନ୍ଦର ମୁହଁ···ଗୌରବର୍ଣ୍ଣ ଆୟତ ଆଖି, ତୀକ୍ଷ୍ଣ ନାସିକା ଇତ୍ୟାଦି ଇତ୍ୟାଦିରେ ମହିମାନ୍ୱିତ, କାବ୍ୟଧର୍ମୀ ମୁହଁ ଖଣ୍ଡିକ କେମିତି ଦେଖାଯିବ···ଯଦି ମୁଁ କହିଦିଏ ସେକଥା···ଯେ ତୋର ଦୁଃଖ ଖାଲି ବାଧାତାକୁ ନେଇ ନୁହେଁ ଯେ ତୋର ପୁଅକୁ ନେଇଗଲା କି ତୋତେ ଏମିତିକା ରୋଗ ଆଣି-ଦେଲା । ଆହୁରି ଅଛି । ମଣିଷକୁ ନେଇ, ତୋର ମଣିଷକୁ ନେଇ । ତୋର ସ୍ୱନାମଧନ୍ୟ ସ୍ୱାମୀଙ୍କ କଥା, ଯେ ଲୁଚି କରି ଆସିଥିଲେ ଥରେ ମୋ ପାଖକୁ, ତୋର ସୁନ୍ଦରପଣକୁ ଛାଡ଼ି ଦେଇ । ପୁଣି କେବେ ନା, ମୁଁ ଯେବେ ଦିଲ୍ଲୀ ଯାଇଥିଲି ତୁମ ପାଖକୁ, ତୁମ ଦିହିଁଙ୍କ ପୁତ୍ରଶୋକରେ ସାନ୍ତ୍ୱନା ଦେବା ପାଇଁ । ମୁହିଁ ତାଙ୍କୁ ଶେଷ ଯାଏ ଯିବାକୁ ଦେଲି ନାହିଁ, ନହେଲେ ତୁ ପୂରାପୂରି ଠକି ଯାଇଥାଆନ୍ତୁ—ବୁଝିଲୁ ?

ମନେ ହେଉଛି ଆଜି କହିଦେବି ସେକଥା, ଆଜି ନ ହେଲେ କାଲି, ଆଉ ତୋର ପ୍ରତିମାପଣକୁ ଜଳାଇଁ ଦେବି । ଦେଖିବି ସେ ମୁହଁ କେମିତି ଦେଖାଯିବ, କେତେ ଅସହା ଦିଶିବ । ଯନ୍ତ୍ରଣାରେ ହେଉ କି ରାଗରେ, ଘୃଣାରେ···

କିନ୍ତୁ ଅନେଇ ଅନେଇ ତାଙ୍କର ମନେ ହେଲା ଯେ ସେ ହାରିଯିବେ । ଦେବୀ ପ୍ରତିମା ସବୁ ଶୁଣିଲା ପରେ ହୁଏତ ଖାଲି ହସିଦେବେ ଟିକିଏ । ଯାହାର ଅର୍ଥ ଯେ କଥାଟା ଇଣ୍ଟରେଷ୍ଟିଙ୍ଗ୍, ମୁଁ ଜାଣି ନଥିଲି ଯେ ତମେ ଦି'ଜଣ ଏତେ ତଳକୁ ଖସି ଯାଇପାରିବ । ତେବେ ସେଥିରେ ମୋର ଯାଏ କେତେ, ଆସେ କେତେ ? ବରଂ ଦେଖୁନ୍ତୁ, ମୋର ବଡ଼ପଣ, ମୋର ଏକୁଟିଆପଣ, ଆହୁରି କେମିତି ଝଲ ଉଠୁଛି ଦପ୍‌ଦପ୍ ହୋଇ ?

ଫଳରେ ମିଞ୍ଜି ଦେଇଙ୍କ ଗୃହାଣି ସହଜ ହୋଇଗଲା କିଛି ସମୟ ପରେ । କିନ୍ତୁ ସେଦିନର ଆସର ଆଉ ଜମିଲା ନାହିଁ । ସଖିସୀନାଗଣ ଦୁଃଖିନୀଙ୍କ ବିଦ୍ରୂପକୁ ଚିହ୍ନିଲେ ବୋଲି କହିଲେ ଭୁଲ୍ ହେବ, ତେବେ ସେମାନେ ମଧ୍ୟ ଧରନେଲେ ସ୍ୱାଙ୍କ ଦୁଃଖକୁ ହିଗୁଲେଇ ହେବ ନାହିଁ । ଅନ୍ତତଃ ଆମ ଦେଇ ହେବ ନାହିଁ । କାହିଁକନା ଇଏ ଅଲଗା କିସମର ଲୋକ, ଗାଆଁ ଝିଅ ହେଲେ ମଧ୍ୟ ବିଦେଶିନୀ ।

× × ତା' ପରଦିନ ସକାଳେ ସୁରଭି ତାଙ୍କ ପୁରୁଣା ଘରର ବାର-ପିଣ୍ଡାରେ ବସିଥାଆନ୍ତି, ଏକୁଟିଆ । ସାମ୍ନାରେ ଆଳମାଳକାର ଚାବଲ, ସିନ୍ଦୁକ ଇତ୍ୟାଦିରୁ କ'ଣ ସବୁ କାଢ଼ୁଥାଆନ୍ତି, ଆଉ ତା'କୁ ରଖାଥୁଆ କରୁଥାଆନ୍ତି । ହେଲେ ଅତି ଧୀରମନ୍ଥର ଗତିରେ । ସ୍ୱାମୀଙ୍କ ଯୋଜନାରେ ଅଛି ଯେ ଏ ଘରକୁ ବୋଧହୁଏ ବିକିବାକୁ ପଡ଼ିବ । ତେଣୁ ତା' ପୂର୍ବରୁ ସାଇତିଲା ପରି ଜିନଷଗୁଡ଼ିକୁ ଅଲଗା କରି

ସାଙ୍ଗରେ ନେଇଗଲେ କି କାହା ପାଖରେ ଛାଡ଼ି ଦେଇଗଲେ ଭଲ ହେବ । ସୁରଭି ତାକୁଇ କାର୍ଯ୍ୟକାରୀ କରିବାରେ ଲାଗି ପଡ଼ିଛନ୍ତି । କିନ୍ତୁ ତାଙ୍କର ମନ ନାହିଁ ସେଥିରେ । ମଝିରେ ମଝିରେ ଅନେଇ ରହୁଛନ୍ତି ବାହାରକୁ । ଅନେକ ସମୟ ଯାଏଁ । ଗତକାଲି ରାତିରେ ବର୍ଷାଝଡ଼ରେ ମାଡ଼ ଖାଇଥିବା କଦଳୀଗଛ, ସଜନା ଗଛ, ଅମୃତଭଣ୍ଡା ଗଛ, ତଥା ଗଙ୍ଗଶିଉଳି, ଗେଣ୍ଡୁ, ବୁଗେନ୍‌ଭେଲିଆ ଇତ୍ୟାଦି ଫୁଲ ଗଛମାନଙ୍କର ବିବିଧ ବିଭିନ୍ନ ଚେହେରାକୁ ।

···ସମସ୍ତେ ମାଡ଼ଖିଆ । ହେଲେ ସମସ୍ତେ ତାଙ୍କ ପରାଭବକୁ ଦେଖେଇ ହେଉନାହାନ୍ତି ଏକା ଭଳି । କେହି କେହି ତଥାପି ମୁଣ୍ଡ ଟେକି ରହିଛନ୍ତି । ତାଙ୍କର କେତେ ଫୁଲ ଝଡ଼ି ପଡ଼ିଛି, କେତେ ଫଳ ତଳେ ପଡି ଛତରଖାଲ ହୋଇଯାଇଛି, ହୁଏତ ଫାଳେ ହାତ କି ଗୋଡ ଛିଣ୍ଡିଯାଇଛି । ତଥାପି ବେକ ସିଧା ଅଛି । ପତର ଚକଚକ ହେଉଛି, ଫଡଫଡ଼ ହେଉଛି । ତାଙ୍କୁ କ'ଣ ବୋଲିଆ କହିବ ? ନା ଅଭିମାନୀ ନା ଅସଲ ଗର୍ବୀ ?

ମୋ ବିଷୟରେ ବି ଲୋକେ ଭାବୁଥିବେ ସେମିତି । ସୁରଭିଙ୍କର ମନେ ପଡ଼ିଲା ରଜନୀ ମହାନ୍ତି ଘରେ ବସିଥିବା ଗତକାଲିର ବୈଠକ । ଏବଂ ତାଙ୍କୁ ହସ ମାଡ଼ିଲା । ···କିନ୍ତୁ ଏଇ ଯେଉଁ ଟିକିଏ ହସି ପାରୁଛି ମନେ ମନେ, ଏଇ ଦେବ-ଦୁର୍ଲଭ ଅବଜ୍ଞା, ସ୍ୱାଁ' ଛଡ଼ା ଆଉ ମୋର କ'ଣ ଅଛି ଯାହାକୁ ନେଇ ମୁଁ ବଞ୍ଚି ପାରିବି ? ଖାଲି ନିଜକୁ ନିଜେ କହିହେବା ଛଡ଼ା, ଯେ ଯେତେ ଯାହା ଘଟିଯାଉ ମୋ ଜୀବନରେ, ମୁଁ ଏମାନଙ୍କ ପରି ଇତର ନୁହେଁ, ନିର୍ବୋଧ ନୁହେଁ···

ମାନେ ତଥାପି ସୁନ୍ଦର । ସବୁ ଶୁଖିଶାଖି କଟିକାଟି ଗଲେ ମଧ୍ୟ ସୁନ୍ଦର । ରୂପ ଖିନ୍‌ଖରାବ୍ ହେଲେ ହୋଇଗଲେ ବି ସ୍ୱଗୁଣରେ, ଗୁମାନରେ, ଅଭିମାନରେ । ମୁଁ ତଥାପି ଠିଆହୋଇ ରହିଛି, ଆଉ ଜଣେଇ ଦେଇ ପାରୁଛି ଯେ ମୁଁ ତମଠୁ ବଡ଼ । ବଡ଼ଲୋକର ଝିଅ କି ବଡ଼ଲୋକର ସ୍ତ୍ରୀ ବୋଲି ନୁହେଁ, ଆପଣା ଅସାମାନ୍ୟ ସଦାସୁନ୍ଦର "ବଡଲୋକ"ରେ···

ମୋର ମଫସଲିଆଣୀ ଅପାମାନେ, ଭାଉଜମାନେ, ମୁଁ ଖାଲି ତମରମାନଙ୍କୁ ଅଶ୍ରଦ୍ଧା କରୁନାହିଁ ମ ? ସବୁଠି ସେଇଆ, ଦିଲ୍ଲୀରେ ହେଉ କି ବମ୍ବେରେ, ବିଦେଶରେ । ତାଙ୍କର ଭିନ୍ନ ଫେସନ୍, ବେଶଭୂଷା, ଆଦବ୍ କାଇଦା, ହେଲେ ଅଧିକାଂଶରେ ସେଇ ଫମ୍ପା ଆଓ୍ୱାଜ୍, କ'ଣ ନା ଦେଖ ମୁଁ କେତେ ମଜାରେ ଅଛି ମୋ ସଂସାରକୁ ନେଇ, ମୋ ନିଜକୁ ବୋଲି କିଛି ଥାଉ ବା ନଥାଉ···

ନା, ମୁଁ ସେମିତି ନୁହେଁ । ପିଲାଦିନୁ ନୁହେଁ । ଆଜି ବି ହେବ ନାହିଁ । କେହି ମୋ ପ୍ରତି ଦୟା ଦେଖାଇ ପାରିବ ନାହିଁ । ଧନ୍ୟବାଦ ।

ମୋ ଦୋଷ ନୁହେଁ । ମୋତେ ସେଇଆ କୁହା ହୋଇଛି, ଶିଖା ହୋଇଛି ପିଲାଟି ଦିନୁ । ମୋ ବଡ଼ପଣକୁ ସୁନ୍ଦରପଣ କି ବଡ଼ପଣ, ସେଇ ଏକା କଥା) ଜଗି ରଖିବାକୁ । ଠିକଣା ଭାବରେ ଚାଲିବାକୁ, ହସିବାକୁ, କାଶିବାକୁ, ଯେମିତିକି ତା'ର ମର୍ଯ୍ୟାଦାରେ ଆଞ୍ଚ ନଲାଗେ । ଆଜ୍ଞା କହୁଚ ଓଲଟି ଯିବ ? କାହିଁକିନା··· କାହିଁକିନା···

ନା !! ମୋତେ କେତେ ଶାସ୍ତି ଦେବ ଦିଅ । ତମେ ହୁଅ କି ତମ ଭଗବାନ୍ ।

କେହି ମୋତେ ଭଲ ନ ପାଇଲେ ନାହିଁ । ତମେ ମହାପାତ୍ର ସାହେବ ମୋ ପ୍ରିୟ ସ୍ୱାମୀ, ତମେ ବି ମୋତେ ଭଲପାଇ ପାରିଲ ନାହିଁ । ମୋ ଜ୍ୟୋତିକୁ ଭାଇ ବୋଲି ଭାବିଲ, ଆଉ ପଳେଇଲ ସ୍ତ୍ରୀ' ପାଖକୁ ତା' ପାଖକୁ—ମୁଁ କଣ ଜାଣେ ନାହିଁ ସେକଥା ? ମୁଁ ସେଥିକୁ ପରୁଆ କର ନାହିଁ ।

ଅନ୍ତତଃ ମୋ ପୁଅ ଭଲ ପାଉଥିଲା ମୋତେ ।

(ଆଉ ଯିଏ ପିଲାଦିନୁ ମୋ ଲଙ୍ଗୁଡ଼ ହୋଇ ଆସିଛି, ମୋର ଆଲୁଅରେ ପଖାଳି ହୋଇଛି, କୁରୁକୁରୁ ଫୁଲୁରୁ ଫୁଲୁରୁ ହୋଇଛି, ମୋ ପିଲାଦିନର ସାଙ୍ଗ, ସାକ୍ଷୀ, ସଖୀ ମୋ ଡାର୍ଲିଙ୍ଗ୍ ମିଙ୍କି !)

···ଆରେ, ଇଏ ବି ଏଇଠି ଥିଲା ଏତେ ଦିନ ଯାଏଁ ? ସୁରଭି ଚମକି ଉଠିଲେ । କାହିଁକିନା ସିନ୍ଦୁକ ଭିତରୁ ବାହାରିଲା ଯେଉଁ ବସ୍ତୁଟି, ତା' ନାଆଁ ଲଙ୍ଗୁଳି । ପୁଅର ଫେଭରିଟ୍ କଣ୍ଢେଇ । ଗାଟାପାରଚ୍ଚାରେ ତିଆରି ଲମ୍ବାଚଉଡ଼ା ମଣିଷ ପିଲା । ···କ'ଣ ତା'ର ମନ ହେଲା କେଜାଣି, ଏଇଟିକୁ ସେ ଜାମା ପିନ୍ଧେଇଲା ନାହିଁ । କହିଲା, ଇଏ ମୋର ଲଙ୍ଗୁଳି ହୋଇ ରହିବ, ପୁଅ ନୁହେଁ କି ଝିଅ ନୁହେଁ, କିଛି ନୁହେଁ । ଆଉ ତାକୁ ମୋ ଜିମା ଛାଡ଼ି ଯାଇଥିଲା, ଯେତେବେଳେ ପ୍ରଥମେ ବାହାରକୁ ଗଲା ପଢ଼ିବା ପାଇଁ । କହିଲା ଏଇଠି ଥାଉ, ତମ ସିନ୍ଦୁକ ଭିତରେ । ମୁଁ ଫେରି ଆସିଲେ ନେବି ।

ହେଲେ ସେ ଆଉ ଫେରି ଆସି ନାହିଁ । ···ସୁରଭି ତାଙ୍କ ହାତ ଚଳାଇଲେ ଲଙ୍ଗୁଳିର ଦେହରେ । ସିଲପଟ୍ ପାଲିସ୍ ଦେହ, ଛାତି ନାହିଁ, ଲିଙ୍ଗ ନାହିଁ, କିନ୍ତୁ ତା'ର ଗୋଲ୍‌ଗୋଲ୍ ଆଖି ଦି'ଟା ଅନେଇ ରହିଛି ତାଙ୍କୁ ।

···ହଁରେ ପୁଅ ମୁଁ ତାକୁ ସାଇତିଛି ତୋ ପାଇଁ । ନେଇ କରି ଯିବି ତୋ ପାଖକୁ । ତା'ର ପରି ହୋଇ ··ବବାକ୍ ଲଗଲା, ଛାତି ନାହିଁ, ଲିଙ୍ଗ ନାହିଁ, ଯେଉଁ ଗର୍ବଟିକ ଗୁଡ଼େଇ ହୋଇଥିଲା ନିଜକୁ ଚହଲେଇବା ପାଇଁ, ସେତିକି ବି ଖସି ଯାଇଥିବ···

ସୁରଭି ଲଙ୍ଗୁଳାକୁ ଚାପି ଧରିଲେ ତାଙ୍କ ଛାତିରେ । ହେଲେ ଗୋଟାଏ ଅଦମ୍ୟ କୋହକୁ ଚାପି ରଖି ପାରିଲେ ନାହିଁ । ଉଦ୍‌ଗତ ଲୁହକୁ ବି ଫେରାଇ ଦେଇ ପାରିଲେ ନାହିଁ ।

ସୁରଭିଙ୍କର ଖିଆଲ ନଥିଲା ଯେ ସେ ମିଷ୍ଟିକୁ ନିମନ୍ତ୍ରଣ କରିଥିଲେ, ଏଠିକି ଆସି ତାଙ୍କ ରଖାଥିଆରେ ସାହାଯ୍ୟ କରିବା ପାଇଁ । ତେଣୁ ମିଷ୍ଟିଦେଇ ଖୋଲା ବାରିକବାଟ ବାଟେ ଆସି ଏଇ ଅପରୂପ ଦୃଶ୍ୟ ଦେଖିବାକୁ ପାଇଲେ । 'ଇଲେ...' ବୋଲି ଆଚମ୍ଭ କରି ରହିଗଲେ ।

କିନ୍ତୁ ସୁରଭି ମହାପାତ୍ରଙ୍କର ଡେରି ହେଲା ନାହିଁ ନିଜକୁ ସଜାଡ଼ି ନେବା ପାଇଁ । କେତେ କ୍ଷଣରେ ତାଙ୍କ ଲୁହ ଟିକିକ ବି ଶୋଷି ନେଲେ, ଏବଂ ହସି ଉଠିଲେ । କହିଲେ—

"ଜାଣିନୁ ଇଏ କିଏ ? ଇଏ ହେଉଛି ମୋ ଆତ୍ମା । ବୁଢ଼ୀ ଅସୁରୁଣୀର ଜୀବନନାଟିକା । ସାତ ସମୁଦ୍ର ତଳେ ଯେଉଁ ସିନ୍ଦୁକ, ସିନ୍ଦୁକ ଭିତରେ ଫରୁଆ, ଫରୁଆ ଭିତରେ ମ୍ୟାଁ'କୁ ରଖିବୁ ମୋ ପାଇଁ ?"

ମିଷ୍ଟିଦେଇ ବୁଝିଲେ ଯେ ଇଏ ତା' ପିଲାଦିନର କଣ୍ଢେଇ, କେଉଁ ଅଭୁଲା ସ୍ମୃତିର କଥିକା । ତେଣୁ ସେ ତତ୍‌କ୍ଷଣାତ୍ ହାତ ବଢ଼େଇଲେ ଲଙ୍ଗୁଳାକୁ ଆଣିବା ପାଇଁ । ହସି ହସି । ପରମ ସ୍ନେହ ଓ ସହାନୁଭୂତିରେ ଦ୍ରବିତ ହୋଇ । ହେଲେ ସେତିକିବେଳେ ତାଙ୍କ ମନରେ ଆସିଥିଲା—କିନ୍ତୁ ମୁଁ ତାର ମୁଣ୍ଡ ମୋଡ଼ି ଦେବି, ନିଶ୍ଚେ ମୋଡ଼ି ଦେବି, ଯେଉଁଦିନ ମୁଁ ଆଉ ସହି ପାରିବି ନାହିଁ ତୋ ବଡ଼ପଣକୁ...

× × × ×

ଦିବସ ପାରି ହୋଇଗଲାଣି । ସୁରଭି ମହାପାତ୍ର ସେପୁରକୁ ଚାଲିଗଲେଣି ତାଙ୍କ ଦ୍ୱିତୀୟ ସ୍ତନ କଟା ହେବା ପରେ ପରେ । କିନ୍ତୁ ଲଙ୍ଗୁଳାର ମୁଣ୍ଡ ମୋଡ଼ା ହେବା ଦୂରର କଥା, ସେ ଦିବ୍ୟ ଆରାମରେ ଅଛି । ମିଷ୍ଟିଦେଇଙ୍କ ଶୋଇବା ଘର ଥାକରେ ଶୋଭା ପାଉଛି । ଦିନେ ଚାକରଟୋକା ତାକୁ କରି ଏପାଖ ସେପାଖ କରିଦେଲା ଯେ ସେ ଅଗ୍ନିଶର୍ମା ହୋଇଗଲେ ତା' ଉପରେ । ଏମିତି ରାଗିଲେ ଯେ ମନେ ହେବ ସେ ତାଙ୍କର ଶହେଟାଏ ନଷ୍ଟ କରିଦେଲା । ସବୁ କେଁକେଁଇଆ କଣ୍ଠର ତୀବ୍ରତାରେ ତାଙ୍କ ଭର୍ତ୍ସନା ଆହୁରି ଅଦ୍‌ଭୁତ ଓ ଅବାନ୍ତର ମନେ ହେଉଥାଏ । ସହଜେ ଆଗନ୍ତୁକା ମାମୁନି ଅପା ଅବାକ୍ ହୋଇ ଅନେଇଲେ ମିଷ୍ଟିଦେଇଙ୍କୁ—ନେଥେଇଫୁଲେଇର ମୁଣ୍ଡ ଅବଶ୍ୟ କେବେହେଲେ ଠିକ୍ ନଥିଲା...

ମିଷ୍ଟିଦେଇ ତାଙ୍କ ବିମୂଢ଼ତାକୁ ଲକ୍ଷ୍ୟ କଲେ, ଏବଂ ହସିଲେ ମନେ ମନେ— କ'ଣ ମୋ ହାଇକୋଲଜିକୁ ଅଣ୍ଡାଳି ହେଉଛ କି ମାମୁନିଅପା ? ପାରିବ ନାହିଁ, ମୋଟେ ପାରିବ ନାହିଁ !

# ମଖଣୀ

ବ୍ୟକ୍ତିତ୍ୱ ବୋଲି ଯେଉଁ ଜିନଷଟି ଅଛି, ଯାହାକୁ ଧରି ରଖି ନପାରିଲେ ହାରିଗଲା ପରି ଲାଗେ, 'ମୁଁ କିଛି ନୁହେଁ' ବୋଲି ମନେ ହୁଏ, ସେଇଟି ପ୍ରକୃତରେ କଅଣ ? ତା'ର ଉପାଦାନଗୁଡ଼ିକୁ ନିର୍ଣ୍ଣୀତ କରିହେବ କି ? ମୋଟ ଉପରେ ତାହା କ'ଣ ଗୋଟାଏ ସୁଦୃଶ୍ୟ ବସ୍ତୁ ବା ବସ୍ତୁବିଶେଷର ସମଷ୍ଟି, ନା କେବଳ ଗୋଟାଏ ଧାରଣା ଯାହା ଜମକୁ ବଞ୍ଚିବାର ମର୍ଯ୍ୟାଦା ଆଣିଦିଏ ?

ମାନିବାକୁ ପଡ଼ିବ ଯେ ପୃଥିବୀରେ କେତେକ ଲୋକ ଅଛନ୍ତି, ଏବଂ ରହି ଆସିଛନ୍ତି, ଯେଉଁମାନେ ଏଭଳି କିଛି ଦୁର୍ବାଦିତ କାମ କରିଛନ୍ତି ଯାହା ସର୍ବସାଧାରଣ ନୁହେଁ; ତେଣୁ ସେମାନେ ବାରି ହୋଇଯାଆନ୍ତି ଅନ୍ୟମାନଙ୍କଠାରୁ । ତାଙ୍କୁ କଷ୍ଟ କରିବାକୁ ପଡ଼େନାହିଁ ତାଙ୍କ ବ୍ୟକ୍ତିତ୍ୱକୁ ଦର୍ଶାଇବା ଲାଗି । ତାଙ୍କ ବେଶଭୂଷା, ଚାଲିଚଳଣ କଥାକୁହା କି ହସଖୁସିର ଢଙ୍ଗ ଯେତେ ସାଧାରଣ ହେଉ ପଛେ ମନେହୁଏ ଯେ ସେଥିରେ ତାଙ୍କ 'ବ୍ୟକ୍ତିତ୍ୱ' ଫୁଟି ଉଠୁଛି । ତାଙ୍କ କୃତିତ୍ୱ ହିଁ କଥା କୁହେ ତାଙ୍କ ପାଇଁ ।

କିନ୍ତୁ ଅସୁବିଧା ହୁଏ ଅଗଣିତ ଅନ୍ୟମାନଙ୍କର, ଯେଉଁମାନେ ସେଭଳି କୌଣସି କୃତିତ୍ୱ ହାସଲ କରିପାରି ନାହାଁନ୍ତି ତାଙ୍କ ଜୀବନରେ, ଯାହା ପରିସ୍ଫୁଟ ହୋଇ ଉଠିଛି । ସେହିମାନେ ହିଁ ବିଭିନ୍ନ ଭାବରେ ଚେଷ୍ଟା କରନ୍ତି ଜଣାଇବା ପାଇଁ ଯେ ତାଙ୍କର ଗୋଟାଏ ବ୍ୟକ୍ତିତ୍ୱ ଅଛି । କେବଳ ଅନ୍ୟମାନଙ୍କୁ ଶୁଣାଇବା ପାଇଁ ନୁହେଁ, ମଧ୍ୟ ନିଜକୁ କହିବା ପାଇଁ । ତାହା ବେଳେବେଳେ ହାସ୍ୟାସ୍ପଦ ହୋଇ ଉଠେ, କାରଣ ତାଙ୍କର ପ୍ରକୃତରେ ସେଭଳି କିଛି ବିଶେଷତ୍ୱ ନାହିଁ, ଅଥବା ତାକୁ

ଦର୍ଶାଇବାର କଳାକୌଶଳ ଜଣା ନାହିଁ ତାଙ୍କୁ । କିନ୍ତୁ ସେହି ପ୍ରଚେଷ୍ଟା ହିଁ ପ୍ରଶଂସନୀୟ ନୁହେଁ କି ? ଯେଉଁମାନଙ୍କର ଆଦୌ କୌଣସି ଚେଷ୍ଟା ନାହିଁ ସେ ଦିଗରେ, ଖାଲି ସେଇମାନଙ୍କୁ ପଚାରିବାକୁ ଇଚ୍ଛା ହୁଏ ସେମାନେ ମଣିଷ ହୋଇ କାହିଁକି ଜନ୍ମ ହୋଇଛନ୍ତି ବୋଲି ।

ଯଥା ଏଇ ଗପର ଚରିତ୍ରଗଣ । ହେଲି ଏବେ ସେମାନେ ମଧ୍ୟବିତ୍ତ ଓଡ଼ିଆ ସମାଜର ଘରଣୀ କେଇଜଣ, ଯେଉଁମାନେ ଆପାତତଃ ତାଙ୍କ ସ୍ୱାମୀମାନଙ୍କ ସ୍ତ୍ରୀ ଇ କହିଲେ ଚଳେ, କେବଳ ଜଣେ ଦି ଜଣଙ୍କ ଛଡ଼ା । କିନ୍ତୁ ଯେଉଁମାନେ ସେଇ ସ୍ତ୍ରୀଇପଣକୁ ମୁଣ୍ଡପାତି ସ୍ୱୀକାର ନକରି ନିଜର ବ୍ୟକ୍ତିତ୍ୱକୁ ଦର୍ଶାଇବା ଲାଗି ଚେଷ୍ଟା କରିଛନ୍ତି, ସେମାନଙ୍କୁ ଯଥାଯୋଗ୍ୟ ସମ୍ମାନ ଦେବା ଉଚିତ ବୋଲି ମୁଁ କହିବି ।

ଧରି ବିମଳୀଅପା । ତାଙ୍କ ପଛରେ ହାସ୍ୟରୋଳ ଉଠେ । କିନ୍ତୁ ଏଇ ଅସୁନ୍ଦରୀ ବୁଢ଼ୀ ଜଣକ ଯଦି ସେଭଳି କିଛି ଅଭିନୟ କରିପାରୁ ନ ଥାଆନ୍ତେ (ଅଭିନୟ ଯଥାକ୍ରମେ ସ୍ୱଭାବରେ ପରିଣତ ହୁଏ), ତା'ହେଲେ ତାଙ୍କ ଜୀବନଟା କିଭଳି ଶୂନ୍ୟ ଏବଂ ତୁଚ୍ଛ ବୋଲି ମନେ ହୁଅନ୍ତା, ଭାବିଲ ଦେଖି ? ସେ ତମକୁ ଚକିତ କରିପାରୁଛନ୍ତି, ତାଙ୍କ ପଛରେ ତମେ ତାଙ୍କୁ ଅଣ୍ଟା କରି ହସୁଥାଅ ପଛେ, ଏଇ ତ ତାଙ୍କର ବ୍ୟକ୍ତିତ୍ୱ ! ଏବଂ ସେଥିପାଇଁ କ'ଣ ତାଙ୍କୁ ସାବାସ୍ ଦେବା ଉଚିତ ନୁହେଁ ? ସେମିତି ଦେଖ ମାମୁନିଅପାଙ୍କୁ । ତାଙ୍କର 'ସାଇକୋଲଜି' ଶାସ୍ତ୍ରାନୁମୋଦିତ ହେଉ ବା ନହେଉ, ସେଇଥିରେ କ'ଣ ସେ ତମକୁ ଅଳ୍ପବହୁତ ଚମତ୍କୃତ କରିପାରୁ ନାହାନ୍ତି ? ସେତିକି କରିପାରୁ ନଥିଲେ ସେ ଖାଲି ଜଣେ ଝିଟିଖିଟିଆ ଧେଡ଼ିଆ ବୁଢ଼ାଙ୍କ ସ୍ତ୍ରୀ ହୋଇ ରହିଯାଇ ନଥାଆନ୍ତେ ? ମେଳାପୀ, ମିଷ୍ଟଭାଷୀ ଓ କୋମଳମତି ରଜନୀଙ୍କୁ ମଧ୍ୟ ବାଦ୍ ଦେବା ସମୀଚୀନ ହେବ ନାହିଁ । ମୁଁ ସବୁଠାରୁ ସାନ ଓ ସୁଖୀ ଘରଣୀଟିଏ ଏହି ସଚେତନତାହିଁ ତାଙ୍କ ବ୍ୟକ୍ତିତ୍ୱର ସ୍ୱରୂପ, ଯେଉଁଥିପାଇଁ ବୋଧହୁଏ ସେ ହୋଷ୍ଟେସ୍ ହେବାକୁ ଭଲପାଆନ୍ତି । କିନ୍ତୁ ଜିନଦେଈଙ୍କ ନଖକାମୁଡ଼ା ? ନକହିବା କଥାକୁ କହିବା, ପୁଣି ପ୍ରତ୍ୟେକ କଥାକୁ ଲମ୍ବେଇ ଲମ୍ବେଇ

ବଖାଣିବା, ଯେଉଁଥିରେ ଅନ୍ୟମାନେ ବୋର୍ ହୋଇଯାଆନ୍ତି ତାକୁ ବି କଅଣ ତାଙ୍କର 'ବ୍ୟକ୍ତିତ୍ୱ' ବୋଲି କହିବ, ଯାହାକୁ ସେ ଧରି ରଖିବାକୁ ଚାହାଁନ୍ତି ? ଏଇଠି ଟିକିଏ ଭାବିବାକୁ ପଡ଼େ । ତଥାପି ମନେହୁଏ ଯେ ତା' ହୋଇଥିବ ପରା ! ତାଙ୍କୁ ନିର୍ବୋଧ ବୋଲି କହିପାରି, କିନ୍ତୁ ସେହି ନିର୍ବୋଧତା ହେତୁ କିମ୍ବା ତା'ରି ଆଳରେ ସେ ତାଙ୍କର କେତୋଟି ମାର୍କାମରା ଅଭ୍ୟାସ ଛାଡ଼ିବାକୁ ନାରାଜ, ତା'ର କାରଣ ସେ ଅନ୍ତତଃ ଏହି ଭାବରେ ତାଙ୍କୁ ଭଲ ନପାଇ ବାହା ହୋଇଥିବା ଖିଦଡ଼ିପିଙ୍କା ସାମ୍ବାଦିକ ସ୍ୱାମୀଙ୍କର ଛାଇ ହୋଇ ରହିବାକୁ କୁଣ୍ଠିତ, ଏଭଳି ଅନୁମାନ କ'ଣ ଗ୍ରହଣଯୋଗ୍ୟ ନୁହେଁ ?

ବାକି ରହିଲେ ଆମ ମୁଖ୍ୟ ନାୟିକା ଦୁଇଜଣ । ଗରବିଣୀ 'ମରାଳୀ' ସୁରଭି ମହାପାତ୍ର ଓ ତାଙ୍କ ବେଷ୍ଟ୍ ଫ୍ରେଣ୍ଡ୍ ମିଷ୍ଟି ଦେଈ । ସୁରଭିଙ୍କ ଚରିତ୍ର ପ୍ରତି ଅକ୍ଷେପ କରି ହେବ ମିଷ୍ଟିଦେଈଙ୍କ ତରଫରୁ—କେଉଁଥିପାଇଁ ଏତେ ଗର୍ବ ମ ? ହଁ, ଚେହେରା ଖଣ୍ଡେ ପାଇଛ ଜନ୍ମରୁ, କିନ୍ତୁ ନିଜର କ'ଣ ବାହାଦୁରୀ ଅଛି ସେଥିରେ ? କେଉଁଥିରେ କ'ଣ ଅଧିକ କୃତିତ୍ୱ ହାସଲ କରିଛ ମୋଠାରୁ କି ଆଉ କାହାଠାରୁ ? କିନ୍ତୁ ମିଷ୍ଟିଦେଈ ନିଜେ ଜାଣନ୍ତି ଯେ ସୁରଭି ତାଙ୍କର ସେହି ରୂପକୁ ହିଁ ତାଙ୍କର ସ୍ୱଗୁଣ କରିପାରିଛନ୍ତି, ଯେଉଁଥିପାଇଁ ତାଙ୍କ ଜୀବନର ଯେତେକ ଶୋକ ଦୁଃଖକୁ ନେଇ ସେ ଅନ୍ୟତମ ଦୁଃଖିନୀ ହୋଇ ରହିଯାଇ ନାହାନ୍ତି, ଟ୍ରାଜେଡ଼ିର ରାଣୀ ବୋଲି ମନେ ହେଉଛନ୍ତି । ଏବଂ ମିଷ୍ଟିଦେଈ ଜାଣନ୍ତି ନାହିଁ ଯେ ସୁରଭିଙ୍କୁ ତାଙ୍କ ସ୍ୱନାମଧନ୍ୟ ସ୍ୱାମୀ ସାରଥି ମହାପାତ୍ର ଠକିଛନ୍ତି (ମିଷ୍ଟିଦେଈ ମଧ୍ୟ ସେଥିରେ ରହିପାରିଥାଆନ୍ତି), ତାହା ମଧ୍ୟ ତାଙ୍କର ଅଛପା ନୁହେଁ । ତଥାପି ସେ ତାଙ୍କର ରାଣୀଭାବକୁ ଅତୁଟ କରି ରଖିପାରିଛନ୍ତି, ତାଙ୍କ ଆଖିରୁ ଲୁହ ଟୋପାଏ ବି କେହି ଝରିବାର ଦେଖିନାହିଁ 'ଲଙ୍ଗୁଳୀ' ଛଡ଼ା, ଏବଂ ହୁଏତ ଦୈବାତ୍ କେଉଁଠୁ ଆସି ପହୁଞ୍ଚି ଯାଇଥିବା 'ବେଷ୍ଟ୍ ଫ୍ରେଣ୍ଡ୍' ଛଡ଼ା, ତାଙ୍କ ବ୍ୟକ୍ତିତ୍ୱର ଏଇ ଦିଗଟିକୁ କ'ଣ ସାମାନ୍ୟ ବୋଲି କହିବ ? ଆଉ ମିଷ୍ଟିଦେଈ, ତମ ବେଷ୍ଟ୍ ଫ୍ରେଣ୍ଡଙ୍କ ପ୍ରତି ତମର ଯେଉଁ ଈର୍ଷାଭାବ ରହିଛି, ତାହା ସ୍ୱାଭାବିକ । ତଥାପି ତମେ ବାରମ୍ବାର ନିଜକୁ ଆତ୍ମିକରେ

ରଖିଛ, 'ବେଷ୍ଟ ଫ୍ରେଣ୍ଡ୍' ପ୍ରତି ବିଶ୍ୱାସଘାତକତା କରି ନାହିଁ, ଏବଂ ଶେଷକୁ ତମେ ତାଙ୍କ ଜୀବନନାଟିକା ଭୁଲି ଲଙ୍ଗ୍‌ଲୀକୁ ଏତେ ନିକର କରିପାରିଲ, ଯେତେକ ସେ ତମର ଜୀବନନାଟିକା, ଏବଂ ସେଇ ଆନୁଗତ୍ୟକୁ ଲୁଚେଇ ରଖିଲ ନିଜ ଭିତରେ, ଏହା କ'ଣ ଏକ ମହାର୍ଘ ବ୍ୟକ୍ତିତ୍ୱର ପରିଚୟ ନୁହେଁ ? ସେହେତୁ ସୁରଭିଙ୍କୁ ପରମସମ୍ମାନସୂଚକ ପ୍ରଲମ୍ବିତ ନମସ୍କାରଟିଏ ପକାଇଲି ବେଳେ, ତମକୁ ଗ୍ଳାନି ହେବ କେମିତି ?

'ଜେନ୍' ଗୁରୁମାନେ କୁହନ୍ତି, ଏବଂ ସୁପ୍ରସିଦ୍ଧ କଥାକାର ଉଇଲିୟମ୍ ସାରୋୟାନ୍‌ଙ୍କର ମତ ମଧ୍ୟ ସେଇଆ, ଯେ 'ବ୍ୟକ୍ତିତ୍ୱ' ଗୋଟାଏ ଭ୍ରାନ୍ତ ଧାରଣା ଛଡ଼ା ଆଉ କିଛି ନୁହେଁ । ଚଳଚଞ୍ଚଳ ତଥା ଓଲଟପାଲଟ ଗ୍ରୁଇ ଆଲୁଅର ଭେଲିକି ଦେଖାଇ ଗତି କରୁଥିବା ମଣିଷ ମନଟାର କେଉଁ ଆକାର ଅଛି ନା ପ୍ରକାର, ଯେ କହିବ ଏଇ ହେଉଛି ଅମୁକର ବ୍ୟକ୍ତିତ୍ୱ ? ହଉ, ତଥାପି ଯେଉଁ ଗାରିମା ସହ ହାରିହାରି ମଣିଷ ନିଜକୁ କେବଳ ସ୍ୱତନ୍ତ୍ର ନୁହେଁ, ଅଧିକ ବିଶେଷ ବୋଲି ମଣିବାକୁ ଚେଷ୍ଟାକରେ, କେଉଁ ଦେବତା ଭଲା ତାକୁ ସମ୍ମାନ ନଦେଇ ରହିପାରିବ ?



# ଶ୍ରଦ୍ଧାଞ୍ଜଳି

ଆଜି ନକୁଳପୁରର ନାଗରିକମାନେ ଶହୀଦ୍ ମହାଦେବ ସାମଲଙ୍କ ପବିତ୍ର ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରିବେ ବୋଲି ଏକାଧିକ ସାଇକେଲ୍-ରିକ୍ସାରୁ ଲାଉଡ଼୍‌ସ୍ପିକର୍ ଯୋଗେ ଘୋଷଣା କରାଯାଉଛି । ସେହି ଉଦ୍ଦେଶ୍ୟରେ ପ୍ରଥମେ ତାଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନ କରିବେ ଦେଶର ତୁଙ୍ଗ ନେତା ରାମଶଙ୍କର ପାତ୍ର । ସ୍ଥାନ : ପ୍ରାଚୀ ସିନେମା ପଛପଟେ ଥିବା ପଡ଼ିଆ । ସମୟ : ଅପରାହ୍ଣ ଘ ୩-୧୫ ମିନଟ୍ ।

ଘୋଷଣାଟିକୁ ଶୁଣିଲା ମାତ୍ରେ ନକୁଳପୁରର ଯେକୌଣସି ନାଗରିକର ନିଶ୍ଚୟ ମନେ ପଡ଼ିବ—ହଁ, ଆଜିକୁ ପ୍ରାୟ ବର୍ଷେକ ତଳେ, ଏଇ କାର୍ତ୍ତିକ ପୂନେଇଁବେଳକୁ ନକୁଳପୁର କଲେଜ୍‌ର ଜଣେ ଛାତ୍ରନେତା, ଗଜା ଚୋକାଟା, ପୁଲିସ୍‌ଗୁଳିରେ ପ୍ରାଣ ହରେଇଥିଲା । ଏବଂ ସେ ଦୁଃଖ କରିବ । ତା' ମନରେ ଅଳ୍ପବହୁତ ଗର୍ବ ଓ ଆନନ୍ଦ ମଧ୍ୟ ଆସିପାରେ, ସେ ଯାହାହେଉ ଆମର ଏଇ ଧୂଳିଆ ଗ୍ରେଟ ସହରରେ ଜଣେ କେହି ଶହୀଦ୍ ହୋଇ ପାରିଛି, ଏବଂ ତା'ର ସ୍ମୃତିରକ୍ଷା ପାଇଁ ଏଭଳି ଏକ ସଭାର ଆୟୋଜନ କରାଯାଉଛି । କିଏ କୁହେ ଇଏ ଖାଲି ଗୋଟାଏ ମାମ୍‌ଲିବାଜଙ୍କ ସହର ? ଅବା ଖାଲି ଛେନାଗଜା ପାଇଁ ପ୍ରସିଦ୍ଧ ? କିନ୍ତୁ ଅଙ୍କକଷା ହେଲା ପରି ଏମିତି ଗୋଟାଏ ଅଖାଡ଼ୁଆ ସମୟରେ କାହିଁକି ସଭା ଡକା ହୋଇଛି, ତାର ତାତ୍ପର୍ଯ୍ୟ ବୋଧହୁଏ ଅନେକେ ବୁଝି ପାରିବେ ନାହିଁ । ଏବଂ କ୍ୱଚିତ୍ କାହାର ରକ୍ତ ଚଞ୍ଚଳ ହୋଇ ଉଠିବ (କ୍ରୋଧ, ଶୋକ, ଅଥବା ଅନ୍ୟ କେଉଁ ଭାବାବେଗର ତାଡ଼ନାରେ) ସେଦିନର ସେ ସମୟକୁ ମନେ ପକାଇ ।

ବୁଝିବେ ଏବଂ ଉତ୍ତେଜିତ ହେବେ କେବଳ ଯେଉଁମାନେ ଶହୀଦ୍ ମହାଦେବ ଅଥବା ତା'ର ମୃତ୍ୟୁ ସାଙ୍ଗରେ ଘନିଷ୍ଠ ଭାବରେ ସଂପୃକ୍ତ ଥିଲେ । ଯଥା ତାର ବନ୍ଧୁ ଓ ବନ୍ଧୁପତ୍ନୀ କାନ୍ତ-କଳା, ପୁଲିସ୍ ଅଫିସର୍ ମୋହନ ଦାସ । ବୁଝିବେ ଯେ ଆଜିକୁ ଠିକ୍ ବର୍ଷେକ ତଳେ ନଭେମ୍ବର କୋଡ଼ିଏ ତାରିଖ ଅପରବେଳା ଘ ୩-୧୫ ମିନଟ୍‌ରେ ପୁଲିସ୍‌ର ଗୋଟିଏ ଗୁଳି ମହାଦେବ ସାମଲର ମୁଣ୍ଡକୁ ଛତରଛୁଲ କରି ଦେଇଥିଲା । କାହିଁକିନା ଛାତ୍ରନେତା ମହାଦେବ ବିକ୍ଷୋଭକାରୀ ଛାତ୍ରମାନଙ୍କ ଆଗ ଧାଡ଼ିରେ ଥିଲା । ଯେଉଁ ଛାତ୍ରମାନେ 'ଇନ୍‌କିଲାବ୍ ଜିନ୍ଦାବାଦ୍'ର ଧୂନ୍ ଉଠେଇଥିଲେ

ଏବଂ ଶିକ୍ଷାମନ୍ତ୍ରୀଙ୍କ ଟ୍ରାଇ ବାଡ଼ିବା ସଙ୍ଗେ ସଙ୍ଗେ ସ୍ୱତନ୍ତ୍ର ଭାରତର ନ୍ୟାୟ ମାଗୁଥିଲେ, ସେ ତାଙ୍କର ଅଗ୍ରଣୀ ହୋଇ ରକ୍ତଚକ୍ଷୁ ପୁଲିସ୍‌ଙ୍କୁ ଆହ୍ୱାନ ରଗଡୁଥିଲା । ଏବଂ ସେ କୁଆଡ଼େ ଗୋଟାଏ ଟେକା ଛାଡ଼ିଥିଲା କି ନଗ୍ରଡ଼ଥିଲା ସେମାନଙ୍କ ଆଡ଼କୁ ।

କାନ୍ତ ମହାନ୍ତ ଥିଲା ସେଇ ଗହଳରେ । ସେ ଘଟଣାର କେତେ ପାଖରେ ଥିଲା, ଏବଂ କେତେଟା କ'ଣ ଦେଖିଛି କହି ହେବ ନାହିଁ । ତେବେ ସେ ଶୁଣିଛି ଗୁଳିର ଶବ୍ଦ, ଓ ଦେଖିଛି କେମିତି ଦେବୁର ରକ୍ତାକ୍ତ ଦେହକୁ ଟେକି ନେଇଗଲେ ସେମାନେ । ଏବଂ ଶୁଣିଛି ଆଉ ଗୋଟାଏ ଅଶ୍ରୁତପୂର୍ବ ଶବ୍ଦ ତା' ଛାତି ଭିତରେ । ଏମିତି ନିର୍ମମ ତା'ର ପ୍ରହାର, ଛାତିଟାକୁ ଦବେଇ ଅଚଳ କରି ଛାଡ଼ିଦେଲା ପରି, ଯେ ସେ କେତେବେଳକେ ପୂର୍ବାପର ପରିସ୍ଥିତିକୁ ଆବିଷ୍କାର କରିପାରିଲା । ଦେଖିଲା ଗହଳ ଛିନ୍‌ଛତ୍ର ହୋଇଯାଇଛି, ଲୋକେ ଦୌଡ଼ୁଛନ୍ତି, ପୁଲିସ୍ ଗୋଡ଼େଇଛି, କିନ୍ତୁ ସେ ପଛରେ ପଡ଼ିଯାଇଛି । ଅଗତ୍ୟା ସେ ମଧ୍ୟ ଦୌଡ଼ିଲା, ପ୍ରାଣମୂର୍ଚ୍ଛାରେ ଦୌଡ଼ିଲା ଘର ଆଡ଼େ, ହେଲେ ମନର ଗୋଟାଏ ନବଜାଗ୍ରତ ଭାବ ବି ଦୌଡ଼ିଲା ତା ସାଙ୍ଗରେ । ଯେ ଦେବୁ ପ୍ରକୃତରେ ତା'ର ଏତେ ନିକଟର ଥିଲା ! କେବଳ ବନ୍ଧୁ ନ ଥିଲା, ତା'ଠାରୁ ଅଧିକ, ଭାଇପରି, ଭାଇଠାରୁ ବଳି । ଆଉ ଶଳେ ମାରି ଦେଲେ ତାକୁ ମୋର ଆଖି ଆଗରେ···

ଘରେ ପହଞ୍ଚିଲା ପରେ ମଧ୍ୟ ସେ ଭୟଭୀତା କଳାର କ'ଣ ହେଲା ? ପ୍ରଶ୍ନର ଉତ୍ତର ଦେଇ ପାରିଲା ନାହିଁ ହଠାତ୍ । ଅତ୍ୟଧିକ ଅଣନିଶ୍ୱାସ ହୋଇଥିବାରୁ ତା'ର ବାକ୍‌ସ୍ଫୂର୍ତ୍ତି ହେଲା ନାହିଁ ସହଜେ, କେବଳ ସେଥିପାଇଁ ନୁହେଁ । ତା'ର ମନେ ହେଲା ଯେ ସେ ଏକ ଦାରୁଣ ଦୁଃସମ୍ବାଦର ଅଧିକାରୀ, ତାକୁ ଚଟ୍‌କିନା ହାତଛଡ଼ା କରିବା ଉଚିତ ନୁହେଁ । ଯେମିତିକି ସେ ଖବରଟିକୁ ବାଢ଼ି ଦେବ ଯଥା-ସମୟରେ । ବିରାଟ ବସ୍ତୁଟିର ତଥା ନିଜ ଆଖି ଦେଖା ସାକ୍ଷ୍ୟର ଉପଯୁକ୍ତ ସମ୍ମାନ ଦେଲା ପରି । ଯାହାହେଉ ସେ କହିଲା କିଛି ସମୟ ପରେ—

"ଆମ ଦେବୁ, ମହାଦେବ ସାମଲକୁ ମାରିଦେଲେ ସେମାନେ···"

କଳା ହୁଏତ ଚତ୍‌କାର କରି ଉଠିଥାଆନ୍ତା । କିମ୍ବା ନିର୍ବାକ୍ ହୋଇ ରହି ଯାଇଥାଆନ୍ତା । ଉଭୟ ପ୍ରତିକ୍ରିୟା ସ୍ୱାଭାବିକ । କିନ୍ତୁ ଆଶ୍ଚର୍ଯ୍ୟ କଥା ତା'ପାଟିରୁ କେବଳ ଗୋଟିଏ ଶବ୍ଦ ବାହାରିଲା । ଏବଂ ଅନୁଚ୍ଚ ସ୍ୱରରେ । "ନା-ଉଁ ।" ସେଇଠୁଁ ସେ ତତ୍‌କ୍ଷଣାତ୍ ଘର ଭିତରକୁ ଚାଲିଗଲା । ସତେକି ସେ ଏଇ ଘଟଣାର ଅଘଟଣକୁ ସମ୍ପୂର୍ଣ୍ଣରୂପେ ଏବଂ ଏକାନ୍ତରେ ହେଜିବାକୁ ଚାହେଁ । ଅନୁଭବ କଲା ପରି ।

ତେବେ କାନ୍ତ ଆଶ୍ଚର୍ଯ୍ୟ ହେଲା ସିନା, ପରମୁହୂର୍ତ୍ତରେ ସେ ବୁଝିଲା ଯେ କଳାର ଭାବକାତରତା କେତେ ବିଚିତ୍ର ହୋଇପାରେ । ଏବଂ ତା'ର ମନକୁ ଆସିଲା

(ଏଇ ନୂଆ ନୁହେଁ) ଯେ ତା'ର 'କଳା' ନାଆଁ ସାର୍ଥକ ସତ୍ୱେ 'କବିତା' ନାଆଁ ଦିଆ ହୋଇଥିଲେ ବୋଧହୁଏ ଆହୁରି ଭଲ ହୋଇଥାଆନ୍ତା । ତା'ର ଶୋକାତୁର ମୁହଁରେ ସାମାନ୍ୟ ହସଟିଏ ଦେଖା ଦେଲା । ଏଭଳି କବି-ନାସ୍ତିକିକୁ ପତ୍ନୀ ରୂପରେ ପାଇଥିବାର ଗୌରବ ଏବଂ ପୁରୁଷ-ସୁଲଭ ଆମୋଦ ।

କିନ୍ତୁ କଳା ଯେତେବେଳେ ଶୋଇବାଘର ଖଟ ଉପରେ ବସିଯାଇ ତା' ମୁଣ୍ଡକୁ ଚିପି ଧରିଲା, ମୁଣ୍ଡ ବଥେଇଲା ପରି, ଦର୍ପଣରେ ମୁହଁ ଦେଖି ତତ୍‌କ୍ଷଣାତ୍ ଦୂରେଇଗଲା, ଯେତେକ ତା'ର ସାହସ ନାହିଁ ନିଜ ଚେହେରାକୁ ସ୍ୱୀକାର କରିପାରିବ, ଫ୍ରିଜ୍‌ରୁ ପାଣି ଗିଲାସେ ଆଣି ପିଇଲା, ଏବଂ ନାନା ଭାବରେ ଅସ୍ତବ୍ୟସ୍ତ ହେଲା, ସେଥିରେ କେବଳ ଶୋକ ନଥିଲା ସ୍ୱାମୀବନ୍ଧୁ ଦେବବାବୁଙ୍କ ପାଇଁ । କିମ୍ବା ତା'ର ଭାବକାତରତା ଉଦ୍ଧୁରି ଉଠୁ ନଥିଲା, କଳାତ୍ମକତା ଅଥୟ ହୋଇ ଉଠୁ ନଥିଲା କିଛି ଗୋଟାଏ କରି ନପାରି । କହିବାକୁ ଗଲେ ସେ ଗୋଟାଏ ଅଦ୍ଭୁତ ଭାବରେ ଆକ୍ରାନ୍ତ ହୋଇ ପଡ଼ିଥିଲା । ଆତ୍ମଗ୍ଲାନି । —ମୋରି ଯୋଗୁଁ କ'ଣ ଏମିତି ହେଲା ? ମୁଁ ଚାହୁଁଥିଲି ବୋଲି କ'ଣ ତାଙ୍କର ଏମିତି ମରିବାକୁ ହେଲା ?···

କିନ୍ତୁ ମୁଁ କ'ଣ ସତରେ ଚେଇଁଥିଲି ?? ହେ ଭଗବାନ୍ !

ଏଥି ପୂର୍ବରୁ କଳାର ଜୀବନରେ କେତେଗୁଡ଼ିଏ ଘଟଣା ଘଟିଛି, ଯଥା ପିଲାଦିନେ ଟୁକୁଭାଇର କ୍ୟାମେରା ବିଗିଡ଼ି ଯାଇଛି, ସ୍କୁଲ୍ ସାଙ୍ଗ ନମିର ଗୀତଖାତା ହଜିଯାଇଛି, ଏପରିକି ଜଣେ ନିନ୍ଦୁକ ପିଉସୀଙ୍କର ଆକସ୍ମିକ ମୃତ୍ୟୁ ଘଟିଛି, ଯେଉଁଥିରୁ ତା' ମନରେ ଯତ୍‌ସାମାନ୍ୟ ଧାରଣା ହୋଇଛି ଯେ ବୋଧହୁଏ ତା'ର ଅଭିଶାପ ଫଳିଯାଏ ବେଳେ ବେଳେ । ···କାହାରି ମନ୍ଦ ଚାହିଁବା ଉଚିତ ନୁହେଁ, କିନ୍ତୁ ମୁଁ କ'ଣ କରିବି, ବେଳେବେଳେ ହେମିତିକା ଭାବ ଆସିଯାଏ ମନରେ, କେତେଜଣଙ୍କ ପ୍ରତି (ଆଉ କାହା ମନକୁ କ'ଣ ଆସୁ ନଥିବ ?) ଯେଉଁମାନେ ମୋ ପ୍ରତି ଘୋର ଅନ୍ୟାୟ କରିଥାଆନ୍ତି । ହେଲେ ମୋ ମନକଥା ସତ ହୋଇଯାଏ । ସେଥିକୁ ମୋର ହାତ ନାହିଁ ।··· ତେବେ କଳାକୁ ପ୍ରଶଂସା କରିବାକୁ ପଡ଼ିବ ଯେ ସେ ନିଜ ଭାବନାକୁ ଜଗିକରି ଥାଏ, କାଳେ ସେଥିରେ ଅଭିଶାପର ଗୁଣ ଥିବ ଆଉ ତାହା ଫଳିଯିବ କେଉଁ ହତଭାଗା ଉପରେ । ତା'ହେଲେ ସେ କ'ଣ ମହାଦେବ ସାମଲକୁ ଏତେ ଘୃଣା କରୁଥିଲା ଯେ ନିଜକୁ ଆୟତ୍ତରେ ରଖିପାରିଲେ ନାହିଁ, ଏବଂ ଚାହିଁଲା ଯେ ସେ ମରିଯାଆନ୍ତୁ ?

ନା, ତା' ନୁହେଁ । ମୋଟେ ନୁହେଁ । ସେଇଥିପାଇଁ ତ ସେ ଏମିତି ଭାଙ୍ଗି ପଡ଼ୁଛି, ତା' ମନଟାକୁ ଠିକଣା ରଖିପାରୁନାହିଁ !

ଘୃଣା କରିବା ଦୂରର କଥା, ବସ୍ତୁତଃ ସେ ମହାଦେବ ସାମଲକୁ ଭକ୍ତି କରୁଥିଲା ।

ଭକ୍ତି କରୁଥିଲା, ଭଲ ପାଇଲା ପରି । ଯେଉଁ ଭଲ ପାଇବାରେ ଦୈହିକତା ନାହିଁ, ଅଂଶୀଳତା ନାହିଁ, କାମନାର ପ୍ରଶ୍ନ ଉଠୁ ନାହିଁ ।

ତା'ହେଲେ ସେ କେମିତି ବୁଝିଥିଲେ ଯେ ସେ ମରିଯାଆନ୍ତି ? ···ନା-ନା, ମୁଁ ସେମିତି ଭାବରେ ବୁଝିନାହିଁ, ଭାବି ନାହିଁ । ଭାବି ପାରି ନଥାନ୍ତି । କଳା ନଜର ସେଇ ପ୍ରଚ୍ଛନ୍ନ ଶକ୍ତି ଉପରେ ରାଗିଲା, ଭୀଷଣ ରାଗିଲା, ଯେ ହୁଣ୍ଡା ତା' ମନକଥାକୁ ବୁଝି ପାରିଲା ନାହିଁ, କ'ଣ ବୋଲି କ'ଣ କରି ପକାଇଲା । ହେ ଭଗବାନ୍ !

କିନ୍ତୁ ହୁଣ୍ଡା ଯଦି ଏଇକ୍ଷଣି ଆସି କଳାର ମୁକାବିଲା କରିଥାଆନ୍ତା, ଆଉ ପଚାରିଥାଆନ୍ତା ଯେ କୁହ ତମେ କେମିତି ଭାବରେ କଅଣ ବୁଝିଥିଲ, ତା'ହେଲେ କ'ଣ ସେ ତା'ର ସରଳସୁନ୍ଦର କରି ବୁଝେଇ ପାରିଥାଆନ୍ତା ?

ବୋଧହୁଏ ନୁହେଁ । ଯଦିଓ ମୋହନମଧୁର ସେଇ ଉଦ୍ଦେଶ୍ୟର ଉତ୍ସ । ଯେତେବେଳେ ଦେବବାବୁ ଆସି ବସିଥାଆନ୍ତି ଦାଣ୍ଡଘରେ, ନାନାଦି ଆଳାପ ଆଲୋଚନା ଚାଲିଥାଏ, ଏବଂ କଳା ମୁଗ୍ଧ ହୋଇ, ହେଲେ କଣେଇ କଣେଇ ଲୁଚେଇ ଲୁଚେଇ, ଅନେଇଥାଏ ତାଙ୍କ ମୁହଁକୁ । ସେ ମୁହଁ କୋମଳ ନୁହେଁ, କି ସାଧାରଣ ଅର୍ଥରେ ସୁନ୍ଦର ନ ହୋଇପାରେ, କିନ୍ତୁ ସେଥିରେ କିଛି ଅଧିକା ଅଛି ଯାହା ଆମ ଦୁନିଆଁରେ ନାହିଁ ବୋଲି ତା'ର ମନେ ହୁଏ । ପାତଳା ଗୁରୁଗୁଡ଼ିଆ ଦେହ । ପ୍ରଶସ୍ତ କପାଳ । ଏବଂ ଭାରି ଆଖିପତା ସାଙ୍ଗକୁ ସ୍ତିମିତ ଦୃଷ୍ଟି, ଯାହା କେବେହେଲେ ଜଳିଲା ପରି ମନେ ହୁଏ ନାହିଁ । ତା'ହେଲେ ଲୋକଟା ନେତା ହେଲା କେମିତି ? ରାଗି ନ ପାରିଲେ କେମିତି କୋଉ ବିପ୍ଳବର ନିଆଁକୁ ଜଳେଇ ପାରିବ, ଆଉ ଏଇ କୁତ୍ସିତ ସମାଜ ଓ ଶାସନର ବ୍ୟବସ୍ଥାକୁ ଭସ୍ମ କରି ଦେଇ ପାରିବ ? ନା ଜ୍ୱାଳାମୁଖୀ ଅପେକ୍ଷା କରିଛି, ଭିତରେ ଭିତରେ ଫୁଟୁଛି, କାନ୍ଦୁଛି, କୁହୁଳୁଛି ଦେଶ ପାଇଁ···ଶେଷକୁ ଦିନେ କେବେ ଫାଟିଫୁଟି ପଡ଼ିବ ? ଏବଂ ସେ ହସନ୍ତି ନହସିଲା ପରି, ଯେମିତିକି ତାଙ୍କ ଶାନ୍ତ ଚେତନା ଟିକିଏ ଟହଲି ଯାଉଛି ତମ କଥାରେ । ବୋଧହୁଏ ତା' ବି ନୁହେଁ, ଖାଲି ତମକୁ ଖୁସି କରିବା ପାଇଁ ସେଇ ସାମାନ୍ୟତମ ସ୍ଫୁରଣ, ସରାଗବୋଳା ଆମୋଦ । ସେତିକି ବେଳେ କଳାର ମନ ହୁଏ···କ'ଣ ମନ ହୁଏ ?

ମନ ହୁଏ ତାଙ୍କ ଗହୀରକୁ ଛୁଇଁପାରନ୍ତା । ସେଥିର ଘନୀଭୂତ ଶକ୍ତିକୁ, ଅସକ୍ତିକୁ, ଘୃଣାକୁ । ଏବଂ ତାକୁ କୁତୁକୁତୁ କରନ୍ତା, ଯେମିତିକି ସେ ବାସ୍ତବ-ସାଧାରଣ ମଣିଷ ପରି ଦେଖାଯାଆନ୍ତେ । ଝିଟିମତି ହସନ୍ତେ ଖୁସି ହେଲା ପରି, କିମ୍ବା ହୁଏତ ଚଟ୍‌କିନି ରାଗିଯାଆନ୍ତେ—ମୋ ଖୁସିବାସିଆ ଗୁରୁଚୁରିଆ, ହେଲେ କାମିକା କାନ୍ତ-ବାବୁଙ୍କ ପରି । ଧାତ୍, ଏଇ ଲୋକଟାକୁ ନେତା କଲା କଏମ ?

ସେଇଠୁଁ ତାଙ୍କୁ ଭୟ ଲାଗେ ଯେ ସେ ତା' ଭାବନାକୁ ଶୁଣିପାରୁଛନ୍ତି । ଧ୍ୟାନସ୍ଥ ମୁନି ପରି । ପର୍ବତ ପରି । ଶୁଣିଲାରୁ ସେ ଯେ କିଛି କହିବେ, ଧମକାଇବେ ମୋତେ, ତା' ନୁହେଁ । କିନ୍ତୁ ତାଙ୍କ ଆଡ଼କୁ ଅଉ ଅନେଇ ହେବ ନାହିଁ । ସତେକି ମୁଁ ଘୋର ନାସ୍ତି । ପାପ କରୁଛି, ତାଙ୍କ ପବିତ୍ରତାକୁ ମାଟି କରିବାକୁ ବସିଥିଲି !

ତା'ପରେ ଗୋଟାଏ ଅଦ୍ଭୁତ ଇଚ୍ଛା ହୁଏ । ହଉ, ହଉ, ତମେ ବଞ୍ଚିଛ ବୋଲି ସିନା ମୋତେ ଡରଉଛ ଏମିତି ? ଯଦି ମରିଯାଆନ୍ତ...ନେତାମାନେ ଅକାଳରେ ମରିଯାଆନ୍ତି ଯୁଦ୍ଧରେ କିମ୍ବା ଅନଶନ କରି, ଏବଂ ଶହୀଦ୍ ହୋଇଯାଆନ୍ତି । ସେଇଠୁଁ ତମେ ଅନ୍ୟ ସ୍ତରକୁ ଚାଲିଯାଆନ୍ତ, କେଉଁ ଦେବ ଲୋକକୁ । ଆଉ ତମକୁ ମୋଟେ ତୁଳନା କରିବାକୁ ପଡ଼ନ୍ତା ନାହିଁ ନର୍ମାଲ୍ ମଣିଷଙ୍କ ସାଙ୍ଗରେ, ମୋ ସ୍ୱାମୀଙ୍କ ସାଙ୍ଗରେ । ସେ ହେତୁ ମୁଁ ମନଇଚ୍ଛା ତମର ସେଇ ସୃଷ୍ଟିଛଡ଼ା ଚେହେରାକୁ ଭାବିପାରନ୍ତି, ଦେଖିପାରନ୍ତି, ଛୁଇଁପାରନ୍ତି...କଳ୍ପନାରେ, ସ୍ୱପ୍ନରେ...ମନଇଚ୍ଛା... ମନଇଚ୍ଛା...କୋଉ ଆଡ଼ୁ କିଛି ଡର ମାଡ଼ନ୍ତା ନାହିଁ, ପାପ ଲାଗନ୍ତା ନାହିଁ...ଆଃ !

କଲା କଦାପି ସ୍ୱୀକାର କରି ପାରି ନ ଥାଆନ୍ତା ଯେ ସେ ଠିକ୍ ଏହିପ୍ରକାର ଭାବିଥିଲି ଓ ଚାହିଁଥିଲି କେବେ । ତେବେ ସେ ମାନିଲା ଯେ ଏଇ ଲୋକଟି ନିହାତି ଭଲ ମଣିଷ, ଦେବତା ପରି, ତେଣୁ ହୁଏତ ତା' ମନରେ ଆସିଲା ଯେ ତାଙ୍କର ବଞ୍ଚି ରହିବା ଉଚିତ ନୁହେଁ ଏଇ ନଉଚ୍ଛୁଣା ସଂସାରରେ । ...ତା' ବୋଲି ମୁଁ କ'ଣ ସତରେ ଚାହିଁଥିଲି ସେ ମରିଯାଆନ୍ତୁ ବୋଲି ? ହେ ଭଗବାନ୍ !

ଯାହାହେଉ ଏତେ ବିଚଳିତ ହେବା ସତ୍ତ୍ୱେ ତା' ଆଖିରୁ ଟୋପେ ହେଲେ ଲୁହ ଝରି ନଥିଲା । ଝରିବ କେମିତି ? କୋଉ ଦେବତା କ'ଣ ମଣିଷର ଅନ୍ତରଙ୍ଗ ହୋଇପାରେ ଯେ ଇଏ ତା' ପାଇଁ କାନ୍ଦିବ ? ଅଧିକନ୍ତୁ କଲା ଯେତେବେଳେ ପ୍ରକୃତିସ୍ଥ ହୋଇ ଡାଣ୍ଡପରକୁ ଫେରିଗଲା ସ୍ୱାମୀଙ୍କ ହାଲଚାଲ ବୁଝିବା ପାଇଁ, ସେ ଆଶ୍ଚର୍ଯ୍ୟ ହେଲା ଯେ ସେ ରୁମାଲରେ ଆଖି ପୋଛୁଛନ୍ତି । ଏବଂ ତା' ମନଟା ଭରିଗଲା ସ୍ୱାମୀସୁହାଗରେ । ନିହାତି ସେଣ୍ଟିମେଣ୍ଟାଲ୍ ମଣିଷଟିଏ, ମୋ କାନ୍ତବାବୁ ! ହଁ, ଭିନ୍ନ ସଂସାରରେ, କହିବାକୁ ଗଲେ ଉପର ମହଲରେ ଥିଲେ ମଧ୍ୟ ସେ ଅତି ଭଲ ପାଉଥିଲେ ତାଙ୍କ ବନ୍ଧୁଙ୍କୁ । ପିଲାଦିନର ବନ୍ଧୁ, ଅନେକ ଦିନର...

କଲା କାନ୍ତର ହାତକୁ ଚାପି ଧରିଲା ଓ କହିଲା, "ଉଠ । ଯାହା ତ ହେବାର ହେଲାଣି । ଚାଲ, କପେ ଚା' ଖାଇବ ।"

କାନ୍ତ କଲାର କଥା ମାନି ଉଠି ପଡ଼ିଲା ଓ ତା' ହାତ ଧରି ଭିତର ଅଗଣାକୁ ଗଲା । କିନ୍ତୁ ତା' ପୂର୍ବରୁ ସେ କହି ପକାଇଲା ତା' ଶୋକ ସନ୍ତାପର ଶେଷ କଥା—

"ସେ ଯଦି ବେମାର ଆରାମରେ ପଡ଼ି ଗୁଲି ଯାଇଥାଆନ୍ତା, ତା'ହେଲେ ମୋତେ ବୋଧହୁଏ ବାଧି ନଥାଆନ୍ତା ଏତେଟା । କିନ୍ତୁ ତାକୁ ମାରିଦେଲେ ସେମାନେ, ମୋର ଆଖି ଆଗରେ ! ମୋତେ ସାକ୍ଷୀ ରଖିଲି ପରି—"

କଳାର ଚକ୍ଷୁ ବିସ୍ଫାରିତ ହେଲା । କହିଲା, "ତାହେଲେ ତମେ ଦେଖିଛ ଘଟଣାଟା ?"

"ହଁ, ଆଇ ମିନ୍, ପୂରାପୂରି ନହେଲେ ମଧ୍ୟ..."

କାନ୍ତ ଦେବୁକୁ ପିଲାଦିନୁ ଜାଣିଛି । ସେଇ ହିସାବରେ ସେ ତା' ପିଲାଦିନର ବନ୍ଧୁ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ଯଦି ଘନଘନ ଦେଖାସାକ୍ଷାତ, ମିଳାମିଶା, ଏବଂ ଏକାଠି ହେବାକୁ ବନ୍ଧୁତ୍ୱର ଲକ୍ଷଣ ବୋଲି ଧରି ନିଆଯାଏ, ତା'ହେଲେ ବୋଧହୁଏ ଖାଲି କଲେଜର ଏଇ କେଇଟା ବର୍ଷ ଭିତରେ କାନ୍ତ ତାର ପାଖ ହୋଇ ଆସିଛି । ଅଧିକରୁ ଅଧିକ, ଦେବୁର ଗ୍ରୁପନେତା ହୋଇ ଊର୍ଦ୍ଧ୍ୱରୁ ଊର୍ଦ୍ଧ୍ୱକୁ ଉଠିବା ସାଙ୍ଗରେ ତାଳ ଦେଲା ପରି । ଏବଂ ସମସ୍ତେ ଜାଣିଲେ ନକୁଳପୁରର ଏକ ବିଶିଷ୍ଟ ଜମିଦାର ବଂଶର ପ୍ରତିନିଧି ତଥା ଶିଳ୍ପପତି ଚୌଧୁରୀ ତାରାକାନ୍ତ ମହାନ୍ତିଙ୍କ ପୁଅ କାନ୍ତ ମହାନ୍ତି (କାନ୍ତ ସ୍ୱଇଚ୍ଛାରେ ତା'ର ପିତୃଦତ୍ତ ନାଆଁ 'ଚୌଧୁରୀ ସୀତାକାନ୍ତ ମହାନ୍ତି'କୁ ଛୋଟ କରି ଦେଇଛି) ଯୁବନେତା ମହାଦେବ ସାମଲର ଅନ୍ତରଙ୍ଗ ବନ୍ଧୁ । ମହାଦେବ ସାମଲର ବାପା କିଶୁ ସାମଲ ଜଣେ ମଲମୁଣ୍ଡିଆ, ହେଲେ ବିଚକ୍ଷଣ ମୋହରିର ଥିଲେ, ତାରାକାନ୍ତବାବୁଙ୍କ ନାନା ମାଲିମକଦ୍ଦମାରେ ବୁଦ୍ଧି ଯୋଗେଇଥିଲେ, ଏବଂ ସେହି ସୂତ୍ରରେ ତାଙ୍କର ମଡ଼କମୁହାଁ ପୁଅକୁ କେତେଥର ନେଇ ଯାଇଥିଲେ ଚୌଧୁରୀଙ୍କ ବୈଠକଖାନାକୁ, ଯେତେବେଳେ ପୁଅର ପ୍ରଥମ ପରିଚୟ ହୁଏ ଚୌଧୁରୀଙ୍କ ସମବୟସ୍କ ପୁଅ ସାଙ୍ଗରେ, ଏସବୁ ଖବର କିଏ ରଖିଛି ? ନା କିଏ ଜାଣିଛି ଯେ ପିଲାଦିନର ପରିଚୟରୁ ଯେଉଁ ବନ୍ଧୁତ୍ୱ କ୍ରମଶଃ ଗଢ଼ି ଉଠିଲା, ସେଥିରେ କାନ୍ତ ଆଡ଼ୁ କେତେ ପରିଶ୍ରମ, ଏବଂ ପୈତୃକ ସାମନ୍ତବାଦ ପ୍ରତି କିଭଳି ବିଦ୍ରୋହର ଭୂମିକା ରହିଛି ?

କାନ୍ତହିଁ ପ୍ରଥମେ ଯାଉଛି ମହାଦେବ ସାମଲ ପାଖକୁ ଓ ତା'ର କରମର୍ଦ୍ଦନ କରୁଛି, ଯେତେବେଳେ ତା'ର ନେତାପଣ ଗଜୁରି ଆସୁଥିଲା, ଏବଂ ନାନା ଗ୍ରୁପସଭାରେ ତା'ର ଟାଣୁଆ ଓଜନିଆ, ହେଲେ ଧୀର କଥାର ପ୍ରବାହକୁ ଶୁଣିବାକୁ ଭଲ ପାଉଥିଲେ ଅନେକେ । ହେଲେ ଶ୍ରୋତାମାନଙ୍କ ଭିତରୁ କେଇଜଣ ଆଗଭୁରି ଉଠି ଆସିଥିଲେ ମଞ୍ଚ ଉପରକୁ ତା' ସାଙ୍ଗରେ ହାତ ମିଳେଇବା ପାଇଁ ? ଯେଉଁମାନେ ବି ଯାଇଥିଲେ, ତାଙ୍କ ଭିତରୁ କେଇଜଣ ବିଦ୍ରୋହର ଭାବ ନେଇ ଯାଇଥିଲେ, ଯେ' ମୁଁ ମୋର ନିଜତ୍ୱ

ବଜାୟ ରଖିବାକୁ ଗୁହେଁ ? ଯଥା ମୁଁ ମୋ ବାପାଙ୍କ ପୁଅ ହୋଇପାରେ, କିନ୍ତୁ ତାଙ୍କ ସାମନ୍ତବାଦର ନୁହେଁ ? କାନ୍ତ ଆପଣାକୁ ଚହ୍ଲା ଦେଲା, କିନ୍ତୁ ଦେବୁର ଜଣାଥିଲା ଏଇ ଗୌରକାନ୍ତ, ସହାସ୍ୟ, ସୌଖୀନ ପିଲାଟି କିଏ । କାରଣ ତା'ର ସେଇ ମହଲ ଓ ବୈଠକଖାନା ମନେ ଥିଲା, ଯେଉଁଠିକି ସେ ପିଲାଦିନେ ଯାଇଥିଲା କେତେଥର ବାପାଙ୍କ ସାଙ୍ଗରେ । ଏବଂ ସେଥିରେ ରାଜକୁମାର, ଯାହା ସାଙ୍ଗରେ ସେ ଦୁଇ ବାପାଙ୍କ ପ୍ରରୋଚନା ସତ୍ତ୍ୱେ ଖେଳି ପାରି ନଥିଲା, ମନ ଖୋଲି ହସି ପାରି ନଥିଲା । ସେଇ ଜଣକ ଆଜି ତା'ର ସହପାଠୀ । ଏଇ ଲୋକଟି, ଯେ ଉଠି ଆସିଛୁ ତାକୁ ତା'ର ଭାଷଣ ପାଇଁ ବଧେଇ ଦେବା ପାଇଁ । ଉତ୍ତମ । ଦେବୁ କାନ୍ତର ଆଗ୍ରହକୁ ସ୍ୱୀକାର କଲା । ସେଥିରେ କୃତାପଟର ଭାବ ଥାଇପାରେ ବୋଲି ତା'ର ଖିଆଲ ନଥିଲା । ନେତୃତ୍ୱର ଗୁଡ ଚଉଡ଼ା କି ନା !

ପିଲାଦିନ ଓ ବଡ଼ଦିନ ଭିତରେ ଏଇ ବ୍ୟବଧାନ ବୋଧହୁଏ ନଥାଆନ୍ତା, ଯଦି ଦୁହେଁ ସ୍କୁଲରେ ଏକାଠି ପାଠ ପଢ଼ିଥାଆନ୍ତେ । ତା'ହେଲେ ସଙ୍କୋଚ ଧୀରେ ସୁସ୍ଥେ ତୁଟି ଯାଇଥାଆନ୍ତା । କିନ୍ତୁ ତା' ହୋଇ ପାରିଲା ନାହିଁ, କାରଣ ଦେବୁ ପଢ଼ିଲା ନଲିପୁରର ସରକାରୀ ସ୍କୁଲରେ, ଆଉ କାନ୍ତ ଗଲା କଟକର ଷ୍ଟୁଆର୍ଟ ସ୍କୁଲରେ ପାଠ ପଢ଼ିବା ପାଇଁ । ବାପା କହିଲେ, ତା'ହେଲେ ତୋ ମୂଳଦୁଆଟା ଠିକଣା ରହିବ, ତୁ ପାଞ୍ଚ ଲୋକଙ୍କ ସାମ୍ନାରେ ସ୍ମାର୍ଟ ହୋଇ କଥା କହିପାରିବୁ । ବିଦ୍ରୋହର ଧାରଣା ଆସି ନ ଥିଲା ସେତେବେଳକୁ, କାନ୍ତର ମନରେ ।

ଯାହାହେଉ ସୁଯୋଗ ପାଇଲେ କାନ୍ତ ଭଦ୍ରମିଷ୍ଟ ବ୍ୟକ୍ତିକୁ କହିବାକୁ ଭୁଲେ ନାହିଁ ଯେ ଦେବୁ ଆଜିକାର ନୁହେଁ, ସେ ମୋ ପିଲାଦିନର ସାଙ୍ଗ । ସେଇଠୁଁ ଦେବୁ ହସିଦିଏ ତା'ର ସେଇ କୃପଣ ହସ ଯାହା କଲାକୁ 'ରଗାଏ' ସିନା, କାନ୍ତକୁ ଆଦୌ ହଇରାଣ କରି ପାରେ ନାହିଁ । ବେଳେ ବେଳେ ସେ ମଧ୍ୟ ନିଜକୁ ପୁଚ୍ଛେ, ସଫେଇ ଦେଲା ପରି—କିଏ ଭଲା ତା'ର ପିଲାଦିନର ସାଙ୍ଗକୁ ସ୍ୱା'ଠାରୁ ବେଶୀ ଭଲ ପାଇ ପାରିବ ?

ନା କିଏ ଏତେ ହିଂସା କରି ପାରିବ ଯେ ମୁଁ ତା'ର ସମକକ୍ଷ ହୋଇ ପାରିଲି ନାହିଁ, ସେ ମୋଠୁଁ ବଡ଼ ହୋଇ ରହିଗଲା ? ଭଲ ପାଇବା ସାଙ୍ଗରେ କିଏ ଏତେ ବଡ଼ ସମ୍ମାନ ଦେଇ ପାରିଥାଏ ତା' ବନ୍ଧୁକୁ ?

ଶୋକ ସାଙ୍ଗକୁ ତାଙ୍କ ସମ୍ପର୍କରେ ଏଇ ଅନନ୍ୟ ବସ୍ତୁଟି କାନ୍ତକୁ ଉସ୍କେଇଲା ସେଦିନ, ତା'ର ସମୁଚିତ ବ୍ୟାଖ୍ୟା କରିବା ପାଇଁ ।

...ହଁ, ସେ ମୋର ଈର୍ଷାଭାଜନ । ତା'ର ମାହାତ୍ମ୍ୟ ବୁଝିପାରିବନି ତମେ ସବୁ, ବସ୍ତୁବାଦୀ ସାଧାରଣ ଲୋକେ । ବୁଝିପାରିବନି ଯେ ଈର୍ଷାର କାରଣ ହେଉଛୁ ସେ ଏକ ଅନାମଧେୟ ଏବଂ ଗରିବ ଘରେ ଜନ୍ମ ହୋଇଛୁ । ସେଇଲାଗି ସେ କଞ୍ଚା

ମାଟିର ବାସ୍ନା ପାଇଛି ଓ ସେଇଠୁଁ ବଳ ପାଇଛି ଆକାଶକୁ ଛୁଇଁବା ପାଇଁ । ଜନ୍ମରୁ ବଟିକା ଗିଳିଛି—କ୍ରୋଧର, ଉଦ୍ୟମର, ଉଦ୍ଦେଶ୍ୟର, ଯେମିତିକା ସେ କିଛି ଗୋଟାଏ ହବ ବଡ଼ ହେଲେ, ଆଉ ଏଇ ଘୃଣିତ ସମାଜ ବ୍ୟବସ୍ଥାକୁ ଓଲଟେଇ ଦେବ । ଆଉ ମୋର ଉଚ୍ଚାଭିଳାଷ ହେଉଛି କ'ଣନା—ବାପାଙ୍କୁ ଧନ୍ୟବାଦ—ମୁଁ ଗୋଟାଏ ବଡ ହାକିମ ହେବି, ଯାହା ସେ ହୋଇ ପାରି ନଥିଲେ । ସେଇଲାଗି ଏମ୍. ଏ. ପରେ ମୁଁ ଘରେ ବସି ଲାଗି ପଢ଼ୁଛି କେମିତି ଆସନ୍ତା ଆଇ. ଏ. ଏସ୍. ପରୀକ୍ଷାରେ ପାସ୍ କରିବି ବୋଲି, ଆଉ ସେ ଲ' ପଢ଼ି ତଥାପି ଗ୍ରୁପ ହୋଇ ଅଛି ଓ ତା'ର ନେତାପଣକୁ ଆହୁରି ବଢ଼େଇ ଚାଲିଛି ।

ଭାବ ନାହିଁ ଯେ ମୋ ମୁଣ୍ଡ ଖରାପ । କିମ୍ବା ମୋର ଦୁଃଖ ଯେ ମୁଁ ନାମଜାଦା ବଡ଼ଲୋକ ଘରେ ଜନ୍ମ ହୋଇଛି, ମୁଁ ଭଲ ପଢ଼େ, ଭଲ ଖେଳୁଆଡ଼୍, ଶାନ୍ତଶିଷ୍ଟ ଲୋକପ୍ରିୟ ଗ୍ରୁପ, ଏବଂ ଅବଶ୍ୟ ଆଇ. ଏ. ଏସ୍. କି ସେମିତି କିଛି ହେବି ତା' ନୁହେଁ । କିନ୍ତୁ କଥା ହେଉଛି ଯେ ତଥାପି ସେ ମୋର ଈର୍ଷାର ପାତ୍ର, କାରଣ ମୋର ମୂଲ୍ୟବୋଧ ଭିନ୍ନ । ମୁଁ ଜାଣେ ନେତାଗୁଣର ଜ୍ୟୋତି, ତା'ର ମହତ୍ତ୍ୱ, ମହତ୍ତ୍ୱରୁ ବଳି ବୀରତ୍ୱ, ଭିନ୍ନ ଧାତୁରେ ଗଢ଼ା । ଯାହା ମୋ ଦେଇ ହେଲା ନାହିଁ, କଦାପି ହୋଇ ପାରି ନ ଥାଆନ୍ତା, କାହିଁକିନା ମୁଁ ଜନ୍ମଦୋଷରେ ଦୁଷ୍ଟ । ଆଉ ଆଜି ତ ମୋ ବନ୍ଧୁ ଶହୀଦ୍ ହୋଇଗଲା ! ଏଥର କରୁଥା କେତେ ହିଂସା କରିବୁ ତାକୁ !!…

କାନ୍ତ ନିଜକୁ ଛୁଟୁଲେଇଲା । କିନ୍ତୁ ତିକ୍ତତାରେ ନୁହେଁ, ଖଲାସ ହୋଇ ନିଃଶ୍ୱାସ ମାରିଲା ପରି । ସତେକି କଥାଟା ଛିଣ୍ଡି ଗଲା ଯାହାହେଉ । …ଏଣିକି ଈର୍ଷା, ଅସୂୟା, ଇତ୍ୟାଦି ମନଭିତର ପ୍ରଶ୍ନ ଉଠୁନାହିଁ । ଏଣିକି ଖାଲି ଶ୍ରଦ୍ଧାଞ୍ଜଳି । ହେଲେ ଶ୍ରଦ୍ଧାଞ୍ଜଳି ଦେଲାବେଳେ ମୁଁ ବାରି ହୋଇଯିବି ଅନ୍ୟ ଶ୍ରଦ୍ଧାଳୁଙ୍କଠାରୁ । ସେଇ ହେଉଛି ମୋର ଗୌରବ । କାରଣ ମୁଁ ତାର ବନ୍ଧୁ ଥିଲି, ଅନ୍ତରଙ୍ଗ ବନ୍ଧୁ । ସାରା ନକୁଳପୁରକୁ ଜଣାଅଛି ଆମର ଏଇ ସମ୍ପର୍କର ଅପୂର୍ବ ବନ୍ଧୁତ୍ୱବୋଧ, ତା'ର ଚମତ୍କାର ।

ସତକଥା କହିବାକୁ ଗଲେ ମୁଁ କେବେଠୁଁ ଡରୁଥିଲି ଏଇଆ ହେବ ବୋଲି । ଦି' ବର୍ଷ ତଳେ ଯେତେବେଳେ ମଣ୍ଡଳ କମିଶନ ରିପୋର୍ଟ ନେଇ ନାନା ଗଣ୍ଡଗୋଳ ହେଲା । କିନ୍ତୁ ସାରା ପ୍ରଦେଶ, ସାରା ଭାରତ ଜଳୁଥିଲା ବେଳେ ଆମ ନକୁଳପୁର ଶାନ୍ତ ହୋଇ ରହିଲା । ଦେବୁ କୁହୁଳା ନିଆଁକୁ ଚପେଇ ରଖିଲା, କହିଲା ଏମିତି ନୁହେଁ, ଅନ୍ୟାୟର ଚେହେରା ଦୋସରା, ଆଉ ତାକୁ ଏମିତି ଓଲଟେଇ ଦେବା ହେବ ନାହିଁ, ନିଜ ନିଜ ଭିତରେ ମାଡ଼ଗୋଳ ହୋଇ । ମୁଁ ଆଶ୍ୱସ୍ତ ହେଲି । କିନ୍ତୁ

ଯେତେବେଳେ ସରକାର ଜଣେଇଲେ ଯେ ଆମ କଲେଜ ଏଠୁ ଉଠିଯିବ, ସହରର ବାହାରକୁ ଚାଲିଯିବ, ଯେମିତିକି ଛାତ୍ରଙ୍କ ପାଟିତୁଣ୍ଡ କାହାରିକୁ ଶୁଭିବ ନାହିଁ, ସେଇଠୁ ସେବୁ ତାର ଉଠିଲା, ଓ ଅନ୍ୟମାନଙ୍କୁ ଉତେଇଲା । କହିଲା—ନା ! ଆମେ ତା' ହେବାକୁ ଦେବୁ ନାହିଁ । ଆମେ ଭଲ କହୁ କି ଖରାପ କହୁ, ମଣ୍ଡଳକୁ ଟେକି ଧରୁ କି ତଳେ ପକେଇ ଦେଉ, ତମେ ଆମ କଥା ଶୁଣିବ । ନକୁଳପୁରର ଖାସ୍ ଲୋକେ, ଅଫିସ୍, କଚେରି, ସିନେମା ଥିଏଟର୍, ବଡ଼ବଜାରର ଜନତା । ଶୁଣିବାକୁ ବାଧ୍ୟ ! ଇଏ ହେଉଛି ଆମର ମୌଳିକ ଅଧିକାର । ସେଇଠୁଁ କଥାଟା ବଢ଼ି ବଢ଼ି ଗଲା, ଆଉ ଆଜି ଏଇ ଦଶା । କେଡେ ବିଚକ୍ଷଣ ବୁଦ୍ଧି ଲୋକଟାର ! ଦେଶର ପୁରୁଣା ନେତା ବି ତା' ପାସଙ୍ଗରେ ପଡ଼ିବେ ନାହିଁ ।...

"ବୁଝିଲ କଳା", କାନ୍ତର ମନେ ପଡ଼ିଲା ଅତୀତର ଗୋଟାଏ ଘଟଣା ଯେଉଁଥିରେ ନିଜକୁ ଧନ୍ୟବାଦ ଦେବା ଉଚିତ, "ସିନିଅର୍ କେମ୍ବ୍ରିଜ୍ ପରେ ମୁଁ ଯଦି ଜିଦ୍ କରି ନଥାଆନ୍ତି ଯେ ମୁଁ ରେଭେନ୍ସା କଲେଜରେ ପଢ଼ିବି ନାହିଁ, ଏଇ ନକୁଳପୁରରେ ପଢ଼ିବି, ଏଇ ହେଉଛି ମୋର ଜନ୍ମସ୍ଥାନ, ତା'ହେଲେ ମୁଁ ମୋ ପିଲାଦିନର ବନ୍ଧୁକୁ ପୁଣି ଫେରିପାଇ ନଥାଆନ୍ତି...ଆଉ ମୁଁ ତା' ପାଖରେ ନଥାଆନ୍ତି ଆଜି, ତା'ର ଶେଷ ମୁହୂର୍ତ୍ତରେ..."

କଳା ମୁଣ୍ଡ ଟୁଙ୍ଗାରିଲା । କିନ୍ତୁ ସେ କଥାଟାର ତାତ୍ପର୍ଯ୍ୟ ବୁଝିଲା ପରି ମନେ ହେଲା ନାହିଁ ।

କ୍ରମଶଃ ଆତ୍ମ-ଗୌରବର ଗୋଟାଏ ଦାଗ, ଅନୁପମ ଓ ବିଶିଷ୍ଟ ଦାଗ, ଦାଗିଗଲା କାନ୍ତ ମହାନ୍ତିକୁ । ସେ ଭାବିଲା ଯେ କାନ୍ତ-ମହାଦେବ ବନ୍ଧୁତ୍ୱ ହୁଏତ ଜଣା ନଥିବ ସମସ୍ତଙ୍କୁ । ଠିକଣା ଭାବରେ । ...ତେଣୁ ମୁଁ ଆଜି କହିବି, ମୋର କହିବା ଉଚିତ, ମୁକ୍ତକଣ୍ଠରେ ଘୋଷଣା କରିବା ଉଚିତ, ଯେ—

'ମୁଁ ସେଇଠି ଥିଲି । ମୁଁ ସେଇଠି ଥିଲି ମୋର ବନ୍ଧୁର ଶେଷ ମୁହୂର୍ତ୍ତରେ ଯେତେବେଳେ ତାକୁ ମାରିଦେଲେ ସେମାନେ !

ବନ୍ଧୁ ଭିତରେ ମୁହିଁ ଏକା । ଆଉ କିଏ ଥିଲା କି ? ବାକି ସମସ୍ତେ ତା'ର ସହକର୍ମୀ, କିମ୍ବା ତା'ର ଚେଲା । କେବଳ ମୁହିଁ ଜଣେ ଯେ ତା' ଦଳର କି ପଲିଟିକ୍ସର ନୁହେଁ, ହେଲେ ତାକୁ ଭଲ ପାଏ, ଏବଂ ଟାଣି ହୋଇ ଯାଇଥିଲି ସେଠିକି ତା'ର ଶେଷ ଦୃଶ୍ୟ ଦେଖିବା ପାଇଁ । ଏଇ ହେଉଛି ଆମ ବନ୍ଧୁତ୍ୱର ଜ୍ୱଳନ୍ତ ସ୍ୱାକ୍ଷର...କାଳକାଳକୁ...

ସେଦିନ ରାତି ହେଲା ପୂର୍ବରୁ କାନ୍ତ ଏଇ ଅନୁଭବରେ ଓତପ୍ରୋତ ହେଲା । ଯେତେ ଲୋକ ଆସିଲେ କି ଟେଲିଫୋନ୍ କଲେ ଆଜିକାର ଶୃଙ୍ଖଳାକର ଘଟଣା ତଥା ମୃତ୍ୟୁକୁ ନେଇ, କାନ୍ତ ଆଗରୁଁ ଜଣାଇଦେଲା ତାଙ୍କୁ—"ଆରେ ମୁଁ ସେଇଠି ଥିଲି ପରା !..."

ରାତିରେ ସେ ସମ୍ପୂର୍ଣ୍ଣ ଭାବରେ ମିଳିତ ହୋଇ ପାରିଲା କଳା ସାଙ୍ଗରେ କାରଣ ତା'ର ମନଟା ଉପଲବ୍ଧିରେ ଉବୁଟୁବୁ ହେଉଥିଲା, ଦୁଇ କୂଳ ଛୁଇଁ । ସତେକି ସେ ବନ୍ଧୁତ୍ୱ ନାମକ ଜୀବନର ଗୋଟାଏ ବିରାଟ କାର୍ଯ୍ୟ ସମ୍ପାଦନ କରି ଆସିଛି, ତେଣୁ ନିଜକୁ ବିଶେଷ ଭାବରେ ବଧେଇ ଦେବା କଥା । ତଥା ସ୍ୱପତ୍ନୀକୁ । ଏବଂ ମରଣକୁ ଉତ୍ତର ଦେଉଥିବା ଏଇ ଜୀବନ୍ତ ଜୀବନକୁ । କିନ୍ତୁ କଳା କିଛି ଭାବୁ ନଥିଲା । ହୁଏତ ଏମିତି ଭାବିବାର ଶକ୍ତି ନଥିଲା ତା'ର । ସେ କେବଳ ପାଉଥିଲା । ଏକାଧାରରେ ତା' ଅତି ଆଦରର ସ୍ୱାମୀଙ୍କୁ, ଏବଂ ଅତି ଗୋଟାଏ ଭାବମୂର୍ତ୍ତିକୁ, ଯାହା ଅନ୍ଧାର ସାଙ୍ଗରେ ମିଶି ଯାଇଥିଲା, କାହିଁ କେତେ ଉର୍ଦ୍ଧ୍ୱରେ ଥାଇ ମଧ୍ୟ ଓହ୍ଲେଇ ଆସିଥିଲା ତା'ର ଦେହମନ ଉପରକୁ ଏବଂ ହସୁଥିଲା ନ ହସିଲି ପରି । କହୁଥିଲା, ଏଥର ଆଉ ଭୟ କଅଣ, ଲାଜ କଅଣ...

ଛାତ୍ରମାନଙ୍କ ତରଫରୁ ଯେଉଁ ପ୍ରତିବାଦ ସଭାର ଆୟୋଜନ କରାଯାଇଥିଲା ତା' ପରଦିନ, ସେଠି ମଧ୍ୟ କାନ୍ତ ମହାନ୍ତି ହାଜର ହୋଇଗଲା । ବାପାଙ୍କର ଆପତ୍ତି ସତ୍ତ୍ୱେ । ଏବଂ ସୁବିଧା ପାଇଲାକ୍ଷଣି ପାଖ ଲୋକଙ୍କୁ ଜଣେଇ ଦେଲା ଯେ ସେ ସେଇଠି ଥିଲା । ସଭାରେ ଧାର୍ଯ୍ୟ ହେଲା ଯେ ପୁଲିସ୍ ଗୁଳିର ଜବାବ୍ ଦେବାକୁ ପଡ଼ିବ । ଯେଉଁ ସରକାର ଆମ ପ୍ରାଣପ୍ରିୟ ନେତାଙ୍କୁ ଅଯଥାରେ ଅକାରଣରେ ମାରି ପକେଇଲା, ତାକୁ ନଡ଼େଇବା ଯାଏଁ ଆମର ଏଇ ଆନ୍ଦୋଳନ ଚାଲୁ ରହିବ । ଆମେ ମାନିବୁ ନାହିଁ ତମର ୧୪୪ ଧାରାକୁ, ଆମକୁ କେତେ ମାରୁଛ ମାର । ଇତ୍ୟାଦି ।

ଶେଷକୁ ସରକାର ମୁଣ୍ଡ ନୋଇଁଲା । ମୁଖ୍ୟମନ୍ତ୍ରୀ ଘୋଷଣା କଲେ ଯେ ଗୁଳିକାଣ୍ଡର ତଦନ୍ତ କରାଯିବ । ଏବଂ ଯଦି ପ୍ରମାଣିତ ହୁଏ ଯେ ପୁଲିସ୍ ନୀତିନିୟମର ଲଂଘନ କରିଛି, ଅକାରଣରେ ଗୁଳି ଛାଡ଼ିଛି ମହାଦେବ ସାମଲ ଉପରକୁ, ତା'ହେଲେ ଦୋଷୀକୁ, ଉପଯୁକ୍ତ ଦଣ୍ଡ ଦିଆଯିବ । ଛାତ୍ରମାନେ ଏତିକିରେ ସନ୍ତୁଷ୍ଟ ହେଉ ନ ଥିଲେ । କିନ୍ତୁ କ୍ରମଶଃ ଥଣ୍ଡା ପଡ଼ିଲେ । ନିରପେକ୍ଷ ଶୁଭେଚ୍ଛୁମାନଙ୍କ ପରାମର୍ଶକୁ ସ୍ୱୀକାର କଲେ । ବିଶେଷତଃ ଯେତେବେଳେ ମନ୍ତ୍ରୀମହୋଦୟ ପୂର୍ବ ନିଷ୍ପତ୍ତିକୁ ବାତିଲ କରି ଘୋଷଣା କଲେ ଯେ ଚିଫ୍ ସେକ୍ରେଟେରୀ ଆର୍. ସି. ଦାସଙ୍କ ପରିବର୍ତ୍ତେ ତଦନ୍ତ ଚଳାଇବେ ଜଣେ ହାଇକୋର୍ଟ ଜଜ୍ । ବିଧିବଦ୍ଧ ନିୟମ ଅନୁଯାୟୀ ।

ଏଇ ଘୋଷଣାର କିଛିଦିନ ପରେ ଗୋଟାଏ ଟେଲିଫୋନ୍ ଆସିଲା ଚୌଧୁରୀ ତାରାକାନ୍ତ ମହାନ୍ତିଙ୍କ ଘରକୁ । ଚୌଧୁରୀଙ୍କ ପାଇଁ ନୁହେଁ, ତାଙ୍କ ପୁଅ କାନ୍ତବାବୁଙ୍କ ପାଇଁ । କାନ୍ତ ଶୁଣିଲା ଗୋଟାଏ ସାରୁଲା, ହେଲେ ଅଚିହ୍ନା କଣ୍ଠର ଶବ୍ଦ—"କିଏ କାନ୍ତବାବୁ କହୁଛନ୍ତି ? ମୁଁ ମୋହନ ଦାସ କହୁଛି । ପୁଲିସ୍ ଇନ୍‌ସ୍‌ପେକ୍ଟର୍ । ମୋର ଟିକିଏ କଥା ହେବାର ଅଛି ଆପଣଙ୍କ ସାଙ୍ଗରେ···ଯଦି ଆପଣଙ୍କର କିଛି ଆପତ୍ତି ନଥାଏ । କହିଲେ ମୁଁ ଆପଣଙ୍କ ଘରକୁ ଯିବି । ନହେଲେ ଆଉ କେଉଁଠି ଭେଟିବା । ଧରନ୍ତୁ ଆଜି ସନ୍ଧ୍ୟା ଛଅଟା ବେଳକୁ, 'ଜାଲଝୋଲା' ରେସ୍ତୋରାଁରେ···"

"କିନ୍ତୁ କାହିଁକି ?", କାନ୍ତ ଈଷତ୍ ଉଦ୍‌ବିଗ୍ନ ହୋଇ ପଚାରିଲା ।

"କାହିଁକିନା ଆପଣ ହେଉଛନ୍ତି ମହାଦେବ ସାମଲର ବନ୍ଧୁ । ଏବଂ ଆପଣ ସେଇଠି ଥିଲେ । କିନ୍ତୁ ଆପଣ ତାଙ୍କ ଦଳର ନୁହଁନ୍ତି । ଆପଣ ଭଦ୍ରଲୋକ । ଖାନ୍‌ଦାନ ବଂଶର ପିଲା । ଆପଣ ସତ କହିବେ···"

କାନ୍ତ ଚିଡ଼ି ଉଠିଲା ମନେ ମନେ । କଅଣ ମତଲବ ତମର ? ଦେବୁର ବନ୍ଧୁ ବୋଲି ମୁଁ କ'ଣ ଭଦ୍ରଲୋକ ନୁହେଁ ନା ସତ କହିବ ନାହିଁ ? ଦେବୁକୁ (ମୋତେ) କ'ଣ ବୋଲି ପାଇଛ କି ତମେ ?

ଯାହାହେଉ ପ୍ରସ୍ତାବକୁ ଉପେକ୍ଷା କରିବାର ଉପାୟ ନ ଥିଲା । ତେବେ ରେସ୍ତୋରାଁ ମିଟିଂକୁ ବାହାରିଲା ବେଳକୁ ତା' ମୁହଁ ଧାନଉଷୁଆଁ ହାଣ୍ଡି ପରି ଦେଖା ଯାଉଥିଲା । କାରଣ ସେ ଆହୁରି ଚିଡ଼ି ଉଠିଲା ଯେତେବେଳେ ବାପା କହିଲେ, "ମୁଁ ଶୁଣିଲି ସେମାନେ ଡାକିଛନ୍ତି ତୋତେ । ଭଲ । ମୋହନ ଦାସ କିଏ ଜାଣିଛୁ ତ ? ଏଣୁତେଣୁ କିଛି କହିବୁ ନାହିଁ । ଭୁସ୍‌କିନା ରାଗିଯିବୁ ନାହିଁ । ତୋର ବି ତ ଗୋଟାଏ ଭବିଷ୍ୟତ ଅଛି ? ' କଳା ବି ପଦେ କଥା କହିଲା ତା' ପିଠି ଆପୁଡ଼େଇ, ସେ ସଜବାଜ ହୋଇ ଘର ଛାଡ଼ିବା ପୂର୍ବରୁ, ଯାହାର କୌଣସି ଅର୍ଥ ନାହିଁ । କହିଲା, "ଆମକୁ ତ ଚଳିବାକୁ ହେବ ସଂସାରରେ—ମୋତେ ସେମାନେ ପିଲା ବୋଲି ଭାବିଛନ୍ତି ନା କ'ଣମ ?

ହଁ, ମୁଁ ଜାଣିଛି ମୋହନ ଦାସ କିଏ । ଖୋଦ୍ ଚିଫ୍ ସେକ୍ରେଟେରୀ ଆର୍. ସି ଦାସଙ୍କ ଛୋଟପୁଅ । ବଡ଼ମାମୁଙ୍କ ପୁଅ ମଣ୍ଟୁଭାଇ ସାଙ୍ଗରେ ପଢ଼ୁଥିଲା । ଧରାଧରି କରି ପୁଲିସ୍ ଚାକିରିରେ ପଶି ଯାଇଛି, କିନ୍ତୁ ପ୍ରମୋସନ୍ ପାଇ ଚାଲିଛି । କାଲି ସକାଳେ ହୁଏତ ଏସ୍. ପି. ହେବ, ଆଇ. ଜି. ହେବ । କ'ଣ ହେଲା ସେଇଠୁଁ ? ମୋର କ'ଣ ଚଳିବ ?

ମୋର ଭବିଷ୍ୟତ ଅଛି । କ'ଣ ନ ଥାଆନ୍ତା କି ? ମୁଁ କଣ ଚକ୍ଷୁ ଦେଇ ପାଠ ପଢ଼ୁଛି ? ମୁଁ ନିଶ୍ଚୟ କିଛି ଗୋଟାଏ ହେବି, ଆଉ ଚେଙ୍ଗେ ଦେବି ମୋହନ ଦାସ ପରି ଅଯୋଗ୍ୟ ଅଫିସରମାନଙ୍କୁ । ଏବଂ ମୁଁ ଅବଶ୍ୟ ଚଳିବି ତମ ସଂସାରରେ । ଶହୀଦ୍ ନହୋଇ ପାରିଲି ନାହିଁ, ସୁଖୀ ବି କରିପାରିବି ନାହିଁ ?

କିନ୍ତୁ ମୁଁ ସତ କହିବି । ପୂର୍ଣ୍ଣଚ୍ଛେଦ ।

ଇନ୍‌ସ୍‌ପେକ୍ଟର୍ ମୋହନ ଦାସଙ୍କୁ ଦେଖିଲାକ୍ଷଣି ମନେ ହେଲା ଯେ ସ୍ତ୍ରୀ'କୁ କଦାପି ଶ୍ରଦ୍ଧା କରିହେବ ନାହିଁ । ତା'ର ବେପରୁଆ ଠାଣି ? କୁତ୍ସିତ ନାଲି-ପଗଡ଼ିର ସଂସ୍କାର ? ନା ଯଥାର୍ଥ ଚିନ୍ତାଚେତନାର ଅଭାବ, ଯେଉଁଥିପାଇଁ ସେ ମୋ ଶହୀଦ୍ ବନ୍ଧୁର ଅପରପାଖ, ଭଗବାନଙ୍କ ସଇତାନ୍ ବୋଲି ମନେ ହେଉଛି ? ମୋହନ ଦାସ କହି ଚାଲିଛି, ଆଉ ଖଣ୍ଡେ ଖଣ୍ଡେ ହସ ଛାଡ଼ି ଦେଉଛି ମଝିରେ ମଝିରେ, ଯେମିତିକି କଥାଟା ଭାରି ମଜାର, ଓ ସେଥିରେ ଅତିଥିଙ୍କର ଯୋଗ ଦେବା ଉଚିତ ।

"...ବୁଝିଲେ କାନ୍ତବାବୁ, ମୁଁ ଆପଣଙ୍କ ବନ୍ଧୁଙ୍କୁ ଦୋଷ ଦେଉ ନାହିଁ । ପୋଡାମୁହାଁ ନକେ ଗୋଟାଏ ଖାସି ଲୋକ । କୁଣିକ୍ଷାରେ ପଡ଼ି ମଲା । କିନ୍ତୁ କୁହନ୍ତୁ ଭଲା, ଇଏ କେଉଁ ଆଡ଼ର ବିଦ୍ରୋହ, କେମିତିକା ଇନ୍‌କିଲବ୍ ? ଇଏ କୋଉ ପନ୍ଥାବ ହୋଇଛି ଯେ ଠିକ୍ ହେଉ ଭୁଲ୍ ହେଉ, ତମେ ଗୋଟାଏ ଦେଶ ଗଢ଼ିବାକୁ ବସିଛ ? ମଣ୍ଡଳ ନେଇ ମାତିଥିଲେ ବି ମୁଁ ହୁଏତ ମାନି ନେଇ ଥାଆନ୍ତି । କିନ୍ତୁ ଏଇ ଗୋଟାଏ ତୁଚ୍ଛା କଥା, ପିଲା ଯେମିତି ହୁଅନ୍ତି, କ'ଣ ନା ଆମେ ବାରିଆଡ଼େ ଖେଳିବୁ ନାହିଁ, ଆମେ ତମ ସଭା ମଝିରେ ପାଟି କରିବୁ...ହ୍ୟାପ ଯେତେକ ଲଫଙ୍ଗା ବାଳୁଙ୍ଗା ଟୋକା—

(କିଏ କହୁଛି ଏକଥା ? ତମ ମୁହଁକୁ ଲାଜ ନାହିଁ ? ନା, ଲାଜ ନାହିଁ । କାହିଁକନା ତମେ ହେଉଚ ଶାସନ, ପୁଣି ଶାସନର ପୁଅ...କାନ୍ତ କୁଟିଳ ହସ ହସିବାକୁ ଚାହିଁଲା, କିନ୍ତୁ ତାକୁ ଉଦ୍‌ଗମରୁ ଆଗେଇ ନେଇପାରିଲା ନାହିଁ)

"...ଏଇକ୍ଷଣି କ'ଣ ଗୋଟାଏ ହପ୍‌ପା ଉଠିଛି ଜାଣନ୍ତି ? ଯେ ମହାଦେବ ସାମଲ କୁଆଡ଼େ ତଳକୁ ମୁଣ୍ଡ କରିଥିଲା, ମାଟିରେ ଗାର କାଟୁଥିଲା (ହେଁ-ହେଁ), ନ ହେଲେ ଗୁଳି ତା ମୁଣ୍ଡରେ ବାଜି ନଥାନ୍ତା । ହୁଏତ ଟେକା ଭଳିଆ କିଛି ଗୋଟାଏ ଜିନିଷ ଉଠଉଥିଲା । କିନ୍ତୁ ତାକୁ ଫିଙ୍ଗି ନଥିଲା, ମୁଣ୍ଡଟେକି ନଥିଲା, ଠିଆହୋଇ ନଥିଲା...ହ୍ୟାପ ଯେତେକ ଫିସାଦିଆ କଥା—"

(ହଁ, ସେଇଆ ତ...ମୁଁ ପରା ସେଇଠି ଥିଲି !)

"ଆମେ ଏଇ ଗାଳୁଗପକୁ ଉଡ଼େଇ ଦେବାକୁ ଚାହୁଁ । କହିବାକୁ ଚାହୁଁ ଯେ ସେ ଠିଆହୋଇଥିଲା, ଅଳ୍ପ ମାଡ଼ ଆସୁଥିଲା ଆମ ଆଡ଼େ, ତା' ଟେକା ବି ଧାଇଁ ଆସୁଥିଲା, ତେଣୁ ଆମର ଅନ୍ୟ ଉପାୟ ନଥିଲା । କଅଣ ବୁଝିଲେ ନା ମୁଁ କ'ଣ କହୁଛି ?"

(ମିଛ···ମୁଁ ପଛ ସେଇଠି ଥିଲି ! )

"ଏଇ ହେଉଛି ସତ କଥା । ଏଥିକି ପ୍ରମାଣିତ ନ ହେଲେ କୋଉ କନ୍‌ଷ୍ଟେବଲ୍ ଦଣ୍ଡ ପାଇବ କି ମୋ ଖାତା ଖରାପ ହେବ, ସେକଥା ପଡ଼ୁ ନାହିଁ । ଶାସନର ମୁହଁ କଳା ପଡ଼ିଯିବ, ସରକାରଙ୍କ ଉପରୁ ଲୋକଙ୍କ ଆସ୍ଥା ତୁଟିଯିବ, ସେ ଯୋଉ ସରକାର ହୁଅନ୍ତୁ ପଛେ, ଦେଶରେ ସ୍ଥିରତା ରହିବ ନାହିଁ, କେହି କାହାକୁ ମାନିବେ ନାହିଁ, ପିଲା ପାଠ ପଢ଼ିବେ ନାହିଁ, ଚୋର ଧରା ପଡ଼ିବେ ନାହିଁ···ଅରାଜକତା ଆଉ କାହାକୁ କୁହନ୍ତି ?"

(ଇଏ ମୋହନ ଦାସ ନୁହେଁ । ଭଣ୍ଡିହର, ଚାଣକ୍ୟ । କିନ୍ତୁ ତା' ବୋଲି ମୁଁ କଣ ମିଛ କହିବି ?)

"ତେଣୁ ଆମର ବିଶ୍ୱାସ ଆପଣ ଠିକଣା କଥା କହିବେ । ଯେଉଁଥିରେ ଦେଶର ଓ ଦଶର ମଙ୍ଗଳ ହେବ, ସେଇଆ କହିବେ । ଆପଣ ଯେଉଁ ବଂଶର ପିଲା, ଆପଣଙ୍କର ଯେମିତିକା ବ୍ୟାକ୍‌ଗ୍ରାଉଣ୍ଡ୍ । କୋଉ ଓକିଲ ଆପଣଙ୍କ ସାକ୍ଷ୍ୟକୁ ଓଲଟେଇ ଦେଇ ପାରିବ ନାହିଁ, କୋଉ ଜଜ୍ ଆପଣଙ୍କୁ ବିଶ୍ୱାସ ନ କରି ରହି ପାରିବ ନାହିଁ ।"

(ଅବଶ୍ୟ ସେ ମାଟିରେ ଗାର କାଢ଼ୁ ନ ଥିଲା, ଟୋକାଟିଏ ଧରିଥିବ ହାତରେ ··ମୁଁ ମିଛ କହିବି ନାହିଁ···ମୋଟ ଉପରେ ମୁଁ କ'ଣ ପୁରାପୂରି ଦେଖିଛି ଘଟଣାଟା ? )

"ମୋର, ଆପଣଙ୍କର, ଆମ ଦେଶର ଭବିଷ୍ୟତକୁ ମନେ ରଖିବେ । ମୁଠେଇ ଧରିବେ, ଫିଙ୍ଗିଦେବେ ନାହିଁ ଟେକାଟିଏ ପରି···ହେଁଃ ହେଁଃ···"

(ଆଇ ହେଟ୍ ୟୁ ! ଆଇ ହେଟ୍ ଅଲ୍ ଅଫ୍ ୟୁ !)

କାନ୍ତ ତାକୁ ଆଶ୍ୱାସନା ଦେଇ ଫେରିଲା ଯେ ସେ ସତ କହିବ । ଯଦିଓ ସେ କହିଲା ନାହିଁ ଯେ ସେ ଠିକ୍ କ'ଣ କହିବ, ଆଗେ ଟେକା କି ଆଗେ ଗୁଳି ।

ଆଗେ ଟେକା ନା ଆଗେ ଗୁଳି ? କାନ୍ତ ନିର୍ଶ୍ଚିତରେ ସେଇ ପ୍ରଶ୍ନଟିକୁ ମୁଠେଇ ଧରିଲା, ଫିଙ୍ଗିଦେଲା ନାହିଁ । ଭାବିଲା ଗୋଟାଏ ଗୁରୁତର ପ୍ରଶ୍ନ ଆସି ଯାଇଛି ତା'ହାତକୁ, ତା'ର ଦାୟିତ୍ୱକୁ କୌଣସିମତେ ତୁଲେଇବାକୁ ପଡ଼ିବ । ଦେଶ ପାଇଁ, ବନ୍ଧୁ ପାଇଁ, ଆସ୍ଥା ପାଇଁ, ଇତିହାସ ପାଇଁ, ଭବିଷ୍ୟତ ପାଇଁ । ତରତର ହେଲେ ଚଳିବ ନାହିଁ । ଭାବାବେଗରେ ଇଏ ସତ ସିଏ ମିଛ, ବୋଲି କହିଲେ ଚଳିବ ନାହିଁ । ଭାବିବାକୁ ପଡ଼ିବ । ସେତେବେଳେ ମୁଁ କ'ଣ ଦେଖିଛି ମୂଳରୁ ଶେଷ ଯାଏଁ ? ଘମାଘୋଟ ଯୁଦ୍ଧର ପ୍ରତ୍ୟେକ ଅସ୍ତ୍ରକୁ ଲକ୍ଷ୍ୟ କରିଛି, ଦେଖିଛି କୋଉଟା କେତେବେଳେ କେଉଁବାଟେ ଗଲା, ଓ କାହାକୁ ଭେଟିଲା ?

ନିଦ୍ରାଳୁରେ ଭାବିଲା । ଏବଂ ଭାବୁ ଭାବୁ ତା'ର ମନେ ହେଲା ଯେ ଇଏ ଗୋଟାଏ ଦାର୍ଶନିକ ପ୍ରଶ୍ନ । ଆଗେ ଡିମ୍ବ ନା ଆଗେ ଛୁଆ, କିଏ ପ୍ରଥମେ ଆବିର୍ଭୂତ ହେଲା ? ଆଗେ ସୃଷ୍ଟି ନା ଆଗେ ସ୍ରଷ୍ଟା, କିଏ ପ୍ରଥମେ ପ୍ରକଟିତ ହେଲା ?

...ଯାହା ହେଉ ପଛେ, ମୋ ବନ୍ଧୁ ଶହୀଦ୍ ହୋଇ ରହିବ, ସେ ଟେକା ଉଠେଇ ଥାଉ, କି ସିଧାସଳଖ ଫିଙ୍ଗିଥାଉ ଶତ୍ରୁ ଉପରକୁ । କିନ୍ତୁ ସେ କାହିଁକି ଠିଆହେବ ନାହିଁ, ଅଉ ତା' ଶିର ପେଷିବ ନାହିଁ ସେମାନଙ୍କ ଆଡ଼କୁ ? ଏବଂ ସେହି ଅବସ୍ଥାରେ ମରିବ ନାହିଁ ବୀର ପରି ? କ'ଣ ନା ସେ ମୁହଁ ପୋତି ବସିଛି, ଆଉ ଏମାନେ ତା' ମୁଣ୍ଡକୁ ଛତୁ କରିଦେଲେ ? ନନ୍‌ସେନ୍‌ସ୍ ! ନା, ସେ ଯୁଦ୍ଧ କରି ମଲା । ଏଇ ହେଉଛି ସତ କଥା । ଆଗେ ଟେକା, ତା'ପରେ ଗୁଳି...

ତଦନ୍ତ କମିଶନ୍ ସାମନାରେ କାନ୍ତ ମହାନ୍ତ ସାକ୍ଷ୍ୟ ଦେଲା, ଯେ ସେ ସେଇଠି ଥିଲା । ଏବଂ ନିଜ ଆଖିରେ ଦେଖିଛି ଯେ ମହାଦେବ ସାମଲ ଟେକା ଫିଙ୍ଗୁଥିଲା । ପୁଲିସ୍ ଆଡ଼କୁ, ସେଇଠୁଁ ଗୁଳି ଆସି ବାଜିଲା ତା' ଦେହରେ କି ମୁଣ୍ଡରେ, ଓ ସେ ଟଳି ପଡ଼ିଲା । ସମସ୍ତ ସାକ୍ଷୀ ପ୍ରମାଣକୁ ଓଜନ କରି ଜଜ୍ ରାୟ ଦେଲେ ଯେ ପୁଲିସ୍‌ର ଦୋଷ ନାହିଁ । ତାଙ୍କୁ ବାଧ୍ୟ ହୋଇ ଗୁଳି ଚଳେଇବାକୁ ପଡ଼ିଲା । ଆତ୍ମରକ୍ଷା ପାଇଁ ।

ଆଜି ଶହୀଦ୍‌ର ପ୍ରଥମ ଶ୍ରାଦ୍ଧୋତ୍ସବ । ଯେଉଁଠି ସେ ମରିଥିଲା, ପ୍ରାୟ ସେଇ ଜାଗାରେ ସୁବିଧା ଦେଖି ଗୋଟିଏ ସିମେଣ୍ଟ୍‌ର ବେଦୀ ତୋଳା ହୋଇଛି, ତା ଉପରକୁ ତା'ର ପଥରରେ ତିଆରି ପ୍ରତିମୂର୍ତ୍ତିଟିଏ । ଉନ୍ମୋଚନ କରିବେ ବିରୋଧୀ ଦଳର ନେତା ଏବଂ ବିଧାନ ସଭାର ସଦସ୍ୟ ଶ୍ରୀମଣିଙ୍କର ପାଣି । ସମୟ—ପ ୩-୧୫ ମିନିଟ୍ ।

ମୋହନ ଦାସ କାନ୍ତବାବୁଙ୍କୁ ବ୍ୟକ୍ତିଗତ ଭାବରେ ଫୋନ୍ କରି ଜଣେଇ ଦେଇଥିଲେ ଯେ ଆଜି ଗଣ୍ଡଗୋଳର ସମ୍ଭାବନା ଅଛି । କହିଲେ, "ଛାତ୍ରମାନେ ଅବଶ୍ୟ ଚୁପ୍ ହୋଇ ରହିଛନ୍ତି ଅନେକ ଦିନ ହେଲା, ତେବେ କହିହେବ ନାହିଁ ନିଆଁ କେତେବେଳେ ଫଡ଼କି ଉଠିବ । ବିଶେଷତଃ ଆଜି ପରି ଦିନରେ···ପୁଣି ଗ୍ରାମଶଙ୍କର ପାନି ଯେଉଁ ନିଆଁ ଗିଳା ଭାଷଣ ଦେବେ···ଇଲେକ୍‌ସନ୍ ତ ଆସି ହାତପାହାନ୍ତାରେ ···ବୁଝୁ ନାହାନ୍ତି ? ···ତେଣୁ ମୋ ବିଚାରରେ ଆପଣ ସେଠିକି ନଗଲେ ଭଲ ହେବ । ଅବଶ୍ୟ ଆପଣଙ୍କୁ ପୁଣି ସାକ୍ଷ୍ୟ ଦେବାକୁ ପଡ଼ିବ ନାହିଁ, ସେ ଦିଗରେ ଚିନ୍ତା ନାହିଁ । ମୁଁ ଯଥେଷ୍ଟ ପାଠ ପଢ଼େଇ ସାରିଛି ଆମ ଲୋକଙ୍କୁ, ଯେ ଝେକା ନ ଦେଖୁଣୁ ଲଙ୍ଗଳା ହୋଇ ପଡ଼ିବ ନାହିଁ, ହେଁଃ ହେଁଃ···"

କାନ୍ତ ଦେବୁର ଶ୍ରାଦ୍ଧସଭାକୁ ଯିବ ନାହିଁ ? ଶ୍ରଦ୍ଧାଞ୍ଜଳି ଦେବ ନାହିଁ ତାକୁ, ତା'ର ସ୍ମୃତି ପାଇଁ, ତା'ର ଆତ୍ମା ପାଇଁ ? ତା କେମିତି ହେବ ? ତେଣୁ ମଧ୍ୟାହ୍ନ ଭୋଜନର ପରେ ପରେ, ସଭା ଆରମ୍ଭ ହେବାର ପ୍ରାୟ ଦୁଇ ଘଣ୍ଟା ପୂର୍ବରୁ କାନ୍ତ ବାହାରି ପଡ଼ିଲା ସେଠିକି, ଫୁଲ ତୋଡ଼ାଟିଏ ଧରି । ସାଙ୍ଗରେ ସମଶ୍ରଦ୍ଧାଳୁ ଓ ସ୍ୱପତ୍ନୀ କଳା ମହାନ୍ତି ।

ତଥାପି ଦି'ଜଣଙ୍କ ଚିନ୍ତା କେଜାଣି କାହିଁକି ମନ୍ଥର ହେଉଥିଲା । ତା'ର ଯନ୍ତ୍ରଣାକୁ ଅସ୍ୱୀକାର କରି ହେଉ ନ ଥିଲା କି ପରସ୍ପରକୁ ଜଣାଇ ହେଉ ନଥିଲା । କାରଣ ମୋହନ ଦାସଙ୍କ ଚେତାବନୀ ସାଙ୍ଗରେ ତା'ର କୌଣସି ସମ୍ପର୍କ ନଥିଲା । ଅତି ଦୁର୍ବୋଧ ତା'ର ପରିବ୍ୟାପ୍ତି । ଏବଂ ଏକାନ୍ତ ।

ଯାହାହେଉ ଉଦ୍‌ବିଗ୍ନତା ଥମିଗଲା ଶହୀଦ୍‌ବେଦୀରେ ପହଞ୍ଚିଲା ବେଳକୁ । ଦୁହିଁଙ୍କୁ ଦୁହେଁ ଆବିଷ୍କାର କଲେ ଯେ ସ୍ୱଭାବତଃ ଶହୀଦଙ୍କ ମୁହଁ ଦିଶୁନାହିଁ । ଉନ୍ମୋଚନକୁ ଅପେକ୍ଷା କରିଛି । ତେଣୁ ତାଙ୍କ ଆଡ଼କୁ ଚାହିଁବାର କିମ୍ବା ସେ ଢମକୁ ଅନେଇବାର ଅବକାଶ ନାହିଁ ।

# ଶ୍ରଦ୍ଧାଞ୍ଜଳି

'କିସ ପୁଣି ଦେଖା ନଯାଏ ବଞ୍ଚିଥିଲେ ଜୀବରେ !' କଥାଟା ଅବଶ୍ୟ ସତ । ଏହି ସୃଷ୍ଟିର ତଥା ସଂସାରର ଅନେକ ବୈଚିତ୍ର୍ୟ ତମ ଆଖିରେ ପଡ଼େ, ଯାହା ତମକୁ କେତେବେଳେ କୁତୁକୁତୁ କରେ ତ କେତେବେଳେ କାବା କରି ଛାଡ଼ିଦିଏ । କିନ୍ତୁ ମୋର ମନ ହେଉଛି ତା'ର ଖିଅ ଧରି ଆଉ ଟିକିଏ ଆଗକୁ ମାଡ଼ି ଯିବାକୁ । କହିବାକୁ ଇଚ୍ଛା ହେଉଛି ଯେ ବଞ୍ଚିଥିଲା ବେଳେ ତ ଯାହା ଦେଖିଲ ଦେଖିଲ, କିନ୍ତୁ ମରିଗଲା ପରେ ଯଦି ଦେଖିପାରୁଥାଆନ୍ତ ତମର ଛାଡ଼ି ଆସିଥିବା ସଂସାରକୁ, ମାନେ ତମ ଭାଇବନ୍ଧୁ କୁଟୁମ୍ବକୁ, ଏବଂ ତାଙ୍କ ଶ୍ରଦ୍ଧାଞ୍ଜଳିକୁ ପ୍ରକୃତରେ ଗ୍ରହଣ କରିପାରୁଥାଆନ୍ତ, ସେଥିର ଅପରୂପ ରଙ୍ଗ ଓ ବାସ୍ନାର ପାଚନ, ତା'ହେଲେ ତମକୁ ଯେଉଁ କୁତୁକୁତୁ କି କାବା ଲାଗନ୍ତା, ତା'ର ସୀମା ନାହିଁ । ଯେ ମଣିଷଟାକୁ ନେଇ ଏତେ ମିଛ ସତ ହୋଇଯାଏ ଏତେ ସତ ମିଛ ହୋଇଯାଏ, ସେ ମରିଗଲା ପରେ ! ତେଣୁ 'କିସ ପୁଣି ଦେଖା ନ ଯାଏ···!' କଥାଟା ମରି ଯାଇଥିବା ମଣିଷ ପ୍ରତି ହିଁ ବିଶେଷ ଭାବରେ ପ୍ରଯୁଜ୍ୟ ବୋଲି ମୋର କହିବା କଥା । ଅବଶ୍ୟ ଯଦି ସେ ସତରେ ଦେଖି ପାରୁଥାଆନ୍ତା କ'ଣ ସବୁ ଘଟୁଛି ତା'କୁ ନେଇ, ଖୋଲି ପଡ଼ୁଆରେ ହେଉ କି ପାଖପାଖିଙ୍କ ମନ ଭିତରେ । ଲୋଭ ହୁଏ ଭାବିବାକୁ—ହଁ ମ, ଦେଖିପାରୁଥିବ ସେ ! ଅଶରୀରୀ ଆତ୍ମାର ଗୋଟାଏ ଦିବ୍ୟଚକ୍ଷୁ ଅଛି ପରା ? ଦେଖିବ, ଦେଖିବ, ଆଉ ବୁଝିବ ଆମର ଏଇ ମଣିଷ ସଂସାରଟା କେତେ ଅଦ୍ଭୁତ ଭାବରେ ବିଚିତ୍ର, ଯାହାକୁ ମୋହନସୁନ୍ଦର ବୋଲି ନକହି ଛିଟବାଦୀ ଅଗୁଆଁର ପଣ୍ଡିତମାନେ ଆବ୍‌ସର୍ଡ୍ ବୋଲି କୁହନ୍ତି ।

ମହାଦେବ ସାମଲ ଦେଖିବ, କଲା ନାମକ ବନ୍ଧୁପତ୍ନୀ ଜଣକ ତା'କୁ କେତେ ନିର୍ଭୟରେ ନିଶ୍ଚିନ୍ତରେ ଭଲ ପାଇ ପାରୁଛି ଏଣିକି । ଏପରିକି ସେଇଦିନ ରାତିରେ, ଯେଉଁଦିନ ସେ ଶୁଣିଲା

ସ୍ୱାମୀ କାନ୍ତ ମହାନ୍ତଙ୍କ ଠାରୁ, ଯେ ଏମିତି ଗୋଟାଏ ଭୟାବହ ଘଟଣା ଘଟିଯାଇଛି କିଛି ସମୟ ପୂର୍ବରୁ । ସେଇଦିନ ରାତିରେ, ଦେହଧାରୀ ସ୍ୱାମୀ ସାଙ୍ଗରେ ରତି କଲାବେଳେ । କାରଣ ଏଇକ୍ଷଣି ଦେବବାବୁ ଆଉ ଜଣେ ମଣିଷ ହୋଇ ନାହାନ୍ତି ଯେ ପାପ ହେବ ତାଙ୍କୁ ଭଲ ପାଇଲେ । ସେ ଗୋଟିଏ ଅନବଦ୍ୟ ଭାବମୂର୍ତ୍ତି, ଇମେଜ୍, କେଉଁ ଦୁର୍ବୋଧ ଆଦର୍ଶର ପ୍ରତୀକ, ଯାହାର କୌଣସି ସମ୍ପର୍କ ନାହିଁ ସ୍ୱାମୀ ନାମକ ହାଡ଼ମାଂସର ମଣିଷ ସାଙ୍ଗରେ । ତେଣୁ ତାଙ୍କୁ ବେଶ୍ ଆନନ୍ଦରେ ଅନୁଭବ କରି ହେବ, ନ୍ୟାଯ୍ୟ ରତିକ୍ରୀଡ଼ା ସମୟରେ । ତଲେ ହେଲେ ଦ୍ୱିଧା, ଦ୍ୱନ୍ଦ୍ୱ, କି ଗ୍ଲାନିର ଅବକାଶ ନାହିଁ ସେଥିରେ ।

ଦେବୁ ମଧ ଦେଖିବ ଯେ କାନ୍ତର ଯେଉଁ ଶ୍ରଦ୍ଧା ରହିଛି ତା'ର ଆବାଲ୍ୟ ବନ୍ଧୁ ପ୍ରତି, ତାକୁ ସେ କେତେ ଚମତ୍କାର ଭାବରେ ଜାହିର୍ କରିପାରୁଛି, ଯେଉଁଥିରେ ତା' ନିଜର ଭବିଷ୍ୟତରେ ଟିକିଏ ହେଲେ ଆଞ୍ଚ ଲାଗିବ ନାହିଁ । କାରଣ ପାଇଁ ସେ ଯେମିତି କେଉଁ ଆଦର୍ଶର ଭାବମୂର୍ତ୍ତି, କାନ୍ତ ତଥା ଯୁବସମାଜ ପାଇଁ ସେ ଗୋଟାଏ ପବିତ୍ର ଶହୀଦ ନୁହେଁ କି ଏଇକ୍ଷଣି ? ଶହୀଦ୍‌ର ଶହୀଦ୍‌ପଣିଆକୁ କୋଉ ବାଧା ହେବ କି, କାନ୍ତ ଯଦି ନଦେଖିଥିବା କଥାଟାକୁ ଦେଖିଛି ବୋଲି କହିଦିଏ ? କହିଦିଏ ସେ ସ୍ୱଚକ୍ଷୁରେ ଦେଖିଛି ଯେ ପ୍ରଥମେ ଢେଲା ଆସିଥିଲା ଦେବୁ ଆଡ଼କୁ, ତା'ପରେ ଆସିଲା ପୁଲିସ୍‌ର ଗୁଳି ? ବରଂ ସେଥିରେ ଦେବୁର ଶହୀଦ୍‌ପଣିଆ ଆହୁରି ଦପ୍‌ଦପ୍ ହୋଇ ଜଳି ଉଠିବ । ଲୋକେ ଜାଣିବେ ଯେ ସେ ମୁଣ୍ଡପୋଡ଼ି ବସି ନଥିଲା, ଯେତେବେଳେ ପୁଲିସ୍‌ବାଲା ତା' ମୁଣ୍ଡକୁ ଛତୁ କରିଦେଲେ । ନା, ସେ ଯୁଦ୍ଧ କରି ମଲା । ଏହାହିଁ ସତ କଥା, ମାନେ ଉଚିତ ସତକଥା । ଯେଉଁଥିରେ ବନ୍ଧୁର ଶହୀଦ୍‌ପଣିଆ ସୁଦୀପ୍ତ ହୋଇ ଉଠିବ, ଅଥଚ ଏଷ୍ଟାବ୍ଲିସ୍‌ମେଣ୍ଟ୍‌ର ମର୍ଯ୍ୟାଦାକୁ ହାନି ହେବ ନାହିଁ । ଯେଉଁ ଏଷ୍ଟାବ୍ଲିସ୍‌ମେଣ୍ଟ୍ ସ୍ୱଭାବତଃ କେବେଠୁଁ ଡାକିଲାଣି ତାକୁ, କାନ୍ତ ମହାନ୍ତି ନାମକ ଏକ ବିଚକ୍ଷଣ କୃତୀ ଯୁବକକୁ, ତା' ସାଙ୍ଗରେ ମିଶିଯାଇ ଦେଶକୁ ସୁଦୃଢ଼ କରିବା ଲାଗି । ଦେବୁକୁ ବୋଧହୁଏ ଆହୁରି କୁତୁକୁତୁ ଲାଗିବ ଯେ ଏଭଳି କାର୍ଯ୍ୟକାରୀ ବୁଦ୍ଧି ଥାଉଁ ଥାଉଁ କାନ୍ତ

ଓ କଲା ଠିକଣା ସମସ୍ତରେ ଆସିଲେ ନାହିଁ ଶହିଦ୍‌ଙ୍କ ପ୍ରତିମୂର୍ତ୍ତିଠାରେ ତାଙ୍କର ଶ୍ରଦ୍ଧାଞ୍ଜଳି ବାଢ଼ି ଦେବା ପାଇଁ । ଦି'ଘଣ୍ଟା ପୂର୍ବରୁ ଆସିଲେ ଏବଂ ଆଶ୍ୱସ୍ତ ହେଲେ ଯେ ତାଙ୍କ ମୁହଁ ଘୋଡ଼ା ହୋଇ ରହିଛି ଏଇକ୍ଷଣି, ତେଣୁ ଭ୍ରମ ହେବ ନାହିଁ ଯେ କେଉଁ ଜାଅନ୍ତା ମଣିଷ ଅନେଇ ରହିଛି ସେ ଦି'ଜଣଙ୍କୁ ।

ସବୁ ଗଣ୍ଡଗୋଳ ଏଇ ଜଅନ୍ତା ମଣିଷକୁ ନେଇ, ଯାହାର ଗୁଣଗ୍ରାମ କି ସ୍ୱଭାବ ଚରିତକୁ ଗୋଟାଏ ଫର୍ମାରେ ପକେଇ ହୁଏ ନାହିଁ ସହଜେ । ତେଣୁ ତାକୁ ସ୍ୱଚ୍ଛନ୍ଦରେ ଏବଂ ଅବାଧରେ ଏକ ନିର୍ଦ୍ଦିଷ୍ଟ ଆକାରେ ଥୋଇ ପୂଜା କରି ହୁଏ ନାହିଁ, କି ତା' ତଳକୁ ଖଣ୍ଡେ ଲେବଲ୍ ମାରି କହିହୁଏ ନାହିଁ ଯେ ତମେ ଏଇଆ । ମୋତେ ଜଣାଅଛି । କିନ୍ତୁ ମରିଗଲେ ~~ସବୁ~~ ଠିକଣା ହୋଇଯାଏ, ସହଜ ହୋଇଯାଏ । ବନ୍ଧୁ ପାଇଁ, ପ୍ରିୟା ପାଇଁ, କିମ୍ବା ମୁଖ୍ୟମନ୍ତ୍ରୀଙ୍କ ପାଇଁ, ଯଦି ତମେ ବିରୋଧୀଦଳର ନେତା ହୋଇଥାଅ । କାରଣ ସେ ବର୍ତ୍ତମାନ ବିନା ଦ୍ୱିଧାରେ କହିପାରନ୍ତି ଯେ ତମର କୃତିତ୍ୱ କାଳକାଳକୁ ମନେ ରହିବ, ଯଦିଓ ସେ ଏବେ କେବେ କହିଥିଲେ ଯେ ତମ ଦ୍ୱାରା ଯେଉଁ କ୍ଷତି ଘଟିଛି ଆମ ରାଜ୍ୟର, ତା'ର ତୁଳନା ନାହିଁ । ଆଉ ତମେ ଯଦି ଅନେକଦିନ ହେଲା ଗଲଣି ସେପୁରକୁ, ଏବଂ ତମର ଜାଅନ୍ତାପଣ ପାସୋରି ହୋଇଗଲାଣି, ତା'ହେଲେ ତ ତମକୁ କି'ଣ ବୋଲି କି'ଣ କରି ହେବ । ମନଇଚ୍ଛା । ଯଥା, ଗୋପୀନାଥ ମହାନ୍ତିଙ୍କ ଗୋଟିଏ ଗପରେ ଯାହା ଅଛି, ଉପେନ୍ଦ୍ର ଭଞ୍ଜଙ୍କୁ ବାରବରି ଯୋଡାଟିଏ ମଧ୍ୟ କରି ହେବ, ତାଙ୍କ ସ୍ମୃତିସଭାରେ କିଛି କହିବାକୁ ଯାଇ । ପରମ ଶାନ୍ତିବିଧାୟକ ଏଇ ମୃତ୍ୟୁ ଜିନିଷଟା । ଯେ ମରିଗଲା କେବଳ ତା' ପାଇଁ ନୁହେଁ, ମଧ୍ୟ ଯେଉଁମାନେ ପଛକୁ ରହିଗଲେ ମୃତକର କୌଣସି ଦାୟିତ୍ୱ ତୁଲାଇବା ଲଗି, ତାଙ୍କ ପାଇଁ ।

ମୁଁ ଗୋଟାଏ ପ୍ରସ୍ତାବ କରିଆସିଛି ବିଭିନ୍ନ ସମୟରେ, ଯେ ଆମେ ଯେଉଁ କେତେଜଣ ବୟସ୍କ ଲେଖକ ତଥାପି ରହିଛୁ ଆପଣମାନଙ୍କ ଗହଣରେ, ଆମେ ଚାଲିଗଲା ପରେ ଆପଣମାନେ ନିଶ୍ଚୟ ଅନେକ କଥା କହିବେ ଆମମାନଙ୍କ ସାହିତ୍ୟ ଉପରେ, ଯାହାକୁ ପ୍ରଶଂସାମୂଳକ କୁହାଯାଇପାରେ, କିନ୍ତୁ ଆମ

ଜବନ୍ଦଶାରେ ଆମ ଲେଖା ଉପରେ ଦ୍ୱିପାକ୍ଷିକ ଆଳାପ ଆଲୋଚନା କଲେ ଭଲ ହୁଅନ୍ତା ନାହିଁ କି, ଯେଉଁଥିରେ ଆମକୁ ଟିକିଏ ସୁଯୋଗ ମିଳିବ ସେଥିର ପ୍ରଚଳିତ ସତ୍ତମିଛ ଉପରେ ଦ'ପଦ କହିବା ପାଇଁ ? କିନ୍ତୁ ମୁଁ ଜାଣେ ଯେ ଏହି ପ୍ରସ୍ତାବ ଗ୍ରହଣଯୋଗ୍ୟ ହୋଇପାରିବ ନାହିଁ । କାରଣ ଜୀଅନ୍ତା ମଣିଷର ବାଗ ନାହିଁ କି ବାଇଶ ନାହିଁ, ତା'ର ମାନସିକତାକୁ ବିଶ୍ୱାସ ନାହିଁ । ତେଣୁ ତାକୁ ସାଙ୍ଗରେ ଧରି ତା' ସାହିତ୍ୟକୁ ଚିହ୍ନାଇବା କେବଳ ଦୁଷ୍କର ନୁହେଁ, ମଧ୍ୟ ବିପଜ୍ଜନକ । ତେଣୁ ତା'ର ମହାପ୍ରୟାଣ ପରେ ଯାଇଁ ତାକୁ କୁହାହେବ ଯେ ଏଇ ହେଉଛି ଉଚିତ ସତକଥା ତମ ବିଷୟରେ । ଯାହା ଦୁଇକୂଳକୁ ହିତ । ଏବଂ ଯାହା ଆମର ଏଇ ମହାନ୍ ସାହିତ୍ୟର ଐତିହ୍ୟକୁ ଉଚିତ ସନ୍ମାର୍ଗରେ ଚଳେଇ ନେଇ ପାରିବ । ଧନ୍ୟବାଦ ।



# ଖରାପ ଲୋକ

"ବଦ୍‌ମାସ···ତାକୁ ମାରଦେବ···ଏକ୍‌ଦମ୍ ମାରଦେବ···ଏମିତି ମାରଦେବ ଯେ···ଆଇ ହେଟ୍ ହିମ୍ !" ସେଇଠୁଁ ରୋହିତ ତା' ମାଆର ଶାଢ଼ିକୁ ଏମିତି ମୁଠେଇ କରି ଧରିଲା ଯେ ସିନ୍ଥା ମଝିରେ ଝୁଣ୍ଟିପଡ଼ି ଥାଆନ୍ତା ।

"ଆରେ, ମୋ ଶାଢ଼ିଟାକୁ ଛାଡ଼େ···କ'ଣ ହୋଇଛି ତୋର ?"

ରୋହିତ କିଛି ନକହି ତା' ମୁହଁ ପଶିଲା ମାଆର ଜଙ୍ଘରେ । ପ୍ରଭା ତାକୁ ସେତିକବେଳେ ଉଠେଇ ଆଣି ଗେହ୍ଲା କରିଥିଲେ ବୋଧହୁଏ ଭଲ ହୋଇଥାଆନ୍ତା କିନ୍ତୁ ସେ ତା' କଲାନାହିଁ । ବରଂ ତାକୁ ବିରକ୍ତ ଲାଗିଲା ଯେ ତା' ଭାବନାର ସୂତା ଛିଣ୍ଡି ଯାଇଛି । ପୁଣି ତା'ର ଖିଅ ଧରିବାକୁ ହେବ ।

ଶୀତଦିନଆ ସନ୍ଧ୍ୟା ମାଡ଼ି ଆସୁଥାଏ ତରତର ହୋଇ । ପ୍ରଭା ତା' ଘରର ପାଞ୍ଚ-ବର୍ଷର ପୁଅ ରୋହିତକୁ 'ଲିଟ୍‌ଲ୍ ଆଞ୍ଜେଲ୍‌ସ୍' ନର୍ସରୀ ସ୍କୁଲରୁ ଫେରାଇ ନେଇ ଆସୁଥାଏ, ସବୁଦିନ ପରି । ତେବେ ସବୁଦିନେ ସେ ତାକୁ ଥରେ ଅଧେ ପଚାରେ ଏଣ୍ଡତେଣୁ କଥା । ଆଜି ସ୍କୁଲରେ କ'ଣ କଲୁ, କାହା ସାଙ୍ଗରେ ଖେଳିଲୁ, କ'ଣ ଛବି ଆଙ୍କିଲୁ, ଇତ୍ୟାଦି, ଯଦିଓ ପୁଅର ଉତ୍ତର ଆରମ୍ଭ ହେଉ ନହେଉଣୁ ସେ ଅନ୍ୟମନସ୍କ ହୋଇଯାଏ । ସତେକି ମାମୁଲି ମେଘରେ ଲଟିଥିବା ସୁନେଲି ଗାରଟାଏ କି ରାସ୍ତାକଡ଼ର ନାଳପାଣିକୁ ଝୁଙ୍କି ପଡ଼ିଥିବା କୋଉ ଅନାବନା ଫୁଲଟାଏ ତାକୁ ବେଶୀ ଆନନ୍ଦ ଦେଉଛି । ଅର୍ଥାତ୍ ପୁଅ ଅଣ୍ଡିକ କ'ଣ ବକର ବକର ହେଉଛି, ତାକୁ କିଛି ନପଚାରିଲେ ବି ସେ ମନକୁ ମନ ଗପି ଚାଲିଥିବ, ସେଥିରେ କାନ ଦେଇ ଲାଭ ନାହିଁ । ଭାବେ ଯେ ମୋଟ ଉପରେ ଇଏ ହେଉଛି ମାତୃତ୍ୱର ରୁଟିନ୍, ତଥାକଥିତ କର୍ତ୍ତବ୍ୟ, ତେଣୁ ସେଥିରେ ମଜ୍ଜିଯିବାର ପ୍ରଶ୍ନ ଉଠୁନାହିଁ । ବେଳେ ବେଳେ ଏମିତି ବି ତା' ମନକୁ ଆସେ ଯେ ମାଆ ବୋଲି ତାକୁଇ ଏଇ କାମ କରିବାକୁ ହେବ ସବୁଦିନେ, ଏଭଳି ଆଇନ୍ କେଉଁଠି ଲେଖା ହୋଇନାହିଁ କି ଆମ କଣ୍ଟ୍ରାକ୍ଟରେ ନାହିଁ । କାହିଁକି ବାପର କ'ଣ କିଛି ଦାୟିତ୍ୱ ନାହିଁ ? ହଁ ଜାଣିନ୍ତି ଯେ ସମୟବନ୍ଧା ଅଫିସ୍ କାମ କରୁଛ, ପାଞ୍ଚଟା ଛଅଟା ପୂର୍ବରୁ ଫେରିହେବ ନାହିଁ । କିନ୍ତୁ ତମର ଯୋଉ ଗ୍ରେପାଛଡ଼ା ପୂରିବୁଲିବା କାମ, ସେଥିରୁ କ'ଣ ଏଇ ଘଣ୍ଟାକ ଅଲଗା କରି ହେବ

ନାହିଁ ? ଅନ୍ତତଃ ହପ୍ତାକୁ ଦିନେ କି ଦି'ଦିନ ? ନା, ତା' ହେବ ନାହିଁ ! ପଡ଼ୁଶିଲେ ଗୋଟାଏ ଉଦାର ମର୍ଦ୍ଦପଣିଆର ହସ । ମାନେ ଯେତେ ପାଠୋଇ କି ବୁଦ୍ଧିମତୀ ହେଲେ ବି ମୁଁ ବୁଝିବି ନାହିଁ ତମ ମର୍ଦ୍ଦମାନଙ୍କ କାମ···(ଅକାମ)···(ଖରାପ କାମ)··· । ଯାହାହେଉ ସେ ସବୁଦିନେ ପୁଅ ସାଙ୍ଗରେ କିଛିଟା କଥାଭାଷା ହୁଏ, ତା' ଯେତେ ଏକତରଫା ହେଉ ନା କାହିଁକି । କିନ୍ତୁ ଆଜି ସେତିକି ବି ନଥିଲା । କାରଣ ପ୍ରଭା ପଦୁଟିଏ କଥା କହିବାକୁ କି ଶୁଣିବାକୁ ଚାହୁଁ ନଥିଲା । ଅନେକ ବିଷୟ, ଗୁରୁତର ବିଷୟ, ଭାବିବାକୁ ଅଛି । ଅଛିଣ୍ଡା ଭାବନା । ବାପାଙ୍କ ପାଖକୁ ଏମିତିକା ଚିଠି ଲେଖି ଭୁଲ୍ କଲି କି ଠିକ୍ କଲି । ଏବଂ ଆଜି ରାତିରେ କିଏ କେଉଁଠି ଶୋଇବ ? ଏଇ ଦୁଇଟି ମୁଖ୍ୟ ପ୍ରଶ୍ନକୁ ନେଇ ନାନା ଆଗତ ଭବିଷ୍ୟତର ଭାବନା । ତାକୁ ସଜାଡ଼ି ଦେଇ ପାରିଲେ ଆଉ କିଛି ଭାବିବାକୁ ପଡ଼ନ୍ତା ନାହିଁ । ବାଟ ସଫା ହୋଇଯାଆନ୍ତା··· କୁହୁଡ଼ି କଟିଯାଆନ୍ତା···ପ୍ରଭା ଗୋଟାଏ 'ନୂଆ ଜୀବନ' ସୁରୁ କରିପାରନ୍ତା···

ଫଳରେ ପ୍ରଭା ଜାଣିପାରିଲା ନାହିଁ ଯେ ଶ୍ରୀହରି ଆଜି ଯାହା କହୁଛି, ସେଇ ଅଗଡ଼ମ୍ ବଗଡ଼ମ୍ ଭିତରେ ଗୋଟାଏ ଅଭିନବ ତାତ୍ତ୍ୱ ଅଛି । କାରଣ ପୁଅ କେଉଁ ନିର୍ଦ୍ଦିଷ୍ଟ ସାଙ୍ଗସାଥୀଙ୍କ କଥା କହୁନାହିଁ, କି କଳ୍ପନାର ଭୂତ ରାକ୍ଷସଙ୍କ କଥା । ସେ ଏକ କିମ୍ବା ଏକାଧିକ ଖରାପ ଲୋକ, ସ୍କୁଲ୍‌ଶିଖା ଇଂରେଜୀ ଭାଷାରେ, 'ବ୍ୟାଡ୍ ମ୍ୟାନ୍'ର ଆକ୍ରମଣରେ ଅସ୍ଥିର ହୋଇ ଉଠିଛି ଏବଂ ତାକୁ କୌଣସିମତେ ମାପିଚିପି ଘଉଡ଼େଇ ନଦେଲେ ସେ ତିଷ୍ଠି ପାରିବ ନାହିଁ ଏଇ ସଂସାରରେ । ସେଇଠୁଁ ପୁଅର ବଢ଼ିଉଠୁଥିବା ଭୟ ଓ ଦୁଃସ୍ୱପ୍ନର ଗୋଟାଏ କାରଣ ବୋଧହୁଏ ମିଳିଯାଇ ଥାଆନ୍ତା ଏବଂ ସେ ସେଦିଗରେ ଖଣ୍ଡେବାଟ ଆଗେଇ ଯାଇପାରିଥାଆନ୍ତା ।

କିନ୍ତୁ ପ୍ରକୃତରେ କିଏ କହିପାରିବ, କେଉଁଦିନ ଏବଂ କାହିଁକି ଖରାପ ଲୋକ ଏତେ ସତ ଓ ଜୀବନ୍ତ ହୋଇ ଅତ୍ୟାଚାର କଲା ଶ୍ରୀହରି ଉପରେ ? ଅନ୍ଧାରରେ ଥିବା ଭୂତରାକ୍ଷସମାନଙ୍କ ଗହଣରୁ ଦିନର ଆଲୁଅକୁ ବାହାରି ଆସିଲା ଶ୍ରୀହରି ପରି ଗୋଟିଏ ସାନ ସୁକୁମାରିଆ ପିଲାକୁ ଡରେଇବା ପାଇଁ ? କହି ହେବ ନାହିଁ । ସମ୍ଭବତଃ ସେ ଏକାଥରକେ ବାହାରି ଅସିନାହିଁ । କ୍ରମଶଃ ପାଖ ହୋଇ ଆସିଛି । ଯଥା ମିସ୍ ମାଥିଉଜ୍ କହିଲେ ଯେ ଖରାପ ଲୋକମାନେ ପିଲାଙ୍କୁ ଚେକ ନିଅନ୍ତି, ତେଣୁ ଏକୁଟିଆ ବଜାର ଘାଟରେ ବୁଲିବ ନାହିଁ । ଆଉ ଦିନେ ଖେଳୁଛି ବେଳେ ରାଜନ୍ ବୋଲି ଗୋଟାଏ ବଲୁଆ ପିଲା ତାକୁ ସ୍କୁଲ୍ ହଲ୍‌ର କାନ୍ଥରେ ଚପିଦେଲା । ସେଇଠୁଁ ଶ୍ରୀହରିର ଆଖି ଲାଖିଗଲା ତା' ସାମ୍ନାରେ ଥିବା କାନ୍ଥରେ, ସେଠି ଗୋଟାଏ ଖରାପ ଲୋକ ଦାନ୍ତ ଦେଖେଇଛି ତା' ଆଡ଼କୁ । ତା'ର ଏତେବଡ଼ ମୁହଁ ଆଉ ନାଲି ଅଛି, ପୁଣି ଗୋଟାଏ ଅପରିଚିତିଆ ହସ । ହୋଇପାରେ, ସିଏ ହେଉଛି ହଲ୍ କାନ୍ଥରେ ଶୋଭା ପାଉଥିବା ଅନ୍ୟତମ ହାତଅଙ୍କା ଛବି । କିନ୍ତୁ ବୋଧହୁଏ

ସେଇଦିନ ଖରାପ ଲୋକର ଚେହେରା ଅଳପ ବହୁତ ସାକାର ହୋଇ ଉଠିଲା ରୋହିତର ମନରେ । ସେଥିରେ ଅନ୍ତତଃ ଗୋଟାଏ ଦାଶ ଅଛି ଏବଂ ଗୋଟାଏ ତାଚ୍ଛିଲ୍ୟଭରା ହସ, ରୋହିତ ଉପରେ ମାଡ଼ପଡ଼ିଲା ପରି । ତା'ଛଡ଼ା ଆଜିକାଲି କ'ଣ ବଳୁଆ ବଦ୍‌ମାସ୍ ପିଲଙ୍କ ସଂଖ୍ୟା ବଢ଼ିଯାଇଛି ? ଏବଂ ଗୋସ୍ତି ଗେହ୍ଲେଇ ପୁନମ୍ ବି ତାକୁ ପଚାରୁ ନାହିଁ ।···ହେଲେ ବୋଉ ଅଛି । ଆଇ ଲଭ୍ ବୋଉ !

କେତେଦିନ ତଳେ ସେ ରାତିରେ ଚରଚରେଇ ହୋଇ ଉଠି ପଡ଼ିଥିଲା ଏବଂ ପ୍ରଭା ତା' ପାଖକୁ ଯାଇଥିଲା ତାକୁ ଥାପୁଡ଼େଇବା ପାଇଁ । ବିଶେଷ ବ୍ୟତିବ୍ୟସ୍ତ ହେଲା ନାହିଁ । କାରଣ ଆଗରୁ ଏମିତି ହୋଇଛି କେତେଥର । ପିଲାଙ୍କର ଏମିତି ହୁଏ । ତେବେ ସେ ଗୋଟାଏ ନୂଆ କାମ କଲା । ରୋହିତକୁ ତା' ବିଛଣାରୁ ଟେକି ଆଣି ପାଖ ରୁମ୍‌ର ଯୋଡ଼ ଖଟରେ ଶୁଆଇଲା । ନିଜ ପାଖରେ । ଏବଂ ରୋହିତ ସାରାରାତି ତା' ବୋଉର ଦେହରେ ଗୁପି ହୋଇ ଶୋଇଲା । ଅନେକ ଅନେକ ଦିନ ପରେ । ସହଜେ ଖୁସିଟାଏ ହେଲା । ତା'ଛଡ଼ା ଆଶ୍ଚର୍ଯ୍ୟ ହେଲା (ଅବଶ୍ୟ ସେ ତା'ର ଆଶ୍ଚର୍ଯ୍ୟକୁ ମିଛୁଟାରେ ବଢ଼େଇଲା ନାହିଁ) ଯେ ଖଟରେ ଆଉ କେହି ନଥିଲେ, ବୋଉ ଛଡ଼ା ! ମାନେ ବାପା ବି ନଥିଲେ ! ସେଇଦିନଠାରୁ ରୋହିତ ରାତିରେ ତା' ନିଜ ରୁମ୍‌ର ଗ୍ରେଟ୍ ଖଟରେ ନ ଶୋଇ ପ୍ରଭା ପାଖରେ ଶୋଉଛି । ଆନନ୍ଦରେ ବୋଉର ସଫେଇ ସ୍ୱୀକାର କରିନେଇଛି ଯେ ବାପା ତାଙ୍କ କାମରୁ ଅନେକ ଡେରିରେ ଫେରୁଛନ୍ତି ଆଜିକାଲି, ସେଇଲାଗି ସେ ଦାଣ୍ଡଘରେ ଫିଡାଖଟ ଉପରେ ଶୋଉଛନ୍ତି ।···ଶୁଅନ୍ତୁ, ମୋର କ'ଣ ଯାଉଛି ?

ବେଳେ ବେଳେ ତାକୁ ଗ୍ରୁଡ଼ିକା ଲାଗେ ବୋଉ ପାଖରେ ଶୋଇଥିବା ବେଳେ । ଯେ ବାପା ଆଜି ଜଲ୍‌ଦି ଫେରି ଆସିଛନ୍ତି ତାଙ୍କ କାମରୁ । ଆଉ ତାକୁ ଏଠି ଦେଖିକରି କହୁଛନ୍ତି—ଆରେ, ତୁ କାହିଁକି ପଶିଛୁ ଏଠି, ବୋଉ ପାଖରେ ? ଉଠ୍, ତୋ ବିଛଣାକୁ ଯା···ଉଠୁଛୁ ନା ନାହିଁ ? କହୁଛନ୍ତି, ଆଉ ହସୁଛନ୍ତି । ନା ନା, ବାପା ଖରାପ ଲୋକ ନୁହଁନ୍ତି । ତାଙ୍କର ଦାଶ ନାହିଁ । ତା'ଛଡ଼ା ତାଙ୍କ ହସ ସତହସ, ଗେହ୍ଲା କଲା ପରି । ଖରାପ ଲୋକ ହଉଛି ଆଉ ଲୋକଟା । ଯେ ବୋଉ ପାଖକୁ ଆସିଛି କେତେଥର । ଦିହେଁ ମୁହଁକୁ ମୁହଁ ଯୋଡ଼ି ବସନ୍ତି । ଖାଇବା ଟେବୁଲ୍‌ରେ ଲମ୍ବା ଲମ୍ବା କାଗଜ ମେଲେଇ ଦେଇଥାଆନ୍ତି, ଛବିଅଙ୍କା କାଗଜ, ଆଉ ମୋତେ ସେଥିରେ ହାତ ଲଗେଇ ଦିଅନ୍ତି ନାହିଁ । ବୋଉ କୁହେ ତୁ ଯା' ଏଠୁ, ଆମର କାମ ଅଛି । ଆଉ ସେଇ ଲୋକଟା, ତା'ର ଦାଶ ଅଛି, ଦାଢ଼ି ବି ଅଛି, ମୁରୁକି ମୁରୁକି ହସେ ମୋ ଆଡ଼କୁ ଗୁହିଁ । କୁହେ—ରୋହିତ ମାଷ୍ଟର୍, କ'ଣ ଦରକାର ତମର ? ଦିନେ ପକେଟ୍‌ରୁ ଲଜେନ୍‌ସଟାଏ କାଢ଼ିକରି ଦେଇଥିଲା ଯେ ମୁଁ ତାକୁ ଫେଇଠି ପକେଇ ଦେଇ ଆସିଲି । ଏଥର ଆସିଲେ ମୁଁ ତାକୁ ଗୁଳି କରି ମାରିଦେବି । ନ ହେଲେ ପଛରୁ ଗୋଟାଏ ଓାର ବନ୍ଧେଇ ଦେବି ଯେ···

ଘରେ ପହଞ୍ଚିଲା ପୂର୍ବରୁ ପ୍ରଭା ତା' ଭାବନାକୁ କୌଣସିମତେ ଛୁଣ୍ଡେଇ ଦେଲା । ···ବାପାଙ୍କ ପାଖକୁ ଚିଠି ଯାଇଛି ତ ଯାଇଛି, ତାକୁ ଆଉ ଫେରାଇ ଆଣି ହେବ ନାହିଁ । କ'ଣ ଏମିତି ଲେଖିଛି ଯେ ? ଲେଖିନାହିଁ ଯେ ତମ ଦୁଃଖିନୀ ଝିଅ ଏଇଥିପାଇଁ ତମକୁ ଡାକୁଛି, ତମର ସାହାଯ୍ୟ ମାଗୁଛି । ମୁଁ ଏତେ ଦୁର୍ଭାଗ୍ୟ ନୁହେଁ । ଖାଲି ଏତିକ ଯେ ମୁଁ ତମର ପରାମର୍ଶ ଚାହେଁ । ମୋ ଜୀବନରେ ଗୋଟାଏ ଗୁରୁତର ସମସ୍ୟା ଦେଖା ଦେଇଛି । ତା'ର ସମାଧାନ କରିବା ପୂର୍ବରୁ ମୁଁ ତମ ସାଙ୍ଗରେ ଦି'ପଦ କଥା ହେବାକୁ ଚାହେଁ । ହୁଏତ ସେ ନ ଆସିପାରନ୍ତି । ଯେତେହେଲେ ବୟସ ହେଲାଣି । ପୁଣି ଘରେ ଥାଇ ମଧ୍ୟ ସେ ବାନପ୍ରସ୍ଥ ନେଲେଣି ବୋଲି କହିଲେ ଭୁଲ ହେବ ନାହିଁ । କୁଆଡ଼େ ଦିନସାରା ଖାଲି ପଢ଼ୁଥାଆନ୍ତି ଆଉ ମଝିରେ ମଝିରେ ଆକାଶକୁ ଅନେଇ ଥାଆନ୍ତି । ଚଢ଼େଇ ଗଣିଲା ପରି । ଧରି ବି ସେ ପହଞ୍ଚିଗଲେ, କ'ଣ ହେଲା ସେଥିଁ ? ବାପା କ'ଣ ଅକାରଣରେ ଆସେ ନାହିଁ ଝିଅଘରକୁ ? ସେଇ ଯେ ଆସିଥିଲେ ଆମ୍ଭ ବାହାଘର ବେଳେ, ସେଇଦିନୁ ଆଉ ଆସିନାହାନ୍ତି । ଶ୍ରୀହରିକୁ ଆସି ଚାରିବର୍ଷ ହେଲାଣି । ତାକୁ ବି ଦେଖିନାହାନ୍ତି । ମନେକର ସେ ଆସିଗଲେ, କିନ୍ତୁ ତା' ପୂର୍ବରୁ ମୋ ସମସ୍ୟାର ସମାଧାନ ହୋଇଗଲା, ତା'ହେଲେ ବି କାହାର କ'ଣ କ୍ଷତି ହୋଇଗଲା ? ଏଠି କ'ଣ ତାଙ୍କୁ ବହି ମିଳିବ ନାହିଁ ପଢ଼ିବା ପାଇଁ, ନା ଏଠିକା ଆକାଶରେ ଚଢ଼େଇ ନାହାନ୍ତି ? ···ପ୍ରଭା ମନକୁ ମନ ହସିଲା ତା' ପଣ୍ଡିତପାଗଲା ବାପାଙ୍କୁ ମନେ ପକାଇ ଓ ତା' ମନରେ ସ୍ନେହ କରୁଣା ଭାବର ଉଦ୍ରେକ ହେଲା । ସତେକି ତା' ବାପାଟି ଏତେ ଭଲ ମଣିଷ ଯେ ସଂସାର ପାଇଁ ଅଯୋଗ୍ୟ ହୋଇ ରହିଗଲେ । ଭାବିଲା—କିଛି ନହେଲେ ଏଠି ଗୋଟାଏ ଚେଞ୍ଜ୍ ତ ହେବ ତାଙ୍କୁ ! କିନ୍ତୁ ବାପାଙ୍କ ସୁମଧୁର ସ୍ମୃତି ସାଙ୍ଗରେ ପ୍ରଭା ନିଜକୁ ଧନ୍ୟବାଦ ଦେଲା ଯେ ସେ ତା' ବାପାଙ୍କ ପରି ନୁହେଁ, ବିଦ୍ୟାବୁଦ୍ଧିରେ ଊଣା ନହେଲେ ମଧ୍ୟ ତାଙ୍କ ପରି ଦୁର୍ବଳ ନୁହେଁ । ତା' ହୋଇଥିଲେ ସେ ସମସ୍ୟାର ମୁକାବିଲା କରିପାରି ନଥାଆନ୍ତା । କହିବାକୁ ଗଲେ ସମସ୍ୟା ମୂଳରୁ ଦେଖା ଦେଇ ନଥାଆନ୍ତା । ···କାହିଁକିନା ମୁଁ ବୋଧହୁଏ ପରିସ୍ଥିତିକୁ ମାନି ନେଇ ଥାଆନ୍ତି । ଯେମିତିକି ଧୂଳି ଉଡ଼ିବ ନାହିଁ, ପାଟିତୁଣ୍ଡ ହେବ ନାହିଁ, କେଉଁଠି କିଛି ଗଣ୍ଡଗୋଳ ହେବ ନାହିଁ । ସ୍ୱାମୀ ହସୁଥିବେ, ପୁଅ ହସୁଥିବ, ଆଉ ମୁଁ ଦାନ୍ତ ଦେଖଉଥିବି । ଖାଲି ନିରୋଳାରେ ଲୁହ ଗଡ଼େଇବି । ନନ୍‌ସେନ୍‌ସ ! ମୁଁ ବଞ୍ଚିବାକୁ ଚାହେଁ, କିନ୍ତୁ ଆପଣାକୁ ସମ୍ମାନ ଦେଇ, ଆପଣା ଶେଯର ରାଣୀ ହୋଇ ।

ଆପଣା ଶେଯ । ଜିତୁବାବୁ, ଜିତେନ୍ ବର୍ମା, ସ୍ୱାମୀ ହେଲାରୁ ତମେ ଶୋଉଥିଲ ମୋ ଶେଯରେ । ଏଇକ୍ଷଣି ଖାଲି ମୋ ପୁଅ ଶୋଉଛି । ମୋର ଇଚ୍ଛା ହେଲେ ମୁଁ ଆଉ କାହାକୁ ଶୁଆଇବି ମୋ ପାଖରେ । ବାଧ୍ୟ ହୋଇ

ତୁମର ପାଖରେ ପଡ଼ି ରହିବ ନାହିଁ, ସତେକି ତୁମେ ମୋତେ ଅନୁଗ୍ରହ କରିଛ···

ହେଲେ ମୁଁ ଜିଦ୍‌ଖୋର୍ ନୁହେଁ । ଭାବୁଛି ମୁଁ ତୁମ ମିନତିକୁ ମାନିନେବି ଆଜି ରାତିଟା ପାଇଁ (ହୁଁ, ମିନତିର ସ୍ୱର. ଯଦିଓ ଓଠରେ ଚତୁର ମଧୁର ହସଟିଏ ଥିବ —ସେଇ ତ ଫୋନ୍‌ରେ କଥା କହିବାର ବାହାଦୁରୀ !) କହିଲେ କ'ଣ ନା—ଆଜି ମୁଁ ମୋ ବିଛଣାରେ ଶୋଇଲେ କିଛି ଆପତ୍ତି ଅଛି ? ହଉ, ସେଇଆ ହେଉ । ତୁମେ ଯୋଡ଼ିଖଟର ତୁମ ବିଛଣାରେ ଶୋଇବ, ମୁଁ ମୋ ବିଛଣାରେ ଶୋଇବି । ତା'ର ଅର୍ଥ ନୁହେଁ ଯେ ତୁମେ ମୋ ପାଖକୁ ଫେରିଆସିଲ କି ମୁଁ ତୁମ ପାଖକୁ ଫେରିଯିବି । ମୋର ଅନେକ ପ୍ରଶ୍ନ ଅଛି ତୁମକୁ ପଚାରିବା ପାଇଁ । ତା'ର ମନଲାଖି ଉତ୍ତର ମିଳିଲେ ତା'ପରେ ଯୋଡ଼ି କଥା—ବୁଝିଲ ? ଭାବନାହିଁ ଯେ ମୁଁ ତୁମ କଅଁଳ କଥାରେ ଭଲି ଯାଉଛି । ମୋର ଖାଡ଼ା ପ୍ରମାଣ ଦରକାର, ପ୍ରତିଶ୍ରୁତି ଦରକାର, ତା'ପରେ ଦେଖାଯିବ । ଆଜି ରାତିଟା ଗୋଟାଏ ଏକ୍‌ସ୍‌ପେରିମେଣ୍ଟ୍ । କହିବାକୁ ଗଲେ ଆଜି ରାତିରେ ହିଁ ଫଇସଲା ହୋଇଯିବ ସବୁଦିନ ପାଇଁ । ବାପା ଆସିବା ଆଗରୁ, ଯଦିବା ସେ ଆସନ୍ତି ।

ଅବଶ୍ୟ ରୋହିତକୁ ଫେରିଯିବାକୁ ହେବ ତା' ଖଟକୁ । ଉପାୟ ନାହିଁ । ଆଗରୁ ପୁଣି ସେଇଠି ଶୋଉଥିଲା ତ ?

ଘରେ ପହୁଞ୍ଚିଲା ମାତ୍ରେ ପ୍ରଭା ଗୋଟାଏ ଚଉକିରେ ବସିପଡ଼ି ରୋହିତକୁ କୁଣ୍ଢେଇ ଧରିଲା, ତା'ଆଖିରେ ଆଖି ରଖିଲା, ତା' ଗହଳା ମୁଣ୍ଡବାଳରେ ହାତ ଚଳେଇଲା ଏବଂ ଆରମ୍ଭ କଲା—

"ଶୁଣ୍ । ଆଜି ଠୁ ତୋ ଘରେ ଶୋଇବୁ, ନିଜ ଖଟରେ । ବୁଝିଲୁ ? କାହିଁକିନା ବାପା···"

"ନାଇଁ—"

ରୋହିତର ବାହୁନା ସ୍ୱରକୁ ବନ୍ଦ କରିବାକୁ ଯାଇ ପ୍ରଭା ପୁଅକୁ ଆହୁରି ଜୋର୍‌ରେ ଭିଡ଼ି ଧରିଲା ଓ ତାକୁ ବୁଝେଇଲା ଯେ ସେ ବଡ଼ ହେଲାଣି, ତେଣୁ ତା'ର ନିଜ ଖଟରେ ଶୋଇବା ଦରକାର । ନହେଲେ ସେ ମଣିଷ ହେବ କେମିତି ? ମଣିଷ ହେବା ମାନେ ବାପାବୋଉଙ୍କ ପରି ହେବା । ବାପା ବୋଉ ସେତେବେଳକୁ ବୁଢ଼ା ହୋଇଯିବେଣି, ତେଣୁ ତାଙ୍କ ଖବର ବୁଝିବ, ତାଙ୍କୁ ନାନା ବିପଦ ଆପଦରୁ ରକ୍ଷା କରିବ । ଇତ୍ୟାଦି ।

ରୋହିତର ଆପତ୍ତି କଦାକଣ୍ଟା ଯାଏଁ ଗଲାନାହିଁ । ବୋଉର ବଚନାମୃତରୁ ଗୋଟିଏ କଥା ତା' ମନକୁ ବିଶେଷ ଭାବରେ ଛୁଇଁଲା ଯେ ଯାହା ହେଉ ପଛେ ତାକୁ

ବଡ଼ ହେବାକୁ ପଡ଼ିବ । ବଡ଼ ହେଲେ ସିନା ଯାହା କିଛି କରି ହେବ, ସଡସଡିକା ଯୁକ୍ତି କରି ତାକୁ ତଳେ ଗଡ଼େଇ ଦେଇ ହେବ ! ଅବଶ୍ୟ ତା' ଯାଙ୍କୁ ଆମନ୍ତ୍ର ଏକୁଟିଆ ଅନ୍ଧାର ଘର ଓ ଅନ୍ଧାର ଭିତରେ ଗ୍ରାଇ ହୋଇ ଯାଉଥିବା ଖରାପ ଲୋକର ଚେହେରା ତାକୁ ଭୟ ଦେଖାଉଥାଏ । କିନ୍ତୁ ସେ ଜାଣିଲି, ବୋଉର ଦୃଢ଼ ଗୃହିଣି ଓ ହାବଭାବରୁ ବୁଝିନେଲି, ଯେ ତାକୁ ମାନିବାକୁ ପଡ଼ିବ । କାନ୍ଦିଲେ କି ପାଟିତୁଣ୍ଡ କଲେ କିଛି ଲାଭ ନାହିଁ । ଅଗତ୍ୟା ତା'ର ଉଦ୍‌ଗତ ଉଁ-ଉଁ ବାହୁନା ଅଳ୍ପକରେ ରହିଗଲା । ଏବଂ ସେ ବୋଉର ପେଟରେ ମୁହଁ ଗୁଞ୍ଜି ଦେଲା । ସତେକି ଘଟଣା ବି ଏମିତି ହୋଇଥିବ ପରି. ଯେତିକି ଅନ୍ଧାର ସେମିତି ଉଷ୍ମ, ଯେତିକି ଅନ୍ଧାର ସେତିକି ପାଲସ୍...ଭୟ ନାହିଁ...ଭୟ ନାହିଁ...

ଏଣେ ପ୍ରଭାର ଚେତା ହେଲା ଯେ ସେ ପୁଅକୁ କ'ଣ ବୋଲି କ'ଣ କହିଯାଉଛି । ମୌଳିକ ତଥ୍ୟ ଠିକ୍ ଥିଲେ ମଧ୍ୟ ବାଖ୍ୟା ବିନ୍ୟାସରେ ଭୁଲ୍ ହେଉଛି । ...ମୁଁ ଅଯଥାରେ 'ବାପାବୋଉ' ପଦଟାକୁ ଦୋହରେଇ ହେଉଛି କାହିଁକି ? ସତେକି ଏତେ କଥାକୁ ମୁଁ ଧରିନେଇଛି ଯେ ତା' ବାପା ଓ ବୋଉ ବାପାବୋଉ ହୋଇ ରହିଥିବେ ସବୁଦିନ ପାଇଁ । ସନ୍ଧି ବିଚ୍ଛେଦ ହେବ ନାହିଁ । ଧାତ୍ତେରି ! ହେଲେ କଥାଟାକୁ ଓଲଟେଇ ଦେଇ ହେବ ନାହିଁ ...ଯାହାବା ସେ ସେଦିଗରେ ଚେଷ୍ଟା କରିଥାଆନ୍ତା, ଅତି ନିକଟରେ ଥିବା ପୁଅର ମୁହଁ, ତା' ଉପରେ କମ୍ପନ, ତା'ର ଖୋଜିଲା ପରି କଲାଡ଼ୋଳା ଗୃହାଣି, ସେଥିରେ ଅସ୍ଥିରତା ଓ ଆବେଗ ତାକୁ ଆଉ କଣେ ପରି ଦିଶିଲା । ତା' ବାପ ପରି ।...ଲୋକ କୁହନ୍ତି ସିନା ସେ ମୋ ପରି, କିନ୍ତୁ ଟୋକାଟା ପ୍ରକୃତରେ ତାଙ୍କରି ପରି । ଯେତେବେଳେ ତା'ର ଆଖି ଓଠ କଥା କୁହେ ଏମିତି । ମୁଁ ତୋତେ ତମକୁ) ଚାହେଁ, ନ ପାଇଲେ ମୁଁ ହାରିଯିବି, ମୋ ଜୀବନ ନଷ୍ଟ ହୋଇଯିବ । ଦିଅ, ଦିଅ, ତମ ଓଠଟିକୁ ମିଶେଇ ଦିଅ ମୋ ଓଠରେ । ପ୍ଲିଜ୍ !...ସେଇଠୁଁ ପ୍ରଭା ମନେ ମନେ ହସି ଉଠିଲା ଓ ତା' ପେଟରେ ଲେପ୍‌ଟେଇ ହୋଇଥିବା ପୁଅକୁ ଉଠେଇ ଆଣି ତାକୁ ଗୋଟାଏ (ଗୋଟାଏ ନୁହେଁ, ଏକାଧିକ, ମୁହଁଯାକ) ଜବରଦସ୍ତ ଚୁମା ଦେଲା । କିନ୍ତୁ ସଙ୍ଗେ ସଙ୍ଗେ ତା' ବାପକୁ ମଧ୍ୟ ଗୋଟାଏ ଜବର୍ ଚେତାବନୀ ଶୁଣେଇଲା—ସାବଧାନ । ଇଏ ତମ ପାଇଁ ନୁହେଁ ! ମୋଟେ ତମ ପାଇଁ ନୁହେଁ ! ଏଇ ଆତୁର ମଧୁର ଭାବ ଦେଖେଇ ମୋ ମନକୁ ମୋହି ନେଇଥିଲ ଓ ମୁଁ ତମକୁ ବାହା ହୋଇ ପଡ଼ିଲି । ଯଦିଓ ମୋତେ ଜଣାଥିଲା ଯେ ମୁଁ ଆସିବା ଆଗରୁ ଆଉ କେତେ ଗୋପୀଙ୍କୁ ମଧ୍ୟ ଏ ମୋହନ ରୂପ ଦେଖେଇଥିଲ ଓ ତାଙ୍କୁ ନିଜର କରି ନେଇଥିଲ । ଜାଣିଥିଲି ଯେ ତମେ 'ଲେଡ଼ି କିଲର୍' ନାଆଁରେ ପ୍ରସିଦ୍ଧ । ତଥାପି ମୋର ଆଶା ଥିଲା ଯେ ତମର ବୁଦ୍ଧି ହେବ । ବୁଝିବ ଯେ ମୁଁ ଅନ୍ୟତମ ଗୋପୀ ନୁହେଁ, ରାଧା ବି ନୁହେଁ,

ଏକମେବ ପତ୍ନୀ, ଆଉ ତମେ ମୋର ଚୁକ୍ତିବଦ୍ଧ ସ୍ୱାମୀ । ମୁଁ ବଞ୍ଚି ଥାଉଁ ଥାଉଁ ତମେ ଆଉ କାହା ପାଖକୁ ଯାଇ ପାରିବ ନାହିଁ । ପୂର୍ଣ୍ଣଚ୍ଛେଦ ।

କିନ୍ତୁ ଚୁମାଖିଆ ପୁଅର ବାଧ୍ୟସ୍ତ ଓ **ବଶୀଭୂତ** ମୁହଁର ଚେହେରାକୁ ଦେଖି ଦେଖି ତା'ର ମନେ ହେଲା ଯେ ପୁରୁଷଗୁଡ଼ାକ ଦୁର୍ବଳ । ସେଥି ସେଥି ହିସାବରେ ଦୁର୍ବଳ । ମୋ ବାପା ବି ସେମିତି ନୁହଁନ୍ତି କି ? ମାନେ ସେମାନେ ପାରନ୍ତି ନାହିଁ । ଟାଣ ହୋଇ ରହିପାରନ୍ତି ନାହିଁ । ସେହେତୁ ସେ ଯେ ଖରାପ, ଠିକ୍ ତା' ନୁହେଁ, ଅନ୍ତତଃ ତାଙ୍କ ବଦ୍‌ଗୁଣକୁ ସୁଧୁରେଇ ହେବ । ସେ ସେଦିନର ଶେଷ ଦୃଶ୍ୟକୁ ମନେ ପକାଇଲା ।

...ମୁଁ ଅବଶ୍ୟ ସେଦିନ କଥାଟାକୁ ଛୁଣ୍ଡେଇବା ପାଇଁ, ଯୁକ୍ତିତର୍କ ପାଟିତୁଣ୍ଡକୁ ନବଢ଼େଇବା ପାଇଁ କହିଥିଲି—"ଥାଉ । ମୁଁ ଆଉ କୌଣସି ସଫେଇ ଶୁଣିବା ପାଇଁ ପ୍ରସ୍ତୁତ ନୁହେଁ । ତମେ ତା' ସାଙ୍ଗରେ ଫ୍ଲର୍ଟ୍ କରୁଥିଲ, ହେଲେ ତାକୁ ପ୍ରେମ କରି ନଥିଲ, ପୁଣି ଆଉ କାହା ସାଙ୍ଗରେ ସେକ୍‌ସ କରିଥିଲ, ପ୍ରେମ କରି ନଥିଲ, କିମ୍ବା ପ୍ରେମ କରିଥିଲ, ସେକ୍‌ସ କରି ନଥିଲ, ଏ ସବୁର ସୂକ୍ଷ୍ମତତ୍ତ୍ୱ ମୋ ମୁଣ୍ଡରେ ପଶିବ ନାହିଁ । ମୁଁ ଖାଲି ଏତିକି ଜାଣିଲି ଯେ ତମେ ମୋତେ ଠକୁଛ । ତମେ ଖରାପ । ଖରାପ ଲୋକ ମାନଙ୍କରେ ମୋର କୌଣସି ସମ୍ପର୍କ ନାହିଁ । ତମେ କାଲିଠୁଁ ଅଲଗା ଶୋଇବ—ବୁଝିଲ ?"

ସେ କହିଲେ—"ଓ-କେ । ଇଟ୍ ସୁଟ୍‌ସ ମି । ମୁଁ ସେଇଆ ଚାହେଁ ।" କହି ଧପ୍ ଧପ୍ ହୋଇ ବାହାରକୁ ଚାଲିଗଲେ ।

ଆଜିକୁ ଦି'ହପ୍ତା ହେଲାଣି, କି ତା'ଠୁଁ ବେଶୀ । ହଉ ଶହେ ଦିନ, ହଜାର ଦିନ ହେଉ । ମୁଁ ଦୁର୍ବଳ ନୁହେଁ ତମ ପରି । ଜାଣିଛ ? ମୁଁ ଇଚ୍ଛା କଲେ, ମାନେ ମୁଁ ଯଦି ଖରାପ ହୋଇଥାଆନ୍ତି, ତା'ହେଲେ ଅସଲ ସଇତାନ୍ ହୋଇ ପାରି ଥାଆନ୍ତି । ...ଏଇ ଅଜବ୍ କଳ୍ପନାର ସୂଚନା ଦେଲା ପରି ପ୍ରଭା ହସହସ ମୁହଁରେ ସରୁ ଚଟକଣିଟିଏ ଲଗେଇଲା ତା' ପୁଅର ଗାଲରେ । ରୋହିତ ଟିକିଏ ଆଶ୍ଚର୍ଯ୍ୟ ହେଲା, କିନ୍ତୁ ଧରିନେଲା ଯେ ଇଏ ବି ଗେହ୍ଲାଟାରେ ଗଣା ।

× × ରାତି ଆଠଟା । ପ୍ରଭା ନିର୍ବିକାର କାନ୍ଥଘଡ଼ିକୁ ଅନେଇଲା । ବିରକ୍ତ ହେଲା । ଏତେ ରାତି ହେଲାଣି, କେଉଁଠି କିଛି ସୋରଶବ୍ଦ ନାହିଁ, ପୁଅଟା ବି ମନ ମାରି ଦେଇ କ'ଣ ଠୁକୁରୁ ଠୁକୁରୁ କରୁଛି ତା' ରୁମ୍‌ରେ—ତଥାପି ମୋଟେ ଆଠଟା ବାଜିଛି ? ପୁଣି ଥରେ ବିରକ୍ତ ହେଲା । ଏଥର ନିଜ ଉପରେ । କାହିଁକି ଏ ଉଦ୍‌ବେଗ ? ପ୍ରତୀକ୍ଷା ? ତୋ ମୁହଁକୁ ଲାଜ ନାହିଁ ? ...ଧାତ୍ ! କେମିତି

ଭଦ୍ରଲୋକ ଆସିଲେ ତାଙ୍କ ସାଙ୍ଗରେ ବୁଝାମଣା କରିନେବ, କଥାଟା ଛୁଣ୍ଡେଇ ଦେବ, ଏଥିରେ ଟିକିଏ ଟେନ୍‌ସନ୍ ହେବ ନାହିଁ ମଣିଟିର ? ତା'ଛଡ଼ା ଓଡ଼ିଶାର ପୁରପଲ୍ଲୀ ହୋଇଥିଲେ କଥାଟା ଭିନ୍ନ ହୋଇଥାଆନ୍ତା । ଏଠି କାନପୁରରେ, ମୁଁ ତଥାପି ବିଦେଶୀ । ନାନା ଲୋକଙ୍କ ସାଙ୍ଗରେ ଚହ୍ଲାପରିଚ ହୋଇଥିଲେ ବି ବେଳେ ବେଳେ ମନେହୁଏ, ଏମିତିକା ପଡ଼ସନ୍ଧ ବେଳେ ମନେ ହୁଏ, ଯେ ମୁଁ ନିହାତି ଏକୁଟିଆ । ଘରର ନୀରବତା ମୋତେ ଛୁଗୁଲେଉଛି, କହୁଛି—ତୋ ଖିଅପଣ ତୋର, ଏକା ତୋର । କ'ଣ ଜାଣି ନଥିଲୁ ଏମିତି ହବ ବୋଲି ? ନା ଭାବିଥିଲୁ କୋଉ ଭାଇବନ୍ଧୁ କୁଟୁମ୍ବ ଆସି ପହୁଞ୍ଚିବେ ତୋତେ ଆପୁଡ଼େଇବା ପାଇଁ ?

ରକ୍ଷାକର ! କାହାର ଆସିବା ଦରକାର ନାହିଁ ମୋ ପାଖକୁ । ମୁଁ ଏକୁଟିଆ ନୁହେଁ, ସ୍ୱାଧୀନ । ସେଇ ଏକା କଥା । ମୁଁ ସ୍ୱଇଚ୍ଛାରେ ବାହାରକୁ ଆସିଲି ପାଠ ପଢ଼ିବା ପାଇଁ, ସ୍ୱଇଚ୍ଛାରେ ଜଣେ ଅଣଓଡ଼ିଆକୁ ଏବଂ ତଥାକଥିତ ଅଜାତିରେ ବାହା ହେଲି । ଆଜି ମୁହିଁ ତା'ର ଭଲମନ୍ଦକୁ ନିଭେଇବି । ମୋର ଦାୟିତ୍ୱ, ମୋର ହାର୍‌ଜିତ୍, ହୁଏତ ମୋର ଶାନ୍ତି···

ନା ! ପ୍ରଭା ମନେ ମନେ ଚିତ୍କାର କରି ଉଠିଲା । କିନ୍ତୁ ବୁଝିହେଲା ନାହିଁ ସେ କାହାକୁ ନାହିଁ କରୁଛି, ଶାନ୍ତି ପାଇବାର ସମ୍ଭାବନାକୁ, ଅପର ନଗରୀକୁ, କି ତା'ର ଅନାବଶ୍ୟକ ଉଦ୍‌ବେଗକୁ । ଅତି ଅସ୍ଥିର ହେଲେ ସେ ଛବି ଆଙ୍କି ବସେ । ଆଜି ମଧ୍ୟ ସେଇଆ ହେଲା । କିନ୍ତୁ ଇଏ କ'ଣ ? ଖାଲି ଚଢ଼େଇ ଆଙ୍କି ହୋଇ ଯାଉଛି କାହିଁକି ? ବାପାଙ୍କ ଚଢ଼େଇ ?

ପ୍ରଭା ଏକୁଟିଆରେ ହସି ଉଠିଲା । ସତେକି ସେ ସ୍ପଷ୍ଟ କରି ଦେବାକୁ ଚାହେଁ ଯେ ସେ ବାପାଙ୍କୁ ମନେ ପକାଉଛି, (ମାନେ ସେ ଅଜାଣତରେ ମନେ ପଡ଼ି ଯାଉଛନ୍ତି), ଖାଲି ନିଜକୁ ହାଲୁକା କରିବା ପାଇଁ ନା ପାଗଳା ବାପାଙ୍କୁ ସ୍ନେହରେ ଟାହ୍ଣା କରିବା ପାଇଁ, ଆଉ କେଉଁଥିପାଇଁ ନୁହେଁ···

× × ରାତି ଦଶଟା । ଯୋଡ଼ା ଖଟର ଆରପାଖରେ ଜିତୁ ଲମ୍ବି ଯାଇଛି । ଆଖିପତା ବୁଜି ହୋଇ ରହିଛି । ଏ ପାଖରେ ପ୍ରଭା କଡ଼େଇ ହୋଇ ଶୋଇଛି । କିନ୍ତୁ ତା'ର ଆଖି ଖୋଲା । ସତେକି ଖାଲି ଆଖି ଖୋଲି ରଖିବା ପାଇଁ ସେ କାନ୍ଥ ଆଡ଼କୁ ମୁହଁ କରିଛି । କିମ୍ବା ହୁଏତ ଆଉ ଗୋଟାଏ କାରଣ ଅଛି । ଲୁହର ଶବ୍ଦ ବୋଧହୁଏ ଆହୁରି ବଢ଼ିଯାଇଛି ଏବଂ ଆଶଙ୍କା ହେଉଛି ଯେ ପାଖଲୋକ ତାକୁ ଶୁଣି ପାରିବ । ଅତି ଜାଗ୍ରତ ଭାବନା । କାହିଁକି ନା ମନରେ ଆସୁଛି ଯେ ଶୋଇ ପଡ଼ିଲେ ଗଲା, ପୁଣି ଯୋଉ କଥାକୁ ସେଇ କଥା, ଶୀତଳ ଯୁଦ୍ଧର ଆଉ ଗୋଟାଏ

ଅଧ୍ୟାୟ, ହୁଏତ ଆତ୍ମାର ଐସହ୍ୟ···ନା, ତେଇଁ ରହିବାକୁ ପଡ଼ିବ । ଏଇ ଶେଷ ସୁଯୋଗର ଶେଷ ମୁହୂର୍ତ୍ତି ଯାଏ ।

କିନ୍ତୁ ଶେଷର କ'ଣ ସୀମା ନାହିଁ ? ଡ୍ୟାମ୍ ଇଟ୍ ! ଟ୍ରାଜେଡ଼ି ଆସିଲେ ଆସୁ, ମୁଁ ଏଇ ଫାର୍ସକୁ ବଢ଼େଇବି ନାହିଁ । ଇଏ କ'ଣ ପିଲାଖେଳ ହୋଇଛି ଯେ କିଏ ଆଗେ ପାଟି ଫିଟେଇବ ବୋଲି ଆମେ ଜଗି ବସିଛୁ ? ଆମର ପାଟି ଫିଟାଫିଟି ଅବଶ୍ୟ ବନ୍ଦ ହୋଇ ନାହିଁ, ମାମୁଲି କଥାଭାଷା ଚାଲିଛି ସେମିତି ସେଇଦିନୁ । କିନ୍ତୁ ତମେ ଆଜି କୋଉଥିପାଇଁ କହିଲ ଯେ ନିଜ ବିଛଣାରେ ଆସି ଶୋଇବ ? ଶୋଇବ ମାନେ କ'ଣ ଖାଲି ଶୋଇବ ? ନା, ଅପେକ୍ଷା କରିଛ ମୁଁ ପ୍ରଥମେ କିଛି କହିବି ବୋଲି ? ହଁ, ମୋର ଅନେକ ପ୍ରଶ୍ନ ପଚାରିବାକୁ ଅଛି, ଯେମିତିକି କଥାଟା ପରିଷ୍କାର ହୋଇଯିବ । କିନ୍ତୁ ଦୋଷୀ ମୁଁ ନୁହେଁ, ତମେ । ତେଣୁ ପ୍ରଥମେ ତମର ଆଗ୍ରହ ଦେଖେଇବା ଦରକାର ଫେରି ଆସିବା ପାଇଁ, ମୋର ଶେଷ ପ୍ରଶ୍ନକୁ ଶୁଣିବା ପାଇଁ ଓ ତା'ର ଉତ୍ତର ଯୋଗାଇବା ପାଇଁ । ତମର ପ୍ରଥମେ ମୋ ଆଡ଼କୁ ଚାହିଁବା ଦରକାର, ଖୋଲା ଆଖିରେ । ହସିଲେ ହସ, ନହସିଲେ ନାହିଁ, ମୁଁ ସେଥିକୁ ପରୁଆ କରି ନାହିଁ । ବୋଧହୁଏ ଆଜି ବି ଥରେ ଅଧେ ହସିଲ ପରି ଦିଶୁଥିଲ ମୋ ଆଡ଼କୁ ଚାହିଁ, ଶୋଇବାକୁ ଆସିଲା ପୂର୍ବରୁ କିନ୍ତୁ ତା'ର କିଛି ମୂଲ୍ୟ ନାହିଁ ମୋ ପାଇଁ । କେବଳ ଲୁହ । ବର୍ତ୍ତମାନ—ଏଇ ଯୋଡ଼ି ଖଟରେ, ଏଇ ପାଖାପାଖି ଦେହକୁ ସାମନା ସାମନି ଚାହାଣିକୁ—ଯେ ତମର ଦୋଷ ହୋଇଛି ଓ ତମେ ପ୍ରକୃତରେ ଫେରି ଆସିବାକୁ ଚାହଁ ମୋ ପାଖକୁ । ଏତିକି ସାହସ ନାହିଁ ତମର ?

···କଥା ନ କହିଲେ ନାହିଁ । ତା' ବୋଲି କ'ଣ ସେପାଖକୁ ମୁହଁ କରି ଶୋଇବା ଦରକାର ? ମୁଁ ବାଘ ନା ଭାଲୁ ? ପାଞ୍ଚବର୍ଷର ସ୍ୱାମୀ-ପ୍ରେମିକ, ତମ ପିଲାର ବାପ । ହଠାତ୍ ଏମିତି ଖରାପ ହୋଇଗଲି ଯେ ମୋତେ ଛୁଇଁଲେ ପାପ ? ଓ-କେ । ମୋର ବି ଗୋଟାଏ ଆତ୍ମସମ୍ମାନ ଅଛି । ମୁଁ ଆଖି ଖୋଲିବି ନାହିଁ କି— । ଜାଣୁ ଏଇ ମର୍ମରେ ତା'ର ଆଖି ଦି'ଟାକୁ ଅଟକେଇ ରଖିଥିଲି, ତା'ର ସେଇ ବଡ଼ବୋଲି ଅମାନିଆ ଚର ଦି'ଜଣ, ଯେଉଁମାନେ ତା'ର ଭାବଭାବନାକୁ ଆଗରୁ ଧରି ପକେଇ ଦିଅନ୍ତି ଓ ତାକୁ ଅସୁବିଧାରେ ପକାନ୍ତି ।

···ସାହସ ନାହିଁ ! ସ୍ୱାଭାବିକ । ତମେ କୋଉ ଝିଅ ହୋଇଛ ଯାହାକୁ ଆଜନ୍ମ ବନ୍ଧନ କାଟି ଦେବାକୁ ପଡ଼େ, ଆଉ ଗୋଟିଏ ବନ୍ଧନରେ ପଡ଼ିବା ପାଇଁ ? ନା ଏକୁଟିଆପଣର ମହତ୍ତ୍ୱ ଜଣାଅଛି ତମକୁ ? ତମେ ଖାଲି ଖରାପ ନୁହଁ, ଲମ୍ପଟ ନୁହଁ, ତମେ ଭୀରୁ··· । ପ୍ରଭାର ଉଦ୍‌ବେଗ କୋଧକୁ ସାଙ୍ଗରେ ଧରି ପହଞ୍ଚିଲାଣି ଯାଇଁ କେଉଁ ଢଖରେ, ମନେ ହେଉଛି ମୁହୂର୍ତ୍ତିକରେ ଫାଟିଫୁଟି ପଡ଼ିବ ।

···ମୁଁ ପ୍ରଥମେ ଫୋନ୍ କଲି ତମକୁ । ଅଳି କଲି ପରି କହିଲି ଯେ ମୁଁ ଚାହେଁ ଫେରିଆସିବି ମୋ ବନ୍ଧଣାକୁ, ମାନେ ତମ ପାଖକୁ । ଅର୍ଥାତ୍ ମୁଁ ପ୍ରଥମେ ହାତ ବଢ଼େଇଲି ତମ ଆଡ଼କୁ, ଜଣେଇଲି ଯେ ମୁଁ ତମକୁ ଛାଡ଼ି ରହି ପାରିବି ନାହିଁ । ଆଉ କ'ଣ କରିଥାଆନ୍ତି ? ବେକରେ ପାଲି ଦଉଡ଼ି ପକେଇ ତମ ଗୋଡ଼ତଳେ ପଡ଼ିଥାଆନ୍ତି ? ମୁଁ ଖରାପ ହୋଇପାରେ, କିନ୍ତୁ ଏତେ ହୀନମାନ ନୁହେଁ ମ !··· ଖରାପ ? କେଉଁ ହିସାବରେ ଖରାପ ? ଆଉ ଗୋଟାଏ ଝିଅ ସାଙ୍ଗରେ ମିଶିଲି ବୋଲି ? ମିଳାମିଶା, ସମ୍ପର୍କ, କି ଯାହା କୁହ, ଯେଉଁଥିରେ ଖାଲି ଆନନ୍ଦ, ସେଥିରେ ଖରାପ ଆସିଲା କେଉଁଠୁ ? ଆଉ ତମକୁ ଠକେଇବା କଥା ? ତମେ କ'ଣ ଜାଣିନା ଯେ ମୋର ଏମିତି ଗୋପୀ ଥିଲେ ଓ ରହିଥିବେ, କିନ୍ତୁ ତମେଇଁ ମୋର ଅନ୍ତରତମ ସବୁଦିନର ସାଥୀ ? ତମର ବି କ'ଣ ସେମିତି କେତେ ଆର୍ଟିଷ୍ଟ ବନ୍ଧୁ ନାହାନ୍ତି, ଯେଉଁମାନଙ୍କ ସାଙ୍ଗରେ ମିଶିବାକୁ ଭଲ ଲାଗେ ତମକୁ ? ନା ସେମାନେ କ'ଣ କେବେହେଲେ···ମାର୍ ଗୋଲି ସେମାନଙ୍କୁ ! ପ୍ରଭା, ଶୁଣ, ମୁଁ ତମକୁ ଛାଡ଼ି ରହି ପାରିବି ନାହିଁ । ଏଇ ହେଲା ସାର କଥା, ଶେଷ କଥା । ପ୍ରଭା, ମୋର ସନ୍ଦେହ ହେଉଛି ଆଜି ତମେ ଗୋଟାଏ ନୂଆ ଅତର ଲଗେଇଛ ମୋ ପାଇଁ । ନୂଆ ନୁହେଁ, ମୋର ଫେଭରିଟ୍, ଯାହା ତମର ରୂପଗୁଣ, ତମ ବିଦ୍ୟାବୁଦ୍ଧି, ଗମ୍ଭୀର ଗୃହିଣି ବହଳ ଭୂରୁ ଓ ସାବ୍ଲା ଦେହର ଝସ୍ପପଣ ସାଙ୍ଗରେ (ତଥା ତମ ଜିଦ ସାଙ୍ଗରେ) ମିଶିଯାଏ, ଉତ୍କଟ ହେଉ କି ଖରାପ ହେଉ, କୌଣସି ବୁଦ୍ଧିମାନ୍ ପୁରୁଷ ତାକୁ ଆଘ୍ରା ନ କରି ରହିପାରିବ ନାହିଁ । ପ୍ରଭା ! ···ସେଇଠୁଁ ଜିତୁ ସତସତିକା ତା' ହାତ ବଢ଼େଇଲା ପ୍ରଭା ଆଡ଼କୁ, ଅସହାୟ ହେଲା ପରି । କିନ୍ତୁ ତାକୁ ଛୁଇଁଲା ନାହିଁ ।

ପ୍ରଭା ସେତେବେଳକୁ କ୍ରୋଧର ଶୀର୍ଷରେ ପହଞ୍ଚିଲାଣି, କିନ୍ତୁ ନିଜକୁ କହୁଥିଲା ଯେ ଇଏ ମୋର ହତାଶା ନୁହେଁ, ପ୍ରଭା ହାରିବ ନାହିଁ, କଦାପି ହାରିବ ନାହିଁ, ବରଂ ···ଦେଖିବ କ'ଣ ହେଉଛି···ଏଇ ଘଟଣା ଭିତରେ··· । ନିଜକୁ ସମ୍ଭାଳିଲା ପରି ସେ କଡ଼ ଲେଉଟାଇଲା ଏବଂ ଆବିଷ୍କାର କଲା ଯେ ଆର ଜଣକ ହାତ ବଢ଼େଇଛି ତା' ଆଡ଼କୁ । କିନ୍ତୁ ହୁଏତ ନିଦ ବାଉଳାରେ—କିଏ ଜାଣିଛି ? ଯାହାହେଉ ତା'ର ଗୋଟିଏ ହାତ ବି ଘୁଞ୍ଚିଗଲା ତା' ପାଖକୁ ତାକୁ ଛୁଇଁବା ପାଇଁ । କିନ୍ତୁ ତାକୁ ଛୁଇଁ ହେଲା ନାହିଁ ।

ମୁହୂର୍ତ୍ତ ବିତିଗଲା । ଛୁଇଁବା ନଛୁଇଁବାର ଅପୂର୍ବ ଅନୁଭବ ।

ପ୍ରଭାର ମନେ ପଡ଼ିଲା ମାଇକେଲ୍ ଆଞ୍ଜେଲୋଙ୍କ ଯୁଗାନ୍ତକାରୀ ଛବି । 'ସିଷ୍ଟାଇନ୍ ଚାପେଲ'ର ଛାତରେ ଅଙ୍କା ହୋଇଥିବା ଛବି, କେମିତି ଭଗବାନ୍ ପ୍ରଥମ ପୁରୁଷ ଆଦାମ୍‌କୁ ଜୀବନ୍ୟାସ ଦେଉଛନ୍ତି ତା' ହାତକୁ ଛୁଇଁ ନଛୁଇଁଲା ପରି, ଏବଂ ଅନୁଭବର ଆତିଶଯ୍ୟରେ ତା'ର ଶ୍ୱାସ ରୁଦ୍ଧ ହୋଇଗଲା । ହେଲେ ଜିତୁର ମନେ

ପଢ଼ିଲା କେଉଁ ସିନେମା କଥା (ସତ୍ୟଜିତ୍ ରାଏ ? ଚାରୁଲତା ?) ଯାହାର ଶେଷ ଦୃଶ୍ୟରେ ଅଲ୍ପ ବହୁତ ଛଡ଼ାଛଡ଼ି ହୋଇଯାଇଥିବା ସ୍ୱାମୀସ୍ତ୍ରୀ ପରସ୍ପରକୁ ହାତ ବଢ଼େଇ ରହି ଯାଇଛନ୍ତି । ସେଇଠୁଁ ଖେଲ ଖତମ୍ ! ଏଇଥିରେ ସେ ବୋଧହୁଏ ହସିଉଠି ଲେଟି ପଡ଼ୁଥାନ୍ତା ପ୍ରଭା ଉପରେ, ଆଉ ସେଇ ନବଡ ବାସ୍ନାରେ ନିଜକୁ ହଜେଇ ଦେଇଥାଆନ୍ତା ।

କିନ୍ତୁ ଏହି ସମୟରେ ଗୋଟାଏ ଘଟଣା ଘଟିଲା । ଅପ୍ରତ୍ୟାଶିତ । ରୋହିତ ପାଖ ଘରୁ କାନ୍ଦି କାନ୍ଦି ପଳେଇ ଆସୁଛି । କ'ଣ କହୁଛି ବୁଝି ହେଉନାହିଁ । ଆଖି ପୂରାପୂରି ଖୋଲି ନାହିଁ । କିନ୍ତୁ ସିଧାସଳଖ ଆସୁଛି ଏଇଠିକି, ଏଇ ଖଟକୁ । ଆସିଲା···ଏବଂ ଭୁସ୍କିନା ପଶିଗଲା ଦୁହିଁଙ୍କ ମଝିରେ ।

ସେହେତୁ ପ୍ରଭା ଓ ଜିତୁ ପରସ୍ପରର ହାତକୁ ଛୁଇଁଲେ ଓ ପାଇଲେ, କିନ୍ତୁ ରୋହିତର ଦେହକୁ ବାଡ଼େଇ । ବାତ୍ସଲ୍ୟର ସେଇ ବିରାଟ ପ୍ରାଚୀରକୁ ଟପି ଆଗକୁ ଯିବା ସମ୍ଭବ ନଥିଲା ।

( ୨ )

ଝିଅର ଚିଠି ପାଇଲା ପରେ ମାଧ୍ୟାଧରବାବୁ ଆଦୌ ଚିନ୍ତିତ ହୋଇ ନ ଥିଲେ ବୋଲି କହିଲେ ଭୁଲ ହେବ, ତେବେ ସେ ବିବ୍ରତ ହୋଇ ପଡ଼ି ନ ଥିଲେ । ···ଆମ ପ୍ରଭାର କଥା କଥାକେ ସମସ୍ୟା ! ତା' ବାହାଘର ପୂର୍ବରୁ ସେ କେତେ ଚିଠି ଲେଖୁ ନ ଥିଲା ମୋ ପାଖକୁ, ତା'ର ନାନା ସମସ୍ୟା ନେଇ । ଜିତେନ ବର୍ମାକୁ ବାହା ହେବ କି ନାହିଁ ସେ ବିଷୟରେ ମଧ୍ୟ ମୋର ପରାମର୍ଶ ଲୋଡ଼ିଥିଲା । କିନ୍ତୁ ମଜା ହେଉଛି, ସେ କେବେହେଲେ କାହାର ପରାମର୍ଶକୁ ଅପେକ୍ଷା କରିନାହିଁ । ଆପେ ଆପେ ସମସ୍ୟାର ସମାଧାନ କରିଛି, ସ୍ୱଇଚ୍ଛାରେ ଗୋଟାଏ ନୂଆ ବାଟ ଧରିଛି । ସତେକି ସେ ଚାହେଁ ବାରି ହୋଇଯିବ ଅନ୍ୟମାନଙ୍କ ଠାରୁ । ବମ୍ବେକୁ ଗଲା ଆର୍ଟ ସ୍କୁଲରେ ପାଠ ପଢ଼ିବ । ତାକୁ ଅଧାରୁ ଛାଡ଼ିଦେଇ କୋଉ 'ନିର୍ମଳ ବମ୍ବେ' ଆନ୍ଦୋଳନରେ ମିଶିଲା । ସେଇଠି ଜିତେନ ବର୍ମା ସାଙ୍ଗରେ ଚିହ୍ନା ହୁଏ । ସିଏ ବି ମ୍ୟାନେଜ୍‌ମେଣ୍ଟ ପଢ଼ିବାକୁ ଆସି ତାକୁ ଅଧାରୁ ଛାଡ଼ି ଦେଇଥିଲା । ଦୁହେଁ ଦୁହିଁଙ୍କୁ ପ୍ରେମ କଲେ ଓ ପ୍ରଭା ବାହା ହୋଇ କାନପୁର ଆସିଲା ଯେଉଁଠୁ ଜିତେନ କାଏଁ କଣାବିକା ଧନ୍ଦା କରେ । ଏଇ କାହାଣୀର ପ୍ରତ୍ୟେକ ଛକରେ କିଛି ନା କିଛି ସମସ୍ୟା ଥିଲା ! କିନ୍ତୁ ସେ ନିଜେ ତା'ର ଫଇସଲା କରିଛି । ଖାଲି ବାପା ପାଖକୁ ଚିଠି ଲେଖେ, ଆଗେ ପଚାରିଦିଏ. ତା'ପରେ ଜଣାଇଦିଏ, କାହିଁକି ନା···କାହିଁକି ନା ସିଏ ଗୋଟାଏ ତା'ର ବଦ୍‌ଗୁଣ ! ମାଧ୍ୟାଧରବାବୁ ସସ୍ନେହ ଆମୋଦରେ ଟିକିଏ ହସିଥିଲେ ମଧ୍ୟ ଝିଅର ଏଇ 'ବଦ୍‌ଗୁଣ' ନେଇ ।

ତଥାପି ସେ ବାରମ୍ବାର ସେଇ ଗୋଟି କଥା ନ ଭାବି ରହି ପାରିଲେ ନାହିଁ । …ବାହାଘର ପରେ ସେ ଏମିତି କେଇଟା ଚିଠି ଲେଖିଛି କି ମୋ ପାଖକୁ ? ଆମର ଦେଖାସାକ୍ଷାତ ବି ହୋଇ ନାହିଁ ତା' ବାହାଘର ପରେ । ମିସ୍ ତ ବାହାଘରକୁ ବି ଗଲି ନାହିଁ । କହିଲି—ସେ କୋଉଠି କୋଉ ଲଫଙ୍ଗାକୁ ବାହା ହେଉଛି, ମୁଁ କାହିଁକି ଯିବି ସେଠିକି ? ତା ବାପା ଗଲେ ଯାଆନ୍ତୁ…ନାତିଟୋକାକୁ ଆସି ଗୁରିବର୍ଷ ହେବଣି । ପ୍ରଭି ଲେଖିଥିଲି ସେ ପୁଅକୁ 'ବାପା ବୋଉ' କହିବା ପାଇଁ ଶିଖେଇଛି, 'ଡ୍ୟାଡୀ ମମ୍ମୀ' ନୁହେଁ । ଆମ ଝିଅର ନିଜତ୍ୱବୋଧ କ'ଣ କମ୍ କି ! ନହେଲେ ସେ କ'ଣ ନିଜ ନାଆଁକୁ ନ ବଦଳେଇ 'ପ୍ରଭି ମିଶ୍ର' କରି ରଖି ଥାଆନ୍ତା ?

କିନ୍ତୁ ସେ ସେଠି ଏକୁଟିଆ । ହୁଏତ ସେଇଥିଲାଗି ତା'ର ପୈତୃକ ନାଆଁ, ସଂସ୍କାର ଇତ୍ୟାଦିକୁ ଏମିତି ମୁଠେଇ ଧରିବାକୁ ଚାହେଁ । ଏଇ ସମସ୍ୟା ଗୁରୁତର ହୋଇଥିବ ବୋଲି ମୁଁ କହୁନାହିଁ । ସମ୍ଭବତଃ କିଛି ଗୋଟାଏ ମନୋମାଳିନ୍ୟ ଘଟିଛି ଦି'ଜଣଙ୍କ ଭିତରେ । ହେଲେ ସ୍ୱାମୀ-ପିଲାଙ୍କୁ ଛାଡ଼ି ଦେଲେ ଆଉ କିଏ ଅଛି ସେଠି, ଯାହାକୁ ସେ ତା'ର ମନକଥା ଖୋଲି କରି କହିପାରିବ ? ବିଶେଷତଃ ତା'ର ଗୋଟାଏ ଅଗାଧ ବିଶ୍ୱାସ ତା' ବାପା ଉପରେ ପିଲାଟି ଦିନୁ । ତାକୁ ବଞ୍ଚେଇ ରଖିବା ଉଚିତ ନୁହେଁ କି ?

ମିସ୍‌କୁ ପଗ୍ଗରି ଲାଭ ନାହିଁ । ସେ ଓଠ ଲମ୍ବେଇ ଦେବ । କହିବ—ଯାଉନା, ତମ ଗେହ୍ଲା ଝିଅ ଡକେଇ ପଠେଇଛି ଯେତେବେଳେ, ଯିବ ନାହିଁ କେମିତି ? ପୁଣି ଲେଖିଛି ଦି'ପଟ ବାଟଖର୍ଚ୍ଚ ଦେବ । ଆଉ ଭାବିବାର କ'ଣ ଅଛି ? ବିଦ୍ରୂପ । ବାପ ଝିଅ ଉଭୟଙ୍କ ପ୍ରତି । ଟିକିଏ ହିଂସା ମଧ୍ୟ, ସେ ଯେ ଖାଲି ତା' ବାପ ପାଖକୁ ଲେଖେ ଏମିତି ।

କିନ୍ତୁ କଥା ହେଉଛି ଯେ ମୁଁ କେବେଠୁଁ ବିଚ୍ଛିନ୍ନ ହୋଇଗଲିଣି ସଂସାରରୁ । ଗୁକିରି ଥାଉଁ ଥାଉଁ । ମିସ୍ ଘରକରଣାର ମାଲିକ । ମୁଁ ଖାଲି ପିଲାଙ୍କୁ ପାଠ ପଢ଼ାଏ ସ୍କୁଲରେ, ଆଉ ମିସ୍ ହାତକୁ କେଇଟା ଟଙ୍କା ବଢ଼େଇ ଦିଏ । ଠାକୁରେ ବଡ଼ଲୋକ । ପୁଅଝିଅ ତିନିଜଣ ବୃତ୍ତି ପାଇ ପାଠ ପଢ଼ିଛନ୍ତି, ନିଜ ଗୋଡ଼ରେ ମଣିଷ ହୋଇଛନ୍ତି । ଏଣିକି ମୋର ଆଉ ଚିନ୍ତା କ'ଣ ? ମିସ୍ କହିଲି ପରି, ମୁଁ ମଠରେ ଖାଉଛି । ହଁ, ମୁଁ ଏକୁଟିଆରେ ବହି ପଢ଼େ ଆଉ ଚିନ୍ତା କରେ । ଧର୍ମ, ଦର୍ଶନ, ସାହିତ୍ୟ ଇତ୍ୟାଦି, ଯେଉଁଥିରେ ଜୀବନ ମରଣ ରହସ୍ୟକୁ ନ ବୁଝିଲେ ବି ଆଉ ଟିକିଏ ଗଭୀରରେ ଅନୁଭବ କରିହେବ । ଆତ୍ମଦର୍ଶନ । ଯେମିତି କି ମୋର ଆତ୍ମା ଆଉ ଖଣ୍ଡିଆ ହୋଇ ରହିବ ନାହିଁ, ଜଗତ ସାଙ୍ଗରେ ମିଶିଯିବ, ସକଳ ଜନ୍ମମୃତ୍ୟୁର ଲୀଳା ସାଙ୍ଗରେ, ମାୟା ସାଙ୍ଗରେ, ସେଇଠୁଁ ତା'ର ଅନ୍ତ, ଅନ୍ତରରେ…

କିନ୍ତୁ ଝିଅଟା ଯଦି ସତରେ କାନ୍ଦୁଥାଏ ଏକୁଟିଆ ?

କିଏ କାହିଁକି ବାଦ କରିବ, ପ୍ରଥମ କି ସମୀର, ଯେ ବାପା ଅପା ପାଖକୁ ଗଲେ, ଆମ ପାଖକୁ ଆସିଲେ ନାହିଁ ? ସେମାନେ ତ ପାଖରେ ଅଛନ୍ତି, ଆସନ୍ତି ଯାଆନ୍ତି, ଆଉ ଇଏ ତ କାହିଁ କେତେ ଦୂରରେ । ତା'ଛଡ଼ା ଆଉ କିଏ ତା' ବାପାଟାରୁ ଏତେଟା ଆଶା କରେ ? ଝିଅଟା ମୋଟେ ସେଣ୍ଟିମେଣ୍ଟାଲ୍ ନୁହେଁ, ହେଲେ ସେ ପ୍ରକୃତରେ କିଛି ନୁହେଁ ତା' ବାପା ପାଖରୁ । ଅନ୍ତତଃ ଟିକିଏ ଆଶ୍ୱାସନା...

ଶେଷକୁ ମାୟାଧରବାବୁ ସ୍ଥିର କଲେ ଯେ ସେ ଯିବେ ସେଠିକି । ମିସ୍ ହସୁ, କି ଦୁନିଆଁ ହସୁ । ସେମାନେ ହସନ୍ତୁ, କାହିଁକିନା ମୁଁ କୁଆଡ଼େ କାହାର କିଛି କରିପାରେ ନାହିଁ । ମିସ୍ ଥରେ ଥଟ୍ଟା କରି କହିଲା ଯେ ମୁଁ ଏତେ ଭଲଲୋକ କି ନା, ସେଇଥିଲାଗି । କହିଲା, ବାଡ଼ ଉଠେଇଲେ ସିନା ବାବୁ କାହାକୁ ରକ୍ଷାକରି ପାରିବେ ! ହଉ, କିନ୍ତୁ ଝିଅର ପିଠିକୁ ଟିକିଏ ଆଉଁସି ଦେଇ ପାରିବ, ସେ କ୍ଷମତା କ'ଣ ମୋର ନାହିଁ ?

ପୂର୍ବରୁ ଚିଠି ଲେଖି ଜଣାଇବା ଆବଶ୍ୟକ ବୋଲି ମନେକଲେ ନାହିଁ । କହିଲେ. ଠିକଣା ଖୋଜି ସିଧା ପହଞ୍ଚିଯିବ ସେଠି । ପାଣ୍ଡୁନଗର କଲୋନୀର ନମ୍ବରଦିଆ ଘର, ନ ପାଇବାର କାରଣ ନାହିଁ । 'ସର୍ପ୍ରାଇଜ୍' ଦେବ । ହୁଏତ ନାତିଟୋକା ଆଗେ ବାହାରି ଆସିବ ପଦାକୁ । ମୋତେ ଚିହ୍ନିବ ନାହିଁ । ହେଲେ ମୁଁ ତାକୁ କୋଳକୁ ଟେକି ନେବି । କହିବି—ଆରେ, ମୁଁ ତୋ ଅଜା ପରା !

× × ସେଇଆ ହେଲା । 'ଡିଙ୍ଗ୍' ଶବ୍ଦ ଶୁଣି ଆଗେ ରୋହିତ ଧାଇଁ ଯାଇଥିଲା କବାଟ ଖୋଲିବା ପାଇଁ, ପଛେ ପଛେ ପ୍ରଭା । ଯେଉଁ ରୂପରେ ରୋହିତ କାନ୍ଦି କାନ୍ଦି ବାପାବୋଉଙ୍କ ମଝିରେ ପଶି ଯାଇଥିଲା ତା'ର ପରଦିନ ସନ୍ଧ୍ୟାରେ । କିନ୍ତୁ ଇଏ କ'ଣ ହେଲା ? ମାୟାଧରବାବୁ ହସହସ ହୋଇ ନାତିକୁ ଟେକି ନେବାକୁ ଗଲାରୁ ସେ ଛୁଟିପିଟି ହୋଇ ପଳେଇ ଆସିଲା ତା' ବୋଉ ପାଖକୁ । ଆଉ କହିଲା—"ସିଏ ପଳେଇ ଯାଉ !"

"କାହିଁକି ? ସେ ତୋ ଅଜା ପରା !"

"ନା ! ବ୍ୟାଡ୍ ମ୍ୟାନ୍ !"

ବାପଝିଅ କାବା ହୋଇଗଲେ । ବାପଝିଅ ଗୁଡ଼ାଏ ହସିଲେ ଓ ମୂର୍ଖ ପିଲାଟାକୁ ବୁଝେଇ ବସିଲେ । କିନ୍ତୁ ତା'ର କିଛି ଫଳ ହେଲା ନାହିଁ । ରୋହିତ ମାୟାଧରବାବୁଙ୍କ ପାଖ ମାଡ଼ିଲା ନାହିଁ । ଅଧିକନ୍ତୁ ତାଙ୍କୁ ଦେଖିଲାକ୍ଷଣି

ବୋଉ ଦେହରେ ଲାଗି ରହିଲା, ଜୋକ ପରି । ପ୍ରଭା ଚଢ଼ି ଉଠିଲା । ଜୀରୁ ତାକୁ ଜୋର୍ କରି ଛଡ଼େଇ ଆଣିଲା ତା' ବୋଉଠାରୁ । କିନ୍ତୁ ଟିକିଏ ପରେ ଯୋଉ କଥାକୁ ସେଇ କଥା ।

କ୍ରମଶଃ ମାସ୍ଟାଧରବାବୁଙ୍କୁ ମଜା ଲାଗିଲା ନାହିଁ । ଦୁଃଖ ହେଲା···ଭଗବାନ୍ ! କାହିଁକି ଏମିତି ହେଲା ?

ସେଦିନ ରାତିରେ ରୋହିତକୁ ଅଲଗା କରି ରୁମ୍‌ରେ ତା' ନିଜ ଖଟରେ ଶୁଆଇବା ସମ୍ଭବ ହେଲା ନାହିଁ ।

ତା' ପରଦିନ ରାତିରେ ବି ସେଇଆ ହେଲା ।

ତିନିଙ୍କ ତିନିହେଁ ବୁଝିପାରିଲେ ନାହିଁ ଯେ ରୋହିତ ଆଗନ୍ତୁକଙ୍କୁ କାହିଁକି ଗୋଟାଏ ଖରାପ ଲୋକ ବୋଲି ଧରି ନେଇଛି । କେଉଁ ପୁଞ୍ଜୀଭୂତ ଖରାପ ଲୋକମାନଙ୍କର ଚେହେରା, ହାବଭାବ ଦାଢ଼ି କାଶ, ତଥା ତୃତୀୟ ବ୍ୟକ୍ତିପଣର ଶତ୍ରୁଭାବ ମୂର୍ତ୍ତିମନ୍ତ ହୋଇ ଉଠିଛି ଏଇ ବୟସ୍କ ଲୋକଟିର ହସରେ, ଚାହାଣିରେ । ଏପରିକି ତା'ର ବ୍ୟାକୁଳ (ଏବଂ ସେହେତୁ ବୋଧହୁଏ ଆହୁରି ଖରାପ ଦେଖାଯାଉଥିବା) ସରାଗରେ ।

ଚତୁର୍ଥ ରାତି ସରି ଆସିଲା ବେଳକୁ ପ୍ରଭା ଓ ଜୀରୁ ମଧ୍ୟ ଯେପରି ଭାବରେ ଅନେଇଲେ ପରସ୍ପରକୁ ମଝିରେ ଶୋଇଥିବା ପୁଅର ଦେହରେ ହାତ ପକେଇ (ହାତ ଦୁଇଟା ଖାଲି ଛୁଇଁ ନଥିଲା ପରସ୍ପରକୁ, ଛନ୍ଦି ହୋଇଥିଲା), ତାକୁ ବ୍ୟାକୁଳରୁ ବଳି ବିକଳ, ଦୟନୀୟ କୁହାଯିବ । ହୁଏତ ଭୋର ସକାଳର ଧୁଇଆଳୁଅରେ ତା'ର କଳବଳ ଜଣା ପଡ଼ୁନଥିଲା, କୋମଳ କାରୁଣ୍ୟରେ ଢାଙ୍କି ହୋଇ-ଯାଇଥିଲା, କିନ୍ତୁ ଦୁହେଁ ଦୁହିଁଙ୍କ ଅକୁହା ଭାଷାକୁ ବେଶ୍ ଶୁଣି ପାରୁଥିଲେ—ଆଉ କେତେଦିନ, କେତେଦିନ ଚାଲିଥିବ ଏମିତି ? ସେଦିନ ରାତିର କଥାଟାକୁ କ'ଣ ପୂରା କରିହେବ ନାହିଁ ? ଯଦିଓ କେମିତି ପୂରା କରି ହେବ, ମନର କି ଦେହର କେଉଁଭଳି ଧ୍ୱନିରେ, ରସରେ, ଗନ୍ଧରେ, ସେ ବିଦ୍ୟୁତ୍‌ରେ କାହାରି ସ୍ପଷ୍ଟ ଧାରଣା ନଥିଲା ।

ଏଇ କେଇଟା ଦିନ ଭିତରେ ପ୍ରଭା ଓ ଜୀରୁ ମାସ୍ଟାଧରବାବୁଙ୍କୁ କାନପୁର ସହରଟାଯାକ ବୁଲେଇ ସାରିଲେଣି । ଯେତେକ ଯେତେ ଯାହା ଦେଖିବା କଥା, ଯେତେକ ଦୋକାନବଜାର, ଶିଳ୍ପ, ଇତିହାସ, ଉଦ୍ୟାନ ଏଟସେଟେରା ସବୁ ସ୍ୟା'ର ଭିତରେ ସାରି ଦେବାକୁ ପଡ଼ିବ । ବାପାଙ୍କ ମୃଦୁ ଆପତ୍ତି ଶୁଣାଯାଉ ନଥାଏ । "ଆପଣ ଆଉ କେବେ ପୁଣି ଆସିବେ···" ଏଇ ହେଲା ଆପତ୍ତିର ଉତ୍ତର ।

କିନ୍ତୁ ମୁଁ କ'ଣ ଏଇଥିପାଇଁ ଆସିଥିଲି ? ପ୍ରଭାର ସମସ୍ୟା କେଉଁଠାଏଁ ଗଲା ? ଝିଅକୁ ଏକୁଟିଆ ପାଖରେ ପାଇଲେ ମାସ୍ଟ୍ରାଧରବାବୁଙ୍କ ପାଟି ଖଜବଜ ହୁଏ ପଚାରିବା ପାଇଁ । ହେଲେ ସେ ପଚାରି ପାରନ୍ତି ନାହିଁ । କାହିଁକିନା ତାଙ୍କର ମନେହୁଏ ଯେ ଝିଅ ତା'ର ସମ୍ଭାବନାରେ ଅପ୍ରତିଭ ହୋଇ ଉଠୁଛି । ଘରକରଣାର ଏଣୁତେଣୁ କଥା ପକାଉଛି, ବୋଉ ଓ ଭାଇ ଭଉଣୀଙ୍କ ବିଷୟରେ କେତେ କ'ଣ ଜାଣିବାକୁ ଚାହୁଁଛି । ତରତର ହୋଇ, ଅସ୍ଥିର ହୋଇ ସତେକି ସେ ବାପାଙ୍କୁ ମୋଟେ ସମୟ ଦେବାକୁ ଚାହେଁ ନାହିଁ ତାଙ୍କର ଭିନ୍ନ ଓ ଗୁରୁତର ପ୍ରଶ୍ନ ପଚାରିବା ପାଇଁ ।

ହେଲେ ଥରେ କଥାକୁହା ମଝିରେ ଗୋଟାଏ ଲମ୍ବା ବ୍ୟବଧାନ ଆସି ଯାଇଥିଲା ବୋଧହୁଏ । କିମ୍ବା ହୁଏତ ମାସ୍ଟ୍ରାଧରବାବୁ ଗଳା ଖଙ୍କାରି ପ୍ରଶ୍ନଟାକୁ ଆରମ୍ଭ କରିବେ ବୋଲି ପ୍ରଭାର ମନେ ହେଲା । ସେଇଠୁ ସେ ଅତମତ ହୋଇ ଲାଜେଇ ଲାଜେଇ କହି ପକେଇଲା—"ବାପା, ମୁଁ ସେଇ ଯୋଉ ଚିଠି ଲେଖିଥିଲି ନା···ସେମିତି କିଛି ନୁହେଁ···ବେଳେବେଳେ ମନଟା କେମିତି କ'ଣ ହୋଇଯାଏ, ସାନ କଥା ବଡ଼ ହୋଇ ଦିଶେ, ସେଇଲାଗି କ'ଣ ଏଣୁତେଣୁ ଲେଖିଦେଲି···ଆଇ ଆମ୍ ସରି···"

ଉତ୍ତମ । କିନ୍ତୁ ସେଇଠୁ ମାସ୍ଟ୍ରାଧରବାବୁ ନିଜକୁ ହିଁ ଗୋଟାଏ ଟାଣୁଆ ପ୍ରଶ୍ନ ପଚାରିବାକୁ ବାଧ୍ୟ ହେଲେ—ତା' ହେଲେ ? ଝିଅର କିଛି କହିବାକୁ ନାହିଁ । ନାତି ପାଖ ମାଡ଼ୁନାହିଁ । ଆଉ ଏଠି ବସି ରହିଛୁ କାହିଁକି ?

ତଥାପି ମାସ୍ଟ୍ରାଧରବାବୁଙ୍କ ମନରେ ଆସୁଥାଏ ଯେ ଝିଅଟାର ଆତ୍ମାଭିମାନ କାହିଁରେ କଅଣ । ସେଇଲାଗି ସୁବିଧା ଦେଖି ତା' ପିଠିକୁ ଆଉଁସିଲେ ସେ ହୁଏତ ଆଉ ସମ୍ଭାଳି ପାରିବ ନାହିଁ, ତା'ର ଦୁଃଖତକ ଅଜାଡ଼ି ଦେବ ମୋ ପାଖରେ ! ନାତିଟୋକା ବି ଆରେଇ ଯିବ, ମୁଁ ଆଉ କିଛିଦିନ ଆଙ୍କ ସାଙ୍ଗରେ ପାଖରେ ରହିଲେ । ନିଜ ଅଜାକୁ ଚିହ୍ନିବ ନାହିଁ ? ତା' କେମିତି ହେବ ?

ଏମିତି ସାତଦିନ ବିତିଗଲା । କିନ୍ତୁ ପରିସ୍ଥିତିରେ କୌଣସି ପରିବର୍ତ୍ତନ ହେଲା ନାହିଁ । କାହାରି ପାଇଁ । ଏବଂ ଜାତୁ ଓ ପ୍ରଭାଙ୍କର କୌଣସି ସନ୍ଦେହ ରହିଲା ନାହିଁ ଯେ ବାପା ଏଠି ଥିବାଯାଏ ବୋଧହୁଏ ତା' ବିଛଣାକୁ ଯିବ ନାହିଁ କି ତାଙ୍କ ଦୁହିଁଙ୍କ ଦରକୁହା କଥା ପୂରା ହୋଇ ପାରିବ ନାହିଁ ।

ଯାହାହେଉ ମାସ୍ଟ୍ରାଧରବାବୁ ତାଙ୍କ ରହଣି ବିଷୟରୁ ଠିକଣା କରିଦେବା ପାଇଁ କଥାଟାକୁ ପକେଇଲେ ଝିଅଜ୍ୱାଇଁଙ୍କ ଆଗରେ । ଭଦ୍ରତା ଖାତିର୍‌ରେ ପ୍ରସ୍ତାବ କଲେ—"ବୁଝିଲ ଜାତୁ, ମୁଁ ଭାବୁଛି ଫେରିଯିବି ଶୀଘ୍ର । ଯାହା ଦେଖିବାର ତ ଦେଖି ସାରିଲିଣି । ଆଉ ବେଶ୍ କିଛିଦିନ କଟିଗଲା ତମମାନଙ୍କ ସାଙ୍ଗରେ···"

ମାମ୍ବାଧରବାବୁ ବୁଝିପାରିଲେ ନାହିଁ ଯେ ଏଥିକରେ କିବୁ କାହିଁକି ଅନେଇଲା ପ୍ରଶ୍ନ ଆଡ଼କୁ ଓ ପ୍ରଶ୍ନ କାହିଁକି ତା' ମୁହଁ ତଳକୁ କଲା, ସତେକି ତାଙ୍କ ମୁହଁ ଚୁହାଁଚୁହିଁ ଧରା ପଡ଼ିଯିବ । କିନ୍ତୁ ସେ ଧୀରେ ଧୀରେ ବୁଝିଲେ ଏବଂ ଆଶ୍ଚର୍ଯ୍ୟ ହେଲେ, ହେଲେ ଭାବିଲେ ଯେ ସେ ଭୁଲ୍ ବୁଝି ନାହାନ୍ତି, ଯେତେବେଳେ ପ୍ରଶ୍ନ ଅଙ୍ଗେଇ ଅଙ୍ଗେଇ ଓ ହସିଲା ପରି କହିଲା ତାଙ୍କ ମୁହଁକୁ ନଅନେଇ—

"ମୁଁ ଜାଣିଛି ପରା ! ବାପା କ'ଣ ସହଜେ ଏଠି ରହିବେ ବେଶୀଦିନ ? ଆମର ଏଇ ଧୂଳିଧୂଆଁ ଘୋପା' ଭିତରେ ? ତାଙ୍କୁ ତାଙ୍କର ବହିଖାତା ଡାକିବ, ଆଉ ସେଠିକାର ଖୋଲା ଆକାଶ···ନିର୍ମଳ ପବନ···ମୁଁ କେତେ ଭାବିଥିଲି ସେ ଏଠି ରହିବେ କିଛିଦିନ···"

ଖାଲି ତା'ର କଥା ନୁହେଁ, କଥା କୁହାର ଭଙ୍ଗୀ । ଅଙ୍କ ପ୍ରିନା ଏତେ ବଡ଼ ହୋଇଗଲାଣି, ମୁଁ କ'ଣ ଚହ୍ନି ନାହିଁ ମୋ ଝିଅକୁ ଯେତେବେଳେ ସେ ଦୋଷ କଲା ପରି, କିଛି ଗୋଟାଏ ଲୁଚେଇଲା ପରି ହୁଏ ? ସରଳଆ ପିଲାଟା, ଚଟ୍‌କିନା ଧରା ପଡ଼ିଯାଏ । ହଁ ଲୋ ଝିଅ, ବୁଝିଲି । ଆଉ କଷ୍ଟ ଦେବି ନାହିଁ ତୋତେ···

× × × ×

କିଏ ଯେ ମାମ୍ବାଧରବାବୁଙ୍କୁ ବଦନାମ କରିଛି ଯେ ସେ ଆକାଶକୁ ଅନେଇ ଅନେଇ ଚଢ଼େଇ ଗଣନ୍ତି, ତା'ର ସନ୍ଧାନ ମିଳିବା କଷ୍ଟ । ତେବେ କଥାଟା ପୂରାପୂରି ସତ ନୁହେଁ । ବାଲ୍‌କନିରେ ବସି ଗଭୀର ଚିନ୍ତା କରିବାକୁ ହେଲେ ଆକାଶର ଦୃଶ୍ୟ ଅନିବାର୍ଯ୍ୟ, ସେଥିରେ ଚଢ଼େଇମାନେ ଦଳ ବାନ୍ଧି ତାଙ୍କ ଆଖି ଆଗରେ ଉଡ଼ିଗଲେ ତାଙ୍କର ବେଳେବେଳେ ମନେପଡ଼ିଯାଏ ଗୋଟାଏ ବହିପଢ଼ା ମଜା କଥା ଏବଂ ତାଙ୍କୁ ହସ ଲାଗେ । ରୁଷ୍ ଲେଖକ ଚେକୋଭଙ୍କ ଅନ୍ୟତମ ବିଜ୍ଞ ଚରିତ୍ର ଯାହା କହିଥିଲା ଥରେ । କହିଲା—ଯେଉଁ ଚଢ଼େଇମାନେ ଉଡ଼ି ଉଡ଼ି ଯାଆନ୍ତି ଏ ଦେଶରୁ ସେ ଦେଶକୁ, ତାଙ୍କ ମୁଣ୍ଡରେ ଯାହା ଥାଉ ପଛେ, କୋଉ ଶ୍ରେଷ୍ଠ କଥା କି ବଡ଼ କଥା, ସେମାନେ ଖାଲି ଉଡ଼ୁଥାଆନ୍ତି, ବୁଝନ୍ତିନାହିଁ କେମିତି ଓ କାହିଁକି । ହୁଏତ ତାଙ୍କ ଭିତରୁ ଜଣେ ଅଧେ ଦାର୍ଶନିକ ବାହାରିବେ । କିନ୍ତୁ ଯେତେ ମନ ଭରି ଦାର୍ଶନିକତା କଲେ ମଧ୍ୟ ସେମାନେ ଉଡ଼ୁଥିବେ ଉଡ଼ୁଥିବେ··· ।

କିନ୍ତୁ ଏଥର କାନ୍‌ପୁରରୁ ଫେରିଲା ପରେ, ସେ ଯେତେବେଳେ ପ୍ରଥମେ ଦେଖିଲେ ଉଡ଼ନ୍ତା ଚଢ଼େଇଦଳଙ୍କୁ, ତାଙ୍କୁ ହସ ଲାଗିଲା ନାହିଁ । ଓଲଟି ଚେକୋଭଙ୍କୁ ଦି'ପଦ ଶୁଣେଇବାକୁ ଇଚ୍ଛା ହେଲା—ହଁ, ଆମେ ବି ସେଇଆ ସେଇଆ କରୁଥାଉ,

ଜନ୍ମରୁ ମୃତ୍ୟୁଯାଏଁ । ଯେଉଁପ୍ରକାର ନିର୍ଦ୍ଦେଶ ଶକ୍ତି ଦିଆଯାଇଛି ଆମ ପ୍ରାଣୀଙ୍କରେ । ତୁଚ୍ଛାଟାକୁ ଲଗାଲଗି ହେଉ, ଛଡ଼ାଛଡ଼ି ହେଉ, ପୁଣି ଲଗାଲଗି ହେଉ ସଂସାରକୁ ଗୁଡ଼ିଯିବା ଯାଏଁ । ଯେତେକ ନିର୍ବୁଦ୍ଧିଆ ଓ ମାଡ଼ଖିଆ କାମ ମଧ୍ୟ କରୁ । ହେଲେ ଚୋଟ ଖାଇଲା ପରେ ଆମ ଭିତରୁ କେଇଜଣ (କହିଲେ କୁହ ସେମାନେ ଦାର୍ଶନିକ ବର୍ଗ) ଗଭୀରରେ ଅନୁଭବ କରୁ ତା'ର ଯନ୍ତ୍ରଣା । ତାହିଁଏ ଉଠିଆସେ ଆମ ଅନ୍ତଃସ୍ଥଳ ଫୁଟାଇ । ଆମେ କହୁ—ଆଃ ! ଇଏ ଆମ ଅନୁଭୂତ ସତ୍ୟ ! ସେଇଠୁଁ ପୁଣି ଚିନ୍ତା କରୁ, ଆହୁରି ଚିନ୍ତା କରୁଥାଉ । ଏଇ କ୍ରିୟାକଳାପରେ କ'ଣ କିଛି ଅଧିକ ମୂଲ୍ୟ ନାହିଁ, ଯତ୍‌ସାମାନ୍ୟ ଯଶ ନାହିଁ ?

ଅନ୍ତତଃ ଆପଣ କ'ଣ ମାନିବେ ନାହିଁ ଯେ ଆମେ ଭଲ ନୁହଁ କି ଖରାପ ନୁହଁ, ତା'ଠାରୁ ଊର୍ଦ୍ଧ୍ୱରେ ?

# ଖରାପ ଲୋକ

'ଆମେ ଭଲ ନୁହଁ କି ଖରାପ, ତା'ଠାରୁ ଊର୍ଦ୍ଧ୍ୱରେ !'

ସତେ ? ତମ ମୁହଁକୁ ଲାଜ ନାହିଁ ମାଛଧରିବାକୁ ? ସାଧାରଣ ସଂସାରୀଟିଏ ହୋଇ ଟିକିଏ ବେଶି ସମୟ ଯାଏଁ ଆକାଶକୁ ଅନାଉଛ, ଚଢ଼େଇ ଗଣୁଛ, ହୁଏତ ଚେକୋଭ୍‌ଙ୍କୁ ମନେ ପକାଉଛ, ଆଉ ଏଇଥିରେ ଭାବୁଛ ଯେ ତମେ କୋଉ ଊର୍ଦ୍ଧ୍ୱକୁ ଉଠିଗଲ ? କ'ଣ ନା ସର୍ବସାଧାରଣ ଉଡ଼ନ୍ତା ବଗ ହୋଇଥିଲେ ମଧ୍ୟ ତମେ ସଂଖ୍ୟାଲଘୁ ଦାର୍ଶନିକ ବଗମାନଙ୍କ ମଧ୍ୟରୁ ଜଣେ, ତେଣୁ ଅଧିକ ଶ୍ରଦ୍ଧା ଓ ସମ୍ମାନର ଯୋଗ୍ୟ ?

...ଆଜ୍ଞା ନା, ମୁଁ ସେକଥା କହୁନାହିଁ । ଯେତେ ଚଢ଼େଇ ଗଣୁଥିଲେ ବି ମୁଁ ଧାଇଁଗଲି କାନପୁରକୁ, ପ୍ରଭାର ଚିଠି ପାଇଲି କ୍ଷଣି । ଭାବିଲି ନିଶ୍ଚୟ ଗୋଟାଏ ଗୋପନ ଗଭୀର ଦୁଃଖ ଆସିଥିବ ତା' ମନରେ, ଯାହାକୁ ସେ ଚିଠିରେ ଲେଖିପାରୁ ନାହିଁ । ହେଲେ ତା'ର ଆଶା, ବାପାଙ୍କ ପାଖରେ ଅଜାଡ଼ିଦେବ ତା' ଦୁଃଖ, ଓ ସେଇଥିରେ ତାକୁ ଉଶ୍ୱାସ ଲାଗିବ । ବାପ ହୋଇ ମୁଁ ତା'ର ଏତିକି ଉପକାର କରିପାରିବି ନାହିଁ ? ମନଟା ବି ଉଚାଟ ହେଲା ନାତିଟୋକାକୁ ଦେଖିବା ପାଇଁ । ତାକୁ ଏଇକ୍ଷଣି ଚାରିବର୍ଷ ହେବଣି । ଜନ୍ମରୁ ସେ ଦେଖିନାହିଁ ତା' ଅଜାକୁ । ଏଇକ୍ଷଣି କେତେ ଗେଲ ହେବାକୁ ଚାହିଁବ ମୋ ସାଙ୍ଗରେ । ମାଲୁଛି, ମାଲୁଛି, ସ୍ନେହବାତ୍ସଲ୍ୟର ଏଭଳି ଏକ ଉତ୍ତେଜନା, ହୁଏତ ଉଦ୍‌ବିଗ୍ନତାର ତରଙ୍ଗ ଉଚ୍ଛୁଳି ଉଠିଥିଲା ମୋ ମନରେ, ଯେତେବେଳେ ମୁଁ ବାହାରିଲି ସେଠିକି । କିନ୍ତୁ ମୋର କହିବା କଥା ହେଉଛି ଯେ ସେହି ଭାବାବେଗ ମାତ୍ର ତରଙ୍ଗଟିଏ ଥିଲା ମୋ ପାଇଁ, କୋଉ ଢେଉ ନୁହେଁ ଯେ ମୋତେ ଉଠେଇ ନେବ କି କଚାଡ଼ି ଦେବ । ଏହି ଭାବରେ କେବେହେଲେ କେଉଁ ଆନ୍ଦୋଳନ ମୋତେ ହଲେଇ ଦେଇପାରି ନାହିଁ ମୋ

ଜୀବନରେ, ଅଥବା କେଉଁ ବନ୍ଧନ ମୋର ଶ୍ୱାସରୁଦ୍ଧ କରିପାରି ନାହିଁ । ସଂସାରଠାରୁ ପୂରାପୂରି ବିଚ୍ଛିନ୍ନ ନହୋଇପାରିଲେ ମଧ୍ୟ ଏହି ଅନାସକ୍ତି ହେଉଛି ମୋର ସ୍ୱଗୁଣ, ମୋ ଦାର୍ଶନିକତାର ଆଧାର, ଯେଉଁଥିରେ ମୋତେ ଶାନ୍ତି ମିଳେ । ସେହେତୁ ଏଇ ଦାର୍ଶନିକ ବଗକୁ ଟିକିଏ ବେଶି ମାର୍କ ମିଳିବା ଉଚିତ ନୁହେଁ କି ?

...ହଉ ହେଲା ମାୟାଧରବାବୁ, ଆପଣଙ୍କୁ ଅବଶ୍ୟ ଅଧିକ ମାର୍କ ମିଳିବା ଉଚିତ ଆପଣଙ୍କର ଏହି ମାନସିକତା ପାଇଁ । ସେହି ଅର୍ଥରେ ଆପଣ ଘୋର ସଂସାରୀମାନଙ୍କଠାରୁ ଅଳ୍ପବହୁତ ଊର୍ଦ୍ଧ୍ୱରେ ବୋଲି କହିଲେ ମଧ୍ୟ ଭୁଲ୍ ହେବ ନାହିଁ । କିନ୍ତୁ ଏହି ପରିପ୍ରେକ୍ଷୀରେ କେତୋଟି କଥା ମନକୁ ଆସୁଛି—କ୍ଷମା କରିବେ—ଯେଉଁଥିରେ ଆପଣଙ୍କର ଏହି ନ୍ୟାଯ୍ୟ ଉଚ୍ଚମନ୍ୟତାର ସ୍ୱର କମିଗଲା ପରି ଲାଗୁଛି—

ଏବେ, ଗ୍ରେଡ୍ ଖୋଜିଲେ ବୋଧହୁଏ ଆପଣଙ୍କ ଦାର୍ଶନିକତା ବଳବତ୍ତର ହୋଇଉଠେ । ଘରକୁ ଫେରିଆସିଲା ପରେ ଆପଣ ଏତେ ସଚେତନ ହେଲେ ଦାର୍ଶନିକ ବଗମାନଙ୍କ ବିଷୟରେ, ତା'ର କାରଣ ଆପଣଙ୍କୁ ଦ୍ୱିବିଧ ପରାଭବ ସହିବାକୁ ପଡ଼ିଲା କାନପୁରରେ, ଏହି ଆକ୍ଷେପ କ'ଣ ଭ୍ରମାତ୍ମକ ହେବ ? ଆପଣଙ୍କୁ ନିଶ୍ଚୟ ବାଧିଥିବ ଯେ ନାତିଟା ଧରାଛୁଆଁ ଦେଲା ନାହିଁ । ଆପଣଙ୍କୁ ଦେଖିଲାରୁ କୋଉ 'ଖରାପ ଲୋକ'ର ଚେହେରା ଦିଶିଗଲା ତାକୁ, ହୁଏତ ତା' ବୋଉର କେଉଁ ଆର୍ଟିଷ୍ଟ୍ ସାଙ୍ଗର ଚେହେରା କି ଆଉ କାହାର । ତା'ପରେ କେଇଟା ଦିନ ପରେ ଜଣାପଡ଼ିଲା ଯେ ଝିଅଜ୍ୱାଇଁ ପ୍ରକୃତରେ ଚିନ୍ତାନ୍ୱିତ ନାହିଁ, ଆପଣ ସେଠି ଆଉ ବେଶୀ ଦିନ ରହନ୍ତୁ ବୋଲି (ଆଶା କରାଯାଏ ଯେ ଆପଣଙ୍କର ଦୀର୍ଘ ସାଂସାରିକ ଅଭିଜ୍ଞତା ଆପଣଙ୍କୁ କିଛି ବୁଦ୍ଧି ଯୋଗାଇଥିବ ଏ ଦିଗରେ), କାହିଁକିନା ସେମାନେ ତାଙ୍କ ଯୋଡ଼ିଖଟକୁ ତା'ର ପୂର୍ବତନ ମର୍ଯ୍ୟାଦା ଆଣିଦେବାକୁ ଚାହିଁଥିଲେ । ଝିଅର ଦୁଃଖ ସେମିତି କିଛି ଗୁରୁତର ନଥିଲା, ଯେଉଁଥିପାଇଁ ଆପଣଙ୍କର ଏଠିକି ଆସିବା ଆବଶ୍ୟକ ଥିଲା । ହେଲେ ଏଥିପାଇଁ ତାଙ୍କୁ ଦୋଷ ଦେବାର ନୁହେଁ । ତାଙ୍କର ନିଜର ସଂସାର, ଭିନ୍ନ ସଂସାର । ସ୍ନେହଶୀଳ ବାପ ହେଲେ ମଧ୍ୟ

ଆପଣ ତୃତୀୟ ବ୍ୟକ୍ତି, ଝିଅର ଅଭିଭାବକ । ତେଣୁ ଯେତେବେଳେ ସେହି ସଂସାର ଆପେ ଆପେ ସକାଡ଼ି ହୋଇଗଲା, ଏବଂ ତା'ର ପ୍ରଗତି ବାଟରେ କିଛି ଗୋଟାଏ ବାଧା ପଡୁଥିଲା ଆପଣଙ୍କୁ ନେଇ, ସେତେବେଳେ ଆପଣଙ୍କୁ ପ୍ରକାରାନ୍ତରେ କୁହାଗଲା ଯେ ବାପା, ଆପଣ ଏଣିକି ଫେରି ଯାଇପାରନ୍ତି ଆପଣଙ୍କ ଚଢ଼େଇମାନଙ୍କ ପାଖକୁ, ଧନ୍ୟବାଦ । କାହାର କିଛି ଦୋଷ ନଥିଲେ ମଧ୍ୟ ଆପଣଙ୍କୁ କ'ଣ ବାଧିଲା ନାହିଁ କଥାଟା ? ତେଣୁ ପ୍ରଶ୍ନ ଉଠୁଛି ଯେ ଚୋଟ ଖାଇଲେ ଯାଇଁ ଯେଉଁ ଅନାସକ୍ତିର ଭାବ ଏବଂ ସେଥିର ଦାର୍ଶନିକତା ଆଶ୍ୱାସନା ଦିଏ ଆପଣଙ୍କୁ, ତା'ର ମୂଲ୍ୟ କେତେ ?

ସେଇଠୁଁ ମନକୁ ଆସେ ଯେ ଯଥାସମ୍ଭବ ପରାଭବ ହେଉ କମ୍ବା ତା'ର ବାନ୍ନା ପାଇଲାରୁ ଆପଣ ଯଦି ଏମିତି ଫେରିଆସୁଥାଆନ୍ତି ଦାର୍ଶନିକତାର କୋଳକୁ, ତା'ହେଲେ ସେହି ଅନାସକ୍ତିକୁ ଭୀରୁତା ବୋଲି କୁହାଯିବ ନାହିଁ କି ? ଅର୍ଥାତ୍ ଆପଣ ସ୍ତ୍ରୀପିଲା, ଭାଇବନ୍ଧୁଙ୍କ ସହକର୍ମୀମାନଙ୍କୁ ଛାଡ଼ି ଦେଉଛନ୍ତି ସଂସାରର ଦୁଃଖଦୁର୍ଦ୍ଦଶା ସାଙ୍ଗରେ ଲଢ଼ିବା ପାଇଁ, ନିଜେ ସେଥିରୁ ଓହରିଯାଇ, ଏଇ ମନୋଭାବକୁ କ'ଣ ଅନାସକ୍ତି କହିବ ? ନା ଏକ ସ୍ୱାର୍ଥୀ ଏବଂ ଭୀରୁ ଅନାସ୍ଥାଭାବ ?

...ତା'ହେଲେ କ'ଣ କହୁଛନ୍ତି ଯେ 'ପଦ୍ମପତ୍ରମିବାମ୍ଭସଃ'ର ଉପଦେଶ ଗୋଟାଏ ମିଛକଥା ? ଅର୍ଥାତ୍ ସଂସାରରେ ଥିବ, ହେଲେ ସଂସାରରେ ଜଡ଼ିତ ହେବ ନାହିଁ, ସବୁ ସଂସାର କାମ କରିବ ହେଲେ କାମନା ନଥିବ କେଉଁଥିପାଇଁ, ତେଣୁ ଦୁଃଖର ଅବକାଶ ନ ଥିବ, ଯେଉଁ ଆଦର୍ଶ କେବଳ ଗୀତାର ନୁହେଁ, ମଧ୍ୟ ଯାହାକୁ ବୁଦ୍ଧ, ରାମକୃଷ୍ଣ ପରମହଂସ ଆଦି ମହାମୁନିମାନେ ଦୋହରାଇଛନ୍ତି, ତାକୁ ଅସାର ବୋଲି କହିବ ?

...ଆଃ, କେଉଁ ମହତ୍ତ୍ୱବାଣୀ ମିଛ ହୋଇପାରେ ? କାହା ଜିଭରେ ହାଡ଼ ଅଛି କହିବ ସେକଥା ? ତଥାପି ଭାବି ଦେଖନ୍ତୁ ଯେ ଗୀତାର ଶ୍ରୀକୃଷ୍ଣ ଭଗବାନଙ୍କ ଅବତାର ଥିଲେ, ଏବଂ ବୁଦ୍ଧ, ପରମହଂସ ଆଦି ମହାମୁନିମାନେ ସଂସାରକୁ ପୂରାପୂରି ଛାଡ଼ି ଦେଇ ସିଦ୍ଧ ହେଲା ପରେ ଯାଇଁ କହୁଥିଲେ ଏମିତିକା କଥା ।

କୌଣସି ସଂସାରୀ ଏଭଳି ସୁପାରିଶ କରିଛନ୍ତି କି, ସଂସାରରେ ଥାଇ ଏବଂ ନିଜର ଅନ୍ତରଙ୍ଗ ଏବଂ ଅନୁଭୂତ ସତ୍ୟକୁ ନେଇ ? ତା'ଛଡ଼ା ଯଦି ଭାବାବେଗକୁ ବର୍ଜନ କରାଯାଏ ତମ ନିଷ୍କାମ କର୍ମର ସଫଳତା ପାଇଁ, ତେଣୁ ତମ କାମରେ କେଉଁ ରସ ରହିଲା ନାହିଁ କି ରସିକତା, ହସକାନ୍ଦ, ମାନ ଅଭିମାନ, ତହୁଁ ହାତ ଛୁଆଁ ଛୁଇଁ, ତହୁଁ ଏକ ଅପୂର୍ବ ଉଲ୍ଲାସ-ଯନ୍ତ୍ରଣା, ତା'ହେଲେ ତମେ କ'ଣ ମଣିଷ ହୋଇ ରହିବ ନା ଯନ୍ତ୍ରବିଶେଷ ? ତେଣୁ ସାଧାରଣ ବୁଦ୍ଧିରେ ଆମ ମନକୁ ଆସେ ଯେ ଭୋଗର (ତଥାକଥିତ) ଦୁଃଖ, ଏବଂ ତ୍ୟାଗର (ତଥାକଥିତ) ସୁଖ ଭିତରେ କୌଣସି ମଧ୍ୟମପନ୍ଥା ରହିପାରିବ କି କେବେହେଲେ, ଯାହା ବିଶ୍ୱସମାଜ ତଥା ସମ୍ମାନର ଅଧିକାରୀ ହୋଇପାରିବ ?

ତେବେ ମାନିବାକୁ ପଡ଼ିବ ମାୟାଧରବାବୁ, ଯେ ଜୀବନର ସଞ୍ଜବେଳକୁ, ମାନେ ଯେତେବେଳକୁ ପ୍ରାୟ ସମସ୍ତ ଭାବାବେଗର କାର୍ଯ୍ୟକାରିତା ସରି ଆସିଲାଣି, ସେତେବେଳେ ଦାର୍ଶନିକତା ହିଁ ବୁଦ୍ଧିମାନର କାର୍ଯ୍ୟ, ସଞ୍ଜଟାକୁ ଉପଭୋଗ କରିବା ପାଇଁ । ଯେହେତୁ ଆପଣ ସୁଖୀ ଏବଂ ଦୀର୍ଘଜୀବୀ ହୁଅନ୍ତୁ ଆପଣଙ୍କ ଦାର୍ଶନିକ ବିଗମାନଙ୍କୁ ନେଇ, ଏହା ଆମର ଆନ୍ତରିକ କାମନା । ନମସ୍କାର ।



# ଯନ୍ତ୍ରଣା

"କାହିଁକି ଫେରିଯିବ ସେଠିକି ? କଅଣ ସେଠି ମୁଁ ଜନ୍ମହୋଇଛୁ ବୋଲି ? ଏବଂ ସେଇଥିପାଇଁ ମୁଁ ତାକୁ ଘର ବୋଲି କହିବ, ଓ ଘରକୁ ଫେରିଯିବା ପ୍ରତ୍ୟେକ ପ୍ରାଣୀର ଧର୍ମ ?"...

ମନ୍ତ୍ରସ୍ୱି ଦେବୀ ତାଙ୍କ ପଲଙ୍କରେ ପେଟେଇ ପଡ଼ି ପଢ଼ୁଥିଲେ ଚିଠିଟିକୁ । ନିସ୍ତବ୍ଧ ମଧ୍ୟାହ୍ନରେ । ମନ ଦେଇ । ଏଇଠି ସେ କଡ଼ ଲେଉଟେଇଲେ, ଏବଂ ଗ୍ଳାଡ ଆଡ଼କୁ ଅନେଇ ହସି ପକେଇଲେ । କାରଣ ତାଙ୍କର ମନେହେଲା ଯେ ଚନ୍ଦନ ଟୋକା ନିଜେ ହସିଥିବ ଏଇ ଧାଡ଼ିଟି ଲେଖିଲା ପରେ । ସତେକି ସେ ଗୋଟାଏ ଖାସା କଥା କହି ଦେଇଛୁ, ମାଈଁଙ୍କୁ, ଚିଡ଼େଇବା ପାଇଁ ! ...ଏବେ ମଧ୍ୟ ପଢ଼ି ପଢ଼ି କିମ୍ବା ଲେଖି ଲେଖି ହସିବା, ନାକ ଫୁଲେଇବା, ଓଠ କୁଞ୍ଚେଇବା, ଇତ୍ୟାଦିରେ ଆମ ଚନ୍ଦନକୁ କେହି ବଳେଇ ଯିବ ନାହିଁ । ଯେତେହେଲେ ପିଲାଟାଏ କି ନା ! କିନ୍ତୁ ସେ' ସେ କଥା ବୁଝନ୍ତି ନାହିଁ, ତା'ର ବୟସକୁ ଗଣି ବସନ୍ତି । କୁହନ୍ତି ଅପା ବାହା ହେଲା ବେଳକୁ ମୋତେ ଏତେ ବର୍ଷ ହୋଇଥିଲା, ଅତଏବ ତାକୁ ପଚିଶ ଛବିଶରୁ କମ୍ ହେବନି ନାହିଁ । ସେଇଠୁଁ ତାକୁ ଦୋଷ ଦିଅନ୍ତି, କୁହନ୍ତି ଏଡ଼େ ବଡ଼ଟିଏ ହୋଇ ମଧ୍ୟ ତା'ର ବୁଦ୍ଧି ହେଉ ନାହିଁ, ଦାୟିତ୍ୱଜ୍ଞାନ ଆସିବାକୁ ନାହିଁ, ଅପା-ଦେବୀଙ୍କ ତାକୁ ଅତି ଗେହ୍ଲା କରି ବିଗାଡ଼ି ଦେଇଛନ୍ତି, ଇତ୍ୟାଦି ଇତ୍ୟାଦି । ଏମିତି ଭାବରେ କୁହନ୍ତି ଯେ ମନେ ହେବ ସେ ଚନ୍ଦନକୁ ଦି' ଆଖିରେ ଦେଖି ପାରନ୍ତି ନାହିଁ । ଅଥବା ଗୋଟିଏ ବୋଲି ଭଣଜା ପ୍ରତି ତାଙ୍କର ଏକ ବିଶେଷ କର୍ତ୍ତବ୍ୟ ଅଛି, ଯାହାକୁ ସ୍ନେହଶ୍ରଦ୍ଧାରେ ଗୋଳେଇ ପୋଲେଇ ନରମେଇ ଦେବା ଉଚିତ ନୁହେଁ ।

ସ୍ୱାମୀଙ୍କ ଅସାଧାରଣ କର୍ତ୍ତବ୍ୟବୋଧକୁ ବଧେଇ ଦେବା ସଙ୍ଗେ ସଙ୍ଗେ ମନ୍ତ୍ରସ୍ୱି ଦେବୀଙ୍କ ଗ୍ଳାଡ ଅଲଟବହୁତ ଥର ଉଠିଲା । କାହିଁକି ନା ତାଙ୍କୁ ଦିଶିଗଲା ସ୍ୱାମୀ କେମିତି ତାଚି ଉଠିବେ, କଅଣ ସବୁ ବକିଯିବେ, ଯେତେବେଳେ ଏଇ ଚିଠି ତାଙ୍କ ହାତରେ ପଡ଼ିବ । ...ଅବଶ୍ୟ ସେ ମୋ ପାଖକୁ ଚିଠି ଦେଇଛୁ, ତା'ର ମନ୍ତ୍ରୀମାଇଁଙ୍କ ପାଖକୁ, ମୁଁ ଇଚ୍ଛା କଲେ ତାଙ୍କୁ ନଦେଖେଇ ପାରେ । ତମେ ତା'ର ନିଜ ମାମୁଁ ହୋଇଧାର, କିନ୍ତୁ ମୁଁ ବି ତା'ର ନିଜ ମାଈଁ । ତା' ଛଡ଼ା ସେ ମୋତେ ଲାଭ

ଭଲ ପାଏ, ଆଉ ମୋର ମଧ୍ୟ ତା' ପ୍ରତି ଗୋଟାଏ ମାୟା ଅଛି, ନିଜ ପୁଅ ପରି (କହିବାକୁ ଗଲେ ପୁଅ-ଝିଅର ମିଶାମିଶି), ଏକଥା କ'ଣ ସେ ଜାଣନ୍ତି ନାହିଁ ? ତେଣୁ ସେ ଯଦି ତା ମନକଥା ଅଜାଡ଼ି ଦେବାକୁ ଚାହିଁଲା ମୋ ଆଗରେ, ନିଜକୁ ହାଲୁକା କରିବା ପାଇଁ, ମୋର କ'ଣ ଉଚିତ ନୁହେଁ ତାକୁ ଗୋପନ ରଖିବା ? ···ମଞ୍ଜୁଳା ଦେବୀ ଚିଠିକୁ ତତ୍‌କ୍ଷଣାତ୍ ପୂରାଇ ଦେଲେ ଲଫାପାରେ, ସେଇଠୁ ତାଙ୍କ ବ୍ଲାଉଜ୍ ଭିତରେ, ସତେକି ଏଥର ପିଲିଟିର ବାଗ୍ୟଲତା ସୁରକ୍ଷିତ ହୋଇ ରହିଗଲା ତାଙ୍କ ପାଖରେ । ଯଦିଓ ସେ ଜାଣିଥିଲେ ଯେ ତା'କୁ କୌଣସିମତେ ରକ୍ଷା କରି ହେଇ ନାହିଁ ସବଙ୍କ ସ୍ୱାମୀ ରାଘବବାବୁଙ୍କ ଠାରୁ । ସେମିତି ହୋଇ ନାହିଁ କେବେ । ହୋଇ ପାରିବ ନାହିଁ (ମୁଁ ପାରିବ ନାହିଁ) । ଅସମ୍ଭବ ।

···ଆରେ, ସେ ସେମିତି ଲେଖିଛି ବୋଲି କ'ଣ ସତରେ ରହିଯିବ ସେଠି, ଆମେରିକାରେ ? ମୁଁ କ'ଣ ତାକୁ ଚିହ୍ନି ନାହିଁ ? ସ୍ରେ ଟୋକାର ଢଙ୍ଗ, ବାହାଦୁରୀ । ଯେ ଦେଖି ମୁଁ ବି କରିପାରିବି ଯାହା ସେମାନେ କରିଛନ୍ତି । ଦୁଃସାହସୀ ହିରୋ କେଇଜଣ । ମୁଁ ବି ଆକାଶକୁ ଲମ୍ପ ଦେଇ ପାରିବ । ବୋକାଛୁଆ !

ମଞ୍ଜୁଳା ଦେବୀଙ୍କ ନରମ ଚାହାଣି ଆହୁରି ନରମିଗଲା । କାରଣ ବାର ତେର ବର୍ଷ ତଳର 'ବୋକାଛୁଆ' ତାଙ୍କୁ ଦିଶିଗଲା ଜଳଜଳ ହୋଇ । ଯିଏ ଡଉଲ୍‌ଡାଉଲ୍ ମୋଟା ଛୁଆଟିଏ ହୋଇ ଆସିଥିଲା ତାଙ୍କ ପାଖକୁ, ତାଙ୍କ ବାହାଘର ପରେ ପରେ । ···ସବୁବେଳେ ଦାନ୍ତ ଦେଖେଇଥାଏ, କଥାକଥାକେ ହସି ଉଠେ । କିନ୍ତୁ ବିଚରା ବେଶୀ ଦଉଡ଼ାଧାପଡ଼ କରିପାରେ ନାହିଁ ତା' ସାଙ୍ଗସାଥୀଙ୍କ ସାଙ୍ଗରେ । ଏବଂ ବେଳେ ବେଳେ ମନେ ହୁଏ ଯେ ଏଇକ୍ଷଣି ତା' ହସ ବନ୍ଦ ହୋଇଯାଇଛି, ମୁହଁ ଓହଳି ଯାଇଛି, କାହିଁକିନା ସେମାନେ ତାକୁ ଦୂରେଇ ଦେଇଛନ୍ତି । ସେଇଠୁଁ ମୁଁ ତା' ପାଖକୁ ଯାଏ । ତାକୁ ଡାକିନିଏ ମୋ ବଖରାକୁ । କୁହେ, ଚାଲ୍ ତାସ ଖେଳିବା । କିନ୍ତୁ ଟୋକାଟା ଖୁସି ହୁଏ ସିନା, ତାକୁ ଅଖାଡୁଆ ଲାଗେ । ସନ୍ତର୍ପଣରେ ବସେ, ଆଡ଼େଇ ହୋଇ । ସତେକି ତାକୁ କୋଉ ଦେବୀଙ୍କ ଆସ୍ଥାନରେ ବସିବାକୁ କୁହାଯାଉଛି । ଅରେ ମୋ ପାଟିରୁ ବାହାରିଗଲା—କ'ଣ ଲାଜ ଲାଗୁଛି ତମକୁ ମାଈଁଙ୍କ ପାଖରେ ବସିବାକୁ ? ବୋକାଛୁଆ !'

ସେ ରାଗିଗଲା । ଏମିତିକି ମୋର ମନେ ହେଲା ଖାଲି ତା'ର ଓଠ ନୁହେଁ, ତା' ଗାଲଚହଲା ବି କମ୍ପି ଉଠୁଛି । କିନ୍ତୁ ଯେଉଁଠି ମୁଁ ଏକ ଦିବ୍ୟ ମାଈଁ ପଣିଆ କି କି ନୂଆବୋହୂ ପଣିଆର ସରାଗ ଚାହାଣିରେ ଅନେଇ ରହିଲି ତା' ଆଡ଼କୁ, ଜଣେଇ ଦେଲି ଯେ ମୁଁ ତାକୁ ଥଟ୍ଟା କରିବା ଲୋକ ନୁହେଁ, ମୁଁ ତାକୁ ବେଶୀ ସ୍ନେହ କରେ, ସେଇଥିପାଇଁ କହିଲି ଏଇ ପଦକ, ସେତିକିରେ ସେ ତରଳିଗଲା । ଆଉ ତା' ସହଜ ହସକୁ ପୁଣି ଢାଳି ଦେଲା ମୋ ପାଇଁ । ସେଇଠୁଁ ମୋ ହାତ ଆପେ ଆପେ

ବେଢ଼େଇ ହୋଇଗଲା ତା' ଦେହରେ, ଓ ମୁଁ ତା'କୁ ଟାଣିଅଣିଲି ମୋ ପାଖକୁ (ହୁଏତ ସେ ନଜେ ଟାଣି ହୋଇ ଆସିଲା), ଆଉ ତା' ମୁହଁକୁ ଆପିଲି, ଆପୁଡ଼େଇ ଦେଲି ମୋ କୋଳରେ । କୋଳରେ ନୁହେଁ, ମୋ ଛାତିର ଉପ୍ପରରେ । କ'ଣ ହେଲା ସେଠୁଁ ? ଯେତେହେଲେ ପିଲାଟାଏ । ସେ ବି କେତେବେଳଯାଏଁ ଲେପ୍ଟେଇ ରହିଲା ସେଠି, ସତେକି ତା'ର ଯେତେକ ଦୁଃଖ, ଯେତେକ ପରାଭବ ପୋଛି ହୋଇ ଯାଇଛି ।

କିନ୍ତୁ ମୁଁ ଭୁଲ୍ କଲି । ଫଳ ଓଲଟା ହେଲା । କାରଣ ସେଇ ଦିନଠୁଁ ସେ ମୋ ପାଖକୁ ଆସୁଥାଏ ସିନା, ମୋ ଦେହଠାରୁ ଦୂରେଇ ରହୁଥାଏ । ମୁଁ ଖଟର ଏମୁଣ୍ଡରେ ତ ସେ ସେମୁଣ୍ଡରେ ଯାଇଁ ବସୁଥାଏ । ବେଳେ ବେଳେ ମନ ହେଉଥାଏ ପଚାରିବି—କିଓ ଚନ୍ଦୁବାବୁ, ମୋତେ ଅଛୁଆଁ ବୋଲି ଭାବିଛ ନା କଅଣ ? ନା' ମୋତେ ଡରୁଛ ? କିନ୍ତୁ ପଚାରିଲି ନାହିଁ । କାଳେ ବିଚରା ହାଉଯିବ । ରାଗିବାକୁ ବି ବଳ ପାଇବ ନାହିଁ । ଏବଂ ଆଉ ମୋ ପାଖ ମାଡ଼ିବ ନାହିଁ । ସୁବିଧା ପାଇଲା କ୍ଷଣି ପଳେଇ ଆସିବନି ଲକ୍ଷ୍ମୀପୁରକୁ । ପ୍ରତି ଖରାଛୁଟି ଛଡ଼ା ଶ୍ରାପାଞ୍ଚଦିନଆଁ ଛୁଟି ପାଇଲାରୁ । ଯେତେହେଲେ ମାମୁଘର । କୋଉ ନଜଘର ହୋଇଛି ? ପୁଣି ଧୂଳିମାଟିର ମଫସଲ ।

ଘର । କହିଲି କ'ଣ ନା ମୁଁ ଜନ୍ମ ହୋଇଛି ବୋଲି କଅଣ···ବୋକାଛୁଆ ! ଦେଖେଇ ହେଉଛି ଯେ ସେ ବଡ ହୋଇଗଲାଣି, କୋଉ ଘର ତାକୁ ବାନ୍ଧି ରଖି ପାରିବ ନାହିଁ ।

ପୁଅ ମିଛ । ମାଇଁ ପାଖକୁ ଚଠି ଲେଖିଛି ଏମିତକା, ହେଲେ ତା'ର ମନେ ଥିବ ସେ ମାଇଁକୁ କ'ଣ କହିଥିଲା ସେଦିନ । ଏଇ କେଇଟା ବର୍ଷ ତଳେ । ଯେତେ-ବେଳେ ତା'ର ପ୍ରଥମେ ଯିବାର ହେଲା ଆମେରିକା, ପାଠରେ ମୁଣ୍ଡି ମାରିବା ପାଇଁ । ସ୍କଲର୍‌ସିପ୍ ମିଳିଗଲା । ଭିସା ମିଳିଗଲା । ଦେଶ ଛାଡ଼ିବା ଆଗରୁ ଆସିଥିଲା ମାମୁମାଇଁଙ୍କ ଠାରୁ ବିଦା ନେବ ବୋଲି । ହସଖୁସି ଉଛୁଳି ପଡ଼ୁଥାଏ ତା' ମୁହଁରୁ । କିନ୍ତୁ ସେତେ-ବେଳକୁ ସେ ଆଉ ମୋଟାଛୁଆ ହୋଇ ନାହିଁ । ଶୁକୁଟା ନହେଲେ ବି କେତେ ପାତଳା ହୋଇଗଲାଣି । ଖାଲି ଗାଲଚହଲାଟା ଭାଙ୍ଗି ନାହିଁ ଯାହା । ଏଣେ ମୁଣ୍ଡବାଳକୁ କେଡ଼େ ଯତ୍ନରେ କୁଣ୍ଡେଇଥାଏ, ଯେମିତକି କେଉଁଏ ଫୁରୁଫୁରୁ ହେଉଥିବ । ଭାବିଲି, ଟୋକା ରୋମାଣ୍ଟିକ୍ ହେବାକୁ ବସିଛି । ଯାହାହେଉ ମୁଁ ତାକୁ ଟିକିଏ ଚଡ଼େଇବା ପାଇଁ କହିଲି—"କ'ଣ ବାବୁ, ଯାଉଛ ତ କୋଉ ଦୂର ବିଦେଶକୁ । ପୃଥିବୀର ସ୍ୱର୍ଗକୁ । ଆମକୁ ମନେ ରଖିବ ତ ? ଘରକୁ ଫେରି ଆସିବ ତ ?"

ମୋର ଧାରଣା ନଥିଲା ସେ କଥାଟାକୁ ଏତେ ସିରିୟସ୍ ଭାବରେ ନେବ । ହଠାତ୍ ମୋର ହାତକୁ ମୁଠେଇ ଧରିଲା, ଯାହାକି ମୋଟେ ଆଶା କରି ନଥିଲି ତା'ଠୁଁ ପିଲାଦିନର ସେଇ ଘଟଣା ଯିବ୍ର । ଆଉ କହିଲା, "ମାଇଁ, ମୁଁ ଯେଉଁ ସ୍ୱର୍ଗକୁ ଯାଏ ପଛେ, ମୋ ଘରକୁ କ'ଣ କେବେହେଲେ ଭୁଲି ପାରିବ ?" ଏମିତି ଭାବରେ କହିଲା ଯେ ମୋର ମନେ ହେଲା ମୁଁ ଅଛି ତା' ଘର ଭିତରେ । କୋଉ କଣରେ ନୁହେଁ, ମଝିରେକିନା ଅଛି । ଆସନ ଜମେଇ କରି ।

ଅଥଚ ସେ ଏଥର ମୋ ସାଙ୍ଗରେ ଦେଖା ବି କଲା ନାହିଁ ! ତା' ସଫେଇରୁ କ'ଣ ମିଳିବ ମୋତେ ? ଏମିତି ସମୟର ଅଭାବ ଯେ ଭୁବନେଶ୍ୱରରୁ ଲକ୍ଷ୍ମୀପୁର, ବସ୍‌ରେ ଚାରିପାଞ୍ଚ ଘଣ୍ଟା'ର ବାଟ, ସେତିକି ବି ସୁବିଧା କରି ପାରିଲା ନାହିଁ ? ଗ୍ରେରଙ୍କ ପରି ଖସି ପଳେଇ ଗଲା, ଆଉ ସେଠୁ ଏମିତିକା ଲମ୍ବା ଲମ୍ବା କଥା ।

ମୋ ପାଖକୁ ଲେଟିଲା ବା କାହିଁକି ? ନଲେଖିଲେ କାହାର କ'ଣ ଭାସି ଯାଉଥିଲା ? ...ଆହତ ଅଭିମାନର ଭାବ ଆସିଲା ମନ୍ତରା ଦେବୀଙ୍କ ମନରେ । କିନ୍ତୁ ପରକ୍ଷଣରେ ସେ ଅନୁମାନ କଲେ ଯେ ସେ ଆଉ କାହା ପାଖକୁ ଲେଖି ନଥିବ ଏମିତି । ଅଜାଡ଼ି ଦେଇ ନଥିବ ତା'ର ଯେତେକ ରାଗ, ଦୁଃଖ ଓ ଆକ୍ରୋଶ ଆମର ଏଇ ଦେଶକୁ ନେଇ । ବୋଧହୁଏ ତା' ବାପାବୋଉଙ୍କ ପାଖକୁ ବି ଲେଖି ନଥିବ । ଖାଲି ମୋର ଆଗରେ କହି ପକେଇଲା । ଖୋଲି ଦେଲା ନିଜକୁ । କାହିଁକନା...କାହିଁକନା ମୁଁ ତା' ମାଇଁ ପରା ! ମାଇଁ ନୁହେଁ, ପିଲାଦିନର ସାଙ୍ଗ । ସେଇଠୁଁ ସେ ଯତ୍‌ସାମାନ୍ୟ ଗର୍ବ ଅନୁଭବ କଲେ । ଏବଂ ଆଶ୍ୱସ୍ତ ହେଲେ ଯେ ସେ ଫେରିବ, ଅବଶ୍ୟ ଫେରିବ ।

× × ତାଙ୍କୁ ଆଉ କେତେବେଳେ ସମୟ ମିଳିଲା ନାହିଁ, ରାତିରେ ଠିକ୍ ଶୋଇବା ଆଗରୁ ଚିଠିଖଣ୍ଡିକ କାହିଁକି ବଢ଼େଇ ଦେଲେ ରାଘବବାବୁଙ୍କ ହାତକୁ, ତା'ର କୌଣସି ମତଲବ ନଥିଲା ବୋଲି କହି ହେବ ନାହିଁ । ସେ ଭାବିଥିଲେ ଯେ ସ୍ୱାମୀ ଚିଠିକୁ ପଢ଼ିଲା ଭିତରେ ତାଙ୍କ ଆଖିକୁ ନିଦ ଆସିଯିବ । ତେଣୁ ତାଙ୍କୁ ଶୁଣିବାକୁ ପଡ଼ିବ ନାହିଁ ସେ ଯେଉଁସବୁ କଟୁକ୍ତି କରିବେ ତାଙ୍କ ଭଣଜାକୁ ନେଇ । ...ମୋତେ ହିଁ ଛୁଗୁଲେଇଲା ପରି । ସତେକି ସେ ଆଗେ ମୋ ଭଣଜା, ଆଉ ମୁହିଁ ତାକୁ ମୁହଁ ଦେଇଛି !

କିନ୍ତୁ ମନ୍ତରା ଦେବୀ ଆଖିବୁଜି ଶୋଇ ପଡ଼ିବାକୁ ଚାହିଁଲେ ମଧ୍ୟ ତାଙ୍କ ଆଖିକୁ ସହଜେ ନିଦ ଆସିଲା ନାହିଁ କାହିଁକନା ରାଘବବାବୁ ଚିଠିଟାକୁ ବଡ଼ ପାଟି କରି ପଢ଼ିଲେ । ଏବଂ ବିଭିନ୍ନ ଜାଗାରେ ନଠେଇ କରି ପଢ଼ିଲେ, ସ୍ୱରକୁ ଉଞ୍ଚେଇଲେ ପକେଇଲେ, ଖଣ୍ଡିହସ ହସିଲେ, ଅର୍ଥାତ୍ ଛୁଗୁଲେଇବାର ଯେତେକ ଢଙ୍ଗ

ଦେଖେଇଲେ, ଯେଉଁଥିରୁ ମନ୍ତ୍ରୀ ଦେବାଙ୍କର ମନେ ହେଲା ଯେ ତାଙ୍କୁ ଚେଇଁ ରହିବାକୁ କୁହାଯାଉଛି । ଯେମିତିକି ବ୍ୟାଙ୍ଗବନ୍ଧୁ ପରି ତୀର ଠିକଣା ଜାଗାରେ ଲଗିବ । ଭଣଜା ନାହିଁ ସିନା ଏଠି, ତା' ମାଇଁ ଅଛି, ତା'ର ଚେହେରା ମାଇଁ । ପଢ଼ୁଛନ୍ତି—

"ମୁଁ ଫେରିବି ନାହିଁ । କଦାପି ଫେରିବି ନାହିଁ ମୋର ତଥାକଥିତ ଘରକୁ ।

ଯେଉଁଠି ବ୍ୟକ୍ତି ବୋଲି କେଉଁ ମଣିଷ ନାହିଁ । ଖାଲି ଅମୁକର ପୁଅ । ଏବଂ ଅମୁକ ଜାତି, ଗୋଷ୍ଠୀ, ବର୍ଣ୍ଣଧର୍ମର । ଦେଖିବା କଥା ଯେ ସେ ସେମାନଙ୍କ ନିର୍ଦ୍ଦେଶ ଅନୁଯାୟୀ, ତଥା ପରମ୍ପରାକୁ ଜୁହାର ହୋଇ, ଠିକଣା ପାଠ ପଢ଼ୁଛି, ଠିକଣା କାମ କରୁଛି, ଠିକଣା ଜାଗାରେ ବାହା ହୋଇଛି (ଉପଯୁକ୍ତ ଯାନଯୌତୁକ ଆଣିଥିବ ନିଶ୍ଚୟ), ନା ନାହିଁ । ସେହି ହିସାବରେ ତା'ର ମୂଲ୍ୟ ଦିଆଯିବ । ଦେଖିବା କଥା ଯେ ତା' ମୁହଁରୁ ଠିକଣା ଶବ୍ଦ ବାହାରୁଛି କି ନାହିଁ । ଯଦିଓ ସେଭଳି ଶବ୍ଦକୁ ଶବ୍ଦ କୁହାଯିବ ନାହିଁ, ହୁଏତ ଗଅଁ ଗଅଁ, କାହିଁକନା ତା'ର ଶ୍ୱାସ ରୁଦ୍ଧ ହୋଇ ରହିଛି କେବେଠୁଁ । ସମାଜର ଦି' ହାତ ନୁହେଁ, ହଜାରେ ହାତ । କେଉଁ କଣ୍ଠନଳୀର ସାଧ୍ୟ ଅଛି ସେଇ ସହସ୍ରହାତର କବଳରୁ ମୁକ୍ତ ହୋଇ ଆପଣା ସ୍ୱର ଉଚ୍ଚାର କରି ପାରିବ, ଆପଣାର ଆନନ୍ଦ ପାଇଁ ?

ଯେଉଁଠି ମଣିଷ ବୋଲି କେଉଁ ବ୍ୟକ୍ତି ନାହିଁ । ଖାଲି ସେ ପାଖର ଗଣ ଓ ଏ ପାଖର ଶ୍ରେଣୀ । ତୁମ ଜନ୍ମ ନେଇ ନିର୍ଭର କରେ କେଉଁଭଳି ମୃତ୍ୟୁ ଅଛି ତୁମ କପାଳରେ । ହୁଏତ ତୁମେ ସେ ପାଖରେ ରହି ଭେଲା ଭେଲା ହୋଇ ମରିବ । ଦୁର୍ଭିକ୍ଷରେ, ପରିହାର୍ଯ୍ୟ ରୋଗବଇରାଗରେ, ବିଷାକ୍ତ ମଦ ପିଇ, ପୁଲିସ୍ ତଥା ସନ୍ତ୍ରାସବାଦୀର ଗୁଳି ଖାଇ, ଏବଂ ଆପଣା ଭିତରେ ହଣାକଟା ହୋଇ । ଶହଶହଙ୍କ ଭିତରେ ସଂଖ୍ୟାଟିଏ ହୋଇ । ଅଥବା ଏ ପାଖରେ ରହି ବର୍ତ୍ତି ଥାଉଁଥାଉଁ ମରିବ । 'ଉଚିତ' ଶବ୍ଦର ଉଚ୍ଚାରଣ କରି, ନିର୍ଦ୍ଦିଷ୍ଟ ଭୂମିକା ନିଭେଇ, ଏବଂ ନୀତିବୋଧ ମୂଲ୍ୟବୋଧ ସମ୍ବେଦନା ସହାନୁଭୂତି ଇତ୍ୟାଦି ମଣିଷପଣକୁ ଠକି ଦେଇ, ଯେମିତିକି ତୁମେ ଆହୁରି ଉପରକୁ ଉଠି ପାରିବ, ଅନ୍ତତଃ ଉପରେ ତିଷ୍ଠି ରହି ପାରିବ । ଗଣ ଅରଣ୍ୟରେ ଖସି ପଡ଼ିବାର ଭୟରୁ ରକ୍ଷା ପାଇଯିବ ।

ଯେଉଁଠି ସରକାର ବୋଲି କିଛି ନାହିଁ, ହେଲେ ଗଣତନ୍ତ୍ର କାଏମ୍ ଅଛି, କାରଣ ଭୋଟ୍‌ଦିଆ ଚାଲିଛି, ଭୋଟ୍‌ର କିଣାବିକା, ଏବଂ ସେଥିର ରକ୍ତବୁହା ମଉଜ, ସର୍କସ୍ ।

ଯେଉଁଠି ଶିକ୍ଷା ପଛକୁ ଜ୍ଞାନ ନାହିଁ, ଖାଲି ଠେଲାପେଲା ହୋଇ ଶ୍ରେଣୀର ଅମୁକ କ ସମୁକ ଠଣାରେ ପଶିଯିବା କଥା ।

ଯେଉଁଠି ଧର୍ମ ବୋଲି କଛୁ ନାହିଁ, କନ୍ତୁ ରାମ ଅଛନ୍ତି ଓ ବାବର ଅଛନ୍ତି, ଏବଂ ରକ୍ତାକ୍ତ ଯୁଦ୍ଧ ଚାଲିଛି ତାଙ୍କ ଭିତରେ ।

ଯେଉଁଠି ନୂଆବୋହୂ ପାଇଁ ଗୋଟାଏ ନୂଆଧରଣର ଚିତା ମଧ୍ୟ ଜଳା ହୋଇପାରେ, ତା' ଦେହରେ କିରାସିନ ଢାଳି, ସେଇଠୁଁ ନିଆଁ ଲଗେଇ ।

ଯେଉଁଠି···

ନା, ଆଉ । ଆଉ କେତେ ଗାଇବ ମୋ ଘରର ଗୁଣ ? ବାହାରକୁ ନ ଆସିଲେ ତୁମେ ବୁଝି ପାରିବ ନାହିଁ, ମଣ୍ଟୁମାଇଁ, ଯେ ଆଲୁଅ ଓ ଅନ୍ଧାର ଭିତରେ ପାର୍ଥକ୍ୟ କଅଣ । ଏବଂ ବୁଝିପାରିବ ନାହିଁ ମୋତେ କେତେ କଷ୍ଟ ଲାଗୁଛି ମୋ ଘର ଆଡ଼କୁ ଅନେଇଲାରୁ, ଦେଶ କଥା ଭାବିଲାରୁ । କନ୍ତୁ ମୋତେ ତାକୁ ଛାଡ଼ିବାକୁ ପଡ଼ିବ । ସୁଯୋଗ ମିଳିଛି ଯେତେବେଳେ, ତାକୁ ହରେଇବାର ନୁହେଁ । କ'ଣ ବୁଝୁଛ ମୋ ଦୁଃଖ ?···"

"ଆ-ହା-ହା ! ଦୁଃଖ ? ନା ଯନ୍ତ୍ରଣା ମ ?" ରାଘବବାବୁ ଆନୁନାସିକ ସ୍ୱରରେ ଖତେଇ ହେଲା ପରି ହେଲେ । ଏବଂ କହି ଚାଲିଲେ, "ପୁଅ କାହାକୁ ଭୁଲେଇବାକୁ ବସିଛୁ ? ଅସଲ କଥା ହେଉଛି ଯେ ନିଜ ଦେଶ ତାକୁ ଗନ୍ଧଉଛି । ଏଠିକାର ଧୂଳିଧୂଆଁ, ଗୋବରଗାଡ଼ିଆ, ମଉମୁଣ୍ଡିଆଙ୍କ ଦଳ । ଆଉ ହ୍ୟାପ ଡରୁଛି । ସାହସ ନାହିଁ ନିଜ ଗୋଡ଼ରେ ଠିଆହେବା ପାଇଁ । ଭିଡ଼ ଭିତରେ ବାଟ କାଟି ଆଗେଇ ଯିବା ପାଇଁ । ଚାହେଁ ସବୁ ସହଜରେ ହାତ ପାଖକୁ ଆସିଯିବ । ଡର୍‌ପୋକ୍ କାହାଁକା !" ରାଘବବାବୁ ଗୋଟାଏ ବଗ୍ରଟ 'ହୁଃ !' ଛାଡ଼ି ଦେଇ ଚଟିକୁ ଥୋଇଦେଲେ ଫିଙ୍ଗିଲା ପରି ।

ପୁଣି କହିଲେ କଛୁ ସମୟ ପରେ, "କଥା ହେଉଛି ପିଲାଟା ଠିକଣା ଟ୍ରେନିଂ ପାଇଲା ନାହିଁ । ସହରଆ ବାପା । ପୁଣି ଚାକିରିଆ । ଚାକିର ଚପରାସିଙ୍କ କଲ୍‌ଚର୍··· ଓଡ଼ିଆ ରହିଗଲା ଯେ ସେ ହୁଏତ ଉଚିତ୍ ଟ୍ରେନିଙ୍ଗ୍ ଦେଇ ପାରି ଥାଆନ୍ତେ, କାରଣ ସେ ସହରଆ କ ଚାକିରିଆ ନୁହଁନ୍ତି, ମଫସଲରେ ଅଛନ୍ତି, ଆଉ ନିଜ ଗୋଡ଼ରେ ଠିଆହୋଇଛନ୍ତି । ଉଚ୍ଚଶିକ୍ଷାକୁ ମାର୍ ଗୋଲି, ମାଟିରେ ସୁନା ଫଳେଇ ପାରୁଛନ୍ତି ।

ସେଇଠୁଁ ସେ ଆବିଷ୍କାର କଲେ ଯେ ମଣ୍ଟୁ ପ୍ରକୃତରେ ଶୋଇଚାଲିଣି । ତାଙ୍କ ଭର୍ତ୍ସନାର ତେଜ କ ଧ୍ୱନୀ, ଏବଂ ସେଥିରେ ଥିବା ପ୍ରଚ୍ଛନ୍ନ ଆତ୍ମଗୌରବକୁ

ଶୁଣି ନ ଥିବ ହୁଏତ । ହେଲେ ସେ କାଳେ ଶୋଇ ନଥିବ, ସେଇ ଆଶାରେ ସେ ଏଥର ପତ୍ନୀଙ୍କୁହିଁ ସମ୍ବୋଧନ କଲେ, ଏବଂ ଗୋଟାଏ ଖୁଞ୍ଚା ଦେଲେ—

"କିନ୍ତୁ ସାହେବକୁଅ ଏମିତିକା ଓଡ଼ିଆ, ଏଭଳି ସାହିତ୍ୟ ଶିଖିଲା କେଉଁଠୁ? ତମଠୁଁ ?" କହି ସାର ହସିଲେ ଠୋ' ଠୋ' ହୋଇ ।

ମନ୍ତସ୍ୱୀ ଦେବୀ ତଥାପି ନୀରବ ରହିଲେ । ଯଦିଓ ସେ କାଦରେ ଶୋଇ ନ ଥିଲେ । କିନ୍ତୁ ସେ ମନେ ମନେ ତା'ର ଜବାବ୍ ଦେଲେ—

ନା । ସେ ସାହିତ୍ୟ ଶିଖି ନାହିଁ ମୋଠୁଁ । ହେଲେ ମୁଁ ତାକୁ କେତେ ଫୁଲଫଳ ଚହ୍ନେଇ ଦେଇଛି, ଆଉ ସେ ମୋତେ ଇତିହାସ ଭୂଗୋଳର ପାଠ ପଢ଼େଇଛି । ଆଉ ଆମେ ଏକାଠି ଗୀତ ବୋଲିଛୁ, ଧୀରେ ଧୀରେ, ନିରୋଳାରେ । ଆମ ରଜ ଲୁଆଁରପୁନେଇଁର ଗୀତଠାରୁ ଆରମ୍ଭ କରି ହିନ୍ଦୀ ସିନେମା ଗୀତ । ଗପ କୁହା କୁହି ହୋଇଛୁ । ଅବୋଲକରା କାହାଣୀ, ପୁରାଣ କଥା (ମୋ ଆଡ଼ୁ), ବହିପଢ଼ା ଡିଟେକ୍‌ଟିଭ୍ ଗପ (ତା ଆଡ଼ୁ), ଓ ନିଜ ନିଜ ବାପମାଆ ଭାଇଭଉଣୀଙ୍କ ଗପ । ହେଲେ ତାକୁ ତମେମାନେ ସାହିତ୍ୟ ବୋଲି କହିବ ନାହିଁ ।

କିମ୍ବା ସେଇ ଦିଆନିଆରେ ଆମେ ଯାହା ପାଉ ପରସ୍ପରଠାରୁ, ତା'ର ଅମୃତକୁ ବି ତମେ ସାହିତ୍ୟ ବୋଲି କହିବ ନାହିଁ । ଖାଲି ସିଏ ଡରକୁଳା ନ ଥିଲା, ମୁଁ ତା'ଠୁଁ ବେଶୀ ଡରୁଥିଲି । ମୁଁ ତାକୁ ବୋକାକୁଆ ବୋଲି ଚିଡ଼଼ଉଥିଲି ସିନା, ମୁଁ ଆହୁରି ବୋକୀ ଥିଲି । କାରଣ ଆମେ ମିଛୁଟାରେ ଭାବୁଥିଲୁ ଯେ ଆମେ ପଛରେ ପଡ଼ିଯାଇଛୁ । ତମମାନଙ୍କ ମରଦପଣିଆ ତମ ସଂସାରର ସଫଳତା ଯାହା ଗୃହୁଁଛି ଆମଠାରୁ, ଆମେ ତାକୁ ସହଜେ ଦେଇପାରୁ ନାହୁଁ । ଦେଖେଇ ପାରୁ ନାହୁଁ । ଡରୁଥିଲୁ କାଳେ ତମେ ସବୁ ହସୁଛ, ହସିବ ଆମ ପରାଭବ ଦେଖି । ମୋତେ ପଣ୍ଡଣାରେ ଭାତ ବାଢ଼ି ଆସେ ନାହିଁ, ବନ୍ଧୁବାନ୍ଧବ କିମ୍ବା ସରପଞ୍ଚ ମହାଶୟଙ୍କୁ ଯଥାଯୋଗ୍ୟ ଚର୍ଚ୍ଚା କରି ଆସେ ନାହିଁ, ହଳିଆବେଠିଆମାନଙ୍କୁ କେମିତି ଶାସନ କରିବାକୁ ହୁଏ ତା'ର କଉଶଳ ମୋତେ ଜଣାନାହିଁ ଇତ୍ୟାଦି । ଆଉ ସେ ଗ୍ରେରସିପାହୀ ଖେଳରେ ଚଟକିନା ପଳେଇ ଯାଇ ପାରେ ନାହିଁ, ରୁଚ୍ଛାକୁ ମାଡ଼ ଖାଏ, ତାକୁ ଥଟ୍ଟା ନକଲର ଠିକଣା ଜବାବ୍ ଦେଇ ଆସେ ନାହିଁ, ଯେତେ ପାଠୁଆ ହେଲେ ବି ପିଲାଟା ଗ୍ୱାଲଖ୍ ଚତୁର ନୁହେଁ, ଇତ୍ୟାଦି । ବେଳେବେଳେ ତା' ପାଟି ଖନ ବାଜି ଯାଏ । ଏବଂ ବେଳେ ବେଳେ ମୋ କଥା ଓଲଟପାଲଟ ହୋଇଯାଏ । କିନ୍ତୁ ଦିଆନିଆର ଅମୃତ ପାଇଲାରୁ ଆମର ମନେ ହେଲା ଯେ ତଥାପି ଆନନ୍ଦ ଅଛି ଏଇ

ପୃଥିବୀରେ ଏବଂ ଆମର ଏଇ ସମାଜରେ । ତଥାପି ଆମେ ବ'ଜଣିଆ ଗୀତ ଗାଇ ପାରବୁ, ନୂଆ ବର୍ଷାରେ ଉନ୍ମତ୍ତ ଯାଇ ତାଳ ମାରି ପାରବୁ, ପିଲାପଣର ସୁଖ କରି ପାରବୁ ।

ତମେ ସବୁ ବୁଝିବ ନାହିଁ । ସେ ପ୍ରକୃତରେ ଡରକୁଳା ନୁହେଁ । ତମ ସାଧୁ ଭାଷାରେ ଭାବପ୍ରବଣ, ଭାବକାତର, କି ସେମିତିକା କିଛି । ତା'ଛଡ଼ା ଡରକୁଳାହିଁ ବେଳେ ବେଳେ ଲଗାମ୍ ଛାଡ଼ି ଦେଇ ପାରେ ବୀର ହେବା ପାଇଁ । ହୁଏ ମଧ୍ୟ ବୀର । ନ ହେବ କାହିଁକି ?

ଆମ ଦେଶ ତାକୁ ଗନ୍ଧତ ନାହିଁ, ଦେଶର ହାଲଚାଲ ତାକୁ ପ୍ରକୃତରେ ବାଧୁଛି । ସ୍ୱଭାବତଃ ସେ ଚାହୁଁଛି···ସେଥିରୁ ଦୂରେଇ ଯିବ । କ'ଣ ଭୁଲ୍ ହେଲା ସେଥିରେ ? କୋଉ ଲୋକଟା ଜାଣିଶୁଣି ନିଜକୁ କଷ୍ଟ ଦେବାକୁ ଚାହେଁ ?

ତଥାପି ମୁଁ ଜାଣେ ସେ ଫେରି ଆସିବ । ଆଜି ନହେଲେ କାଲି । ଭାରତକୁ, ଓଡ଼ିଶାକୁ, ଲକ୍ଷ୍ମୀପୁରକୁ ।

ମଲା, ଇଏ କେମିତିକା ଯୁକ୍ତି ? ନା ତୋ ବେହେଲ ଆଶା, ଯାହା ପଛରେ ଯୁକ୍ତି ନାହିଁ, ବୁଦ୍ଧି ବିଚାରର କାଣିଚାଏ ନାହିଁ ? ···ମଞ୍ଜରୀ ଦେବୀ ତାଙ୍କ ଭାବଧାରାର ଅସଙ୍ଗତିକୁ ହଠାତ୍ ଦେଖି ପାରିଲେ । ତେଣୁ ଆଖିବୁଜି 'ଶୋଇଥିଲେ' ମଧ୍ୟ ତାଙ୍କ ଓଠରେ ଅଳ୍ପଟିକିଏ ହସ ଫୁଟି ଉଠିଲା, ଯାହା ରାଘବବାବୁଙ୍କ ଦୃଷ୍ଟିକୁ ଏଡ଼ାଇ ପାରିଲା ନାହିଁ ।

ରାଘବବାବୁ ଜାଣିଲେ ଯେ ମଞ୍ଜୁ ଶୋଇ ନାହିଁ । ଏବଂ ତାଙ୍କର ମନେ ହେଲା ଯେ ଇଏ ହେଉଛି ତା' ଆମୋଦର ହସ । ତାଙ୍କ ଅନ୍ତରଙ୍ଗିତ ପ୍ରତିକ୍ରିୟାକୁ ନେଇ । ସେଇଠୁଁ ସେ କଥାଟାକୁ ଠୋମ୍ କରି ଛୁଣ୍ଡେଇଲା ପରି କହିଲେ—"ଛାଡ଼ଃ । ତକୋବାବୁ ବିଲାତ ଯାଆନ୍ତୁ କି କଳାପାଣି, ଆମର ସେଥିରେ କିଛି କହିବାର ନାହିଁ । ତା'ର ବାପମାଆ, କେଜେ ଆଉ ଘରଲୋକମାନେ ବୁଝିବେ ତା'ର ଭଲମନ୍ଦ । ଆମର ଭାବିବା କଥା ଖାଲି ଆମ ଜାନୁକୁ ନେଇ । କେଇଟା ବର୍ଷରେ ସେ ବି ବଡ଼ ହେବ । ଆମକୁ ଜଗିବାକୁ ହେବ । ଯେ ଗୁଣମଣି ଭାଇଙ୍କ ଦେଖାଦେଖି ତା' ମୁଣ୍ଡ ଯେମିତି ବିଗିଡ଼ି ନଯାଏ···"

ମଞ୍ଜରୀ ଦେବୀ ଆଖି ଖୋଲିଲେ । ଏବଂ କଟମଟ ହୋଇ ଅନେଇଲେ ସ୍ୱାମୀଙ୍କ ଆଡ଼କୁ । ହଟେକେ ଇଏ ଛୋଟିଆଏ ହଜି କଥା, କିନ୍ତୁ ଏଭଳି ନିର୍ମମ ସତ୍ୟ ଯେ ଶୁଣିନାହାନ୍ତି ଜାନ ଉଠିଲା ଦିନୁ ।

( ୨ )

ଚନ୍ଦନ ରାଉତ, ଛବିଶ ବର୍ଷର ଟୋକା, ଗାଲର ଚମଡ଼ା ପ୍ରକୃତରେ ଭାଙ୍ଗି ନାହିଁ ଆଜଯାଏ, ହେଲେ ମୁଣ୍ଡବାଳ ପ୍ରତି ଟିକିଏ ହେଲେ ଯତ୍ନ ନେଲା ପରି ମନେ ହେଉ ନାହିଁ, ଉଇନ୍‌ଗେଟ୍ ପାର୍କର ଗୋଟିଏ ଲମ୍ବା ଗଛ ତଳେ ଆଣ୍ଠୁ ପ୍ରମାଣେ ଗଦା ହୋଇଥିବା ଶୁଖିଲା ପତ୍ରର ସାଙ୍ଗରେ ଖେଳୁଥିଲା । ତାକୁ ଗୋଡ଼ରେ ଖେଳାଉଥିଲା, ପୁଣି ହାତରେ ମୁଠା କରି ଫିଙ୍ଗି ଦେଉଥିଲା । ସତେକି ସେ ଜଣେଇ ଦେଉଛି ଯେ ଏଠି ସେ ଇଚ୍ଛା କଲେ ପୁଣି ପିଲା ହୋଇପାରେ । କିଏ କ'ଣ ଭାବିବ ବୋଲି ଡରିବାକୁ ନାହିଁ ।

ଯେମିତିକି ସେ ନିର୍ବାଧରେ ଲଭ୍ କରୁଥିଲା ତୋଷ୍ରା ସାଙ୍ଗରେ, ଏଇ ଘଣ୍ଟାଏ ଦି'ଘଣ୍ଟା ଆଗରୁ, ପାର୍କର ଗୋଟାଏ ନିରୋଳା ଜାଗାରେ, ଅନ୍ୟତମ ପତ୍ରଗଦା ଉପରେ । ଜାଣିଶୁଣି । ତା'ର ଖଡ଼ଖଡ଼ ମଡ଼ମଡ଼ ସାଙ୍ଗରେ ଲହଡ଼ି ଖାଇ, ଯୌବନର ଆନନ୍ଦକୁ ଆହୁରି ଶବ୍ଦାୟିତ କଲା ପରି । ମନ ଇଚ୍ଛା । ତା'ର ଇଚ୍ଛା ମୋର ଇଚ୍ଛା, କିଏ କାହିଁକି କ'ଣ କହିବାକୁ ଥିବ ?

ଏଇଥିକୁ କୁହନ୍ତି ଆନନ୍ଦ !

ଦମ୍ ନେଲା ପରି ସେ ବସି ପଡ଼ିଲା ପତ୍ରଗଦା ଉପରେ । ସନ୍ଧ୍ୟା ପ୍ରାୟ । ସାମ୍ନାରେ ଯୋଡ଼ିଏ ଟୋକାଟୋକୀ ପରସ୍ପର ଅଣ୍ଟାରେ ହାତ ଗୁନ୍ଥେଇ ହୋଇ ବୁଲୁଥିଲେ, ଏବଂ ପ୍ରେମ ହେଉଥିଲେ । ଅର୍ଥାତ୍ ମଝିରେ ମଝିରେ ଚୁମା ଦିଆଦେଇ ହେଉଥିଲେ, ଏବଂ ହସୁଥିଲେ ଖେଁ ଖେଁ ହୋଇ । ହଠାତ୍ ସେମାନେ ଚନ୍ଦନକୁ ଦେଖି 'ହାଏ' ବୋଲି କହିଲେ, ଏବଂ ଚନ୍ଦନ ଗୋଟାଏ ଦାନ୍ତଖିଜଡ଼ା 'ହାଏ'ର ପ୍ରତିଦାନ ଦେଲା । ସେଇଠୁଁ ତା'ର ମନେ ହେଲା, ସବିଲା ତା'ର ଭ୍ରମ ହୋଇଥିଲା—କିନ୍ତୁ ଇଏ ଜେନ୍ଦ୍ରଫର ନୁହେଁ ତ ? ଧ୍ୟାତ୍, ସେ ଥିଲା ଲଣ୍ଡନ ମେଞ୍ଚାଏ କଲଦିଆ-ସୁନେଲା କେଶକୁ ଝାଡ଼ି ଦେଉଥାଏ ଥରକୁ ଥର । ଆଉ ସ୍ୱା'ର ତ ତମ୍ବା ରଙ୍ଗ କି ଚେଷ୍ଟ୍‌ନଟ୍ ରଙ୍ଗ । ହେଲେ ବାଳର ରଙ୍ଗ ବଦଳେଇବାକୁ କେତେ ସମୟ ? ଖିଆଲ୍ ଅନୁଯାୟୀ, ବାଳର ରଙ୍ଗକୁ ବଦଳେଇବା, ଇଏ ବି ଗୋଟାଏ ମଜା ଏଠିକା ହିଅଙ୍କର । କାହିଁକି ବା ନବଦଳେଇବେ ? ଇଏ ବି କ'ଣ ଗୋଟାଏ ଆନନ୍ଦ ନୁହେଁ ସ୍ୱାଧୀନ ମଣିଷର ?

…ଯଦିବା ସେ ଜେନନ୍ନ ହୋଇଥାଏ, କ'ଣ ହେଲା ହେଉଁ ? ମୋତେ ଟିକେ ଆଶ୍ଚର୍ଯ୍ୟ ଲାଗିଲା ହୁଏତ, କିନ୍ତୁ ରାଗିବାର ଈର୍ଷା କରିବାର, ପ୍ରଶ୍ନ ଉଠୁନାହିଁ । କାରଣ ଆମ ଭିତରେ କୌଣସି ଲିଖିତ-ଅଲିଖିତ ଚୁକ୍ତି ହୋଇ ନଥିଲା ଯେ ଆମେ ଆଉ କାହାକୁ ଲଭ୍ କରିବୁ ନାହିଁ, ଅନ୍ତତଃ 'ଫଲ୍'ର ରଙ୍ଗତକ ଲିଭିଯିବା ଭିତରେ ।

ସେ ଆସିଥିଲା ଏଇ ଦ'ପଦ ମାସ ତଳେ ଫଲ୍‌ର ରଙ୍ଗ ସାଙ୍ଗରେ । ବଡ଼-ଲୋକ ଘର ଝିଅ, ବିଜନେସ୍ ଆଡ୍‌ମିନ୍‌ଷ୍ଟ୍ରେସନ୍ ପଢ଼ିବାକୁ ଆସିଛି, ଯେମିତିକ ଯଥା-ସମୟରେ ବାପର ବିଜନେସ୍‌କୁ ଚଳେଇ ପାରିବ । ଫୁଲେଇ ହୋଇ ଗୋଟାଏ ପୁରୁଣା ଫୋର୍ଡ଼କ୍ ଡ୍ରାଇଭ୍ କରି ବୁଲୁଥାଏ, ଯାହାକୁ ଆଣ୍ଟିକ୍ କହିଲେ ଚଳେ । ଖାଲି ଫୁଲେଇ ନୁହେଁ, ଲାଜସରମ ଟିକିଏ ବୋଲି ନାହିଁ । କହିଲା—ମୋ କାର୍‌ଟା ଆଣ୍ଟିକ୍ ସିନା, ମୁଁ ନୁହେଁ ମ ! ପରୀକ୍ଷା କରିବାକୁ ଚାହୁଁ ? କହି ହସିଲା ଠୋ' ଠୋ' ହୋଇ । ପ୍ରଥମେ ଭାବିଲି, ମୁଁ କେଉଁ ତଳିଆ ଭିନ୍ନ ଦେଶର ଲୋକ ବୋଲି ସେ ଏତେ ନିର୍ଲଜ୍ଜ ହୋଇପାରୁଛି ମୋ ଆଗରେ । କିନ୍ତୁ ପରେ ଦେଖିଲି ଯେ ତା' ନୁହେଁ । ସେ ମୋତେ ଚାହୁଁଛି । ଏବଂ ମୋର ମନେ ହେଉଛି ମୁଁ ବି ତା'କୁ ଚାହେଁ । କାହିଁକିନା ସେ ଏଇ ଫଲ୍ ଋତୁର ଅନ୍ୟତମ ଉଜ୍ଜ୍ୱଳ ରଙ୍ଗ, ବିବିଧବିଚିତ୍ର ନାଲି-ହଳଦିଆ-ଶାଗୁଆ-କସରା ରଙ୍ଗର ହାଲୋଲ ଭିତରେ ଆଉ ଗୋଟାଏ ରଙ୍ଗ ହୋଇ ପହୁଞ୍ଚିଛି ମୋ ଜୀବନରେ । ତେଣୁ ତା'କୁ ମଧ୍ୟ ଭୋଗ କଲେ ମନ୍ଦ ହେବ ନାହିଁ । ସେଇଠୁଁ ସେ ମୋତେ ବୁଲେଇ ନେଲା ତା' କାର୍‌ରେ । କେତେ ପାହାଡ଼ଜଙ୍ଗଲ ଭିତରେ, ହ୍ରଦ ନଈନାଳର କୂଳେ କୂଳେ । ଏବଂ ପତ୍ରର ସବୁ କେତେ ଭଳି ରଙ୍ଗ ଧରେ ଓ ରଙ୍ଗ ବଦଳଉଥାଏ ଦିନକୁ ଦିନ, ତା'ର ନାହିଁ ନଥିବା ଶୋଭା ଦେଖାଇଲା । ଏବଂ ମଧ୍ୟାନ୍ତରରେ ତା'ର ପ୍ରେମ ମଧ୍ୟ କେତେ ଉଗ୍ର ଓ ଆଧୁନିକ, ତା'ର ପ୍ରମାଣ ଦେଲା ବିଭିନ୍ନ ହୋଟେଲ୍ ରୁମ୍‌ରେ ।

ଯେମିତି ଆସିଥିଲା, ସେମିତି ଚାଲି ଯାଇଛି । ଆଜି ଆସିଛି ତୋରା, ଝଡ଼ା ପତ୍ରର ଗଦାରେ ଲଟେଇ ହୋଇ, ଗେହ୍ଲେଇ ହୋଇ, ହସରେ ହସରେ ଶବ୍ଦରେ ଶବ୍ଦରେ ଫାଟିଫୁଟି ପଡ଼ି । ସତେକି ପ୍ରେମର ମୂଳକଥା ହେଲା ଧ୍ୱନି । ସେ ବି ବେଶ୍ ବେପରୁଆ । ହେଲେ ଆଉ କିସମର ।

କେଉଁଠି ରଙ୍ଗ ତ କେଉଁଠି ଧ୍ୱନି । ଉପଭୋଗର ବିଭିନ୍ନ ପୃଷ୍ଠଭୂମି, ବିଭିନ୍ନ ଋତୁ ଓ ରୁଚି ଅନୁଯାୟୀ । ହେଲେ କେଉଁଠି ହେଲେ ବାନ୍ଧି ହୋଇଯିବାର ପ୍ରମାଦ ନାହିଁ । ବିପଦ ନାହିଁ । ଏଇଆକୁ କୁହନ୍ତି ସ୍ୱାଧୀନତା !

ଏବଂ ଏଇଆକୁ କୁହନ୍ତି ଆନନ୍ଦ !...

ଆନନ୍ଦକୁ ଚାକୁଳେଇ ଚାକୁଳେଇ ଚନ୍ଦନ ପ୍ରାୟ ସନ୍ଧ୍ୟାବେଳକୁ ଫେରିଲା ତା'ର ବେଡ଼ରୁମ୍ ବିଶିଷ୍ଟ ଆପାର୍ଟ୍‌ମେଣ୍ଟକୁ । ବସିବା ଘର କାନ୍ଥ ଭିତରୁ ଖଟ ବାହାରି ଆସେ ରାତିରେ ଶୋଇବା ଘର ହେବା ପାଇଁ । ଏବଂ ତା'ର ଭିତରେ ବୋତାମଟିପା ଟି. ଭି., ରେଡ଼ିଓ ଇତ୍ୟାଦି ମହଜୁଦ୍ ଅଛି । ହୁଏତ ବାହାସାହା ହୋଇଥିଲେ, ବିଶେଷତଃ ପିଲାଟିଏ ଥିଲେ ଟିକେ ଅସୁବିଧା ହୁଅନ୍ତା ଚଳିବା ପାଇଁ । କିନ୍ତୁ ଚନ୍ଦନ ସେଭଳି କାଳ୍ପନିକ ଆଶଙ୍କାକୁ ହସି ଉଡ଼େଇ ଦିଏ । ବେଳେବେଳେ ଏମିତି ବି

ଭାବେ—ବାହା ହେବା କ'ଣ ସତରେ ଦରକାର ଜୀବନରେ ? ନା ପିଲା ଖେଳେଇବା ?

ଲେଟର୍ ବକ୍‌ସରେ ଗୁଡ଼ାଏ ଚିଠି । କିନ୍ତୁ 'ଜଙ୍କ୍ ମେଲ୍' ବେପାରୀ ବ୍ୟବସାୟୀଙ୍କର ମୋହନବଂଶୀ ଛଡ଼ା ଆଉ କିଛି ଅଛି ନା ନାହିଁ ? ଅଛି । ଏବଂ ଭାରତରୁ ଆସିଛି । ଭୁବନେଶ୍ୱରରୁ । ଗୁଡ୍ !

ବୋଉର ଚିଠି । ଅପେକ୍ଷିତ ଚିଠି । ସ୍ନେହବୋଳା । ଲେଖିଛି ଅବଶ୍ୟ ସେଇସବୁ ପୁରୁଣା କଥା—ତୋ ଦେହର ଯତ୍ନ ନେବୁ, ମନ ଦେଇ ପଢ଼ିବୁ, ଝିଟିମିଟି ଚିଠି ଦେବୁ, ଇତ୍ୟାଦି । ଏବଂ ଶେଷକୁ ତା'ର ସେଇ ତଥାକଥିତ ସ୍ୱପ୍ନ । କ'ଣ ନା ଆମେ ଅପେକ୍ଷା କରି ରହିଛୁ ତୁ କେବେ ଗ୍ରୀନ୍‌କାର୍ଡ଼ ପାଇ ସେଠି ରହିବୁ ଘରଦ୍ୱାର କରି, ଆସନ ଜମେଇ । ଏବଂ ଆମେ ତୋତେ ଦେଖିଆସିବୁ ସେଠି । ...ମୁଁ ତାକୁ କେତେଥର କହି ସାରିଲିଣି ଯେ ମୁଁ ଯେଉଁ କମ୍ପ୍ୟୁଟର କାମ କରୁଛି, ଏବଂ କମ୍ପାନୀରେ ମୋର ଯେଉଁ ସୁନାମ ହୋଇଗଲାଣି ଗତ ଛଅବର୍ଷ ଭିତରେ, ସେଥିରେ ଗ୍ରୀନ୍‌କାର୍ଡ ମିଳିବ ହିଁ ମିଳିବ । ନହେଲେ ମୁଁ କଣ ଏତେ ଦମ୍ଭରେ ଘୋଷଣା କରିପାରିଥାଆନ୍ତି ଯେ ମୁଁ ଫେରିବି ନାହିଁ ଭାରତକୁ ? ମୁଁ ଯେମିତି ହେଲେ ରହିଯିବି ଏଠି । ପୂର୍ଣ୍ଣଚ୍ଛେଦ ।

ଯାହାହେଉ ବୋଉ ଆମର ଆଧୁନିକା । ବାପାଙ୍କଠାରୁ ଊଣା ନୁହେଁ । ସେ ବି ମୋର ଉଚାଭିଳାଷକୁ ସ୍ୱୀକାର କରି ନେଇଛି । ବାପାଙ୍କ ପରି ମୋତେ ଉସ୍‌କେଇ ନାହିଁ ହୁଏତ, କିନ୍ତୁ ଅନ୍ୟ ମାଆଙ୍କ ପରି ଲୁହ ଗଡେଇ ନାହିଁ ଯେ ମୁଁ ଘରକୁ ଫେରିବି ନାହିଁ । ଏଭଳି ସୌଭାଗ୍ୟ ଆଉ କେତେ ଜଣଙ୍କର ଅଛି ?

ସୌଭାଗ୍ୟ । ମୋତେ ଲଢ଼େଇ କରିବାକୁ ପଡ଼ି ନାହିଁ, ଅଯଥାରେ କାହାର ଅପରାଧ କରିବାକୁ ହୋଇ ନାହିଁ । କେତେ ସୁରୁଖୁରୁରେ ମୋ ବିଦେଶଯାତ୍ରା ବିଦେଶ ରହଣିକୁ ଲମ୍ବି ଯାଇଛି । ମୋ ନିଜ ମେରିଟ୍ କଥା ଛାଡ଼ିଦିଅ । ବାପମାଆ ଫ୍ୟାମିଲି ଆଡ଼୍ ମଧ୍ୟ କୌଣସି ଆପତ୍ତି ନାହିଁ । କେହି ମୋ ଉପରେ ଅଲଣା ପ୍ରେମପ୍ରୀତିର ଗୃପ ପକେଇ ନାହାନ୍ତି, ଯାହାକୁ କହନ୍ତି ଇମୋସନାଲ୍ ବ୍ଲାକ୍‌ମେଲ୍, ଏଇ କଅଣ ବଡ଼ କଥା ନୁହେଁ ?

ଆହୁରି ଗୋଟାଏ ଚିଠି ଅଛି । ପୁରୁଣା ସାଙ୍ଗ ଅମିତ୍ ପାଖରୁ । ଶୁଭେଚ୍ଛା । କିନ୍ତୁ ତା' ସାଙ୍ଗକୁ ଟିକିଏ ଈର୍ଷା ଥିଲା ପରି ମନେ ହେଉଛି । ଥିଲେ ଥାଉ । ମୋର ଭାସି ଯାଉଛି !

ଆଉ କିଛି ଚିଠି ନାହିଁ ?

ଆରେ, ଆଉ କୋଉଠୁ ଆସିବ ବୋଲି ଭାବିଥିଲୁ ? କୋଉ ସ୍ୱୀ ଗାର୍ଲ୍‌ଫ୍ରେଣ୍ଡ୍‌କ ବାଗ୍‌ଦତ୍ତାକୁ ଛାଡ଼ି ଆସିଛୁ ଦେଶରେ ଯେ ତା'ଠାରୁ ଚିଠି ପାଇବୁ ବୋଲି ଆଶା କରିଥିଲୁ ?

ଠିକ୍ କଥା । ପ୍ରକୃତରେ କେହି ନାହିଁ ସେଠି, ଯାହା ପାଇଁ ମୋ ହୃଦୟ ମୁକ୍ତି ହେଉଛି । ଥ୍ୟାଙ୍କ୍ ଗଡ୍ !

ହଁ, ଜଣକ ପାଖକୁ ଗୋଟାଏ ଲମ୍ବା ଚିଠି ଦେଇଥିଲି । ମୁଁ କାହିଁକି ଫେରି ଯାଉ ନାହିଁ, ତାର ତଥ୍ୟଗତ କାରଣ ଦର୍ଶାଇ । କାହିଁକି ଦେଇଥିଲି ? ମନ, କାହାକୁ ହେଲେ ତ ଜଣେଇବି ମୋ ନିଷ୍ପତ୍ତିର ଠିକଣା କାରଣ, ସମ୍ପୂର୍ଣ୍ଣ କାରଣ ? ତା'ଛଡ଼ା ଭାବିନଥି ମୁଁ ତାଙ୍କୁ ଚିଡ଼େଇବାକୁ ଚାହିଁଲି । ଯେମିତିକି ତାଙ୍କୁ ବାଧିବ, ଆଉ ସେ ରାଗିରାଗି ଲେଖିବେ ଏଣ୍ଡୁଡେଣ୍ଡୁ । ଯେଉଁଥିରେ ହଜାରେ ବନାନ ଭୁଲ୍ ଥିବ । ହେଲେ ଆବେଗର ସୁଅ ଛୁଟି ଚାଲିଥିବ, କମା ପୂର୍ଣ୍ଣଚ୍ଛେଦ ଆଦି ବାଡ଼ବତାକୁ ଭାଙ୍ଗି ଦେଇ, ଭସେଇ ଦେଇ । ମଜା ହେବ !

ତା'ବୋଲି ମୁଁ ତାଙ୍କ ଉତ୍ତରକୁ ଅପେକ୍ଷା କରି ରହି ନାହିଁ । ଆମ ମଫସଲିଆଣି ଦରପାଠୋଇ ମଣ୍ଟୁମାଇଁଙ୍କ ପାଖରୁ । ସତେକି ତାଙ୍କଠାରୁ କିଛି ବିଶେଷ ପରାମର୍ଶ ମିଳିବ । ଅଥବା ସେ ଏମିତି କ'ଣ ଲେଖିବେ ଯେ ମୋ ନିଷ୍ପତ୍ତି ବଦଳି ଯାଇପାରେ । ···ଚନ୍ଦନ ନିଜକୁ ଛୁଗୁଲେଇଲା ।

କିନ୍ତୁ କ୍ରମଶଃ କେତେଦିନ ଅନେକ ଦିନ ହୋଇଗଲା । ଝଡ଼ାପତ୍ରର ସ୍ତୂପ ବି ସାଫ୍ ହୋଇଗଲା । ଯେତେକି ପାଇନ୍, ପପ୍‌ଲର୍ ଆଦି ଲମ୍ବା ଲମ୍ବା ଗଛ, ଏବଂ ରଙ୍ଗର ଗୁଚ୍ଛ ଦେଖାଉଥିବା ମେପ୍‌ଲ୍ ଗଛ ପୁରାପୁରି ଥୁଣ୍ଟା ହୋଇଗଲେ, ଏବଂ ଦୁର୍ଜ୍ଜୟ ପଞ୍ଜରା ହାଡ଼ର ମହିମା ଦେଖେଇଲେ । ଉତ୍ତର ମେରୁରୁ ଆସୁଥିବା ହେମାଳ ପବନ ମଧ୍ୟ ଚନ୍ଦନର ପଞ୍ଜରା ହାଡ଼କୁ ଅଣ୍ଟାଳିଲା, ଯେତେବେଳେ ସେ ତା' କାମକୁ ଯାଉଥାଏ କି ଫେରୁଥାଏ ସେଠୁ ।

···ମଣ୍ଟୁମାଇଁ କ'ଣ ମୋ ଚିଠି ପାଇ ନାହାନ୍ତି ? ଅସମ୍ଭବ ନୁହେଁ । ଆମ ଡାକ ବିଭାଗର ଯେଉଁ ଦକ୍ଷତା, ହୁଏତ ମୋ ଚିଠି ଆଜିଯାଏଁ ପହଞ୍ଚି ନଥିବ ତାଙ୍କ ଗାଆଁ ପୋଷ୍ଟ ଅଫିସରେ ।

ନା ସେ କ'ଣ ରାଗିଛନ୍ତି, ଯେ ମୁଁ ଏଥର ଗଲି ନାହିଁ ଲକ୍ଷ୍ମୀପୁର ? କିନ୍ତୁ କ'ଣ ଲେଖାହୋଇଛି ଯେ ମୁଁ ସବୁ ଛୁଟିରେ, ଆମେରିକାରୁ ଇଣ୍ଡିଆକୁ ଆସିବା ଛୁଟିରେ ବି ଯିବି ସେଠିକି ? ତାଙ୍କ ପୋଖରୀର ମାଛ, ବିଶେଷତଃ ତାଙ୍କ ହାତରନ୍ଧା ମାଛର ମୁଢ଼ିପାଣ୍ଡ ଖାଇବି ବୋଲି ? କୁଆଡ଼େ ସେ ଆମ ଆଡ଼ର ମାଛ ଛେଞ୍ଚଡ଼ା ନୁହେଁ, ତାଙ୍କ ବାପଘର ଗାଆଁରେ ଥିବା କେଉଁ ମେଦନପୁରିଆ ଶିଖେଇଥିଲେ ତାଙ୍କୁ । ପୁଣି ସେ ବିଷୟରେ କେତେ ବିଶଦବ୍ୟାଖ୍ୟା ! ନା ମାଟି ସାଙ୍ଗରେ କେତେ ପରିମାଣରେ କ'ଣ ମିଶିଗଲେ (ଗୋବର, ନଡ଼ିଆ ତେଲ, ଆଇଁଷ ପାଣି, ଇଡ଼ି ହୋଇଯାଇଥିବା ଧୀର, ହଳଦୀମଖା ଦେହର ଝାଳ, କି ଆଉ କଅଣ) ଏଭଳି ଉତ୍କଟ ବାସ୍ନା ଆସେ,

ହେଲେ ଗୋଟାଏ ବିକୃତ ଇଚ୍ଛା ହୁଏ ତାକୁ ଆହୁରି ଗହ୍ୱରକୁ ଟାଣି ନେବା ପାଇଁ, ସେ ବିଚିତ୍ରରେ ଗଭୀର ଚିନ୍ତା କରିବା ପାଇଁ ?

ନା ଯାଇଥାଆନ୍ତି ଆମ ହିଲୁଆ, ମରହଟ୍ଟୀ, କହିବାକୁ ଗଲେ ଅସଭ୍ୟ ମାମୁଙ୍କ ଆତ୍ମ-ପ୍ରଶଂସାକୁ ସହି ନପାରି ଆହୁରି ତାଢିବା ପାଇଁ, ମୁହଁ ଉପରେ କିଛି କହି ନ ପାରି ମନେ ମନେ କୁହୁଳିବା ପାଇଁ ?

ଯାଇ ନାହିଁ ଭଲ କରିଛି । ଖାଲି ଚଠି ଖଣ୍ଡେ ଦେବାର ଥିଲି ମାଈଁଙ୍କ ପାଖକୁ । ଦରକାର ଥିଲି ।...

ଯାହାହେଉ ଉତ୍ତର ମିଳିଲା ନାହିଁ । ଚନ୍ଦନର ଜାଣିବାକୁ ବାଟ ନଥିଲା ଯେ ମଞ୍ଜରୀଦେବୀ ବହୁବାର ଇଚ୍ଛା କରିଥିଲେ, ଚେଷ୍ଟା କରିଥିଲେ, ଦି'ଧାଡ଼ି ଲେଖିବା ପାଇଁ । କିନ୍ତୁ ପାରିଲେ ନାହିଁ । କେଜାଣି କେଉଁ କ୍ରୋଧ, କ୍ରୋଧର ଛଳନା, କିମ୍ବା ତୁଚ୍ଛା କିପାରିଲା ପଣ ତାଙ୍କ ଲେଖନୀକୁ ଅଟକେଇ ଦେଲା ।

ଇତିମଧ୍ୟରେ ତୋଗ୍ ବିଦାୟ ନେଲାଣି । ଯେଉଁ ନୂଆ ନାରୀ ଜଣଙ୍କର ଆବିର୍ଭାବ ହୋଇଛି ଚନ୍ଦନର ଆନନ୍ଦ ଜଗତରେ, ତାଙ୍କ ନାଆଁ, ଏସ୍ଥର୍, ମିସେସ୍ ଏସ୍ଥର୍ ଆଲ୍‌ସନ୍ । ତାଙ୍କୁ ତା'ର ଗାର୍ଲ୍‌ଫ୍ରେଣ୍ଡ୍ ବୋଲି କହିବା ହୁଏତ ଉଚିତ ହେବ ନାହିଁ, କାରଣ ସେ ତା'ଠାରୁ ଦଶବର୍ଷ ବଡ଼, ଓ ତାଙ୍କର ଜଣେ ସ୍ୱାମୀ ଅଛନ୍ତି । ଛଡ଼ାଛଡ଼ି ହୋଇଥିବା, ହେଲେ ଗ୍ରୁଡ଼ପକ୍ଷରେ କଟି ଯାଇ ନଥିବା ସ୍ୱାମୀ । ଏବେ ମିସେସ୍ ଆଲ୍‌ସନ୍ ଆପଣା ଖୁସିରେ ଅଛନ୍ତି, ପାଖ ଆପାର୍ଟମେଣ୍ଟ୍‌ରେ । ସେ ବାରମ୍ବାର ଆସନ୍ତି ଚନ୍ଦନ ପାଖକୁ, ଓ ଦୋହରେଇ ହୁଅନ୍ତି ଯେ ସେ ତାକୁ ଭଲ ପାଆନ୍ତି । ବିଶେଷ ଭାବରେ ଭଲ ପାଆନ୍ତି । ଚନ୍ଦନ ବି ତାଙ୍କ ଭଲପାଇବାକୁ ଗ୍ରହଣ ନକରି ରହିପାରି ନାହିଁ । ତଥା ଉନ୍ମୁକ୍ତ ସେକ୍ସର ଆମନ୍ତ୍ରଣ । ସେହେତୁ ତାଙ୍କୁ ତା'ର ଗାର୍ଲ୍‌ଫ୍ରେଣ୍ଡ୍ ଛଡ଼ା ଆଉ କ'ଣ କହିହେବ, ତା' ମଧ୍ୟ ଭାବି ହେଉ ନାହିଁ ।

...ସେଇଠୁଁ ଗୋଟିଏ ଶୀତ ଅପରାହ୍ଣ । ବାହାରେ ବରଫ ପଡ଼ୁଥିଲା । ଚନ୍ଦନର ଛୁଟି ଥିଲା, ତଥାପି ସେ ପାଗ ଦେଖି ଘରେ ବସି ଦୃଶ୍ୟ ଦେଖିବାକୁ ଚାହିଁଲା । ମିସେସ୍ ଆଲ୍‌ସନ୍ ମଧ୍ୟ ଆସି ପହଞ୍ଚିଗଲେ ଦୃଶ୍ୟ ଦେଖାର ସାଥି ହେବା ପାଇଁ । ଦୁହେଁ ପାଖାପାଖି ଚୁପ୍‌ଚାପ୍ ହୋଇ ବସିଲେ ଅନେକ ସମୟ ଓ ଦେଖିଲେ ବରଫ କେମିତି ପଡ଼ୁଛି ଘାସ ଉପରେ, ପଥର ଉପରେ, ଘର ଉପରେ, ରାସ୍ତା ଉପରେ । ଯିଏ ବି ଆକାଶକୁ ଅନଉଛି, ତାକୁ ଛାଡ଼ିବାକୁ ନାହିଁ । ଏବଂ ଏମିତି ଜମି ଯାଉଛି ତାଙ୍କ ଉପରେ ଯେ ମନେ ହେବ ତାଙ୍କ ଦେହରେ ଲାଖିଯିବ ଚିରଦିନ ପାଇଁ । ତାଙ୍କ ନିଜ ରଙ୍ଗ ଲୋଭେଇ ଦେବ, ଓ ଆପଣା ଶୁଭ୍ରତାରେ

ଗ୍ରହଣ କରିବ । ସମସ୍ତଙ୍କ ପ୍ରତ୍ୟେକର ଅଧିକାର ଅଛି ତା'ର ବନ୍ଧାଟଙ୍କା ସ୍ୱରୂପକୁ ପଛରେ ପକାଇ ଏଇ ଶୀତଶାନ୍ତର ପ୍ରସାଦ ପାଇବା ପାଇଁ । କିନ୍ତୁ କେତେ ସମୟ ? କେତେବେଳ ଯାଏଁ ବଞ୍ଚିରହିବ ଏଇ ପ୍ରତିଶ୍ରୁତି ?

ସେ ଦୁ'ଜଣଙ୍କ ମନରେ ଏଭଳି ଆଶଂକା ଓ ଆଲୋଡ଼ନ ସୃଷ୍ଟି ହେଲା କି ନାହିଁ କହିହେବ ନାହିଁ, ତେବେ ପ୍ରାୟ ଏକା ସମୟରେ ଦୁହେଁ ଦୁହିଙ୍କ ହାତକୁ ଛୁଇଁଲେ, ତହୁଁ ତାକୁ ଚିପି ଧରିଲେ । ହେମାଳି ମୁହୂର୍ତ୍ତ ଝରୁଥାଏ, ଝର ଚାଲିଥାଏ ବାହାରେ ।

ହଠାତ୍ ଗୋଟିଏ ପ୍ରଶ୍ନ ମନକୁ ଆସିଲା ପରି ମିସେସ୍ ଆଲସନ୍ ପଚାରିଲେ ଚନ୍ଦନକୁ—"ମୋର ବିଶ୍ୱାସ ହେଉ ନାହିଁ ଯେ ତୁମେ ଆଉ ସତରେ ଫେରିବ ନାହିଁ ଇଣ୍ଡିଆକୁ । ସେଠି କ'ଣ କେହି ନାହାଁନ୍ତି ଯିଏ ତୁମକୁ ଟାଣି ଧରିବ, ଅଟକେଇ ରଖିବାକୁ ଚାହିଁବ ?"

ଚନ୍ଦନ କହିଲା, 'ନା' । କଣ୍ଠରେ ଅସ୍ୱାଭାବିକ ଦୃଢ଼ତା ।

...କିଏ ଅଟକେଇ ରଖିବାକୁ ଚାହିଁବ ? ବାପା-ବୋଉ ତ ମୋର ଉଜ୍ଜ୍ୱଳ ଭବିଷ୍ୟତର ସ୍ୱପ୍ନ ଦେଖୁଛନ୍ତି, ଯାହା କେବଳ ଏଇଠି ସାର୍ଥକ ହୋଇ ପାରିବ । ଯଥାର୍ଥରେ । ଯେତେକ ଅନ୍ୟ ଶୁଭାକାଂକ୍ଷୀ ମଧ୍ୟ ସେଇ ସ୍ୱପ୍ନକୁ କିଣି ସାରିଛନ୍ତି । ଯେତେକ ଈର୍ଷାଳୁ ହୁଏତ ତାକୁ ମିଛ ବୋଲି କହିବାକୁ ଚାହାଁନ୍ତି, କିନ୍ତୁ ପାରୁନାହାଁନ୍ତି । କାରଣ ଏଇ ହେଉଛି ଚାଲୁଧର୍ମ ତରୁଣ ଭାରତର । କିଏ ତାକୁ ଅମାନ୍ୟ କରି ପାରିବ ?

ହୁଏତ ଅଟକେଇ ପାରିଥାଆନ୍ତା ମିନୁ, ମିନତି ନାଏକ । ସହପାଠିନୀ । ତା'ର ଅଧୋମୁଖୀ 'ହଉ'କୁ ପ୍ରେମ ବୋଲି ଭାବିବାକୁ ମନେ ହେଉଥିଲା । କିନ୍ତୁ ଏଥର ମୁଁ ଯେତେବେଳେ ତାକୁ ଜଣେଇଦେଲି ଯେ ମୁଁ ବିଦେଶରେ ରହିବି ବୋଲି ଠିକ୍ କରିଛି, ସବୁଦିନ ପାଇଁ, ସେ ତଥାପି ତା' ମୁହଁ ଉପରକୁ ଉଠେଇଲା ନାହିଁ । ତା'ର ପ୍ରେମ (କି ତାକୁ ଆଉ ଯାହା କୁହ)ର ଚେହେରା ଦେଖାଇଲା ନାହିଁ । ଖାଲି 'ଆଚ୍ଛା' ବୋଲି କହି ରହିଗଲା । ସତେକି ସେଇ ସାମାନ୍ୟ ବନ୍ଧୁତ୍ୱ ଛଡ଼ା ସେ ଆଉ କିଛି ଦେଇ ପାରିବ ନାହିଁ । ଦେବା ନିରର୍ଥକ ।

ଅଟକେଇ ପାରିଥାଆନ୍ତେ ଜେଜେ । କାରଣ ମୋର ଧାରଣା ଥିଲା ଯେ ସେ ମୋର ଗଳ୍ପର ଆସୁଥିବା କବିପଣକୁ ଭଲ ପାଆନ୍ତି, ମୋର ଉଜ୍ଜ୍ୱଳ-ସଫଳ ଭବିଷ୍ୟତ-ଠାରୁ । ମୁଁ ଦୁଇଓଟିର କପି ମଧ୍ୟ ନେଇଯାଇଥିଲି ମୋ ସାଙ୍ଗରେ । କିନ୍ତୁ

ସେ ଆହୁରି ବୁଢ଼ା ହୋଇଯାଇଥିଲେ, ମୃତ୍ୟୁର ପାଖ ହୋଇ ଆସିଥିଲେ କି ସେତେବେଳେ ତାଙ୍କ ପେଟ ଆହୁରି ଟାଣୁଥିଲା ଭଗବାନ୍ ଜାଣନ୍ତି, ସେ ମୋତେ ପଦୁଟିଏ ବି ପଗ୍ଭରିଲେ ନାହିଁ ସେ ବିଷୟରେ । ମୋର ଗୋପନ ଭୟ, ଅପୂରଣ ଓ ବିଫଳତାକୁ ସୁନ୍ଦର ବୋଲି କହିବାର ସୁବିଧା ମିଳିଲା ନାହିଁ ତାଙ୍କୁ । ମୁଁ ବଞ୍ଚିଗଲି ! ନହେଲେ ହୁଏତ ମୋର ମନେ ହୋଇଥାଆନ୍ତା ଯେ ମୁଁ ସୁନ୍ଦରପଣକୁ ଅଯଥାରେ ଗ୍ଭଡ଼ି କରି ଯାଉଛି, କେଉଁ ଇତର ସାଧାରଣ ସଫଳତା ପାଇଁ । ଅଧିକନ୍ତୁ ମୁଁ ଯେତେବେଳେ ତାଙ୍କୁ କହିଲି ଯେ ଏଇ ହେଉଛି ମୋର ନିଷ୍ପତ୍ତି, ସେ ମୋ ପିଠିକୁ ଥାପୁଡ଼େଇ ଦେଇ କହିଲେ, 'ଭଲ, ଭଲ, ଭଲ' । ସେଇ ପଦଟିକୁ କହି ଗ୍ଭଲିଲେ । ସତେକି କେତେ ବୁଢ଼ା କି ମରଣମୁଖରେ ପହଞ୍ଚିଲେ ମଧ୍ୟ ସେ ଜଣାଇବାକୁ ଗ୍ଭହାନ୍ତି ଯେ ସେ ଆଧୁନିକ । ଆମରି ସଂସାରର ଲୋକ । ଆମ ଭଲମନ୍ଦ ବିଗ୍ଭରର ବିମୁଖ ନୁହଁନ୍ତି ।...

ଏଭଳି ଭାବନାର ବଶବର୍ତ୍ତୀ ହୋଇ ଚନ୍ଦନ କିଭଳି ଅନ୍ୟମନସ୍କ ଦେଖାଯାଉଥିଲା, ଏବଂ ସେଥିରେ କେଉଁପ୍ରକାର କରୁଣତା, କୋମଳତା ଓ ସରଳତା ଫୁଟି ଉଠୁଥିଲା, ତା'ର ହିସାବ କେବଳ ମିସେସ୍ ଆଲସନ୍ ଦେଇପାରିବେ । କାରଣ ସେ ବିରଙ୍ଗ ଦେଖା ଗ୍ଭହିଁ ତାକୁଇ ଅନେଇ ରହିଥିଲେ । ଶେଷକୁ ସେ ଆଉ ପାରିଲେ ନାହିଁ । ସ୍ପଷ୍ଟବାଦୀ ଭଲ ପାଇବାର ନୂତନତମ ଦୃଷ୍ଟାନ୍ତ ଦେଖାଇଲେ । ତାଙ୍କ ହାତର ଗ୍ଭପକୁ ଆଉ ଟିକିଏ ବଢ଼େଇ ଦେଇ କହିଲେ—

"ଆଇ ଲଭ୍ ୟୁ ଚନ୍ଦନ୍ ! ବେଳେ ବେଳେ ମନେ ହୁଏ ତୁମକୁ ଏମିତି ଚିପି ଧରିବି ମୋ ଗ୍ଭତିରେ, ଯେ ତୁମେ ସେଥିରୁ ମୁକୁଳି ଯାଇ ପାରିବ ନାହିଁ । କେବେହେଲେ..."

ଚନ୍ଦନ ମିସେସ୍ ଆଲସନ୍‌ଙ୍କ ମୁହଁକୁ ଅନେଇଲା, ଏବଂ ହଠାତ୍ ଭୂତ ଦେଖିଲା ପରି ଚିତ୍କାର କରି ଉଠିଲା—

"ନା !!!"

ତା'ର 'ନାହିଁ' ପଦରେ କେବଳ ତିନିଗୁଣ ଦୃଢ଼ତା ନଥିଲା । ପିଲାଳିଆ ଆତଙ୍କ ମଧ୍ୟ ଥିଲା । ଏବଂ ଭର୍ତ୍ସନା ।

କାରଣ ତା'ର ମନେ ହେଲା ଯେ ଏଇ ସ୍ୱାଧୀନା ବିଦେଶିନୀ ନକଲ କରୁଛି ଆଉ ଜଣକୁ, ଏବଂ ତାହା ଘୋର ଅନ୍ୟାୟ । ପାପ ।

...ତୁମେ ତାଙ୍କ ସମବୟସୀ ହୋଇପାର । ବର୍ଣ୍ଣର ତାରତମ୍ୟ ସତ୍ତ୍ୱେ ତୁମ ଦେହର ଗଢ଼ଣ, ଆଖିନାକ ଆଦିର ସଳଖ ସୁନ୍ଦର ଠାଣି, ଏବଂ ଜୀବନ୍ତ ଜୀବନର ଆବେଗ ମଧ୍ୟ ପ୍ରାୟ ଏକ ପ୍ରକାର ହୋଇପାରେ । ତା' ବୋଲି ତୁମେ

ତାଙ୍କ ପର ହେବାକୁ ବସିଛ ! ଏତେ ଆସ୍ପର୍ଦ୍ଧା ! ମୋତେ ଦେହ ଦେଇ ସାର ମଧ—?

ତା'ଛଡ଼ା ସେ ତୁମ ପରି ସ୍ୱାଧୀନା ନୁହଁନ୍ତି କି ସୁଖୀ ନୁହଁନ୍ତି । କିନ୍ତୁ ସେଇ ହେଉଛି ତାଙ୍କ ଗୌରବ । ଯେମିତିକି ସେ ସଦାବେଳେ ତାଙ୍କ ପିଲାଙ୍କୁ ଚ୍ୟାଲେଞ୍ଜ୍ କରିବାକୁ ଚାହାନ୍ତି—ଦେଖିବା ତମେ କେମିତି ଖୁସି କରିବ ମୋତେ, ମୋର ଦୁଃଖକୁ ପୁଛେଇ ଦେଇ ପାରିବ ? ମଧ ଅଳ୍ପକରେ ଖୁସି ହୁଅନ୍ତି । ସେତେବେଳେ ନିଜକୁ ନିଧି ପାଇଲାପରି ଲାଗେ । କିନ୍ତୁ ଚ୍ୟାଲେଞ୍ଜ୍ ସରେ ନାହିଁ, କାହିଁକି ନା ତାଙ୍କ ଦୁଃଖର ସୀମା ନାହିଁ ।

ତାଙ୍କୁ ଭଲ ନ ପାଇ ରହି ହୁଏ ନାହିଁ । କିନ୍ତୁ ସେଇ ହେଉଛି ଯନ୍ତ୍ରଣା ।

କାରଣ ସେ ଭାରତମାତା । ତାଆର ପ୍ରତିଚ୍ଛବି । ମାଆ, ପତ୍ନୀ, ପ୍ରିୟା, ଭଗିନୀ, କନ୍ୟା ମିଶାମିଶି ଏକ ବିଚିତ୍ର ସମାବେଶ, ନାରୀ-ପ୍ରତିମୂର୍ତ୍ତି, ଯାହାର ବାହୁପାଶରୁ ମୁକ୍ତ ନହେଲେ ପୁଅ ମଣିଷ ହୋଇ ପାରିବ ନାହିଁ । ତା'ର ଶ୍ୱାସରୁଦ୍ଧ ହୋଇଯିବ । କିନ୍ତୁ ସେ ଆଗ ପିଲାଟାକୁ କୁଣ୍ଢେଇ ଧରିବ ତ ! ତା'ପରେ ସିନା ମୁକୁଳିବା କଥା ଉଠିବ ?

ତୁମେ କୁଣ୍ଢେଇବ ? ସତେ ! ନା ତୁମର ଏଇ ଆମେରିକା ? ଭଲ ପାଇବାର ସେଇ ଯେଉଁ ଯନ୍ତ୍ରଣା ତା' ତୁମେ କେଉଁଠୁ ବୁଝିବ ? ଦେଇ ପାରିବ ନା ନେଇ ପାରିବ ?

ତା'ର ଗୋଟାଏ ଅଦ୍ଭୁତ ଧାରଣା ହେଲା ସେଦିନ । ଯେ ଏଇ ଯେଉଁ ଯନ୍ତ୍ରଣା, ଇଏ ଏକ ଅତି ଉପଭୋଗ୍ୟ ତଥା ଆବଶ୍ୟକ ବସ୍ତୁ । ତେଣୁ ଏଥର ଛୁଟିରେ ଭାରତକୁ ଗଲେ ଲକ୍ଷ୍ମୀପୁର ଯିବାକୁ ପଡ଼ିବ । ମଞ୍ଜୁ ମାଈଁଙ୍କ ପାଖକୁ । ଯନ୍ତ୍ରଣାରୁ ଆକଣ୍ଠ ପିଇ ଆସିବା ପାଇଁ, ଯାହା ବେଶ୍ କିଛିଦିନ କାମ ଦେବ ବିଦେଶରେ, ଏଭଳି ନକଲି ନିୟମମାନଙ୍କୁ ଦବେଇ ରଖିବା ପାଇଁ ।

× × କିନ୍ତୁ ସେ ଗଲା ଅନେକ ଅନେକ ଦିନ ପରେ । ଯେତେବେଳେ ତା'ର ମନେ ହେଲା ଯେ ଏଥର ନ ଗଲେ ଚଳିବ ନାହିଁ । କାରଣ ଏଇ ଯେଉଁ ନୂଆ ଜର୍ମାନ୍—ଆମେରିକା ଝିଅ, ତା' ନାଆଁ ଷ୍ଟେଲା, ତାର ଅଦଉତି ସବୁଠୁଁ ବେଶୀ । ବେଳେବେଳେ ଏମିତି ବି ମନକୁ ଆସୁଛି ଯେ ତାକୁ ବାହା ହୋଇ ପଡ଼ିଲେ ଯାଏ । ହେଲେ ସେତେବେଳକୁ ମଞ୍ଜୁ ମାଈଁ ପରିଣତ ଓ ପୋଖତ ଗୃହିଣୀ ପରି ଦେଖାଗଲେଣି । ଭଗ୍ନଶୂନ୍ୟା ଭୁବନଶୂନ୍ୟା ପତ୍ନୀ ଓ ତେରବର୍ଷିଆ ପୁଅର ମାଆ । ତେଣୁ ଭାରତମାତାଙ୍କ ଲକ୍ଷଣ ଟିକିଏ ହେଲେ ଦିଶୁନାହିଁ ତାଙ୍କ ଚେହେରାରେ କି ଚରିତ୍ରରେ । ଅଗତ୍ୟା ସେ ଷ୍ଟେଲାକୁ ଯଥାଶୀଘ୍ର ବାହା ହୋଇ ପଡ଼ିଲା, ବିଦେଶକୁ ଫେରି ଆସିଲା ପରେ । ଏବଂ ସୁଖୀ କଲା । ଯନ୍ତ୍ରଣା ଧୀରେ ଧୀରେ ଉଭେଇଗଲା ।

# ଯନ୍ତ୍ରଣା

'ଯନ୍ତ୍ରଣା ଧୀରେ ଧୀରେ ଉଭେଇଗଲା' । ଗପର ଏଇ ଶେଷ ଧାଡ଼ିଟିରେ ଲେଖକ ମହାଶୟ ଚନ୍ଦନ ରାଉତର ଦେଶ-ପ୍ରେମଜନିତ ଯନ୍ତ୍ରଣାକୁ ଉପହାସ କରିଛନ୍ତି ବୋଲି ମନେ ହୁଏ । ସତେକି ସେ କହିବାକୁ ଚାହାଁନ୍ତି ଯେ ସେଇ ଯନ୍ତ୍ରଣାଟା ଏମିତି କିଛି ଗମ୍ଭୀର ନଥିଲା ମ ! ନହେଲେ କ'ଣ ସିଏ ଉଭେଇ ଯାଇ ପାରିଥାଆନ୍ତା ?

ମୁଁ ମାନୁଛି ଯେ ଏଇ ପ୍ରଚ୍ଛନ୍ନ ବିଦ୍ରୂପଟିକୁ ମୁଁ ବୋଧହୁଏ ଯୋଡ଼ି ଦେଇଛି ଶେଷକୁ । ଯାହାହେଉ ପ୍ରଶ୍ନ ଉଠିପାରେ ଯେ ଏହା କ'ଣ ପୂରାପୂରି ସତ ବୋଲି ଧରିନେବା ଉଚିତ ? ଅର୍ଥାତ୍ ପ୍ରେମର ଏଇ ଯେଉଁ ଯନ୍ତ୍ରଣା, ଦୁଃଖିନୀ ଭାରତମାତା (ସାକ୍ଷାତ୍ ମନ୍ତ୍ରୀମାନଙ୍କ)ଙ୍କ ଆଶ୍ଳେଷ, ଯାହା ତୁମ ଅନୁଭୂତିର ଅମୂଲ୍ୟ ଧନ କହିବାକୁ ଗଲେ ଚେର ମାଡ଼ିଛି ତୁମ ଅବଚେତନରେ, ସେଉଟି ଉଭେଇ ଯିବ କେମିତି ? ନା । ସେଇ ଚେତନା ଅବଶ୍ୟ ଗୁରୁଗୁରୁ ହେବ ତୁମ ମନରେ, ଥରକୁ ଥର । ଏବଂ ତୁମେ ଥରକୁ ଥର ମୁହଁ ମାରି ଆସିବ ସ୍ୱଦେଶରୁ, ସେଇ ଅନୁଭବକୁ ବଞ୍ଚେଇ ରଖିବା ଲାଗି । ଚନ୍ଦନ ରାଉତ ଜଣେ କହିଲି ପରି— ଏଇ ଯେଉଁ ଯନ୍ତ୍ରଣା, ଇଏ ଏକ ଅତି ଉପଭୋଗ୍ୟ, ତଥା ଆବଶ୍ୟକ ବସ୍ତୁ ! ଅତଏବ କୁହାଯାଇପାରେ ଯେ ମୁଁ ଜାଣିଶୁଣି ଅନ୍ୟାୟ କରିଛି ଚନ୍ଦନ ରାଉତ ପ୍ରତି । ଗୋଟାଏ ଅର୍ଦ୍ଧସତ୍ୟ ଲଦି ଦେଇଛି ତା' ଉପରେ । ଯେ ଏଇ ଯନ୍ତ୍ରଣା ଯେତେ ଉପଭୋଗ୍ୟ କି ଆବଶ୍ୟକ ହେଉ ପଛେ, ତା ଶେଷକୁ ଏଇଠି ପାର କରି ରହିବୁ । ମୁଁ ଜାଣେ ସେକଥା । ଏମିତି ହୁଏ । ଏବଂ ଅଧିକରୁ ଅଧିକ ହେଉଛି ଆଜିର ମଧ୍ୟବିତ୍ତ ସମାଜରେ, ସ୍ୱାଧୀନତାର ପଚିଶ ବର୍ଷ ପରେ ।

ସତେକି ଚନ୍ଦନ ଗୁପ୍ତ ଟୋକାଟା ମୋର ପୁଅ କି ନାତି, ଏବଂ ମୁଁ ତା'ର ଭାବଗତ ଦ୍ୱନ୍ଦ୍ୱକୁ ଯେତେ ସମ୍ମାନ ଦେଲେ ମଧ୍ୟ, ଲେଖକ ହିସାବରେ ତା'ର ଯନ୍ତ୍ରଣାକୁ ଯେତେ ସୁନ୍ଦର କରି ଗଢ଼ି ତୋଳିଲେ ମଧ୍ୟ ମୁଁ ତା'କୁ କ୍ଷମା କରିପାରୁ ନାହିଁ ଯେ ଶେଷକୁ ସେ ରହିଗଲା ସେଠି । ତା'ମାନେ ସେ ଯନ୍ତ୍ରଣାଟା ଉପରଠାଉରିଆ ନଥିଲା ତ ଆଉ କଅଣ ? ଏଇଆ ବୋଧହୁଏ ମୁଁ କହିବାକୁ ଚାହିଁଲି ଟୋକାଟାକୁ, ବାପ କି ଅଜାସୁଲଭ ଦୁଃଖରେ ଅଭିଭୂତ ହୋଇ ।

ହୋଇଥିବ । ବ୍ୟକ୍ତିଗତ ଦୁଃଖର ଛାଇ ହୁଏତ ପଡ଼ିଥିବ ଏଇ ଗପରେ । ମୋର ଗୋଟିଏ ବିଦୁଷୀ ଓ ବୁଦ୍ଧିମତୀ ଝିଅ କ୍ୟାନେଡ଼ାରେ ଘର କରି ରହିଲାଣି ଅନେକ ଦିନୁ । ଏବଂ ମୋର ଯୋଡ଼ିଏ ନାତି (ଆଉ ଗୋଟିଏ ଝିଅର ପୁଅ ଦି'ଜଣ) ଆମେରିକାରେ ଉଚ୍ଚଶିକ୍ଷା ହାସଲ କରିସାରିଲା ପରେ ସେଇଠି ଚାକିରି-ବାକିରି କରି ରହିଯିବେ କି କଅଣ ବୋଲି ମନେ ହେଉଛି । ମୁଁ ମୋର ସ୍ନେହାଶୀର୍ବାଦରେ ଊଣା କରି ନାହିଁ ତାଙ୍କୁ । ତମର ମନସ୍କାମନା ପୂର୍ଣ୍ଣ ହେଉ, ସର୍ବାଙ୍ଗୀନ ସଫଳତାର ଅଧିକାରୀ ହୁଅ ବୋଲି ପ୍ରାର୍ଥନା କରିଛି ତାଙ୍କ ପାଇଁ । କିନ୍ତୁ ତା' ବୋଲି କ'ଣ ମନରେ ଦୁଃଖ ଆସିବ ନାହିଁ ଯେ ସେମାନେ ଛାଡ଼ି ହୋଇଗଲେ ମୋଠୁଁ, ମାନେ ଉତ୍ପାଟିତ ହୋଇଗଲେ ମୋ ଦେଶରୁ, ଆମର ଏଇ ଜନ୍ମମାଟିରୁ ? ଯେତେ କୁହ, ଚନ୍ଦନ ମନରେ ଆସୁଥିବା ଯନ୍ତ୍ରଣା ତିଷ୍ଠି ରହୁ କି ଉଭେଇ ଯାଉ, ତା'ର ଯେଉଁ ପିଲାମାନେ ଜନ୍ମ ହେବେ ବିଦେଶ ଭୂଇଁରେ, ତାଙ୍କ ମନରେ କୋଉ ଯନ୍ତ୍ରଣା ଆସିବ କି କେବେ ହେଲେ ?

ଛାଡ଼ନ୍ତୁ ! ମୋର ଏଇ ବ୍ୟକ୍ତିଗତ ଦୁଃଖ ହୁଏତ କିଛି ଦୋଷ କରି ପାରିଥାଏ ଗପଟିର ସାର୍ଥକତା ଦିଗରେ, ଯାହା ଦୁର୍ଭାଗ୍ୟଜନକ । କିନ୍ତୁ ମୋର ମନେହୁଏ ଯେ ଏଇ ଦୁଃଖ କେବଳ ମୋର ନୁହେ । ଓଡ଼ିଶା ତଥା ଭାରତରେ ଥିବା ଅନେକ ମଧ୍ୟବିତ୍ତ ବାପଅଜାଙ୍କର, ଯେଉଁମାନଙ୍କ କୃତୀ ଏବଂ ଉଚ୍ଚାଭିଳାଷୀ ସନ୍ତାନମାନେ ପଳେଇ ଯିବାକୁ ଚାହାଁନ୍ତି ସେଇ ବିଦେଶକୁ, ତଦ୍ଦ୍ୱାରା କେଉଁ 'ଯନ୍ତ୍ରଣା' ଆସୁ ବା ନଆସୁ ତାଙ୍କ ମନରେ । ତେଣୁ ଭାବିବା କଥା ଯେ ସାମଗ୍ରିକ ଦୃଷ୍ଟିରୁ

ସେମାନେ 'ଦୁଃଖିନୀ' ଭାରତମାତା ପ୍ରତି କିଛି ଅନ୍ୟାୟ କରୁଛନ୍ତି କି ? ଅର୍ଥାତ୍ ଏଭଳି କିଛି କାମ କରୁଛନ୍ତି କି ଯେଉଁଥିରେ ତାଙ୍କ ବ୍ୟକ୍ତିଗତ ଉନ୍ନତିର ନ୍ୟାଯ୍ୟ ସ୍ୱାର୍ଥ ଖାପ୍ ଖାଉ ନାହିଁ ଦେଶର ବୃହତ୍ତର ସ୍ୱାର୍ଥ ସାଙ୍ଗରେ ? ଏଇ କେତୋଟି କଥା ମନକୁ ଆସେ ପ୍ରଶ୍ନର ବିଚାର କଲା ବେଳେ :

—ପଳାୟନକୁ ଅନ୍ୟ ଅର୍ଥରେ ସମ୍ପ୍ରସାରଣ ବୋଲି କହିଲେ କ'ଣ ଭୁଲ୍ ହେବ ? ପୂର୍ବେ ଓଡ଼ିଆ ପୁଅଝିଅମାନେ କ୍ୱଚିତ୍ ଓଡ଼ିଶା ବାହାରକୁ ଯାଉଥିଲେ, ବୃତ୍ତି ବ୍ୟବସାୟ କିମ୍ବା ଅନ୍ୟ କୌଣସି ଉଦ୍ଦେଶ୍ୟରେ । ତାହା ପାରିବାରିକ ଗୃପ ଯୋଗୁଁ ହେଉ, ବା ପାରମ୍ପରିକ ସୃଷ୍ଟି ବାଧା ମନୋଭାବ ହେତୁ । ତଦ୍ଦ୍ୱାରା ଓଡ଼ିଶା ବିଭିନ୍ନ କ୍ଷେତ୍ରରେ ଅନେକ ପଛରେ ପଡ଼ିଯାଇ ନଥିଲା କି ଭାରତର ଅନ୍ୟ ରାଜ୍ୟମାନଙ୍କ ତୁଳନାରେ ? କିନ୍ତୁ ଏବେ ସେଇ 'ଘରଛଡ଼ା' ପୁଅଝିଅମାନଙ୍କ କୃତିତ୍ୱ ଯୋଗୁଁ ଓଡ଼ିଶାର ମାନ ଯଥେଷ୍ଟ ବଢ଼ି ଯାଇନାହିଁ କି ସର୍ବଭାରତୀୟ ସ୍ତରରେ ? ଏବଂ ବର୍ତ୍ତମାନ ଯଦି ଯାତାୟାତର ଅଧିକ ସୁବିଧା, ଆର୍ଥିକ ସ୍ୱଚ୍ଛଳତା, ଇତ୍ୟାଦି ବିଭିନ୍ନ କାରଣରୁ ସେହିପ୍ରକାର ମନୋବୃତ୍ତି ଆକ୍ରାନ୍ତ କରୁଛି ଆମ ପିଲାମାନଙ୍କୁ, ଓଡ଼ିଶାର ତଥା ଅନ୍ୟ ଯେକୌଣସି ପ୍ରାନ୍ତର ପିଲାମାନଙ୍କୁ, ଭାରତ ବାହାରକୁ ଉଡ଼ି ପଳେଇଯିବା ପାଇଁ, ସେଥିରେ ଭାରତକୁ ଅଧିକ ଲାଭ ନୁହେଁ କି ? କିନ୍ତୁ ତା' ପରେ ବାପଅଜାମାନେ ପଚାରିପାରନ୍ତି—ବେଶ୍, ଉଡ଼ିଗଲିପଲି ଠିକ୍ ଅଛି, କିନ୍ତୁ ସେଠି କ'ଣ ଘର କରି ରହିବା ଦରକାର ? ତା' ଉତ୍ତରରେ, ବୋଧହୁଏ ଚନ୍ଦନ ରାଉତ କହିବ ତା' ଯନ୍ତ୍ରଣାରୁ ଉଦ୍ଧାର ପାଇଲା ପରେ—ଆଜ୍ଞା, କ'ଣ କ୍ଷତି ଅଛି ସେଥିରେ ? ସେଥିରେ ଯଦି ମୋ ଭବିଷ୍ୟତ ଅଧିକ ଉଜ୍ଜ୍ୱଳ ହୋଇ ଉଠିଲା, ଏବଂ ମୋର ବିଦେଶୀ ମୁଦ୍ରା ଯୋଗୁଁ ଭାରତର ଅର୍ଥନୈତିକ ପ୍ରଗତିକୁ ଆହୁରି ବଳ ମିଳିଲା, ଯାହା ଭାରତ ସରକାର ଚାହାଁନ୍ତି, ତା'ହେଲେ ଦୁଃଖ କେଉଁଠି ?

—ଏହି ପରିପ୍ରେକ୍ଷୀରେ ଗୋଟାଏ ଐତିହାସିକ ତଥ୍ୟ ମଧ୍ୟ ପ୍ରଣିଧାନଯୋଗ୍ୟ । ପଳେଇ ଯାଇ କେଉଁ ନୂଆ ଦୁନିଆଁରେ ଘର କରିବାର ଆଡ୍‌ଭେଞ୍ଚର୍ ତଥା ଉଚ୍ଚାଭିଳାଷକୁ ନେଇ ତ କ୍ୟାନେଡ଼ା, ଯୁକ୍ତରାଷ୍ଟ୍ର ଏବଂ ଅଷ୍ଟ୍ରେଲିଆ

ଆଦି ସମୃଦ୍ଧ ଦେଶ ମହାଦେଶ ସ୍ଥାପିତ ହୋଇ ପାରନ୍ତି । ବିଶେଷତଃ ଆମେ ଯେଉଁ ଖୁନ୍ଦି ହୋଇ ରହିଛୁ ଆମ ଦେଶରେ ଏବଂ ଅଧିକରୁ ଅଧିକ ଚାପ ପକାଉଛୁ ଦେଶର ସୀମିତ ସମ୍ବଳ ଉପରେ, ସେଇ ଚାପକୁ ଯେତେ ହାଲୁକା କରିହେବ ସେତେ ଭଲ ନୁହେଁ କି ସମସ୍ତଙ୍କ ପାଇଁ ?

—ତା'ଛଡ଼ା ଚନ୍ଦନ ଯେଉଁ କଥାଗୁଡ଼ା କହିଗଲା ଭାରତର ଶ୍ରେଣୀବିଭେଦ, ସାମନ୍ତବାଦ, ରକ୍ଷଣଶୀଳତା, ତଥା ଦୁର୍ନୀତି ବିଷୟରେ ସେଥିରେ କ'ଣ କିଛି ସତ୍ୟତା ନାହିଁ ? ଏବଂ ଯଦି ଏଇ ପିଲାମାନଙ୍କ 'ବିଦ୍ରୋହ' ଯୋଗୁଁ, ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ, ଆମର ଚେତା ପଶିଲା ଯେ ଆମର ଆଉ ଟିକିଏ ଭଲ ହେବା ଦରକାର, ମଥା ଉଞ୍ଚ କରି ବସିବା ଲାଗି ବିଶ୍ୱ-ଦରବାରରେ, ତାହା କ'ଣ ବରଣୀୟ ନୁହେଁ ?

ସେଉଁ ଆଡ଼ୁ ଦେଖ, ଆମ ସନ୍ତାନମାନେ ଯେତେ ବାହାରକୁ ଯିବେ, ଏବଂ ହୁଏତ ସେଠି ରହିଯିବେ, ଆପଣା ବିଦ୍ୟାବୁଦ୍ଧିକୁ ଉଚିତ ଭାବରେ ଶାଣିତ, ପରିବର୍ଦ୍ଧିତ, ଏବଂ ପ୍ରୟୋଗ କରିବା ସହ, ସେତେ ଭଲ ବୋଲି ମୁଁ କହିବି । ସେଥିରେ ଦୁଇ କୂଳକୁ ହିତ ।

କିନ୍ତୁ ଦୁଃଖିନୀର ଦୁଃଖ ଅତିରଞ୍ଜିତ ନୁହେଁ, ଏବଂ ତା'ର ଆଶ୍ଳେଷରୁ ପଳେଇ ଆସିବାର ଯନ୍ତ୍ରଣା ମଧ୍ୟ ପିଲାକଥା ନୁହେଁ । ତେଣୁ ଆମ ଚନ୍ଦନ ଗୋଉତମାନେ ତାକୁ ଯଥାସମ୍ଭବ ସୁଖୀ କରିବାକୁ ଚାହିଁବେ, ବାହାର ଦୁନିଆଁରୁ ପାଇଥିବା ଅଧିକା ଲାଭରୁ କିଛି ଧରାଇଦେଲେ ପରି ତା' ହାତରେ, ଏହାହିଁ ଆଶା କରିବା କଥା । ଏବଂ କାଳକ୍ରମେ ପ୍ରତ୍ୟେକ ଯନ୍ତ୍ରଣାର ଅବସାନ ହେବା ସ୍ୱାଭାବିକ, ଏହି ସରଳ ସତ୍ୟକୁ ଅସ୍ୱୀକାର କରିବ କାହିଁକି ?



# ନିମ୍ବଫଳ

ନିମ୍ବଫଳ ଝୁଲୁଛି ପେଣ୍ଡି ପେଣ୍ଡି ହୋଇ । ହେଲେ ଗଛଟା ଝିବାକ୍ ଥୁଣ୍ଟା ଓ ଲଙ୍ଗଳା ! ଏଭଳି ଦୃଶ୍ୟ କମ୍ବା ଅପଦୃଶ୍ୟ ଅବଶ୍ୟ ଆଖିରେ ପଡ଼ିବ । ମୁଁ ମାନୁଛି । ତା' ବୋଲି କ'ଣ ତା' ଆଡ଼କୁ ଏତେ ସମୟ ଅନେଇ ରହିବା ଦରକାର ? ···ଅରୁନ୍ଧତୀ ବ୍ୟସ୍ତ ହୋଇ ଉଠିଲି ମନୁଭାଇଙ୍କ ଅନ୍ୟମନସ୍କତା ଦେଖି । ଭାବିଲି ସେ ବୋଧହୁଏ ତା' କଥାକୁ ମନ ଦେଇ ଶୁଣୁ ନାହାଁନ୍ତି । ···କିନ୍ତୁ ଇଏ ଏଣୁ ତେଣୁ ମାମୁଲି କଥା ନୁହେଁ । ଅର୍ବାଚୀନା ସାନ ଭଉଣୀର ଅଭିଯୋଗ ନୁହେଁ କି ଅଭିମାନ ନୁହେଁ (ସେମିତି କଥାକୁ ମୁଁ କୋଉ ତମ ନିଜ ଭଉଣୀ ହୋଇଛି ?), କେବଳ ଗୋଟାଏ ଦୁଃଖର ନିବେଦନ । ଏବଂ ଏମିତିକା ଦୁଃଖ ଯେ ଭାଇବନ୍ଧୁ କୁଟୁମ୍ବଙ୍କୁ କହି ହେବ ନାହିଁ । ବିଶେଷତଃ ଯେ ମୋର ସବୁଠାରୁ ବେଶୀ ନିଜର ହେବାକୁ ଯାଉଛି, ତାକୁ ତ ମୋଟେ ନୁହେଁ । କାରଣ ଆମ ରଜତବାବୁ ଗୋଟିଏ ସୃଷ୍ଟିଛଡ଼ା ଲୋକ । ତାଙ୍କ ପାଇଁ ପୃଥିବୀରେ କେହି ମନ୍ଦ ଲୋକ ନାହାଁନ୍ତି । ଅନ୍ତତଃ କେହି ଜାଣିଶୁଣି ମନ୍ଦ ହୁଅନ୍ତି ନାହିଁ । ତେଣୁ ନିରଞ୍ଜନ ଦା' ମୋ ମନରେ କଷ୍ଟ ଦେବା ଉଦ୍ଦେଶ୍ୟରେ ଏମିତି କହିଥିବେ, ଏକଥା ସେ କେବେହେଲେ ବିଶ୍ୱାସ କରିବେ ନାହିଁ । କିନ୍ତୁ ତମେ ବୁଝିପାରିଥାଆନ୍ତି ମନୁଭାଇ । ତମେ ବୟସରେ ବଡ଼, ତମ ଅଭିଜ୍ଞତା କାହିଁରେ କଅଣ । ଏବଂ ତମ ବିଦ୍ୟାବୁଦ୍ଧି । ସେଇଲାଗି ମୁଁ ଚାହୁଁଥିଲି ଶୁଣିବାକୁ ତମଠୁ । ଭାବିଲି ତମେହିଁ ମୋ ପ୍ରଶ୍ନର ଠିକଣା ଉତ୍ତର ଦେଇ ପାରିବ । ଯେ—

କାହିଁକି, କେମିତି, ସେ ଏତେ ନିଷ୍ଠୁର ହୋଇପାରିଲେ ?

ସେ ମୋତେ ଭଲ ପାଆନ୍ତି ବୋଲି କହି ହୁଅନ୍ତି । ଏଣେ ରଜତକୁ ବି ପ୍ରଶଂସା କରନ୍ତି କାହିଁରେ କଅଣ । ଖାଲି ରାଜଧାନୀର ଜଣେ ସଫଳ ଓଡ଼ିଆ ଡାକ୍ତର ବୋଲି ନୁହେଁ, ତା'ର ସ୍ୱଭାବ ଚରିତ୍ରକୁ ନେଇ । କେମିତି ସେ ବିନା ଦ୍ୱିଧାରେ ତାଙ୍କ ରୋଗୀମାନଙ୍କୁ ସାହାଯ୍ୟ କରି ଆସିଛି । ତା'ହେଲେ ମୁଁ ଯଦି ଡାକ୍ତର ରଜତ ପାଣିକୁ ବାହା ହୋଇ ତା' ସାଙ୍ଗରେ ଘର କରିବାକୁ ଚାହିଁଲି, ତା' ପିଲାର ମାଆ ହେବାକୁ ମନ ବଳେଇଲି, ଓ ସେଇ ଇଚ୍ଛାକୁ ଷୋଳଅଣା ପୂରଣ କରିବା ପାଇଁ ମୋର ଲେପାଛଡ଼ା କ୍ୟାରିଅର୍‌କୁ ବର୍ଜନ କଲି, ମୁଁ କ'ଣ ଏଡେବଡ଼ ଦୋଷ କରି ପକେଇଲି ?

ଗୋଟାଏ ଅକ୍ଷମଣୀୟ ପାପ କଲା ପରି, ଯେଉଁଥିପାଇଁ ମୋତେ ଏମିତ ହାଡ଼ଜଳା କଥା କହିବେ ? ନାଆଁଟି ଜୋକ୍, ଚତୁର-ମଧୁର ଟିପ୍‌ପଣୀ, ମୁରୁକିହସା, ମୁନିଆଁ ଚାହାଣି ଇତ୍ୟାଦି, କିନ୍ତୁ ତା'ର ମତଲବ କଅଣ ? କାହିଁକି ଏ ଖୁଞ୍ଚା ? କାହିଁକି ?? ହଁ, ସେ ଯଦି ରଜତକୁ ଭଲ ପାଉଥାଆନ୍ତେ, ଯଦିଓ ତାକୁ ବିକୃତ ପ୍ରେମ ବୋଲି କୁହାଯିବ କାରଣ ସେ ଆସି ଦରବୁଢ଼ୀ ହେଲେଣି ଆଉ ରଜତ ପ୍ରାୟ ମୋ ବୟସର, ତା ହେଲେ ମୁଁ ଜାଣନ୍ତି । କିନ୍ତୁ ତା' ମଧ୍ୟ ନୁହେଁ । ସେ ବିଷୟରେ ମୁଁ ନିଃସନ୍ଦେହ । ତଥାପି ସେ ମୋତେ କାହିଁକି—?

ପ୍ରେମ କ'ଣ ଖାଲି ସିନେମା ଉପନ୍ୟାସର ବସ୍ତୁ ନା କେଦାରଗୌରୀ ଲଇଲାମଜନୁ ଆଦି ହତଭାଗା ହିରୋ-ହିରୋଇନ୍‌ଙ୍କ ନିଜସ୍ୱ, ଯେ ତାକୁ ସତସତିକା ପାଇ ହେବ ନାହିଁ ? ଅଙ୍ଗେ ନିଭେଇ ହେବ ନାହିଁ ଆମର ଏଇ ନିତିଦିନିଆ ସମାଜରେ ? କାହିଁକି ମୁଁ ଭାବିବ ନାହିଁ ଯେ ପ୍ରକୃତରେ ପ୍ରେମହିଁ ଜୀବନର ସାର, ପ୍ରେମହିଁ ସବୁ, ମୋ ରଜତ ହିଁ ମୋର ସବୁ, ଓ ଯେକୌଣସି ବଳିଦାନ ବଡ଼ ନୁହେଁ ତା' ଆଗରେ ?

ଲଭ୍ ମାନେ ହିଁ କ'ଣ ହିନ୍ଦୀ ଫିଲ୍ମ ? ଲଭ୍ ମାନେ ହିଁ ହାସ୍ୟାସ୍ପଦ ?

ଅରୁନ୍ଧତୀ ଏହି ମର୍ମରେ ତା' ଦୁଃଖକୁ ଅଜାଡ଼ି ଦେଉଥିଲି ମନୁଭାଇଙ୍କ ପାଖରେ । ଯଦିଓ ଭାବକୁ ଭାଷା କୁଲଉ ନଥାଏ ସବୁବେଳେ, ତେଣୁ ସେ ଥଙ୍ଗଥଙ୍ଗ ହେଉଥାଏ, ବାକ୍ୟକୁ ଅଧାରୁ ଛାଡ଼ି ଦେଉଥାଏ, ଓ ବାରମ୍ବାର କହୁଥାଏ, "ୟୁ ନୋ ହ୍ୱାଟ୍ ଆଇ ମିନ୍ ।" ତେବେ ପ୍ରେମ ତରଫରୁ ଶେଷୋକ୍ତ ଦାବି କଲା ବେଳେ ସେ ତା'ର ସ୍ୱରକୁ ବେଶ୍ ଉଠେଇଥିଲା ନାଟକୀୟ ଭଙ୍ଗୀରେ । ସେହେତୁ ମନମୋହନ-ବାବୁ ତାକୁ ନଶୁଣି ରହି ପାରିଲେ ନାହିଁ, ଏବଂ ଫେରି ଆସିଲେ ନିମ୍ବଫଳର ଦୃଶ୍ୟରୁ । ସ୍ନେହବୋଳା ହସଟିଏ ହସିଲେ ଅରୁ ଆଡ଼କୁ ଚାହିଁ । ଏବଂ କହିଲେ— "ନା, ମୋଟେ ନୁହେଁ ।" ଅର୍ଥାତ୍ ଲଭ୍ ମାନେ ହିଁ ହିନ୍ଦୀ ଫିଲ୍ମ କିମ୍ବା ହାସ୍ୟାସ୍ପଦ ତା' ନୁହେଁ । ସେଭଳି ଉକ୍ତି କଦାପି ଗ୍ରହଣୀୟ ନୁହେଁ ତଥ୍ୟ ହିସାବରେ । କିନ୍ତୁ କିଏ କାହିଁକି ଅରୁକୁ ରଗେଇଲା ଏମିତ ? ସିଏ କ'ଣ ଜାଣେ ନାହିଁ ଯେ ଅରୁ ଯେତେହେଲେ ଅରୁ ? ଖାଲି ଝିଅଟିଏ ବୋଲି ନୁହେଁ । ନିହାତ କୋମଳମତି । ନିହାତ ରୋମାଣ୍ଟିକ୍ । ଯେତେ ପାଠଶାଠ ପଢ଼ି ଜର୍ଣ୍ଣାଲିଷ୍ଟ ହେଲେ କ'ଣ ହେବ ? ମନମୋହନବାବୁଙ୍କ ହୃଦୟ ପରମ ସହାନୁଭୂତିରେ ଭରିଗଲା । ତାଙ୍କର ଏଇ ଦୂରସମ୍ପର୍କୀୟା, ହେଲେ ଆଦରଣୀୟା ସାନ ଭଉଣୀ ପାଇଁ । କିନ୍ତୁ ସେ ତାଙ୍କ ଆଶ୍ୱାସନାକୁ ବାଢ଼ିଇ ପାରିଲେ ନାହିଁ । କାରଣ ସେ କଥାଟା ପୂରାପୂରି ଧରି ପାରି ନଥିଲେ । ବିଶେଷତଃ ଯେଉଁ ଚରିତ୍ରବିଶେଷ ଝିଅଟାର ମନରେ ଏଭଳି କଷ୍ଟ ଆଣି ଦେଲା ସେ ତା' ନାଆଁ ଶୁଣିପାରି ନଥିଲେ । ଯାହାହେଉ ସେ ଆଶା କଲେ ଯେ

ଅରୁ ପୁଣି ଆଉ କିଛି କହିବ, ଯେଉଁଥିରେ ବିଷୟବସ୍ତୁ ପରିଷ୍କାର ହୋଇଯିବ, ଏବଂ ସେ ତାଙ୍କ ଆଶ୍ୱାସନାକୁ ନାଆଁ ଗାଆଁ ଦେଇ ଶାଣିତ କରିପାରିବେ ।

ପ୍ରକୃତରେ ମନମୋହନ ବାବୁ ଉତ୍ତରରୁ ଅଧିକ ସମୟ ଅଟକି ଯାଉଥିଲେ ନିସ୍ଫଳ ଠାରେ । ଦୃଶ୍ୟର ବୈଷମ୍ୟ ତାଙ୍କୁ ସହଜେ ଆକୃଷ୍ଟ କଲା । କିନ୍ତୁ ସେ ଏତେ ସମୟ ଯାଏଁ ସେଥିରେ ଅଟକି ରହିଲେ, ତା'ର କାରଣ ସେ ମଝିରେ ମଝିରେ ଏମିତି ଭାବି ବସିବାକୁ ଭଲ ପାଆନ୍ତି । ପରିପାର୍ଶ୍ୱରୁ ବିଚ୍ୟୁତ ହୋଇଯାଇ । ମଣିଷସଂସାର ହେଉ ବା ପ୍ରକୃତି, ତା'ର କିଛି ଗୋଟାଏ ନୂଆ ରୂପ ଦେଖିଲେ ସେ ତାର ଅର୍ଥ ଖୋଜିବାରେ ଲାଗିପଡ଼ନ୍ତି । ସତେକି ଇଏ ଗୋଟିଏ ଛୋଟିଆ ମୋଟିଆ ଚ୍ୟାଲେଞ୍ଜ୍ ତାଙ୍କ ପାଇଁ, ତାଙ୍କ ଭାବୁକତାକୁ ପରଖିବା ପାଇଁ । ହେଲେ ତାଙ୍କର ଦୁଃଖ ଯେ କେହି କେବେ ତାଙ୍କ ଭାବୁକତାକୁ ଚିହ୍ନି ପାରି ନାହାଁନ୍ତି, ତା'ର ମର୍ଯ୍ୟାଦା ଦେବା ଦୂରର କଥା ।

···ଯଥା ଏଇ ଥୁଣ୍ଟା ଗଛରୁ ପେଣ୍ଡି ପେଣ୍ଡି ହୋଇ ଝୁଲୁଥିବା ଫଳ । ପୁଣି ନିମ୍ବଫଳ । ଇଏ ମୋତେ କ'ଣ କହିବାକୁ ଚାହେଁ ? ଗଛଗଣ୍ଡିକ ଯେତେ ବୁଢ଼ାହାଡ଼ା ମଲାଗଲା ହେଲେ ମଧ୍ୟ ସେ ତା'ର ଦେଇଯାଇଛି ଯାହା ଦେବାର କଥା ଭବିଷ୍ୟତକୁ, ଏହାହିଁ ତା'ର ସାଧାରଣ ଅର୍ଥ ହୋଇପାରେ । କିନ୍ତୁ ମୁଁ ସେତିକିରେ ସନ୍ତୁଷ୍ଟ ନୁହେଁ । ମୋତେ ସେ କହୁଛି ଯେ ବାବୁ, ସଂସାରଟା ଆବ୍‌ସର୍ଡ୍ କି ପିତା ବୋଲି କହିଦେଲେ ଲାଭ ନାହିଁ । ତାକୁ ଏଇଭଳି ସଜେଇ ଦିଅ ପୁଞ୍ଜି ପୁଞ୍ଜି କରି ଓ ଛାଡ଼ିଯାଅ ଅନ୍ୟମାନଙ୍କ ଆଖିରେ ପଡ଼ିଲା ପରି । ଉଁଃ ! ମୁଁ ଖାଲି ଭାବୁକ ହୋଇ ରହିଗଲି । ଲେଖକ, ଚିତ୍ରକର, କି ଯେକୌଣସି ଧରଣର ଶିଳ୍ପୀ ହୋଇ ପାରିଲି ନାହିଁ । ତା'ହେଲେ ମୁଁ ରୂପ ଦେଇ ପାରିଥାଆନ୍ତି ମୋ ଭାବନାକୁ, ଓ ସେମାନେ ତାକୁ ଦେଖି ଅଟକି ଯାଉଥାଆନ୍ତେ । ଏବଂ କହୁଥାଆନ୍ତେ—ଆଃ ! କେଡ଼େ ସୁନ୍ଦର ! ପିତା ହେଲେ ବି ତାକୁ ସୁନ୍ଦର ବୋଲି ମଣୁଥାଆନ୍ତେ ଓ ସେଇଥିରେ ମୋର ଅନନ୍ୟ କୃତିତ୍ୱ ଫୁଟି ଉଠନ୍ତା । ଅବଶ୍ୟ ମୁଁ ତାକୁ ଭାଷାରେ କହିପାରିବି । କିନ୍ତୁ କାହା ଆଗରେ ? କେଇଜଣ ସମଦର୍ଶୀ ଭାବୁକବନ୍ଧୁ ଅଛନ୍ତି ମୋ ସଂସାରରେ, ଯେ ମୋ ଭାବନାର ମୂଲ୍ୟ ଦେଇ ପାରିବେ, ତା'ର ରୂପକଳ୍ପକୁ ବୁଝିସମଝି ମୋତେ ବାହାବା କରି ପାରିବେ ? ···ସେଇଠୁଁ ତାଙ୍କ ମନରେ ଆସିଲା ଯେ ବନ୍ଧୁ କଥା ଛାଡ଼ ଏଇ ଯେଉଁ ଲୋକଟି ତାଙ୍କ ପାଖରେ ବସିଛି ଏଇକ୍ଷଣି, ସେ ଏଭଳି ଗୋଟିଏ ପ୍ରାଣୀ, ଏତେ ସାନ, ଏତେ କଞ୍ଚା, ଯେ ତା' ଆଗରେ କହିଲେ ସେ ଭାବିବ ଯେ ମନୁଭାଇ ପୂରାପୂରି ବୁଢ଼ା ହୋଇ ଗଲେଣି ! ତାଙ୍କ ମୁଣ୍ଡ ବାଉଳା ଧରିଲାଣି । ଆପଣା ଦୁରବସ୍ଥାକୁ କଳ୍ପନା କରି ସେ ସ୍ୱଗତ ହସିବାକୁ ଯାଉଥିଲେ, ଏଇ ସମୟରେ ସେ ଶୁଣିଲେ ଅରୁର ସ୍ୱରଭଙ୍ଗା ଆକୁଳ ଆବେଦନ, ପ୍ରେମର ସତମିଛକୁ

ନେଇ । ଅଗତ୍ୟା ତାଙ୍କୁ ଅନ୍ୟ ଭାବରେ ହସିବାକୁ ପଡ଼ିଲା, ଅରୁ ଆଡ଼କୁ ଅନେଇ । ସେଥିର ଅକୁହା ଭାଷା ଥିଲା ଏହିପ୍ରକାର :

ନା ଲୋ ଝିଅ, ପ୍ରେମ ଜିନିଷଟା ଅସାର ନୁହେଁ । ତଥ୍ୟ ହିସାବରେ । ଆଦର୍ଶ ହିସାବରେ । ତେଣୁ ତାକୁ ହସି ଉଡ଼େଇ ଦେଇ ହେବ ନାହିଁ । ଦି'ଚାରୋଟି ଭଲ ହିନ୍ଦୀ ଫିଲ୍ମ ମଧ୍ୟ ଅଛି, ଯେଉଁଥିରେ ପ୍ରେମ ଜିନିଷଟା ସତ ପରି ଲାଗିବ । କିନ୍ତୁ ତୁମ-ଆମ ବାସ୍ତବ ଅନୁଭୂତିର ବାଟ ଦେଇ ଗଲେ (ତୁ ଅବଶ୍ୟ ଗତକାଲି ତୋର ବାଟଚଲା ଆରମ୍ଭ କରିଛୁ, ତେଣୁ ତୋର ଅନୁଭୂତି ଭିନ୍ନ) ପ୍ରେମ କେବଳ ଗୋଟାଏ ମଧୁରିଆ ଶବ୍ଦ, ଗୋଟାଏ ମନୋରମ ମିଛ ଛଡ଼ା ଆଉ କିଛି ନୁହେଁ । କିନ୍ତୁ ମୁଁ ତୋତେ କହିବ ନାହିଁ ସେମିତିକା କଥା, କାହିଁକିନା ତୁ ଅରୁ । ପ୍ରେମ ମିଛ ହୋଇପାରେ, କିନ୍ତୁ ଦୟା ସହାନୁଭୂତି ଇତ୍ୟାଦି କଦାପି ମିଛ ନୁହେଁ । ସାନପ୍ରାଣୀକୁ ଯିଏ ଦୁଃଖ ଦିଏ, ତା' ଭଳି ଅଧମ ଆଉ କେହି ନାହିଁ । ସେଇଲାଗି ମୋର ଭୀଷଣ ରାଗ ଆସୁଛି ସେଇ ଲୋକଟା ଉପରେ···

ଅରୁ ସନ୍ତୁଷ୍ଟ ନୟନରେ ଅନେଇଥିଲା ମନୁବାବୁଙ୍କ ଆଡ଼କୁ । ···ଝିଅଟାକୁ ହୁଏତ ସୁନ୍ଦର କୁହାଯିବ ନାହିଁ । କାରଣ ସେ ସାଦନାରୁ ବଳି ଶ୍ୟାମଳ । କୃଷ୍ଣବର୍ଣ୍ଣର ପାଖାପାଖି । ଚଟକା ମୁହଁ । ଉଚ୍ଚ କପାଳ । ଚିବୁକ ପଛକୁ ଧସି ଯାଇଛି । କିନ୍ତୁ ଆଉ କାହାର ଆବେଦନ ଏତେ ଛଳଛଳ, ହେଲେ ସେଥିରେ ତିଳେ ମାତ୍ର ଛଳ ନାହିଁ ବୋଲି ମନେ ହେବ ? କବିଗୁରୁଙ୍କ ଭାଷାରେ ସେ ଯେତେ କଳା ହେଲେ କ'ଣ ହେବ, ତା'ର କଳାହରିଣୀ ଆଖି ତା'ର ଆବେଗକୁ କଜଳ ପିନ୍ଧେଇ ଦେଉଛି, କେବଳ ତା' ନୁହେଁ । ଅବା ତା'ର ଦରଖୋଲା ଓଠରେ ଫିଟି ଫିଟି ଆସୁଥିବା ନୂଆ ମେଘର ପ୍ରବଣତା ଅଛି, ଏବଂ ସେଇ ହେଉଛି ତା' ତୃଷ୍ଣାର ମାଧୁର୍ଯ୍ୟ, ସେକଥା ନୁହେଁ । ତା'ର ସମଗ୍ର ପ୍ରାଣୀତ୍ୱ ଅନେଇଛି ମୋ ଆଡ଼କୁ. ଆସ୍ଥା ଓ ଆନୁଗତ୍ୟରେ କମ୍ପି ଉଠୁଛି—ଗୁଣ୍ଡୁଚି ଯେମିତି ବସିପଡ଼େ ତମ ଆଗରେ, ତା' ଲାଞ୍ଜକୁ ଘୁଞ୍ଚି ଦେଇଥାଏ ପଛକୁ, ପୁଣି ଆଗ ଗୋଡ଼ ଦି'ଟା ମୁହଁ ପାଖକୁ ନେଇ ଖୁଜୁବୁଜୁ କରେ, ନାକକୁ ଖୁସ୍‌ଖୁସ୍ କରେ । ଆରେ, ତଥାପି ବୁଝିପାରୁନାହିଁ ମୋର ଦୁଃଖ କ'ଣ ?—ଏଇ ଭାବରେ ।

ଜମ୍ବୁଫଳର ଯେଜ୍ଜା ମଧ୍ୟ କ'ଣ ଟିକିଏ ଥରି ଉଠୁ ନାହିଁ ବସନ୍ତ ପବନରେ ? ସତେକି ସେ ବି ଗୃହୁଁଛି ଦୋହଲିବା ସୁଖ, ପାର୍କର ଅନ୍ୟାନ୍ୟ ପତର ଓ ଫଳଫୁଲଙ୍କ ପରି । ମନୁବାବୁଙ୍କର ମନେ ହେଲା ଯେ ଫେବୃଆରୀ ମାସର ଏଇ ପାଣିପବନରେ ରୋମାନ୍ସଧର୍ମୀ ରୋମାଞ୍ଚ ନଥାଇପାରେ କିନ୍ତୁ ଅବଶ୍ୟ ଅଛି ଏକ ସ୍ପୃହାର ଆବେଦନ, ଯାହାର ପ୍ରତୀକ ହେଉଛି ଏଇ ଝିଅ ଖଣ୍ଡିକ ।

ଏତିକବେଳେ ସାଙ୍ଗରେ ପିକ୍‌ନିକ୍‌କୁ ଆସିଥିବା ଆଉ ଦୁ'ଜଣ ଲୋକ ତାଙ୍କ ପାଖ ଦେଇ ଗଲେ । ଏବଂ ସେମାନେ ଏ ଦମ୍ପତିଙ୍କ ସ୍ଥାଣୁ ଓ ନିର୍ବାକ୍ ହାବଭାବର ଅନ୍ତରାଳରେ ସ୍ଫୁରଣ, କମ୍ପନ, ଆବେଦନ ଇତ୍ୟାଦିର କୌଣସି ଆଭାସ ପାଇଲେ ନାହିଁ । ତାଙ୍କ ଭିତରୁ ଜଣେ ହେଲା ଅରୁର ପ୍ରାକ୍ତନ ସହକର୍ମୀ ମଞ୍ଜୁଳା, ଏବଂ ଅନ୍ୟଜଣଙ୍କ ହେଲେ ମନମୋହନବାବୁଙ୍କ ସ୍ତ୍ରୀ କମଳା ଦେବୀ । ମଞ୍ଜୁଳା ସାମାନ୍ୟ ହସଟିଏ ହସିଦେଲା ତାଙ୍କ ଆଡ଼କୁ ଚାହିଁ, ପିକ୍‌ନିକ୍‌ସୁଲଭ ଉଦାର ମନୋଭାବର ନମୁନା ଦେଖାଇ । କିନ୍ତୁ କମଳା ଦେବୀ ସେତିକରେ ରହିଗଲେ ନାହିଁ । ମୁହଁ ଖୋଲି କହି ପକେଇଲେ—"ଅଳସୁଆ କ'ଣ ଆଉ ଗଛରେ ଫଳନ୍ତି ? ଏଡ଼େ ସୁନ୍ଦର ପାଗ, କେତେ ଜାତିର ଗଛ, କେତେ ଜାତିର ଚଢ଼େଇ—ତମର ଟିକିଏ ମନ ହେଉ ନାହିଁ ଗଣ୍ଡି ହଲେଇବାକୁ ? ନିଜେ ତ ବସିଛ ମେଦା ହୋଇ, ଆଉ ଝିଅଟାକୁ ବି ବସେଇ ରଖିଛ ତମ ପାଖରେ । ସେ ଟିକିଏ ଗୁଲ୍‌ବୁଲ୍ କରନ୍ତା, ହସଖୁସି ହୁଅନ୍ତା ଆମ ସାଙ୍ଗରେ, କିନ୍ତୁ ବିଚାରୀ ବସି ରହିଛି ତମ ଖାତିର୍‌ରେ । ନା କ'ଣ ଲୋ ଅରୁ ?

ଅରୁନ୍ଧତୀ ଅବଶ୍ୟ ଟିକିଏ ଓଠ ଲମ୍ବେଇ ଦେଲା ଗୁରୁଜନଙ୍କ ପରିହାସକୁ ସମ୍ମାନ ଦେବା ପାଇଁ । ଆଉ କ'ଣ କରିପାରି ଥାଆନ୍ତା ? କିନ୍ତୁ ମନୁବାବୁ ଜାଣିଲେ ଯେ ଇଏ କମଳାର ପରିହାସ ନୁହେଁ । ଉପହାସ । ବିଦ୍ରୂପ । ଅରୁ କୋଉଠୁ ବୁଝିବ ସେକଥା ? ନା କେହି ବାହାର ଲୋକ ବୁଝିପାରିବ ? ତେଣୁ ସେ ତାଙ୍କ ସ୍ତ୍ରୀଙ୍କ ମନ୍ତବ୍ୟକୁ ବର୍ଜନ କଲେ । ଉତ୍ତର ଦେଲେ ନାହିଁ । ଖାଲି ଗୋଟାଏ ଓଠଚପା ଅଧାହସ ଦେଲେ, ତାଚ୍ଛଲ୍ୟଭାବର ସୂଚନା ଦେଇ ।

···କିନ୍ତୁ ସୂଚନା ଫୁଚନା କିଛି ପହଞ୍ଚେ ନାହିଁ ଆମ ସ୍ତ୍ରୀଙ୍କ ପାଖରେ । ସେ ଖାଲି ପଦେ ପଦେ ଗୁଣ୍ଡିଦିଏ ଅନ୍ୟମାନଙ୍କୁ ଶୁଣେଇବା ପାଇଁ । ସେମାନଙ୍କ ପ୍ରତିକ୍ରିୟା ସାଙ୍ଗରେ କ'ଣ ସମ୍ପର୍କ ଅଛି ତା'ର ? ଅଥଚ ସେ ଆଉ କାହାର ଥଟ୍ଟା ପରିହାସ ସହି ପାରେ ନାହିଁ । ରାଗି ଯାଇ କ'ଣ ବୋଲି କ'ଣ କହିଦିଏ । କଡ଼ା କଥା । କେବଳ କଡ଼ା ନୁହେଁ, ବେଳେବେଳେ ଅଭଦ୍ର, ଅମାର୍ଜିତ, କହିବାକୁ ଗଲେ ଅଶ୍ଳୀଳ ।

କଥା ହେଉଛି, ତା'ର ବୁଦ୍ଧି ବିଚାର ସୂକ୍ଷ୍ମ ନୁହେଁ । ସେଇ ହେଲା ଅସୁବିଧା । ନହେଲେ ସେ କ'ଣ ଅନୁମାନ କରିପାରି ନଥାଆନ୍ତା ଯେ ଆମେ ଖାଲି ମେଦା ହୋଇ ବସି ରହି ନାହୁଁ ? ସେ କି ଜାଣି ଅରୁର ସନ୍ତୁଷ୍ଟ ଚାହାଣି ଓ ମୋର ଗମ୍ଭୀର ଭାବୁକତାକୁ ବାରି ପାରି ନଥାଆନ୍ତା ? ନା, ସେ ସେଭଳି ସୂକ୍ଷ୍ମସୁନ୍ଦର ଦିଆନଆର ଧାର ଧାରେ ନାହିଁ । ତା'ର ସେକ୍‌ଟୋକ୍ ରୁକ୍ଷ ଭାଷା ପଛରେ ଅଛି

ସିଧାସଳଖ ମନୋଭାବ । ଅଚାଷ୍ଟା । ତାକୁ ସୁନ୍ଦର କହିବା ଉଚିତ ନୁହେଁ ।

ତା'ର ଖଣ୍ଡାଧାର ନାକ, ତା'ର ଉଜ୍ଜ୍ୱଳ ରଙ୍ଗ, ଉଜ୍ଜ୍ୱଳ ହସ, ତଥା ତା' ପ୍ରଚଣ୍ଡ ରାଗର କାନ୍ଦଣା ପର । ତା'କୁ ଇ ସୁନ୍ଦର କହିଲେ ଲୁହ । ହଁ, ବେଳେବେଳେ ତାକୁ କୁଣ୍ଢେଇ ଧରି ତା' ସାଙ୍ଗରେ ମାତିବାକୁ ଇଚ୍ଛା ହୁଏ । ହେଲେ ବେଳେବେଳେ ତାକୁ ଫିଟମତ ପିଟିବାକୁ ଇଚ୍ଛା ହୁଏ । ଏବଂ ମୋଟ ଉପରେ ତା' ସାଙ୍ଗରେ ମନ ମିଳେ ନାହିଁ । ମିଳି ନାହିଁ ଆଜିଯାଏଁ, ବାହା ହେବାର ଆସି ପଚିଶ ବର୍ଷ ହୋଇଗଲାଣି ।

ତଥାପି ଆମେ ଘର କରି ରହିଛୁ । ତିନୋଟି ପୁଅଝିଅଙ୍କୁ ନେଇ । ତଥାପି ସେକ୍ସ ଅଛି । ଏବଂ ହାଲୁକା ଗପସପ । ତଥା ଘରକରଣାର ନାନା ଯୁଗ୍ମ ଉଦ୍ୟମ, ଏବଂ ତା'ର ଯୁଗ୍ମ ମମତ୍ୱ । ପୁଣି ତହିଁରୁ ଜାତ ଗୋପନୀୟ ଭାବ, ପ୍ରାଇଭେସି, ଅପର ସଂସାରଠୁଁ ଲୁଚେଇ ରଖିଲା ପରି । ଏବଂ ଏହି ସମସ୍ତକୁ ମିଳେଇ ମିଶେଇ ଦେଲେ ଗୋଟାଏ 'ଜୀବନ ସାଥୀ' ପଣର ତାତ୍ତ୍ୱିକ ଅନୁମାନ । କିନ୍ତୁ—ତାକୁ କ'ଣ ଭଲପାଇବା କୁହାଯିବ ?

ବୁଝିଲୁ ଅରୁ, ଆଜଠୁଁ ପଚିଶବର୍ଷ ପରେ ତୋ ଭଲପାଇବା ବି ଏମିତି ମନେ ହେବ । ଯଦି ତମେ ଦୁ'ଜଣ ସତସତିକା ମଣିଷ ହୋଇଥାଅ, ପୃଥକ୍ ମନ, ବୁଦ୍ଧି ଓ ଭାବଭାବନାର ଅଧିକାରୀ ହୋଇ ସଂପୂର୍ଣ୍ଣ ମଣିଷ ହୋଇଥାଅ । ଏବଂ ଆପଣା ଆପଣା ସ୍ୱାଧୀନତା ସାଙ୍ଗରେ ସାଲିସ୍ ନକର, ତାକୁ ଜାଣିଶୁଣି ଊଣା କରି ନଦିଅ, 'ସୁଖ' କରିବା ପାଇଁ ।

କିନ୍ତୁ ମୁଁ ତୋତେ କହିବି ନାହିଁ ଏଇ ସବୁ କଥା । କାରଣ ଭଲପାଇବା ଠାରୁ ସତ ଓ ସୁନ୍ଦର ତୋର ଏଇ ଯାତନା । ଏବଂ ମୋର କରୁଣା । ମୁଁ କଦାପି ତା'ର ଅବମାନନା କରିବି ନାହିଁ । ପାରିବି ନାହିଁ । ଗୁଣ୍ଡୁଚିକୁ ହୁରୁଡ଼େଇ ଦେଇ ପାରିବି ନାହିଁ···

"ମୁଁ ଦେଖେଇ ଦେବି । ତାଙ୍କ ଅଭିଆଡ଼ା ପଣର ଗଉଁକୁ ଛଡ଼େଇ ଦେବି । ଆମେ ବି ସମାଜସେବା କରିଛୁ, କରିପାରିବୁ । ହେଲେ ଆମେ ତାକୁ ରଙ୍ଗେଇ ଦେବୁ ଆମ ପ୍ରେମରେ । ସେ ବୁଝିବେ ଯେ ବୁଝିବେ ! ଅଲବତ୍ ବୁଝିବେ···"

ଅଭିଆଡ଼ା ପଣ ? ସମାଜ ସେବା ? କିଏ ଏଇ ଜନ୍ତୁବିଶେଷ ? ମନମୋହନବାବୁ ଉଦ୍‌ଗ୍ରୀବ ହୋଇ ଉଠିଲେ ତା'ର ପରିଚୟ ପାଇବା ପାଇଁ । ଏବଂ ଅରୁର କଥାକୁହା ମୁହଁକୁ ଅନେଇ ରହିଲେ ।

ତେବେ ସେ ବୁଝିଲେ ଯେ ଏଭଳି ଗୋଟିଏ ଲୋକ ନୀରସ ଓ ଶୁଷ୍କ ହେବା ସ୍ୱାଭାବିକ । ଏବଂ ସେ ଯଦି ପୁରୁଷ ନହୋଇ ନାରୀ ହୋଇଥାଏ, ତା'ହେଲେ ସେ ତିକ୍ତ ବା ନହେବ କାହିଁକି ? ସେଇଥିପାଇଁ ବୋଧହୁଏ ସେ ତିଳେ ହେଲେ କୁଣ୍ଠା ବୋଧ କଲା ନାହିଁ ଅରୁର ମନରେ କଷ୍ଟ ଦେବା ପାଇଁ ।

କିନ୍ତୁ ଇଏ ହେଉଛି ନେଗେଟିଭ୍ ତିକ୍ତତା । ମୋ ପରି ନୁହେଁ, ଯାହା ଜୀବନ-ଦର୍ଶନର ଉଦ୍ଭୂତ । ଏଥିରୁ ଫୁଲ୍ କି ଫଳ ଫୁଟିବାର ପ୍ରଶ୍ନ ଉଠୁ ନାହିଁ । ହୁଏତ ସେତିକି ଶୁଖି ଝଡ଼ି ଯାଏ, ଜନ୍ମ ହେଉ ହେଉ । ହାସ୍ୟ, ବିଦ୍ରୂପ ଅରୁ କୋଉ କିନ୍ତୁର ହାବୁଡ଼ରେ ପଡ଼ିଲା କେଜାଣି ! କିନ୍ତୁ ସେ ପୁଣି ଥରେ କହିବାକୁ ନାହିଁ ଲେଖକଟାର ନାଆଁ । ଖାଲି କହି ଚାଲିଛି ତା'ର ବିଷବୋଲା କଥାମାନ, ଗୋଟିକ ପରେ ଗୋଟିଏ ।

“...କହିଲେ କ'ଣ ନା—କାହିଁକି ଆଉ ଟଙ୍ଗେଇଛୁ ଏଇ ପେଣ୍ଟିଙ୍ଗ୍ ସବୁ ଏ ମୁଣ୍ଡରୁ ସେ ମୁଣ୍ଡ ? ରବିବର୍ମାଙ୍କ ଅପ୍ସରା, ହୁସେନ୍ଙ୍କ ଘୋଡ଼ା, ଆଉ ଯେତେ ଯାହା ? କେତେବେଳେ ସମୟ ମିଳିବ ତା'କୁ ଦେଖିବାକୁ ? ତା'ଛଡ଼ା ଏବେ ଆଉ ଆର୍ଟ୍‌ରୁ କୋଉ ଅଧିକା ଆନନ୍ଦ ମିଳିବ ତୋତେ, ତେଜ, ରଙ୍ଗ ନା ରସ ?

ପୁଣି କହିଲେ—ଯାହାହେଉ କୋଉ ଗରିବକୁ ଭଲ ଚାକିରି ଖଣ୍ଡେ ମିଳିଯିବ ତୋ ଜାଗାରେ । କେତେ ଦରିଦ୍ର ଧାଡ଼ି ବାନ୍ଧିଥିବେ 'ମର୍ଣ୍ଣିଙ୍ଗ୍ ଷ୍ଟାର୍'ର ଆସିଷ୍ଟାଣ୍ଟ୍ ଏଡ଼ିଟର୍ ହେବା ପାଇଁ ।

ତାଙ୍କ ଫିସାଦିଆ କଥାର ତୁଳନା ନାହିଁ । କହିଲେ—ଗୋଟାଏ କାମ କର । ଯୋଉ ବଢ଼ିଆ ବଢ଼ିଆ ଶବ୍ଦର ଭଣ୍ଡାର ଅଛି ତୋ ପାଖରେ, ସେଗୁଡ଼ା କ'ଣ ବେକାର ହୋଇଯିବ ? ତୁ ଗୋଟାଏ ବହି ଲେଖେ ଡକ୍ଟର୍ ରଜତ ପାଣିର ଜୀବନକୁ ନେଇ । ତା' ପିଲାଦିନର କାହାଣୀ, ଆଉ ତା' ବଡ଼ଦିନର କୃତିତ୍ୱ, କେଉଁସବୁ ଇଣ୍ଟରେଷ୍ଟିଙ୍ଗ୍ ରୋଗ ତା' ନଜରରେ ପଡ଼ିଛି, କେମିତିକା ଅସାଧ୍ୟ ରୋଗକୁ ସେ ଭଲ କରି ଦେଇଛି, ଇତ୍ୟାଦି । ଅବଶ୍ୟ ଛନ୍ଦେ ଛନ୍ଦେ ଫୁଟି ଉଠୁଥିବ ରଜତର ନାହିଁ-ନଥିବା ପ୍ରେମ ତୋ ପାଇଁ—ନା କଅଣ ?

ତା' ସାଙ୍ଗକୁ ଯୋଉ ଫୋଡ଼ି ଦେଲା ପରି ଚାହାଣି, ଯୋଉ ନଆଁ ଝୁଲ ଝରୁ ଥାଏ ତାଙ୍କ ହସରୁ. ଆଉ କ'ଣ କହିବି ? ହଉ, ମୁଁ ଦେଖେଇ ଦେବି, ଆଖିରେ ଆଙ୍ଗୁଳି ଗେଞ୍ଜି ଦେଖେଇ ଦେବି ତାଙ୍କୁ...”

ଧାତ୍ ! ତଥାପି ସେ କହିବାକୁ ନାହିଁ କିଏ ସେ ଲେଖକଟା । ମନମୋହନ ବାବୁ ବ୍ୟତିବ୍ୟସ୍ତ ହୋଇ ଉଠିଲେ । ଏପରିକି ତାଙ୍କର ଇଚ୍ଛା ହେଲା କହିବେ—

ଷ୍ଟପ୍ ଇଟ୍ ! ମୁଁ ଏଇସବୁ ବାଜେ କଥା ଶୁଣିବାକୁ ଚାହେଁ ନାହିଁ । ଚାହୁଁଛୁ ଯଦି କହ ଦେ ତୋ ଶତ୍ରୁ କିଏ । ମୁଁ ତାକୁ ସାବାଡ଼ କରିଦେବି । ନହେଲେ ବୁଲିବୁ ଯାଆ ତୋ ଭଉଜ ସାଙ୍ଗରେ । ଆଉ ମୋତେ ଆଉ ଟିକିଏ ଭାବିବାକୁ ଦେ' ଏଇ ନମ୍ବୁଫଳକୁ ନେଇ ।

ଯାହାହେଉ ମନୁବାବୁ ଧୈର୍ଯ୍ୟ ଧରି ଶୁଣିଗଲେ । ଏବଂ ଯଥାକ୍ରମେ ଶତ୍ରୁର ନାଆଁ ଆସି ପହଞ୍ଚିଲା ତାଙ୍କ କାନରେ ।

ସରିତା ଦା' । ଓଡ଼ିଆଣୀ ହେଲେ ମଧ୍ୟ ଏଠିକାର ସାର୍ବଜନୀନ ଦିଦି । ଅଲ୍ଟ୍ରାଆଡ଼ୀ । ସମାଜସେବିକା । କିଏ ସେ ଭଦ୍ରମହିଳା ? ତାଙ୍କ ସାଙ୍ଗିଆ କ'ଣ ? ସରିତା ନାଏକ ? ତାଙ୍କ ବାପା ହେଉଛନ୍ତି ଅରବିନ୍ଦ ନାଏକ ? ଜଜ୍ ହୋଇଥିଲେ ? ହିଁ ହିଁ, ସେଇ କ'ଣ ନଥିଲେ କି ଆମଘର ପାଖରେ, ମୁନ୍‌ସିଫ୍ ହୋଇଥିଲା ବେଳେ ? ଆଉ ତାଙ୍କ ସାନ ଝିଅଟାକୁ ନେଇ କେତେଥର ଆସିଛନ୍ତି ଆମ ଘରକୁ, ବାପାଙ୍କ ସାଙ୍ଗରେ ଦୁଃଖସୁଖ ହେବା ପାଇଁ···

ମନମୋହନବାବୁ ବଲବଲ ହୋଇ ଅନେଇଲେ ଅରୁ ଆଡ଼କୁ । ଏବଂ ଦୋହରେଇ କହିଲେ—'ଆରେ ସେଇ ସରିତା ? ଖୁକୁ ?' ଏବଂ ଉତ୍ତରୋତ୍ତର ଆଶ୍ଚର୍ଯ୍ୟ ହେଲେ ।

ବାଳିକା ସରିତାର ଚେହେରା ଚରିତ୍ରକୁ ମନେ ପକାଇ ଅଧିକରୁ ଅଧିକ ବିସ୍ମିତ ହେଲାରୁ ମନୁବାବୁ ହଠାତ୍ ହସି ଉଠିଲେ ହୋ' ହୋ' ହୋଇ । ସତେକି ମଣିଷ ଚରିତ୍ରର ଏଭଳି ଏକ ନୂତନତ୍ୱ, ଆବ୍‌ସର୍ଡ଼୍‌ପଣ, ସେ ଦେଖିବାକୁ ପାଇ ନଥିଲେ ତାଙ୍କ କାନ ଉଠିବା ଦିନୁ ।

ଅରୁ କାବା ହୋଇ ପଚାରିଲା, "କ'ଣ ହେଲା କି ?"

ମନୁବାବୁ ତାକୁ ଆଶ୍ୱାସନା ଦେଲେ । କହିଲେ—"ନା ଲୋ, କିଛି ହୋଇ ନାହିଁ । ମୋତେ ଖାଲି ଅଦ୍‌ଭୁତ ଲାଗୁଛି । ଯେ ସେଇ ଝିଅଖଣ୍ଡକ, ମୁଁ ତାକୁ ପିଲାଦିନୁ ଜାଣିଛି, ସେ ପୁଣି ଦିଲ୍ଲୀରେ ଥାଇ ସମାଜସେବା କରୁଛି । ଆଉ ତା' ବଡ଼ପଣ ଦେଖାଉଛି ତୋ ଆଗରେ···"

କଥାଟା କେଉଁ ଭାବରେ ଅଦ୍‌ଭୁତ ବୋଲି ଅରୁ ବୁଝିପାରିଲା ନାହିଁ । ମଧ୍ୟ ବୁଝିବାକୁ ଚାହିଁଲା ନାହିଁ । ଗରବିଣୀ ସରିତା ଦା' ପିଲାଦିନେ ଆଉ କିସମର ଥିଲେ, ଅଳ୍ପବହୁତ ଦସ୍ୟୁମୀସ୍ତ, ସତେକି ଜାଣିଲେ ଯଥେଷ୍ଟ । ସେତିକରେ ଖୁସି ହେବାର କଥା । ଯାହାହେଉ ଭାଗ୍ୟଭଲ ସେ ଖୁଣ୍ଟିନାଣ୍ଟି କିଛି ପଚାରି ନାହିଁ ମନୁବାବୁଙ୍କୁ । କାରଣ ମନମୋହନବାବୁ ନିଜେ ତା'ର ଠିକଣା ଉତ୍ତର ଦେଇ ପାରି ନଥାଆନ୍ତେ ।

ତାଙ୍କର ମନେ ପଡ଼ିଲା ତା' ଚେହେରା । ତା'ର ହସ, ତାର ମୁହଁଫୁଲା । ଏଡ଼େ ବଡ଼ ବଡ଼ ଗାଲ, ଭାରୀ ଆଖିପତା, ଗେଡ଼ୀଟିଏ । ମଧୁଆ ସାବନା ରଙ୍ଗ । ସୁନ୍ଦର ହେଉ କି ନହେଉ ଗୋଟାଏ କଦାପିଟା ସେକ୍ସଗୁଣ ଥିଲା ତା' ଚେହେରାରେ । କିନ୍ତୁ ତା' ବୋଲି ସେ ସମାଜସେବା କରିବାର ଯୋଗ୍ୟ ନୁହେଁ, ଏକଥା କିଏ କହିଲା ? ପୁଣି ମନେ ପଡ଼ୁଛି ଯେ ଖେଳରେ ମୁଁ ତା' ଉପରେ ଲଦି ହୋଇ ପଡ଼ୁଥିଲି, ଓ ସେ ମିଚୁମିଚୁକା ଚତ୍କାର କରି ଉଠୁଥିଲା । ତେବେ ସେଥିରେ ଯାଏ କେତେ ଆସେ କେତେ ? ନା, ଅରୁକୁ ବୁଝେଇ ହୋଇ ନଥାଆନ୍ତା । ଯେ ହସି ଉଠିବାର କାରଣ ଅଛି, ଗୋଟାଏ ଅନୁଭବର ସ୍ମୃତି, ହେଲେ ତାର ବ୍ୟାଖ୍ୟା କରି ହେବ ନାହିଁ । କିନ୍ତୁ ଗୋଟାଏ ଗୋପନ ଧାରଣା ଆସିଲା ତାଙ୍କ ମନକୁ । ଯେ ତାଙ୍କ ପ୍ରତିଦ୍ୱନ୍ଦ୍ୱୀର ସମ୍ପର୍କ ଅଛି ସେଇ ଲଦାଲଦି ହେବାର ଘଟଣା ସାଙ୍ଗରେ । ଯେଉଁଥିରୁ ମନେ ହେଉଛି ଯେ ଝିଅଟା ନିର୍ବୋଧ । ତେଣୁ ସେ ଆଜି ଉଞ୍ଚରେ ଥାଇ ଅରୁକୁ କହିବ ଏମିତିକା କଥା, ଚତୁର ଶାଣଦିଆ କଥା, ଏଥିରେ କାହାକୁ ହସ ମାଡ଼ିବ ନାହିଁ ?

ମନମୋହନବାବୁ ତାଙ୍କ ସ୍ମୃତିକୁ ତେଜିବାକୁ ଲାଗିଲେ । ···ମୁହିଁ ତାକୁ ତଳେ ଗଡ଼େଇ ଦେଇଛି । ଥରକରୁ ବେଶୀ । ଅନେକ ଥର । ପୁଅପିଲା ବୋଲି ମୋ ବଳ ଦେଖେଇଛି ତା' ନୁହେଁ । ଖେଳରେ ହାରିଯାଇ କି ତାକୁ ଜବାବ୍ ଦେଇ ନପାରି ଦେହର ଜୋର୍ ଖଟେଇଛି, ସେଭଳି ଆକ୍ଷେପ ମଧ୍ୟ ଅମୂଳକ । ସେଇଟା ହୁଣ୍ଡୀ ଥିଲା । ଧୂମସୀ, ପୁର୍‌କାଗାଲୀ ହୁଣ୍ଡୀଟିଏ !

ଆଜି ବି ମୁଁ ତାକୁ ତଳେ ଗଡ଼େଇ ଦେଇ ପାରିବି । ସେ ଯେ ଆଜିଯାଏଁ ବାହା ନହୋଇ ତଥାକଥିତ ସମାଜସେବା କରୁଛି, ସ୍ୱା' ପଛରେ ଅଛି ମୁଁ ଯାହା ଭାବିଥିଲି । ନପାରିଲାର ଛଳନା । ମୁଁ ତାର ଅନୁଭୂତ ପ୍ରମାଣ ପାଇଛି । ସେବେଠୁଁ । ···ସେଇଠୁଁ ଏକ ନବଜାଗ୍ରତ ଉତ୍ସାହରେ ଝଲି ଉଠିଲା ମନମୋହନବାବୁଙ୍କ ମୁହଁ । ଏକ ନୂତନ ଉଦ୍ୟମର ଆଶୁ ସଫଳତା ଦିଶିଗଲା ତାଙ୍କୁ ଜଳଜଳ ହୋଇ ।

କମଳାଦେବୀ ହୁଏତ ତାଙ୍କ ଉଚ୍ଛଳନକୁ ପାସଙ୍ଗରେ ପକାଇ ନ ଥାଆନ୍ତେ । କାରଣ ସେ ଦେଖିଆସିଛନ୍ତି ସ୍ୱାମୀଙ୍କ ଉଦ୍ୟମ-ଉତ୍ସାହର ସୁଦୀର୍ଘ ଶୋଭାଯାତ୍ରା, ଏବଂ ପ୍ରତ୍ୟେକର ପରିଣାମ । ଘର ସଜେଇବାଠାରୁ ଆରମ୍ଭ କରି ନଈକୂଳିଆ କୁଟୀର ଗଢ଼ିବାଯାଏଁ । ଏବଂ ଦେଖିଛନ୍ତି ତାଙ୍କ ବିଭିନ୍ନ ଏଜେନ୍ସି, ପାର୍ଟ୍‌ନର୍‌ସିପ୍ ଆଦି ଉଚ୍ଚାଭିଳାଷୀ ଧନ୍ଦାର କରାମତି । ଇନ୍‌ସିଓରାନ୍‌ସ ହେଉ ବା ଧର୍ମଗୁରୁ ବିନାୟକ ମହାରାଜଙ୍କ ପ୍ରତିନିଧିତ୍ୱ । ଯାହାର ଆରମ୍ଭରୁ ସେ ନାଚି ଉଠିଛନ୍ତି । ଏବଂ କେଇଟା ମାସ ଭିତରେ ବିସ୍ତର ଧନ ଓ ମାନର ଅଧିକାରୀ ହେବେ ବୋଲି ଘୋଷଣା କରିଛନ୍ତି । କିନ୍ତୁ ଅଚିରେ ଫେଲ୍ ମାରିଛନ୍ତି । ଏବଂ ପାର୍ଟ୍‌ନର୍‌ଟା ଷ୍ଟୋର, ସରକାରଙ୍କ

ଦୂରଦୃଷ୍ଟି ନାହିଁ, ଗୁରୁ ମହାରାଜଙ୍କ ସାହସ ନାହିଁ, ଏଇଭଳି ସଫେଇ ଦେଇ 'ଗ୍ରୁଡ଼ଃ !' ବୋଲି କହୁଛନ୍ତି (ଅବଶ୍ୟ ବିବିଧବହୁଳ ବିଫଳତା ସତ୍ତ୍ୱେ ସେ ଯେ ନିହାତି ଦୁଃଖରେ ନାହାଁନ୍ତି ସେକଥା ସତ, କିନ୍ତୁ ତାର କାରଣ ଭିନ୍ନ)···ଯାହାହେଉ, ଅରୁର ସେହି ପ୍ରକାର ଅଭିଜ୍ଞତା କାହିଁ ? ତେଣୁ ସେ ମନମୋହନବାବୁଙ୍କ ବିଷ୍ଣସିତ ବଦନକୁ ଦେଖି ମୁଗ୍‌ଧ ହେଲା । ଏବଂ କୃତଜ୍ଞତାରେ ଗଦ୍‌ଗଦ ହେଲା, ଯେତେବେଳେ ସେ ତାକୁ କହିଲେ ଗମ୍ଭୀର ହୋଇ, ପ୍ରସନ୍ନ ମୁନିବର ପରି—

"ମୁଁ ତାକୁ ଶିକ୍ଷା ଦେବି । ଦେଖିବୁ ରହ ।"

× × କିଭଳି ଶିକ୍ଷା ? ଏହି ପ୍ରଶ୍ନକୁ ସେ ଆଦୌ ପ୍ରଶ୍ରୟ ଦେଲେ ନାହିଁ । ଫାଷ୍ଟ୍ ଥିଙ୍ଗ୍‌ସ୍ ଫାଷ୍ଟ୍ । ପ୍ରଥମ କଥା ହେଲା, ଆପାତତଃ ଓଡ଼ିଶାକୁ ଫେରି ନଯାଇ ଦିଲ୍ଲୀରେ ଆଉ କିଛିଦିନ ରହିବାକୁ ପଡ଼ିବ । ତା'ପରେ—ତା'ପରେ କ'ଅଣ ? ଅଳ୍ପ-ବହୁତ ମିଳାମିଶା, ହୁଏତ ମୁଁ ମିଶିଯିବି ତା ସମାଜସେବାରେ, ଯେମିତିକି ତାର ମନେ ହେବ ଯେ ଇଏ ଆମ ପିଲାଦିନଆ ଖେଳର ମାର୍ଜିତ ଓ ପରିବର୍ଦ୍ଧିତ ସଂସ୍କରଣ । ସେଇଠୁଁ ମୁଁ ତାକୁ ବେଲ ଉଣ୍ଡି ତଳେ ଗଡ଼େଇ ଦେବି । ମାନେ ତାକୁ ଶିକ୍ଷା ଦେବି । ଜଣେଇଦେବି ଯେ କୋଉ ପୁରୁଷ ତା' ଆଡ଼କୁ ଅନେଇ ନାହିଁ, ସେଇଥି-ପାଇଁ ତାର ଆଜି ଏଇ ଅବସ୍ଥା । ଭାଗ୍ୟ ଦୋଷରୁ ହେଉ କି ତା' ନିଜ ଦୋଷରୁ ସେ ରିକ୍ତା, ପରିକ୍ତତା, ବହିଷ୍କୃତା । ତେଣୁ ସେ ଆଉ କାହାର ସୁଖ ସହି ପାରୁ ନାହିଁ । ଅରୁ ପରି ପିଲାଟା ମନରେ ଏଭଳି କଷ୍ଟ ଦେଉଛି । ଅଯଥାରେ । ମୁଁ ତା କଟା ଘାଆରେ ଚୂନ ଲଗେଇ ଦେବି । ଛାଡ଼ିବି ନାହିଁ ।

କିନ୍ତୁ ସେ ଯେତେବେଳେ କମଳାଦେବୀଙ୍କୁ ଜଣାଇଲେ ଯେ ସେ ଆଉ କିଛି ଦିନ ଦିଲ୍ଲୀରେ ରହିବାକୁ ଚାହାନ୍ତି, ସେ ତାଙ୍କ ବିଜ୍ଞପ୍ତିକୁ ବିଜ୍ଞତାର ସହ ବାଢ଼ି ଦେଇ ପାରିଲେ ନାହିଁ । ତାଙ୍କ ଉଦ୍ଦେଶ୍ୟର ମହତ୍ତ୍ୱକୁ ଚହ୍ଲାଇ ଦେଇ ପାରିଲେ ନାହିଁ । ଅପରନ୍ତୁ ପ୍ରକୃତ ଉଦ୍ଦେଶ୍ୟକୁ ଘୋଡ଼ାଇବାକୁ ଯାଇ ସେ ଗୋଟାଏ ଅଧା ମିଛକଥା କହି ପକେଇଲେ ହଠାତ୍ । କହିଲେ "ମୁଁ ସମାଜସେବା କରିବାକୁ ଠିକ୍ କରିଛି । ଏଠି ତାର ସ୍କୋପ୍ ଯଥେଷ୍ଟ ବେଶୀ ଓଡ଼ିଶାଠାରୁ···"

"ସମାଜସେବା ??" କମଳାଙ୍କ ଜିଜ୍ଞାସାରେ ଖାଲି ଆକାଶରୁ ଖସିବାର ଭାବ ନଥିଲା । ମଧ୍ୟ ଥିଲା ଭୂଇଁରେ କଚଡ଼ା ହୋଇ ପଡ଼ିବାର ଦାରୁଣ ଦୁର୍ବିପାକ ।

ମନ୍ଟୁବାବୁ ନିରୁତ୍ତର ରହିଲେ ।

"ମତଲବ କଅଣ ? ତମେ ଆଉ ସମାଜସେବା ! ନା, ଆଉ ଗୋଟାଏ ଏଜେନ୍‌ସି ଠିକଣା କରିଛ ମ ?"

"ହଁ, କହୁଥିଲି ଯେ ଇଏ ଗୋଟାଏ ନୂଆ ଧରଣର ଏଜେନ୍‌ସି, ଯେଉଁଥିରୁ ଅନେକ ଲାଭ ମିଳିବ, ଯାହାକୁ ଟଙ୍କା ପଇସାରେ କଳି ହେବ ନାହିଁ।" ମନୁବାବୁ ଏକାଧାରରେ ଚତୁର ଏବଂ ରହସ୍ୟମୟ ହେବାକୁ ଚେଷ୍ଟା କଲେ।

କିନ୍ତୁ କମଳା ଦେବୀଙ୍କର ଧୈର୍ଯ୍ୟ ନ ଥିଲା ତାଙ୍କ ସଫେଇ ଶୁଣିବା ପାଇଁ। ସେ ଅଗ୍ନିଶର୍ମା ହୋଇ ଉଠିଲେ। କହିଲେ—

"ରଖ ତମ ସେବା, ତମ ଏଜେନ୍‌ସି, ତମ ଚୂଲି ନିଆଁ !"

ଫଁ ଫଁ ଉତ୍ତାରୁ ଟିକିଏ ଦମ୍ ନେଲା ପରେ ସେ ରହିଗଲେ କିଛି ସମୟ। ସେଇଠୁଁ ଛୁଟେଇଥିଲେ ସୁଅ—

"ଅନେକ ସେବା, ଅନେକ ଏଜେନ୍‌ସିର କାମ ଦେଖେଇଛ ମୋତେ ଜୀବନଯାକ, ବୁଝିଲ ? କେତେ ଘୋଷାଡ଼ିଛ ମୋତେ ଏଘରୁ ସେଘର, ଢେଙ୍କାନାଳରୁ କଟକ, କଟକରୁ କଲିକତା, ଆଉ କଲିକତାରୁ ଗୁରୁମହାରାଜଙ୍କ ଆସ୍ଥାନ, ଆସାମର କୋଉ ବଣଜଙ୍ଗଲରେ। ହେଲେ ଖାଲି ମୋର ସେବା ଆଉ ତମ ପୈତୃକ ସମ୍ପତ୍ତିରୁ ପୂଲେ ପୂଲେ ନ ପାଇଥିଲେ ତମେ ପିଲାଙ୍କୁ ମଣିଷ କରି ପାରି ନଥାଆନ୍ତ। ଆଜି ତମ ପିଲା ମଣିଷ ହୋଇଗଲେଣି, ଆଉ ବାପାଙ୍କ ଅନ୍ତେ ଯଥେଷ୍ଟ ସମ୍ପତ୍ତି ତମ ହାତକୁ ଆସିଗଲାଣି। ସେଥିଲାଗି ଏମିତି ହେଣ୍ଡି ମାରୁଛ। କ'ଣ ନା ମୁଁ ସମାଜସେବା କରିବ, ନାଆଁ କମେଇବ। ଆଉ କମଳା ପଡ଼ି ରହିବ ଢେଙ୍କାନାଳରେ, ଗୁମାସ୍ତାଙ୍କଠାରୁ ହିସାବ ମାଗିବ, ମୂଲିଆ ମଜୁରିଆଙ୍କୁ ଶାସନ କରିବ...ମୁଁ କ'ଣ ଚିହ୍ନି ନାହିଁ ତମକୁ, ଜାଣେ ନାହିଁ ତମେ କେମିତିକା ସ୍ୱାର୍ଥପର ?..."

"ଆରେ—ଆରେ—କ'ଣ ସବୁ ବକି ଯାଉଛ ? ଏଠି ନାଆଁ କମେଇବାର ପ୍ରଶ୍ନ ନାହିଁ। ଆଉ ମୁଁ କହୁନାହିଁ ଯେ ତମେ ଢେଙ୍କାନାଳ ଯିବ..."

"ଆଉ କୋଉ ଗାତକୁ ଯିବ ? ନା, ମୁଁ ଫେରିଯିବି ଓଡ଼ିଶାକୁ, ତମ ଠିକିଁ ଆଉ ଢେଙ୍କାନାଳକୁ। ବଦ୍ରିନାଥ ନହେଲା ନାହିଁ। ମୋତେ ମଥୁରା ବୃନ୍ଦାବନ ତୀର୍ଥ କରେଇବାକୁ ଆଣିଥିଲ ଏଠିକି। ଏବଂ କଥା ଥିଲା ଯେ ଦିଲ୍ଲୀରେ ରହିବା ସାତଆଠ ଦିନ ନରେଶଦାଦାଙ୍କ ପାଖରେ, ଅରୁ ବଜାଣ ହେରକାଙ୍କ ଗହଣରେ। ତାପରେ ଫେରିଯିବା ବଦ୍ରିନାଥ ହୋଇ..."

"ମୁଁ କ'ଣ କହୁଛି ବଦ୍ରିନାଥ ଯିବା ନାହିଁ ବୋଲି ?"

"ତମେ ଯାଅ କି ନଯାଅ ମୁଁ କେୟାର୍ କରେ ନାହିଁ। କିନ୍ତୁ ମୁଁ ଆଉ ଯିବି ନାହିଁ କୋଉଠିକି ତମ ସାଙ୍ଗରେ। ଯଥେଷ୍ଟ...ଯଥେଷ୍ଟ...ହୋଇଗଲାଣି। ଦେଖ,

ମନ, ସବୁ ଜବାବ୍ ଦେଲାଣି । ତମେ ଏଠି କରୁଥା ତମ ସମାଜସେବା, କି ପଦସେବା କୋଉ ଦେବୀଙ୍କର !"

"ଆରେ—ଆରେ—ଆରେ···" ଏତିକି କହି ମନୁବାବୁ ତାଚ୍ଛଲ୍ୟ ହସିଲା ପରି ହେଲେ, ଏବଂ ମୁଣ୍ଡ ହଲାଇଲେ । ଯାହାର ଅର୍ଥ 'ତମକୁ ଆଉ ପାରି ହେବ ନାହିଁ !'

···କେମିତି ପାରି ହେବ ? କ'ଣ ଜବାବ୍ ଦେବି ଏମିତିକା କଥାରେ, ଯାହା ସେ ନିଜେ ମିନ୍ କରୁ ନାହିଁ । ଧର ଏଇ ଦେବୀଙ୍କ ପଦସେବା ଆକ୍ଷେପ । ଯିଏ ହେଲେ ଭାବିବ ଯେ ସେ କହୁଛି କୋଉ ମାନବୀଦେବୀଙ୍କ କଥା, ଯାହାଙ୍କ ସାଙ୍ଗରେ ମୋର କୌଣସି ଖରାପ ସମ୍ପର୍କ ଥିଲା ବା ଅଛି । କିନ୍ତୁ ତା' ମୋଟେ ନୁହେଁ । ତା' ମନରେ ମଧ୍ୟ ସେଭଳି ସନ୍ଦେହ ନାହିଁ ଟିକିଏ ବୋଲି । ଥିଲେ ସେ କହି ନଥାଆନ୍ତା ଏବେ, ଆଉ ପ୍ରକାରେ, ଏଇ ଟୁର୍‌ରେ ବାହାରିବା ଆଗରୁ । କହିଲା—ତମେ ଉଦାର ନୁହଁ କି ଉଦାସୀନ । ସିଏ ଗୋଟାଏ ଢଙ୍ଗ । ଅସଲ କଥା, ତମେ ସେଇ ବାହାନାରେ ଆଡ଼େଇ ହୋଇଯାଅ । ଖସିଯାଅ ଦାୟିତ୍ୱରୁ—ତମ ସ୍ତ୍ରୀ, ପିଲା, ଘରସଂସାରର ଦାୟିତ୍ୱରୁ । ହଁ, ଜାଣନ୍ତି ଯଦି ତମେ ଆଉ କେଉଁଠି ଲାଗି ଯାଇଛ । କୋଉ କାମ, କୋଉ ରିସର୍ଚ୍ଚ, ଏମିତିକି ଆଉ କୋଉ ମାଇକିନିଆ ପାଖରେ । କିନ୍ତୁ ତା' ବି ନୁହେଁ । ତମେ ଲାଗିରହିଛ ଖାଲି ନିଜ ଠେଇଁ । ସେଇ ନିଜ ସାଙ୍ଗରେ ପେରେମ ହେବ, ନିଜକୁ କୁଣ୍ଢେଇ ଧରି ଶୋଇବ, ତା'ର ଯେତେକ ଡାକିନୀ ପ୍ରେତିନୀଙ୍କୁ ନେଇ ।

ସେମିତି କଥାକୁ ମନ ହୋଇଛି ତାକୁ କହିଦେବି ସାଫ୍ ସାଫ୍ । ଯେ ମୁଁ ଯାହା କିଛି କହିବାକୁ ଯାଉଛି, ଆଉ ଜଣକ ପାଇଁ । ଅରୁ ପରି ଗୋଟିଏ ଆହତ ପ୍ରାଣୀକୁ ଖୁସି କରିବା ପାଇଁ ।

କିନ୍ତୁ ସେ ଯଦି ମୋତେ ପଚାରି ବସେ ଯେ ସମାଜସେବା ସାଙ୍ଗରେ ତାର ସମ୍ପର୍କ କ'ଣ, ମୁଁ ତାର କ'ଣ ଉତ୍ତର ଦେବି ? ମୁଁ କ'ଣ କହି ପାରିବି ଯେ ମୁଁ ସରିତା ନାମ୍ନୀ ଗୋଟିଏ ଗେଡ଼ୀ, ହୁଣ୍ଡୀ (ବାଳିକା ବାଳିକା ନୁହେଁ, ଧରିବୃଢ଼ୀ)କୁ ଭଲେ ଗଢ଼େଇ ଦେବାକୁ ଚାହେଁ ?···

ଏଥର ତାଙ୍କୁ ସତସତିକା ହସ ମାଡ଼ିଲା । ସେଇ ଦୃଶ୍ୟର ସ୍ଥୂଳତାକୁ ମନେ ପକାଇ । ହେଲେ ତାଙ୍କୁ ପରେ ପରେ ଦୁଃଖ ଲାଗିଲା ଯେ ରୂପକଳ୍ପର ଏଇ ସ୍ଥୂଳତାହିଁ କମଳା ପାଖରେ ପହଞ୍ଚି ପାରିବ, ତାର ଶ୍ଳେଷ ନୁହେଁ, ତାର ଭାବାର୍ଥ ନୁହେଁ, ଏବଂ ସେଥିରେ ଥିବା ମୋଟିଭେସନ୍—ଗରବିଣୀକୁ ଶାସ୍ତି, ସୁକୁମାରୀକୁ ଶାନ୍ତି, ଏବଂ ନିଜର କୃତକୃତ୍ୟ ଭାବ । ମହତ୍ ଉଦ୍ଦେଶ୍ୟର ତ୍ରିମୂର୍ତ୍ତି ।

…ଆଃ ! ସେ କ'ଣ ଏଇ କଥାମାନ ଅନ୍ୟ ଭାବରେ କହି ପାରି ନ ଥାଆନ୍ତା ? ମାନେ ଛଳଛଳ ଆଖିର ଅଭିମାନକୁ ନେଇ ? ଲଙ୍ଗଳା ନିଆଁର କ୍ରୋଧ ନୁହେଁ, ଉଷୁମ ସ୍ନେହର କାରୁଣ୍ୟକୁ ନେଇ ? ତା'ହେଲେ ହୁଏତ ମୁଁ ତରଳି ଯାଇଥାଆନ୍ତି ଓ ମୋର ନିଷ୍ପତ୍ତି ବଦଳେଇ ଦେଇ ପାରନ୍ତି । କିନ୍ତୁ ମୁଁ ଜାଣେ ସେ ସେମିତି କରିବ ନାହିଁ, କଦାପି କରିବ ନାହିଁ…

କମଳା ଦେବୀ ଭିନ୍ନ ରୂପ ଧାରଣ କରିବାର ପ୍ରଶ୍ନ ଉଠିଲା ନାହିଁ । ତେବେ ନୂଆଦିଲ୍ଲୀ ଷ୍ଟେସନରେ ତାଙ୍କୁ, ଟ୍ରେନ୍‌ରେ ବସେଇ ବିଦାୟ ନେଲା ବେଳକୁ ମନୁବାବୁ ନିଜେ ଯେଉଁ ରୂପ ଦର୍ଶାଇଥିଲେ ତାଙ୍କୁ, ତାକୁ ମଧ୍ୟ ସେ ଗ୍ରହଣ କଲେ, ଅନ୍ତତଃ ସତ ବୋଲି ମଣିଲେ କି ନାହିଁ କହି ହେବ ନାହିଁ । କାରଣ ସେଥିରେ ଥିଲା ବୁଦ୍ଧଙ୍କର ବିଷାଦ ଓ ନୀଳକଣ୍ଠଙ୍କର ବିଷପିଆ ବୀରତ୍ୱର ଏକ ବିଚିତ୍ର ସମାବେଶ, ଯାହା କମଳା ଦେବୀଙ୍କୁ ମୋଟେ ଭଲ ଲାଗିଲା ନାହିଁ । ବରଂ ଗୋଟାଏ ଦୋଷୀଭାବ ଆଣିଦେଲା ତାଙ୍କ ମନରେ, ଯାହାକୁ ସେ ସ୍ୱୀକାର କରିବାକୁ ଚାହିଁଲେ ନାହିଁ । ତେଣୁ ସେ ନିଜକୁ ସଙ୍କୁଚିତ କରି କହିଲେ—'ଓକେ, ଥ୍ୟାଙ୍କ୍‌ସ୍ । ଆଶା କରୁଛି ତମ ସମାଜ ସେବା ସରିଥିବ ଶୀଘ୍ର…'

ଦିଲ୍ଲୀ ଅଧିବାସୀ ନରେଶଦାଦା ମନୁବାବୁଙ୍କର ମହତ୍ ଉଦ୍ଦେଶ୍ୟକୁ ଧନ୍ୟ ଧନ୍ୟ କହିଲେ । ଅରୁ ମନେ ମନେ ହସିଲା । କାହିଁକିନା ସେ ବୁଝି ନେଇଥିଲା ଜିନିଷଟା କଅଣ । ମନୁଭାଇ କାହିଁକି ରହିଗଲେ ଦିଲ୍ଲୀରେ, ଓ ତାଙ୍କ ସମାଜସେବାର ପ୍ରକୃତ ଅର୍ଥ କଅଣ । ଏବଂ ସେ ଅଭିଭୂତ ହୋଇ ପଡ଼ିଥିଲା, ଯେ ମନୁଭାଇ ଏତେ କଷ୍ଟ କରିବାକୁ ଯାଉଛନ୍ତି ତାପାଇଁ । ଭାଉଜଙ୍କୁ ରାଗେଇଲେ ମଧ୍ୟ । ତେଣୁ ସେ ଅଣ୍ଟା ଭିଡ଼ିଲା କେମିତି ତାଙ୍କୁ ଯଥାଶୀଘ୍ର ଯଥାସ୍ଥାନରେ ପହଞ୍ଚେଇବ ଯେଉଁଠି ତାଙ୍କର ଦେଖାହେବ ସରିତାଦି'ଙ୍କ ସାଙ୍ଗରେ ।…ମୋ ଜାଣିବାରେ ସେ 'ମହିଳା ଦକ୍ଷତା ସମିତି'ର ଜଣେ ଟାଣୁଆ ମେମ୍ବର, ତା'ଛଡ଼ା ତାଙ୍କର କାରବାର ଅଛି 'ସଞ୍ଜୀବନୀ' ସାଙ୍ଗରେ ଯେଉଁଠି ସେମାନେ ବ୍ରତ ନେଇଛନ୍ତି ଦୁଃଖିମାନଙ୍କ ଲୁହ ପୋଛିବା ପାଇଁ (ଯେତେକ ଭଣ୍ଡାମି !), ଆଉ ସେଇ ଯେଉଁ ସଂସ୍ଥା ଅଛି ଅନାଥ ଅରକ୍ଷିତ ପିଲାଙ୍କ ପାଇଁ, ଏସ୍. ଓ. ଏସ୍. ଚିଲ୍‌ଡ୍ରେନ୍‌ସ୍ ଭିଲେଜସ୍ ଅଫ୍ ଇଣ୍ଡିଆ…

ସାମ୍ବାଦିକତାରେ ତାଲିମ ପାଇଥିବା ଅରୁନ୍ଧତୀକୁ ବିଶେଷ ସମୟ ଲାଗିଲା ନାହିଁ, ମନୁବାବୁଙ୍କୁ ଆଡ୍‌ଭୋକେଟ୍ ସରିତା ନାଏକଙ୍କ ସାଙ୍ଗରେ ଭେଟ କରେଇବା ପାଇଁ । ଆଡ୍‌ଭୋକେଟ୍ ? ମନୁବାବୁ ପ୍ରଥମେ ଟିକିଏ ଆଶ୍ଚର୍ଯ୍ୟ ହୋଇଥିଲେ ଯେ ସମାଜସେବିକା ହେବା ଛଡ଼ା ସେ ମଧ୍ୟ ଜଣେ ଓକିଲ । ଯେଉଁଥିରେ ଅରୁ ହସି ଉଠିଥିଲା । କେଡ଼େ ଭୋଳା ଆମ ମନୁଭାଇ ମ ! କହିଲା—ନହେଲେ

ପଲ୍ଲୀରେ ଏକୁଟିଆ ରହୁଛନ୍ତି କେମିତି ? ସମାଜସେବାରୁ କ'ଣ ପଇସା ମିଳେ ?

କିନ୍ତୁ ମନୁବାବୁଙ୍କ ମନରେ ଆସୁଥିଲା ଯେ ପିଲାଦିନେ ଯେତେ ଚୁଣ୍ଡୀ, ଗେଡ଼ୀ, ଓ ମାଂସଳା ଥିଲେ ମଧ୍ୟ ଯେଉଁ ନାରୀ କେବଳ ସମାଜସେବିକା ନୁହେଁ, ମଧ୍ୟ ଜଣେ ଆଇନ୍‌ଜୀବୀ, ତାର ଶୁଷ୍କତାରେ ଖାଲି ପିତା ନଥିବ, ମଧ୍ୟ ଥିବ ତାର ଆକ୍ରମକ ଚେହେରା, ଆସାମୀକୁ ଜେରା କରିବାର ଭଙ୍ଗୀ ।

ଅରୁ ଦୁହିଁଙ୍କ ଭେଟାଭେଟି କରାଇଲା ନୂଆଦିଲ୍ଲୀର ପ୍ରେସ୍ କ୍ଲବ୍‌ରେ । ସାମ୍ବାଦିକତାର ଧନ୍ଦା ଛାଡ଼ି ଦେଇଥିଲେ ମଧ୍ୟ ଅରୁ ସାମ୍ବାଦିକମାନଙ୍କର ଏଇ ଆଖଡ଼ା ଘରର ମୋହ ଛାଡ଼ି ପାରି ନଥିଲା । ତା'ଛଡ଼ା ସରିତାଦି'ଙ୍କୁ ଠାବ କରିବା ମୁସ୍କିଲ୍, ତାଙ୍କ ଘରେ କି ବିଭିନ୍ନ କର୍ମସ୍ଥଳୀରେ । ବରଂ ତାଙ୍କୁ ଏଇଠିକି ନିମନ୍ତ୍ରଣ କରି ଆଣି ବିଶ୍ରାମର ଯତ୍‌ସାମାନ୍ୟ ସୁଯୋଗ ଦେଲେ ଭଲ ହେବ ବୋଲି ସେ ସ୍ଥିର କଲା । ପୁଣି ଲୋଭ ଦେଖାଇଲା ପରି କହିଲା ଫୋନ୍‌ରେ—"ଆପଣଙ୍କୁ ଗୋଟାଏ ସରପ୍ରାଇଜ୍ ଦେବି । ଜଣଙ୍କ ସାଙ୍ଗରେ ଚିହ୍ନା କରେଇ ଦେବି, ଯାହାଙ୍କୁ ଆପଣ ଚିହ୍ନିଛନ୍ତି, ହେଲେ ଭୁଲି ଯାଇଥିବେ । ଅନେକ ଅନେକ ଦିନ ତଳର ବନ୍ଧୁ..."

ଦେଖା ତ ହେଲା । କିନ୍ତୁ କ'ଣ ହେଲା ? ମାନେ ଏଇ 'ପ୍ରଥମ' ଦେଖାରେ ମୋର ତଥାକଥିତ ପୁରୁଣା ବନ୍ଧୁ ଏବଂ ବର୍ତ୍ତମାନର ଶତ୍ରୁ କେଉଁ ପ୍ରକାର ବାର୍ତ୍ତା ପଠେଇଲେ ମୋ ପାଖକୁ ? କେଉଁ ପ୍ରକାର ସିଗ୍‌ନାଲ୍ ? ...ମନୁବାବୁ ଏଇ ପ୍ରଶ୍ନ ପଚାରି ଦେଲେ ନିଜକୁ, ସାକ୍ଷାତର ପର୍ବ ସରିଗଲା ପରେ ।

...ମୁଁ ଆଦୌ ଆଶା କରି ନଥିଲି (ମଧ୍ୟ ଚାହିଁ ନଥିଲି) ଯେ ସେ ଆନନ୍ଦବିସ୍ମୟରେ ବିଭୋର ହୋଇଯିବ । ତେଣୁ ସେଦିଗରୁ ନିରାଶ ହେବାର କୌଣସି କାରଣ ନାହିଁ । ଅଥଚ ମୁଁ କହିବି ନାହିଁ ଯେ ତାର ଆଚରଣରେ ଛାଡ଼-ଛାଡ଼ ହେମାଳ ଭାବ ଥିଲା । କାରଣ ସେ ହସିଥିଲା, ଖୁସି ହେଲା ପରି । କିନ୍ତୁ ପିଲାଦିନର ସଙ୍ଗସୁଖ କଥା ମନେ ପକେଇ ଦେଲାରୁ ସେ ଯେମିତି ଭାବରେ ହସିଲା, ସେଥିରୁ ମନେ ହେବ ଯେ ତାକୁ ସକାଳୁ ସକାଳୁ ଏଭଳି ହାସ୍ୟାସ୍ପଦ କଥାଟିଏ ଶୁଣିବାକୁ ଥିଲା !

ସେମିତି ଗେଡ଼ୀଟିଏ ହୋଇ ଅଛି । କିନ୍ତୁ ସାଦ୍‌ନା ରଙ୍ଗ ଆଗ ଭଳି ମଧୁଆ ଦିଶୁ ନାହିଁ । ଖାସୁରୁ ଖାସୁରୁ ମନେ ହେଉଛି । ଆଖିରେ ଚଷମା ପିନ୍ଧିଛି । କିନ୍ତୁ କାଚରେ ପାୱାର୍ ଅଛି, ନା ସେ ତା' ଭାସ୍ପତାର ଅବଗୁଣକୁ

ଯୋଡ଼େଇବାକୁ ଗ୍ଭହେଁ, କଏ ଜାଣିଛୁ ? ଅବଶ୍ୟ ହସହସ ଭ୍ଭବ ବସା ବାନ୍ଧିଛୁ ତା' ମୁହଁରେ, ଯାହା ପିଲ୍ଦିନେ ନଥିଲ୍ । କନ୍ତୁ ତାକୁ ମୁଖା କୁହାଯାଏ, ସମାଜସେବକାର ଅନ୍ୟତମ ଅସ୍ତ୍ର, ତମକୁ ନିରସ୍ତ୍ର କରିବା ପାଇଁ ।

ହେଲ୍ । କନ୍ତୁ କେଉଁଠି କେମିତ ଲୁଚେଇ ରଖିଛୁ ତା' ପିତାଫଳ ? ଦେଖିଲେ ସିନା ମୁଁ ତାକୁ ଧର୍ ପକେଇ ଦେବ ? ଆଉ ତାଳି ମାରି ହସିବ ?

ଆଃ ! ପ୍ରଥମ ଦେଖାରେ ଏତେ ଅସ୍ଥିର ହେଲେ ଚଳବ ନାହିଁ । ନିଶ୍ଚୟ ସନ୍ଧାନ ମିଳବ ତା' ପିତା-ଶୁଖିଲ ଚରିତ୍ରର, ନଷ୍ଟ ନାଗ୍ଭିତ୍ରର ଓ ପୁଞ୍ଜିଭୂତ ହତାଶାର, ଯେଉଁଥିପାଇଁ ସେ ଏମିତ ନିଷ୍ଠୁର ହୋଇ ପାରିଲେ । ଆଉ ଟିକଏ ବଢ଼ୁ ଆମର ମିଳାମିଶା, ସମାଜସେବାର ସାହଚର୍ଯ୍ୟ ସେଇଠୁ ଦେଖିବ ମୁଁ କେମିତ ତା' ମେଣ୍ଢାଚମକୁ ଉତାରି ତଳେ ଫିଙ୍ଗିଦେବ । ···ଏହି ଭ୍ଭବରେ ମନୁବାବୁ ନିଜକୁ ବୋଧ ଦେଇ ପାରିଲେ ।

ଯାହାହେଉ ସେଇ ପ୍ରଥମ ଦେଖାରେ ସରିତା ନାଏକ ତାଙ୍କୁ ସ୍ୱାଗତ ଜଣାଇଲେ ତାଙ୍କ ସମାଜ ସେବାରେ ଯୋଗ ଦେବା ପାଇଁ । ଏବଂ ତତ୍‌କ୍ଷଣାତ୍ ତାଙ୍କ ଚମଡ଼ାବ୍ୟାଗ୍‌ରୁ ନୋଟ୍ ବହି ଖଣ୍ଡେ କାଢ଼ି ଆଣି କେବେ କେଉଁ ଜାଗାକୁ ଗଲେ ଭଲ ହେବ, କେଉଁ କାମରେ ତାଙ୍କର ସାହାଯ୍ୟ ଲୋଡ଼ା ହୋଇପାରେ, ଇତ୍ୟାଦିର ଚଠା ପ୍ରସ୍ତୁତ କରି ବସିଲେ ।

ଏତେ ତତ୍ପର ! ମନମୋହନବାବୁ ତାଙ୍କୁ ମନେ ମନେ ଛଗୁଲେଇଲେ, ଓ ତାଙ୍କ ନିଷ୍ପତ୍ତିକୁ ଦୋହରେଇ ହେଲେ ।

କନ୍ତୁ କ୍ରମଶଃ, ମେଣ୍ଢାଚମକୁ ବାରମ୍ବାର ଉତାରି ଫିଙ୍ଗିଦେଲେ ମଧ୍ୟ, ସେ କଳ୍ପନାରେ ପିଲ୍ଦିନର ସେଇ ସତ-ମିଛ ଦୃଶ୍ୟକୁ ଆବାହନ କରିପାରିଲେ ନାହିଁ । ଦୁର୍ବିନୀତା ଖେଳସାଥୀକୁ ତଳେ ଗଡ଼େଇ ଦେବାର ଦୃଶ୍ୟ । ମନେହେଲ୍ ଯେ ଇଏ ସିଏ ନୁହେଁ, ଆଉ ଜଣେ । ଏବଂ ତା' ସାଙ୍ଗକୁ ଆଉ ଗୋଟିଏ ଧାରଣା ତାଙ୍କ ମନକୁ ଆସିଲ୍, ଯାହାକୁ ସେ ଆଦୌ ବରଦାସ୍ତ କରିପାରିଲେ ନାହିଁ । ଯେ ସେ ବ ତାଙ୍କୁ ତଳେ ଗଡ଼େଇ ଦେବାକୁ ଗ୍ଭହିଁବ ନାହିଁ । ପାରିବ ନାହିଁ ବୋଲି ନୁହେଁ । ଭ୍ଭବିବ ସେଥିରେ ସୁଖ ନାହିଁ କ ଯଶ ନାହିଁ ।

କହିବା ବାହୁଲ୍ୟ ଯେ ମନୁବାବୁଙ୍କୁ ଏଇ ସମାଜସେବା କାରବାର ମୋଟେ ଆରେଇଲ୍ ନାହିଁ । ତଥାପି ସେ ମନୋଯୋଗୀ ଗ୍ଭତ୍ର ପରି ଟିପି ରଖିଲେ, ଯାହା ଟିପି ରଖିବା ଉଚତ । ମାନେ ସେ ଯାହାର ସଦ୍‌ବ୍ୟବହାର କରିପାରିବେ ଯଥାସମୟରେ । ଯଥା—

ମୁଁ କ'ଣ ଦେଖୁନାହିଁ ତମର ଏଇ 'ମହିଳା ଦକ୍ଷତା ସମିତି'ର ମତଲବ କଅଣ ? ମତଲବ ହେଉଛି ହାତରେ ବେଲଣା ପେଲ୍ଲ ଧରିବା । ପୁରୁଷଙ୍କଠାରୁ ଯେଉଁ ପରାଭବ ମିଳିଛି ତମକୁ—ଅଧିକାଂଶରେ ତମେ ହିଁ ଦାୟୀ ସେଥିପାଇଁ—ତାର ପ୍ରତିଶୋଧ ନେବା । ଆଉ ତମେ ହେଉଛ ତାର ଅଗ୍ରଣୀ, କାରଣ ତମର ଫ୍ରଷ୍ଟ୍ରେସନ୍ ସବୁଠୁଁ ବେଶୀ । ମୁଁ କ'ଣ ଜାଣୁନାହିଁ ସେକଥା ?

ଆଉ ତମର ଏଇ 'ସଙ୍ଗବନୀ' । ଯେତେକ ଗ୍ରେପସ୍ଥ ଏକାଜୁଟ୍ ହୋଇଛନ୍ତି ସେଠି । କ'ଣ ନା ଆମେ ଦୁଃଖିନୀମାନଙ୍କୁ ଗ୍ରୁତିକୁ ଆଉଜେଇ ଆଣିବୁ, ତାଙ୍କ ଲୁହ ପୋଛିଦେବୁ, ତାଙ୍କୁ ପରାମର୍ଶ ଦେବୁ ବଞ୍ଚିବା ପାଇଁ, ଲଢ଼ିବା ପାଇଁ । ସରିତା ବି ପୁଣି ତାର ଉପାଧ୍ୟକ୍ଷା ! ଗେଡ଼ୀର ଗ୍ରୁତି ଏମିତି କେତେ ଚଉଡ଼ା କି ?

ସେମିତିକା ତମ ହ୍ଲମ୍ ଓ୍ୱେଲ୍‌ଫେୟାର୍ ସୋସାଇଟି, ଆଣ୍ଟି-ଡାଓ୍ୱରି ଫ୍ରଣ୍ଟ୍, ତମ ସାଂସ୍କୃତିକ ଅନୁଷ୍ଠାନ 'ଆଲୋକପାତ', ଇତ୍ୟାଦି, ଇତ୍ୟାଦି । ସବୁ ସେଇ କ୍ଷମତାର ପରିଚାଳକ, ଫ୍ରଷ୍ଟ୍ରେସନ୍‌କୁ ଭୁଲିଯିବାର ଫନ୍ଦି ।

ଏବଂ ସବୁଠାରୁ ମାରାତ୍ମକ ହେଉଛି ତମେ ଯେତେବେଳେ ମିଛିମିଛିକା ମାଆ ହେବାକୁ ଚେଷ୍ଟା କର । ଯେମିତି ତମର ସେଇ ଏସ୍. ଓ. ଏସ୍. ଚିଲ୍ଡ୍ରେନ୍ସ ବଗ । କ୍ଷ'ଣ ନା ତମେ ଅନାଥ ଅରକ୍ଷିତମାନଙ୍କୁ ଖାଲି ସାହାଯ୍ୟ କରିବ ନୁହେଁ, ତାଙ୍କୁ ମାତୃସ୍ନେହ ଦେବ । ଥୋକେ ପିଲାଙ୍କୁ ନେଇ ଘରଟିଏ ଓ ପ୍ରତି ଘରକୁ ମାଆଟିଏ, ଯେମିତିକି ପିଲାଏ ଭାବିନେବେ ଯେ ଏଇ ଆମ ଘର, ଏଇ ଆମ ମାଆ । ଆ-ହା-ହା ! ଆଉ ପିଲାଙ୍କ ବାପ କୁଆଡ଼େ ଗଲେ ? ଟିକିଏ ଲଜ ନାହିଁ ତମ ମୁହଁକୁ ?

କିନ୍ତୁ ଦିନେ ଗୋଟାଏ ବିଚିତ୍ର ଘଟଣା ଘଟିଲା ସେମିତିକା ଗୋଟିଏ ଘରେ । ଗୁଲ୍‌ଲୁ ନାମକ ପାଞ୍ଚଛଅବର୍ଷର ଝିଅଟାଏ ହଠାତ୍ ଆକ୍ରମଣ କଲା ମନୁବାବୁଙ୍କୁ । କଥା ନାହିଁ ବାର୍ତ୍ତା ନାହିଁ, ପାଟି କରି ଉଠିଲା—ବା ବା ! ଏବଂ ଧାଇଁଗଲା ତାଙ୍କ ପ୍ୟାଣ୍ଟ୍‌ରେ ମୁହଁ ଘଷିବା ପାଇଁ ।

ମନୁବାବୁ ଚହଟ୍ଟିଙ୍କି ଉଠି ଘୁଞ୍ଚିଗଲେ ପଛକୁ । ଆଶୁ ପ୍ରତିକ୍ରିୟା । ସ୍ୱାଭାବିକ । ଯଦିଓ ଝିଅଟା ଦାନ୍ତୁରୀ, ନାକ ସୁଁ ସୁଁ କରୁଛି, ଏବଂ ତା' ମିଞ୍ଜି ମିଞ୍ଜି ଆଖିରେ ଫାଙ୍କ ବୋଲି ଟିକିଏ ନାହିଁ, ତେଣୁ ତା'ର ସଂଘାତ ସହଜେ ପ୍ରୀତିକର ହୋଇ ନଥିବ ।

ଘଟଣା ବିସ୍ମୟକର । କିନ୍ତୁ ଅଧିକ ବିସ୍ମୟର ବିଷୟ ଯେ ଯେଉଁମାନେ ଥିଲେ ସେଠି ସେତେବେଳେ, ଯଥା ସରିତା ବି ସେଇ ଘରର 'ମାଆ' ରମା କୌର୍, ଏବଂ ଅନ୍ୟମାନେ, କାହାରି ମୁହଁରୁ କଥାଟିଏ ବାହାରିଲା ନାହିଁ,

କ ଆମୋଦର ସାମାନ୍ୟତମ ସ୍ଫୁରଣ । ସତେକି ଇଏ ଏକ ଗୁରୁଗମ୍ଭୀର ବ୍ୟାପାର ।

ମନୁବାବୁ ବଳାବଳ ହୋଇ ଅନେଇଲେ ସେମାନଙ୍କ ଆଡ଼କୁ । ଈଷତ୍ ବିରକ୍ତ ହୋଇ । ତେଣୁ ସେ ଝିଅର ଗୃହାଣିକୁ ପ୍ରଥମେ ଲକ୍ଷ୍ୟ କରିପାରିଲେ ନାହିଁ । କେମିତି ସେ ମୁହଁ କରିଛି ମାଡ଼ ଖାଇଲା ପରି । ହେଲେ ବୁଝିପାରୁ ନାହିଁ ତା'ର ଦୋଷ କଅଣ । ଦେଖିଲାରୁ ତାଙ୍କ ମନରେ ଦୟା ଆସିଲା, କିନ୍ତୁ ଏତେବେଳକେ ସେ ତାଙ୍କ ଦୟାକୁ ନେଇ କ'ଣ କରିବେ ବୋଲି ଭାବି ପାରିଲେ ନାହିଁ ।

ପରେ ସେ ବୁଝିଲେ ଯେ ଝିଅଟାର ସତରେ କିଛି ଦୋଷ ନଥିଲା, ଯେତେବେଳେ ଦିନ ଦି'ପହରେ ସେମାନେ ପଶି ଆସିଲେ ତାଙ୍କ ଘରେ, ତା' ବାପମାଆଙ୍କୁ ଘୋଷାରି ଆଣିଲେ ପଦାକୁ ଓ ଗୁଳି କରି ମାରିଦେଲେ ତା' ଆଖି ଆଗରେ । ଦଳେ ମୁଖାପିନ୍ଧା ଅଙ୍କଲ୍ । ତା'ପରେ କ'ଣ ହେଲା, ମରିଗଲା ପରେ ବାବା ମା କୁଆଡ଼େ ଗଲେ, ସେ ବିଷୟରେ ତାକୁ କିଛି ବୁଝାଗଲା ନାହିଁ । ଯେତେ ଭେଁ ଭେଁ ହୋଇ କାନ୍ଦିଲେ, ଗୋଡ଼ କଚାଡ଼ିଲେ ବି କେହି ତା' କଥା ଶୁଣିଲେ ନାହିଁ । ତା' ପ୍ରଶ୍ନର ଉତ୍ତର ଦେଲେ ନାହିଁ । ତାକୁ କୋଉ ଗୁରୁଦ୍ୱାରାକୁ ଟେକି ନେଇ ଗଲେ । ଏବଂ ମାସକ ପରେ ନୂଆ ଘର, ନୂଆ ମାଆ···

"କିନ୍ତୁ—କିନ୍ତୁ ସେ ମୋ ପାଖକୁ କାହିଁକି ଧାଇଁ ଆସିଲା ଏମିତି ବା'ବା-ବାବା ହୋଇ ? ଏମିତି କ'ଣ କୁହେ ଆଉ କାହାକୁ ?"

"ନା !" ମଦର ରମା କୌର୍ ତା'ର ଦୃଢ଼ ଉତ୍ତର ଦେଲେ । "କିନ୍ତୁ ଆପଣ ବୋଧହୁଏ ତାର ବାପା ପରି ଦେଖାଯାଉଛନ୍ତି ।" ସେଇଠୁ ଯେଉଁ ହାସ୍ୟ ରେଖାଟିଏ ଫୁଟି ଉଠିଲା ତାଙ୍କ ମୁହଁରେ ଏବଂ ଅଳ୍ପବହୁତ ଅନ୍ୟମାନଙ୍କ ମୁହଁରେ, ସେଥିରେ ମଧ୍ୟ ଲେଶମାତ୍ର ଆମୋଦ ଥିଲା ପରି ମନେ ହେଲା ନାହିଁ ।

ମୋତେ ଭାବିଲା ତା' ବାପା ବୋଲି ? ପଞ୍ଜାବ ଗାଆଁ ଗହଳର କେଉଁ ଜାଟ୍ କିସାନ୍, ଲମ୍ବାଚଉଡ଼ା ମର୍ଦ୍ଦ ଟାଏ ହୋଇଥିବ ନିଶ୍ଚୟ, ଯାହାକୁ ଆତଙ୍କବାଦୀମାନେ ଖତମ୍ କରିଦେଲେ, ମୁଁ ତା' ଭଳି ଦେଖାଯାଉଛି ! ହେ ଭଗବାନ୍ ! ମନୁବାବୁ ଏଇ ଅପାର ବିସ୍ମୟକୁ ଗୁଣି ହେଲେ ମନେ ମନେ । ଏବଂ ଅନେକ ଦିନ ଯାଏଁ ସେ ପୁଣି ସେଇ 'ହୋମ୍'କୁ ଯିବାର ସାହସ ବାନ୍ଧି ପାରିଲେ ନାହିଁ ।

ତେବେ ଦିନ ପରେ ଦିନ ସେ ଗୋଟାଏ ଧାରଣାକୁ ବଢ଼େଇବାକୁ ଲାଗିଲେ ଯେ ଦେହର ଗଢ଼ଣ କି ନାକ ଆଖିର ଆକାରପ୍ରକାରରେ କିଛି ଯାଏ ଆସେ ନାହିଁ । ଅସଲ ହେଉଛି ବାପପଣିଆର ପ୍ରକାଶ, ତାର ସ୍ନେହସିକ୍ତ ସ୍ନିଗ୍ଧ ଜ୍ୟୋତି । ଗୃହାଣିର

ସଗଗରେ ହେଉ, ଓଠର ଚୁମ୍ବାଦିଆ ପୋକରେ ହେଉ, କିମ୍ବା ମୋ ସମଗ୍ର ବ୍ୟକ୍ତିତ୍ୱର ବାତ୍ସଲ୍ୟ-ମଧୁର କୋମଳ ଭାବରେ, ଯାହା ବୋଧହୁଏ ମିଶି ଯାଉଛି ତା' ବାପା ସାଙ୍ଗରେ । ଭାବିଲେ—କାହିଁକି ହେବ ନାହିଁ ? ବାଲୁ ଯେତେବେଳେ ପିଲା ଥିଲା, ସେ ନ ଶୋଇ ଚୁହିଁ ବସିଥାଏ, ମୁଁ କେତେବେଳେ ଆସି ବସିବି ତା' ପାଖରେ, ତା' ମୁଣ୍ଡବାଳକୁ ସୁଲୁସୁଲୁ କରିବି, ଗୁଣୁଗୁଣୁ ହେବି···ସେଇଠୁଁ ଯାଇଁ ସେ ଆଖି ବୁଜିବ । ଆଉ ତା' ସାନ ଭଉଣୀ ଟିକି ତ ମୋତେ ଜାକି କରି ଶୋଇବ, ସେଇ ମୋ ଛାତିବାଳକୁ ସୁଲୁସୁଲୁ କରିବ, ପରସ୍ତେ ଗେଲ ହେବ ମୋ ସାଙ୍ଗରେ, ତାପରେ ଯାଇଁ ଥକିଗଲାରୁ, ଶୋଇପଡ଼ିବ । ହବାସାନ କନ୍ତୁଟା ଅବଶ୍ୟ ଟିକିଏ ବେଶି ମାଆ-କୋଳପଣା । କିନ୍ତୁ କମଳା ଯାହା କହୁ ପଛେ—ସେ ନିଜେ ବେଳେବେଳେ ବୁଝେ ନାହିଁ କି ଯେ ମୁଁ ମାଆକୁଳୁଡ଼ା ପରି ଗୋଡ଼େଇଥାଏ ମୋ ବୁଆଙ୍କ ପଛରେ ? —ମୋର ବାପପଣିଆ ସାମାନ୍ୟ ସାଧାରଣ ନୁହେଁ । ତେଣୁ ବାପଛେଉଣ୍ଡ ପିଲାଟା ଭୁସ୍‌କିନା ଧାଇଁଆସିଲା ମୋ ପାଖକୁ, ଓ ମୋତେ କୁଣ୍ଢେଇ ଧରିଲା, ଏଥିରେ ଏମିତି କିଛି ଆଶ୍ଚର୍ଯ୍ୟ ହେବାର ନାହିଁ ।

ଏହି ପ୍ରକାର ମନୋଭାବରେ ଆପ୍ଳୁତ ହୋଇ ମନୁବାବୁ ଶେଷକୁ ଗଲେ ଦିନେ ସେଠିକି, ଯଦିଓ ସେଇ ହୋମ୍‌ରେ ତାଙ୍କର କିଛି କାମ ନଥିଲା । ସାଙ୍ଗରେ ଗୋଟିଏ ଚକୋଲେଟ୍ ବାର୍ ନେଇ ଯାଇଥିଲେ ଗୁଲ୍‌ଲୁକୁ ମନେଇବା ପାଇଁ । ତାର ଆହତ ଆତ୍ମାକୁ ବୋଧ ଦେବା ପାଇଁ । ଭାବିଲେ, ପ୍ରଥମେ ଟିକିଏ ହସିବି ଦୂରରେ ଥାଇ, ଆ' ମୋ ପାଖକୁ ଆ' ବୋଲି ଧୀରେ ଧୀରେ ମୁଣ୍ଡ ଟେଙ୍ଗାରିବି, ସେଇଠୁଁ ହାତ ବଢ଼ାଇବି······

କିନ୍ତୁ ମାନଭଞ୍ଜନର ପଦ୍ଧତିକୁ ଏତେ ଦୂର ଲମ୍ବେଇବାକୁ ପଡ଼ିଲା ନାହିଁ । ଗୁଲ୍‌ଲୁ ପ୍ରଥମେ ଟିକିଏ ଡରୁଥିଲା ଅବଶ୍ୟ । ହେଲେ ମନୁବାବୁଙ୍କ ମଧୁରିଆ ହସରେ ହିଁ ସେ ବଶ ହୋଇଗଲା । ଧୀରେ ଧୀରେ ପାଖେଇ ଆସିଲା । ଏବଂ 'ଆଓ···' ବୋଲି ଡାକିଲା ଖଣି ସେ ଲମ୍ଫ ଦେଲା ତାଙ୍କ ଉପରକୁ । ମନୁବାବୁ ଆବିଷ୍କାର କଲେ ଯେ ଝିଅଟାକୁ ପ୍ରକୃତରେ ଅସୁନ୍ଦର କୁହାଯିବ ନାହିଁ । ନାକଟି କୁନୁମୁନିଆ । ଆଉ ଖୋଲା ଆଖିରେ ଯେଉଁ ସାମାନ୍ୟ ଫାଙ୍କଟିଏ ଦିଶେ, ସେଇଥିରେ କେତେ କଥା, କେତେ ହସ, କେତେ ଉଦ୍‌ବେଗ, ତା' ବାପକୁ ପୁଣି ଫେରି ପାଇବ ବୋଲି !

ସେଇଦିନଠୁଁ ଆରମ୍ଭ ହେଲା ମନୁବାବୁଙ୍କ ସ୍ଖଳନ ।

ଅର୍ଥାତ୍ ମିଛରେ ହେଉ କି ସତରେ, ସେ ଯେଉଁ ସମାଜସେବା କରିବାକୁ ଆସିଥିଲେ, ତାର ଜମା ମୋଟେ ଆଗେଇଲା ନାହିଁ । ସରିତା ଯେଉଁସବୁ କାମ

ବଢେଇ ଥାଆନ୍ତି ତାଙ୍କୁ, ଯଥା—ମିରଟ୍‌ରେ ସେଇ ଯେଉଁ 'ବୋହୂ ଜଳା' କେସ୍‌ଟା, ସେଥିପାଇଁ ଅମୁକ ଓକିଲ ସାଙ୍ଗରେ ଦେଖା କରିବା କଥା, 'ସଞ୍ଜୀବନୀ'ର ନୂତନତମ ଦୁଃଖିନୀକୁ ସାଙ୍ଗରେ ଧରି ଏଂପ୍ଲଏମେଣ୍ଟ ଏକ୍‌ସ୍‌ଚେଞ୍ଜ୍‌ରେ ତା' ନାଆଁ ରେଜିଷ୍ଟ୍ରି କରିବାକୁ ପଡ଼ିବ, ଏସ୍ ଓ. ଏସ. ପାଇଁ ଆଉ କେତେଜଣ ଦାତା ଠିକଣା କରିବାକୁ ପଡ଼ିବ, କେତୋଟି ପେଟୁଆ ଆଗ୍ରହୀଙ୍କର ନାଆଁ, ଠିକଣା ଆଦି ମଧ୍ୟ ସେ ଟିପି ରଖିଥିଲେ ସରିତାଙ୍କ ଠାରୁ···ଇତ୍ୟାଦି ଯାବତୀୟ ଦରକାରୀ କାମ ବାକୀ ପଡ଼ିଲା । କାହିଁକିନା ସେଇ ସୁଦୂର ଏସ୍ ଓ. ଏସ୍. ହୋମ୍‌ରେ ଥିବା ଗୁଲ୍‌ଲୁ ସାଙ୍ଗରେ ଦେଖା ହୋଇ ନାହିଁ କେବେଠୁଁ । 'ପାନ ଦଉ, ଗୁଆ ଦଉ···' ବାଦେ ଆଉ କେଇଟା ଓଡ଼ିଆ ଖେଳ ବି ତାକୁ ନଶିଖେଇଲେ ଚଳିବ ନାହିଁ । ତାଛଡ଼ା କାଲି ପୂନେଇଁ ଅଛି । ସଞ୍ଜ ବୁଡ଼ୁ ବୁଡ଼ୁ ଗୋଲ ଜହ୍ନ ଉଠି ଆସିବ ଆକାଶରୁ । ମୁଁ ତାର ପରିଚୟ କରେଇ ଦେବି ଗୁଲ୍‌ଲୁ ସାଙ୍ଗରେ, ଆଉ ଗୁଲ୍‌ଲୁକୁ ଶିଖେଇବି ଆମର ସେଇ ନିତ୍ୟନୂତନ ପିଲାଙ୍କ ଗୀତ—ଆ' ଜହ୍ନମାମୁଁ ଶରଦଶଶୀ···

କହିବାକୁ ଗଲେ ତାଙ୍କ ସମାଜସେବାର ଭିତିର ଉଦ୍ଦେଶ୍ୟ ବି ଭୁଲି ହୋଇଗଲା ବୋଲି କହିଲେ ଭୁଲ୍ ହେବ । କାରଣ ସେ ତଥାପି ଲକ୍ଷ୍ୟ କରୁଥାଆନ୍ତି ସରିତା ନାଏକର ସ୍ପର୍ଦ୍ଧା, ସେ ଯେଉଁ ଟାଣ ଟାଣ କଥା କହୁଛି ବିଭିନ୍ନ ସଂସ୍ଥାର କର୍ମୀମାନଙ୍କୁ, ଅନାଥ ପିଲାଙ୍କ ଖବରଅନ୍ତର ପଚାରୁଛି ସିନା, ତାଙ୍କୁ ଥରେ ହେଲେ ଆଉସି ଦେଉ ନାହିଁ, କି ତାଙ୍କ ମୁହଁକୁ ଚାହିଁ ହସୁନାହିଁ । ସତେକି ସେ ଗୋଟାଏ ଦରମାଖିଆ ମାଟ୍ରନ୍ କି ମାଷ୍ଟ୍ରାଣୀ ! ସେଇଠୁଁ ସେ ସାବାସ୍ ଦିଅନ୍ତି ନିଜକୁ—ମୁଁ କହୁ ନଥିଲି ! ଫ୍ରଷ୍ଟ୍ରେସନ୍, ଫ୍ରଷ୍ଟ୍ରେସନ୍, ଇଏ ହେଉଛି ତାର ଫଳ, ପେନ୍ଟି ପେନ୍ଟି ନିମ୍ବଫଳ । ଖାଲି ତିକ୍ତତା ନୁହେଁ, ନେଗେଟିଭ୍ ତିକ୍ତତା, ଆମ୍ବାଦାନ୍ତି । ମୁଁ ଦିନେ କହିବି ଯେ, କହିବି । ତାକୁ ଶିକ୍ଷାଦେବି ଆଉ ଅରୁକୁ ବଖାଣିବି, ତା' ମୁହଁ କେମିତି ଦେଖାଗଲା ସେତେବେଳେ, ତା' ଗଉଁ କେମିତି ଗୋଟିପଣେ ତରଳିଗଲା, ବିଲବିଲ ଦିଶିଲା । ହେଲେ ଏଇ ମନୋରମ ଦୃଶ୍ୟର କଳ୍ପନା ଆସି ରୁନ୍ଧିଯାଏ କେଉଁ ଭବିଷ୍ୟତର ପୂର୍ତ୍ତି ପାଇଁ । ବେଳ ହୋଇଗଲାଣି । ଆଙ୍କପରି ଗୋଟାଏ ସୁପୁରିବାଲା ଇଂଜିନ୍ ଆଣି ଦେବାର ଥିଲା ଗୁଲ୍‌ଲୁ ପାଇଁ ?

କିନ୍ତୁ ଭବିଷ୍ୟତ ହଠାତ୍ ଦିନେ ସ୍ଥୂଳ ସବଳ ହୋଇ ଠିଆହେଲା ତାଙ୍କ ଆଗରେ । ଦୈତ୍ୟବତ୍ । କାହିଁକିନା ସରିତା ନାଏକ ଆଉ ସହି ପାରିଲେ ନାହିଁ । ପୂର୍ବରୁ କୌଣସି ସୂଚନା ନଦେଇ ମନୁବାବୁଙ୍କ ବାଟ ଓଗାଳିଲେ । "କଲ୍ୟାଣୀ" ଅଫିସ୍‌ର କରିଡ଼ର୍‌ଟାରେ, ଯେଉଁଠି ଲୋକେ ହାଉହାଉ ହେଉଥାଆନ୍ତି । ଗୋଟାଏ ଖମ୍ବ ପାଖକୁ ଆସିବା ପାଇଁ ଇସାରା କରି, ତାଙ୍କ ଆଖିରେ ଆଖି ରଖିଲେ, ଓ ପ୍ରଶ୍ନ କଲେ—

"ମନ୍ନୁବାବୁ, କ'ଣ ହୋଇଛି ଆପଣଙ୍କର ?"

"ମାନେ ?"

"ମାନେ କଅଣ ଆପଣଙ୍କୁ ବୁଝେଇବାକୁ ପଡ଼ିବ ? ନା ଆପଣ ଭାବୁଛନ୍ତି ମୁଁ କିଛି ଦେଖୁ ନାହିଁ, ଜାଣୁନାହିଁ ? (ମୁହଁରେ ବଙ୍କାଡାର ହସ । ବଦ୍ରୁପକୁ ମୁଲଏମ୍ କଲପରି) କଥା ହେଉଛି, ଗୁଲ୍‌ଲୁକୁ ଗେହ୍ଲା କଲେ କ'ଣ ସମାଜସେବା ହୋଇଗଲା ?"

ସେଇଠୁଁ ସଶବ୍ଦ ଆନୁନାସିକ ହସ । ମ୍ୟା'ଙ୍କୁ ବି କଅଣ ବଦ୍ରୁପ କୁହାଯିବ ନାହିଁ ? ମନ୍ନୁବାବୁ ରାଗିଲେ । କିନ୍ତୁ ଯେଉଁ ବେଳକାଳ, ଯେଉଁ ସୁଯୋଗକୁ ସେ ଅପେକ୍ଷା କରିଥିଲେ ଏତେଦିନ ଯାଏଁ, ସେଇଟି ହାତକୁ ଆସିଗଲାଣି ବୋଲି ଦେଖିଲେ । ଭାବିଲେ—ଏଥର ତା'କୁ କପିକରି ଦି ପଦ ନଶୁଣେଇଲେ ଆଉ ଶୁଣେଇବି କେବେ ? ନିଜକୁ ଉସ୍କେଇଲେ । ···ମ୍ୟାଡ଼ାମ୍, ତମେ କଣ ମୋର ହାକିମ ନା ଆଉ କଅଣ ଯେ ମୁଁ ତମ କଥା ମାନିବାକୁ ବାଧ୍ୟ ? ଆରେ, ସେମିତି ଅନେଇଛ କ'ଣ ମୋ ଆଡ଼କୁ, ମୋ ମନକଥା ପଢ଼ିନେଲା ପରି !

ସରିତା କହିବାକୁ ଲାଗିଲେ—"ସମାଜସେବା ଚେଣ୍ଟିମେଣ୍ଟ୍ ନୁହେଁ । ଆଖି ଛଳଛଳ କଲେ ଯଦି ସମାଜର ମଙ୍ଗଳ ହେଉଥାଆନ୍ତା, ତା'ହେଲେ ଆମ ଦେଶ କେବେଠୁଁ ସ୍ୱର୍ଗ ପାଲଟି ଯାଇଥାଆନ୍ତା । କିଛି ଖରାପ ଭାବିବେ ନାହିଁ, ମୁଁ ଯାହା କହୁଛି । ମୁଁ ଆପଣଙ୍କ ଭଲପାଇଁ କହୁଛି, ଯେମିତିକି ଆପଣଙ୍କ ସେବା ସାର୍ଥକ ହେବ । ବୁଝିଲେ ?"

ଏକ୍‌ସ୍‌କ୍ୟୁଜ୍ ମି ! ମୋର କିଛି କହିବାର ଅଛି ତୁମକୁ । ଖାସ୍ ତୁମରି ଭଲ ପାଇଁ । ଏହିପରି ଭାବରେ ମନ୍ନୁବାବୁ ନିଜକୁ ପ୍ରସ୍ତୁତ କଲେ ।

ସରିତା କହି ଗଲେ—"ଗୁଲ୍‌ଲୁକୁ ଖଣ୍ଡେ ଚକୋଲେଟ୍ ଦେଲେ, କି ତା ସାଙ୍ଗରେ ଘଣ୍ଟା ଘଣ୍ଟା ଧରି ଖେଳିଲେ ତାର ଅଭାବ ଘୁଞ୍ଚିବ ନାହିଁ । ଆପଣ କଦାପି ତାର ବାପା ହୋଇ ପାରିବେ ନାହିଁ । ସେ ବି ଆପଣଙ୍କୁ ବାପା ବୋଲି ଭାବୁଛି, ସେଭଳି ଧାରଣା ଭୁଲ୍ । ତାକୁ ଗୋଟାଏ ସହଜ ଆଶ୍ରା ମିଳିଯାଇଛି । ବାସ୍ ! କିନ୍ତୁ ସେଥିରେ ସେ ମଣିଷ ହେବ ନାହିଁ । ତାକୁ ପାଠ ପଢ଼ିବାକୁ ହେବ, ଯେକୌଣସି ତାଲିମ ପାଇ ନିଜ ଗୋଡ଼ରେ ଠିଆହେବାକୁ ପଡ଼ିବ । ଶକ୍ତ ହେବାକୁ ହେବ, ଯେମିତିକି ସେ ବଡ଼ ହେଲେ ଲଢ଼ିପାରିବ ସଂସାର ସାଙ୍ଗରେ ।

ତା'ଛଡ଼ା ଗୁଲ୍‌ଲୁ ଗୋଟିଏ ବୋଲି ଅନାଥ ନୁହେଁ ପୃଥିବୀରେ । କି ଆମ ଦେଶରେ । ଅନେକ ଅନେକ ଅଛନ୍ତି, ଯେଉଁମାନଙ୍କୁ ସୁସ୍ଥ କରିବାକୁ ହେବ, ଦମ୍ଭ ଦେବାକୁ ହେବ, ଏବଂ ପାଠଶାଠ ପଢ଼େଇ ମଣିଷ କରିବାକୁ ହେବ···

ଓଃ ! ରଖ ତମ ଭାଷଣ ! ମୁଁ କ'ଣ ଜାଣେ ନାହିଁ ସେ କଥା ? କିନ୍ତୁ ପ୍ରଥମେ ଦରକାର ଏଇ ସ୍ନେହଶ୍ରଦ୍ଧା, ଜଣକର ଆଉ ଜଣକ ପାଇଁ । ସେଇ ହେଉଛି ସବୁ ମଙ୍ଗଳର ମୂଳ । ଯାହାକୁ ତମେ ଶିଖି ପାରିଲ ନାହିଁ ଆଜଯାଏଁ । ଅଧିକନ୍ତୁ ଯାହା ମନରେ ସେଭଳି ଭାବ ପ୍ରବଳ ହୋଇ ଉଠେ, ବନ୍ଧ ଭାଙ୍ଗି ଅସରାଏ କି ଚେନାଏ ପୃଥିବୀର ଦୁଃଖକୁ ଭସେଇ ବୁଡ଼େଇ ଦେଲାପରି, ତମେ ତାକୁ ଖୁଣ୍ଟା ଦେବାକୁ ଚାହଁ । ଯେମିତିକି ଦେଇଥିଲ ଥରେ ଅରୁକୁ । ଏବଂ ତମର ଏତେ ସାହସ, ଆଜି ମୋତେ ବି ଦେବାକୁ ବସିଛ । କିନ୍ତୁ ମୁଁ ଆଜି ପାନେ ଦେବି ତମକୁ, ଜବର୍ ପାନେ, ଯାହା ତମର ମନେ ରହିବ କାଳକାଳକୁ । ମନୁବାବୁ କୁହୁଥିଲେ । ତାଙ୍କ ତମତମ ଭାବରୁ ମନେ ହେଲା ଆଉ ଡେରି ନାହିଁ, ଆଉ ରକ୍ଷା ନାହିଁ ସରିତାଙ୍କର ।

କିନ୍ତୁ ଚଷମାଧାରିଣୀ ଭାଷଣଦାୟିନୀ ଗେଡ଼ୀ ତାଙ୍କୁ ହଠାତ୍ ଆଉ ପ୍ରକାରେ ଦେଖାଗଲା । ସେ କେବଳ ଖୁଣ୍ଟା ଦେବାକୁ ଚାହୁଁ ନାହିଁ, ଅସ୍ତ୍ରଟାକୁ ତାଙ୍କ ଅନ୍ତଃସ୍ଥଳର ଗଭୀରରେ, ଆହୁରି ଗଭୀରରେ ପହୁଞ୍ଚେଇବାକୁ ଚାହୁଁଛି । ...ଦେଖୁନା' ସେ କେମିତି ସ୍ଥିର ଦୃଷ୍ଟିରେ ଅନେଇଛି ମୋତେ । କିନ୍ତୁ ଆଶ୍ଚର୍ଯ୍ୟ କଥା ଟିକିଏ ହେଲେ ଭୂରୁ କୁଞ୍ଚେଇ ନାହିଁ । ରାଗ, ଦ୍ୱେଷ, ହିଂସା ଆଦି ଭାବର ସାମାନ୍ୟତମ ଲକ୍ଷଣ ନାହିଁ ତା' ମୁହଁରେ । ବରଂ ଅପଲକ ନେତ୍ର ପରି ଗୋଟାଏ ଅବିଚ୍ଛେଦ୍ୟ ହସ ଲାଗିରହିଛି ତା ଓଠରେ । ସତେକି ସେ ଖାଲି ତାର ଦେବୀପଣକୁ ଚରିତାର୍ଥ କରୁଛି । ଶାନ୍ତ ପ୍ରାଣପଣେ ଚେଷ୍ଟା କରୁଛି ମୋଠୁଁ କ'ଣ ଗୋଟାଏ ହାସଲ କରିବ ବୋଲି । କେଉଁ ଏକ ଅଙ୍ଗୀକାର, କ୍ଷୀର କି ଅମୃତର...

ଯାହା ସେ ଚାହିଁଥିଲା ମଧ୍ୟ ଅରୁଠାରୁ । ଏମିତି କଥା କହିଲା, ଯେ ତାକୁ ମର୍ମେ ମର୍ମେ ବାଧିବ । ଏବଂ ସେ ନିଶ୍ଚୟ ବିଦ୍ରୋହ କରିବ । ରଜତ ପାଣିକୁ ଆହୁରି ଭଲ ପାଇବ । ଏମିତି ଭଲପାଇବ ଯେ...

ସେଇଆ ସେ ଚାହୁଁଛି ମୋଠୁଁ । ଯେ ମୁଁ ବିଦ୍ରୋହ କରିବ । ଗୁଲ୍‌ଲୁ ଝିଅଟାକୁ ଆହୁରି ଆହୁରି ଭଲ ପାଇବ । ଏବଂ ମୁଁ ଅନ୍ତତଃ ତା'ର ପାଖରେ ଲାଗିଯିବି, ବାତ୍ସଲ୍ୟରେ, ଦୟାରେ, କାରୁଣ୍ୟରେ...

ସତ ନା ମିଛ ?

ତମର କ'ଣ ମୁଣ୍ଡ ଖରାପ, ମନୁବାବୁ, ଯେ ତମେ ଜାଣିଶୁଣି ଗୋଟାଏ ଅପରୂପ ଉଦ୍ଦେଶ୍ୟର ମୁକୁଟ ପିନ୍ଧଉଛ ତାକୁ ? ସେ କଣ କାଟାଲିଷ୍ଟ, ଯେ ତା କାମ ହେଉଛି ନିଜକୁ ଠିକଣା ରଖି କୋଉ ପିତଳକୁ ସୁନା କରିଦେବା ? ନା ସେ ଶତ୍ରୁ ସାଜିଛି ରାବଣ ପରି, ପ୍ରେମ-ରାମଙ୍କ ହାତରେ ମରିବ ବୋଲି ? ତମେ ଏତେ ଉଦାର ନା ଏତେ ବୋକା ମ ?

କିନ୍ତୁ ମନୁବାବୁ ଏଭଳି ଚେତାବନୀକୁ ଗ୍ରାହ୍ୟ କଲେ ନାହିଁ । କହିଲେ, ମୁଁ ଯାହା ଭାବୁଛି ତାହାହିଁ ସତ । ମିଛ ହେଲେ ହୋଇଥିବ, ତଥାପି ସତ । ଗୋଟାଏ ବିଚିତ୍ର ନାରୀମୂର୍ତ୍ତି ଜୁଟିଛି ମୋତେ ଏତେଦିନକେ, ସେଇ ମୋତେ ଉଦ୍ଧାର କରିବ ।

ମୁଁ ଅବଶ୍ୟ ଲେଖି ଯାଇ ପାରିବି, କମଳା ଯାହା କହୁ ପଛେ । ଖାଲି କାରୁଣ୍ୟରେ ନୁହେଁ । ସମାନ-ସମାନ ଭଲପାଇବାକୁ ବି ହାସଲ କରିପାରିବି । ମାନେ କମଳାକୁ ପ୍ରକୃତରେ, ସମ୍ପୂର୍ଣ୍ଣରେ, ଭଲ ପାଇ ପାରିବି । ସେ ବି ମୋତେ ଭଲପାଏ ମ ! ମୁଁ ପାରିବି । ନିମ୍ବଫଳକୁ ମିଠା କରିଦେବି । ଫଳ ମାନେ ହିଁ ମିଠା, ଫୁଲମାନେ ହିଁ ସୁନ୍ଦର । ଭଲ କୋଉ ବୁଦ୍ଧିରେ ମୁହଁଟାକୁ ପିତା କରି ଚାଲିଯିବି ସଂସାରରୁ ?

ମନୁବାବୁ ଅଳ୍ପବହୁତ ମୁଗ୍ଧ ହେଲା ପରି, ଏବଂ ଅଳ୍ପବହୁତ ବିକଳ ହେଲା ପରି ଚାହିଁ ରହିଲେ ସରିତା ନାଏକଙ୍କୁ । ସତେକି ଏଥର ତାଙ୍କର ପାଳି, ଗୁଣ୍ଡୁଚିଟିଏ ହେବା ପାଇଁ !

ସରିତାଙ୍କ ହାସ୍ୟରେଖା ପ୍ରସାରିତ ହେଲା । ଏବଂ ସେ ଅଭୟ ଦେଲା ପରି ପଚାରିଲେ, ''କ'ଣ କହୁନାହାନ୍ତି, ଯାହା କହିବାକୁ ଚାହାଁନ୍ତି ?''

# ନିମ୍ବଫଳ

ମନମୋହନବାବୁ ଜଣେ କୋମଳ ସ୍ୱଭାବପନ୍ନ, ହେଲେ ଦୁର୍ବଳ ପ୍ରକୃତିର ଲୋକ । ଏହି ତଥ୍ୟଟି ସ୍ପଷ୍ଟ ହୋଇ ଉଠିଛି ତାଙ୍କ ଚରିତ୍ର ଚିତ୍ରଣରେ, ଯାହା ବୋଧହୁଏ ଲେଖକଙ୍କର ଉଦ୍ଦେଶ୍ୟ ଥିଲି । ଯାହାହେଉ ଦେଖାଯାଏ ଯେ ତିନୋଟି ନାରୀ ତାଙ୍କ ସଂସ୍ପର୍ଶରେ ଆସିଛନ୍ତି ଏଇ ଗପରେ । ତିନିଜଣଯାକ ତାଙ୍କଠୁଁ ସାନ । ସେହେତୁ ଗୋଟାଏ ହାଲୁକା ସମୀକ୍ଷା କରିବାକୁ ଇଚ୍ଛା ହେଉଛି, ଯେ କାହା ପାଖରେ ସେ କେତେଦୂର ସଫଳ ହୋଇପାରିଛନ୍ତି ତାଙ୍କର ଏଇ ଚରିତ୍ରକୁ ନେଇ ।

ଏକ—ଅରୁ । ତାକୁ ସେ ସାନଭଉଣୀ ପରି ଭଲପାଆନ୍ତି । ଏବଂ ମନେ ହେଉଛି ସେ ଦ୍ରବୀଭୂତ ହୋଇଯାଇଛନ୍ତି ତାର ଦୁଃଖରେ । ତେଣୁ ସେ ତାକୁ ସିଧାସଳଖ କହିପାରି ଥାଆନ୍ତେ ଯେ ଶୁଣ୍, ଜୀବ ତୋତେ କ'ଣ କହିଲି ଯାଏ ଆସେ ନାହିଁ, କିନ୍ତୁ ଭଲପାଇବା ବୋଲି ଗୋଟିଏ ମୂଲ୍ୟବାନ୍ ଜିନିଷ ଅବଶ୍ୟ ଅଛି ଆମ ସଂସାରରେ । ଆଉ ତାରି ଖାତିର୍‌ରେ ତୁ ଯଦି ଅଳ୍ପବହୁତ ସ୍ୱାର୍ଥତ୍ୟାଗ କଲୁ ତୋର ଭାବୀ ସ୍ୱାମୀ ପାଇଁ, ଯାହାକୁ ତୁ ଭଲପାଇ ବାହା ହେବାକୁ ଯାଉଛୁ, ସେଥିରେ ତୋତେ ମୁକ୍ତକଣ୍ଠରେ ପ୍ରଶଂସା କରିବା କଥା, ଅଟ୍ଟା କରିବାର ପ୍ରଶ୍ନ ଉଠୁ ନାହିଁ । କିନ୍ତୁ ଏତିକ ସେ ଭଲ ଭାବରେ କହି ପାରିଲେ ନାହିଁ । ଏବଂ ଯାହା କିଛି କହିଲେ, ତାକୁ ଯୁଗେ ଲାଗିଗଲା ତାଙ୍କ ମୁହଁରୁ ବାହାରି ଆସିବା ପାଇଁ । କାହିଁକିନା ସେ ଉଚିତରୁ ଅଧିକ ସମୟ ଅଟକି ଯାଇଥିଲେ ନିମ୍ବଫଳ ଠାରେ, ଏବଂ ଗୋଟାଏ ତାତ୍ତ୍ୱିକ ଭାବଭାବନାରେ ଆଲୋଡ଼ିତ ହେଉଥିଲେ । ଯେ ଏଇ ଭଲପାଇବା ଜିନିଷଟାକୁ କ'ଣ ସତ ବୋଲି କୁହାଯାଇ ପାରିବ ? ତାଙ୍କ ନିଜ ଅନୁଭୂତି ତାଙ୍କୁ ବାଧା ଦେଉଥିଲି ଏ ଦିଗରେ । ତେଣୁ ତାଙ୍କୁ ସମୟ ଲାଗିଲି ନିଜକୁ ପ୍ରସ୍ତୁତ କରିବା ଲାଗି । କିନ୍ତୁ ଅସଲ

କଥା ହେଉଛି, ଯାହାକି ମନସ୍ତତ୍ତ୍ୱ କୁହେ, ଯେ ଦୁର୍ବଳ ଚରିତ୍ରକୁ ପ୍ରାୟଶଃ ହାରିଗଲା ପରି ଲାଗେ ପାରସ୍ପରିକ ସମ୍ପର୍କକୁ ନେଇ, କାରଣ ସେ ନିଜକୁ ଯଥାବିଧି ଜାହିର୍ କରିପାରେ ନାହିଁ ଅନ୍ୟ ଜଣକ ଆଗରେ । କିନ୍ତୁ ପରାଜୟକୁ ଅସ୍ୱୀକାର କରିବାର ପ୍ରକୃଷ୍ଟ ଉପାୟ ହେଉଛି ନିଜକୁ ଭାବୁକ ବୋଲି ମନେ କରିବା, ଏବଂ କହିବା ଯେ—ମୁଁ କ'ଣ ବୁଝୁ ନାହିଁ କଥାଟା ? କିନ୍ତୁ ଛାଡ଼, ଏଇତ ପ୍ରେମ, ଏଇତ ସ୍ନେହ, ଶ୍ରଦ୍ଧା, ଭକ୍ତି, ଏଇତ ସଂସାର ! ତହୁଁ ତଥାକଥିତ ଉଦାରତା ବୋଧ, ଯାହାକି ଏକ ରକ୍ଷାକବଚ ତାଙ୍କ ପାଇଁ । କିନ୍ତୁ ଏଣେ ତାଙ୍କ କୋମଳ ହୃଦୟ ବାଧ କରୁଛି ଅନ୍ୟକୁ ବୋଧ ଦେବା ଲାଗି । ହେଲେ ତାର ତାଡ଼ନାରେ ସେ ଯେତେବେଳେ ତାକୁ ପ୍ରତିଶ୍ରୁତି ଦେଲେ ପ୍ରସନ୍ନ ମୁନିବର ପରି ଯେ "ମୁଁ ତାକୁ ଶିକ୍ଷା ଦେବି । ଦେଖିବୁ ରହ" ସେତେବେଳେ ମଣିଷକୁ ହସ ମାଡ଼ିବା କଥା । ଲୋକଟି ତମ ସାଙ୍ଗ, ମାନେ ପିଲାଦିନର ଖେଳସାଥୀ ବୋଲି ଜାଣି ପାରିଲି ସିନା, କିନ୍ତୁ ତମଭଳିଆ ଲୋକ ଯେ କାହାକୁ ଗୋଟାଏ 'ଶିକ୍ଷା' ଦେଇ ପାରିବ···କଥାଟା ଯେ କେତେ ହାସ୍ୟାସ୍ପଦ ତା' ତମେ ବୁଝିପାରିବ ନାହିଁ ମନମୋହନବାବୁ । ଅଭୁ ତମ ଭାବୁକତାରେ ଭଲ ଗଳ୍ପ ସେକଥା ଭିନ୍ନ ।

ଦୁଇ—କମଳା ଦେବୀ । ମନେ ହେଉଛି କମଳା ଦେବୀ ସୁନ୍ଦର, ଉଗ୍ରସ୍ୱଭାବସମ୍ପନ୍ନ ଏବଂ କୁହାଳିଆ । ମନମୋହନବାବୁଙ୍କ ଧାରଣା ଯେ ତାଙ୍କ ଭିତରେ ଯେଉଁ ଯୁଗ୍ମ ମମତ୍ୱ ଅଛି ତାକୁ ପ୍ରେମ ବୋଲି କୁହାଯାଇ ନପାରେ । ହୋଇଥିବ । କିନ୍ତୁ ସେ କେବେହେଲେ ସେଥିର ପ୍ରତିବାଦ କଲା ପରି ଲାଗୁ ନାହିଁ । ପ୍ରତିବାଦର ଶବ୍ଦଗୁଡ଼ାକ ବୋଧହୁଏ ତାଙ୍କ ଭାବୁକତାରେ ଲେସି ହୋଇଯାଏ । 'ହଁ, ବେଳେବେଳେ ତାକୁ କୁଣ୍ଢେଇ ଧରି ତା' ସାଙ୍ଗରେ ମାତିବାକୁ ଇଚ୍ଛା ହୁଏ । ହେଲେ ବେଳେବେଳେ ତାକୁ ଇଚ୍ଛାମତ ପିଟିବାକୁ ଇଚ୍ଛା ହୁଏ ।' କିନ୍ତୁ କେବଳ 'ଇଚ୍ଛା ହୁଏ' । କଥାରେ କି କାମରେ ସେ ନିଜ ଆଡ଼ୁ ବିଶେଷ କିଛି କରିପାରନ୍ତି ନାହିଁ ବୋଲି ମନେ ହୁଏ, ଯାହା ଭାବୁକମାନଙ୍କ ଠାରୁ ଆଶା କରିବା ସ୍ୱାଭାବିକ । ତା'ଛଡ଼ା ମନେ ରଖିବା ଉଚିତ ଯେ ଭାବୁକମାନେ ଶାନ୍ତିପ୍ରିୟ । ସେଇଥିପାଇଁ ସେ ତାଙ୍କ

ପତ୍ନୀଙ୍କୁ କହିପାରିଲେ ନାହିଁ କାହିଁକି ସେ ଆଉ କିଛି ଦିନ ଦିଲ୍ଲୀରେ ରହିବାକୁ ଚାହାଁନ୍ତି । ମାନେ ତାଙ୍କର ହଠାତ୍ ଜାଗି ଉଠିଥିବା ସମାଜସେବାର ପ୍ରବୃତ୍ତି ପଛରେ କଅଣ ଅଛି ।

ତିନି—ସରିତା ନାୟକ । ବାସ୍ତବରେ କ'ଣ ସେଇ ପିଲାଦିନର ଅନୁଭୂତି, ଯାହାର ସ୍ମରଣରେ ମନମୋହନବାବୁ ଏତେ ଆଣ୍ଟରେ କହିପାରିଲେ ଯେ ସେ ତାକୁ 'ଶିକ୍ଷା' ଦେବେ ? କୁଆଡ଼େ ସେଦିନର ସେଇ ଖେଳସାଥୀକୁ ସେ ବାରମ୍ବାର ତଳେ ଗଡ଼େଇ ଦେଇ ପାରୁଥିଲେ, ତେଣୁ ସେ ଭାବିଲେ ଯେ ଆଜି ମଧ୍ୟ ତାହାହିଁ ସମ୍ଭବ ହେବା ଉଚିତ । ଦୁର୍ବଳ ମଣିଷର ଭାବୁକତା, ସେହେତୁ କଳ୍ପନାର ବିଳାସ, କେତେ ଉପରକୁ ଯାଇପାରେ ନିଜର ଆତ୍ମସମ୍ମାନକୁ ବଜାୟ ରଖିବା ଲାଗି, ତା' ଦେଖିବା କଥା । ସହଜେ ଦିନ ପରେ ଦିନ ଗଡ଼ିଗଲା, ମନମୋହନବାବୁ ସମାଜସେବା କରିବାକୁ ଲାଗିଲେ ସରିତା ନାୟକଙ୍କ ନିର୍ଦ୍ଦେଶରେ, କିନ୍ତୁ ପଦେ ହେଲେ 'ଶିକ୍ଷାମୂଳକ' କଥା ବାହାରିଲା ନାହିଁ ତାଙ୍କ ପାଟିରୁ । ଶେଷକୁ ତାଙ୍କୁ ଗୋଟାଏ ସୁଯୋଗ ମିଳିଲା ସେ ଦିଗରେ, ଯେତେବେଳେ ସରିତା ଟାଣୁଆ ଅଭିଯୋଗ କଲେ, ତାଙ୍କ ମୁହଁ ଉପରେ, ଯେ ତାଙ୍କ ସମାଜସେବା ଅବାଟରେ ମାଡ଼ି ଯାଉଛି । ମନମୋହନବାବୁ ତା'ର ଠିକଣା ଜବାବ୍ ଦେଇ ପାରିଥାଆନ୍ତେ । କିନ୍ତୁ ହାୟ ! ସେଥିରେ ବି କିଛି ଲାଭ ହେଲା ନାହିଁ । ଓଲଟି ସରିତାଙ୍କୁ ହିଁ ଅଭୟ ଦେଲା ପରି ପଚାରିବାକୁ ପଡ଼ିଲା ସେଇ ପିଲାଦିନର ସାଥୀଟାକୁ—"କ'ଣ କିଛି ନାହାଁନ୍ତି ଯାହା କହିବାକୁ ଚାହୁଁନ୍ତି ?"

କିନ୍ତୁ ଏଇ ଦୁର୍ବଳ ମଣିଷଟି ମଧ୍ୟ କୋମଳମତି । ତେଣୁ ତାଙ୍କର ଯେଉଁ ସଫଳତା ଆସିଲା ବାପମାଆ ଛେଉଣ୍ଡ ସାନଝିଅ 'ଗୁଲ୍‌ଲୁ'କୁ ନେଇ, ତାକୁ ଊଣା କରି ହେବ ନାହିଁ । ଏଇ ମଣିଷଟି ଅତି ସାନ, ତେଣୁ ଏଠି ମଣିଷ-ମଣିଷ ସମ୍ପର୍କର କୌଣସି ଅସୁବିଧା ନାହିଁ । ତେଣୁ ତାଙ୍କର ସମସ୍ତ କୋମଳ ଭାବ ଅଜାଡ଼ି ହୋଇ ପଡ଼ିଲା ତା' ପାଖରେ, ଏବଂ ସେ କହିଲେ, ମଲାଧୁଲି ନାହିଁ ତାଙ୍କ

କଥାରେ—'ଗୁଲ୍‌ଲୁ ଝିଅଟାକୁ ମୁଁ ଆନ୍ତୁରି ଭଲ ପାଇ ପାରିବ । ଏବଂ ମୁଁ ଅନ୍ତତଃ ତାର ପାଖରେ ଲଖିଯିବି, ବାତ୍ସଲ୍ୟରେ, ଦୟାରେ, କାରୁଣ୍ୟରେ··· । ସୁଖର ବିଷୟ । ସେଥିରେ ହିଁ ଗୁଲ୍‌ଲୁର ଜୀବନ ସାର୍ଥକ ହୋଇଥାଆନ୍ତା । ଏଇଠି ପୁରୁଖା ସମାଜସେବକ। ସରିତା ନାୟକ ବୁଝିପାରିଲେ ନାହିଁ ଯେ ସେହି ଗୋଟିଏ ଅନାଥ ଶିଶୁର ଜୀବନଖଣ୍ଡ ଯଦି ଭରି ଉଠିଥାଆନ୍ତା ମନମୋହନବାବୁଙ୍କ ଭଲ ପାଇବା ନେଇ, ତାହାହିଁ ହୋଇଥାଆନ୍ତା ଏକ ବିରାଟ ସଫଳତା ତାଙ୍କ ସମାଜ-ସେବାର ।

ମଣିଷଟା ଯେତେ ଦୁର୍ବଳ, ତେଣୁ ବିଫଳ ହେଉ ପଛେ ସେ ଯଦି ପ୍ରକୃତରେ କୋମଳ ଭାବରେ ଉବୁଟୁବୁ ହେଉଥାଏ, ତାକୁ କ'ଣ ଠିକଣା ବେଳେ ଓ ଠିକଣା ଜାଗାରେ କାମରେ ଲଗେଇ ହୁଅନ୍ତା ନାହିଁ, ଏଇ ସଂସାରଟାକୁ ଆଉ ଟିକିଏ ସୁଖୀ କରିବା ପାଇଁ ? କିନ୍ତୁ ଦୁଃଖର ବିଷୟ ଅନେକ ସରିତା ନାୟକ ଅଛନ୍ତି, ଯେଉଁମାନେ ଏତିକ ବୁଝିବାକୁ ଅକ୍ଷମ ।

ତେବେ ଆଶା କରାଯାଉ ଯେ ମନମୋହନବାବୁଙ୍କ ଶେଷ ଆସ୍ଫାଳନ ଓରଫ୍ ବ୍ୟାକୁଳ କାମନାଟିକ, କାର୍ଯ୍ୟକାରୀ ହେବ । ଯେ ସେ ଜମ୍ବୁଫଳକୁ ମିଠା କରିଦେବେ । କାହିଁକନା···ମୁହଁଟାକୁ ପିତା କରି ସଂସାରରୁ ଗୁଳିଯିବା ବୁଦ୍ଧିମାନ୍‌ର କାର୍ଯ୍ୟ ନୁହେଁ । ତଥାସ୍ତୁ ।



# ଧବଳ ଆକାଶ

ସୀତାନାଥ ଓ ଶାନ୍ତି ଯେଉଁ ପ୍ରଥମ ଚୁମ୍ବନ ଦେଲେ ପରସ୍ପରକୁ ବିବାହ ପରେ, ଏବଂ ଚଉଠୀଘରର ଚିରଚରିତ 'ରୋମାଣ୍ଟିକ୍' ପୃଷ୍ଠଭୂମିରେ, ତାହା ଯେ କୌଣସି ନିଜିଛ ପ୍ରେମର ଚୁମ୍ବନକୁ ଚ୍ୟାଲେଞ୍ଜ୍ କରି କହିପାରିବ—ଦେଖ, ଆମର କେଉଁଥିରେ ଊଣା ଅଛି ? ନା ଆବେଗର ଉଷ୍ମତାରେ ? ତା'ଛଡ଼ା ଅବଶ୍ୟ ଅଛି ସାମାଜିକ ସ୍ୱୀକୃତି ଓ ମର୍ଯ୍ୟାଦା । ହେଲେ ତାକୁ ଗୋଟାଏ ବୋନସ୍ ବୋଲି ଧରି ନେଇପାରି ।

କିନ୍ତୁ ସୀତାନାଥବାବୁ ଓ ଶାନ୍ତିଦେବୀ ଯେଉଁ ଚୁମ୍ବନ ଦେଲେ ପରସ୍ପରକୁ ତାର ପ୍ରାୟ ପଇଁତିରିଶ ବର୍ଷ ପରେ, ସାମ୍ନାରେ ଠିଆହୋଇଥିବା ନୂଆ ଘର ଓ ତା' ଫାଟକର ଖୁମ୍ବରେ ଖଞ୍ଜା ହୋଇଥିବା ଧଳା ମାର୍ବଲ୍‌କୁ ଅନେଇ ଅନେଇ, ତାର ମୂଲ୍ୟ ଅଥବା ମୂଲ୍ୟହୀନତା ନିଆରା । ତାକୁ ଅନ୍ୟ ଯେକୌଣସି ଚୁମ୍ବନ ସହିତ ତୁଳନା କରିବା ଅନ୍ୟାୟ । କାରଣ ସେଥିରେ ଆବେଗ, ଉଷ୍ମତା, ଇତ୍ୟାଦି ଇତ୍ୟାଦିରୁ ବଳି ଆଉ ଗୋଟିଏ ଅସାଧାରଣ ଗୁଣ ଥିଲା । ବେଦନା । ଯାହାର ଗହ୍ୱରକୁ କେହି କଳି ପାରିବେ ନାହିଁ ତାଙ୍କ ଛଡ଼ା, କେଉଁ ମଣିଷ କି ଦେବତା । ବିଶେଷତଃ ଦେବତା । ଯୋକେ ମଧ୍ୟ ଆଶ୍ଚର୍ଯ୍ୟ ହୋଇ କହି ପାରନ୍ତି—ମଲା, ଇଏ କି ଚୁମ୍ବନ ମ ? ଦୁଇଟି ବୁଢ଼ାବୁଢ଼ୀ ମୁହଁରେ ମୁହଁ ଯୋଡ଼ୁଛନ୍ତି । ଓଠକୁ ଓଠ ଛୁଉଁଛି କି ନାହିଁ, ଗାଲରେ ଗାଲ ଥାପୁଛନ୍ତି । ସେଇଠୁଁ ଓଦା ଆଖିକୁ ପୋଛୁ ଦେଉଛନ୍ତି ଆର ଜଣକର ଗାଲରେ, ତଥା ଆଖପାଖ ଜାଗାରେ । ପରସ୍ପରର ଧଳାକଳା ବାଳରେ ହାତ ଚଳାଇ (ସୀତାନାଥବାବୁଙ୍କ ମୁଣ୍ଡ ବାରଅଣା ଚନ୍ଦା, ତେଣୁ ଏ ଦିଗରେ ଶାନ୍ତିଦେବୀଙ୍କ ଉଦ୍ୟମ ନିରର୍ଥକ ମନେ ହୁଏ) କଣ କିଛି ଖୋଜିଲା ଭଳି ହେଉଛନ୍ତି । ସେଇଠୁଁ ଝରକା ବାଟେ ପୁଣି ଅନଉଛନ୍ତି ବାହାରକୁ, ସାମ୍ନା ଘର ଆଡ଼କୁ, ଫାଟକର ଖୁମ୍ବ ଆଡ଼କୁ, ମାର୍ବଲ ଆଡ଼କୁ, ଏବଂ କ୍ଷିପ୍ରଣ ରଗିଲା ପରି ଦିଶୁଛନ୍ତି ସେଇ ଅଗ୍ରିକ ଉପରେ । ସତେକି ଶେଷକୁ ଖାଲି ତାଆରି ଉପରେ ରାଗିବା କଥା । ସେଇ ସ୍ୱଚ୍ଛ ଧବଳ ଧାରଣା ଉପରେ । ଯେଉଁଥିରେ କଳା ନାହିଁ ଟିକିଏ ବୋଲି, କେଉଁ ଦାଗ, ଅକ୍ଷର, କି ଉଚ୍ଚାରଣ ।

ଯାହାହେଉ ସେଇ ପହିଲି ଚୁମ୍ବନ ଏବଂ ଏଇ ଦେନାପେନାର ପ୍ରତିଦ୍ୱନ୍ଦ୍ୱୀ, ତାକୁ ଚୁମ୍ବନ କୁହ କି ଯାହା କୁହ, ଏଇ ଦୁଇଟିରେ ଏକ ବିଶିଷ୍ଟ ଉପାଦାନ ବସ୍ତୁତଃ

ଏକାଭଳି ଥିଲି । ପ୍ରେମ କଥାର ଏକ ଉଗ୍ର ଅପ୍ରତିହତ ଗୁଞ୍ଜନ । ଯୁଗ୍ମ ବିଦ୍ରୋହର ସ୍ୱର । —ଆମେ ଦୁଇ, ସେପାଖରେ ସଂସାର । ମାରି ଗୋଲି ତମ ସଂସାରକୁ···

ହେଲେ ନବପରିଣୀତାଙ୍କର 'ଆମେ ଦୁଇ' ଭାବ ଅବଲମ୍ବେ 'ଆମେ ତିନି' ଅଥବା 'ଆମେ ଦୁଇ' ଆଉ ଏଇ ବକଟେନାକୁର ଆତ୍ମଗୌରବରେ ପରିଣତ ହୋଇଥିଲା ବର୍ଷେ ନପୂରୁଣୁ । ଯେତେବେଳେ ପ୍ରଣବର ଆବିର୍ଭାବ ହେଲା । ଆବିର୍ଭାବ ନୁହେଁ, ବିସ୍ଫୋରଣ । ପିଲାଟା ମାଆକୁ ଦୁଇଦିନ ଦୁଇରାତି କଷ୍ଟ ଦେଲା ପରେ ଯେତେବେଳେ ପାଦ ବଢ଼ାଇଲା ପୃଥିବୀକୁ (ଆକ୍ଷରିକ ଅର୍ଥରେ ମୁଣ୍ଡ ବଢ଼େଇଲା), ତା'ର କୁଆଁ କୁଆଁ ଡାକ ବୋଧହୁଏ ଶୁଭିଯାଇଥିବ ସାହିଟା ଯାକ । କେବଳ ସେତିକ ନୁହେଁ, ଦେଖିଲାବାଲା ଦେଖିଛନ୍ତି ଯେ ତାକୁ ତର ସହିଲା ନାହିଁ ପୁରାପୂରି ଖସିଆସିବା ଯାଏଁ । ମାତ୍ର ମୁଣ୍ଡଟା ବାହାରିଛି କି ନାହିଁ, ସେ ଏମିତି ପାଟି କରି ଉଠିଲା ସତେକି ଚଣ୍ଡାଳ (ଜେଜେମା'ଙ୍କ ଭାଷା) ସାବଧାନ କରେଇ ଦେଲା ସମସ୍ତଙ୍କୁ, ଯେ ବେଳ ଥାଉଁ ଥାଉଁ ପ୍ରସ୍ତୁତ ହୋଇଯାଅ । ମୁଁ ଏମିତି ଯେମିତି ପିଲା ନୁହେଁ । ମାଆ କ୍ଷୀର ଅଣ୍ଟିବ ନାହିଁ ମୋତେ । ତମ ଟିଣଦୁଧ ଡବାରେ ଯେଉଁସବୁ ଆଉନ୍‌ସ ଗ୍ରାମ୍ ଚାର୍ଟର ପାଠ ଲେଖା ଅଛି, ସେଗୁଡ଼ାକ ବି ନହାତି ପିଲାଲଆ ମୋ ପାଇଁ । ମୋର ଆହୁରି ଦରକାର, ଡବଲ୍ ଡବଲ୍, ତେଶୀ ଥର । ମୋତେ ଭୋକ, ଖାଲି ଭୋକ···ମୁଁ ଅନେକ ଅନେକ ଦିନୁଁ ଚାହିଁ ବସିଛି ପରା ତମ ସଂସାରକୁ ଆସିବି ବୋଲି !

ହଁରେ ପୁଅ, ମୁଁ ଜାଣିଛି । ଅପେକ୍ଷା ଖାଲି ତୋର ନୁହେଁ, ମୋଅର ବି । ନଅ ମାସ ନୁହେଁ, କେଜାଣି କେତେ ଯୁଗର ତପସ୍ୟାକୁ ନେଇ । ଶାନ୍ତିଦେବୀ କହୁଥିଲେ ଏମିତି, ଚନ୍ଦାମୁଣ୍ଡିଆ 'ପୁନୁ'କୁ କୋଳେଇ ନେଲାବେଳେ । ଯାହାକି, ମାତୃସୁଲଭ । କିନ୍ତୁ ଏତିକ କହିଲା ପରେ ପରେ ସେ ଆହୁରି କେଇଟା ପଦ ଯୋଡ଼ି ଦେଉଥିଲେ, ଯାହାକୁ ସ୍ୱାଭାବିକ ବୋଲି କହିହେବ ନାହିଁ । ଅଭିମାନୀ କୋଧ ଓ ଦମ୍ଭରେ କହୁଥିଲେ ତାଙ୍କ ସ୍ୱାମୀଙ୍କ ଉଦ୍ଦେଶ୍ୟରେ, ସତେକି ସେ ଛୁଆର ବାପ ନୁହନ୍ତି, ଏକ ଦୁର୍ବୃତ୍ତ ଭୂଆଁ ବଲେଇ । କହୁଥିଲେ—ତମେ ତାକୁ ଚାହଁ କି ନଚାହଁ, ଆଇ ଡୋଣ୍ଟ୍ କେୟାର୍ ! ସେ ଯାହା ଚାହିଁବ, ମୁଁ ଆଣିଦେବି ତା'ପାଇଁ । ତମ ଛଡ଼ା କ'ଣ ମୋର କେହି ନାହାଁନ୍ତି ଏ କୂଳରେ, ଯେ ମୋତେ ସାହାଯ୍ୟ କରିବ ?

ସେ କ'ଣ ଏତେ ଅଲୋଡ଼ା ଯେ ତମେ ଜାଣିଶୁଣି ରହିଲ ନାହିଁ ଏଠି ତା' ଜନ୍ମ ବେଳକୁ ? ତା' କୁଆଁ କୁଆଁ ଶୁଣି ତମ ମୁଣ୍ଡ ବିଗିଡ଼ିଯିବ ବୋଲି ? କାନ୍ଦେରେ ଟୋକା, କାନ୍ଦେ, ଆହୁରି ବଡ଼ ପାଟି କରି କାନ୍ଦେ, ଯେମିତିକି ତାଙ୍କୁ ଶୁଣାଯିବ

ସେଠିକି, ଯେଉଁଠି ସେ ତାଙ୍କ ଗାତଚଲ୍ଲ ଭବିଷ୍ୟତ ତିଆରି କରୁଛନ୍ତି···ସେଇଠୁ ତାଙ୍କ ବୋଧ ମିଳେଇ ଯାଏ ଟୋପାଏ ଦି' ଟୋପା ଲୁହରେ ।

ଦୁଃଖର ବହୁତ ଦିନ ଗଡ଼ିଯିବା ସତ୍ତ୍ୱେ ତାଙ୍କର ଏଇ ପ୍ରଚଣ୍ଡ ଅଭିମାନ ବଢ଼ିଲା ପଛେ କମିଲା ନାହିଁ । କାରଣ ସୀତାନାଥବାବୁ ପୁଅର ଏକୋଇଶା ବେଳକୁ ମଧ୍ୟ ଆସିପାରିଲେ ନାହିଁ । ଲେଖିଲେ ଯେ ଯଦିଓ ତାଙ୍କର ପ୍ରବଳ ଇଚ୍ଛା ଥିଲା ଆସିବା ପାଇଁ, ତଥାପି ସେ ଏତେ ଦୂରରୁ, ମାନେ ବମ୍ବେରୁ ବାଲେଶ୍ୱର ଆସି ପାରିବେ ନାହିଁ ଦି'ଦିନ ପାଇଁ । ଯେହେତୁ ତାଙ୍କୁ ଯେମିତି ହେଲେ ଆହୁରି ମାସେ ଦି'ମାସ ରହିବାକୁ ପଡ଼ିବ ବମ୍ବେରେ, 'ଆମ ବାପ-ମାଆ ପୁଅଙ୍କ' ଭବିଷ୍ୟତ ପାଇଁ । ତାକୁ ପଢ଼ି ଶାନ୍ତିଦେବୀ ଈଷତ୍ ହସଟିଏ ସହ 'ହୁଁଃ !' ବୋଲି କହିଲେ । ତାହାର ଅର୍ଥ—ମୁଁ ଜାଣିଚି ତମ ଭବିଷ୍ୟତ କେଉଁ ଧାତୁରେ ଗଢ଼ା ! ଏତିକି କାହିଁକି କହୁନାହଁ ଯେ ଏଭଳି ଗୋଟାଏ ସାମାନ୍ୟ ଉତ୍ସବ ପାଇଁ ତମେ ତମର ମୂଲ୍ୟବାନ୍ ସମୟ ଓ ଅର୍ଥ ବରବାଦ୍ କରିବାକୁ ଚାହଁ ନାହିଁ ? ତଥାପି ହୁଏତ ଶାନ୍ତିଦେବୀ ପରିସ୍ଥିତିକୁ ସ୍ୱୀକାର କରିନେଇ ଥାଆନ୍ତେ । ଭାବିଥାଆନ୍ତେ ଯେ ଏମିତି ହୁଏ । ବାପମାନେ ମାଆ ନୁହନ୍ତି । କିନ୍ତୁ ସେ ତାଙ୍କର ଅଭାବକୁ ସାମାନ୍ୟ ଦୃଷ୍ଟିରେ ନେଇ ପାରିଲେ ନାହିଁ, କାରଣ ତା'ର ଗୋଟାଏ ମୂଳକଥା ଥିଲା, ପୁତ୍ର ଜନ୍ମ ହେବାର ପୂର୍ବାପର, ଯାହା ତାଙ୍କ ମନକୁ ଆକ୍ରାନ୍ତ କରିଥିଲା । ଏକ ଅପ୍ରତ୍ୟାଶିତ ଆଘାତର ସ୍ମୃତି ।

ସେଦିନର ରାତି, ଶୋଇବାକୁ ଯିବା ପୂର୍ବରୁ ଶାନ୍ତିଦେବୀ ଉତଲା ହୋଇ କହିଲେ ସୀତାନାଥବାବୁଙ୍କୁ, ଗୁଡ୍ ନାଇଟ୍‌ର ଚୁମ୍ବନ ସାଙ୍ଗକୁ ଆଉ ଗୋଟାଏ ମିଠା ଚଖେଇଲା ପରେ—

"ଗୋଟାଏ ସୁଖବର ଶୁଣିବ ?"

"ନିଶ୍ଚୟ—"

"ତା'ହେଲେ ଆଉ ଗୋଟାଏ କିସ୍ ଦିଅ ମୋତେ ।"

(ଦ୍ୱିତୀୟ ଚୁମ୍ବନ ପାଇଲା ପରେ) 'ସିଏ ଆସୁଛି ମୋ କୋଳକୁ, ପ୍ରଣବ କି ପ୍ରଣତି, ଆଜଠୁଁ ମୋଟାମୋଟି ନଅମାସ ପରେ···" ।

"ଏଁ ? ତୁମେ କ'ଣ ପିଲ୍ ଛାଡ଼ି ଦେଇଛ ?"

"ମଲା, ଖାଇଲି କେବେ କି ?" ଶାନ୍ତିଦେବୀ ହସି ଉଠିଲେ, ଗୋଟାଏ ନିର୍ବୋଧ ପ୍ରଶ୍ନର ଉତ୍ତର ଦେଲା ପରି ।"

"କିନ୍ତୁ···କିନ୍ତୁ···ତୁମେ ପରା କହୁଥିଲ— ?"

"ସିଲ୍ଲୀ ! ମୁଁ କିଛି କହୁ ନଥିଲି", ଶାନ୍ତଦେବୀ କହିଲେ ସୀତାନାଥବାବୁଙ୍କ ନାକକୁ ଚିମୁଟି ଦେଇ । "ଅଧା ମନରେ କହିଥିଲି ଯେ ଯେ ଯାଉଛି ମୋ ହାଙ୍ଗ ତୁମ ପାଖରୁ କିଛି ପିଲ୍ ଆଣି ଖାଇବ ପ୍ରତିଦିନ, ତମେ ଯେମିତି ମାତିବାକୁ ଆରମ୍ଭ କଲଣି ଆଜିକାଲି, ଆଉ ତମେ ସେଇଥିରେ ଭୁଲି ଗଲ ? କଉ, ଆମେ କ'ଣ ଠିକ୍ ସେଇଦିନ ଠିକଣା କରି ନଥିଲେ ଯେ ଯଦି ପିଲାଟିଏ ଆସିଯାଏ ତେବେ ତା' ନାଆଁ ଦେବା ପ୍ରଣବ ? ପୁଅ ହେଲେ ପ୍ରଣବ, ଝିଅ ହେଲେ ପ୍ରଣତି । ତମେଇ ତ ବାଛିଥିଲ ସେ ନାଆଁ —"

କେତେବେଳକେ ଶାନ୍ତଦେବୀ ଆବିଷ୍କାର କଲେ ଯେ ସେଆଡ଼ୁ କୌଣସି ଉତ୍ତର ନାହିଁ, ଅଙ୍ଗୀକାର ନାହିଁ, ହର୍ଷଧ୍ୱନି ଦୂରର କଥା । ମୁହଁରେ ଆନନ୍ଦର ଚିହ୍ନ ନାହିଁ, ଟିକିଏ ହେଲେ । ବରଂ ଗୋଟାଏ ଚପା କ୍ରୋଧ ଓ ସନ୍ତାପର ଭାବ । ଅବଶ୍ୟ କ୍ରମଶଃ ତାଙ୍କ ଗୁମ୍‌ସୁମ୍ ଭାବ କୋହଳ ହୋଇଗଲା । ଏବଂ ସେ କହିଲେ ନୋ ଗୁଡ଼୍, ଧନ୍ୟବାଦ ମୁଁ ଭାବୁଛି ପ୍ରଣବହିଁ ଆସିବ ଏଥର, ଇତ୍ୟାଦି । ହେଲେ ଶାନ୍ତଦେବୀ ବୁଝିଲେ ଯେ ସେ ଖୁସି ନୁହଁନ୍ତି । ମୁଁ ଯାହାକୁ ଚାହେଁ, ସେ ତାକୁ ଚାହାଁନ୍ତି ନାହିଁ । ପୂର୍ଣ୍ଣଚ୍ଛେଦ । ଏଇଆକୁ କୁହନ୍ତି ଆଘାତ, ଯାହାର ବ୍ୟଥା ଲିଭିବ ନାହିଁ ସହଜେ ।

...ମୁଁ କ'ଣ ମିଛ କହୁଛି ? ତମ ମୁହଁ ଯେମିତି ଦିଶୁଥିଲା ଖବରଟା ପାଇଲା ପରେ ପରେ, ସତେକି ମୁଁ ଗୋଟାଏ ଦୁଃସମ୍ବାଦ ଆଣିଦେଲି ତମକୁ, ତା'ର ସାକ୍ଷୀ ଅଛି ସେଇ ଲଙ୍ଗଳା ବଲ୍‌ବ୍‌ଟା, ଯେ ଆମ ନୂଆଘରର ଛାତରୁ ଝୁଲୁଥି । ଜଳଜଳ ହୋଇ ଅନେଇଥିଲା ତମକୁ । କାବା ହେଲା ପରି । ଏବଂ ତା'ର ଉଗ୍ର ଜ୍ୟୋତି କାନ୍ଥର କଞ୍ଚା ଚୁନସିମେଣ୍ଟ ସାଙ୍ଗରେ ମିଶିଯାଇ ତମକୁହିଁ ପ୍ରହାର କରୁଥିଲା । ଅହେତା ମାଆ ତରଫରୁ । କିଛି ବୁଝିଲ ନାହିଁ ତମେ ?

ଏହି ଭାବରେ ଶାନ୍ତଦେବୀ ନବଜାଗ୍ରତ 'ଆମେ ତିନି' ତଥ୍ୟର ଯଥେଷ୍ଟ ସମ୍ମାନ ଦେଇପାରଲେ ନାହିଁ । କାରଣ ତାଙ୍କର ମନେ ହେଲା ଯେ ଅପରପକ୍ଷ ସେଥିରେ ସାମିଲ୍ ନୁହଁନ୍ତି । ଅନ୍ତତଃ ଯେମିତ ହେବାର କଥା, ନୂଆ ନୂଆ ବାପା ହେଲା ପରେ ।

ଅଥଚ ସୀତାନାଥବାବୁ ଗୋଟାଏ ଘର ତିଆରି କରୁଥିଲେ ତିନିଙ୍କ ପାଇଁ । ମନେ ମନେ । ତାକୁ କଳ୍ପନା କୁହ କି ପରିକଳ୍ପନା । ଯେଉଁ ଭବିଷ୍ୟତର ଦ୍ୱାହି ଦେଇ ସେ ଆସିପାରଲେ ନାହିଁ ତାଙ୍କ କୂନପୁଅକୁ ଦେଖିବା ପାଇଁ, ତା'ର ଛବି ଯଦି ଆଙ୍କିବାକୁ ହୁଏ, ତା'ହେଲେ ସେ ତା' ମଝିରେକିନା କମ୍ବା ତା' ଉପରେ ସବାର ହୋଇଥିବା ଗୋଟାଏ ଆଖିବୁରୁଶିଆ ଘରର ସୂଚନା ଦିଅନ୍ତେ ଏଥିରେ ସନ୍ଦେହ ନାହିଁ । ଆଖିବୁରୁଶିଆ ମାନେ କୂନ୍‌ମୂନିଆ, ଖାସ୍ 'ଆମ ବାପ-ମାଆ-ପୁଅଙ୍କ' ପାଇଁ ।

ହାତଶାଳ ନୁହେଁ, ବାପାଙ୍କ ଘର ପରି । ଏବଂ ସେଥିରେ କେତୋଟି ଇନ୍‌ଡୋର୍ ପ୍ଲାଣ୍ଟ୍ ଥିବ, ଶ୍ୟାମଳମାର କୋମଳଭାବ ଆଣିଦେବା ପାଇଁ । ତଥା କେତୋଟି ବଡ଼ ବଡ଼ ଛବି ଶୋଭା ପାଉଥିବ । କେବଳ ପ୍ରସିଦ୍ଧ ଶିଳ୍ପୀମାନଙ୍କ ଛବି ନୁହେଁ, କିଛି ନିଜର ମଧ୍ୟ—ସୀତାନାଥ ମହାପାତ୍ରଙ୍କ ଖାମ୍‌ଖିଆଲ ସ୍କେଚ୍, ଶାନ୍ତ ମହାପାତ୍ରଙ୍କ ଜ୍ୟୁଇଁକାମ, ଏବଂ ହୁଏତ ସ୍ୱନାମଧନ୍ୟ ପ୍ରଣବ ମହାପାତ୍ରଙ୍କ ଗୋଟି ଗୋଟି ପାହାଡ଼, ଛୋଟ ଛୋଟକା ସମୁଦ୍ର ଓ ଜହ୍ନରାତି, ଯେଉଁଥିରେ ତାରାମାନେ ମଧ୍ୟ ଜୁଳୁଜୁଳୁ ହେଉଥିବେ । ବାପାଙ୍କ ପରି ଘର ନୁହେଁ, ଆଲମାରିକାରେ ଭର୍ତ୍ତି, ଆଉ ଦାଣ୍ଡଘର ଗୋଟାଏ ମ୍ୟୁଜିୟମ୍ ! ମୁଁ ବଡ଼ଲୋକ ହେବାକୁ ଚାହେଁ ନାହିଁ, ସୀତାନାଥବାବୁ ବୋହୂରେଇଲେ ନିଜକୁ, କିନ୍ତୁ ମୁଁ ବାପାଙ୍କୁ ଦେଖେଇ ଦେବାକୁ ଚାହେଁ । ଯେ ଅର୍ଡିନାରି ବି. ଏ. ପାସ୍ କଲେ ମଧ୍ୟ ମୁଁ ଅଯୋଗ୍ୟ ନୁହେଁ । ମୋର ଯଥେଷ୍ଟ ବିଦ୍ୟାବୁଦ୍ଧି ଅଛି, ଯାହାକୁ ନେଇ ମୁଁ ନିଜ ଗୋଡ଼ରେ ଠିଆହୋଇ ପାରିବି । ଆଉ ଗୋଟିଏ ମନଲାଖି ଘର ତିଆରି କରିପାରିବି ମୋ ନିଜ ଟଙ୍କାରେ । ରହିଲା ପରି ଘରଟିଏ, ଚଳିବାକୁ ସୁବିଧା, ଆଉ ଦେଖିବାକୁ ଭଲ । ଏବଂ ଆମେ ତିନିଜଣ ଉଷୁମ ଟାଣୁଥିବା ତା' କୋଳରେ, ଗୁଡ଼୍‌ରୁ ଗୁଡ଼୍‌ରୁ ହେଉଥିବା···

ଏମିତି ଆଉ କେତେଦିନ ଲାଗିବ କି ଘରଟିଏ ତୋଳିବା ପାଇଁ ? ହଁ, ମୁଁ ବୁଝିନେଲିଣି ଯେ ଆଡ୍‌ଭର୍ଟାଇଜିଙ୍ଗ୍ ହେବ ନାହିଁ ମୋ ଦେଇ । କିନ୍ତୁ ମୋର ଲେଖାଲେଖିରେ ନାଆଁ । ଡକ୍ଟର ଶିରାଲ୍‌କର୍ ମୋତେ ନିଜେ କହିଛନ୍ତି—ମନେରଖା କଥା ନୁହେଁ, ସେ ଯେମିତିକା ଲୋକ ନୁହଁନ୍ତି—ଯେ ମୁଁ ଇଣ୍ଟରେଷ୍ଟିଙ୍ଗ୍ ସିରିୟାଲ୍ ଲେଖି ପାରିବି ଦୂରଦର୍ଶନ ପାଇଁ । 'ତାରାଙ୍କ ତାଡ଼' ସିରିୟାଲ୍‌ର ଯେଉଁ ରୂପରେଖ ଶୁଣେଇଥିଲି ତାଙ୍କୁ, ହେଇଟି ଭାରି ପସନ୍ଦ ହୋଇଛି ତାଙ୍କର । ବମ୍ବେ ରହଣି ଭିତରେ ଅନ୍ତତଃ ତା'ର ତିନୋଟି କିସ୍ତି ଧରେଇ ଦେବାକୁ ଚାହେଁ ଡକ୍ଟର ସାହେବଙ୍କ ହାତରେ । ଟେଲିଭିଜନ୍‌ରୁ ସିନେମା । ବଡ଼ଲୋକ ନହେଲେ ନାହିଁ, ଯାହା ରୋଜଗାର କରିବି ସେଥିରେ ଛୋଟିଆ ମୋଟିଆ ଘରଟିଏ ତୋଳି ପାରିବି ନାହିଁ ? ନିଶ୍ଚୟ ପାରିବି । ଏଇ କେଇଟା ବର୍ଷ ଭିତରେ । ଠିକଣା ଜବାବ୍ ଦେବି ମୋ ବାପାଙ୍କୁ···

କିନ୍ତୁ ଶାନ୍ତଟା ବ୍ୟସ୍ତ ହୋଇ ଉଠିଲାଣି । ଆଉ ତା' ଚଟିରୁ ମନେ ହେଉଛି ଯେ ତା' ମନରେ ଗୋଟାଏ ଅଦ୍ଭୁତ ଧାରଣା ଦେଖାଦେଲାଣି । ଯେ ମୁଁ ପ୍ରଣବକୁ ଚାହେଁ ନାହିଁ । ଭଗବାନ୍ ! ସେ ଏମିତ କେମିତି ଭାବି ପାରୁଛି ? ମୁଁ କ'ଣ ତା' ବାପ ନୁହେଁ ? ଆଉ ସେ କ'ଣ ନାହିଁ ମୋର ପ୍ରତ୍ୟେକ ଆଶାରେ, ସ୍ୱପ୍ନରେ, ଏବଂ ଆମ କୁନୁମୁନିଆ ମାଡ଼ରେ ? ଖାଲି ଅଛି ବୋଲି ନୁହେଁ, ଟୋକା ଜମେଇ କରି

ଅଛି । ଅବଶ୍ୟ ମୁଁ ଚାହିଁ ନଥିଲି ଯେ ଏତେ ଶୀଘ୍ର ପିଲାଟିଏ ହେଉ । କାହିଁକିନା ମୋ ଭବିଷ୍ୟତର ମୂଳଦୁଆ ଦୋରସ୍ତ ହୋଇ ନାହିଁ ଆଜିଯାଏଁ । ତା'ଛଡ଼ା ଯେଉଁ ଟିଆ ଠିଆ ବର୍ଷର ଧନଟା ବାପା ତୋଳିଛନ୍ତି ତାଙ୍କ ପୁଅବୋହୂଙ୍କ ପାଇଁ, ତାଙ୍କ ପୁରୁଣା ଘରକୁ ଲଗି, ଯେଉଁଥିରେ ଖାଲି ଇଟା ଚୂନ ସିମେଣ୍ଟ ରହିଛି, ଚରିତ୍ର ବୋଲି କିଛି ନାହିଁ, ସେଥିରେ କେଉଁ ପିଲାଟା ଉଧେଇବ ? ମଣିଷ ପରି ମଣିଷ ହୋଇ ପାରିବ ?...

ଥାଉ, ଶାନ୍ତିକୁ ବୁଝେଇ ହେବ ନାହିଁ ଏତେ କଥା । ଯାହା ଟିକେ ସୂଚନା ଦେଇ ହେବ ମୋ ଭବିଷ୍ୟ ଦର୍ଶନର । ସୀତାନାଥବାବୁ କୁଣ୍ଠିତ ହୋଇ ତାଙ୍କର କଳ୍ପିତ ଭବିଷ୍ୟତ ଓରଫ୍ ଘରର ନକ୍ସାକୁ ଗୁଡ଼େଇ ଦିଅନ୍ତି । ଏବଂ ଉପସ୍ଥିତ ବର୍ତ୍ତମାନକୁ ଠିକଣା କରିବାକୁ ଚେଷ୍ଟା କରନ୍ତି ସବୁଆଡ଼ୁ ଖାପ୍ ଖାଇଲା ପରି । ...ବମ୍ବେରେ ମାସ ମାସ ଧରି ରହିହେବ ନାହିଁ ଅବଶ୍ୟ, ସିରିଆଲ୍‌କୁ ସମ୍ପୂର୍ଣ୍ଣ କରିବା ପାଇଁ । କିନ୍ତୁ ଅନ୍ତତଃ ଆହୁରି ଦି'ତିନି ମାସ ତ ରହିବାକୁ ପଡ଼ିବ ? ଇଏ ଖାଲି ଘରେ ବସି ଲେଖିବା କଥା ନୁହେଁ । ଦଶ ଲୋକଙ୍କ ସାଙ୍ଗରେ ଇଣ୍ଟର୍-ଆକ୍ସନ୍, ଆଦାନ ପ୍ରଦାନ ହେବା ଦରକାର, ବିଶେଷତଃ ମୋ ଲାଇନ୍‌ରେ ଥିବା ଲୋକମାନଙ୍କ ସାଙ୍ଗରେ । ତା'ହେଲେ ସିନା ମୋତେ ଚିହ୍ନିବେ ସେମାନେ ? ତେବେ ମୁଁ ଭାବୁଛି କ'ଣ କି, ଏଇ ଯେଉଁ ବିନାୟକ ଚତୁର୍ଥୀ ଆସୁଛି, ଡିକ୍ଟର୍ ସାହେବ ତାଙ୍କ ଗାଆଁକୁ ଯିବେ, ଆଉ ତାଙ୍କ 'ପ୍ରତିଭା ଷ୍ଟୁଡ଼ିଓ' ବନ୍ଦ ରହିବ ଦଶ ପନ୍ଦର ଦିନ ପାଇଁ, ସେତିକି ବେଳେ ମୁଁ ବୁଲି ଆସିବି ବାଲେଶ୍ୱରରୁ । ଗେଲ ହୋଇ ଆସିବି ଆମ ପୁନୁ ସାଙ୍ଗରେ...

ନା ବାବା ! ଶାନ୍ତି ରାଗରେ ଲେଖିଛି ଯେ ସାବଧାନ, ତମେ ତାକୁ ଆଉ ଯାହା ଡାକ ପଛେ 'ପୁନୁ' ବୋଲି ଡାକିବ ନାହିଁ । ସେ ନାଆଁଟା ମୋର, ମୁହିଁ ତାକୁ ଦେଇଛି ତା' ପାଇଁ । ସେଥିରେ ଆଉ କାହାର ହାତ ନାହିଁ କି ରହିବ ନାହିଁ । କେଡ଼େ ହୁଣ୍ଡ୍ରୀମ ଆମ ଶାନ୍ତିଟା । ବେଶୀ ପାଠ ପଢ଼ିଛି ମୋଠୁଁ, ମୁଁ ବି.ଏ.କୁ ସେ ଏମ୍ ଏସ୍‌ସି. (ଅବଶ୍ୟ କଳା ନୁହେଁ, ବିଜ୍ଞାନ) କିନ୍ତୁ ସେଇ ଓଡ଼ିଆଣୀ ଝିଅ ହୋଇ ରହିଗଲା । ନିହାତି ସେଣ୍ଟିମେଣ୍ଟାଲ୍, ମାନେ ଆଣ୍ଡ୍ରୋଇ !

ସୀତାନାଥବାବୁ ନିଷ୍ପତ୍ତି କଲେ ଯେ ସେ ଯିବେ ବାଲେଶ୍ୱରକୁ ଆସନ୍ତା ଗଣେଶ ଚତୁର୍ଥୀ ବେଳକୁ । ଏବଂ ତାଙ୍କର ଦୃଢ଼ବିଶ୍ୱାସ ଥିଲା ଯେ ସେ ସନ୍ତାନବତୀକୁ ଯଥାଶୀଘ୍ର ଶାନ୍ତ କରିପାରିବେ । ଭାବିଲେ ଯେ ମାନଭଞ୍ଜନର କଳାକୌଶଳ ବେଶ୍ ଜଣାଅଛି ତାଙ୍କୁ, ଯେହେତୁ ସେ କେବଳ ଜଣେ ସ୍ୱାମୀ-ପ୍ରେମିକ ନୁହଁନ୍ତି, ସେ ମଧ୍ୟ ଜଣେ କଳାକାର ।

ଏହି ପର୍ଯ୍ୟାୟରେ ଶାନ୍ତିଦେବୀଙ୍କୁ ଗୋଟାଏ କଥା ଆଶ୍ଚର୍ଯ୍ୟ ଲାଗୁଥିଲା, ଯାହାର ସୂଚନା ମିଳିଥିଲା ସ୍ୱାମୀଙ୍କ ଚିଠିରୁ—ସେ ଏତିକିବେଳକୁ କ'ଣ ଘରଟାଏ ତୋଳିବାକୁ

ବସିଛନ୍ତି ମ ? ଏଇ ପୈତୃକ ଘରଖଣ୍ଡକ କ'ଣ ନାକଚ ହୋଇଛି ? ଯାହା ବା ଟିକିଏ ଅସୁବିଧା ହୁଅନ୍ତା, ବାପା ତ ଆହୁରି ଉପରଟା ବଖରା ତୋଳି ଦେଇଛନ୍ତି ଆମ ପାଇଁ । ତଥାପି ସେ କାହିଁକି ବାଉଳା ହେଉଛନ୍ତି ନିଜର ଟିଏ ରଚିବା ଲାଗି ? ଅବଶ୍ୟ ଆଉ ଗୋଟାଏ କଥା, ସେଇ ହେଉଛି ଅସଲ କାରଣ । ଯାହା ସେ ଇଙ୍ଗିତରେ ବା ପ୍ରକାଶ୍ୟରେ କହି ଆସିଛନ୍ତି ବାହା ହେଲା ଦିନୁ । କ'ଣ ନା ମୁଁ ବାପାଙ୍କୁ ଦେଖେଇଦେବି ! ଅଦ୍ଭୁତ ! କିଓ, ତମ ବାପା ଜଗନ୍ନାଥ ମହାପାତ୍ର କେବଳ ବଡ଼ଲୋକ ନୁହଁନ୍ତି, ତାଙ୍କର ସାରା ଓଡ଼ିଶାରେ ନାଆଁ ଡାକ । ବିଚକ୍ଷଣ ଓକିଲ, ପରମ ଦାନୀ, ଏବଂ ନାନା ମଠ ମନ୍ଦିରର ପୃଷ୍ଠପୋଷକ । ଏଭଳି ଜଣେ ବାପାଙ୍କୁ ନେଇ ଗର୍ବ କରିବା କଥା । ତା'ଛଡ଼ା ତମେ ତାଙ୍କର ଉପରିଟିଅରେ ଗୋଟିଏ ବୋଲି ପୁଅ । ତହିଁକେ ସେ ଚାହାଁନ୍ତି ଯେ ତମେ ବି ତାଙ୍କର ପରି ବଡ଼ଲୋକ ହେବ, ନାଆଁ କମେଇବ । ଇଆଡ଼େ ସିଆଡ଼େ ବୁଲିବ ନାହିଁ ବାଇଆ ହୋଇ । କୋଉ ନାଟୁଆଙ୍କ ପଛରେ ଗୋଡ଼ାଇବ ନାହିଁ । କ'ଣ ଭୁଲ୍ ହେଲା ସେଥିରେ ।

ତେବେ ଯେବେଠୁଁ ଚଠି ଆସିଲାଣି ଯେ ସେ ଏଇ ଗଣେଶ ଚତୁର୍ଥୀ ବେଳକୁ ଆସି ପହଞ୍ଚିବେ ଏବଂ ଏଠି ରହିବେ କିଛି ଦିନ, ଶାନ୍ତିଦେବୀ ତାଙ୍କ ଆଚରଣକୁ ଅତି-ସାମାନ୍ୟ ଉଦାର ଦୃଷ୍ଟିରେ ଦେଖିବାକୁ ଚାହୁଁଛନ୍ତି । ଯଦିଓ ସେ ନିଜର ରାଗ-ଅଭିମାନକୁ ଘୃଣା କରିବା ପାଇଁ ନାରାଜ । ଯଥା ସେ ଭାବୁଛନ୍ତି—ସତକଥା କହିବାକୁ ଗଲେ ମୋର ଏଇ ସ୍ୱାମୀଜଣକ ଅଳ୍ପବହୁତ ପିଲାଳିଆ, ମାନେ ଅପରିପକ୍ୱ ନୁହଁନ୍ତି କି ? ଯାହାକୁ କହନ୍ତି, ମ୍ୟାଚୁରିଟି ଆସିନାହିଁ । ପାହାଡ଼ ତୁଲ୍ୟ ବାପାଙ୍କ ଭଲପାଇବା ଓ ତା'ର ପ୍ରତ୍ୟାଶା ମାଡ଼ି ପଡ଼ୁଛି ତାଙ୍କ ଉପରକୁ, ତେଣୁ ବାବୁ ବିଦ୍ରୋହ କରିବାକୁ ଚାହାଁନ୍ତି । କହୁଛନ୍ତି ମୁଁ ବଡ଼ ହେଲିଣି, ମୁଁ ସାବାଳକ, ମୋତେ ଛାଡ଼ିଦିଅ ମୋ ବାଟରେ । ମୁଁ ମୋ ନିଜର ଘର କରିବି, ମୁଁ ମୋ ନିଜ ହିସାବରେ ବଡ଼ ହେବି । ମୁଁ ତୁମକୁ ଦେଖେଇ ଦେବି ! ସେଇଲାଗି ସେ ବ୍ୟସ୍ତ ହୋଇ ପଡ଼ିଲେ ଯେ ପୁନୁ ଏତେ ଜଲ୍‌ଦି ଆସିଗଲା, ତାଙ୍କ ପାଗବନ୍ଧା ହେବା ଆଗରୁ । କିଓ, ସିଏ ବି କ'ଣ ତା ବାପର ପୁଅ ନୁହେଁ ? ସେ କାହିଁକି ତମ କଥା ଶୁଣିବ ? ସିଏ ବି ବିଦ୍ରୋହୀ । ସେ ତା' ନିଜ ଇଚ୍ଛାରେ ଆସିଛି । ଆସୁ ଆସୁ ହୁଙ୍କାର ଶୁଣିଛି । ଆଉ ଦୁନିଆଁ ଟାକୁ ଚ୍ୟାଲେଞ୍ଜ୍ କରୁଛି, ତାକୁ ଖୁଆଇ ପିଆଇ ଖୁସି କରିବା ପାଇଁ । ତମର କପାଳ ଭଲ ଯେ ତମ ବାପାଙ୍କର ପ୍ରତିପତ୍ତି ଯୋଗୁଁ ଯେତେକ ବ୍ରେଡ୍ ଗ୍ଲାକ୍ସୋ ଲାକ୍‌ଟୋଜେନ୍ ଅକ୍ଲେଶରେ ମିଳିଯାଉଛି ତା'ପାଇଁ । ନହେଲେ ତମେଇ ନିଜକୁ ଦୋଷୀ ବୋଲି ଭାବନ୍ତ, ଯେ ତମେ ତା' ଆହାର ଯୋଗେଇ ପାରୁ ନାହଁ । ନା, ମୋ ଆଉ କିଛି ଅଭାବ ନାହିଁ । ମୋର

କ୍ଷୀର ଯଥେଷ୍ଟ ହେଉଛୁ । ମାନେ ଯେତିକା ନର୍ମାଲ୍ । କିନ୍ତୁ ତମ ପୁଅଟା ତ ସୃଷ୍ଟି ଛଡ଼ା, ସୁପର୍-ନର୍ମାଲ୍ ! ମୁଁ କ'ଣ କରିବ ସେଥିପାଇଁ ? ··

ବେଳେବେଳେ ସେ ପୁନୁର ମୁହଁକୁ ଚାହିଁ ରହନ୍ତି, ସେଥିରେ ତା' ଅବାଗିଆ ବାପାର ଲକ୍ଷଣ ଖୋଜିବା ପାଇଁ···ସମସ୍ତେ କହୁଛନ୍ତି ଇଏ ମୋ ପରି ହୋଇଛୁ । କିନ୍ତୁ ସେମାନଙ୍କ ନଜର ଉପରଠାଉରିଆ । ମୋର ଗୋରା ରଙ୍ଗ, ଇଏ ବି ଗୋରା । ମୋର ଠିଆ ନାକ, ସ୍ୟାର ବି ସିଧାନାକ । ମୋର ବଡ଼ ବଡ଼ ଆଖି, ସ୍ୟା'ର ବି ସେମିତି । କିନ୍ତୁ କେହି କ'ଣ ଲକ୍ଷ୍ୟ କରିଛନ୍ତି ଇଏ ତା ସିଧା ନାକକୁ ବି କେମିତି କୁଞ୍ଚେଇ ଦିଏ ବିନା କାରଣରେ, ତା' ବାପ ପରି ? ତା'ର ଗହୀରେଆ ଚାହାଣିକୁ ବି କଳି ପାରିନାହାନ୍ତି, ଯାହା ତା' ବାପର ଚାହାଣିକୁ ମାତ୍ର କରିଦେବ । ତା'ଛଡ଼ା ବୁଢ଼ାର ଯୋଡ଼ ଚନ୍ଦାମୁଣ୍ଡ, ବାପା କହୁଥିଲେ ସେ ବି ସେମିତି ଦିଶୁଥିଲେ ପରା, ତାଙ୍କ ପିଲା ବେଳେ ? ସେକଥା କ'ଣ କାହାର ମନେ ନାହିଁ ?

ଏବଂ ସବୁଠାରୁ ମାରାତ୍ମକ (ଅବଶ୍ୟ ମୋ ଛଡ଼ା ଆଉ କିଏ ବୁଝିବ ତା'ଗୁଣ ?) ହେଉଛୁ ପୁଅର ହସ ଖଣ୍ଡିକ । ବିଲ୍‌କୁଲ ତା' ବାପ ପରି । ଭୁଲେଇ ଭାଲେଇ ଆଦାୟ କରି ନେବେ ତମଠୁଁ···ଆହୁରି, ଆହୁରି···ସତେକି କ୍ଷୀର ସମୁଦ୍ର କେବେ-ହେଲେ ଶୁଖିବ ନାହିଁ ତା' ପାଇଁ !

ତମେ କ'ଣ କମ୍ ଜଣେ କି ? ଭାବିଲ୍ ଯେ ଏକାଥରକେ ଦେଖିବ ତା' ମନମତାଣିଆ ହସ । କିଗି ବସିବ ନାହିଁ କେତେବେଳେ ତା' ଓଠ ଟିକିଏ ଲମ୍ବି ଯିବ ଷଠୀବୁଢ଼ୀଙ୍କ କୃପାରୁ । ଏଇଆ ନା ?

ଜାଣିଛ ? ପୂରା ଆଠ ମାସ ହେଲାଣି ତମର ଏଠୁଁ ଫିଟିବାର, ଆଉ ମୋ ପୁଅକୁ ଆସି ଛଅମାସ ହେଲାଣି । ତମେ ପ୍ରଥମେ ଆସି କ୍ଷମା ମାଗିବ ମୋତେ, କେମିତି ମାଗିବ ସେ କଥା ତମେ ଜାଣିଛ, ତା'ପରେ ଯାଇଁ ମୁଁ ପାଟି ଫିଟେଇବ ତମ ସାଙ୍ଗରେ···

ଗଣେଶ ଚତୁର୍ଥୀକୁ ଛଅଦିନ ବାକି ଅଛି, ଶାନ୍ତିଦେବୀଙ୍କ ନିଦ ହଠାତ୍ ଭାଙ୍ଗିଗଲା ବଡ଼ି ଅଧରେ । ପୁଅ କାନ୍ଦୁଛି ? କାହିଁ, ନାହିଁ ତ ? ତା'ହେଲେ ଏମିତି କୁଁ-କାଁ ହେଲା କିଏ ? ପୁଅ ତ ଏମିତିକା ଶବ୍ଦ କରେ ନାହିଁ ? ସେଇଠୁଁ ସେ ହାତ ମାରି ଦେଖିଲେ ତା' ଦେହଟା ତାତିଛି । ପୁନୁକୁ ଜର । ଏଇ ପ୍ରଥମ, ତା ଜନ୍ମ ହେଲା ପରଠୁଁ ।

'ଆଲୋ, ଜର ଟିକେ ତ ହୋଇଛି, ତୁ ଏତେ ବ୍ୟସ୍ତ ହଉଛୁ କାହିଁକି ?' ଶାଶୁ ତାରାଦେବୀ ତାଙ୍କୁ ବୋଧ ଦେଲେ ତା'ର ଶୁଖିଲା ମୁହଁ ଦେଖି । 'ମଣିରେ

ମନ୍ଦିରେ ଏମିତ ଟିକିଏ ଜର ହେବା ଭଲ, ଦେହର ଯେତେକ ବିଷ ଉତୁରିଯିବ ।' ଶ୍ୱଶୁର ମହାଶୟ ତାଙ୍କୁ ବୈଜ୍ଞାନିକ ତଥ୍ୟ ଶୁଣାଇଲେ । କିନ୍ତୁ ଶୁଣାଇଲା ପରେ ମଧ୍ୟ ଶୁଖିଲା ହସ ତାଙ୍କୁ ମୋଟେ ଭଲ ଲାଗିଲା ନାହିଁ । ସେହେତୁ ସେ ବୋହୂକୁ ଅଭୟବାଣୀ ଦେଲେ – 'ଯାହାହେଉ, ତୋର କୌଣସି ଚିନ୍ତା କରିବା ଦରକାର ନାହିଁ । ମୁଁ ଅଛି ଯେତେବେଳେ । ମୁଁ ଏଇକ୍ଷଣି ଫୋନ୍ କରି ଦେଉଛି, ସିଭିଲ୍ ସର୍ଜନ୍ ଡକ୍ଟର୍ ଦାସଙ୍କୁ ।'

କାମର ଚାପ ହେତୁ କି କେଉଁଥିପାଇଁ ଜଗନ୍ନାଥବାବୁ ଡାକ୍ତରଙ୍କୁ ଯଥାଶୀଘ୍ର ଫୋନ୍ କରିପାରିଲେ ନାହିଁ, ଏବଂ ଡକ୍ଟର ଅଜୟ ଦାସ୍ ଫୋନ୍ ପାଇଲା ପରେ ମଧ୍ୟ ଯଥାଶୀଘ୍ର ଆସି ଚିକିତ୍ସାର ବ୍ୟବସ୍ଥା କରିପାରିଲେ ନାହିଁ, ଏହାର ଆଲୋଚନା କରିବା ଅନୁଚିତ । କାରଣ ଏମିତିକା ସାଧାରଣ ଜରକୁ ଏଭଳି ସାଧାରଣ ବିଳମ୍ବ ସ୍ୱାଭାବିକ ।

ତା'ଛଡ଼ା ଦ୍ୱିତୀୟ ରାତିରେ ତା' ଜର ଏମିତି ହଠାତ୍ ବଢ଼ିଯିବ, ମୁହଁଟା ଶବାକ୍ ଲାଲ୍ ଦେଖାଯିବ, ଓ ସେ ମଝିରେ ମଝିରେ କାନ୍ଦି ଉଠିବ ଗ୍ରୁଟ ଖାଇଲା ପରି, ଏକଥା କିଏ ଜାଣିଥିଲା ? ଶାନ୍ତିଦେବୀ ଶ୍ୱଶୁରଙ୍କୁ ନିଦରୁ ଉଠେଇବାକୁ ବାଧ୍ୟ ହେଲେ । କିନ୍ତୁ, ତା'ପୂର୍ବରୁ ସେ ପୁଅର ତାତିଲା ଦେହକୁ ଆପଣା ଛାତିରେ ଚାପି ଧରିଥିଲେ । ଏବଂ ସେ ମନେ ମନେ ଗୋଟାଏ ଚିତ୍କାର କରି ଉଠିଥିଲେ ତାଙ୍କ ସ୍ୱାମୀଙ୍କ ଉଦ୍ଦେଶ୍ୟରେ—

କାହିଁକି, କାହିଁକି ଭଲ ଏତେ ହଇରାଣ କରୁଛ ମୋତେ ? ମୋତେ ଏକୁଟିଆ ପକେଇ ଦେଇଛ ଏଠି, ମୋ ପୁଅ ପାଖରେ ?···

ଡାକ୍ତର ଆସିଲେ, ସ୍ପେଶାଲିଷ୍ଟ ଡାକ୍ତର ମଧ୍ୟ ଆସିଲେ, ଏବଂ ଯଥାବିଧି ଔଷଧ ଦିଆଗଲା । ପୁଅବୋହୂଙ୍କ ଛନବଖୁରିଆ ନୂଆ ଘର ଜନବହୁଳ ହୋଇ ଉଠିଲା ତା' ପରଦିନ, କାଲିକାର ଏକୁଟିଆ ରାତିକୁ କ୍ଷମା ମାଗିଲା ପରି । କିନ୍ତୁ ପୁନୁ ଶୂନ ହୋଇଗଲା ସବୁଦିନ ପାଇଁ । ସୂର୍ଯ୍ୟ ଅସ୍ତ ହେବା ପୂର୍ବରୁ । କୁହାଗଲା ଯେ ଜ୍ୱରଟା ହଠାତ୍ ତା' ମସ୍ତିଷ୍କକୁ ଆକ୍ରମଣ କଲା । ଏମିତି ହୁଏ । ଏନ୍‌ସେଫେଲାଇଟିସ୍ ।

ମାଆମାନେ କେଜାଣି କେତେ ଭାବରେ କାନ୍ଦନ୍ତି, ବାଘୁଣୀଙ୍କ ପରି ହୁଅନ୍ତି ତାଙ୍କ ପିଲାକୁ ହରେଇଲେ, ତା'ର ମର୍ମନ୍ତୁଦ ବୈଚିତ୍ର୍ୟକୁ କିଏ ବର୍ଣ୍ଣନା କରି ପାରିବ ? ତେଣୁ ଶାନ୍ତିଦେବୀଙ୍କ ଶୋକ ବିଷୟରେ କିଛି ନକହିଲେ ଭଲ । କେବଳ ଏତିକି ଯେ ସେ ବାରମ୍ବାର ଗୋଟିଏ ପଦକୁ ବାରମ୍ବାର ଦୋହରେଇ ହେଉଥିଲେ । ଆପାତତଃ ବିନା କାରଣରେ । —

'ମୋର ଦୋଷ । ଆଉ କାହାର ଦୋଷ ନୁହେଁ । ଖାଲି ମୋର··· ମୋର···''

ଯୋକେ ବୁଝିବାକୁ ଚେଷ୍ଟା କଲେ ସେ କାହିଁକି ଏମିତ କହୁଛି, କିନ୍ତୁ ତା'ର ଭେଦ ପାଇଲେ ନାହିଁ ।

ସୀତାନାଥବାବୁ ଆସି ପହୁଞ୍ଚିଲା ବେଳକୁ ପୁଅ ପୋଡ଼ ପାଉଁଶ ହୋଇ ଯାଇଥିଲା । ଅନେକ ସମୟ ଯାଏଁ ସେ କେବଳ ଭକୁଆ ହୋଇ ଅନେଇଲେ ଶୋକାର୍ତ୍ତି ପରିବାର ଆଡ଼କୁ । ସତେକି ଏଠି ଗୋଟାଏ ଅଦ୍ଭୂତ ଫାର୍ସ୍ ଚାଲିଛି ଯାହା ତାଙ୍କ ବୁଝିବାର ବାହାରେ । କିନ୍ତୁ ଫାର୍ସ୍‌ରୁ ଟ୍ରାଜେଡ଼ି ଉତ୍ତୁରି ଆସିଲା, ଯେତେବେଳେ ସେ ଏକୁଟିଆରେ ଥରେ ଅନେଇବାକୁ ପାଇଲେ ଶାନ୍ତଦେବୀଙ୍କ ଆଖିକୁ ଯେଉଁଥିରୁ ସବୁତକ ଲୁହ ଚପୁଡ଼ି ହୋଇଯାଇଥିଲା । ତା'ର ସିଠା ଶୂନ୍ୟତାକୁ ଅନେଇ ଅନେଇ ସେ ଭୋ' ଭୋ' ହୋଇ କାନ୍ଦି ଉଠିଲେ । ଶାନ୍ତଦେବୀଙ୍କୁ କୁଣ୍ଢେଇ ଧରି ଛାଡ଼ି ଦେଲେ, ପୁଣି କୁଣ୍ଢେଇ ଧରିଲେ । କିନ୍ତୁ ତାଙ୍କ ବ୍ୟବହାରରେ ଶାନ୍ତଦେବୀଙ୍କ ଆଖି ପୁଣି ଓଦା ହେଲା ନାହିଁ, କିମ୍ବା ସେ ସ୍ୱାମୀଙ୍କୁ ପାଖରୁ ଠେଲି ଦେବାର କଷ୍ଟ କଲେ ନାହିଁ । ଧୀର ଶାନ୍ତ କଣ୍ଠରେ କହିଲେ—

'ତମେ କାହିଁକି କାନ୍ଦୁଛ ? ଦୋଷ ତମର ନୁହେଁ, ମୋଅର । ଖାଲି ମୋଅର···।'

ସନ୍ଧ୍ୟା ପରେ ରାତିର ଅନ୍ଧାର । ସୀତାନାଥବାବୁ ଆଶ୍ୱସ୍ତ ହେଲେ (ଏବଂ ସେଥିପାଇଁ ସେ ରାଗିଲେ ନିଜ ଉପରେ) ଯେ ଏଣିକି ଶାନ୍ତର ଗୃହାଣି ସୁଦୃଶ୍ୟ ହେବ ନାହିଁ, ଆଲୁଅ ନିଜିଲେଇଲେ । ଏବଂ କିଏ କାହିଁକି ଆଲୁଅ ଜଳେଇବାକୁ ଯିବ ଏଇ ହତଭାଗୀ ପଲଙ୍କକୁ ହାଲୋଳ କରିବା ପାଇଁ ? ସେହେତୁ ସେ ନିଜକୁ ଏକୁଟିଆ ପାଇଲେ । ଏକୁଟିଆରେ ଶାନ୍ତର ଚରିତ୍ରକୁ ବୁଝିଲେ, ଗମ୍ଭୀରରେ ବୁଝିଲେ, ନୀରବରେ ଲୁହ ଝରାଇ ଓ ଲୁହକୁ ପୋଛି ଦେଇ । ଏବଂ ଭାବିଲେ ଯେ ତାଙ୍କ ପରି ପାପୀ ଆଉ କେହି ନାହିଁ ପୃଥିବୀରେ । ···କିନ୍ତୁ କେମିତି ଭାବରେ ମୁଁ ମୋ ପାପର ପ୍ରାୟଶ୍ଚିତ୍ତ କରିବ ? ···ସୀତାନାଥବାବୁ ଗ୍ଲାନିରେ ଆଉଟିପାଉଟି ହେଲେ ।

ପ୍ରାୟଶ୍ଚିତ୍ତର ବାଟ ଆଉ ମିଳିଲା ନାହିଁ ତାଙ୍କୁ । ଶାନ୍ତର ଦୁଇ ହାତକୁ ଧରି କ୍ଷମା ମାଗିବେ, ସେତେବେଳେ ଶାନ୍ତ ତା' ହାତକୁ ଛଡ଼େଇ ଆଣି ମନଇଚ୍ଛା ବିଧା ମାରିବ ତାଙ୍କ ଛାତିରେ, ତା'ପରେ ସେ ଶାନ୍ତକୁ ଜୋର୍ କରି ଟାଣି ନେବେ, କାବୁଡ଼ି ଧରିବେ, ଇତ୍ୟାଦି ଇତ୍ୟାଦିର କଳ୍ପନା ତାଙ୍କୁ ନିହାତି ଇତର ସାଧାରଣ ବୋଲି ମନେ ହେଲା । ଏତେ ବଡ଼ ପାପକୁ ଗୋଟାଏ ମାମୁଲି ଲୋକଦେଖାଣିଆ ସଜା ମିଳିଲା ପରି । କେବଳ ଗୋଟିଏ ପରିଣତି ସୁସ୍ପଷ୍ଟ ଓ ସମୁଚିତ ମନେ ହେଲା—

ଶଳା ଘରଟା ଭାଙ୍ଗିଯାଇଛି । ଯାଉ ଭାଙ୍ଗି, ନିଶ୍ଚିହ୍ନ ହୋଇଯାଉ ! ମୁଁ ଆଉ ତା' ନାଆଁ ଧରିବ ନାହିଁ ବଞ୍ଚିଥିଲା ଯାଏଁ !

ମୁହୂର୍ତ୍ତ ପରେ ମୁହୂର୍ତ୍ତ ବିତିଗଲା । ରାତି ପାହିବାକୁ ଅନେକ ସମୟ···

ଆଖିକୁ ନିଦ ଆସୁ ନଥାଏ । କିନ୍ତୁ ଆସିବ ବା ଯେମିତି ହେଲେ ? ଯଦିଓ ଏକା ସାଙ୍ଗରେ ଦି'ଜଣଙ୍କ ପାଖକୁ ଆସିବାର କାରଣ ନାହିଁ । ତେଣୁ ଦିହେଁ ନିଜ ନିଜ ଗ୍ଲାନି ଓ ସ୍ୱପ୍ନ-ଦୁଃସ୍ୱପ୍ନ ଭିତରେ ଗତି କଲେ ବିଭିନ୍ନ ସମୟରେ । ଠିକ୍ ବାହାରେ ଯେମିତି ବର୍ଷା ହେଉଥାଏ ରୁହାକୁରୁହା । କେତେବେଳେ ଝିପ୍‌ଝିପ୍ ହେଉଛି ତ କେତେବେଳେ ଅଜାଡ଼ି ଦେଉଛି, ଅବା କେତେବେଳେ ହାଓ୍ୱାଲି ଖାଉଛି । କୌଣସି ଦୁଃସ୍ୱପ୍ନକୁ କାଟି ଦେଇ ହେଉନାହିଁ, କି ସ୍ୱପ୍ନକୁ ସିଧା କରି ହେଉ ନାହିଁ । ଅତୀତକୁ ଯୋଡ଼ି ହେଉ ନାହିଁ ଭବିଷ୍ୟତ ସାଙ୍ଗରେ । କେବଳ ଗୋଟିଏ ଭାବ ଲାଗି ରହିଛି ଦିହିଁଙ୍କ ଚେତନ-ଅଚେତନରେ । ଗ୍ଲାନି । ଏବଂ ସେଥିର ନିଷ୍ଫଳ କ୍ରୋଧ ।

ଏହି ଅବସ୍ଥାରେ କାହା ହାତ ପ୍ରଥମେ ପଡ଼ିଲା ତା'ର ଶଯ୍ୟାସାଥୀ ଉପରେ, ଏବଂ କିଏ ତା'ର କିଭଳି ଉତ୍ତର ଦେଲା, ତା'ର ସଠିକ୍ ସୂଚନା ଦେବା ସମ୍ଭବ ନୁହେଁ । ତେବେ ସେଥିରେ ଶ୍ରାବଣର, ଓଦାମାଟିଛୁଆଁ ପବନର, ଏବଂ ରାତିଫୁଲର ଭୂମିକା ଥିଲା ବୋଲି ମନେ କରିବା ସ୍ୱାଭାବିକ । ଯାହାହେଉ କ୍ରମଶଃ ଦିହିଁଙ୍କ ଅଧା-ମନରେ ଆଉ ଗୋଟିଏ ଭାବର ଉଦ୍ରେକ ହେଲା । —ଆଉ କେତେ ସମୟ ? କେତେ ସମୟ ଆମେ ଏମିତି ଏକୁଟିଆ ହୋଇ ରହିବୁ, ନିଜକୁ ନିଜେ ? କାହିଁକି କହିବୁ ନାହିଁ ଯେ ଯେତେହେଲେ ଆମେ ହିଁ ତା'ର ବାପମାଆ, ପରସ୍ପରର ସାଥୀ ? ଆମେ ଦୁହେଁ, ଓ ସେ ପାଖରେ ସଂସାର । ଏବଂ ଯେ ଚାଲିଯାଇଛି, ସିଏ ବି ଆମର, ସଂସାରର ନୁହେଁ···

ଛୁଆଁ ଛୁଇଁରୁ ଭିଡ଼ାଭିଡ଼ି । ଛନ୍ଦାଛନ୍ଦି । ଅପର ନିଷ୍ଠୁର ସଂସାରର ଶୀତରୁ ପରସ୍ପରକୁ ରକ୍ଷା କଲାପରି । ତା'ର ସାବଲୀଳ କ୍ରମ ଓ ଦକ୍ଷତାକୁ କିଏ ଅଟକେଇ ପାରିଥାଆନ୍ତା ?

× × କିନ୍ତୁ ସକାଳେ ଉଠିଲା ପରେ ଶାନ୍ତିଦେବୀ ସ୍ୱାମୀଙ୍କର ମୁହଁ ଦେଖିବାକୁ ଚାହିଁଲେ ନାହିଁ । କିଛି ପାଟିତୁଣ୍ଡ ନକଲେ ମଧ୍ୟ ନିଜକୁ ଦୂରେଇ ନେଇ ଯାଉଥାଆନ୍ତି । କଥାଟାର ମର୍ମ ବୁଝିଲା ପରେ ସୀତାନାଥବାବୁ ଆଶ୍ଚର୍ଯ୍ୟ ହେଲେ, ଏବଂ ସ୍ତ୍ରୀଙ୍କୁ ବାରମ୍ବାର ପଚାରିବାକୁ ଚାହିଁଲେ—ଆରେ, ମୁଁ କଅଣ କଲି ? ତମେ ବି କଣ ସେଥିରେ ନଥିଲ ? ଅରକ୍ଷିତ ଅସହାୟଙ୍କ ପରି ଥରୁ ନଥିଲ ମୋରି ପରି, ଯେଉଁଥିପାଇଁ ଆମେ ପୁଣି ଏକାଠି ହେବାକୁ ଚାହିଁଲେ ?

ସୀତାନାଥବାବୁ ବୁଝିପାରିଲେ ନାହିଁ ଯେ ଶାନ୍ତିଦେବୀ ରାଗରେ କି ଘୃଣାରେ ସ୍ୱାମୀର ମୁହଁ ଦେଖିବାକୁ ଚାହୁଁ ନଥାଆନ୍ତି, ତା' ନୁହେଁ । ବୁଝିଲେ ନାହିଁ ଯେ

ତାଙ୍କ ମ୍ଳାନ ଆହ୍ଣର ତଳେଇ ଯାଇଥିଲା, ଯେଉଁଥିପାଇଁ ସେ ନିଜ ମୁହଁ ଦେଖେଇବାକୁ ଚାହୁଁ ନଥାଆନ୍ତି ଆଉ କାହାକୁ । —ଏମିତି କେମିତି ହେଲା ? ଯେଉଁଦିନ ମୋ ପୁଅ ଚାଲିଯାଇଛି, ସେଇ ରାତିରେ···ସେଇ ରାତିରେ ହିଁ ଏଇ ନାଆଁ ଲଗା ଦେହର ନାଟ ? ହେ ଭଗବାନ୍ ! ମୋତେ ଆଉ କେତେ ଅପମାନ କରିବାକୁ ଚାହୁଁଛ ?

ସୀତାନାଥବାବୁ ଫେରିଗଲେ ନାହିଁ ବମ୍ବେକୁ । ଡକ୍ଟର୍ ଶିରାଲ୍‌କରଙ୍କୁ ଚିଠି ଲେଖି ଜଣାଇଲେ ଯେ ଅଗତ୍ୟା ଦୂରଦର୍ଶନ ସିରିଆଲ୍ ତଥା ବମ୍ବେ ସାଙ୍ଗରେ ତାଙ୍କର ସମ୍ପର୍କ ତୁଟି ଯାଉଛି । ଆପାତତଃ । ସେ ଘର ଛାଡ଼ି ଚାଲିଯାଇ ପାରୁନାହାଁନ୍ତି । ସେ ତାଙ୍କର ନିଷ୍ପତ୍ତି ଶୁଣାଇଲେ ଶାନ୍ତିଦେବୀଙ୍କୁ । କିନ୍ତୁ ସେଥିରେ ତାଙ୍କର କୌଣସି ଭାବାନ୍ତର ପରିଲକ୍ଷିତ ହେଲା ନାହିଁ ।

ତେବେ ଦିନ ଗଡ଼ିଗଲାରୁ ଶାନ୍ତିଦେବୀ ଆଗ ଭଳି ଛାଡ଼ଛାଡ଼ି ହେଉ ନ ଥାଆନ୍ତି । ବିଶେଷତଃ ଦିନବେଳା ତାଙ୍କର ହାବଭାବ ସାଧାରଣ ବୋଲି ମନେ ହେଉଥାଏ । କିନ୍ତୁ ରାତିରେ ସେ ସୀତାନାଥବାବୁଙ୍କୁ ପିଠିକରି ଶୋଉଥିଲେ, ଏବଂ ତାଙ୍କୁ କୌଣସି ପ୍ରଶ୍ରୟ ଦେଉ ନଥିଲେ ଅନ୍ତରଙ୍ଗତାର ଆଳାପ କରିବା ପାଇଁ ।

ଶେଷକୁ ସୀତାନାଥବାବୁଙ୍କ ରାଗ ବଢ଼ିଲା । ଦିନେ ସେ ଆଉ ସମ୍ଭାଳି ପାରିଲେ ନାହିଁ । ଛୁଆଡ଼ି ହୋଇ ଆସିଥିବା ହାତକୁ ଗୋଟେଇ ଆଣି ପଚାରିଲେ ତାଙ୍କୁ—

'କ'ଣ ହୋଇଛି ତମର ? କାହିଁକି ଏମିତି ବ୍ୟବହାର କରୁଛ ମୋ ସାଙ୍ଗରେ ? ସତେକି ମୁଁ ତମକୁ ରେପ୍ କଲି ସେଦିନ··· !'

ଶାନ୍ତିଦେବୀ ଚଟ୍‌କିନି ବୁଲି ପଡ଼ି ଅନେଇଲେ ସ୍ୱାମୀଙ୍କ ମୁହଁକୁ । ଏବଂ କହିଲେ ତାଙ୍କ ଆଖିରେ ଆଖି ରଖି, 'କରିନାହଁ ? ସତ କହିଲ ?'

ସୀତାନାଥବାବୁ ଚୁପ୍ ରହିଲେ । ପ୍ରତିବାଦ କରିଥିଲେ ବୋଧହୁଏ, 'ଭିଲ' ହୋଇଥାଆନ୍ତା ଶାନ୍ତିଦେବୀଙ୍କ ଦୃଷ୍ଟିରୁ । କାରଣ କଥା କଣ୍ଟାକଟି ସେଇଠି ରହିଗଲା । ପୁନର୍ମିଳନର ସମାଧାନ ଆଡ଼କୁ ଗତି କଲା । ଏବଂ ଶାନ୍ତିଦେବୀ ଖୋଦ୍ ମନା କରିପାରିବେ ନାହିଁ ଯେ ଅନ୍ତତଃ ଏଥର, ଅର୍ଥାତ୍ ଏଇ ସମାଧାନର ପଦ୍ଧତିରେ ସେ ସମ୍ପୂର୍ଣ୍ଣ ସହଯୋଗ କରିଥିଲେ ।

ପ୍ରାୟ ଦଶମାସ ପରେ ପ୍ରଣତିର ଆବିର୍ଭାବ ହେଲା ।

( ୨ )

ପ୍ରଣବ ଯେତିକି ନିର୍ଭୀକ ପଦକ୍ଷେପରେ, କହିବାକୁ ଗଲେ ଆକ୍ରମକ ଢାଣିରେ ପହଞ୍ଚିଥିଲା, ପ୍ରଣତି ସେତିକି ଡରି ଡରି ଆସିଲା ପରି ମନେ ହେଲା । ସତେକି ତାକୁ

ବାଧ୍ୟ କରି ହୋଇଛନ୍ତି ଆସିବା ପାଇଁ, ଯଦିଓ ସେ ଜାଣେ ଯେ ଏ ଜାଗାଟା ଭଲ ନୁହେଁ । ଶାଶୁଙ୍କ ଖଟପାରେ ନାଲିସରସର ମୂଷାଛୁଆଟି ପରି ଦିଶୁଥିଲା, ଆଉ କୁଁ କୁଁ ହୋଇ କାନ୍ଦୁଥିଲା ।

ଶାନ୍ତିଦେବୀଙ୍କୁ ସେ ବିଶେଷ କଷ୍ଟ ଦେଇ ନଥିଲା । ତଥାପି ତା'ର ଜନ୍ମ ହେଲା ପରେ ସେ ବେଶୀ ହାଲିଆ ଦିଶୁଥିଲେ, ଏବଂ ଅନେକ ସମୟ ଯାଏଁ ଆଖିବୁଜି ରହୁଥିଲେ । ଝିଅର କାନ୍ଦଣାକୁ ବି ଶୁଣି ପାରୁ ନଥିଲେ, ତେଣୁ ତାଙ୍କୁ ବାରମ୍ବାର ହଲେଇ ହଲେଇ ଉଠେଇବାକୁ ପଡ଼ୁଥିଲା, ଝିଅକୁ କ୍ଷୀର ଦେବା ପାଇଁ ।

ଶାନ୍ତିଦେବୀଙ୍କର କ୍ଳାନ୍ତି ଓ ଅବସାଦର ଅନେକ କାରଣ ଥାଇପାରେ । ଝିଅ ଗର୍ଭରେ ଥିଲା ବେଳେ ବି ସେ ଶେତା ଦେଖାଯାଉଥିଲେ ଓ ତାଙ୍କୁ ରକ୍ତବର୍ଦ୍ଧକ ଟନିକ୍ ଖାଇବାକୁ ପଡ଼ୁଥିଲା । ହୁଏତ ସେ ସ୍ୱୀକାର କରିପାରି ଥାଆନ୍ତେ ଯେ ତାଙ୍କ ସ୍ୱାସ୍ଥ୍ୟ ଓ ମାନସିକ ଅବସ୍ଥାର ଅବନତି ପାଇଁ ସେ ନିଜେ କେତେକ ପରିମାଣରେ ଦାୟୀ, ଯେହେତୁ ସେ ଏତେ ଶୀଘ୍ର ପୁଣି ମାଆ ହେବାକୁ ଚାହୁଁ ନଥିଲେ । ବିଶେଷତଃ ପୁଲୁ ଚାଲିଗଲା ପରେ । ତା' ବୋଲି ସେ ପ୍ରଣତିକୁ 'ରେପ୍'ର ପରିଣତି ବୋଲି ଭାବୁଥିଲେ, ଏବଂ ସେଇଥିପାଇଁ ଆତ୍ମଗ୍ଲାନିରେ ସିକୁଡ଼ି ଯାଉଥିଲେ ତାକୁ କ୍ଷୀର ଦେଲା ବେଳେ, ଓ ସ୍ୱାମୀଙ୍କୁ ସେହି ସମୟରେ ଦେଖିଲେ ତାଙ୍କର ନିଃଶ୍ୱାସ ଖରତର ହେଉଥିଲା ଗୋଟାଏ ଅକୁହା କ୍ରୋଧର ଚାପରେ, ଏଭଳି ସନ୍ଦେହ କାହିଁକି କାହା ମନରେ ଆସିବ ସୀତାନାଥବାବୁଙ୍କ ଛଡ଼ା ?

ସୀତାନାଥବାବୁ ସନ୍ଦେହଟାକୁ 'ଦୂର୍ ପଲା' ବୋଲି କହିଲେ ନାହିଁ । ଅପରନ୍ତୁ ତାକୁ ନେଇ ମନେ ମନେ ଗୋଟାଏ ଯୁକ୍ତି ଚଳେଇଥିଲେ ଶାନ୍ତିଦେବୀଙ୍କ ସାଙ୍ଗରେ । —କିଏ ଠିକଣା ଭାବରେ କହିପାରିବ ଯେ ପ୍ରଣତି ଶ୍ରାବଣ ରାତିର ସେଇ ଅଶାଳୀନ (ହେଲେ ଏବେ ଲଜ୍ଜାଜନକ) ମୁହୂର୍ତ୍ତିରୁ ଜନ୍ମିଛି ? ମୁଁ ଯଦି କୁହେ ନା, ସେ ଆସିଛି ତା'ପରେ ଆଉ ଗୋଟିଏ ରାତିରୁ, ଯେତେବେଳେ ଆକାଶରେ ଚେନାଏ ଜହ୍ନ ଥିଲା, ଏବଂ ଯାହା କିଛି ଉତ୍ତେଜେଉଥିଲା ଆମକୁ, ସେଥିରେ ସନ୍ତସନ୍ତିଆ ପରିଭବର ବାସ୍ନା ନଥିଲା, ବରଂ ଥିଲା ଶୁଖିଲାପଣର ହାଉଆ, ଜହ୍ନଟାକୁ ସାଙ୍ଗରେ ନେଇ ଉଡ଼ି ପଳେଇଯିବାର ପ୍ରବଣତା, ଇତ୍ୟାଦି, ତାକୁ କିଏ ଖଣ୍ଡନ କରିପାରିବ ? ଶାନ୍ତି ନା ତା' ଡାକ୍ତର ?

ଏହି ପରିପ୍ରେକ୍ଷୀରେ ସେ ମାଆର ତଥାକଥିତ ଅନାସ୍ଥା ଭାବକୁ 'ପ୍ରମାଣିତ' କରୁଥିଲେ ବିଭିନ୍ନ ଦୈନନ୍ଦିନ ଘଟଣାର ନଜିର୍ ଦେଖାଇ, ଯଦିଓ ସେ କେବେହେଲେ ତାଙ୍କ ପ୍ରମାଣପତ୍ର ଦାଖଲ କରି ପାରୁ ନଥିଲେ ସ୍ତ୍ରୀଙ୍କ ଆଗରେ । ଶେଷକୁ ଗୋଟାଏ ସିଦ୍ଧାନ୍ତରେ ପହଞ୍ଚିଲେ, ଅତ୍ୟନ୍ତ ଦୁଃଖର ସହିତ, ଯେ ଶାନ୍ତି

ପ୍ରଶଂସାକୁ ଖୁଣ୍ଟିବେ ନାହିଁ ।...ସତେକି ମୁଁ ତାକୁ ଜବରଦସ୍ତ ଲଦି ଦେଉଛି ତା' ଉପରେ !

ତଥାପି 'ମୂଷାଛୁଆ' ମଧ୍ୟ ନିଜ ସ୍ୱଭାବରେ ବଡ଼ ହୁଏ, ଏବଂ ହସିଲେ ତା' ହସଟି ସିଧା ଦେଖାଯାଏ । ଏବଂ ସେତେବେଳେ ତା' ମାଆ ଗେହ୍ଲା କରେ ତାକୁ ଗେହ୍ଲା ଉପରେ ଗେହ୍ଲା, ଚୁମା ପରେ ଚୁମା । ଏଭଳି ଦୃଶ୍ୟ ଦେଖିଲେ ସୀତାନାଥ ବାବୁ ଅବଶ୍ୟ ଖୁସି ହୁଅନ୍ତି । ତଥାପି ସେ ତାଙ୍କ ଟିପାଖାତାକୁ ଫିଙ୍ଗି ଦେଇ ପାରୁ ନଥିଲେ ଏବଂ ନୂଆ ନୂଆ ପ୍ରମାଣର ସନ୍ଧାନ ପାଉଥିଲେ । ଯଥା :

—ମୁଁ ଯେମିତି କହିଲି ଯେ ଦେଖ ଆମ ଝିଅ କେମିତି ଚାଲି ଚାଲି ଗଲାଣି ମଉଆଲି ହାତୀଟିଏ ପରି, ସେ କହୁଛି କ'ଣ ନା ଏମିତିକା ମଢ଼ିଆ ହାତୀ ସେ ଦେଖି ନାହିଁ ତା ଜୀବନରେ ! ମାଆମାନେ ତାଙ୍କ ପିଲାଙ୍କ ଗୁଣକୁ ବରଂ ବଢ଼େଇ କରି କହନ୍ତି, ତାକୁ ଏମିତି ତଳେ ପକେଇ ଦିଅନ୍ତି ନାହିଁ ।

—ପୁନୁ ଜିଦି କଲେ ସେ ତାକୁ ପିଟୁଥିଲା କି ନାହିଁ ମୁଁ ଜାଣେ ନାହିଁ । କିନ୍ତୁ ପିଲାମାନଙ୍କୁ କ'ଣ ଏତେ ଜୋର୍‌ରେ ପିଟିବା ଦରକାର ? ବିଶେଷତଃ ତାକୁ ଯଦି ମଢ଼ିଆ ଶୁକୁଟା ବୋଲି କହୁଛ ?

—'ମୁଁ ଆଉ ପାରିବି ନାହିଁ ! ଅଲକ୍ଷଣୀକୁ ଭାତ ଗୁଣ୍ଡାଏ ଖୋଇବା ପାଇଁ ଓଳିଏ ବସି ରହି ପାରିବି ନାହିଁ । ଗପ କହିବି. ଗୀତ ବୋଲିବି, ଟେଲିଭିଜନ୍‌କୁ ଘାଉଁ ଘାଉଁ କରିବି, ଆଉ କଣ'ଟା କରିବି ? ଏମିତିକା ଜିଦିଖୋର୍ ପିଲା ମୁଁ ପୃଥିବୀରେ ଦେଖି ନାହିଁ ।' କେଉଁଟା ପିଲାଙ୍କୁ ତମେ ଦେଖିଛ ? ପୁନୁ ହୁଏତ ହାଉଁ ହାଉଁ କରି ଖାଉଥିଲା ରାକ୍ଷସଙ୍କ ପରି, ତା' ବୋଲି କ'ଣ ସବୁପିଲା ସେମିତି ହୋଇଛନ୍ତି ? ତା' ଛଡ଼ା ତାକୁ ଅଲକ୍ଷଣୀ ବୋଲି ନକହିଲେ ଚଳି ନ ଥାଆନ୍ତା ?

—ତମ ମୁହଁକୁ ଏମିତି ନେଫେଡ଼େଇ ଦିଅ କାହିଁକି ଯେତେବେଳେ ମୁଁ କୁହେ ଯେ ମନସ୍ୱିନୀ କାହାର ପାଖରେ ମୁଣ୍ଡ ନୋଇଁବ ନାହିଁ, ଯାହା ଠିକ୍ କରିବ ନିଜ ପାଇଁ ସେଇଆ କରିବ ? କୁହେ ଯେ ସେ ସ୍ୱଭାବତଃ ଇଣ୍ଟ୍ରୋଭର୍ଟ, ତେଣୁ ସେ ନିଶ୍ଚୟ ଗୋଟାଏ କବି, କଳାକାର, କି ସେମିତି କ'ଣ ହେବ ? ମୋଟ ଉପରେ ତମେ କାହିଁକି ଏଭଳି ସ୍ୱପ୍ନ ଦେଖିପାର ନାହିଁ ଆମ ଝିଅକୁ ନେଇ ?

—ସବୁଠାରୁ ବିବନ୍ଧ ଯେ ତମେ ତାକୁ ଗୋଟାଏ ଡାକ ନାଆଁ ବି ଦେଇ ପାରିଲ ନାହିଁ, ଯେମିତିକି ପୁନୁ ବୋଲି ଡାକୁଥିଲ ପ୍ରଣବକୁ ! କହିଲ କ'ଣ ନା

ତମେ କିଛି ନା କିଛି ନୂଆ ନାଆଁ ବାଛିବ ନାହିଁ ତା' ପାଇଁ । ଦରକାର ନାହିଁ । କିନ୍ତୁ କାହିଁକି ଦରକାର ନାହିଁ, କହିପାରିବ ?

...ଯାହାହେଉ ପ୍ରୀତି କ୍ରମଶଃ ସୀତାନାଥବାବୁଙ୍କ 'ପ୍ରୀତି' ଡାକ ନାଆଁ ଗ୍ରହଣ ହୋଇଗଲା, ଏବଂ ଶାନ୍ତିଦେବୀ ମଧ୍ୟ ତାକୁ ଗ୍ରହଣ କରିନେଲେ) ଘୁରୁଖୁରୁରେ ବଢ଼ିବାକୁ ଲାଗିଲା, ଶୁକୁଟୀ ତନ୍ୱୀ, ଶ୍ୟାମଳୀ ହୋଇ ସୁନ୍ଦର ଦିଶିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ, ଏବଂ ବାପାମାଆଙ୍କର ଯତ୍‌ସାମାନ୍ୟ ଗର୍ବ କରିବାର କଥା ଯେ ସେ ମୂଳରୁ ତା' କ୍ଲାସ୍‌ରେ ଫାଷ୍ଟ ଆସିଲା ଏବଂ ଆଖିଦୁରୁଣିଆ ଛବି ଆଙ୍କିଲା, ଯାହାକୁ ନିହାତି ପିଲାଳିଆ ବୋଲି କହିହେବ ନାହିଁ । ସେହେତୁ ସୀତାନାଥବାବୁ ବାରମ୍ବାର ତାଙ୍କ ସ୍ତ୍ରୀଙ୍କ ଆଡ଼କୁ ଅନେଇ ସହାସ୍ୟ ବଦନରେ ଇଙ୍ଗିତ କରୁଥିଲେ—ମୁଁ କହୁ ନ ଥିଲି ?

କହିବା ବାହୁଲ୍ୟ ଯେ ପ୍ରୀତି ତା' ହେବୁ ପାଇଲା ଦିନଠୁଁ କେବେହେଲେ ଭାବି ନାହିଁ (ବୋଉଠାରୁ ଗାଳିମନ୍ଦ ଖାଇବାର ସାମୟିକ ପ୍ରତିକ୍ରିୟା ଛଡ଼ା) ଯେ ବୋଉ ତାକୁ ଗ୍ରହେଁ ନାହିଁ, ଅଥବା ଯଥୋଚିତ ଭଲ ପାଏ ନାହିଁ । ଯଦିଓ ସେ ତା' ବାପା ପାଖରେ ବେଶୀ ଗେହ୍ଲେଇ ହୁଏ । ତଥାପି ଗୋଟାଏ ଭୂତ ସୀତାନାଥବାବୁଙ୍କ ମନରେ ବସା ବାନ୍ଧି ରହିଲା, ତାର କରାମତି ଯେତେ କମି ଆସିଲେ ମଧ୍ୟ, ଯେ ପ୍ରୀତି ତା' ବାପର ଝିଅ । ତା'ମାଆ ତାକୁ ପଚାରେ ନାହିଁ । ଆଜି ନୁହେଁ, ତା' ଜନ୍ମ ହେଲା ଦିନୁଁ ।

ପ୍ରୀତିକୁ ପନ୍ଦର ବର୍ଷ ହେଲା ବେଳକୁ ସୀତାନାଥବାବୁ ପୁଣି ଗୋଟିଏ ଘର ତୋଳିଲେ । ଅବଶ୍ୟ ମନେ ମନେ ଆଉ ଟିକିଏ ବଡ଼, ଆହୁରି ମଡ଼ର୍ଣ୍ଣ, ଏବଂ ବନ ଉଦ୍ୟାନରେ ଘେରା, ଯେଉଁଠି ପ୍ରୀତିକୁ ଯଥେଷ୍ଟ ଖୋରାକ୍ ମିଳିବ ନିରୋଳାରେ ଛବି ଆଙ୍କିବା ପାଇଁ ।

ଏବଂ ସେତେବେଳକୁ ଆଉ ଗୋଟିଏ ସନ୍ତାନକୁ ବାର ବର୍ଷ ହେଲାଣି । ଆଉ ଗୋଟିଏ ପୁଅ । ତା' ନାଆଁ ପ୍ରସନ୍ନ । ହେଲେ ତା' ପ୍ରତି ତା' ବାପା କିମ୍ବା ବୋଉର ବିଶେଷ ସ୍ନେହ ବାରି ହୋଇଯାଉଥିଲା ବୋଲି କହି ହେବ ନାହିଁ । ସତେକି ସେ ମନକୁ ମନ ଆସିଯାଇଛି ଅନ୍ୟମନସ୍କ ହୋଇ । ସେ ତା ନିଜ କଥା ବୁଝିବ । ତେବେ ତାର ଜନ୍ମ ପରେ ଶାନ୍ତିଦେବୀ କହିଲେ—ବାସ୍ । ଯଥେଷ୍ଟ ହେଲାଣି । ଏବଂ ସୀତାନାଥବାବୁ ତାଙ୍କ କଥା ମାନି ନିଜର ଅପରେସନ୍ କରେଇ ନେଲେ ।

ସୀତାନାଥ ମହାପାତ୍ରଙ୍କ 'ଘର' ପୁଣି ମୁଣ୍ଡ ଟେକିଲା କେମିତି ? ତାଙ୍କ ଅବସ୍ଥା ସ୍ୱଚ୍ଛଳ ହୋଇଗଲାଣି, ପୁତ୍ରଶୋକ ସମେତ ଜୀବନର ପରାଭବତକ ଭୁଲି

ହୋଇ ଗଲାଣି, ନା 'ବାପାଙ୍କୁ ଦେଖେଇ ଦେବାର' ପ୍ରବଣତା ପୁଣି ଏମିତି ଉତ୍କଟ ହୋଇ ଉଠିଲାଣି ଯେ ସେମିତି କିଛୁ ଗୋଟାଏ ନକଲେ ତାଙ୍କ ମନ ଶାନ୍ତ ହେଉ ନାହିଁ ? ହଁ, ଅବସ୍ଥା ଅବଶ୍ୟ ସୁଧୁରି ଗଲାଣି । ସିନେମା ପାଇଁ ଲେଖିବାର ଲୋଭ କେବେଠୁଁ ମରିଗଲେ ମଧ୍ୟ ସେ ତାଙ୍କ ବାପାଙ୍କର ଜଣେ ବନ୍ଧୁଙ୍କ ଜରିଆରେ କଲିକତାର ଗୋଟିଏ ପବ୍ଲିସିଙ୍ଗ୍ ହାଉସ୍‌ରେ ସ୍ଥାନ ପାଇଲେ । ଅଳ୍ପ କେତୋଟି ବର୍ଷ ପ୍ରୁଫ୍‌ରିଡ୍‌ର୍ ପଦବୀରୁ ଅନ୍ୟତମ ସମ୍ପାଦକ ପଦକୁ ଉନ୍ନୀତ ହେଲେ । ଯଥାକ୍ରମେ ବ୍ୟବସାୟର ଲାଭାଂଶରେ ମଧ୍ୟ ତାଙ୍କୁ ଭାଗୀ କରାଗଲା । ଏହେତୁ ସୀତାନାଥବାବୁ ଦରବୁଢ଼ା ହେଲା ବେଳକୁ ସ୍ୱାବଲମ୍ବୀ ହୋଇପାରିଲେ । ଏବଂ ସେ ଭାବିଲେ— ଆସି ସନ୍ଧ୍ୟା ହେଲାଣି । ତେଣୁ ସନ୍ଧ୍ୟାପାଇଁ କୁଟୀରଟିଏ···ଆମ ଝିଅଙ୍କ ପାଇଁ, ଘର, ଘାଞ୍ଜିଙ୍କେ ପାଇଁ···ଗଢ଼ି ପାରନ୍ତି ନାହିଁ ?

ଜୀବନର ପରାଭବ କାହାକୁ କହନ୍ତି ମୁଁ ଜାଣେ ନାହିଁ, କିନ୍ତୁ ପୁତ୍ରଶୋକ କ'ଣ କେହି କେବେ ଭୁଲି ପାରିଲାଣି ? ସୀତାନାଥବାବୁଙ୍କଠାରୁ ବୋଧହୁଏ ଏହି ପ୍ରକାର ଉତ୍ତର ମିଳନ୍ତା ଦ୍ୱିତୀୟ ପ୍ରଶ୍ନ ପାଇଁ ।

'ବାପାକୁ ଦେଖେଇ ଦେବାର' ପ୍ରବଣତା ? ସେଇଟି ପୁଣି କଅଣ ? ଦରବୁଢ଼ା ପୁଅ ହସନ୍ତେ । ତେବେ ତାଙ୍କ ମନକୁ ଆସେ ଯେ ଏଇ ସନ୍ଧ୍ୟାକୁଟୀରରେ ବୁଢ଼ା ବାପାଙ୍କ ପାଇଁ ମଧ୍ୟ ଗୋଟିଏ ବିଶିଷ୍ଟ କମରା ରହିବ, ଯେଉଁଠି ସେ ତାଙ୍କ ଆଇନ୍-ଭିନ୍ନ ବଡ଼ ବଡ଼ ବହିଗୁଡ଼ିକୁ ସୁବିଧାରେ ସଜେଇ ପାରିବେ । ତେନ୍ଦୁଲକରଙ୍କର 'ମହାତ୍ମା'ଙ୍କଠାରୁ ଆରମ୍ଭ କରି ପଶୁପକ୍ଷୀମାନଙ୍କ ଉପରେ ଯେତେ ଛବି ବହି, ଯାହାକୁ ପ୍ରୀତି ତୂଳ୍ପ୍ରକାଳ ଆସି ଘାଣ୍ଟୁଥିଲା ତା' ପିଲାଦିନେ । ଏବେ ମଧ୍ୟ ଘାଣ୍ଟିବ ନାହିଁ ବୋଲି କିଏ କହିବ ?

ହଁ, ଏଇଠି ତାଙ୍କର ଭୁଲ୍ ହୁଏ । ସେ ଭୁଲିଯାଆନ୍ତି ଯେ ପ୍ରୀତି ବଡ଼ ହେଲାଣି, କାଲି ସକାଳେ ବାହା ହେବ, ତା' ନିଜ ଘରଦୁଆର କରିବ । ତେଣୁ ସେ ଜେଜେଙ୍କର ବହି ଘାଣ୍ଟିବା ପ୍ରଶ୍ନ ଉଠୁନାହିଁ । ବାପାଙ୍କ ବଗିଚାରେ ବସି ଛବି ଆଙ୍କିବାର ସମ୍ଭାବନା ମଧ୍ୟ କ୍ରମଶଃ ଚାଲିଯାଉଛି । କାରଣ ପାଠରେ ଯେତେ ଭଲ କଲେ ବି ସେ କ୍ୱଚିତ୍ କେବେ ଆଙ୍କିବାକୁ ବସେ ଆଜିକାଲି । ଗୋଟାଏ ପିଲାଦିନର ସଉକକୁ ମନେ ପକାଇଲା ପରି ।

ଯାହାହେଉ ଘରତୋଳାର କାମନା ଉତ୍ତରୋତ୍ତର ବଢ଼ିବାକୁ ଲାଗିଲା । ପ୍ରୀତି ବଢ଼ୁ ଯେତେ ବଢ଼ିବ, ବାପା ଆହୁରି ବୁଢ଼ା ହୁଅନ୍ତୁ, କି ତାଙ୍କ ନିଜ ସନ୍ଧ୍ୟା ଆହୁରି ପାଖେଇ ଆସୁ । ହେଲେ ସ୍ୱଳ୍ପସଞ୍ଚୟ ସାଙ୍ଗକୁ ଗୁଡ଼ାଏ ଧାର ଉଧାର କରି କିଛି ଗୋଟାଏ ଆରମ୍ଭ କରିବା ପାଇଁ ବଳ ପାଉ ନଥାଏ ତାଙ୍କର । ଏହି ସମୟରେ ତାଙ୍କୁ

ଗୋଟାଏ ଅପ୍ରତ୍ୟାଶିତ ପ୍ରୋତ୍ସାହନ ମିଳିଲା । ରାସ୍ତା ସେ ପାଖରେ ଥିବା ସେଇ ବଙ୍ଗାଳୀ ବାଗାନ୍, ଯାହାର ଲଟକିଥିବା ଆମ୍ବ, ଲେମ୍ବୁଟି ହୋଇଥିବା ଅମୃତଭଣ୍ଡା ଏବଂ ଆପଣାକୁ ବଞ୍ଚି ହେଉଥିବା ନଡ଼ିଆଗଛ ଇତ୍ୟାଦିର ଶୋଭାକୁ ସେ ପିଲାଦିନୁ ଦେଖି ଆସୁଛନ୍ତି, ତାର ମାଲିକ ତାକୁ ବିକି ଦେବାକୁ ଚାହିଁଲେ । କଥାଟା ବାପାଙ୍କ କାନକୁ ଗଲାରୁ ସେ ସେଥିରୁ ଟିକିଏ କିଣିନେଲେ ଓ ପୁଅକୁ ପଚାରିଲେ—ତୋ ଦରକାର ଏଇ ଜମି ଖଣ୍ଡିକ ?

...ହଁ, ସେଇଠି ମୁଁ ତୋଳିବି ମୋ ଘର ! ସେଇ ଶ୍ୟାମଳିମା ମଝିରେ ଝଟକି ଉଠିବ ମୋ ଘର । ବଡ଼ଲୋକିଆ ଘର ନୁହେଁ । ଚକମକିଆ ଘର ନୁହେଁ । କିନ୍ତୁ ମନ ପୂରେଇ ଦେଖିଲା ଭଳି । ମନ ଖୁସିରେ ରହିଲା ଭଳି...

ହାୟ ! ଜମି ହାତକୁ ଆସିବାର ଅନେକ ବର୍ଷ ପରେ ଯାଇଁ ଘରର ନିଅଁ ପଡ଼ିଲା । ସେତେବେଳେ ସୀତାନାଥବାବୁଙ୍କୁ ଘର ତୋଳିବା ପାଇଁ ବିଶେଷ ଧାରଉଧାର ହେବାକୁ ପଡ଼ିଲା ନାହିଁ । କାରଣ ସେ ସେତେବେଳକୁ ରିଟାୟାର୍ କରି ଆସିଲେଣି, ଏବଂ ଯଥାସାମାନ୍ୟ ପୁଞ୍ଜି ଜମେଇ ସାରିଲେଣି । ତେବେ ଏଣିକି ସେ ତାଙ୍କର ସ୍ୱପ୍ନକୁ ଦିନ ପରେ ଦିନ, ଇଟା ପରେ ଇଟାରେ ଉଚ୍ଚ ହେବାର ଦେଖିବେ, ତାକୁ ସମ୍ପୂର୍ଣ୍ଣ ସାକାର କରିବା ଯାଏଁ—ସ୍ତ୍ରୀ'ଠାରୁ ଅଧିକ ଆନନ୍ଦ ଆଉ କେଉଁ କାମରେ ମିଳିଥାଆନ୍ତା ଅବସର ଉତ୍ତାରୁ ?

କେଜାଣି କାହିଁକି ତାଙ୍କର ମନ ହେଲା ଯେ ଘରର ରଙ୍ଗ ହେବ ପୁରାପୁରି ଧଳା ଶୁଭ୍ର, ଶୁଚି, ନିଷ୍କଳଙ୍କ ।

ଦୁଃଖର ବିଷୟ ବାପା ଚାଲିଗଲେଣି ସ୍ୱର୍ଗ ଭିତରେ । ଏବଂ ପ୍ରୀତି ଝିଅ ବଡ଼ ହୋଇ ବାହାସାହା ହେଲଣି । ଦିଲ୍ଲୀରେ ଅଛି ତାର ଚାକିରିଆ ସ୍ୱାମୀ ପାଖରେ । ଆଉ ପ୍ରସନ୍ନ ଟୋକାଟା ଆସି ଦରବୁଢ଼ା ହେଲଣି, ହେଲେ ବାହା ହେବାକୁ ନାହିଁ, ତାର ଏଇ ଘରସଂସାରରେ ଆଦୌ ସ୍ପୃହା ନାହିଁ । କ'ଣ ସବୁ ବିଜିନେସ୍‌ରେ ମାତିଛି ଭଗବାନ୍ ଜାଣନ୍ତି । ହେଉ । ସୀତାନାଥବାବୁ ବୋଧ ଦିଅନ୍ତି ନିଜକୁ ଯେ ଅନ୍ତତଃ ପ୍ରୀତି ତାଙ୍କ ସ୍ୱପ୍ନରେ ସାମିଲ୍ ହୋଇ ରହିଛି । ...ଆମେ ବାପଝିଅ କେତେଥର ତାର ଘର-ଦୁଆର-ଅଗଣା ଓ ବାରିବଗିଚାରେ ବୁଲିଛୁ, ବଗିଚାର ଦରପାଚିଲା ଆମ୍ବକୁ ଚାଖିଛୁ, ଆଉ ସେଇଠୁଁ ସେ କୋଉ ଗଛରେ ଆଉଜି ସାମ୍ନାରେ ଗୋଟାଏ ବୋର୍ଡ୍ ପୋତି ଦେଇ ଛବି ଆଙ୍କୁଛି । ମୁଁ ତା'ର ବିହ୍ୱଳ ଦୃଷ୍ଟିକୁ ଦେଖୁଛି, ମୁଗ୍ଧ ହୋଇ । ଏବଂ ଶାନ୍ତ ଆମ ଦିହିଙ୍କୁ ଦେଖୁଛି ତନ୍ମୟ ହୋଇ । ସେଇ ତ ମୋ ଘରର ରାଣୀ, ଅଧିଷ୍ଠାତ୍ରୀ ଦେବୀ !...

× × ଘରଭୋଳା ପ୍ରାପ୍ୟ ସରଗଲାଣି । ପ୍ରୀତ ଜବାବ୍ ଦେଇଛୁ ସେ ଆସିବ ଗୃହପ୍ରତିଷ୍ଠାକୁ, ତା' ପୁଅକୁ ସାଙ୍ଗରେ ଧରି, ଜ୍ୱାଇଁ ନରେଶ ଆସୁ ବା ନଆସୁ । ସୀତାନାଥବାବୁ ତାର ଧୋବଧାଉଳିଆ ଚେହେରାକୁ ଅନେଇ ରହିଛନ୍ତି, ଭାବୁଛନ୍ତି ପୁରାପୁରି ସରିବାକୁ ଆଉ କେତେ ଦିନ ଲାଗିବ, ପାଚେରି ଦେବା ସରିବ, ଆଉ ଫାଟକ ବି ଲାଗିବ···

ହଠାତ୍ ସେ ତାଙ୍କ ପାଖରେ ଠିଆହୋଇଥିବା ସ୍ତ୍ରୀଙ୍କୁ ପଚାରିଲେ—

"ଆଚ୍ଛା ? ଘରର ଗୋଟାଏ ନାଆଁ ଦେବା ନାହିଁ ?"

ଶାନ୍ତିଦେବୀ ତାଙ୍କ ପ୍ରଶ୍ନକୁ ଶୁଣିଲେ କି ନାହିଁ କେଜାଣି, କିଛି ଉତ୍ତର ଦେଲେ ନାହିଁ । ନିଜ ଭାବନାରେ ହଜିଗଲା ପରି । ସେଇଠୁଁ ସୀତାନାଥବାବୁ ଆପେ ଆପେ ତାର ଉତ୍ତର ଯୋଗାଇ ଦେଲେ । ଏବଂ ଗୋଟାଏ ପ୍ରସ୍ତାବ ବାଢ଼ିଲେ—

"ତାର ନାଆଁ କ'ଣ ଦେବା କହିବ ? ପ୍ରଣବ ସୁନ୍ଦର । କ'ଣ କହୁଛ ?"

ଶାନ୍ତିଦେବୀ ଚମକି ଉଠିଲା ପରି ଅନେଇଲେ ସ୍ୱାମୀଙ୍କ ଆଡ଼କୁ । 'ହଁ' କି 'ନା' ବଦଳରେ କହିଲେ 'ଧନ୍ୟବାଦ' । ଏବଂ ଭୁସ୍‌କିନା ପଳେଇଗଲେ ସେଠୁଁ । ମନେ ହେଲା ଆଉ ଘରକୁ ଯାଇ ଲେଟିପିବେ ବିଛଣାରେ, ତକିଆରେ ମୁହଁ ମାଡ଼ି ଦେଇ । ହେଲେ ସ୍ମୃତିର କୋହରେ କି ତାଙ୍କ ଗ୍ରନ୍ଥିଟା ବନ୍ଧ ଉଠିଥିବ ବୋଧହୁଏ, ସତେକି ପ୍ରଣବ ପୁଣି ଦେଖା ଦେବ ତାଙ୍କ ସାମ୍ନାରେ । ଶୁଭ୍ର, ସୁନ୍ଦର, ଚିରଦିନର···

କିନ୍ତୁ ଯେଉଁ ଗ୍ରନ୍ଥିଟା ବାନ୍ଧଉଠେ କୂଳ ଖାଇ ଭରିଗଲା ପରି, ଶାପମୁକ୍ତ ହୋଇ ଧନଟାକୁ ଫେରି ପାଇଲା ପରି, ସେଇ ପୁଣି ଏମିତି କୋରି ହୋଇଯାଏ କେଇଟା ଦିନ ପରେ ?

···ଆଜି ତାର ଦୃଶ୍ୟ । ଧଳା କୋଠାର ଫାଟକରେ ମାର୍ବଲ୍ ପଥର ଖଞ୍ଜା ହୋଇଛି, କିନ୍ତୁ ସେଥିରେ ନାଆଁ ନାହିଁ ।

ଶାନ୍ତିଦେବୀ ଓ ସୀତାନାଥବାବୁ ଦିଲ୍ଲୀରୁ ଫେରି ଆସିଛନ୍ତି । ପ୍ରଣବକୁ ଚନ୍ଦନ ସିନ୍ଦୁରରେ ସଜେଇ ଚିତାରେ ଶୁଆଇ ଆସିଛନ୍ତି । ଦେଖି ଆସିଛନ୍ତି ସେ କେମିତି ଗୁହୁଁ ଗୁହୁଁ ପୋଡ଼ି ପାଉଁଶ ହୋଇଗଲା । ଶୁକୁଟିର ଦେହଟା ଏମିତି କେତେକର ଯେ ନଆଁକୁ ବସେଇ ରଖିପାରି ଥାଆନ୍ତା ? ଖବର ପାଇ ସେମାନେ ଦିଲ୍ଲୀକୁ ଯାଇଥିଲେ । ଯେ କାର୍ ଦୁର୍ଘଟଣାରେ ଝିଅ ଜ୍ୱାଇଁ ଆହତ । ତାଙ୍କ କାର୍ କୁଅଡ଼େ ପିଟି ହୋଇଗଲା ସେପାଖରୁ ଧାଇଁ ଆସୁଥିବା ଟ୍ରକ୍ ସାଙ୍ଗରେ, ଯେତେବେଳେ ସେମାନେ କୋଉ ପିକ୍‌ନିକ୍‌ରେ ବାହାରିଥିଲେ । କିନ୍ତୁ ବାପମାଆ ଜାଣି ନଥିଲେ

ଯେ ଝିଅ ଆହତ ହୋଇ ନାହିଁ, ତା' ଦେହ ଟିକିଏ ହେଲେ ଖଣ୍ଡିଆଖାବସ୍ଥ ହୋଇ ନାହିଁ, କିନ୍ତୁ ସେ ଚୂପ୍‌କିନ ଗ୍ଭଲିଯାଇଚ୍ଛି । ତତ୍‌କ୍ଷଣାତ୍ ।···ଟୋକି ଆମକୁ 'ବାଏ' ବୋଲି ବି କହିଲା ନାହିଁ !

ବୁଢ଼ାବୁଢ଼ୀଙ୍କ କୁଣ୍ଠାକୁଣ୍ଠି ଯେନାଯେନକୁ ଚୁମ୍ବନ ବୋଲି କୁହ ବା ନକୁହ, କିନ୍ତୁ ତାଙ୍କ ଭିତର କୋଧ କାନ୍ଦଣାକୁ ଶୁଣ, ଯାହା ମିଶିଯାଉଚ୍ଛି ପରସ୍ପର ସାଙ୍ଗରେ, କିଏ କ'ଣ କହୁଚ୍ଛି ବୁଝିବା ମୁସ୍କିଲ୍ । ତା'ର ଖଣ୍ଡି ଖଣ୍ଡି ପଦାବଳୀକୁ ଶୁଣ—

···କାହିଁକି ? କାହିଁକି ?? ମୁଁ କଅଣ ଦୋଷ କଲି ନା ସିଏ କଅଣ ଦୋଷ କଲେ ? ତମେ ସତରେ କ'ଣ ଭାବୁଥିଲ ଭଗବାନ୍, ଯେ ସେ ପୁନୁକୁ ଗୃହୁଁ ନଥିଲେ ନା ମୁଁ ପ୍ରୀତିକୁ ଭଲପାଉ ନଥିଲି ? ସେକଥା ନୁହଁ, ତମେ ଏତେ ବୋକା ନୁହଁ । ତମେ ଜାଣିଶୁଣି ଏଇଆ କଲ ଆମ ମୁକୁଟ ଦେଖିଲ ପଣ, ମିଛିମିଛିକାର ଶାନ୍ତି ଦେଲା ପର···

···ମୁଁ ପଥରବାଲାକୁ କହି କରି ଯାଇଥିଲି । ସେ ଭାବିଲା ଯେ ମୁଁ ଗୋଟାଏ ପାଗଳ । କହିଲା ଯେ ଧଳା ମାର୍ବଲ୍ ଲଗିବ, ଅବଶ୍ୟ ଲଗିବ ଆମ ଫାଟକରେ । ଖୁମ୍ବର ଧଳା କାନ୍ଥରେ । କିନ୍ତୁ ଶଳା, ସେଥିରେ କିଛି ଲେଖା ହେବ ନାହିଁ ! କୋଉ ଶବ୍ଦ, କି ଅକ୍ଷର କି ଆଉ କିଛି···

···ତମର ଧଳା ଆକାଶରେ ଚଢ଼େଇଟିଏ ବି ଉଡ଼ିବ ନାହିଁ । ଜୀବନର ଦାଗଟିଏ ପଡ଼ିବ ନାହିଁ, କାଆ କାଆ, କୁଆଁ କୁଆଁ, ପ୍ରାଣର ସାମାନ୍ୟତମ ସ୍ଫୁରଣ । ଧବଳଟା ନିର୍ମଳ ନୁହେଁ ନା, ସିଏ ହେଉଚ୍ଛି ଆଶାଭରସାର ଅବଶେଷ, ତାର ଲେସି ହୋଇଯାଇଥିବା ବୋଲି । ସେଇଥିରେ ଏମିତି ଧଳା ଦିଶୁଚ୍ଛି ତମ ଆକାଶ । ଶୁଭ୍ର, ନିଷ୍ଛିଦ୍ର, ନିଷ୍ଟିନ୍ତ । ତମକୁ ଭାରି ଭଲ ଲାଗୁଚ୍ଛି, ନୁହେଁ ?···

···ତମ ଗ୍ଭତିଟା ବି କୋର ହୋଇ ଯାଉନାହିଁ, ଭଗବାନ୍ ?

( ୩ )

ଧଳାକୋଠାରେ କେହି ରହିଲେ ନାହିଁ । ତାକୁ ଭଡ଼ାରେ ବି ଦିଆଗଲା ନାହିଁ । ସୀତାନାଥବାବୁଙ୍କର ଜିଦ୍ । କିନ୍ତୁ କାଳକ୍ରମେ ସୀତାନାଥବାବୁ ମଧ୍ୟ ପ୍ରାଣତ୍ୟାଗ କଲେ । ସେଇଠୁଁ ପୁଅ ପ୍ରସନ୍ନବାବୁ ତାକୁ ବିକି ଦେଲେ, ତାଙ୍କ ବେକାରି ଦୁରବସ୍ଥାକୁ ଦୂର କରିବା ପାଇଁ । ଏବଂ ତାକୁ ଯିଏ କିଣିଲା, ସେ ଧାଦାକାନ୍ଥର ଧଳାମାର୍ବଲ୍‌କୁ ବରଦାସ୍ତ କରିପାରିଲା ନାହିଁ । ଅବିଳମ୍ବେ ସେଥିରେ ଗୋଟାଏ ନାଆଁ ଖୋଳେଇଲା—ଅମୃତ ।

ସେଇଠୁଁ ଭଗବାନ୍ ବୁଢ଼େ ହସିଲେ । ଏବଂ କହିଲେ, ମୋ ଗ୍ଭତିଫାଟି କିଛି କୋର ହୁଏ ନାହିଁ ସିନା, କିନ୍ତୁ ମୋତେ ଏମିତି ହସେଇ ପାରୁଛ ତ ମଝିରେ ମଝିରେ !

# ଧବଳ ଆକାଶ

…ତମର ଧଳା ଆକାଶରେ ଚଢ଼େଇଟିଏ ବି ଉଡ଼ୁନ ନାହିଁ । ଜୀବନର ଦାଗଟିଏ ପଡ଼ୁନି ନାହିଁ, କାଆ କାଆ, କୁଆଁ କୁଆଁ, ପ୍ରାଣର ସାମାନ୍ୟତମ ସ୍ଫୁରଣ । ଧବଳଟା ନିର୍ମଳ ନୁହେଁ । ନା, ସିଏ ହେଉଛି ଆଶା ଭରସାର ଅବଶେଷ, ତାର ଲେସି ହୋଇ ଯାଇଥିବା ବୋଲି । ସେଇଥିରେ ଏମିତି ଧଳା ଦିଶୁଛି ତମ ଆକାଶ । ଶୁଭ୍ର, ନିର୍ଣ୍ଣିହ୍ନ, ନିର୍ଣ୍ଣିନ୍ତ । ତମକୁ ଖୁବ ଭଲ ଲାଗୁଛି, ନୁହେଁ ?…

କିନ୍ତୁ କାହାକୁ ଶୁଣେଇ ଦିଆ ହେଉଛି ଏଇ ପ୍ରଚଣ୍ଡ କ୍ରୋଧ ଏବଂ ଅଭିମାନର କଥା ? ସେ କଣ କିଛି ଶୁଣନ୍ତି ନା ବୁଝନ୍ତି ? ଏଥିକୁ ଲେଖକ ଆଜିର ଗୋଟାଏ ଗଳ୍ପ ଦେଉଛି, ସେଥିର ଉତ୍ତର ହିସାବରେ । ଅନାମିଆଁ କୋଠାଟା ବିକା ହୋଇ ସାରିଲାଣି ଆଉ କାହାକୁ, ଏବଂ ସିଏ ସାଦାକାନ୍ଥର ଧଳା ମାର୍ବଲ୍‌କୁ ବରଦାସ୍ତ କରିପାରିଲା ନାହିଁ । ଅବିଳମ୍ବେ ସେଥିରେ ଗୋଟାଏ ନାଆଁ ଖୋଳାଇଲା—ଅମୃତ । ଆଉ ସେଇଠୁଁ ଭଗବାନ୍ ବୁଢ଼େ ହସିଲେ । ତା' ମାନେ ସେ କିଛି ଶୁଣନ୍ତୁ ବା ବୁଝନ୍ତୁ, ସେ ଦିବ୍ୟ ହସି ପାରନ୍ତି ତମର ଦମ୍ଭନାସ୍ଥ ସୁଖଦୁଃଖ, ଆଶାଭରସା, ତଥା ଦୁଃସାହସୀ ସ୍ୱପ୍ନ ଏବଂ ବିଶ୍ୱାସକୁ ନେଇ । ସେଇ ହେଉଛି ସାରକଥା, ଶେଷକଥା ଏଇ ମଣିଷ ଜନ୍ମର । ଯେ ତାର କୌଣସି ମୂଲ୍ୟ ନାହିଁ ତାଙ୍କ ପାଇଁ । ତମେ ହସ, କାନ୍ଦ, ରାଗ, କି ହାତଗୋଡ଼ କଚାଡ଼ି ହୁଅ, କିଛି ଲାଭ ନାହିଁ ସେଥିରେ । 'ଆର ଜଣକ' ହସୁଛି ଓ ସଦା ହସୁଥିବ ତମ କାରବାରକୁ ଦେଖି ।

ପାଠ ପଢ଼ିବ । ପ୍ରେମ କରିବ । ପିଲାଙ୍କୁ ମଣିଷ କରିବ । ଘର ତୋଳିବ । ଆଜିର କ'ଣ ବୋଲି କ'ଣ କରିବାକୁ

ଗୁହିବ, ନିଜ ପାଇଁ, ପରିବାର ପାଇଁ, ସଂସାର ପାଇଁ ।
ଉତ୍ତମ ।

ଆଉ, ତମେ ଲେଖକ ହୋଇଛ ପରା ? ବାଃ ! କେତେ ବିରାଟ ମହାନ୍ କାମ କରୁନାହିଁ ତମେ । କିଭଳି ଚମତ୍କାର ଚରିତ୍ରମାନଙ୍କୁ ଆଙ୍କି ଥୋଇ ଦେଉଛ ସଂସାର ଆଗରେ । କେତେ ସୁଚିନ୍ତିତ ତତ୍ତ୍ୱକଥା ଶୁଣାଉଛ ତମ ଜାତିଭାଇଙ୍କୁ । ଆଉ ସହଜେ ଭାବୁଛ ଯେ ତମେଇ ଠିକଣା ଉତ୍ତର ଦେଇପାରୁଛ ସେଇ ଆର ଜଣକୁ । ତାର ଉପହାସ ମୋଟେ ଶୁଭୁ ନାହିଁ ତମକୁ ।

ସତେ ??

ବନ୍ଧୁବର ଏଇ ପ୍ରଶ୍ନବାଚୀକୁ ମାନି ନେବାହିଁ ମୋର ସ୍ୱୀକାରୋକ୍ତି, ଏଇ ଗପଟିକୁ ନେଇ, ଯାହାକୁ ମୁଁ ବିଶେଷ ପ୍ରାଧାନ୍ୟ ଦେଇଛି ମୋର ଚତୁର୍ଦ୍ଦଶ ଗଳ୍ପ ସଂକଳନର ଶୀର୍ଷକ ଗଳ୍ପ ହିସାବରେ । ଏଠି ମୁଁ କେଉଁ ଉର୍ଦ୍ଧ୍ୱକୁ ଉଠି ଯାଇପାରି ନାହିଁ, ଭଗବାନଙ୍କ ନକଲ କରି ମୃଦୁ ମୃଦୁ ହସିବ ବୋଲି । ଯେ ସଂସାରରେ ଆତଯାତ ହେଉଥିବା ବିଚିତ୍ର ମଣିଷମାନଙ୍କୁ ଚହ୍ନେଇ ଦେବ, ଆଉ କହିବ କେତେ ଗୂଢ଼ ଗହନ କଥା, ଯାହା ହୁଏତ ଆପଣମାନଙ୍କ ମନକୁ ଆସେ ନାହିଁ, ଆପଣଙ୍କ ଦୈନନ୍ଦିନ ସଂସାର କାମ ଭିତରେ । ନାଇଁ ଆଜ୍ଞା, ଏଠି ମୁଁ କେବଳ ଆଉ ଜଣେ ଅସହାୟ ମଣିଷ, ଏବଂ ମହା ନିର୍ବୋଧ । ଯେ କେବଳ ରାଗିପାରେ, ଅଭିମାନ କରିପାରେ ସେଇ ଆର ଜଣକ ଉପରେ, ଯେ 'ବିନା କାରଣରେ' ତାର ସଇଁତିରିଶ ବର୍ଷ ବୟସର ଝିଅଟିକୁ ଉଠେଇ ନେଇଗଲା । ବାହାହେଲା ଝିଅ, ଯୋଡ଼ିଏ ପିଲା, ଆଉ ସେ କେତେ ସୁନ୍ଦର ଲେଖାମାନ ଲେଖିପାରୁଥିଲା ପିଲାମାନଙ୍କ ପାଇଁ । ହେଲେ ସେଥିରେ ଯାଏ କେତେ ଆସେ କେତେ, କିଏ ଅପର ଲୋକର ? ସେଇଠୁଁ ମୁଁ ମୋର ଦୁଃଖକୁ ନେଇ ଗପଟି ଲେଖେ ବା ନଲେଖେ, ତାର ବା ମୂଲ୍ୟ କଅଣ ? ଆର ଜଣକର ସେଇ ଉପହାସ, ସେଥିରୁ ଉଦ୍ଧାର ନାହିଁ କାହାର । ସେ ରାଜା ହେଉ କି ବାଟର ଭିଖାରି, କିମ୍ବା କେଉଁ ଅଧମ ଲେଖକ ।

ବିଶେଷତଃ ଲେଖକ, ସେଇ ଲାଗି ତାକୁ ଅଧମ ବୋଲି କହିଲି । କାହିଁକିନା ଏତେ ନିଉଚ୍ଛୁଣା ତାର ଜନ୍ମ ଯେ ସେ ତାର ଶୋକ ଦୁଃଖକୁ ଚୁପ୍‌ଚାପ୍ ନିଜ ଭିତରେ ଚାପି ଦେଇପାରେ ନାହିଁ, କି କେତେବେଳେ କେମିତି ଲୁହ ଝରାଇ ତାକୁ ହାଲୁକା କରିଦେଇ ପାରେ ନାହିଁ । ଅଧମକୁ କୁହାଯାଏ ତାକୁ ସ୍ମରଣ କରି ପୁଣି ମର୍ମେ ମର୍ମେ ଅନୁଭବ କରିବା ଲାଗି, ଯେମିତିକି ସେ ତାକୁ ନେଇ ଗପଟିଏ କି କବିତାଟିଏ ଲେଖି ପାରିବ ।—ଆରେ, ତୁଚ୍ଛା ଲେଖକ ପରା ? ଯେତେ ମର୍ମନ୍ତୁଦ ହେଉ ପଛେ, ତୁ ତୋ' ଦୁଃଖକୁ ନେଇ ଚୁପ୍‌ଚାପ୍ ବସିଥିବୁ କେମିତି ? ତା' ହେବ ନାହିଁ ତୋ ଦେଇ । ଅତଏବ ଉଠି ଆ' । ଏବଂ ଆଉ ଥରେ, ବାରମ୍ବାର, ଅନୁଭବ କରି ତୋର ସେଇ ଦୁଃଖଟାକୁ, ଆତୁରି ନିବିଡ଼ରେ ଏବଂ ତାକୁ ବଛା ବଛା ଶବ୍ଦରେ ସଜେଇ ଦେ, ପ୍ରେତକୁ ସିନ୍ଦୁର ଚନ୍ଦନରେ ସଜେଇ ଚିତାରେ ଶୁଆଇ ଦେଲା ପରି, ଯେମିତିକି ତୋ ବିକଳ କାନ୍ଦଣା ପହଞ୍ଚିବ ଅନ୍ୟମାନଙ୍କ ପାଖରେ । ବାବୁ, ତୋ ଆଖିରୁ ଲୁହ ଶୁଖିଯାଇ ଥାଇପାରେ, କିନ୍ତୁ ପାଠକର କି ପାଠିକାର ଆଖିରୁ ଲୁହ ଟୋପାଏ ଝରିପାରେ ହୁଏତ, କିଏ କହିବ ? ତେଣ୍ଟୁ ମୁଁ ହସେ କି ନ ହସେ ସେକଥା ଭିନ୍ନ, କିନ୍ତୁ ଘଟଣାଟା ରସୋତ୍ତୀର୍ଣ୍ଣ ହୋଇ ଉଠିବ ନାହିଁ କି ?

ସୁପ୍ରସିଦ୍ଧ ଲେଖକ ଅର୍ଣ୍ଣେଷ୍ଟ୍ ହେମିଂଗ୍‌ଓ୍ୱେ ଏହିପ୍ରକାର ମନ୍ତବ୍ୟଟାଏ କରିଥିଲେ, ତାଙ୍କ ଅଟାଞ୍ଚା ଟାଣୁଆ ଶବ୍ଦର ଶୈଳୀରେ । କହିଲେ, ଲେଖକ କୁଳଙ୍କ ଉଦ୍ଦେଶ୍ୟରେ— ତମେ ହ୍ୟାପ ମୂଳରୁ ଅଭିଶପ୍ତ (You are fitched from the start), କିନ୍ତୁ ପରୁଆ ନାହିଁ, ସେଇ ଯେଉଁ ଯନ୍ତ୍ରଣା, ତାକୁଇ ବ୍ୟବହାର କର ତମ ଲେଖାରେ । ବୁଝିଲ ? ସେଇ ତମ ଦଶା, ମଧ୍ୟ ସେଇ ତମ ବାହାଦୁରୀ ।

ଅଗତ୍ୟା ମୁଁ ଏଇ ଗପଟିକୁ ନଲେଖି ରହିପାରିଲି ନାହିଁ । ଗପ ହିସାବରେ ଏଥିରେ ଅନେକ ମିଛକଥା ରହିଛି, ନହେଲେ ତାର ଗୋଲେଇ ବାନ୍ଧି ହୋଇ ନଥାଆନ୍ତା ।

କିନ୍ତୁ ତାର ମୂଳକଥା କେବଳ ଏଇ ଅସହାୟ ଅବୋଧ ରାଗ, ଅଭିମାନ, ଆଉ କାନ୍ଦଣା—କାହିଁକି, କାହିଁକି ମୋର ଶୁକୁନ୍ତୀ ସୁକୁମାରୀ ଝିଅଟାକୁ ଅକାଳରେ ହରି ନେଇ ଗଲ ? ତମକୁ କ'ଣ ଲାଭ ମିଳିଲା ସେଥିରୁ ?

ମୋର କବିବନ୍ଧୁ ରମାକାନ୍ତ ରଥ ମୋତେ ଥରେ ଆଉ ଗୋଟାଏ କଥା କହିଥିଲେ, ଏଇ ଲେଖକ-ମଣିଷର ଦୁର୍ଭାଗ୍ୟକୁ ନେଇ । କହିଥିଲେ—ମୁଁ କ'ଣ ଭାବୁଛି ଜାଣନ୍ତି ? ବୋଧହୁଏ ଆମମାନଙ୍କୁହିଁ ବେଶି ଦଣ୍ଡ ଦିଅନ୍ତି ଭଗବାନ୍ । ଆମ ବଡ଼େଇକୁ ଚ୍ୟାଲେଂଜ୍ କଲା ପରି । ଯେ ଏଥର ଦେଖିବା ତମେ କେତେ ସହିବ ଏଇ ଦୁଃଖ, ଆଉ ତାକୁ ନେଇ କିଭଳି ଗୀତ ଗାଇ ପାରିବ, କି ଗପଟିଏ ଶୁଣେଇ ପାରିବ ?

ନା ମ, ସେ କ'ଣ ଏତେ ନିଷ୍ଠୁର ହୋଇଥିବେ ?



# ଅରୁଟିଏ

କ'ଣ ଏତେ ଭାବୁଛୁ ?

ପ୍ରାୟ ଦୁଇମିନଟ୍ ଚୁପ୍ ହୋଇ ରହି ଯାଇଥିଲା ବିନୋଦ । ନିର୍ଲୋଭ ସନ୍ତର ଅସଂଖ୍ୟ ମୁଖର ମୁହୂର୍ତ୍ତ ପରେ ସେଇ ଦୁଇମିନଟ୍ ଚୁପ୍ । ବିନୋଦ ଭାବୁଥିଲା । ମୀରଜା ତା' ଆଡ଼କୁ ଅନେଇ ତା' ଭାବନାକୁ କଳୁଥିଲା । ବିନଭାଇଙ୍କର ଏମିତ ହଠାତ୍ ଭାବ ବସିବା କିଛି ଅସଂଗତ ନୁହେଁ । କିନ୍ତୁ ଆଜି ପରି ଦିନରେ ଅଯଥା ସମସ୍ତ ନଷ୍ଟ କରି—

ବିନଭାଇ ଉତ୍ତର ଦେଇ ନାହାଁନ୍ତି । ମୀରୁ ଭାବିଲା ରାଗିବ । ତା'ର ରାଗିବା ଉଚିତ । ବିନଭାଇଙ୍କର ବୁଝିବା ଦରକାର ଯେ ମୀରୁ ପାଖରେ ଥାଇ ସେ ତାଙ୍କର ମନଇଚ୍ଛା ହସିବେ, ଖେଳିବେ, ଆଉ ଚୁପ୍ ହୋଇ ଯାଇପାରିବେ ନାହିଁ । ମୀରୁ କଣେଇ ପିଲା ନୁହେଁ ।

କିନ୍ତୁ ମୀରୁ ରାଗିପାରିଲା ନାହିଁ । ଇଚ୍ଛା କରି ଅଭିମାନର ଭଙ୍ଗୀ କରିବାର ଥିଲେ ସେ ମୁହୂର୍ତ୍ତିକରେ ତା' ମୁହଁର ଭାବ ବଦଳାଇ ପାରିଥାଆନ୍ତା । ତାର ସେ କ୍ଷମତା ଅଛି । ସତରେ ରାଗିଥିଲେ ସେ ଚଟ୍‌କିନି ଉଠି ପଡ଼ନ୍ତା । କିନ୍ତୁ ସତ ରାଗିବାର କାରଣ ନ ଥିଲା । ଏବଂ ଅବଶ ସନ୍ଧ୍ୟାର ଅଳସପଣ ଭାଙ୍ଗି ଅଭିମାନର ଚେଷ୍ଟା କରିବା ତା'କୁ ବିରାଟ ଅଧ୍ୟବସାୟ ପରି ମନେ ହେଲା । ତେଣୁ ସେ ମଧ୍ୟ ତା'ର ଭାବନାକୁ ଖେଳାଇ ଦେଲା ଆଜି, କାଲି ଓ ଭବିଷ୍ୟତର ଅନନ୍ତ ଆକାଶରେ ।

ବିନଭାଇ ଦୁଃଖୀ । ସ୍ତ୍ରୀପିଲାଙ୍କର ହସିଲା ସଂସାର ଭିତରେ ବି ତାଙ୍କର ଅଭାବ ଅଛି । ମୀରୁ ଆସିଛି ତାଙ୍କର ସେଇ ଅଭାବ ପୂରାଇ ଦେବା ଲାଗି । ଦୋଷ କ'ଣ ମୀରୁର ?

ଖାଲି ସାହଚର୍ଯ୍ୟଟିକି । ସେତିକି ସେ ଦେଇଛି ବିନଭାଇଙ୍କୁ । ପାଖରେ ବସିଛି । ତାଙ୍କ କୋଳରେ ଲେଟି ପଡ଼ିଛି । ବିନଭାଇ ତା ମୁଣ୍ଡବାଳରେ ଆଙ୍ଗୁଠି ଚଳାଇ କେତେ କ'ଣ କହି ଯାଇଛନ୍ତି । ସେଥିରୁ ଅଧେ ବୁଝି ହୋଇ ନାହିଁ । କିନ୍ତୁ ସେଇଠୁଁ ଆଗେଇ ନାହାଁନ୍ତି । ବେଳେ ବେଳେ ଇଚ୍ଛା ହୋଇଛି ଏଇ ରୋମାଣ୍ଟିକ୍ ଲୋକଟିକୁ ନିଜେ ହାତ ଧରି ଆଗେଇ ନେବାକୁ, ଅନ୍ତତଃ ମଜା ଦେଖିବା ପାଇଁ । ବେଳେବେଳେ ଅଭିମାନ ଆସିଛି ଯେ ତା' ଦେହର ମୂଲ୍ୟ ତାଙ୍କ ପାଖରେ କିଛି ନୁହେଁ—ଖାଲି କବିତା ଓ

କଳ୍ପନା ଛଡ଼ା । କିନ୍ତୁ ଆଜି ମନେ ହେଉଛି ଯେ ଏମିତ ଭଲ ହୋଇଛି । ଏଇ ଦାର୍ଶନିକ ରୋମାନ୍ସହିଁ ଭଲ, ସମୟର ହାଉଆରେ ଉଡ଼ି ଚାଲିଯିବ, ଦେହମନରେ ଲାଗି ରହିବ ନାହିଁ । ଦେହର ବନ୍ଧନ ସହଜରେ ତୁଟନ୍ତା ନାହିଁ, ଶୋଷ ବଢ଼ି ଚାଲନ୍ତା, ଓ ଶେଷରେ ମୀରୁ ରହନ୍ତା କେଉଁଠି ? ଏଇ ଭଲ । ନିଜକୁ ଭଲ ଲାଗୁଛି କହିବାକୁ ଯେ ଏ 'ପବିତ୍ର' । ଏହାପରେ ସତ ଦରକାରୀ ପ୍ରେମ, ବାହାଘର, ଘର-କରଣା । ସେଥିରେ ଟିକିଏ ବୋଲି ଆଞ୍ଚ ଲାଗିବ ନାହିଁ ।

ଆଉ କେତେଦିନ ଗଲେ ବାହାଘର । ସବୁ ଠିକ୍ ହୋଇ ସାରିଲାଣି । ବାଜା ବାଜିବ । ଗୋଡ଼ରେ ଅଳତା, ଦେହରେ ଗହଣା ସାଜ, କପାଳରେ ଚନ୍ଦନ । ମୀରୁ ମୁଣ୍ଡରେ ଓଢ଼ଣା ଦେବ, କାନ୍ଦିବ, ହାତରେ ହାତ ରଖି ମନ୍ତ୍ର ଶୁଣିବ, ଓ ତା'ପରେ ଫୁଲଶେଯରେ ଲାଜ କରିବ । ଆଖି ବୁଜି ଦେଇ ମୁହଁକୁ, ଓଠ ଦୁଇଟିକୁ, ସଁପିଦେବ ଆଉ ଜଣକୁ ।

ମୀରୁ ନିଜ ଭାବନାରେ ହସି ଉଠିଲା । ସେ ହସରେ କୁମାରୀର ଉଲ୍ଲାସ ନାହିଁ, ଆଶଙ୍କା ନାହିଁ । ସେଭଳି ଭାବ ଆସୁ ନାହିଁ ତା' ମନରେ । ନଆସୁ, କ୍ଷତି କଅଣ ? ତା'ର କାରଣ ସେ ପିଲା ନୁହେଁ । କେଉଁ ଲେଖକ ଜଣେ କହିଥିଲେ ପରା—ସତଠାରୁ ସୁନ୍ଦର ଛଳନା, ଜୀବନଠାରୁ ସୁନ୍ଦର ଆର୍ଟ !

ଦିନେ ସ୍ୱାମୀଙ୍କ ସାଙ୍ଗରେ ହୁଏତ ଏଇଠିକୁ ବୁଲି ଆସିବ । ସେଥିରେ ଲୁସ୍ୱ-ଗ୍ରେସ୍ ନଥିବ । ଗିର୍ଜାର ମୁନିଆ ଶିଖ ଅନେଇ ଥିବ ସେମିତ । ଏଇ ବୁଢ଼ା ଚନାଚୁର ବାଲା ତାଙ୍କର ବାଟ ଦେଇ ଚାଲିଯିବ । ପବ୍ଲିକ୍ ପାଣିକଳର ପାଣି ଉଛୁଳି ଆସି ଘାସ କାଦୁଅ କରୁଥିବ । ପବନରେ ଗୀତ ଶୁଭୁଥିବ । ଘୋଡ଼ାଗାଡ଼ିର ଠକ୍ ଠକ୍ ହଜି ହଜି ଯାଇ ପୁଣି ଖିଅ ଧରୁଥିବ । ଅନ୍ଧାର ଘନେଇ ଆସୁଥିବ । 'ସେ' କଣ ଧୀରେ ଧୀରେ କହୁଥିବେ । ହୁଏତ ଏକା ଭଳି ଦରଦଭରା କଥା । ପୁରୁଣା ସୁର, ନୂଆ ଗୀତ । ମୀରୁ ତାଙ୍କ କୋଳରେ ଆଉଜି ଯିବ । ଆଜିର ସୁଖ ଓ କାଲିର ସ୍ମୃତିରେ ସେଇ ମୁହୂର୍ତ୍ତଗୁଡ଼ିକ ଆହୁରି ସୁନ୍ଦର ହୋଇ ଉଠିବ ।

କଳ୍ପନାର ଶିଖରରୁ ଓହ୍ଲେଇ ଆସି ମୀରୁ ଅନେଇଲା ବିନୟବାବୁଙ୍କୁ । ସେ ସେମିତ ଅନେଇ ରହିଛନ୍ତି ଶୂନ୍ୟକୁ ।

କିଏ ଲୋ ସେ ସ୍ୱାମୀ ? ଯାହାଙ୍କୁ ମୁଁ ଦେଖି ନାହିଁ, ଜାଣିନାହିଁ ଆଜି ଯାଏଁ ! ଆଜି ତାଙ୍କ କଥା ଭାବୁଛି କାହିଁକି ? ଆଜି ମୋ ବିନୟବାବୁ ଅଛନ୍ତି । ହୁଏତ ଏଇ ଶେଷଥର ପାଇଁ । କଅଣ ଏତେ ଭାବୁଛନ୍ତି ସେ ? ତାଙ୍କୁ ଭାବିବାକୁ ଦେବ ନାହିଁ ।

ଆବେଗର ତୀବ୍ରତା ନେଇ ନୀରୁ ଘୁଞ୍ଚିଗଲା ବିନଭାଇଙ୍କ ପାଖକୁ ଓ ତାଙ୍କ କୋଳରେ ଲେଟି ପଡ଼ିଲା । ଅଧାଶୁଣା ସ୍ୱରରେ ଅଳି କଲା ପରି ରହି ରହି ପଚାରିଲା— "ବିନଭାଇ, କଣ ଭାବୁଛ ଏତେ ? ମୋ ଆଡ଼କୁ ଚାହିଁବ ନାହିଁ ?"

ବିନୋଦ ସ୍ୱପ୍ନରୁ ଉଠିଲା ପରି ଅନେଇଲା ନୀରୁ ଆଡ଼କୁ । କହିଲା, "କ'ଣ ଭାବୁଥିଲି କହିବି ? ଭାବୁଥିଲି ଆଗାମୀ ଦିନର କଥା ।" ତା'ପରେ କଥାରେ ଉତ୍ତାପ ଓ ଦୃଢ଼ତା ଆଣି କହିଲା, "ନୀରୁ, ଆଜି ହୁଏତ ଆମ ଏକାଠି ହେବାର ଶେଷ ଦିନ । ଗୋଟିଏ ଜିନିଷ ମାଗିବି ଦେଇ ପାରିବୁ ?

ନୀରୁ ହସିଲା । କିଛି କହିଲା ନାହିଁ । ଦୁର୍ବଳ ହସ, ଆଶଙ୍କାକୁ ଘୋଡ଼େଇବା ପାଇଁ ।

ବିନୋଦ ତା'ମନର ଭାବ ଜାଣିପାରି ହସି ଉଠିଲା । କହିଲା, "ଡର ଯାଉଛୁ କି ? ମୁଁ ଏମିତି କିଛି ମାଗିବି ନାହିଁ ମ, ଯେଉଁଥିରେ ତୋ ସୁନାର ସଂସାରରେ ଆଂଚ ଲାଗିବ ! ତଥାପି, ତୋର ଅଭୟ ନପାଇଲେ ମାଗିବି ନାହିଁ । କ'ଣ କହୁଛୁ ?"

ନୀରୁ ହସିଲା ସେମିତି । କିନ୍ତୁ ତାର ଚାହାଣି ତରଳ ହୋଇ ଆସିଥିଲା, ଓଠ କୋହଳ ହୋଇ ଆସିଥିଲା । ବିନଭାଇ ରୋମାଣ୍ଟିକ୍ ଲୋକ । ତାଙ୍କ ମାଗିବାରେ ବିପଦ ନାହିଁ । ସେ ଆଘାତ ଦେଇ ପାରିବେ ନାହିଁ । ସେ କିଛି ନକହି ବିନଭାଇଙ୍କ ଗଳାରେ ତାର ଦୁଇ ବାହୁ ଛନ୍ଦି ଆଣି ଅନେଇଲା ତାଙ୍କ ଆଖିକୁ । ସତେ ଯେପରି ତାଙ୍କୁ ମନ୍ତ୍ରମୁଗ୍ଧ କରିଦେବ ତା' ଚାହାଣିରେ । ବିନଭାଇ କିଛି ମାଗି ପାରିବେ ନାହିଁ, ମାନି ନେବେ ।

କିନ୍ତୁ ତାଙ୍କ ଚାହାଣିରେ ସେଇ ଅସ୍ଥିର ଉଦ୍‌ବେଗ । ନୀରୁକୁ ମଜା ଲାଗିଲା । ବିନଭାଇଙ୍କର ସେଇ ନରମ କରୁଣ ଆଖି ହଠାତ୍ ଅବୁଝା ହୋଇ ଉଠିଛି, ଜିଦ୍ କରି ବସିଛି ପିଲାଙ୍କ ପରି । ତାକୁ ଡର ବି ଲାଗିଲା ଟିକିଏ । ଶେଷକୁ ଆଶଙ୍କା ଆଶ୍ୱାସନା ଭିତରେ ବ୍ୟସ୍ତ ହୋଇ ଯାଇ ରାଗିଲା ପରି ହୋଇ ସେ କହିଲା, "କୁହ, କ'ଣ କହୁଛ । ମାନି ଗଲି ।"

"ଯାହା ମାଗିବି ଦେବୁ..."

"ହୁଁ ।"

"ମୁଁ—କହିବି ?" ତା'ପରେ ଟିକିଏ ରହିଯାଇ, "ନୀରୁ, ତୁ ଚାଲିଯିବୁ । ତୋ ଜୀବନରେ କିଛି ଅଭାବ ରହିବ ନାହିଁ । ତୁ ଯେଉଁଠିକୁ ଯିବୁ ଖୁସି ହେବୁ, ଅନ୍ୟକୁ ଖୁସି କରି ପାରିବୁ । କିନ୍ତୁ ମୋ ପାଇଁ କ'ଣ ବାକି ରହିଲା ଏଥିରୁ ? ନୂଆ ବସନ୍ତ ଆସିଥିଲା, ନୂଆ ଅନୁଭୂତି ଆସିଥିଲା । ତା'ପରେ ଯୋଉ କଥାକୁ ସେଇ କଥା ।

ଫେରିଯିବ ମୋର ପୁରୁଣା ଖୋଳକ୍ । ସେଇଲାଗି ମୁଁ ଚାହେଁ, ମାଗୁଛି ତୋର ଲମ୍ବା ସୁଖମୟ ଜୀବନର ମୂହୂର୍ତ୍ତିଟିଏ, ଅରୁଟିଏ ଖାଲି । ଯାହା ଆଜିଯାଏ ମାଗି ପାରି ନାହିଁ, କାହିଁକି ଜାଣେ ନାହିଁ । ହୁଏତ ତୋର କୁମାରୀତ୍ୱକୁ ବାଧା ହେବ, ହୁଏତ ଆଉ କ'ଣ, ମୁଁ କହି ପାରିବି ନାହିଁ । କିନ୍ତୁ ଜୀବନ ଲମ୍ବା । ସେଇ ସମ୍ପୂର୍ଣ୍ଣ ଆନନ୍ଦର ମୁହୂର୍ତ୍ତିଟିକୁ ମୁଁ କିଣେ ବାଛି ନେବି ଦିନେ । ଦେଇ ପାରିବୁ ?"

ବିନଭାଇ କହି ଚାଲିଛନ୍ତି । କ'ଣ କହୁଛନ୍ତି ? ସହଜ କଥା, ମଳାଧୁଳା ନାହିଁ । ତଥାପି ମୀରୁ ଭାବିଲା ବୁଝିହେଉ ନାହିଁ ସେ କଥା, ସେ ବୁଝିବାକୁ ଚାହେଁ ନାହିଁ ।

ଅସଙ୍ଗତ କଥା । ଅସୁନ୍ଦର କଥା । ନା, ଖାଲି ତା' ନୁହେଁ । ଏଇ ଗ୍ରେଟିଆ କଥାଟିରେ ଝଡ଼, ନିଆଁ, ଛପି କରି ଅଛି । ସବୁ କିଛି ଚହଲେଇ ଦେବ, ଭାଙ୍ଗି ଚିକିଟିକି କରିଦେବ । ଏ ଖାଲି ଗୋଟିଏ ମୁହୂର୍ତ୍ତ ନୁହେଁ । ପୁରା ଜୀବନର ଦାବି । ବିନଭାଇ ସ୍ୱାର୍ଥପର । ମୀରୁର ଇଚ୍ଛା ହେଲା ସେ କାନ୍ଦି ପକେଇବ, ପଳେଇଯିବ ସେଠୁଁ ।

ହେଲେ ମୀରୁ ପଳେଇଗଲା ନାହିଁ । କାନ୍ଦି ପାରିଲା ନାହିଁ । ବିନଭାଇଙ୍କ ଆଡ଼କୁ ଅନେଇଲା । ତାଙ୍କ କଥା ଥମି ଯାଇଛି । କିନ୍ତୁ ତାଙ୍କ ଆଖିରେ କିବଡ଼ କରୁଣତା । କାନ୍ଦି ପକେଇବେ ପରା ! ସେ କାହାଣୀ କହୁଛି—ମୀରୁ, ତୁ ଏଡ଼େ ସ୍ୱାର୍ଥପର ? ଏତିକ ଦେଇ ପାରିବୁ ନାହିଁ ? ମୋ ସଂସାରର ସୁହାଗଟିକି ନେଇ ଯାଇଛୁ । ଆଉ ତୁ ତୋ'ର ସୁଲକ୍ଷଣୀ, ସୁମଙ୍ଗଳୀ, ସ୍ୱାମୀସୁହାଗିନୀ ଜୀବନର ଗୋଟିଏ ମୁହୂର୍ତ୍ତ ଦେଇ ପାରିବୁ ନାହିଁ ?

ମୀରୁ କିଛି ନକହି ବିନଭାଇଙ୍କ ଛାତିରେ ମୁହଁ ଗୁଞ୍ଜି ଦେଲା । ଗୋଟିଏ ମୁହୂର୍ତ୍ତ । ଖାଲି ଗୋଟିଏ ମୁହୂର୍ତ୍ତ । ବିନଭାଇ ତାକୁ କିଅନ୍ତି— । ସେତିକରେ ଆସୁ ଦେଇ ଦେବାର ଆନନ୍ଦ, ଗୌରବ । ଆଉ ତ କିଛି ଚାହିଁବେ ନାହିଁ ସେ । ଅଜାଣତରେ ତା ଆଖିରେ ଲୁହ ଆସିଗଲା ।

"ମୀରୁ, କାନ୍ଦୁଛୁ ? ଆଚ୍ଛା ହେଉ, ମୋ ଭୁଲ ହୋଇଗଲା ।"

"ନାଇଁ, ନାଇଁ, ବିନଭାଇ ! ମୋତେ ଭୁଲ ବୁଝ ନାହିଁ । ମୁଁ ତୁମକୁ କେବେ କିଛି ମନା କରି ନାହିଁ, ମନା କରିପାରିବି ନାହିଁ । ମନା କଲେ ଶାନ୍ତି ପାଇବି ନାହିଁ ।" ମୀରୁ ଅସ୍ଥିର ହୋଇ କହି ଉଠିଲା । ବିନୋଦ ତା ଓଠରେ ହାତ ଦେଇ ଆଉ କିଛି କହିବାକୁ ଦେଲା ନାହିଁ । ଲୁହ ପୋଛି, ତା ମୁହଁରେ ହାତ ବୁଲେଇ ଆଣିଲା ।

…ଘରକୁ ଫେରିବା ବାଟରେ ଦୁହେଁ କିଛି କଥାବାର୍ତ୍ତା ହୋଇନାହାନ୍ତି, ଗ୍ରାମ୍ଯ ।

ମୀରୁ ଭାବିବାକୁ ଚାହୁଁ ନାହିଁ । ଭାବନାକୁ ଆଡ଼େଇ ଦେଇ ମନକୁ ଫାଙ୍କା ରଖିବାକୁ ଚାହୁଁଛି । ବନଭାଇଙ୍କ କଥା ଭାବୁ ନାହିଁ । ନିଜ କଥା ଭାବୁ ନାହିଁ । ପାଖ ଦେଇ ଲୋକବାକ, ଘୋଡ଼ାଗାଡ଼ି ଚାଲି ଯାଉଛନ୍ତି । ଅନ୍ଧାର ଭିତରେ ଆଲୁଅ ଚମକୁଛି, ପାଣି ଚକଚକ ହେଉଛି, କଥାର ଖଣ୍ଡେ ଖଣ୍ଡେ ଶୁଭି ଯାଉଛି । ଜୀବନ ଚଞ୍ଚଳ ହେଉଛି ଅନ୍ଧାର ଭିତରେ । କିନ୍ତୁ ବନଭାଇ ରିକ୍ସାରେ ବସିଛନ୍ତି ଥିର୍ଣ୍ଣା ହୋଇ । ସ୍ପନ୍ଦନ ନାହିଁ । ମଣିଷ ଲୁହିନ୍ତି, ମହାଶୂନ୍ଯ । ସତେ ଯେପରି ସେ ଠିଆର ହୋଇଛନ୍ତି ବାନ୍ଧ ରଖିବା ପାଇଁ, ବାଟ ଓଗାଳିବା ପାଇଁ, ଜୀବନ ଉପରେ ବଡ଼ ଅନ୍ଧାରିଆ ଛାଇ ପକେଇବା ପାଇଁ ।

ଗାଡ଼ି ଚାଲି ଯାଉଛି, ଅବାଟକୁ ଚାଲିଯିବ—ଯାଉ । ତା'କୁ ରୋକ ହେଉ ନାହିଁ । ଡ଼ର ଲାଗୁଛି, କିନ୍ତୁ ତା' ସାଙ୍ଗରେ 'ଦେଖାଯାଉ' ଭାବ । ଆଡ଼ଭେଞ୍ଚର । ନୂଆ କିଛି, ସମସ୍ତଙ୍କ ଜୀବନରୁ ଭିନ୍ନ । ମୀରୁ ଭାବିଲା ନିଜକୁ ବାହାବା ଦେବ ଯେ ସେ ଏ ଘଟଣାଟିକୁ ସହଜ ଭାବରେ ନେଇ ପାରିଛି ।

ବନଭାଇ ବସି ରହିଛନ୍ତି ସେମିତି । ନିର୍ବିକାର । କେମିତି କାହିଁକି ଏ ଲୋକଟି ତା ଜୀବନରେ ଆସିଲା ?

( ୨ )

ମନୁଟା ଭାରି ଚଗଲା । ଜାମା ଖଣ୍ଡେ ପିନ୍ଧେଇବ ବୋଲି ସେତେବେଳୁ ଲାଗିଛି ତା ସାଙ୍ଗରେ, କିନ୍ତୁ ସେ ଶୁଣୁ ନାହିଁ । ମୀରୁ ଗ୍ରେଟ ଜାମା ଖଣ୍ଡିକ ଧରି ରହିଗଲା ଟିକିଏ । କିନ୍ତୁ ସବୁଦିନେ ହୁଏତ ଜାମା ପିନ୍ଧେଇବାକୁ ପାଞ୍ଚମିନଟ୍ ଲାଗେ । ଆଜି ପନ୍ଦର ମିନଟ୍ ଲାଗିଲାଣି କାହିଁକି ?

ଘର ଭିତରକୁ ଖରା ପଶି ଆସୁଛି । ପବନ ରହି ରହି ଘୂରି ଯାଉଛି କାଗଜ ପତର, ଶାଢ଼ି ଲୁଗା ଭିତରେ । ବଗିଚାର ମନ୍ଦାରଫୁଲ ଖରାରେ ଚହଟି ଜଳଜଳ ହୋଇ ଅନେଇଛି, ଅଲଜୁକ ପରି । ପାଖଘର ଫୁଲଲତାରେ ଘୋଡ଼େଇ ହୋଇ ଯାଇଛି । ଗୃହିଣୀ ବାରଣ୍ଡାରେ ଛିଡ଼ା ହୋଇ ଅନେଇ ରହିଛନ୍ତି, ଛବିଟିଏ ପରି । ଚିନ୍ତା ନାହିଁ, ଦକ ନାହିଁ ।

ଏଠି ଏବେ କୋଉ ଚିନ୍ତାଦିକ ମାଡ଼ି ବସିଛି ? ମୀରୁ ନିଜକୁ ଆଖି ଦେଖେଇଲା । ଏଠିକା ଖରାରେ କଣ ବେଶି ତାତି ? ପବନ ବେଶି ଅଶାନ୍ତିଆ ?

ଚକ୍‌କଣ ଶୀତଳ ଚଟାଣ । ପୁଅର ଢଳଢଳ ସରଳ ଚାହାଣି । ବାପ ପଣ । କାନ୍ଥରେ ବାହାଘରର ପରର ଫଟୋ । ମିରୁ ଓ ସେ । ଘରଣୀହାତଛୁଆଁ ଏଇ ବନ୍ଧଥାକ, ଖେଳଣା ଆଲମାରି, ଲୁଗା ଅଲଗୁଣି, ଫୁଲଦାନିର ସଜଫୁଲ, ତକିଆ ଖୋଳର ଛୁଞ୍ଚିକାମ । ମଉଳା ମଲ୍ଲୀଫୁଲ ପୁଞ୍ଜାଏ ତକିଆକୁ ଲାଗି କରି । ଆଉ ତା ସାଙ୍ଗକୁ ତା ମଣିଷଟିର ହାତଛୁଆଁ ଏଇ ତକିଆ ଖୋଳର ତେଲଚକଟା, ପାଇପ୍‌ର ଦରଜଳା ତମାଖୁ ବାସ୍ନା, ଓ ବିଛଣାରେ ବିସ୍ତୃତ ଖବରକାଗଜର ଖଣ୍ଡ ଖଣ୍ଡ । ସବୁ ତ ଠିକ୍ ଅଛି । ଖରଚ୍ଛାଇ, ସଜଡ଼ା ଅସଜଡ଼ା, ବାସ୍ନାତେଲ ଓ ତମାଖୁ ବାସ୍ନା ମିଶାମିଶି ଏଇ ଆମ ଘର । ସେ ଓ ମୁଁ ଶାନ୍ତିର ସଂସାର ।

ହେଲେ ସେ ଚିଠି ଖଣ୍ଡିକ ପଡ଼ିଛି ସେମିତି ଟେବୁଲ ଉପରେ । ପବନ ସବୁଥିରେ ଲାଗୁଛି, କିନ୍ତୁ ତାକୁ ଉଡ଼େଇ ଦେଉ ନାହିଁ, ଉଡ଼େଇ ଦେଇ ପାରୁ ନାହିଁ ।

ସେ ଚିଠିରେ ଅଛି, ବିନଭାଇ ଆସିବେ ଆଜି । ବାହାଘରର ପ୍ରାୟ ଦୁ'ବର୍ଷ ପରେ ।

ସେ ବାହାଘରକୁ ଆସିନାହାନ୍ତି । ଖାଲି ମାମୁଲି ଆଶୀର୍ବାଦର ଚିଠି ଖଣ୍ଡିଏ ପଠାଇ ଦେଇଥିଲେ, ଶାଶୁଘରକୁ । ସେ ଆମ ଦୁଇଜଣଙ୍କୁ ଦେଖି ନାହାନ୍ତି ବାହା ବେଦୀ ଉପରେ । ଆମକୁ ଏକାଠି ଘର କରିବାର ଦେଖି ନାହାନ୍ତି । ଆମ ଶ୍ରେଷ୍ଠ ଘରକରଣାର ବଡ଼ପଣ ତାଙ୍କ ଆଖିରେ ପଡ଼ି ନାହିଁ । କେମିତି ଗୋଟିଏ ହସର ଛାଇ ପଡ଼େ ଅନ୍ୟ ଜଣକ ଓଠରେ । ଜଣକ ଆଖିର ଚାହାଣିରେ ଆଉ ଗୋଟିଏ ଚାହାଣି ଚଞ୍ଚଳ ହୋଇ ଉଠେ । କେମିତି — । ଧେତ୍, ବିନଭାଇ ନିହାତି ଖରାପ ଲୋକ । ଆସିବାର ଥିଲା ଯଦି ମୂଳରୁ ଆସି ଦେଖିପାରିଲେ ନାହିଁ ।

ମିରୁ ମନୁକୁ ପାଖକୁ ଟାଣି ଆଣିଲା । ମୋ ପୁଅ । ଥରକୁ ଥର ତାକୁ ଛାତିରେ ଲଗେଇ ମିରୁ ସେଇକଥା କହି ଚାଲିଥାଏ । କେହି ଯେମିତି ଭୁଲ ନ କରୁ—ଇଏ ମୋର, ସବୁଠାରୁ ଗେହ୍ଲା, ସବୁଠାରୁ 'ମୋର' । ଏ ଦୁର୍ଗ ଭିତରେ ପଶିବ କିଏ ?

ମନୁ, ମୋର ଅଭେଦ୍ୟ କବଚ । ମିରୁକୁ ହାଲୁକା ଲାଗିଲା । ସେ ପୋଷ୍ଟକାର୍ଡ଼ ଖଣ୍ଡିକ ସେମିତି ପଡ଼ି ରହିଛି । ଥାଉ ସେଠି । ବିନଭାଇ ଆସିବେ । ଖୁସିର କଥା । ବିନଭାଇ ଭାରି ଭଲ, ନିଜର ଲୋକ । ସ୍ୱାମୀ-ସ୍ତ୍ରୀଙ୍କୁ ଦେଖି ଖୁସି ହେବେ, ମାଆପୁଅଙ୍କୁ ଦେଖି ଖୁସି ହେବେ । ଏଥିରେ ଭାବିବାର କିଛି ନାହିଁ ।

ଏଇ ସୁକ୍ଷ୍ମସୁନ୍ଦର ଛବି । କାହାର ସତ ବଳିବ ସେଥିରେ ହାତ ଲଗେଇ ମଇଳା କରିଦେବାକୁ, ନଷ୍ଟ କରିଦେବାକୁ ?

ପୂଅକୁ ଛାଡ଼ି ଦେଇ ମୀରୁ ଗଲା ଆଇନା ଟେବୁଲ ପାଖକୁ । ଟେବୁଲ ଉପରେ ଚଠି ଥୁଆ ହୋଇଛି । ମୀରୁ ଚଠିରୁ ଦର୍ପଣକୁ ଅନେଇଲା ।

ହସିଲା ମୁହଁ । କଥାକୁହା ଆଖି । କପାଳ ଉପରକୁ ଗ୍ରେଟ ହୋଇ କେତେ ବାଳ, ଗୋଲେଇ ହୋଇ । ଚୂର୍ଣ୍ଣକୁନ୍ତଳ—ନା, ବିନଭାଇ କହୁଥିଲେ ଯାକୁ କୁହନ୍ତି ଚୁମ୍ବନକୁନ୍ତଳ । 'କସ୍-କର୍ଲ' । ଏଇତକ ପାଇବା ପାଇଁ ଆଧୁନିକାମାନେ, ଫିଲ୍ମଷ୍ଟାରମାନେ କେତେ କଷ୍ଟ କରନ୍ତି, କେତେ ସାଧନା କରନ୍ତି । ମୁହଁ ଯତ୍-ସାମାନ୍ୟ ଗୋରା ହୋଇଥିଲେ ବୋଧହୁଏ—ବାହାଘର ପରେ ବୋଧହୁଏ ରଙ୍ଗ ଫିଟିଯାଇଛି ଟିକିଏ । ହେଲେ ବିନଭାଇ କହୁଥିଲେ ଏମିତି ଭଲ ହୋଇଛି । ଗୋରା ହୋଇଥିଲେ ମୁହଁର ଜ୍ୟୋତି ତା' ସୁନ୍ଦରପଣକୁ ଘୋଡ଼େଇ ଦେଇ ଥାଆନ୍ତା । ଉତ୍ତାପ ଆଣନ୍ତା, ଶାନ୍ତି ଆଣନ୍ତା ନାହିଁ ।

ବିନଭାଇ କହୁଥିଲେ, ବିନଭାଇ କହୁଥିଲେ ! ସତେ ଯେମିତି ସେ ବିନଭାଇଙ୍କ ସାର୍ଟିଫିକେଟ୍‌କୁ ଅନେଇ ବସିଛି !

ସେ ଯାହାହେଉ, ବିନଭାଇଙ୍କ ଆଖିରେ ତ ସେଇ ଦ'ବର୍ଷ ତଳର ମୀରୁ । ସେ ଘରଣୀ ମୀରୁକୁ ଦେଖି ନାହାନ୍ତି, ମାଆ ମୀରୁକୁ ଦେଖି ନାହାନ୍ତି । ହୁଏତ ଦେଖି ପାରିବେ ନାହିଁ । ତାଙ୍କ ଆଖିରେ ସେ ସେଇ ମୀରୁ । ସବୁ ଦେଇଛି ତାଙ୍କୁ, ଯାହା ସେ ଚାହିଁଛନ୍ତି । ସେଇ ଚାହାଣି, ସେଇ ହସ, ସେଇ କଥା ।

ଦୁଇବର୍ଷ ତଳର କଥାଦିଆ । ଗୋଟିଏ ମୁହୂର୍ତ୍ତିର ଦାବି । ମୀରୁ ମାନି ନେଇଛି, କଥା ଦେଇଛି ।

ନା-ନା, ସେ ମିଛ କଥାଦିଆ । ମିଛ ଭଲ ପାଇବା । ପିଲାଳିଆ, ବିକୃତ । ସେତେବେଳେ ସେ ଭାବୁଥିଲା ସେ ଗୋଟାଏ ବଡ଼ କାମ କରୁଛି । ପିଲାଦିନେ ତା'ର ସାଙ୍ଗ ସରଳା ସାଙ୍ଗରେ ହାତରୁ ରକ୍ତ କାଢ଼ି 'ମରିବାଯାଏଁ ବନ୍ଧୁ' ହେଲା ପରି । କାହିଁ ସେ ସରଳା ଆଜି ? ବାହାସାହା ହୋଇ କେଉଁଠି ଘର କରିଥିବ, ତା'ର ସ୍ୱାମୀକୁ କହୁଥିବ ପିଲାଦିନର ଗୋଟାଏ ମଜାଗପ । ଆଉ ବିନଭାଇଙ୍କ କଥା । ସ୍ତ୍ରୀପିଲାଙ୍କୁ ଛାଡ଼ି ଆଉ ଜଣକୁ ଭଲପାଇବାକୁ ବିକୃତି ଛଡ଼ା ଆଉ କଣ କୁହାଯାଇ ପାରେ ? ସେଇ ଭଲ ପାଇବାର ଦୋହାଇ ଦେଇ ଦିନେ କେଉଁ ଅନ୍ଧାରିଆ କୋଣରେ କ'ଣ ଗୋଟାଏ କଥା ଦିଆନିଆ ହୋଇଥିଲା । ଆଜି ତାର ମୂଲ୍ୟ କଅଣ ?

କିନ୍ତୁ ହୁଏତ ବିନଭାଇ ବୁଝିବେ ନାହିଁ । ଅଖାଡ଼ୁଆ ଲୋକ । ରୋମାଣ୍ଟିକ୍ । ତାଙ୍କ ପାଇଁ କିଛି ବିଶେଷ ଉପାୟ ଦରକାର ।

ମୀରୁ ଭାବିଲା । ଦୁଇ ମିନଟ୍ ଭାବିଲା ପରେ ତା ମୁହଁରେ ଆସିଲା, 'ପାଇଛି'ର ଭାବ । ମୀରୁ ହସିଲା ।

ମନୁ ଖେଳୁଛି କାଠ ଘୋଡ଼ାଟାକୁ ଧରି । ମୀରୁର ଇଚ୍ଛା ହେଲା ତାକୁ ଟାଣି ଆଣି ଗେହ୍ଲା କରିଦିଅନ୍ତା ।

ସେଇଦିନ ରାତି ।

ସେମାନେ ଖାଇ ବସିଛନ୍ତି । ବିନଭାଇ ଓ ସେ । ମୀରୁ ସାମନାରେ ବସିଛି ଖାଇବା ଖବର ବୁଝିବା ପାଇଁ । କହିଲା ମୁଁ ପରେ ଖାଇବ, ମନୁକୁ ଖୋଇଲା ପରେ । ଗାଲରେ ହାତ ଭରା ଦେଇ ଶୁଣୁଛି ସେମାନଙ୍କ ଗପ । ଷ୍ଟୁଡ଼େଣ୍ଟ୍ କଥା, ରାଜନୀତି କଥା, ତୃତୀୟ ପଞ୍ଚବର୍ଷୀୟ ଯୋଜନା, ଆଉ କେତେ କଣ । ମୀରୁ ମଝିରେ ମଝିରେ ହସି ଦେଉଛି ଖାଲି ।

ମୀରୁ ଢଙ୍ଗ କରି ବସିଛି ? ଢଙ୍ଗ କରି ହସୁଛି ? ଷ୍ଟାଇଲ୍ । ହୋଇଥିବ । ମୀରୁ ମନେ ମନେ ହସିଲା । ହଁ, ତାର କାରଣ ସେ ଭାରି ଖୁସି ଅଛି ଏଇକ୍ଷଣି । ସବୁ କେମିତି ମଜାର ଲାଗୁଛି । ଦୃଶ୍ୟ ଦେଖିଲା ପରି । ଦେଖଣାହାରି ଜଣେ—ମୀରୁ ।

ପାଖାପାଖି ବସିଛନ୍ତି ଦୁଇଜଣ— ସେ ଓ ବିନଭାଇ । ଅଗଣିତ ଲୋକଙ୍କ ଭିତରୁ ଦୁଇଜଣ । ଅଲଗା ରୂପ । ଅଲଗା ଭାବ । କିନ୍ତୁ ମୀରୁ ଦୁଇଜଣଙ୍କୁ ଜାଣିଛି, ଭଲ ଭାବରେ ଜାଣିଛି । ହୁଏତ ଆଉ କେହି ସେମିତି ଜାଣି ନଥିବେ ।

ବିନଭାଇ ଅଛନ୍ତି ସେମିତି । ନରମ ଗୁହାଣି । ଧୀର କଥା—କେଉଁ ଭିତରୁ ଉଠି ଆସୁଛି ପରି । ଭରଭର ହେଲେ କଥା ଅସ୍ପଷ୍ଟ ହୋଇଯାଉଛି, ପାଟି ଖନି ଲାଗିଲା ପରି ମନେ ହେଉଛି । ହସ ନିବେଦନ କଲା ପରି, କ୍ଷୀଣ ଓ ମୃଦୁ । ସତେ ଯେପରି ନିଜ ପାଇଁ ହସୁ ନାହାନ୍ତି, ଅନ୍ୟକୁ ଭେଟି ଦେଉଛନ୍ତି । ଗାଲରେ ସେ କଟା ଦାଗଟା ସେମିତି ଅଛି । ହାତରେ ସେଇ ଡେଉଁରିଆ ବନ୍ଧା ହୋଇଛି । ଓଲଟା ଓ ଅସାଧାରଣ ମଣିଷଟିଏ, ବିନଭାଇ । ନରମ ଚେହେରା, ହେଲେ ବଜ୍ରମୁଷ୍ଟି ପରି ହାତ । ଧୀର କଥା, କିନ୍ତୁ ସେଇ ପୁଣି ଟାଣୁଆ ହୋଇଯାଏ ପଥରରେ ଦାଗ ପକେଇଲା ଭଳି ।

ବିନଭାଇ ସେମିତି କାହିଁକି ଅନେଇଲେ ତା' ଆଡ଼କୁ ? କ'ଣ ଜାଣି ପାରିଲେ ସେ କ'ଣ ଭାବୁଛି ? ନା ନା, ବିନଭାଇ ଭାବୁକ ହୋଇପାରନ୍ତି, କିନ୍ତୁ ଅନ୍ୟର ଭାବନା ଜାଣିନେଲା ପରି କ୍ଷମତା ପାଇ ନାହାନ୍ତି । ତା'ହେଲେ ତ— ।

କିନ୍ତୁ ସେ କିଛି ନକହି ଏମିତି ବସି ରହିଛି । ଗପୁଡ଼ି ମୀରୁ ଚୁପ୍ ହୋଇ ବସିଛି କାହିଁକି ? କାଲେ କ'ଣ ଭାବୁଥିବେ ବିନଭାଇ — ।

ଦୁହିଁଙ୍କର ଗପ ମଝିରେ ମୀରୁ ହଠାତ୍ ପଚାରି ବସିଲା, "ବିନଭାଇ ଖାଉ ନାହଁ କାହିଁକି ? ଆଉ କଣ ଆଣିବି, ଭଜା, ଖଟା ?"

ବିନଭାଇ କେବଳ ହାତଟାକୁ ଆଡ଼େଇ ଆଣିଲେ ମନା କରିବା ପାଇଁ । ତା'ପରେ ପୁଣି ଗପର ଖିଅ ଧରିଲେ—ତୃତୀୟ ପ୍ଲାନ୍‌ରେ ଗୋଟାଏ ନୂଆ କଥା ଅଛି ।

ମୀରୁ ଚୁପ୍‌ ହୋଇଗଲା । ଧନ୍ୟ ବିନଭାଇ । ଜଣେ ଭାବିବ ଯେ ମୀରୁ ଖାଲି ତାଙ୍କର ବନ୍ଧୁପତ୍ନୀ କିମ୍ବା ଦୂରସମ୍ପର୍କୀୟ କେହି ଜଣେ । ତା' କଥାକୁ ତାଙ୍କର ନଜର ନାହିଁ, ସ୍ପୃହା ନାହିଁ । ମାଇପି କଥା । ନିଜକୁ କେତେ ଘୋଡ଼େଇ ପାରନ୍ତି ସେ ଅନ୍ୟ ଆଗରେ !

ବାହାରେ ପବନ ବନ୍ଦ ହୋଇଯାଇଛି । କିନ୍ତୁ ଜହ୍ନ ଲହଡ଼ି ମାରୁଛି । ଝରକାବାଟେ ଦେଖାଯାଉଛି ପାଖ ବଣିଆଘରର ଚାଳଗୁଡ଼ି । ସାରି ସାରି ନଡ଼ା ଉପରେ ଚେଉଚେଉକା ଜହ୍ନ ଆଲୁଅ । ଜହ୍ନ ମତାଉଛି ସମସ୍ତଙ୍କୁ, କିନ୍ତୁ ପବନ ନାହିଁ । ସବୁ ଗୁମ୍‌ସୁମ୍‌ । ଝଡ଼ ବାହାରେ ଖେଳି ପାରୁ ନାହିଁ, ଭିତରେ ଭିତରେ ରହି ଯାଉଛି ।

ଘର ଭିତରେ ଦୁଇଜଣ ପୁରୁଷ ଗପ କରୁଛନ୍ତି । ଆଲୁଅ ତୋଫା ନୁହେଁ, ନାଲିଚଆ । ମୋଟା ମୋଟା କଥା, ସଙ୍ଗୀତ ନାହିଁ ସେଥିରେ । ପବନ ବନ୍ଦ ହୋଇ ଯାଇଛି । ଜହ୍ନ ଆଲୁଅକୁ ଏଡ଼ାଇ ଦେଇ ଦୁଇଜଣ ପୁରୁଷଙ୍କ ଗପ । ପାଖରେ ସେ, ନାରୀ ।

ଦୁଇଜଣ ପୁରୁଷଙ୍କ କଥା । କନ୍ଦଳ ହୋଇଯାଏ ଗୋଟିଏ ନାରୀକୁ ନେଇ । ପୃଥିବୀର ପୁରୁଣା ଇତିହାସ । ସବୁ ଛାରଖାର ହୋଇଯାଏ ସେଥିରେ—ଘରକରଣା ସୁଖ, ଶାନ୍ତି, ସୁନାର ସଂସାର ।

ଯେଉଁ ଦୃଶ୍ୟ ତାକୁ ମଜା ଲାଗୁଥିଲା, ତାହା ବର୍ତ୍ତମାନ ଅସହ୍ୟ ମନେ ହେଲା । କଳ୍ପନାରେ ଆଶଙ୍କାର ଲମ୍ବା ଦଉଡ଼ି ବୁଲେଇ ଆଣି ନିଜ ଗଳାରେ ବାନ୍ଧି ଦେଇ ସେ ସ୍ଥିର ଦୃଷ୍ଟିରେ ରହିଗଲା କିଛି ସମୟ । ତାର ଖିଆଲ ନାହିଁ ସେମାନେ ଉଠି ଯାଇ ମୁହଁ ଧୋଉଛନ୍ତି । ସେ କହୁଛନ୍ତି, "ମୁଁ ଟିକିଏ ଯାଉଛି ବିନୋଦବାବୁ, ଷ୍ଟେସନ୍‌ ଆଡ଼େ କାମ ଅଛି । ଆପଣ ମୀରୁ ସାଙ୍ଗରେ ଗପ କରୁଥାଆନ୍ତୁ । ଆପଣ ତ ଅଛନ୍ତି ଏଇକ୍ଷଣି— ।" ବିନଭାଇ ମୁଣ୍ଡ ଟିଙ୍ଗାରୁଛନ୍ତି ।

ମୀରୁର ଚେତା ପଶିଲା । ସେ ଚାଲି ଯାଉଛନ୍ତି । ଘରେ ରହିବେ ବିନଭାଇ ଓ ସେ ।

ଭାବିବାକୁ ବେଳ ନାହିଁ । ମୁହାଁମୁହିଁ ହେବାକୁ ପଡ଼ିବ ଏଇ ମୁହୂର୍ତ୍ତିଗୁଡ଼ିକ ସାଙ୍ଗରେ । ଉପାୟ ନାହିଁ ।

ସେ ଗ୍ଲଗଲେଣି । ବନଭାଇଙ୍କୁ କଥା ଆରମ୍ଭ କରିବାକୁ ସୁବିଧା ନଦେଇ ମୀରୁ ପଚ୍ଚରି ବସିଲା କେତେ କଥା—ବାପା କେମିତି ଅଛନ୍ତି ? ପିଲମାନେ କେମିତି ଅଛନ୍ତି ? ନମି ଅପାଙ୍କ ଖବର କଅଣ ? ପୁଣି କେବେ ଏଠିକି ଆସିବେ ? ଆଉ କେଉଁଠିକି ବଦଳି ହେବାର ନାହିଁ ତ—ଇତ୍ୟାଦି, ଇତ୍ୟାଦି ।

ବନଭାଇ ପ୍ରଶ୍ନର ଉତ୍ତର ଦେଉଛନ୍ତି । କିନ୍ତୁ ଅଳ୍ପକଥା କଥା, ଖାଲି ପ୍ରଶ୍ନର ମୂନକୁ ଛୁଇଁଲ ପରି ।

ବନଭାଇ କଅଣ ଟିକିଏ ହସୁଛନ୍ତି ନା ତାଙ୍କ ଓଠ ହସିଲ ଭଳିଆ ଦେଖା-ଯାଉଛି ? ନା-ନା—ଭୁଲ ଧାରଣା । ହସିବେ କାହିଁକି ? ହସିବାର କଣ ଅଛି ?

ହେଲେ ତାର ପ୍ରଶ୍ନର ପେଡ଼ି ଖାଲି ହୋଇଗଲାଣି । ଆଉ କଣ କହିବ ? ଏଥର ବନଭାଇଙ୍କ ପାଳି, ସେ କଣ ପଚ୍ଚରିବେ । ମୀରୁ ଅଣନିଃଶ୍ୱାସ ହୋଇ ଅନେଇ ରହିଲ ତାଙ୍କର ପ୍ରଥମ ପ୍ରଶ୍ନକୁ ।

"ପୁଅ କାହିଁ ?—ଦେଖୁନାହିଁ ତାକୁ", ବନଭାଇ ପଚ୍ଚରିଲେ ।

"ପୁଅ ? ପୁଅକୁ ଦେଖୁନାହଁ ? ପୁଅ ଶୋଇଛି ପରା—" ମୀରୁ ଧଡ଼ପଡ଼ ହୋଇ ଗ୍ଲଗଲ ଶୋଇବାଘର ଭିତରକୁ ।

ବନଭାଇ ବୋଧେ ଆସିବେ ପଛେ ପଛେ । ମୀରୁ ଶୋଇଥିବା ମନୁ ଦେହରେ ହାତ ଦେଇ ଅନେଇଲ ପଛକୁ । ଆଶ୍ୱସ୍ତ ହେଲା, ସେ ଆସୁନାହାନ୍ତି ।

ମିନିଟିଏ ପରେ ସେ ଫେରିଗଲା ଡ୍ରଇଂରୁମ୍‌କୁ । ଦୁଆର ବନ୍ଧରେ ଛିଡ଼ା ହୋଇ ଟିକିଏ ସ୍ଥିର ଦୃଷ୍ଟିରେ ଅନେଇଲା ବନଭାଇଙ୍କୁ । ତାପରେ କଥାଟା ବାହାରି ଆସିଲା ତା ମୁହଁରୁ, "ମନୁକୁ ଜର ହୋଇଛି ।"

ବନଭାଇ ମୁଣ୍ଡ ଟେକିଲେ । କହିଲେ, "ସତେ ? କେତେ ଜର ଅଛି ? କଣ ଥଣ୍ଡା ଲାଗି ଯାଇଛି ନା କଣ ?"

ଉଚିତ ମାତ୍ରାରେ ସହାନୁଭୂତି ଓ ଆଶ୍ଚର୍ଯ୍ୟ । କହିଲେ, "ଆଚ୍ଛା, ତାହେଲେ ତୁ ଯାଆ ପୁଅ ପାଖକୁ । ମୁଁ ଏଠି ବସି ରହୁଛି ସତ୍ୟାନନ୍ଦ ଆସିବା ଯାଏଁ ।"

ମୀରୁ ଫେରି ଆସି ତା ଖଟରେ ଲେଟି ପଡ଼ି ହସିବାକୁ ଗ୍ଲହିଁଲା । ବନଭାଇ ବୋକା । ମୀରୁ ଜିଣି ଯାଇଛି । ଆତ୍ମସମ୍ପର୍କିଅର ବଦଳେଇ ଦେଇଛି । ବନଭାଇ ବୁଝି ପାରି ନାହାନ୍ତି ।

ନା, ବନଭାଇ ଭଦ୍ରଲୋକ । ଆଉ କିଏ ହୋଇଥିଲେ ବୋଧହୁଏ ତଥାପି ତାର ପାଉଣା ଆଦାୟ କରି ନଥାନ୍ତା । ସୁଯୋଗ ଓ ସୁବିଧା ତ ସବୁବେଳେ ଆସେ ନାହିଁ ।

କିନ୍ତୁ ବିନାଭାଇ ଯଦି ସତରେ ବୁଝି ପାରିଥିବେ, ତା'ହେଲେ ?

ବୃଥା ଆଶଙ୍କାକୁ ଘଉଡ଼େଇ ଦେଇ ମୀରୁ ପୁଅ ପାଖକୁ ଲାଗି ଆସିଲା ! ବିଚରା ମନୁ । ସେ ନଥିଲେ ସେ କେଡ଼େ ଅସୁବିଧାରେ ପଡ଼ି ନଥାଆନ୍ତା !

ବିନା କାରଣରେ ମୀରୁ ତା' ହାତ ମନୁ ଦେହରେ ବୁଲେଇ ଆଣୁଥିଲା । ପିଲାଟାକୁ ସତକୁ ସତ ଜର ହେବ ନାହିଁ ତ ?

( ୩ )

ଦଶବର୍ଷ ପରେ ।

ଅଶାନ୍ତ ନିଦରୁ ଉଠି ମୀରୁ ବଲ୍‌ବଲ ହୋଇ ଅନେଇଲା ଚାରିଆଡ଼େ । କଣ ସ୍ୱପ୍ନ ଦେଖୁଥିଲା ସେ ?

ଗୃହକର୍ତ୍ତୀ ବସିଛି ସେମିତି ତଳେ, ଗୋଡ଼କୁ ଜାକି । ଜଗି ରହିଛି ଯମ ପରି ।

ଝରକାର ଟକ୍‌ଟକ୍ ଶାଗୁଆ ପରଦାଟା ଟେଢ଼ା ହୋଇ ଟଣା ହୋଇଛି ।

କାନ୍ଥର ସେ ପାଖ କଣରେ ଅଳନ୍ଧୁ ରହିଯାଇଛି । ଝିଟିପିଟିଟାଏ ଅନେଇଛି ଡେଇଁବ ବୋଲି ।

ଓଃ—କେହି କିଛି ଦେଖିବେ ନାହିଁ ଏ ଘରେ । ବଡ଼ଲୋକ ଘର ବୋଲି ନାଁ ପଡ଼ିଛି । ହେଲେ ଆଖି ଥିଲେ ହେବ ତ ? ରୁଚି ଥିଲେ ହେବ ତ ? ପିଲାମାନେ ବାପା ପରି । ସବୁ ଅଡ଼ୁଆ କରିଦେବେ, ଅସନା କରିଦେବେ ।

ନରମ ରଙ୍ଗ, ନରମ ଫୁଲ । ନରମ ହସ, ଧୀର କଥା । ଏ ଘରେ ସେସବୁ ନାହିଁ । ସୂକ୍ଷ୍ମ ବୋଲି କିଛି ନାହିଁ । ସମସ୍ତେ ବଣମଣିଷ ।

ନରମ ହସ । ଧୀର କଥା । କ'ଣ ସ୍ୱପ୍ନ ଦେଖୁଥିଲା ସେ ?

ରୋଗଶେଯରେ ଦୁର୍ବଳ ମନକୁ ଚାବୁକ୍ ମାରି ମୀରୁ ମନେ ପକାଇଲା ସ୍ୱପ୍ନ କଥା । ନରମ ହସ, ଧୀର କଥା । ମୁଣ୍ଡରେ ହାତ ବୁଲେଇ ଆଣି କହୁଛନ୍ତି, 'ମୀରୁ, ତୁ ଭଲ ହୋଇଯିବୁ ।' ଆପଣାର କେହି ।

କିଏ ? ସେ ? ନା, ସେ ତ ସେମିତି କୁହନ୍ତି ନାହିଁ ? ସିଏ ତାଙ୍କ ହସ ନୁହେଁ । ତାଙ୍କ କଥା ନୁହେଁ ।

କିଏ, ବିନାଭାଇ ? ବିନାଭାଇ ! ସତରେ ସେ ତାଙ୍କୁ ସ୍ୱପ୍ନ ଦେଖୁଥିଲା ? ନା ସେ ନିଜକୁ ଭଣ୍ଡୁଛି ?

ବିଚାର କଥା । ବିନଭାଇ ଆଜି ମନେ ପଡ଼ିଲେ କାହିଁକି ? କାହିଁ କେତେ ବର୍ଷ ହେଲା ଦେଖିନାହିଁ ତାଙ୍କୁ । ଖୁସିରେ ଥିବେ, ସ୍ଥିପିଲା ଘରସଂସାର ନେଇ । ବାଳ ପାଚି ଆସିବଣି । ଚୁପ୍‌ଚାପିଆ ବିନଭାଇ ଆହୁରି ଗମ୍ଭୀର ହୋଇଯିବେଣି । ପୁରୁଖା, ପ୍ରୌଢ଼, ଗମ୍ଭୀର ବିନୋଦବାବୁ ।

ମୀରୁ ମନେ ମନେ ବିନଭାଇଙ୍କର ସେଇ ରୂପଟିକୁ ତିଆରି କରି ହସିବାକୁ ଲାଗିଲା । ତା'ର ମନେ ହେଲା ସେ ନୂଆ କରି ହସୁଛି—ତା' ହସ କିଏ ଦେଖନ୍ତା କି ! ହେଲେ ତା' ଶେତା ମୁହଁର ହସ କେହି ଦେଖିବାକୁ ନାହାନ୍ତି । ମନୁ ତନୁ ସ୍କୁଲ ଯାଇଛନ୍ତି । ସେ ଘରେ ଅଛନ୍ତି, ପାଖରେ ନାହାନ୍ତି ।

ହସ ନୂଆ ଲାଗୁଛି । କାହିଁକି ? ମୀରୁ ରୋଗିଣୀ ବୋଲି ସବୁବେଳେ ବସି କାନ୍ଦୁଥିବ ନା କଅଣ ? ସେ ବି ହସିବ । ନିଜ ପାଇଁ ହସିବ । ସ୍ୱପ୍ନକଥା ମନେ ପକେଇ, ବିନଭାଇଙ୍କ କଥା ମନେ ପକେଇ ହସିବ । କିଏ ମନା କରିବ ତାକୁ ?

ସ୍ୱପ୍ନର ବିନଭାଇ ପ୍ରୌଢ଼ ନଥିଲେ । ସେ ଥିଲେ ଦଶବର୍ଷ ତଳର ବିନଭାଇ । ଅଳ୍ପ ହସନ୍ତି, କିନ୍ତୁ ସେ ହସଟିକ ଭାରି ମିଠା । ଅଳ୍ପକଥା କୁହନ୍ତି, କିନ୍ତୁ ସେ କଥା ଭାରି ଧୀର, ନରମ ।

କାହିଁକି ସେ ସ୍ୱପ୍ନ ଦେଖିଲା ତାଙ୍କୁ ? ସେ ବି କ'ଣ ଭାବୁଥିବେ ମୀରୁ କଥା ?

ମୀରୁକୁ କ୍ଳାନ୍ତ ଲାଗିଲା । ସତେ ଯେପରି ବଡ଼ ଲମ୍ବା ପ୍ରଶ୍ନଟିଏ ପଚାରି ଦେଇଛି । ଉତ୍ତର ଭାବି ଠିକ୍ କରିବାକୁ ସମୟ ଲାଗିବ ।

ହେଉ । ରୋଗ ବିଛଣାରେ ସମୟ ସରୁନାହିଁ । ସେ ଆଜି ଭାବିବ ବସି ତାଙ୍କ କଥା । ରୋଗ ପରି ତା' ଭାବନା ତା ନିଜର । କେହି ସେଥିରେ ଭାଗୀ ନୁହଁନ୍ତି— ତାର ସ୍ୱାମୀ, ତାର ପିଲାମାନେ । ସେ ଭାବିବ ବସି । ଭାବନାରେ ଦୋଷ କଅଣ ?

ଭାବିବ ବିନଭାଇଙ୍କ କଥା । କଣ ଭାବିବ ? ବିନଭାଇ ଗୋଟିଏ ପାଗଳ ଲୋକ । କ'ଣ କହୁଥିଲେ ଦଶବର୍ଷ ତଳେ ? ହସକଥା, ମଜାର କଥା ।

କିନ୍ତୁ ହସ ଲାଗୁ ନାହିଁ । ବିନଭାଇଙ୍କର ପାଗଳାମିକୁ ଭାବିଲା ବେଳକୁ ମନେ ପଡ଼ୁଛି ତାଙ୍କର ଓଜନିଆ କଥା, ଆକାଶକୁ ସାକ୍ଷୀ ରଖି ଶପଥ କଲା ପରି, ଓ ତା' ଯାଚ୍ଞାକୁ ତାଙ୍କର ସେଇ ଅତି ଆତୁରତା । ବିନଭାଇ ମାଗିଥିଲେ, ମୀରୁ କଥା ଦେଇଛି । ଏଥିରେ ହସିବାର କଣ ଅଛି ?

ମୀରୁ ଆଖି ବୁଜି ଆଣିଲା । ମନେ ପକାଇଲା । ସେଇ କେଉଁ ପୁରୁଣା ସନ୍ଧ୍ୟାବେଳରେ ବିନଭାଇଙ୍କର ମୁହଁ । ନିଜକୁ କହିଲା ଜାଣିଶୁଣି ସେଇ ମୁହୂର୍ତ୍ତ, ସେଇ

ମୁହଁର ଛବି ମନେ ପକାଇବାକୁ । ନିଜକୁ ଚେତାଇ ଦେଲା ଯେ ସେଇଟି ଗୋଟିଏ ବଡ଼ କଥା, ଅସାଧାରଣ କଥା, ବର୍ଷ ବର୍ଷ ଧରି ଭାବିବା ପାଇଁ ।

ଏମାନେ କେହି ବୁଝିବେ ନାହିଁ । ବୁଝିପାରିବେ ନାହିଁ । ଏମାନେ ଖାଲି ଜଣାଶୁଣା ସବୁଦିନିଆ ସଂସାର କଥା ଜାଣନ୍ତି । କିନ୍ତୁ ଏଇ ସଂସାର ବାହାରେ କଣ ଆଉ କିଛି ନାହିଁ ? ଆଉ କିଛି ସତ, ଆଉ କିଛି ଭଲ ପାଇବା ?

'ଭଲପାଇବା' କଥାଟି ମନକୁ ଆଣିଲା ପରେ ପରେ ମୀରୁର ଆଖି ଖୋଲି ହୋଇଗଲା । ସେ ସାଦା କାନ୍ଥକୁ ଜଳଜଳ ହୋଇ ଅନେଇଲା । କଣ ଭାବୁଛି ସେ କେତେ ସାହସରେ ।

ସେ ଭଲ ପାଆନ୍ତି । ଚକ୍‌କଣ, ମୋଟାଳିଆ, ଜଣାଶୁଣା ମୁହଁ । ହସହସ ମୁହଁ । ଆଖିର ଚାହାଣି ସବୁବେଳେ ଆଖିମିଟିକା ମାରିଲା ପରି । ଜଣାଶୁଣା ମୁହଁ, ଜଣାଶୁଣା ଚାହାଣି, ଜଣାଶୁଣା ବାସ୍ନା ।

ମନୁ ଭଲ ପାଏ । ବାପ ପରି ବଡ଼ ମୁହଁ । ମାଆ ପରି ଆଖି । ମୁହଁରେ ମରଦପଣିଆ । ଆଖି ଟିକିକରେ ଛଳଛଳ । ଅଭିମାନିଆ ବଡ଼ ପୁଅ । ଆସି ଏଗାର ବର୍ଷ ହେଲାଣି, ହେଲେ ମାଆର ପଣତକାନିକୁ ମୁଠେଇ ଧରିଛି । ସେ ବି ଭଲପାଏ ।

ଆଉ ତନୁ । କାହ୍ନୁଆ ତନୁ । କଥା ନମାନି ଆସିଛି । ସେଇଲାଗି ବେଶି ଗେହ୍ଲା । ରୋଗ ବଇରାଗ ଆଣିଛି ସେଇ । ସେଇଲାଗି ବେଶି ଜାକି ଧରିଛି ବୋଉକୁ । ବୋଉ କାନ୍ଦିଲେ କାନ୍ଦିବ । ହସିଲେ ହସିବ । ବୋଉ ବିନା ବଞ୍ଚି ପାରିବ ନାହିଁ । ସେ ମଧ୍ୟ ଭଲପାଏ ।

ତେବେ ବିନଭାଇଙ୍କ ସ୍ଥାନ କେଉଁଠି ? ତାଙ୍କର ସେଇ ଭଲପାଇବାକୁ କେଉଁଠି ଖଞ୍ଜି ଦେବ ?

ବିନଭାଇ ମୀରୁକୁ ଭଲ ପାଉଥିଲେ, ତାଙ୍କର ନରମ ରୋମାଣ୍ଟିକ୍ କବିପଣିଆ ଦେଇ । ଏଥିରେ ଡର ପିବାର ଲାଜ କରିବାର କଣ ଅଛି ?

ତଥାପି ବାହାହେବା ପରେ ଜୀବନଯାକ ସେ ସେଇଆକୁ ଡରି ଆସିଛି । ବିନଭାଇଙ୍କୁ ଆଡ଼େଇ ହୋଇ ଆସିଛି ।

ବାହାପର ପୂର୍ବର ପ୍ରତିଶ୍ରୁତି—ଅରୁଟିଏ । ସେଇ ହୋଇଛି ତା'ର କୋଳୁଆ ଭୟ । ସେଇଥିପାଇଁ ପୁଅକୁ ଜର ଆଣିଛି, ଶୁଖିଲାଟାରେ । ହଠାତ୍ କେଉଁ ସାଙ୍ଗର ନିମନ୍ତ୍ରଣ ମନେ ପଡ଼ୁଛି । କିମ୍ବା 'ତାଙ୍କ' ପାଖେ ପାଖେ ଲାଗି ରହୁଛି । କାଲେ ବିନଭାଇ ଆସିବେ ତାଙ୍କର ପାଉଣା ଆଦାୟ କରି ନେବାକୁ । ହାୟ, ଏତେ ଡର ବିନଭାଇଙ୍କୁ ? ବିନଭାଇ କ'ଣ ଗୁଣ୍ଡା ନା ତସ୍କର ? ମୀରୁକୁ ହସ ଲାଗିଲା । ସତରେ କେଡ଼େ ବୋକା ଥିଲା ସେ, କେତେ ପିଲାଳିଆ ।

ବାହାଘର ପରେ ସେଇ କେଇଟା ବର୍ଷ । ଯେତେବେଳେ ସେ ମଝିରେ ମଝିରେ ଆସୁଥିଲେ ଏଠିକି । ତା'ପରେ ସେ ଚାଲି ଯାଇଛନ୍ତି ଅନେକ ଦୂରକୁ, ଏବଂ ତାଙ୍କ ସାଙ୍ଗରେ ଆଉ ଦେଖା ହୋଇନାହିଁ । କେବେ ଖଣ୍ଡେ ଚିଠି ଆସେ 'ତାଙ୍କ' ପାଖରୁ । ସେ ଚିଠି କଥା ଶୁଣିଲେ କ୍ଷଣକ ପାଇଁ ତାର କାନ ଠିଆହୋଇଯାଏ, ଶିର ଟାଙ୍କି ଉଠେ । ଡର ନୁହେଁ, ଆଉ କଅଣ । ହଠାତ୍ ଚେଇଁ ଉଠିଲା ପରି । କିନ୍ତୁ ଖାଲି ସେଇ ମୁହୂର୍ତ୍ତିଟିକ । ତା'ପରେ ସିଏ ହୋଇଯାଏ ସାଧାରଣ ଘରକରଣା ଭିତରେ ଖଣ୍ଡେ ସାଧାରଣ ଚିଠି ।

ଏଥର ଏମିତି ଦେହ ଖରାପ ହେଲା । ଏବେ ଭଲ ହୋଇ ଆସିଲାଣି । ଯଦି ଜର ବଢ଼ିଯାଇ ଆଉ କିଛି ହୋଇଥାଆନ୍ତା ? ବନଭାଇ ଆସିଥାଆନ୍ତେ ମରିବା ଆଗରୁ ?

ହଁ, ନିଶ୍ଚୟ ଆସିଥାଆନ୍ତେ । ନୀରୁ ଜୋର୍ କରି ସେଇ ପଦଟି କହିବାକୁ ଲାଗିଲା ନିଜକୁ ।

ନୀରୁ ବିଛଣାରୁ ଉଠି ବସିଲା, ନିଜ ଭାବନାରେ ବିଶ୍ୱାସ ଆଣିବା ପାଇଁ ।

ପୁରୁଣା କଥା । ହେଲେ ସେଇ କଥାର ଗ୍ରନ୍ଥି ତ ଲମ୍ବିଛି ଜୀବନ ସରିବା ଯାଏଁ । କେମିତି ଆଡ଼େଇ ଦେବ ତାକୁ ? ବନଭାଇଙ୍କର ସେଇ 'ଅରୁଚିଏ' ଖାଲି ତରୁଣୀ ନୀରୁ ପାଇଁ ନଥିଲା । ଥିଲା ନୀରୁର ଶେଷ ନିଃଶ୍ୱାସ ଯାଏଁ ।

ଛିଃ, କେଡ଼େ ଭୁଲ୍ କରିଛି ସେ ! ସେ କ'ଣ ଭାବିଥିଲା ବନଭାଇ ସ୍ୱେରି ପରି ଥରେ ଆସି ତା' ଯୌବନର ଟିକିଏ ସ୍ୱାଦ ପାଇ ପଳେଇଯିବେ ? ଛିଃ କ'ଣ ଭାବିଥିଲା ସେ ବନଭାଇଙ୍କୁ !

ବନଭାଇ ମହାନ୍ ଲୋକ । ସେ ତାଙ୍କ ନୀରୁକୁ ପ୍ରକୃତରେ ଭଲ ପାଆନ୍ତି । ସେ ତାକୁ ଏମିତି ଅପମାନ ଦେବାକୁ ଚାହିଁବେ ନାହିଁ, ନିଜକୁ ଅପମାନ ଦେବେ ନାହିଁ ।

ଜୀବନ ଭିତରେ ସେଇ 'ଅରୁଚିଏ' । ବନଭାଇ ଚାହିଁ ନାହାନ୍ତି ତାକୁ ନଷ୍ଟ କରିଦେବାକୁ, କ୍ଷଣିକ ଉତ୍ତେଜନାରେ । ସେ ତାର ମୂଲ୍ୟ ଜାଣନ୍ତି । ସେ ତାକୁ ମାଗିବେ, ଆଣିଦେବେ, ଠିକ୍ ସମୟରେ ।

ଠିକଣା ସମୟରେ । ସବୁଦିନ ପାଇଁ ମନେ ରଖିଲା ପରି ଜୀବନର ଅମୂଲ୍ୟ ଧନ ହୋଇ ରହିବା ଲାଗି । ସେ ମୁହୂର୍ତ୍ତିଟି ଆସିବ ସବୁଦିନର 'ଗୋଟିଏ' ହୋଇ । ଶିଶୁର ପହିଲି ହସ ପରି, ପ୍ରେମିକର ପହିଲି ଗୋଲାପ ଫୁଲ ପରି, ଆଷାଢ଼ର ପହିଲି ମେଘ ପରି ।

ଏଁ—କବି କିଏ ? ବିନଭାଇ ନା ମୀରୁ ? ମୀରୁର ଇଚ୍ଛା ହେଲା ବିନଭାଇଙ୍କ ଆଗରେ କହିଦଅନ୍ତା ତାର ନୂଆ ପାଇଥିବା କବି-ଭାଷା । ସବୁବେଳେ ତ ଏମିତି ଭାଷା ମନକୁ ଆସେ ନାହିଁ ? ବିନଭାଇ ଖୁସି ହେବେ ।

କିନ୍ତୁ ସେ ମୁହୂର୍ତ୍ତଟି ଆସିବ କେବେ ? କେଉଁ ନୂଆ ଅଧ୍ୟାୟର ପହିଲି ପୃଷ୍ଠା ହୋଇ ? ଏଇକ୍ଷଣି ତ ଦିନ ମଉଳି ଆସିଲାଣି । କେଉଁ 'ପହିଲି'ର ଉପଭୋଗ ଆସିବ ତା' ପାଇଁ ?

ମୀରୁ ଝରକାରୁ ଅନେଇଲା ବାହାରକୁ । ଖରା ମଉଳି ଗଲାଣି । ସୂର୍ଯ୍ୟ ବୁଡ଼ିଯିବ ଆଉ ଟିକିଏ ପରେ । ସିଏ ବି ସୁନ୍ଦର, ଲାଲ୍ ଟୁକୁଟୁକୁ ଶେଷ ସୂର୍ଯ୍ୟର ଗୌରବ । ପହିଲି ସୂର୍ଯ୍ୟ ପରି ସେ ବି ସ୍ମରଣୀୟ । ମୀରୁର ମୁହଁରେ ହସ ଆସିଲା ।

ଦେହ ଭଲ ହୋଇ ଆସିଲାଣି । କିନ୍ତୁ ସେ ସତରେ ଶେଷ ଶଯ୍ୟାରେ ଥାଆନ୍ତା କି ! ଶେଷ ସନ୍ଧ୍ୟାରେ ଶେଷଥର ପାଇଁ ଆଖି ବୁଜିଲା ବେଳକୁ ବିନୁଭାଇ ଆସି ଥାଆନ୍ତେ । ଜୀବନରେ ସବୁକିଛି ଭୁଲିଗଲା ବେଳକୁ କପାଳରେ ତାଙ୍କର ସେଇ 'ଥରୁଟିଏ'···ଆଃ ! ତା'ଠୁଁ ବଡ଼ ମୁହୂର୍ତ୍ତ କ'ଣ ଆସିପାରେ ? ସେଇ ହେଉଛି ବିନଭାଇଙ୍କର କାମନା, ଅଙ୍ଗୀକାର, ପ୍ରତୀକ୍ଷାର ଶେଷକଥା ।

ମୀରୁର ଆଖି ବୁଜି ହୋଇ ଆସିଲା । ତାର ଖିଆଲ ନାହିଁ 'ସେ' ଘର ଭିତରକୁ ପଶିଆସି ଅନେଇଛି ତା' ଆଡ଼କୁ ।

ମୀରୁ ଆଖି ଖୋଲି ଅନେଇଲା । ସେ ଛିଡ଼ା ହୋଇଛନ୍ତି । ହାତରେ କ'ଣ ଧରିଛନ୍ତି, ଚିଠି ହେବ ପରା ।

ସତ୍ୟାନନ୍ଦବାବୁ ମୀରୁର ଧ୍ୟାନରେ ଆଶ୍ଚର୍ଯ୍ୟ ହେଲେ ନାହିଁ । ମୀରୁର ମନକୁ ସେ ଜାଣିଛନ୍ତି ବୋଲି ତାଙ୍କର ବିଶ୍ୱାସ । ସେ ମନ ବିଚିତ୍ର । ଗୋଟିଏ ମୁହୂର୍ତ୍ତରୁ ଆଉ ଗୋଟିଏ ମୁହୂର୍ତ୍ତକୁ ଗଡ଼ି ଚାଲେ ନାହିଁ, କୁଦି ଚାଲେ । ହଠାତ୍ ଖରା, ହଠାତ୍ ବର୍ଷା । ପୁଣି ସହଜେ ଏଇକ୍ଷଣି ରୋଗ, ବେମାର ।

ସତ୍ୟାନନ୍ଦବାବୁ ଆରମ୍ଭ କଲେ ସହଜ କଣ୍ଠରେ—"ଶୁଣିଛ ? ବିନୋଦବାବୁ ଚିଠି ଦେଇଛନ୍ତି, ତୁମ କଥା ପଚାରିଛନ୍ତି ।" ସେଇଠୁଁ ଆମୋଦର ସ୍ମିତ ହସ ଦେଇ କହିଲେ, "ତା' ଛଡ଼ା ଗୋଟିଏ ସୁଖବର ଦେଇଛନ୍ତି । ତାଙ୍କର ପୁଅଟିଏ ହୋଇଛି—ଏତେ ଦିନକରେ ।"

"ଏଁ ?" ମୀରୁ ନବୁଝିଲା ପରି ପଚାରିଲା । ହେଲେ ନବୁଝିବାର କିଛି ନାହିଁ । ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ମୀରୁ ଖୁସି ହେବାକୁ ଚାହିଁଲା ଓ କହିଲା, "ଯାହାହେଉ ଏତେ ଦିନକରେ । କେବେ ହୋଇଛି ? ଯାହାହେଉ—।" ଓଠ

ସେମିତି ଲମ୍ବି କରି ଅଛି ତା' ହସକୁ ନେଇ । ଆଉ କ'ଣ କରିବ ? ଆଉ କ'ଣ କହିବ ?

ସତ୍ୟାନନ୍ଦବାବୁ ଦେଖିଲେ ମୀରୁର ମଳାନ ହସ । ବିଗୃହିଣୀର ହସିବାରେ ବି ସରାଗ ନାହିଁ । ଦେହମନକୁ ଉପରକୁ ଓଟାରିବାକୁ ପଡ଼ୁଛି । ଘରର ଆଲୁଅ ଜଳେଇ ଦେଇ ଟିକଏ ଏପାଖ ସେପାଖ ହୋଇ ସେ ଫେରି ଆସିଲେ ସେଘରୁ । ମୀରୁ ବିଶ୍ରାମ ନେଉ ।

ଆଲୁଅ ମୀରୁର ମୁହଁ ଉପରେ ପଡ଼ୁଛି । ସେ ଏବେବି ହସୁଛି । ଓଠଚିପା ହସ, ତୀକ୍ଷ୍ଣ ଗୃହିଣୀ ସମେତ । କ୍ଷୀଣୋଦୟର ହସ ।

ବିନଭାଇଙ୍କର ପୁଅ ହୋଇଛି । ଯାହାହେଉ—। ମନୁ ତନୁ ସ୍କୁଲରୁ ଫେରିବେ ଏଇକ୍ଷଣି । ମନୁ କିଛି ନା କିଛି ଦାବି କରି ବସିବ, ଆଉ ତନୁ ଆସିବ ବୋଉ ପାଖରେ ଗେହ୍ଲେଇ ହେବାକୁ । ଝରକା ଭିତରୁ ଦେଖାଯାଉଛି କେତେ ଘର । କେତେ ପିଲା ଫେରିବେ ମାଆ କୋଳକୁ । କେତେ ଆଲୁଅ ଜାଳିବ । କେତେ ସ୍ତ୍ରୀ, କେତେ ମାଆ ।

ବିନଭାଇଙ୍କର ପୁଅ ହୋଇଛି । ଆଶ୍ଚର୍ଯ୍ୟ କଅଣ ? ଅସୁନ୍ଦର କଅଣ ?

ବିନଭାଇ ବୁଢ଼ା ହୋଇନାହାନ୍ତି । ମୀରୁ ବୁଢ଼ୀ ହୋଇଯାଇ ନାହିଁ । ଶେଷ ସୂର୍ଯ୍ୟ କଥା ମିଛ । ମୀରୁର ରୋଗ ଗ୍ରୁଢ଼ିଗଲଣି, ମରିଯିବାର ପ୍ରଶ୍ନ ନାହିଁ ଏଇକ୍ଷଣି । ମୀରୁ ଆଗରେ ବହୁତ ବାଟ ।

ବିନଭାଇ ବଦଳିଛନ୍ତି । କୁମାରୀ ମୀରୁ ତାଙ୍କ ପାଇଁ ଥିଲା କଳ୍ପନାର ରାଣୀ । ଆକାଶର ନେଳି, ବଉଦର କଳା, ଫୁଲର ରଙ୍ଗ ସବୁ ଥିଲା ତାର ଠାରେ । କିନ୍ତୁ ଘରଣୀ ମୀରୁଠୁଁ ରୋମାନସ୍ ତୁଟି ଯାଇଛି । ବିନଭାଇ ଫେରି ଯାଇଛନ୍ତି ।

ବିନଭାଇ ଫେରିଯାଇଛନ୍ତି । କିନ୍ତୁ ମୀରୁ ଫେରାଇ ଦେଇନାହିଁ । ଦୋଷ ମୀରୁର ନୁହେଁ । ମୀରୁର ଇଚ୍ଛା ହେଲା ସେ ବିନଭାଇଙ୍କୁ କହିଦିଅନ୍ତା, ଯେ ଦୋଷ ତାର ନୁହେଁ । ବିନଭାଇ ବଦଳିଛନ୍ତି, ମୀରୁ କଥା ଭୁଲି ନାହିଁ ।

ଅସ୍ଥିର ରାଗ ଓ ଅଭିମାନରେ ମୀରୁ ଖୋଜି ବୁଲିଲା ବିନଭାଇ ରୂପ । ପାଖରେ ପାଇଲେ ବୁଝାମଣା କରିନଅନ୍ତା, ମୀମାଂସା କରିଦିଅନ୍ତା । କିଏ ସତ, କିଏ ମିଛ । କିଏ ଜିତିଛି, କିଏ ହାରିଛି ।

ଉଦ୍‌ବେଗକୁ ରୋକିବା ପାଇଁ ମୀରୁ ଖଟରୁ ଉଠି ଠିଆହେଲା । କ'ଣ ମିଳିବ ସେଥିରୁ । ବିନଭାଇ ଠିକ୍ ବାଟରେ ଚାଲିଛନ୍ତି । ଭୁଲ୍ ସୁଧାରି ନେଇଛନ୍ତି, ମୀରୁ

ବାଟରୁ ଆଢ଼େଇ ହୋଇ ଯାଇଛନ୍ତି । ସେ ତା'ହେଲେ କାହିଁକି ପୁରୁଣା କଥାରେ ରଙ୍ଗ ଦେଇ ନୂଆ ଅନୁଭୂତିକୁ ଗ୍ରହିଁ ବସିଛି ? ମିରୁ ଭୋକିଲା ନୁହେଁ । ତାର ଅଛି ସୁଖର ସଂସାର, ସୁନାର ସଂସାର ।

ଅରୁଟିଏ ! ବାଜେ କଥା । ଅଭଲା ଅସୁନ୍ଦର କଥା । ମିରୁକୁ ହାଲୁକା ଲାଗିଲା । ଇଚ୍ଛା ହେଲା ସେ କ'ଣ ଗୁଡ଼ାଏ କରିଦିଅନ୍ତା ଏଇକ୍ଷଣି, ଘରକରଣା କାମକାଜ । ଡିନୁର ଡାଲିକଣ୍ଢେଇକୁ ଆଉ ଗୋଟାଏ ଚଡ଼ା ପିନ୍ଧେଇ ଦିଅନ୍ତା, ମନୁର ଜାମାରେ ବୋତାମ ସିଲେଇ କରିଦିଅନ୍ତା, ତାଙ୍କର ପାଇପ୍ ସଜାଡ଼ି ଦିଅନ୍ତା ।

କିନ୍ତୁ ତାକୁ ଲାଗିଲା ଯେ ସେ ପୂରାପୂରି ମୁକ୍ତ ହୋଇପାରୁ ନାହିଁ । କେଉଁଠି କ'ଣ ରହିଯାଉଛି ଅଧା, ଅକୁହା । ସେ ମୁକୁଳିବାକୁ ଗ୍ରହିଁଲେ ବି ମୁକୁଳି ପାରୁ ନାହିଁ । ମୁକୁଳି ପାରିବ ନାହିଁ । ସେଇକଥାର ଭୂତ ଲାଗି ରହିଥିବ ଶେଷଯାଏଁ ।

ଓଃ, କେହି ଭଲା କହିଦିଅନ୍ତା ଯେ ଏ କଥାଟା ଛିଣ୍ଡି ଯାଇଛି ?

...ମନୁ ଜୋତା ମଚ୍‌ମଚ୍ କରି ଘର ଭିତରକୁ ପଶି ଆସି ଦେଖିଲା ଯେ ବୋଉ ଖଟରୁ ଓହ୍ଲାଇ ଆସି କାଠ ପରି ଛିଡ଼ାହୋଇଛି । ହସୁଛି, କିନ୍ତୁ ହସିଲା ପରି ଲାଗୁ ନାହିଁ ।

# ଅରୁଟିଏ

ଏଇଟି ମୋର ପଞ୍ଚଦଶ ଗଳ୍ପ ସଂକଳନର ପହିଲା ଏବଂ ଶୀର୍ଷକ ଗପ । ଏବଂ ପ୍ରାୟ ପଇଁତିରିଶ ବର୍ଷ ତଳେ ଲେଖା ହୋଇଥିବା ଗୋଟିଏ ଗପ ଯାହା 'ଝଙ୍କାର'ରେ ପ୍ରକାଶିତ ହୋଇଥିଲେ ମଧ୍ୟ ହଜିଯାଇଥିଲା, ତେଣୁ ଏଥି ପୂର୍ବରୁ କୌଣସି ସଂକଳନରେ ସ୍ଥାନ ପାଇ ପାରି ନଥିଲା । ଏମିତି ଆଉ ଯୋଡ଼ିଏ ଗପ "ପୁରୁଣା କବିତା" ଏବଂ "ଅରବିନ୍ଦବାବୁଙ୍କ ଦୁଃଖ" ରହିଛି ଏଇ ସଂକଳନରେ । ସେହେତୁ ମୁଁ କୁତୂହଳୀ, ତଥା ଯତ୍‌ସାମାନ୍ୟ ଆତୁର ହୋଇ ମୋର ପାଠକ ପାଠିକାମାନଙ୍କୁ ପଚାରିଛି ଏଇ ସଂକଳନର ଆରମ୍ଭରେ—ଆଜ୍ଞା କହିଲେ, ମୁଁ ସେତେବେଳେ ଯାହା ଲେଖୁଥିଲି, ଏବଂ ଆଜିକାଲି ଯାହା ଲେଖୁଛି ଏଇ ଦୁଇଟି କପରି ଭାବରେ ଭିନ୍ନ ପରସ୍ପରଠାରୁ ? କିଏ ଅଧିକ ସୁନ୍ଦର କଳାତ୍ମକ ଦୃଷ୍ଟିରୁ ? ଅବା କିଏ ଅଧିକ ବାସ୍ତବ ବୌଦ୍ଧିକତାର ମାପକାଠିରେ ?

ଅର୍ଥାତ୍ ମୁଁ କ'ଣ ସତରେ ବଦଳି ଯାଇଛି ? କିନ୍ତୁ ବଢ଼ିଛି ନା ଛୋଟ ହୋଇଛି ?

ବସ୍ତୁତଃ ଏଇ ଗପର ନାୟିକା ମୀରୁ କ'ଣ ସେମିତି ପଚାରୁ ନାହିଁ ନିଜକୁ ତା' ବାହାଘରର ବାରବର୍ଷ ପରେ ?— ମୁଁ କଣ ବଦଳି ଯାଇଛି ? ବିନଭାଇ କ'ଣ ବଦଳି ଯାଇଛନ୍ତି ? ସେତେବେଳେ ଯେଉଁ ପ୍ରତିଶ୍ରୁତିର ଦିଆନିଆ ହୋଇଥିଲା ଆମ ଭିତରେ, ସେଇ ଅସ୍ପଷ୍ଟ, ହେଲେ ରହସ୍ୟମୟ, 'ଅରୁଟିଏ'ର ପ୍ରତିଶ୍ରୁତି, ସିଏ କ'ଣ ନଷ୍ଟ ହୋଇଗଲା ଏମିତି ? ମାନେ ସେ ଅତୀତକୁ ବର୍ତ୍ତମାନ ସାଙ୍ଗରେ ଯୋଡ଼ିବାକୁ ଅବା ତଉଲିବାକୁ ଚେଷ୍ଟା କରୁଛି, କିନ୍ତୁ ପାରୁନାହିଁ । ଏବଂ ତାହାହିଁ ତା'ର ଦୁଃଖ ।

ମୀରୁର ଦୁଃଖ ଭିତରେ ଅବଶ୍ୟ ଅନେକ ତାତ୍ତ୍ୱିକ ପ୍ରଶ୍ନ ଜଡ଼ିତ ହୋଇ ରହିଛି, ସେଇ ଦୁଇଜଣଙ୍କ ଚରିତ୍ର, ତଥା ମାନବ ଚରିତ୍ରକୁ ନେଇ । ଯଥା : ରୋମାନସ୍‌କୁ କ'ଣ ପରିପକ୍ୱ ଜୀବନର ବହିର୍ଭୂତ ବୋଲି କୁହାଯିବ, ନା ସରଳସୁନ୍ଦର ଜୀବନର ବିକୃତି ? ମୋଟ ଉପରେ ରୋମାନସ୍ ଗୋଟାଏ କୁହୁଡ଼ିଆ ଜିନିଷ, ତେଣୁ ଅନିଶ୍ଚିତ, ଏବଂ ସେହେତୁ ଦୁଃଖଦାୟକ ନୁହେଁ କି ? ଅର୍ଥାତ୍ ତୁମେ ହୁଏତ ସଂସ୍କାର-ପରମ୍ପରାସମ୍ମତ ସିଧାବାଟରେ ଚାଲିବ, ଅଥବା ସାମାଜିକ ନୀତିନିୟମକୁ ନମାନିବା କୌଣସି ପାପ ନୁହେଁ ବୋଲି ମନେ କରି ପ୍ରବୃତ୍ତିର ବୋଲ ମାନିବ । କିନ୍ତୁ ଏଇ 'ସାପ ମରିବ ନାହିଁ କି ବାଡ଼ି ଭାଙ୍ଗିବ ନାହିଁ', ସ୍ୱାମୀ ସଂସାରର ସୁଖ ମହଜୁଦ୍ ଥିବ ଏଣେ କୌଣସି 'ଅରୁଣିଏ'ର ନିମନ୍ତ୍ରଣ ମଧ୍ୟ ଉର୍ଦ୍ଧ୍ୱ ରହିଥିବ, ଏଇ ମନୋବୃତ୍ତିକୁ 'ନିର୍ବୋଧତା କୁହ ବା ଅତି-ଲୋଭ, ତା'ର ଶେଷକଥା ଦୁଃଖ ନୁହେଁ ତ ଆଉ କଅଣ ? ବିନଭାଇ ମଧ୍ୟ ଯଦି ଦୁଃଖୀ ହୋଇଥାଆନ୍ତି, ତାଙ୍କୁ ବି ବତେଇବା କଥା ଯେ ତୁମେ ଯେଉଁ ଅଭିଳ ପ୍ରତିଶ୍ରୁତି ହାସଲ କରିନେଲ ମୀରୁଠାରୁ ହେଲେ ତାକୁ ନିଭେଇ ପାରିଲ ନାହିଁ, ସେଇ ନିର୍ବୋଧତା ଅଥବା ଶଠତାର ପରିଣାମ ଆଉ କଅଣ ହୋଇ ପାରିଥାଆନ୍ତା ? ତେବେ ଚାରିତ୍ରିକ ଦୋଷଦୁର୍ବଳତାର ସମସ୍ତ ପ୍ରଶ୍ନକୁ ଏଡ଼ାଇ ଦେଇ ଗୋଟାଏ ସର୍ବପ୍ରଧାନ ପ୍ରଶ୍ନ ବୋଧହୁଏ ପଚାରି ହେବ ଦୁଇଜଣଙ୍କୁ, ତଥା ସଂସାରର ପ୍ରତ୍ୟେକ ଦୁଃଖୀ ମଣିଷକୁ—ବାବୁ, ପଛକୁ ନଚାହିଁଲେ ଚଳନ୍ତା ନାହିଁ ? କେବଳ ଉପସ୍ଥିତ ବର୍ତ୍ତମାନକୁ ନେଇ କ'ଣ ବାଟ ଚାଲି ହେବ ନାହିଁ ? ତା'ହେଲେ ଦେଖିବ ତୁମର ଦୁଃଖ ଉଭେଇ ଯାଆନ୍ତା, ଅନ୍ତତଃ ଚାରିଭାଗରୁ ତିନିଭାଗ···

ଧାତ୍, ତା' କେମିତି ହେବ ? 'ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର'···

ହେବ । କାରଣ କୌଣସି ସତଟାକୁ ମିଛ କରି ଫିଙ୍ଗିଦେବା ଲାଗି କୁହାଯାଉ ନାହିଁ ତୁମକୁ । ଅତୀତର ସମ୍ପୂର୍ଣ୍ଣ ନିରବଚ୍ଛିନ୍ନ ଇତିହାସ ନାହିଁ ତୁମ ମନରେ । କଦାପି ରହି ପାରିବ ନାହିଁ । ଏବଂ ଯାହା ରହିଛି ସେତିକ କାହିଁକି ରହିଲ ଓ ବାକି ସବୁ ପଳେଇଲ ତା'ର କୌଣସି ଲଜିକ୍ ନାହିଁ, ବାଗବାଇଶ ନାହିଁ ।

ଅତଏବ ଅତୀତ ମାନେ ଜାଗ୍ରତ ଅତୀତ ଓରଫ୍ ସ୍ମୃତି, ମିଛ ନ ହେଲେ ମଧ୍ୟ କେବଳ ଗୋଟାଏ ଅର୍ଦ୍ଧସତ୍ୟ ଛଡ଼ା ଆଉ କିଛି ନୁହେଁ । ତେଣୁ ଇଚ୍ଛା କଲେ, ତାକୁ ବାତିଲ୍ କରି ହେବ ।

ହେବ ନାହିଁ । କାରଣ ଉପସ୍ଥିତ ବର୍ତ୍ତମାନ ସାଙ୍ଗରେ ଯେଉଁ ଅତୀତ ଗୁନ୍ଥା ହୋଇ ରହିଛି, ତା' ତୁମର ଇଚ୍ଛାଧୀନ ନୁହେଁ । ତୁମେ ଯାହା କରୁଛ, କହୁଛ, କି ଭାବୁଛ ସେଥିରେ ଅତୀତର ଭୂମିକା ଅବଶ୍ୟ ରହିଛି, ନହେଲେ ତୁମେ ସେମିତି କରନ୍ତ ନାହିଁ, କହନ୍ତ ନାହିଁ, କି ଭାବନ୍ତ ନାହିଁ । ଆଉ ପ୍ରକାରେ ଆଚରଣ କରନ୍ତ । କିନ୍ତୁ ସେଇ ଅତୀତ, ହେଲା ଏବେ ଖଣ୍ଡିତ ଅର୍ଦ୍ଧସତ୍ୟର ଅତୀତ, ଗୁନ୍ଥା ହୋଇ ରହିଛି ତୁମର ବର୍ତ୍ତମାନ ଭିତ୍ତିକ ମାନସିକତାରେ । ତାକୁ ଭଲ ହଟେଇବ କେମିତି ?

ଆରେ, ତାକୁ ହଟେଇବାକୁ କିଏ କହୁଛି ? ବରଂ ସେ ଦିଗରେ ଚେଷ୍ଟା ନକରିବାହିଁ ଉଚିତ । ହେଲେ ଅନ୍ୟ ଦିଗରେ ମଧ୍ୟ ଚେଷ୍ଟା ଚରିତ୍ର କର ନାହିଁ, ଦୟା କରି । ଅର୍ଥାତ୍ କେଉଁ ଅତୀତକୁ ମନେ ପକାଇବାକୁ ଚେଷ୍ଟା କର ନାହିଁ । ତାକୁ ପୁନର୍ବାର 'ଅନୁଭବ' କରିବାକୁ ମନ ବଳାଅ ନାହିଁ, ସେଥିରେ ଦୁଃଖ ଥାଉ କି ସୁଖ । ଅର୍ଥାତ୍ ଯେଉଁ ଅତୀତ ଗୁନ୍ଥା ହୋଇ ରହିଛି ଉପସ୍ଥିତ ବର୍ତ୍ତମାନ ସାଙ୍ଗରେ, ତାକୁ ନେଇ ତୁମେ ଅବଶ୍ୟ କିଛି କରିପାରିବ ନାହିଁ କି କରିବା ଦରକାର ନାହିଁ । ହେଲେ ତତୋଽଧିକ କିଛି ପାଇବାକୁ ଚେଷ୍ଟା କର ନାହିଁ । ସେଇଥିରେ ହିଁ ବିପଦ ।

ବୌଦ୍ଧ 'ଜେନ୍' ଧର୍ମର ଗୁରୁମାନେ, ତଥା କେତେକ ହିନ୍ଦୁ ଜ୍ଞାନୀ ମୁନିମାନେ ଏହାହିଁ କହିଛନ୍ତି । କହିଛନ୍ତି ଯେ ମୁହୂର୍ତ୍ତ ମୁହୂର୍ତ୍ତର ଜନ୍ମକୁ ନେଇ ହିଁ ସଂସାର ଓ ନିର୍ବାଣ, ଜୀବନ ଓ ମୃତ୍ୟୁର ନିରବଚ୍ଛିନ୍ନ ଲୀଳା । ସେଇ ଜନ୍ମକୁ, ସେଇ ଲୀଳାକୁ ହିଁ ଅନୁଭବ କର । ତା'ହେଲେ ଆଉ କିଛି ଦୁଃଖ ରହିବ ନାହିଁ ତୁମର ।

ହଁ, ଏଇ ଦାର୍ଶନିକ ସତ୍ୟକୁ ଉପଲବ୍ଧି କରି ହେବ ନାହିଁ ସହଜେ । ତଥାପି···

ତଥାପି କୁହ ଯେ କିଛୁ ମାଗିବି ନାହିଁ ଅତୀତରୁ । ମଧ୍ୟ ସେହି ପରିପ୍ରେକ୍ଷୀରେ ଡରିବି ନାହିଁ ଭବିଷ୍ୟତକୁ । ଏଇକ୍ଷଣି ମୁଁ ଅଛି, ଏବଂ ମୋର ଏଇ ପରିବାର, ରୂପ ଗନ୍ଧ ସ୍ପର୍ଶ ଇତ୍ୟାଦିର ପରିବେଶ, ଏବଂ ସେଇ ସବୁକୁ ନେଇ ମୋର ପ୍ରତ୍ୟକ୍ଷ ମାନସିକତା, ଯାହା ସାଙ୍ଗରେ କିଛି ଅତୀତ ଅବଶ୍ୟ ଗୁନ୍ଥା ହୋଇ ରହିଛି । ବେଶ୍ ଆଉ ସେମିତ । ମୁଁ ଖାଲି ଅନୁଭବ କରିବି ଏଇ ମୁହୂର୍ତ୍ତିକୁ, ମୁହୂର୍ତ୍ତି-ମୁହୂର୍ତ୍ତିର ଲୀଳାକୁ । ଏହାହିଁ ପ୍ରାସଙ୍ଗିକ । ବାସ୍ତବ ସତ୍ୟ ।

ତା'ହେଲେ ମନୁ ତାଟକା ହୋଇ ଅନେଇବ ନାହିଁ ତା' ବୋଉକୁ । ଅଉ ନୀରୁ ତାକୁ ସହଜେ ଡାକନେବ ତା' କୋଳକୁ । ଆଉ ମୁଁ ମଧ୍ୟ ଅଯଥାରେ ଆତୁର ହେବି ନାହିଁ ଜାଣିବା ଲାଗି, ଯେ ଗାଣିତିକ ହିସାବରେ ମୁଁ ବଢ଼ିଛି ନା ଛୁଡ଼ିଛି ଏଇ ଗୃଳଶ ବର୍ଷ ଭିତରେ । ଏଇ ବର୍ତ୍ତମାନର ଅନୁଭବହିଁ ସତ, ଏବଂ ଭଲ । ତାକୁ ନେଇ ମୁଁ ଗପ ଲେଖେ, ସନ୍ତକୁ ଅନାଏ, କମ୍ବା ଆଉ ଯାହା କରେ । ସେଇ ସୁବୁଦ୍ଧିଟିକ କାମ ଦେଉ ଆମ ସମସ୍ତଙ୍କୁ, ସଦାସର୍ବଦା, ଯେତେଦୂର ସମ୍ଭବ । ଏତିକି ପ୍ରାର୍ଥନା ।



# ପୁରୁଣା କବିତା

ରମାବୋଉ ଶାଗ ତୋଳୁଛନ୍ତି । ଖରାଦିନିଆ ସକାଳ । ପବନରେ ଥଣ୍ଡା ଓ ସରାଗ ଅଛି । ରମାବୋଉ ଗୋଡ଼ରକୁ କାଢ଼ି ଥୋଇଦେଲେ ଗୋଟିଏ ପଥର ଉପରେ । ହାତ ସହଜରେ ଚାଲିବ ଓ ମନର ଭାବନା ଅଟକି ଯିବନାହିଁ ।

ଘଣ୍ଟାକର କାମ । ସେ ଶାଗ ଭଲ ପାଆନ୍ତି, କିନ୍ତୁ କଅଁଳିଆ ଶାଗ । ବେଶି ସିଝିବ ନାହିଁ, ବେଶି କଷ୍ଟ ହେବ ନାହିଁ । ପୁଅମାନେ ଶାଗ ଭଲ ପାଆନ୍ତି ନାହିଁ । ବୋହୂମାନେ ସଜନା ଶାଗକୁ ଖୁସି । ଏମିତିକା ଶାଗକୁ ଚଡ଼ଚଡ଼ି ହୁଅନ୍ତି, ଏକା ବଡ଼ବୋହୂ ଛଡ଼ା । ସୋରିଷ ବଟାଦିଆ ଶାଗ ହୋଇଥିଲେ ତାର ଆଉ କିଛି ଲୋଡ଼ା ନାହିଁ ।

ଶାଗ ତୋଳୁ ତୋଳୁ ରମାବୋଉ ହଠାତ୍ ରହିଗଲେ । କାହିଁକି ନେଉଛି ? ନିଜେ ତ ରାନ୍ଧି ପାରିବ ନାହିଁ । ଚୁଲି ପାଖକୁ ଗଲେ ମୁଣ୍ଡ କଅଣ ହେବ । ଆଉ ସେଇ ପୁଝାରୀଟା ଭୂତ, ଯାହା ରାନ୍ଧିବ ଜଣାଅଛି । କାଲିଠୁଁ ସେ କହୁଛନ୍ତି ପଖାଳ ଶାଗଖରଡ଼ା ଖାଇବେ ବୋଲି । ପୁଝାରୀ ଖରାପ କରିଦେଲେ କିଛି କହିବେ ନାହିଁ । ଥାଳି ଫୋପାଡ଼ିବେ ନାହିଁ । ଅଧା ଖାଇ ଉଠିଯିବେ ।

ମଝିଆଁକୁ କହିବ ? ସେ ଭଲ ରାନ୍ଧେ । କିନ୍ତୁ ଦିନେଟା କ'ଣ ରାନ୍ଧିଥିଲି ଯେ ତାଙ୍କୁ ଭଲ ଲାଗିଲା ନାହିଁ । ସେଇଦିନୁ ଅଭିମାନିଆ ହୋଇ କହିବ 'ମୋ ଦେଇ ସେ ହବ ନାହିଁ ବୋଉ । ବାବାଙ୍କୁ ଭଲ ଲାଗିବ ନାହିଁ ।' ବଡ଼ ଶୁଣିବ ନାହିଁ । ପିଲା ବାହାନାରେ ତା' ଘରେ ଯାଇ ବସିବ । ସାନ ହମହମ ହେବ କରିବାପାଇଁ, କିନ୍ତୁ ସେଇଟାକୁ କ'ଣ ଆସେ ? ଖାଲି ସେଇ କେକ୍ ଫେକ୍‌ରୁ ଗୁଡ଼ାଏ କ'ଣ ଶିଖିଛି ।

···ପୋଖରୀକୂଳ ପାଖରେ ଆମ୍ବ ଗଛ । ଗୋଟାଏ ନୁହେଁ, ଶହେଟା କଷି କଷି ଆମ୍ବ ଲଦି ହୋଇଛି । ଟେକା ଉଠୁଛି । ଆମ୍ବ ଖସି ପଡ଼ୁଛି–ଏକ୍, ଦୁଇ, ତିନ୍ । ମଣିଷ ପାରୁ ନାହିଁ । ବଳ ଅଣ୍ଟାରେ ଲୁଗା ଭିଡ଼ି ଗଛରେ ଚଢ଼ିବାକୁ ତିଆର । ପୋଖରୀରେ ବଳଦ ଦଳ । ପବନରେ ଆମ୍ବଳିଆ ବାସ୍ନା । ତଳେ

ଘାସ, ପତ୍ର ପଥର । ଉପରେ ସଫା ନେଳିଆ ଆକାଶ, ଏମୁଣ୍ଡରୁ ସେମୁଣ୍ଡ । ସମସ୍ତ ସବୁ ନାହିଁ ।

କଏ ଗୋଟାଏ କହିଲା—ବଡ଼ ନା ମଣି —'ଆଲୋ କୁନ୍ତୀଅପା, ତୋ ଘରକୁ କୁଣିଆ ଆସିଛୁ ଲୋ !'

ଆଉଟି କହିଲା 'କେଉଁଥିରେ ଆସିଛନ୍ତି ବା ? ସବାରୀ ଶଗଡ଼ କାହିଁ ?'

ଘରକୁ ଗଳ୍ପବେଳାକୁ ସତରେ କଏ ଆସିଛନ୍ତି । ସବାରୀ ଶଗଡ଼ ନୁହେଁ, ସାଇକେଲରେ ଆସିଛନ୍ତି । ନାଇକ ପଡ଼ାର କୋଉ ଜଗୁ ମାମୁଙ୍କର ପୁଅ । କାହିଁକି ଆସିଛନ୍ତି ?

ବାପାଙ୍କର ବରାଦ, କୁନ୍ତୀ ରାନ୍ଧିକରି ଦେବ । ପୋଖରୀରୁ ମାଛ ଆସିବ । ବାରି ଶାଗ । ତୋଟା ଆମ୍ବ ।

ଏତେ ଆଦର କେଉଁଥିପାଇଁ ? ଦେଖେ ସେ ଲୋକଟି ଏମିତିକା । କବାଟ ଫାଙ୍କରୁ ଦେଖିବା କଥା । ଗ୍ରେଟିଆ ସାବନା ଲୋକଟିଏ । ଗୋଲ୍‌ଗାଲ୍ ଚେହେରା । ଓଠ ଦି'ଟା ଚପି ହେଲପରି । ଗମ୍ଭୀରଆ ଚାହାଣି । ସବୁ ଦେଖିନେବ, ପିଇଦେବ ଯେମିତି ।

'ଆଗୋ କୁନ୍ତୀ, ଏ ଲୋକଟି କଥା କହିପାରେ, ହସି ଜାଣେ ତ ?'
'ଦେଖୁନା ତା ଆଖିକୁ । ସବୁ କଥା ଶୁଣି ନେବ ପରା ! ଆଉ ନିଜେ ଚୁପ୍ ହୋଇ ବସିଥିବ । ନୁହେଁ ?'

ସେଇ ପହିଲା ଦେଖା । ସେତେବେଳକୁ ବାହାଘର ଲାଗି ନଥାଏ···

···ବଡ଼ ନିଶ୍ୱାସଟାଏ । ତାପରେ ରମାବୋଉଙ୍କ ହାତ ପୁଣି ଚାଲିଲା ତରତର ହୋଇ । ଖରା ଆସିଲାଣି । ସହଳ ଫେରିବାକୁ ହେବ ।

ନାଇଁ, ଆଜି ମୁହିଁ ରାନ୍ଧିବ । ଏମିତି ବୁଢ଼ୀ ହୋଇ ଯାଇନାହିଁମ ! ସେତେହେଲେ ବୋହୂମାନେ କ'ଣ ତାଙ୍କ ରନ୍ଧା ଜାଣିବେ ? କିଛି କହନ୍ତି ନାହିଁ ସିନା—ସେ ସେଇ ଜଗୁମାମୁ ପୁଅ ଶାମ । ଶ୍ୟାମବାବୁ । ଶ୍ୟାମବଲ୍ଲଭ ପଟ୍ଟନାୟକ । ତହସିଲ୍‌ଦାର । ଡେପୋଟି । ସବୁ ଜାଣନ୍ତି, ସବୁ ବୁଝନ୍ତି । ସବୁ ଢଙ୍ଗ, ସବୁ କାରବାର ଜାଣିନିଅନ୍ତି । ସବୁ କଥା, ସବୁ ହସ ଶୁଣି ନିଅନ୍ତି । ଆଉ ନିଜେ ରହନ୍ତି ଚୁପ୍ ହୋଇ ।

···କିଛି ସମୟ ପରେ । ରମାବୋଉ ଗାଧୋଇ ସାରି ସେପେଇ ଘର ବାରଣ୍ଡାରେ ଶାଗ ବାଛୁଛନ୍ତି ।

ବଡ଼ ନାତୁଣୀ ରଙ୍ଗ ଆଙ୍ଗୁଳି ଦେଖାଇ କହୁଛି ତା' ବୋଉକୁ—"କେମେମା ରାନ୍ଧୁଛନ୍ତି ଆଜି ।"

ବଡ଼ବୋହୂ ହସିକରି ମୁହଁ ବୁଲାଇ ଦେଇଛି, ରଙ୍ଗର ଜାମାରେ ବୋତାମ ଲଗେଇ ଦେଉଛି ପରା । ମଝିଆଁ ଅନଉଛି ଉପରୁ । ବଡ଼ ଅନଉଛି ତା' ଆଡ଼କୁ । ହସୁଛନ୍ତି ? ଥଟ୍ଟା କରୁଛନ୍ତି ? ମୋ ବୟସ ବେଳେ ମୁଁ ଯାହା ରାନ୍ଧୁଥିଲି, ଏମାନେ ତାର କୋଉ କୋଣକୁ ସରି ହେବେ ?

ସାନ ଅଣ୍ଟାରେ ପିନ୍‌ପିନ୍ ପତଳା ସିଲ୍‌କ୍ ଲୁଗା ଗୁଡ଼େଇ ଦେଇ ଧାଇଁ ଆସୁଛି । "ବୋଉ, ଉଠମ, ମୁଁ କରି ଦେଉଛି । ତମର ନିଆଁରେ ମୁଣ୍ଡ କିଣ ହେବ ।"

"ନାହିଁ, ମୁଁ ରାନ୍ଧୁଛି ତୁ ଯା' । ସେ ନିଆଁଲଗା ପୂର୍ଯ୍ୟାଣ୍ଟା କୁଆଡ଼େ ଗଲା ? ଟିକିଏ ମସଲା ବାଟି ଦିଅନ୍ତା ନାହିଁ ?"

ସାନ ରାଗି କରି ପଳେଇ ଗଲାଣି । ପୂର୍ଯ୍ୟାଙ୍କର ଦେଖାନାହିଁ । ଆଜି ଆଜି ସେ । ସିଧା ବନ୍ଦ କରିଦେବି ।

ବନ୍ଦ କରିଦେବି ? ବନ୍ଦ କରିବି ମୁଁ ?? ବନ୍ଦ କରିଦେଲେ କେତେ ମୁହଁଝଡ଼ା ସାକୁଲା ଆପତ୍ତମରି କଥା ଶୁଣିବାକୁ ମିଳିବ । 'ବୋଉ ତ ନିଜେ କିଛି କରିବ ନାହିଁ, ଆଉ ଯିଏ କରୁଥିବ ତାକୁ ରଖେଇ ଦେବ ନାହିଁ ।' 'ବୋଉଙ୍କର ତ ମୁଣ୍ଡ ଠିକ୍ ରହୁନାହିଁ, ତାଙ୍କୁ କହିଲେ କ'ଣ ହେବ ?' ଏମିତିକା କେତେ କଥା । ବୋଉ ପାରେ ନାହିଁ । ବୋଉର କିଛି କହିବାର ନାହିଁ । ବେଶ୍, ମୋର କିଣ ଅଛି ? ମୁଁ କାହିଁକି ଦୋଷୀ ହେବି ? ସେ ରହୁ ବା ଯାଉ ।

ଖରା ବଢ଼ିଲାଣି । ସେ ବୁଲିକରି ଫେରିବେ, ଖାଇବାକୁ ମାଗିବେ । କିଛି ହୋଇନାହିଁ । ଅଲେପେଇଷା କୁଣ୍ଡିଟା ପଣି ଆସିଲାଣି । ସବୁ ମାଟି କରିଦେବ । କୁଆଡ଼େ ଗଲା କାଠଫାଲିଆ ? ନିଆଁଲଗା ଚକ୍ଷୁ ନାହିଁ । ଲଙ୍ଗୁଡ଼ ହଲଉଛି । ହ୍ୟାଭ୍—

କୁଶା, ମଝିଆଁର ପୁଅ ହୋ' ହୋ' ହେଇ ହସୁଛି । ଅବାଗିଆ ଟୋକା । ଗୁଡ଼, ମୋର କିଣ ଯାଉଛି । ମୋର ଅବକା ଆରାମ କରିବା କଥା । ମୁଁ କାହିଁକି ନିଆଁରେ ବସି ରହିବି ? କୁକୁର ଖାଉ, ପୂର୍ଯ୍ୟାସି ମରୁ ।

…ଦିନ ଦ'ପହର ହେଲାଣି । ଚୁଲି ନିଆଁ ପ୍ରବଳ । ନିଆଁ ସାଙ୍ଗକୁ ଧୂଆଁ । ରମାବୋଉଙ୍କର ଆଖି ଓ ମୁହଁରେ ଯନ୍ତ୍ରଣାର ଗ୍ଳପ ।

ଥାଉ, ଥାଉ, ପାରିବ ନାହିଁ । ସେ ଆସିଯିବେ ଏଇକ୍ଷଣି । ଏତେ ଡେରି ହେଲାଣି, ଆସି ନାହାନ୍ତି କେମିତି କେଜାଣି । ଆସିଗଲେ ଚୂଲି ପାଖରେ ରଖେଇ ଦେବେ ନାହିଁ । ଭାରି ଦୟା ତାଙ୍କର । ପୁଅଟା ବି ଆସିଗଲାଣି । କଣ ବସି ଠୁକୁରୁ ଠୁକୁରୁ କରୁଛୁ । ତାକୁ ବତେଇ ଦେଇ ଚାଲି ଆସିବ । ଯାହା ହେଉ ଶାଗ ଝୋଳଡ଼ାଟା ସରିଯାଇଛୁ ।

ଶୋଇବା ଘରେ ପହଞ୍ଚି ରମାବୋଉ ଟେବୁଲ୍ ଅଣ୍ଡାଲିଲ୍ ପରି ହେଲେ ।

ସରବତର ଅଣ୍ଡା ଭାଙ୍ଗି ଗଲାଣି । ମୁଣ୍ଡ କଣ ହେଉଛୁ, ଭାବୁଛୁ ଶୋଇ ପଡ଼ିବ ଟିକଏ । ଖରା ପଣି ଆସୁଛୁ । ନବୀନା ମାଆ ତା' ବୋହୂ ସାଙ୍ଗରେ ଝଂଟାପଟା କଜିଆ ଲଗେଇଛୁ । କାନ କ'ଣ ହୋଇଯାଉଛୁ । ହାଟୁଆ ବାଟୁଆ ଘର । ଅପଣୁଣା, ଅବାଗିଆ ।

ଏଠି ସେସବୁ କଥା ନାହିଁ । ଏ କଣ ହାଟୁଆ ବାଟୁଆ ଘର ହୋଇଛି ? ବୋହୂମାନେ କିଛି କହନ୍ତି ନାହିଁ । ମୁଁ ତାଙ୍କର କୋଉ କଥାରେ କିଛି କୁହେ ନା କଅଣ ?

ପାନ ସରବତ ରହିଯାଇଛୁ । ପାଖକୁ ଆସି ନଦେଲା ତ ସେଥିରେ ଅଛୁ କଣ ? ମହିଁଆଁ ପାନ ଭାଙ୍ଗି ପଠେଇଦିଏ କୁଶା ହାତରେ । ବେଳେବେଳେ କୁଶା ଭୁଲିଯାଏ, ନହେଲେ ପାନ ଛିଣ୍ଡାଇଦିଏ । ତା' ବୋଲି କ'ଣ ସେ ଆଉରି ଥରେ ଭାଙ୍ଗି ଦିଅନ୍ତା ? ତାର ଆଉ କାମ ଅଛି ତ ! ବଡ଼ ସଞ୍ଜବେଳେ ରତିକୁ ପଠେଇ ଦିଏ ଗପ ଶୁଣିବାକୁ । ନଇକୂଳକୁ ନହେଲେ ବାହାରକୁ ବୁଲି ଚାଲିଯାଏ । ଫେରି ଆସି ରତିକୁ ନେଇଯାଏ, କୁହେ ରତିର ପଢ଼ା ଅଛି । ସତକଥା ଆଉ କେତେ ସମସ୍ତ ରଖନ୍ତା ? ସମସ୍ତେ ଖବର ବୁଝନ୍ତି, ପଚାରନ୍ତି । ଇଏ କଣ ନବୀନାମାଆ ଘର ହୋଇଛି ?

ଅଣ୍ଡା ସରବତ ଟିକେ ଖାଇଲେ ଭଲ ହୁଅନ୍ତା । ମାଗିବ ଯାଉଛି । କାହାକୁ ମାଗିବ ? କିଏ ଦେବ ? ଥାଉ— । ବିଜୁଳି ପଙ୍ଖା ଘୂରୁଛି । ଭାରି ଜୋରରେ ଘୂରୁଛି । ମୋର ପାଇଁ ବିଜୁଳି ପଙ୍ଖା ଆସିଲା ପରକୁ । ସେ ଜବରଦସ୍ତି କରି ଅଣେଇଲେ, ଶ୍ୱଶୁର ବଞ୍ଚିଥିଲା ବେଳେ । ଖରାରେ ମୋ ମୁଣ୍ଡ କଣ ହୋଇଯାଏ ବୋଲି । ଭାରି ଦେଖି ପାରନ୍ତି ସେ । କିଛୁ କୁହନ୍ତି ନାହିଁ ସିନା— ।

ନବୀନାମାଆ ଦାଣ୍ଡରେ ଖଟା କମଳା ହୋଇଛି । ଗଛ ଭାଙ୍ଗି ପଡ଼ୁଛି । ପିଣ୍ଡାରେ ପଖାଳ କଂସାଏ ଧରି ଶାଶୂ-ବୋହୂ ବସି ଯାଇଛନ୍ତି । ପୁଅ ବସିଛି ପାଖରେ । କଜିଆ ସରିଗଲା ?

ସେମାନେ ଗପନ୍ତି । ଏକାଠି ପଖାଳ ଖାଆନ୍ତି, ବସନ୍ତି, ଝଗଡ଼ା କରନ୍ତି । ମୋ ସାଙ୍ଗରେ କେହି ଗପେ ନାହିଁ, କଳିଆ କରେ ନାହିଁ । ହଁ, ମୁଁ ଗପେ ରଘୁ ସାଙ୍ଗରେ, ସଞ୍ଜବେଳେ ଘଣ୍ଟାଏ । ମଝିଆ ଦିନାକେତେ ପାଖରେ ପଶୁଥିଲା ନୂଆ ବାହା ହୋଇ ସାରିଲା ପରେ । ଗପେ ନାହିଁ, କିନ୍ତୁ ଗପ ଶୁଣେ । ଦିନେ ଦିନେ ଶୋଇ-ପଡ଼େ ସେଇଠି, କାମରେ ଖିଆଲ ରହେନାହିଁ । ତା'ପରେ କ'ଣ ହେଲା କେଜାଣି, ଅପ୍ କରି ବନ୍ଦ ହୋଇଗଲା ତା' ଗପ । ବଡ଼ ତା' ପିଲାଙ୍କୁ ନେଇ ବ୍ୟସ୍ତ । ଗପିବାକୁ ସୁଖ ପାଏ ନାହିଁ । ସାନ ଟା ହସକୁରା, ଖାଲି ଡେଇଁଚ କୁଦିବ ପିଲାଙ୍କ ସାଙ୍ଗରେ, ସେ ଇଆଡ଼େ ଆସେ ନାହିଁ । ପୁଅମାନେ ବଡ଼ ହେଲେଣି, ଚାକିରିବାକିରି କରିଛନ୍ତି, ବଡ଼ ବଡ଼ କଥା କୁହନ୍ତି । ସେମାନେ କ'ଣଟା ଗପିବେ ମୋ ସାଙ୍ଗରେ । ଆଉ ଆମ ନୂଆବୋଉ କିଛି ମିଛ କହୁ ନଥିଲେ । ସେ ଲୋକଟି କଥା କହି ଜାଣେ ନାହିଁ, ହସି ଜାଣେ ନାହିଁ । ହେଲେ ତାଙ୍କ କଥା ନଆସ । କିଛି କହନ୍ତି ନାହିଁ ସିନା— ।

ନବାନାମାଆ ବୋହୂଟା ଗପୁଡ଼ି । ଦେଖିବାକୁ ବି ସୁନ୍ଦର । ଗୋରି ହୋଇ ଡଉଲଡାଉଲ । ପାନଟିଆ ନାଲିଆ ଓଠରେ ହସି ପକାଏ ଟିକିଏ କଥାରେ । ଆସିଥିଲା କେଇଦିନ ତଳେ, କେତେ କଥା ଗପିଲା ।

ସୁନ୍ଦରିଆ ନାଆଁଟିଏ । ମାଣିକ । କହୁଛି ଆସିବ ମଝିରେ ମଝିରେ । ଦିନେ ଉପରବେଳିଆ ଘୁରି ନେଉଥିଲା ବେଳକୁ ଆସିବ ଯେ ତାସ୍ ଖେଳ ହେବ । ଉପବୋଉ ଅପାଙ୍କୁ ଡକେଇ ପଠେଇବ । ତାଙ୍କ ସାଙ୍ଗରେ ତାଙ୍କ ନଣନ୍ଦ ବି ଆସିବ । ଚାରିଜଣ ହୋଇଯିବେ ଖେଳିବା ପାଇଁ । ଉପବୋଉ ଆଜିକାଲି ଆସୁନାହାନ୍ତି ମୋଟେ । ତାସ୍ ଖେଳିବାକୁ ଡାକିଲେ ଆସିବେ ।

ମାଣିକ ତାସ୍ ଖେଳିବ ଆସି ? ବୋହୂମାନେ କ'ଣ କହିବେ ? ସେଦିନ ମାଣିକ ସାଙ୍ଗରେ ଏତେ ଗପି ବସିଲା ବେଳକୁ ବଡ଼ ଥରକୁ ଥର ପଚାରି ଯାଉଥାଏ, 'ବୋଉ ସଞ୍ଜ ହେଲାଣି ପରା, ଗାଧୋଇବ ନାହିଁ ?' 'ବୋଉ, ରଘୁ କହୁଛି ଗପ ଶୁଣିବ ।' 'ବୋଉ' ଅମୁକଟା ହେଲା ନାହିଁ ସମୁକଟା ହେଲା' । ସାନ ପଶି ଆସି କଟମଟ କରି ଅନେଇ ଯାଉଥାଏ, ଭୂତ ଦେଖିଲା ପରି । ମଝିଆଁ ଉମାର କାନରେ କଣ ଫୁସ୍‌ଫୁସ୍ ହୋଇ କହୁଥାଏ ।

କ'ଣ ହୋଇଗଲା ମୁଁ ମାଣିକ ସାଙ୍ଗରେ ଗପିଲି ?

କେତେବେଳ ହେଲଣି କେଜାଣି । ଏଇକ୍ଷଣି ପୁଟୁଲା ଆସିବ ଖାଇବାକୁ ଡାକିବା ପାଇଁ । ଆଜି ମୁଁ ଖାଇବ ନାହିଁ ଯା—କିଏ କଣ କହିବ ? ମନା କଲେ ସାନ ଆସି ଝିଆରିବ । 'ବୋଉ ଟାଇମ୍ ହୋଇଯାଉଛି ପରା, ଡେରି କଲେ ଦେହ ଖରାପ ହେବ ।'

ସବୁ ଟାଇମିରେ ହେବା ଦରକାର । ଟାଇମିରେ ଉଠିବ, ଟାଇମିରେ ଖାଇବ, ଟାଇମିରେ ଶୋଇବ । ତା'ପରେ, ଆଉ କିଛି ନାହିଁ ?

ହଁ ମ-ସବୁ ମୋର ଟାଇମ୍‌ରେ ହୋଇଛି । ଟାଇମ୍‌ରେ ବାହା ହୋଇଛି, ପିଲା ଜନ୍ମ କରିଛି, ପୁଅଝିଅଙ୍କୁ ବାହା ଦେଇଛି, ନାତିନାତୁଣୀ ଦେଖିଛି । ଆଉ ଟାଇମି ଜଗି କଣ କଣ ହେବ ? ଦେହ ବେମାର ବଢ଼ିବ, ମୁଣ୍ଡ କଣ ହେବ, ସହଳ ଚାଲିଯିବ । କୋଉଠୁ କଣ ଅଟକିଯିବ ? ରାତି ଆଉ ସଞ୍ଜବେଳେ ଗପ ଶୁଣିବ ନାହିଁ । ବେଶ୍‌, ଆଉ କଣ ?

ଜଆଁ ଲଗା ପଙ୍ଖାଟା ଘୂରୁଛି ଖାଲି । ବନ୍ଦ ହେଉନାହିଁ । ଟାଇମି ସବୁ ନାହିଁ ।

ଆଜି ମୁଁ ଖାଇବ ନାହିଁ ଯା—। କିଏ କଣ କହିବ କହୁ । କହିବ ମୋ ମୁଣ୍ଡ କଣ ହେଉଛି । ସାନବୋହୂ ପଚାରି ଦେଇ ଚାଲିଯିବ, କିଛି କହିପାରିବ ନାହିଁ । ସେ ଆସିବେ ଡାକିବାକୁ ? କେଜାଣି ।

ନାଇଁ ସେ କାହିଁକି ଆସିବେ ? କିଏ କାହିଁକି ଆସିବ ? ମୋର ମୁଁ ଭଲ ଅଛି । ଖାଉଛି, ପିଉଛି, ଶୋଉଛି ।

···ଦୁଆରବନ୍ଧ ପାଖରେ ପୂର୍ଣ୍ଣୀ ଆସି ଛିଡ଼ାହେଲାଣି, ଯମ ପରି । ଖାଇବାକୁ ଡାକିବା ପାଇଁ ଆସିଛି । ମନା କରିଦେବ ।

"ମୁଁ ଖାଇବ ନାହିଁ ଆଜି । ମୋର ଦେହ ଭଲ ନାହିଁ ।"

"ବୋହୂମା କହିଲେ ଡେରି ହୋଇଯିବ ।"

"ମନା ତ କଲି ଖାଇବ ନାହିଁ, ତମର କାହିଁକି ମୁଣ୍ଡ ବଥାଉଛି ?

ପୂର୍ଣ୍ଣୀ ଚାଲିଯାଉଛି । ପଛରୁ ଡାକିଲେ, "ପୂର୍ଣ୍ଣୀ ଶୁଣିଲ, ବାବୁ ଖାଇ ସାରିଲେଣି ?"

"ଆଜ୍ଞା, ହଁ ।"

"ଭଲକରି ଖାଇଛନ୍ତି ତ ? ସବୁ ତରକାରି, ଶାଗଖରଡ଼ା—"

"ହଁ, ହେଲେ ତରତରରେ ଉଠିଗଲେ, ଶାଗ ହେଉକା ଖାଇଲେ ଟିକିଏ, ପୂର୍ଣ୍ଣବାବୁଙ୍କ ଘରେ କଣ କାମ ଅଛି ବୋଲି କହିଲେ ।"

ନ ଖାଆନ୍ତୁ । କାହାର କଣ ଯାଉଛି ? ସେଇ ପୂର୍ଣ୍ଣୀ ରାନ୍ଧିକରି ଦେଉ । ଖାଆନ୍ତୁ, ନଖାଆନ୍ତୁ, ମୋର ଗରଜ ପଡ଼ିଛି ।

ପୂର୍ଣ୍ଣବାବୁଙ୍କ ଘରେ ବସିଥିବେ ଯାଇଁ ଏତେବେଳେ । ଖବରକାଗଜ ମେଲା ହୋଇଥିବ । ପାନଖିଆ ଚାଲିଥିବ । କାମ ନା ଛେନା !

ବୋହୂମାନେ ଖାଇବସିବେଣି । ହସ ଗପ ଗୁଲୁଥିବ କେତେ । ବୋଉ ପାଖରେ ନାହାନ୍ତି । ବୋଉଙ୍କର ମୁଣ୍ଡ କଣ ହେଉଛି ।

ନିଦ ହେବନାହିଁ । ମୁଣ୍ଡ ଉପରେ ଟାଇମ୍ ଗୁଳୁଛି । ରମାବୋଉଙ୍କର ଟାଇମ୍ ସରବ ନାହିଁ ।

ଆଜି ମାଣିକକୁ ଡାକିବ । ସିଏ ଯାହା ଖୁସି । ଦାଣ୍ଡ ଅଗଣାରେ ବସି ଗପିବ ତା ସାଙ୍ଗରେ । ତାସ୍ ଖେଳିବ ।

ହେଲେ ମାଣିକ ଟୋକାଟା । ବୁଢୀ ନୁହେଁ । ସେ କଣ ବସି ରହିବ ମୋ ପାଖରେ ? ନା ବାହାନା କରି ଖସି ପଳେଇ ଯିବ ? କିନ୍ତୁ ମୁଁ କଣ ଏତେ ବୁଢ଼ୀ ହୋଇଗଲିଣି ତା ଶାଶୁ ଭଳିଆ ? ସେଦିନ ମାଣିକ କହୁଥିଲା, "ଆଇମା, ବୟସ ବେଳେ ତୁମ ରଙ୍ଗ ଚହଟୁଥିବ ଏକା । ଆଉ ତୁମ ମୁଣ୍ଡରେ ବାଳ ଥିବ କେଜାଣି କେତେ, ତଳେ ଲୋଟୁଥିବ—ନୁହେଁ ?

ମାଣିକଟା ଖୋସାମତିଆ । ନାଇଁ—ସତରେ ମୋ ମୁଣ୍ଡରେ କେତେ ବାଳ ଥିଲା ମ ! ନୂଆବୋଉ ଅଣ୍ଟା କରନ୍ତି । ଆଉ ସିଏ । ତାଙ୍କ କଥା ନିଆରା । ବାହାଘର ପରେ ପରେ ମୁଣ୍ଡରେ ହାତ ବୁଲେଇ ଆଣନ୍ତି ଥରକୁ ଥର । କିଛି କହନ୍ତି ନାହିଁ ସିନା— ।

ଛିଃ, କି ଅଲାଜୁକ କଥା ! ଏ ବୁଢ଼ୀଦିନେ ପୁଣି ! ନାଇଁ, ଶୋଇ ପଡ଼ିବ । ସଞ୍ଜବେଳକୁ ମାଣିକକୁ ଡକେଇ ପଠେଇବ । ନବୀନାମାଆର ଗୋଟି ବୋହୂ । କଥା କହିବ, ହସିବ । ବୋହୂମାନେ ରାଗିବେ, ରାଗନ୍ତୁ । କାହିଁକି ରାଗିବେ, ମୁଁ ତାଙ୍କର କଣ କ୍ଷତି କରୁଛି ?

ନାଲପାନ ତାସ୍, ମାଣିକର ରଙ୍ଗ ଓଠ । ହସ, କଥା, ଟାଇମ୍ ନାହିଁ । ଖାଇବା ଟାଇମ୍ ନାହିଁ, ଔଷଧ ଖିଆ ଟାଇମ୍ ନାହିଁ ।

ମାଣିକ ମୋ ବୋହୂ ହୋଇଛି । ଦିନରାତି ପାଖ ଛାଡ଼ୁନାହିଁ । ବୋଉ, ଆସ ତାସ୍ ଖେଳିବା । ବୋଉ, ଆସ ଏକାଠି ଖାଇବା । ବୋଉ ଖଣ୍ଡେ ଭଲ ଶାଢ଼ି ପିନ୍ଧ ମ, ଆସ ତୁମ ମୁଣ୍ଡ ବାନ୍ଧିଦେବି ।

ରାତି ଚଢ଼ୁଛି, ରତିଟା ପିଲା ।

ସେ କିଛି କହୁନାହାନ୍ତି । କିଛି କହିବେ ନାହିଁ । ତାଙ୍କ କଥା ନିଆରା ।

ରମାବୋଉଙ୍କୁ ନିଦ ଲାଗି ଆସିଲା ।

( ୨ )

ରମାବୋଉ ଶୋଇକରି ଉଠିଲା ବେଳକୁ ଦିନ ଢଳିଗଲାଣି । ଟେବୁଲ ଉପରେ ସରବତ ଗିଲାସ ଥୁଆ ହୋଇଛି ସେମିତି । ଘରଚଟିଆଟିଏ ଗିଲାସ ଦାଢ଼ ଉପରେ ବସି ପାଣି ଖୁମ୍ପୁଛି ।

ପଙ୍ଖା ଚାଲିଛି ସେମିତି ।

ଗୋଳମାଳିଆ ସପନର ଛାଇ ରହିଯାଇଛି ମନରେ । ନାଲି ଶାଢ଼ି ପିନ୍ଧି ନାଚୁଥିଲା କିଏ ? ମାଣିକ ନା ସାନବୋହୂ ? ନା ଫରୁପୁରର ଯାତରା ରାଣୀ ?

ରମାବୋଉ ସଳଖ ହୋଇ ଅନେଇଲେ ନରମି ଯାଇଥିବା ଦିନକୁ । ନିଜକୁ ସଂସାର ସାଙ୍ଗରେ ଯୋଡ଼ିବା ପାଇଁ । ପବନ ଆଉଁସି ଦେଉଛି । ରମାବୋଉ ବଞ୍ଚିଛି ।

ପାଟି ଶୁଭୁଛି । ତଳପଟରୁ ହବ ବୋଧହୁଏ । କିଏ ସବୁ କଜିଆ କଲାପରି ଲାଗୁଛି ।

କଜିଆ ହେଉଛି । ହେଲେ ଏଘରେ କାହିଁକି ? ରମାବୋଉ କାନ ଡେରିଲେ ନିଜକୁ ପ୍ରବର୍ତ୍ତାଇଲେ ରାଗିବା ପାଇଁ । ମୁରବିପଣ ଦେଖାଇବା ପାଇଁ ।

ମୁଁ ଥାଉ ଥାଉ ଏ ଘରେ ପାଟିତୁଣ୍ଡ ହେବ ନାହିଁ । ଇଏ କ'ଣ ନବାନାମାଆ ଘର ହୋଇଛି ? ରମାବୋଉ ଘରୁ ଗୋଡକାଢ଼ି ଆଗେଇଲେ ଶିଡ଼ି ମୁଣ୍ଡଆଡ଼କୁ । ସିଆଡ଼ୁ କିଏ ଧଇଁସଇଁ ହୋଇ ଉପରକୁ ଉଠୁଛି । ମଝିଆଁ ପୁଅ ଉମା ହେବ ପରା ।

ରମାବୋଉ ଟିକିଏ ରହି ରହି ପଚାରିଲେ, "ହେଇ ଉମା, ଶୁଣେ । ଏ କ'ଣ ପାଟି ଚାଲିଛି କିରେ ?

ଉମା ପଣଫଣ ହେଉଛି । ରମାବୋଉ ଶଙ୍କି ଗଲେ । ଉମା ରାଗିଲେ ପୃଥିବୀ ଓଲଟାଇ ଦେବ ।

ଉମାକାନ୍ତ ହଠାତ୍ ରମାବୋଉଙ୍କ ହାତ ଧରି ଟାଣି ଟାଣି ପଛକୁ ନେଇଗଲା ଖଣ୍ଡେ ଦୂର, ତଳମହଲା ଆଡ଼କୁ । କହିଲା, ଶୁଣିବୁ କଣ ହେଉଛି ? ଆ' ଶୁଣିବୁ ଆ' । ଦାଣ୍ଡଘରେ ଗୋଟିଏ ମଦଖଟି ଆଖଡ଼ା ବସିଛି । ଭାଇଙ୍କର କଲେଜ ମାଷ୍ଟର ଦଳ । ତା' ଭିତରେ ଅଛନ୍ତି କୃଷ୍ଣମିଶ୍ରେ ପଣ୍ଡିତେ, ଆପୁ ଦାସେ, ଧରଣୀବାବୁ ଗଟାଯ୍ୟାର୍ଡ୍ ହାକିମ, ଆଉ ଆମର କବି ଶରତ ମହାପାତ୍ରେ । ସେତେକ ବୁଢ଼ାହାଡ଼ । ଖାଇ ସବୁ ପିଇ ଯାଉଛନ୍ତି ଆଁ କରି । ମୋ ସାଙ୍ଗରେ କୁଆଡ଼େ ଯାଇଥାଆନ୍ତେ ବଜାରକୁ—ଅମୁକ ଆଡ଼େ ସମୁକ ଆଡ଼େ । ହୁଁ—ସେତେକ ଭଣ୍ଡାମି !

ରମାବୋଉ ଅଳ୍ପବହୁତ ଆଶ୍ୱସ୍ତ ହେଲେ । ଇସ୍ସେ ତାହେଲେ କଜିଆ ନୁହେଁ । ପଚାରିଲେ, "କଣ ସବୁ ଗପୁଛନ୍ତି ?"

ଉମାକାନ୍ତ ହାତ ହଲାଇ ରାଗିଲାପରି ହୋଇ କହିଲା—"ଗପିବେ କଅଣ ? ମିଟିଙ୍ଗ୍ ହେଉଛି, ମିଟିଙ୍ଗ୍ । କାଲି ଟାଉନ୍‌ହଲରେ ହେଉଥିଲା । ଆଜି ଆମ ଘରେ ହେଉଛି । ଗୋଟାଏ କୋଉ ନୂଆ କବିକୁ ଆବିଷ୍କାର କରାଯାଇଛି ଯେ ତାରି କଥା । ସେ କୁଆଡ଼େ ମରିହଜି ଗଲାଣି କେବେଠୁଁ । ହେଲେ କଣ ଗାରେଇ ଯାଇଥିଲା ସେଇ ବହି ବାହାରିଛି ଏବେ । କିଏ ଗୋଟାଏ ଅଣଓଡ଼ିଆ ବାହାବା କଲା, ଆଉ ଏମାନେ ମାତିଛନ୍ତି ସେଥିରେ । ସମସ୍ତେ କହୁଛନ୍ତି ଆମେ ଜାଣିଛୁ ତାଙ୍କୁ, ଆମେ ଜାଣିଛୁ ତାଙ୍କୁ । ସେ ଅମୁକ ନୁହନ୍ତି, ସମୁକ । ତାଙ୍କ କବିତାରେ ଏକଥା ଅଛି, ସେକଥା ଅଛି ରବସ୍—।" ଉମାକାନ୍ତ ଧପ୍ ଧପ୍ ହୋଇ ଚାଲିଗଲା ତା' ରୁମ୍‌କୁ, ପିନ୍ଧାପିନ୍ଧି କରି ବାହାରିକୁ କୁଆଡ଼େ ଯିବ ବୋଲି ।

ରମାବୋଉ କଥାଟା ଠିକ୍ ବୁଝିପାରିଲେ ନାହିଁ । କିନ୍ତୁ କେମିତି ନୂଆ ରକମର ଲାଗିଲା । ଶୁଭିଲେ କାନରେ ପଡ଼ିଲେ ମନ୍ଦ ହେବନାହିଁ ।

ରମାବୋଉ ଉପରକୁ ଫେରି ନଆସି ତଳକୁ ଗଡ଼ିଲେ । ତଳ ଶୋଇବା ଘରକୁ ଗଲା ବେଳକୁ ଦାଣ୍ଡଘର ପାଖ ଦେଇ ଯିବାକୁ ହୁଏ । ତାରି ପାଖରେ ପହୁଞ୍ଚିଲା ବେଳକୁ ରମାବୋଉ ଅଟକିଗଲେ ଟିକିଏ । ଆପୁ ଦାସଙ୍କର ଗର୍ଦ୍ଦଭ ଗଳା ଶୁଭୁଛି । ଟେବୁଲ ବାଡ଼ଉଛନ୍ତି ଓ କହି ଚାଲିଛନ୍ତି, 'ଆରେ, ପ୍ରାଣକୁ ମୁଁ ଜାଣେ ନାହିଁ ? ଏକାଠି ସ୍କୁଲରେ ପଢ଼ିଛୁ ପରା ! ସେତିକିବେଳଠୁ ତା'ର ପ୍ରତିଭା, ମାନେ ଜିନିୟସ୍ ବାରିହୋଇ ଯାଉଥିଲା । ସୁନ୍ଦର ଫୁଲଟିଏ ଦେଖିଲେ ରହିଯିବ ଦୁ'ମିନିଟ୍ । ବର୍ଷାକୁ ଦେଖି ଉନ୍ମତ୍ତ ହୋଇଯିବ । ବିଚରା ବହୁତ କଷ୍ଟ ପାଇଲା । କିନ୍ତୁ ସାହିତ୍ୟକୁ ଏଇ ଯେଉଁ ଦାନ ଦେଇଯାଇଛି— ।

ରମାବୋଉ ଆଗେଇଲେ । ଅଭଲା କଥା । କୋଉ ପ୍ରାଣ ମ ସିଏ ? ତା'ର କ'ଣ ହେଲା ନହେଲା ସେଥିରେ ଏମାନେ ମାତିଛନ୍ତି କାହିଁକି ? ରମାଟା ସେମିତି ସବୁଦିନେ । ଖାଲି ଏଇ ବହି ପାଠ ନେଇ ପାଗଳ । ଭୋକ ଶୋଷ ଭୁଲିଯିବ । ଛାଡ଼, କ'ଣ ମିଳୁଛି ସେଥିରୁ ।

ବଡ଼ବୋହୂ ରତିର ମୁଣ୍ଡ କୁଣ୍ଡେଇ ଦେଉଛି । ମୋତେ ଦେଖି ଓଢ଼ଣାଟା ମୁଣ୍ଡ ଉପରକୁ ଉଠାଇଦେଲା । ବୋଧହୁଏ ପଚାରିବ ଏଇକ୍ଷଣି—ବୋଉ, ଖାଇଲେ ନାହିଁ କାହିଁକି ? ଦେହ କ'ଣ ହେଉଛି ?

କିଛି ପଚାରିଲା ନାହିଁ ତ ? ନାଇଁ, ତା'ର ପଚାରିବା କଥା ନୁହେଁ । ପାନ ଖାଇବା ଖବର ବୁଝେ । ପଚାରିଲେ ସେଇ ପଚାରିବ । ପଚାରିବ, କେଜାଣି ?

ବଡ଼ବୋହୂ ସତେଗ୍ରଜମା କେତେ ଡଉଲ ଡାଉଲ ଦିଶୁଥିଲା ବାହା ହେଲା-ବେଳକୁ । ଏଇକ୍ଷଣି ଅଖି ପଶିଗଲାଣି । ଆଖି ତଳେ କଳା ଗାର । କ'ଣ ହୋଇଛି ତା'ର ? ଯାହାହେଉ ସବୁବେଳେ ଏମିତ ମୁହଁଭୁରୁଙ୍ଗା କରୁଛି କାହିଁକି ?

ବଡ଼ବୋହୂ ରତିର ମୁଣ୍ଡ ବାନ୍ଧି ବସିଲାଣି । ରତିକୁ ଦୁଇଟିକିଆ ବେଣୀ ସୁନ୍ଦର ଦିଶେ । କହିଲେ, 'ରତିର ଦ'ଟିକିଆ ବେଣୀ କରିଦେ ମା, ଭଲ ଦେଖାଯିବ । ଦେଖୁନୁ ପଟ୍ଟନାଏକ ଘର ଝିଅ କେମିତି ବେଣୀ କରି ଆସୁଛି । ସେ ତ ରତି ସାଙ୍ଗର—ନୁହେଁ ?''

କେତେ ସମୟ ପରେ କୁନ୍ତେଇ କରି ବଡ଼ବୋହୂ କହିଲା, ''ନାଇଁ, ଥାଉ ସେମିତି ।'' ଜୋର୍‌କରି କହୁନାହିଁ । ନରମେଇ ମୁହଁ ତଳକୁ କରି କହୁଛି । କଥା ଶୁଣିଲାନାହିଁ ବୋଲି କିଏ କହିବ ?

ସେ ସବୁଦିନେ ସେମିତି । ଅତି ଧୀର, ଅତି ନରମ । ହେଲେ ତା' ନିଜ କଥାରେ ଥାଏ । ଆଗେ ଯାହା ଟିକେ ହସୁଥିଲା, ଆଜିକାଲି ସେତିକ ବି ନାହିଁ ।

ରମାବୋଉ ଫେରି ଆସିଲେ । ସବୁଦିନେ ଏଇ ଗୁଇ ଲେଉଟିଲା ବେଳକୁ ସେ ଉପରଘର ପିଣ୍ଡାରେ ଗଡ଼ୁଥାନ୍ତି । ଆଜି ତଳକୁ ଆସି ବୁଲିବାରୁ ଠିକ୍ କରି ହେଉ ନାହିଁ କ'ଣ କରିବାକୁ ହେବ, କୁଆଡ଼େ ଯିବାକୁ ହେବ । ଟାଇମିର ବ୍ୟତିକ୍ରମ ।

ମହିଅାଁ ପଛ ଅଗଣାରେ ଠିଆହୋଇ ଅନେଇଛି ଉପରକୁ, ଅମୃତଭଣ୍ଡା ଗଛ ଆଡ଼େ । ଅଲସେଇ ହୋଇଗଲାଣି, ମୋଟେଇ ଗଲାଣି । ବୁଲିପଡ଼ି କାବା ହୋଇ ଅନେଇଛି । ବୋଉ କେମିତି ଆସିଲେ ଇଆଡ଼େ ଅବେଳରେ ? ସତେ ଯେମିତି ବୋଉଙ୍କର ଖାଲି ଉପର ଘରେ ପଡ଼ିରହିବା କଥା ।

ବୋଧହୁଏ ପଚାରିବ—ବୋଉ, ଭାତ ଖାଇଲେ ନାହିଁ କାହିଁକି ? କେଜାଣି ! ଇଏତ ମୋ ଖାଇବା ଖବର ବୁଝେନାହିଁ । ତା'ବୋଲି କ'ଣ ସେ ଜାଣେ ନାହିଁ, ଘରେ କିଏ ଖାଇଲା ନଖାଇଲା ?

ମହିଅାଁ ମୁଣ୍ଡରେ ଓଢ଼ଣୀ ଟାଣିଆଣି ପଛ ଅଗଣାରେ ଠିଆହେଲା । ଏଇ ହେଉଛି ତା'ର ଲାଜସରମର ଠାଣି । କିନ୍ତୁ ତା' ମୋଟା ଦେହକୁ ମାନୁନାହିଁ ମୋଟେ । ସେମିତି ଅନେଇ ରହିଛି ଦୋଷୀଙ୍କ ଭଳିଆ । ବୋଉଙ୍କୁ ଡର ? ନାଇଁ-ନାଇଁ । ରମାବୋଉ ହସିଲେ । ଛଟପଟ ହେଉଛି ବିଚାରି । ବୋଉ ଚାଲିଗଲେ ଗୋଡ଼ହାତ କୋହଲ କରି ଆରାମ କରନ୍ତା ପରା !

''ଆଲୋ ଯାଉନୁ ମୁଣ୍ଡକୁଣ୍ଡେଇ ସଫାସୁତୁରା ହେବୁ ? ମୁଣ୍ଡଟା ଲୁଖୁରା ହୋଇ ପଡ଼ିଛି କେଉଁଦିନୁ ।''

"ଯା-ଉ-ଛୁ ।"

କେଶ୍ ସେତକ । ଜବାବଯୁଆଳର ଜମ ସରଗଲା । ଏଥର ଫେରିବା କଥା । ରମାବୋଉ ମୁହଁ ବୁଲାଇଲେ ।

ଗ୍ରେସେଇ ଘରେ ପାଣି ଫୁଟୁଛି । ପୁଷ୍ପାଶ୍ରୀ ଗୋଡ଼ ଲମ୍ବେଇ ବସିଛି ବାରଣ୍ଡାରେ । ମା'ଙ୍କୁ ଦେଖିଲଣି କେତେବେଳୁ । କିନ୍ତୁ ସେମିତି ବସିଛି । ମା'ଆ ଉପରଘରର ଲୋକ । ପୁଷ୍ପାଶ୍ରୀ ସାଙ୍ଗରେ ତାଙ୍କର କ'ଣ ସମ୍ବନ୍ଧ ଅଛି ।

ମଝିଘର ଆଡ଼ୁ କୁଆଡ଼ୁ ବଜୁଲି ପରି ବାହାରି ଆସିଲା ସାନବୋହୂ । ଅଣ୍ଟା'ରେ ଲୁଗା ଭିଡ଼ା ହୋଇଛି । କହିଲା 'ବୋଉ, ଆପଣ ସରବତ୍ ପିଇ ନାହାନ୍ତି ଏତେବେଳ ଯାଏଁ । ମୁଁ ଉପରକୁ ଯାଇଥିଲି । ଆଜି ଖରାବେଳେ ତ କିଛି ଖାଇଲେ ନାହିଁ । ମୁଣ୍ଡ କ'ଣ ହେଉଥିଲା ବୋଧହୁଏ । ମୁଁ ପୁଷ୍ପାଶ୍ରୀକୁ ପଚାରିଲି— ।

କଥା ଗୁଲୁଛି ସୁଅ ପରି, ଉତ୍ତରକୁ ଅପେକ୍ଷା ନକରି । ରମାବୋଉ ହସିଲେ । ସାନ ଖବର ବୁଝେ ।

କ'ଣ ପଚାରିବେ ବୋଲି ରମାବୋଉ ପଚାରି ବସିଲେ 'ଏ କ'ଣ ଏମିତି ମିଟିଙ୍ଗ ଚୁଲିଛି କଲେ, ବାଣ୍ଡଘରେ ? ତୁମା ତ ବ୍ରିଜିକରି ପଳେଇଲଣି ।'

ସାନ ହସିଲା । ପିଲାଙ୍କ ପରି ହସ । ଦାନ୍ତ ଦ'ଧାଡ଼ି ଖୁବ ସୁନ୍ଦର । ଏମିତି ସେ ହସେ ସବୁବେଳେ । ମୋ କଥା ନାପସନ୍ଦ କରେ ? ନାଇଁ, ତା' ସ୍ୱଭାବ ସେମିତିକା । ପିଲାଳିଆ ।

'ବୋଉ, ସେସବୁ ସାହିତ୍ୟ କଥା । ଭାଇଙ୍କର ସାଙ୍ଗମାନେ, ଆଉ ସବୁ ବଡ଼ ବଡ଼ ପ୍ରଫେସର୍… ।'

'ହଁ, ହଁ ତୁମା କହୁଥିଲା', କହି ମୁଣ୍ଡ ହଲେଇ ରମାବୋଉ ଫେରିବାକୁ ବସିଲେ । ହେଲେ ଉପରକୁ ଉଠିବାର ଉଦ୍ୟମ କଲେ ନାହିଁ । ବାଡ଼ପଟକୁ ମୁହେଁଇଲେ । ଭୋକ କରୁଛି, କରୁ । ବାଡ଼ଦୁଆର ମୁହଁରେ ଛିଡ଼ା ହୋଇ ଅନେଇଲେ ଉତୁରି ଉଠୁଥିବା ଫଳଫୁଲର ସମ୍ପତ୍ତିକୁ ।

କାକୁଡ଼ି ମାଡ଼ିଛି । କଲରା ଗଛ କାନ୍ଥତଳେ ତା'ର ପିଲମାନଙ୍କୁ ଘୋଡ଼େଇ ରଖିଛି । ଶାଗ କେତେ ଜାତିକା । କଳା ମୁଚୁମୁଚୁ ବାଇଗଣ । କଦଳୀପତର ଝୁଲୁଛି ପବନରେ । ଛିଣ୍ଡାପତର ଫୁରୁଫୁରୁ ହୋଇ ଉଡ଼ୁଛି, ନିଜକୁ ପତାକା ବୋଲାଇ ହେଉଛି ।

ସେ ପାଖରେ ସୁରୁଯ ବୁଡ଼ି ଯାଉଛି । ଗଛପତରରେ ନରମ କଅଁଳିଆ ସବୁଜ । ରମାବୋଉ, ଆମେ ତୁମର ।

ଏ ଘରଦ୍ୱାର ବାଡ଼ିବଗିଚା ସବୁ ମୋର । ମନେ ମନେ ସବୁ ମୋର । ସତକଥା ଏକା ! ରମାବୋଉ ଲମ୍ବା ନିଶ୍ୱାସ ଛାଡ଼ିଲେ ।

ଆଜି ସକାଳେ ଶାଗ ତୋଳି ବସିଥିଲି । କାହା ପାଇଁ ? ନଖାଇ ଶାଗସବୁଜ ରାନ୍ଧି ବସିଥିଲି । କାହା ପାଇଁ ? ପୁଅଟାଏ କହିଲା ସେ ତରତର ହୋଇ ଖାଇ ଚାଲିଗଲେ, ଅମୁକଙ୍କ ଘରେ କାମ ଅଛି । ଶାଗରେ କିଛି ଅଧିକା ପାଇଲେ ନାହିଁ ? ତରକାରି ଅନ୍ୟ ରକମର ଲାଗିଲା ନାହିଁ ? ପଚାରିଲେ ନାହିଁ କିଏ କରିଛି ବୋଲି ?

ଶ୍ୟାମବାବୁ ବୁଢ଼ା ହୋଇଗଲେଣି । ଘରେ ପୁଅବୋହୂ ନାତିନାତୁଣୀ । ଲକ୍ଷ୍ମୀ ଭଣ୍ଡାର ପୂରି ରହିଛି । ରମାବୋଉ ବି ଅଛି, ବଞ୍ଚିଛି । ସେ ମାଇପଝିଅ ହୋଇ ନାହାନ୍ତି । ସଂସାର ନିଖୁଣ ଅଛି । ଆଉ କଣ ଦରକାର ?

କିନ୍ତୁ ରମାବୋଉର ବଞ୍ଚି ରହିବା ଦରକାର । ନହେଲେ ସଂସାର ଖଣ୍ଡିଆ ହୋଇଯିବ । ସେ ଟାଇମିରେ ଖାଇବ, ପିଇବ, ଶୋଇବ, ଔଷଧ ଖାଇବ ।

ସବୁ ଆଡ଼ୁ ପବନ ଯେମିତି ରୁଣ୍ଡେଇ ପୁଣ୍ଡେଇ ହୋଇ ଆସୁଛି ରମାବୋଉଙ୍କ ପାଖକୁ । ତାଙ୍କ ଦେହରେ ପିଟି ହେଉଛି । ତାଙ୍କୁ ଉସୁକେଉଛି ଆହୁରି ଭାବିବାକୁ ।

ନୂଆବୋଉଙ୍କ କଥା—'ଆଗୋ କୁନ୍ତୀ, ଏ ଲୋକଟି କ'ଣ କଥା କହିପାରେ, ହସିପାରେ ?' ଭଲ ନୂଆବୋଉ ବୁଢ଼ାବୁଢ଼ୀ ହେଲେଣି । କିନ୍ତୁ ଏବେ ସୁଦ୍ଧା ତାଙ୍କର ଯେମିତି ହସଖୁସି ଥଟ୍ଟାଟାପରା । ସତେ ଯେମିତି କାଲି ବାହା ହୋଇଛନ୍ତି ।

ସ୍ୱାମୀଙ୍କ କଥା ନଆସେ । କିଛି କୁହନ୍ତି ନାହିଁ ସିନା— ।

ବୁଡ଼ି ଯାଉଥିବା ସୂର୍ଯ୍ୟର ଶେଷ ନାଲି ଟିକକରେ କ'ଣ ଥିଲା କେଜାଣି, ନା ପବନର ଉତଲା ସୁଅରେ କ'ଣ ମିଶି ରହିଥିଲା, ରମାବୋଉ ଡେଇଁ ଉଠିଲା ପରି ସେଇ କଥାଟିକୁ ଓଲଟେଇ ଧରିଲେ, ଯାହାକୁ ସେ ସବୁଦିନେ ମାନି ଆସିଛନ୍ତି । ତାଙ୍କ କଥା ନଆସେ । କ'ଣ ନଆସେ ? କାହିଁକି ନଆସେ ? କଥା କହିବାକୁ କଣ ପଇସା ପଡ଼େ ? ହସିଲେ କଣ ସରିଯାଏ ତାଙ୍କର ?

ମୁଁ ବୁଢ଼ୀ ହୋଇଗଲିଣି । ଆଉ ସେ କ'ଣ ଟୋକା ଅଛନ୍ତି ? ସେ କେବେହେଲେ ଟୋକା ନଥିଲେ, କି କେବେହେଲେ ବୁଢ଼ା ହେବେ ନାହିଁ ।

ସବୁଦିନେ ସେମିତି, ଅଧା ବୟସିଆ । ମୁହଁରେ ଛନଛନ ନାହିଁ କି ଗାର ପଡ଼ିବ ନାହିଁ । ସବୁଦିନେ ସେମିତି, କାଠପଥର, ଜଡ଼ାବସ୍ତୁ ।

ରମାବୋଉ ହସିଲେ । ହେଲେ ସେଇ କାଠପଥରରୁ ଯଦି କେହି କିଛି ପାଇଥାଏ ସେ ହେଉଛି ମୁଁ । କେହି ମନା କରି ପାରିବ ?

ସୂର୍ଯ୍ୟ ବୁଡ଼ିଗଲାଣି । ସାନବୋହୂ ଗଲା ଫଟେଇ ଡାକୁଛି କାହାକୁ— ପୁଷ୍ପାସିଙ୍କୁ, ନହେଲେ ବୁଢ଼ୀ ଗୁକରାଣୀକୁ । ଘରକୁ ଫେରିବାକୁ ପଡ଼ିବ । ଉପର ବାରଣ୍ଡାରେ ସପଟିଏ ପାରି ଶୋଇବା କଥା । ସାନର ସରବତ୍ ଥୁଆ ହୋଇଥିବ । ରତି ଆସିବ ଗପ ଶୁଣିବା ଲାଗି । ସେଇତକ ବଡ଼ ଦାମ୍ଭା ସମ୍ପତ୍ତିଙ୍କର । ରମାବୋଉଙ୍କର ମନ ପୁଣି ଦବି ଆସିଲା । ମାଣିକକୁ ଡାକୁଥିଲା ପରା—ଗ୍ଲାଡ଼ମ, କାହିଁକି କାହାକୁ ଡାକିବି । ଗୁଡ଼ିଆଣୀ ଝିଅ । ବଡ଼ଲୋକଙ୍କ ଆଶ୍ରାରେ ବଞ୍ଚିଛି । କଥା ଏଡ଼ି ଦେବ ନାହିଁ, ଧାଇଁ ଆସିବ । ହେଲେ ସେ ବି ତ ବଅସ ଥିଲା ଝିଅ, ମୋ ବୋହୂମାନଙ୍କ ପରି । ସେ ତା' ସାଙ୍ଗସୁଖ ଲୋଡ଼ିବ । ତାକୁ ମୋ ପାଖକୁ ଡାକି ହଇରାଣ କରିବି କାହିଁକି ?

ରମାବୋଉ ଫେରିଲେ । ପାଦ ଚଳୁନାହିଁ ଯେମିତି । ଗୋଟିଏ ଗୋଟିଏ ହୋଇ ପାହାଚ ଚଢ଼ିବେ, ଅସଂଖ୍ୟ ପାହାଚ । ପାହାଚ ସରିବ ନାହିଁ ।

ଘର ଭିତରକୁ ଯାଇ ଉପରକୁ ଉଠିବା ଆଗରୁ ଦାଣ୍ଡଘରେ ବାରଣ୍ଡା ପାଖ ଦେଇ ଯିବାକୁ ପଡ଼େ । ସେହେତୁ ରମାବୋଉ ଦେଖିବାକୁ ପାଇଲେ ଯେ ସଭା ଭାଙ୍ଗୁଛି । ସେମାନେ ଜଣ ଜଣ କରି ବାହାରୁଛନ୍ତି ପଦାକୁ । ରମାବୋଉ ଠିଆ ହୋଇଗଲେ କବାଟ ଆଢ଼ୁଆଳରେ ।

ଆଗେ ବାହାରିଲେ ଆପୁ ଦାସେ ଓ ଧରଣୀବାବୁ, ନାସ ଦିଆନଥା ହୋଇ । ପ୍ରଚଣ୍ଡ ଛିଙ୍କଟାଏ ମାରିଦେଇ ଦାସେ କହିଲେ, "ହାୟ, ହାୟ ! କେଡେବଡ଼ ପ୍ରତିଭା ! ବଞ୍ଚି ରହିଥିଲେ ହୁଏତ—।" କଥାଟା ଶେଷ କରିଦେଲେ ଧରଣୀବାବୁ । ପାକୁଆ ପାଟିରେ ଫୁହ୍‌ଫୁହ୍ ହୋଇ କହିଲେ, "ତା'ହେଲେ ଆମ ଶରତ ମହାପାତ୍ରେ ଆଜି ଏତେ ଫୁଲୁରୁ ଫୁଲୁରୁ ହେଉ ନଥାଆନ୍ତେ ।"

ଶରତ ମହାପାତ୍ରେ ବାହାରିଲେ ପରୁ । ସାଙ୍ଗରେ ରମା ଓ ତାର ସାଙ୍ଗ ପ୍ରଫେସରମାନେ । ରମା ମୁଣ୍ଡ ହଲଉଛି ଓ ଶରତବାବୁ କହି ଗ୍ଲାଲିଛନ୍ତି, "ଯେତେ ଯାହା କୁହ, କବି ପ୍ରାଣନାଥଙ୍କୁ ଆଧୁନିକ ଯୁଗର କବି ବୋଲି କୁହା ଯାଇ ନ ପାରେ । ଯଦିଓ ସେ ଆଧୁନିକ ଯୁଗରେ ଜନ୍ମ ହୋଇଥିଲେ । ଶୃଙ୍ଗାରରସର ଅତିଶଯ୍ୟତା, ଉପମାଗୁଚ୍ଛିତା, ଅଳଙ୍କାରବିନ୍ୟାସ, ଇଏ ସବୁ ସୁଚାଇ ଦିଏ ଯେ ସେ

ମଧ୍ୟଯୁଗର ଆଦର୍ଶରେ ଗଢ଼ା । ହୁଏତ ଉପେନ୍ଦ୍ର ଭଞ୍ଜଙ୍କର ପ୍ରିୟ ଗ୍ରନ୍ଥ ହୋଇ ପାରିଥାଆନ୍ତେ ।"

ପଣ୍ଡିତେ କୃଷ୍ଣ ମିଶ୍ରେ କେଉଁଠି ଥିଲେ ବାହାରି ଆସି ହୋ ହୋ ହୋଇ ହସି ଉଠିଲେ—"ହଇହୋ, ଆଉ କଣ ସେ ଭ୍ରମରମାନଙ୍କ ପରି ଲେଖିଥାଆନ୍ତେ । ସାବୁନ୍‌ଫେଣ ପରି ଜହ୍ନ ଆଲୁଅ, ପୋକଟିଆ କମ୍ବଳ ପରି ରାତିର ଆକାଶ—"

କୃଷ୍ଣମିଶ୍ରେ କହି ଚାଲିଛନ୍ତି, "ବୁଝିଲ, ମୁଁ ତାକୁ ଜାଣିଛି ପିଲଦିନୁ । ତାଙ୍କ ବାପାଙ୍କୁ ଜାଣିଛି । ଘର ପାଖେ ଘର ପରା, ସରସ୍ୱତୀ ପୂଜାରେ ଏକାଠି କଇଁଫୁଲ ତୋଳି ଯାଉଥିଲୁ, ଏକାଠି ପୁଷ୍ପାଞ୍ଜଳି ଦେଉଥିଲୁ···।" ପଣ୍ଡିତେ ସ୍ମୃତିର ଆଲୋଡ଼ନରେ ଗଦ୍‌ଗଦ ହୋଇଗଲେ ।

ଧରଣୀବାବୁ ଛାଡ଼ିବା ଲୋକ ନୁହଁନ୍ତି । କହିଲେ "ମୁଁ କିନ୍ତୁ ତାଙ୍କୁ ଜାଣିଛି, ଯେତେବେଳେ ସେ କାବ୍ୟରଚନା କରୁଥିଲେ, ଯେତେବେଳେ ତାଙ୍କ ପ୍ରତିଭା ଗଢ଼ି ଉଠୁଥିଲା । ତୁମେ ସବୁ ଜାଣିଛ ପ୍ରାଣନାଥକୁ, ମୁଁ କିନ୍ତୁ ଜାଣିଛି 'ଅୟି କୁନ୍ତଳକା'ର କବିଙ୍କୁ । କହିଲେ ବିଶ୍ୱାସ କରିବ ନାହିଁ, ସେ କାବ୍ୟର ପ୍ରଥମ ପରିଚ୍ଛେଦଟିକୁ ମୋ ହାତକୁ ବଢ଼େଇ ଦେଇ ଅନୁରୋଧ କରିଥିଲେ ତା ଉପରେ ମନ୍ତବ୍ୟ ଦେବାପାଇଁ । କହିଲେ—'ଧରଣୀବାବୁ, ସତ କହିବେ, କୁନ୍ତଳକାର ଛବିଟି ପୂରାପୂରି ଫୁଟି ଉଠୁଛି କି ନାହିଁ ଆପଣଙ୍କ ଆଖି ଆଗରେ । ସତ କହିବେ ଯେ, କବିର ମାନସୀ ହିସାବରେ ତାର ମୂଲ୍ୟ କଅଣ ।' ଏମିତି ଆତୁରିଆ ହେଉଥିଲେ ଯେ ମୁଁ ଆଉ କ'ଣ କହିବି !"

ଶରତବାବୁ ମୁରୁକି ମୁରୁକି ହସୁଥିଲେ । ରସଭଙ୍ଗ କରି କେହି ଜଣେ, ରମାକାନ୍ତର ସାଙ୍ଗ ପ୍ରଫେସର ହେବ ପରା, ପଚାରିଲା, "ଆଜ୍ଞା, କବିଙ୍କ ଜନ୍ମସ୍ଥାନ କେଉଁଠି କହିପାରିବେ କି ? ମୁଁ ଜାଣିପାରିଲି ନାହିଁ ଏତେବେଳ ଯାଏଁ ।"

ଆଗଭର ହୋଇ କୃଷ୍ଣ ମିଶ୍ରେ କହି ଉଠିଲେ—"ମୁଁ କହୁଛି—ଜନ୍ମସ୍ଥାନ ଏବଂ ଆଦ୍ୟଜୀବନ କଦମ୍ବପୁର । ପୋଷ୍ଟ ରାମନଗର । ଜିଲ୍ଲା—"

···ସେମାନେ ଆଗେଇ ଗଲେଣି । କିନ୍ତୁ ରମାବୋଉ ଆଗେଇ ଯାଇ ପାରୁ ନାହାନ୍ତି ଆପଣା ବାଟରେ । ବାରଣ୍ଡା ଅବଗୁଣ୍ଠରେ ଥିବା ପୁରୁଣା ମଇଳା ଦର୍ପଣ ଆଡ଼କୁ ଅନେଇଛନ୍ତି । ମୁହଁ ଦିଶୁ ନାହିଁ ।

ଗ୍ରାମ କଦମ୍ବପୁର । ପୋଷ୍ଟ୍ ରାମନଗର ।

ମନେ ପଡ଼ିଲା କୋଉ ପୁରୁଣା କଥା । "ହଇହେ, ଜେନାଏ, ତମ ଗାଆଁ ରେ କଦମ୍ବ ଫୁଟେ ? ଆମକୁ ଦି'ଟା ଆଣିଦିଅନ୍ତ ନାହିଁ ?" ଜେନାପୁଅ ହସିଲେ । ପାନଛିଆ କଳା-କସରା ଦାନ୍ତ । "ଆଜ୍ଞା—ହେଁ, ହେଁ ।"

ଜେନାପୁଅଙ୍କ ନାଆଁ ପ୍ରାଣନାଥ ଜେନା । ଲମ୍ବରେ ପାଞ୍ଚଫୁଟ ଧରିବେ କି ନାହିଁ । ମୁଣ୍ଡବାଳ ପାଚିଆ ହୋଇ କୁଣ୍ଡା ହୋଇଛି । ମନେ ହୁଏ ପକେଟରେ ଗ୍ରେଟ ପାନିଆଁ ଆଉ ବାସ୍ନାତେଲର ଶିଶି ପଶିଥିବ । କିନ୍ତୁ ଗୁଡି ପକେଟରେ ଖାଲି ଦେଖାଯାଏ ମେଞ୍ଚାଏ କାଗଜ । ମୋଟା କରିଆ ଲୁଗା ଆଣ୍ଠୁ ତଳକୁ । ବିନମ୍ରୀ, କଥାକୁ ଛଳ କରନ୍ତି ନାହିଁ । ସେଇଲାଗି ବାପା ପଚାରୁଥିଲେ ସେମିତି, କଦମ୍ବଫୁଲ ନେଇ । ପୁଣି ପଚାରନ୍ତି, "ହାତକୁ ଦି'ହାତ କେବେ ହେଉଛ ପ୍ରାଣନାଥବାବୁ ? ତମ ଲାଗି କନିଆଁଟିଏ ମିଳିଲେ ତ — ନା କଅଣ ?" ସବୁଥିରେ ସେଇ ଉତ୍ତର—"ଆଜ୍ଞା, ହେଁ ହେଁ ।"

ପ୍ରାଣନାଥବାବୁ । ବାପାଙ୍କର ଜଣେ ଗୁମାସ୍ତା । ମାତ୍ର ବର୍ଷେ ଦି'ବର୍ଷ ରହିଛନ୍ତି । ତାପରେ ଦିନେ ହଠାତ୍ ମୋ ବାହାଘର ମାସକ ଆଗରୁ କହିଲେ, "ଆଜ୍ଞା, ମୁଁ ଯାଉଛି, ମୋତେ ବିଦାୟ ଦିଅନ୍ତୁ । ମୋତେ ଯିବାକୁ ପଡ଼ିବ, ଆଉ ଚାକିରି କରିପାରିବି ନାହିଁ ।" ବାପା ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "କଓ କଥା କଅଣ ? ଏତେ ତରବର କାହିଁକି ? ଅନ୍ତତଃ ଲକ୍ଷ୍ମୀ ବାହାଘରକୁ ରହିବ ନାହିଁ ?" ଉତ୍ତରରେ "ନାଇଁ, ଆଜ୍ଞା ।" ପାଟିରୁ କଥା ବାହାରୁ ନାହିଁ ଯେମିତି । ବାପା ହସିଲେ । ଆଉ ଟିକିଏ ବିରକ୍ତ ମଧ୍ୟ ହେଲେ । ପ୍ରାଣନାଥବାବୁ ବିଦା ହୋଇଗଲେ ସେଇଦିନ ।

ପ୍ରାଣନାଥବାବୁ । ଗୁମାସ୍ତା ପ୍ରାଣନାଥ । ସେଇ ହେଉଛନ୍ତି ନୂଆ କବି ! ତାଙ୍କର ଉପରେ ଏତେ ଚର୍ଚ୍ଚା, ଆଲୋଚନା !!

ରମାବୋଉ ମୁହାଁଉଥାଆନ୍ତି ସିଡ଼ିମୁଣ୍ଡକୁ ଓ ହସୁଥାଆନ୍ତି ମନକୁ ମନ—ମୁଁ ବି କବିଙ୍କୁ ଜାଣିଛି । ଏମାନଙ୍କଠାରୁ ବେଶି ଜାଣିଛି ।

ସିଡ଼ିମଝିରେ ଥିବା ବିଜୁଳି ଆଲୁଅର ଝଲକ ପଡ଼ିଲା ରମାବୋଉଙ୍କ ମୁହଁରେ । ବଡ଼ବୋହୂର ଆଖିରେ ପଡ଼ିଲା । ବୋଉ ହସୁଛନ୍ତି । ନିଜକୁ ନିଜେ ହସୁଛନ୍ତି । ତାର ଶୁଖିଲା ମୁହଁରେ ହସ ଫୁଟି ଉଠିଲା । ମଝିଆଁକୁ କହିବ ।

ରମାବୋଉ ଭାବି ଚାଲିଛନ୍ତି । ସେଦିନ ପ୍ରାଣବାବୁ ଗଲେ ନାହିଁ କେତେବେଳ ଯାଏଁ । ଚୂପ୍‌କିନା ଛିଡ଼ା ହୋଇଥାଆନ୍ତି ବାରଣ୍ଡାରେ ଖୁଣ୍ଟକୁ ଆଉଜି, ଅନାଇ ଥାଆନ୍ତି ତୋଟା ଆଡ଼େ । ଝିପିଝିପି ବର୍ଷା ଆରମ୍ଭ ହୋଇଯାଇଥାଏ । ଆମେ ସବୁ ଦୌଡ଼ି ଆସୁଥାଉ ଘରକୁ—ମଣି, ବିଜି, ଆଉସବୁ କେତେ ସାଙ୍ଗ । ପ୍ରାଣବାବୁ ଅନେଇଲେ ଆମ ଆଡ଼କୁ । ଆମ ସମସ୍ତଙ୍କ ଆଡ଼କୁ ଅନେଇଥିଲେ ? ନାଇଁ ତ, ବୋଧହୁଏ ମୋଅରି ଆଡ଼କୁ ଅନେଇଥିଲେ । ମନେ ହେଉଥିଲା ଯେମିତି ସେ

ମୋତେ ଦେଖୁନାହାନ୍ତି, ମୋର ଭିତର ଦେଇ ଆଉ କଣ ଭାବୁଛନ୍ତି । ବୋଧହୁଏ ଆମ ଘର ଛାଡ଼ି ଯାଉଛନ୍ତି ବୋଲି ଦୁଃଖ କରୁଛନ୍ତି ।

ତାଙ୍କର ଆକୃତିଟା ସତରେ ମଜାର । ମୁହଁ ସାଙ୍ଗକୁ ଖାପ୍ ଖାଏ ନାହିଁ । ଚୋପା ଆଖି, ଆଉ ଝରି ପକେଇଲା ପରି ଚାହାଣି । କିନ୍ତୁ ଚଞ୍ଚଳ ନୁହେଁ, ଥିର ପିଲାଙ୍କ ପରି । ସେତିକି ଯାହା, ବାକିସବୁ ନୁହେଁ । ବସିଗଲା ଭଳି ନାକ, ଆଉ ବଡ଼ମୁଣ୍ଡ, ସରକସ୍ ଜୋକରଙ୍କ ପରି । ରମାବୋଉ ପୁଣି ହସି ଉଠିଲେ । ସେଇ ଲୋକ ପୁଣି କବି ହୋଇଛି ! ଏତେ ବଡ଼ କବି ! !

ପ୍ରାଣବାବୁ ଅନେଇଥିଲେ । କାହାକୁ ଅନେଇଥିଲେ—ମୋତେ ? କାହିଁକି ?

ସେଇ ଥରକ ନୁହେଁ । ମନେ ହେଉଛି ଆହୁରି କେତେଥର ଅନେଇଥିଲେ ସେମିତି । କୁଆଁରପୂନେଇଁ ହେବ ପରା ! ଜହ୍ନରାତିରେ ସମସ୍ତେ ବାହାରେ ଖେଳୁଛୁ । ପାଇପଡ଼ଶା ଘରୁ ହୁଳହୁଳି ଶୁଭୁଛି । ବଜା ବାହା ହୋଇ ଆସିଥିଲା ସେଥର । ତାକୁ ଚିଡ଼ଉଛୁ ! ହଠାତ୍ ଦେଖିଲିବେଳକୁ ବରଗଛ ଚଉତରା ଉପରେ ଜଣେ ବସିରହିଛନ୍ତି । ମଣିଟା ଡରକୁଳୀ, ଭୂତ ବୋଲି ପାଟି କରିବାକୁ ଯାଉଥିଲା । ମୁଁ ଭଲ କରି ଅନେଇ ଦେଖିଲି, ଆମ ଗୁମାସ୍ତାବାବୁ । କାହିଁକି ବସି ରହିଛନ୍ତି ସେମିତି ? ଆମେ ସବୁ ଗୋଳେଇ ହୋଇ ବସିଥିଲୁ । ମୁଁ ଥିଲି ତାଙ୍କ ଆଖି ସାମ୍ନାରେ । ତା'ହେଲେ ସେ କ'ଣ ମୋତେହିଁ ଅନେଇଥିଲେ ? ଅବଶ୍ୟ ପାଖରେ ଅଭୟା ବସିଥିଲା । କିନ୍ତୁ— ।

ନା, ସେଦିନ ସେ ମୋତେହିଁ ଅନେଇ ରହିଥିଲେ । ସେଦିନ କଥା ନ ହେଲା । ଆଉ ଦିନେ, ମଗୁଶିର କି ପୁଷମାସ ହେବ, ମୁଁ ସକାଳୁ ସକାଳୁ ଉଠି ବାହାରକୁ ଆସିଥାଏ । ଆକାଶର ସେ ମୁଣ୍ଡକୁ ଅନେଇଥାଏ । ଉଇଁଲା ସୂର୍ଯ୍ୟ ଆଡ଼କୁ । ବାଳ ମୁକୁଳା ହୋଇ ପଡ଼ିଥାଏ ପଛକୁ । ଦେଖେ ଗୁମାସ୍ତାବାବୁ ହାତକୁ ଛିନ୍ଦ ଝକ୍‌ଝକ୍ କରି ଅନେଇଛନ୍ତି ମୋ ଆଡ଼କୁ ।

କାହିଁକି ଅନେଇଥିଲେ ସେମିତି ? କବିମାନେ ସେମିତି ଅନାନ୍ତି ପରା ! ରମାବୋଉ ହସିଲେ । ପ୍ରାଣବାବୁ ଗୁମାସ୍ତା କବି ! ସମସ୍ତଙ୍କ ଆଗରେ କହିଦେବ ଯାଉଛି । ତମେସବୁ କ'ଣ ଜାଣିଛ ତାଙ୍କ କଥା ? ମୋତେ ପଚାର ।

ରମାବୋଉ ସିଡ଼ିରେ ଉଠୁଥାଆନ୍ତି । ଭାବନା ସରୁ ନ ଥାଏ । ସତରେ ସେ ମୋତେ ଅନଉଥିଲେ ସେମିତି ଥରକୁ ଥର ? ସତ ନା ମିଛ ?

କାହା କଥା ନେଇ ଗୀତ ଲେଖିଛନ୍ତି ସେ ? କୁନ୍ତଳକା, କୁନ୍ତଳକାଟି କିଏ ?

ରମାବୋଉଙ୍କର ଆଖି ହଠାତ୍ ଉଜ୍ଜ୍ୱଳ ହୋଇ ଉଠିଲା । ମଲା, ଏତେ ଭାବୁଛ କ'ଣ ମ ? କୁନ୍ତୀରୁ କୁନ୍ତଳିକା । କୁନ୍ତୀ— କୁନ୍ତଳିକା । ସେ ମୋର କଥା ଲେଖିଛନ୍ତି ! ମୋର ପାଇଁ — ।

ରମାବୋଉ ହସି ଉଠିଲେ । କିନ୍ତୁ ଏ ହସରେ ଅବଜ୍ଞା ନଥିଲା । କିଛି ପାଇଲା ପର ହସ । ବଡ଼କବି ମୋ ପାଇଁ ଗୀତ ଲେଖିଛି । ସେ ପ୍ରାଣନାଥ ଜେନା ହେଉ, ଗୁମାସ୍ତାବାବୁ ହେଉ, ଯେ ହେଉ । ସେ ଲୋକଟି କଥା କହିପାରେ, ହସି-ପାରେ, ଗାଇପାରେ—ସବୁ ମୋର ପାଇଁ ।

ରମାବୋଉ ହସି ହସି ଗଲୁଛନ୍ତି ଉପର ବାରଣ୍ଡାରେ । ମିଛ ନୁହେଁ, ସତ । ଏମାନେ ବୁଝିବେ ନାହିଁ କେହି । ଯୁଆଙ୍କ କଥା ନଆସ । ବୋହୂଗୁଡ଼ା ଅଗୁଆଁର । ରଡଟା ପିଲା । କାହାକୁ କହିବ ?

କାହିଁକି କହିବ ? ମୋ କଥା ମୋ ପାଖରେ । ମୋ ନାଆଁ ରହିଛି ବହିରେ, କବିଙ୍କ କଥାରେ । କେହି ନଜାଣନ୍ତୁ, ହେଲା କ'ଣ ? ଜାଣିବେ କେବେ ହେଲେ— ।

ତଳୁ କେତେ ଯୋଡ଼ା ଆଖି ଜଳଜଳ କରି ଗୁହିଁଛି ତାଙ୍କ ଆଡ଼େ, ସେ ଆଡ଼କୁ ଖିଆଲ ନାହିଁ ରମାବୋଉଙ୍କର । କେତେ ଫୁସ୍‌ଫାସ୍ ଟୁପ୍‌ଟାପ୍ ପରେ ସାନ ଜଳଖିଆ ଥାଳିଆ ଧରି ଦଉଡ଼ୁଛି ଉପରକୁ । ତା'ପଛେ ପଛେ ଖୋଦ୍ ଘରର ମାଲିକ ଶ୍ୟାମବାବୁ । ମନକୁ ମନ କହୁଛନ୍ତି — ମୁଁ ନିଜେ ଏଥର ବୁଝିବି ରମାବୋଉ ଖବର, ଔଷଧ ଠିକ୍ ଟାଇମ୍‌ରେ ଦେବି, ଠିକ୍ ଟାଇମ୍‌ରେ ଖାଇବାକୁ କହିବି । ବୁଢ଼ୀ ହେଲେଣି ଯେତେହେଲେ — ।

ସାନବୋହୂ ଓ ତା' ହାତରେ ଜଳଟିଆ ଥାଳିଆ । ପଛରେ ଶ୍ୟାମବାବୁ । ଦୁହିଁଙ୍କୁ ସିଡ଼ି ମୁଣ୍ଡରେ ଦେଖି ରମାବୋଉ ହସି ପକେଇଲେ—ଏକ ବିରାଟ ଚମକପ୍ରଦ ହସ । ବିଚରା !!!

# ପୁରୁଣା କବିତା

ମୋର ଜଣେ ପୁରୁଣା ସ୍ୱାମୀଙ୍କ ପିଲା ଥରେ ଆସିଥିଲା ଆମ ଘରକୁ, ତା' ବାପାବୋଉଙ୍କ ସାଙ୍ଗରେ । କନ୍‌ଭେଣ୍ଟ୍ ସ୍କୁଲ୍‌ରେ ପଢ଼େ । ହଠାତ୍ ରାସ୍ତାରେ ଯାଉଥିବା ଗୋଟିଏ ନଇଁ ନଇଁକା ବୁଢ଼ାକୁ ଦେଖି କହିଲା, "ହେଇ ଦେଖ, ଦେଖ, ପୁରୁଣା ଲୋକଟିଏ !" ଆମେ ସମସ୍ତେ ହସି ଉଠିଲୁ ତା'କଥାରେ । କିନ୍ତୁ ବୁଝିଲୁ ଯେ ପିଲାଟା କିଛି ଭୁଲ୍ କହି ନାହିଁ 'ଓଲ୍ଡ୍ ମ୍ୟାନ୍'ର ଓଡ଼ିଆ ଅନୁବାଦ ମଧ୍ୟ 'ପୁରୁଣା ଲୋକ' ହୋଇ ପାରିବ, ତା'ର ଆକ୍ଷରିକ ଅର୍ଥରେ ।

ଆଜି ସେଇ ହସକଥାଟା ମନେ ପଡ଼ୁଛି ମୋର । ଇଏ ମୋର ହଜି ଯାଇ ଫେରି ଆସିଥିବା ଅନ୍ୟତମ ପୁରୁଣା ଗପ, ପ୍ରାୟ ଛତିଶବର୍ଷ ତଳର ଲେଖା । ଏବଂ ଗପର କଥାବସ୍ତୁ ନବ ଆବିଷ୍କୃତ ଗୋଟିଏ ପୁରୁଣା କବିତାକୁ ନେଇ । କିନ୍ତୁ ହାୟ ! ରମାବୋଉ କୋଉ ପୁରୁଣା ମଣିଷଟିଏ ନୁହଁନ୍ତି, ସେ ହେଉଛନ୍ତି ବୁଢ଼ୀ ! ସେ ବେଳର ଯୌଥ ପରିବାରରେ ବଞ୍ଚି ରହିଥିବା ବୁଢ଼ୀଟିଏ ଯେ ସକାଳରେ ଶାଗ ତୋଳନ୍ତି ବୁଢ଼ାଙ୍କ ପାଇଁ, ମଧ୍ୟ ତା'କୁ ନିଜ ହାତରେ ଖରଡ଼ିବାକୁ ଚେଷ୍ଟା କରନ୍ତି, ଯଦିଓ ତାଙ୍କୁ ଜଣା ଯେ ସେଥିରେ ଲାଭ ନାହିଁ କିଛି । ବୁଢ଼ାଙ୍କର ସେଆଡ଼କୁ ନଜର ନଥିବ କେବେହେଲେ । ଏବଂ ଜାଣନ୍ତି ଯେ ବଡବୋହୂ କଡ଼ଛଡ଼ା ଦିଏ, ମଝିଆବୋହୂ ଅଳସେଇ, ସାନ-ବୋହୂଟା ନିହାତି ପିଲାଳିଆ, ହେଲେ ସମସ୍ତେ ତାଙ୍କ ପ୍ରତି ଦୟା ଦେଖାନ୍ତି । କେବଳ ଦୟା । ହୁଏତ କିଛି ଭକ୍ତିଭାବ ମିଶି ରହିଛି ସେଥିରେ, କିନ୍ତୁ ସଙ୍ଗସୁଖ ନୁହେଁ । ସେଇଲାଗି ନଜର ରଖିବା କଥା ଯେ ବୋଉଙ୍କର ସବୁ କାମ 'ଟାଇମ୍'ରେ ହେଉଛି କି ନାହିଁ, ନହେଲେ ତାଙ୍କର ମୁଣ୍ଡ କ'ଣ ହେବ । ଯାହାହେଉ ଭାଗ୍ୟ ଭଲ ଯେ ସେଦିନ ବୁଢ଼ୀ ଜଣକ ଖାଲି ହସିଲେ ମନକୁ

ମନ, 'ପୁରୁଣା କବିତା' ଉପରେ ସ୍ୱଳ୍ପଥିବା ଆଲୋଚନାର ଶେଷ କେଇ ପଦ ଶୁଣିଲା ପରେ । ତାହାକୁ ତାଙ୍କ ବାଉଳା-ପଣର ଅନ୍ୟତମ ଲକ୍ଷଣ ବୋଲି ଭାବନେଇଥିବେ ସମସ୍ତେ । କିନ୍ତୁ ଧରି ସେ କଳ୍ପନାକରି ଥାଆନ୍ତେ କୋଉ ବୋହୂକୁ କିମ୍ବା ନାତୁଣୀ ରତିକି—'ଆଲୋ ଜାଣିଚୁ ? ଏଇ ଯେଉଁ ପୁରୁଣା କବିତାକୁ ଏତେ ବାହାବା କରୁଛନ୍ତି ସେମାନେ, ତା'ର ନାୟିକା କୁନ୍ତଳକାନ୍ତି କିଏ ଜାଣିଚୁ ? ସିଏ ହେଉଛୁ ମୁଁ ପରା !' ତାହେଲେ ଅସମ୍ଭାଳ ହୋ' ହୋ' ହସ, ମୁହଁରେ ହାତଦିଆ ଚପା ହସ, ଛୁଗୁଲିଆ 'ସତେ ?' ଇତ୍ୟାଦିର ପ୍ରତିକ୍ରିୟା ଛଡା ଆଉ କ'ଣ ମିଳିଥାଆନ୍ତା ତାଙ୍କୁ ? କାହିଁକିନା ସେ କୋଉ ପୁରାତନ ସମ୍ପଦ ନୁହଁନ୍ତି, ପୁରୁଣାପଣହିଁ ଯାହାକୁ ଅଧିକ ମର୍ଯ୍ୟାଦା ଆଣି-ଦିଏ । ସେ ହେଉଛନ୍ତି 'ରମାବୋଉ' ନାମ୍ନୀ ଇତର ସାଧାରଣ ମୁଣ୍ଡବାଉଳା ବୁଢ଼ୀଟିଏ । ହେଲେ ହୋଇଥିବେ ସେ କେଉଁ ପୁରୁଣା କବିତାର ନାୟିକା, କିନ୍ତୁ ଶୁଣିଲେ ହସ ମାଡୁଛୁ ।

ହସ ମାଡୁଛୁ । କଥାଟା ମଣିଷ କେବଳ ପୁରୁଣା ହୋଇ ରହିଯାଏ ନାହିଁ, କବିର କବିତା କି ଶିଳ୍ପୀର ଛବିଟିଏ ପରି । ସେ ବୁଢ଼ା ହୁଏ, ବୁଢ଼ାପଣରେ ନାନା ସ୍ୱାଭାବିକ ହେଲେ ଅସୁନ୍ଦର ବିକୃତିକୁ ନେଇ । ଅତଏବ ଏଇ ହସଟାକୁ ରୋକି ହେବ କେମିତି ? କେମିତି ଭାବି ହେବ ଯେ ଏଇ ଦୟନୀୟ ବସ୍ତୁଟିର ସମ୍ପର୍କ ଥିଲା ଆମର ଏଇ ସୁନ୍ଦର—ମହନୀୟ ପୁରୁଣା ଜିନିଷଟି ସାଙ୍ଗରେ । ଏହାହିଁ ଦୁଃଖ । ଆମର ଏଇ ଘୋର ଅଯୌକ୍ତିକ ମନୋଭାବ ।

ବ୍ୟକ୍ତିଗତ ଦୃଷ୍ଟିରୁ ଏଇ ଦୁଃଖ ମୋତେ ବେଶୀ ମାଡ଼ି ପଡୁଛି ଆଜି, ତା' ସାଙ୍ଗରେ ଯତ୍‌ସାମାନ୍ୟ ଗ୍ଲାନି ମଧ୍ୟ ରହୁଛି । ଯେ 'ରମାବୋଉ' ଚରିତ୍ରଟି ଆଂକିଲା ବେଳେ ଯେଉଁ ବୁଢ଼ୀଙ୍କ ଚେହେରା ତରୁଣ ଲେଖକର ଆଖିଆଗରେ ଥିଲା, କାହାଣୀର ମୋଲ୍-ମଡେଲ୍ ପରି, ତାଙ୍କର ସୁଖ-ଦୁଃଖ ପ୍ରତି ତା'ର କେବଳ ସମ୍ବେଦନା ନଥିଲା । ସେ ମଧ୍ୟ ବୋଧହୁଏ ହସୁଥିଲା ଟିକିଏ । ଅର୍ଥାତ୍ ଆମୋଦରସ ମଧ୍ୟ ଏଇ ଗପର ଅନ୍ୟତମ ରସ, ଯାହାକୁ ମୁଁ ପରଶିବାକୁ ଚାହିଁଲି ମୋ ପାଠକମାନଙ୍କୁ । ମୋର ଏଇ ଧାରଣା ସତ କି ମିଛ ଜାଣେ ନାହିଁ । ହୋଇଥିବ ଯେ ଆଜି ମୁଁ ବୁଢ଼ା ହେଲିଣି, ସେଇଥିଲାଗି ଏଇ ଦୋଷୀଭାବ । ସେ

ଯାହାହେଉ ମୋର ମନେ ହେଉଛି ଯେ ଆମ ସମାଜର ଅନ୍ୟ ତରୁଣତରୁଣୀମାନଙ୍କ ପରି ମୁଁ ମଧ୍ୟ ଅନ୍ୟାୟ କରିଛି ରମାବୋଉଙ୍କ ପ୍ରତି ।

ତା'ଛଡ଼ା ଜଅନ୍ତା ମଣିଷ ପୁରୁଣା ହୁଏ ନାହିଁ, ବୁଢ଼ା ହୁଏ, ତେଣୁ ଦମ୍ଭମାମ୍ଭତା ତା'ର କପାଳଲିଖନ, ଏଇ କଷ୍ଟୁର ହେଲେ ସରଳ, ସତକୁ ସହଜେ ମାନି ନେଇ ହେଉ ନାହିଁ, ତା'ର କାରଣ ଏଇ 'ସତଟା' ନୈସର୍ଗିକ ନୁହେଁ ବୋଲି ମୋର ସନ୍ଦେହ ହେଉଛି । ବୋଧହୁଏ ସମାଜଭିତ୍ତିକ । କାହିଁ, ମୋର ବିଦେଶ ଅନୁଭୂତି ତ ମୋତେ ସେଠିକାର କେଉଁ 'ରମାବୋଉ'ମାନଙ୍କୁ ଚିହ୍ନାଇ ଦେଇ ପାରି ନାହିଁ—ପାରିଛି କି ?

ମୋର ମନେ ହୁଏ ଯେ କେବଳ ଆମରି ସମାଜରେ ପୁରୁଣା ମଣିଷର ବୁଢ଼ାପଣ, ତେଣୁ ତା'ର କ୍ଷୟଶୀଳତାକୁ ଅତିଶୀଘ୍ର ଏବଂ ଅକାରଣରେ ଧରି ନିଆଯାଏ, ଏବଂ ସେହେତୁ ତାକୁ ତାର ନାନାଦି ମାନବିକ ପାଉଣାରୁ ବଂଚିତ କରାଯାଏ । ଯଥା :

ଏଠି ଷାଠିଏ ପୂରୁ ନପୂରୁଣୁ, ହୁଏତ ପଚାଶ ଟପିଲା ପରେ ପରେ ତମର ବିଭିନ୍ନ ରୋଗବଇରାଗ କି ଶାରୀରିକ ଦୁର୍ବଳତାକୁ ସ୍ୱାଭାବିକ ବୋଲି ଧରି ନିଆଯାଏ । କୁହାଯାଏ, ଏପରିକି ଡାକ୍ତରମାନେ କୁହନ୍ତି, ଯେ ଏମିତି ହୁଏ । ତମେ ଠିକ୍ ଅଛ ତମ ବୟସକୁ ନେଇ । କିନ୍ତୁ ବିଦେଶରେ, ବିଶେଷତଃ ପାଶ୍ଚାତ୍ୟ ଦେଶରେ, ଏପରି ମନୋଭାବ କ୍ୱଚିତ୍ ଦେଖିବାକୁ ମିଳେ ।

କେବଳ ଶାରୀରିକ ସ୍ତରରେ ନୁହେଁ, ମାନସିକ ସ୍ତରରେ ମଧ୍ୟ ଏହିପ୍ରକାର ଦୋଷଦୁର୍ବଳତାର ଆରୋପଣ କରାଯାଏ ପୁରୁଣା ମଣିଷମାନଙ୍କ ଠାରେ । ମୋତେ ଯେତିକି କାବା ଲଗିଲା, ସେତିକି ଦୁଃଖ ହେଲା ମୋ ମନରେ, ଯେତେବେଳେ ମୁଁ ଥରେ ଗୋଟିଏ ପତ୍ରିକାରେ ପଢ଼ିଲି ଜଣେ ପାଠକଙ୍କ ଅଭିଯୋଗ, ଯେ ବୁଢ଼ା ଲେଖକମାନଙ୍କ ଲେଖା ସହଜେ ତଳକୁ ପଡ଼ିଗଲାଣି, ତେଣୁ ତାଙ୍କୁ ଆପଣଙ୍କ ପତ୍ରିକାରେ ଯେତେ କମ୍ ସ୍ଥାନ ଦେବେ,

ସେତେ ଭଲ । ଏବଂ ଏହି ଆକ୍ଷେପର ମୂଳାଧାର ଥିଲେ ଗୋପୀନାଥ ମହାନ୍ତି, ଏବଂ ତାଙ୍କର ଗପ !

ବିଦେଶରେ ବୟସ୍କ ଲୋକମାନଙ୍କ ଶାରୀରିକ ତଥା ମାନସିକ ସାମର୍ଥ୍ୟ, ଏବଂ ସେଥିର ନ୍ୟାଯ୍ୟ ଅଧିକାରକୁ ଯେଉଁ ମର୍ଯ୍ୟାଦା ଦିଆଯାଏ, ତାହା ଆମ ଦେଶରେ ନାହିଁ, ଏ ବିଷୟରେ ମୁଁ ଅନେକ ଆଖିଦେଖା ଉଦାହରଣ ଦେଇ ପାରିବି । କିନ୍ତୁ ତାହା ସମୟସାପେକ୍ଷ ! ମଧ୍ୟ ଅନାବଶ୍ୟକ ବୋଲି ମୁଁ ମନେ କରେ, କାରଣ ଆପଣମାନଙ୍କ ମଧ୍ୟରୁ ଅନେକେ ଏହି ତାରତମ୍ୟ ଅବଶ୍ୟ ଲକ୍ଷ୍ୟ କରିଥିବେ । ହଁ, ସମ୍ଭବତ ଅକ୍ଷମତା ହେତୁ ଆମର ବୁଢ଼ାବୁଢ଼ୀମାନଙ୍କୁ ହୁଏତ ଅତିଶୀଘ୍ର ଖଟୁଲିରେ ବସେଇ ଦିଆଯାଏ, କିମ୍ବା ଦିଅଁଟିଏ ପରି, ଯାହାକୁ ମୁଣ୍ଡିଆଟିଏ ମାରିଲେ କାମ ସରିଲା । କିନ୍ତୁ ସେଇ ଭକ୍ତି କି ଦୟା କ'ଣ ଯଥାର୍ଥ ସମ୍ମାନ ଦିଏ ତାଙ୍କର ମଣିଷପଣକୁ ?

ନା, ମୋର ସନ୍ଦେହ ନାହିଁ ଯେ ବିଦେଶର କଣେ ଷାଠିଏ ପଇଁଷଠି ବର୍ଷର 'ରମାବୋଉ' ଯଦି ଏକ ବିଶିଷ୍ଟ ପୁରୁଣା କବିତାର ନାୟିକା ବୋଲି ଆବିଷ୍କୃତ ହୁଅନ୍ତେ, ସେଥିରେ କେଉଁ ଆମୋଦରସର ସୃଷ୍ଟି ହୁଅନ୍ତା ନାହିଁ । ଯାହା କୁହନ୍ତୁ ପଛେ, ଆମର କ୍ଷମା ମାଗିବା କଥା ରମାବୋଉଙ୍କୁ । ଅଧିକନ୍ତୁ ତାଙ୍କୁ କହିବା ଉଚିତ, ଯେ ଏଇ ପୁରୁଣା କବିତାର ମହତ୍ତ୍ୱ ଆହୁରି ଫୁଟି ଉଠୁଛି, ଆପଣଙ୍କ ପରି କଣେ ଜୀବିତ-ଜୀବନ୍ତ ତେଜସ୍ୱୀ ମହନୀୟ ପୁରୁଣା ମଣିଷଟିଏ ସେଥିର ନାୟିକା ବୋଲି ଜାଣିଲାରୁ । ଧନ୍ୟବାଦ ।



# ଅରବିନ୍ଦବାବୁଙ୍କର ଦୁଃଖ

ସେଦିନ ସନ୍ଧ୍ୟାରେ ଆଲୁଅ-ଛାଇକୁ ଟିକିଏ ଦେଖି ରହିଗଲେ ଅରବିନ୍ଦବାବୁ । ସବୁଦିନ ପରି ହେଲେ ମଧ୍ୟ କେମିତି ନୂଆ ଲାଗୁଛି, ଅନ୍ୟ ରକମର । ମନେ ହେଉଛି ସେ ଅରବିନ୍ଦବାବୁଙ୍କଠାରୁ ବଡ଼ । ତାଙ୍କ ପାଖରେ ଯାହା ନାହିଁ, ସେ ଯାହା ଚାହୁଁଛନ୍ତି ହେଲେ ପାଇ ନାହାଁନ୍ତି, ସବୁ ତା' ପାଖରେ ଅଛି । ସେ ସ୍ଥିର ହୋଇ ବସି ରହିଛି, ଅଥଚ କଥା କହୁଛି—ଅନେକ କଥା । ସେ ସବୁ କଥା ଗୋଟିଏ କଥା ହୋଇ ଗଛ ପବନ ପାଣି ପଥରରେ ଛାଇ ହୋଇ ସମସ୍ତଙ୍କୁ ଏକାଠି କରି ଦେଇଛି । ଏହା ପରେ ଆଉ କିଛି କଥା ନାହିଁ, ଆଉ କିଛି ଜାଣିବାର ନାହିଁ, ପାଇବାର ନାହିଁ । ଅରବିନ୍ଦବାବୁ ମଧ୍ୟ ତାରି ସାଙ୍ଗରେ ମିଶି ଯାଇଛନ୍ତି । ସେଇ ଶେଷ କଥାର ଟିକିଡ଼ାଏ ହୋଇ, ସେଇ ସମଗ୍ର ଅନୁଭୂତିର ଅଂଶବିଶେଷ ।

ଅରବିନ୍ଦବାବୁ ଅଫିସ୍ ଫେରନ୍ତା ବେଶ ବଦଳେଇ ନାହାନ୍ତି । ଖାଲି ଟାଇଟାକୁ ଟିକିଏ ଢିଗୁଲେଇ ଦେଇଛନ୍ତି, ଓ କୋଟ୍‌କୁ ଅଧା ଖୋଲି କାନ୍ଧରେ ଲଟକେଇ ଦେଇଛନ୍ତି ।

ଛାଇ ଘେରି ଆସୁଛି, ଅନ୍ଧାର ବ୍ୟାପିଯାଉଛି । କିନ୍ତୁ ଅରବିନ୍ଦବାବୁ ଛିଡ଼ା ହେବା ଜାଗାରୁ ଘୁଞ୍ଚିପାରୁ ନାହାନ୍ତି, ସନ୍ଧ୍ୟାର ଛାଇରୁ ନିଜକୁ ଅଲଗେଇ ପାରୁ ନାହାନ୍ତି । ରାସ୍ତାକଡ଼ରେ ଥିବା ଇଟାଗଦା ପାଖରେ ବିଲେଇଟିଏ ଲାଙ୍ଗୁଡ଼ ଟେକି ଦେହକୁ ଘଷି ଘଷି ଯାଉଛି । ସେ ମଧ୍ୟ ଏଇ ସନ୍ଧ୍ୟାର । ଅରବିନ୍ଦବାବୁଙ୍କର ମନେ ହେଲା ସେ ମଧ୍ୟ ଛାଇ ଆଣୁଛି, ଅନ୍ଧାର ଆଣୁଛି, ଶାନ୍ତି ଆଣୁଛି ।

କିନ୍ତୁ ବିଲେଇକୁ ଦେଖି ଦେଖି ତାଙ୍କ ମନରେ ଆସିଲା ବିଲେଇମାନଙ୍କ କଥା; ଅଫିସ୍‌ମଣିଷ, ଘରମଣିଷ, ପୁରୁଷ ସ୍ତ୍ରୀ, ପିଲାଛୁଆ, ଦଳ, କୋଳାହଳର ଗଣ୍ଡଗୋଳ । ଶାନ୍ତିର ଛବି ଅସ୍ଥିର ହୋଇ ଉଠୁଛି । କହୁଛି ଅପର ଦୃଶ୍ୟ ବି ସତ, ଯାହା ମୋତେ ବନ୍ଦୀ କରି ରଖିଛି । ସେଠି ସଂଘର୍ଷ ଅଛି, ଘାତ ପ୍ରତିଘାତ । ସେଠି ଜୀବନ ଗରିକରି ତେଜି ଉଠୁଛି ପ୍ରତି ମୁହୂର୍ତ୍ତରେ, ଅଧିକାର କରୁଛି, ହାରିଯାଉଛି, ହେଲେ ପୁଣି ଉଠି ବସୁଛି । ତଥାରି କରି ଲାଜରି ହସ, ଅଭିମାନୀ କାନ୍ଦଣା, ଝିଟୁଲା ହସ, ବିକଳ ଅସନା କାନ୍ଦଣା, କଥା କୁହାକୁହି, କଥା କଟାକଟି, କଳିଆ,

କୋଳାକୋଳି—ସବୁଟି ସେଇ ଜୀବନର ଉଗ୍ରତା, ଜୀବନର କ୍ରୋଧ, ରଙ୍ଗ ଉପରେ ରଙ୍ଗ, ତୁଳୀର ବିରାମ ନାହିଁ ।

ଅରବିନ୍ଦବାବୁଙ୍କର ଇଚ୍ଛା ହେଲା ଆଖି ବୁଜି ଦେବେ । ଆଖି ବୁଜି ଦେଲେ ଆଉ କିଛି ଦେଖା ଯିବ ନାହିଁ, ଆଉ କିଛି ମନେ ପଡ଼ିବନାହିଁ । ସନ୍ଧ୍ୟାର ଛାଇ ସାଙ୍ଗରେ ପୁରାପୁରି ମିଶିଯାଇ ହେବ ।

ତେବେ ଆଖି ବୁଜିବାର ପ୍ରଲୋଭନରୁ ସେ ଠିକ୍ ସମୟରେ ନିଜକୁ ବଞ୍ଚେଇ ରଖି ପାରିଲେ । ସେଥିପାଇଁ ଦାୟୀ କ'ଣ ବୋଲି ନିର୍ଦ୍ଦିଷ୍ଟ ଭାବରେ କହି ହେବ ନାହିଁ—ହୁଏତ ତାଙ୍କ ଡ୍ରଇଂରୁମ୍‌ରେ ହଠାତ୍ ଜଳି ଉଠିବା ଆଲୁଅରେ ପଞ୍ଚବର୍ଷୀୟ ଯୋଜନାର କ୍ୟାଲେଣ୍ଡର ଆଖିରେ ପଡ଼ିଲା, କିମ୍ବା ପୁନ୍‌ପୁନ୍‌ର ସରୁ କଣ୍ଠ ଓ ଚଢ଼ାସ୍ୱରର ଇଂରେଜୀ ଗୀତ କାନରେ ବାଜିଲା, କିମ୍ବା କାଲି ପାଇଁ ସ୍ଥିର ହୋଇଥିବା ଅଫିସ୍‌ର ଗୋଟିଏ ଷ୍ଟାଫ୍ ମିଟିଙ୍ଗ୍ କଥା ମନେ ପଡ଼ିଲା, ଯେଉଁ ମିଟିଙ୍ଗ୍‌ରେ ତାଙ୍କର ଗୋଟିଏ ସୁଚିନ୍ତିତ ଭାଷଣ ଦେବାର କଥା ଅଛି ।

ମୋଟ ଉପରେ ଅରବିନ୍ଦବାବୁଙ୍କର ନିଦୁଆ ଭାବ ଚାଲିଗଲା, ସେ ଡେଇଁ ଉଠିଲେ ଓ ନିଜକୁ କହିଲେ ଯେ ଏ ତନ୍ମୟଭାବ ତାଙ୍କୁ ଶୋଭା ପାଏ ନାହିଁ । ଏଥିରେ କଳାତ୍ମକ କିମ୍ବା ବୁଦ୍ଧିଗତ ଆନନ୍ଦ ନାହିଁ । ଏ ଭାବ ମରଣର ପାଖାପାଖି, ତେଣୁ ବର୍ଜନୀୟ । ହଁ ସନ୍ଧ୍ୟା ସୁନ୍ଦର, କିଛି ସମୟ ପାଇଁ ଶାନ୍ତି ଆଣିଛି, ହେଲେ ସେତକ ତାର କାମ । ସେଇଠୁଁ ଆଗକୁ ନୁହେଁ । ସଫଳ କର୍ମକୁଶଳ ମଣିଷର ଗଢବାଧିରେ ତାର ସ୍ଥାନ ନିର୍ଦ୍ଦିଷ୍ଟ, ଚିତ୍ରପଟରେ ଆକାଶର ରେଜାଏ ନେଳି ରଙ୍ଗ ପରି—ସମତା, ସମନ୍ୱୟ ଆଣିବା ପାଇଁ ।

ଅରବିନ୍ଦବାବୁ ଆତ୍ମଗୌରବର ଭାବରେ ଉଜ୍ଜୀବିତ ହୋଇ ଡ୍ରଇଂରୁମ୍‌କୁ ପଶିଲେ । ଭାବିଲେ ଯେ ତାଙ୍କ ପରି ଅନେକ ଅଫିସର୍ ଅଛନ୍ତି, ବଡ଼ ବଡ଼ ଅଫିସର, ଯେଉଁମାନେ ଖାଲି କଲମପେଷା ଜୀବ । ସନ୍ଧ୍ୟା-ସକାଳ, ଶରତ-ବସନ୍ତ ତାଙ୍କର ବାଟରେ ଚାଲିଯାଏ, କିନ୍ତୁ ତାଙ୍କ ମନକୁ କେଉଁ ନୂଆ ଭାବ ଛୁଏଁ ନାହିଁ । କିନ୍ତୁ ସେ ସେମିତି ନୁହଁନ୍ତି । ସେ ସୂକ୍ଷ୍ମଭାବର ସ୍ପର୍ଶ ପାଇ ପାରନ୍ତି, ତାକୁ ବୁଦ୍ଧିରେ ଖେଳେଇ ପାରନ୍ତି, ପୁଣି ଜୀବନର ଗତି ସାଙ୍ଗରେ ମିଶେଇ ଦେଇ ପାରନ୍ତି । ଯଥାସ୍ଥାନରେ ଯାହା; ସବୁ ଭାବର ସମନ୍ୱୟରେ ପ୍ରକୃତ ମଣିଷ ଗଢ଼ି ଉଠେ । ସଭ୍ୟ ମଣିଷ ।

ଅରବିନ୍ଦବାବୁ ସୋଫାର ଆରାମ ଟାଣିଲେ । ମୁଣ୍ଡରେ ହାତ ଚଲାଇ କର୍ମକ୍ଳାନ୍ତିର ଗୁରୁତ୍ୱ ଅନୁଭବ କଲେ । ବହୁତ କାମ । ବହୁତ କାମ । ତଥାପି ବିଶ୍ରାମ ମୁହୂର୍ତ୍ତଗୁଡ଼ିକର ସଦୁପଯୋଗ ଦରକାର । 'ମହେଞ୍ଜୋଦାରର କଳା' ପ୍ରବନ୍ଧଟା ଅଧା ରହିଛି । 'ଆଧୁନିକ ସାହିତ୍ୟର ଶେଷ କଥାକୁ ବଦଳେଇବାକୁ ପଡ଼ିବ, ପୁରାପୁରି ବଦଳେଇବାକୁ ପଡ଼ିବ । ମନେ ହେଉଛି ଆଧୁନିକ ଦୁର୍ବୋଧ ସାହିତ୍ୟକୁ ଗାଳି

ଦେବାର ଫେସନ୍ ବଦଳିଗଲଣି । ଲୋକେ ତାକୁ ନବୁଝିଲେ ବି ଭଲ ବୋଲି କହୁଛନ୍ତି, ଅନୁମାନ କରୁଛନ୍ତି ଯେ ସେଥିରେ କିଛି ଆଧ୍ୟାତ୍ମିକ ଭାବ ରହିଛି । ପ୍ରଫେସର୍ ରାଙ୍ଗନେକାରଙ୍କ ଘରକୁ ଯିବାକୁ ହେବ ଦିନେ । ଏଣୁ ତେଣୁ କଥା ସାଙ୍ଗରେ ଆଧୁନିକ ସାହିତ୍ୟ ବିଷୟ ପକେଇବାକୁ ପଡ଼ିବ । ସେଇଠୁଁ ସେ ବହୁତ କିଛି କହିବେ ନିଶ୍ଚୟ—ଗପୁଡ଼ା ଲୋକ ।

ଅରବିନ୍ଦବାବୁଙ୍କର ବୟସ ବୟାଳିଶ ପାଖାପାଖି । ମୁଣ୍ଡବାଳ ଦୁଇ କଡ଼ରୁ ବେଶ୍ ଧଳା ହୋଇଆସିଲଣି, ଓ ମୁଣ୍ଡର ପଛପାଖରେ ଅଳ୍ପ ଚନ୍ଦା ଦେଖିବାକୁ ମିଳେ । ପ୍ରଶସ୍ତ କପାଳ, ଲମ୍ବା ନାକ, ହେଲେ ଚିବୁକରେ ଦୃଢ଼ତା ନାହିଁ, ଚାହାଣିରେ ଜ୍ୟୋତି ଥିଲେ ଥିବ କିନ୍ତୁ ତେଜ ନାହିଁ, ଏବଂ ଓଠ ଦୁଇଟା ପିଲାଙ୍କପରି—ସବୁବେଳେ ହସିବାକୁ, ପଚାରିବାକୁ ଉଦ୍ୟତ, ଚାପି ହୋଇ ରହିବାକୁ ଚାହେଁନାହିଁ । ତାଙ୍କ ମୁହଁର ଚେହେରାରେ ଥିବା ଏହି ଦୋଷଗୁଣ ଜଣାଅଛି ତାଙ୍କୁ । ସେଥିଲାଗି ସେ ତାଙ୍କ ମୁହଁର ଉପର ଅଂଶର ଥିବା ବୁଦ୍ଧି ଓ ବିଜ୍ଞତାର ସୂଚନାକୁ ବଳିଷ୍ଠ କରିବାକୁ ଚେଷ୍ଟା କରନ୍ତି । ବୟସ ମଧ୍ୟ ସେ ଦିଗରେ ସାହାଯ୍ୟ କରୁଛି ତାଙ୍କୁ । କପୋଳର କ୍ଷେତ୍ର ବଢ଼ି ବଢ଼ି ଚାଲିଛି । ଆଖି ସବୁବେଳେ ଭାବାଳୁପରି ହୋଇ ତା' ଜ୍ୟୋତିକୁ ହରାଇନାହିଁ ଯେ, ସେଥିରେ ଏକ କ୍ଲିଷ୍ଟ କରୁଣତାର ଭାବ ଆଣି ଦେଉଛି । ଏବଂ ଓଠ ଚାପି ହୋଇ ନପାରିଲେ ମଧ୍ୟ ଅଳ୍ପକରେ ଗୋଳ ହୋଇଯାଉଛି, ଭାବନାର ଉଦ୍ୟମ ସାଙ୍ଗରେ ତାଳ ଦେଲାପରି । ମୋଟ ଉପରେ ଅବସ୍ଥା ଭେଦରେ ତାଙ୍କ ମୁହଁର ଚେହେରା ଜଣେ ବିଶିଷ୍ଟ କଳାପ୍ରେମୀ, ବୁଦ୍ଧିବାଦୀ, ତଥା ଉଚ୍ଚାଧିକାରୀର ହାବଭାବ ଆଣିଦିଏ । ଶୋଇବା ବିଛଣାର ସାନ୍ନିଧ୍ୟରେ ପତ୍ନୀ ଶୋଭାଦେବୀ ବେଳେବେଳେ ଦୁଃଖ କରି କୁହନ୍ତି—"କୁଆଡ଼େ ଗଲା ତୁମର ସେଇ ଆଗ ଚେହେରା, ସବୁ କେମିତିକା ରୁକ୍ଷ ହୋଇଗଲଣି । ହେଲେ ତୁମର ସେଇ କବି ଭାବଟିକ ପୁରାପୁରି ଯାଇନାହିଁ । ଏବେ ମଧ୍ୟ ଦେଖିଲେ ମନେହୁଏ ଯେ ତୁମେ କବିତା ଲେଖିପାରିବ, ପ୍ରେମ କରିପାରିବ । ଅରବିନ୍ଦବାବୁ ଟିକିଏ ହସିଦେଲେ ମଧ୍ୟ ଅପ୍ରତିଭ ହୋଇଯାଆନ୍ତି । କିନ୍ତୁ ପରେ ପରେ ତାଙ୍କ ମନକୁ ଆସେ ଯେ ଶୋଭା କିଛି ଭୁଲ୍ କହୁନାହିଁ । ରୋମାନ୍‌ସର କାଳ ଏବେ ମଧ୍ୟ ଅଛି, କିନ୍ତୁ ରୋମାନ୍‌ସର ପାଗଳାମି ଗଲଣି କେବେଠୁଁ । ରୋମାନସ୍ ସ୍ମୃତିରେ ଅଛି, ଅଭିଜ୍ଞତାରେ ମିଶିଯାଇଛି, ମନକୁ ଟିକିଏ ସଜେଇ ଦେଉଛି କଳ୍ପନାର ଆନନ୍ଦ ପାଇବା ପାଇଁ । ବାସ୍ ସେତିକି ଦରକାର ।

ସୋଫାରେ କିଛି ସମୟ ବସିଛନ୍ତି, ପୁଣି କାନରେ ବାଜିଲା ପୁନ୍‌ପୁନ୍‌ର ଗୀତ । ଇଂରେଜୀ ଗୀତ । ଅରବିନ୍ଦବାବୁ କାନ ଡେରିଲେ । ପୁନ୍‌ପୁନ୍

ଆସୁଛୁ ଏଆଡ଼େ, ଉଚ୍ଛ୍ୱସିତ କଣ୍ଠରେ ଗୀତ ଗୁଣ୍ଡୁ ଦେଉଛୁ । ଅରବିନ୍ଦବାବୁ ଶୁଣିଲେ—

"ଓ୍ୱାନ୍ ଆଣ୍ଡ ଟୁ

ଆଣ୍ଡ୍ ଆଇ ଲଭ୍ ୟୁ, ଆଇ ଲଭ୍ ୟୁ..."

ଏଁ-ଏ ଗୀତ ସେ କେଉଁଠୁ ଶିଖିଲା ? ଏ ତ ନାଇଟ୍ କ୍ଲବର ଗୀତ, ବିଦେଶୀୟ ଉଚ୍ଛୃଙ୍ଖଳ ଉପଭୋଗର ସଙ୍ଗୀତ ! ଅବଶ୍ୟ ଏ ମାଟିରେ ମଧ୍ୟ ଶୁଣିବାକୁ ମିଳେ, କିନ୍ତୁ ତାର ସ୍ଥାନ ଅଛି, ସମୟ ଅଛି । ପୁଣି ପୁନ୍‌ପୁନ୍ କଣ୍ଠରେ ! ଅରବିନ୍ଦ ବାବୁ କାନ ଡେରିଲେ ଆହୁରି ଶୁଣିବାକୁ—

"ଥ୍ରୀ ଆଣ୍ଡ ଫୋର୍,

କିସ୍ ମି ମୋର୍

ୟୁ କିସ୍ ମି ମୋର୍,

ଆଣ୍ଡ୍ ଲେଟ୍‌ସ୍ ପ୍ଲେ ଦି ଗେମ୍ ଅଫ୍ ଲଭ୍..."

ଅରବିନ୍ଦବାବୁ ସିଧାହୋଇ ବସି ପଡ଼ିଲେ, ପାଟିକଲେ, "ଏ ପୁନ୍‌ପୁନ୍ ! ବନ୍ଦ କର । କିଏ ଶିଖେଇଲା ଏ ଗୀତ ?"

ପୁନ୍‌ପୁନ୍ ହସିକରି ତା ପୁଟୁକାଗାଲରେ ଟିପଚିହ୍ନର ଭ୍ରମ ଆଣିଦେଇ କହିଲା, "କାହିଁକି ବାବା, କଣ ହେଲା ? ମୁଁ ମୋ ସ୍କୁଲ୍‌ରୁ ଶିଖିଛି । ଇରା ଏ ଗୀତ ବୋଲେ, ଜାସ୍ମିନ୍ ବୋଲେ, ମଣ୍ଟୁ ବୋଲେ, ସମସ୍ତେ ବୋଲନ୍ତି । ତମେ ଜାଣିନାହଁ ଏ ଗୀତ ?

ଅରବିନ୍ଦବାବୁ ପ୍ରଶ୍ନର ଉତ୍ତର ଦେବାକୁ ଉଚିତ ମନେ କଲେନାହିଁ । କହିଲେ, "ନା ନା, ସେ ଗୀତ ବୋଲ୍‌ନା । ଆମେସବୁ ପିଲାଦିନେ ସ୍ତବ ବୋଲୁଥିଲୁ ସଞ୍ଜବେଳେ । ସ୍ତବ କଣ ଜାଣିଛୁ ? ପ୍ରେୟାର୍—"

ପୁନ୍‌ପୁନ୍ ମଝିରୁ କହି ଉଠିଲା, "ହଁ ହଁ, ମୁଁ ପ୍ରେୟାର୍ ଜାଣେ, ଆମ ସ୍କୁଲ୍‌ରେ ବୋଲହୁଏ ।"

ଅରବିନ୍ଦବାବୁ ତାକୁ ଦବେଇଦେଇ କହିଲେ, "ଶୁଣ୍, ଆମେ ପିଲାଦିନେ ବୋଲୁଥିଲୁ—"ଅଖିଳ ବ୍ରହ୍ମାଣ୍ଡପତି ମୋ ଜୀବନ ସ୍ୱାମୀ...।" ଅରବିନ୍ଦବାବୁ ସ୍ୱର ଧରିଲେ । ପୁନ୍‌ପୁନ୍ ବାପାଙ୍କ ସାଙ୍ଗରେ ସ୍ୱର ମିଳେଇବାକୁ ଚେଷ୍ଟାକଲା, କିନ୍ତୁ ପାରିଲାନାହିଁ । କଷ୍ଟ ଓଡ଼ିଆ ଶବ୍ଦ ପାଟିରେ ଧରିବାର ଅଭ୍ୟାସ ନାହିଁ । କନ୍‌ଭେଣ୍ଟ୍ ସ୍କୁଲ୍‌ରେ ପାଠ ପଢ଼ୁଛି ।

ଅରବିନ୍ଦବାବୁ ତାର ଦୁରବସ୍ଥା ଦେଖି କହିଲେ, ‘‘ଆଚ୍ଛା, ତା’ହେଲେ ଥାଉ ସେ ଗୀତ । ବୋଲ, ରଘୁପତି ରାଘବ ରାଜା ରାମ୍‌···।’’

ପୁନ୍‌ପୁନ୍ ତାଳିଟାଏ ମାରି କହିଲା, ‘‘ହଁ, ସେ ଗୀତ ମୁଁ ଜାଣିଛି ।’’ ତାପରେ ଡାକ ଛାଡ଼ିଲା, ‘‘ରଲୁଅପା, ପପୁ । ବାପା କହୁଛନ୍ତି ଚାଲ ପ୍ରେୟାର୍ ବୋଲିବା—ରଘୁପତି ରାଘବ ରାଜା ରାମ୍ ।’’

ପୁନ୍‌ପୁନ୍ ଚାଲିଗଲା ଓ କିଛି ସମୟ ପରେ ସମବେତ କଣ୍ଠର ସଙ୍ଗୀତ ଶୁଣାଗଲା, ‘‘ରଘୁପତି ରାଘବ ରାଜା ରାମ୍‌···’’

ଅରବିନ୍ଦବାବୁ ପିଲାଙ୍କ ଆନନ୍ଦରେ ଆନନ୍ଦିତ ହେଲେ । ଏବଂ ତାଙ୍କ ଗୀତ ଶୁଣି ମଧ୍ୟ ଖୁସି ହେଲେ । ପ୍ରେୟାର୍ ହେଲେ ମଧ୍ୟ ସଙ୍ଗୀତ ଅଛି ସେଥିରେ, ପିଲାମାନଙ୍କୁ ଭଲ ଲାଗୁଛି ବୋଲିବାକୁ । ଶୁଣିବାକୁ ଭଲ ଲାଗୁଛି । ବେଶ୍ ଏହାହିଁ ସନ୍ଧ୍ୟାର ଉପଯୁକ୍ତ ବାତାବରଣ । ପିଲାମାନଙ୍କୁ କହିବାକୁ ହେବ ସବୁଦିନେ ବୋଲିବେ ଏ ଗୀତ ।

ହେଲେ ଏମିତି ଭାବିଲା ବେଳେ ଅରବିନ୍ଦବାବୁଙ୍କର ମନେପଡ଼ିଲା ପୁନ୍‌ପୁନ୍‌ର ଗୀତରୁ ପଦେ—‘କିସ୍ ମି ମୋର୍, ୟୁ କିସ ମି ମୋର୍‌···’ । ଭାରି ମଜାରେ ବୋଲୁଥାଏ । ତା’ ଓଠ ଦୁଇଟି ଯେମିତି ଅଳି କରୁଛି ଗେହ୍ଲା ହେବା ପାଇଁ । ମିନତିର ଭାବ ନେଇ ନୁହେଁ, ଲୋଭ ଦେଖାଇ ।

ଅରବିନ୍ଦବାବୁ କଳ୍ପନାରେ ସାନଝିଅ ପୁନ୍‌ପୁନ୍‌କୁ ଗେହ୍ଲା କରିବାକୁ ଗଲେ । ପୁନ୍‌ପୁନ୍‌ର ଚଞ୍ଚଳ ପଣ, ତାର ହସିଲା ମୁହଁ, ଗ୍ରେଟ ଆଖି ଓ ପୁଚୁକ୍କା ଗାଲର ଆମୋଦ ତାଙ୍କୁ ଉତ୍ସୁକେଇଲା । ବଡ଼ ହେଲେ ଭାରି ଭଲ ଝିଅଟାଏ ହେବ, ଘରେ ବାହାରେ ସମସ୍ତଙ୍କ ମନନେଇ ପାରିବ ।

ହଠାତ୍ ମନ ଭିତରେ ବଜିଲା ପରି ଆସି ଚାଲିଗଲା ପ୍ରିୟମ୍ବଦା । ତାର ହସିଲା ମୁହଁ, ଗେହ୍ଲେଇ ହେବାର ଭଙ୍ଗୀ, ଆମନ୍ତ୍ରଣର ଚାହାଣି । ଆଶ୍ଚର୍ଯ୍ୟ, କିଏ କେତେବେଳେ ମନକୁ ଆସେ । ପୁନ୍‌ପୁନ୍ ସାଙ୍ଗରେ, ତାର ଗୀତ ସାଙ୍ଗରେ ପ୍ରିୟମ୍ବଦାର ସମ୍ପର୍କ କଣ ? ଅରବିନ୍ଦବାବୁ ନିଜକୁ କହିଲେ ଅନ୍ୟକଥା ଭାବିବାକୁ ।

ଶୋଭା ଏପର୍ଯ୍ୟନ୍ତ ଆସିନାହିଁ । ଏଠିକି ଆସିନାହିଁ କେମିତି, ବୋଧହୁଏ ରନ୍ଧାରେ ବ୍ୟସ୍ତ ଅଛି—ଏହି ମର୍ମରେ କିଛି ଭାବି ବସିଲା ବେଳକୁ ଶୋଭାଦେବୀଙ୍କର ଆବିର୍ଭାବ ହେଲା । ମୁହଁରେ ହସ, ହାତରେ ଜଳଖିଆ ଥାଳି । ହେଲେ ହସ ଭିତରେ ଅସ୍ତ୍ର ନାହିଁ, ଓଠରେ ଲାଗି ରହିଛି ରୁପେଲି ଗାରଟିଏ ପରି । ଅରବିନ୍ଦବାବୁ

ଆପ୍ୟାୟିତ ହେଲେ । ସ୍ତ୍ରୀବଲେ ସେ ସବୁଦିନେ ଏମିତିକା । ଏବଂ ଏହି ରୂପରେ ହିଁ ସେ ଶୋଭାପାଏ । ସେ ଅନ୍ୟ କାହା ଘର ହୋଇଥିଲେ ତାଙ୍କ ଘରକରଣାର ଶୃଙ୍ଖଳା ବିଗିଡ଼ି ଯାଇଥାଆନ୍ତା । ନା, ଏଇ ଠିକ୍ ଅଛି । ଘରତିଆରି ମିଠାର ସ୍ୱାଦୁ ଉପଭୋଗ କରିବା ସଙ୍ଗେ ସଙ୍ଗେ ସେ ଶୋଭାଦେବୀଙ୍କ ରୂପଗୁଣର ଅନୁଧ୍ୟାନ କଲେ ଏବଂ ନିଜକୁ ଭାଗ୍ୟବାନ ମନେ କଲେ ।

କିନ୍ତୁ ଶୋଭାଦେବୀ ଦି’ପଦ କଥା କହି ଚାଲିଗଲାପରେ ଅରବିନ୍ଦବାବୁଙ୍କ ମନରେ ଗୋଟିଏ ଅବାନ୍ତର ପ୍ରଶ୍ନ ଉଠିଲା—ଶୋଭା କ’ଣ ଭାବେ ?

ଅରବିନ୍ଦବାବୁ ନିଜର ନିର୍ବୋଧ ଭାବନାକୁ ନିନ୍ଦା କଲେ । କିନ୍ତୁ ତାପରେ ନିଜକୁ ବୁଝାଇଲେ ଯେ ତାର ଅର୍ଥକୁ କଦର୍ଥ କରିବାର ନୁହେଁ । ଯେ ଶୋଭାର ମନ ସଙ୍ଗରେ ତାଙ୍କର ପରିଚୟ ନାହିଁ । ଏବଂ ଏହି ଅଠର ବର୍ଷର ଘରକରଣା ଖାଲି ଉପରେ ଉପରେ ଉଡ଼ି ଯାଇଛି । ନା, ଏ ହେଉଛି ବୁଦ୍ଧିବାଦୀର ଜିଜ୍ଞାସା, ଯାହାକୁ କାରଣ-ଅକାରଣର ଲଜିକ୍ ଭିତରେ ବାନ୍ଧି ରଖିବା ଅନ୍ୟାୟ । ଯାହାହେଉ ଶୋଭା ଠିକ୍ ଅଛି । ତାର ସହଜ ସାଧାରଣ ମନଟି ଆରାମରେ ଅଛି । ମୋଟ ଉପରେ ଶୋଭା ପରି ମଣିଷ ବିଶେଷ କିଛି ଭାବନ୍ତି ନାହିଁ, ଭାବିପାରନ୍ତି ନାହିଁ । ଭଲ ।

ସନ୍ଦେଶର ଶେଷ ଖଣ୍ଡିକ ପାଟିରେ ପୂରାଇ ଚା’ କପ୍‌ରେ ଓଠ ଲଗାଇଲା ବେଳକୁ ଅରବିନ୍ଦବାବୁ ସନ୍ତୋଷର ଚରମରେ ପହଞ୍ଚିଲେଣି । ଦୈହିକ ଓ ମାନସିକ ସନ୍ତୋଷର ସମ୍ପୂର୍ଣ୍ଣ ସହଯୋଗ ହୋଇଗଲାଣି । ଅରବିନ୍ଦବାବୁ ରହି ରହି ପକେଟ୍‌ରୁ ସିଗାରେଟ୍ କେସ୍ କାଢ଼ିଲେ ଓ ସିଗାରେଟ୍‌ଟିଏ ବାହାରକରି ମୁଣ୍ଡି ସଜାଡ଼ି ପାଟିପାଖକୁ ନେଲେ ।

ଏଇ ସମୟରେ କିଛି ଦୂରରୁ ଚିତ୍କାର ଶୁଣାଗଲା, ଭଁ୍ୟା···ଓ ତା ସାଙ୍ଗକୁ ଘନଘନ ଠାପ୍ ଠାପ୍ ପ୍ରହାରପାତର ଶବ୍ଦ ।

ସେଇ ଲଛମୀ ତାର ଚାରିବର୍ଷର ଲଙ୍ଗଳା ପିଲା କଟ୍‌ଗୁକୁ ପିଟୁଥିବ । ଅରବିନ୍ଦବାବୁଙ୍କ ସିଗାରେଟ୍‌ରେ ଧୂଆଁ ଆସିବାକୁ ଡେରି ହେଲାନାହିଁ, କିନ୍ତୁ ସେ ଟିକିଏ ବିରକ୍ତ ହେଲେ । ତାର ସେଇ ଭଙ୍ଗା ନୁଆଁଣିଆ ଚାଳଘର ବସ୍ତିରାଏ । ଘର ଆଗରେ ମୋଟା କଳା-ନେଳିଆ ନର୍ଦ୍ଦମା ପାଣିର ଧାର । କଟ୍‌ଗୁ ତାର ପାଖରେ ବସି—ଉଁଃ ! ପୁଣି ମୁଁ ଚିନ୍ତି ସେଇଠି ତଳେ ବସି ହୋଇଗଲେ ତାକୁ ଗୋଟେଇ କରି ଖାଉଥିବ । କୁତ୍ସିତରେ କୁତ୍ସିତ । କଳା ଲଙ୍ଗଳା ଦେହ, ଭେକ, ମାଡ଼, କାନ୍ଦ, ଦାନ୍ତଦେଖା ହସ, ମାଗିଖିଆପଣ । ରାତିର ଅନ୍ଧାରରେ

କୁର୍ସି ତର ପ୍ରତିଷ୍ଠା, ପ୍ରଜନନ । ଜଗତ୍ରୁ ଆଗକୁ ଗୃହଜଣ, ପଛରେ ଜଣେ, ପୁଣି ଆସିବେ କେଜାଣି କେତେ ।

ମାଡ଼ କମିଗଲଣି, କାନ୍ଦ ବଢ଼ିଗୃଲଛୁ । ଅରବିନ୍ଦବାବୁ କୁର୍ସି ତର କଳ୍ପନାରୁ ଫେରି ଆସି ଦୃଶ୍ୟଟିର ତର୍ଜମା କରି ପାଟି ଖୋଲି କହିଲେ ଡ୍ରଇଂରୁମ୍‌କୁ—ଦରିଦ୍ରତା ! ଦରିଦ୍ରତା ! କହି ସାରିଲା ପରେ ଟିକିଏ ଭଲ ଲଗିଲା । ଅନ୍ୟମାନଙ୍କ ପରି ଅରବିନ୍ଦବାବୁ କୁହନ୍ତି ନାହିଁ 'ଭଗବାନଙ୍କ ଇଚ୍ଛା', 'ସଂସାରଟା ଏଇଆ', ଇତ୍ୟାଦି । ସେସବୁ ନିର୍ବୋଧ ଉକ୍ତି, ଗୋଟିଏ ଅନିର୍ଦ୍ଦିଷ୍ଟ ବସ୍ତୁ ଉପରେ ଦାୟିତ୍ୱ ଲଦି ଦେବାର ପ୍ରବୃତ୍ତି । ନା, ଏ ଦରିଦ୍ରତା ଗୋଟାଏ ସମସ୍ୟା, ଏହାର ସମାଧାନ ଆବଶ୍ୟକ ଓ ସେଥିପାଇଁ ଚେଷ୍ଟା ଗୃଲଛୁ । ଅବଶ୍ୟ ସମାଧାନ ଦାଗରେ ସହାନୁଭୂତି ଲୋଡ଼ା । ଆଉ କେହି ହୋଇଥିଲେ ଲଛମୀକୁ କେବେଠୁଁ ଏହି ହତା ଭିତରେ ଥିବା କୁଡ଼ିଆ ଘରୁ ନିକାଲି ସାରନ୍ତାଣି । ସେଥିରେ ମାଲୀ କି ଚଉକିଦାର ରଖନ୍ତା । କିନ୍ତୁ ସେ ତାକୁ ଆତ୍ମସ୍ୱତ୍ୟ୍ତ କରିନାହାନ୍ତି । ଅପରନ୍ତୁ ବେଳେବେଳେ ଶୋଭାକୁ କହି ବାସି ରୁଟି ଦି'ଖଣ୍ଡ କି ମୁଢ଼ି ଗଣ୍ଡାଏ ଦେଇଚନ୍ତି ତାକୁ ।

ମନେ ପଡ଼ିଲା ଦିନେ ଲଛମୀ ଦାନ୍ତ ନିକୁଟି ମାଗିଥିଲା ଗରମ ଚଦର ଖଣ୍ଡେ । ଶୋଭାଦେବୀ ହସି ଦେଇଥିଲେ । ସେ ମଧ୍ୟ ହସିଥିଲେ । ସେତିକବେଳେ ଅବଶ୍ୟ ମନକୁ ଆସିଥିଲା ଯେ. ତାଙ୍କର ଲୁଗା ବାକ୍ସରେ ଗୋଟିଏ ରଙ୍ଗଛଡ଼ା ପୁରୁଣା ଶାଲ ପଡ଼ି ରହିଛୁ କେବେଠୁଁ, ବୋଧହୁଏ ଗତ ପାଞ୍ଚବର୍ଷ ହେଲା ପିନ୍ଧାହୋଇନାହିଁ । ହେଲେ ଶୋଭାଦେବୀଙ୍କ ମୁହଁକୁ ଟିକିଏ ଅନେଇ ଦେଇ ସେ ନିଜକୁ ସଯତ୍ନ କରିନେଇଥିଲେ । ନିରାଟ ଭାବପ୍ରବଣତା । ସହାନୁଭୂତି ଭଲ ଜିନିଷ, କିନ୍ତୁ ସେଥିରେ ରୋମାଣ୍ଟିକ୍ ଭାବପ୍ରବଣତାର ସ୍ଥାନ ନାହିଁ । କାଶ୍ମୀରୀ ଶାଲ୍ ଆଉ ଲଛମୀ ।

ଦିଆଲି ଆସୁଛି, ଲଛମୀକୁ ଟଙ୍କାଟାଏ ଦେଲେ ହେବ, ଆରବର୍ଷ ଆଠଣା ଦିଆ ହୋଇଥିଲା—ଏତିକି ଠିକ୍‌କରି ନେଇ ଅରବିନ୍ଦବାବୁ ଗ୍ଳାସ୍‌କୁ ସାରିଦେଇ ସୋଫାରେ ନିଜକୁ ଆଉଜେଇ ନେଲେ ଓ ଭାବହୀନ ଭାବରେ ଧୂଆଁ ଛାଡ଼ିଲେ । ଟିକିଏ ଆରାମ୍ ଓ ତା'ପରେ କାଲିକାର ଭାଷଣ ପାଇଁ ଚଠା ପ୍ରସ୍ତୁତ କରିବାକୁ ପଡ଼ିବ । କର୍ମନିଷ୍ଠା, ପାରସ୍ପରିକ ସହଯୋଗ, ଗଣତନ୍ତ୍ରର ଆଦର୍ଶ ଇତ୍ୟାଦି କେତୋଟି ଉଚିତ ତଥା ଉପଯୋଗୀ ମନୋବୃତ୍ତିକୁ ମିଶାଇ ଗୋଟିଏ କିଛି ଚିନ୍ତାଶୀଳ ଲେଖା । ହଁ, ସେଥିରେ ଟିକିଏ ଅନୁରାଗର ରଙ୍ଗ ଥିବା ଆବଶ୍ୟକ । ମନକୁ ଛୁଇଁଲା ପରି, ଯାହା ହେଉଛି ଅରବିନ୍ଦବାବୁଙ୍କର ନିଜସ୍ୱ, ଅନ୍ୟମାନଙ୍କ ଭାଷଣଠାରୁ ଭିନ୍ନ । ଚିନ୍ତା ସହିତ ଶ୍ରଦ୍ଧା ଓ ସ୍ନେହର ସଂଯୋଗ । ମାନେ—ମୁଁ ତୁମର, ତୁମେମାନେ ମୋର, ଏବଂ

ଏକାଠି ହୋଇ କିଛି ଗୋଟାଏ ସୁନ୍ଦର ଓ କଲ୍ୟାଣକର ଜିନିଷ ଗଢ଼ିବାକୁ ଯାଉଛି ଏହି ପ୍ରକାର ଭାବ, ସେଣ୍ଟିମେଣ୍ଟ୍...ସେତିକ ଦରକାର ।

ଅରବିନ୍ଦବାବୁ ଲେଖିଚାଲିଛନ୍ତି । ଗଭୀର ଅଭିନିବେଶ । ଓଠ କୁଞ୍ଚେଇ ହୋଇଯାଇ ବେଳେବେଳେ ଗୃହିଁ ରହୁଛି ଦୂରୁ ଦୂରରୁ କିଛି ଗୋଟାଏ ଟାଣି ଆଣିବା-ପାଇଁ, ତା'ପରେ ପୁଣି ମାଡ଼ିଯାଅ । ପିଲାମାନେ କେତେବେଳୁ ପରଦାପଛରୁ ଉଙ୍କିମାରି ଫେରିଗଲେଣି । ଶୋଭାଦେବୀ ରଳୁପାଇଁ ମାଷ୍ଟର ରଖିବା ବିଷୟରେ ଆଲୋଚନା କରିବାକୁ ଯାଉଥିଲେ, କିନ୍ତୁ ତାଙ୍କ ବିଗୃତକୁ ସ୍ଥଗିତ ରଖିଲେ । ଏଇକ୍ଷଣି କିଛି କହିବେ ନାହିଁ ସେ । ହଁ ହାଁ କହିବେ, ନହେଲେ ଚଡ଼ି ଉଠିବେ । ତାଙ୍କ କାମ ତାଙ୍କୁ ସବୁଠୁଁ ବଡ଼, ଅଫିସ କାମ ହେଉ, ବା ଲେଖାଲେଖି ହେଉ । ନିରାଶା ସହିତ ଗୋପନ ଗର୍ବକୁ ଗୋଟେଇ ନେଇ ସେ ଫେରିଗଲେ ଅନ୍ଦରମହଲକୁ ।

ବେଶ୍ ତନ୍ମୟିତା ହୋଇଗଲାଣି । ପ୍ରାୟ ସବୁ ଦିଗରୁ ଯାହାକିଛି କହିବା କଥା ଶେଷ ହୋଇଗଲାଣି । ଅର୍ଥନୈତିକ ସ୍ୱାର୍ଥ ସହିତ କର୍ମନିଷ୍ଠାର ଆଦର୍ଶ ମିଶି-ଯାଇଛି ଚମତ୍କାର ଭାବରେ । କେଉଁଠି କିଛି ବେଖାପ ଲାଗୁନାହିଁ । ଲାଗୁଛି କି ? ନା । ଅରବିନ୍ଦବାବୁ ବାରମ୍ବାର ନିଜର କୃତିକୁ ସମର୍ଥନ କଲେ । କିନ୍ତୁ ମନେ ହେଲା ସେ ଏମିତି ଦୋହରେଇ ହେଉଛନ୍ତି, କାରଣ କିଛି ଗୋଟାଏ ଅଭାବ ରହିଗଲା ପରି ମନେ ହେଉଛି । ଅରବିନ୍ଦବାବୁ ମୁଣ୍ଡବାଳରେ ହାତ ଚଳାଇ ଆଣିଲେ । ଭାଷଣଟି ଭଲ ହୋଇଛି ନିଶ୍ଚୟ, କିନ୍ତୁ...କିନ୍ତୁ ଟିକିଏ ବେଶୀ ସିରିୟସ୍, ଭାରି ହୋଇଗଲା ପରି ଲାଗୁଛି । ବୋଧହୁଏ ଟିକିଏ ହ୍ୟୁମର, ଈଷତ୍ ଲଘୁଭାବର ଆବଶ୍ୟକତା ରହିଛି । ଅରବିନ୍ଦବାବୁ ଭାବିବାକୁ ଲାଗିଲେ । ଆଖି ଘୂରିଆସିଲା ଡ୍ରଇଁରୁମ୍‌ରେ ଥିବା ଆର୍ଟ ବସ୍ତୁମାନଙ୍କ ଉପରେ, ସେଥିରୁ କୌଣସି ଉପାଦାନ ମିଳିବ ପରି, କିନ୍ତୁ କିଛି ମିଳିଲା ନାହିଁ । ଅରବିନ୍ଦବାବୁ ଝରକା ବାଟେ ବାହାରକୁ ଅନାଇଲେ । ନେଳି ଆକାଶରୁ ତାରାଟିଏ ଅନେଇଛି ଜୁଳୁଜୁଳୁ ହୋଇ । ଧାତ୍—— ।

ନିରାଶାକୁ ପ୍ରତ୍ୟାଖ୍ୟାନ କରି ଅରବିନ୍ଦବାବୁ ନିଜକୁ ଦମ୍ଭ ଦେଲେ । କହିଲେ ରୁଚିହୀନ ରସ ଜଣାନାହିଁ ତାଙ୍କୁ, କିନ୍ତୁ ବୁଦ୍ଧିର ରସିକତା ଜଣା । ଯେଉଁଥିରେ ଶ୍ଳେଷ ଥିବ, ଶବ୍ଦ ଯୋଜନାର ବୈଚିତ୍ର୍ୟ, ତଥା କେଉଁ ଗୋପନ ତଥ୍ୟର ଇଙ୍ଗିତ । କଳ୍ପନା ଓ ବୁଦ୍ଧିର କସରତ ଦ୍ୱାରା ସତକୁ ଅଧା-ସତ ଅଥବା ଅଧା-ସତକୁ ସତ ବୋଲି ଦେଖାଇଲା ପରି । ଥୋକେ ଭାବିବେ ଇଏ ଗୋଟାଏ କଥାକୁହାର ଢଙ୍ଗ । ହେଲେ ଆଉ କେତେକ ଭାବିବେ କଥାର ଗୋଟାଏ ଗୂଢ଼ ଅର୍ଥ ରହିଛି, ଯାହାକୁ ସମସ୍ତେ ବୁଝିପାରିବେ ନାହିଁ । ଏମିତିକା ଗୋଳମାଳିଆ ବୁଦ୍ଧିଆ କଥା ତାଙ୍କୁ କହି ଆସେ, ଯାହାକୁ କହନ୍ତି ଉଚାଙ୍ଗ ଆମୋଦ । ହାସ୍ୟରସ ନୁହେଁ । ଅରବିନ୍ଦବାବୁ ନିଜ ଉପରେ ବିଶ୍ୱାସ ରଖି ଭାବିଲେ । ପୁଣି ଭାବିଲେ ।

ହଠାତ୍ ମନେ ପଡ଼ିଲା ଇତିହାସରୁ ଧାଡ଼ିଏ । ବ୍ରିଟିଶ ପାର୍ଲିଆମେଣ୍ଟରେ ଡିସ୍‌ରାଏଲ କହିଥିଲେ ଗ୍ଲାଡ୍‌ଷ୍ଟୋନ୍‌ଙ୍କୁ । ନା ଗ୍ଲାଡ୍‌ଷ୍ଟୋନ୍ କହିଥିଲେ ଡ଼ିସ୍‌ରାଏଲଙ୍କୁ ? ଯାହାହେଉ କଥାଟା ଅଳ୍ପ ବଦଳେଇ ଯୋଖିହେବ ଏଠି । ଟିକିଏ ପଣ୍ଡିତିଆମି ହୋଇଯିବ—ହେଉ କ୍ଷତି କ'ଣ ? ଅରବିନ୍ଦବାବୁ ପୂରାପୂରି ସନ୍ତୁଷ୍ଟ ହୋଇ ନପାରିଲେ ମଧ୍ୟ ଭାବିଲେ ଯେ ମନ୍ଦ ହେବ ନାହିଁ । ନିଜସ୍ୱ ନହେଲେ ନାହିଁ, ଠିକଣା ଜାଗାରେ ଉଦ୍ଧୃତ କରିବାରେ ମଧ୍ୟ ବାହାଦୁରୀ ଅଛି ।

ହେଲେ କଥାଟା ଠିକ୍ କ'ଣ ? କିଏ କାହାକୁ କହିଥିଲା ? କେଉଁଠି ଭୁଲ୍ ହୋଇଯିବ ନାହିଁ ତ ? ଅରବିନ୍ଦବାବୁ ମନେ ପକାଇବାକୁ ଚେଷ୍ଟାକଲେ, କିନ୍ତୁ ପାରିଲେ ନାହିଁ । ଯାହା ମନରେ ଆସୁଛି, ସେଇଥିରେ ଲେଖା ଆରମ୍ଭ କରିବେ କି ନାହିଁ ଭାବୁଛନ୍ତି, ଏହି ସମୟରେ ମନେ ପଡ଼ିଲା ଯେ ସିନିର ଇତିହାସ ବହି ଦେଖି ନେଇ ହେବ । ଅରବିନ୍ଦବାବୁ ସାଙ୍ଗେ ସାଙ୍ଗେ ଉଠିପଡ଼ି ଆଗେଇଲେ ପିଲାଙ୍କ ପଢ଼ା ଘର ଆଡ଼କୁ ।

ମଝି ହଲ୍ ଦେଇ ପଢ଼ା ଘରକୁ ଯିବାକୁ ହୁଏ । ଗଲାବେଳକୁ ରୋଷେଇ ଘରୁ ଭଜା ମସଲା ଓ ଘିଅର ବାସ୍ନା ଆସିଲା । ପାଖଘରୁ ପୁପୁ ଓ ପୁନ୍‌ପୁନ୍‌ଙ୍କ ସବୁଦିନିଆ କଜିଆ ଶୁଣାଗଲା—'ତୁ ମୋର ନେଇଯାଉଛୁ—ଗ୍ରେର, ପାଙ୍କ, ଇଡ଼ିଅଟ୍...ସୁଖୀ ସଂସାରର ନେପଥ୍ୟ ସଙ୍ଗୀତ । ଘରପରିବାରର ନିର୍ଭୁଲ ଆଶ୍ୱାସନା । ଅରବିନ୍ଦବାବୁ ଅଟକିଗଲେ ନାହିଁ । ପୃଷ୍ଠଭୂମି ସଙ୍ଗୀତର ତାଳରେ ଭାସି ଭାସି ଯାଇ ପହଞ୍ଚିଲେ ସିନିର ଇତିହାସ ବହି ପାଖରେ ।

ମୋଟା ନାଲିଆ ଇତିହାସ ବହି । ଅରବିନ୍ଦବାବୁ ତରବରରେ ପୃଷ୍ଠା ଓଲଟାଇ ଚାଲିଲେ । ନାଲି ନେଳି ଜରିର ଦୁଇଫର୍ଦ୍ଦ ତଳେ ପଡ଼ିଗଲା । ସିନିର ପିଲାଳିଆମି ଯାଇନାହିଁ, ଆସି କଲେଜ୍‌ରେ ପାଠ ପଢ଼ିଲାଣି, ତଥାପି— । ଅରବିନ୍ଦବାବୁ ସସ୍ନେହ ଆମୋଦରେ ଜରି କାଗଜକୁ ଉଠେଇ ନେଲେ, କିନ୍ତୁ ପୁଣି ଟିକେ ଆଗେଇବାରୁ ଆଉ ଦୁଇ ତିନି ଖଣ୍ଡ କାଗଜ ତଳେ ପଡ଼ିଗଲା । ଅରବିନ୍ଦବାବୁ ତାକୁ ଗୋଟାଇବାକୁ ଗଲାବେଳକୁ ଦେଖିଲେ ଯେ ଜରି କାଗଜ ସାଙ୍ଗରେ ଆଉ ଖଣ୍ଡେ କ'ଣ ନେଳିଆ କାଗଜ ଅଛି । କାହାର ଚିଠି ହେବ ପରା ।

ମୁହୂର୍ତ୍ତର ଦୃଷ୍ଟି ଆଉ ଗୋଟାଏ ମୁହୂର୍ତ୍ତକୁ ଡାକି ଆଣିଲା । ଅରବିନ୍ଦବାବୁ ଚିଠିଟିକୁ ଅନେଇଲେ, ଆଡ଼େଇ ଦେବାକୁ ଯାଇ ପୁଣି ଅନେଇଲେ । ଗୋଟିଏ ଧାଡ଼ିରୁ ଆଉ ଗୋଟିଏ ଧାଡ଼ି ପଢ଼ିଲେ, ତା'ପରେ ଆଉ ଗୋଟିଏ ଧାଡ଼ି । ସାତ ଆଠ ଧାଡ଼ି ପଢ଼ି ସାରିଲା ପରେ ଅରବିନ୍ଦବାବୁ ଅନୁଚ୍ଚ ସ୍ୱରରେ କହିଲେ 'ଡ୍ୟାମ୍' ଓ ହସି ଉଠିଲେ । ଚିଠିଟିକୁ ହାତରେ ଧରି ମୁଣ୍ଡ ହଲାଇ ହସିବାକୁ ଲାଗିଲେ । ଇଚ୍ଛା ହେଲା ଶୋଭାକୁ ଡାକି ପକାଇବେ, ତା'ପରେ କ'ଣ ଭାବି ରହିଗଲେ । ଆଉ

ହସିବାକୁ ମଧ୍ୟ ଉଚିତ ମନେକଲେ ନାହିଁ । ଅରବିନ୍ଦବାବୁ ଗମ୍ଭୀର ହୋଇ ପୁଣି ଥରେ ଚିଠିକୁ ଅନେଇଲେ ଓ ବାକି ଧାଡ଼ି ସବୁ ପଢ଼ି ଚାଲିଲେ ।

ପୁରା ପଢ଼ି ସାରିଲା ପରେ ଅରବିନ୍ଦବାବୁ ଆହୁରି ଗମ୍ଭୀର ହେଲେ । ଗୁରୁତର କଥା । ପିଲାଖେଳ ନୁହେଁ । ହେଲେ ତାରି ସାଙ୍ଗରେ ହସିବାକୁ ଇଚ୍ଛା ହେଉଥାଏ—ଶେଷକୁ ମେଞ୍ଚଡ଼ ଟୋକା ସିନି ବି ! କାଲିକା ପରି ଲାଗୁଛି, ନାଲି-ସରସର ଗୁଆଖଣ୍ଡେକର ପିଲାଙ୍କୁ ହାତକୁ ଟେକିଦେଇ ଶୋଭା କହୁଥାଏ—ଦେଖିଲ, ଠିକ୍ ତୁମ ପରି ହୋଇନାହିଁ ? ସେହି ସିନି ପୁଣି··· । କାହିଁକି କେଜାଣି ଅରବିନ୍ଦ-ବାବୁଙ୍କୁ ଟିକିଏ ଭଲ ଲାଗିଲା ପରି ମନେହେଲା । ଟିକିଏ ଆନନ୍ଦ, ଟିକିଏ ଗର୍ବ । କିନ୍ତୁ ସେ ଶୀଘ୍ର ସେହି ଅନୁଚିତ ଅସୁନ୍ଦର ଭାବକୁ ଏଡାଇ ଦେଇ ଚିଠିଟାକୁ ମୁଠେଇ ଧରିଲେ ଓ ଡ୍ରଇଁରୁମ୍ ଆଡ଼କୁ ଚାଲିଲେ ଭାବନାକୁ ସଜାଡ଼ିବା ପାଇଁ ।

ଆତ୍ମସ୍ଥଳୀ ଓ ସଙ୍କଟର କାର୍ଯ୍ୟଭୂମି ଡ୍ରଇଁରୁମ୍ର ସୋଫାରେ ପହଞ୍ଚି ଅରବିନ୍ଦ-ବାବୁ ନିର୍ଭରତା ଆଣିଲେ ନିଜ ଉପରେ । ଏଥର ସେ ଚିଠିକୁ ଆକ୍ରମଣ କରିବେ । ଘଟଣାକୁ ଭାବିଚିନ୍ତି ତାର ସମାଧାନ କରିବେ । ଟେବୁଲ ଉପରେ ପଡ଼ିଥିବା ଫାଇଲ୍ ବକ୍ତୃତାର ଚିଠା ପରି ଏ ମଧ୍ୟ ଖଣ୍ଡେ କାଗଜ, ଯାହା ଅରବିନ୍ଦବାବୁଙ୍କ ବିଦ୍ୟାବୁଦ୍ଧିର ବହିର୍ଭୂତ ନୁହେଁ । ଅରବିନ୍ଦବାବୁ ନିବିଷ୍ଟ ଚିତ୍ତରେ ପ୍ରଥମ କେତୋଟି ଧାଡ଼ିକୁ ପଢ଼ିଲେ ଆଉଥରେ, ଏବଂ ଚିନ୍ତା କଲେ ।

ସିନି ପାଖକୁ ପ୍ରେମପତ୍ର ଆସିଛି । ଏମିତି ଆସିଥାଏ ଏ ବୟସରେ । ଚିଠିରୁ ଜଣାପଡ଼ୁଛି ଯେ ସିନି ମଧ୍ୟ ପ୍ରତିଦାନ ଦେଇଛି, ଚିଠି ଲେଖିଛି । ସ୍ୱାଭାବିକ ।

ଖାଲି ଚିଠି ଦେଇଛି ନୁହେଁ । ହୁଏତ ଆହୁରି ଅଧିକ । ଚିଠିରେ ଅଛି । 'ସେଦିନର ସ୍ମୃତି···ଜହ୍ନ ସାକ୍ଷୀ ଥିଲା···ପବନ ପତର କ'ଣ କୁହାକୁହି ହେଉଥିଲେ ନିଜ ଭିତରେ ।'

କୁହାକୁହି ହେଉଥିଲେ, ଆଉ ଝିଏ ଶୁଣୁଥିଲା ବସି ! ଯେତେକ ରୋମାଣ୍ଟିକ୍ ନନ୍‌ସେନ୍‌ସ । ପାଗଳାମି । ଚିଠିରେ ସେ ତା'ର ଗରିବପଣକୁ ଦୋହୋରେଇ ବିରାଟ ପ୍ରେମର ପ୍ରମାଣ ଦେବାକୁ ଯାଇଛି । ହୁଁଃ ! ଅରବିନ୍ଦବାବୁ କଳ୍ପନା ଚକ୍ଷୁରେ ଅନେଇଲେ ସିନିର ପ୍ରେମିକକୁ । ଦିଶିଗଲା ଗୋଟାଏ ଶୀର୍ଣ୍ଣକାୟ ମେରୁଦଣ୍ଡବିହୀନ ତରଳ-ଗୁହାଣି ଯୁବକ । ମଣିଷ ନୁହେଁ, ସ୍ଥିତି ନାହିଁ, କଡ଼ାକର ଯୋଗ୍ୟ ନୁହେଁ । କେଉଁ ସାହସରେ ସେ ଆସିଛି ସିନି ପାଖକୁ ! ସ୍ମୃତି ? କ'ଣ ସେ ସ୍ମୃତି ?

ଅରବିନ୍ଦବାବୁ ରାଗିଲେ । ନିଜକୁ କହିଲେ ଯେ ଏମିତିକା କଥାରେ ରାଗିବା ଦରକାର । ପ୍ରେମ କିଛି ଖରାପ କଥା ନୁହେଁ । ହେଲେ ସବୁ ସତର ମିଛ ଅଛି, ସବୁ ଭଲର ବିକୃତି । ଏ ପ୍ରେମ ନୁହେଁ, ଖେଳିଲାପଣ । ନା, ନିରାଟ ଶଠତା ।

ଦିନର ପ୍ରେମିକ ପୁଣି ଆସି ଛିଡ଼ାହେଲା ତାଙ୍କ ଆଗରେ । ମନେହେଲା ସେ ଖାଲି ଦୁର୍ବଳ ନୁହେଁ, ତା' ଆଖିରେ ଚତୁରପଣ ଅଛି । ନୀଚର ଚତୁରପଣ । ରାଗର ଚେଉରେ ଅରବିନ୍ଦବାବୁ ପାଟିକରି ଉଠିଲେ, "ଶୋଭା, ସିନ ଫେରିନାହିଁ କାହିଁକି ଏତେବେଳଯାଏଁ ? କ'ଣ ରାତି ଅଧ ଯାଏଁ ନାଚ ଶିଖୁଥିବ ? ଡ୍ରାଇଭର କୁଆଡ଼େ ଗଲା ?"

ଶୋଭାଦେବୀ ସ୍ୱାମୀଙ୍କର ପାଟି ଶୁଣି ଆଶ୍ଚର୍ଯ୍ୟ ହେଲେ । ମୋଟେ ସାଢ଼େ ସାତଟା ବାଜିଛି କି ନାହିଁ, ସ୍ୱାମୀଙ୍କର ହଠାତ୍ ଏମିତି ରାଗ ଉଠିଲା କାହିଁକି ? ବୋଧହୁଏ କାମ କରି କରି ସମୟ ଜଣାପଡ଼ୁ ନାହିଁ, ବାଉଳା ହୋଇଯାଉଛନ୍ତି । ସେ କୃତ୍ରିମ ବିରକ୍ତିରେ ଉତ୍ତର ଦେଲେ ରୋଷେଇଘରୁ, "ଏତେ ପାଟି କରୁଛ କାହିଁକି ମ ? ସେ ଆଠଟା ବାଜିଲେ ଫେରିବ, ନା ତୁମ ପାଟି ଶୁଣି ଦୌଡ଼ି ଆସିବ ?"

ଅରବିନ୍ଦବାବୁଙ୍କର ଅହେତୁକ ରାଗ ଆସିଲା ଶୋଭାଦେବୀଙ୍କ ଉପରେ । କଣ ବୁଝନ୍ତି ଏମାନେ ? କିଛି ବୁଝି ପାରନ୍ତି ନାହିଁ । ଧରି ଏଇ ସମସ୍ୟା ଶୋଭାକୁ ଗୁଡ଼ା ଦିଆଯାଆନ୍ତା । ସେ ରାଗିମାଗି କାନ୍ଦିକାଟି ତାକୁ ଆହୁରି ଜଟିଳ କରି ଥୁଅନ୍ତା । ଅତଏବ ଏହି ଘରୋଇ ସମସ୍ୟା ମଧ୍ୟ ତାଙ୍କୁ ନିଜେ ସମାଧାନ କରିବାକୁ ହେବ । ତାହାର ସଂସାରର ସବୁ କାମ ସବୁ ଦାୟିତ୍ୱ ପଡ଼ି ଥାଉଁ ଥାଉଁ ଏଥିରେ ମୁଣ୍ଡ ପୂରେଇବାକୁ ହେବ । ହେଲେ ଉପାୟ ନାହିଁ ।

ନେଳିଆ ଚିଠିଟା ସେମିତି ପଡ଼ିଛି ଟେବୁଲ୍ ଉପରେ । ମନେ ହେଲା ସମସ୍ତେ, ଘରର ପ୍ରତ୍ୟେକ ବସ୍ତୁ ଜଳଜଳ ହୋଇ ଚାହିଁଛନ୍ତି ତାରି ଆଡ଼େ, ତାର ବୈଷମ୍ୟ ଲକ୍ଷ୍ୟ କରି । ସତେକି ଏ ଗୋଟାଏ କି ଅଦ୍ଭୁତ ଜିନିଷ, କାହା ସାଙ୍ଗରେ ମିଶୁନାହିଁ, ଖାପ୍ ଖାଉନାହିଁ । ଅରବିନ୍ଦବାବୁ ଉକ୍ତଭାବ ନେଇ ନିଜକୁ ଥଟ୍ଟା କଲେ—ଶେଷକୁ ଆମୋଦ ଏମିତି ଆସିବାକୁ ଥିଲା !

ଯାହାହେଉ ଅରବିନ୍ଦବାବୁ ଭାବିଲେ, ଓ ଭାବି ଭାବି କମ୍ବା ବିଶେଷ ଭାବି ନ ପାରି ଠିକ୍ କଲେ ଯେ ସବୁଠୁ ସିଧା ସହଜ ଅଥଚ ଉଚିତ ଉପାୟ କରିବାକୁ ହେବ । ସିନକୁ ବୁଝାଇବାକୁ ହେବ । ରାଗିକରି ନୁହେଁ, ଗାଳି ଦେଇ ନୁହେଁ, ପୁରୁଖା ବାପର ମମତାଭରା ଉପଦେଶ ଦେଇ । ଅଫିସ୍‌ର ପାଞ୍ଚଶହ ଲୋକଙ୍କ ମନକୁ ଯିଏ ଛୁଇଁ ପାରୁଛି ତା'କଥାରେ, ସେ ତାର ନିଜ ଝିଅ ମନକୁ ଛୁଇଁ ପାରିବ ନାହିଁ ? ତାକୁ ବାଟକୁ ଆଣିପାରିବ ନାହିଁ ?

ଅରବିନ୍ଦବାବୁଙ୍କର ଆଶାବାଦ ଚେଇଁ ଉଠିଲା । ସବୁ ଠିକ୍ ହୋଇଯିବ । ଆପେ ଆପେ ଠିକ୍ ହୋଇଯିବ । କଥା ବଢ଼ିବ ନାହିଁ, ଅଡ଼ୁଆକୁ ଯିବ ନାହିଁ ।

ସେ ଭାଷଣର ଚଟା କାଗଜଟିକୁ ଆଣି ହାତରେ ଧରିଲେ ଓ ମନେ ପକାଇଲେ ଗ୍ଲାଡ୍‌ଷ୍ଟୋନ୍-ଡିସ୍‌ରାଏଲିଙ୍କ କଥା, ଗ୍ରେଟରୁ ବଡ଼କଥା ଭାବିଲା ପରି ।

କିନ୍ତୁ ଲେଖାର ପୁନରାରମ୍ଭ କରିବା ପୂର୍ବରୁ ତାଙ୍କର ଆଖି ପୁଣି ଥରେ ପଡ଼ିଲା ସେଇ ନେଳିଆ ଚଟି ଉପରେ । ନେଳିଆ ଚଟି । ଚଟିଟା ଧଳା ନହୋଇ ନେଳିଆ ହେଲା କାହିଁକି ? ତାର ନେଳିଆ ରଙ୍ଗ ଅରବିନ୍ଦବାବୁଙ୍କୁ ଅତି ଉଜ୍ଜ୍ୱଳ ବୋଲି ମନେ ହେଲା । ସେ ରଙ୍ଗ ଯେପରି ଅଶାନ୍ତି ଆଣି ଦେଉଛି, କିଛି କାମ କରେଇ ଦେବନାହିଁ ।

ଏତିକି ବେଳେ ଶୁଣାଗଲା ପୁନ୍‌ପୁନ୍‌ର ଗୀତ । ଧୀର ଗଳାରେ ବୋଲୁଛି । ବାପାଙ୍କୁ ନଶୁଭିଲା ପରି—ଥ୍ରୀ ଆଣ୍ଡ୍ ଫୋର୍, ୟୁ କିସ୍ ମି ମୋର୍, କିସ୍ ମି ମୋର୍··· । ଗୀତ ରହି ରହି ବନ୍ଦ ହୋଇଗଲା । ବୋଧହୁଏ ମନେ ପଡ଼ିଲା ଯେ ବାପା ବେଶୀ ଦୂରରେ ନାହାନ୍ତି, ଶୁଣି ପାରିବେ ।

ଅରବିନ୍ଦବାବୁ ଉତ୍ତେଜିତ ହୋଇ ଉଠି ବସୁଥିଲେ, ହୁଏତ ରାଗି କରି ପୁନ୍‌ପୁନ୍‌କୁ ଆଉ ଦି' ଗୃହ ପଦ କହିବେ ବୋଲି । କିନ୍ତୁ ଗୀତ ଡରି ଡରି ଲିଭି ଯିବାରେ ସେ ମଧ୍ୟ ରହିଗଲେ । ଲାଭ ନାହିଁ ସେଇ ଗୀତର ଅସ୍ତିତ୍ୱ ମାନିବାକୁ ପଡ଼ିବ ଏଇ ନେଳିଆ ଚଟି ପରି । ସେମାନେ ଅନୁମତି ନେଇ ଆସିନାହାନ୍ତି କି ଫେରାଇ ଦେଲେ ଚାଲିଯିବେ ନାହିଁ । କିନ୍ତୁ ସେମାନେ ମୋତେ ହଇରାଣ କରିବାକୁ ଆସିଛନ୍ତି କାହିଁକି ? କାହିଁକି ?

ଅରବିନ୍ଦବାବୁ ଆଖି ବୁଜି ଆଣିଲେ । ଶାନ୍ତି ଲଭିବାର ସହଜ ଉପାୟ । ଭଲ ଲାଗିଲା, ଇଚ୍ଛା ହେଲା ସେମିତି ଆଖିବୁଜି ରହିବାକୁ । କିନ୍ତୁ କିଛି ସମୟ ଗଲାପରେ ପୁନ୍‌ପୁନ୍ ଓଠକୁ ଗୋଳିଆ କରି ପୁଣି ସେଇ ଗୀତ ଗାଉଛି କାନ ପାଖରେ—କିସ୍ ମି ମୋ··· । ଅଙ୍କା କଲା ପରି ଗାଉଛି । ଅରବିନ୍ଦବାବୁ ଆଖି ଖୋଲି ପାରିଲେ ନାହିଁ । ଓଠ ଦୁଇଟି ଲାଗି ଲାଗି ଆସୁଛି ତାଙ୍କ ପାଖକୁ । ପୁନ୍‌ପୁନ୍‌ର ଓଠ ନୁହେଁ, ଆଉ କାହାର । ନାରୀର ଓଠ । ବଢ଼ିଲା ଦେହର ଓଠ । ତାର ପ୍ରତି ସ୍ଫୁରଣରେ ଅସଂଖ୍ୟ ଦାବି, ଅସଂଖ୍ୟ କାମନା, ହେଲେ ସେଇ ଗୋଟିଏ ସ୍ୱରରେ ଧ୍ୱନିତ—ମୋତେ ନିଅ । ନ ନେଇ ରହିପାରିବ ନାହିଁ । ଏଇ ହେଉଛି ଆମ ଦୁହିଁଙ୍କର ଗୁହିଁବାର ମୁହୂର୍ତ୍ତ । ଏଇ ହେଉଛି ସତକଥା, ଆଉ କିଛି ନୁହେଁ ।

ଆଖି ବୁଜିବାର ଅନ୍ଧାର ଭିତରେ ସେ ନିକଟ ହୋଇ ଦିଶିଗଲା । କେଉଁ ପୁରୁଣା ଛବି, ହେଲେ ଅତି ସ୍ପଷ୍ଟ । ପ୍ରିୟମ୍ବଦା । ଏକୁଟିଆ ଉପର ଘର । ଝରକା ତଳକୁ ଅନାଇଲେ ଦେଖାଯାଉଛି ରାସ୍ତାର ଶୁଖିଲା କାଦୁଅ, ଯେଉଁଥିରେ ଚଳନ୍ତା

ମଣିଷର ପାଦ ଚିହ୍ନ ଲିଭି ହୋଇଯାଉଛି, ବଙ୍କାଟେଢ଼ା ଆବୁଡ଼ା ଖାବୁଡ଼ା । ଦ'ପହରିଆ ଖରା ତା' ବିଷଜ୍ୟୋତି ଉଦ୍‌ଗାରି ଦେଉଛି । ସେଇ ଖରାରୁ ଚେନାଏ ଛୁଞ୍ଚି ଧାର ପରି ପଡ଼ୁଛି କାନ୍ଥ ଉପରେ । ସେଇ ଏକା ଚାହିଁ ରହିଛି, ରଙ୍ଗିଲ ଚାହାଣିରେ ଦପ୍‌ଦପ୍ ହୋଇ ଚାହିଁଛି । ହେଲେ ଭାବିବାକୁ ଭଲ ଲାଗୁଛି ଯେ ସେଥିରେ ପ୍ରାଣ ନାହିଁ । ମାଟି ଗଢ଼ା ଦୁର୍ଗାମୂର୍ତ୍ତିର ଚାହାଣି ପରି, ଶିଳାଲିପିର ବାଣୀ ପରି, ସ୍କୁଲର ଚେତାବନୀ ପରି । ନମାନିବାର ଆନନ୍ଦ ଆସୁଛି । ସେମାନେ କ'ଣଟା କହିପାରିବେ ? ଏ ମଣିଷର ସମ୍ଭୋଗ । ପ୍ରିୟମ୍ବଦା ତାର ଗ୍ରେଟିଆ ଧାରୁଆ ମୁହଁକୁ ଟେକି ଧରିଛି । ଚାହୁଁଛି ଓ ପାଉଛି—ଥରେ ନୁହେଁ, ଥରକୁ ଥର । ଝରିଟା ଅନେଇ ରହିଛି ତାଙ୍କୁ । ତା' ଦେହରେ କଳା ପିମ୍ପୁଡ଼ିର ଧାର ଚାଲିଛି । ତା' ଆଲ୍‌ଅରେ ଦେଖାଯାଉଛି ଘର କୋଣରେ ରଖା ଯାଇଥିବା ଚା' କପ୍‌ଟା । ଚା'ରେ ସର ପଡ଼ିଛି । ଭଳି ଧ୍ୱନି ଉଠୁଛି—ସ୍ୱର ନାହିଁ, ତାଳ ନାହିଁ, ସହାନୁଭୂତି ନାହିଁ । ଖାଲି ଆଘାତ ଦେବାକୁ ଚାହୁଁଛି । ହେଲେ ସେଥିରେ ବଢ଼ିଉଠୁଛି ଦୁହିଁଙ୍କ ନିଶ୍ୱାସ, ସ୍ପନ୍ଦନର ଶବ୍ଦ, ପ୍ରେମର ଅମାନିଆ ପଣ । ହେଉ । ଖରା ଜଳି ଜଳି ମରିଯାଉ, ଧ୍ୱନି ବାଡ଼େଇପିଟି ହୋଇ ଥକିଯାଉ । ଆମର କେହି କିଛି କରିପାରିବେ ନାହିଁ । ଏ ସମସ୍ତଙ୍କର ରାଗ, ବାଦ, ନାଲି ଆଖିକୁ ପରୁଆ ନକରି ଆମେ ଉଠାଇ ଆଣିଛୁ ଏଇ ମୁହୂର୍ତ୍ତି କେତୋଟି । ଏତିକି ଆମର, ଖାଲି ଆମର ।

ସେହି ଥିଲି ଶାନ୍ତ ନା ଅଶାନ୍ତ ? ରୋମାନ୍ସ, ନା ଆଉ କିଛି ?

ଅରବିନ୍ଦବାବୁ ଆଖି ଖୋଲି କାନ୍ଥକୁ ଅନାଇଲେ, ଜଳଜଳ ହୋଇ । ଇଚ୍ଛା ହେଲା କହିବେ, 'ଡ୍ୟାମ୍', ପରମ ଅବହେଳା ଓ ବିରକ୍ତିର ସୂଚନା ଦେବେ । କିନ୍ତୁ ପାରିଲେ ନାହିଁ । ସେ ଛବିଟା ଅତି ସ୍ପଷ୍ଟ ଥିଲା । ତେବେ—ଅରବିନ୍ଦବାବୁ କହିଲେ ନିଜକୁ ସେ ଗୋଟାଏ ପୁରୁଣା ଛବି । ରୋମାନ୍ସ ହେଉ କି ଯାହା ହେଉ, ଖାଲି ଗୋଟାଏ ଅନୁଭୂତି । ଏକ୍‌ସ୍‌ପିରିଏନସ୍ । ହେଲେ ତା' ସାଙ୍ଗରେ ଦିନର ଏଇ କାରବାରର କିଛି ସମ୍ପର୍କ ନାହିଁ । ଏ ରୋମାନ୍ସ ନୁହେଁ, ତୁଚ୍ଛା ପିଲାଳିଆମି, ନିରାଟ ବୋକାମି । ଏ ଗୋଟାଏ—।

ଦାଣ୍ଡରେ କାର୍‌ର ହର୍ଣ୍ଣ ଶୁଣାଗଲା । ମିନି ଆସିଗଲାଣି ବୋଧହୁଏ । ଅରବିନ୍ଦବାବୁ ସିଧା ହୋଇ ବସି ପଡ଼ିଲେ, ନିଜର ଭାବନା ଝାଡ଼ିଝୁଡ଼ି ଦେଇ ସୁସ୍ଥ ହେଲା ପରି ।

"ହେଇ ଆସିଲାଣି ତୁମ ମିନି । ତୁମ ପାଟି ଶୁଣି ବୋଧହୁଏ ସହଳ ଚାଲି ଆସିଛି ।" ଶୋଭାଦେବୀ ହସି କରି କହିଲେ ଘର ଭିତରୁ । ଟିକିଏ ପରେ ଚଞ୍ଚଳ ଗତିରେ ଓ ଚୁଡ଼ିର ରୁଣୁଝୁଣୁ ନେଇ ରୁମ୍ ଭିତରକୁ ପଶିଆସିଲା ସତର ବର୍ଷର

ଝିଅଟିଏ—ସିନା, ଓରଫ ସ୍ନିଗ୍‌ଧା । ସେତେବେଳକୁ ଅରବିନ୍ଦବାବୁ ସହଜ ଭାବରେ ସୋଫାକୁ ଆଉଜି ଗଲେଣି । ପ୍ରଶାନ୍ତ ମୁଦ୍ରା । ପ୍ରଶସ୍ତ ହସ । କେହି ହେଲେ ବର୍ତ୍ତମାନ ଜାଣିପାରିବ, ଦେଖି ପାରିବ ସିନାର ପିଲାଭାବ ଓ ଅରବିନ୍ଦବାବୁଙ୍କର ବଡ଼ ଭାବ, ବାପପଣିଆ ।

"ବାପା, ଜାଣିଛ, ଆଜି ଓସ୍ତାଦ୍‌ଜୀ କହିଲେ ଯେ ମୋର କଥକ୍ ପୂରାପୂରି ଠିକ୍ ହୋଇଗଲାଣି, ଏଥର କଲେଜ୍ ସୋ'ରେ ନାଚ ପାରିବ । ଆଉ କହିଲେ—କହିଲେ ଯେ ଏଥର ଭାରତନାଟ୍ୟମ୍ ଶିଖାଇବେ । ହେଲେ ମୋତେ କାହିଁକି ସେ ନାଚ ବିଶେଷ ଭଲ ଲାଗେନାହିଁ । ଆମ ଓଡ଼ିଶୀ ତା'ଠୁଁ କେତେ ଭଲ—ନୁହେଁ ?

ଅରବିନ୍ଦବାବୁ ଉତ୍ତର ଦେଲେ ନାହିଁ, କିନ୍ତୁ ତାଙ୍କର ହସ ସେମିତି ବହଳ ହୋଇ ରହିଥିଲା ମୁହଁରେ । ସେ ସିନାକୁ ଅନେଇ ମନେ ମନେ ଟିପ୍‌ପଣୀ କରୁଥିଲେ—ପିଲାଳିଆ, ଅତି ଚଞ୍ଚଳ ମନ, ଆନନ୍ଦ ପଛରେ ବାଇ । ସବୁ ଝିଅ, ସବୁ ମଣିଷ ଏ ବୟସରେ ଏମିତି ହୁଅନ୍ତି, ସିନା ଅଲଗା ନୁହେଁ । ଏ ସମୟରେ ମଣିଷ ସବୁଥିରେ ଭାସିଯାଏ, ଭାଗ ମାପ ଜାଣିପାରେ ନାହିଁ, ହିତାହିତ ଜ୍ଞାନ ରହେନାହିଁ ।

ସିନା କଣ ସବୁ ଗପି ଯାଉଛି । ଅରବିନ୍ଦବାବୁ ଉଦାର ଭଙ୍ଗୀରେ ଶୁଣିଗଲେ । ଆଉ ଟିକିଏ ଯାଉ, ଆଉ ଟିକିଏ ଯାଉ ବୋଲି ଭାବି କିଛି କହିପାରିଲେ ନାହିଁ, ସିନା ମୁହଁ ଫେରାଇ ଫେରିଯିବା ପର୍ଯ୍ୟନ୍ତ । ସେ ଦୁଆରବନ୍ଧରେ ହେଲା ବେଳକୁ ଅରବିନ୍ଦବାବୁଙ୍କର ଚେତା ପଶିଲା, ଓ ସେ ହଠାତ୍ ଗମ୍ଭୀର ସ୍ୱରରେ ଡାକିଲେ ପଛରୁ—"ଏ ସିନା, ଶୁଣି ଯା', ତୋ ସାଙ୍ଗରେ କଥା ଅଛି ।"

ଅରବିନ୍ଦବାବୁ ଦ୍ରୁତଗତିରେ ପକାଇଲେ କଥାଟାକୁ—"ଶୁଣ୍, ମୁଁ ଆଜି ତୋ ବହି ଭିତରେ ଖଣ୍ଡେ ଚିଠି ପାଇଲି, ଏଇ ହେଉଛି ସେ ଚିଠି ।" ଅରବିନ୍ଦବାବୁ ଚିଠିକୁ ଟାଣି ଆଣି ହାତରେ ଧରିଲେ, ଏବଂ ଅନିଚ୍ଛା ସତ୍ତ୍ୱେ ସିନାର ମୁହଁକୁ ଅନାଇଲେ ।

ସିନା ଆଶ୍ଚର୍ଯ୍ୟ ହୋଇଯାଇଛି, ଏଥିରେ ସନ୍ଦେହ ନାହିଁ । ତା' ଆଖିରେ ତ୍ରସ୍ତ ଚାହାଣି । ମୁହୂର୍ତ୍ତକ ପାଇଁ ସେ ଟିକିଏ ଉହୁଁକି ଆସିଲା, ଚିଠିକୁ ଛଡ଼ାଇ ନେଇ ଲୁଚେଇ ଦେବ ପରା । ପାଟି ଅଳପ ମେଲା ହୋଇଯାଇଛି । ସତେ କି କିଛି କହି ପକାନ୍ତା କିନ୍ତୁ କହି ହେଉ ନାହିଁ । କେତେ ବଡ଼ ଭୁଲ୍ ହୋଇଯାଇଛି, ହେଲେ କିଛି କରି ହେବନାହିଁ ।

ଅରବିନ୍ଦବାବୁଙ୍କର ଦୟା ହେଲା । ବିଚାରୀ ! ସେ ଶାନ୍ତ ମୃଦୁ କଣ୍ଠରେ ଆରମ୍ଭ ଅଭିଯୋଗ ଦେଲେ, "ଦେଖ୍, ମୋ ଆଗରେ କିଛି ଡରିବାର ନାହିଁ । ତୁ ମୋ ଝିଅ । ସଂସାରରେ ତୋର କେହି ବଡ଼ ଶୁଭକାଂକ୍ଷୀ ନାହାନ୍ତି । ଏଠି ମୋ ହାତରେ ପଡ଼ିଛୁ ଭଲ ହୋଇଛି, କାରଣ ଏ ସବୁର ଭଲ ମନ୍ଦ ତୁ ମୋଠାରୁ ଜାଣିପାରିବୁ !"

ସିନା କିଛି କଥା କହୁନାହିଁ । ଅରବିନ୍ଦବାବୁଙ୍କର ମନେ ହେଲା ଯେ ତା' ଚାହାଣିର ତରଳ ଭାବ ଟିକିଏ କମିଯାଇଛି । ସିନାର ବିଶ୍ୱାସ ଆସୁଛି, ଆସିବ । ଅରବିନ୍ଦବାବୁଙ୍କର ଆତ୍ମବିଶ୍ୱାସ ବଢ଼ିଲା । ସେ ଆଗେଇଲେ ।

"ଏ କିଛି ନୂଆ କଥା ନୁହେଁ । ଅନେକଙ୍କ ଜୀବନରେ ଘଟିଥାଏ । କିନ୍ତୁ କେତେଜଣ ତାର ସତ ମିଛ ବୁଝି ଠିକ୍ ବାଟରେ ଯାଆନ୍ତି, ଆଉ ଅନ୍ୟମାନେ ବାଟବଣାହୋଇ ନିଜକୁ ଭୁଲିଯାଆନ୍ତି, ନିଜର ଭବିଷ୍ୟତ ନଷ୍ଟ କରିଦିଅନ୍ତି । ତୁଏତ ଏହି ସମୟରେ ମନକୁ ଆସିବ ଯେ ଏହି ହେଉଛି ସଂସାରର ସବୁଠୁ ବଡ଼ ଜିନିଷ, ଜହ୍ନ ଏଇଥିପାଇଁ ଆଲୁଅ ଦିଏ, ଫୁଲ ଏଇଥିପାଇଁ ଫୁଟେ, ବର୍ଷା ଏଇଥିପାଇଁ···।"

ଅରବିନ୍ଦବାବୁ କହିଚାଲିଲେ । ଗୋଟିଏ କଥାରେ ଆଉ ଗୋଟିଏ କଥା ଖଞ୍ଜି ହୋଇଯାଉଛି ଆପେ ଆପେ । ଭାବିବାକୁ ପଡ଼ୁନାହିଁ । ସିନାର ମୁହଁକୁ ଅନେଇବାକୁ ବେଳ ନାହିଁ । ଏକଥା ଖାଲି ତା'ପାଇଁ ନୁହେଁ ତାରି ପରି ଅନ୍ୟ ସମସ୍ତଙ୍କ ପାଇଁ । ପୃଥିବୀର ଯେତେକ ସିନାମାନଙ୍କ ପାଇଁ ।

କିଛି ସମୟ ପରେ ତାଙ୍କର ମନେ ପଡ଼ିଲା ଯେ କଥାଟା ବେଶ୍ ଗଭୀର ହୋଇ ଗଲାଣି । ଅରବିନ୍ଦବାବୁ ଚୁପ୍ ହୋଇଗଲେ ଟିକିଏ ଦମ୍ ନେବା ପାଇଁ, ଓ ସିନାର ମୁହଁକୁ ଅନେଇଲେ । ସିନା ଚାହିଁ ରହିଛି ତାଙ୍କ ଆଡ଼କୁ । ନିର୍ବାକ୍ ନିସ୍ପନ୍ଦ ଭାବ । ଗମ୍ଭୀର ମନୋନିବେଶ । ବାପାଙ୍କ କଥାରେ ମଜ୍ଜି ଯାଇଛି । ଅରବିନ୍ଦବାବୁଙ୍କର ସନ୍ଦେହ ହେଲା । ଆଜି ଆଗରେ ବସିଚି ପିଲାଦିନର ସିନା । ଏମିତି ତା' ବଡ଼ ବଡ଼ ଆଖି ସ୍ଥିର କରି ରହେ, ସତ୍ୟାଗ୍ରହୀର ଭାବ ଦେଖାଏ । ସବୁ ଶୁଣେ, କିନ୍ତୁ କିଛି ମାନେ ନାହିଁ ମନ ନବୁଝିବା ପର୍ଯ୍ୟନ୍ତ । ନୀରବ ଅମାନିଆପଣ ।

ଅରବିନ୍ଦବାବୁ ସିନାର ଚାହାଣିକୁ କଳି ବସିଲେ । ବଡ଼ ଗହିରିଆ ଆଖି, ତା' ମାଆ ପରି । ମନେହେଲା ଯେ ସେଥିରେ ଅଛି ଧରି ରଖିବାର ପ୍ରବୃତ୍ତି, ନିବିଡ଼ତା, ଓ ନିର୍ବୋଧ ବିଶ୍ୱାସ । ଶୋଭା ଓ ତା' ସନ୍ତାନର କଳ୍ପିତ ମନୋଭାବ ପ୍ରତି ଆକ୍ଷେପ କରି ଅରବିନ୍ଦବାବୁ ଭାବିଲେ ଯେ ଏହି ଧରଣର ଲୋକମାନେ ସୂକ୍ଷ୍ମଭାବରେ କଥାଟାକୁ ବୁଝିପାରନ୍ତି ନାହିଁ । ଏମାନଙ୍କୁ ସିଧାସଳଖ ସ୍ଟେଟ୍‌ଠୋକ୍ ଭାବରେ ବୁଝାଇବା

ଦରକାର । ଅସ୍ତ୍ରପ୍ରୟୋଗ ଆବଶ୍ୟକ । ସେହେତୁ ସେ ପୁଣି ଆରମ୍ଭକଲେ, ଦୃଢ଼ତାର ଭଙ୍ଗୀରେ, "ରୋମାନ୍ସ ମାନେ ତୁ କଣ ବୁଝୁଛୁ ? ରୋମାନ୍ସ ମାନେ ନୁହେଁ ଯେ—ଦୁଇଜଣ ଅଧାଚହ୍ଲା ଯୁବକଯୁବତୀ ଏକାଠି ବସି ଜହ୍ନକୁ ଅନେଇବେ, ଏଣୁତେଣୁ ବାଜେ କଥା କହିବେ, ନିଜର ଭବିଷ୍ୟତ ଭାବିବେ ନାହିଁ, ନିଜର ପରମ୍ପରା ଭୁଲିଯିବେ—।"

ନାହିଁ, ହେଲା ନାହିଁ, ପରମ୍ପରା ସାଙ୍ଗରେ ରୋମାନ୍ସର ଅମେଳ ଦେଖାଇବା ଉଚିତ ହେଲା ନାହିଁ । ଅରବିନ୍ଦବାବୁ ସଙ୍ଗେ ସଙ୍ଗେ ତ୍ରୁଟିର ସଂଶୋଧନ କରିନେଲେ ।

"ପରମ୍ପରାର ଅର୍ଥ ନୁହେଁ ବଂଶମର୍ଯ୍ୟାଦା ବା ସେହିଭଳି କିଛି । ତା' ଅର୍ଥ ହେଉଛି ନିଜର ସ୍ୱଗୁଣ, ଯାହା ଗଢ଼ି ଆସିଛି ବାପଅଜା ଚଉଦ ପୁରୁଷଙ୍କ ବାଟ ଦେଇ । ମାନେ ନିଜର ଚରିତ୍ର, କ୍ୟାରେକ୍ଟର୍ । ସାଧାରଣ ଲୋକେ ଚରିତ୍ରର ମାନେ ଯାହା ବୁଝନ୍ତି ତା ନୁହେଁ । ତା'ଠୁଁ ଅଧିକ, ତା'ଠୁଁ ସାର । ସେହି ଚରିତ୍ରର ମେଳ ହେବା ଦରକାର ତମ ରୋମାନ୍ସ ସାଙ୍ଗରେ । ନହେଲେ ସେ ତୁମକୁ ବିପଦକୁ ଟାଣିନେବ । ଦି' ଦିନିଆ ଆନନ୍ଦ ପରେ କାନ୍ଦିବାକୁ ପଡ଼ିବ, ହେଲେ ସେତେବେଳକୁ କେହି ନଥିବେ ତୁମର ଲୁହ ପୋଛିବା ପାଇଁ । ବୁଝିଲୁ—।"

ଅରବିନ୍ଦବାବୁ ଜାଣିଲେ ଯେ ତାଙ୍କର ଭାଷା ଟିକିଏ କଠୋର ହୋଇଯାଉଛି, ସ୍ୱର ଚଢ଼ା ହୋଇଯାଉଛି । ସେ ସିନି ଆଡ଼କୁ ପୁଣି ସିଧା ହୋଇ ଅନେଇଲେ । ଏ କଅଣ ? ଏ ତ ଜଣାଶୁଣା ସିନି ନୁହେଁ, ତରଳମତି ବାଳିକା ନୁହେଁ । ମନେ ହେଉଛି ଏ ଗୋଟାଏ ପ୍ରାପ୍ତବୟସ୍କା ନାରୀ, ମଣିଷ । ସମାନ ଅଧିକାରରେ ବସିଛି ତାଙ୍କ ସାଙ୍ଗରେ । କଷ୍ଟ ପାଉଛି, ସହି ନେଉଛି । ରାଗକୁ ଦବେଇ ରଖି ଚାହିଁଛି ସିଧା ହୋଇ—ଯେତେ ଗାଳି ଦେଉଛ ଦିଅ, ଯାହା କହିବ କୁହ ।

ଅରବିନ୍ଦବାବୁଙ୍କର ରାଗ ଆସିଲା । ଏଡ଼ିକି ଟିକିଏ ଝିଅ, ତାର ପୁଣି ଗୋଟାଏ ବ୍ୟକ୍ତିତ୍ୱ ହେଲାଣି, ସେ କଥା ନକହି ତାର ବ୍ୟକ୍ତିତ୍ୱକୁ ଓଗାଳି ବସିବ ତାଙ୍କ ଆଗରେ ! ନା, ତାକୁ ବୁଝେଇ ବସିବା ଭୁଲ୍ ହୋଇଛି । ଅରବିନ୍ଦବାବୁ କଥାର କ୍ରମ ଭୁଲିଯାଇ କହିଲେ, "ଛିଃ ! ତୁ ଏମିତିକା କଥା କରିବୁ ବୋଲି ମୁଁ ଭାବି ନଥିଲି—।"

ଏତିକିବେଳକୁ କାହିଁକି କେଜାଣି ପ୍ରିୟମ୍ବଦାର ଛବି ଆସି ତାଙ୍କ ପାଖରେ ଛିଡ଼ା ହେଲା । ମନେ ହେଲା ସେ କହୁଛି—'ରାଗୁଛ ? ରାଗ ନାହିଁ । ରାଗିଲେ ତୁମକୁ ମୋଟେ ଭଲ ଦେଖାଯାଏ ନାହିଁ । ଅନ୍ତତଃ ମୋ ପାଖରେ ନୁହେଁ । ତୁମ ସଂସାରରେ

ରାଗିବ, ଯେଠି ତୁମେ ଆଉ ଜଣେ, ସେଇଠି ତୁମ ରାଗ ଶୋଭା ପାଇବ । ମୋ ପାଖରେ ତୁମେ ଅରବିନ୍ଦବାବୁ ନୁହେଁ, ଖାଲି ତୁମେ । ସେ ଆଉ କିଛି ଭାବେ ନାହିଁ, ଆଉ କିଛି ଭାବି ପାରିବ ନାହିଁ । ଖାଲି ତାର ସେଇ ପିଲାଳିଆ ଓଠରେ—' ଲମ୍ବା କଳା ବାଳରେ ସବୁ ଭାବନା ଢାଙ୍କି ହୋଇଯାଉଛି···ସମସ୍ତ ହଜି ଯାଉଛି···।

ଅରବିନ୍ଦବାବୁଙ୍କୁ ଲାଗିଲା ସେ କୁନ୍ତଳ, ଦେହ, ଶାଢ଼ି ଆଉ ଝାଳର ବାସ୍ନା ଉତ୍କଟ ହୋଇ ଉଠୁଛି । ଅସହ୍ୟ । ନା—ସେ ନାହିଁ, ନାହିଁ, ନଥିଲା । ତାର ସ୍ଥାନ ସ୍ମୃତିର କେଉଁ ଅନ୍ଧାରିଆ କଳା ଗହ୍ୱରରେ । ସେ ଏଠିକି ଆସିବ ନାହିଁ । ସେ ମିଛ, ଭୁଲ୍ । ରୋମାନ୍ସ ନୁହେଁ, ଭୁଲ୍ । ଭୁଲ୍ । ଅରବିନ୍ଦବାବୁଙ୍କର ଇଚ୍ଛାହେଲା ପାଟି କରି ସେଇ ଶବ୍ଦଟା କହି ପକାଇବେ । ସମସ୍ତଙ୍କ ଶୁଣିବା ପାଇଁ, ସିନି ଶୁଣିବା ପାଇଁ । ସଜାଗ ହୋଇ ସେ କହି ଚାଲିଲେ—

"ରୋମାନ୍ସ ଗୋଟାଏ ରୋଗ, ଏଇ ବୟସରେ ଆସିଥାଏ । ସେଥିରେ ସତ ଭଲପାଇବା ନଥାଏ । ଭଲ ପାଇବାର ଚକମକ ନାହିଁ, ଲୁଚାଚୋରା ନାହିଁ, ଲୁଚେଇ କରି ଚିଠି ଦିଆନିଆ ଦରକାର ହୁଏ ନାହିଁ—।"

ଆଘାତ । ଆନ୍ତର ଆଘାତ । କ୍ଷତ ନାହିଁ । ସିନି କାନ୍ଦ କାନ୍ଦ ହୋଇଆସୁଛି । କିଛି ଯାଏଆସେ ନାହିଁ ।

"ବେଳ ଥାଉଁ ଥାଉଁ ନିଜକୁ ଠିକ୍ କରିନେ । କାଲି ସେ ଚିଠିକୁ ଟିକ ଟିକ କରି ପୋଡ଼ି ଦେ'—ବୁଝିଲୁ ? ଭଲପାଇବା ଅତି ମହାନ୍ ଜିନିଷ, ତାର ମୂଲ୍ୟ ନିଆରା । ସେଥିରେ ଅଛି ମନର ସାଥୀଭାବ, ସାରା ଜୀବନର ବନ୍ଧନ, ଦରକାରଣା । ସେଥିପାଇଁ ତୋର ବୟସ ହୋଇନାହିଁ, ବୁଦ୍ଧି ହୋଇନାହିଁ ।"

ଇଚ୍ଛା ହେଉଛି ଖାଲି କହିଯିବାକୁ । କଥା ରହିଗଲେ ଅସୁବିଧା, ଏଣ୍ଡୁଡେଣ୍ଡୁ ଅଯଥା ଭାବନା ଆସିଯିବ ।

"ସତ ଭଲପାଇବା ଆରମ୍ଭ ହୁଏ ବାହାବେଦୀରେ । ସେଠି ଖାଲି ଦୁଇଜଣ ନଥାନ୍ତି, ସମାଜ ସଂସାର ଥାଏ, ଅଗ୍ନି ସାକ୍ଷୀ ରହେ, ଦେବଦେବୀ ସାକ୍ଷୀ ରହନ୍ତି—ମାନେ ନିଜର ଭଗବାନ୍, ଯାହାକୁ ଯେଉଁ ଶକ୍ତିକୁ ତୁମେ ଭଗବାନ ବୋଲି ମାନିଛ । ତାପରେ ସାରା ଜୀବନର ବନ୍ଧନ, ସହଯୋଗ, ହସରେ କାନ୍ଦରେ, ସୁଖରେ, ଦୁଃଖରେ—"

ଶୋଭା ଏତକ ବେଳକୁ ଆସି ପହଞ୍ଚନ୍ତା ନାହିଁ ? ସିନ ଦୁଇଜଣଙ୍କୁ ଏକାଠି ଦେଖନ୍ତା ।

ଶୋଭା, ସିନ ପର ଆଖି । ପ୍ରଥମ ରାତିର ଆଲିଙ୍ଗନ, ହସଲୁହ ମିଶାମିଶି । ସକାଳ ସଞ୍ଜରେ ଶୋଭା । ହାତରେ ଜଳଖିଆ ଥାଳି, ସ୍ଲିଙ୍ଗକର୍ ସାର୍ଟ । କଥା—ମୋ ଲୁଗା ସବୁ ଛିଣ୍ଡି ଗଲଣି···ପୂନ୍‌ପୁନ୍‌ର ପଢ଼ା ତୁମେ ଦେଖୁନାହଁ ମୋଟେ···ଆଜି ଶୀଘ୍ର ଆସିବ, ସାଣା ଷ୍ଟୋରକୁ ଯିବା । ସେଠି ଜନପଦ ଶସ୍ତାରେ ମିଳେ, ସବୁବେଳେ ସେହି ବହିକାଗଜ ଧରି ବସିଥିବ ଆଉ ମୋ କଥା ଶୁଣିବ କେମିତି ? ରାତିରେ ଅଧା ନିଦରେ ପାଖକୁ ଲାଗିଆସିବା, ଦୈନନ୍ଦିନତାର, ପ୍ରେମର, ଶେଷକଥା ସୂଚକ ମୋହର ମାରିବା ପାଇଁ । ଅଳସ ଉଦାସ ମୁହୂର୍ତ୍ତରେ ପକ୍କାଆଣି ସ୍ମୃତିର କଥା—ମନେ ପଡ଼େ ରିନୁ ଜନ୍ମ ହେଲା ଯେଉଁଦିନ, ସେଦିନ ତମେ କଣ କହିବାକୁ ବସିଲ ସମସ୍ତଙ୍କ ଆଗରେ ?···ମନେପଡ଼େ ତୁମେ ଯେବେ ସାଇକଲ୍ ଚଲଉଥିଲ, ଆଉ ଅଫିସ୍‌ରୁ କେମିତି ଝାଳନାଳ ହୋଇ ଭେକ ଭେକ ବୋଲି ପାଟି କରୁଥିଲ ? ମନେ ପଡ଼େ ?···ସବୁଦିନିଆ ସାଧାରଣ ଶୋଭା । ଭଲ ଲାଗିବା—ଭଲ ପାଇବାର ସଂସାର । ଛବିର ମଧୁରିଆ ନରମ ରଙ୍ଗ, ତାର ଉପରେ ଆଉ ଯେତେକ ସୁନେଲି ରଙ୍ଗ, ଯେତେସବୁ ଦ୍ୟୋତକ ସେନ୍‌ସେସନ୍ । ପ୍ରିୟମ୍ବଦା । କେଉଁ ନୂଆ ଛବିର ଅନୁପ୍ରବେଶ ।

ସିନ କଣ କିଛି ବୁଝୁଛି । ବୁଝିପାରିବ ବାପାମାଆଙ୍କର ଏହି ସୁନ୍ଦର ସଂସାର ?

ସିନ ବୁଝୁନାହିଁ । ହେଲେ ସେ ସେମିତି ଚୁପ୍ ହୋଇ ରହିଛି କାହିଁକି ? ଥମଥମ ଭାବ । ମନେ ହେଉଛି କାନ୍ଦିପକେଇବ ଏଇକ୍ଷଣି । ଦମ୍ଭିଲା ଭାବ ଚାଲି ଯାଇଛି, ପ୍ରତିରୋଧ କରିବାର ସାହସ ନାହିଁ । ସେ ନଇଁ ଯାଇ ନାହିଁ, ବାପାଙ୍କ କଥାକୁ ମାନି ନେଇ ପାରୁନାହିଁ । ତାର ଚାହାଣି ସତେ ଯେପରି ତାର ଦୁଃଖ-ଅଭିଯୋଗ ଜଣାଉଛି ଯେ ବାପା ତାକୁ ବୁଝିପାରିଲେ ନାହିଁ । ତାର ଭଲ ପାଇବାକୁ ବୁଝିପାରିଲେ ନାହିଁ । ତାଙ୍କର ସେ ଶକ୍ତି ନାହିଁ ।

ଅରବିନ୍ଦବାବୁଙ୍କର ରାଗ ଆସିଲା ନିଜ ଉପରେ ତଥା ତାର ସେଇ ଚାହାଣି ଉପରେ । କଣ କହିବେ ବୋଲି ସେ ପ୍ରଶ୍ନ କଲେ ଅସ୍ୱାଭାବିକ ରୁକ୍ଷ ଗଳାରେ—"କଣ ବୁଝୁଛୁ ମୁଁ ଯାହା କହୁଛି ? କଣ ସେ ଟୋକା ନାଁ ? ତୁ ତାକୁ ବାହା ହବାକୁ ଚାହୁଁ ? କହ ଶୀଘ୍ର ଉତ୍ତର ଦେ ।"

ଉତ୍ତର ପରିବର୍ତ୍ତେ ସିନ ହଠାତ୍ ହାତରେ ମୁହଁ ଲୁଚାଇ ଗୋଟାଏ କୋହିଦିଆ କାନ୍ଦଣା ଆରମ୍ଭ କରିଦେଲା ।

ଅରବିନ୍ଦବାବୁ ନିହାତି ବିରକ୍ତ ହୋଇ ଉଠି କହିଲେ, ''ଚୁପ୍ ହୋ', ମୋତେ ସେ କାନ୍ଦଣାକନ୍ଦ ଭଲ ଲାଗେନାହିଁ ।'' ଘର ଭିତରୁ ଶୋଭାଦେବୀ ତା କାନ୍ଦ ଶୁଣିଲେ । କାହିଁକି କାନ୍ଦୁଛି ଝିଅଟା ? ସେ ଏଇକ୍ଷଣି ବ୍ୟସ୍ତ ହୋଇ ଉଠିବେ । କେହି କାନ୍ଦିଲେ ସେ ବ୍ୟସ୍ତ ହୋଇ ଉଠନ୍ତି । ସହି ପାରନ୍ତି ନାହିଁ । ଶୋଭାଦେବୀ ଦାଣ୍ଡଘରକୁ ପଶିଯାଇ ଦୁ' ଜଣଙ୍କୁ ଅନାଇଲେ ଓ ଝିଅକୁ ପଚାରିଲେ, ''କାହିଁକି କାନ୍ଦୁଛୁ ସେମିତି ? କଣ ହେଲା ?''

ସିନାଠାରୁ ଉତ୍ତର ନାହିଁ । କିନ୍ତୁ ଅରବିନ୍ଦବାବୁ ଗୁରୁଗମ୍ଭୀର ଭାବରେ କହିଲେ ଶୋଭାଦେବୀଙ୍କ ଆଡ଼କୁ ନଅନେଇ, ''କିଛି ନାହିଁ, ତୁମେ ବୁଝି ପାରିବ ନାହିଁ ।''

ଶୋଭାଦେବୀ ଭାବିଲେ ଆଉ କଥା ବଢ଼ାଇବା ଉଚିତ ହେବନାହିଁ । କଣ ପଢ଼ାପଢ଼ି ବିଷୟରେ କହିଥିବେ ଦୁ'ପଦ । ନାକକାନ୍ଦୁରି ଝିଅ ତ, ଟିକିଏ କଥାରେ କାନ୍ଦି ପକେଇବ । ସେ ସିନା ପାଖକୁ ଯାଇ ତା ହାତ ଧରି ଉଠାଇଲେ । କହିଲେ, ''ଉଠିଆ ସେଠୁ, ଘର ଭିତରକୁ ଯାଆ କାନ୍ଦିବୁ ଯଦି । ଉଠ୍, ଉଠୁନୁ ନା ନାହିଁ ?''

ସିନା କଥା ମାନିଲା । ଉଠିପଡ଼ି ଅମୁହାଁ ହୋଇ ପଳେଇଗଲା ସେଠୁଁ, ପଛେ ପଛେ ଶୋଭାଦେବୀ ।

ସେମାନେ ଚାଲିଗଲା ପରେ ଅରବିନ୍ଦବାବୁ ଅଙ୍କା ହେଲାପରି ବସି ରହିଲେ । କଥା ଚୁଣ୍ଡି ଗଲା । ସିନାର ଦମ୍ଭ ଭାଙ୍ଗି ଯାଇଛି, ସେ ଆଉ ଆଗେଇବ ନାହିଁ । କିନ୍ତୁ ସେ କ'ଣ ଖାଲି ଏତିକି ଚାହିଁଥିଲେ ? ସିନା କିଛି ବୁଝିନାହିଁ, କିଛି ମାନି ନେଇ ନାହିଁ । ବାପାଙ୍କ କଥାକୁ ଗାଳି ବୋଲି ଭାବିଛି, ଅଥବା ଲେକ୍‌ଚର୍ । ତା'ପାଇଁ ଏହି ହେଉଛି ସମାଜର ଗତାନୁଗତିକ ବାଧା । ଏହାପରେ ସେ ବିଫଳ ପ୍ରେମର ଗାଥା ଶୁଣେଇବ ତା'ର ପ୍ରେମିକକୁ, କାରୁଣ ଓ ଅଭିମାନରେ ଆଡ଼େଇ ହୋଇଯିବ ଭାଗ୍ୟକୁ ଦୋଷୀ କରି, ଏବଂ ରେଡ଼ିଓରୁ ପ୍ରେମର ଦୁଃଖ ଗୀତ ଶୁଣି ଆଖି ଛଳଛଳ କରିବ, ଆକାଶକୁ ଅନେଇବ । ପୁଣି କେତୁଟା ବର୍ଷ ଗଲେ, ବାହାସାହା ହୋଇ ଘର କରିବ ସମସ୍ତଙ୍କ ପରି, ପଛ କଥା ଭାବିବ କେବେ କେମିତି—ସେ ବି ଗୋଟାଏ ସମସ୍ଯା ଥିଲା । ସ୍ୱାଭାବିକ ସମସ୍ୟାର ଉଚିତ ସମାଧାନ ।

ନା, ହେଲା ନାହିଁ । ଅରବିନ୍ଦବାବୁଙ୍କୁ ନିଜ ଭିତରେ ଫମ୍ପା ଲାଗିଲା । ଇଚ୍ଛା ହେଲା ସେ ବି କାନ୍ଦନ୍ତେ ଟିକିଏ । ସିନାର କାନ୍ଦଣାରେ ସାଧାରଣ ଦୁଃଖ ଓ ଅପମାନ ଅଛି, ସହଜରେ ପୁଛିଯିବ । କିନ୍ତୁ ତାଙ୍କ କାନ୍ଦଣାର ଦୁଃଖ ପୁଛେଇବ କିଏ ? କ'ଣ ସେ ଦୁଃଖ ? ସେ ଦୁଃଖର ରୂପରେଖ ନାହିଁ, ବସ୍ତୁ ନାହିଁ କି ବିଷୟ, ବିଷାଦର

ସୁନ୍ଦରତା ନାହିଁ, କିଛି ନାହିଁ ସେଥିରେ । କିଛି ନାହିଁର ଦୁଃଖ, ତାକୁ ଦୁଃଖ ବୋଲି କହିବେ କେଉଁ ସାହସରେ ?

ସିନା ଖାଲି ଲେକ୍‌ଚର ଶୁଣିଛି, ସତକଥା । ଆଉ କିଛି ପାଇ ନାହିଁ ବାପାଠୁଁ, କିଛି ସୁନ୍ଦର ଭାବରେ ସ୍ପର୍ଶ, ଜ୍ୟୋତି । ଅରବିନ୍ଦବାବୁ ଶୂନ୍ୟ ଗୃହାଣିରେ ଅନେଇଲେ ଉପରକୁ । ଆଉ କିଛି ପାଇ ନାହିଁ, ତାର କାରଣ ତାଙ୍କ ପାଖରେ ଆଉ କିଛି ନାହିଁ । ବାପା ଓ ବୋଉ, ଅରବିନ୍ଦବାବୁ ଓ ଶୋଭା ଦେବୀଙ୍କର ଭଲପାଇବା ? ସେହି ଭଲ ପାଇବା ତାଙ୍କ ଜୀବନରେ ଅଛି ନିଶ୍ଚୟ, କିନ୍ତୁ ଯଥାସ୍ଥାନରେ । ଅନେକ ଦୀପରୁ ଗୋଟିଏ ଦୀପ, ଅନେକ ରଙ୍ଗରୁ ଗୋଟିଏ ରଙ୍ଗ । ଶୋଭାକୁ ନେଇ କେବେହେଲେ ସତ ଭାବ ଆସି ନାହିଁ ଯେ ଆମେ ଦୁହେଁ ଏବଂ ଏଇ ସଂସାର । ଜଣକ ପାଇଁ ଜଣେ, ଓ ଦୁହିଁଙ୍କ ପାଇଁ ସଂସାର । ଶୋଭା ଜୀବନର ଆଧାର ନୁହେଁ, ପ୍ରେରଣା ନୁହେଁ । କେବଳ କେତେଗୁଡ଼ିଏ ସୁନ୍ଦର ସ୍ମୃତିର ପେଡ଼ି । ତାକୁ ଖୋଲି ଦେଲେ ଭଲ ଲାଗେ, ଆମ ଘରକରଣାର ସୁଖ ଆଉ କାହାଠାରୁ ଊଣା ନୁହେଁ ବୋଲି ମନେ ହୁଏ । ତା' କପାଳରେ ଛାପ ମରା ହୋଇଛି 'ଜୀବନସଙ୍ଗିନୀ' । ମାତ୍ର ସେତିକି ।

ଆଉ ପ୍ରିୟମ୍ବଦା । ତା' ସାଙ୍ଗରେ ସେହି କେତୋଟି କାମନାଭରା ମୁହୂର୍ତ୍ତ, ଜଳନ୍ତା ଖରା ଓ ଅଶାନ୍ତ ଧ୍ୱନି ନେଇ ଗଢ଼ା ଗୋପନ ରୋମାନସ୍—ସେହି ହେଉଛି ଭଲ ପାଇବା ? ନା, ସେ ମଧ୍ୟ ଗୋଟିଏ ରଙ୍ଗ, ଗୋଟାଏ ସ୍ମୃତି, ଅନୁଭୂତି । ସ୍ମୃତିରୁ କାଢ଼ି ଦେବାକୁ ଇଚ୍ଛା ହେଉ ନାହିଁ, କିନ୍ତୁ ତାକୁ ବଡ଼ ବୋଲି ଭାବିବାର ଦୁଃସାହସ ନାହିଁ ।

ଅରବିନ୍ଦବାବୁ ! କାହାକୁ ଭଲପାଇଛ ତୁମେ, ଭଲ ପାଇ ପାରିବ ? ଅଫିସର ପାଞ୍ଚଶହ ଲୋକ ତୁମକୁ ଭଲ ପାଆନ୍ତି ବୋଲି କହୁଛ, କିନ୍ତୁ ତୁମେ ତାଙ୍କୁ ସତରେ ଭଲ ପାଅ ? କେଉଁ ଗୋଟିଏ ଲୋକ ପାଖକୁ ଯାଇ ତା'ର ଦୁଃଖକୁ ନିଜର କରିପାରିଛ ? ତୁମର ଦୟାଭାବ ଅଛି । ହେଲେ ଲଛମୀକୁ ତୁମର ଦାମିକା ଅଦରକାରୀ ଜିନିଷଟିଏ ଦେବାର ସାହସ ହେଲା ନାହିଁ । ସନ୍ଧ୍ୟାକୁ ଦେଖି ଅମକ ରହି ଯାଇଛ ଟିକିଏ, ହେଲେ ତନ୍ମୟ ହୋଇ ପାରିଲ ନାହିଁ । ସବୁ ଭାବରେ ଧନୀ ହୋଇଛ ତୁମେ, ସବୁ ରଙ୍ଗରେ ସଜେଇ ଦେଇଛ ମନକୁ । ବେଶ୍—ଆଉ କଣ ଦରକାର ?

ସବୁ ଅଛି, କିଛି ନାହିଁ ! ସିନା କେଉଁଥିରୁ କ'ଣଟା ପାଇବ ? କେଉଁ ପୂର୍ଣ୍ଣତାର ସ୍ପର୍ଶରେ ପୂର୍ଣ୍ଣ ହୋଇ ଉଠିବ ?

ଅରବିନ୍ଦବାବୁଙ୍କୁ ଥଣ୍ଡା ପବନ ଧୀରେ ଧୀରେ ଛୁଇଁ ଯାଉଥିଲା । ପୁଣି ତାହିସ ବାନ୍ଧି ଟେବୁଲ ପାଖକୁ ଆସି ନେଳିଆ କାଗଜଟାକୁ ହାତରେ ଉଠାଇ ଥିଲା ।

ସିନାର ଲୁହ ଶୁଖିଯିବଣି । ଅରବିନ୍ଦବାବୁ ନିଜକୁ ଆଉଁସି ଦେଲେ—ସବୁ ଠିକ୍ ଅଛି, ଭଲ ଅଛି ।

ଶୋଭାଦେବୀ ଘରଭିତରକୁ ପଶି ଆସି ଦେଖିଲେ ସ୍ୱାମୀଙ୍କର ସ୍ଥାଣୁ ଭାବ । କହିଲେ, 'କ'ଣ ବସି ରହିଛ ସେମିତି ମ ? କଫି କପେ କରି ଆଣିବି ?'' ଉତ୍ତର ନ ପାଇ ପୁଣି କହିଲେ, ''ସିନା କାନ୍ଦି କାନ୍ଦି ଶୋଇଗଲାଣି, କ'ଣ କହିଲ କି ତା'କୁ ?''

ଏଥର ଅରବିନ୍ଦବାବୁ ଉତ୍ତର ଦେଲେ । ଦୁର୍ବଳ କଣ୍ଠରେ କହିଲେ, ''ଆସ, ବସ ଏଠି ।''

ପାଖରେ ସୋଫାରେ ବସିବାର ନିମନ୍ତ୍ରଣ ପାଇବା କିଛି ନୂଆ କଥା ନୁହେଁ । ଶୋଭାଦେବୀ ଆଶ୍ଚର୍ଯ୍ୟ ହେଲେ ନାହିଁ । କିନ୍ତୁ ତାଙ୍କୁ ବାଜିଗଲା ଅରବିନ୍ଦବାବୁଙ୍କ ମନର ବ୍ୟଥା, ଅଶାନ୍ତି । କଣ ହୋଇଛି ସ୍ୱାମୀଙ୍କର ?

ଶୋଭାଦେବୀ ପାଖରେ ବସିଲେ । ସହାନୁଭୂତିର ଦୃଷ୍ଟିଟିଏ ଢାଳି ଦେଲେ ସ୍ୱାମୀଙ୍କ ଆଡ଼କୁ । କିନ୍ତୁ ଅରବିନ୍ଦବାବୁ କିଛି କହିପାରିଲେ ନାହିଁ । ତାଙ୍କର ଇଚ୍ଛା ହେଲା ଖାଲି ଶୋଭାଦେବୀଙ୍କ ହାତକୁ ଧରିବେ, ହାତରେ ହାତ ରଖିବେ ।

କିନ୍ତୁ ଶୋଭାଦେବୀଙ୍କର ହାତ ଅପେକ୍ଷା କରି ରହିଲା । ଅରବିନ୍ଦବାବୁ ତାକୁ ଛୁଇଁବେ ଛୁଇଁବେ ହୋଇ ଛୁଇଁ ପାରିଲେ ନାହିଁ । ସହଜ ନିତିଦିନିଆ କଥା, ହେଲେ ଏଇକ୍ଷଣି ତାଙ୍କର ମନେ ହେଲା ଯେ ସେଥିକିରେ ହାର୍ ମାନିଗଲା ପରି ଲାଗିବ । ସେ ବୋଧହୁଏ ନିଜକୁ କହିଲେ ଘୋଷଣା କଲା ପରି, ଯେ ମୁଁ ଶୋଭାକୁ ଭଲ ପାଏ । ସ୍ମୃତିକୁ ଭଲ ପାଏ, ସେଣ୍ଟିମେଣ୍ଟକୁ ଭଲ ପାଏ—ଯେମିତି ଭଲ ପାଇବା କଥା ।

ଶୋଭାଦେବୀ କେବଳ ବସି ରହି ସ୍ୱାମୀଙ୍କୁ ଦେଖୁଥିଲେ—ମୋର ଏ ଭାବୁକ ସ୍ୱାମୀ···ସାଧାରଣ ନୁହଁନ୍ତି ।

# ଅରବିନ୍ଦବାବୁଙ୍କ ଦୁଃଖ

ଇଏ ମଧ୍ୟ ମୋର ହଜିଯାଇ ଫେରି ଆସିଥିବା ଅନ୍ୟତମ ଗପ, ଯାହାକୁ ମୁଁ ପ୍ରାୟ ତିରିଶବର୍ଷ ତଳେ ଲେଖିଥିଲି । ଏଇଟି ମୋର କେତେକ 'ଭାବୁକ' ସାଙ୍ଗସାଥୀମାନଙ୍କୁ ଖୁବ ଭଲ ଲାଗିଥିଲା ସେତେବେଳେ । ଏବଂ ଏତେଦିନ ପରେ ମୋତେ ବି ଭଲ ଲାଗୁଛି । ସ୍ୱାଭାବିକ । କାହିଁକିନା ଲେଖକ ହିସାବରେ ମୁଁ ଗୋଟାଏ ମହା ଭାବୁକ ବୋଲି ମୋର ନାଆଁ ପଡ଼ିନାହିଁ କି ?

ଅରବିନ୍ଦବାବୁ ମଧ୍ୟ ଜଣେ ଭାବୁକ ଥିଲେ । ଭାବୁକତା ଦୁଃଖ ଆଣିଦିଏ, ଗଭୀର ଭାବଗତ ତଥା ଚିନ୍ତାପ୍ରସୂତ ଦୁଃଖ, ଯାହା ସେଦିନ ଆସିଥିଲା ତାଙ୍କ ମନରେ । କିନ୍ତୁ ମୋର ଧାରଣା ଯେ ଆଜି ମଧ୍ୟ ସେ ବଡ଼େଇ କରୁଥିବେ ତାଙ୍କର ଭାବୁକତା ନେଇ, ଏବଂ ତାଙ୍କର ଦୁଃଖଗୁଡ଼ାକ ବଦଳି ହୋଇ ବସି ଯାଇଥିବ ସେଇ ଆତ୍ମା ଗୌରବରେ । କହିବାକୁ ଗଲେ ସେ ତାଙ୍କ ଭାବୁକତାକୁ ଆହୁରି ଆଣ୍ଟରେ ମୁଠେଇ ଧରିଥିବେ, ହୁଏତ ତାକୁ ସାର୍ଟ ପରି ପିନ୍ଧିଥିବେ ତାଙ୍କ ଦେହରେ । କାରଣ ସେଇଟିକ ତ ତାଙ୍କ ଜୀବନର ଶେଷ 'ସଫଳତା' ଯାହାକୁ କେହି ହେଲେ ମିଛ କରିପାରିବେ ନାହିଁ, ତାର ବର୍ଣ୍ଣମାଳାକୁ ବୁଝନ୍ତୁ କି ନବୁଝନ୍ତୁ ! ହଁ, ସେଇ ହେଉଛି ଆମ ବଡ଼େଇ, ଅରବିନ୍ଦବାବୁ-ଜାତୀୟ ଲୋକମାନଙ୍କର । ଯେହେତୁ ଆମେ ଜାଣୁ ଯେ ପୃଥିବୀର ଅଧିକାଂଶ ଭାସି ଭାସି ଯାଇ ସୁଖ କରୁଥିବା ଲୋକେ ଏଇ ଭାବୁକତାର ଧାର ଧାରନ୍ତି ନାହିଁ । ଆମେ ତାଙ୍କଠାରୁ ଭିନ୍ନ । ଏବଂ ବଡ଼ । ପୂର୍ଣ୍ଣଚ୍ଛେଦ ।

ସଚେ ? ଏହି ପ୍ରକାର ଗୋଟାଏ ପ୍ରଶ୍ନବାଚୀ ଅବଶ୍ୟ ଶୁଣିବାକୁ ପଡ଼ିବ ଅନ୍ୟ ଲୋକମାନଙ୍କଠାରୁ, ଯାହାକୁ ବଦ୍ରୂପ ବୋଲି କୁହାଯିବ । ଯେ ବାବୁ, ଇଏ କେଉଁ ଆଡ଼ର ସଫଳତା, ଯେଉଁଥିରୁ ତମେ ବୁଦ୍ଧ କି ସିଦ୍ଧଟିଏ ହୋଇ ଶାନ୍ତି ପାଇ ପାରିଲ ନାହିଁ, ଏଣେ ଆମ ପରି ସୁଖ ମଧ୍ୟ କରିପାରୁନାହିଁ ? କଣ ମିଳୁଛି ତମକୁ ଏଇ ବଡ଼ପଣରୁ ? ବରଂ 'ମୂଢ଼େ ତରନ୍ତି କି ଗୂଢ଼େ ତରନ୍ତି, ମଝିମଝିକିଆ ବୁଡ଼ି ମରନ୍ତି' ବୋଲି କହିଲେ କଣ ଭୁଲ୍ ହେବ, ତମମାନଙ୍କ ମାନସିକତାକୁ ନେଇ ?

ଏଥିର କଣ କିଛି ଉତ୍ତର ନାହିଁ ଆପଣଙ୍କ ପାଖରେ, ଅରବିନ୍ଦବାବୁ ?

ଅଛି । ମୁଁ ବେଶ୍ ଜାଣିପାରୁଛି, ଅରବିନ୍ଦବାବୁ, ଯାହା କହିବେ ଆପଣ । କହିବେ—

ମଲା, ପ୍ରସିଦ୍ଧ ନାଟ୍ୟକାର ଅସ୍କାର୍ ଓ୍ୱାଇଲ୍ଡ କହିଲା ପରି ଉପରଠାଉରିଆ ପଣ ହିଁ ସବୁଠାରୁ ବଡ଼ ପାପ (Superficiality is the greatest sin), ଏଇ ନିରାଟ ସତ୍ୟଟାକୁ କିଏଣ ବୁଝେଇବାକୁ ପଡ଼ିବ ? ଆମେ ପଶୁପକ୍ଷୀ କୀଟପତଙ୍ଗ ନୋହୁଁ, ଆମେ ହେଉଛୁ ମଣିଷ । ତେଣୁ ଭାବିନାହିଁ ଆମର ଭିନ୍ନତା, ଯାହାକୁ ଅନ୍ୟ ଅର୍ଥରେ 'ଧର୍ମ' ବୋଲି କୁହାଯାଇପାରେ । ତେଣୁ ତାକୁ ସାମାନ୍ୟରେ ପ୍ରୟୋଗ କରିବ, ଗଣ୍ଡାରକୁ ପଶିବ ନାହିଁ, କାଳେ ମୁଣ୍ଡଟା ଭଗ୍ନ ହୋଇଯିବ ସେଥିରେ ଏବଂ ମନରେ ଦୁଃଖ ଆସିବ, ଏଇ ମନୋଭାବକୁ କଣ ପ୍ରଶଂସା କରି ହେବ ?

ସେଇଠୁଁ ଅନ୍ୟମାନେ ହୁଏତ ହସିବେ । କହିବେ ଆଜ୍ଞା, ଦୁଃଖ କୌଣସି ଧର୍ମର ଶେଷକଥା ହୋଇ ନପାରେ । ଦୁଃଖ ଆସୁଛି ମାନେ ତମକୁ କୁହାଯାଉଛି ଯେ ତାକୁ ଭଲ ଭାବରେ ଦେଖି ଚିହ୍ନି ଦୂର କରିବାକୁ ଚେଷ୍ଟା କର । ନହେଲେ ତାର ମୂଲ୍ୟ କଅଣ ? କୋଉ ହିସାବରେ କହିବ ଯେ ଇଏ ଉଚ୍ଚ ଧରଣର ଦୁଃଖ, ଯାହା ଆମମାନଙ୍କ ସର୍ବସାଧାରଣ ଦୁଃଖଠାରୁ ଅନେକ ଊର୍ଦ୍ଧ୍ୱରେ, ଯଦି ତାକୁ ବାତିଲ୍ କରି କେଉଁ ଉଚ୍ଚ ଧରଣର ସୁଖ ପାଇବାର ଉପାୟ ଜଣା ନାହିଁ ତମକୁ ?

ଏହାର ଉତ୍ତରରେ ଅରବିନ୍ଦବାବୁ କିଛି କହିପାରିବେ କି ? କେଜାଣି । ତେବେ ମୋର ମନେହୁଏ ଯେ ସେ ଏହିଭଳି କିଛି କହିବାକୁ ଚାହିଁବେ ଯଦିଓ ତାଙ୍କର ସନ୍ଦେହ ନଥିବ ଯେ ତାକୁ ଉତ୍ତର ବୋଲି କୁହାଯିବ ନାହିଁ, କାରଣ ତାହା ତାଙ୍କ ବିଫଳତାର ସଫେଇ ଛଡ଼ା ଆଉ କିଛି ହୋଇ ନପାରେ । କହିବେ—

ମୁଁ କଣ ଜାଣେ ନାହିଁ ତାର ଉପାୟ କଅଣ ? କିଓ, ସେଇ ପରି ମୋ ଦୁଃଖ, ଯେ ମୁଁ ତାକୁ ପ୍ରୟୋଗ କରିପାରୁ ନାହିଁ ? ହେଲେ ମୁଁ ଜାଣିଶୁଣି ତାକୁ ପ୍ରୟୋଗ କରିବାକୁ ନାରାଜ, ମୋର ଆତ୍ମମର୍ଯ୍ୟାଦା ଦୃଷ୍ଟିରୁ—ବୁଝିପାରିଲେ ?

ହଁ, ମୁଁ ଜାଣିଛି । ଉପାୟ ହେଉଛି ତଲ୍ଲୀନତା, ତନ୍ମୟତା । ନିମଜ୍ଜନ, ମାନେ ଗହ୍ୱରରୁ ଆହୁରି ଗହ୍ୱରକୁ ଯାଇ ବୁଡ଼ି ଯିବା, ଯାହା 'ବୁଡ଼ି ମରିବା' ନୁହେଁ, ତରିଯିବାର ସ୍ୱରୂପ । ଯେପରିକି ସନ୍ଧ୍ୟାର ଶାନ୍ତିକୁ ପୂରାପୂରି ଅନୁଭବ କରି ହେବ, ଆଉ ତମେ ଯଥାର୍ଥରେ ମିଶି ଯାଇ ପାରିବ ସମସ୍ତ ବିଶ୍ୱରେ, ସୃଷ୍ଟିରେ । ତାହା ଭାବଗତ ବିହ୍ୱଳତା ହେଉ, ପ୍ରେମର, ଭକ୍ତିର, କିମ୍ବା ଆଉ କେଉଁ ଆବେଗର, ସେବାର ନିବେଦିତ ଆତ୍ମା, ଅଥବା ଧ୍ୟାନଗତ ବିଚ୍ୟୁତି, କେଉଁ ଅଣାକାର ସତ୍ତ୍ୱରେ ସଂଗଳିପ ପରି । କିନ୍ତୁ ଭାବି ଦେଖନ୍ତୁ, ତା'ହେଲେ ମୋର ନିଜତ୍ୱ ବୋଲି କିଛି ରହିଲା କି ? ଅରବିନ୍ଦବାବୁ ନାମକ ନିଆରା ବ୍ୟକ୍ତିତ୍ୱ, ଯାହାର ସ୍ପର୍ଶରେ ଶୋଭାଦେବୀ, ପ୍ରିୟମ୍ବଦା ଏବଂ ଏକାଧିକ ସହକର୍ମୀଗଣ ମୁଗ୍ଧ ହୋଇ ଆସିଛନ୍ତି, ତାହା ତିଷ୍ଠି ରହିପାରିବ କି ? ପାରିବ ନାହିଁ, କାରଣ ତାହା ମିଶିଯାଇଥିବ ସେଇ ଉପଲବ୍ଧି, ଅର୍ଥାତ୍ ଲଗାପଘା ନଥିବା 'ମୁକ୍ତ' ମାନଙ୍କ ଦଳରେ ଯେଉଁମାନଙ୍କର ନିଜସ୍ୱ ଚେହେରା ନାହିଁ ! କହୁଛ ଯେ ତାଙ୍କର ଭିତରୁ କେଉଁ ଏକ ମହାନ୍ ବ୍ୟକ୍ତିତ୍ୱ ଉଠି ଆସି ପାରିବାର ସମ୍ଭାବନା ଅଛି । ବୁଦ୍ଧ, ଯୀଶୁଖ୍ରୀଷ୍ଟ, କିମ୍ବା ସେହିଭଳି କେଉଁ ମହାତ୍ମା, ଯେଉଁମାନେ କୋଟି କୋଟି ଜନଗଣଙ୍କୁ ମୁଗ୍ଧ କରିପାରିଛନ୍ତି । ଥାଉ । ମୁଁ ସାନ ମଣିଷଟିଏ, ମୋର ସେହି ପ୍ରକାର ଦୁରଭିଳାଷ ନାହିଁ ।

ତେଣୁ ହୁଏତ ସେମିତି କିଛି ହୋଇ ପାରିବ ବୋଲି ମୁଁ ପ୍ରଥମେ ମିଳେଇ ଯିବାକୁ ଚାହେଁ ନାହିଁ । ମୋର ଏଇ ଆତ୍ମସତ୍ତ୍ୱକୁ ହରେଇବାକୁ ଚାହେଁ ନାହିଁ । ନାହିଁ ଆଜ୍ଞା, ଆଉ ମୋର ଏଇ ସ୍ୱକୀୟତାର ଦୁଃଖବୋଧ, ତାକୁ ବଢ଼େଇ କିହି କି ବଡ଼ପଣ ।

କ'ଣ ବୁଝିଲେ ମୁଁ କଣ କହୁଛି ?

କେହି ବୁଝନ୍ତୁ କି ନବୁଝନ୍ତୁ, ଅରବିନ୍ଦବାବୁ, ମୁଁ ବେଶ୍ ବୁଝିପାରୁଛି ଆପଣଙ୍କ ଦୁଃଖ, ଏବଂ ତାକୁ ଆଙ୍କୁଡ଼ି ଧରିବାର ବ୍ୟାକୁଳତା । ସମଦୁଃଖୀର ସହାନୁଭୂତି ଜାଣିବା ହେବେ ।



# ଜିଜ୍ଞାସୁ ଜିତେନ୍

ସେମାନେ ମୋ ଆଡ଼କୁ ଅନାଉ ନାହାଁନ୍ତି । ପାଖରେ ଥିବା ଚଉକିରେ ବସି ପଡ଼ି କୌଣସି ନୂଆ ଖବର ବିଷୟରେ ପଚରାଉଚରା କରିବା ଦୂରର କଥା । ଭଲ, ସେଇଆ ତ ମୁଁ ଚାହେଁ । କିନ୍ତୁ ମୁହାଁମୁହିଁ ହେଲେ ପୁଣି ଲମ୍ବା ଲମ୍ବା ନମସ୍କାର ପକାଉଛ କାହିଁକି ? ସତେକି କେବଳ ମୋର ପ୍ରବୀଣତାକୁହିଁ ସମ୍ମାନ ଦେବା କଥା, ଅନ୍ୟ କେଉଁ ସମ୍ପର୍କର ପ୍ରଶ୍ନ ଉଠୁନାହିଁ ଆମ ଭିତରେ । ଠିକ୍ ଅଛି, ଆଇ ଡୋଣ୍ଟ୍ ମାଇଣ୍ଡ୍ । ଆଇ ଡୋଣ୍ଟ୍ କେୟାର୍ ।

ଜିତେନ୍ ମହାପାତ୍ର ଫେରିଆସିଲେ ତାଙ୍କ କାଗଜକଲମ ଏବଂ ଛେଷକ ପାଇଁ ତୁଟିଯାଇଥିବା ଚନ୍ଦ୍ରାଧାରୀଙ୍କୁ । ଟିକିଏ ଝାବୁଥାନ୍ତି, ସେଇଠୁଁ ଘର୍ମି ଚାଲିଥାଆନ୍ତି । ଏଣେ ପ୍ରେସ୍‌କ୍ଲବ୍‌ର ଅନ୍ୟାନ୍ୟ ଟେବୁଲ ପାଖରେ ନାନା କିସମର ସାମ୍ବାଦିକ ଓ ତାଙ୍କର ବନ୍ଧୁମାନେ ଗହଳି ଜମାଇ ଥାଆନ୍ତି । ହୋ-ହଲ୍ଲା ତଥା ହାତଗୋଡ଼ ହଲାଇ ଉତ୍ସାହକୁ ତେଜିବାରେ ଲାଗି ଥାଆନ୍ତି, ତଦ୍ଦ୍ୱାରା ଗରମ ଚା' ଢଳି ହୋଇଯାଉଛି କାହା ଉପରେ, ଜଳୁଜଳୁ ଯାଉଥିବା ସିଗାରେଟ୍‌ର ଟୁକୁଡ଼ା କିଛି ଗୋଟିଏ କାଣ୍ଡ କରି ବସୁ କି ଆଉ ଯାହା ହେଉ । ଏଇ ତ ହେଉଛି ଠିକଣା ଆଟମସ୍‌ଫିଅର୍ ପ୍ରେସ୍ କ୍ଲବ୍ ପାଇଁ ! କିନ୍ତୁ ଜିତେନ୍‌ବାବୁ ଏହି ପ୍ରକାର ପାଣିପାଗରେ ବିଚଳିତ ନହୋଇ (ଅନ୍ତତଃ ସେ ଭାବୁଥାଆନ୍ତି ସେ ବିଚଳିତ ନୁହନ୍ତି) ଲେଖି ଚାଲିଥାଆନ୍ତି । କିନ୍ତୁ ବେଳେବେଳେ ସେମାନଙ୍କ ଉପରେ ଆଖି ପଡ଼ିଲା ପରେ ଏବଂ ଜଣେ ଅଧେଙ୍କ ଠାରୁ ବିନମ୍ରାବନତ ନମସ୍କାରଟିଏ ପାଇଲା ପରେ ସେ ତାଙ୍କୁ ପୁଣି ଟିକେ ତିରସ୍କାର କରିବାକୁ ବାଧ୍ୟ ହୁଅନ୍ତି ।

...ଥରେ ହେଲେ କଣ ତୁମର ଜାଣିବାକୁ ଇଚ୍ଛା ହେଉନାହିଁ ମୁଁ କଣ ଲେଖୁଛି ? କାହିଁକି ଲେଖୁଛି ? ନା । ତଥାପି ତମେ ସାମ୍ବାଦିକ ବୋଲାଉଛ । ଯେମିତିକି ତମର ଧର୍ମ ହେଉଛି ଖାଲି ଯା' ପଛରେ ତା' ପଛରେ ଲାଗି ମିଛ-ସତ ସ୍କାଣ୍ଡାଲ୍ ସୃଷ୍ଟି କରିବା । ଆଉ ଏଠି ବି ଯେଉଁ ଗୁଡ଼ାଜଡ଼ା ଚାଲିଛି, ବେପରୁଆ ରସରସିଆ ଚର୍ଚ୍ଚା, ତାର ଉଦ୍ଦେଶ୍ୟ ବି ସେଇଆ । କାହା ମୁହଁରୁ କେଉଁ ଖିଅଟିଏ ବାହାରିବ ପରା, କେଉଁ ନୂଆ ସ୍କାଣ୍ଡାଲ୍‌ର ବାଟ ଦେଖାଇବା ପାଇଁ । ସେଇ ହେଉଛି ଏଇ ହୋ-ହାଲ୍ଲା ଉଠା-ପକା ଅଭିନୟର ମତଲବ । ଆଉ କିଛି ନୁହେଁ । ତମ

ପାଖରେ ତ ଦେଖିଲି କିଛି ମାଲ୍ ମସଲା ନାହିଁ କି ଥିବାର ଆଶଂକା ନାହିଁ । ତେଣୁ ଆସିବ କାହିଁକି ମୋ ପାଖକୁ ? ଭଲ, ଭଲ, ମୁଁ ସେଇଥିପା ଗ୍ଭହେଁ । କିନ୍ତୁ ଟିକେ ଦୁଃଖ ଲାଗୁଛି ଯେ ନିଜକୁ ସାମ୍ବାଦିକ ବୋଲିଉଛ, ଅଥଚ ସାମ୍ବାଦିକତାର ମୌଳିକ ଗୁଣ ନାହିଁ ତମମାନଙ୍କ ପାଖରେ । ଜିଜ୍ଞାସା । ଉଦ୍ଦେଶ୍ୟାନ୍ୱେଷଣ ନଗ୍ନେଲା ଜିଜ୍ଞାସା । ଯେ ଏଇ ଯେଉଁ ଜିନିଷଟି ନୂଆ ପରି ଲାଗୁଛି କି ଅସ୍ୱାଭାବିକ ମନେ ହେଉଛି, ତାର ଅର୍ଥ କଅଣ, କାରଣ କଅଣ ।

ଉଦ୍ଦେଶ୍ୟ ପରି କଥା । କେଉଁ ସନ୍ଧାନରେ ମାଡବ ଆଉ କାହାକୁ ଛାଡ଼ି ଦେବ ତା' ନିର୍ଭର କରେ ତମ ଉଦ୍ଦେଶ୍ୟର ଭଲମନ୍ଦ ସାଙ୍ଗରେ । ମୁଁ ବି ଦିନେ ରାଜନୈତିକ ଉଦ୍ଦେଶ୍ୟକୁ ବଡ଼ ମନେ କରୁଥିଲି । ଏବଂ ମୋର ସନ୍ଧାନକୁ ଛାଡ଼ି ଦେଉଥିଲି ସେଇ ବାଟରେ । କିନ୍ତୁ ସେନ୍‌ସେସନ୍ ପାଇଁ, ନୀଚପ୍ରବୃତ୍ତିର ଖୋରାକ ଯୋଗାଇବା ପାଇଁ ନୁହେଁ । ଦେଶ ଓ ଦଶର ମଙ୍ଗଳ ପାଇଁ । ଯେମିତିକି ମୁଁ ଲାଗି ପଡ଼ି ପ୍ରମାଣ କରିଦେଇଥିଲି, ଯେ ମନ୍ତ୍ରୀ ନରୋତ୍ତମ କଂଟ୍ରାକ୍ଟରରମଣୀ ଶୋଭାରଙ୍ଗିନୀଙ୍କ ସଙ୍ଗରେ ଶୋଇଥିଲେ, ଏବଂ ସେଇ ଶୋଇବା ଦ୍ୱାରା ସେ ଏତେ ବଡ଼ ଭୁଲ୍ କଲେ, ଅପାତ୍ରରେ କଂଟ୍ରାକ୍ଟ୍ ଦେଲେ, ଯଦ୍ଦ୍ୱାରା ଇନ୍ଦିରାଆବାସ ଯୋଜନା ମାଡ଼ ଖାଇଗଲା ଆମ ଅଞ୍ଚଳରେ···ଇତ୍ୟାଦି । କିନ୍ତୁ ତମର ଉଦ୍ଦେଶ୍ୟ ହେଉଛି ଖାଲି ଏଇ ଶୋଇବା କଥାଟାକୁ ବଡ଼ କରି ଦେଖାଇବା । ସତେକି ମନ୍ତ୍ରୀ କି ରାଜାଙ୍କର ନଗ୍ନତାହିଁ ଆମ ଜିଜ୍ଞାସାର ମୂଳକଥା ।

ଏମିତି କେତେ ରହସ୍ୟର ସୂଚନା ଦେଇଛି ଓ ତାର ଉନ୍ମୋଚନ କରିଛି ମୋର ବୟସ ଥିଲାବେଳେ । ଯେଉଁଥିପାଇଁ ମୋର ନାଁ ଥିଲା ଜିଜ୍ଞାସୁ ଜିତେନ୍ । ବାବୁ ତମର କଣ କାହାରି ମନେ ନାହିଁ ସେକଥା ? ମୁଁ କଣ ସତରେ ଏତେ ବୁଢ଼ା !

ଓଲ୍ ନଟ୍ ମ୍ୟାଟର୍ । ଆଜିକୁ ଦଶବର୍ଷ କି ତାଠାରୁ ବେଶୀ ହେବ ମୁଁ ଦୂରେଇ ଦେଲିଣି ନିଜକୁ ଜଳନ୍ତା ରାଜନୀତିରୁ, ତାର କାଦୁଅଚକଟାରୁ । ତାଠୁଁ ବେଶି ଦରକାରୀ ନାନା ସାଂସ୍କୃତିକ ରହସ୍ୟର ଗଣ୍ଠି ଫିଟାଇବା । ଯଥା, ମୁଁ ଯୋଉ ଲାଗିଛି ଏଇକ୍ଷଣି ଗୋଟାଏ ତାସର ରହସ୍ୟ ନେଇ । ଯେ ଓଡ଼ିଶାର ପୁରୀ ଜିଲ୍ଲାରେ ଯେଉଁ ଛବିଅଙ୍କା ଗୋଲ ଗୋଲ୍ ତାସ୍‌ର ଖେଳ ଖେଳା ହେଉଥିଲା, ଯାହାର ନାଆଁ ଗଂଜପା, ସେହି ଧରଣର ତାସ୍‌ଖେଳ କର୍ଣ୍ଣାଟକରେ ଆସିଲା କେମିତି ? ଏବଂ ତା' ନାଆଁ ବି ଗଂଜପ୍‌ପା ।

ପାଖ ଟେବୁଲ୍‌ରୁ କିଏ ଜଣେ ଉଚିତରୁ ଅଧିକ ହସିଲି କି ଉତ୍ତେଜିତ ହେଲି ପରି ମନେ ହେଲା । ସ୍ୱର ଉଞ୍ଚେଇ କହୁଛି ନିଜର ସଫେଇ ଦେଲା ପରି—

"ଆର୍ ୟୁ ମ୍ୟାଡ୍ ? ବୁଢ଼ୀ ଆର ଘରେ ମରି କରି ପଡ଼ିଛି ଆଉ ମୁଁ ବୁଢ଼ାର ଇଣ୍ଟରଭିଉ ନେଇଥାଆନ୍ତି । ମୋର କଣ କାଣ୍ଡଜ୍ଞାନ ନାହିଁ ?"

ଜିତେନ୍‌ବାବୁ ଆପି ଉଠେଇ ଟିକିଏ ହସି ଦେବାକୁ ବାଧ୍ୟ ହେଲେ । ଧନ୍ୟ ତମ ଇଣ୍ଟରଭ୍ୟୁ-ମାନିଆ ! କଥା କଥାକେ ସାକ୍ଷାତ୍‌କାର । ଯେତେକ ଅବାନ୍ତର ପ୍ରଶ୍ନ ଓ ତାର ଗ୍ରେପାଛଡ଼ା ଉତ୍ତର । କିନ୍ତୁ ବୁଢ଼ୀ କଣ ଠିକ୍‌କିନା ମରିଗଲା ଖାସ୍ ତମକୁ ଦଗା ଦେବା ପାଇଁ ? ତମେ କଣ ଜାଣିପାରି ନଥିଲ ଯେ ତା' ଅବସ୍ଥା ଭଲ ନୁହେଁ, ତେଣୁ ସମୟ ଅନୁକୂଳ ନୁହେଁ, ତା' ସ୍ୱାମୀ ସାଙ୍ଗରେ ଇଣ୍ଟରଭିଉ କରିବା ପାଇଁ ? ଖାଲି ଜିଜ୍ଞାସାର ଅଭାବ ନୁହେଁ, ମଧ୍ୟ କମନ୍‌ସେନ୍‌ସ୍ ସାଧାରଣଜ୍ଞାନର ।

କିନ୍ତୁ କିଏ ଏଇ ବେରସିକ ବୁଢ଼ୀ, ଆଉ ତାର ବିଶିଷ୍ଟ ବୁଢ଼ା, ଯେ ମ୍ୟାଙ୍କୁ ଏମିତି ଅସୁବିଧାରେ ପକାଇଲେ ? ଗ୍ରୁଡ଼୍, ମୋର କଣ ଯାଉଛି, ମୋର ଜିଜ୍ଞାସା ଏତେ ଶସ୍ତା ନୁହେଁ ଯେ ତାକୁ ଏଇଥିରେ ଖର୍ଚ୍ଚ କରିବି···

କିନ୍ତୁ ସେ ଉତ୍‌କଣ୍ଠିତ ନହୋଇ ରହିପାରିଲେ ନାହିଁ, ଯେତେବେଳେ ତାଙ୍କ କାନରେ ବାଜିଲା—ବ୍ରିଗେଡ଼ିଅର୍ ବଲ କଣ ସାମାନ୍ୟ ସ୍ତ୍ରୀବିୟୋଗରେ ଦବି ଯିବା ଲୋକ ? ସେ କଣ ତଥାପି ଫାଇଦା ଉଠାଇବାକୁ ବୁଦ୍ଧି ନଥାଆନ୍ତେ ଇଣ୍ଟରଭିଉର, ଓଡ଼ିଆ ପୁଅର ବୀରତ୍ୱ ଶୁଣାଇବା ପାଇଁ ? (ହୋ-ହୋ) ତାଙ୍କ ଅତିବିଶିଷ୍ଟ ସେବା-ପଦକ ପଛରେ ଯେଉଁ ପୁରାଣ ରହିଛି ତାକୁ ପୁଣି ଥରେ ଗାଇବା ପାଇଁ ? ହ୍ୟାପ ସବୁ ନିଜର ସମାନ, ସେ ଓଡ଼ିଆ ହୁଅନ୍ତୁ କି ବଙ୍ଗାଳୀ, ପଞ୍ଜାବୀ, ମାଡ୍ରାସୀ···

ବ୍ରିଗେଡ଼ିଅର ବଲର ସ୍ତ୍ରୀ ମରିଗଲା । ବନ୍ଦନା ମରିଗଲା । ମଲା, ବୁଢ଼ୀ ହେଲାଣି ଆସି ମରନ୍ତାନାହିଁ ନା କଅଣ ମ ? ନା, ତା' ନୁହେଁ ଯେ···ତେବେ ମୁଁ ଜାଣିପାରିଲି ନାହିଁ କେମିତି, ମାନେ ତାର ଅବସ୍ଥା ଏତେ ସାଂଘାତିକ ହେଲାଣି···

ଜିତେନ୍‌ବାବୁ ନିଜକୁ ଛିଗୁଲେଇଲେ ତମେ ତାଙ୍କର କଣ କି ତମର ଜାଣିବା ଦରକାର ? କିନ୍ତୁ ପରମୁହୂର୍ତ୍ତରେ ସେ ତାର ମୁକାବିଲା କରି କହିଲେ—ଡ୍ୟାମ୍ ଇଟ୍ ! ମୁଁ କଣ ଜାଣେ ନାହିଁ ଯେ କ୍ୟାପ୍ଟେନ୍, ଆଇ ମିନ୍ ବ୍ରିଗେଡ଼ିଅର ଅମରେଶ ବଲ, ଆର୍ମିରୁ ରିଟାୟାର୍ କରି ଓଡ଼ିଶାକୁ ଆସିଲେଣି, ଆଉ ରହିଛନ୍ତି ଏଠି ଛଅମାସ କି ବର୍ଷେ ହେଲା ? କିନ୍ତୁ ମୁଁ ଥରେ ହେଲେ ତାଙ୍କ ପାଖକୁ ଯାଇ ନାହିଁ କି ଯିବାକୁ ବୁଦ୍ଧି ନାହିଁ । ଫୋନ୍ ବି କରି ନାହିଁ । ଜାଓ, ମୋର କଅଣ

କାରବାର ଅଛି ତା ସାଙ୍ଗରେ, ତାର ଫଉଜ ବୋକାମି କି ବାହାଦୁରି ସାଙ୍ଗରେ ? କି ତା ସ୍ତ୍ରୀ ସାଙ୍ଗରେ ?

ଶେଷ ପଦଟିରୁ 'ସତେ ?' ବୋଲି ଗୋଟିଏ ଦାନ୍ତଗିଜଡ଼ା ପ୍ରଶ୍ନ ମାଡ଼ି ଆସୁଥିଲା ତାଙ୍କ ଆଡ଼କୁ, କିନ୍ତୁ ଜଟେନ୍‌ବାବୁ ତାକୁ ଦୃଢ଼ତାର ସହ ଅଟକେଇ ଦେଲେ । କହିଲେ—ଥାଉ । ମୁଁ ଜାଣିଛି ତମେ ସବୁ କଣ କହିବାକୁ ଚାହଁ । ନିହାତି ମାମୁଲି, ସ୍ୱାଭାବିକ, ଷ୍ଟକ୍ ରିଆକ୍‌ସନ୍ । କିନ୍ତୁ ତମେ ଅବଶ୍ୟ ଜାଣିଥିବ ଯେ ମୁଁ ସେଇ ଅପରଛନିଆ ଅଧ୍ୟାୟ, ଅଧ୍ୟାୟ ନୁହେଁ ପାରାଗ୍ରାଫ୍‌ଟାକୁ କେବେଠୁଁ ଭୁଲିଗଲିଣି । କେଉଁ ଭୁଲ୍, ଦୋଷ, କି ପାପରୁ ପଳେଇ ଯିବା ପାଇଁ ନୁହେଁ । ଜଟେନ୍ ମହାପାତ୍ର ପଳାତକ ନୁହେଁ । କିନ୍ତୁ କଥା ହେଉଛି ଯେ ଜିନିଷଟା ଏତେ ଅଶ୍ଳୀଳ, ହାସ୍ୟାସ୍ପଦ, ଏବଂ ଭିନ୍ନ ମୋ ସ୍ୱଭାବ ଚରିତ୍ରରୁ ଯେ ସେ ତ ସହଜେ ଖସି ବୋହିଯିବ ସ୍ମୃତିର ନର୍ଦ୍ଦମାରେ—ମୁଁ ତାକୁ ବଞ୍ଚାଇ ରଖିଥାଆନ୍ତି କେମିତି ?

ଏବେ ମାତ୍ର ଥରୁଟାଏ ଦେଖିଥିଲି ତାକୁ । ଗୋପବନ୍ଧୁ ସ୍ମୃତିସଭା ଆଗ ଧାଡ଼ିରେ ବସିଥିଲେ ଭି. ଆଇ. ପି. ଙ୍କ ପରି । କିଏ ଭି. ଆଇ. ପି. ନୁହେଁ କି ଆମର ଏଇ ହତଭାଗା ଦେଶରେ ! ବନ୍ଦନାକୁ ଚହ୍ନି ହୋଇ ନଥାଆନ୍ତା, ତାର ନିଶୁଆ ଫାପୁଲିମୁହାଁ ସ୍ୱାମୀ ପାଖରେ ବସି ନଥିଲେ । ଇସ୍, ଏଡ଼କ ମୋଟୀ, ଏଡ଼କ କାଳୀ ହୋଇଗଲିଣି ସେ !

ମୋତେ ଆଶ୍ଚର୍ଯ୍ୟ ଲଗିଲା ନାହିଁ । ନା, ଆଶ୍ଚର୍ଯ୍ୟ ଲଗିଲା ହୁଏତ, କିନ୍ତୁ ତାପରେ ମନେ ହେଲା ଯେ ଏହାହିଁ ହେବାର ଥିଲା । ଗୋଟାଏ ଅସୁନ୍ଦର ଘଟଣାର ନାୟିକା ଏମିତି ଦଶିବ ନାହିଁ ତ ଆଉ କେମିତି ଦେଖାଯିବ ? ସେତେବେଳେ କଥା ଭିନ୍ନ ଥିଲା । ଯୌବନେ ମର୍କଟୀ ରମ୍ୟା...

ମୋତେ ତାକୁ ଦେଖି ଦୁଃଖ ଲଗି ନଥିଲା । ମୋଟ ଉପରେ ମୁଁ ଆଡ଼େଇ ହୋଇ ପଛକୁ ଚାଲିଗଲି । ସେମାନଙ୍କୁ ଚହ୍ନା ଦେବାର କୌଣସି କାରଣ ନଥିଲା ।

"ବଡ଼ପୁଅ କୁର୍ଡେ୍ୱଟ୍‌ରେ ଅଛି । ଆଜି ଆସି ପହଞ୍ଚିବ ଦିଲ୍ଲୀ ବାଟ ଦେଇ ଏଇ ଆଫ୍‌ଟରନୁନ୍ ଫ୍ଲାଇଟ୍‌ରେ, ସେଇଲାଗି ଶବକୁ ବରଫ ଦେଇ ରଖା ହୋଇଛି । ପୁଅ ଆସିଲେ ଯାଇଁ—"

ତା'ହେଲେ କଣ ଆଜି ଦାହ ହେବ ? ଶ୍ମଶାନରେ ନା କି ମାଃଟୋରିଅମ୍‌ରେ ? ଏଇଠି ନା ଆଉ କେଉଁଠି ? ଜଟେନ୍‌ବାବୁଙ୍କ ପାଟି ଖଜବଜ ହେଉଥିଲା ବକ୍ତାଙ୍କୁ ପଚାରିବା ପାଇଁ । ଏବଂ ଇଏ ଏକ ସାମାନ୍ୟ ଏବଂ ସ୍ୱାଭାବିକ କୌତୁହଳ ବୋଲି ସେ ନିଜକୁ ଜଣାଇ ଦେଉଥିଲେ ।

କିନ୍ତୁ ସାମାନ୍ୟ କୌତୂହଳ କ୍ରମଶଃ ବଳବତୀ ଇଚ୍ଛାରେ ପାଲଟିଗଲା ।

...ଧର ମୁଁ ଯଦି ଆଜି ବ୍ରିଗେଡ଼ିୟରର ବଲିର ଘରକୁ ଯିବି । କ୍ଷତି କଅଣ ? ମୁଁ ମଧ୍ୟ ମିଶିଯିବି ତାଙ୍କ ଜ୍ଞାତିକୁଟୁମ୍ବ ବନ୍ଧୁ ପରିଜନ ସାଙ୍ଗରେ । ଯେଉଁମାନେ ଶୋକ ମନେଇବାକୁ ଆସିଥିବେ । ହୁଏତ ଶ୍ମଶାନକୁ ବି ଯିବି, ଦେଖିବି ସେଇ ଦେହଟା କେମିତି ଜଳିପୋଡ଼ି ପାଉଁଶ ହୋଇଯାଉଛି । କୋଉ ହାଡ଼ ଖଣ୍ଡିକ ଠୋ' କରି ଫୁଟୁଛି !

ଯେଉଁ ଶିହରଣଟିକ ଖେଳିଗଲା କିତେନ୍‌ବାବୁଙ୍କ ଦେହରେ, ସତେକି ତାଙ୍କର ଗଣ୍ଠି ହାଡ଼ ଠୋ' କରି ହେଲା, ତାକୁ ପାଖ ଲୋକେ ବୋଧହୁଏ ଅନୁମାନ କରିପାରି ନ ଥିବେ । କିନ୍ତୁ କିତେନ୍‌ବାବୁ ତାଙ୍କ ଅନୁଭବକୁ ଅସ୍ୱୀକାର କରିପାରିଲେ ନାହିଁ । ଅପରନ୍ତୁ କହିଲେ, ହଁ, ଇଏ ମୋର ଯନ୍ତ୍ରଣା । ମୁଁ ନିଜକୁ କଷ୍ଟ ଦେଉଛି । କାହିଁକିନା ମୋ ଦୋଷ ଥାଉ ନଥାଉ ମୁଁ ସଂଲଗ୍ନ ଥିଲି ସେଥିରେ, ସେଇ କୁତ୍ସିତ ଆପେୟାର୍‌ରେ, ସେଇ ଦେହରେ । ଯାହା ଆଜି ଜଳିଯିବ ଚଡ଼ଚଡ଼ ହୋଇ । ତେଣୁ ମୋ ଦେହରେ ମଧ୍ୟ ଏକ ଶୀତ୍କାର । କିନ୍ତୁ ତାର ଅର୍ଥ ନୁହେଁ ଯେ ମୁଁ ବି ଶୋକସନ୍ତପ୍ତ କିମ୍ବା ସେହିଭଳି କିଛି ।

ଅବଶ୍ୟ ଗଲେ ମୁଁ ବି ଗୋଟାଏ ରୀତିମତ ନମସ୍କାର ପକାଇବି ଅନ୍ୟମାନଙ୍କ ପରି, ତା' ନିର୍ଜୀବ ମୁହଁକୁ ଚାହିଁ । କେଉଁ ଅନିର୍ଦ୍ଦିଷ୍ଟ ଆତ୍ମାର ସଦ୍‌ଗତି ପାଇଁ । କିନ୍ତୁ ତାର ଅର୍ଥ ନୁହେଁ ଯେ—।

ସେଠିକି ଗଲେ ମୁଁ ଅବଶ୍ୟ ଚହ୍ଲା ଦେବି ନିଜକୁ । ବ୍ରିଗେଡ଼ିଅର ସାହେବଙ୍କୁ ମନେ ପକାଇଦେବି ଯେ ଆମର ପରିଚୟ ହୋଇଥିଲା ଆଜକୁ ପ୍ରାୟ ୩୦ ବର୍ଷ ତଳେ । ଦିଲ୍ଲୀରେ । ତରୁଣ ସାମ୍ବାଦିକ କିତେନ୍ ମହାପାତ୍ରର ଭେଟ ହୋଇଥିଲା କ୍ୟାପ୍‌ଟେନ୍ ଅମରେଶ ବାଲ୍‌ଙ୍କ ସାଙ୍ଗରେ, ତାଙ୍କ ଆର୍ମି ମେସ୍‌ରେ, ଯେଉଁଠିକି ମୁଁ ଯାଇଥିଲି କାପ୍‌ଟେନ୍ ନିଷ୍ଠାମ୍ବାର ଗେଷ୍ଟ୍ ହୋଇ । ମୋର ଅସଲ ଉଦ୍ଦେଶ୍ୟ ଥିଲା ଏମାନଙ୍କ ସାଙ୍ଗରେ ହେଲମେଲ ହୋଇ ବୁଝିବାକୁ ଚେଷ୍ଟା କରିବି ଯେ ଜେନେରାଲ୍ ଶିବ୍‌ନାଥ କେମିତି ଓ କାହିଁକି ଏପରି ଲୋକପ୍ରିୟ ହୋଇ ପାରିଲେ ଯେ ସେ ଇସ୍ତଫା ଦେବାରୁ ତମାମ୍ ସେନାବାହିନୀ ଏତେ ଉଦ୍‌ବ୍ୟସ୍ତ ହୋଇ ଉଠିଲେ ଯେ ଗ୍ରୋଟକାଟିଆ ବିଦ୍ରୋହ ଦେଖା ଦେଲା କେତେକ ଛାଉଣୀରେ । ବୁଝିବି ଓ ବିଚାର କରିବି ଯେ ପ୍ରକୃତରେ କାହାର ଦୋଷ, ମନ୍ତ୍ରୀଙ୍କର କି ସେନାପତିଙ୍କର । ଜଣେ ତରୁଣ ଓଡ଼ିଆ ଅଫିସରଙ୍କ ସହିତ ଦେଖା ହେଲାରୁ କଥାଟା ଆହୁରି ସୁବିଧା ହୋଇଗଲା ବୋଲି ଭାବିଲି । ତାଛଡ଼ା କ୍ୟାପ୍‌ଟେନ୍ ବାଲ୍ (ହଁ, ବାଲ୍ ଯାହା ବଲି ସେଇଆ...ହୋ-ହୋ-ହୋ)ର ଉଚ୍ଚା ହସ ଓ ପିଠିଆପୁଡ଼ା ନିମନ୍ତ୍ରଣକୁ ମୁଁ କେମିତି ଭଲା ଉପେକ୍ଷା କରିଥାଆନ୍ତି ?

ଅତଏବ ମୁଁ ସେଇଠି, ସେଇ ମେସ୍‌ରେହିଁ ହିଁ ଭରିଲି ତା ଘରେ ରହିବା ପାଇଁ, ଦିଲ୍ଲୀରେ ଥିବା ଯାଏଁ ।

କହିଲି, ମୁଁ ଏଠି ଅନ୍ତତଃ ସାତ ଆଠଦିନ ରହିବି । "ୟୁ ! ଏତେଗୁଡ଼ାଏ ଦିନ ରହିବେ ? ତାହେଲେ ତ ମୋତେ ହାଇକମାଣ୍ଡ୍‌କୁ ଲେଖିବାକୁ ପଡ଼ିବ ଆମ ରେସନ୍ ବଢ଼ାଇବା ପାଇଁ ! ହୋ-ହୋ-ହୋ···" ୟା ପରେ ତାଙ୍କ ଆତିଥ୍ୟରୁ ମୁକୁଳିଯିବାର ପ୍ରଶ୍ନ ଉଠିଲା ନାହିଁ । ମୋଟ ଉପରେ ମୋର ସମ୍ପର୍କରେ ବନ୍ଦନାର ହାତ ନଥିଲା, କାରଣ ସେ ନଥିଲା ସେଠି । ତାଙ୍କ ଘରକୁ ଗଲା ପରେ ଯାଇଁ ଦେଖା ହେଲା ତା ସାଙ୍ଗରେ । ତନ୍ୱୀ ଶ୍ୟାମା ଫୁଲେଇ ଓ୍ୱାର୍ଧୀ ମୋତେ ପ୍ରଶସ୍ତ ହସ ଓ ପ୍ରଲମ୍ବିତ ନମସ୍କାରର ଅଭିବାଦନ ଜଣାଇ ମୁଁ ତାଙ୍କ ଘରେ ସାତ ଦିନ ରହିବା କଥା ଶୁଣି 'ଗୁଡ୍' ବୋଲି କହିଲା । ଠିକ୍ ଅଛି । ଭଦ୍ରମହିଳା ଅତିଥି-ସତ୍କାରିଣୀର ପାର୍ଟ୍ କରୁଛନ୍ତି, ହେଲେ ଏବେ ଟିକିଏ ଓଭର୍-ଆକ୍ଟିଙ୍ଗ୍ ହୋଇଯାଉଛି । କିନ୍ତୁ ଯେତେବେଳେ ଶୁଣିଲା ଯେ ମୁଁ ଜର୍ଣ୍ଣାଲିଷ୍ଟ, ଓ ମୁଁ ଗୋଟାଏ ଅନୁସନ୍ଧାନରେ ଆସିଛି ଏଠିକି, ସେଇଠୁଁ ସେ କହିଲା ମୋର ଖୋଦ୍ ଶାଳୀ, ଭାଉଜ କି ଗାର୍ଲଫ୍ରେଣ୍ଡ ପରି—"ମାନେ କୋଉ ନେତାଙ୍କ ଗୋଇ ଖୋଳିବାକୁ ଆସିଛନ୍ତି ? ନା କୋଉ ବଡ଼ ହାକିମଙ୍କର ?"

ସେତେବେଳେ ଆହୁରି ପ୍ରଚଣ୍ଡ ଥିଲା ମୋର ପ୍ରିନ୍‌ସିପଲ୍ । ତେଣୁ ମୋ ମୁହଁ ରାଗରେ ପାଚି ଲାଲି ପଡ଼ି ଯାଇଥିବ । ଏଥିରେ ସନ୍ଦେହ ନାହିଁ । ଏବଂ ବିଶାଳାକ୍ଷୀର ଚାହାଣି ଯେତେ ଚଞ୍ଚଳ ହେଉ ପଛେ ସେ ତାକୁ ଠଉରେଇ ପାରି ନଥିବ ଏଭଳି ଭାବିବାର କୌଣସି କାରଣ ନାହିଁ । ହେଲେ ମୁଁ ଯେତେବେଳେ ଗମ୍ଭୀର ହୋଇ ମୋର ପ୍ରତିବାଦ ଜଣାଇଲି, କହିଲି, "ନା, ମୁଁ ଗୋଇ ଖୋଳିବାକୁ ଆସି ନାହିଁ । ମୋର ଗୁରୁ ହେଉଛି ଜିଜ୍ଞାସା ।" ସେ 'ସରି' କହିବ କଅଣ ଅନେଇଲା ମୋ ମୁହଁକୁ ନିର୍ଲଜ୍ଜୀଙ୍କ ପରି, ହସି ଉଠିଲା, ଓ କହିଲା—"ନନ୍‌ସେନସ୍" ! ତା' ଢଙ୍ଗକୁ ଗୋଟାଏ ଅନବଦ୍ୟ, ମାନେ ବିଚିତ୍ର ମୁରକିହସା ଓ ନାକଫୁଲ ।

ଏହାପରେ ମୁଁ ଯଥାଶୀଘ୍ର ସେଠୁ ବିଦାୟ ନେଇ ଚାଲି ଯାଇ ପାରିଥାନ୍ତି । କିନ୍ତୁ ଗଲି ନାହିଁ, ଯେତେବେଳେ ଦେଖିଲି ଯେ ସାହେବଙ୍କ 'ହୋ-ହୋ' ପରି ୟାର 'ନନ୍‌ସେନ୍‌ସ୍' କୁହା ମଧ୍ୟ ସେମିତି ଗୋଟାଏ ଆଳୁଦୋଷ ଓ ହେତୁକ ନିର୍ବୋଧ । ରହିଗଲି, ସାତଦିନ ନୁହେଁ, ପ୍ରାୟ ସତର ଦିନ । କିନ୍ତୁ ତାର ମାନେ ନୁହେଁ ଯେ ତାର ସେଇ ଚତୁର-ଇତର ହସ କି ନାକଫୁଲ ମୋତେ ସୁନ୍ଦର ଦିଶିଲା ।

ଅବଶ୍ୟ ଗଲେ ମୁଁ କେବଳ ଗୋଟିଏ କାରଣରୁ ଯିବି । କହିବି କେଉଁଥି-ପାଇଁ ? ଏଇଥିପାଇଁ ଯେ ମିସେସ୍ ବାଲ୍ ଓରଫ ବନ୍ଦନା ଓରଫ ମୋ ଜୀବନର

ଗୋଟିଏ ପରିତ୍ୟକ୍ତ ଅଳିଆ, ଯେ ଆଜି ହଠାତ୍ ଆବିର୍ଭୂତ ମୋ ସାମ୍ନାରେ ମହାମୂଲ୍ୟ ମଖମଲର ପୋଷାକଟାଏ ପିନ୍ଧି, ତାର ସ୍ୱରୂପ-ସ୍ୱରୂପ କଅଣ ବଦଳି ଯାଇପାରେ ମୋ ପାଇଁ ? ଅର୍ଥାତ୍ ଯେଉଁ ଅସନାଟାକୁ ମୁଁ ବିସ୍ମୃତିର ନଳାରେ ଭସେଇଦେଇଛି ଏଭଳି ଘୃଣାର ସହ ଯେ ଘଟଣାଟା ଘଟିନାହିଁ ଜାଣ, ସେଇ ଜିନଷଟାର ରୂପଗୁଣ କଅଣ ଆଜି ବଦଳି ଯାଇ ଥାଇପାରେ, କାହିଁକନା ଅସନାଗୁଣୀ ଆଟିଚୁଳି ଦେଇଛି ସବୁଦିନ ପାଇଁ ?

ଯଦି ଯାଏ⋯କିନ୍ତୁ ଯିବ କି ? କାହିଁକି ଯିବ ? ଗୁପ୍ତପାର ରହସ୍ୟ ଯେଉଁଠି ଥିଲା ସେଇଠି ଅଛି । ଅନେକଗୁଡ଼ାଏ ଥିଓରି ମୁଣ୍ଡରେ ପଶୁଥିଲା ଓ ତାକୁ ଗ୍ରାସି ଗୁଳିଥିଲା, ଆଉ ହଠାତ୍ ଏଇ ଗୋଟାଏ ଅନାବଶ୍ୟକ ଅପ୍ରାସଙ୍ଗିକ ଖବର⋯

ଜିତେନ୍‌ବାବୁ, ତମେ ଯିବ । ତମ ବ୍ୟକ୍ତିଗତ ବିସ୍ୱାଦ ବଡ଼ ନା ତମର ବୃତ୍ତିଗତ ସଚୋଟପଣିଆ, ପ୍ରଫେସନାଲ ଇଣ୍ଟେଗ୍ରିଟି ? କାହିଁ ଗୁପ୍ତପା ରହସ୍ୟ, ଆଉ କାହିଁ ଏଇ ମହା ରହସ୍ୟ ବନ୍ଦନାକୁ ନେଇ ? କହିବାକୁ ଗଲେ ଜୀବନ-ମୃତ୍ୟୁକୁ ନେଇ ? ତମେ ଯିବ । ଯିବା ଉଚିତ ।

ଜିତେନ୍‌ବାବୁ କାଗଜପତ୍ର ଗୋଟେଇ ଉଠି ପଡ଼ିଲେ । ଏବଂ ପ୍ରସ୍ଥାନ କଲେ । ଏବଂ ସୁଖର ବିଷୟ ତାଙ୍କୁ ବ୍ରିଗେଡ଼ିଅରଙ୍କ ଠିକଣା ବୁଝିବାକୁ ପଡ଼ିଲା ନାହିଁ, ପାଖ ଟେବୁଲର ଅର୍ବାଚୀନ ଅଣ-ଜର୍ଣ୍ଣାଲିଷ୍ଟ୍‌ମାନଙ୍କ ଠାରୁ । ସେମାନଙ୍କ କଥାବାର୍ତ୍ତାରୁ ଧରି ହେଲା ସେ ଘରଟା ସର୍ବେଶ୍ୱର ଶିବ ମନ୍ଦିର ପଛପଟେ । ସେଇଠି କୋଉଠି ଦେଖି ନେଇ ହେବ । ଅନ୍ତତଃ ଘରସାମନାର କାର୍‌ଗହଳି ଲୋକଗହଳିରୁ ବୁଝାପଡ଼ିବ ।

⋯ଅବିଳମ୍ବେ ସେ ପହଞ୍ଚିଲେ ସେଠି । ତାଙ୍କ ଜୀର୍ଣ୍ଣ ଧୂସର ଚଟି ହାଲକ ମଧ୍ୟ ଥୁଆ ହେଲା ଶତାଧିକ ଧନୀ-ଦରିଦ୍ର ଚଟି ଜୋତା ସାଙ୍ଗରେ, ଖାଲି ପାଦରେ ସେଠିକି ଯିବା ପାଇଁ । ଯେଉଁଠି ବନ୍ଦନା ଶୋଇଛି । ବରଫ ଶେଯରେ । ପାହାଡ଼ ପ୍ରମାଣ ଫୁଲରେ ପୋତି ହୋଇ । କିନ୍ତୁ⋯କିନ୍ତୁ⋯ଜିତେନ୍‌ବାବୁଙ୍କ ମନରେ ଅହେତୁକ ରାଗ ଆସିଲା ଯେତେବେଳେ ସେ ଦେଖିଲେ ଯେ ତୁଳା ଗେଞ୍ଜା ହୋଇଛି ତାର ଦୁଇ ନାକପୁଡ଼ା ଭିତରେ । ସତେକି ସେ ତଥାପି ଆଶା କରୁଥିଲେ ସିଏ ଟିକିଏ ଫୁଲି ଉଠିଆଆନ୍ତା ତାଙ୍କୁ ଦେଖିଲାକ୍ଷଣି, କିଛି ଗୋଟାଏ ଅକୁହା ନନ୍‌ସେନସ୍‌ର ବାର୍ତ୍ତା ଦେବାପାଇଁ ।

ଜିତେନ୍‌ବାବୁ ଚୁପ୍‌ଚାପ୍ ଗୋଟିଏ କୋଣରେ ଯାଇଁ ବସିଲେ, ଯେଉଁଠି ଟିକେ ଜାଗା ଖାଲି ଥିଲା ।⋯କେହି ମୋତେ ଚହ୍ନିଲା ପରି ମନେ ହେଉନାହିଁ । ଭଲ, ମୁଁ ସେଇଆ ଚାହେଁ । ସେଇ କି'ଣ ବାଲୁସାହେବ ? ଧଳା ଧଳା ଲମ୍ବା ଜାଣ ବେଶ

ଜଣାଇ ଦେଉଛି ଯେ ବୁଢ଼ା ହେଲେ ମଧ୍ୟ ଫୌଜ । ଦେଶୀ କଣ୍ଟ୍ରୋଲ୍ ବ୍ଲାଂପ୍ । ଓଠ ଦଟା ଏଇକ୍ଷଣି ଚପି ହୋଇ ରହୁଛି ସିନା, କିନ୍ତୁ ଅନେଇଥାଅ, ସେ ଯେକୌଣସି ମୁହୂର୍ତ୍ତରେ 'କୋଇ ହାଏ ?' ବୋଲି ପାଟି କରିଉଠିବ । ଜଗେନ୍‌ବାବୁଙ୍କୁ ହସ ଲାଗିଲା । କେଡ଼େ ମୂର୍ଖ ଏଇ ଲୋକଗୁଡ଼ାକ ! ନିଜକୁ ଜାଣିଶୁଣି ଗୋଟାଏ କାର୍ଟୁନ୍ ଗ୍ରୁପରେ ପକାଇ ଦିଅନ୍ତି କାହିଁକି ? କଲାକାର ଦାଢ଼ି ରଖେ, ବାଲ ନୁଖୁରା କରି ରଖେ, ବ୍ୟୁରୋକ୍ରାଟ୍‌ର ସବୁକିଛି, ମୁଣ୍ଡବାଲର ଟେରିଠାରୁ ଆରମ୍ଭ କରି ତାର କଥାକୁହା ସୌଜନ୍ୟ, ପଲିସ୍ଟର ହୋଇଲା ପରି ଦିଶେ, ଏବଂ ଫୌଜ ତା ନିଶକୁ ବଢ଼ାଏ, ଆଉ ଅକାରଣରେ ହସେ ଠୋ ଠୋ ହୋଇ । ଅବଶ୍ୟ ସେ ପ୍ରଚଣ୍ଡ ସାରଲ୍ଟି ଦେଖାଇ ଥିବ ମୁଁ ମନା କରୁନାହିଁ । .ନାଥୁଲା ପାସ୍ ? ନା ହିଆଚେନ୍ ଗ୍ଲେସିୟର୍ ?) ନ ହେଲେ ଅତି-ବଶିଷ୍ଟ ସେବା ମେଡାଲ ହାସଲ କରି ନଥାନ୍ତା । କିନ୍ତୁ କଥା ହେଉଛି ସେ ରକ୍ତମାଂସର ମଣିଷ ହୋଇ ସେ କିଛି ଗୋଟାଏ କୌତୂହଳ, ଜିଜ୍ଞାସାର ଖୋରାକ୍ ତିଆରି କରିପାରି ନଥାଆନ୍ତି ତାର ନାତିଙ୍କ ପାଇଁ ? ପୁଅର ଉତ୍ତର ।

ବ୍ରିଗେଡ଼ିଅରଙ୍କ ମାର୍କାମରା ବ୍ୟକ୍ତିତ୍ୱକୁ ଦାମ୍ଭା ଦେଖାଇବା ଦ୍ୱାରା ସେ କହିବାକୁ ଚାହୁଁଛନ୍ତି ଯେ ବନ୍ଦନାର ବ୍ୟକ୍ତିତ୍ୱରେ ଗୋଟାଏ ରହସ୍ୟ ଅଛି, ସେ ଯାହାର ସନ୍ଧାନରେ ଆସିଛନ୍ତି ଏଠିକି ଶେଷଥର ପାଇଁ, ଏଭଳି ଧାରଣା ତାଙ୍କ ମନକୁ ଆସିଲା ବୋଲି କହିଲେ ଭୁଲ ହେବ । ତେବେ ସେ ନିଜକୁ ଚେତାଇ ଦେଲେ ଯେ ସେ ଏଠିକି ଆସିଛନ୍ତି ବିଗତା, ବୁଢ଼ୀ ଓ ମୃତା ବନ୍ଦନାକୁ ଦେଖିବା ପାଇଁ, ତାର ସ୍ୱାମୀର ନିର୍ବୋଧତାକୁ ନୂଆ ଭାବରେ ହେଜିବା ପାଇଁ ନୁହେଁ । ଅର୍ଥାତ୍ ସେ ଯେଉଁଠି ବସିଛନ୍ତି, ସେଠି ବନ୍ଦନାର ପାଦ ଦିଟା ଛଡ଼ା ଆଉ କିଛି ଦେଖାଯାଉ ନାହିଁ ।··· ତା ପାଦ ସାଙ୍ଗରେ ମୋର କ'ଣ ସମ୍ପର୍କ ଥିଲା ଯେ—?

ନ ଥିଲା ? ସତ କହୁଛ ? ବରଂ ତା' ଦେହର କୌଣସି ଗୋଟିଏ ଅଂଶକୁ ବୁଝିବାରୁ ବାଦ୍ ଦେଇଛ, ତାର ଅବହେଳା କରିଛ ବୋଲି କହିପାରିବ ?

ଓଃ । ସେ କଥା ପଡ଼ନାହିଁ । କଲୁଷକାଳିମା ସବାଙ୍ଗରେ ଲାଗିଯାଏ । ଲାଗିଯିବାକୁ ବାଧ୍ୟ ଯେତେବେଳେ ତମେ ତାକୁ ଲୁଣେଇ ଧରି ପିଲଙ୍କ ପରି, ପାଗଳଙ୍କ ପରି । କିନ୍ତୁ ମୋ ଜିଜ୍ଞାସାର ସ୍ପେକ୍‌ମେଣ୍ଟ ବି ନାହିଁ ଏଇ ସିଠା ଫାସୁଲା ପାଦ ଦିଟାକୁ ଦେଖିଲେ । ମୋତେ ତା ମୁହଁ ଦେଖିବାକୁ ପଡ଼ିବ । ଚିଟ୍‌କିନ ନୁହେଁ, ନିଠେଇ କରି, ଚୁଣ୍ଡାଦିଆ ନାକପୁଡ଼ା ସତ୍ତ୍ୱେ ! ମୁହଁ ଦେଖାରୁ ଆଡ଼େଇ ହୋଇଯିବାର କୌଣସି କାରଣ ନାହିଁ, କହିବାକୁ ଗଲେ ମୁଁ ଖାସ୍ ସେଇଥିପାଇଁ ଆସିଛି । ନିର୍ଜୀବ ହେଲେ ବି ତାର ଭାବ ମୋତେ କହିଦେବ ଯେ ମରିଗଲାରୁ ସେ କିଛି ବଦଳିଛି କି ନାହିଁ ମୋ ପାଇଁ, ତାର ସ୍ମୃତିସ୍ୱରୂପ, ସେଥିର ଅସହାୟପଣ···

ସେହେତୁ ଜତେନ୍‌ବାବୁ ସୁବିଧା ଦେଖି ଆଉ ଗୋଟିଏ ଖାଲି ଜାଗାକୁ ପୁଣି ଆସିଲେ, ଯେଉଁଠି ଶାୟିତା ମୃତାଙ୍କ ମୁହଁ ଦେଖାଯିବ ଭଲ ଭାବରେ । ଏବଂ ତାଙ୍କୁ ଦେଖିଲେ । ଆତୁର ଦେଖିଲେ । ଏବଂ ସେଇଠୁଁ ଗୋଟାଏ ଲମ୍ବା ଆଙ୍ଗୁଳି ନିର୍ଦ୍ଦେଶ କରି କହିଲେ ନିଜକୁ, ଖେଳଟାକୁ ଜିତିଗଲି ପରି—

ମୁଁ କହୁ ନଥିଲି ? ଆତୁର ଅସୁନ୍ଦର । ଅର୍ଥାତ୍ ମୁଁ ତାର ଅସଲ ରୂପ ଦେଖିପାରୁଛି, ଏଇକ୍ଷଣି, ଯାହା ଦେଖି ପାରିନଥିଲି ସେବେ । ଏବଂ ତାହା ଖାପ୍ ଖାଇଯାଉଛି ମୋର ପରବର୍ତ୍ତୀ ଅନୁଭୂତି ସାଙ୍ଗରେ । ଯେଉଁଥିପାଇଁ ତାକୁ ଫିଙ୍ଗି ଦେଇଥିଲି ନର୍ଦ୍ଦମାରେ, କଳା ଚକଚକ ଗନ୍ଧିଆ ପାଣିର ପ୍ରବାହରେ, ଏବଂ ଯେତେକ ବର୍ଜିତ ବସ୍ତୁର ଗହଣରେ । ଆଜି ଆସି ଚଉଦଶ ବର୍ଷ ହେଲାଣି ।

ବେଶ୍, ଜିଜ୍ଞାସା ପୂର୍ଣ୍ଣ ହୋଇଗଲା ! ବାଞ୍ଛିତ ପୂର୍ତ୍ତି, ସମାପ୍ତି । ଉଠ, ଏଥର ଜତେନ୍‌ବାବୁ, ଆଉ ଡେରି କାହିଁକି ?

ଜତେନ୍‌ବାବୁ ଉଠି ଠିଆହେଲେ । ଏବଂ ସେହି ସମୟରେ ସେ ମୁହାଁମୁହିଁ ହେଲେ ବ୍ରିଗେଡ଼ିଅରଙ୍କ ସାଙ୍ଗରେ । ବାଲ୍‌ସାହେବ୍ ଅନେଇଛନ୍ତି ତାଙ୍କ ଆଡ଼କୁ, ଦୋଦୋଚିନ୍ତା ହୋଇ । ଜତେନ୍‌ବାବୁ ଅଳ୍ପବହୁତ ହସହସ ହେବାକୁ ବାଧ୍ୟ ହେଲେ, ଶୋକର ବାତାବରଣ ସତ୍ତ୍ୱେ । ହେଲେ ତାଙ୍କୁ ଚିହ୍ନା ଦେବାକୁ ପଡ଼ିଲା ନାହିଁ । ବାଲ୍‌ସାହେବଙ୍କ ଚଲ୍ଲ ଆଖି ହଠାତ୍ ଝଲି ଉଠିଲା, ଏବଂ ସେ ହାତ ବଢ଼େଇଲେ କରମର୍ଦ୍ଦନ ପାଇଁ—

"ୟୁ ଆର୍···ଆପଣ···ଆପଣ ମହାପାତ୍ର···ଦିଲ୍ଲୀରେ ଦେଖା ହୋଇଥିଲା । ଅନେକ ଦିନ ତଳେ । ରାଇଟ୍ ?"

"ରାଇଟ୍"

ବ୍ରିଗେଡ଼ିଅରଙ୍କ ମୁଖମଣ୍ଡଳ ଉଦ୍‌ଭାସିତ ହେଲା ଶହେରୁ ଶହେ ମାର୍କ ରଖିଲା ପରି । ସେଇଠୁଁ କରମର୍ଦ୍ଦନରୁ ଫେରୁଥିବା ଆସିଥିବା ହାତ ପୁଣି ଚିପି ଧଇଲେ ତାର ସାଥିକୁ ଏବଂ ତାକୁ ଛାଡ଼ିବାକୁ ନାରାଜ୍ ।

ଆରେ, କଥା କଅଣ ? ମୁଁ କଣ ତମ ପିଲାଦିନର ଦୋସ୍ତ ? କେବେ କେଉଁ ସୁଦୂର ଅତୀତରେ ତମ ସାଙ୍ଗରେ ହେଲମେଲ ହୋଇଥିଲି କେଇଟା ଦିନ, ଏବଂ (ଦୁଃଖର ବିଷୟ) ତା'ଠାରୁ ଅଧିକ ହେଲମେଲ ହୋଇଥିଲି ତମ ସ୍ତ୍ରୀଙ୍କ ସାଙ୍ଗରେ, ତା' ବୋଲି ମୋ ହାତକୁ ଏମିତି ମୁଠେଇ ଧରିଛ କାହିଁକି ଘଣ୍ଟାଏ ହେଲା ? କେଉଁ ଅଧିକାରରେ ?

କିନ୍ତୁ ଜତେନ୍‌ବାବୁ ତଳେ ହେଲେ ପ୍ରଚେଷ୍ଟା କରିପାରିଲେ ନାହିଁ ତାଙ୍କ ହାତକୁ କାଢ଼ି ନେବା ପାଇଁ । ଅଧିକନ୍ତୁ କ୍ଷମା ମାଗିଲା ପରି କହିଲେ—"ମୁଁ

ଜାଣିଛୁ ଆପଣ ଏଇଠି ଆସି ଅଛନ୍ତି ଗ୍ରାଣ୍ଟ୍‌ହୋଟେଲ୍ କଲ ପରେ । କିନ୍ତୁ ମୁଁ ଆସିବ ଆସିବ ହୋଇ ଆସିପାରିଲି ନାହିଁ । ଆଜି ଯୋଉଠୁ ଶୁଣିଲି ଯେ···''

ହାତ କୋହଳ ହୋଇଗଲା । ଝୁଲିଆସିଲା ଯଥା ସ୍ଥାନକୁ । ଏବଂ ବ୍ରିଗେଡ଼ିଅର୍ ଗୋଟାଏ ଲମ୍ବା ଦୀର୍ଘନିଃଶ୍ୱାସ ପକେଇ କହିଲେ, ''ଓ୍ୱେଲ୍···ଓ୍ୱେଲ୍··· ଦ୍ୟାଟ୍‌ସ୍ ଲାଇଫ୍ ।''

ଠିକ୍ । ଫୌଜି ସ୍ୱାମୀମାନଙ୍କର ଠିକ୍ ଏମିତି କହିବା କଥା ତାଙ୍କ ପତ୍ନୀକୁ ହରାଇଲେ । କିନ୍ତୁ ମୁଁ ମଧ୍ୟ କିଣ କହି ନାହିଁ ମୋର ଯାହା କହିବା କଥା, ଯେମିତି କହିବା କଥା ? ସେତିକି ମିଛ କିଣ ଯଥେଷ୍ଟ ନୁହେଁ ଲୌକିକତା ରକ୍ଷା କରିବା ପାଇଁ ? ବେଶ୍, ଏଥର ଫେରି ଚାଲ ଘରକୁ । ଗଣ୍ଡପା, ସ୍ୱପତ୍ନୀ ସୁମିତା, ମୁଖ୍ୟମନ୍ତ୍ରୀଙ୍କର ପ୍ରେସ୍ କନଫରେନସ୍ ପାଇଁ ପ୍ରଶ୍ନାବଳୀର ଚଠା, ସଦ୍ୟଜାତ ଅପରିଚ୍ଛନ୍ନଆ ବଳେଇଛୁଆଗୁଡ଼ାକୁ କୌଣସିମତେ ଉଡ଼ାଦେବାର ଦାୟିତ୍ୱ ··ଇତ୍ୟାଦି ଇତ୍ୟାଦିର ବର୍ତ୍ତମାନ ଓ ବାସ୍ତବ ସଂସାରକୁ । ଆଉ କାହିଁକି ?

ବ୍ରିଗେଡ଼ିଅର୍ ତାଙ୍କୁ ବଳେଇ ନଥିଲେ ରହିଯିବା ପାଇଁ । ବିଦାୟୀ ନମସ୍କାର ବି ପକାଇ ନଥିଲେ ଆଗଭର ହୋଇ । ଖାଲି ଏତିକି କହିଲେ, ''ରବି ଆସି ପହଞ୍ଚିଯିବ ଏଇକ୍ଷଣି । ପ୍ଳେନ୍ ଲ୍ୟାଣ୍ଡ୍ କଲାଣି ବୋଲି ଶୁଣିଲି । ଆଉ କେତେ ସମୟ ଲାଗିବ କି ଟ୍ୟାକ୍‌ସିରେ ? ସେ ଆସିଲା ମାତ୍ରେହିଁ ନେଇଯିବା ବଡିକୁ ।''

ଅକାରଣରେ ଜିତେନ୍‌ବାବୁ ପଚାରିଲେ, ''କୋଉଠିକି ?''

''କ୍ରିମାଟୋରିଅମ୍'', ବ୍ରିଗେଡ଼ିଅର୍ କହିଲେ, ''ମୋତେ କହିଯାଇଛି ଯେ ଦେହଟାକୁ ଅଯଥାରେ କଷ୍ଟ ଦେବା ଦରକାର ନାହିଁ ।''

ସେଇଠୁଁ ଜିତେନ୍‌ବାବୁ କିଣ ଭାବିଲେ ଯେ ତା'ହେଲେ ବିଶେଷ କିଛି ଡେରି ହେବ ନାହିଁ, ତେଣୁ ଆଉ ଘଣ୍ଟାଏ ଖଣ୍ଡେ ରହିଗଲେ ଯାଏ ? କିନ୍ତୁ ସହଳ ହେଉ କି ଡେରି ହେଉ ତମର ଆଉ ଦରକାର କିଣ ଥିଲା ରହିବା ପାଇଁ ? କେହି ତୁମକୁ ବାଧ କରୁ ନଥିଲା । ବ୍ରିଗେଡ଼ିଅରଙ୍କ ଯାଚନା, ଲୌକିକତାର ତାଡ଼ନା ବା ଆଉ କିଛି । ତଥାପି ତମେ ଗୋଟାଏ ଅନିର୍ଦ୍ଦିଷ୍ଟ 'ଓ-କେ' ବୋଲି କହି ସେଗ୍ରାଏ ବୁଲି ଆସି ପୁଣି ବସି ପଡ଼ିଲ କାହିଁକି ତୁମର ପୂର୍ବ ସ୍ଥାନରେ, ହୁଏତ ମୃତାଙ୍କ ନିକଟରେ ? ଜିତେନ୍‌ବାବୁଙ୍କୁ ଏହି ପ୍ରକାର ପ୍ରଶ୍ନ ପଚାରି ହୋଇଥିଲେ ସେ ବୋଧହୁଏ ପାଲଟା ଆକ୍ରମଣ କରି କହିଥାଆନ୍ତେ—କିଣ କ୍ଷତି ହୋଇଗଲା ଟିକେ ରହିଗଲାରୁ ? ସୌଜନ୍ୟ ହେଉ କି ସମ୍ବେଦନା, ସେଥିରେ ହଜାରେ ମିଛ ଥାଉ କି ଲୋକଦେଖାଣିଆ ପଣ, ତାକୁ ଟିକେ

ବଢ଼ାଇଦେଲେ କ୍ଷତି କଣ ? ଅଧିକନ୍ତୁ 'ନ ଦୋଷାୟ' ବୋଲି ଗୋଟାଏ କଥା ଅଛି ନା ନାହିଁ ?

ଯାହାହେଉ ଜଗନ୍ନାଥ୍‌ବାବୁ ପୁଣି ବସି ରହିଲେ । ସମ୍ଭବତଃ ନିମାଣ୍ଟୋଣଅମ୍ ଯାଇ ମୃତାଙ୍କ 'ବଡ଼' 'ଦେହ, ତଥା ଆପଣା ଜଙ୍ଗଲସାର ଭସ୍ମାବଶେଷ ଦେଖି ଆସିବା ପାଇଁ । ଆଉ ଟିକେ କଷ୍ଟ ହେଲେ ହେଉ ପଛେ ।

ମୁହଁଟାରେ ଆଉ ଅଧିକା କଣ ଅଛି ଦେଖିବା ପାଇଁ ? ଗାଲ ଚହଲା କେଉଁଠୁ କେଉଁଯାଏଁ ଧସି ଯାଇଛି, କେସେଡ଼ ହୋଇ ପଡ଼ିଛି ତାର ଚଳ୍ଟା କରିବା ପାଇଁ ? ନା ତାକୁ ଛୁଇଁଲେ କେତେ ଥଣ୍ଡା ଲାଗୁଥିବ ଏଇକ୍ଷଣି, ତାର ଅନୁମାନ କରିବା ପାଇଁ ? ଜଗନ୍ନାଥ୍‌ବାବୁ ବାରମ୍ବାର ତାଙ୍କ ଦୃଷ୍ଟି ଫେରାଇ ଆଣି ଅନାଉଥାଆନ୍ତି ସମବେତ ପରିବାର ଓ ବନ୍ଧୁ ପରିଜନଙ୍କ ଆଡ଼କୁ । କହିଲେ, ମୋ କାମ ସରିଗଲାଣି, ମୁଁ ଏଥର ଖାଲି ତମମାନଙ୍କୁ ଦେଖିବାକୁ ଚାହେଁ, ତମମାନଙ୍କ ମୁହଁକୁ ଓ ଚାହାଣିକୁ । ଏବଂ ଭାବିବାକୁ । ତମମାନଙ୍କ ଶୋକକୁ କଳିବା ପାଇଁ । ସେଥିରେ କେତେ ଖାଣ୍ଟି, କେତେ ଭେଜାଲ୍ । ଦେଖିଲେ ଜଣେ କିଏ ସୁଁ ସୁଁ ହେଉଛି, ଆଉ ଜଣେ ପୂରାପୂରି ବୋକା ପାଲଟିଗଲା ପରି ଦିଶୁଛି, ଆଉ ଜଣେ ଥାଇ ଥାଇ ରୁମାଲ୍‌ରେ ମୁହଁ ପୋଛୁଛି···

କିନ୍ତୁ କୋଉ ମାପକାଠି ଅଛି ତମ ପାଖରେ ଜାଣିବା ପାଇଁ ଯେ ଇଏ ସତ, ସିଏ ମିଛ ? ଅଥବା ମୃତା ନାରୀ ଯାହାକୁ ଯେତେ ଦେଇଥିଲେ ତାଙ୍କ ଜୀବଦ୍ଦଶାରେ, ସେହି ପରିମାଣରେ ତାର ପ୍ରତିଦାନ, ଲୁହ, ଓହଳା ମୁହଁ, କି ଅନ୍ୟ କେଉଁ ଅଭିବ୍ୟକ୍ତିର ଅର୍ଘ୍ୟ ପାଉଛନ୍ତି ନା ନାହିଁ ? ତା'ଛଡ଼ା ତମର ସେଥିରେ ମୁଣ୍ଡ ବଥଉଛି କାହିଁକି ? ତମକୁ ତ ସେ ଯାହା ଦେଇଛି ସେ ତ ପୂରାପୂରି ଅସନା, ଉଚ୍ଛା କାମୁକତା । ଯାହାର କୌଣସି କାରଣ ନଥିଲା ତା' ଆଡ଼ୁ କି ତମ ଆଡ଼ୁ, ତାର ଅଭାବ କି ତମର ଅଭାବ । ସେ ତ ପ୍ରମାଣ ଦେଇଛି ଯେ ସେ ତା' କ୍ୟାପ୍‌ଟେନ୍ ସ୍ୱାମୀକୁ ଭାରି ଭଲ ପାଉଥିଲା । ତମ କଥା ଗୁଡ଼, ତମେ ତ ସୁଜାତାକୁ ଏତେ ଭଲ ପାଇଥିଲ ସେତେବେଳେ, ଯେ ତା'ପାଖକୁ ଦିନେ ଛଡ଼ା ଦିନେ ଘଣ୍ଟେ ଚାରି ନ ଦେଲେ ତମ ପେଟ ପୂରୁ ନ ଥିଲା । ସେଇ ଏକାନ୍ତ ଅକାରଣ, ଅନାବଶ୍ୟକ, ଏବଂ ସେହେତୁ ଅସନା ଆଫେୟାର୍‌ଟାକୁ ତ ତମେ କେବେଠୁଁ ଫିଙ୍ଗି ଦେଇଛ ନର୍ଦ୍ଦମାରେ, ଆଜି ଖାଲି ଆସିଛ ଏଠିକି ଗୋଟାଏ ମଜା ଚାଖିବା ପାଇଁ, ଆଉ ତା ବି ପୂରା ହୋଇଗଲାଣି ଏଇକ୍ଷଣି, ତମେ ଅପର ବ୍ୟକ୍ତି, ଯାତମତ ଅପର, ଲୋକ୍ଷନାତ୍ର, ତମର କଣ ଦରକାର ଜାଣିବା ପାଇଁ ଅନ୍ୟ ଶୋକାଳୁଙ୍କ ବିଷୟରେ ?

ତମେ ତା'ଠାରୁ କିଛି ପାଇଲ ନାହିଁ (କି ପାଇ ପାରିଲ ନାହିଁ), ତା' ବୋଲି ଅନ୍ୟମାନେ କଣ ନାନାଦି ସୁଖ ପାଇ ନଥିବେ ତା'ଠୁଁ, ଯାହାକୁ ସେମାନେ ଝୁରି

ହେଉଛନ୍ତି ? ସ୍ୱାମୀ କଥା ଛାଡ଼, ବାକି ଅନ୍ୟମାନେ, ପୁଅପୁତୁରା, ଝିଅଝିଆରୀ, ଭାଇଭଉଣୀ, ଦିଅର ନଣନ୍ଦ, ସାଙ୍ଗସାଥୀ···ସେଥିର ଭଲମନ୍ଦ ସୁନ୍ଦର ଅସୁନ୍ଦର ବିଷୟରେ କ'ଣଟା ଜଣା ଅଛି ତମକୁ ?

ଏହି ସମୟରେ ଲୋକଗହଳିର ଶବ୍ଦ ଶୁଣାଗଲା, ଏବଂ ଗୃହୁଁଗୃହୁଁ ପଶି ଆସିଲା ଘର ଭିତରକୁ । ଆଗୁଆ ହୋଇ ଅଛି ଯେଉଁ ଜଣକ, ତା' ଆଖିରେ ଲୁହ ଧରୁ ନାହିଁ, ଏକ୍‌ଦମ୍ ବନ୍ଦନା ଭଳି ଦେଖିବାକୁ, ଠିକ ସେମିତିକା ତଳ ଓଠ, କୋମଳ-ମାଂସଳ (ମାନେ ସେତେବେଳେ ଯେମିତି ଦିଶୁଥିଲା), ସେଇ ନିଶ୍ଚୟ ରବି, କୁଏଟ୍‌ରୁ ଆସି ପହଞ୍ଚିଲା ଏଇକ୍ଷଣି । କିନ୍ତୁ ତା' ପଛକୁ ଆଉ ଜଣକ କିଏ ? ଫୌଜି ପୋଷାକ ପିନ୍ଧିଛି । ରବିଠାରୁ ଯଥେଷ୍ଟ ବଡ଼ ହେବ ନିଶ୍ଚୟ, କିନ୍ତୁ ବୁଢ଼ା ତଳେ ଦିଶିବ ନାହିଁ, ମୋ ପରି କି ବ୍ରିଗେଡ଼ିଅର୍ ପରି । ସିଏ ବି କୋଉ ଦୂରରୁ ଆସି ପହଞ୍ଚିଲା ପରି ଦିଶୁଛି । ଆଉ ସିଏ କାନ୍ଦୁଛି ନା କଅଣ ?

ଏତେ ବଡ଼ ପୁଅଟା ଏମିତି କଣ ହେଉଛି ମ ? ରବି ଆଣ୍ଠେଇ ପଡ଼ିଲା ମା'ଆର ଶବ ପାଖରେ, ଓ କହିଁକହିଁ ହୋଇ କାନ୍ଦିଲା ସେଥିର ଫୁଲରେ ଓ ବରଫରେ ଲେପ୍‌ଟି ଯାଇ । ବୋହୂ ପାଦ ଛୁଇଁ ପ୍ରଣାମ କଲା, ଓ ପଣତରେ ଲୁହ ପୋଛିଲା । କିନ୍ତୁ ସବୁଠାରୁ ବିଚିତ୍ର ଦୃଶ୍ୟ ଦେଖାଇଲା ତାଙ୍କ ଚାରିପାଞ୍ଚ ବର୍ଷର ପୁଅ ଝଣ୍ଟିକ । ତାକୁ ଯେତେ ମନା କଲେ ବି ସେ ମାନୁ ନଥାଏ । 'ନହାଁ ! ନହାଁ ! ଗ୍ରେଡ଼ୋ ମୁଟେ !' କହି ପାଟି କରୁଥାଏ, କଣ ନା ସେ ଜେଜେମାକୁ ମୁହଁ ଲଗେଇ ଗେଲ କରିବ । ଜଣେ କିଏ ବୟସ୍କା ସଫେଇ ଦେଲା ପରି କହିଲେ—କଣ କରିବ ବିଚରା ? ଜେଜେମା ତାକୁ ଶିଖେଇଛି ଯେ ଯୁଆଡ଼ୁ ଆସିଲେ ଆଗେ ମୋତେ ଗେଲ କରିବୁ, ସେଇଠୁଁ ମୁଁ ତୋତେ ଗେଲ କରିବ, ତାପରେ ଯୋଉ କଥା । ଗୋଟିଏ ଗାଲରେ ନୁହେଁ ଦି' ଗାଲରେ । ଆଜି ଏତେ ଦିନ ପରେ ଫେରିଛି ବିଦେଶରୁ, ଅଥଚ ତାକୁ ମନା କରା ହେଉଛି ? କାହିଁକି ? କାହିଁକି ? ଜେଜେମା ମରିଯାଇଛି ତ କଣ ହେଲା ସେଇଠୁଁ ? ଖାଲି ଦୂରରୁ ଚୁମା ଦେବ, ମୁହଁରେ ମୁହଁ ଲଗାଇବ ନାହିଁ ?

ସହଜେ ଯେଉଁ ଅନ୍ତରଙ୍ଗ ଶୋକ ସ୍ତିମିତ ହୋଇ ରହିଥିଲା ଏତେବେଳ ଯାଏଁ ତାହା ପୁଣି ଫୁଟି ଫାଟି ପଡ଼ିଲା । ଶୋକ ସଶବ୍ଦ ହେଲା । ଯେଉଁମାନେ ପରିବାରର ନିଜ ଲୋକ ନୁହଁନ୍ତି ସେମାନେ ମଧ୍ୟ ଆହା-ଚୁ ଚୁ କଲେ, ପରସ୍ପରଙ୍କ ମଧ୍ୟରେ କୁହାକୁହି ହେଲେ ମୃତା ନାରୀଙ୍କର ସ୍ନେହଶ୍ରଦ୍ଧା, ଅତିଥିସତ୍କାର ଇତ୍ୟାଦି ବିଷୟରେ । କେତେଜଣ ନୀରବରେ ମୁଣ୍ଡ ହଲାଇଲେ । ଏଇଆକୁ କୁହନ୍ତି ନିୟତିର ବିଡ଼ମ୍ବନା, ଏଇ ଭାବରେ ।

ଜିତେନ୍‌ବାବୁଙ୍କର ମନେ ହେଲା ଯେ କେବଳ ସେ ଭିନ୍ନ ଏମାନଙ୍କଠାରୁ । ସେ ଏହି ସବୁ କ୍ରିୟାକଳାପର ଧାର ଧାରନ୍ତି ନାହିଁ । ସ୍ୱାଭାବିକ । କାହିଁକିନା ସେ ଏଠିକି ଶୋକ ମନେଇବାକୁ ଆସି ନାହାଁନ୍ତି । ସେ ଆସିଛନ୍ତି ଗୋଟାଏ ବହିଷ୍କୃତ ବିତାଡ଼ିତ ବସ୍ତୁକୁ ଦେଖିବା ପାଇଁ । ପରଖିବା ପାଇଁ ତାର ନୂଆ ରୂପରେ ।

କିନ୍ତୁ କେଜାଣି କାହିଁକି ତାଙ୍କୁ ଟିକେ ବିରକ୍ତ ଲାଗିଲା । ହଁ ମୁଁ ଜାଣେ ମୋର ଦୃଷ୍ଟିକୋଣ ଭିନ୍ନ ତମମାନଙ୍କ ଠାରୁ, ମୋର ଅନୁଭୂତି ମଧ୍ୟ ଭିନ୍ନ । କିନ୍ତୁ ତମେ ଯେଉଁ ଢଙ୍ଗ ଦେଖଉଛ, ତାକୁ ବାହୁଲ୍ୟ ବୋଲି କୁହାଯାଏ । ଓଭର-ଡୁଇଙ୍ଗ୍ । ଅବଶ୍ୟ ମୋର ଜାଣିବା ଉଚିତ ଯେ ହସିବା ପରି କାନ୍ଦିବା ମଧ୍ୟ ଗୋଟାଏ ସଂକ୍ରାମକ ରୋଗ । ତା' ସାଙ୍ଗରେ ବାସ୍ତବ ଦୁଃଖର କୌଣସି ସମ୍ପର୍କ ନାହିଁ । ତଥାପି···ସବୁ କଥାର ଗୋଟାଏ ସୀମା ଅଛି !

ଡ୍ୟାମ୍ ଇଟ୍ । ଜିତେନ୍‌ବାବୁ ରାଗିଲେ ।···ହଁ, ମୁଁ ମୋ ମୂଲ୍ୟାୟନରେ ଅଟଳ ରହିଛି । ସେ ଜିନିଷଟା ଗନ୍ଧିଆ ଥିଲା । କିନ୍ତୁ, କହିବାକୁ ଗଲେ ମୁଁ ତୁମମାନଙ୍କ ଠାରୁ ଅଧିକ ଅନ୍ତରଙ୍ଗ ଥିଲି, ତାର ସ୍ୱାମୀ ଓ ପିଲାଛୁଆଙ୍କୁ ଛାଡ଼ିଦେଲେ । ଖାଲି ଦୈହିକ ସମ୍ପର୍କର ଘନିଷ୍ଠତା ଯୋଗୁଁ ନୁହେଁ । ବରଂ ସେହି ଘନିଷ୍ଠତାହିଁ କାଳ ହେଲା । କିନ୍ତୁ···କିନ୍ତୁ ମୁଁ ଯେତେବେଳେ ତା' କୋଳରେ ଶୋଇରହୁଥିଲି ଓ ସେ ମୋତେ ଆଉଁସି ଦେଉଥିଲା, ପୁଣି ସେ ଯେତେବେଳେ ମୋ ମୁଣ୍ଡବାଳରେ ହାତ ଚଳେଇ ମୋତେ ଚଢ଼ଉଥିଲା, ଏବଂ ମୋ ଜିଜ୍ଞାସାର ପେଟ ପୂରିଲା କି ନାହିଁ ବୋଲି ପଚାରୁଥିଲା, ସତେକି ସେଇ ଥିଲା ମୋ ଜିଜ୍ଞାସାର ବସ୍ତୁ, ଏହିସବୁ ନାନା କ୍ରିୟାକଳାପରେ ସେ କଣ ମୋତେ ସତସତିକା ସୁଖ ଦେଉ ନ ଥିଲା ? ମୋର ଦୁଃଖ କଳ୍ପିତ ହେଉ କି ଯାହା ହେଉ ତାକୁ ପୋଛିଦେଇ ଦେଉ ନ ଥିଲା ? ଏବଂ ମୋର ଅହମିକାର ଭାରିପଣକୁ ହାଲ୍‌କା କରିଦେଉ ନ ଥିଲା ? ତେଣୁ ମୁଁ ଯଥାର୍ଥରେ 'ଆହା' କହି ପାରିଥାନ୍ତି, ଦି' ଟୋପା ଲୁହ ବି ଗଡ଼େଇ ପାରିଥାଆନ୍ତି । କିନ୍ତୁ ମୁଁ ଭାବତରଳ ନୁହେଁ ତୁମମାନଙ୍କ ପରି । ତା'ଛଡ଼ା ମୋର ନୀତିବଦ୍ଧତାକୁ ସହଜେ ମୋଡ଼ି ଦେଇ ହେବ ନାହିଁ । ସାମଗ୍ରିକ ଦୃଷ୍ଟିରୁ ବିଚାର କରି ଦେଖିଲେ, ଖୋଲା ଆଖିରେ ବିଚାର କରି ଦେଖିଲେ ସେ ଜିନିଷଟା ଗନ୍ଧିଆ ଥିଲା । ଏକେ ବିଶ୍ୱାସଘାତକତା, ଦୁଜେ କାମୁକତା, ତୁଚ୍ଛା କାମୁକତା ।

ଇଚ୍ଛା କରିଥିଲେ ମୁଁ ନିଜକୁ ଠକେଇ ପାରିଥାଆନ୍ତି ଯେ ଆମ ସମ୍ପର୍କରେ ଅଳ୍ପବହୁତ ଭଲପାଇବା ଥିଲା । କିନ୍ତୁ ମୁଁ ସେମିତିକା ଲୋକ ନୁହେଁ । କଲ୍ ଏ ସ୍ପେଡ୍ ଏ ସ୍ପେଡ୍ । ତା' ବୋଲି ମୁଁ ଯେ ବନ୍ଦନା ପାଇଁ ଶୋକ କରିବାର

ଅଯୋଗ୍ୟ, କିମ୍ବା ସେ ଅଧିକାର ମୋର ନାହିଁ, ତା' ନୁହେଁ । ଅଛି, ତମମାନଙ୍କଠାରୁ ବେଶୀ, ଅଧିକାଂଶ ତମମାନଙ୍କ ଠାରୁ ।

ଏଇ ସମୟରେ ତାଙ୍କ ଆଖିରେ ପଡ଼ିଲା ସେ ଖବର ପଛେ ପଛେ ଆସିଥିବା ଫୌଜି ଲୋକଟି ଉତ୍ତେଜିତ ହୋଇ କଣ କହୁଛି ବ୍ରିଗେଡ଼ିଅରଙ୍କୁ, ଓ ସେ ତାକୁ ବୋଧ ଦେଉଛନ୍ତି, ତାକୁ ପାଖକୁ ଟାଣି ଆଣି । ଜିତେନ୍‌ବାବୁ କାନ ଡେରିଲେ । ଏବଂ ଯାହା ଶୁଣିଲେ ତାର ସାରାଂଶ ହେଲା ଏଇ ଯେ ତା' ପ୍ରତି କୁଆଡ଼େ ଘୋର ଅନ୍ୟାୟ କରାଯାଇଛି । ସେ କାଶ୍ମୀରରେ ଥାଉ କି କାହିନ୍ନମ୍‌ରେ, ତାକୁ କାହିଁକି ଆଗରୁ ଖବର ଦିଆଗଲା ନାହିଁ, ଯେମିତିକି ସେ ତା' ଭଉଣୀଙ୍କ ପାଖରେ ରହିପାରିଥାଆନ୍ତା ତାଙ୍କ ଶେଷ ମୁହୂର୍ତ୍ତରେ । ତାକୁ କାହିଁକି ତାର ଏଇ ଭାଗ୍ୟରୁ ବଞ୍ଚିତ କରାଗଲା ।

ଭଉଣୀ ! ଅବଶ୍ୟ ତୁ ବାଲ୍‌ସାହେବଙ୍କ ନିଜ ଭାଇ ନୁହେଁ, କୋଉ ପଞ୍ଜାବୀ ମହାରାଷ୍ଟ୍ରୀ, କି ହିନ୍ଦୁସ୍ତାନୀ, ତଥାପି ତୁ ଆଶା କରୁଥିଲୁ ଯେ—?

ଭଉଣୀ ? ତା'ହେଲେ ତୁ କଣ ସେଦିନକାର···ସେଇ ଫୌଜି ଟୋକା ଖଣ୍ଡିକ ଯେ ବାରମ୍ବାର ଆସୁଥିଲା ତାଙ୍କ ଘରକୁ, ମୁଁ ଦିଲ୍ଲୀରେ ଥିଲା ବେଳେ ? ଗୋରା ପତଳା ଟୋକା, ଛଇଛଟକର ସୀମା ନାହିଁ, ଲେଫ୍‌ଟେନାଣ୍ଟ୍, କଣ ତା ନାଆଁ ଟି, କୌଶଲ୍, ସମ୍ କୌଶଲ୍ ।

ହଁ, ସେଇ ହେବ ବୋଧହୁଏ । ଦରବୁଢ଼ା ହେଲାଣି, କିନ୍ତୁ ସେଇ ସୁନ୍ଦରିଆ (କହିବାକୁ ଗଲେ ମାଇଚିଆ) ଚେହେରା, ସେଇ ଠାଣି । ପୋଷାକରେ ଆଉ କେତେଟା ବ୍ୟାଜ୍ ଲଗେଇଲାଣି, ଏଇକ୍ଷଣି ଲେଫ୍‌ଟେନାଣ୍ଟ୍—କର୍ଣ୍ଣେଲ୍ କି କାର୍ଣ୍ଣେଲ୍ ହୋଇଯିବଣି । ତା' ନାଆଁ ମନେ ପଡ଼ୁ ନାହିଁ ସିନା, ଆଉ ସବୁ ମନେ ଅଛି । ମନେ ପଡ଼ୁଛି···

ସେଇ ସୋଗ ଡାକ । ପିଲ୍ଲଇଆପଣ । —ଭଉଣୀ, ଆଜି ମୋ ପାଇଁ କଣ ରଖିଛ କହିଲ ? ଗଲି ମୁଁ କଟେନ୍‌କୁ ଯିବ, ପିଆଜ କାଟିବ ତମ ସାଙ୍ଗରେ । ଭଉଣୀ କହିଲେ, 'ନନ୍‌ସେନସ୍', କିନ୍ତୁ ଇଏ ଅଳି କଲାରୁ ରାଜି ହୋଇଗଲେ, ଆଉ କହିଲେ ଯେ ହାତ କଟିଗଲେ ତାଙ୍କ ଦୋଷ ନାହିଁ । ସେଇଠୁ ଇଏ କହିଲେ 'ନୋ ଫିଅର୍ସ୍', ହାତ କଟିଗଲେ ଭଉଣୀଙ୍କୁ ଜଣାଅଛି କଣ କରାଯିବ — କଣ ମିଛୁଟାରେ ମୋ ଭଉଣୀ ହୋଇଛନ୍ତି ? ଇତ୍ୟାଦି ଯେତେ ସବୁ ଶ୍ଳେଷପରା କଥା । ମନେ ଅଛି···

ଆଉ ମନେ ଅଛି ସେଦିନର ଉପରବେଳା । କାମରୁ ମହଲ ସହ୍ୱଲ ଫେରି, ଆସିଥିଲି । ବେଲ୍ ବଜାଇଲାରୁ ବନ୍ଦନା କବାଟ ଖୋଲାଲା ମୋ ପାଇଁ । ଭଦ୍ର-ମହିଳାଙ୍କ ସ୍ଖଳିତ ବସନ, ଅବିନ୍ୟସ୍ତ କେଶ, ଲୋସି ହୋଇଯାଇଥିବା ସିନ୍ଦୂର ଇତ୍ୟାଦି

କହି ଦେଉଥିଲି ଯେ ସେ ଶୋଇବା ଶେଯରୁ ଉଠି ଆସିଛନ୍ତି ତରତର ହୋଇ । ତାଙ୍କୁ ମଦାଳସା, ମନ୍ଦାକାନ୍ତା, ସ୍ୱପ୍ନବାସବଦତ୍ତା, ଇତ୍ୟାଦି ବିଭିନ୍ନ ବିଶେଷଣରେ ବିଭୂଷିତ କରି ଆଗେଇ ଯିବାକୁ ମନ ହେଉଥିଲା । କିନ୍ତୁ ତାଙ୍କ ପଛେ ପଛେ ହଠାତ୍ ଦେଖାଦେଲେ ଏଇ ଭଦ୍ରଲୋକ, ସ୍ୱାମୀଙ୍କ ବିଧିରେ । ମୋର ସବୁ ସପ୍ନ ପାଣି ଫାଟିଗଲା । ବିଶେଷଣଗୁଡ଼ାକ ଅକାମୀ ହୋଇଗଲା । ବୁଝିଲି ବ୍ୟାପାରଟା କଅଣ । ମୁଁ କଣ ଏଡ଼େ ବୋକା ହୋଇଛି ?

ମୁଁ ତୋତେ ଦୋଷ ଦେଉନାହିଁ । କାରଣ ମୁଁ ବି ଜଣେ ଗରାଖ ଥିଲି, ସେଇ ଗନ୍ଧଆ ମିଠେଇ ଦୋକାନର । କିନ୍ତୁ ତେଣୁ ତୁ ବି ଏଇ ପାଲରୁ ଅଲଗା ରହିଥାଆନ୍ତୁ ମୋ ପରି । ଅଥଚ ତୁ କାନ୍ଦ କାନ୍ଦ ଧାଇଁ ଆସିଛୁ ତାକୁ ଦେଖିବା ପାଇଁ, ଆଉ ରାଗୁଛୁ ଯେ ତୋତେ କାହିଁକି ଆଗରୁ ଖବର ଦିଆଗଲା ନାହିଁ ?

ପ୍ରେମ ? ହେଲା ଏବେ ସାଦା-ସୁନ୍ଦର ସ୍ୱାଭାବିକ ପ୍ରେମ, ଆଉ କିଛି ନୁହେଁ··· ନା ନା, ମିଛ ! ପୁରାପୂରି ମିଛ ! ତୁ ପୃଥିବୀଟାକୁ ଠକଉଛୁ, ଆଉ ନିଜକୁ ବି··· ଅବଶ୍ୟ ତୁ ଯଦି ପ୍ରକୃତରେ ସେଇ ଲୋକ ହୋଇଥାଉ ।

ହେଲେ ସେ ବିଷୟରେ କୌଣସି ସନ୍ଦେହ ରହିଲା ନାହିଁ ଯେତେବେଳେ ଜଣେ କିଏ ତାଙ୍କୁ କର୍ଣ୍ଣେଲ କୌଶଲ୍ ବୋଲି ସମ୍ବୋଧନ କଲା । ଏବଂ ଜଣାପଡ଼ିଲା ସେ କର୍ଣ୍ଣେଲ୍ ପ୍ରେମନାଥ କୌଶଲ୍ ପାଖଆଖରୁ କୋଉଠୁ ଆସି ନାହାନ୍ତି, ପ୍ରକୃତରେ କାଶ୍ମୀର ଘାଟିରୁ ଆସିଛନ୍ତି । ବିଶେଷ ଚେଷ୍ଟାଚରିତ୍ର କରି ଛୁଟି ନେଇ ଆସିଛନ୍ତି, ତାଙ୍କ ସାଉଜକୁ ଦେଖିବେ ବୋଲି ସେ ପୋଡ଼ା ହେବା ପୂର୍ବରୁ ।

ମିଛ, ମିଛ ! ପୁରାପୂରି ମିଛ ।

···'ରାମ୍‌ନାମ୍ ସତ୍ୟ ହେ । ରାମ୍ ନାମ୍ ସତ୍ୟ ହେ' ! ଶବ ସାଙ୍ଗରେ ଗଲାବେଳେ ଏଇ ଧ୍ୱନିର ଘନଘନ ପ୍ରହାର ତାଙ୍କ ମନ୍ତ୍ରପାଠରେ ବାଧାଦେଇପାରିଲା ନାହିଁ । ସେ ତଥାପି କହି ଚାଲିଥିଲେ ମନକୁ ମନ, ତା ସାଙ୍ଗରେ ପାଳି ଦେଲାପରି ମିଛ, ମିଛ, ପୁରାପୂରି ମିଛ । ଦେଖେଇ ହେଉଛି ତା ଭଲ ପାଇବା । ହେଲେ ମୁଁ ଜାଣେ କଣ ଅଛି ତା ଭିତରେ । ମୁଁ ବି ଏଇ ଢଙ୍ଗ କରି ପାରିଥାନ୍ତି ଇଚ୍ଛା କରିଥିଲେ । ଅନ୍ତତଃ ଟୋପାଏ ଲୁହ ଗଡ଼େଇ ପାରିଥାଆନ୍ତି ତା ପାଇଁ । କିନ୍ତୁ ମୁଁ ଭିନ୍ନ ଧାତୁରେ ଗଢ଼ା । ମୁଁ ସଚ୍ଚା । ଭେଜାଲ ନୁହେଁ ତା ପରି । ପୂର୍ଣ୍ଣଚ୍ଛେଦ ।

କିନ୍ତୁ ପୂର୍ଣ୍ଣଚ୍ଛେଦ ତିଷ୍ଠି ରହିପାରିଲା ନାହିଁ ଯେତେବେଳେ ଶବଟା ବାହାରି ଆସିଲା ଇଲେକ୍ଟ୍ରିକ୍ କ୍ରିମାଟୋରିଅମ୍‌ର ମେସିନ୍ ଭିତରୁ, ଗୋଟିପଣେ ପାଉଁଶ ହୋଇ । ଦେହଟାଏ ବିଆ ପାଉଁଶ । ତାକୁ ଦେଖି ତାଙ୍କର ହଠାତ୍ ମନେ ହେଲା ହେ ଲୁହ

ଝୋପାକ କୋଉଠି ଅଟକେ ଯାଉଛନ୍ତି ଆଖି ଭିତରେ । ମୁକୁଳି ଆସି ପାରୁନାହିଁ, ଆଉ ତାଙ୍କୁ ପୀଡ଼ା ଦେଉଛି । କାହିଁକିନା ସେଇ ଅଦେଖାଟା କହୁଛି—

ଆଉ ଚନ୍ଦ୍ରା ନାହିଁ ତମର । ତମର କି ତାର । କମ୍ପା ଆଉ କାହାର । କାରଣ ବନ୍ଧନ। ବି ମିଛ ହୋଇଗଲା । ତାର ଦେହ, ତାର ପ୍ରୀତି, ତାର ପୁଣ୍ୟ, ତାର ପାପ, ତାର ଅମୁକ ଆଉ ସମୁକ । ଏଣିକି ତମେ ସବୁ ଖଲାସ୍ !

ଖୁଣ୍ଟା ଦେଉଥିବା ଲୁହ ଝୋପାକ କେଉଁ ବାଟେ କେମିତି ଖଲାସ ହୋଇଗଲା କହି ହେବ ନାହିଁ. କିନ୍ତୁ ଗୋଟାଏ ଅସମ୍ଭାଳ ଧ୍ୱନି ଉଠି ଆସିଲା ତାଙ୍କ ମନ ଗହନରୁ—ନାଁ ! ନାଁ, ତମେ ମିଛ ନୁହେଁ । ମରିଯାଇଛି ବୋଲି କୁହ ନାହିଁ, ପାରି ହୋଇଯାଇଚି ଆଉ ଗୋଟିଏ ଜୀବନକୁ. ବୃହତ୍ତର ଜୀବନକୁ, ଯେଉଁଠି ଦେହ ନାହିଁ ସିନା, ଆଉ ସବୁ ଅଛି । ଆଲୁଅର ତେଜ, ପାଣିର ଛଳଛଳ, ପବନର ଫିରିଫିରି···ଯେତିକି ଆନନ୍ଦ ଏଇ ଅଭିଳ ସୃଷ୍ଟିକୁ ନେଇ । ଏବଂ ଦୟା କରି ଯାକୁ ନନ୍‌ସେନ୍‌ସ୍ ବୋଲି କୁହନାହିଁ । ଏଇ ହେଉଛି ଏକମାତ୍ର ସେନସ୍. ଏକମାତ୍ର ଉତ୍ତର ଆମ ଶେଷ ପ୍ରଶ୍ନର । ଆମ ସଭିଙ୍କର । ତମକୁ ମାନିବାକୁ ପଡ଼ିବ ମୁଁ ଯାହା କହୁଛି । ତମେ ସିନା ଇତର ସାଧାରଣ ନାରୀଟିଏ, ମୁଁ ପରା ଜ୍ଞାନୀ, ଜ୍ଞାନକୁ ଖୋଜି ଖୋଜି ବାହାର କରିବା ମୋର ବେଉସା ?

× × × ×

ବାରଦିନ ପରେ ଯେଉଁ ପ୍ରାର୍ଥନା ସଭା ଅନୁଷ୍ଠିତ ହେଲା ବ୍ରିଗେଡ଼ିଅରଙ୍କ ଘରେ, ତାଙ୍କ ଘର ଛାତ ଉପରେ, ସେଠିକି ବି ସେ ଯାଇଥିଲେ ।

ମନେ ହେଉଥିଲା ଛାତଭରା ଲୋକ ଓ ଆକାଶଭରା ତାରା । ଆଉ ଏଠିକା ଭଜନ କୀର୍ତ୍ତନର ଧ୍ୱନି ପହୁଂଚୁଛି ସେଠି, ସେମାନଙ୍କ ପାଖରେ । ଏବଂ ସେଇମାନେହିଁ ଆମେ । କିନ୍ତୁ କୋଉ ତାରାଟା ଭଲ ଓ କୋଉ ତାରାଟା ଖରାପ, କିଏ ଦୋଷୀ, କିଏ ନିର୍ଦ୍ଦୋଷ, କହିଲ ଦେଖି ? ବାବୁ, ଖାଲି ଗୋଟାଏ କାମ କରିବାର ଅଛି ଆମର ସେଠିକି ଯିବା ଆଗରୁ । କେଉଁ ସମଦୁଃଖୀର ହାତକୁ ଟିକିଏ ଚିପି ଧରିବା । ଅନ୍ତତଃ ସେତିକି ।

ଜତେନ୍‌ବାବୁ ନିରାଶ ହେଲେ ଜାଣି, ଯେ କର୍ଣ୍ଣେଲ କୌଶଲ ଆସିନାହାନ୍ତି ଏଠିକି । ଛୁଟି ପୂରିଲାରୁ କାଶ୍ମୀରକୁ ଫେରି ଯାଇଛନ୍ତି ତିନି ଚାରିଦିନ ହେଲା । ତେଣୁ ସେ କେବଳ ବ୍ରିଗେଡ଼ିଅରଙ୍କ ହାତକୁ ଚିପି ଧରିବାର ସୁଯୋଗ ପାଇଲେ । କହିଲେ, ତମେ ଯାହା କରିଥିଲ ସେଦିନ, ମୁଁ ତାକୁଇ ଫେରେଇ ଦେଉଛି ବୋଲି ଭାବନାହିଁ । ଏହାର ମୂଲ୍ୟ ନିଆରା । ଏବଂ ଆଉ ଜଣକ ହାଜର ହୋଇଥିଲେ ମୁଁ ତା ହାତକୁ ବି ଚିପି ଧରି ଥାଆନ୍ତି ଉତ୍ତମ ରୂପେ, ସର୍ବାନ୍ତଃକରଣରେ, ମୁଁ ସତ କହୁଛି··· ।

## ଜିଜ୍ଞାସୁ ଜିତେନ୍

ଜିଜ୍ଞାସୁ ଜିତେନ୍‌କୁ ଯେଉଁ ଶେଷ ଉତ୍ତର ମିଳିଥିଲା, ଯେତେବେଳେ ସେ ସ୍ୱର୍ଗୀୟା ବନ୍ଦନାର ସଦ୍‌ଗତି ପାଇଁ ଅନୁଷ୍ଠିତ ପ୍ରାର୍ଥନା ସଭାକୁ ଯାଇଥିଲା, ଏବଂ ବୁଝିଲା ଯେ ଏଇ ତାରିଖଟା ଭଲ ଆଉ ସେଇ ତାରିଖଟା ଖରାପ, ଇଏ ଦୋଷୀ ଆଉ ସିଏ ନିର୍ଦ୍ଦୋଷ ବୋଲି କଦାପି କହି ହେବ ନାହିଁ, ତାର ସେଇ ଅବବୋଧ ପରେ ମୋର କଣ କହିବାର ଅଛି ? ଖାଲି ଏତିକି ଦୁଃଖ ଯେ ହତଭାଗା ଏଇ ସାମାନ୍ୟ ସତକଥାଟାକୁ ବୁଝିପାରୁ ନ ଥିଲା ଏତେବେଳଯାଏଁ । ଉଚ୍ଛିଟାକୁ ଗୋଲେଇଦାଣ୍ଡି ହେଉଥିଲା ମନ ଭିତରେ ଯେ ମୁଁ ବ୍ରିଗେଡ଼ିୟର୍ ବାଲ୍ ସାହେବଙ୍କ ଘରକୁ ଯିବି କି ନାହିଁ, ବନ୍ଦନାର ମୃତ ଦେହକୁ ଦେଖିବା ଲାଗି, ଏବଂ ଗଲି ପରେ ମଧ୍ୟ ହଜାରେ ସଫେଇ ଦେଉଥିଲା ନିଜକୁ ଯେ ମୁଁ ଅନ୍ୟମାନଙ୍କ ପରି ଶୋକ ମନେଇବା ପାଇଁ ଆସି ନାହିଁ ଏଠିକି, ମୋର ତା ସାଙ୍ଗରେ କିଛି ସମ୍ପର୍କ ନଥିଲା, ମୁଁ ତାକୁ ମୋଟେ ଭଲ ପାଉ ନଥିଲି, ଇତ୍ୟାଦି । କିଓ, ସେଥିରୁ କଣ ମିଳିବ କାହାକୁ ? ତମକୁ, ବନ୍ଦନାକୁ, ବ୍ରିଗେଡିୟର୍ ବାଲ୍ ସାହେବଙ୍କୁ ନା ଚନ୍ଦ୍ରଗୁପ୍ତ କାଶ୍ୟପ୍ କେଉଁ ପଞ୍ଜୀକାରକୁ ଯେ ଲେଖି ରଖିବ ଯେ ୟାର ଦୋଷ ନୁହେଁ, ତାର ଦୋଷ ? ବାବୁ, ତାରିଖଟିଏ ହୋଇଗଲା ପରେ କଥା ସରିଲା । ସେଇଠୁଁ ତମେ କେଉଁ ସୁଦୂରରେ ଅପହଞ୍ଚରେ ଥାଇ ଖାଲି ଜୁକୁଜୁକୁ ହେବ । ବୋଧହୁଏ ଏତିକି ଜଣାଇବା ପାଇଁ ଯେ ମୁଁ ଦିନେ ବଞ୍ଚିଥିଲି । ସେଇ ବଞ୍ଚିଥିବା ଭିତରେ ଯାହାସବୁ କରିଗଲି, ସେଥିର ଭଲମନ୍ଦ ତଥାକଥିତ ପାପପୁଣ୍ୟ ସଞ୍ଚିଛି—ସେଥିରେ ଯାଏ କେତେ ଆସେ କେତେ ?

କିନ୍ତୁ ମୋର କଣ ମନେ ହେଉଛି ଜାଣନ୍ତି ? ସମ୍ଭବତଃ ଜିଜ୍ଞାସୁ ଜିତେନ୍ ତାରିମାନଙ୍କୁ ଭୁଲିଯିବ, ସେଠୁଁ ଫେରି ଆସିଲା

ପରେ । ଏମିତ କେତେ ଚୈତନ୍ୟୋଦୟ ଆସେ ଯାଏ ମଣିଷ ଜୀବନରେ, କିନ୍ତୁ ତାକୁ ନେଇ ଘର କରି ହୁଏ ନାହିଁ ସାଧାରଣ ମଣିଷ ପକ୍ଷରେ, କାହିଁକିନା ସେ ସଦାସର୍ବଦା ପ୍ରମାଣିତ କରିବାକୁ ଗୁହେଁ କୋଉ ମାଷ୍ଟର ଆଗରେ (ସିଏ ତାର ବିବେକ ହେଉ କି ଭଗବାନ୍, କିମ୍ବା ସୁପର୍-ଇଗୋ) ଯେ ମୁଁ ଖରାପ ନୁହେଁ, ଭଲ । ଏବଂ ଦୁଃଖର ବିଷୟ ଯେ ଜୀବନର ଗୁଡ଼ାଏ ସମୟ ଏମିତ ନଷ୍ଟ ହୋଇଯାଏ, ନିଜକୁ ସଫେଇ ଦେବାରେ । ଅର୍ଥାତ୍ ନିଜକୁ ଠକେଇବାରେ । ଅବଶ୍ୟ ଅନେକ ଲୋକ ଅଛନ୍ତି ଯେଉଁମାନେ ଚଟ୍‌କିନି ନିଜକୁ ଠକେଇ ଆଗେଇ ଯାଇ ପାରନ୍ତି । ଦରକାରୀ ସଂସାରର କାମ କରିବା ଲଗି । କିନ୍ତୁ କଳାକାର କ୍ରିଏଟ୍‌ମାନଙ୍କୁ ଟିକିଏ ଅଧିକ ସମୟ ଲାଗେ, କାରଣ ସେମାନେ କଳାକାର । ତେଣୁ ସେମାନେ ବେଶୀ କଷ୍ଟ ପାଆନ୍ତି । ହଁ, ସେମାନେ ଏଭଳି ଚୈତନ୍ୟୋଦୟର ଅଧିକାରୀ ହୁଅନ୍ତି ମଝିରେ ମଝିରେ । କିନ୍ତୁ ଲାଭ କ'ଣ ସେଥିରେ ? କିଛି ସମୟ ପରେ ପୁଣି ଯୋଉ କଥାକୁ ସେଇକଥା । ଆହୁରି ଅନେକ ବାଟ ଅଛି ଆଗକୁ କ୍ରିଏଟ୍‌ବାବୁଙ୍କ ପାଇଁ—ବଞ୍ଚିବା ଲଗି, କାମ କରିବା ଲଗି, ଏବଂ ନିଜ ବଡ଼ପଣକୁ ଅନ୍ତତଃ ନିଜ ଗଢ଼ା କଚେରି ଘରେ ଜାହିର୍ କରିବା ଲଗି ।

ତାପରର ସେଇ ଜୁକୁଜୁକୁ, ଯେ ମୁଁ ଦିନେ ବଞ୍ଚିଥିଲି, ତାକୁ ଖାଲି ଗୋଟାଏ ମୁହୂର୍ତ୍ତର ଦ୍ୟୁତି ବୋଲି କୁହ ନାହିଁ, କ୍ରିଏଟ୍‌ବାବୁ । ସେହି ଦ୍ୟୁତିର ସୌନ୍ଦର୍ଯ୍ୟ ଚମତ୍କାର, ଏବଂ ତା'ର ତାତ୍ପର୍ଯ୍ୟ କ'ଣ ବୁଝୁନାହଁ ? ଯେ ମୋର ବଞ୍ଚିବାରେ ଥିଲି କେତେ ଆଶା ଅଭିଳାଷ, ସ୍ୱପ୍ନ ଦୁଃସ୍ୱପ୍ନ, ପ୍ରେମ ଘୃଣା, ଏବଂ ନାନା ପ୍ରବୃତ୍ତି-ନିବୃତ୍ତିର ଛନ୍ଦାଛନ୍ଦି ଅନୁଭବ, ଯାହାର ନିର୍ଯ୍ୟାସ ଏଇ ଜୁକୁଜୁକୁଟିକ ? ଏବଂ ଯାହାକୁ ନେଇ କବି ଶିଳ୍ପୀ ଏତେର ଭୋଳ ହୋଇ ଯାଆନ୍ତି, ଓ ତାଙ୍କ ସୃଜନର ବାଗ ଓ ଢଗକୁ ସମ୍ଭାଳି ପାରନ୍ତି ନାହିଁ ?

ତେଣୁ ତାପର ସେହି ସନ୍ଦେଶ, ମାନେ ଜୀବନ୍ତ ଜୀବନର ଏଇ ବୈଚିତ୍ର୍ୟଟିକି ମଧ୍ୟ ବୁଝ କ୍ରିଏଟ୍‌ବାବୁ । ତା'ହେଲେ ତମର ମୁଣ୍ଡ ବାଉଳା ହୁଅନ୍ତା ନାହିଁ ଏମିତ, ଯେ ମୁଁ ଏଇ ଖରାପ

କାମଟା କରି ନାହିଁ, କଲେ ମଧ୍ୟ କରିନାହିଁ ବୋଲି ଜାଣି, ଯେହେତୁ ମୁଁ ତାକୁ ତ୍ୟାଜ୍ୟ କରିଛି, ଅଥବା ମୁଁ ତାକୁ ସେହି ଭାବରେ କରି ନାହିଁ, ଯାହାକୁ ଖରାପ ବୋଲି କହିବ । ଏହାର ଅର୍ଥ ନୁହେଁ ଯେ ଭଲ ଏବଂ ଖରାପ ଭିତରେ କୌଣସି ବିଭେଦ ନାହିଁ । ଅଛି । କିନ୍ତୁ ତା' ସାଙ୍ଗକୁ ମନେ ରଖିବା ଉଚିତ ଯେ : (୧) ବିଭେଦ ଏତେଟା ସ୍ପଷ୍ଟ ଓ ଧାରୁଆ ନୁହେଁ, ଧଳା-କଳା ନୁହେଁ, ଯାହା ନୀତିବାଦୀମାନେ ଧରି ନେଇ ଥାଆନ୍ତି । ସତ୍ୟର ରଙ୍ଗ ଧୂସର । (୨) ମଣିଷର ମନରେ ଅନେକ ପରସ୍ପର-ବିରୋଧୀ ଭାବ ଖାଲି ଏକାଠି ରହିଥାଆନ୍ତି ନୁହେଁ, ମଧ୍ୟ ଏକା ସାଙ୍ଗରେ କଥା କୁହନ୍ତି ଅନେକ ସମୟରେ, ଯାହା ଫ୍ରଏଡ୍ ଆଦି ମନସ୍ତତ୍ତ୍ୱବିତ୍‌ମାନେ ସ୍ପଷ୍ଟ ଭାବରେ କହିଛନ୍ତି । ଏବଂ ଯଥେଷ୍ଟ ସାକ୍ଷୀ ପ୍ରମାଣ ସହ, ତେଣୁ ତାକୁ ଅସ୍ୱୀକାର କରି ହେବ ନାହିଁ । କାବ୍ୟିକ ପରିଭାଷାରେ କହିବାକୁ ଗଲେ, ପଙ୍କଜ ପଙ୍କରୁ ଜାତ ହେଲେ ମଧ୍ୟ ସୂର୍ଯ୍ୟଙ୍କ ଆଡ଼କୁ ଅନେଇ ରହିବା ତା'ର ଅଭ୍ୟାସ, ତେଣୁ ତା'ର ମନୋଭାବରେ ଏଇ ଦ୍ୱିବିଧ ଚେତନାର ଗ୍ରନ୍ଥି ପଡ଼ିବାକୁ ବାଧ୍ୟ, ଏଇ ବାସ୍ତବ ସତ୍ୟକୁ କ'ଣ ନାହିଁ କରିହେବ ? ନା । ହେଲେ ଏହାହିଁ ବିଚିତ୍ର ଜୀବନ୍‌ବାବୁ । ଏବଂ ଏହି ବୈଚିତ୍ର୍ୟକୁ ଅନୁଧ୍ୟାନ କରି ଏହାହିଁ ସୁନ୍ଦର ବୋଲି କହିପାରିଲେ କେତେ ମୁଣ୍ଡବଥା କମିଯାଆନ୍ତା ତୁମର !

ତେଣୁ ଯେତେଦୂର ସମ୍ଭବ, ନିରୂପିତ ତଥା ନିଜ ଦ୍ୱାରା ନିର୍ଣ୍ଣୀତ ଭଲକାମ କରିବାକୁ ଚେଷ୍ଟା କର । କିନ୍ତୁ ନିଜର ନିର୍ଣ୍ଣୟ ସାଙ୍ଗରେ ସମାଜର ନିରୂପଣ ଖାପ୍ ଖାଉ ନଥିଲେ ବୁଦ୍ଧିବିଗ୍ରହ ନିଜକୁ ଚଲେଇ ନିଅ, ଯେଉଁଥିରେ ଦୁଇକୂଳକୁ ହିତ । ଅବଶ୍ୟ ଯଦି ତମେ 'ଶହୀଦ୍' ହେବାକୁ ଚାହୁଁଥାଅ ନିଜ ନିର୍ଣ୍ଣୟକୁ ଜାହିର୍ କରିବା ଲାଗି, ସେ କଥା ଭିନ୍ନ ।

ଶେଷକୁ ମନେ ରଖ ଯେ ସବୁ ସମାନ କାହିଁକିନା 'କିଛି ରହି ନାହିଁ, ରହିବ ନାହିଁ ଟି···' । ସେହେତୁ କୌଣସିଥିରେ କିଛି ମୂଲ୍ୟ ନାହିଁ, ସିଏ ଭଲ କାମ ହେଉ କି ଖରାପ କାମ । କିନ୍ତୁ ଅନ୍ୟ ଅର୍ଥରେ ପ୍ରତ୍ୟେକ ଅନୁଭବର ମୂଲ୍ୟ ଅଛି ବୋଲି କହିବାକୁ ହେବ । କାରଣ ପ୍ରତ୍ୟେକଟି ଅନୁଭବ,

ଯାହାକୁ ନେଇ କେଉଁ ଅନୁଭୂତି ଆସିଥିଲା ତମ ଜୀବନରେ, ତାହା ଘଟିଥିଲା । ସେହେତୁ ସତ । ସେଥିର ଯେତେକ ଆନନ୍ଦ, ଉଦ୍‌ବେଗ, ଦ୍ୱିଧା, ଦୁଃଖ, କ୍ରୋଧ, ପ୍ରେମ ଅଥବା ଘୃଣା । ତେଣୁ କେଉଁ ଅନୁଭୂତିକୁ ଖରାପ ବୋଲି କହି ସିଏ ମୋର ନୁହେଁ ସିଏ ମୋର ନୁହେଁ ବୋଲି ଘାରି ହେବ କାହିଁକି ? ନା, ପ୍ରତ୍ୟେକଟି ସତ, ଏବଂ ଅନ୍ତିମରେ ସବୁ ମିଛ ।

ଖାଲି କଳ୍ପିତ-ସୁନ୍ଦର ସେଇ ଜୁଳ୍‌ଜୁଳୁଟିହିଁ ଥାଉ, ଜିଜ୍ଞାସୁ ଜିତେନ୍‌ମାନଙ୍କୁ ଚେତାଇବା ପାଇଁ । ତାଙ୍କମାନଙ୍କର ଜୟ ହେଉ !



# ପାର୍ଟି

"ମୁଁ କହୁନାହିଁ ଯେ ସେମାନଙ୍କ କଥାରେ ପଡ଼ି ଆମର ଗୋଟାଏ ପାର୍ଟି ଦେବା ଦରକାର । ନହେଲେ ବି ଆମର କୋଉଥିରେ କିଛି ଊଣା ହୋଇଯିବ, ତା' ନୁହେଁ । ତେବେ ଜିନିଷଟା ଭଲ ଦେଖାଯାଉନାହିଁ । ଦେଖ, ଏଇ ତିନିମାସ ଆଗରୁ ମିଷ୍ଟର ଆଲୁଓ୍ୱାଲିଆ ଗୋଟିଏ ବଡ଼ ପାର୍ଟି ଦେଇଥିଲେ ବାହାହୋଇ ଆସିଲା ପରେ । ତା' ପୂର୍ବରୁ ଖନ୍ନର ଗୃଓ ପାର୍ଟି ଦେଇଥିଲେ ଯେତେବେଳେ ସେ ଦିଲ୍ଲୀକୁ ଗଲେ ଡେପୁଟି ସେକ୍ରେଟେରୀ ହୋଇ । ଅଥଚ ଆମେ..."

"ହୁଁ ।"

"ତୁମକୁ କେହି କିଛି କହିବେ ନାହିଁ । କହିଲେ ବି ତୁମେ ତାକୁ 'ୟେସ୍', 'ଅଫ୍‌କୋର୍ସ' କହି ଥଟ୍ଟାରେ ଉଡ଼େଇ ଦେବ । କିନ୍ତୁ ମୁଁ ଆଉ ପାରୁ ନାହିଁ । କାହିଁକିନା ଯୋଉ ଛୁଗୁଲିଆ କଥା କୁହନ୍ତି ନା ସେମାନେ ! ବିଶେଷତଃ ତମର ସେଇ ମିସେସ୍ ଶର୍ମା ଜଣକ । ମିସେସ୍ ଚନ୍ଦ ରହସ୍ୟରେ କହିଲେ ସେଦିନ, 'କଅଣ ପ୍ରମିଳା, ବାହାଘର ତ ବର୍ଷେକରୁ ଉପରେ ହେଲାଣି, ପ୍ରମୋସନ୍ ବି ହୋଇଗଲାଣି, ଏଥର କଣ ପିଲାଟିଏ କୋଳକୁ ଆସିଲେ ସେଲିବ୍ରେଟ୍ କରିବ ?' କିନ୍ତୁ ସେଇଠୁଁ ଏଇ ଆରଛ ଶର୍ମା, ନଅଙ୍କିଆ ଚେହେରା, ହେଲେ ଗଳାରେ ତିନିସେରିଆ ମୁକ୍ତା ହାର, କଣ କହିଲା ଜାଣିଛ ?"

"ହୁଁ ।"

"କହିଲା ମୋ ମତରେ ମିସେସ୍ ଚନ୍ଦ, କାହାକୁ କିଛି ବାଧ୍ୟ କରିବା ଉଚିତ ନୁହେଁ ଏସବୁ ବିଷୟରେ । ପାର୍ଟି ଦେବା ହେଉଛି ଗୋଟିଏ ସଭ୍ୟତାର ସଂସ୍କାର । କିନ୍ତୁ ବିଦେଶୀ । ଆମେ ସିନା ତାକୁ ଗ୍ରହଣ କରିନେଇଛୁ ନର୍ଥ୍ ଇଣ୍ଡିଆରେ; କିନ୍ତୁ ଯେଉଁମାନେ ଭିନ୍ନ ଅଞ୍ଚଳରୁ ଆସିଛନ୍ତି, ସେମାନେ ଯେ ତାକୁ ଗ୍ରହଣ କରିନେଇଥିବେ, ଏଭଳି ଭାବିବା ଉଚିତ ହେବ କି ? ମଲ୍ଲିକ୍ ସାହେବ କଣ ଭୋଜିଭାତ ଦେଇ ନଥିବେ ଜାତିକୁଟୁମ୍ବଙ୍କୁ ତାଙ୍କ ବାହାଘର ବେଳେ ? ନା ତାଙ୍କ ଗାଁ ବନ୍ଧୁମାନଙ୍କୁ ଲଡ଼ୁ ଖୋଇ ନଥିବେ, ଯେତେବେଳେ ସେ ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ୍ ହେଲେ ? ହେଇଠୁଁ ଯେଉଁ ଆଖି ଠରାଠରି ଚାଲିଲା ନା ।"

"ହୁଁ ।"

"ହୁଁ କଅଣ ମ ? ତମ ମୁଣ୍ଡରେ କିଛି ପଶୁଛି ନା ନାହିଁ ? ଠିକ୍ ଅଛି । ତମେ ହେଉଛ କର୍ତ୍ତା, ତମକୁ ଯଦି ଭଲ ଲାଗୁଛି ଏମିତିକା କଥା ଶୁଣିବା ପାଇଁ ତା'ହେଲେ ମୋର ଆଉ କିଛି କହିବାର ନାହିଁ ।"

କେ. ମଲ୍ଲିକ୍ ବୁଝିଲେ ଯେ ପ୍ରମିଳା ରାଗିଲାଣି । ହେଲେ ଯେଉଁ ମନ୍ଦମଧୁର ହସ ଲାଗି ରହିଥିଲା ତାଙ୍କ ଓଠରେ, 'ହୁଁ' ପରେ 'ହୁଁ' କହିଲା ବେଳେ ତାହା ଆହୁରି ପ୍ରସାରିତ ହେଲା, ଏବଂ ସେ କହିଲେ ।

"ଶୁଣ, 'ହୁଁ' ମାନେ 'ହଁ' ।"

"ଧନ୍ୟବାଦ ।"

"ଆରେ ମୁଁ ସତ କହୁଛି ! ପାର୍ଟି ଦିଆଯିବ । ବଡ଼ ପାର୍ଟି । ଅଫିସର୍ସ କ୍ଲବରେ ନୁହେଁ, ସାର୍ ସତ୍ୟାନନ୍ଦ ଗାର୍ଡ଼େନ୍ସରେ । କେବଳ ଅଫିସର୍‌ମାନେ ଆସିବେ ନାହିଁ ଆମ ଗେଷ୍ଟ ହୋଇ, ଆସିବେ ସହରର କେତେକ ବଡ଼ବଡ଼ ଗୁଣୀଜ୍ଞାନୀ, ଶିଳ୍ପପତି, ଖେଳୁଆଡ଼ ଓଗେରା । ଜଣେ ଅଧେ ଫିଲ୍ମଷ୍ଟାର୍ ମିଳିଗଲେ ଆହୁରି ଭଲ ।"

"କିଣ ମୋତେ ପିଲା ବୋଲି ଭାବିଛ ? ବାଇସ୍କୋପ ଦେଖାଉଛ ?"

ଉତ୍ତରରେ ମଲ୍ଲିକ୍ ଉଚ୍ଚ ସ୍ୱରରେ ହସି ଉଠିଲେ । ମନେ ମନେ କହିଲେ ମୋ ବାଇସ୍କୋପ୍ ସତ ହେବ ନିଶ୍ଚୟ, କିନ୍ତୁ ତମେ ପ୍ରକୃତରେ ପିଲା ନୁହେଁ ତ ଆଉ କଅଣ ? ତେବେ ପିଲାମାନଙ୍କୁ ସବୁ କ୍ଷେତ୍ରରେ ସରଳ ଭୁଲିହେବ କି ନିର୍ବୋଧ ତାହା ଭାବିବାର ବିଷୟ । ବିଶେଷତଃ ପିଲାଟିକୁ ଯଦି ଚବିଶ ପଚିଶବର୍ଷ ହୋଇଥାଏ, ଏବଂ ସେ ଯଦି ସ୍ୱନାମଧନ୍ୟ ରତ୍ନମାଲ ବ୍ୟବସାୟୀ ନକୁଳ ସ୍ୱାଇଁଙ୍କ ଗେହ୍ଲାଝିଅ ହେବାର ସୌଭାଗ୍ୟ ପାଇଥାଏ । ପୁଣି ସେ ଯଦି ଏମିତି ମହମହ ବାସୁଥାଏ ଦିନ ଦି'ପହରେ । ଯେଉଁଥିପାଇଁ ମୁଁ ତାକୁ ଚଟକିନି କଣେଇଲି ନାହିଁ ଯେ ଏଥର ମୁଁ ରାଜି ପାର୍ଟି ଦେବା ପାଇଁ । କାରଣ ମୁଁ ଠଉରେଇବାକୁ ଚେଷ୍ଟା କରୁଥିଲି ଯେ—ଏ ବାସ୍ନା କିଣ ସତରେ କେଉଁ ଇମ୍ପୋର୍ଟେଡ୍ ଅତରର ବାସ୍ନା ନା ତା ଅଳଅଳିଆ ମେଦର ବାସ୍ନା ? କେଉଁ ସାଧାରଣ ନାରୀ-ମେଦର ନୁହେଁ, ଏକ ଧନିକ ଦୁଲାରୀର, ଯେ ତା' ସାଙ୍ଗରେ ଆଣିଛି ଦି' ଦି'ଟା କାର୍, ଇମ୍ପୋର୍ଟେଡ୍ କଲର୍ ଟି.ଭି, ଭି.ସି ଆର୍. ମାଇକ୍ରୋ-ଓଭେନ୍ ଇତ୍ୟାଦି ନାନା ପ୍ରତିଷ୍ଠାର ପ୍ରତୀକ, ଷ୍ଟେଟସ୍ ସିମ୍ବଲ୍, ତା ଆଇ. ଏ. ଏସ୍ ସ୍ୱାମୀ ପାଇଁ । ମୁଁ ପାର୍ଟି ଦିଏ କି ନଦିଏ, ଯଥାଯୋଗ୍ୟ ସମ୍ମାନ ଦେବି ନାହିଁ କେମିତି ଏଇ ମେଦର, ବାସ୍ନାର ? ତେଣୁ

ସେ କହିଯାଉ ସେଇ ପୁରୁଣା କଥା, ଯଦିଓ ସେ ତାକୁ ପଚିଶଥର କହିବଣି ଗତ ବର୍ଷକ ଭିତରେ, ଆଉ ମୁଁ ଶୁଙ୍ଘୁଥାଏ ମାନିନୀର ବଶିଷ୍ଟ ବାସ୍ନା ଏବଂ ହେଜୁଥାଏ ତାକୁ । କିନ୍ତୁ ମୁଁ ସତରେ ଠିକ୍ କରିନେଇଛୁ ପାର୍ଟି ଦେବ ବୋଲି । ହଠାତ୍ ଗୋଟିଏ ଆଲୁଅ ପଶିଗଲା ମୋତେ ଏଇ ଦ' ଦିନ ତଳେ । ଯେଉଁଥିରେ ମୁଁ କୁରୁଳି ଉଠିଲି । ମଜା ହେବ । ଏକ ମହତ୍ ଉଦ୍ଦେଶ୍ୟର ମଜା । ଦୁରନ୍ତ ଇଣ୍ଟେଲେକ୍‌ଚୁଆଲ୍ ତଥା ଭାବଜର୍ଜର ବ୍ୟକ୍ତିର ମଜା । ଏବଂ ମଳିକ ପୁଅର ।···ହାସ୍ୟ ! ତମେ ତାର ଭେଦ କେଉଁଠୁ ପାଇବ ଡାର୍ଲିଂ ?

ଏମିତି ଭାବିଲାରୁ ସେ ଏତେ ଉଲ୍ଲସିତ ହୋଇ ଉଠିଲେ ଯେ ତତ୍‌କ୍ଷଣାତ୍ ଲେପ୍‌ଟିଗଲେ ପ୍ରମିଳାଙ୍କ ଖୋଲା କଟିଦେଶର ଶେଯରେ, ସତେକି ତା'ର ଜଣଆରେ ହୁଏତ ତାଙ୍କ ଅଭିନବ ଆତ୍ମାନନ୍ଦକୁ ରୂପାୟିତ କରିହେବ । ଏବଂ କହିଲେ—

"ମୋତେ ବିଶ୍ୱାସ କର । ମୁଁ ପ୍ରକୃତରେ ଗୋଟାଏ ଫାଷ୍ଟକ୍ଲାସ୍ ପାର୍ଟି ଦେବାକୁ ଚାହେଁ । ଯଥାଶୀଘ୍ର । ତମ ପାଇଁ, ମୋ ପାଇଁ, ଓ ଦେଶଦଶର ମଙ୍ଗଳ ପାଇଁ···।

ଛୁଟିଦିନ ଉପରବେଳା । ପ୍ରମିଳା ତାଙ୍କ ପେଟ ଉପରେ ଲେପ୍‌ଟି ଯାଇଥିବା ସ୍ୱାମୀଙ୍କ କେଶରେ ହାତ ଚଳାଇଲେ । ଏବଂ ମଲ୍ଲିକ୍ (ଲୁପ୍ତ ହୋଇଯାଇ ଥିବା ପ୍ରଥମ ନାଆଁ କାଙ୍ଗାଳକୁ ଛାଡ଼, ତାକୁ କେହି ଜାଣନ୍ତି ନାହିଁ ଏଠି ) ତାଙ୍କ ସୁଆଗକୁ ସ୍ୱୀକାର କଲେ । ମନପ୍ରାଣ ସହ । ଏବଂ ଝରକାବାଟେ ଅନେଇଲେ ତାଙ୍କ ନିବାସର ପରିପାର୍ଶ୍ୱକୁ, ତାର ମହତ୍ତ୍ୱକୁ ମଧ୍ୟ ସ୍ୱୀକାର କଲା ପରି । ବଙ୍ଗଳାର ଚାରିପାଖରେ ଥିବା ଲନ୍, ଲନ୍‌ରେ ମୁହଁ ମାଡ଼ି କାମ କରୁଥିବା ମାଳୀ, ଦାଣ୍ଡଫାଟକ ଖୋଲି ପଶି ଆସୁଥିବା ଡାକପିଅନ, ଓ ତାର ପ୍ରବେଶ ବିରୁଦ୍ଧରେ ଔପଚାରିକ ପ୍ରତିବାଦ ଜଣାଉଥିବା ପୋମେରନିଆନ୍ କୁକୁର 'ଟ୍ରେକ', କାର୍‌ର ଚକ୍‌ଚକ୍ ଦେହରେ ନିଜକୁ ଆବିଷ୍କାର କରୁଥିବା ଦରଲଙ୍ଗଳା ପିଲା, ହୁଏତ ମାଳୀର ପିଲା, କମ୍ପା ଘରେ କାମ କରୁଥିବା ଅନ୍ୟ କୋଉ କ୍ଲାସ୍-ଫୋର୍‌ର, ଏପରିକି ନାଚ ନାଚ ଝଡ଼ି ପଡ଼ୁଥିବା ଯେତେକ ଶୁଖିଲା ଫୁଲ ପତର···ଇଏ କୋଉ ସ୍ୱପ୍ନ ନୁହେଁ ବାଇସ୍କୋପ୍ ନୁହେଁ, ନିରାଟ ସତ୍ୟ । ମୋର···ମୋର···ମୋର···ପିଲାଟି ଦିନୁ । ହଁ, ପିଲାଟି ଦିନୁ, କାହିଁକିନା ମୁଁ ଜନ୍ମିଛି ଏଇଥିପାଇଁ । ଏହାହିଁ ଲେଖାଥିଲା ମୋ ଜେନେଟିକ୍ କୋଡ଼୍‌ରେ । କାଙ୍ଗାଳି ମଳିକ ଥିଲା ଗୋଟାଏ ଅସଭ୍ୟ ଅପରିଣତ, ହେଲେ ଅନିବାର୍ଯ୍ୟ ଭ୍ରୂଣକାଳୀନ ବସ୍ତୁ, ଯାହାକୁ ଚିରିଦେଇ ବାହାରି ଆସିଛି ଆଜିକାର କେ. ମଲ୍ଲିକ୍, ଆଇ. ଏ. ଏସ୍. ଶାହାପୁରର କଲ୍‌କ୍ଟା ମାଜିଷ୍ଟ୍ରେଟ୍ । ଏବଂ ବର୍ତ୍ତମାନ ସେ ପ୍ରେମ କରୁଛି ତାର ସୁବାସିତା ପତ୍ନୀ ସାଙ୍ଗରେ, କାଲିକାର ରାଜଦୁଲାରୀ ତଥା

ଆଜିକାର ରାଣୀ ସାଙ୍ଗରେ । କେହି ହେଲେ କହିବ ନାହିଁ ଯେ ନୂଆ ଡାହାଣୀ ଘୁଅ ଖାଇ ଶିଖୁଛି, ଜଣାପଡ଼ି ଯାଉଛି ଯେ ବିଚାରି ଅର୍ବାଚୀନ କି ଅନଭ୍ୟସ୍ତ ।

କ୍ଷଣକ ପାଇଁ ପ୍ରମିଳା ତାଙ୍କ ହସ୍ତଚାଳନା ବନ୍ଦ କରି ବୁଲିଁ ଆସିଲେ ସ୍ୱାମୀଙ୍କ ମୁହଁ ପାଖକୁ । ସତେକି ତାଙ୍କର କିଛି ଖୋରାକ୍ ଦରକାର ଏଇ ସମୟରେ ତାଙ୍କ କାମଟାକୁ ଜାରି ରଖିବା ପାଇଁ । କିନ୍ତୁ ମଲ୍ଲିକ୍ ତାଙ୍କର ଅତି-ନିକଟ ମୁହଁକୁ ନୂଆ ଦେଖିଲା ପରି ହେଲେ । ଯେମିତିକି ସେ ତାର ବିଶାଳତାକୁ ବିଶ୍ୱାସ କରି ପାରୁ ନାହାନ୍ତି । ଫଳରେ ସେ କିଛି ଦେଇପାରିଲେ ନାହିଁ ତାଙ୍କୁ, ଓଠ ଦି'ଟାକୁ ଈଷତ୍ ଗୋଲ କରିବା ଛଡ଼ା । ତା'ଛଡ଼ା ତାଙ୍କ ସ୍ଥିତିର ଅବବୋଧ ପୂରା ହୋଇ ନଥିଲା । କାରଣ ସେହି ଫାଙ୍କାନ୍ତରେ ସେ ଗୋଟାଏ ସ୍ପଷ୍ଟୀକରଣ ଦେବାକୁ ଚାହୁଁଥିଲେ ନିଜକୁ । ଯାହାକି ସରଳମତି ପ୍ରମିଳା, କି ଲେଡ଼ିଜ୍ କ୍ଲବର କୁଟିଳମତି ଆରତି ଶର୍ମା, କାହାରି ମଗଜରେ ପଶିବ ନାହିଁ । କହିବାକୁ ଗଲେ ଏହି ବ୍ୟୁରୋକ୍ରାଟ୍ ମହଲର ସ୍ତ୍ରୀ ପୁରୁଷ, ବଡ଼ଛୋଟ, କାହାରି ବୋଧଗମ୍ୟ ନୁହେଁ ।

...ମୁଁ ପାର୍ଟି ଦେବାକୁ ଚାହୁଁ ନଥିଲି, ତାର ଅର୍ଥ ନୁହେଁ ଯେ ପାର୍ଟିଗତ ସଭ୍ୟତାର ମହତ୍ତ୍ୱ ଜଣାନାହିଁ ମୋତେ । ଯେ ସେଇ ସୁଖବୋଧର ସ୍ୱାକ୍ଷର ନାହିଁ ମୋ ରକ୍ତରେ କି ସଂସ୍କାରରେ । ନା । ତାର କାରଣ ହେଉଛି...ହେଉଛି ଏଇ ଯେ ମୁଁ କେବଳ ବ୍ୟୁରୋକ୍ରାଟ୍ ନୁହେଁ, ମୁଁ ମଧ୍ୟ ଜଣେ ଇଣ୍ଟେଲେକ୍‌ଚୁଆଲ । ସତ୍ୟଦର୍ଶୀ, ଯାହାକୁ ସତର ମିଛ ଓ ମିଛର ସତ ଦିଶିଯାଏ ଜଳଜଳ ହୋଇ । ତେଣୁ ମୋତେ ଅସ୍ୱସ୍ତି ଲାଗେ ବେଳେବେଳେ, ବେଳେବେଳେ କାହିଁକି, ଅନେକ ସମୟରେ—ତାର ମୁଖାପିନ୍ଧା ଶଠତା । ଅଦମ୍ୟ ଖୁସିବାସିପଣର ସଭ୍ୟତା ଓରଫ୍ ଶଠତା । ଯେମିତିକି କେହି ଜାଣିବ ନାହିଁ ଆମ ବ୍ୟକ୍ତିତ୍ୱର ବିଭିନ୍ନ ସତକଥା, ସେଥିର ଅପରିହାର୍ଯ୍ୟ ଲିପ୍ସା, କାମନା, ଘୃଣା, ନୀତିବୋଧ, ଗୋଷ୍ଠୀପ୍ରୀତି, ଇତ୍ୟାଦି ଇତ୍ୟାଦି । ଯଦିଓ ତାର ସ୍ୱରୂପ ବେଶ୍ ଫୁଟି ଉଠେ ଭିନ୍ନ ପରିବେଶରେ । ପ୍ରକୃତ ବନ୍ଧୁ ମହଲରେ, ବୈଠକଖାନା, ନଈକୂଳ ଅଥବା ଶୋଇବା ଶେଯର ଅନ୍ତରଙ୍ଗତାରେ ।

କିନ୍ତୁ ଆଜି ଭାବୁଛି ମୁଁ ପାର୍ଟି ଦେବି, ଅବଶ୍ୟ ଦେବି । କାରଣ ମୁଁ ଗୋଟାଏ ମଜା ଦେଖିବାକୁ ଚାହେଁ । ଜଣେଇଦେବି ମୁଁ ଗୋଠଖଣ୍ଡିଆ ନହେଲେ ମଧ୍ୟ ଭିନ୍ନ ଧାତୁରେ ଗଢ଼ା । ମୋତେ ଏକ ଭିନ୍ନ ଧରଣର ସମ୍ମାନ ଦେବାକୁ ପଡ଼ିବ । ଯେଉଁ-ଥିରେ ଅଳ୍ପବହୁତ ଭୟ ମଧ୍ୟ ଥିବ । ମଜା ହେବ !...

ମଲ୍ଲିକ୍ ପୁଣି କୁଳୁକୁଳି ଖାଇଲେ, ଏବଂ ତାର ଉଦ୍‌ଗମକୁ ଯୋଡ଼େଇଲା ପରି ମୁହଁଟାକୁ ଘଷିବାକୁ ଲାଗିଲେ ପ୍ରେମିଳାଙ୍କ ପେଟରେ । ଯାହା ଫଳରେ ପ୍ରମିଳା

ସଚେତନ ହେଲେ ଯେ ଏଥର ଝରକା କବାଟ ବନ୍ଦ କରିଦେବା ଦରକାର । ଏବଂ ମଲ୍ଲିକ୍ ତାଙ୍କୁ ବାଧା ଦେଲେ ନାହିଁ । ଭାବିଲେ ହଉ, ସେଇଆ ହେଉ । ଦିନ ଆଲୁଅଟା ଲୁଚି ଯାଉ ପୂରାପୂରି । କୁହାଯାଏ ଯେ ଗୁଡ଼କୁ ଆଲୁଅରେ ଖାଇଲେ ଯାହା, ଅନ୍ଧାରରେ ଖାଇଲେ ସେଇଆ । କିନ୍ତୁ ଅନ୍ଧାରରେ ବିଶେଷ ଉପକାରିତା ଅଛି । ନିର୍ବାଧ କଳ୍ପନାରୁ ଉଦ୍ଭୂତ ଉପଭୋଗର ଅନେକ ପ୍ଲସ୍-ପଏଣ୍ଟ୍ ।···ଯାହା ମୁଁ ବି ତ ଭଲ କରି ବୁଝିନାହିଁ ଡାର୍ଲିଙ୍ଗ୍, ତମକୁ କିଣ ବୁଝାଇବି ?

ଶେଷ ଝରକାଟିକୁ ବନ୍ଦ କରି ଖଟକୁ ଲେଉଟି ଆସିଲା ପରେ ପ୍ରମିଳା ଭାବୁଥିଲେ ଯେ ମୋ ସ୍ୱାମୀ ଜଣକ ଅବାଗିଆ ସିନା, କିନ୍ତୁ ସେ ବେଳେବେଳେ ଏମିତି ଚମକେଇ ଦିଅନ୍ତି ମଣିଷକୁ ଯେ ମନେ ହୁଏ ଇଏ ଭଲ, ଏଇ ଚମକ, ଏଇ ସୃଷ୍ଟିଛଡ଼ା ସ୍ୱାଦୁ । ବର୍ଷସାରା 'ନାହିଁ' 'ନାହିଁ' କହି ଯେମିତି ସେ ହଠାତ୍ 'ହଁ' କଲେ ଆଜି ପାର୍ଟି ଦେବା ପାଇଁ । ପୁଣି କିଣ ନା, ଗୋଟାଏ ଫାଷ୍ଟକ୍ଲାସ୍ ପାର୍ଟି । ଆଉ ଯେମିତି ହଠାତ୍ ମାତି ଉଠିଛନ୍ତି ଏଇକ୍ଷଣି ଗୁହା ଖରା ବେଳଟାରେ ।

କିନ୍ତୁ ମଲ୍ଲିକ୍ ଭାବି ନଥିଲେ ଯେ ଏତେ ମୁଣ୍ଡ ଖେଳାଇବାକୁ ପଡ଼ିବ ଗେଷ୍ଟମାନଙ୍କ ତାଲିକା ପ୍ରସ୍ତୁତ କରିବା ପାଇଁ । ତା ପରଦିନ ସକାଳେ ସେ ହାମୁଡ଼େଇ ପଡ଼ିଥିଲେ ତାଙ୍କ ଅଫିସ୍‌ଘର ଟେବୁଲ ଉପରେ ଏବଂ ଲାଗି ପଡ଼ିଥିଲେ ଏଇ ସାମାନ୍ୟ କାମଟାକୁ ତୁଟେଇ ଦେବା ଲାଗି । ହେଲେ ପାରୁ ନଥିଲେ ।··· ଆମ ସର୍ଭିସ୍‌ର ଯେତେକ ସ୍ଥାନୀୟ ଓ ପାଖଆଖରେ ଥିବା ଅଧିକାରୀ, ତାଙ୍କୁ ତ ସହଜେ ଡକାଯିବ, ସେଇଠୁଁ ଅଲ୍‌ଇଣ୍ଡିଆ ସର୍ଭିସ୍‌ର ଯେତେକ ସମାସ୍କନ୍ଧ ଅଧିକାରୀ ଅଛନ୍ତି ଏଇ ସହରରେ, ସେଇଠୁଁ କେତେଜଣ ଚାଲାଖ ଏବଂ ଉପଯୋଗୀ ଷ୍ଟେଟ୍ ସର୍ଭିସ୍ ଅଫିସର, ତାପରେ ଏଇ ଜିଲ୍ଲାରୁ ନିର୍ବାଚିତ ହୋଇଥିବା ସମସ୍ତ ଲୋକ ପ୍ରତିନିଧି, ତଦୁପରାନ୍ତ କେତେଜଣ ବଡ଼ ବଡ଼ ସାମ୍ବାଦିକ, ସମାଜସେବୀ, ଲେଖକ, ଶିଳ୍ପୀ, ଓଗେର । ଯେକୌଣସି ବୁଦ୍ଧିମାନ ପି. ଏ. ଏହି ପ୍ରକାର ତାଲିକା ତିଆରି କରିନେଇ ପାରିବ ଅଧଘଣ୍ଟା ଭିତରେ । କିନ୍ତୁ କଥାଟା ଠିକ୍ ତା ନୁହେଁ ।

ପ୍ରଶ୍ନ ହେଉଛି ଯେ ମୁଁ ଗୁହେଁ କେତେ ହାଲ କର୍ଣ୍ଣାର୍ଜୁନଙ୍କୁ ମୁଁ ଏକାଠି କରି ପାରିବି, ଏବଂ ମୁହାଁମୁହିଁ କରି ଡଟେଇ ପାରିବି, ଯେଉଁଥିରେ ସେମାନେ ବାଧ୍ୟ ହେବେ ତାଙ୍କ ମୁଖା ଉତାରି ଦେବା ପାଇଁ । ଯେମିତିକି ପାର୍ଟିର ସଭ୍ୟ-ସୌଖୀନ ଆତ୍ମା ହାହୁ ହାହୁ ଡାକିବ ଓ ମୋ କଲିଜା ଶାନ୍ତ ହେବ । ନାଆଁକୁ ନାଆଁ ଯୋଡ଼ି ଦେଇ ହେବ । କିନ୍ତୁ ପହିଲି ନମ୍ବର ଅସୁବିଧା ହେଉଛି ଏଇ ଯେ କର୍ଣ୍ଣ ଓ ଅର୍ଜୁନ ଉଭୟଙ୍କୁ ଡାକିଲେ ସେଇ ସ୍ତରର କି ସେଇ ଗୋଷ୍ଠୀର ଅନ୍ୟମାନଙ୍କୁ ବାଦ୍ ଦେଇ ପାରିବ ନାହିଁ । ଏବଂ ତାହେଲେ ମୋ ତାଲିକା କେଉଁଠୁ କେଉଁଯାଏ ଲମ୍ବିଯିବ ତାହା ଭଗବାନଙ୍କୁ ଜଣା !

ଧରି ପ୍ରୋବେସନର୍ ପାହ୍ୟାରୁ ସଦ୍ୟ ଉପରକୁ ଉଠିଥିବା ଇନ୍‌କମ୍‌ଟ୍ୟାକସ୍ ଅଫିସର ତରୁଣ ରାଏ । ଗଜା ଟୋକା । ଗୃହଁ ଗୃହଁ ମଜ୍ଜି ଯାଇପାରେ ଚଳନ୍ତି ଧର୍ମ, ଧାରଣା ଓ ସମାଜ ଦର୍ଶନର ଯୁକ୍ତିତର୍କ ଭିତରେ । ଏବଂ ତାର କ୍ରୋଧକୁ ସହଜେ ଧରି ପକାଇଦେବ ତା ଗୋରା ତକ୍‌ତକ୍ ମୁହଁର ରକ୍ତିମା । ତାକୁ ମୁଁ ଜୁଟେଇ ଦେଇପାରିବି ରେଳବାଇର ପୁରୁଖା ରାମବିଳାସ ଚୌହାନ୍‌ଙ୍କ ସାଙ୍ଗରେ ଯାହାଙ୍କର ଦୃଢ଼ବିଶ୍ୱାସ ଯେ ଗୌରୀମାନଙ୍କୁ ଯଥାଶୀଘ୍ର ବାହା ନଦେଇ ବସେଇ ରଖିବା ଦ୍ୱାରା ଆଜି ଏଇ ଅବସ୍ଥା ଆମ ଦେଶର··· ।

ପୁଣି ଧରି 'ଯୁଗବାଣୀ' ନାମକ ଭର୍ଣ୍ଣାକୁଲାର ଦୈନିକର ସମ୍ପାଦକ ରାଜେଶ୍ୱର ନିଗମ୍ । କାଗଜର ସର୍କୁଲେସନ୍ ବିଶେଷ ନ ହୋଇପାରେ, କିନ୍ତୁ ତା ସମ୍ପାଦକୀୟର ପ୍ରଚଣ୍ଡ ହୁଙ୍କୃତି, ଯେଉଁଥିରେ ସାପକୁ ସମୂଳେ ମାରିଦେବା ସଙ୍ଗେ ସଙ୍ଗେ ବାଡ଼ିକୁ ମଧ୍ୟ ଖଣ୍ଡ ଖଣ୍ଡ କରି ଭାଙ୍ଗି ଦେଇ ହୁଏ, ତାର ବୈଶିଷ୍ଟ୍ୟକୁ ଅସ୍ୱୀକାର କରି ହେବ ନାହିଁ । ତାକୁ ଜୁଟେଇ ଦେଇ ହେବ ବିଶ୍ୱସଦ୍‌ଭାବନାର ବାର୍ତ୍ତାବହ ଓ ନିକଟରେ କାଜାକସ୍ତାନ୍‌ରେ ଅନୁଷ୍ଠିତ ହୋଇଥିବା କେଉଁ ଏକ ଆନ୍ତର୍ଜାତିକ ସମ୍ମିଳନୀରୁ ଫେରିଥିବା ସର୍ବିସ୍ଥ ସାମ୍ୟବାଦୀ ମୋହନ ମିଶ୍ରଙ୍କ ସାଙ୍ଗରେ, ଯେ 'ଅଯୋଧ୍ୟା' ନାଁ ଶୁଣିଲେ ଚହିଁକି ଉଠନ୍ତି··· ।

କଥା ଫିଟିଯିବ, ସତ ଫୁଟି ଉଠିବ, ମୁଁ ଜାଣିଛି ତାର ବାଗ । ଶଠତା ଲଙ୍ଗୁଡ଼ ଜାକି ପଳେଇ ଯିବ । ଏବଂ ମୋ ପାର୍ଟି ଖାଲି ଚମକିବ ନାହିଁ, ସାର୍ ସତ୍ୟାନନ୍ଦ ଗାର୍ଡ଼େନ୍‌ସ୍‌ର ମୂଳଦୁଆ କମ୍ପି ଉଠିବ ତାର କମିକ ବିସ୍ଫୋରଣରେ । କିନ୍ତୁ ତରୁଣ ରାଏକୁ ଡାକିଲେ ମୁଁ କେମିତି ଛାଡ଼ିଦେବି ସେହି ବିଭାଗର ଅନ୍ୟାନ୍ୟ ତରୁଣ ଅଧିକାରୀମାନଙ୍କୁ ? ରାଜେଶ୍ୱର ନିଗମ୍‌କୁ ଡାକିଲେ ମୁଁ କେମିତି ଭୁଲିଯିବି ଏକାଧିକ ଭର୍ଣ୍ଣାକୁଲାର ପେପରର ସମ୍ପାଦକମାନଙ୍କୁ ? ···ଓଃ ! ଇଡ଼ିଅଟ୍‌ସ୍ ! ତମେ ଯେତେକ ଖାସ୍ ଜନ୍ତୁ ସବୁ ଏକା ଗାଡ଼ିଆରେ ରହି ପାରିଲ ନାହିଁ, ଯେମିତିକି ମୁଁ ତୁମକୁ ଏକା ସାଙ୍ଗରେ ଓ ଗୋଟାଏ ଖେପାରେ ଉଠେଇ ଆଣିଥାଆନ୍ତି ଉପରକୁ, ଏବଂ କାହାରି କିଛି କହିବାକୁ ନଥାନ୍ତା ?

ତାଙ୍କ ତାଲିକା ପ୍ରସ୍ତୁତିର କ୍ଲେଶ, ଯାହାର ସୂଚନା ଦେଉଥାଏ ତାଙ୍କ କପାଳର ଅବିରତ କୁଞ୍ଚନ ଓ କାଗଜରେ ଇଜିରିବିଜିରି ଓ କଟାକଟି ହୋଇଥିବା ଅଗଣିତ ଶବ୍ଦ, ତଥା ବୃତ୍ତ ତ୍ରିଭୁଜର ମେଳା, ତାହା କେମିତି ଭଲି ପଡ଼ି ନଥାନ୍ତା ପ୍ରମିଳାଙ୍କ ଆଖିରେ ? ତେଣୁ ସେ ସହାନୁଭୂତିରେ ଦ୍ରବୀଭୂତ ହୋଇ ଆଉଜିଗଲେ ସ୍ୱାମୀଙ୍କ ଉପରକୁ ଏବଂ କହିଲେ—"ଆଇ ଆମ୍ ସରି । ମୋ ଯୋଗୁଁ ଏତେ କଷ୍ଟ ପାଉଛ ତୁମେ !"

ସେଇଠୁ ମଲ୍ଲିକ୍ ଯେପରି ଭାବରେ ଅନେଇଲେ ତାଙ୍କ ଆଡ଼କୁ, ତାର ଶ୍ଳେଷ ଓ ତୀକ୍ଷ୍ଣତାକୁ ଠଉରେଇବାର କ୍ଷମତା ନଥିଲା ପ୍ରମିଳାଙ୍କର । ଯଦିଓ ତାଙ୍କ ଗୃହିଣୀ କହୁଥିଲ ପରୀକ୍ଷା ଗ୍ଲେଶ୍ଞ୍ଜ୍ କଲା ପରି, ଓଠରେ ସ୍ମିତହାସ ସହ୍ହେ—ନା, ତୁମର ସବ ହେବାର କାରଣ ନାହିଁ କି ମୋର ହାରିଯିବାର । ଆମ ଦୁଇଜଣଙ୍କ ସଂଯୋଗ ଯଦି କେବଳ ସମ୍ଭବ ନୁହେଁ, ସଫଳ ହୋଇଛି ମୋର ସୁଚିନ୍ତିତ ବିଗୃତ ଅନୁଯାୟୀ, ତାହେଲେ ଏଇ ଗ୍ରୁପ୍ ପାର୍ଟିଟା ମୋ ବୋଲି ମାନିବ ନାହିଁ ? ସକାଳୁଟାରୁ ହିଉରାଣ କରିବ ଏମିତି, ନାଆଁ ଲେଖା ବେଳୁଁ ?

ଶେଷକୁ ଯେଉଁ ତାଲିକାକୁ ଚୂଡ଼ାନ୍ତ ବୋଲି ଧରାଗଲା, ତାହା କେତେଦୂର ସୁସଂଯତ ସବୁ ଦିଗରୁ, ଏବଂ ସେଥିରେ ତାଙ୍କ ମନ ମାନିଲା କି ନାହିଁ କହି ହେବ ନାହିଁ । ତେବେ ମଲ୍ଲିକ୍ ନିଜକୁ ଦମ୍ଭ ଦେଉଥିଲେ ଯେ ଆଉ ଯିଏ ଆସନ୍ତୁ କି ନ ଆସନ୍ତୁ, ଏବଂ ଈପ୍ସିତ ସଂଳାପର ଚମତ୍କାର ଦେଖାନ୍ତୁ କି ନାହିଁ, ତାଙ୍କ ମନସ୍କାମନା ପୂର୍ଣ୍ଣ ହେବ ଯଦି କେବଳ ଦୁଇଜଣ ଆସନ୍ତି, ମଲ୍ଲିକ୍ ବଚନକୁ ଶୁଣନ୍ତି, ଚେଇଁ ଉଠନ୍ତି ଓ ଠିକଣା କଥା କୁହନ୍ତି । ଯାହା ତାଙ୍କଠାରୁ ଆଶା କରାଯାଏ ।

...ଜଣେ ହେଉଛନ୍ତି ଅଡ଼ିଟ୍-ଆକାଉଣ୍ଟସ୍ ସର୍ଭିସ୍‌ର ଗେନ୍ଦାରାମ୍ । ଡେପୁଟି ଆକାଉଣ୍ଟାଣ୍ଟ୍ ଜେନେରାଲ୍ । ଏଠିକା ବ୍ରାଞ୍ଚ ଅଫିସ୍‌ର ମୁଖ୍ୟ । ମୁଁ ତାକୁ ହୁଏତ ଜାଣି ନାହିଁ ଭଲଭାବରେ ଥରେ ଦୁଇଥର କେଉଁଠି ଦେଖା ହୋଇଚି କି ନାହିଁ ମିଟିଙ୍ଗ୍ ଫିଟିଙ୍ଗ୍‌ରେ । କିନ୍ତୁ ମୁଁ ତାକୁ ଜାଣିଛି ମୋର ରକ୍ତରେ । 'ବ୍ଲ୍ୟୁ ବ୍ଲଡ଼୍'ର ପାଣିଚିଆ ସୌଖୀନ ରକ୍ତ ନୁହେଁ, ଫୁଟନ୍ତା ନାଲି ରକ୍ତ ଯାହା କେବେ ହେଲେ ଥଣ୍ଡା ହେବ ନାହିଁ ବଞ୍ଚିଥିଲା ଯାଏଁ । ସମ୍ଭବତଃ ତା'ରକ୍ତ ବେଶି ବଳୀୟାନ୍ ହୋଇଥିବ ମୋଠୁଁ । ଶୋଇପଡ଼ିବନି କେଉଁ ଏୟାରକଣ୍ଡିସନ୍ଡ଼୍ ରୁମ୍‌ରେ ! କାହିଁକନା ମୁଁ ଓ. ବ. ସି. ହେଲେ ସେ ହେଉଛି ସିଡ଼୍ୟୁଲ୍‌ଡ କାଷ୍ଟ୍ । ନିର୍ଯାତ୍ ଚମାର । ଅଛୁଆଁ !

କେହି ହେଲେ କଣ କହି ନଥିବ ତାକୁ ହ୍ୟାପ ଗ୍ରେଟକାଟ ବୋଲି ?

କହିଥିବ । ଅବଶ୍ୟ କହିଥିବ । ଏବଂ ସେ ତାକୁ ନୀରବରେ ଶୁଣିଥିବ ଓ ସହି ନେଇଥିବ । ନିରୁପାୟ ହୋଇ । ହେଲେ ତାର ବନ୍ଧାଛିଟିକା ଓ ସେଥିର କ୍ରୋଧ, ହିଂସା, ହିଂସା ନୁହେଁ ପ୍ରତିହିଂସାର କାମନା, ସେଇ ନିଷ୍ଫଳ ରୁଗୁରୁଗୁ ନିଆଁ, ତା କଣ କେବେହେଲେ ଲିଭି ଯାଇ ପାରିବ ? ଭୁମ୍‌କିନା ଜଳି ଉଠିବା ନାହିଁ ହେଲା ଏବେ ନିଷ୍କର୍ମା ଶବ୍ଦରେ ଓ ବାକ୍ୟରେ, ଯଦି ତାକୁ ଠିକଣା ଇନ୍ଧନ ଯୋଗାଇ ଦିଆଯାଏ ? ପାର୍ଟିର ସଂସ୍କାର, ସଭ୍ୟତାର ମୁଖା, ତାକୁ କେତେଦୂର ଅଟକେଇ ରଖି ପାରିବ ? ପାରିବ ନାହିଁ । ଏବଂ କେ. ମଲ୍ଲିକ୍ ଖାଲି ସେତିକି ଚାହେଁ, ସେଇ ପ୍ରଜ୍ଜ୍ୱଳନର ଧାପେ । ସେତିକି ସେ ମାଗୁଛି ଏଇ ପାର୍ଟି ପାଖରୁ । ସେହି ସତ୍ୟସୁନ୍ଦରର

ଅନୁଭବ । ଯଦିଓ ମୁଁ ଜାଣିଛି ଯେ ନିଆଁଟା ଧପ୍‌କିନି ଲିଭିଯିବ, ଲିଭିଯିବାକୁ ବାଧ୍ୟ, ଦ୍ୱିତୀୟରୁ ତୃତୀୟ କି ତୃତୀୟରୁ ଚତୁର୍ଥ ପେଗ୍ ଭିତରେ । ହେଲେ କ୍ଷଣପ୍ରଭାର ହାଲୋଳ, ହାଲୋଳରୁ ବଳି ଗର୍ଜନ ହିଁ ମୋର କାମ୍ୟ, ତାହା ଯେତେ କ୍ଷଣସ୍ଥାୟୀ ହେଉ ପଛକେ । ନଜର ତଥା ଜାତଭାଇଙ୍କ ସ୍ୱୀକୃତି—ଅନୁଭୂତିର ସମ୍ମାନ ପାଇଁ ।

'ଆଃ ! କାହିଁକି ଲଗିଛ ଗ୍ରେଟଲୋକଟା ସାଙ୍ଗରେ ?'···'ଯେତେହେଲେ ଗ୍ରେଟଜାତି, ତାଠୁ ଆଉ କଣ ଆଶା କରୁଥିଲ ?'···'ଗୁଡ଼ିଦିଅ, ଗୁଡ଼ିଦିଅ ତାକୁ, ଚୁଚୁନ୍ଦ୍ରାକୁ ମାଇଲେ ହାତ ଗନ୍ଧେଇବ'···ଏବେ ମଧ୍ୟ ଶୁଭିଯାଉଛି ସେଇ ସବୁ ଉଦାର ଉଚ୍ଚମନା ସଦ୍‌ଭାବନା, ବଡ଼ଘର ବଡ଼କର୍ତ୍ତାମାନଙ୍କ ମହାନୁଭବତା ଯାହା ମୋ ହାଡ଼ୁଆବାଡ଼ୁଆ ବାପଭାଇଙ୍କୁ ବଞ୍ଚେଇ ଦେଉଥିଲା ଦୁଷ୍ଟପିଲା ଓ ପୁଲିସଙ୍କ ଦୌରାତ୍ମ୍ୟରୁ । ଏବଂ ତାହାହିଁ ଉଖୁରେଉଛି ମୋ ପିଲାଦିନର କ୍ଷତଗୁଡ଼ାକୁ । ଅଥଚ କୋଉ ଖେଳସାଥୀ ବାବୁଘର ପିଲା ଥରେ ମୋତେ ଦଉଡ଼ିରେ ବାନ୍ଧି ପିଟିଥିଲା, ଶଳା କାଙ୍ଗାଳିଆକୁ ମାରିଦେବ ବୋଲି ଧମକଉ ଥିଲା, ସେକଥା ମନେ ପଡ଼ିଲେ ହସ ମାଡ଼ୁଛି । ସେତେବେଳେ ବି ହସୁଥିଲି । କାହିଁକିନା ସେ ସମ୍ମୁଖ ଯୁଦ୍ଧ କରୁଥିଲା ମୋ ସାଙ୍ଗରେ, ହେଲେ ପାରୁ ନଥିଲା । ଏମିତି ମଡ଼ଆଟାଏ ଯେ ପିଟିବାକୁ ଜୋର ନଥିଲା ତା' ହାତରେ । ଆଉ ସେ ମୋତେ ନାଆଁକୁ ବାନ୍ଧିଥିଲା, ମୁଁ ଇଚ୍ଛା କରିଥିଲେ, ଗୁଡ଼···ହ୍ୟାପ ମୂର୍ଖଟାଏ ଫେଲ୍ ଫାଲ୍ ହୋଇ କେଉଁ ଅଫିସ୍‌ରେ କିରାଣିଗିରି କରୁଛି ଏଇକ୍ଷଣି ।

ଠିକ୍ ଅଛି । ଆମେ ଗ୍ରେଟଲୋକ । ଆମକୁ ବିଶ୍ୱାସ ନାହିଁ । ଆମେ ଆଇ. ଏ. ଏସ୍. ହେଉ କି ଆଇ. ଏ. ଏ.ଏସ୍, ବ୍ୟୁରୋକ୍ରାଟ୍, ଇଣ୍ଟେଲେକ୍‌ଚୁଆଲ୍ କି ଆଉ ଯାହା । ଆମେ ତମ ପାର୍ଟି ମୁହଁରେ କାଳି ଲଗେଇ ଦେଇ ପାରିବୁ, ଇଚ୍ଛା କଲେ । ମୁଁ ଏମିତି ଟେହବ ନା ଗେହାରାମ୍‌କୁ···ମଜା ହେବ !

ଏବଂ ଆସିବ ବ୍ରିଜଲାଲ୍ ସାକ୍‌ସେନା, ମୋର ବ୍ୟାଚ୍‌ମେଟ୍, ଏବଂ ଯାହାକୁ ମୁଁ ଭଲ ଭାବରେ ଜାଣେ । ତାକୁ ମୁଁ ଦିନେ ହିଂସା କରୁଥିଲି, ଏଣେ ନିନ୍ଦା କରୁଥିଲି । ଅନ୍ୟମାନଙ୍କ କଥାରେ ଯୋଗ ଦେଇ । କାହିଁକିନା ସେ ତାର ସହପାଠିନୀ ଓ ବହୁଦିନର ବାଗଦତ୍ତାକୁ ଗୁଡ଼ି ଦେଇ ବାହା ହୋଇ ପଡ଼ିଲା ଆଇ.ସି.ଏସ୍. ଚିଫ୍ ସେକ୍ରେଟେରି ଜଗନ୍ନାଥନ୍‌ର ଝିଅକୁ । କିନ୍ତୁ ଆଉ ମୁଁ ତାକୁ ହିଂସା କରୁନାହିଁ କି ନିନ୍ଦା କରୁନାହିଁ । ସେ ତାର ବାହା ହେଲା, ଆପଣା ଉଦ୍ଦେଶ୍ୟ ଅନୁଯାୟୀ, ସେଥିରେ କାହାର କଣ ଯାଉଛି ? ତା' ଛଡ଼ା ଜଗନ୍ନାଥନ୍ କଣ ସତରେ କୋଉ ସୁନା କଳସ ଢାଳି ଦେବେ ତା'ଉପରେ, ଯାହା ବଳେଇଯିବ ଆମ ଶ୍ୱଶୁରଙ୍କୁ, ହେଲା କିଛି ମଉକା ଆସିଲେ ? ଧନ ହିଁ ସବୁ କ୍ଷମତାର ପାଓ୍ୱାର୍-ହାଉସ୍,

ସିଏ ଯାହା କହୁ ପଛେ । ଯାହାହେଉ ମୁଁ ତାକୁ ଟେହିବ । କହିବ ଯେ ପ୍ରେମ ଜିନିଷଟା ବେକାର । ଖାଲି ପିଲାଳିଆମି ନୁହେଁ, କି ପାଗଳାମି, ଯାହାକୁ କ୍ଷମା କରି ହେବ । ଘୋର ମିଥ୍ୟା ! ଶଠତା ! କହୁ ସେ ଯାହା କହିବ । ମୁଁ ତାକୁ ଆହୁରି ଟେହିବ । କୁଆଡ଼େ ସେ ଢ'ଆଡ଼୍ ଲଭ କରିଛି, ଯାହା କୁହନ୍ତି ତାର କେତେଜଣ ଗୃମ୍‌ଗ୍ରା । କୁଆଡ଼େ ତା' ସ୍ତ୍ରୀ ରାଧିକା ଦେଖିବାକୁ ସୁନ୍ଦର । ସୁନ୍ଦର ମାଇଁ ଫୁଟ୍ ! ଖାଲି ପତଳୀ ହୋଇଥିଲେ କି ମୁହଁଟା ଗ୍ଲେଟିଆ ହୋଇଥିଲେ କଣ କାହାକୁ ସୁନ୍ଦର କହିବ ? ଆମ ପ୍ରମିଳା କେଉଁ ହିସାବରେ ଊଣା ତା'ଠୁ ? ବରଂ ପ୍ରମିଳାର ହିସଖଣ୍ଡିକ ଭାରି ବଢ଼ିଆ, ମୁଁ ସତ କହୁଛି ··

ମୁଇଁ ହେବ କର୍ଣ୍ଣ, ମୁଁ ହେବ ଅର୍ଜୁନ । ଆଉ କାହାର ଦରକାର ନାହିଁ । ମୁଇଁ ହେବ ସତ୍ୟପାଠର କାଟାଲିଷ୍ଟ୍ । ହେଲେ କେହି ମୋତେ ଦୋଷ ଦେଇ ପାରିବେ ନାହିଁ । ମୋର ବିଚକ୍ଷଣ ବୁଦ୍ଧିକୁ ଚିହ୍ନି ନାହାନ୍ତି ସେମାନେ ।

ଥ୍ୟାଙ୍କ୍ ଗଡ୍, ମୁଁ ଓଡ଼ିଶା କ୍ୟାଡର୍‌ରେ ନାହିଁ କି ସେଠି ପାର୍ଟି ଦେବାକୁ ପଡ଼ି ନାହିଁ । ନହେଲେ ଜଣେ ଅଧେ ହୁଏତ ଭାବନ୍ତେ ଯେ କାଲିକା କାଙ୍ଗାଳିଆ ଜାଣିଶୁଣି କହୁଛି ଏମିତିକା କଥା ।

× × × ×

ଧୀରେ ଧୀରେ ପ୍ରାୟ ସମସ୍ତେ ଆସିଗଲେ । ପ୍ରମିଳା ଓ ତାଙ୍କ ସ୍ୱାମୀ, ଦୁହିଁଙ୍କ ମୁହଁ ଉଦ୍‌ଭାସିତ ହୋଇ ଉଠିଲା । ଏବଂ ସେମାନେ ମୁହଁ ଚୁହାଁଚୁହିଁ ହେଲେ, ଯାହାର ଅର୍ଥ ଦେଖିଲ ତ ? ଦେଖୁଛ ତ ଆମେ କେତେ ପପୁଲର୍ ?

ସାର୍ ସତ୍ୟାନନ୍ଦ ଗାର୍ଡ଼େନ୍‌ସ୍‌ର ପ୍ରଶସ୍ତ ଲନ୍‌ରେ ପାର୍ଟିର ଆୟୋଜନ ହୋଇଥିଲା । କେତେଜଣ ବିଦେଶୀ ଟୁରିଷ୍ଟ୍ ତଥା ବିଦେଶୀ ଉଦ୍ୟୋଗର ପ୍ରତିନିଧିମାନଙ୍କୁ ମଧ୍ୟ ଡକା ହୋଇଥିଲା, ଯେଉଁମାନେ ଏଇ ଅଞ୍ଚଳରେ ତାଙ୍କ ପୁଞ୍ଜି ଖଟାଇବେ, ଏଥିର ଯଥେଷ୍ଟ ସମ୍ଭାବନା ଅଛି । ଅନ୍ତତଃ ସେଇ ଆଳରେ ମଲ୍ଲିକ୍ ବିଶେଷ ଅନୁମତି ଆଣିଥିଲେ କର୍ତ୍ତୃପକ୍ଷଙ୍କ ଠାରୁ ହୁଇସ୍କି ଜିନ୍ ଆଦି ପାନୀୟ ପରିଷିବା ପାଇଁ । ଏବଂ ସେହେତୁ ସମସ୍ତ ପ୍ରକାର ପାନୀୟର ଧାର ଛୁଟିଥିଲା ।

କକ୍‌ଟେଲ୍ ପାର୍ଟିରେ କଭଳି ଖାଦ୍ୟପେୟର ବ୍ୟବସ୍ଥା କରିବା କଥା, ସେ ଦିଗରେ ପୁରୁଖା ପାର୍ଟିଦାତା ଓ ବିଶେଷଜ୍ଞମାନଙ୍କ ଅଭାବ ନଥିଲେ ମଧ୍ୟ ମଲ୍ଲିକ୍ ପ୍ରମିଳାଙ୍କ ମତ ଲୋଡ଼ି ଥିଲେ, ଏବଂ ପ୍ରମିଳା ଆନନ୍ଦରେ ଆପଣା ମତ ବ୍ୟକ୍ତ କରିଥିଲେ, ତାଙ୍କ ଶିଳପତି ବୋଲାଉଥିବା ବାପାଙ୍କ ପାର୍ଟିକୁ ମନେ ପକାଇ ।···ଅଲଭ୍

ଅଣେଇବ, ବୁଝିଲ ? ଆଉ ଗ୍ରେଟ ଗ୍ରେଟ ଚକ୍ର ଟୁକୁଡ଼ା । ଚକ୍ ଓ ଅଲ୍ଭ୍ ଯୋଖା ହୋଇଥିବ । ଗେଷ୍ଟ୍ମାନେ ତାକୁ ଟାଣି ନେବେ ପାଟିକୁ, ଓ କାଠିଟାକୁ ଫିଙ୍ଗିଦେବେ ଯଥାସ୍ଥାନରେ । ହଁ, ମନେ ରଖିଥିବ ଯେ ପାତଲା ପାତଲା କଟା ହୋଇଥିବା କାଗଜ-ଲେମ୍ବୁ ଦରକାର, ଜିନ୍ ପାଇଁ । ଇତ୍ୟାଦି । ଅନ୍ୟଦିନ ହୋଇଥିଲେ ହୁଏତ ମଲ୍ଲିକ୍ ମନେ ମନେ ବିରକ୍ତ ହୋଇ ଉଠିଥାଆନ୍ତେ, ଯେ ପ୍ରମିଳା ମୋତେ ପାଠ ପଢ଼ାଉଛି । ସତେକି ମୁଁ ଯୋଉ ବ୍ୟାକ୍ଗ୍ରାଉଣ୍ଡ୍ରୁ ଆସିଛି ମୋତେ ଜଣା ନଥିବ ଏଇ ସବୁ ବିଲାତି ଆଦବ୍କାଇଦା । କିନ୍ତୁ ସେ ଭୁଲିଯାଉଛି ଯେ ସେ ଜଣେ ଆଇ. ଏ. ଏସ୍. କୁ ବାହା ହୋଇଛି, ଯେ ସ୍ୱଭାବତଃ ଅନେକ ପାର୍ଟି ଦେଖିଛି, ଏବଂ ସଭ୍ୟସମାଜର ଯେତେକ ଗୃହକଳା ହାସଲ କରି ନେଇଛି ଏଇ କେଇଟା ବର୍ଷ ଭିତରେ । କିନ୍ତୁ ଆଜି ସେ ଉଦାର ଭାବ ଦେଖାଇ କେବଳ ମୁଣ୍ଡ ଟିଙ୍ଗାରୁଥିଲେ, ପତ୍ନୀଙ୍କ ମୂଲ୍ୟବାନ ପରାମର୍ଶ ଗ୍ରହଣ କରିନେଲା ପରି ।···ହୁଣ୍ଡୀ ତାର ହେଡ଼ଟ୍ ନେଉ, ଖୁସି ହେଉ, ସେଥିରେ କିଛି ଯାଏଆସେ ନାହିଁ ମୋ ପାର୍ଟିର ।

ଗେହାରାମ୍ ଇଜ୍ ହିଅର୍ ! ଥ୍ୟାଙ୍କ୍ସ୍, ମାଇଁ ଡିଅର ଫ୍ରେଣ୍ଡ୍ ! ଏଇ ଭାବରେ ମଲ୍ଲିକ ଆଗେଇଲେ ତାଙ୍କୁ ପାଛୋଟି ନେବା ପାଇଁ, ଏବଂ ଉଚ୍ଛୁଳା ହସର ସ୍ୱାଗତ ଜଣାଇଲେ । ପୁଣି ଯେତେ ସମୟ ଯାଏଁ ଓ ଯେତେ ଜୋର୍ରେ ତାଙ୍କ କରମର୍ଦ୍ଦନ କଲେ, ସେଥିରୁ ମନେ ହେବ ସେ ତାଙ୍କ ପିଲାଦିନର ଦୋସ୍ତ । ଏବଂ ତାଙ୍କ ସାଙ୍ଗରେ ଥିବା ଗେଡ଼ୀ କାଳୀ ସ୍ତ୍ରୀକୁ ମଧ୍ୟ ବିନମ୍ର ନମସ୍କାର କଲେ । କିନ୍ତୁ ଏଇ ପ୍ରଥମ ଦେଖାରେ ହିଁ ତାଙ୍କ ଗ୍ରୁଡ ଦବିଗଲା । ତାଙ୍କର ଭୟ ହେଲା । ସତେକି ତା' ଭିତରେ ଥିବା ନାଆଁଟା କେବେଠୁଁ ପାଉଁଶ ହୋଇଗଲାଣି ! ଆଉ ସେ ସତସତିକା ଗୋଟାଏ ଲର୍ଡ଼, ଯେ ତାର ଲେଡ଼ିକୁ ସାଙ୍ଗରେ ନେଇ ଆସିଛି କେନ୍ସିଙ୍ଗ୍ଟନ୍ ଗାର୍ଡ଼୍ନ୍ସକୁ ! ···ହଉ, ଦେଖିବି, ଦେଖିବି ଯେ ତୁ କେତେ ସମୟ ଯାଏଁ ବଜାୟ ରଖି ପାରିବୁ ତୋର ଦାନ୍ତଚିପା ହସ ଓ ଆମୋଦ ବିସ୍ମୟର ଗୃହାଣି । ଦେଖାଶିଖା ଉଚ୍ଚମନ୍ୟ ଠାଣି । ଆଉ ଇଏ କଣ କାର୍ତ୍ତିକ ଦିବସ ହୋଇଛି ଯେ ଗୋଟାଏ ଗଳାବନ୍ଦ କୋଟ୍ ପିନ୍ଧି ଆସିଲୁ ମୋ ପାର୍ଟିକୁ ? ତୋ ମୁହଁକୁ ଟିକିଏ ଲଜ ନାହିଁ ?

ବ୍ରିଜଲାଲ ପତ୍ନୀଙ୍କ ସମେତ ଟିକିଏ ଡେରିରେ ଆସିଲେ ସିନା, କିନ୍ତୁ ଆସିଲା କ୍ଷଣି ତାଙ୍କ ଅଦମ୍ୟ ଆନନ୍ଦର ଫୁଆରା ଛୁଟେଇ ଦେଲେ । ପ୍ରଥମେ ତ ହୋଷ୍ଟ-ହୋଷ୍ଟେସଙ୍କ ଉପରେ ଅଜାଡ଼ି ହୋଇ ପଡ଼ିଲେ । ତମେ କେମିତି ଅଛ, ଆପଣ କେମିତି ଅଛନ୍ତି, ବେବି କେମିତି ଅଛି, ଇତ୍ୟାଦି ଯେତେ କୁଶଳ ପ୍ରଶ୍ନ ପଚାରି 'ଗୁଡ୍' ଗୁଡ୍ ବୋଲି କହିବୁଲିଲେ, ପ୍ରଶ୍ନର ଉତ୍ତର ଶୁଣିବା ଆଗରୁ । ତା'ପରେ ଦି'ଜଣଯାକ ଘୂରି ବୁଲିଲେ ପାର୍ଟିର ପ୍ରାଙ୍ଗଣରେ । ସ୍ୱୀ ପାଖରୁ ତା ପାଖକୁ, ହସରସର ପସରା ବାଣ୍ଟିଲାପରି । ସତେକି ସେମାନେ କୋଉ ସ୍ୱର୍ଗରୁ ଆସିଛନ୍ତି, ଦେବଦୂତ ହୋଇ ।

ତାଙ୍କ କାମ ହେଉଛି ମରଦେହୀମାନଙ୍କୁ ଖୁସି ରଖିବା, ଦମ୍ଭ ଦେବା, ବଞ୍ଚି ରହିବା ପାଇଁ ।

...ସେ ଦୁହେଁ ଥିଲେ ପ୍ରସନ୍ନତାର ପ୍ରତିମୂର୍ତ୍ତି, ଆଉ ଏମାନେ ହେଲେ ମହାନନ୍ଦର ମେସେଞ୍ଜର । ଶଠତାର ଗୋଟିଏ ସୀମା ଅଛି ! ହଉ, ମୁଁ ଦେଖିବି, ଦେଖିବି...କିନ୍ତୁ ମଲ୍ଲିକ୍ ଠିକ୍ କଲେ ଯେ ଇଏ ଉପଯୁକ୍ତ ସମୟ ନୁହେଁ ଆକ୍ରମଣ ପାଇଁ । ଭାବିଲେ ଯେ ପାର୍ଟିଟା ଆଉ ଟିକିଏ ଜମୁ । ତା' ଛଡ଼ା ଖାଲି ଏଇମାନେ ଯେ ମୋ ଉଦ୍ଦେଶ୍ୟର ସାରଥି, ତା ନୁହେଁ । ଅନ୍ୟମାନେ ବି ଅଛନ୍ତି । ତରୁଣ ସିଏ ଆସିଛି, ଚୌହାନ ସାହେବ ବି ଆସିଛନ୍ତି । ରାଜେଶ୍ୱର ନିଗମ୍‌କୁ ଡାକି ହେଲା ନାହିଁ ତାଲିକାରେ, କିନ୍ତୁ ମୋହନ ମିଶ୍ର ଆସିଛି, ପ୍ରଗତିବାଦର ବଡ଼ପଣ୍ଡା ।

ଆବଶ୍ୟ ମୁଁ ଛାଡ଼ିବି ନାହିଁ ମୋର ବିଶିଷ୍ଟ 'ବନ୍ଧୁ' ଦି'ଜଣଙ୍କୁ । କିନ୍ତୁ ବେଳ ଦେଖି । ଏବଂ ସେଇ ହେବ ମୋ ପାର୍ଟିର କ୍ଲାଇମାକ୍ସ । ପ୍ରାପ୍ତି ।

× × × ×

ପାର୍ଟି ସରିଯିବା ପରର ଗୋଟିଏ ଦୃଶ୍ୟ । ଏବଂ ମନେ ହେଉଛି ଯେ ଏହାହିଁ ଶେଷ ଦୃଶ୍ୟ, କାରଣ ଅବିଳମ୍ବେ ପାର୍ଟିର ପ୍ରଯୋଜକ ଦ୍ୱୟଙ୍କ ମଧ୍ୟରୁ ଜଣେ ବୋଧହୁଏ ଶୋଇ ପଡ଼ିଥିବ, ଏବଂ ଅନ୍ୟଜଣକର ହୋସ୍ ନଥିବ ଭିନ୍ନ କାରଣରୁ । ହେଲେ ବର୍ତ୍ତମାନ ଦୁହେଁ ମୋଟାମୋଟି ଜାଗ୍ରତ ଥିଲେ । ପ୍ରମିଳା ଆଖି ବୁଜି ଶୋଇଥିଲେ ମଧ୍ୟ ଚେତା ଥିଲା । ଏପଟକୁ ବେଳେ ବେଳେ ହସୁଥିଲେ ମନକୁ ମନ, ଯଦିଓ ତାହା ମଲ୍ଲିକ୍‌ଙ୍କ ନଜରରେ ପଡ଼ୁ ନଥିଲା । ସେ ତାଙ୍କ ମୁଣ୍ଡ ପାଖେ ବସି ରହିଥିଲେ ବେତ ଚଉକିଟିଏ ପକାଇ । ଯେହେତୁ ମଲ୍ଲିକ୍ ପେଗ୍ ପରେ ପେଗ୍ ପିଇ ଚାଲିଥିଲେ, ଏବଂ ଏଣ୍ଡୁ ଡେଣ୍ଡୁ ଭାବୁଥିଲେ । ଏଣ୍ଡୁ ଡେଣ୍ଡୁ ବୋଲି କହିବା ବୋଧହୁଏ ଠିକ୍ ହେବ ନାହିଁ, କାରଣ ଭାବନା କେବଳ ଗୋଟିଏ ମୌଳିକ ପ୍ରଶ୍ନକୁ ଆବୋରି ଥିଲା—କାହିଁକି ଏମିତି ହେଲା ? ଏବଂ ତା ସାଙ୍ଗକୁ ଗୋଟାଏ ଅନାବଶ୍ୟକ ଉତ୍ତରର ଘୋଷା—କିନ୍ତୁ ମୁଁ ନୁହେଁ, ମୋ ଦୋଷ ନୁହେଁ ।

...ମୋର କେଉଁଠି ଭୁଲ ହୋଇ ନାହିଁ । ହୋଷ୍ଟ୍‌ପଣିଆରେ ଊଣା କରିନାହିଁ, ଏବଂ ସଦାସର୍ବଦା ଦାନ୍ତ ଦେଖାଇଛି ସତ, କିନ୍ତୁ ମୁଁ କହିଛି ଯାହା କହିବା କଥା, ଯେଉଁଥିରେ ତାଙ୍କ ମର୍ମକୁ ବାଧିବା ଉଚିତ । ଅର୍ଥାତ୍ ଯେଉଁଥିରେ ସତ ମଣିଷ, ରକ୍ତମାଂସରେ ଗଢ଼ା ତଥା କିଛି ଗୋଟାଏ ତତ୍ତ୍ୱ, ନୀତି ଆଦର୍ଶ ଇତ୍ୟାଦିର ଆସ୍ଥା ରଖିଥିବା ମଣିଷ, ଅବଶ୍ୟ ତାତି ଉଠିଆନ୍ତା, ଏବଂ ତାର ଅନ୍ତରର ଭାଷା, ହୁଏତ ଅସଂଯତ ଭାଷାର ଚେନାଏ ଥୋଇ ଦେଇ ଥାଆନ୍ତା ମୋ ସାମ୍ନାରେ । ହୁଏତ କ୍ଷଣକ ପାଇଁ । ଯେଉଁଥିରେ ମୋ ମନମୟୂର ନାଚି ଉଠିଆନ୍ତା । କିନ୍ତୁ କିଛି ହେଲା ନାହିଁ । ଶଳା ସବୁ ଫସର ଫାଟିଗଲା ।

ଠିକଣା ସମସ୍ତ ଖୋଜି ଖୋଜି ପ୍ରଥମେ ପହଞ୍ଚିଥିଲି ମୋହନ ମିଶ୍ରଙ୍କ ପାଖରେ । ଦେଖିଲି ସେ ବେଶ୍ ଉପଭୋଗ କରୁଛନ୍ତି ନିଜକୁ । କାଜାକସ୍ତାନ୍‌ରେ ସେ ଯେଉଁ ବାର୍ତ୍ତା ଶୁଣାଇଥିଲେ, ଏବଂ ତାହା ଯେପରି ଭାବରେ ଆଦୃତ ହେଲା, ବୋଧହୁଏ ତାର ବିବରଣୀ । ଶ୍ରୋତାମାନେ ଘେରି ଯାଇଥାଆନ୍ତି ତାଙ୍କୁ, ତାଙ୍କ କଥାମୃତକୁ ପିଇଗଲା ପରି । କିନ୍ତୁ ମୁଁ ଜାଣିଛି ସେମାନେ ବୋର୍ ହେଉଥିବେ । ସମ୍ଭବତଃ ତାଙ୍କ ପାଖ ମାଡ଼ନ୍ତେ ନାହିଁ, ଆଉ କେଉଁ ଜାଗା ହୋଇଥିଲେ । ସେଇଠୁଁ ମୋ ପାଟିରୁ ବାହାରିଲା—'ଏକ୍‌ସକ୍ୟୁଜ୍ ମି ମିଶ୍ରଜୀ, ଅଯୋଧ୍ୟା କଥା ପଡ଼ିଥିଲା କି ସେଠି ?' ଶିଖଣ୍ଡିର ଏଇ ଆକସ୍ମିକ ଆବିର୍ଭାବରେ ତାଙ୍କ ପାନପାଣ୍ଡ ଟିକିଏ ହେଲେ ଚହଲି ଯାଇ ନଥାଆନ୍ତା ? ତାଙ୍କ ପାବନା ମୁହଁର ଚେହେରା ରଙ୍ଗ ନପଡ଼ିଲା ନାହିଁ, ତାଙ୍କ ଓଠରେ କି ଗୃହାଣିରେ କିଛି ହେଲେ ବ୍ୟତିକ୍ରମ ଦେଖା ଯାଇ ନ ଥାଆନ୍ତା ? କିନ୍ତୁ କିଛି ହେଲା ନାହିଁ ! ଅପରନ୍ତୁ ସେ ଅକାରଣରେ ହସି ଉଠିଲେ ଓ କହିଲେ—'ଦ୍ୟାଟ୍‌ସ୍ ଏ ଗୁଡ଼୍ ଓ୍ୱାନ୍ !' ସତେକି ମୁଁ ଗୋଟିଏ ଜୋକ୍ କରୁଥିଲି । ଅଭଲି ଅବାନ୍ତର ଜୋକ୍ । ହେଲେ ତାର ଅଳ୍ପବହୁତ ପ୍ରଶଂସା କରିବାକୁ ହେବ, କାରଣ ମୁଁ ହେଉଛି ପାର୍ଟିର ହୋଷ୍ଟ ।

(ଗିଲସ ଖାଲି ହୋଇ ନଥିଲା, ହେଲେ ମଲ୍ଲିକ୍ ସେ ମାଏଁ ଅପେକ୍ଷା ନ କରି ତାକୁ ପୂରି କରିଦେଲେ । ଯେମିତିକି ତାହାହିଁ ତାର ନ୍ୟାଯ୍ୟ ଓ ସ୍ୱାଭାବିକ ରୂପ ଏବଂ ଅନ୍ତତଃ ସେ ଦଗରେ ସେ ତାଙ୍କ କର୍ତ୍ତବ୍ୟ ପାଳନ କରିବେ । ତାଙ୍କୁ କେହି ଦୋଷ ଦେଇ ପାରିବ ନାହିଁ ।)

ଚୌହାନ୍ ସାହେବ ମଧ୍ୟ ଗୋଟାଏ ଦଳର ନେତା ହେଲା ପରି ଦିଶୁଥିଲେ । ଏବଂ ମନେହେଲା ଯେ ସେ ଖାଦ୍ୟ ଓ ପେୟ, ଦୁଇଟିକୁ ସମାନ ମର୍ଯ୍ୟାଦା ଦେବା ପାଇଁ ବଦ୍ଧପରିକର । ପାଖକୁ ଯାଇ ଶୁଣିଲି, ଏବଂ ଶୁଣି ଖୁସି ଲାଗିଲା ଯେ ସେ କାହାକୁ ଗୋଟାଏ ଗାଳି ଦେଉଛନ୍ତି । କିନ୍ତୁ କାନ ପାରି ଶୁଣିଲାରୁ ନିରାଶ ହେଲି ଯେ ଇଏ ବ୍ୟୁରୋକ୍ରାଟ୍‌ର ସ୍ୱାଭାବିକ ଗାଳି, ଯେ ଦେଶଟା ରସାତଳକୁ ଯାଉଛି. କାରଣ କେହି କାମ କରୁନାହାନ୍ତି, କଥା ମାନୁନାହାନ୍ତି । କିନ୍ତୁ ସେଥିରେ ମୁନ ନାହିଁ, କାରଣ କେଉଁ ନିର୍ଦ୍ଦିଷ୍ଟ ଲୋକ, ଗୋଷ୍ଠୀ, କି ଶ୍ରେଣୀକୁ ଆକ୍ଷେପ କରି କିଛି କୁହାଯାଉନାହିଁ । ମଧ୍ୟ ସେ କିଛି ପ୍ରତିକାରର ସୂଚନା ଦେଉନାହାନ୍ତି । ସେଇଠୁଁ ମୁଁ ଭାବିଲି ଯେ ଏଇ ହେଉଛି ଉପଯୁକ୍ତ ସମସ୍ତ ମୋର ବକ୍ତବ୍ୟ ବାଢ଼ିବା ପାଇଁ । କହିଲି, "ଆଜ୍ଞା, ମୂଳଦୁଆ ହେଲା ସାମାଜିକ ନିୟମ । ପିତା-ସନ୍ତାନ ଭିତରେ ଥିବା ନିୟମ । ସ୍ୱାମୀ-ସ୍ତ୍ରୀ ଭିତରେ ଥିବା ନିୟମ । ବେଳେବେଳେ ମୁଁ ଭାବେ ଯେ ଯଦି ନିୟମଟାକୁ ମୂଳରୁ ଅଭ୍ୟାସ କରାଯାଏ, ଧରି ରାଜସ୍ଥାନରେ ଯେମିତି ପିଲାକନ୍ୟା ବାହା ହୁଏ ତା ପିଲାବେଳୁ··· ।" ସେ କହିପାରିଥାଆନ୍ତେ 'ଏକ୍‌ଜାକ୍‌ଟଲି !' ଆଉ ଗୋଟାଏ

ମିଚ୍‌ବେଲକୁ ପାଣିରେ ପକାଇ । ସେଇଠୁଁ ଦଳରେ ଥିବା ତରୁଣ ଗ୍ରଏ, ତାକୁ ଦେଖି ମୋର ଉତ୍ସାହ ବଢ଼ିଯାଇଥିଲା, ସେ ତାର ପ୍ରତିବାଦ କରିଥାଆନ୍ତା । ସେଥିରୁ ଗୋଟାଏ ଆବେଗଜର୍ଜରିତ ତତ୍ତ୍ୱପର୍ଯ୍ୟବସିତ ଯୁଦ୍ଧର ସୂତ୍ରପାତ ହୋଇଥାଆନ୍ତା । କିନ୍ତୁ ବୁଢ଼ା ବଙ୍କତାର ପରାକାଷ୍ଠା ଦେଖାଇ ଯତ୍‌ସାମାନ୍ୟ ମୁଣ୍ଡ ହଲାଇଲା, ଯାହାର ଅର୍ଥ ବୁଝି ହେଲା ନାହିଁ । ସତେକି ମୁଁ ଗୋଟାଏ ଇଣ୍ଟରେଷ୍ଟିଙ୍ଗ୍ ଉପାଖ୍ୟ ବତାଇଲି, ସେ ବି ଗୋଟାଏ ପ୍ରକାରେ । ସେଇଠୁ ଆକାଶରୁ ତୋଳି ଆଣିଲା ପରି କହିଲା, "ଆପଣଙ୍କ ଦେଶରେ ଗୋଟାଏ ଆଦିମ ଜାତି ଅଛନ୍ତି ପରା, ଯାହାଙ୍କ ସମାଜରେ କନିଆଁ ବରଠାରୁ ଯଥେଷ୍ଟ ବଡ଼ ହେବା ଉଚିତ, ଯେମିତିକି ସେ ତାକୁ ମଣିଷ କରି ପାରିବ ମାଆ ପରି । ଏବଂ ସେ ନିଜେ ବୁଢ଼ୀ ହେଲେ ବର ତାର ଯତ୍ନ ନେଇ ପାରିବ ? ବଢ଼ିଆ ! କଣ କହୁଛନ୍ତି ମିଷ୍ଟର୍ ଗ୍ରଏ ?" ଏବଂ (ହେ ଭଗବାନ୍ !) ତରୁଣ ଗ୍ରଏ ଦାନ୍ତ ଦେଖାଇ କେବଳ 'ସାର୍' ବୋଲି କହିଲା । ମାନେ ସାର୍ ଯାହା କହୁଛନ୍ତି, ତାହା ପୁଣି ଭୁଲ୍ ହେବ କେମିତି ? କିନ୍ତୁ ମୋର କଣ ହେଲା ? ମୁଁ କାହିଁକି ତାଙ୍କୁ 'ହଁ' ଭରି ଗପି ବସିଲି ଆମ ଅଞ୍ଚଳର ବଣ୍ଡାମାନଙ୍କ କଥା ? ଏବଂ ମୋ ଉଦ୍ଦେଶ୍ୟଟା ବାଏଁ ବାଏଁ ଉଡ଼ିଗଲା ଏମିତି, ମୋ ଅଜାଣତରେ ?

(ଏଇଠି ତାଙ୍କର ଖିଆଲ ହେଲା ଯେ ପ୍ରମିଳା ଟିକିଏ ହସିଲା ଭଳି ଲାଗୁଛି । କିନ୍ତୁ ତାକୁ ସେ ସୁନ୍ଦର ବୋଲି ନେଲେ ନାହିଁ, ରାଧିକା କି ଆଉ କାହା ସହିତ ତୁଳନା କରି । ଅପରନ୍ତୁ ତାଙ୍କୁ ପଚାରିଥିଲେ ସେ ବୋଧହୁଏ କହିଥାଆନ୍ତେ ଯେ ହ୍ୟାପି ପାର୍ଟିରମଣୀ ସମସ୍ତେ ସମାନ, ଓ ତାଙ୍କ ହସ ବି ସେମିତିକା । ତାକୁ ସୁନ୍ଦର କୁହ କି ଅସୁନ୍ଦର ।)

ଯାହା ତ ହେଲା ହେଲା, ହ୍ୟାପି ସିଡ୍ୟୁଲ୍‌ଡ୍ କାଷ୍ଟ ଶିରୋମଣି କବିଭକ୍ତ ହେଲା କେବେଠୁଁ ? ପୁରି ପୁରି ମୁଁ ଯେତେବେଳେ ତା ପାଖରେ ପହଞ୍ଚିଲି ଓ ଶୁଣିଲି ଯେ ସେଠି ରୁଷିଆ ଓ ସ୍ୱେଲ୍‌ଟ୍‌ସିନ୍‌ଙ୍କ ଭବିଷ୍ୟତ କଥା ପଡ଼ିଛି, ମୋର ମନେ ହେଲା ଯେ ଏଇଠି ମୋର ଦୁଃଖିନୀ ଭାରତମାତାଙ୍କୁ ଅଣେଇବା ଉଚିତ । କହିଲି, "ରୁଷିଆ କଥା ଛାଡ଼, ସେମାନେ ଅନ୍ତତଃ ଗୋଟାଏ ଜାତି ହୋଇ ରହିଛନ୍ତି ଓ ରହିବେ, କିନ୍ତୁ ଆମ ଅବସ୍ଥା କଣ ହେବ ଭାବି ଦେଖିଛ ? ଆମେ କେବେ ଏକାଠି ହେବୁ ଓ ଗୋଟିଏ ଜାତି ବୋଲାଇବୁ ? ଆମର ବିପ୍ଲବୀ ସଂଘର୍ଷ କଣ ଖାଲି ସଂଘର୍ଷ ହୋଇ ରହିଥିବ, ଏବଂ କେବଳ ସଭା ସମିତିରେ, ସେମିନାର୍‌ରେ, ଖୁବ୍ ବେଶୀ ହେଲେ ପ୍ରୋସେସନ୍‌ର ସ୍ଲୋଗାନ୍‌ରେ ? କେବେ ଆମେ ସତସତିକା ଯୁଦ୍ଧ କରିବାକୁ ଶିଖିବୁ, ଯାହାର ମୂଳକଥା ହେଲା ହିଂସା ଆଉ କ୍ରୋଧ ? ତା'ହେଲେ ଯିନା କଥାଟା ଛୁଡ଼ି ଯିବ, ପୁରୁଣା ନୂଆ ହେବ, ଓ ଦେଶଟା ଏକାଠି ହେବ !" କହିଲି ନା ଛାଡ଼ିଲି ? କିନ୍ତୁ ଗେହ୍ଲାରାମ୍‌ଙ୍କୁ କବିତା ମଡ଼େଇଲା ତାର ଉତ୍ତରରେ । ସେ ତାର ବହଳିଆ ଓଠକୁ ଲମ୍ୱେଇ କରି

କହିଲି—"ମୋର ମନେ ପଡ଼ୁଛି ଆପଣଙ୍କ ରବି ଠାକୁରଙ୍କ କବିତା, "ହେ ମୋର ଦୁର୍ଭାଗା ଦେଶ୍ ଯାଦେର କରେଚ୍ଛେ ଅପମାନ, ଅପମାନେ ହତେ ହବେ ତାହାଦେର ସବାର ସମାନ ।" ମୋତେ କଣ ଦୁର୍ବୁଦ୍ଧି ଜୁଟିଲା କେଜାଣି, କହିଲି, "ରବି ଠାକୁର ଓଡ଼ିଆ ନୁହନ୍ତି ବଙ୍ଗାଳୀ ।" ସେଇଠୁଁ ସେ ହସି ହସି ଗଡ଼ିଗଲେ, କହିଲେ, "ମୁଁ ଜାଣିଛି, ଜାଣିଛି । ତୁମର ମାନେ ଆମର, ଆମ ସମସ୍ତଙ୍କର । ଆମର ଅଭ୍ୟାସ ହେଉଛି ଏକାଠି ହେବା, ବେଯୋଡ଼କୁ ଯୋଡ଼ି ଦେଇ କେଡ଼େ ସୁନ୍ଦର ବୋଲି କହିବା । ଗଉଡ଼ କୃଷ୍ଣ ଓ କ୍ଷତ୍ରିୟ ରାମଙ୍କୁ ଏକାଠି କରି ରାମକୃଷ୍ଣ ଗଢ଼ିବା, ନାସ୍ତିକ ବୁଦ୍ଧଙ୍କୁ ଅବତାର ବନାଇବା···ସବୁ ଖାପିଯିବ, ସବୁ ମିଶିଯିବ ଆମର ଏଇ ଦେଶରେ, ଏଇ ଭାରତରେ ମହାମାନବର ସାଗରତୀରେ···" ଏହା'ପରେ ମୁଁ କଣ ଭଲ କହିଥାନ୍ତି ତାକୁ ? ମୋଟ ଉପରେ ସେ ମୋ କଥାକୁ କାଟି ଦେଲେ, ଉଡ଼େଇ ଦେଲେ, ନା ସମର୍ଥନ କଲେ, ତା' ବି ଜାଣିପାରିଲି ନାହିଁ । ଯାହାହେଉ ମୋର ଅନ୍ୟ ଉପାୟ ନଥିଲା ମାନେ ମାନେ ସେଠୁଁ ଖସି ଆସିବା ଛଡ଼ା । କିନ୍ତୁ ବିଶ୍ୱାସ କର ମୁଁ ସେତେବେଳେ କୁହୁଳୁଥିଲି ରାଗରେ, ଏଥିରେ ଆଦୌ ସନ୍ଦେହ ନାହିଁ ।

କାହାରି ସନ୍ଦେହ ରହିବା ଉଚିତ ନୁହେଁ ଯେ ମୁଁ ପ୍ରକୃତରେ କୁହୁଳୁଥିଲି ରାଗରେ ଯେତେବେଳେ ମୁଁ ପହୁଞ୍ଚିଲି ବ୍ରିଜ୍‌ଲାଲ୍ ଓ ରାଧିକାଙ୍କ ପାଖରେ, ଯେଉଁମାନେ ହସରସରେ ଉଚ୍ଛୁଳୁଥିଲେ । ସତେକି ସେମାନେ ପୃଥିବୀର ସର୍ବ ଶ୍ରେଷ୍ଠ ପ୍ରଣୟୀ ! ପ୍ରମିଳା ଥିଲା ମୋ ସାଙ୍ଗରେ । ମୁଁ ତାକୁ ଜାଣିଶୁଣି ଡାକିଥିଲି ମୋ ପାଖକୁ ମଜାଟାକୁ ଆହୁରି ପାକେଇଇବା ପାଇଁ । ଏବଂ ମୁଁ ସିଧାସଳଖ ଆକ୍ରମଣ କଲି ବ୍ରିଜ୍‌ଲାଲ୍‌କୁ—"ଆଚ୍ଛା ମୋତେ ଗୋଟାଏ ଉତ୍ତର ଦେଇ ପାରିବ ? ମୋର ବାଜି ପଡ଼ିଛି ମୋ ସ୍ତ୍ରୀଙ୍କ ସାଙ୍ଗରେ । ପ୍ରେମ ଭଲିଆ ଗୋଟାଏ ମିଛ ଓ ବେକାର ଜିନିଷଟାକୁ ବାଦ୍ ଦେଇ ହେବ ନାହିଁ ଆମ ସିଷ୍ଟମ୍‌ରୁ ?" ଉତ୍ତରରେ ସେ ଗମ୍ଭୀରତାର ଛଳନା କରି ମୁଣ୍ଡ ହଲେଇଲେ । କହିଲେ, "ହେବ ନାହିଁ । କାହିଁକନା ଏଇ ମୁହୂର୍ତ୍ତରେ ମୁଁ ଭଲ ପାଉଛି ତମର ଏଇ କଥାଟିକୁ, ନିହାତି ଭଲ ପାଉଛି ତୁମର ଏଇ ପାର୍ଟିକୁ, ଏବଂ (କ୍ଷମା କରିବେ) ବିଶେଷ ଭାବରେ ଭଲ ପାଉଛି ପ୍ରମିଳା ମଲ୍ଲିକଙ୍କର ଏଇ କୁମ୍ଭପକା ଓଡ଼ିଶୀ ଶାଢ଼ିଟିକୁ ।···ଭଲା କୋଉ ମୂର୍ଖର ସାହସ ଅଛି ଭଲ ପାଇବାରୁ ବର୍ତ୍ତି ଯାଇ ପାରିବ ?···ହୋ···ହୋ··· ହୋ···"

ହାସ୍ୟରୋଳ । ମୁଁ ବି ସେଥିରେ ଯୋଗ ଦେଲି । ତା'ଛଡ଼ା ଆଉ କଣ ଉପାୟ ଥିଲା ମୋର ? ଏବଂ ସେଇଠି ହେଲା ମୋର ଏକ୍‌ସପିରିମେଣ୍ଟର ଯବନିକା ପତନ । ଖାଲି ଗୋଟିଏ କଥା ବୁଝି ହେଉ ନାହିଁ । ପ୍ରମିଳା କିଛି ସମୟ ପରେ

ସେଠୁ ପଳେଇ ଆସିଲା କାହିଁକି ? ପାର୍ଟିର ଅଧାରୁ ପଳେଇ ଆସି ସିଧାସଳଖ ବେଡ୍‌ରୁମ୍ ? ମନେ ହେଉଥିଲା ଯେ ବ୍ରିଜ୍‌ଲାଲ୍‌ର ରସିକତାରେ ତା'ର ପେଟ ହୁଏ ପଗ୍ରସ ହୋଇଯିବ ହସରେ । କିନ୍ତୁ ତା'ପରେ କଣ ହେଲା ?

(ମଲ୍ଲିକ ପୁଣି ଭରି ଦେଲେ ତାଙ୍କ ପାନୀୟର ପାତ୍ର)

ସେ ଚମକି ଉଠିଲେ ଯେତେବେଳେ ପ୍ରମିଳାଙ୍କର ବଳିଷ୍ଠ ହାତଟିଏ ପଡ଼ିଲା ତାଙ୍କ ହାତ ଉପରେ । ଏବଂ ଶୁଣିଲେ ସେ କହୁଛି—

"କ'ଣ ଖାଲି ପିଇ ଚାଲିଥିବ ? ପାର୍ଟିରେ ଏତେ ପିଇ ସାରିଲା ପରେ ବି ସାଧ ମେଣ୍ଟି ନାହିଁ ତମର ?"

"ସାଧ ? ଦ୍ୟାଟ୍‌ସ୍ ଏ ଗୁଡ୍ ଓ୍ୱାନ୍ ! ମୋହନ ମିଶ୍ର କହିଲା ପରି । ଶୁଣ ଡାର୍ଲିଂ, ଯଦି ଶୁଣିବାକୁ ଚାହଁ, ମୁଁ ଟୋପାଏ ମଦ ପିଇ ନଥିଲି ପାର୍ଟିରେ । ଜାଣିଶୁଣି । ହେଲେ ପାର୍ଟିପରେ ଏଇଠି ବସି ପିଉଛି । ମଧ୍ୟ ଜାଣିଶୁଣି । କିନ୍ତୁ ତାର କାରଣ ବୁଝେଇ ପାରିବ ତୁମକୁ ?"

ବୁଝେଇଲେ ବି ତମେ ବୁଝିବ ନାହିଁ । ହେଲେ ମୁଁ ଏମିତି ପିଇ ଚାଲିଥିବି, ବୁଝିଲ ? ଯେତେବେଳ ଯାଏଁ ମୋର ମନ ନ ବୁଝିଛି । ଯେ ଦୋଷ ଆମର ସେଇ ନିରକ୍ତିଆ, ନିର୍ବୁଦ୍ଧିଆ, ମେରୁଦଣ୍ଡବିହୀନ ଗେଷ୍ଟମାନଙ୍କର, ମୋର ନୁହେଁ ।

କିନ୍ତୁ ପ୍ରମିଳାଙ୍କ ହାତ ତଥାପି ଧରି ରଖିଥାଏ ମଲ୍ଲିକ୍‌ଙ୍କୁ । ବଳପୂର୍ବକ ତାଙ୍କୁ ମଦ୍ୟପାନରୁ ଛଡ଼େଇ ଆଣିବା ପାଇଁ ନୁହେଁ । ତାଙ୍କର ଆଉ କିଛି କହିବାର ଥିଲା । ମାତ୍ର ଦୁ'ପଦ କଥା—

"ଥ୍ୟାଙ୍କସ୍ । ଅନେକ ଧନ୍ୟବାଦ । ଆମ ପାର୍ଟିଟା ଏତେ ବଢ଼ିଆ ହେବ ବୋଲି ମୁଁ ଭାବି ନଥିଲି ।"

ବଢ଼ିଆ ? ମଲ୍ଲିକ୍ ବିସ୍ଫାରିତ ଚକ୍ଷୁରେ ଅନେଇଲେ ପତ୍ନୀଙ୍କୁ । ବଢ଼ିଆ ?? ତୁଣ୍ଡୀ କଅଣ କହୁଛି ? ତାର କଣ ମୁଣ୍ଡ ଖରାପ ?

କିନ୍ତୁ କ୍ଷଣିକ ପରେ ସେ ବୁଝିଲେ । ଯେ ତାଙ୍କର ମୁଣ୍ଡ ବିଗିଡ଼ି ଯାଇଛି, ପତ୍ନୀଙ୍କର ନୁହେଁ । ପାର୍ଟିକୁ ବଢ଼ିଆ ବୋଲି କହିବାକୁ ହେବ, କାହିଁକି ନା ତାର କେଉଁଥିରେ କିଛି ଊଣା ହୋଇନାହିଁ । ଖାଦ୍ୟରେ କି ପେୟରେ, ଅଥବା ତା ଆଟ୍‌ମସ୍‌ଫିଅରରେ । ସୁଖବୋଧର ପ୍ରତିଶ୍ରୁତିରେ । ରସଭଙ୍ଗ ହୋଇନାହିଁ, ହୋଷ୍ଟଙ୍କର ଶତ ଚେଷ୍ଟା ସତ୍ତ୍ୱେ ।

କଥା ହେଉଛି, ସେମାନେ କେହି ମୋତେ ବିଶ୍ୱାସ କଲେ ନାହିଁ । ଯେ ପ୍ରକୃତରେ ମୋର ଆସ୍ଥା ଅଛି କେଉଁଥିରେ । ଏବଂ ସେଥିରୁ ଉଦ୍ଭୂତ ହେଉଥିବା ଆବେଗ,

ତାପରି କ ତଡେଇଲା ପରି । କାହିଁକନା ମୁଁ ହେଉଛୁ ଜଣେ ସାଲସ୍‌କରା ପାଲସ୍‌କରା ସଫଳ ମଣିଷ—କେ. ମଲ୍ଲିକ୍ ଆଇ. ଏ. ଏସ୍. । ସ୍ୱାର୍ଥୀ ନୁହେଁ ମ, ପ୍ରାକ୍‌ଟିକାଲ । ଏବଂ ଆଜକା ପାର୍ଟି ମୋର ପଦୋନ୍ନତ୍ତିସୂଚକ । କୋଉ ମୋହନ ମିଶ୍ର, ଚୌହାନ କ ଗେନ୍ଦାରାମ୍ ଏତେ ବୁଡ଼ବକ୍ ହୋଇଛି ଯେ କେ. ମଲ୍ଲିକ୍‌କୁ ଭିନ୍ନ ରୂପରେ ଦେଖିବ ? ଏବଂ ତାର ତଥାକଥିତ ମତବାଦକୁ ସତ ମଣିବ ?

କନୁ···କନୁ···ମଲ୍ଲିକ୍‌ଙ୍କର ହଠାତ୍ ମନେ ପଡ଼ିଗଲା । ଏବଂ ସେ ପଚାରିଲେ ତାଙ୍କ ସ୍ତ୍ରୀକୁ—"କନୁ ତମେ ଏମିତ ଭୂସ୍‌କିନା ପଳେଇ ଆସିଲ କାହିଁକି ପାର୍ଟିରୁ ? ବ୍ରିଜଲାଲଟା ନିହାତ ଫାଜିଲ, ଫମ୍ପା, ତା କଥାକୁ ଧରିବାର ନୁହେଁ—"

"ନା, ତା' ନୁହେଁ ।" ସେଇଠୁଁ ପ୍ରମିଳା ଅଟକିଗଲେ ଏବଂ ଲାଜେଇଗଲା ପରି ଦିଶିଲେ, ଏବଂ କହିଲେ—

"ମୋ ମୁଣ୍ଡଟା ହଠାତ୍ ଘୂରେଇଗଲା । ଆଉ ତାର କାରଣ ହେଉଛି ଯେତେଦୂର ସମ୍ଭବ···ଯେ ମୋର ମାସ ଗଡ଼ିଗଲାଣି । ଅବଶ୍ୟ ଡାକ୍ତର କିଛି ନ କହିବା ଯାଏଁ—"

"ଗ୍ରେ-ଏ !" ମଲ୍ଲିକ ଗ୍ଲାସଟାକୁ ଧଡ଼ାହକିନା ରଖିଦେଲେ ଟି-ପୟ ଉପରେ, "ଡୋଣ୍ଟ ଟେଲ ମି ଦ୍ୟାଟ୍ !" ଶେଷକୁ ଏଇ ବୋନସ୍‌ର ଉପହାର ମିଳିବାକୁ ଥିଲା ମୋତେ ?

ତାଙ୍କ ବକ୍ଷସ୍ଥରେ ଧାପେ ହେଲେ କାରିନାନନ୍ଦ ଥିଲା ବୋଲି କଏ ଭାବିଥାଆନ୍ତା ? ଏବଂ ସେଇ କାରିନାନନ୍ଦଟିକି ମଧ୍ୟ ଅଚିରେ ମିଳେଇ ଗଲା ଏକ ବିରାଟ ଆମୋଦର ଅବରୋଧରେ । ଯାହାକୁ ସ୍ୱୀକୃତ ବୋଲି କୁହାଯାଇପାରେ । କାରଣ ମଲ୍ଲିକଙ୍କ ଓଠରେ ହସ ଖେଳୁଥାଏ, ଏବଂ କହୁଥାଆନ୍ତି ମନକୁ ମନ—

ହ୍ୟାପି ଉଦ୍ଧାର ନାହିଁ ଭଲ ପାଇବାରୁ । ମୋର ଏଇ ସାଲସକରା ପାଲସକରା ଜୀବନକୁ ନେଇ, ପାର୍ଟିଠାରୁ ଆରମ୍ଭ କରି ପରିଣୀତା ଯାଏଁ । ତାର ଜିଜିଜିଜିରେ ମେଞ୍ଚାଏ ଖାଦ ଥାଉ କି ମଇଳା, ଏବଂ ତାକୁ ତମେ ପ୍ରେମ ବୋଲି ନକହିଲେ ନାହିଁ । ଆମ ବ୍ରିଜଲାଲ ଖାଲି ଆଇ. ଏ. ଏସ. ନୁହେଁ, ଗୋଟିଏ ମସ୍ତ ଫିଲୋସଫର । ଏବଂ ସେ ପ୍ରକାଶ୍ୟରେ କହିଲେ ତାଙ୍କ ସ୍ତ୍ରୀଙ୍କୁ—

"ଦେଖ ଏଇଠି ଖତମ୍ ମୋ ମଦପିଆ । ପୁରାପୁରି ଖତମ ।"

"ସୁନା ପିଲା !"

# ପାର୍ଟି

ଭୋଜଭାତ ନୁହେଁ, ପାର୍ଟି । ତାର ସ୍ୱରୂପ ଓ ସ୍ୱଗୁଣ ସ୍ୱତନ୍ତ୍ର । ସେଠି ଖାଲି ଏକାଠି ହୋଇ ଖାଇବା, ପିଇବା, ଏବଂ ଆନନ୍ଦ କରିବାର ମନୋବୃତ୍ତି ନାହିଁ । ଅଛି ଅଧିକ ବିଶେଷ ସୃଷ୍ଟିଇବାର ଅବକାଶ । ଏବଂ ଅଧିକ ବିଶେଷ ହାସଲ କରିବାର ସୁଯୋଗ । କିନ୍ତୁ ସବୁକିଛି ଗୋଟାଏ ହାଲୁକା, ହାସ୍ୟବନ୍ତ, ଏବଂ ସୁରୁଚିସମ୍ପନ୍ନ ବାତାବରଣକୁ ନେଇ, ଯେପରିକି ବାହାରକୁ ଆଦୌ ଜଣାପଡ଼ିବ ନାହିଁ ଯେ ଏଭଳି କୌଣସି ଉଦ୍ଦେଶ୍ୟର ବାଷ୍ପ କୁହୁଳୁଛି ତା ଭିତରେ । ଜଣା ପଡ଼ିବ ନାହିଁ ଯେ ମିସେସ୍ ଶର୍ମା ନିଜର ଅତି ବିଶିଷ୍ଟ ବ୍ୟାକ୍‌ଗ୍ରାଉଣ୍ଡ୍ ବିଷୟରେ କିଛି ସୂଚନା ଦେବାକୁ ଚାହୁଁଛନ୍ତି, ଯଥା ତାଙ୍କର ମାମୁ ଜଣେ ବିରାଟ କବି ଥିଲେ, ଅଜା ଥିଲେ ସ୍ୱାଧୀନତା ସଂଗ୍ରାମୀ ଯେଉଁଥିରେ ତାଙ୍କର (ତଥା ତାଙ୍କ ବ୍ୟୁରୋକ୍ରାଟ୍ ସ୍ୱାମୀଙ୍କର) ଖିଅ ବଢ଼ିଯିବ ଭବିଷ୍ୟତ ପାଇଁ, କିମ୍ବା ମିଷ୍ଟର ବର୍ମା ଚାହାଁନ୍ତି ଯେ ତାଙ୍କୁହିଁ ବିଦେଶକୁ ପଠାଯିବ ସେଠିକାର କୁକୁଡ଼ା ଫାର୍ମ ବିଷୟରେ ବିଶେଷ ଜ୍ଞାନ ହାସଲ କରି ସରକାରଙ୍କୁ ଯୋଗାଇବା ଲାଗି । ମିଷ୍ଟର କେ. ମଲ୍ଲିକ୍ ଯଦି ଏହିଭଳି କୌଣସି ଉଦ୍ଦେଶ୍ୟ ଖଞ୍ଜି ଦେଇଥାଆନ୍ତେ ତାଙ୍କ ପାର୍ଟିରେ, ତା'ହେଲେ ତାର ସ୍ୱଧର୍ମ ଅବ୍ୟାହତ ରହିଥାଆନ୍ତା । କିନ୍ତୁ ସେ ଚାହିଁଲେ କଅଣ ନା କେଉଁଠି ଟିକିଏ ନିଆଁ ଲଗିଯାଆନ୍ତା କି କିଛି ସମସ୍ୟା ପାଇଁ, କେଉଁ ନୀତି, ତତ୍ତ୍ୱ କି ଅନୁଭୂତ ସତ୍ୟର କନ୍ଦଲକୁ ନେଇ ! ରାଜସେବାରେ ଏତେଦିନ ରହିଲା ପରେ ସେ କେମିତି ଏଭଳି ନିଆଁ ଲଗା ଉଦ୍ଦେଶ୍ୟକୁ ପୋଷି ପାରିଲେ ନିଜ ମନ ଭିତରେ ?

କେମିତି ଭଲା କେଉଁ ସାମୂହିକ ବାଦବିବାଦ ତେଜି ଉଠିବ ଏଭଳି ଏକ ଉଚ୍ଚାଙ୍ଗ ଆନନ୍ଦ ଉତ୍ସବରେ, ତାହା ତାଙ୍କ କି

ହେଉ ବା ଆଉ ଯାହା ? ହଁ, ଚର୍ଚ୍ଚା ହୋଇପାରେ ସେହି ସବୁ ଚଳନ୍ତି ସମସ୍ୟାକୁ ନେଇ, କିନ୍ତୁ ସେଥିରେ ଡାଉ ଉଠିବାର ପ୍ରଶ୍ନ ଉଠୁ ନାହିଁ । କାରଣ ଏହି ସାଲସ୍‌କରା ପାଲସ୍‌କରା ମଣିଷମାନଙ୍କ ସ୍ୱର୍ଗରେ ପ୍ରଥମେ (ମଧ୍ୟ ଶେଷରେ) ନିଜ ନିଜର ପ୍ରଗତି ବିଷୟରେ ଭାବିବା କଥା. ଯାହାକୁ ଆପଣମାନେ ବ୍ୟକ୍ତିଗତ କ୍ୟାରିଅର୍‌ଧର୍ମୀ ସ୍ୱାର୍ଥ ବୋଲି କହିବେ ହୁଏତ ବୁଝିବେ ନାହିଁ ଯେ ସେହିଥିରେ ହିଁ ଜାତିର ଏବଂ ଦେଶର ସ୍ୱାର୍ଥ ନିହିତ । ଅବଶ୍ୟ ଅମୁକର ସ୍ୱାର୍ଥ ସହିତ, ସମୁକର ସ୍ୱାର୍ଥ ଖାପ୍ ଖାଇ ନପାରେ, ତେଣୁ ବିଭିନ୍ନ ଉଦ୍ଦେଶ୍ୟ ମୁହାଁମୁହିଁ ହୋଇ-ପାରେ, ଯେଉଁଥିରେ କକ୍‌ଟେଲ୍ କ୍ଲାସ୍‌ର ପାନୀୟ ଇତ୍ ହୋଇଯିବା କିମ୍ବା ସେଭଳି କୌଣସି ସାମାନ୍ୟ ଦୁର୍ଘଟଣା ଘଟିବା ଅସମ୍ଭବ ନୁହେଁ । କିନ୍ତୁ କିଛି ଯାଏ ଆସେ ନାହିଁ ସେଥିରେ । ଖେଳଟା ଖେଳିବାକୁ ହେବ । ହେଲେ ତେଜି ଉଠିବାର ପ୍ରଶ୍ନ ଉଠୁ ନାହିଁ । ଇଏ ପାର୍ଟି ନା ହାଟବଜାର, ନା କୋଉ ମଇଦାନ ପଡ଼ିଆର ସଭା ?

ଏହେତୁ ମଲ୍ଲିକ୍ ସାହେବ ଯେଉଁ ଉଦ୍ଦେଶ୍ୟକୁ ତାଙ୍କ ପାର୍ଟି ଭିତରେ ଗେଞ୍ଜି ଦେବାକୁ ଚେଷ୍ଟା କରିଥିଲେ, ତାହା ଫସରଫାଟି ଗଲା, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ବରଂ ସେମିତି କିଛି ଗୋଟାଏ ନିଆଁ ଲାଗିଥିଲେ, ତାହା ଯେତେ ଗ୍ରେଟକାଟିଆ ହେଉ ପଛେ, ସେଥିରେ ପାର୍ଟିର ସ୍ୱରମ୍ପରାକୁ ବାଧା ହୋଇଥାଆନ୍ତା, ଏଥିରେ ସନ୍ଦେହ ନାହିଁ । କିନ୍ତୁ ତାଙ୍କର କେଉଁ ମହତ୍ତ୍ୱ ଉଦ୍ଦେଶ୍ୟ ପଣ୍ଡ ହୋଇଗଲା ବୋଲି ଦୁଃଖ କରିବାର କିଛି ଅଛି କି ? ଏଇଠି ଟିକିଏ ସନ୍ଦେହ ଆସେ ମନରେ । କହିଲେ ଯେ ମୁଁ କେବଳ ଜଣେ ବ୍ୟୁରୋକ୍ରାଟ୍ ନୁହେଁ, ମୁଁ ମଧ୍ୟ ଇଣ୍ଟେଲେକ୍‌ଚୁଆଲ୍ । ହେଲେ ତାଙ୍କର ଏଇ ବଡ଼େଇ ସାଙ୍ଗରେ କୌଣସି ସମ୍ପର୍କ ଅଛି କି ତାଙ୍କ 'ନିଆଁଲଗା' ଉଦ୍ଦେଶ୍ୟର ? କ୍ଷମା କରିବେ, ସେଭଳି ଧାରଣା ଆସୁନାହିଁ ଆମ ମନରେ । କାରଣ ନାନାଦି ସାମୁହିକ କଥାଳର ଅବତାରଣା କଲେ ମଧ୍ୟ, ତାକୁ ବଳ ଦେଉଛି ଯେଉଁ ଅତୀତ ଅନୁଭୂତିର ଜ୍ୱାଳା, ଯାହାକୁ ସେ ଆଜିଯାଏଁ ଶାନ୍ତ କରି ପାରି ନାହାନ୍ତି, ତାହା ଏକାନ୍ତ ବ୍ୟକ୍ତିଗତ । ଯେ ସେ ଦିନେ 'କାଙ୍ଗାଳ

ମଲିକ’ ବୋଲୁଥିଲେ, ଏବଂ ସେତେବେଳେ ନାନା ଅପମାନ ସୂଚକ କଥା ଶୁଣିବାକୁ ପଡ଼ୁଥିଲା ବାପଭାଇଙ୍କ ତଥାକଥିତ ଶ୍ରେଷ୍ଠ ଜାତି ନେଇ । ବର୍ତ୍ତମାନ କେ. ମଲ୍ଲିକ୍ ଆଇ. ଏ. ଏସ୍ ଆଉ ଜଣେ । ସେ ମଧ୍ୟ ଜଣେ ପ୍ରସିଦ୍ଧ ଶିଳ୍ପପତିଙ୍କ କନ୍ୟାକୁ ( ସେ ରଦ୍ଦି ମାଲ୍ କି ଆଉ କେଉଁ ଧରଣର ମାଲ୍ ସହିତ ସମ୍ପୃକ୍ତ ହୁଅନ୍ତୁ ନା କାହିଁକି) ବିବାହ କରି ଆହୁରି କେଇ ଇଞ୍ଚ ଉଠି ଯାଇଛନ୍ତି ଉପରକୁ । ତଥାପି କେଉଁ ପୁରୁଣା ଅନୁଭୂତିର ରଡ଼ନିଆଁ ଜଳିବାକୁ ଲାଗିଛି ତାଙ୍କ ମନ ଭିତରେ, ଏବଂ ସେ ତାକୁ ଲିଭେଇ ଦେଇ ପାରୁ ନାହାନ୍ତି । ଏହାହିଁ ଦୁର୍ଭାଗ୍ୟ ।

ଯାହାହେଉ ତାଙ୍କର ଉଦ୍ଦେଶ୍ୟ ସାଧି ହୋଇଗଲା, ଏଥିରେ ଦୁଃଖ କରିବାର କିଛି ନଥିଲେ ମଧ୍ୟ ତାଙ୍କୁ କେତୋଟି ଶୁଭେଚ୍ଛାମୂଳକ ପରାମର୍ଶ ଦେବା ବିଧେୟ ବୋଲି ମୁଁ ମନେ କରେ । ଶୁଣନ୍ତୁ, ମଲ୍ଲିକ୍ ସାହେବ—

ଏକେ, ଆପଣ ଯଦି ପ୍ରକୃତରେ ଜଣେ ଇଣ୍ଟେଲେକ୍‌ଚୁଆଲ୍, ଯାହା ଆପଣଙ୍କ ଧାରଣା, ତା’ହେଲେ କ’ଣ ସେହି ଅସଭ୍ୟ ଜ୍ୱଲନର ଅଧିକାରୀ ହେବା ଉଚିତ ଆପଣଙ୍କ ପକ୍ଷରେ ? ଅପରନ୍ତୁ ଶ୍ରେଣୀଗତ ବିଭେଦର ବିଷ କେମିତି ଓ କେତେ ଶୀଘ୍ର ଉତୁରିଯିବ ଆମ ଦେଶରୁ, ସେ ବିଷୟରେ ସୁଚିନ୍ତିତ ଯୋଜନାମାନ ପ୍ରସ୍ତୁତ କରି ଯୋଗାଇ ପାରନ୍ତେ ନାହିଁ ସରକାରଙ୍କୁ ? କିନ୍ତୁ ଆପଣ ଯଦି କହିବାକୁ ଚାହାନ୍ତି ଯେ ଇଣ୍ଟେଲେକ୍‌ଚୁଆଲ୍ ହେଲେ ମଧ୍ୟ ଆପଣ କୋଉ ମହାତ୍ମା ନୁହଁନ୍ତି, ପ୍ରତିହିଂସା ଆପଣଙ୍କର ଜନ୍ମଗତ ଅଧିକାର, ତା’ହେଲେ ଗୋଟାଏ କଥା କରନ୍ତୁ । ଠିକଣା ସମୟରେ ଓ ଠିକଣା ମନ୍ତ୍ରୀଙ୍କ ପାଖରେ (ଅନୁକୂଳ ସରକାର ହେଲେ ତ ଆହୁରି ଭଲ), ଉପଯୁକ୍ତ ପ୍ରଶାସନିକ ତଥା କଲ୍ୟାଣମୂଳକ ବ୍ୟବସ୍ଥାର ମସଲା ଯୋଗାଇ ଦିଅନ୍ତୁ, ଯେଉଁଥିରେ ଓ ବି ସି. ମାନେ ଉପରକୁ ଉଠିବେ, ଏବଂ ଅନ୍ୟମାନେ ତଳକୁ ଖସିବେ । କିନ୍ତୁ ଆପଣଙ୍କର ଏଇ ସାଲିସ୍‌କରା ପାଲିସ୍‌କରା ସ୍ୱର୍ଗ ଓରଫ୍ ଅମଲାତନ୍ତ୍ରର ସମ୍ଭାରକୁ ଛାଡ଼ିବେ କାହିଁକି ? କୋଉ ବୁଦ୍ଧିରେ ?

ନାଇଁ ମଲ୍ଲିକ ସାହେବ, ଆଉ ମନେ ପକାନ୍ତୁ ନାହିଁ ଯେ ଆପଣ ଦିନେ କାଙ୍ଗାଳ ମଲ୍ଲିକ ବୋଲଉଥିଲେ । ଏବଂ ଭାବନ୍ତୁ ନାହିଁ ଯେ ଆପଣଙ୍କ ପାର୍ଟିର ଉଦ୍ଦେଶ୍ୟ ମାଡ଼ ଖାଇ ଯାଇଛି । ବରଂ ପ୍ରମିଳା ଯେଉଁ ସୁଖବର ଶୁଣାଇଲେ ଆପଣଙ୍କୁ ଶେଷରେ, ତା'ର ପ୍ରତିଶ୍ରୁତି ପ୍ରତି ଧ୍ୟାନ ଦିଅନ୍ତୁ । ତାହାହିଁ ପଲ୍ଲବିତ କୁସୁମିତ ହେଉ । ସେଇ ଆସନ୍ତା ମଣିଷଟି ବଡ଼ ହେଲା ବେଳକୁ ଏହି ପାର୍ଟିମାନଙ୍କରେ କୌଣସି 'ଉଦ୍ଦେଶ୍ୟ'ର ଅବକାଶ ରହିବ ନାହିଁ, ଏବଂ ତାହା ସତସତିକା ଏକ ଆନନ୍ଦ-ଉତ୍ସବ ହୋଇପାରିବ, ଏଭଳି ଆଶା କରିବା କ'ଣ ଭୁଲ୍ ହେବ ?



# ବାରନାରୀ

ତାଲିକା ବାହାରିବା ପୂର୍ବରୁ ତାମସୀକାନ୍ତ ଆସି ଜଣାଇଦେଲ ଯେ ନାଆଁ କଟିଯାଇଚି ।

ନାଆଁ କଟିଯାଇଚି । ତୁମ ନାଆଁରେ ଗଳ୍ତି ନାହିଁ । ମହିଷମର୍ଦ୍ଦିନୀ ପ୍ରସାଦ ରାଉତ । ସଂକ୍ଷେପରେ ଏମ୍. ପି ରାଉତ । ଥରେ ପଢ଼ିଲେ ଆଉଥରେ ପଢ଼ିବାକୁ ଇଚ୍ଛା ହେବ । ମନେହେବ ଯେ ତୁମେ କେବଳ ପାର୍ଲିଆମେଣ୍ଟ ମେମ୍ବର ନୁହଁ, ଜନଗଣମନ ଅଧିନାୟକ ହେବାକୁ ଜନ୍ମ ହୋଇଛ । କିନ୍ତୁ ପ୍ରଶ୍ନ ହୋଇଚି ଯେ ତୁମେ କାଲି ସକାଳେ ଆମ ଦଳକୁ ଆସିଛ । ଆସିଛ ଭଲ କରିଛ । କିନ୍ତୁ ଆମେ ଆମର ରଥିମାନଙ୍କୁ ଛାଡ଼ି ତୁମକୁ ବାଛିବୁଁ କେମିତି ? ମନୋନୟନ କମିଟିରେ ଜଣେ ଦୁଇଜଣ କ୍ଷୀଣ ପ୍ରତିବାଦ କରିଥିଲେ—ରାଉତଙ୍କ ପରି ନିରଳସ କର୍ମୀ ଖଣ୍ଡମଣ୍ଡଳରେ ନାହାନ୍ତି··· କିନ୍ତୁ କମିଟିର ବଡ଼ପଣ୍ଡା ହୁଙ୍କାର ଛାଡ଼ିଥିଲେ—କୁକର୍ମୀ ! କିଓ ଏତେଦିନ ଯାଏ କେଉଁଠି ଥିଲ ? ଚତୁରଙ୍ଗୀମାନଙ୍କ ସାଙ୍ଗରେ ମିଶିଥିଲ କାହିଁକି ? ପ୍ରାୟଶ୍ଚିତ୍ତ କର । ସବୁର କର । ଲଡ଼ୁ ମିଳିବ । ବଡ଼ପଣ୍ଡା ବଡ଼ନେତା ପ୍ରବଳ ହସ ହସିଥିଲେ । ଅନ୍ୟମାନେ ସେହିପରି ହସିବାକୁ ଚେଷ୍ଟା କରିଥିଲେ, ମୁହଁଟି ଙ୍ଗାର ଥିଲେ । ଶେଷରେ ଉଜଳା କନଷ୍ଟିଚୁଏନସି ପାଇଁ ବଛା ହେଲା କିଏ ନା ଆବୁ ଜେନା ! ଆବୁ ଜେନା ବିଦ୍ୟାବୁଦ୍ଧିହୀନ, ଲଫଙ୍ଗା, ଯିଏ ବିନା ମେସରେ ଗର୍ଜିପାରେ, ଜନତାକୁ ମତେଇ ପାରେ, ଚେତେଇପାରେ, ତଟେଇପାରେ, ପୈତୃକ କଳାବଜାରି ଧନରୁ ପୁଳାଏ ପୁଳାଏ ପାର୍ଟିକୁ ଦାନ କରିପାରେ । ସେମାନେ ସ୍ଥିର କଲେ ଯେ ତା'ରି କ୍ଷମତା ଅଛି, ସେଇ ଏକା ଚତୁରଙ୍ଗୀ ପ୍ରାର୍ଥୀକୁ ହରାଇ ପାରିବ । ରାଉତପୁଅ କାମ କରିଯାଆନ୍ତୁ । କର୍ମଣ୍ୟେବାଧିକାରସ୍ତେ ।

ମନେ ପଡ଼ୁଛି । ପାଞ୍ଚବର୍ଷ ତଳର ଶ୍ଳେଷ ବଜାର । ସେତେବେଳେ ଚତୁରଙ୍ଗ ପାର୍ଟିର ବାନା ଫରଫର ହୋଇ ଉଡ଼ୁଥିଲା । ସାମ୍ୟବାଦୀ ଶୃଙ୍ଖଳ ଗୌତମଙ୍କ ଆମର ଏଇ ଅଭଗା ବନ୍ୟା ପ୍ରପୀଡ଼ିତ ଅଞ୍ଚଳକୁ ବୁଲି ଆସିଥିଲେ । ପ୍ରଦେଶର ମୁଖ୍ୟମନ୍ତ୍ରୀ ଜଗନ୍ନାଥ ମହାନ୍ତି ମୋତେ ତାଙ୍କ ସହ ପରିଚୟ କରାଇଦେଲେ । କହିଲେ, ଇଏ ବିଶ୍ୱବିଦ୍ୟାଳୟର ବିଶିଷ୍ଟ ତରୁଣ ସନ୍ତାନ । ଏଣେ ଉଜଳା ଅଞ୍ଚଳର ଗରିବ ଗୃହୀମାନଙ୍କ ପାଇଁ ଯାହା କରିଛନ୍ତି ତାର ତୁଳନା ନାହିଁ । ସ୍ୱାଙ୍କର

ଚେଷ୍ଟାରେ କେତେ କୂଅ ଖୋଳା ହୋଇଚ, କେତେ ରାସ୍ତା ତିଆରି ହୋଇଚ, କେତେ ବିଲରେ ପାଣି ମଡ଼ା ହୋଇଚ, ବନ୍ୟାବିପତ୍ତି ପରେ ଭଦ୍ରଲୋକ ନଖାଇ ନପିଇ ଗାଆଁ ଗାଆଁ ବୁଲି ଚୂଡ଼ା ଗୁଡ଼ଲ ବାଣ୍ଟିଛନ୍ତି, ସରକାର ଘରୁ ପଇସାଟିଏ ମାଗିନାହାନ୍ତି···। ପ୍ରଶଂସାର ସୁଅ ବହିଗଲାଥିଲା । ଗୌତମଙ୍କୁ ଭେଟିଦେଲେ । ଶ୍ରୀକୃଷ୍ଣଙ୍କ ପରି ମୋହନ ହସଟିଏ ଛାଡ଼ିଦେଇ କହିଲେ—କର୍ମୀ ! ଅମୂଲ୍ୟ ରତ୍ନ ! ମହାନ୍ତିବାବୁ ମାତିଗଲେ, କହିଲେ—ମୁଁ ଭାବୁଚି—ଆସନ୍ତା ଲୋକସଭା ନିର୍ବାଚନ ପାଇଁ ୟାଙ୍କୁହିଁ ଛିଡ଼ା କରାଇଲେ ଭଲ ହେବ । ଗୌତମଙ୍କଙ୍କ ମୋହନ ହସ ମହନୀୟ ରହସ୍ୟମୟ ହୋଇଉଠିଲା । ସେ ମୋ ଆଖିରେ ଆଖି ରଖି କହିଲେ—କର୍ମଣ୍ୟେବାଧିକାରସ୍ତେ । ତାଙ୍କର ସେଇ କଥା ପଦକ ଦେବତାଙ୍କ ଆଶୀର୍ବାଦ ପରି ମନେହେଲା । ସେଇଦିନଠାରୁ ଡାଣ୍ଡିଘରେ ତାଙ୍କ ଫଟୋକୁ ଦେଖିଲାବେଳେ ମନପ୍ରାଣ ସେବାନ୍ୱିତ ରୋମାଞ୍ଚିତ ହୁଏ, ଗ୍ଲାନି ତୁଟିଯାଏ ।

(ସେଇ ଫଟୋ ଆଜି ଆଉ ନାହିଁ । କିନ୍ତୁ ଶେଷ ମୁହୂର୍ତ୍ତ ଯାଏଁ ଥିଲା । ସେଇ ତ ହେଲା କାଳ···)

ଉଭୟ ଲୋକସଭା ବିଧାନସଭା ପାଇଁ ନାଆଁ ପଠାହେଲା । କିନ୍ତୁ ଚତୁରଙ୍ଗ ପାର୍ଟିର ବଡ଼ ପଣ୍ଡାମାନେ ମୋତେ ବାଛିଲେ ନାହିଁ । ସାମାନ୍ୟ ଦୁଃଖ ଲାଗିଲା ନିଶ୍ଚୟ । ଯେଉଁମାନଙ୍କୁ ବଛାହେଲା ସେମାନେ କେଉଁ ହିସାବରେ ମୋ'ଠାରୁ ଯୋଗ୍ୟ ? ବିଧାନସଭା ପାଇଁ ରଘୁମଣି ଚୌଧୁରୀ, ଯେ ମୂଳରୁ ସାମ୍ୟବାଦୀ ନୁହେଁ, ଆପଣା ରଇତମାନଙ୍କୁ ଯାବତୀୟ କଷ୍ଟ ଦେଉଛନ୍ତି, ପଛରେ ଗୌତମଙ୍କଙ୍କର ଅତୀତ ପ୍ରେମ ଜୀବନକୁ ନେଇ ବାର କଥା କୁହେ । ଲୋକସଭା ପାଇଁ ଅବସରପ୍ରାପ୍ତ ପ୍ରଫେସର ଶାନ୍ତିସ୍ୱରୂପ ଦାସ ଯେ ଭଲ ବକ୍ତୃତା ଦେଇ ପାରନ୍ତି, କିନ୍ତୁ କେବେହେଲେ ତଳକୁ ଓହ୍ଲାଇ ତଳିଆ ଲୋକମାନଙ୍କୁ ଭଲମନ୍ଦ ପଚାରିବାର ଶୁଣାଯାଇ ନାହିଁ । ଦୁଃଖ ଲାଗିଲା । ତେବେ ଗୌତମଙ୍କଙ୍କ ଫଟୋକୁ ଅନେଇ ମନେହେଲା ସେ ସବୁ ଜାଣନ୍ତି, ବୁଝନ୍ତି । ସେ ଚାହାନ୍ତି ଯେ ମୁଁ ନୂଆଖାଲି ବାଉଁଶ ପୋଲରେ ପାଦ ଚପିଚପି ନଈ ପାର ହେବି, କୁଡ଼ିଆ ଘରେ ଦରିଦ୍ରନାରାୟଣଙ୍କର ସେବା କରିବି, ଲାଟ ସାହେବଙ୍କ କାମରାରେ ବସି ଚା' ଖାଇବା ମୋର ଧାତୁରେ ଯିବନାହିଁ । ତଥାସ୍ତୁ ।

ଲୋକମାନେ ମୋତେ ଭଲ ପାଆନ୍ତି । ପଡ଼ୋଶୀ ହିଡ଼ କାଟି ଦେଇଛନ୍ତି, ମାଲିକ ଅଦାଲତ କରି ଧାନମାଣକ ଛାଡ଼ୁନାହିଁ, ଝିଅ ଶାଶୁଘରେ କଷ୍ଟ ପାଉଛି, ନାତିକୁ ଜଉମୋହନିଆ ହୋଇଛି, ସବୁଥିରେ ରାଉତବାବୁଙ୍କୁ ଡାକ । ବେଳେବେଳେ ବିରକ୍ତ ହେବାକୁ ଇଚ୍ଛା ହୁଏ—ମୋର ଦେଶବାସୀ କଅଣ ଏତେ ପରପରାୟଣ ମେରୁଦଣ୍ଡବିହୀନ···ଇତ୍ୟାଦି । କିନ୍ତୁ ହପ୍ତାଏ ଦୁ'ହପ୍ତାଏ କେହି ନଆସିଲେ ଛଟପଟ

ଲଗେ । ହଠାତ୍ ପଡର ମୋର ପାଇଁ ଦୋହଲି ଉଠୁଛି, ଦୋହଲି ଉଠିବା ଉଚିତ, ପଙ୍କପୋଖରୀ ମୋର ପାଇଁ ଭୁଟଭୁଟ୍ ହେଉଛି, ମଲିକ ସାହିର ଚୁଲି ଧୂଆଁ ମୋର ଆଡ଼କୁ ଆସୁଛି, ଭଲପାଇବା ମୋତେ ଡାକୁଛି, କୁହ ଡାକୁଛି ଡାକୁଛି, ନ ହେଲେ ମୁଁ ସରିଯିବ, ହାରିଯିବ ଏମିତି ମନେ ହୁଏ ।

ଏତିକିବେଳେ କେହି ନା କେହି ଜୁଟି ଯାଏ । ମୋତେ ଡାକେ । ମୁଁ ତା' ମୁହଁକୁ ଚାହେଁ, ଭଲପାଇବାର ଚାନ୍ଦ ନେଳନାବମ୍ ପରି ଗୋଲ ହୋଇ ମଧୁରିଆ ହୋଇ ମୋତେ ଗିଳିଦିଏ । ମୋର ସତ୍ତା ହଜିଯାଏ । ମୁଁ ଦୁଃଖ ଶୋଷ ଭୁଲିଯାଇ ତାର ପଛେ ପଛେ ଯାଏ । ସେବାକାମ ସମ୍ପୂର୍ଣ୍ଣ କରି ଫେରିଆସେ । ଫେରି ଆସି ଗୌତମଙ୍କଙ୍କ ଫଟକୁ ଚାହିଁ କୁହେ—ହେଲି ?

ମିଛ କହିବି କାହିଁକି, ଥରେ ଥରେ କେହି ଜୁଟନ୍ତି ନାହିଁ । ମୁଁ ଚାଲିଯାଏ ଅପେକ୍ଷା କରେ । ତା' ପରେ ତା' ପାଖକୁ ଯାଏ । ସେ ମୋତେ ଗାଳିଦିଏ ।

ପାର୍ଟିର ସଭ୍ୟମାନେ ମୋ କଥା ଶୁଣନ୍ତି, ମୋତେ ସମ୍ମାନ ଦିଅନ୍ତି । ଉଜଳା ଅଞ୍ଚଳର ପ୍ରକୃତ ପ୍ରତିନିଧି ହିସାବରେ ଜନମତ ଜାଣିବା ପାଇଁ ମୋ କଥାକୁ ପିଇ ଯାଆନ୍ତି । ଜିଲ୍ଲା ଚତୁରଙ୍ଗ କମିଟି ସବୁଥିରେ ମୋତେ ରହିବାକୁ କହିଲେ । ଆସନ୍ତା ବର୍ଷରୁ ସବଖିରତୀୟ ଚତୁରଙ୍ଗ କମିଟିରେ ରହିଥାନ୍ତି, ଯଦି ପୃଥିବୀ ଓଲଟି ଯାଇ ନ ଥାନ୍ତା । ଶୁଣନ୍ତି କିନ୍ତୁ ମାନନ୍ତି କେଉଁଠି ? ପ୍ରଥମେ ସଫେଇ ଦେବାକୁ ଚେଷ୍ଟା କରୁଥିଲେ—ଆପଣ ଯାହା କହୁଛନ୍ତି ସତ, ସେଠି ରାସ୍ତା ହେଲେ ବନ୍ଧୁଆ ଗାଆଁ ଲୋକ-ମାନଙ୍କର ଅନେକ ସୁବିଧା ହେବ, ବିଚାରି ଅତି ଗରିବ । କିନ୍ତୁ ଆଞ୍ଚଳିକ ଯୋଜନାକୁ ପ୍ରାଦେଶିକ ଯୋଜନା ସାଙ୍ଗରେ ଯୋଡ଼ିବାକୁ ପଡ଼ିବ ଓ ପ୍ରାଦେଶିକ ଯୋଜନାକୁ ଜାତୀୟ ଯୋଜନା ସଙ୍ଗରେ ଯୋଡ଼ିବାକୁ ପଡ଼ିବ । ସାମୂହିକ କଲ୍ୟାଣର ଦାୟିତ୍ୱ ମୁଣ୍ଡାଇବାକୁ ହେବ—ବୁଝୁ ନାହାନ୍ତି ? ଶେଷକୁ ସଫେଇ ଦେବାର ଆବଶ୍ୟକତା ମନେ କଲେ ନାହିଁ । କହିଲେ ଉପରୁ ନିର୍ଦ୍ଦେଶ ଆସିଚି, ଏମିତି ହେବ । ଏଇଠି ରାସ୍ତା ହେବ, ଏଇ ଲୋକମାନଙ୍କୁ ସାରବହନ ଯୋଗା ହେବ, ପାଣିକଳ ଦିଆହେବ ଇତ୍ୟାଦି । ଉପରବାଲା କିଏ ? ମନ୍ତ୍ରୀ ? ମୁଖ୍ୟମନ୍ତ୍ରୀ ଜଗନ୍ନାଥ ମହାନ୍ତି ? ପୂଜ୍ୟ ନେତା ପ୍ରଧାନମନ୍ତ୍ରୀ ଗୌତମଜୀ ? ମୁଁ ସେମାନଙ୍କ ପାଖକୁ ଯିବି, ବୁଝେଇଦେବି, କହିବି ଯେ ଉଜଳା ଅଞ୍ଚଳର ଦୁଃଖୀ ଦରିଦ୍ରମାନଙ୍କୁ ମୁଁ ଜାଣିଛି, ସେମାନେ ସାମୂହିକ କୁହୁଳାହୁ ବେଦନାରୁ ଭିନ୍ନ ନୁହନ୍ତି···। ଥରେ ମୁଖ୍ୟମନ୍ତ୍ରୀଙ୍କ ପାଖେଁ ଯାଇଥିଲି । ସେ ସହାନୁଭୂତି ଦେଖାଇଲେ । କହିଲେ ରଘୁମଣି ଚୌଧୁରୀଙ୍କୁ କହିବେ । ରଘୁମଣି ଚୌଧୁରୀ ପିଠି ଆପୁଡ଼େଇଲେ, ପିଲାଙ୍କୁ ଫୁସୁଲେଇଲା ପରି କହିଲେ, ଚିନ୍ତା ନାହିଁ, ଆଗାମୀ ଯୋଜନାରେ ତା'ର ବ୍ୟବସ୍ଥା କରାଯିବ । ତା'ପରେ ଅତି ବିଶ୍ୱସ୍ତ ବନ୍ଧୁ ପରି

କାନରେ ଫୁସ୍‌ଫୁସ୍ ହୋଇ କହିଲେ—ଆପଣଙ୍କ ପ୍ରଜାମାନଙ୍କୁ ମୁଣ୍ଡ ଅଣ୍ଡା କରିବାକୁ କୁହନ୍ତୁ, ଏଇ ଯେଉଁ ନନ୍ଦୀଘୋଷ ପାର୍ଟି, ଶଳାଙ୍କୁ ବିଶ୍ୱାସ ନାହିଁ । ସେମାନେ ସୁବିଧା ପାଇଲେ, ଦେଶରେ ନିଆଁ ଲଗାଇଦେବେ, ଗୌତମଜୀ ମୋତେ ନିଜେ କହୁଥିଲେ···।

ମୁଁ ନିଜକୁ କହିଲି ଯେ ମୁଁ ରାଜା ନୁହେଁ, ମୋର ପ୍ରଜା ନାହାନ୍ତି । ହେଲେ ମୋର ହଜାରେ ଭାଇଭଉଣୀ ଅଛନ୍ତି ଯେଉଁମାନେ ମୋତେ ଭଲ ପାଆନ୍ତି । ମୁଁ ସେମାନଙ୍କୁ ବୁଝେଇବାକୁ ଚେଷ୍ଟା କଲି । ଲୋକେ ବୁଝିଲା ପରି ମୁଣ୍ଡ ହଲେଇଲେ । କିନ୍ତୁ ଅଧିକାଂଶ ମୋତେ ବଲବଲ କରି ଚାହିଁଲେ, ସତେକି ସେମାନେ ଶୁଣିପାରୁ ନାହାନ୍ତି, ବୁଝିପାରୁ ନାହାନ୍ତି, କେବଳ ଭଲ ପାଉଛନ୍ତି । ସେଇଥିର ଜଣେ ଟୋକା—ମୁଁ ତାକୁ ଚିହ୍ନି ନାହିଁ—ବାଳ ଝାଡ଼ି ମୋତେ ସମର୍ଥନ କରିବା ଛଳରେ କହିଲା—ଆରେ ରାଉତବାବୁଙ୍କୁ କାହିଁକି ହଇରାଣ କରୁଛ କହିଲ ? ଇଏ କଅଣ କହିବେ ? ଇଏ କଅଣ ମେମ୍ବର ନା ମନ୍ତ୍ରୀ ? ସେମାନେ ହସି ଉଠିଲେ । ନା ସମସ୍ତେ ନୁହନ୍ତି, କେତେଜଣ ହସିଉଠିଲେ ।

ମୋତେ ବାଧିଲା । ମୁଁ ସହିନେଲି । ଘରକୁ ଫେରିଆସି ଗୌତମଜୀଙ୍କ ଫଟୋ ସାମନାରେ ଛିଡ଼ା ହେଲି । ଉପରବେଳିଆ ଖରା କେବଳ ତାଙ୍କ ଦାଢ଼ି ଉପରେ ପଡ଼ୁଥିଲା । ଯେପରିକି ସେଇ ହେଉଛି ସତ କମ୍ବା ଉଜ୍ଜଳ ମିଛ । ମୋତେ ଅସ୍ୱସ୍ତି ଲାଗିଲା । ମୁଁ ପୂରା ଫଟୋକୁ ପାଖରେ ଆଣି ଦେଖିଲି । ମୋର ମନେ ହେଲା ସେ ମୋ ପ୍ରଶ୍ନର ଉତ୍ତର ଦେବାକୁ ଚାହାନ୍ତି ନାହିଁ । କାହିଁକି ନା ସେ ମୋର ବାପା···ସେ ମୋର ନେତା ।

ହଁ, ସେଇ ପ୍ରଥମେ ମୁଁ ବିଦ୍ରୋହ କରିଉଠିଲି । ତାଙ୍କର ବିରାଟ ମୁଣ୍ଡକୁ ଦୁଇ ହାତରେ ଧରି ପ୍ରଶ୍ନ ପଚାରିବାକୁ ଇଚ୍ଛା ହେଲା—ଗୌତମଜୀ, ତୁମେ କେଉଁ ଦିନେ କର୍ମୀ ନଥିଲ ? ସବୁଦିନେ ନେତା ହୋଇଥିଲ ଆଉ ନେତା ହୋଇ ବସିଥିବ ?

ତା'ପରଦିନ ଖବରକାଗଜରେ ବାହାରିଲା ଯେ ଜଣେ ନନ୍ଦୀଘୋଷୀ ଅକାଟ୍ୟ ପ୍ରମାଣ ପାଇଛନ୍ତି ଯେ ଗୌତମଜୀ ଗୋଟିଏ ରପ୍ତାନି-ଆମଦାନି କମ୍ପାନି ଠାରୁ ଲକ୍ଷାଧିକ ଟଙ୍କା ହାତ ପଇଠ କରିଛନ୍ତି । ଉଦ୍ଦେଶ୍ୟ ?

ଛିଃ ! ମୋ ମୁଣ୍ଡ ତଳକୁ ହୋଇଗଲା । ବିରୋଧୀ ପାର୍ଟିର ପ୍ରଚାର ଏତେ ନୀଚ ସ୍ତରକୁ ଯାଇପାରେ ? ଶେଷକୁ ଗୌତମଜୀଙ୍କ ପରି ଲୋକଙ୍କ ଉପରେ କାଦୁଅ ବୋଳିଲେ ? ଗୌତମଜୀ କେବଳ ଦେଶର ପ୍ରଧାନମନ୍ତ୍ରୀ ଏବଂ ଚତୁରଙ୍ଗୀ ପାର୍ଟିର ପ୍ରେସିଡ଼େଣ୍ଟ ନୁହନ୍ତି, ସେ ହେଉଛନ୍ତି ଏସିଆର ଜାଜ୍ଜ୍ୱଲ୍ୟମାନ ସୂର୍ଯ୍ୟ, ପୃଥିବୀର···

ଯେଉଁଠୁ ମୋର ମୁଣ୍ଡ ଆହୁରି ତଳକୁ ହୋଇଗଲା । ମୁଁ ତ ନିଜେ କାଲି ତାଙ୍କ ପ୍ରତିକୃତିର ଅବମାନନା କରିଥିଲି ! ମୁଁ ମନେ ମନେ ତାଙ୍କୁ କ୍ଷମା ମାଗିଲି । ଥାଉ ଏତିକି ଥାଉ, ମୋତେ ମୋର ଦେଶକୁ ଆଉ ଦଣ୍ଡ ଦିଅନାହିଁ ।

କିଛି ଦିନ ପରେ ଆଉ ଗୋଟିଏ ଖବର । ଗୌତମଜୀଙ୍କର ଜ୍ୱାଇଁ, ଜଣେ ଗ୍ରେଟିଆ ବ୍ୟବସାୟୀ, ସେ କୁଆଡ଼େ ଲକ୍ଷ ଲକ୍ଷ ଟଙ୍କା ବିଦେଶୀ ବ୍ୟାଙ୍କରେ ରଖିଛନ୍ତି । କେଉଁଠୁ ପାଇଲେ ?

ଆହୁରି । ଗୌତମଜୀଙ୍କ ସେକ୍ରେଟେରୀଙ୍କର ନିର୍ଦ୍ଦେଶରେ କର୍ତ୍ତୃପକ୍ଷ ଜଣେ ନିର୍ଦ୍ଦୋଷ କର୍ମଚାରୀଙ୍କ ଘର ଖାନତଲାସ କରି ତାଙ୍କୁ ହଇରାଣ କରି ମିଛ ମାମଲା ଚଳେଇଥିଲେ, କିନ୍ତୁ ନପାରିବାରୁ ତାଙ୍କୁ ରାଷ୍ଟ୍ରରକ୍ଷା ଆଇନ୍ ଦେଖାଇ ଜେଲରେ ଠୁଙ୍କି ଦେଇଛନ୍ତି । ସ୍ତ୍ରୀ କାନ୍ଦି କାନ୍ଦି ଗୌତମଜୀଙ୍କ ପାଖକୁ ଚିଠି ଲେଖିଛି, ଉତ୍ତର ନାହିଁ ।

ଜଣେ ନୁହେଁ ଦୁଇ ଜଣ ନୁହେଁ, ଜଣାପଡ଼ୁଛି ଯେ ବିଭିନ୍ନ ପ୍ରାନ୍ତରେ ଶହ ଶହ ଲୋକ ଏମିତି ବିନା ବିଚାରରେ ଜେଲ୍‌ରେ ସଢ଼ୁଛନ୍ତି । ସେମାନଙ୍କର ଦୋଷ ଭିତରେ ସେମାନେ ଗୌତମଜୀ କିମ୍ବା ତାଙ୍କ ଜ୍ୱାଇଁ କିମ୍ବା ତାଙ୍କର ଶଳା କିମ୍ବା ସେକ୍ରେଟେରୀଙ୍କ ବିରାଗଭାଜନ ହୋଇଛନ୍ତି ।

ଶେଷକୁ ଅଭିଯୋଗ ହେଲା ଯେ କେତେଜଣ ଗ୍ରାମ୍ୟମାନଙ୍କୁ ଜେଲ୍‌ରେ ମରା ହୋଇଛି ।

ଏଭଳି କୁତ୍ସାରଟନା କିଏ ସହିବ ? ଗୌତମଜୀ ନୂଆ ଆଇନ୍ ଜାରି କରି ପ୍ରେସ୍‌ର ମୁହଁ ବନ୍ଦ କରିଦେଲେ । ଦେଶର ମଙ୍ଗଳ ପାଇଁ ସଭା ଶୋଭାଯାତ୍ରା ଇତ୍ୟାଦି ଉପରେ କଟକଣା ଲଗାଇଦେଲେ । କିନ୍ତୁ ନନ୍ଦୀଘୋଷୀମାନେ ଭିତରିଆ ପ୍ରଚାର ଚଳାଇଲେ । ଶଶିଚନ୍ଦ୍ର ମୋହନ ନାମକ ଜଣେ ବୟସ୍କ ଲେଖକ ସାହିତ୍ୟ ଛାଡ଼ି ରାଜନୀତିରେ ପଶିଲେ ନନ୍ଦୀଘୋଷ ପାର୍ଟିର ବିଶିଷ୍ଟ ରୂପେ ଗଣା ହେଲେ । ତାଙ୍କର ଦାଢ଼ି ନାହିଁ ସିନା, ପ୍ରଶସ୍ତ କପାଳ ଅଯଦୃଷ୍ଟି, ଗୃହାଣି···ସତେ କି ସେ ଗୌତମଜୀଙ୍କର ନକଲି ସାମ୍ୟବାଦକୁ ଭସ୍ମ କରି ଅକଳଙ୍କ ସାମ୍ୟବାଦର ଝଡିଘର ଦେଖି ତା'ପରେ ଯାଇଁ ବିଛଣା ଧରିବେ । ସେ କଥା କହୁ କହୁ କାନ୍ଦନ୍ତି । ସେଥିରେ ତାଙ୍କର ମୂଲ୍ୟ ଆହୁରି ବଢ଼ିଯାଏ ।

ମୋତେ ଭୟ ଲାଗିଲା । ଇଏ କଣ ହୋଇଛି ? କଣ ହେବାକୁ ଯାଉଛି ! ମୁଁ ବାରମ୍ବାର ଗୌତମ୍‌ଜୀଙ୍କ ଫଟକୁ ଚାହିଁ ହାତ ଯୋଡ଼ିଲି । ଗୌତମ୍‌ଜୀ ରକ୍ଷାକର । ଶାନ୍ତି ଦିଅ, ଶାନ୍ତ ଦିଅ । ଏମ୍ ପି. ରାଜ୍ୟକୁ ଶାନ୍ତ ଦିଅ ।

ଶାନ୍ତି ମିଳିଲା ନାହିଁ । ଯେତେବେଳେ ଉପନିର୍ବାଚନ ହେଲା ନନ୍ଦୀଘୋଷୀମାନେ ଜିତିଲେ । କାନ୍ଥବାଡ଼ରେ ପୋଷ୍ଟର ମରାଗଲା—ଗୌତମ୍‌ଜୀ ଗାଦି ଛାଡ଼ । ଗାଲୁଆ ଗୌତମ ଗଞ୍ଜିଆ ଗୌତମ୍ ଗାଦି ଛାଡ଼ । ଶତ୍ରୁ ଚନ୍ଦ୍ରମୋହନଙ୍କୁ ଜେଲ ଦିଆଗଲା । କିନ୍ତୁ ବଜାର ହାଟରେ ତାଙ୍କ ଫଟୋ ବିକ୍ରି ହେଲା । ଦେଖିଲି ଯେ ମୋର ଗାଁ ଗୋବିନ୍ଦପୁର, ମୋର ଜିଲାର ବିଭିନ୍ନ ନନ୍ଦୀଘୋଷୀ ନାରଙ୍ଗୀ ପତାକା ଉଡ଼ିବାକୁ ଲାଗିଲା, 'ଶତ୍ରୁଗୁରୁ'ଙ୍କର ଫଟୋ ଶୋଭା ପାଇଲା । ମୋର ମନହେଲା ହୁଏତ ମୋର ଲୋକମାନଙ୍କ ଭିତରୁ କେହି ମୋ ଘରକୁ ପଶି ଆସି ଗୌତମଜୀଙ୍କ ଫଟୋକୁ ଫିଙ୍ଗି ଦେବେ ଆଉ ସେଇ ଦାଢ଼ିବାଲା ବଶିଷ୍ଠକୁ ବସେଇ ଦେଇଯିବେ ।

ନା ! ମୁଁ ଛାଡ଼ିବି ନାହିଁ । ରାତି ଅଧରେ ନିଦ ଭାଙ୍ଗିଗଲାରୁ ମୁଁ ଗୌତମଜୀଙ୍କୁ (ତାଙ୍କର ଫଟୋକୁ) କୁଣ୍ଢାଇ ଧରିଲି । ମୁଁ ତୁମକୁ ଛାଡ଼ିବି ନାହିଁ । ମୋର ଗୋଟିଏ ବାପା ! ବାପା ଠାରୁ ବଡ଼ ମହାନ୍ ବାପା !

ଆଉ କେତେ ଦିନ ? ଜୀବନ କେତେଦିନ ? ଥରେ ମଲେ ପୁଣି ଥରେ ବଞ୍ଚିବ । ବଞ୍ଚି ରହିବ କେତେ ଦିନ ?

ତିନୋଟି ପ୍ରଦେଶରେ ବିଧାନସଭାର ମିଆଦ ପୂରିଗଲାରୁ ନିର୍ବାଚନ ହେଲା । ନନ୍ଦୀଘୋଷୀମାନେ ପ୍ରଚାର କଲେ ଯେ ଦେଶ ତାତି ଉଠି ନଥିଲେ ଗୌତମଜୀ ନିର୍ବାଚନ କରାଇ ଦେଇ ନଥାନ୍ତେ । ନିର୍ବାଚନରେ ନନ୍ଦୀଘୋଷୀମାନେ ପ୍ରାୟ ଶତକଡ଼ା ନବେ ଆସନ ଦଖଲ କରିନେଲେ । ହେଉ । ମୁଁ ତଥାପି ଦମ୍ଭଧରି ରହିଲି । ଏଇ ହାଉଆ ମହାଦ୍ରୁମମାନଙ୍କୁ ଉପାଡ଼ି ଦେଇ ପାରେ, କିନ୍ତୁ ମାଟିର ପାଯ, ଆଜୀବନ କର୍ମୀର ନିଷ୍ଠାକୁ ଲିଭାଇ ଦେଇ ପାରିବ ନାହିଁ ।

ତାପରେ ଗୋଟାଏ ଦିନର କଥା । ଜ୍ୟେଷ୍ଠମାସର ଗୁଳୁଗୁଳି । ମୁଁ ବାହାରେ ଖଟିଆଟିଏ ପକେଇ ଏଣୁତେଣୁ ଭାବୁଥାଏ । ଭାବୁ ଭାବୁ ମୋର ମନକୁ ଆସିଲା ଯେ ଅନେକ ଦିନ ହେଲା କେହି ମୋ ଠାରୁ କିଛି ଲୋଡ଼ିବାକୁ ଆସି ନାହାନ୍ତି । ନ ଆସିଲେ ନାହିଁ । ନନ୍ଦୀଘୋଷୀ ଝଡ଼ ସାଙ୍ଗରେ ତା'ର କିଛି ସମ୍ପର୍କ ନାହିଁ । ଭଲପାଇବା ପ୍ରତ୍ୟହ ନିଜକୁ ପ୍ରମାଣିତ କରିବାକୁ ବସିଲେ ପଥର ହୋଇଯିବ । ମୁଁ ପଙ୍ଖାରେ ନିଜକୁ ବାନ୍ଧିବାକୁ ଲାଗିଲି । ସାମ୍ନା ରାସ୍ତାରେ ଗୋଟାଏ ବସ୍ ଚାଲିଗଲା । ଖିଆଲ ହେଲା ଯେ ବସ୍ ଦୁଇଘଣ୍ଟା ଭିତରେ ତପନ ସହରକୁ ଯିବ । ମୁଁ ତପନକୁ ଯିବି । ତା' ପାଖକୁ ଯିବି, ପ୍ରାୟ ବର୍ଷେ ହେଲା ଯାଇନାହିଁ । ଯିବି ଡୁବ ଦେଇ ଫେରି ଆସିବି । କିଏ କହୁଛି ଭିଡ଼ଦେବ ?

ସାମାନ୍ୟ ଛତିପୂରଣ ପାଇଁ ସେଠିକି ଯିବା କଥା ନୁହେଁ । ମୋତେ ଟେଡେଇ ଦେଲା ପରି କିଏ ମୋ ଆଡ଼କୁ ଆସିବାର ଦିଶିଲା । ପାଖରେ ପହଞ୍ଚିଲାରୁ ଚିହ୍ନିଲି,

ଖୁସିଟାଏ ହେଲି । ମୋର ଅତି ନିଜ ଲୋକ ସୋଦରପ୍ରତିମ ଖାରୁ ଜେନା, ଖାରୁଭାଇ । ନିରକ୍ଷର କହିଲେ ଚଳେ, ଅଳ୍ପ ଜମିବାଡ଼ି ନେଇ ଆପଣା ସୁଖ ଦୁଃଖରେ ଥାଏ, କଷ୍ଟକରି ପୁଅକୁ କଲେଜ୍‌ରେ ପାଠ ପଢ଼ାଉଛି । ମୁଁ ଯେତେବେଳେ ଯେଉଁ କାମରେ ହାତ ଦେଇଛି ସେ ମୋ ସାଙ୍ଗରେ ଅଣ୍ଟାଭିଡ଼ି ବାହାରି ଆସିଛି । ଖାରୁଭାଇ ମୋ ପାଖେ ରହି ଗୀତ ଗାଉ ନଥିଲେ, ମୁଁ ହାଲିଆ ହୋଇଗଲେ ଲେମ୍ବୁରସ ଦି’ ପାଣି ଯୋଗାଉ ନଥିଲେ ଗୋଟିଏ ନୁହେଁ କେତେ ଗଦେଇ ଯାଇ ଭଙ୍ଗି ଯାଇଥାଆନ୍ତା । ସେ ମୋତେ ଅତି ଭଲ ପାଏ, କିନ୍ତୁ ନିଜ ପାଇଁ କେବେହେଲେ କିଛି ମାଗି ନାହିଁ । ସେ ଚତୁରଙ୍ଗୀ ନୁହେଁ, ନନ୍ଦୀଘୋଷୀ ନୁହେଁ, ସେ ମୋର ଭାଇ । କିଧି ମିଳିଲା ପରି ମୁଁ ଉଠିଯାଇ ଦୁଇ ହାତ ବଢ଼ାଇ ଦେଖିଲି ଯେ ତା ମୁହଁରେ ହସ ନାହିଁ । ସେ ଦୁଃଖରେ ମୋ ପାଖକୁ ଆସିଛି ।

"କଣ ହେଲା ଖାରୁଭାଇ ?"

"କିଛି ନାହିଁ । ମୋ ପୁଅ । ମୋ ପୁଅକୁ ପୁଲିସ୍ ଧରି ନେଇଛନ୍ତି ।"

ତା’ପରେ ସେ କାନ୍ଦିବ ନାହିଁ, ହାରିବ ନାହିଁ, ଭଗବାନ ଅଛନ୍ତି ଇତ୍ୟାଦି ଅବାନ୍ତର ଖାରଭି ସହକାରେ ଯାହା କହିଲା ସେଥିରୁ ବୁଝିଲି ଯେ ଚଣ୍ଡିଗୁରୁଙ୍କୁ ଜେଲ୍‌ରୁ ଖଲାସ କରି ବୋଲି ରାଜଧାନୀରେ ଯେଉଁ ଗୁରୁ ଆନ୍ଦୋଳନ ହୋଇଥିଲା, ଖାରୁଭାଇର ପୁଅ ସେଥିରେ ମିଶିଥିଲା, ତେଣୁ ଜେଲ୍ ଯିବା ସ୍ୱାଭାବିକ । କିନ୍ତୁ ଅନ୍ୟମାନେ ଜେଲ୍‌ରୁ ମୁକୁଳି ଆସିଛନ୍ତି । ପ୍ରିୟ ଜେନା ଫେରି ନାହିଁ । ପୁଲିସ୍‌ବାଲା କହନ୍ତି ସେମାନେ ଜାଣନ୍ତି ନାହିଁ । ଖାରୁଭାଇର ଭୟ ଯେ ଅମୁକ ପ୍ରଦେଶରେ ଯାହା ହେଲା ବୋଲି ନନ୍ଦୀଘୋଟୀମାନେ କହୁଛନ୍ତି, ହୁଏତ ତା’ ପୁଅକୁ···

ମୁଁ ତତ୍‌କ୍ଷଣାତ୍ ରାଜଧାନୀକୁ ଯିବି ବୋଲି ବାହାରିଲି । ମୁହୂର୍ତ୍ତେ ବିଳମ୍ବ କରିବା ଉଚିତ ନୁହେଁ । ଯେମିତି ହେଲେ ପ୍ରିୟ ଜେନାକୁ ଫେରାଇ ଆଣିବି । ଦରକାର ପଡ଼ିଲେ ଗୌତମଜୀଙ୍କ ପର୍ଯ୍ୟନ୍ତ—ଯେଉଁଠୁ ମୁଁ ଖାରୁଭାଇକୁ ରାଗିଲା ପରି ଚାହିଁଲି ? କାହିଁକି ସେ ମୋତେ ବାଧ୍ୟ କରୁଛି । ମୁଁ ପାରିବି ନାହିଁ ବୋଲି କଣ ସେ ଜାଣି ନାହିଁ ? ମୁଁ ମେମ୍ବର ନୁହେଁ, ମନ୍ତ୍ରୀ ନୁହେଁ, ଏଇ ରାଜନୈତିକ ମାମଲାରେ ସେମାନେ ମୋତେ ପାଖରେ ପୂରାଇବେ ନାହିଁ । ଗୌତମଜୀ ହସିବେ । ନା ହସିବେ କେଉଁଠୁ ? ତାଙ୍କ ମୁହଁ କେବେଠୁ କଳା ହୋଇଗଲା । କେବଳ ସେଇ ଦାନ୍ତିକେଇ ଚକମକ ହେଉଛି, ମୋତେ ଦେଖି ମୋତେ ମନେରଖ ବୋଲି ବାଡ଼େଇପିଟି ହେଉଛି ।

ଖାରୁଭାଇର ଅସହାୟ ମୁହଁକୁ ଦେଖି ଦୀର୍ଘ ଦିନର ଗୁଳୁଗୁଳିକୁ କାଟି ଦେଇ ମୁଁ ଭିତରେ ପାଟି କରି ଉଠିଲି—ମୁଁ ମେମ୍ବର ହେବି, ମନ୍ତ୍ରୀ ହେବି ।

ନେଉା ହେବ । ଗୌତମଙ୍କୁ ମୋତେ ସାହାଯ୍ୟ କରିବ ତ କର ନହେଲେ ଜାଣିଥା ।

କିଛି ହେଲ ନାହିଁ । ପ୍ରଦେଶର ରାଜଧାନୀରେ ମୋ କଥା କେହି ଶୁଣିଲେ ନାହିଁ । ଦିଲ୍ଲୀରେ ଦେଶର ରାଜଧାନୀରେ ମୁଁ ଗୌତମଙ୍କଙ୍କ ସେକ୍ରେଟେରୀ, ପିଏଙ୍କର ଛାଇ ପର୍ଯ୍ୟନ୍ତ ବି ଦେଖି ପାରିଲି ନାହିଁ । ଯିଏ ଉତ୍ତର ଦେଲା ସେଇ ଗୋଟିଏ କଥା—ଆମେ ଜାଣିନାହୁଁ, ଆଇନ୍ ତାର କାମ କରିବ । ଓକିଲଙ୍କ ପାଖକୁ ଗଲି, ଓକିଲ କହିଲେ ଧୈର୍ଯ୍ୟ ଧର, ବେଳକାଳ ସୁବିଧା ନୁହେଁ । ମୁଁ ମାନିଲି ନାହିଁ । ଗାଆଁକୁ ଫେରି ଖାରୁଭାଇଙ୍କ କାନ୍ଦୁରା ମୁହଁ ଦେଖିବା ପୂର୍ବରୁ ମୁଁ ଯୋଡ଼ିଏ କାମ କଲି । ହାଇକୋର୍ଟରେ ରିଟ୍ ପିଟିସନ୍ ଦାଖଲ କଲି ଏବଂ ଚତୁରଙ୍ଗ ଦଳ ତ୍ୟାଗ କରି ନନ୍ଦୀଘୋଷ ଦଳରେ ମିଶିବା ପାଇଁ ଦରଖାସ୍ତ ଦେଇ ଆସିଲି । ସେତେବେଳକୁ ଜାତୀୟ ନିର୍ବାଚନ ମାତ୍ର ମାସଟାଏ ବାକି ।

ହାୟ ! ମୁଁ ଏଇଆ ଆଗରୁ କଲିନାହିଁ କାହିଁକି ? ସେଇ ଅଶାନ୍ତ ସନ୍ଧ୍ୟାରେ ଯେଉଁଦିନ ମୋତେ ବୁଦ୍ଧି ଦିଶିଲା ତା' ପରଦିନ ସେକାଳେ ମୁଁ ମୋର ଦେଖିଲା କାମ କଲି ନାହିଁ କାହିଁକି ? ଶାଳୁଆ ଗୌତମ, ଗନ୍ଧିଆ ଗୌତମଙ୍କର ମୋହ ତଥାପି ଛାଡ଼ିପାରିଲି ନାହିଁ ? ରାଣ୍ଡି ସେଇ ଯଇତା କଲି···

ମହିଷମର୍ଦ୍ଦିନୀ ପ୍ରସାଦ ରାଉତ ଦୁଇ ହାତରେ ମୁହଁ ଘୋଡ଼ାଇ ବସି ପଡ଼ିଲେ । ତାମରିକାଉ ଖବର ଜଣାଇ ଯଥେଷ୍ଟ ସହାନୁଭୂତି ଦେଇ ଚାଲିଗଲଣି, କାହିଁକିନା ତାର ସ୍ତ୍ରୀଙ୍କର ଦାନ୍ତ ବିନ୍ଧୁଛି । ଡାକ୍ତରଙ୍କ ସାଙ୍ଗରେ ଆପଏଣ୍ଟମେଣ୍ଟ ଅଛି । କମରା ଶୂନ୍ୟ । କିନ୍ତୁ ଅଳ୍ପ ସମୟ ପରେ ଅନ୍ୟମାନେ ଆସି ପହଞ୍ଚିବେ, ଭେଲା ଭେଲା କାଉ, କଜଳପାତି, କେତେ କିସମର ଚଢ଼େଇ, ନୂଆ ପୁରୁଣା ନନ୍ଦୀଘୋଷୀ । ତପନ ସହରର ଏଇ ହୋଟେଲ କମରାରେ ଜମିଯିବେ । ଆଶା ଆଶ୍ୱାସନାର ଟନିକ୍ ପିଆଇବାକୁ ଆସିବେ । ପ୍ରାର୍ଥୀ ଏମ୍. ପି. ରାଉତ ପଳାଇଯାଇ ପାରିବ ନାହିଁ । ରାଉତବାବୁଙ୍କ ମୁହଁଳୁଚ୍ଛି ନିରାଶା ଅନ୍ଧାରକୁ ତପନର ସନ୍ଧ୍ୟା ସତେ ପଣତରେ ଢାଙ୍କି ଦେଲା । ଆହୁରି ଅନ୍ଧାର । ଆଃ । ରାଉତପୁଅକୁ କେହି ଦେଖି ନାହିଁ, କେହି ଦେଖିବ ନାହିଁ । ପୁଅ ଜନ୍ମି ନାହିଁ । ନାହିଁ ।

ଅନ୍ଧାର ଭିତରେ ତପନ ସହରର ଶବ୍ଦ ଶୁଭିଲା । ଧଡ଼ଧଡ଼ ହୋଇ ମାଡ଼ି ଚାଲିଥିବା ଟ୍ରକ୍ । କୋଳାହଳ । ପେଁ ପାଁ କେଁ କାଁ କଟର କଟର । ତଳୁ କଳା ତେଲରେ ଛଣା ହେଉଥିବା ପକୋଡ଼ାର ବାସ୍ନା ଆସିଲା । ପୁଷ୍ପାରାଣୀଙ୍କର ଅମ୍ଳଳ ପେଟରେ ଓହ୍ଲଥିବା ସନାତନ ଯଇତା ମଧ୍ୟ ଆଖିଆଗରେ ଦିଶିଗଲା । କିଛି ଲୁଚିବ ନାହିଁ । ଅଲଜୁକ ତପନ ସହର ମୋତେ ଖୋଜି ଆଣିବ । ଅନ୍ଧାରକୁ ମାରି ଗୋଳି । ଠିକଣା ଜାଗାରେ ଆଲୁଅ ଜଳିବ । ଅସନା ମଇଳିଆ ପାପ ଉଜଳି ହୋଇ

ନାଚଉଠିବ । ନାଚ ମଝିରେ ଫୋନ୍ ଆସିବ—ମୁଁ ହେଉଛି ଖ୍ରୀଷ୍ଟଦେବ ।···ଆସିଛ ? ଆସ ମୋ ଗେହ୍ଲା ଆସ । ସେଇ ଆମର ନଈକୂଳିଆ ଗୋପନ ଥାନ, ଭଙ୍ଗା କାନ୍ଥ ଭିତରେ ଆକାଶର ପବନ ମିଶି ଆସୁଥିବ । କେବଳ ଭଲପାଇବା, ଅଜସ୍ର ଭଲପାଇବା ନେଇ ମୁଁ ତୁମକୁ ଗୋଟିପଣେ ନେଇଯିବ ।

ସମସ୍ତେ କହୁଥିଲେ ରାଜଧାନୀକୁ ଚାଲନ୍ତୁ । ସେଇଠି ଧରାଧରି କୁହାବୋଲା ନ କଲେ ଚଳିବ ନାହିଁ । କିନ୍ତୁ ମୁଁ ଗଲି ନାହିଁ, ତପନକୁ ଆସି ଅପେକ୍ଷା କଲି । କାହିଁକିନା ମୁଁ ଜାଣିଥିଲି ଏଇଠି ମୋର ବିଫଳତାକୁ ଜଣେ କେହି ଶୋଷିନେବ । ମୁଁ ଲୁଚିବାକୁ ହଜିବାକୁ ବସିଲାବେଳେ ସେଇ ମୋତେ ଡାକିବ, କହିବ ଯେ ମୋର ଠେଇଁ ଲୁଚିଯାଅ, ହଜିଯାଅ ତା'ପରେ ସମ୍ପୂର୍ଣ୍ଣ ସୁନ୍ଦର ହୋଇ ତୁମର କର୍ମଜୀବନକୁ ଫେରିଯିବ । ସୁନାମଧନ୍ୟ କର୍ମବୀର ଏମ. ପି. ରାଉତ । ନିବାସ ଗୋବିନ୍ଦପୁର ।

ଏଥର ପାରିବୁ ନାହିଁ ଲୋ ପାରିବୁ ନାହିଁ । ରାଉତବାବୁ ଉଚ୍ଚ ହସ ହସିଲେ । ଏଥର ମୁଁ ସତସତିକା ବିଫଳତାର ବିଷ ନେଇ ଆସିବି । ଏମନ୍ତ ବିଷକୁ ତୋର ଭଲ ପାଇବା କୁଳେଇବ ନାହିଁ । ମୋର ବାପ ମରିଗଲା । ଆଉ ଗୋଟିଏ ବାପକୁ ଧରିବା ପାଇଁ ହାତ ବଢ଼େଇ ଥିଲି । ସେ ମୋତେ ଚହ୍ନିଲା ନାହିଁ । ମୋର ଭାଇମାନଙ୍କ ପାଇଁ ମୁଁ କିଛି କରିପାରିବି ନାହିଁ । ସେମାନେ ଆଉ ମୋତେ ପାଖରେ ପୂରେଇବେ ନାହିଁ । ରାଉତପୁଅକୁ ଲୁଚେଇଲେ କେତେ ଦେଖେଇଲେ କେତେ । ତପନ ହାଟରେ ତଳେ ଗଡ଼ି ପଡ଼ିଥିବା ପଚ୍ଚା ବାଇଗଣ, ଝୋକେଇରେ ଥାନ ନାହିଁ କି ଷଣ୍ଢ ଛୁଇଁବ ନାହିଁ । ପାରିବୁ ନାହିଁ ଲୋ ପାରିବୁ ନାହିଁ । ତଥାପି ମୁଁ ଯିବି ତୋ ପାଖକୁ । ତା ଛଡ଼ା ମୋର ଗତି କଅଣ ଅଛି ?

କବାଟରେ ଖଟ୍ ଖଟ୍ ଶବ୍ଦ ଶୁଭିଲା । ନିରାକାର ମିଶ୍ର । ସାଙ୍ଗରେ ଆଉ ଦୁଇ ତିନିଜଣ । ସେମାନଙ୍କ ଓହଳା ମୁହଁରୁ ଜଣାପଡ଼ୁଛି ସେମାନେ ମଧ୍ୟ ରାଜଧାନୀରୁ ଖବର ପାଇ ସାରିଲେଣି । ପହିଲେ ଶୋକାଶ୍ରୁ ଢାଳିବା ପାଇଁ ଆସିଛନ୍ତି । ନିରାକାର ମିଶ୍ର ଜଣେ ପ୍ରଧାନ ନନ୍ଦୀଘୋଷୀ । ସେଇ ମୋତେ ସବୁଠାରୁ ବେଶୀ ଉସ୍କେଇଥିଲେ । ନେତା ବନିବାର ସ୍ୱପ୍ନ ଦେଖାଇଥିଲେ । କହୁଥିଲେ ଚଉଗୁରୁଙ୍କ ମୋର ଗୁଣଗ୍ରାମ ଅଛପା ନାହିଁ । ସେ ଚାହାନ୍ତି ଯେ ସଚ୍ଚୋଟ କର୍ମୀମାନେ ଲୋକପ୍ରତିନିଧି ହେବେ, ଯେପରିକି ଚତୁରଙ୍ଗୀମାନଙ୍କ ପରି ସେମାନେ କ୍ଷମତାକୁ ଧରି ବସିବେ ନାହିଁ, ଲୋକମାନଙ୍କର ସୁଖଦୁଃଖ ଚହ୍ନିବେ, ସେମାନଙ୍କର ସେବା କରିବେ କରିଯିବେ··· ହୁଁ ! କହିବ ନିରାକାରବାବୁ ? କେଉଁଥିପାଇଁ ମୋ ନା କାଟିଦେଲେ, ତାମରାକାଉ ମୋତେ ଯାହା କହିଗଲା କହିବ ? ନା, କହି କିଛି ଲାଭ ନାହିଁ । ସବୁ ସମାନ । ରାଜନୀତି ।

"ବାରନାରୀ ! ବେଶ୍ୟା !!" ହଠାତ୍ ନଗରକାରବାବୁ ଚତ୍କାର କରଉଠିଲେ । ରାଉତବାବୁ ଚମକି ପଡ଼ିଲେ । ସାଙ୍ଗରେ ଆସିଥିବା ଲୋକମାନେ ମୁହଁ ଚାହାଁଚାହିଁ ହେଲେ । କଥାଁ ଗିଲା ନଗରକାର ମିଶ୍ରଙ୍କୁ କିଏ ନଜାଣେ ?

ରାଜନୀତି ହେଉଛି ଗୋଟାଏ ବେଶ୍ୟା । ଯିଏ ବେଶି ଧନ ଆଣିଦେବ, ନଣ ମୋଡ଼ିବ, ଅଣ୍ଟି ରାପଣର ଧମକ ଦେଖେଇବ ସେ ତାର ମୁଣ୍ଡରେ କଳସ ଢାଳିବ ତାକୁଇ ଶାଳୀ···ନଗରକାରବାବୁ ଅକଥ୍ୟ ଭାଷାରେ କଣ କହିଗଲେ ତାର ବାଗ-ବାଇଣ ନାହିଁ ।

ତାଙ୍କର ବାକ୍ୟବାଣ ସବୁ ନସରୁଣୁ ରାଉତବାବୁ ହସିଉଠିଲେ । ଏମିତି ଠୋ ଠୋ ହୋଇ ଝୁଲି ଡୋହଲି ହସିଲେ ଯେ ଅନ୍ୟମାନେ ଦୃଶ୍ୟ ଦେଖିଲା ପରି ଚାହିଁ ରହିଲେ । ଜଣେ ନୀରବକର୍ମୀ ଆସି ନଗରକାରବାବୁଙ୍କ ସାଙ୍ଗରେ ତାଳ ଦେଇ ପାଣବାର ଦୃଶ୍ୟ । ହେଲେ ରାଉତବାବୁ ସେମାନଙ୍କୁ ଖେନା କଲେ ନାହିଁ । ପ୍ରତ୍ୟହ ଜୀବନରେ ଥରେ କେଉଁ କବିତାର ପଦୁଟିଏ ପଡ଼ିଲେ ସହସା ଜୀବନରହସ୍ୟ ଖୋଲିଗଲା ପରି ମନେହୁଏନାହିଁ ? ଇଉରେକାର ଉଲଗ୍ନ ଉଚ୍ଛ୍ୱାସରେ କ'ଣ ବୋଲି କ'ଣ କରି ପକେଇବାକୁ ଇଚ୍ଛା ହୁଏନାହିଁ ? ତାଙ୍କୁ ସେମିତି ଲାଗିଲା···କିନ୍ତୁ ମୁଁ ହସୁଛି ଏଇଥିପାଇଁ ଯେ କାନ୍ଦିବା ମନା । ବାରନାରୀ ଉପରେ ମାନକରି କେହି କାନ୍ଦେ ନାହିଁ ।

ହସୁଛି ଏଇଥିପାଇଁ ଯେ ବାରନାରୀକୁ ମୁଁ ଜାଣିନାହିଁ ତ ଆଉ ଜାଣିବ କିଏ ? ମୁଁ ବେଶ୍ୟାବରେଣ୍ୟାକୁ ଜାଣିଛି । କିନ୍ତୁ ସଂସାରସମସ୍ତ ତାର ଇଲାକା ବୋଲି ଧାରଣା ନ ଥିଲି । ତା'ଛଡ଼ା ମୁଁ ରମଣର କାଇଦା ବୁଝିପାରି ନଥିଲି ।

ହସ ଥମିଗଲା ପରେ ରାଉତବାବୁ ଗମ୍ଭୀର ହୋଇଗଲେ । ତାଙ୍କ ପାଟିରୁ କଥା ବାହାରିଲା ନାହିଁ । ଆଉ କେତେଜଣ ନନ୍ଦୀଘୋଷୀ ଆସି ପହୁଞ୍ଚିଗଲେ । ନଗରକରବାବୁଙ୍କ ସମେତ ଦୁଇଜଣ ପ୍ରସ୍ତାବ କଲେ ଯେ ରାଉତବାବୁ ସ୍ୱାଧୀନପ୍ରାର୍ଥୀ ହିସାବରେ ଛିଡ଼ା ହୁଅନ୍ତୁ । ରାଉତବାବୁ ଚୁପ୍ ରହିଲେ । ଆଉ କେତେଜଣ କହିଲେ ଯେ ଗୋଟିଏ ନୂଆଦଳ ଗଢାହେଉ, ତା ନାଆଁ ଦିଆଯାଉ ନବନନ୍ଦୀଘୋଷ, ଯେହେତୁ ରାଉତବାବୁଙ୍କ ପରି ଆହୁରି ଅନେକ ଉପଯୁକ୍ତ ପ୍ରାର୍ଥୀଙ୍କ ନାଁ କଟିଯାଇଛି । ମୁଷ୍ଟି ମେୟ ଉପରବାଲା ପ୍ରିୟାପ୍ରୀତି ହାତଗୁଡ଼ାରେ ବଶ ହୋଇ ଯେତେକ ଅନାଡ଼ିଙ୍କୁ ବାଛିଛନ୍ତି, ଚଉଗୁରୁଙ୍କ ନାଆ ଡ଼ୁବେଇବାକୁ ବସିଛନ୍ତି । ସେଇଠୁଁ ଜଣେ ପ୍ରସ୍ତାବ କଲେ ଯେ ନୂଆ ଦଳର ନାଆଁ ଦିଆଯାଉ ସତ୍ୟ ଚଉଗୁରୁ ସମିତି । ରାଉତବାବୁ ଈଷତ୍ ସ୍ମିତହାସ ଦେଇ ନୀରବ ରହିଲେ । ଜଣେ ତାଙ୍କ ଆଡକୁ ଆଖିମିଟିକା ମାର-ବାର ଦେଖାଗଲା, ଯାହାର ଅର୍ଥ ହେଉଛି ସାବଧାନ, ଆରକର କଥା ଶୁଣନାହିଁ, ସେ ହେଉଛି ଉପରବାଲାଙ୍କର କମ୍ପା ଆବୁ ଜେନାର ଗୁପ୍ତଚର । ରାଉତବାବୁ ବୁଦ୍ଧଙ୍କ ପରି

ଶାନ୍ତ ମୁଦ୍ରାରେ ବସିରହିଲେ । କେତେବେଳେକେ କହିଲେ—ଧନ୍ୟବାଦ । ଅନେକ ଧନ୍ୟବାଦ । ଦୟାକରି ମୋତେ ଏକୁଟିଆ ଛାଡ଼ିଦିଅନ୍ତୁ ।

ଜଣକ ପରେ ଜଣେ ବିଦାୟ ନେଲେ । ଯିବା ପୂର୍ବରୁ ନାରାୟଣବାବୁ ହାତ ମିଳେଇ କହିଲେ – ଭାଙ୍ଗି ପଡ଼ନ୍ତୁ ନାହିଁ । କିଛି କରିବାକୁ ହେବ ।

ରାଉତବାବୁ ତାଙ୍କୁ କଟମଟ କରି ଚାହିଁଲେ । ଆପଣଙ୍କ ପାଠ ପଢ଼ାନ୍ତୁ ନାହିଁ । ମୋର କେବଳ ନାଆଁ କଟି ନାହିଁ । ନାବାଳକ କଟିଯାଇଛି ।

ଫୋନ୍ କରିବ ନାହିଁ । ମୁଁ ତୋର ଖ୍ରୀଷ୍ଟଦେବ, ଗୋପନ ପ୍ରେମିକ, ଷ୍ଟେଶାଲ୍ ବୋଲି ଜଣାଇବା ଅନାବଶ୍ୟକ । ନିଶ୍ଚେଲା ନଈକୂଳ ଘରେ ଶେଯବିହୀନ ଦଉଡ଼ିଆ ଖଟରେ ପ୍ରେମ କରିବା ନିତାନ୍ତ ରୋମାଣ୍ଟିକ୍ ପଣ, ମୂର୍ଖତା । ମୁଁ ସିଧାସଳଖ ବିପଣୀରେ ପହଞ୍ଚିବି । ଆଉ ଜଣେ ଗରାଖ, ମହିଷମର୍ଦ୍ଦିନୀ ପ୍ରସାଦ ରାଉତ । ସେଇଠୁ ତାର ସର୍ବସାଧାରଣ ନରମ ଶେଯରେ, ମଇଳା ଶେଯରେ···

ଯିବ । ବେଲ ପଡ଼ୁଛି । ପ୍ରଥମେ ନିଜକୁ ଆଉ ଟିକିଏ ଦେଖିନିଏ । ରାଉତପୁଅର ଏ ଦଶା କାହିଁକି ହେଲା, କେମିତି ହେଲା । ଆସି ଚାଳିଶ ଟପିଲଣି, ଏତେଦିନଯାଏଁ ମୋର ଆଖି ଖୋଲି ନଥିଲା କାହିଁକି ? ଏତେଦିନଯାଏ କେମିତି ବୁଝିପାରି ନଥିଲି ଯେ ମୁଁ ହେଉଛି ପୁରୁଷ, ଆଉ ଏଇ ଚଳମାନ ପ୍ରକୃତି ମଣିଷ ସଂସାର ହେଉଛି ନେବାପାଇଁ, ବାରନାରୀଙ୍କୁ ଚୁପୁଡ଼ି ଚକଟି ଯେତିକି ନେଇପାରିବ ସେତିକି ବଡ଼ ହେବ, ମେମ୍ବର ମନ୍ତ୍ରୀ, ନେତା, ଗୌଡ଼ମଣି, ଚନ୍ଦ୍ରଗୁରୁ···

ଏମିତି କାହିଁକି ହେଲା ? ତିନି ଭଉଣୀରେ ଗୋଟିଏ ଭାଇ, ବାପମାଆଙ୍କର ନୟନଧନ, ଆଶାର ଆକାଶକୁସୁମ—ସେଇଥିପାଇଁ ? ନା ବାପା ଚାହିଁଥିଲେ ମୁଁ ମଧ୍ୟବିତ୍ତ ଆକାଶର ମଧ୍ୟମବର୍ଗ ତାରାଟିଏ ହୋଇ ବହିବି, ଡେପୁଟି, ଓକିଲ, ଇଞ୍ଜିନିୟର ଏମିତି କିଛି । ମୁଁ ଫାଷ୍ଟକ୍ଲାସ୍‌ରେ ଏମ. ଏ. ବି ଏଲ୍ ପାସ୍ କଲାପରେ ତାଙ୍କର ଆଖି ଆଉ ଟିକିଏ ଉପରକୁ ହେଲା । ଅଲ୍ ଇଣ୍ଡିଆ ସର୍ଭିସ୍, ବାରିଷ୍ଟର ଇତ୍ୟାଦି । କିନ୍ତୁ ମୁଁ ଭାବିଲି ସେଥିରେ ମୋର ଆତ୍ମା ଶାନ୍ତ ହେବ ନାହିଁ । ମୁଁ କିଛି ହେବାକୁ ଚାହେଁ ନାହିଁ । ମୁଁ ତୁମମାନଙ୍କୁ ଚାହେଁ । ଅତି ଉତ୍ତମ ଭଲପାଇବା ଚାହେଁ···ଯେତିକି ପାଇଲେ ମୁଁ ନିଜକୁ ସଁପି ଦେବି । ମୁଁ ତୁମର, ମୋତେ ନିଅ, ଗେହ୍ଲାକର, ଗିଳି ଦିଅ ।

ଠାକୁରେ ମୋତେ ନିଅ, ମୁଁ ନିଜକୁ ଭୋଗ ଦେବି ।

ସାଧାରଣ ବାପା ଠାକୁର ହୋଇପାରିବେ ନାହିଁ, ମୁଁ ଗୌଡ଼ମଣିଙ୍କୁ ଧରିଲି । ସାଧାରଣ ଭାଇବନ୍ଧୁ କୁଟୁମ୍ବ ଠାକୁର ହୋଇପାରିବେ ନାହିଁ, ଦେବେନ୍ଦ୍ର-ନାରାୟଣଙ୍କୁ ଧରିଲି ।

ସାଧାରଣ ସ୍ତ୍ରୀ ମୋତେ ବାନ୍ଧି ରଖିବ, ମୁଁ ବାହା ହେଲି ନାହିଁ । ବାହା ହେଲି ନାହିଁ, ଅବଚେତନାକୁ ଧରିଲି···ସବୁଆ ସେଇ ଆର୍ତ୍ତନାଦ, ମୋତେ ଦିଅ, ମୋତେ ତୁମଠି ମିଶାଇ ଦିଅ ନହେଲେ ମୋତେ ଡର ମାଡ଼ିବ । ନିଦଭଙ୍ଗା ଦୁଃସ୍ୱପ୍ନରେ ହାତଗୋଡ଼ କମ୍ପି ଉଠିବ । ବାଲୁତ ଶିଶୁ, ସାନ ଦେହମନକୁ ନେଇ ପୃଥିବୀକୁ କଳି ପାରୁନାହିଁ, ନିଜକୁ ଦଳରେ ନମିଶେଇଲେ ଦଳ ହୋଇପାରିବ ନାହିଁ । ମଣିଷରେ ଗଣା ହେବ ନାହିଁ··· । ବୁଝିଲୁ ସ୍ୱାଉତପୁଅ, ଏଇ ହେଲି ତୋର ମହାନ ସେବାଧର୍ମର ଫିଲସଫି ।

ମୁଁ ଯିବ ତା' ପାଖକୁ ଯିବ । ଆରେ ଏତେ ଅସ୍ଥିର କାହିଁକି ? ପୁଣି ସେଇ ଚିଲ୍ଲାଆମି ? ଆତୁରପଣ ?

ବ୍ରେକ କରୁଛୁ । ହଁ ସକାଳପହରୁ ଖାଇନାହିଁ । ଆଗ ପେଟପୂଜା, ତା'ପରେ ଯେଉଁ କଥା । ସ୍ୱାଉତବାବୁ ହୋଟେଲ ବଏ ନଉଆକୁ ଡାକ ଛାଡ଼ିଲେ, ସାଙ୍ଗେ ସାଙ୍ଗେ ମଟନ୍‌ଚପ୍, ସାଲଡ୍ ଆଣି ପହଞ୍ଚେଇବାକୁ ଆଦେଶ ଦେଲେ ।

ଆହାର କିମ୍ବା ସରିଲପରେ ଆଉ ଗୋଟିଏ ବ୍ରେକ ଆସିବ । ସେକ୍ସ । ସେଇଠୁଁ ପାହାଚ ଓହ୍ଲେଇ ତଳକୁ ଯିବୁ । ତା'ପାଖକୁ ଯିବୁ । ତୋର ସେଇ ସ୍ପେଶାଲ ବାରନାରୀ ଅନନ୍ଦତା ଅବଚେତନାକୁ ଭକ୍ଷଣ କରିବୁ । ବୁଝିଲୁ ?

(ଆଃ ତା'ଉପରେ ରାଗିବ କାହିଁକି ? ସେ କିଏ ମୋତେ କେଉଁଥିପାଇଁ ମନା କରିଛୁ ? ଦେଲେ ନେଲେ ଯାହା କଲେ ତାର କେଉଁଥିରେ ଆପତ୍ତି ଅଛୁ ? ସେ କିଏ ମୂଳରୁ କହୁନାହିଁ ଯେ···ସ୍ୱାଉତବାବୁ ବଢ଼ାଆସୁଥିବା ବସନ୍ତଜନକ କୋମଳ ଭାବକୁ ଦବେଇଦେଲେ । ମଟନ୍‌ଚପ୍, ସାଲଡ୍‌କୁ ଅପେକ୍ଷା କଲେ । )

ଖାଇଲାବେଳେ ଅନ୍ୟ କୌଣସି ଭାବ ମନକୁ ଆସିବା ଉଚିତ ନୁହେଁ ବୋଲି ନିଜକୁ ବୁଝାଉଲେ ମଧ୍ୟ ସେ କିଏ କହିଥିଲା ମନେପଡ଼ିଲା । କହିଥିଲା—ମୁଁ ତୁମଠୁଁ କିଛି ନେବାକୁ ଚାହେଁ ନାହିଁ । ଟଙ୍କା ନୁହେଁ, ସୁନା ନୁହେଁ, ଫୁଲଫଳଟିଏ ନୁହେଁ । କିନ୍ତୁ ମୁଁ ତୁମର ଆସିବା ବାଟକୁ ଚାହିଁ ବସିଥିବ । ଯେବେ ଆସିବ ଯେତେବେଳେ ଆସିବ ! ଭାସ୍ୱଦେବଙ୍କୁ ପାଇବା କଅଣ ସହଜ କଥା ।

ଭାସ୍କରଦେବ । ଏମ୍. ଏ. ପାସ୍ କରିବା ପରେ ମୁଁ ତପନ ସହରକୁ ଭଲଭାବରେ ଚହ୍ଲିବାର ସୁଯୋଗ ପାଇଲି । ସେତେବେଳେ ତ୍ୟାଗ ଆଦର୍ଶର ଭୂତ ମୋ ମୁଣ୍ଡକୁ ପୂରାପୂରି ଚଢ଼ିନଥାଏ, କିନ୍ତୁ ଗୋବିନ୍ଦପୁରରେ ବସିରହି ବାପାଙ୍କର ଉପଦେଶ, ବୋଉର ଅଳି ଶୁଣିବାକୁ ଇଚ୍ଛା ହେଉ ନଥାଏ । ନୂଆ ନୂଆ ଗୌତମଜୀଙ୍କ ବାଣୀ—ଆସ ଭାରତର ନବ ଯୁବକ, ସାମାନ୍ୟ ସ୍ୱାର୍ଥ ଛାଡ଼ି ଦେଶମାତୃକାର ଓଠରେ ହସ

ଆଣି ଦିଅ ଇତ୍ୟାଦି ଗୁଞ୍ଜରୁଥାଏ । ଦେଶୁ ବନ୍ଧୁମାନଙ୍କ ସଙ୍ଗେ ଉପନର ଗଳାକନ୍ଧ ଖୋଜି ବୁଲିବା, ରେସ୍ତୋରାଁ ସିନେମା ବଜାରଘାଟରେ ତର୍କ ଫାଜିଲାମି କରିବା ଗୋଟିଏ ଆବଶ୍ୟକ ସମୟର ବ୍ୟବଧାନ ହୋଇ ରହିଥିଲା । ମୁଁ ସବୁଥିରେ ଥିଲି କିନ୍ତୁ କେଉଁଥିରେ ମଜ୍ଜିଯାଇ ପାରୁ ନଥିଲି । ବ୍ୟବଧାନର ଶୂନ୍ୟତାକୁ ହେଜୁ ଥିଲି । ଏଇ ମାସକ ପରେ, ଛଅ ମାସ ପରେ ଶୂନ୍ୟତାକୁ କାଟି ଦେବି, ବାପାଙ୍କୁ ସିଧା କହିଦେବି, ଗୌତମଙ୍କଙ୍କ ଦଳରେ ମିଶିଯାଇ ଦେଶ କାମ କରିବି ବୋଲି ବିଗୁରୁଥିଲି । ବିଗୁରିଥିଲି, ଆଲୁଅ ଦେଖିବା ପାଇଁ ଅପେକ୍ଷା କରିଥିଲି ।

ଏଇ ସମୟରେ ଯଥାକ୍ରମେ ବେଶ୍ୟାଳୟରେ ପହଞ୍ଚିବା ବିଚିତ୍ର ନୁହେଁ । କିନ୍ତୁ ମୁଁ କେବଳ ସେଠିକି ଯିବି ଓ ଦେଟଣାହାରି ହୋଇ ବସିରହିବି ବୋଲି ସ୍ଥିର କରିଥିଲି । ସେଇଆ କଲି । ମୋ "ଭାଗ"ରେ ଯେଉଁ ଝିଅ ପଡ଼ିଲା. ମୁଁ ତାର କୋଠରିକୁ ଗଲି କିନ୍ତୁ ଚୁପ୍ ହୋଇ ବସିରହିଲି । କହିଲି କେତେ ଦେବି କୁହ, ମୁଁ ଆଉ କେଉଁଥିକି ପାରିବି ନାହିଁ । ସେ ଆବାକ୍ ହୋଇ ମୋ ଆଡକୁ ଗ୍ୱହିଁଲା । କହିଲା—କଣ ହୋଇଛି ତୁମର ? ବେମାର ହୋଇଛ ? ବାପା ମନା କରିଛନ୍ତି ? ନା ? ମୋତେ ରାଗ ଲାଗିଲା । ତାର ମୁହଁ ବନ୍ଦ କରିଦେବା ପାଇଁ କହିଲି—ମୁଁ ସାଧାରଣ ପୁରୁଷ ନୁହେଁ । ମୁଁ ଖ୍ରୀଷ୍ଟଦେବ । ଏ ପଦକରେ ତାର କଣ ହେଲା କେଜାଣି ସେ ହସି ହସି ଗଡ଼ିଗଲା । ମୋ କୋଳରେ ଲେଟିପଡ଼ିଲା । ମୋର ମୁହଁକୁ ଦୁଇ ହାତରେ ଟେକି ଧରି କହିଲା ହେଉ ହେଉ, ମୁଁ ତୁମ କଥା ମାନୁଛି । ନାଲିରଙ୍ଗ ପାଉଁଶିଆ ପାଉଡ଼ର ବୋଳା ଅଳ୍ପବୟସୀ ମୋତେ ଅଥୟ କରିଦେଲା, ସେଇ କେତୋଟି ମୁହୂର୍ତ୍ତିରେ ଚେତାଇ ଦେଲା ଯେ ସେ ନାରୀ···ଗୋଟିଏ ନାରୀ ଯେ ମୋତେ ଛାଡ଼ିବ ନାହିଁ, ମୋତେ ଛାଡ଼ିବ ନାହିଁ, କିନ୍ତୁ ବାନ୍ଧି ରଖି ପାରିବ ନାହିଁ, କାହିଁକି ନା ସେ ବାରନାରୀ । ସେଇଠୁ ସେ କହିଲା (ସେତେବେଳେ ତା'ର ଚେପେଟା ନାକ ବଡ଼ କପାଳ ସତ୍ତ୍ୱେ ବି ସେ ସୁନ୍ଦର ଦେଖାଗଲା ।) କହିଲା—ମୁଁ ତୁମ ଠାରୁ କିଛି ନେବାକୁ ଗ୍ୱହେଁ ନାହିଁ···ଇତ୍ୟାଦି ।

ସେବା ଦୀକ୍ଷା ନେଇ ସାରିଲା ପରେ ମୁଁ ତା ପାଖକୁ ଆଉଥରେ ଗଲି । ସେଦିନ ମୁଁ ତାକୁ ଭଲ ବାଟରେ ଆଣିବାକୁ ଚେଷ୍ଟା କରିବାକୁ ଭାବିଥିଲି । ମୁଁ କିଛି କହିବା ଆଗରୁ ସେ ମୋତେ ଆଉ ସେଠିକି ଆସିବାକୁ ବାରଣ କଲା । କହିଲା, ମୁଁ ତା'ପାଇଁ ଭିନ୍ନ, ଅନନ୍ୟ ଖ୍ରୀଷ୍ଟଦେବ । ଉପାୟ ବତାଇ ଦେଲା, ନଈ କୂଳରେ ଗୋଟିଏ ଅଳିଆ ଗୋଦାମ ଘର··· । ମୁଁ ତା' କଥା ମାନିଲି ।

ମାନିଲି ଏଇଥିପାଇଁ ଯେ ସେ ହେଉଛି ଅନନ୍ୟା, ଯେ ମୋର ସେବା ଧର୍ମକୁ ତାର ଭଲ ପାଇବାରେ ମାଖିଦେବ, ମୁଁ ଥକିଗଲାବେଳେ···ମିଛ···ମାନିଲୁ

ଏଇଥିପାଇଁ ଯେ ତୋର ସେକ୍ସ ଯୌନପ୍ରବୃତ୍ତି ସେବାଧର୍ମରେ କନ୍ଭର୍ଟେଡ ହୋଇଗଲା । ଭାବିଲୁ ସେଠି ମଧ୍ୟ ତୁ ନିଜକୁ ଭୋଗ ଲଗେଇ ଦେଇ ପାରିବୁ । ସିଏ ମଧ୍ୟ ତୋର ଗୋଟାଏ ଠାକୁର !

ବନ୍ଦ କର !! ମୋର ନାଆଁ କଟିଯାଇଛି, ନାଆଁ ଫେରି ଆସିଛି, ମହିଷ-ମର୍ଦ୍ଦିନୀ ପ୍ରସାଦ ରାଉତ ଆଜି ଅବଶ୍ୟ ସେଠିକି ଯିବ, ଯିବ ଆଉ ଦେଖେଇଦେବ । ମାଡ଼ବସି ଦେଖାଇଦେବ ଯେ···ସେଇଠୁ ନେତାଗିରି ଆରମ୍ଭ ହେବ । ନନ୍ଦୀଘୋଷୀ ଚତୁରଙ୍ଗୀ ଜଲକା ହୋଇ ରୁହିଁ ରହିଥିବେ । ରାଉତବାବୁ କଣ କରିପାରେ, କେଉଁଠୁ କେଉଁଯାଏ ଦେଖିନେବେ ।

(ବାପା ଚାଲିଗଲେଣି । କିନ୍ତୁ ମୋର ବୋଉ ମରିବା ପୂର୍ବରୁ ଦେଖିବ ତା'ର ପୁଅ ବାରବୁଲା ଫକୀର ନୁହେଁ, ନେତା, ମାନ୍ୟବର, ଦେଶଭୂଷଣ···)

ରାଉତବାବୁ ଖାଇପିଇ ସାଣ ତଳକୁ ଓହ୍ଲାଇଲେ, ରାସ୍ତାକୁ ଗଡ଼ିଲେ, ଲୋକ ଗହଳରେ ପଶିଗଲେ । ତାଙ୍କର ସନ୍ଦେହ ହେଲା ଯେ ହୋଟେଲ ଫାଟକ ପାଖରେ ଗୋଟାଏ ଲୋକ ତାଙ୍କୁ ଲକ୍ଷ୍ୟ କରୁଛି, ବୋଧହୁଏ ପିଛା ଧରିବ । ଗୁପ୍ତଚର । କୋଇ ପରୁଆ ନେହିଁ । ରାଉତବାବୁ ଦମ୍ଭରେ ବାଟ ଚାଲିଲେ । ମୁଁ ଉଠିଲିଣି, ଜାଗି ଉଠିଲିଣି, ନିରୋଧିବାର ପ୍ରଶ୍ନ ନାହିଁ ।

ବଜାର ରାସ୍ତାରେ ଠେଲପେଲ ହୋଇ ଧୂଳିଧୂଆଁକୁ ନିଃଶ୍ୱାସରେ ଟାଣି ତାଙ୍କୁ ଭଲ ଲାଗିଲା । ମନେହେଲା ଯେ ତପନ ସହର ନହୋଇ ଗୋବିନ୍ଦପୁର ଗାଆଁ ହୋଇଥିଲେ ଏଇ ନବ ଜାଗରଣ ଜମି ଆଆନ୍ତା । କାହିଁକନା ଏଠି ମଣିଷ ପରେ ମଣିଷ, ପ୍ରବୃଦ୍ଧ, ପ୍ରମତ୍ତ, ଭାବିବାକୁ ବେଳ ନାହିଁ । କିଏ କାହାକୁ ପେଲି ଦେଇ ଟପି ଯାଇ ଖୁମ୍ବକୁ ଛୁଇଁବ ସେଇହେଲା ପହିଲି ଆଉ ଶେଷ କଥା । ସେଇଥିପାଇଁ ରାଜପଥ ଏମିତି ଦୁଲୁକି ଉଠୁଛି, ଖାଲ ଢିପ ସବୁ ନାହିଁ । ମଇଳା ଆବର୍ଜନା ବିଚ୍ଛୁଡ଼ି ହୋଇ ପଡ଼ିଛି, କୁଡ଼ିଆ କୋଠା ଅଶ୍ଳୀଳ ଯୋଡ଼ି ଛଡ଼ାଛଡ଼ି ହୋଇ ପାରୁନାହାନ୍ତି ।

(ଏତେ ଅଶ୍ଳୀଳତା ନଥିଲେ କଣ ଚଞ୍ଚଳତା ନାହିଁ ? ଗୌତମଙ୍କ ଛତ୍ରଗୁରୁ କଣ ଏଇ ବାଟ ଦେଇ ଯାଇଥିଲେ ?)

ଚାଲେ ଚାଲେ, ଅଯଥା ପ୍ରଶ୍ନ ପଚାରିବା ଦରକାର ନାହିଁ ? ତୁ କ'ଣ ତପନ ସହରକୁ ଆଗରୁ ଦେଖିନାହୁଁ ? ଶୁଙ୍ଘିନାହୁଁ, ଚାଟିନାହୁଁ ?

(ଓଃ, ପୁଣି ସେଇ ଅଶ୍ଳୀଳତା ! ନିଜକୁ ଅପରକୁ ଶଳା କହିଲେ କାହିଁ ଅଧିକା ବୃତ୍ତି ଅସିବ ନାହିଁ । ମୁଁ ନାରୀକର ମିତ୍ର ନୁହେଁ, ମୁଁ ଅଦ୍ୱିତୀୟ ।)

ହଉ, ହଉ, ଚାଲେ । ବାବୁଲ ବଜାର ସଜବାକୁ ବସିଲାଣି, ଆଗରେ ଧନ ମୁହାଣି ଛକ, ସେଇଠୁଁ ବାଆଁକୁ ଯିବୁ । ତା'ପରେ ଚତୁର୍ଥ କି ପଞ୍ଚମ ଗଳି ଦେଖିଯିବୁ । ଭୁଲ ଯାଇଥିବାର ବାହାନା କରିବୁ ନାହିଁ । ସାବଧାନ ।

ରାଉତବାବୁ ଚାଲିବାକୁ ଲାଗିଲେ । ଧନମୁହାଣି ଛକରୁ ବାଆଁକୁ ଗଲେ, ଗୋଟିକ ପରେ ଗୋଟିଏ ଗଳି ମୁଣ୍ଡରେ ଠିଆହୋଇ ମନେ ପକାଇଲେ ।...ମନେ ପଡ଼ୁନାହିଁ । ସତରେ ମନେ ପଡ଼ୁନାହିଁ, ସତରେ ମନେ ପଡ଼ୁନାହିଁ । ବିଶ୍ୱାସ କର । ରାଉତବାବୁ ଝାଳେଇବାକୁ ଲାଗିଲେ । ସତେ କି ମାଷ୍ଟ୍ରେ ବିଶ୍ୱାସ କରିବାକୁ ନାରାଜ ।

ହେଲା ଏବେ ମନେ ପଡ଼ୁଛି । ଯେଉଁଠି ଗୋଟେ ବଡ଼ ରଙ୍ଗିନ୍ ସିନେମା ପୋଷ୍ଟର ମରାହୋଇଛି, ତା'ର ପାଖ ଗଳି । ବନାରସୀ ପାନ ଦୋକାନ । ରେଡ଼ିଓରେ ଆକାଶବାଣୀ ସମ୍ବାଦ ଶୁଣାଯାଉଛି । ଗୌତମଜୀ କହିଲେ ଚଣ୍ଡ ଚନ୍ଦ୍ରମୋହନ ଦେଶକୁ ଛାରଖାର କରିଦେବାକୁ ବସିଛନ୍ତି । ଚଣ୍ଡ ଚନ୍ଦ୍ରମୋହନ କହିଲେ...

ମରନ୍ତୁ ସେମାନେ । ମୁଁ ମୋର ବାଟ ଚାହୁଁଛି । ରାଉତବାବୁ ଉଚିତ ଗଳି ଭିତରେ ପଶିଲେ । ଏଇ ଗଳିରେ ସିଧା ସିଧା ଯିବ । ଗଳିର ଆରମୁଣ୍ଡରେ ତାରିଣୀ ମନ୍ଦିର । ମନ୍ଦିରକୁ ଦି' ଖୋଜ ବାକି ଥିବ, ଡାହାଣକୁ ମୋଡ଼ିବ । ନାଲି କୋଠା । ସେ ମୋତେ ଦେଖିଲା ମାତ୍ରେ...

( ମୋତେ ଦେଖିଲା ମାତ୍ରେ ତା' ମୁହଁରେ ହସ ଉକୁଟି ଉଠିବ । ଭଲ ପାଇବାର ହସ । ମୁଁ ତାକୁ ପୋଛି ଦେବି କେମିତି ? )

ରାଉତପୁଅ. ତଥାପି ଭଲ ପାଇବାର ଭେଳିକି ଦେଖୁଛୁ ? ବୁଝି ପାରୁନାହିଁ ଯେ ସେ ହେଉଛି ବେଶ୍ୟାର ହସ ? ତୋତେ ଭଲପାଏ ମାନେ ତୁ ହେଉଛୁ ତା' ପାଇଁ ଗୋଟାଏ ବଡ଼ ଗରାଖ, ବ୍ୟତିକ୍ରମ । ସେ ହସିଲେ ତୁ ମଧ୍ୟ ହସିବୁ । ଦାନ୍ତ ନିକୁଟି ହସିବୁ । ତା'ପରେ ତାକୁ ଭିଡ଼ିଆଣି...

(ମୁଁ ଜାଣେ, କିନ୍ତୁ ସେ ଡାକିବ ଖାଇଦେବ)

ରାଉତବାବୁ ଅଟକି ଗଲେ । ବିଜୁଳି ବେଗରେ ଫଇସଲା କଲେ ଯେ ଏ ନିର୍ଜୀବ ନିଷ୍କ୍ରିୟ ନିଜକୁ ହତ୍ୟା କରିବାକୁ ହେବ ।

କିଛି ସମୟ ପରେ ଦେଖାଗଲା ଯେ ଶ୍ରୀଯୁକ୍ତ ଏମ୍. ପି. ରାଉତ ଖଡ଼୍ଗଧାରିଣୀ ତାରିଣୀଙ୍କ ସମ୍ମୁଖରେ ଭୁଲୁଣ୍ଠିତ ହୋଇ ପଡ଼ିଛନ୍ତି । ଉଠିବାକୁ ନାରାଜ ।

ତାଙ୍କର ଏଇ ଅବସ୍ଥା ଦେଖି ତରୁଣ ବିଶେଷଜ୍ଞ କହୁଥାନ୍ତି : ଆହା ସେଇଆ ହେଲା । ବଦଳି ପାରିଲୁ ନାହିଁ । ବାରନାରୀକୁ ଛାଡ଼ି ଘରନାରୀକୁ ଧରିଲୁ । ଆପଣାକୁ ସଁପି ଦେଲୁ । ଆଉ ଜେନାଙ୍କର ଗୁପ୍ତଚର ପଛରେ ଥାଇ ଦେଖିଲା, ଆଶ୍ଚର୍ଯ୍ୟ ହେଲା, ଆଉ ଆନନ୍ଦରେ କୁରୁଳି ଖାଇ ଭାବିଲା ଯେ ଲୋକଟା ସଢ଼ିଗଲା, ସ୍ୟାର ବାପଅଜା ଚଉଦପୁରୁଷ ଜେନାବାବୁଙ୍କର ସାମନାରେ ଛିଡ଼ାହୋଇ ପାରିବେ ନାହିଁ । ହେଲେ ରାଉତବାବୁ ନିଜକୁ ବଳି ଦେଇ ବର ମାଗୁଥିଲେ, ମାଗି ଚାଲିଥିଲେ । ମାଆଲୋ ମାଆ, ମୁଁ ଲଙ୍କାଗଡ଼ ଜିଣିପାରିବ ନାହିଁ କିନ୍ତୁ ମୋତେ ମୋ ରାବଣକୁ ଚିହ୍ନାଇ ଦେ ।

# ବାରନାରୀ

ମୋର ଜଣେ ବନ୍ଧୁ ଅଛନ୍ତି ଯେ ଗୋଟିଏ ରାଜନୈତିକ ଦଳର କର୍ମୀ । ଏବଂ ମୋର ଧାରଣା ଜଣେ ସଚ୍ଚୋଟ କର୍ମୀ । ଥରେ ତାଙ୍କୁ ମୁହଁ ଶୁଖେଇ ବସିଥିବାର ଦେଖି ପଚାରିଲି— 'କିଓ, କ'ଣ ହୋଇଛି ତମର ? ଦଳପତି ରାଗିଛନ୍ତି ତମ ଉପରେ ? ତମର ପ୍ରସ୍ତାବ ମାଡ଼ ଖାଇଗଲା ? ନା—' ମୁଁ ଆଉ କିଛି ରହସ୍ୟ କରିବା ପୂର୍ବରୁ ସେ ମ୍ରିୟମାଣ ହୋଇ ମୋ ହାତକୁ ଧରି ପକେଇଲେ । କହିଲେ, "ମୁଁ ଜାଣି ନଥିଲି ଏମିତି ହେବ ବୋଲି । ଯେ ସେଠି ବି ଏମିତି ପଲିଟିକ୍ସ୍ ଚାଲିଥିବ···"

"କେଉଁଠି ?", ମୁଁ ପଚାରିଲି ।

"ଆମରି ହାଇକମାଣ୍ଡରେ, ଆଉ କେଉଁଠି ?"

ସହଜେ ମୁଁ ହୋ-ହୋ ହୋଇ ହସି ଉଠିଲି । କିଓ ରାଜନୈତିକ ପାର୍ଟିରେ ରାଜନୀତି ଚାଲିବ ନାହିଁ ତ ଆଉ କୋଉଠି ଚାଲିବ ବୋଲି ଭାବୁଥିଲ ? କଲେଜ୍‌ର ପ୍ରାଙ୍ଗଣରେ, ସଚିବାଳୟର କରିଡ଼ର୍‌ରେ, ନା ବାର୍ କାଉନ୍‌ସିଲ୍‌ର ବାରଣ୍ଡାରେ ? କିନ୍ତୁ ପରେ ମୋର ଚେତା ହେଲା । ବୁଝିଲି ଯେ 'ପଲିଟିକ୍ସ୍'ର ଶବ୍ଦାର୍ଥ ଯାହାହେଉ ତାର ଭାବାର୍ଥ ଅନେକ ଦୂରକୁ ପଳେଇ ଗଲାଣି । ଖାଲି କଲେଜର ପ୍ରାଙ୍ଗଣ, ସଚିବାଳୟର କରିଡ଼ର ଆଦି ବୃଦ୍ଧି ଜୀବୀ ମହଲରେ ନୁହେଁ, ତା'ର ଦାନ୍ତିକିଳିଡ଼ା ହସ ଏବଂ ଖେଳ ମଧ୍ୟ ଦେଖିବାକୁ ମିଳିବ ଦେବାଳୟରେ, ବେଶ୍ୟାଳୟରେ, ତଥା ଯୌଥ ପରିବାରର ଭିତରି ଘରେ । ଯେଉଁଠି ପ୍ରତିଯୋଗିତା ଯୁଦ୍ଧର ଆକାର ଧାରଣ କରେ, କିନ୍ତୁ ତାହା ହାତାହାତି ହୁଏ ନାହିଁ । ସେଥିକୁ ବିଭିନ୍ନ କଳା-କୌଶଳର ପ୍ରୟୋଜନ ହୁଏ, ଯାହାକୁ ଦୁର୍ନୀତି ବୋଲି କୁହାଯିବ, ହେଲେ ତାହାହିଁ କାମ ଦିଏ । ସେଇ 'ପଲିଟିକ୍ସ୍' ଖାଲି ରାଜନୈତିକ ସଂସ୍ଥାମାନଙ୍କର ସ୍ୱଗୁଣ ବୋଲି କିଏ କହିଲା ? ହୁଏତ ଦିନେ ତାହା ଥିଲା ସେମିତି

କିନ୍ତୁ ଆଜି ନୁହେଁ । ଆଜି ତାହା ସର୍ବବ୍ୟାପୀ, ସର୍ବଗ୍ରାସୀ, ସର୍ବଦୃଶ୍ୟମାନ ।

ତା'ହେଲେ କେଉଁଠି ସ୍ଥାନ ଅଛି ରାଉତବାବୁଙ୍କ ପରି ସିଧା ସରଳିଆ ଲୋକମାନଙ୍କର ଯେଉଁମାନେ ତଥାପି ବିଶ୍ୱାସ କରନ୍ତି ଯେ ଦୁଇରେ ଦୁଇ ମିଶିଲେ ଚାରି ହେବାକୁ ବାଧ୍ୟ ? ନିରଳସ ଏବଂ ନିଃସ୍ୱାର୍ଥ ସେବାକୁ ତା'ର ନ୍ୟାଯ୍ୟ ସ୍ୱୀକୃତି ମିଳିବ ହିଁ ମିଳିବ ?

ଏଇ ଗପଟିକୁ ଯେବେ ଲେଖିଥିଲି, ସେଦିନଠୁଁ ଆଜି-ଯାଏଁ କୋଉ ଯୁଗେ ବିତି ଯାଇ ନାହିଁ । କିନ୍ତୁ ସ୍ୱଳ୍ପ ଭିତରେ, ମାନେ ଏଇ କୋଡ଼ିଏ ତିରିଶ ବର୍ଷ ଭିତରେ, 'ପଲିଟିକ୍‌ସ୍', ଅର୍ଥାତ୍ ସ୍ୱାର୍ଥମୂଳକ ଦୁର୍ନୀତି-ଯୁକ୍ତ-ଦୁରଭିସନ୍ଧିର ରାଜତ୍ୱ ଏତେ ବ୍ୟାପକ ହୋଇଗଲାଣି ଯେ ପ୍ରକୃତରେ ମୋର ମନେହୁଏ ଯେ ରାଉତବାବୁଙ୍କର ଆଉ ସ୍ଥାନ ନାହିଁ ଏଠି । କାରଣ ସେ ଯାହା ଯାହା କାନ୍ଦିକରି କହିଲେ ଦେବୀଙ୍କ ଦୁଆରରେ, କୋଉ ରାବଣକୁ ଆଉ ମୋଟେ ଚିହ୍ନି ହେଉ ନାହିଁ, ଯେମିତିକି ତା' ସାଙ୍ଗରେ ଲଢ଼େଇ କରି ହେବ । ଯେହେତୁ ଆମେ ସମସ୍ତେ ବୋଧହୁଏ ପଲିଟିକ୍‌ସ୍ କରୁଛୁ ଅଳ୍ପବହୁତ, ଜାଣିତରେ କିମ୍ବା ଅଜାଣତରେ । ଫଳରେ ଅଙ୍କ କଷିବାର ଧାରା ବୋଲି କିଛି ନାହିଁ । ଉପସ୍ଥିତ କ୍ଷେତ୍ରରେ କିଏ କେତେବେଳେ ଉପରକୁ ଉଠିବ କି ତଳକୁ ଖସିବ କହିହେବ ନାହିଁ, କାରଣ ଠିକଣା ସମୟରେ କାହାର ପଲିଟିକ୍‌ସ୍ ଅଧିକ କାର୍ଯ୍ୟକାରୀ ହେବ ତା'କୁ ଆଗରୁ ଠଉରେଇବା ପ୍ରାୟ ଅସମ୍ଭବ । ଏପରିକି ମୋତେ ଲାଗୁଛି ଯେ ବର୍ତ୍ତମାନ ରାଉତବାବୁଙ୍କ ପରି ଚରିତ୍ରକୁ ବୋଧହୁଏ ଅବାସ୍ତବ ବୋଲି କହିବାକୁ ହେବ, ଯାହାକି ବିଖ୍ୟାତ ଲେଖକର ବାସ୍ତବବାଦୀ ସାହିତ୍ୟ ସାଙ୍ଗରେ ଖାପ୍ ଖାଏ ନାହିଁ ।

ଭୁଲ୍ ! ଏହି ଉକ୍ତି, ଏହି ଘୋର ନୈରାଶ୍ୟବାଦକୁ ଆମେ କଦାପି ମାନି ନେଇ ପାରିବୁ ନାହିଁ । ଲେଖକ ମହାଶୟ ବୁଢ଼ା ହେଲେଣି, ହେଇଥିପାଇଁ ବୋଧହୁଏ ତାଙ୍କର ଏହି ଉକ୍ତି, କିନ୍ତୁ ତଥ୍ୟ ହିସାବରେ ସେ ଯାହା କହିଲେ, ପଲିଟିକ୍‌ସ୍‌ର ପ୍ରାଧାନ୍ୟ ବିଷୟରେ, ତା'କୁ କିଏ କେମିତି ଗ୍ରହଣ କରିପାରିବ ? ସେ କଣ କହିବାକୁ ଚାହାଁନ୍ତି ଯେ ଆଜିକାଲି କେହି ହେଲେ ତା' ଯୋଗ୍ୟତାର ପାଉଣା ପାଉ ନାହିଁ ? ଉପଯୁକ୍ତ ଲୋକ

ଏମ୍. ଏଲ୍. ଏ. କି ମନ୍ତ୍ରୀ ହେଉ ନାହାଁନ୍ତି ? ନା ପ୍ରଫେସର୍, ଜଜ୍, କମ୍ବା ଆଉ କେଉଁ ପଦବୀର ଅଧିକାରୀ ? ଏବଂ କୌଣସି ଉପଯୁକ୍ତ ଲେଖକଙ୍କୁ କ'ଣ ଏକାଡ଼େମୀ ପୁରସ୍କାର ମିଳୁନାହିଁ ?···ଏଭଳି ପ୍ରତିବାଦର ସ୍ୱର ଅବଶ୍ୟ ଶୁଣିବାକୁ ପଡ଼ିବ ମୋତେ, ମୋର ଉପରୋକ୍ତ ବକ୍ତବ୍ୟକୁ ନେଇ । ଏବଂ ତାହା ଯଥାର୍ଥ ନୁହେଁ ବୋଲି ମୁଁ କହିବି ନାହିଁ । ହଁ, ଏବେ ମଧ୍ୟ ପଲିଟିକ୍ସ କାମ ଦେଉ ନାହିଁ ବେଳେବେଳେ, ଏବଂ ଉପଯୁକ୍ତ ଲୋକମାନେ ତାଙ୍କ ନ୍ୟାଯ୍ୟ ସ୍ୱୀକୃତିର ଅଧିକାରୀ ହୋଇ ପାରୁଛନ୍ତି । ତେଣୁ ମାନୁଛି ଯେ ମୁଁ ଯାହା କହିଲି ତାକୁ ଅତିଶୟୋକ୍ତି ବୋଲି କୁହାଯାଇପାରେ ! ଯେ ରାଉତବାବୁମାନେ ଏତେ ଅବାସ୍ତବ ନୁହଁନ୍ତି କି ତାଙ୍କର ଏତେ ଅଧିକ ହତାଶ ହୋଇ ପଡ଼ିବା ଉଚିତ ନୁହେଁ । ସେ ବାରନାରୀର ଆଶ୍ରୟ ନଅନ୍ତୁ କି ବରନାରୀର, ତାଙ୍କୁ କେବେ-ହେଲେ ତାଙ୍କ ଅପେକ୍ଷିତ ଲଡ୍‌ଡୁ ମିଳିଯିବ, ଏଭଳି ଆଶା କରିବା ଅକାରଣ ନୁହେଁ । ତା'ଛଡ଼ା ଜଣେ ଅଧେ ରାଉତବାବୁ ମଧ୍ୟ ମିଳି ପାରନ୍ତି ଆଜିର ଦୁନିଆଁରେ, ଯେଉଁମାନେ କୌଣସି ଲଡ୍‌ଡୁର ଆଗ୍ରହୀ ନୁହଁନ୍ତି । ସନ୍ତୋଷଜନକ କାମ କରିବାର ଆନନ୍ଦହିଁ ଯଥେଷ୍ଟ ତାଙ୍କ ପାଇଁ, ତାହା ଲୋକସେବା ହେଉ କି ଜ୍ଞାନାର୍ଜନ, ଜ୍ଞାନ ବିତରଣ, କି ଆଉ ଯାହା ।

ତେବେ ମୁଁ ଖାଲି ଏତିକି କହିବାକୁ ଚାହେଁ ମୋର 'ଛକିତା'ର ପରିପ୍ରେକ୍ଷୀରେ । ପ୍ରଥମତଃ ମୀତିନିୟମ ଏବଂ ପଲିଟିକ୍ସର ଚାଗମାପ ଅତି ଆଶ୍ଚର୍ଯ୍ୟ ଭାବରେ ବଦଳିଯାଇଛି ଆମ ଦେଶରେ, ବିଶେଷତଃ ସ୍ୱାଧୀନତା ପାଇଲା ପରେ ଏବଂ 'ପଲିଟିକ୍ସ' ସର୍ବଗ୍ରାସୀ ନହେଲେ ମଧ୍ୟ ତା'ର ପ୍ରାଧାନ୍ୟ ଅଦ୍ଭୁତ ଭାବରେ ବଢ଼ିଗଲାଣି, ଏହା ଅସ୍ୱୀକାର କରି ହେବ କି ? କିନ୍ତୁ ସେତିକିରୁ ମୁଁ କହି ପକେଇଲି ଯେ ଏଇକ୍ଷଣି ପୂରା ଅନ୍ଧାର, ଗୁଣକୁ ଆଉ ମୋଟେ ଚର୍ଚ୍ଚା ହେଉ ନାହିଁ, ରାଉତ-ବାବୁମାନଙ୍କର ଆଉ ମୋଟେ ସ୍ଥାନ ନାହିଁ ଆମ ସମାଜରେ, ଇତ୍ୟାଦି, ଏହି ଅତିଶୟୋକ୍ତିର ମଧ୍ୟ ଗୋଟାଏ ବିଶେଷ କାରଣ ଅଛି ମୋର ବୟସର ଲେଖକମାନଙ୍କ ପକ୍ଷରେ । ତାହା ହେଉଛି ଏଇ ଯେ ମୁଁ ଯେତେବେଳେ ଲେଖାଲେଖି ଆରମ୍ଭ କଲି, ସେତେବେଳେ ମୁଁ ଗୋଟାଏ ସ୍ୱପ୍ନ ଦେଖୁଥିଲି, ଏବଂ

ତାହା (ହୁଏତ ବର୍ତ୍ତମାନର ତରୁଣ ତରୁଣୀମାନଙ୍କ ପ୍ରତି ତାହା ପ୍ରଯୁଜ୍ୟ ହେବ ନାହିଁ) ମୋର ସ୍ୱାଧିକାର ବୋଲି ମୁଁ ମଣୁଥିଲି । ଯେହେତୁ ସେତେବେଳେ ଓଡ଼ିଶା ସଦ୍ୟ ସ୍ୱତନ୍ତ୍ର ହୋଇଥିଲା, ଦେଶର ସ୍ୱାଧୀନତା ସୂର୍ଯ୍ୟ ଉଇଁ ଆସୁଥିଲା, ତେଣୁ ଅନେକ ଆଦର୍ଶର ଶରଦଶଶୀ ଅଚିରେ ଆମ ହାତରେ ଖସି ପଡ଼ିବ ବୋଲି ଆମେ ଆଶା କରୁଥିଲୁ । ସେହି ସ୍ୱପ୍ନ ଭାଙ୍ଗିଗଲା, ଠିକ୍ ଅଛି, ସ୍ୱପ୍ନ ମାତ୍ରେହିଁ ଭଙ୍ଗୁର, କିନ୍ତୁ ତା'ବୋଲି 'ପଲିଟିକ୍ସ୍'ର ରାହୁ ତାକୁ ଏତେ ପ୍ରଚଣ୍ଡଭାବରେ ଆକ୍ରମଣ କରିବ ଏବଂ ଅଧିକାର କରି ରଖିବ, ମୁଁ କଳ୍ପନା କରି ପାରି ନଥିଲି । ସେଇଥିପାଇଁ ବୋଧହୁଏ ମୋର ଏଇ ଅଶୋଭନୀୟ ଉକ୍ତି । ଏବଂ ତାହା କ୍ଷମଣୀୟ ବୋଲି ମୁଁ ଆଶା କରୁଛି ।

କିନ୍ତୁ ମୋର ଆଶା, ଯେହେତୁ ମୁଁ ମଣିଷଜାତିର ଅନିବାର୍ଯ୍ୟ ମନୋବୃତ୍ତିଗତ ବିବର୍ତ୍ତନରେ ବିଶ୍ୱାସ କରେ, ଯାହାକି ଏକାଧାରରେ ଏକ ଦର୍ଶନ ଏବଂ ବିଜ୍ଞାନସମ୍ମତ ତଥ୍ୟ, ଯେ 'ପଲିଟିକ୍ସ୍'ର ଏଇ ରାଜତ୍ୱ କ୍ରମଶଃ ଭୁଶୁଡ଼ିଯିବ । ଯେତେବେଳେ ମୋର ସ୍ୱାକ୍ଷର ଏବଂ ପ୍ରାୟଶଃ ସ୍ୱଚ୍ଛଳ ଦେଶ-ବାସୀମାନେ ବୁଝି ପାରିବେ ଯେ ଅନିଶ୍ଚିତ ପଲିଟିକ୍ସ୍ ନୁହେଁ, ଅଙ୍କ କଷିବାର ଗୋଟାଏ ନିର୍ଦ୍ଦିଷ୍ଟ ଧାରା ରହିଲେ ଭଲ ସମସ୍ତଙ୍କ ପାଇଁ । ତଦ୍ୱାରା ଯୋଗଫଳ ଗତାନୁଗତିକ ଗୃର ନହୋଇ ପାଞ୍ଚ ହେଲେ ବି କିଛି କ୍ଷତି ନାହିଁ । ସେଥିରେ କଦାପି ଏତେଟା ବାଧିବ ନାହିଁ ରାଉତବାବୁମାନଙ୍କୁ ।



# ପାଣ୍ଡୁଲିପି

ପାଣ୍ଡୁଲିପିଟି ଏଭଳି ମଳିନ, ଧୂଳିଧୂସର ଏବଂ ଅବହେଳିତ ମନେହେଲା ମୋର ନାନା ପୁରସ୍କାରପ୍ରାପ୍ତ ଏବଂ ପୁରସ୍କାରରୁ ବଞ୍ଚିଯାଇଥିବା ଚକଚକିଆ ବହି ସାଙ୍ଗରେ, ଯେ ମୋତେ ଭାରି ଖରାପ ଲାଗିଲା । ଖରାପ ଲାଗିବାର ଅର୍ଥ ନୁହେଁ ଯେ କେବଳ ମୋର କଳାତ୍ମକ ଆତ୍ମାକୁ ବାଧା ହେଲା । ମଧ୍ୟ ମୋର ଅନ୍ୟ ଏକ 'ଆତ୍ମା'କୁ ତାକୁ ନୈତିକ କୁହ ବା ଆଉ ଯାହା । ଅଗତ୍ୟା ମୁଁ ତାକୁ ପୁଣି ରଖିଦେଲି ଯଥା-ସ୍ଥାନରେ । ଅର୍ଥାତ୍ ମୋ ବହି ଆଲମାରିର ଭୂତାତ୍ତ୍ୱିକ ଥାକର ପଛ ଧାଡ଼ିରେ । ଯେମିତିକି ସିଏ ପୁଣି ପଡ଼ି ରହିବ ତା' ଅନ୍ଧାରି ଗୁହାରେ ଏବଂ ଶୀତଳ ଶାନ୍ତିର ଆରାମ କରୁଥିବ । ଅନ୍ତତଃ ମୋ ମଲା ଯାଏଁ । ତା'ପରେ ତା ଭବିଷ୍ୟତ ନିର୍ଭର କରେ ମୋର ଦାୟାଦମାନଙ୍କ ଉପରେ, ଯେଉଁମାନେ ମୋ ବହି ଆଲମାରିକୁ ମନଇଚ୍ଛା ଘାଣ୍ଟିବେ, କାଳେ ମୋର କେଉଁ ଭୁଲି ହୋଇଯାଇଥିବା କମ୍ବା ଲୁଚେଇ ରଖିଥିବା ଲେଖାକୁ ଛପେଇବା ଉଚିତ ହେବ ପରା ।

ଆପଣମାନେ ଭାବୁଥିବେ ଯେ ବୋଧହୁଏ ଇଏ ଲେଖକଙ୍କର ଏକ ଘୋର ଅଶ୍ଳୀଳ ପାଣ୍ଡୁଲିପି, ଯାହାକୁ ସେ ଲେଖି ପକେଇଥିଲେ ତାଙ୍କ ଗଭୀର ସତ୍ୟାନ୍ୱେଷାର ପରାକାଷ୍ଠା ଦେଖାଇ । ହେଲେ ତାକୁ ଛପେଇବାକୁ ସାହସ ହେଲା ନାହିଁ । ଏଣେ ବହୁ ଆଉ ଆଉ ତାକୁ ପୋଡ଼ିଜାଳି ନିଶ୍ଚିହ୍ନ କରି ଦେବାକୁ ମଧ୍ୟ ମନ ବଳୁ ନାହିଁ । ବିଚରା ! ଏଇ ଦଶା ହୁଏ ପ୍ରତିଷ୍ଠିତ, ତେଣୁ ଇମେଜ୍-କାତର ଲେଖକମାନଙ୍କର, ଯେଉଁମାନେ ସତଥା ହେଲେ ମଧ୍ୟ ଛେରୁଆ ।

କ୍ଷମା କରିବେ, ଆପଣଙ୍କୁ ନିରାଶ ହେବାକୁ ପଡ଼ିବ । ଯେହେତୁ ପାଣ୍ଡୁଲିପିଟି ମୋର ନୁହେଁ । ଗୁଣନିଧି ଓରଫ୍ ଗନୁ ପଟ୍ଟନାଏକର, ଯେ ତା'ର ପାଞ୍ଚଶହ ତିରିଶ ପୃଷ୍ଠା ସମ୍ବଳିତ 'ପ୍ରେମକଥା' ନାମକ ଏକ ବିରାଟ କବିତା ସମାହାର (ଯାହାକୁ ସେ କାବ୍ୟ ବୋଲି କୁହେ) ମୋତେ ଦେଇଥିଲା, ଛପେଇବା ପାଇଁ । କିନ୍ତୁ ମୁଁ ତାକୁ ଛପେଇ ପାରିନାହିଁ । ଲେଖକ ହିସାବରେ ମୋର ଯେଉଁ ପ୍ରତିଷ୍ଠା ରହିଛି, ତା'ରି ବଳରେ ମୁଁ ପ୍ରକାଶକମାନଙ୍କ ଉପରେ ଚାପ ଦେଇ ପାରିଥାଆନ୍ତି । ଅଥଚ ମୁଁ ତାକୁ ଛପେଇବା ଦିଗରେ କୌଣସି ଉଦ୍ୟମ କରିପାରିଲି ନାହିଁ । ପାଣ୍ଡୁଲିପିକୁ ମଧ୍ୟ ଫେରାଇ ଦେଇପାରିଲି ନାହିଁ, ଯେ ଆଇ ଆମ୍ ସରି, ମୋ ଦେଇ ହେବ ନାହିଁ । ଏବଂ ତାକୁ ସାଇତି ରଖିଲି ମୋ ବହିଥାକର ଅନ୍ଧାରି ଗୁହା ଭିତରେ ।

ଅବଶ୍ୟ ମୋର ଏଇ ବିଚିତ୍ର ଆଚରଣରେ ଯତ୍କିଞ୍ଚିତ୍ ସତ୍ୟନିଷ୍ଠା ତଥା ସ୍ୱାରୁତା ରହିଛି ବୋଲି କୁହାଯାଇପାରେ । କାରଣ ଗନ୍ନୁ ମୋର ବନ୍ଧୁ । ସେହି ଧରଣର ବନ୍ଧୁ ଯାହାକୁ ତୁମେ ବୌଦ୍ଧିକ ସ୍ତରରେ ପାଖ ଆସନରେ ନ ବସେଇଲେ ମଧ୍ୟ ତୁମର କାରୁଣ୍ୟ ରସ ଉଚ୍ଛୁଳି ଉଠେ ତାଙ୍କ ପାଇଁ । ତେଣୁ ତୁମେ ତାଙ୍କ ମନରେ କଷ୍ଟ ଦେବାକୁ ଚାହିଁବ ନାହିଁ । ହେଲେ ମୋର ତ ଗୋଟାଏ କର୍ତ୍ତବ୍ୟ ରହିଛି 'ସାହିତ୍ୟ' ପାଇଁ ? ମୁଁ ତା'ର ଅବମାନନା କରିବ କେମିତି ? ଏହି ଦ୍ୱିଧାର ବଶବର୍ତ୍ତୀ ହୋଇ ମୁଁ ତାକୁ ହିଁ ହାଁ ମାରି ବସେଇ ରଖିଥିଲି ଏତେଦିନ ଯାଏଁ । ଏବଂ ତା'ର ଆଶା ଥିଲା ଯେ ମୁଁ ତା'ର ଅନୁରୋଧ ରକ୍ଷା କରିବି ଯେମିତି ହେଲେ ଏବଂ ତା' ଲେଖାଟି ଛପା ହେବ, ମୋର ସସ୍ନେହ ଓ ସାରଗର୍ଭକ ମୁଖବନ୍ଧ ସହ ।

କିନ୍ତୁ ବିଧିବିଧାନକୁ କିଏ ଏଡ଼ାଇ ଦେଇପାରିବ ? ମୋର ଦ୍ୱିଧା କଟିଯିବା ପୂର୍ବରୁ ସେ ତା'ର ବାଟ କାଟି ଚାଲିଗଲା । ମରିଗଲା ହଠାତ୍ । ଆଜି ତା' ପାଣ୍ଡୁଲିପି ମୋ ଆଖିରେ ପଡ଼ୁଛି, ମୋ ବହିଥାକ ସଜାଡ଼ିଲା ବେଳେ । ହୁଏତ ମୁଁ ମୋ ଭିତର ମନରେ ଚାହୁଁଥିଲି ତାକୁ ପୁଣି ଥରେ ଦେଖିବା ପାଇଁ, ହାତରେ ଧରିବା ପାଇଁ ଏକ ବନ୍ଧୁସୁଲଭ ଦୁଃଖର ତାଡ଼ନାରେ ।

ତା' ବୋଲି ମୁଁ କ'ଣ ତା' ପାଣ୍ଡୁଲିପିକୁ ଛପେଇବାକୁ ଯିବି ଏଇକ୍ଷଣି, ତା' ଅତୃପ୍ତ ଆତ୍ମାକୁ ଶାନ୍ତି ଦେଲା ପରି ? ଏଇ ପ୍ରଶ୍ନଟା ମୋତେ ଛଟପଟ କରୁଛି 'ପ୍ରେମକଥା'କୁ ମୂଳ ଥାକ୍ର ଯଥାସ୍ଥାନରେ ରଖିସାରିଲା ପରେ ।

ବ୍ୟାପକ ଅର୍ଥରେ ଗନ୍ନୁକୁ ବନ୍ଧୁ ବୋଲି କହିଲି ସିନା, କିନ୍ତୁ ସେ ମୋ'ଠାରୁ ପ୍ରାୟ କୋଡ଼ିଏ ବର୍ଷ ସାନ ହେବ । ତେଣୁ ସେ ପୂରାପୂରି କନିଷ୍ଠ, କେବଳ ବୁଦ୍ଧି-ଜ୍ଞାନରେ ନୁହେଁ, ମଧ୍ୟ ବୟସରେ । ତଥାପି ସେ ମୋର ବିଶେଷ ଆତ୍ମୀୟ ହୋଇ ଉଠିଥିଲା । କାରଣ ସେ ଥିଲା ମୋର ଏଇ ପୁରୁଣା ସହରର ଏକ ନୂଆ ଆବିଷ୍କାର, ଯାହା ମୋ ପଛେ ପଛେ ଚାଲିଥିଲା ମୋ ଛାଇ ପରି ଏବଂ ମୁଁ ତା'ର ଏଇ ଦୁର୍ଗୁଣକୁ ପ୍ରଶ୍ରୟ ଦେଉଥିଲି ବୋଲି କହିଲେ ଭୁଲ ହେବ ନାହିଁ । କାରଣ ସେ କେବଳ ମୋର ଅନ୍ୟତମ ସ୍ତାବକ, ଅଥବା ମୋ ଜରିଆରେ କୌଣସି ଫାଇଦା ଉଠେଇବାକୁ ଚାହୁଁ-ଥିଲା ଲୋକଙ୍କ ହିସାବରେ, ତା'ନୁହେଁ । ଅନ୍ତତଃ ମୋର ସେମିତି ମନେ ହେଉ ନ ଥିଲା । ତା'ର ଏଇ ପାଣ୍ଡୁଲିପିକୁ ନେଇ ସେ ମୋତେ ବ୍ୟତିବ୍ୟସ୍ତ କରୁଥିଲା ବୋଲି ମଧ୍ୟ କହିବି ନାହିଁ । ସେ ମୋତେ ଲେଖାଟିକୁ ଦେଇଥିଲା ଜାଣି ଏବଂ କଦବା କ୍ୱଚିତ୍, ଆକାଶ ଉଦାସ ଥିଲାବେଳେ, ଯେତେବେଳେ ଆମ ବାର୍ତ୍ତାଳାପର ବିରାମ ବଢ଼ି ବଢ଼ି ଯାଏ ଉଚିତରୁ ଅଧିକ, ସେ ମୋତେ ମନେ ପକାଇ ଦେଉଥିଲା ସେ ବିଷୟରେ । କହୁଥିଲା, ମୁଁ ନିଶ୍ଚିନ୍ତ ଯେ ଲେଖାଟି ଆପଣଙ୍କ ପାଖରେ ଅଛି । ତାକୁ କେବେ ଛପେଇବେ ଛପାନ୍ତୁ । କିନ୍ତୁ ମୋର ଏକାନ୍ତ ଅନୁରୋଧ ଯେ ଆପଣ

ତା'ର ମୁଖବନ୍ଧ ଲେଖିବେ । ଆପଣ ହିଁ ଜାଣିଛନ୍ତି ମୋତେ ଓ ମୋ ଲେଖାର ମର୍ମ, ମୋର ଅନ୍ୟ ଯେକୌଣସି ଘନିଷ୍ଠ ବନ୍ଧୁ ପରିଜନଙ୍କ ଠାରୁ । କାରଣ ଆପଣ କେବଳ ମୋର ବନ୍ଧୁ କି ବଡ଼ଭାଇ ନୁହନ୍ତି, ଆପଣ ଏକ ସାର୍ଥକ ଏବଂ ମହାନ୍ ଲେଖକ । ଆପଣ ବୁଝିଛନ୍ତି ପ୍ରେମ କ'ଣ ।

ହେ ଭଗବାନ୍! ମୋତେ ହସ ଲାଗେ ତା' କଥାରେ । କିନ୍ତୁ ମୁଁ କେମିତି ଭଲ କରିଥାନ୍ତି ତାକୁ ଯେ କ୍ଷମା କର ବନ୍ଧୁ, ମୁଁ ଗଜମୂର୍ଖ ଖାଲି ମୋଇ ବିଦ୍ୟୁଚ୍ଛିରେ ? ତେଣୁ ମୁଁ ତାକୁ କୌତୁକରେ ପଚାରେ, "ତୁମେ କେମିତି ଜାଣିଲ ?"

"ମୁଁ ଜାଣିଛି", ସେ କୁହେ, ଆଖିରେ ଆଖି ରଖି ।

ଯୁଗ୍ମ ନୀରବତା । ସମ୍ମତି ।

ସେଇଠୁ ସେ କହି ଉଠେ ଗର୍ବର ସହିତ, "ମୁଁ ଆପଣଙ୍କୁ ଅନୁଭବ କରିଛି ପରା !" ଏବଂ ମୋର ଗ୍ରୀବତା ଫୁଲି ଉଠେ । ମନେହୁଏ ଯେ ତାହା ହିଁ ହୋଇ-ଥିବ । ମୁଁ ହୁଏତ ପ୍ରକୃତରେ ଜାଣିଛି ଭଲ ପାଇବା ନାମକ ବସ୍ତୁଟିକୁ । ଯାହା ଫୁଟି ଉଠୁଛି ମୋର ଗୃହାଣିରେ, ମୋର ଭାବଭଙ୍ଗୀରେ, ମୋର ମନ୍ଦହାସ ଓ ସ୍ୱଳ୍ପକଥନର ଆତ୍ମପ୍ରତ୍ୟୟରେ ଏବଂ ତାକୁ ସେ ଚମତ୍କାର ଭାବରେ ମିଶେଇ ଦେଇପାରୁଛି ମୋ ଲେଖାର ବିଭିନ୍ନ ଚରିତ୍ରମାନଙ୍କ ସହିତ, ଯେଉଁମାନେ ମୋର ପ୍ରତିନିଧି । ହୁଏତ ତାହା ହିଁ ହୋଇଥିବ ..

ମୁଁ ବାରମ୍ବାର ନିଜକୁ କୁହେ ଯେ ତୁ ଗୋଟାଏ ଖୋସାମତିଆ । ତୁ ଭଲ ଭାବରେ ଜାଣିଛୁ ଯେ ବୁଢ଼ା ହେଲୁଣି ଆସି, ଅଥଚ ସେ ଜନଜିଟି ତଥାପି କୁହୁଡ଼ିଆ ହୋଇ ରହିଛି ତୋ ପାଇଁ । ତଥାପି ତୁ ଭଲପାଉଛୁ ଏଇ ଅପର ଅବାଚନର କଥାରେ ? ହେଲେ ମୁଁ ତତ୍‌କ୍ଷଣାତ୍ ମୋର ସନ୍ଦେହୀ ହସ୍ତକୁ ବୁଝେଇ ଦିଏ ଯେ ମୁଁ ଖୋସାମତିଆ ନୁହେଁ । କହିପାର ଯେ ମୁଁ ଉଦାର । ମୁଁ ତା'ର ବକ୍ତବ୍ୟକୁ ହସି ଉଡ଼େଇ ଦେବାକୁ ନାରାଜ । କାରଣ ଅନୁଭବ ବୋଲି ଗୋଟାଏ ବାସ୍ତବତା ମଧ୍ୟ ରହିଛି, ଯାହା ବୁଦ୍ଧି ବିଚାରର ଅଧୀନ ନୁହେଁ ଏବଂ ସେଥିରେ ଯେ ସତ୍ୟର ଦେଖା ମିଳିବ ନାହିଁ, ଏଭଳି ଦାବି କରି ହେବନାହିଁ । ବିଶେଷତଃ ଗଳ୍ପ ପରି ଗୋଟିଏ ଲୋକ ପକ୍ଷରେ, ଯେ ଗୁଡ଼ିଏ ପର ମୋ ପଛରେ ଗୃହିଛି ଆଜିକୁ ପାଞ୍ଚବର୍ଷ ହେଲା, ମୁଁ ଶଟାସ୍ଥାର କରି ମୋ ପୁରୁଣା ସହରକୁ ଫେରି ଆସିଲା ପରେ ।

ମାନୁଛି ଯେ ଇଏ ଅନ୍ୟତମ କାରଣ ହୋଇପାରେ ଯେଉଁଥିପାଇଁ ମୁଁ ତା'ର ଗୁଡ଼ିଏ ଲଗାପଣକୁ ପ୍ରଶ୍ରୟ ଦେଉଥିଲି । ଯେମିତିକି ସେ ତା'ର ଏଇ 'ଅନୁଭବ'କୁ ଦୋହରନ୍ତି କରିନେବି ଏବଂ ଏକ ବଦ୍ଧମୂଳ ଧାରଣାକୁ ରୋପିଦେବ ମୋ ମନରେ, ମୁଁ

ମୋ ବନ୍ଧୁବନ୍ଧାନ ବାଛିଲି ପୂର୍ବରୁ, ଯେ ମୁଁ ଭଲପାଇବାକୁ କେବଳ ଅଣ୍ଡାଳି ନାହିଁ, ମୁଁ ତା'ର ସମୁଚିତ ସ୍ପର୍ଶ ଲାଭ କରିଛି ଯାହାର ଅମୃତ ଜରି ଯାଇଛି ମୋର ଶିରା-ଧମନୀରେ (ସେ ଭଲପାଇବାର ନାୟକ କି ନାୟିକାଙ୍କର ପରିଚୟ ଲୋଡ଼ା ନାହିଁ ମୋର) ଏବଂ ପରିସ୍ଫୁଟ ହୋଇଉଠୁଛି ମୋର ଗୁଇଲଗା ବନ୍ଧୁଟି ପାଖରେ ।

କିନ୍ତୁ ଅସଲ କାରଣ ହେଉଛି ସେ ଏକାଧାରରେ ଏକ ଅଦ୍ଭୁତ ଏବଂ ଆଦରଣୀୟ 'ଚରିତ୍ର' ହୋଇ ପଡ଼ିଥିଲା ମୋ ପାଇଁ ଏବଂ କେଉଁ ଲେଖକ ଏଭଳି ଏକ ଚରିତ୍ରକୁ ହାତଛଡ଼ା କରିବାକୁ ଚାହିଁବ ? ଅନ୍ୟ ଅର୍ଥରେ ମୁହିଁ ତାକୁ ଅନୁଭବ କରିବାକୁ ଚାହୁଁଥିଲି । ମୋର ନିଜସ୍ୱ ମନସ୍ତାତ୍ତ୍ୱିକ ଓ ବୌଦ୍ଧିକ ମୂଲଦୁଆ ଉପରେ ଠିଆହୋଇ । ଭାବୁଥିଲି—

ଏଇ ଲୋକଟି ନିଜେ କ'ଣ ଗୋଟିଏ ପ୍ରେମିକ ? ସତସତିକା ପ୍ରେମିକ ? ଏବଂ ମୁକ୍ତକଣ୍ଠରେ ନିର୍ଘୋଷିତ ତା'ର 'ପ୍ରେମକଥା', ସେଇ ବିରାଟ ପାଣ୍ଡୁଲିପି, କ'ଣ ମୋର ଅନୁଭୂତ ସତ୍ୟର ଭାଷା, ତା' ଯେତେ କଞ୍ଚା ଦରଖଣ୍ଡିଆ ହେଉ ନା କାହିଁକି ?

ହଁ, ନିହାତି କଞ୍ଚା ଓ ସାଦାସିଧା । ଭାଷାରେ ଚମକ ନାହିଁ, ଭାବରେ ନୂତନତ୍ୱ ନାହିଁ ଏବଂ ଉପମା ସେଇ ଜହ୍ନ-କଇଁଫୁଲ-ଚକୋର ଜଗତରୁ ଉଦ୍ଧୁରି ଆସି ପାରି ନାହିଁ । ବାକି ରହିଲା ଗର୍ଭଗୃହ । କବିତାଗୁଡ଼ିକର ଶେଷକଥା, ସାରକଥା । କ'ଣ ଆଉ କହିବି ସେ ବିଷୟରେ !

ଶୁଣନ୍ତୁ, ମଜାକଥା ହେଉଛି ସେ ନିଜେ କହୁଛି ସେ ବିଷୟରେ, ପ୍ରତି କବିତାର ଶେଷ ଧାଡ଼ିରେ । ଜିଜ୍ଞାସୁ ପାଠକକୁ ବୁଝି ଦେଲା ପରି । କହୁଛି, 'ବାକି ଅଛି ଶେଷକଥା, ସାରକଥା ମୋର । ମୁଁ ତୁମକୁ ଭଲ ପାଏ ।' ଏଇ ହେଉଛି ପ୍ରତ୍ୟେକ କବିତାର ତଥାକଥିତ ବକ୍ତବ୍ୟ, ଯଦିଓ ତା'ର ବିଷୟବସ୍ତୁ ହୋଇଥିବ କାଠଯୋଡ଼ି କୂଳରେ ସନ୍ଧ୍ୟା, ପୋଖରୀ ଉପରେ ବର୍ଷା, ଓପେଇଠମାନଙ୍କ ଶୋଷ, କିମ୍ବା ନଡ଼ିଆ ଗଛର ନାଚ । ଏଥର କୁହନ୍ତୁ, ଏଭଳି ଗୋଟିଏ 'କାବ୍ୟ'କୁ ମୁଁ କ'ଣ ଛପେଇ ପାରିବି ମୋର ମୁଖବନ୍ଧ ସହ, ଅର୍ଥାତ୍ ମୋର ସୁପ୍ରତିଷ୍ଠିତ ଲେଖକତ୍ୱର ସାର୍ଟିଫିକେଟ୍ ଦେଇ ? ମୋର ଇମେଜ୍‌କୁ ବାଧା ହେବ ନାହିଁ ?

କିନ୍ତୁ ତଥାପି ମୁଁ ସ୍ଥିର କରିଥିଲି—ଏଇଥିରୁ ବୁଝନ୍ତୁ ମୁଁ ମୋ ବନ୍ଧୁତ୍ୱର ଦାୟିତ୍ୱ କେତେଦୂର ଟାଣି ଟାଣି ନେଇଥିଲି—ଯେ ମୁଁ ତା'ର ଅନୁରୋଧ ରକ୍ଷା କରିବି ଯଦି ମୁଁ ଦେଖେ ଯେ ଏହା ହିଁ ତା' ଅନୁଭୂତ ସତ୍ୟର ଭାଷା, ତାହା ଯେତେ ଅପରିପକ୍ୱ ହେଉ ପଛେ ଏବଂ ତା'ର ବକ୍ତବ୍ୟମୂଳକ ସ୍ୱାକ୍ଷର ଅର୍ଥାତ୍ କବିତା ଶେଷର ଓରଫ୍ ପ୍ରେମକଥା ଯେତେ ବେଖାପ ବୋଲି ମନେ ହେଉ ନା କାହିଁକି ।

ଅସଙ୍ଗତ ନୁହେଁ ବୋଲି ସେ ମନେ ଥରେ ତର୍କ କରି ବୁଝେଇଥିଲା ମୋତେ, ମୁଁ ଯେତେବେଳେ ତା'କୁ ପଚାରିଲି ଲେଖାର ନାମକରଣ ବିଷୟରେ । ଯେ ତମେ ଏମିତି ଗୋଟାଏ ଷ୍ଟ୍ରେଟ୍‌ଫୋକ୍ ସାଦାସିଧା ନାଆଁ କାହିଁକି ଦେଲ । ପୁଣି ଯେତେବେଳେ ତମେ ବିଶେଷ କିଛି କହୁନାହଁ ସେ ବିଷୟରେ, କୋଉ ଆକାଶରୁ ତୋଳି ଆଣିଲ ପରି ଶେଷଧାଡ଼ି ଛଡ଼ା ?

ସେ ଭାବିଲା ମୁଁ ତାକୁ ପରଖୁଛି । ସେହେତୁ ଡର ଡର, ହେଲେ ସାହସ ବାନ୍ଧି କହିଲା, "ଆଜ୍ଞା ଆପଣ ତ ଜାଣନ୍ତି ମୁଁ ଆଉ ବୁଝେଇବି କଅଣ···କିନ୍ତୁ ପ୍ରେମ କ'ଣ ଏତେ ସଙ୍କୁଚିତ ଯେ ତା'ର ଭାଷା ହେଉଛି ଅମୁକ ମଣିଷ ଓ ସମୁକ ମଣିଷ ଭିତରେ ଗୁଳିଥିବା ବିଭିନ୍ନ ଦିଆନିଆ ? ପ୍ରକୃତ ପ୍ରେମ କଣ ଗୋଟିଏ ଘର ନୁହେଁ, ଯାହା ତମ ହୃଦୟରେ ବସା ବାନ୍ଧିଛି ଏବଂ ଯେଉଁଥିପାଇଁ ତମର ଏଇ ଆଗ୍ରହ ବଞ୍ଚି ରହିବା ପାଇଁ ? ସନ୍ତରେ ସକାଳେ ଦିନ ଦି'ପହରେ, ପଡ଼ିଆରେ, ଦେଉଳରେ ଏବଂ ଯେତେକ କୋଳାହଳ କଳକଳିଲ ଭିତରେ ? ମୁଁ ଖାଲି ସେଇ ଅନୁଭବ, ତା'ର ଉଚ୍ଚାରଣ କରିବାକୁ ଚାହୁଁଥିଲି ମୋର ଶେଷଧାଡ଼ିରେ, ଗୋଟାଏ ଘୋଷା ପରି । କ'ଣ ବୁଝି ହେଉନାହିଁ କଥାଟା ?

ଯେଉଁ ସକରୁଣ ଚାହାଣିରେ ସେ ଅନଉଥିଲା ମୋତେ, ମୋଠାରୁ ଦଶରୁ ଦଶ ମାର୍କ ପାଇବ ବୋଲି, ମୁଁ ତାକୁ କହିବା ପାଇଁ ବାଧ୍ୟ ହେଲି ଯେ, ବୁଝି ନ ହେବାର କୌଣସି କାରଣ ନାହିଁ । ପ୍ରତ୍ୟେକ ସୁଖର, ପ୍ରତ୍ୟେକ ସୁନ୍ଦରର ଅନୁଭବ ପ୍ରକୃତରେ ଗୋଟିଏ ପ୍ରେମକଥା । ଅବଶ୍ୟ ପାଠକ ପାଠିକା···

ସେଇଠୁଁ ସେ ଗଦ୍‌ଗଦ ହୋଇ ମୋ ହାତକୁ ଧରିପକାଇଲା ।

ପରୀକ୍ଷାରେ କୃତିତ୍ୱର ସହ ପାସ୍ କଲାପରି । ଅବଶ୍ୟ ପାଠକ-ପାଠିକା···ର ଅସମ୍ପୂର୍ଣ୍ଣ ବାକ୍ୟକୁ ପରୁଆ ନକରି ଏବଂ କହିଲା—ଥ୍ୟାଙ୍କ୍ ୟୁ ସାର୍ । ଥ୍ୟାଙ୍କ୍ ୟୁ···

କିନ୍ତୁ ଯୋଡ଼ିଦେଲା ପଦେ, ଯେଉଁଥିପାଇଁ ମୁଁ ପ୍ରସ୍ତୁତ ନଥିଲି । କହିଲା, ତେବେ ଏଇ ପ୍ରେମଚେତନାର ଗୋଟିଏ କେନ୍ଦ୍ରବିନ୍ଦୁ ଦରକାର, ପଏଣ୍ଟ ଅଫ୍ ରେଫରେନ୍‌ସ, ନ ହେଲେ ତା'ର ଅଭିବ୍ୟକ୍ତି ଅସଜଡ଼ା ହୋଇଯିବ, ମାଡ଼ିଯିବ କୁଆଡ଼େ ବୋଲି କୁଆଡ଼େ, ଅସନା ଦିଶିବ । ଆଉ ମୋ ପ୍ରେମର କେନ୍ଦ୍ରବିନ୍ଦୁ କଅଣ ତା ତ ଜାଣନ୍ତି ଆପଣ··· ! ସେ ଲାଜେଇଗଲା ଦିବ୍ୟ ପ୍ରେମିକଙ୍କ ପରି ।

ଯାହା ହେଉ ମୁଁ ବୁଝିଲି ସେ କାହା କଥା କହୁଛି । ଖାଲି ମୋତେ ନୁହେଁ ତାର ସମଗ୍ର ପାଠକ ପାଠିକାମାନଙ୍କୁ ଯାହା ନାଆଁରେ ସେ କାବ୍ୟଟିକୁ ଉତ୍ସର୍ଗ କରିଚି । 'ମୋର ପ୍ରେମିକା ଦମୟନ୍ତୀ ପାଇଁ ।'

ପ୍ରେମିକା ଦମୟନ୍ତୀ । ସେଇ ମଧ୍ୟ ତା'ର ପତ୍ନୀ ଦମୟନ୍ତୀ ବେହେରା । ତେଣୁ ଗନ୍ତୁ ସତସତକା ଗୋଟିଏ ପ୍ରେମିକ ନା କ'ଣ ବୋଲି ଜାଣିବାକୁ ହେଲେ କେବଳ ତାଙ୍କ ଦାମ୍ପତ୍ୟ ଜୀବନର ସାନ କଥାଟିଏ ଜାଣିଲେ ଚଳିବ । ସେ ସେ ତା' ସ୍ତ୍ରୀକୁ ପ୍ରକୃତରେ ଭଲ ପାଏ କି ନାହିଁ ଏବଂ କିଭଳି କେତେ ଗହନରେ ଭଲପାଏ, ଯାହାର ପ୍ରତିଫଳନ ଏଇ କାବ୍ୟ । ହେଉକି ଯଦି ମୋ ମନକୁ ପାଇଯାଏ, ତାହେଲେ ମୁଁ ଏହି ପାଣ୍ଡୁଲିପିକୁ ଅବଶ୍ୟ ଛପେଇବି । ସମ୍ମାନ ଦେବି ସେଥିରେ ଥିବା ଅନୁଭୂତ ସତ୍ୟକୁ—ମାର ଗୋଲି ତା' ଭାଷାର ଛବି କି ଛନ୍ଦକୁ । କିମ୍ବା ତା'ର ପ୍ରଗଳ୍ଭ ଶେଷ ଧାଡ଼ିମାନଙ୍କୁ ।

ସହଜ ସନ୍ଧାନ । କିନ୍ତୁ ସେଇଠି ମୁଁ ଅଡ଼ୁଆରେ ପଡ଼ିଲି ।

କାରଣ ଦେଖିଲି ଯେ, ଅପରପକ୍ଷ ମୋ ସାଙ୍ଗରେ ସହଯୋଗ କରିବାକୁ ନାରାଜ । ଯେତେବେଳେ ମୁଁ ଦମୟନ୍ତୀ ଦେଈଙ୍କ ଦୁଇଳିକୁ ହାଲୁକାରେ ଟାଡ଼ିଏ ଯେ, ସେ ଚୋଟିଏ କବିର ପ୍ରେମିକା, ପଶ୍ଚରେ ତମେ ତା'ର ଅମୁକ କବିତାକୁ ପଢ଼ିଛ କି ନାହିଁ, କିମ୍ବା ପ୍ରଶ୍ନ କରେ ତମେ ବି ଗୋପନରେ କିଛି ଲେଖୁଥିବ ବୋଧହୁଏ ତାଙ୍କ କବିତା ସାଙ୍ଗରେ ହାତ ମିଳେଇବା ପାଇଁ, ସେ ତା'ର ଉତ୍ତର ଦିଏ କେବଳ ଗୋଟାଏ ଠେଚପା ସମ୍ମୁଖୀନ ଗୃହାଣି, ଅଥବା "ହୁଁ" କିମ୍ବା ଖୁବ୍ ବେଶି ହେଲେ "ମୋତେ ଜଣା ନାହିଁ"ର ବେକଟୋକ୍ ଭାଷାରେ । ଶେଷକୁ ତା'ର ଗୋଟାଏ ସୁସ୍ପଷ୍ଟ ଏବଂ ବଳିଷ୍ଠ ଉଚ୍ଚାରଣ ମୋ ପାଟିକୁ ବନ୍ଦ କରିଦେଲା—

"ହୁଃ !"

ପ୍ରଥମେ ଭାବୁଥିଲି ଯେ, ଇଏ ହେଉଛି ପତ୍ନୀସୁଲଭ ପରିହାସ । ଯାହାକି ପ୍ରେମର ଅନ୍ୟତମ ପରିଭାଷା ହୋଇପାରେ । ବିନୟର ଛଳରେ । ସତେକି ସ୍ୱାମୀର କୃତିତ୍ୱକୁ ସାମାନ୍ୟ ବୋଲି କହିବା କଥା, କାରଣ ସିଏ ହେଉଛି ମୋର ଅମୂଲ୍ୟ ସମ୍ପଦ ଏବଂ ତା'ର ବଡ଼େଇ କଲେ ତମେ ମୋତେ ଫୁଲେଇ ବୋଲି ଭାବିବ । ଅନ୍ତତଃ ସେହି ସ୍ତ୍ରୀ ଲୋକଙ୍କ ପକ୍ଷରେ ଯେଉଁମାନେ ଆଧୁନିକ ନୁହଁନ୍ତି । କିନ୍ତୁ କ୍ରମଶଃ ମୋର ସନ୍ଦେହ ହେଲା । କାରଣ ପ୍ରତିଦିଆଁର ଶବ୍ଦ-ନିଃଶବ୍ଦ ସାଙ୍ଗକୁ ସ୍ମିତହାସର କୌଣସି ଲକ୍ଷଣ ଦେଖିଲି ନାହିଁ ଓଠରେ । ନାକପୁଡ଼ା ବି ଟିକିଏ ହେଲେ ଫୁଲି ଉଠୁ ନାହିଁ । ମୋଟ ଉପରେ ଗେହ୍ଲେଇ-ଫୁଲେଇ ଭାବକୁ ଘୋଡେଇ ପକେଇବାର ସାମାନ୍ୟତମ ଆଭାସ ମିଳୁ ନାହିଁ ପ୍ରଶଂସିନୀର ହାବଭାବରେ । ଶେଷକୁ ଏଇ 'ହୁଃ !' ପଦକ ମୋତେ ଚମକେଇ ଦେଲା । ମୋର ମନେ ହେଲା ଯେ ଇଏ ପରିହାସ ନୁହେଁ । ବିଦ୍ରୂପ । ହୁଏତ ବିଦ୍ରୂପଠୁ ବଳି ବିଷାଦ । ପୁଞ୍ଜିଭୂତ ବିଷାଦ ଅଳ୍ପବହୁତ

ଖଲାସ ହୋଇଯାଉଛି ପରି ଏହି ଏକାକ୍ଷରୀ ଶବ୍ଦର ଉଚ୍ଚାରଣରେ । ସେଥିର ବିଷ ନିଶ୍ୱାସରେ ।

ମୁଁ ମର୍ମାହତ ହେଲି । ସତରେ କ'ଣ ସେଇଆ ? ସେ କେବଳ ତୋର ସ୍ୱାମୀ ନୁହେଁ । ମଧ୍ୟ ତୋର ପ୍ରେମିକ ଏବଂ ତୁ ହେଉଛୁ ତା'ର ଅସାଧାରଣ ପ୍ରେମଭାବ ତଥା ପ୍ରେମକାବ୍ୟର କେନ୍ଦ୍ରବିନ୍ଦୁ । କିନ୍ତୁ ଏଇ ହେଉଛି ତୋର ପ୍ରତିଦାନ, କହିବାକୁ ଗଲେ ପ୍ରତ୍ୟୁତ୍ତର, ସୁଯୋଗଟିଏ ପାଇଲି କ୍ଷଣି ?

ଦିନ ଗଡ଼ିଗଲା । ମୁଁ ଆଉ କେବେ ସୁଯୋଗ ଦେଲି ନାହିଁ ତାକୁ ଏଭଳି ଏକ ବିଷ ନିଃଶ୍ୱାସ ଛାଡ଼ିବା ପାଇଁ । କିନ୍ତୁ ମୋର ଦୁଃଖ କମିଲା ନାହିଁ । ଅପରନ୍ତୁ ମୁଁ ମୋର ଆହତ ମର୍ମକୁ କହିଲି ଯେ, କେବଳ ଦୁଃଖ କଲେ ଯଥେଷ୍ଟ ନୁହେଁ । ମୋର ରାଗିବା ଉଚିତ । ଏଇ ଇତର ସାଧାରଣ ନାରୀ ଉପରେ ଯେ ତାର ସ୍ୱାମୀ ଓ ପ୍ରେମିକ ତଥା ତା'ର ସାହିତ୍ୟକୁ ସମ୍ମାନ ଦେବା ପାଇଁ ନାରାଜ । ପୁଣି ଯେତେବେଳେ ଗନୁ ମୋର ବନ୍ଧୁ, ବନ୍ଧୁରୁ ବଳି ଶିଷ୍ୟ, ପୁଅ ପରି କହିଲେ ଚଳେ ।

ହଁ, ଯେତେକ ତରୁଣ ଲେଖକ ଲେଖିକା ମୋତେ ସାର୍ ବୋଲି ଡାକନ୍ତି, ମୋତେ ଭକ୍ତି ଓ ଶ୍ରଦ୍ଧା କରନ୍ତି ଏବଂ ମୋର ପରାମର୍ଶ ନିଅନ୍ତି ନାନା ବିଷୟରେ, ସେମାନଙ୍କୁ ପୁତ୍ରକନ୍ୟାବତ୍ ମଣିବା ମୋର କର୍ତ୍ତବ୍ୟ, ଜଣେ ପ୍ରବୀଣ ଲେଖକ ହିସାବରେ । କିନ୍ତୁ ଗନୁ କେବଳ ଅନେକରୁ ଏକ, ଶହେ ପୁଅରୁ ଗୋଟିଏ ନୁହେଁ । ସେ ନିଜକୁ (ସେ ଓ ତା ପ୍ରେମକଥା ଅଭିନ୍ନ, ପିଣ୍ଡ ଓ ପ୍ରାଣ ପରି) ସଁପି ଦେଇଛି ମୋତେ । ତାହା ସାହିତ୍ୟ ପଦବାଚ୍ୟ ହେଉ ବା ନହେଉ । ସେଥିରେ କ'ଣ ଅଳ୍ପ ବହୁତ ଆନ୍ତରିକତା ନାହିଁ ? ସେଇ ଆନ୍ତରିକତା, ଯାହା ତା' ଚରିତ୍ରର ଏକ ବିଶିଷ୍ଟ ଗୁଣ, ଯେଉଁଥିପାଇଁ ସେ ଏମିତି ଲଦି ହୋଇ ପଡ଼ିଛି ମୋ ଉପରେ ଏବଂ ମୁଁ ବି ତାକୁ ଛାଡ଼ି ପାରୁନାହିଁ । ସେ ଯେତିକି ଆସୁଛି ମୋ ଘରକୁ ମୁଁ ମଧ୍ୟ ପ୍ରାୟ ସେତିକି ଯାଉଛି ତା' ପାଖକୁ, ନିଜ ଲୋକ ପରି ମିଶିଯାଇଛି ତାଙ୍କ ଦି'ଜଣିଆ ପରିବାରରେ ଏବଂ ଲାଗିପଡ଼ିଛି ତା' କାବ୍ୟର ଅନୁଭୂତ ସତ୍ୟକୁ ଆବିଷ୍କାର କରିବି ବୋଲି—କେମିତି କରିବ ଭଗବାନ ଜାଣନ୍ତି—ସେଇ ଦୁର୍ଲଭ ଗୁଣର ସମ୍ପଦକୁ ଉପଭୋଗ କରିବ ଅଥଚ ତାକୁ ଯେ 'ଛିଃ' କରିଦେଲା, ସେ ତା' ସ୍ତ୍ରୀ ହେଉ କି ଯିଏ ହେଉ ତା' ଉପରେ କ'ଣ ରାଗିବା ଉଚିତ ନୁହେଁ ? ତାହେଲେ ମୁଁ ଅଟକି ଯାଉଛି, କେଉଁଠି ? କାହିଁକି ? କାହିଁକି ??

ଓଃ କିଏ କହୁଛି ମୁଁ ରାଗୁନାହିଁ ବୋଲି ? କିନ୍ତୁ ଗନୁ ମୋର ପୁଅ ହେଲେ ଦୁଲି କ'ଣ ମୋ ବୋହୂ ନୁହେଁ ?

ଏବଂ ଆଶ୍ଚର୍ଯ୍ୟ କଥା ଯେ, କାଳକ୍ରମେ ମୁଁ ଆହୁରି ଗୋଟାଏ ଟାଙ୍ଗିଆ ସଫେଇ ବାଡ଼ି ଦେବାକୁ ଗୁହିଁଲି ମୋର କରମ କୋଧ ସପକ୍ଷରେ । ଯେ ଭାବ ଦେଖ—'ହଃ ହଃ !' କେବଳ କ'ଣ ତା'ର କନ୍ଦ୍ରୁପର ଭାଷା ? କନ୍ଦନର ଆବରଣ ନୁହେଁ ? ମୋର କାରୁଣ୍ୟ ରସ କ'ଣ ତା ପାଇଁ ମଧ୍ୟ ଉଚ୍ଛୁଳି ଉଠୁ ନାହିଁ, ଏବଂ ତାହା କ'ଣ ସ୍ୱାଭାବିକ ନୁହେଁ ?

କହୁଛି ଉଚିତରୁ ବେଶି ? କ'ଣ ତା'ର ଅର୍ଥ ? କୋଉଠି କାଟିବ ତମ ଔଚିତ୍ୟର ଲକ୍ଷ୍ମଣରେଖା ?

ଗନୁ ସାଙ୍ଗରେ ଦେଖାହୁଏ ତା'ଘରେ, ମୋ ଘରେ ଏବଂ ରାସ୍ତାଘାଟରେ । ଦୁଲି ସାଙ୍ଗରେ ଦି'ପଦ କଥାଭାଷା ହେବାର ସୁଯୋଗ ମିଳେ, ଯେତେବେଳେ ମୁଁ ଯାଏ ସେଠିକି ଏବଂ ସେତେବେଳେ ମଧ୍ୟ କ୍ୱଚିତ୍ ତା' ସାଙ୍ଗରେ ଦେଖା ହୁଏ କଲେଜରେ, ଗନୁ ପାଖରେ ନ ଥିଲା ବେଳେ । ସେହେତୁ 'ହଃ !'ର ପଛକୁ କ'ଣ ସବୁ ଅଛି, କେତେ ଦୁଃଖ, କେତେ କାର୍ପଣ୍ୟ, କେତେ ମଳିନତା, ତା'ର ବର୍ଣ୍ଣମାଳା ଚିହ୍ନିବା ପାଇଁ ସମୟ ଲାଗିଲା ମୋତେ । କିନ୍ତୁ ତଥାପି ତା'ର କାରଣ ଧରି ହେଉ ନଥାଏ ଠିକଣା ଭାବରେ, ସେ କଥା ଭିନ୍ନ ।

ମୂଳରୁ ମୋର ଧାରଣା ହୋଇଥିଲା ତାଙ୍କ ନାଆଁର ଭିନ୍ନ ଭିନ୍ନ ସାଙ୍ଗିଆ ଦେଖି (ଭାଗ୍ୟକୁ ଦୁଲି ତା'ର ଝିଅବେଳର ସାଙ୍ଗିଆ ବଦଳେଇ ନଥିଲା ବାହାଘରେ ପରେ) ଯେ ଇଏ ପ୍ରେମବିବାହ ହୋଇଥିବ ନିଶ୍ଚୟ । ପରେ ଜାଣିଲି ଯେ କଥାଟା ଠିକ୍ ସେଇଆ । ଦୁଲି ଗଞ୍ଜାମର ଝିଅ । ବରହମ୍ପୁରର ଖଲିକୋଟ କଲେଜରେ ପଢ଼ୁଥିଲା, ଯେତେବେଳେ ଗନୁ ସେଠିକାର ମେଡ଼ିକାଲ କଲେଜରେ ପଢ଼ୁଥିଲା ଏବଂ ସେଇଠି ତାଙ୍କର ପ୍ରଥମ ଦେଖାସାକ୍ଷାତ ହୁଏ । ତଥା ପ୍ରେମର ଆବିର୍ଭାବ । ଦୁଲି ବି. ଏ. ପାସ୍ କଲା, କିନ୍ତୁ ଗନୁ ଅଧାରୁ ଛାଡ଼ିଦେଲା ତା' ମେଡ଼ିକାଲ ପଢ଼ା । କହିଲା, ଇଏ ହବ ନାହିଁ ମୋ ଦେଇ, ମୁଁ ଲେଖାଲେଖିରେ ପେଟ ପୋଷିବି । ସେଇଠୁଁ ଦୁହେଁ ତାଙ୍କ ବାପମାଆ ବିରାଦରିର ବନ୍ଧନୀରୁ ଖସି ଆସି ବସା ବାନ୍ଧିଲେ ମୋର ଏଇ ସହରରେ । ଡୁଗୁଡ଼ୁଟାକୁ ମୋତେ ଏମିତି ହୁଟହାଟ କରିବା ପାଇଁ ।

ଦମୟନ୍ତୀ ପ୍ରେମ କରି ବାହା ହୋଇଥିଲା ଗୁଣନିଧିକୁ । ସେ ଅବଶ୍ୟ ଜାଣିଥିବ ଯେ ତା'ର ପ୍ରେମିକ ସାହିତ୍ୟ ଲେଖେ ଏବଂ ତା'ର ସାହିତ୍ୟ ଓ ପ୍ରେମ ଗୋଟିଏ ସୂତାରେ ଗୁନ୍ଥା । କିନ୍ତୁ ତା'ପରେ ହେଲା କଅଣ ?

ତୋର କୋଉ ସ୍ୱପ୍ନ ନଷ୍ଟ ହୋଇଗଲା, କୋଉ ପ୍ରତିଶ୍ରୁତିର ଖୁମ୍ବ ଭୁଶୁଡ଼ି ପଡ଼ିଲା ଯେ ତୁ ଏମିତି ମଳିନା, ନିପୀଡ଼ିତା ଓ ଦୁଃଖିନୀ ପରି ମନେ ହେଉଛୁ ? ଏବଂ ଅନିଚ୍ଛା ସତ୍ତ୍ୱେ ମୁଁ ତୋତେ ଦୟା ନକରି ରହି ପାରୁନାହିଁ ?

ପଚାରି ହେବ ନାହିଁ । ମଧ୍ୟ ପଚାରି ଲାଭ ନାହିଁ । ଗନ୍ନୁ ସିନା ପ୍ରେମ ଓ ପ୍ରେମ କଥାକୁ ଅଜାଡ଼ି ଦେଲା ମୋ ପାଖରେ, ଦୁଲି କେବେହେଲେ ତା'ର ପ୍ରେମ-ପରାଭବକୁ ବାଢ଼ି ଦେବ ନାହିଁ ତା' ସ୍ୱାମୀର ଜରିଆରେ ଆବିର୍ଭୂତ ହୋଇଥିବା ଜଣେ 'ସାର୍'ଙ୍କ ପାଖରେ । ସେ ହିସାବରେ ସେ ମୋର ବନ୍ଧୁ ନୁହେଁ । ଦୁର୍ଭାଗ୍ୟ !

ଓଃ ! ମୋର ଛଟପଟ ବଢ଼ିବାକୁ ଲାଗିଲା । ପାଣ୍ଡୁଲିପି କଥା ଛାଡ଼ । ଏହି ପରିସ୍ଥିତି ହିଁ ଦୁର୍ବିସହ ମୋ ପକ୍ଷରେ । କାରଣ ମୁଁ ସେମିତିକା ଲୋକ, କ୍ରୌଞ୍ଚ ମିଥୁନଙ୍କ ଦୁଃଖରେ ଭାଙ୍ଗି ପଡ଼ିଥିବା ବାଲ୍ମୀକିଙ୍କର ସିଧାସଳଖ ବଂଶଧର । ତା'ଛଡ଼ା ମୁଁ ଜାଣିଛି ପ୍ରେମ କଅଣ । ଗନ୍ନୁର ଅନୁଭବକୁ ଅବିଶ୍ୱାସ କରିବାର କୌଣସି କାରଣ ନାହିଁ ।

ଯଦି ଦୁ'ଜଣଙ୍କର କଳିକଜିଆ ହେଉଥାନ୍ତା, କି ଜଣେ ଆରକ ନାଆଁରେ ଫେରାଦ୍ ହୁଅନ୍ତା ମୋ ଆଗରେ, କୌତୁକରେ ହେଉ କି ସତସତିକା, ତା'ହେଲେ କାମଟା ସହଜ ହୋଇଯାଆନ୍ତା 'ସାର୍'ଙ୍କ ମଧ୍ୟସ୍ଥି ପାଇଁ । କିନ୍ତୁ ସେଭଳି ସୁଯୋଗ ବି ମିଳିଲା ନାହିଁ ମୋତେ । ଗନ୍ନୁ ସେମିତି ବୋହି ପଡ଼େ ମୋତେ ଦେଖିଲେ ଏବଂ ଅଧିକାଂଶ ସମୟରେ 'ଦୁଲୁ'କୁ (ଗେହ୍ଲାରେ ଦୁଲି ଦୁଲୁ ହୋଇଯାଏ) କିମ୍ବା ବେଶୀ ଖୁସି ଥିଲେ ଡାର୍ଲିଂକୁ ଡାକି ଛାଡ଼େ । ମୋର ଖାତିର୍ କରିବା ପାଇଁ । ଏବଂ ମଳିନା ତା'ର ଓଠଟିପା ନୀରବ ପ୍ରତିକ୍ରିୟା ଜଣାଏ, ଚୁପ୍‌ଚାପ୍ ଆସି ଚା' ଜଳଖିଆ ଦେଇଯାଏ, କିଛି ପଚାରିଲେ ପଦେ ଦି'ପଦ ଉତ୍ତର ଦିଏ ଏବଂ ସ୍ୱାମୀସାହିତ୍ୟ ଅଥବା ସ୍ୱାମୀ-ସୁଆଗର ଉଲ୍ଲେଖ କଲେ···ଛାଡ଼ ! ମୁଁ ମହା ସାବଧାନ ହୋଇ ରହିଛି ସେଦିନଠୁଁ ।

ଯାହାହେଉ ମୁଁ ଗନ୍ନୁକୁ ମନେ ମନେ କୁହେ, ବେଳେ ବେଳେ ପ୍ରକାଶ୍ୟରେ ମଧ୍ୟ ପିତୃସୁଲଭ ଭଙ୍ଗୀରେ, ଯେ ସ୍ୱାମୀଟାଏ ହୋଇ ତୁ ତାକୁ ପୋଷି ପାରୁ ନାହୁଁ । ଯେଉଁଥିପାଇଁ ତା'ର ଏଇ ଅବସ୍ଥା ଏବଂ ତା' ଘରକରଣାର । କ'ଣ ଦିଶୁଛୁ ଏଇ ଦି'ବଖୁରିଆ ଘର ? ଭଙ୍ଗାଦଦରା କେଇଟା ଟେବୁଲ୍ ଚଉକି, ଗଦାଗଦା ଆଲମାଲିକା ତୋର ବହିଖାତା ସମେତ, ପରସ୍ତ ପରସ୍ତ ଧୂଳି କାହିଁକନା ଲୋକଟିଏ ନାହିଁ ଦୁଲିକୁ ସାହାଯ୍ୟ କରିବା ପାଇଁ, ଯେହେତୁ ସେଥିକୁ ଅର୍ଥ ନାହିଁ ତୋ' ହାତରେ·· ଏହି ସବୁ କାରଣରୁ ତୋ ପ୍ରେମିକା ଏଭଳି ହତଶ୍ରୀ ହୋଇ ପଡ଼ିଛି । ଜିନିଷଟା କ'ଣ ଭଲ ଲାଗୁଛି ତୋତେ ? ନା ତୋର ପ୍ରେମାନ୍ଧ ଆଖିରେ ପଡ଼ିବାକୁ ନାହିଁ ? ଶୁଣ, ଛାଡ଼େ

ତୋର ଏଇ ଲେଖାଲେଖି କରି ପେଟ ପୋଷିବାର ପଣ । କେଉଁ ଅନାମଧେୟ ପତ୍ରିକା ପାଇଁ କ'ଣ ଟିକିଏ ଲେଖି ଦେଇ, କେଉଁ ପ୍ରତିଷ୍ଠାଲୋଭୀ ଲେଖକର ଲେଖାକୁ ଓଡ଼ିଆରୁ ଇଂରେଜୀକୁ ଅନୁବାଦ କରି, କି କେଉଁ ସମ୍ପାଦକ ପାଇଁ ପ୍ରୁଫ୍ ସଂଶୋଧନ କରି କ'ଣଟା ମିଳିବ ତୋତେ, ଯେଉଁଥିରେ ତୁ ସୁଖ ଦେଇପାରିବୁ ତୋ ପତ୍ନୀ ତଥା ପ୍ରିୟାକୁ ? ଯାଉନୁ କୋଉ ଦୋକାନ କି ଦପ୍ତରରେ କିରାଣିଗିରି କରିବୁ ? କି ଆଉ କୋଉ ଧନ୍ଦା ? ମୁଁ ସାହାଯ୍ୟ କରିବାକୁ ପ୍ରସ୍ତୁତ ଥିଲି, କିନ୍ତୁ ତୁ ମୋତେ ଆଡ଼େଇ ଦେଲୁ । କହିଲୁ ନାଇଁ ସାର୍, ସାହିତ୍ୟକାମ ହିଁ ମୋର ଧର୍ମ, ତା' ଯେକୌଣସି ଧରଣର ହେଉ, ଏବଂ ମୋ ନିଜ ଲେଖା ଦି'ଧାଡ଼ି ହେଉଛି ମୋର ଜୀବନ । ଉଦ୍ୟ ରହିଗଲା ସେ ଜୀବନରଙ୍ଗର କେନ୍ଦ୍ରବିନ୍ଦୁ ହେଉଛି ··

କିନ୍ତୁ ଦୁଲିକୁ କେବଳ ମନେ ମନେ କୁହେ, ମୁହଁ ଉପରେ କହିବାର ସାହସ ହୁଏ ନାହିଁ—ଦେଖ୍ ଦୁଲି, ତୁ ପ୍ରେମ କରି ବାହା ହୋଇଛୁ । ପ୍ରେମର ମହତ୍ତ୍ୱ କ'ଣ ଜଣା ନାହିଁ ତୋତେ ? ଏବଂ ତୁ ତ ଜାଣିଛୁ କବିମାନେ କେତେ ଅବାଗିଆ, କେତେ ଅଯୋଗ୍ୟ । କିନ୍ତୁ ତଥାପି ତୁ ଟିକିଏ ସ୍ୱାର୍ଥତ୍ୟାଗ କରିପାରୁ ନାହୁଁ, ପ୍ରେମ ପାଇଁ ? ଏବଂ ପ୍ରେମିକର ସାହିତ୍ୟ ପାଇଁ ? ତୋ ମୁହଁରେ ଟିକିଏ ହସ ଫୁଟେଇ ପାରୁନୁ ? ଗହଣାଗାଣ୍ଠି ନ ହେଲା ନାହିଁ, ଭଲ ଶାଢ଼ି ଖଣ୍ଡେ ପିନ୍ଧି ଯତ୍‌ସାମାନ୍ୟ ସାଜଗୁଜ ହୋଇ ଏବଂ ସୁନ୍ଦର ହସଟିଏ ହସି ଜଣେଇ ଦେଇ ପାରନ୍ତୁ ନାହିଁ ପୃଥିବୀକୁ, ଯେ ଗନୁର କାବ୍ୟନାୟିକା ମଳିନା ନୁହେଁ, ଦୁଃସ୍ଥ ନୁହେଁ, । ବିଶେଷତଃ ତୋର ନିଜସ୍ୱ ଚେହେରାଟି ବେଶ୍ ଭଲ, ଏଥିରେ ସନ୍ଦେହ ନାହିଁ । ତୁ ଯଦି ଟିକିଏ ଚେଷ୍ଟା କରନ୍ତୁ ନା··· ।

ତୋ ଚେହେରାଟି ଖାଲି ଭଲ ନୁହେଁ, ତୁ ସୁନ୍ଦରୀଟିଏ ! ହଠାତ୍ ଏଇ ଭାବ ଦିନେ ଆସିଲା ମୋ ମନରେ, ଏବଂ ତା' ଉପରେ, ଗନୁ ଉପରେ ଓ ପୃଥିବୀ ଉପରେ ରାଗିବାକୁ ଇଚ୍ଛା ହେଲା । ଯେତେବେଳେ ମୁଁ ଯାଇଥିଲି ତାଙ୍କ ଘରକୁ ପ୍ରାୟ ରାତି ଦଶଟା ବେଳକୁ, ଏବଂ ସେ ଏକୁଟିଆ ଥିଲା । ମୁଁ ଜଣେ ଶିଳ୍ପୀଙ୍କ ଘରକୁ ଯାଇଥିଲି ମୋର ନୂଆ ବହିର କଭର ଡିଜାଇନ ପାଇଁ । ଫେରନ୍ତା ବାଟରେ ମନ ହେଲା ଯ୍ୟାଙ୍କ ଘରେ ପଶି ଆସିବାକୁ ।

ଆସି ଶୁଣିଲି ଯେ ଗନୁ ଫେରି ନାହିଁ ଏତେବେଳ ଯାଏଁ । କୋଉ, ପ୍ରେସ୍-ବାଲା ଡାକିଛନ୍ତି ତା'କୁ ନୂଆ କାମ ଦେବେ ବୋଲି । ଫେରିବେ କେତେବେଳେ ? ମଉନମୁହାଁ ସାନ ଉତ୍ତରଟିଏ ଦେଲା—"କହିପାରିବି ନାହିଁ ।" ତେବେ ମୋର ବିମୂଢ଼ତାକୁ ଲକ୍ଷ୍ୟ କରି କି ଆଉ କୋଉଥିପାଇଁ ଭଗବାନ୍ ଜାଣନ୍ତି, ସେ ଏତିକିରେ ରହିଗଲା ନାହିଁ ସବୁଥର ପରି । ଆହୁରି କିଛି କହିବାକୁ ଚାହିଁଲା ।

ସେ କହିକରି ଯାଆନ୍ତି ନାହିଁ କେତେବେଳେ ଫେରିବେ ବୋଲି ଏବଂ କେତେବେଳେ ଫେରନ୍ତି ତା'ବି ମୋତେ ଜଣା ନଥାଏ ।''

ଅର୍ଥାତ୍ ?

''ତାଙ୍କ ପାଇଁ ଖାଇବା ବଢ଼ା ହୋଇ ରହିଥାଏ । ତା'କୁ ଖାଇଲେ ଖାଆନ୍ତି, ନ ଖାଇଲେ ନାହିଁ । ତା'ପରେ ତାଙ୍କ ପଢ଼ା ଟେବୁଲ୍ ପାଖକୁ ଚାଲିଯାଆନ୍ତି । ସେଇଠି ବସି ଲେଖନ୍ତି । ଦିନଯାକ ଆଉ କୋଉଠୁ ସମୟ ଥାଏ ଲେଖିବା ପାଇଁ ?''

ସେଇଠୁଁ ?

''ଶୋଇବା ଘରକୁ କେତେବେଳେ ଫେରନ୍ତି, ତା'ର ଠିକଣା ନଥାଏ । କିମ୍ବା ମୋର ଜାଣିବା ଦରକାର ହୁଏ ନାହିଁ । ବେଳେ ବେଳେ ମୋଟେ ଫେରନ୍ତି ନାହିଁ । ସକାଳୁ ଉଠି ଦେଖେ ଯେ ସେ ଆର ଘର ଖଟିଆ ଉପରେ ଶୋଇ ଘୁଙ୍ଗୁଡ଼ି ମାରୁଛନ୍ତି ।''

ଆଇ-ସି !

ଆଇ-ସି ବୋଲି କାହିଁକି କହୁଛ ମିଛୁଟାରେ ? କ'ଣଟା ଦେଖୁଛ, କ'ଣଟା ବୁଝୁଛ ? ମୋର ମନେ ହେଲା ଭୁଲ ଆକସ୍ମିକ ଗୃହାଭିଁରେ ଅନେଇଛୁ ମୋ ଆଡ଼କୁ । ଚୌକିଟା ଉପରେ ବସିଛୁ, ପଢ଼ାଟେବୁଲ୍ ପାଖରୁ ଟାଣି ଅଣିଥିବା ଏକମାତ୍ର ଭଲ ଚଉକି ମୋ ପାଇଁ ଛାଡ଼ି ଦେଇଛୁ । ଚପା କୋଧରେ ତା'ମୁହଁଟା ସଜୀବ ଦିଶୁଛୁ । ବୋଧହୁଏ ଏତେଟା ଦିଶୁ ନଥାଆନ୍ତା ଯଦି ଅନ୍ଧକାରର ଶାଢ଼ୀରୁ ଜହ୍ନଆଲୁଅ ଏତେ ଚୋଫା ହୋଇ ନଥାଆନ୍ତା କିମ୍ବା ଠୁଳ ହୋଇ ନଥାଆନ୍ତା ତା'ଉପରେ । କିନ୍ତୁ ତା'ସାଙ୍ଗକୁ ମୋତେ ଦିଶି ଯାଉଥିଲା ଯେ ଏଇ କୋଧ ଜଣେ ତରୁଣୀର ଏବଂ ସୁନ୍ଦରୀର । ତା'ର ସଳଖ ସୁନ୍ଦର ନାକ, ଭସାଣିଆ ଆଖି ଏବଂ ଅଙ୍କା ହେଲା ପରି ଓଠ, ଯାହା ଯତ୍ସାମାନ୍ୟ ଥର ଉଠିଲା ପରି ମନେ ହେଉଥିଲା, ଆଉ କିଛି କହି-ପାରନ୍ତା ବୋଲି । ଏବଂ ଜହ୍ନଆଲୁଅ କେବଳ ତା' ମୁହଁ ଉପରେ ପଡ଼ୁ ନଥିଲା, ମଧ୍ୟ ଖସି ଆସିଥିଲା ମୁହଁର ତଳକୁ, ଯେତିକିଟା ଦରକାର ବୃଦ୍ଧ ଲେଖକକୁ ଚହଲେଇବା ପାଇଁ । ଯେ ଦେଖ ତୁମ ତରୁଣ ବନ୍ଧୁର ପତ୍ନୀକୁ । ତା'ପାଇଁ ବି କ'ଣ କିଛି ଦାୟିତ୍ୱ ନାହିଁ ତମର ? କହିବାକୁ ଗଲେ ସେ ଗୋଟିଏ ଅବହେଳିତ ଜମି ପରି ଦେଖା ଯାଉଥିଲା ଯାହାର ଅଧିକାର ଅଛି ଚଷିହେବା ପାଇଁ । ଏବଂ ସେ ମୋଠାରୁ ଦୟା ଚାହୁଁ ନଥିଲା, ଗୋଟିଏ ଫଇସଲା ଦାବି କରୁଥିଲା ଗଳ୍ପର ସାରାଂଶ ।''

...ଆଲେ, ମୁଁ କ'ଣ କରିବି ? ତୋର କ'ଣ ମୁଣ୍ଡ ଖରାପ ? ଏସବୁ ବିଷୟରେ ମୁଁ କ'ଣଟା କରିପାରିବି ? ସବୁ ନିର୍ଭର କରେ ଗନୁ ଉପରେ ଅଥବା ଭଗବାନଙ୍କ ଉପରେ...ସେଇଠୁଁ ଗୋଟାଏ ତୀବ୍ର ଓ ବ୍ୟାକୁଳ ପ୍ରାର୍ଥନା ଉଠି ଆସିଲି ମୋ ଅନ୍ତରରୁ—ହେ ଭଗବାନ୍, କିଛି ଗୋଟାଏ ଘଟନ୍ତା ନାହିଁ ଯେଉଁଥିରେ ଦୃଶ୍ୟଟା ପୂରାପୂରି ବଦଳି ଯାଆନ୍ତା ! ଆଉ ଏଇ ମଳିନା ପ୍ରକାଶିତ ପ୍ରତିଷ୍ଠିତ ହୋଇ ଉଠନ୍ତା, ତା'ର ନିଜସ୍ୱ ସୁନ୍ଦରପଣକୁ ନେଇ, ଯାହା କି ତା'ର ପାଉଣା ଏଇ ସଂସାରଠାରୁ !

ହେଲେ ଦୃଶ୍ୟଟା ଏମିତି ଭାବରେ ବଦଳିଯିବ ବୋଲି କିଏ ଭାବିଥିଲା ? ଗନୁ କୁଆଡେ ଦିଂଦିନିଆ ଜ୍ୱରରେ ଚାଲିଗଲା ହଠାତ୍ । ତା'ର ମୁଣ୍ଡ ବାଉଳା ଧରିଲା ଓ ସେ କ'ଣ ବୋଲି କ'ଣ କହୁଥାଏ ଦୁଲିକୁ, ଯାହାର ଅର୍ଥ ବୁଝି ହେଉ ନଥାଏ । ଜଣେ ପ୍ରକାଶକବନ୍ଧୁ ମୋତେ ଜଣାଇଲେ ଏ କଥା, ମୁଁ ଯେତେବେଳେ ଦିଲ୍ଲୀରୁ ଫେରିଆସିଲି ମୋ ପିଲାମାନଙ୍କ ସାଙ୍ଗରେ ତିନିଚାରି ମାସ ବିତେଇଲା ପରେ । ମୋ ଛାତିରୁ ଯେଉଁ କୋହ ଉଠିଲା, ତା' ସାଙ୍ଗକୁ ମୁଁ ଆତୁର ହେଉଥିଲି ମୋ ବନ୍ଧୁଙ୍କୁ ପଚାରିବା ପାଇଁ କ'ଣ କିଛି ବୋଲି କିଛି ବୁଝି ହେଉ ନ ଥିଲା ସେ ଯାହା କହୁଥିଲା ଦୁଲିକୁ, ବାଉଳା ଚାଉଳା ହୋଇ ? କାରଣ ମୋର ଆଶଙ୍କା ହେଉଥିଲା ଯେ ସେ ବଞ୍ଚିରହିବାର ଆଗ୍ରହକୁ ବୋଧହୁଏ ହଜେଇ ଦେଇଥିଲା ସେତେବେଳକୁ । ଅଜ୍ଞାନର ଅନ୍ଧପୁତୁଳି ଖୋଲିଯାଇଥିଲା, ଏବଂ ସେ ତା'ର ପ୍ରେମ-ପୃଥିବୀକୁ ଦେଖିପାରିଲା ନାହିଁ କେଉଁଠୁ । ଯଦିଓ ପଚାରିଲି ନାହିଁ ଏଭଳି ଏକ ଅବାନ୍ତର ପ୍ରଶ୍ନ ।

ବୁଝିଲି ଯେ ଦୁଲି ମଧ୍ୟ ନାହିଁ ଏଠି । ଦକ୍ଷିଣକୁ ଚାଲିଗଲାଣି, ତା' ବାପ ଘରକୁ । ହେଲେ ତା' ବରହମ୍ପୁର ଠିକଣା ଜଣା ନଥିଲା କାହାକୁ, ଏବଂ ମୁଁ ସେ ବିଷୟରେ ଖୋଳତାଡ଼ କରିବାକୁ ଚାହିଁଲି ନାହିଁ । ଏମିତି କେତେ ଅଧ୍ୟାୟ ସମାପ୍ତ ହୋଇଯାଇଛି ଆପେ ଆପେ, ମୋ ଦୀର୍ଘ ଜୀବନର ଅନୁଭୂତି ଭିତରେ । ଇଏ ମଧ୍ୟ ସେଇଥିରୁ ଗୋଟିଏ । ଧନ୍ୟବାଦ । କିନ୍ତୁ ମୋର ବୁଝିବା ଉଚିତ ଥିଲା ଯେ, ଏଇ ଅଧ୍ୟାୟ ସରିବାର ନୁହେଁ ଏତେ ଶୀଘ୍ର । କାରଣ ପାଣ୍ଡୁଲିପିଟି ତଥାପି ରହିଛି ମୋ ପାଖରେ ଏବଂ ତା'ର ଧୂଳିଧୂସରିତ ଚେହେରାକୁ ଦେଖେଇ ହେଉଛି ମୋତେ, ଦୋଷ ଦେଲା ପରି, ଯେତେବେଳେ ମୁଁ ମୋ ସାହିତ୍ୟ ଭଣ୍ଡାରକୁ ସଜାଡ଼ିବାକୁ ଯାଉଛି ।

ତା'ଛଡ଼ା ଆଉ ଗୋଟିଏ ଘଟଣା ଘଟିଗଲା ଏବେ । ଏଇ କେତେଦିନ ତଳେ, ଯେତେବେଳେ ମୁଁ ବ୍ରହ୍ମପୁର ଯାଇଥିଲି, ଅନ୍ୟତମ କବିତା-ଉତ୍ସବରେ ଯୋଗଦେବା ପାଇଁ । ସେଠି ମୁଁ କାହାକୁ ଦେଖିଲି ଜାଣନ୍ତି ? ଆଖି ମଳି ମଳି ଦେଖିଲି, କାରଣ ମୋ ଦୃଷ୍ଟିକୁ ବିଶ୍ୱାସ କରି ହେଲା ନାହିଁ । ହେଲେ ତାକୁ ଦେଖିଲି

ଗୋଟିପଣେ । ଖୋଦ୍ ଦମୟନ୍ତୀ ବୋହେଇ । କିନ୍ତୁ ସେବେକାର ଦୁଲି ନୁହେଁ, ଇଏ ଆଉ ଜଣେ ।

ଅରେଞ୍ଜ୍ ରଙ୍ଗର ବଗହମ୍ପୁସ୍ତି ପାଟ ଖଣ୍ଡେ ପିନ୍ଧିଛି, ଖୋସାରେ ଫୁଲ ଏବଂ ଓଠରେ ଖିଲ ଖିଲ ହସ । ଜୀବନାନନ୍ଦର ଜୁଆରରେ ଧୋଇ ପୋଛି ହୋଇ ଝଲ ଉଠୁଥିବା ତରୁଣୀଟିଏ । ସୁନ୍ଦରୀଟିଏ । ପ୍ରକାଶିତ ପ୍ରତିଭାତ ହୋଇଉଠିଛି ତା' ସ୍ୱରୂପର ନିର୍ଭୁଲ ଛପା ଓ ଚମତ୍କାର ପରିପାଟୀ ସହ । ଇସ୍ ! କ୍ଷଣକ ପାଇଁ ମୁଁ ଉଲ୍ଲସିତ ହୋଇ ଉଠିଲି । ସତେ କି ମୋର ପ୍ରାର୍ଥନା ପୂର୍ଣ୍ଣ ହେଲା ଏତେଦିନକେ ।

କିନ୍ତୁ ତା' ପରେ ପରେ ମୋର ଚେତା ହେଲା ଯେ ମୋର ଆନନ୍ଦ ଦୂଷଣୀୟ । ତା'ପାଖରେ ବସିଥିବା ତରୁଣଟିଏ ମଧ୍ୟ ହସୁଛି ତା' ମୁହଁକୁ ଚାହିଁ, ସେଥିପାଇଁ ନୁହେଁ । ମୋର ମନେ ପଡ଼ିଲା ଯେ ଆଉ ଗୋଟିଏ ପାଣ୍ଡୁଲିପି ଅଛି ଯାହାକି ପ୍ରକାଶିତ ହୋଇ ପାରିନାହିଁ ଆଜିଯାଏ । ଏବଂ ତା'ର ଘନିଷ୍ଠ ସମ୍ପର୍କ ଅଛି ଏଇ ହାସ୍ୟବତୀ ତରୁଣୀ ସାଙ୍ଗରେ, ଯେ ମୋର ଜଣେ ଅତି ଆପଣାର ବିଧବା ।

ସେହେତୁ ମୁଁ ରାଗିଲି ତା' ଉପରେ, ରାଗିଲି ପରି । କୋଉ ଦୟାମାୟାରେ ବିଚଳିତ ନ ହୋଇ । ଏବଂ ମୋର ଇଚ୍ଛା ହେଲା ଧାଇଁଯିବି ତା' ପାଖକୁ, ଓ ତାକୁ ପଚାରିବି—ଅଲାଜୁକୀ ! ଗଲୁର ସାହିତ୍ୟକୁ 'ହଃ !' କହୁଥିଲୁ ପରା ? ଏଇକ୍ଷଣି କୋଉ ମୁହଁରେ ଆସିଛୁ କବିତାପାଠ ଶୁଣିବା ପାଇଁ ? ତୋର ହତଭାଗା ସ୍ୱର୍ଗତ ସ୍ୱାମୀ ଛଡ଼ା କାହାଠୁ ଶିଖିଛୁ ଏ ସାହିତ୍ୟପ୍ରେମ ? ହେଲେ ତା ପରେ ମୋର ଖିଆଲ ହେଲା ଯେ ନିଜକୁ ହାସ୍ୟାସ୍ପଦ କରି ଦର୍ଶାଇବାର ଆଉ ଅନେକ ଉପାୟ ଅଛି ଏ ବୁଢ଼ା ବୟସରେ ।

ପାଣ୍ଡୁଲିପିକୁ ମୁଁ ପୁଣି ମୋ ହାତକୁ ଫେରାଇ ଆଣୁଛି, ଦେଖନ୍ତୁ । ଏବଂ ମୁଁ ଅହ୍ୱାନ କରୁଛି ମୋ ଦେଶର ସୁଧୀ ପ୍ରକାଶକମାନଙ୍କୁ—ଦୟାକରି ଛପେଇଦିଅ ଏଇ ବହିଟିକୁ । ସାହିତ୍ୟ ଥାଉ କି ନଥାଉ ସେଥିରେ, ମୁଁ ବ୍ୟାକୁଳ ହୋଇ ଉଠିଛି ତା'ର ମୁଦ୍ରିତ, ପ୍ରକାଶିତ ଓ ଗୌରବାନ୍ୱିତ ମୁହଁକୁ ଦେଖିବା ପାଇଁ । ଗଲୁ ମୋର ପୁଅ ଥିଲା ପରା ।

ଏତିକି ଉପକାର କରିପାରିବ ନାହିଁ ମୋ ପାଇଁ, ମୁଁ ତୁମମାନଙ୍କୁ ଏତେ ସାର୍ଥକ ଓ ପୁରସ୍କାରପ୍ରାପ୍ତ ଲେଖା ଯୋଗାଇଲା ପରେ ? ତେବେ ଗୋଟିଏ ଅନୁରୋଧ । ମୋତେ ତାର ମୁଖବନ୍ଧ ଲେଖିବା ପାଇଁ କହିବ ନାହିଁ । ମୁଁ ପାରିବି ନାହିଁ । ନିଜର ଛେନାଗୁଡ଼ ସୁଖ୍ୟାତିକୁ ବଢ଼େଇବା ପାଇଁ ନୁହେଁ । କେବଳ ଏଇଥି-

ପାଇଁ ଯେ ମୁଁ ଅଯୋଗ୍ୟ । ପାଗଳା ଗଳ୍ପଟା ମୋତେ ମିଛୁଟାରେ ଗୋଟେ ଆଶା ଦେଇଥିଲା··· ।

ଯୌବନର ପ୍ରେମକୁ ଛାଡ଼ି ଦିଅ, ସେ ତ ସବୁଦିନେ ଗଣ୍ଡଗୋଳିଆ । କିନ୍ତୁ ବୁଢ଼ା ଦିନର ଏ ଅଣ-ଆଇଁଫିଣିଆ ମମତା ବି ବଳେଇ ଗଲା ମୋତେ, ମୁଁ ତା'ର ଅଙ୍କ ମିଳେଇ ପାରିଲି ନାହିଁ, ଆଉ ଏତେ ଘାଣ୍ଟି ହେଲି ତା'ର ପଙ୍କ ଭିତରେ, ଏଥିରେ କହୁଛ କ'ଣ ନା ମୁଁ ମୁଖବନ୍ଧ ଲେଖିବି ଏଭଳି ଏକ ବିସ୍ଵାଦ ପ୍ରେମ ଛନ୍ଦର ?

# ପାଣ୍ଡୁଲିପି

ଏଇ ଗପର ଚରିତ୍ର କେବଳ ଦୁଇଜଣ ନୁହଁନ୍ତି, ଜଣେ ରୋମାଣ୍ଟିକ୍ ପ୍ରେମପ୍ରବଣ ତରୁଣ କବି, ତା'ର କବିତ୍ୱ ସାମାନ୍ୟ ହେଉ କି ଉଚ୍ଚଧରଣର, ଏବଂ ତା'ର ସୁନ୍ଦରୀ ତରୁଣୀ ପତ୍ନୀ, ଯେ ହୁଏତ ଦୁଃଖିନୀ। ନା, ଗୋଟିଏ ତୃତୀୟ ଚରିତ୍ର ମଧ୍ୟ ରହିଛି, ଯେ ଏମାନଙ୍କ ଠାରୁ ଅନେକ ଅଧିକ ଜଟିଳ। ଘଟଣାଟିକୁ ବର୍ଣ୍ଣନା କରୁଥିବା ସେଇ ପ୍ରବୀଣ ଲେଖକ ଯାହା ପାଖରେ କବିର ପାଣ୍ଡୁଲିପିଟା ତଥାପି ରହିଛି ଛପା ହେବା ପାଇଁ। ତା'ର ଜଟିଳ ସ୍ୱରୂପକୁ ମୁଁ ଆଜି ଟିକି ବିଦାରି ପଦାରେ ପକାଇ ଦେବାକୁ ଚାହେଁ, କାରଣ ମୋର ରାଗ ଆସୁଛି ତା' ଉପରେ। ଏବଂ କହିବାକୁ ଚାହେଁ ମୋର ପାଠକପାଠିକାମାନଙ୍କୁ—ଦୟାକରି ବୁଝନ୍ତୁ ଏଇ ଚରିତ୍ରଟିକୁ। ସେ ଯାହାସବୁ କହିଗଲା ନିଜର ସ୍ୱଭାବ ଚରିତ୍ର ଓ ମନୋଭାବକୁ ନେଇ, ସେଥିରୁ କ'ଣ ବୁଝା ପଡ଼ୁଛି ? ଲୋକଟା ଭଲ ନା ମନ୍ଦ ? ସତ ନା ମିଛ ?

ନା ନା, କ୍ଷମା କରିବେ, ପ୍ରଥମ ପ୍ରଶ୍ନଟିକୁ ଛାଡ଼ିଦିଅନ୍ତୁ। ତା'କୁ ବିଚାରାଧୀନ କରିବା ନିଷ୍ପ୍ରୟୋଜନ, ତଥାକଥିତ ଆଧୁନିକ ଲେଖକମାନଙ୍କୁ ନେଇ। କାରଣ ସେମାନେ ଭଲ-ମନ୍ଦର ସୁସ୍ପଷ୍ଟ ବିଭେଦରେ ବିଶ୍ୱାସ କରନ୍ତି ନାହିଁ। କୁହନ୍ତି ଆମେ ବାସ୍ତବ ସତର ଆଗ୍ରହୀ, ତେଣୁ ଆମେ ନୀତି-ନିରପେକ୍ଷ (a moral), ଭଲ-ମନ୍ଦ ବିଚାରର ଊର୍ଦ୍ଧ୍ୱରେ। ସେହେତୁ ତାଙ୍କ ମାନସିକତାକୁ ମନ୍ଦ ବୋଲି କହିଲେ, ସେ କେତେ ଖାତିରରେ କହିପାରନ୍ତି ଯେ ତାହା ମନ୍ଦ ହେଲେ ମଧ୍ୟ ଭଲ। ଅତି ଅଦ୍ଭୁତ ତାଙ୍କର ମାଲାମ୍ପିତ ଲଜିକ୍ !

ବରଂ ଦ୍ୱିତୀୟ ପ୍ରଶ୍ନଟିକୁ ହିଁ ମୁଠେଇ ଧରନ୍ତୁ। କାରଣ ସତ ମିଛ ଭିତରେ ଯେଉଁ ବିଭେଦ ରହିଛି ତାହା ତଥ୍ୟମୂଳକ। ସେଥିର ବିଚାରକୁ ସେ ଖଣ୍ଡନ କରିପାରନ୍ତି ବିରୋଧୀ ତଥ୍ୟର

ଉପସ୍ଥାପନା କରି, କିନ୍ତୁ ତାକୁ ସେ ହୁରୁଡ଼େଇ ଦେଇ ପାରିବେ ନାହିଁ । ସେହେତୁ ବିଚାର କରିବା କଥା ଯେ ସେ ଯାହା ଜଣାଇବାକୁ ଚାହାଁନ୍ତି ନିଜ ବିଷୟରେ ସେଥିରୁ କ'ଣ ତାଙ୍କୁ ସତ ବୋଲି କହିବ ? ନା ମିଛ ?

ପ୍ରଥମ କଥା, ଯେତେ ପ୍ରବୀଣ କି ପ୍ରତିଷ୍ଠିତ ହୁଅ ନା କାହିଁକି, ତମେ କଣ ଜଣେ ଯଥାର୍ଥ ଲେଖକ ? ତା' ହୋଇଥିଲେ କ'ଣ ତମେ ତମ ବନ୍ଧୁର କି ପୁଅଭଳି ଶିଷ୍ୟର ପାଣ୍ଡୁଲିପି ଟାକୁ ପକେଇ ରଖିଥାଆନ୍ତ ଏତେଦିନଯାଏଁ ? ତା'ର 'ପ୍ରେମ କଥା'ରେ କିଛି ନୂଆ କଥା ଥାଉ କି ନଥାଉ, ଉପମା-ଗୁଡ଼ାକ ହୋଇଥାଉ ପଛେ ଚନ୍ଦ୍ର-ଚକୋରର ଆଶ୍ରୟୀ, ତମ ମନ କହୁଛି ଯେ ଗନ୍ ପ୍ରକୃତରେ ତା'ର ସ୍ତ୍ରୀ ଦମୟନ୍ତୀ ଓରଫ୍ ଦୁଲକୁ ଭଲ ପାଉଥିଲା, ଏବଂ ସେଇ ଭଲପାଇବାକୁ ସେ ପ୍ରତିଫଳିତ କରିବାକୁ ଚାହିଁଥିଲା ତା' ଲେଖାରେ । ଯଦି ତାହା ହୋଇଥାଏ, ତା'ହେଲେ ଆନ୍ତରିକତା ନିଶ୍ଚୟ ଫୁଟି ଉଠୁଥିବ ସେଥିରେ । ଯାହା କ୍ୱଚିତ୍ ଦେଖିବାକୁ ମିଳେ ହାରିହାରି ଦୁସଙ୍କିତ ଅଥବା ଚମକ-ପ୍ରଦ ଆଧୁନିକ କବିତାରେ, ଯେଉଁଥିରେ ସବୁ ଅଛି ହେଲେ ତା' ସାଙ୍ଗକୁ ଅଛି କୃତ୍ରିମତା । ସତେକି ତାହା କବିଙ୍କର ଏକ ସୁନ୍ଦର ହାତଗଢ଼ା ବସ୍ତୁ, କିନ୍ତୁ ତା'ର କୌଣସି ସଂପର୍କ ନାହିଁ ତାଙ୍କର କେଉଁ ବାସ୍ତବ ଅନୁଭବ ସାଙ୍ଗରେ । ତେଣୁ ଏଭଳି ଗୋଟିଏ ପାଣ୍ଡୁଲିପିକୁ ଏକ ମହାର୍ଘ ଆବିଷ୍କାର ବୋଲି ଭାବିବା ଉଚିତ ଯେକୌଣସି ଲେଖକ ପକ୍ଷରେ । ତଥାପି ତାକୁ ତମେ ପକେଇ ରଖିଲ ଏମିତି, ତା'ର କାରଣ କଅଣ ? ମୁଖବନ୍ଧଟିଏ ଲେଖିଲେ କ'ଣ ହରିଯାଉଥିଲା ତମର ? ଏଇଥିରୁ ମନେ ହୁଏ ଯେ ତମେ ଜଣେ 'ମିଛ' ଲେଖକ । ଅର୍ଥାତ୍ ଯେଉଁ ଲେଖକୀୟ ଇମେଜ୍‌କୁ ତମେ ଧରି ରଖିବାକୁ ଚାହୁଁ, ତାହା ଫମ୍ପା । ନହେଲେ ତମେ ଏଭଳି ଗୋଟିଏ ଲେଖାର ଆଦର ନକରି ରହିପାରି ନଥାନ୍ତ । ଅନ୍ତତଃ କବିଙ୍କର ସେଇ ଅସାଧାରଣ ଆନ୍ତରିକତା ବିଷୟରେ ଦି'ପଦ କହିବାକୁ ଇଚ୍ଛା ହୋଇଥାଆନ୍ତା ତମର, ସେଥିର ମୁଖବନ୍ଧ ଜରିଆରେ ।

ତମ ଲେଖକପଣିଆ କଥା ଛାଡ଼ । ବେଳେ ବେଳେ ମଧ୍ୟ ମନେହୁଏ ଯେ ତମେ ମଧ୍ୟ ଜଣେ 'ମିଛ' ମଣିଷ । ଅର୍ଥାତ୍

ତମେ ତମ ମନଗଢ଼ା ଲେଖାକୁ ହିଁ ବଡ଼ ବୋଲି ଭାବ, ନିଜ ସହିତ ତମ ସହିତ ସଂସାରର ସମ୍ପର୍କକୁ ନେଇ ତମେ ବିଶେଷ କିଛି କରିବାକୁ ନାରାଜ । କିଓ ଯଦି ଭାବୁଛ ଯେ ଗଲୁ ତା' ସ୍ତ୍ରୀକୁ ଏତେ ଭଲ ପାଇବା ସତ୍ତ୍ୱେ ସେ ଅନ୍ୟାୟ କରୁଛି ତା'ପ୍ରତି, ତା'ହେଲେ କ'ଣ ତମେ ତା'ର ସମ୍ୟକ୍ ସୂଚନା ଦେଇପାରି ନ ଥାଆନ୍ତ ତାକୁ ? ବିଶେଷତଃ ଯେତେବେଳେ ତମ ମନକୁ ଆସିଲା ଯେ ସେ ତା' ସ୍ତ୍ରୀକୁ ତା'ର ନ୍ୟାଯ୍ୟ ଉପଭୋଗରୁ ବଞ୍ଚିତ କରୁଛି ? ଏଣେ ତମେ ଯଦି ଭାବିଲ ଯେ ଦମୟନ୍ତୀ ତା' ସ୍ୱାମୀ ପ୍ରତି ଅନ୍ୟାୟ କରୁଛି, ତା'ହେଲେ ତମେ କ'ଣ ତାକୁ ସୁଧାରିବାକୁ ଚେଷ୍ଟା କରି ନଥାଆନ୍ତ ? ଗଲୁର ତ ଅଟଳ ଆସ୍ଥା ତମ ଉପରେ, ସେ ତମ କଥାକୁ ଗୁରୁବାକ୍ୟ ବୋଲି ମାନିନେଇ ଥାଆନ୍ତା । ତା' ସ୍ତ୍ରୀ ମଧ୍ୟ ତମ କଥାକୁ ଘେନା କରିଥାଆନ୍ତା, ପିତୃସ୍ଥାନୀୟ ଜଣେ ଶୁଭାକାଙ୍କ୍ଷୀ ବନ୍ଧୁଙ୍କର ପରାମର୍ଶ ହିସାବରେ । କିନ୍ତୁ ତମେ ଖାଲି ମନେ ମନେ 'କୁହୁଳିଲ, ସ୍ୱା' ଉପରେ କି ତା' ଉପରେ ହେଲେ କୌଣସି ଚେଷ୍ଟା କଲ ନାହିଁ ତାଙ୍କ ଭିତରେ ରହିଥିବା ଅଭାବଟିକୁ ଦୂର କରିବା ଲାଗି । ନା, ଆମେ ତମକୁ ଭଲ କି ମନ୍ଦ ବୋଲି କହୁନାହୁଁ । କହୁଛୁ ଯେ ଯେଉଁଲେକ ତା'ର ଅନୁଭୂତ ଆବେଗର ମର୍ଯ୍ୟାଦା ଦେବାକୁ ଅକ୍ଷମ, ହୁଏତ ତା'ର ଆବେଗ ମିଛ, ଅଥବା ସେ ତା' ଆବେଗର ଯୋଗ୍ୟ ନୁହେଁ । ଅର୍ଥାତ୍ ଅମଣିଷ ।

ଆମେ ବୁଝୁଛୁ ଯେ ତମେ ତମ ଅକ୍ଷମତା ବିଷୟରେ ସଚେତନ, ଏବଂ ତାହା ଦୁଃଖଦାୟକ । ମଧ୍ୟ ତମକୁ ଧନ୍ୟବାଦ ଦେବା କଥା ଯେ ତମେ ନିଜର ଭୀରୁତା, ବିଭ୍ରାନ୍ତ ଅନ୍ଧ ଅବ-ଗୁଣକୁ ଲୁଚେଇବା ପାଇଁ ଚେଷ୍ଟା କରିନାହଁ; ତାହା ଦିଶିଯାଉଛି ଜଳଜଳ ହୋଇ । କିନ୍ତୁ ସେଥିରେ କିଛି ଲାଭ ନାହିଁ କାହାର । ସବୁଠାରୁ ହାସ୍ୟାସ୍ପଦ ଯେତେବେଳେ ତମେ ପ୍ରକାଶକମାନଙ୍କୁ ନେହୁରା ହେଉଛ ବହିଟିକୁ ଛପେଇବା ପାଇଁ, ହେଲେ କହୁଛ କ'ଣ ନା ତମେ ମୁଖବନ୍ଧ ଲେଖିବା ପାଇଁ ଅଯୋଗ୍ୟ, କାହିଁକି ନା ତମେ ଭଲପାଇବା ଜିନିଷଟାର ଅଙ୍କ କଷିବାରେ ଅସମର୍ଥ, ତାହା ଆମଁକ ହେଉ କି ନିରାମିଷ । କିଓ

ଭଲ ପାଇବାକୁ ବୁଝିବ କିଏ ମ? ତାକୁ ତ ଖାଲି ଅନୁଭବ କରିବା କଥା, ତାହା ହାଲୁକା ହେଉ କି ଗମ୍ଭୀର, ବିଶୁଦ୍ଧ କି ପଙ୍କିଳ, ଅନୁମୋଦିତ କିମ୍ବା ନିଷିଦ୍ଧ।

ଶୁଣିବା ହେଉ ଲେଖକ ମହାଶୟ! ଆଉ ଡେରି ନ କରି ଛପେଇଦିଅ ଗଳ୍ପର ପାଣ୍ଡୁଲିପିଟିକୁ, ନିଜର ସୁଚିନ୍ତିତ ଏବଂ ସସ୍ନେହ ମୁଖବନ୍ଧ ସହ। ତା'ହେଲେ ଜାଣିବ ଯେ ଲେଖକ ହିସାବରେ ଗୋଟାଏ ଲେଖାକୁ ଚିହ୍ନିଲି ଯେମିତି ଚିହ୍ନିବା କଥା, ଅଥବା ମଣିଷ ହିସାବରେ ଗୋଟାଏ ଠିକଣା କାମ କଲି ବନ୍ଧୁ ଏବଂ ବନ୍ଧୁପତ୍ନୀଙ୍କ ପାଇଁ। ହଁ, ଆଉ ଗୋଟାଏ କଥା କହିବି, ମନେରଖ। ଛପା ହେଲା ପରେ ତା'ର କପିଟିଏ ଦୁଲିର ହାତକୁ ବଢ଼େଇଦେବ, ଉପହାର ସ୍ୱରୂପ। ଦେଖିବ ସେ ସେଥିରେ କେତେ ଖୁସି ହୋଇ ଉଠିବ। ସେଇ ହେବ ତମର ଏଇ ଅସନ୍ତୋଷିଆ କାହାଣୀର ଶେଷ କଥା, ଆଉ ତମ ଜୀବନରେ ଆସିଥିବା ଏଇ ସମ୍ପର୍କ-ମଧୁର ଅନୁଭୂତିର ସାର୍ଥକତା।



# କୁକୁରଙ୍କ କାନ୍ଦଣା

## (୧)

(ପୂର୍ବାହ୍ନ : ବିପିନବାବୁ)

ଗୋଟିଏ କୁକୁରର କାନ୍ଦଣା ତୁମକୁ ଏମିତି ଅସ୍ଥିର କରିଦେଲା ଯେ ତୁମେ ସେଠି ଆଉ ଘଣ୍ଟାଏ ରହି ପାରିଲ ନାହିଁ ? କୁକୁରଟା ପାଇଁ ଏତେ ଦରଦ, ହେଲେ ତମ ନାତିର ଭବିଷ୍ୟତ ତମରି ହାତରେ, ଏତିକ ଭାବି ପାରିଲ ନାହିଁ ? ଲାଙ୍ଗୁଳ ଜାକି ପଳାଇ ଆସିଲ ସେଠୁଁ, ତମ ବନ୍ଧୁ ଫେରିବା ଆଗରୁ ? ଇତ୍ୟାଦି । କଟୂକ୍ତିର ସୀମା ରହିବ ନାହିଁ ମୋ ପାଇଁ । ମଧ୍ୟ ବିଦ୍ରୂପର । ଛିବଲ 'ଛିଃ ଛିଃ'ରେ ମୁଖର ହୋଇ ଉଠିବେ ସେମାନେ, ଦିଲ୍ଲୀରେ ଥିବା ମୋର ଭାଇବନ୍ଧୁମାନେ । ଏପରିକି ମୋର ଆଦରଣୀୟ ଝିଅ ମଧ୍ୟ ଗଅଁ ଗଅଁ ହେବ ମନେ ମନେ । ଯେ ତା' ଅପାରଗ ବାପା କିଛି କଲେ ନାହିଁ ତା' ପୁଅ ପାଇଁ । ଏମିତିକା ସୁବର୍ଣ୍ଣ ସୁଯୋଗ ଛାଡ଼ିଦେଲେ ହାତରୁ···

ବିପିନ ରାଉତ ଏହି ମର୍ମରେ ଅନୁମାନ କରୁଥିଲେ ସେମାନେ କଣ କହିବେ, ତାଙ୍କ ନିଜ ଲୋକମାନେ, ଯେଉଁମାନେ ତାଙ୍କ ଫେରିବା ବାଟକୁ ଚାହିଁ ବସିଛନ୍ତି ଶ୍ୟାଳକ ଶ୍ରୀକାନ୍ତ ସାମନ୍ତ ଆଡ୍‌ଭୋକେଟ୍‌ଙ୍କ ଘରେ । ଯଦି ସେ କୁକୁର-ଭକ୍ତିକ ସତ କଥାଟାକୁ କହିଦିଅନ୍ତି । ସେଇଠୁଁ ସେ ସ୍ଥିର କଲେ—

ନା, ତମେ ନିରାଶ ହୁଅ କି ହତାଶ ହୁଅ, ମୁଁ ଚାହେଁ ନାହିଁ ତମେ ସବୁ ରାଗିବ ମୋ ଉପରେ । ମୋ ମନର ଅତ୍ୟଧିକ ଓ ଅସାଧାରଣ କାରୁଣ୍ୟହିଁ ମୋର ବଡ଼ପଣ । ହେଲେ ଦୁର୍ବୋଧ୍ୟ ତମ ପାଇଁ ।

ସେହେତୁ ମୁଁ କହିବ ନାହିଁ କୁକୁର କଥା । କହିବ ନାହିଁ ଯେ ମୁଁ ତା' କାନ୍ଦଣାରେ ଅତିଷ୍ଠ ହୋଇ ଉଠିଲି । ବୃଥା ଚେଷ୍ଟା କରିବ ନାହିଁ ବୁଝେଇବା ପାଇଁ ଯେ ସିଏ ଗୋଟାଏ ଇତରସାଧାରଣ କାନ୍ଦଣା ନୁହେଁ କି ଚିତ୍କାର ନୁହେଁ, ଉଭୟର ମିଶାମିଶି ଗୋଟାଏ ଅସହ୍ୟ ଯନ୍ତ୍ରଣାର କ୍ୟାଉଁ କ୍ୟାଉଁ, ଦେହଠାରୁ ବଳି ମନର— ମୋତେ କାହିଁକି ବାନ୍ଧି ରଖିଛ ଏମିତି ଏଇ ତାତିଲା ଖୋଲା ଛାତ ଉପରେ ?

ପ୍ରଚଣ୍ଡ ସୂର୍ଯ୍ୟର ଖରବେଳ୍କୁଟାରେ ? କାହିଁକି ?? ହେଲେ କେହି ଶୁଣିବାକୁ ନାହିଁ ତାର ଅଭିଯୋଗ । କେହି ମଧ୍ୟ ଶୁଣିବେ ନାହିଁ, ସାହେବ ଘରକୁ ନ ଫେରିବାଯାଏଁ । କୁଆଡ଼େ ତାହାହିଁ ଘରର ନିୟମ, ସାହେବଙ୍କ ଇଚ୍ଛା । ସେଇଠୁଁ ମୁଁ ଆଉ ସହିପାରିଲି ନାହିଁ । କୁକୁର କାନ୍ଦଣା କି ତା' ମାଲିକର ପ୍ରଭୁପଣିଆ । ନିର୍ମମ, ଅଶ୍ଳୀଳ, ପାଶବ··· ନା ନା, ପାଶବ ନୁହେଁ, କୋଉ ପଶୁ ଏତେ ନିର୍ମମ କି ଅଶ୍ଳୀଳ ହୋଇ ପାରିବ ନାହିଁ । ଖାଲି ହୋଇପାରିବ ସେଇ ଲୋକଟା । ଭାରତର ପ୍ରଥମ ଦଶକ, 'ଟପ୍ ଟେନ୍' ତାଲିକାରେ ଥିବା ଶିଳ୍ପପତି, ସେବକାର ଗ୍ରମ୍ଫିଆନ୍ ଟେନିସ୍ ଖେଳାଳି, ସେବେକାର ଦୁଃସାହସୀ ସନ୍ତରଣକାରୀ, ଗଣକଲ୍ୟାଣ ପାର୍ଟିର ନିର୍ମାତା ଓ ପାଣ୍ଠି-ଦାତା, ନିଜେ ମନ୍ତ୍ରୀ ହେଲନାହିଁ କିନ୍ତୁ ମନ୍ତ୍ରୀଙ୍କ ମା-ବାପ, ସ୍ୱନାମଧନ୍ୟ ଦେବୁ ନାୟକ । ଆଉ ସିଏ କୁଆଡ଼େ ମୋ ବନ୍ଧୁ, ପୁଣି ବଡ଼ଭାଇ ସମାନ ! ବଡ଼ଭାଇ, ମାଇ ଫୁଟ୍ ! ଆଇ ହେଟ୍ ହିମ୍, ପିଲ୍ଟି ଦିନୁ ।

ହଁ ମୁଁ ମିଛ କହିବି । କହିବି ଯେ ମୁଁ ବସି ବସି ଫେରି ଆସିଲି ତା' ଘରୁ । ଦେଖା ହେଲି ନାହିଁ ତା' ସାଙ୍ଗରେ । ଏବଂ ଦେଖା ବି' ହେବ ନାହିଁ ଆସନ୍ତା ଦଶବାର ଦିନ ଭିତରେ, ଯାହାକି ସତ କଥା । କାହିଁକନା ଶୁଣିଲି ଯେ ସେ କାଲି ସକାଳେ ଦିଲ୍ଲୀ ଗୁଡ଼ି ଜର୍ମାନୀ ଯାଉଛି, କୋଉ ବିଜିନେସ୍ କନ୍‌ଫରେନ୍ସରେ । କିନ୍ତୁ ଆମେ ନ ଥିବୁ ଦିଲ୍ଲୀରେ ସେ ଫେରିଲା ବେଳକୁ । ଝିଅ ଓ ନାତି ଫେରିଯାଇଥିବେ ଜ୍ୱାଇଁଙ୍କ କର୍ମକ୍ଷେତ୍ର ଜାମ୍‌ସେଦ୍‌ପୁରକୁ ।

ଏବଂ ମୁଁ ଥିବି ମୋ ଘରେ, କଟକରେ । ଗୁଡ୍ ।

ଅବଶ୍ୟ ମୁଁ ଲୋକଟାକୁ ଘୃଣାକରେ । ତା' ବୋଲି କୁକୁରକାନ୍ଦଣା ନାଆଁରେ ଗୋଟାଏ ବାହାନା ମିଳିଗଲା ମୋତେ ନିଜକୁ ସଫେଇ ଦେବାପାଇଁ, ଏବଂ ମୋର ତଥାକଥିତ ଦାୟିତ୍ୱରୁ ଓହରିଯିବା ପାଇଁ, ତା' ନୁହେଁ । ମୁଁ ତାକୁ ଡରୁଛି ନା କଅଣ ଯେ ଲୁଚିବି ତା'ଠୁ ? ସେ ଯେତେ ବଡ଼ଲୋକ ହେଉ, ରାଜା ହେଉ କି ନେତା, ଆଇ ଡୋଣ୍ଟ କେୟାର । ଆଇ ଜଷ୍ଟ ଡୋଣ୍ଟ କେୟାର୍ ! କିନ୍ତୁ ତଥାପି ହୁଏତ ଗୋଟାଏ ଅନୁରୋଧ କରିଥାନ୍ତି ମୋ ନାତିଟୋକା ପାଇଁ, ପିଲାଦିନର ଚିହ୍ନା ହିସାବରେ । କିନ୍ତୁ କ'ଣ କରିବି, ନିରୀହ ଜନ୍ତୁଟାର କାନ୍ଦଣାରେ ମୋ ମୁଣ୍ଡ ବିଗିଡ଼ିଗଲା । ଭାବିଲି ମୁଁ କଦାପି ଦେଖା କରିବି ନାହିଁ ଏଭଳି ଗୋଟାଏ ଅମଣିଷ ସାଙ୍ଗରେ, ତା'ଠୁଁ କିଛି ସାହାଯ୍ୟ ଲୋଡ଼ିବା ଦୂରର କଥା । ମୋ ଜୀବନଟା ଏତେ ଅସରଣିଆ ନୁହେଁ ଯେ ତାକୁ ଅପବିତ୍ର କରିଦେବି ଏଇ ବୁଢ଼ା ବୟସରେ ।

ମାନୁଛି ସେ ଖାଲି ମୋର ଚିହ୍ନା ନ ଥିଲା । ମୋ ବାପାବୋଉ ତାକୁ ଆମ ପରିବାରର ଜଣେ ବୋଲି ଭାବୁଥିଲେ । ଆମ ବଡ଼ ପିଉସୀଙ୍କ କୋଉ ପୁରୁଷ

ହିସାବରେ । ସେଇଲାଗି ତାଙ୍କୁ 'ଦେବ୍‌ଭାଇ' ଡାକିବୁ, ଆଉ ନମସ୍କାର କରିବୁ ବୋଲି ବାପା ମୋତେ ଚେତାଇ ଦେଇଥିଲେ, ଯେଉଁଦିନ ସେ ଆସିଥିଲି ଆମ ଘରକୁ ମୋ ପିଲାଦିନେ, ଓ ମୁଁ ତାଙ୍କୁ ଦେଖିଲି ପ୍ରଥମ ଥର ପାଇଁ । ଗୋଟାଏ ହିରୋ ହୋଇ ଆସିଥିଲି ସେଥର, କାହିଁକି ନା ସେ ବୁଡ଼ିଯାଉଥିବା କେଉଁ ହତଭାଗାକୁ ଉଦ୍ଧାର କରିଥିଲି ବଙ୍ଗୋପସାଗରରୁ, ଏବଂ ତା' ନାଆଁ ବାହାରିଥିଲି ଖବରକାଗଜରେ ।

ମୋର ହିଂସା ନଥିଲି ତା' ଉପରେ । ସେ ମୋଠୁଁ ପ୍ରାୟ ସାତବର୍ଷ ବଡ଼ । ବଡ଼ଭାଇ ମାନ୍ୟରେ ମୁଁ ତାଙ୍କୁ ଯଥାବିଧି ସମ୍ମାନ ଦେଇଆସିଛି, ଏଥିରେ ସନ୍ଦେହ ନାହିଁ । କିନ୍ତୁ···କିନ୍ତୁ ସେଦିନ ସେ ମୋ ଆଡ଼କୁ ସେମିତି ଅନେଇଲି କାହିଁକି ? ଅନେଇଲି ଆଉ ମୁରୁକିହସା ଦେଲି । ଆଉ ଯାହା କହିଲି—ସତେକି ମୁଁ ହୋଇ-ପାରେ ତା' ସାନଭାଇ ଲେଖା, କିନ୍ତୁ ଯେତେହେଲେ ଗୋଟାଏ ସାନମାନିଆ ମଫସଲିଆ ଦୁର୍ବଳିଆ ଜୀବ । ମୂଷାଟାଏ !

ମୋର ମନେ ପଡ଼ୁଛି ସେଦିନ କଥା । ଝିପିଝିପି ବର୍ଷା ଲାଗି ରହିଥାଏ ସକାଳଠାରୁ । ମୁଁ ଘର ଭିତରେ ଥାଇ ମଜା କରୁଥିଲି ମୋର କେଇଜଣ ସାଙ୍ଗ-ମାନଙ୍କୁ ନେଇ । ଏମିତିକା ପାଣିପାଗ, ପୁଣି ଛୁଟି ଦିନ । ମାଟ୍ରିକ୍ ପରୀକ୍ଷା ଓ କଲେଜ୍ ପଢ଼ା ଭିତରେ ଦୋଳାୟିତ ସେଇ କେତୋଟି ଅଳସ ବିଳାସର ଦିନ । ଆମର ସେଇ ପୁରୁଣା ତିନିପୁରୁଷିଆ ଘର, ଗ୍ରେଟିଆ ଗ୍ରେଟିଆ ରୁମ୍ ଓ ବିରାଟ ଅଗଣା । ଗୋଟିଏ କଣ ରୁମ୍‌ରେ ବସି ଆମେ କ୍ୟାରମ୍ ଖେଳୁଥିଲୁ, ଗପୁଥିଲୁ, ଗୀତ ବୋଲୁଥିଲୁ । ଗରମ ଗରମ ବରାପିଆଜି ବି ପାଟିରେ ପକାଉଥିଲୁ । ଏବଂ ସେଇ ସମୟରେ ଆସି ପହଞ୍ଚିଗଲି ଏଇ କଲିକତିଆ ବୀର । ବାପା ଡାକ ଛାଡ଼ିଲେ ମୋତେ—ବିପିନ୍, ହେ ବିପିନ୍ ! ଶୁଣ୍ ଏଦାକୁ ଆ,' ତୋ ଦେବ୍‌ଭାଇ ଆସିଛି—

ବାହାରକୁ ଆସି ଦେଖିଲିରୁ ଗୋଟାଏ ଲମ୍ବାଚଉଡ଼ା ଟୋକା ଠିଆହୋଇଛି ବାପାଙ୍କ ପାଖରେ, ଭିତର ପିଣ୍ଡାର ଅନ୍ୟତମ ଖମ୍ବକୁ ଆଉଜି । ତାଙ୍କ ସମାସ୍କନ୍ଧ ପରି । ଆଉ ଅନେଇଛି ମୋ ଆଡ଼କୁ, ନିହାତି ଲଙ୍ଗଳା ଓ ଅଭଦ୍ର ଚାହାଣିରେ । ମୁଁ ମୋ ଦୃଷ୍ଟି ତଳକୁ କଲି । ଆଉ କ'ଣ ଉପାୟ ଥିଲି ମୋର ? ସେଇଠୁ ସେ କହିଛି ମୋତେ, ତା'ର ମୁରୁକିହସାକୁ ବଙ୍କେଇ ଦେଇ—

"କ'ଣ ଇଟିକିଲି ମିଟିକିଲି ଖେଳୁଥିଲୁ ? ନା ହପ୍ ସ୍କଚ୍—କଅଣ କହନ୍ତି ତାକୁ ଇଆଡ଼େ, ଚଟା ନା କଅଣ ପରି ?" ସେଇଠୁଁ ଗୋଟାଏ ହେଁ—ହେଁ ହସ । ମୋତେ ତ ଯାହା ଛାଗୁଲେଇଲି ଏମିତି, ମୋ ମର୍ମରେ ଗଳିଗଲି ପରି । କିନ୍ତୁ ତା'ର ଛାଡ଼ା ହେବା ଠାଣି, ତା'ର ହସ, ତା'ର ସମସ୍ତ ଭାବଭଙ୍ଗୀରେ ଯେଉଁ ବେଖାତିରିଆ

ଢଙ୍ଗ ଥିଲା, ସେଥିରୁ ମନେ ହେବ ଯେ ସେ ମୋ ବାପାଙ୍କୁ ମଧ୍ୟ ପାସଙ୍ଗରେ ପକାଉ-ନାହିଁ । ଯେ ତା'ର ମାମୁ ହେବେ । ଗୁରୁଜନ ।

ସେ ଟୋକା ଆଜି ପାକଲା ବୁଢ଼ା ହୋଇଗଲାଣି, ଯଦିଓ ସେ ଦେଖାଯାଏ ନାହିଁ ସେମିତି । କିନ୍ତୁ ତା'ର ଗର୍ବ କି ବେଟାଉତଆପଣ କ'ଣ ଟିକିଏ ହେଲେ କମିଛି ? ମୋଟେ ନୁହେଁ । ବରଂ ସେ ଯେତିକି ବୁଢ଼ା ହେଉଛି ଆଉ ମରଣର ପାଖ ହୋଇ ଆସୁଛି, ସେ ସେତିକି ଗର୍ଜୁଛି । ଶଳା ବେଧୁଆ ଜନ୍ମରୁ ବାଷ୍ଟାର୍ଡ଼୍ ଠାରୁ ଆରମ୍ଭ କରି ଯେତେକ ଅକଥ୍ୟ ଭାଷାରେ । ନକଲି ଦାନ୍ତ ଦି'ପାଟିକୁ ମେଲି ଦେଇ । ଏବଂ ଖାଲି ଗର୍ଜୁନାହିଁ, ଶୁଣାଯାଏ ସେ ମଧ୍ୟ ଗୃପୁଡ଼ା ମାରୁଛି କେତେଜଣଙ୍କୁ । ଭଦ୍ରଲୋକ-ମାନଙ୍କୁ । ଇସ୍! ଏଭଳି ଗୋଟାଏ ଜାନୁଆର୍ ବଡ଼ଲୋକ ହୋଇପାରେ, ଏବଂ ସମାଜ ଉପରେ କ୍ଷମତା ଖଟେଇ ପାରେ ତାର ବଳରେ, କିନ୍ତୁ ଏତେ ଲୋକ ତାକୁ ମାନୁଛନ୍ତି କେମିତି ? କେବଳ ତା' ଛଅଛଅଟା କମ୍ପାନୀର ଅଫିସର-କିରାଣି-ମଜ୍‌ଦୁରଙ୍କ କଥା କହୁନାହିଁ ଯେଉଁମାନେ ତାଙ୍କୁ ଡରିବେ ହୁଏତ, କିନ୍ତୁ ବିଭିନ୍ନ ବାହାର ଲୋକ, ଶିଳ୍ପପତି, ଆଇନଜୀବୀ, ଶିକ୍ଷକ, ତଥା ରାଜନୀତିବାଲା ଯେଉଁମାନେ ନିଜ ଗୋଡ଼ରେ ଠିଆହୋଇଛନ୍ତି. ସେମାନେ ବି କାହିଁକି ତାକୁ ଫୁଲମାଳ ଦିଅନ୍ତି ? ସେ କଅଣ ଏମିତି କରିଛି ଦେଶ ପାଇଁ ଯେ—?

ବେଳେ ବେଳେ ମନେହୁଏ ଯେ ଆମ ଦେଶରେ ଯେତେକ ଲୋକ ଦମତ୍ତ୍ର ମାଇଚିଆ ! ମାଇଚିଆ ଆଉ ମାଉଁଆ ! 'ନେତା' 'ନେତା' ବୋଲି ଠେଲାପେଲା ହୁଅନ୍ତି ତାର ପାଦ ଚାଟିବା ପାଇଁ, ଯୋ ତାଙ୍କୁ ଗୃବୁକ ମାରେ ।

କିନ୍ତୁ ମୁଁ ତା' ଠାରୁ ଦୂରେଇ ରହିଛି ସେହି ପ୍ରଥମ ଦିନଠାରୁ । ଭୁଲରେ ହେଲେ ତା'ର କୌଣସି କମ୍ପାନୀର ପାଖ ମାଡ଼ି ନାହିଁ । କର୍ମଚାରୀ, ସେୟାର୍ ହୋଲ୍‌ଡ଼ର ବା ଅନ୍ୟ କୌଣସି ହିସାବରେ । ଏବଂ ତା'ଠୁଁ ଆଡ଼େଇ ହୋଇଯାଇଛି ଯେତେବେଳେ ସେ ଅକାଳେ ସକାଳେ ଆସି ପହଞ୍ଚିଯାଏ ଆମ ବିରାଦରିର କେଉଁ ଦାହା ନିମିତ୍ତରେ, ଏବଂ ତାକୁ ବେଢ଼ିଯାଆନ୍ତି ଆମ ଲୋକମାନେ । କାଳେ ମୁଁ ତା'ର ମୁହାଁମୁହିଁ ହେବି, ଆଉ ସେ ମୋତେ କ'ଣ କହିଦେବ ପଛେ, ଯାହାକୁ ମୁଁ ବରଦାସ୍ତ କରିପାରିବି ନାହିଁ । ଫଳରେ ଗୋଟାଏ କାଣ୍ଡ ଘଟିବ, ଅଯଥାରେ । ତେବେ ଥରୁଟିଏ ମୋତେ ଗୋଟାଏ ସୁଯୋଗ ମିଳିଥିଲା, ତା'ର ପ୍ରତାପରୁଦ୍ର ପେପର ମିଲ୍‌ସ୍‌ର ହିସାବ ପତ୍ର ଯାଞ୍ଚ କରିବା ପାଇଁ । କିନ୍ତୁ ମୁଁ ମୋର ପ୍ରଲୋଭନକୁ ଦବେଇ ଦେଲି । ସରକାରୀ ଅଡ଼ିଟ୍ ପାର୍ଟିରୁ ଓହରି ଆସିଲି । ମିଛ ସତ କହି ଛୁଟି ନେଲି, ସେମିତି ମୋ ବଦଳରେ ଆଉ କାହାକୁ ପଠାଇବ ସେଠିକି । କାଳେ ମୋର ଇଚ୍ଛା ହେବ ମୋର 'ପ୍ରିୟ' ଦେବ୍‌ଭାଇଙ୍କୁ ନାକରେ କନ୍ଦାଇବା ପାଇଁ ।

କାହିଁକନା ମୁଁ ସେମିତକା ଲୋକ ନୁହେଁ । ପ୍ରତିଶୋଧ ନେବା ମୋ ଜାତକରେ ନାହିଁ ।

ମୁଁ କାହାର ମନରେ କଷ୍ଟ ଦେବାକୁ ଚାହେଁନାହିଁ, ଯେ ମିତ୍ର ହେଉ କ ଶତ୍ରୁ ହେଉ, କୁକୁର କ ମଣିଷ । ସେଥିପାଇଁ ଟିକେ ମିଛ କହିଲେ ବ ଯାଏଆସେ ନାହିଁ ।

ଅଥଚ ଆମ ଦେବଗ୍ରଇ ଓ ନେତାଙ୍କ ନେତା ଦେବୁ ନାଏକର ସ୍ୱଧର୍ମ ହେଲ ଆଉ ଜଣକ ମନରେ କଷ୍ଟ ଦେବା । ସେଇଥିରେ ତା'ର ସୁଖ । ଅନ୍ୟ ସକଳ ସୁଖର ଉତ୍ସ ।

ଦେଖନା, ସେ ମୋତେ ଯାହା ଯେମିତ କହିଲ ସେଦନ ସେଇ ବର୍ଷାଭିକା ପ୍ରଥମ ସାକ୍ଷାତରେ, ତା'ର କ'ଣ ଆଉ କଛି ଅର୍ଥ ଥାଇପାରେ ?

କନ୍ତୁ ସେ କଅଣ ଭାବ ପାରଲ ନାହିଁ ଯେ ମୁଁ ବ ତାକୁ ପଦେଅଧେ କହ ପାରଥାନ୍ତ, ଯେଉଁଥିରେ ତାର ବଙ୍କା ହସ ଅଟକ ଯାଇଥାନ୍ତା ? ବଭିନ୍ନ ଠିକଣା ଜବାବ୍ ଦେଇ ପାରଥାନ୍ତ, ଯାହା ଜୁଟିଥିଲ ମୋ ମନକୁ କେତେ ସମୟ ପରେ । ଯଥା :

—ହୁଁ । କ'ଣ ହେଲ ସେଇଠୁଁ ? ଆଉ କ'ଣ ଭାବଥିଲ ଯେ ମୁଁ ଘରେ ବସି ଫୁଟ୍‌ବଲ ଖେଳୁଥାଆନ୍ତ ?

—ତମର କ କ'ଣ ଇଚ୍ଛା ହେଉଛ ଚଟା ଖେଳବାକୁ ? ଆପୁନା ଶିଖେଇ ଦେବ ତୁମକୁ ? କନ୍ତୁ ତମେ ଯୋଉ ପାହୁଣ୍ଡ ପାଇଛ ନା, ହାତୀ ଭଳିଆ ! (ହିଃ ହିଃ)

ଅଥବା ସିଧାସଳଖ କହିପାର ଥାଆନ୍ତ, ତମେ କଏ କହିବାକୁ ମୁଁ କ'ଣ ଖେଳଲ ନ ଖେଳଲ ? ତମେ ମୋର କ'ଣ କ ?

ଦୁଃଖର ବଷୟ, ମୁଁ କଛି ବୋଲି କଛି କହିପାରଲ ନାହିଁ ସେତେବେଳେ । ଏଭଳି ଏକ ଆକସ୍ମିକ ଓ ପ୍ରଚଣ୍ଡ ଆଘାତର ମୁକାବଲ କର ପାରଲନାହିଁ । ଚଟ୍‌କନ ଫେରଗଲ ଘର ଭିତରକୁ ଓ ରାଗରେ ସଅଁସଅଁ ହେଲ । ଠିକ୍ କଲ ବାପାଙ୍କୁ ହିଁ ପଦେ ଶୁଣେଇବ ଯେ ମୋତେ ଏଭଳି ଗୋଟାଏ ଅସଭ୍ୟ ଲୋକକୁ ନମସ୍କାର କରବା ପାଇଁ କହିଲେ । ଶୁଣେଇଥିଲ ମଧ୍ୟ, ସେଦନ ରାତିରେ । କନ୍ତୁ ମୁଁ ଯିନା କୋମଳମତ, ଟାଣକଥା ଖରାପକଥା ସହଜେ ମୋ ପାଟିରୁ ବାହାରେ ନାହିଁ, ସେ କେମିତ ଭାବିଲ ନାହିଁ ମୁଁ ବ ତାକୁ ଓଲଟି ଦୁଇପୁଡ଼ାଏ ମାରପାରେ ? ସେ କେମିତ ଧର ନେଲ ଯେ ମୁଁ ଉତ୍ତର ନ ଦେଇ ଫେରଯିବ, ରାଗରେ ତମତମ ହୋଇ ?

ତା' ମାନେ ସେ କେବଳ ସ୍ୟାଡିଷ୍ଟ୍ ନୁହେଁ, ବେଖାତିରିଆ ନୁହେଁ, ମଧ୍ୟ ଦୁଃସାହସୀ । କିନ୍ତୁ ତମେ କ'ଣ କହିବାକୁ ଚାହଁ ଯେ ସେ ହେଉଛି ତା' ସଫଳତାର ମନ୍ତ୍ର ?

ସଫଳତା, ସଫଳତା ! ସଫଳତାର ରଙ୍ଗ କ'ଣ ଖାଲି ନାଲି ହେବା ଦରକାର ? ରକ୍ତର ନାଲି, କ୍ରୋଧର ନାଲି, ସେକ୍ସର ନାଲି, ତାତିଲା ନାଲିର ହୁଙ୍କାର, ଦମ୍ଭା ମାଙ୍କଡଙ୍କ ପରି ? ହେଲା ଏବେ ସେ ଯେତିକି ପଢ଼ୁଛି, ହାତଗୋଡ଼ ଘାଣ୍ଟିଛି, ତା'ଠୁଁ ବେଶି ଉପରକୁ ଉଠିଛି, କିନ୍ତୁ ତା'ର ଓଲଟା ବି ତ ହୋଇପାରିଥାଆନ୍ତା ? ତା'ହେଲେ ଦେଖିଥାଆନ୍ତ ସେ କେମିତି କାନ୍ଦୁଥାଆନ୍ତା ବସି ତା'ର ସେଇ କୁକୁର ପରି ? ଆପଣା ତାତିରେ ଚଡ଼ଚଡ଼ ହେଉଥାଆନ୍ତା, ଉଷ୍ଣ ଲୁହରେ ଦାନ୍ତ ନିକୁଟି ପଡ଼ିଥାଆନ୍ତା (କ୍ୟାଉଁ କ୍ୟାଉଁ ନହେଲେ ନାହିଁ), ଆଉ ତାକୁ କେହି ପଚାରୁ ନଥାଆନ୍ତେ । କହୁଥାଆନ୍ତେ ଆରେ ବସିଥା ସେଠି, ବସିଥା, ସନ୍ଧ୍ୟା ଯାଏଁ । ତୋ ମାଲିକ ଆସିବା ଯାଏଁ ।

ସଫଳତା ! ବାହାଘର ଆଗରୁ ହଜାରେ ଆଫେୟାର କରିଛୁ । ଦି' ଦି' ଥର ବାହା ହୋଇଛୁ, ଡାଇଭର୍ସ କରିଛୁ, ଏଇକ୍ଷଣି ବି ତୋ ବୁଢ଼ୀ ମେମ୍‌ସାହେବ ଅଏମ୍ କରୁଛି ବିଲାତରେ କି ଆଉ କେଉଁଠି, ଏଣେ ତୁ ରହିଛୁ ଦିଲ୍ଲୀରେ, ତୋର ତିନିତାଲା ପ୍ରାସାଦରେ କୁକୁର-ଶୂକରଙ୍କୁ ନେଇ···ହଁ ହଁ, କିଏ କହୁଥିଲା ତୋର ଗୋଟିଏ ନାତୁଣୀ ରହିଛି ତୋ ପାଖରେ, ଦିଲ୍ଲୀରେ ପାଠ ପଢ଼ୁଛି···ସେ ଯାହା-ହେଉ, ଇଏ ବି କୋଉ ସଫଳତାର ସୁଖ ? ପ୍ରେମରେ କି ଘରକରଣାରେ ?

(ତୋ ଟୋକାବେଳେ ତୁ ମୋର ସମ୍ପର୍କୀୟା ଅନିମାର ହାତକୁ ବି ଥରେ ଚିପିଥିଲୁ, ଗୋଟାଏ ପର୍ବର ମେଳରେ । ତୋ ବେପରୁଆପଣର ଅନ୍ୟତମ ନମୁନା । ଅନୁ ମୋତେ କହୁଥିଲା ସେକଥା । ଅନେକ ଲୋକ ଅନେକ ଗୋପନ କଥାର ଭେଟି ଦିଅନ୍ତି ମୋତେ, କାହିଁକନା ମୁଁ ତାକୁ ମନ ଦେଇ ଶୁଣେ ସହାନୁଭୂତି ସହ । କିନ୍ତୁ ଅନୁ ତା' ହାତକୁ ଛୁଆଡ଼ି ଦେଇଥିଲା ସିନା, ସେ ଏମିତି ଉତ୍‌ଫୁଲ୍ଲ ଦିଶୁଥିଲା କାହିଁକି, ଲୋକଟାର ବଜାଟେଗିରିକୁ ବଖାଣିଲା ବେଳେ ? ସତେକି···ଡ୍ୟାମ୍ ଇଟ୍ ! ଆମ ଅନୁଟା ବି ଟିକିଏ ଫୁଲେଇ ନୁହେଁ କି ?)

ବାକି ରହିଲା ଧନ ଓ ମାନ । ଧନକୁ ମାର ଗୋଲି । ମାନ ହିଁ ବଡ଼ କଥା । ମାନୁଛି ତୁ ଗୋଟାଏ ନାମଜାଦା ଖେଳୁଆଡ଼ ହୋଇଥିଲୁ । ପର୍ଦ୍ଧିରାଜ ହୋଇଥିଲୁ । ଦେଶ ବିଦେଶରେ କେତେ ହୁନ୍ନର ଦେଖାଇଥିଲୁ । ଆଡ଼୍‌ଭେଞ୍ଚର ସାଙ୍ଗକୁ ବୀରଚକ୍ର ବାହାଦୁର । ସେଇଠୁଁ ବିଜନେସ୍ କଲୁ । କାଗଜ, ଚମଡ଼ା, ମଦ, ଖଣି, କେଉଁଥିରେ ହାତ ନ ଦେଇଛୁ ନୁହେଁ । ଲ୍‌ଫେ ମାରିଛୁ,

ହେଲେ ଏମିତ ଉଡ଼ି ବୁଲୁଛି ପୃଥିବୀସାକ, ଏବଂ ଏଭଳି ଆଡ଼ା ଦେଖେଇଛି ଦେଶବାସୀଙ୍କୁ ଯେ ମନେ ହୋଇଛି ଇଏ ଗୋଟାଏ ସାମାନ୍ୟ ପତନ ଏବଂ ଏହାପରେ ଆସିବ ଅସାମାନ୍ୟ ଉତ୍ଥାନ । ସେଇଆ ବି ହେଲା ! ଚମଡ଼ା ଛଡ଼ା ବାକି ସବୁ ବ୍ୟବସାୟ ଚେଇଁଉଠିଲା ଏବଂ ଗୃହୁଁ ଗୃହୁଁ ଆକାଶକୁ ଛୁଇଁଲା । ସେଇଠୁଁ ତୁ ସାହିତ୍ୟକୁ ପୋଷିଲୁ, ରାଜନୀତିକୁ ପୋଷିଲୁ, ଧନକୁ ଖଟେଇଲୁ ପ୍ରତିଷ୍ଠା ଓ କ୍ଷମତା ହାସଲ କରିବା ପାଇଁ ଏବଂ ପରମ ଦେଶଭକ୍ତ ବୋଲାଇଲୁ । କିନ୍ତୁ ପ୍ରକୃତରେ ତୋର ପ୍ରାଣ କ'ଣ କେବେହେଲେ କାନ୍ଦିଛି ନା କାନ୍ଦିପାରେ ଦେଶ ପାଇଁ, ଅର୍ଥାତ୍ ତା'ର ସର୍ବସାଧାରଣ ମଣିଷଙ୍କ ପାଇଁ ? ନା କୁକୁର ବିଲେଇଙ୍କ ପାଇଁ ? ଅସମ୍ଭବ । କାହିଁକିନା ତୁ ଅନ୍ୟକୁ କଷ୍ଟ ଦେବାକୁ ଭଲ ପାଉ ।

କହିଲି ପରା ଆମ ଦେଶଟା ହେଉଛି ମାଇଚିଆ । ଯାହାଙ୍କଠାରୁ ଗୋଇଠା ଖାଇବେ, ତାଙ୍କର ପଦଲେହନ ହିଁ କାମ୍ୟ ସେମାନଙ୍କର ।

କିନ୍ତୁ ତୋତେ କ'ଣ କେହି ହେଲେ ଭଲ ପାଉଥିବେ ? ଆଉ ସେତିକି ଯଦି ପାଇଲୁ ନାହିଁ, ତା'ହେଲେ କ'ଣ କରିବୁ ଏଇ ଫମ୍ପା ଫାପୁଲା ସଫଳତାକୁ ନେଇ ? ସତରେ ଦୁଃଖ ଲାଗୁଛି ତୋପାଇଁ, ମୋତେ ବିଶ୍ୱାସ କର !

ସମୟ ପାଇଲେ ଦେଖେ ଏଇ ସାନ ବସିନମାନଙ୍କୁ । ଯେଉଁମାନେ ଭୂଇଁରେ ବାଟ ଚାଲୁଛନ୍ତି, ଆକାଶରେ ଉଡ଼ୁନାହାନ୍ତି । ଏବଂ ତଣ୍ଟି ଶୁଖିଗଲେ ବି ଜଳକୁ ଓହ୍ଲେଇ ଆସି ପାଣିମଧ୍ୟ ପିଇ ନ ପାରିବାର ଯନ୍ତ୍ରଣା ଭୋଗୁନାହାନ୍ତି । ସେଇମାନେ ହିଁ ପ୍ରକୃତରେ ସୁଖୀ, ବୁଝିଲୁ ?

କହିବାକୁ ଗଲେ ଏଇ ରାଜଧାନୀର ରାଜପଥ ସୁହାଉନାହିଁ ମୋତେ । ମୋ ବାଟଚାଲିର ଆନନ୍ଦ ଆଉ କେଉଁଠି । ମୋ ଘର ସହରର ଧୂଳିଆ ରାସ୍ତାରେ, ଯେଉଁଠି ବୁଢ଼ା ଷଣ୍ଢମାନେ ହଡ଼ାଗାଈଙ୍କ ଦେହକୁ ଗୁଣ୍ଟୁଥାଆନ୍ତି ବସି, ଗାଡ଼ିଘୋଡ଼ା, ରିକ୍ସା ସାଇକଲ୍ ଆଦିର ଛୁଟଣିକୁ ପରୁଆ ନକରି । ସତେକି ସେମାନେ ଜଣେଇବାକୁ ଚାହାଁନ୍ତି, ଯେ ଏଇ ହେଉଛି ଜୀବଦଶାର ଶେଷ ଓ ସକରୁଣ ଦୃଶ୍ୟ, ପ୍ରେମକୁ ଅକ୍ଷୟ ବୋଲି ମଣିବାର ପଣ । ଯାହାକି ଅନେକ ଅନେକ ସୁନ୍ଦର ତୁମର ଖାମ ରଭଠାରୁ ।

ମୁଁ ଚାଲୁଛି । ଭୂଇଁରେ ପାଦ ଲଗେଇ ଅଳ୍ପବହୁତ ରୋଜଗାର କରୁଛି । ବଡ଼ ହାକିମ ନହେଲେ ନାହିଁ, ଅଡିଟ୍ ଅଫିସ୍‌ର ବଡ଼ବାବୁ ହୋଇ ଯଥେଷ୍ଟ ସମ୍ମାନ ପାଇଛି । ଏବଂ ସେଇ ଟଙ୍କାରେ ମୋ ପୁଅଝିଅଙ୍କୁ ମଣିଷ କରୁଛି । ସମସ୍ତେ ପାଠୁଆ, ସମସ୍ତେ ରୋଜଗାରିଆ । ଆଉ ମୁଁ ମୋ ବୁଢ଼ୀର ଝାଲୁଆ ଥଳଥଳିଆ ଦେହରେ ଉତ୍ତାପ ମୁଣ୍ଡ ଗୁଞ୍ଜିଦିଏ ବେଳେବେଳେ । ଅତୀତ ଓ ଭବିଷ୍ୟତ, ପ୍ରହାଦ ଓ

ଅବଦାଦକୁ ଏକାଧାରରେ ଗ୍ରହଣ କଲା ପରେ, ଅନ୍ଧାର ଆସିବା ଆଗରୁ । ତମେ ତା'ର ମୂଲ୍ୟ କୋଉଠୁ ବୁଝିବ ହେ, ଦୁରନ୍ତ ଦୁର୍ବିନୀତ ଆକାଶଗୃହୀ ? ଖାଲି ଜଳାବ ଓ ଜଳେଇବ, ତମେ କୋଉଠୁ ପାଇବ ସେଇ ଗୁଣ୍ଡି ହେବାର ସୁଖ ?

ଖାଲି ମୋ ବ୍ରିଲିଆଣ୍ଟ ବଡ଼ନାତି ପାଇଁ ଭୟ ହୁଏ ବେଳେ ବେଳେ । ଗର୍ବ ହୁଏ ସତ, କିନ୍ତୁ ଭୟ ବି ହୁଏ ସେ ଯେତେବେଳେ ତା' ବାପାମାଆଙ୍କୁ ଜଣେଇଦେଲା ଯେ ସେ ଇଣ୍ଡିଆର କୌଣସି ଟପ୍ କମ୍ପାନୀରେ କାମ କରିବାକୁ ଚାହେଁ, ଯଥା— ଦେବୁ ନାଏକଙ୍କର ପ୍ରିୟଦର୍ଶୀ ପ୍ଲାଷ୍ଟିକ୍ସ, ନହେଲେ ସେ ଯେଉଁ ଡକ୍ଟରେଟ୍ ହାସଲ କରିଛି ପଲମର୍ ସାଇନ୍ସରେ, ଆମେରିକାର ଅନ୍ୟତମ ଟପ୍ ୟୁନିଭର୍ସିଟିରୁ, ତା'ର ମୂଲ୍ୟ ରହିବ ନାହିଁ ଏବଂ ସେଇଠୁଁ ମୋ ଝିଅ, ଓ ଝିଅ ପଛକୁ ଜ୍ୱାଇଁ ଶରତ ମହାପାତ୍ର ଅଙ୍ଗେଇ ଅଙ୍ଗେଇ ପ୍ରସ୍ତାବ କଲେ ଯେ ଯେତେହେଲେ ଦେବୁ ନାଏକ ହେଉଛନ୍ତି ମୋ ପିଲାଦିନର ଦେବ୍‌ଭାଇ, ମୋଠୁଁ ସେକଥା ଶୁଣିଛନ୍ତି କେବେ, ତେଣୁ···ମୋ ହାଲକ ଶୁଖିଗଲା ।

ଭାବିଲି ଏଇଆକୁ କହନ୍ତି ଭାଗ୍ୟର ବିଡ଼ମ୍ବନା । ଯେ ମୁଁ ପୁଣି ଯିବି ତା' ପାଖକୁ । ଯେ ମୋତେ ଅପମାନ ଦେଇଥିଲା ଆଜକୁ ପ୍ରାୟ ପଚିଶ ବର୍ଷ ତଳେ । ଯିବାକୁ ପଡ଼ିବ, କାହିଁକିନା ମୁଁ ମୋ ନାତିକୁ ଭଲ ପାଏ । କାହିଁକିନା ମୁଁ ମୋ ଝିଅଜ୍ୱାଇଁଙ୍କ ମନରେ କଷ୍ଟ ଦେବାକୁ ଚାହେଁ ନାହିଁ । କିନ୍ତୁ ଏଇ ଦୁଃଖରେ ମିଶି ଯାଇଥିଲା ଆଉ ଗୋଟାଏ ଭୟ । ମୋ ବ୍ରିଲିଆଣ୍ଟ ନାତିଟା, କିଭଳି ସଫଳତା ଖୋଜୁଛି ? କ'ଣ ହେବାକୁ ବସିଛି···ଅନ୍ୟତମ ଦେବୁ ନାଏକ ?

ଯାହାହେଉ କୁକୁରଟା ମୋତେ ବଞ୍ଚେଇ ଦେଲା । ମୋତେ କେହି ଦୋଷ ଦେଇ ପାରିବେ ନାହିଁ (ଅବଶ୍ୟ ମୁଁ କାହାକୁ କହିବି ନାହିଁ କୁକୁର କଥା) ଯେ ମୁଁ ମୋ ନାତି ପ୍ରତି ଅନ୍ୟାୟ କଲି । କିଓ, ମୋର ବି ତ ଗୋଟାଏ ବ୍ୟକ୍ତିତ୍ୱ ଅଛି, ସେଥିର କାନ୍ତି କୋମଳତା, ସମ୍ବେଦନାବୋଧ, ଜବେଦସ୍ଥା···ତା'ଛଡ଼ା ଅମୁକୁ କ'ଣ ଆଉ ଗୋଟାଏ ଭଲ ଚାକିରି ମିଳିଯିବ ନାହିଁ ? ପ୍ରିୟଦର୍ଶୀ ପ୍ଲାଷ୍ଟିକ୍ସ ଛଡ଼ା କ'ଣ ଆଉ କୋଉ ଭଲ କମ୍ପାନୀ ବଡ଼ କମ୍ପାନୀ ନାହିଁ ଯେ ସେ ବାଧ୍ୟ ହୋଇ ଫେରିଯିବ ଆମେରିକାକୁ ? ନନ୍‌ସେନସ୍ !

କିନ୍ତୁ ଦେବୁ ନାଏକ କ'ଣ ବୁଝିବ ଯେ ମୁଁ ତା' ବଡ଼ପଣକୁ ଛିଃ କରି ଚାଲି ଆସିଲି ସେଠୁଁ, ତା' ପାଇଁ ଆଉ ମୁହୂର୍ତ୍ତେ ଅପେକ୍ଷା କଲି ନାହିଁ ? ସେ ଯେଉଁ ପରାଭବ ପାଇଲା ମୋଠୁଁ, ଯେ ମୁଁ ମୋ ସ୍ୱାର୍ଥ, ମାନେ ମୋ ନାତିର ସ୍ୱାର୍ଥକୁ ଜଳାଞ୍ଜଳି ଦେଲି, ତା' ଆଖିରେ ଆଙ୍ଗୁଳି ଗେଞ୍ଜି ଜଣାଇ ଦେବା ପାଇଁ ଯେ ମୁଁ ଘୃଣା କରେ ତା'ର ଅଶ୍ଳୀଳ ଅଭ୍ୟାଗତ ମୂଳ ପ୍ରାଣୀଟା ଉପରେ, ଏଇ ଆପାତକୁ କ'ଣ ସେ

ସତେ ଅନୁଭବ କରି ପାରିବ ? ଆଉ କଷ୍ଟ ପାଇବ ? ପାଇବା ଉଚିତ, ମୁଁ ଯାହା ସବୁ କହୁଛି ତା' ଲୋକମାନଙ୍କୁ ଆଉ ଯେମିତି ଭୂସ୍ଖଳନ ପଳେଇ ଆସିଲି ସେଠୁଁ…

ନା ନା, ଭାବ ନାହିଁ ଯେ ମୁଁ ତାକୁ କଷ୍ଟ ଦେବାକୁ ଚାହେଁ । ମୁଁ ସେମିତିକା ଲୋକ ନୁହେଁ । ତା' ହୋଇଥିଲେ ମୁଁ କେବେଠୁଁ…ନା, ସେକଥା ନୁହେଁ । ସେଇ ପହିଲି ସାକ୍ଷାତ୍ ପରେ ପରେ ଅବଶ୍ୟ ଗୋଟାଏ ପିଲାଳିଆ କାମନା ଆସିଥିଲା ମୋ ମନକୁ । ଭାବିଲି—ଟୋକା କଟଡ଼ାଏ ଖାଆନ୍ତା କି ମୋ ଆଖି ସାମ୍ନାରେ, ଆମ ଘର ଛାଡ଼ିବା ପୂର୍ବରୁ ! କିନ୍ତୁ ସେ ଥିଲା କୋଉ ପଚିଶ ବର୍ଷ ତଳର ବିପିନ, ପିଲାଟାଏ, ତାକୁ ନେଇ ମୋତେ ଦୋଷ ଦେବା ହାସ୍ୟାସ୍ପଦ ।

ଭୁବନେଶ୍ୱରରେ ବେଶି ସମୟ ରହିଲି ହେଲି ନାହିଁ । ଦୂରତ୍ୱ ଛଡ଼ା ସୂର୍ଯ୍ୟତାପ ମଧ୍ୟ କିଛି କମ୍ ନୁହେଁ ! ତେଣୁ ବିପିନବାବୁଙ୍କୁ ବସ୍‌ରେ ହିଁ ଆସିବାକୁ ପଡ଼ିଲା ଗନ୍ତବ୍ୟ ସ୍ଥଳକୁ । ସାକେତରେ ତାଙ୍କ ଶ୍ୟାଳକ ଶ୍ରୀକାନ୍ତ ସାମନ୍ତଙ୍କ ଡି.ଡି.ଏ. ଫ୍ଲାଟ୍ । ତଳ ମହଲା ।

…ଆରେ, ଏମାନେ ଏତେ ହସହସ ଦିଶୁଛନ୍ତି କାହିଁକି ? ଓଃ ! ମୁଁ ଚାହେଁ ନାହିଁ ହସ ଲିଭିଯିବ ସେମାନଙ୍କ ମୁହଁରୁ । ହେଲେ ଉପାୟ ନାହିଁ । କିନ୍ତୁ ମୁଁ କହିବ ନାହିଁ କୁକୁର କଥା, କହିବ ଯେ ମୁଁ ଆଉ ଅପେକ୍ଷା କରି ପାରିଲି ନାହିଁ, ମୋତେ ଖରା ବାଧିଲା, ମୋ ମୁଣ୍ଡ ବୁଲେଇଲା, ଇତ୍ୟାଦି । ଯାହା ମନକୁ ଆସିବ…

"ବାପା, ଥ୍ୟାଙ୍କ୍ ୟୁ, ଥ୍ୟାଙ୍କ୍ ୟୁ ! ଖରାରେ କଳା ପଡ଼ିଯାଇଛି ତମ ମୁହଁ । ବସ, ସରବତ୍ ଆଣି ଦେଉଛି । ସୁଜନ୍ ସିଂ ! …କିନ୍ତୁ ଆଗେ ସୁଖବରଟା ଦେଇ ଦିଏ ତମକୁ । ଫୋନ୍ ଆସିଥିଲା ଏଇ କେଇ ମିନିଟ୍ ହେବ, ଦେବୁ ବଡ଼-ବାପାଙ୍କ ପାଖରୁ…"

"ବଡ଼ବାପା ?"

"ମଲା, ତମ ଦେବ୍‌ଭାଇ ହେଲେ ମୋ ବଡ଼ବାପା ହେବେ ନାହିଁ ? ଦୁନିଆଁ ଯାକର ଦେବୁ ନାଏକ ବୋଲି କ'ଣ ମୋର ବଡ଼ବାପା ନୁହଁନ୍ତି ସେ ? ଫୋନ୍‌ରେ କହିଲେ ଯେ ଶୀଘ୍ର ପଠେଇ ଦିଅ ଅମରେଶଙ୍କୁ ଏଇ ସନ୍ଧ୍ୟା ଭିତରେ । ସେ ଯାହା କରିବାର କରିବେ ତା' ପାଇଁ—"

"କିଛି କହୁଥିଲେ କି ମୋ ବିଷୟରେ ?"

"ନା । ଖାଲି କହିଲେ ଯେ ତମର ଆସିବା ଦରକାର ନାହିଁ ।"

"କିନ୍ତୁ…କିନ୍ତୁ…ମୋ ସାଙ୍ଗରେ ତ ଦେଖା ହୋଇନାହିଁ ତାଙ୍କର—"

"ନ ହେଲ ନାହିଁ । ତମେ ଯୋଉ ଚିଠି ଗୁଡ଼ା ଦେଇ ଆସିଥିଲ ତାଙ୍କ ପାଇଁ, ଯେଉଁଥିରେ ମାମୁଙ୍କ ଫୋନ୍ ନମ୍ବର ଥିଲ..."

ଚିଠି ନୁହେଁ । ବକଟେନାକୁ କାଗଜରେ ଲେଖିଦେଇ ଆସିଥିଲି ମୋ ନାଆଁ । ବିପିନ ରାଉତ, କ୍ୟାରଫ୍ ଶ୍ରୀକାନ୍ତ ସାମନ୍ତ, ଫୋନ୍ ନମ୍ବର ୭୫–୫୦୦୧ । ବକ୍ତବ୍ୟବସ୍ତୁ—ଡଃ ଅମରେଶ ମହାପାତ୍ରଙ୍କର ଦରଖାସ୍ତ, ଚାକିରି ପାଇଁ । କିଏ ଜାଣିଥିଲା ସେ ତାକୁ ପାସଙ୍ଗରେ ପକେଇବ, ପୁଣି କାଲି ସକାଳେ ଦିଲ୍ଲୀ ରାସ୍ତା ଜର୍ମାନୀକୁ ଯିବା ପୂର୍ବରୁ ?

କିନ୍ତୁ କହୁଛୁ ଯେ ମୋର ଆସିବା ଦରକାର ନାହିଁ । ତା'ର ଅର୍ଥ କଅଣ ?

ମଲା, ଏତକ ବୁଝିପାରୁ ନାହଁ ବିପିନବାବୁ ? ବୁଝୁନାହଁ ଯେ ତମେ ହେଉଛ ଘର କୋଣରେ ଚଟା ଖେଳିବା ଲୋକ, ତମକୁ ସେ ଆଣିବାକୁ ଚାହେଁ ନାହିଁ ସଫଳତାର କେୟାରି ଆଉ ତାରି ଭିତରକୁ ? ଇଏ ସେଇ ପାହାଲ ତାଛୁଲ୍ୟର କ୍ରମଶଃ, ଏତକ ପଶୁନାହିଁ ତମ ମୁଣ୍ଡରେ ? ହେଲେ ସେ ତମ ନାତି ପରି ! ଦେଖ କେମିତି ତା' ଭାଗ୍ୟ ଫିଟି ଯାଉଛି, ଖୋଦ୍ ଦେବୁ ନାଏକ ପ୍ରସନ୍ନ ତା'ଉପରେ...ଏଥର ହସି ଦିଅ ଟିକିଏ । ହସ । ନ ହସିଲେ କଷ୍ଟ ହେବ ନାହିଁ ତମ ଗେହ୍ଲା ଝିଅର ମନରେ ?

## ( ୨ )

(ଅପରାହ୍ନ : ଦେବୁ ନାଏକ)

ଅପରାହ୍ନ ୩ଟା । ଦେବୁ ନାଏକ ହଦ୍ୟ ଘରକୁ ଫେରିଛନ୍ତି । ସେହେତୁ କୁକୁରର କ୍ୟାଉଁ କ୍ୟାଉଁ ବେଶ୍ ବଢ଼ିଯାଇଛି । କିନ୍ତୁ ମାଲିକ କେବଳ ତା' ଆଡ଼କୁ ଅନେଇ ରହିଛନ୍ତି । ଅଧିକରୁ ଅଧିକ ନୀରବତା ଛଡ଼ା ଆଉ କିଛି ଦେବାପାଇଁ ନାରାଜ ବୋଲି ମନେ ହେଉଛି । ଯେତେକ ସେ ତାକୁ ଗ୍ରହଣ କରିବାକୁ ଚାହାଁନ୍ତି କେବଳ ଗୋଟିଏ ଆଧାରବସ୍ତୁ ହିସାବରେ । ତାଙ୍କ ଭାବନାକୁ ଗୁଡ଼େଇ ନେବା ପାଇଁ ତା' ଚାରିପାଖରେ ।

...ଶଳା, ଟିକିଏ ହେଲେ ଥକି ଯାଉନାହୁଁ ? ଚଳେଇଛୁ ଗୋଟାଏ କ୍ୟାଉଁ କ୍ୟାଉଁ ସକାଳୁ ସନ୍ଧ୍ୟାଏ ? ଦେଖୁନୁ ତୋ ମାଲିକକୁ, ସେ ତଥାପି କେମିତି ଟାଣ ହୋଇ ରହିଛି ? କାହିଁକିନା ସେ କାଉଁରିଆ କାଠି, ଭାଙ୍ଗିବ ପଛେ ନଇଁବ ନାହିଁ । କାନ୍ଦିବାର ପ୍ରଶ୍ନ ଉଠୁନାହିଁ । ଯୋଉ ମାଇଚିଆମି ଯୋଗୁଁ ଦେଶର ଆଜି ଏଇ ଅବସ୍ଥା । ଏବଂ ଯାହାକୁ ମୁଁ ଘୃଣା କରେ, ଘୃଣା କରି ଆସିଛୁ ପିଲାଟି ଦିନୁ ।

ବରଂ ମୋର ଦସ୍ୟା ଦେଖାଇବା କଥା ସେଇ ନେଉଳମୁହାଁ ଲୋକଟା ଉପରେ । ହ୍ୟାପ୍ ସତସଠକା ବାମନଟାଏ ! ଚନ୍ଦ୍ର ଉପରକୁ ହାତ ଉଠେଇଲା । ମାରିଲା ବି ଚୁପଡ଼ାଏ, ଗୁଡ଼ିଲା ନାହିଁ । କିନ୍ତୁ ସେ ଯେମିତି କୁଦା ମାରିଲା ମୋ ଗାଲକୁ ଛୁଇଁବା ପାଇଁ, ଆଉ ତା' ଗ୍ରଗତକ ଜମିଗଲା ତା' ମୁହଁରେ, ଯେମିତିକି ସେ ତା' ସମଗ୍ର ଓ ସଞ୍ଚିତ ଶକ୍ତିକୁ ଓଟାରି ଆଣୁଛି, ଏଇ ଗୋଟାଏ ଚମତ୍କାର କାମ କରିବ ବୋଲି, ଯାହା କେହି କେବେ କରିପାରି ନାହାନ୍ତି ଆଜିଯାଏ···ତାକୁ ଦେଖି କିଏ ଭଲା ନ ହସିବ କହିଲ ?

ଅବଶ୍ୟ ଦୃଶ୍ୟଟିକୁ କେହି ଦେଖି ପାରିଲେ ନାହିଁ, କାରଣ ଦରଜା ବନ୍ଦ ଥିଲା । ସେଇଠୁଁ ୱାରବର ଦରଜା ଖୋଲି ବାହାରିଗଲା, କିନ୍ତୁ ମୋ ପ୍ଲମ୍ବ୍ ଜଗୁଆଳି-ମାନେ ତାକୁ ସାଙ୍ଗେ ସାଙ୍ଗେ ଧରି ପକାଇଲେ । ତା' ତମତମ ମୁହଁର ଚେହେରା ଦେଖି ଯେକୌଣସି ଲୋକ ଅନୁମାନ କରିଥିବ ଯେ ସେ ମୋତେ ଗାଳିଗୁଲଜ ଦେଇଛି । କିନ୍ତୁ ସେ କଣ ନିଜ ଆଡ଼ୁ କହିଥିବ ମୋତେ ଚୁପୁଡ଼ାଏ ମାରିଛି ବୋଲି ? ଯଦିବା କହିଥାଏ ବାହାଦୁର ଦେଖେଇବା ପାଇଁ, କେତେଜଣ ତାକୁ ବିଶ୍ୱାସ କରିଥିବେ ? ବିଚରା !

କିନ୍ତୁ, ୟୁ ମିଜରେବ୍‌ଲ୍ ରେଚ୍, ତୁଟା ଚଟ୍‌କିନା ପଳେଇଗଲୁ କାହିଁକି, ଗିଠି ବୁଲେଇ ? ଡର ଲାଗିଲା ମୋ ମୁହଁକୁ ଦେଖିବା ପାଇଁ ? ଡରପୋକ୍ କାହାଁକା, ଟିକିଏ ରହିଯାଇ ଥିଲେ ଦେଖିଥାନ୍ତୁ ଏଇ ବୁଢ଼ା ସିଂହର କରାମତି ।

ଯାହାହେଉ, ତୁ କ'ଣ ଭାବିଛୁ ମୁଁ ଘୋଡ଼େଇଦେବି କଥାଟାକୁ ମୋତେ ଲାଜ ଲାଗିବ ବୋଲି ? ଭୁଲ୍ ! ଦେବୁ ନାଏକ କେବେହେଲେ କୌଣସି କଥା ଲୁଚେଇ ନାହିଁ କାହାଠାରୁ । ତା'ର ଧନଧନଟା ମାଇପଙ୍କଠାରୁ, ଶେୟାର ହୋଲ୍‌ଡ଼ରଙ୍କ-ଠାରୁ, କି କୋଉ ନେତାମନ୍ତ୍ରୀଙ୍କଠାରୁ । ମିଛ କହିବା ତା' ଜାତକରେ ନାହିଁ । ପୁଣି ନିଜକୁ ବଞ୍ଚେଇବା ଲାଗି ମିଛ କହିବ ମଣିଷ ? ସିଟ୍ । କୁତ୍ତି ବି— !

ଦେବୁ ନାଏକଙ୍କ ମୁହଁ ଟିକିଏ ହସିଲା ପରି ଦିଶିଲା, କୁତ୍ତିର ସମ୍ଭାବ୍ୟ କାର୍ଯ୍ୟକଳାପର ଅନୁମାନ କରି । ତା' ଛଡ଼ା ସେ ଦେଖି ଖୁସି ହେଲେ ଯେ ସମ୍ମୁଖରେ ଥିବା କୁତ୍ତି ତା' କାନ୍ଦଣା ବନ୍ଦ କରି ଦେଇଛି ମୁହୂର୍ତ୍ତିକ ପାଇଁ, ଏବଂ ଅନେଇଛି ତାଙ୍କ ମୁହଁକୁ । ସତେକି ସେ ତାଙ୍କୁ ସମର୍ଥନ କରୁଛି । ତା'ର କୁତ୍ତିପଣର ମହତ୍ତ୍ୱକୁ ଜାହିର୍ କରୁଛି ।

···ଗୁଡ୍ ଗାର୍ଲ ! କିଛି ଲୁଚାଛପା ନାହିଁ ଆମ ଭିତରେ । ତୁ ଜାଣିଛୁ ମୁଁ କାହିଁକି ତୋତେ ବାନ୍ଧି ରଖିଛି ସେଠି । କାହିଁକିନା ଖୋଲିଦେଲେ ତୁ ଗେହ୍ଲାରେ

ବୋଢ଼ ପଡ଼ବୁ, ମାଡ଼ ଆସିବୁ ମୋ ଆଡ଼କୁ, ଆତୁରିଆ ହୋଇ ମୁତ ପକେଇବୁ, ଆଉ ମୋ କାର୍ପେଟ୍ ଖରାପ କରିଦେବୁ । ସେକଥା ହେବ ନାହିଁ । ଲିନା ଫେରିଆସୁ ସ୍କୁଲରୁ, ସେଇ ତୋ ଚେନ୍ ଫିଟାଇ ଦେବ, ଆଉ ନେଇଯିବ ବାହାରକୁ । ଏଡିକ ବେଶ୍ ଜଣା ଅଛି ତୋତେ । କାନ୍ଦଣାଟା ଖାଲି ଗୋଟାଏ ଉପଗ୍ରହ, ଶଚୁଆଲ୍, ଜୁଲୁସ୍-ବାଲଙ୍କ 'ଇନ୍‌କଲାବ୍ ଜିନ୍ଦାବାଦ୍' ପରି—ନା କଅଣ ?

ଖରାଟା ବହୁତ ବାଧୁଛି, ନୁହେଁ ? ଠିକ୍ ଅଛି କଷ୍ଟ ପାଇଲେ ଯିନା ଶକ୍ତ ହେବୁ, ଆଉ ଶତ୍ରୁକୁ ଇଚ୍ଛା କରି କଷ୍ଟ ଦେଇପାରିବୁ ? ସେଇ ହେଉଛି ମଣିଷପଣିଆ, ଆଇ ମିନ୍ କୁକୁରପଣିଆ, ବୁଝିଲୁ ?

ସାହେବଙ୍କ ମୁହଁର ଚେହେରା ଯଥେଷ୍ଟ ବଦଳି ଗଲାଣି ଦେଖି ଅନୁଚରବର୍ଗଙ୍କ ମୁଖିଆ ମସୁଦ୍ ସାହସ ପାଇଲା କିଛି କହିବାକୁ—

"ସାର୍ ଜଣେ ଭଦ୍ରଲୋକ ଆସିଥିଲେ ଆପଣଙ୍କ ସଙ୍ଗେ ଦେଖା କରିବା ପାଇଁ । ସକାଳ ସାଢ଼େ ଏଗାରଟା ବେଳେ । କହିଲେ ଆପଏଣ୍ଟମେଣ୍ଟ ଥିଲା ଆପଣଙ୍କ ସାଙ୍ଗରେ । କିନ୍ତୁ ମାତ୍ର ପନ୍ଦର ମିନିଟ୍ ଅପେକ୍ଷା କରି ଚାଲିଗଲେ ।"

"ଓ—ଲେଟ୍ ହିମ୍ ଗୋ ଟୁ ହେଲ୍ !"

"ଖଣ୍ଡେ ଚିଠା ଦେଇ ଯାଇଛନ୍ତି ମୋତେ—"

"ସ୍କଟ୍ ଇଟ୍ ।"

"ହଁ, ଗୋଟାଏ ଆପଏଣ୍ଟମେଣ୍ଟ ଥିଲା, ମୁଁ ଜାଣିଛି । ବିପିନ ରାଉତ, ବିଶ୍ୱଦରର କୋଉ ମାମୁପୁଅ ଭାଇ । ହ୍ୟାପ୍ ନଜେ ବି ଫୋନ୍ କରି ନଥିଲା । କରେଇଥିଲା ତା' ଶଳା ଓକିଲ ଶ୍ରୀକାନ୍ତ ସାମନ୍ତ ହାତରେ । କ'ଣ ନା ତା' ନାତି ପଲିମର୍ ସାଇନ୍‌ସରେ ଡକ୍ଟରେଟ୍ କରିଛି କୋଉ ୟୁନିଭରସିଟିରୁ, ଆଉ ସେ ମୋ କମ୍ପାନିରେ କାମ କରିବାକୁ ଚାହେଁ । ସୋ ହ୍ୱାଟ୍ ? ସେଇ କ'ଣ ଏକା ହାଇଁପାଇଁ ହେଉଛି ମୋ ତଳେ ଚାକିରି କରିବ ବୋଲି ? ଯାହାହେଉ, ଆସିଲୁ ଯଦି ଘଣ୍ଟାଏ ଦି'ଘଣ୍ଟା ଅପେକ୍ଷା କରିପାରିଲୁ ନାହିଁ ମୋ ପାଇଁ ? ଯାହା ଘରେ କେତେ ମହା ମହା ଲୋକ ଅଧିଆ ପଡ଼ନ୍ତି ଯାବତୀୟ ଅନୁଗ୍ରହ ପାଇଁ, ମନ୍ତ୍ରୀ ହେବାଠାରୁ ଆରମ୍ଭ କରି ଫରେନ୍ ଏକ୍‌ସଚେଞ୍ଜ୍ ର ପରମିଟ୍ ପାଇବା ପାଇଁ, ତୁ ସେଠି ପନ୍ଦର ମିନିଟ୍‌ରୁ ବେଶି ଅପେକ୍ଷା କରିପାରିଲୁ ନାହିଁ ? ତୁ ଏମିତି କୋଉ ଲାଟ୍‌ସାହେବ କି ?

ମୁଁ ଅବଶ୍ୟ ମୋ ଟାଇମ୍‌କୁ ଏପାଖ ସେପାଖ ହେବାକୁ ଦିଏ ନାହିଁ । କାନ ମୋଡ଼ି ଶିଖେଇଛି ଆମ ଲୋକମାନଙ୍କୁ, ଯେ ଟାଇମ୍-ମାଲିକ ହେଉଛି ନମ୍ବର ୱାନ୍

ମାଲିକ । ବିଶେଷତଃ ବିଜିନେସ୍‌ରେ । ମୁଁ ଯଥାସମୟରେ ହାଜର୍ ହୋଇଥାଆନ୍ତି ଏଠି ! କିନ୍ତୁ ଆଜିର କଥା ଅଲଗା । କିଏ ଜାଣିଥିଲା ଏଭଳି ଗୋଟାଏ ଅଘଟଣ ଘଟିବ ବୋଲି ? ମୁଁ କାହାକୁ କଅଣ ପ୍ରମିଜ୍ କରିଥିଲି ଗତ ଇଲେକ୍‌ସନ୍ ବେଳେ, ଗଣକଲ୍ୟାଣ ପାର୍ଟିକୁ ଜିତାଇବା ଲାଗି, ଇଡ଼ିଅଟ୍ ସେଇଆକୁ ନେଇ ଗୋଟାଏ ତର୍କ ଚଳାଇଲା ମୋ ସାଙ୍ଗରେ, ଆଉ ମୁଁ ଯୋଉଠୁ ପାଟି କଲି ତା' ଉପରେ···

ଅଜାଣତରେ ଦେବୁ ନାୟକଙ୍କ ହାତ ଉଠିଗଲା ତାଙ୍କ ବାଆଁ ଗାଲ ଉପରକୁ । ହେଲେ ମସୁଦ୍ ତା'ର ତାତ୍ପର୍ଯ୍ୟ ବୁଝିପାରିଲା ନାହିଁ । କହିପକାଇଲା ଯାହା ସେ କହିବ କହିବ ବୋଲି ହେଉଥିଲା ଏତେବେଳ ଯାଏଁ । ଗୋଟିଏ ମଜା କଥା । ସାହେବଙ୍କର ଶୁଣିବା ଉଚିତ ।

"ସାର୍ ସେ ଶେଲିର କ୍ୟାଉଁ କ୍ୟାଉଁକୁ ବରଦାସ୍ତ କରିପାରିଲେ ନାହିଁ । କହିଲେ ତାକୁ କାହିଁକି ଏମିତି କଷ୍ଟ ଦେଉଛ, ଫିଟେଇ ଦିଅ । ମୁଁ କହିଲି, ନାହିଁ । ସାହେବ ମନା କରିଛନ୍ତି । ସଞ୍ଜବେଳକୁ ଖୋଲା ହେବ, ମିନାଦିଦି ସ୍କୁଲରୁ ଫେରିଲେ । ସେଇଠୁ କାହିଁକି ବୋଲି ଫଟରେଇ ହେଲେ ମୋ ସାଙ୍ଗରେ, କିନ୍ତୁ ମୁଁ ଶୁଣିଲି ନାହିଁ । ତା'ପରେ ଥିଲେ ଥିଲେ ଭୂସ୍‌କିନା ଉଠିପଡ଼ିଲେ । କହିଲେ, ମୁଁ ଯାଉଛି, ଆଉ ଏ ଚିଠି ଖଣ୍ଡିକ ଧରେଇ ଦେଲେ ମୋ ହାତରେ ।"

"ଶେଏଲି ?"

ସେଇ ଶବ୍ଦଟିକୁ ଦୁଇ ଥରଅର ଉଚ୍ଚାରଣ କଲାପରେ ଦେବୁ ନାୟକ ହସି ଉଠିଲେ । ଏତେ ଜୋର୍‌ରେ, ଏବଂ ଏତେ ସମୟ ଯାଏଁ ଯେ ତାଙ୍କ ଆଖିରୁ ପାଣି ଆସିଗଲା । ମସୁଦ୍ ଡରିଗଲା । କଅଣ ହେଲା ସାହେବଙ୍କର ? ସେଇଠୁ ସେ ଶୁଣିବାକୁ ପାଇଲା ସାହେବଙ୍କର ଦୁର୍ବୋଧ ବିଡ଼ ବିଡ଼, ନିର୍ବୋଲା ହସ ଓ ନିର୍ବୋଲା ଭାବନାର ମଝିରେ ।

—ଶଳା···(ଅକଥ୍ୟ ବୀଭତ୍ସ ରୂପକଳ୍ପ) !

ବ୍ଲଡ଼ି··· (ଅକଥ୍ୟ ବିକଟ ଆମେରିକାନିଜ୍) ।

···ମନେପଡ଼ୁଛି, ମନେପଡ଼ୁଛି ତୋର ଚେହେରା । ଦେଖିଥିଲି କୋଉ ଦିନ୍‌ବଦିନେ, ଜମ୍ପିମାମୁଙ୍କ ଘରେ । ବଳିପଡ଼ିଲା ପରି ଚକଣିଆ ମାଇଚିଆ ଚେହେରା । ପୋଡାମୁହାଁ । ଟୋକାକୁ କଅଣ ଚଡେଇ କରି କହିଲି ଯେ କାନ୍ଦ କାନ୍ଦ ହୋଇ ପଳେଇଗଲା ଘର ଭିତରକୁ । ଜମ୍ପିମାମୁ ଯେତେ ଡାକିଲେ ବି ଆଉ ନଆସେ । ଟୋକା ମାଇଚିଆ ଏଇକ୍ଷଣି ଗୋଟାଏ ବୃଦ୍ଧ ମାଇଚିଆ ହେବଣି । ଆଉ କିଣ୍ଟା

ବଦଳିଥିବ ତା'ର ? ନହେଲେ କ'ଣ ଏମିତି ତରଳି ଯାଇଥାଆନ୍ତା କୁକୁରର କାନ୍ଦଣାରେ ? ଗଡ୍ !···

କିନ୍ତୁ ଆମୋଦକୁ ପୂରାପୂରି ଗ୍ରହଣ କରିନେଇ ସାରିଲେ ପରେ ସେ ଗୋଟିଏ ବିଚିତ୍ର ନିର୍ଣ୍ଣୟରେ ପହଞ୍ଚିଲେ । ଜୋକର୍‌କୁ ମେଡ଼ାଲ୍ ପିନ୍ଧେଇଲା ପରି । ତପନବାବୁ ଗୁଡ଼ି ଯାଇଥିବା ଚିଠି ଖଣ୍ଡିକ ନେଇ ଆସିଲେ ମସୁଦ୍ ହାତରୁ । ଏବଂ ତତ୍‌କ୍ଷଣାତ୍ ଚିଠାରେ ଦିଆ ହୋଇଥିବା ନମ୍ବରକୁ ଡାଏଲ୍ କଲେ ।

ମୁଁ ତା' ନାତିକୁ ଗ୍ରହଣ କରିଦେବି ମୋ କମ୍ପାନୀରେ । ବାଦ୍‌ସାର ଦଳକୁ କ'ଣ ବୋଲି ପାଇଛନ୍ତି କି ସେ ? କିନ୍ତୁ, କିନ୍ତୁ, ସେ ବି କ'ଣ ମାଇଚିଆ ହୋଇଥିବ ତା' ଅଜା ପରି ? ଆଇ ହୋପ୍ ନଟ୍···

ଫୋନ୍‌ର ସେ ପାଖରୁ କିଏ କ'ଣ ପଚାରୁଥିଲା, ଯେ ତା'ର ଉତ୍ତରରେ ସେ କହୁଥିଲେ ବାରମ୍ବାର—

"ନା ନା, ତାଙ୍କର ଆସିବା ଦରକାର ନାହିଁ । ମୋତେ ଦରକାର ନାହିଁ । ଖାଲି ସେଇ ଚୋକାଖଣ୍ଡିକ ଆସୁ ମୋ ପାଖକୁ । ସଞ୍ଜ ବୁଡ଼ିବା ଆଗରୁ । ଓ-କେ । ବାଏ ।"

ସଞ୍ଜ ବୁଡ଼ିବାକୁ ବେଶି ଡେରି ନାହିଁ ଆଉ । ଅମରେଶ ମହାପାତ୍ର ଆସି କରି ଫେରିଗଲାଣି । ଚେୟାର୍‌ମ୍ୟାନ୍ ଦେବୁ ନାଏକଙ୍କ ସୁପାରିସ ତଥା ନିର୍ଦ୍ଦେଶ ପତ୍ରକୁ ହାତରେ ଧରି । ଗଲାବେଳକୁ ସେ 'ଥ୍ୟାଙ୍କ୍ ୟୁ ସାର୍' ବୋଲି କହିଥିଲା । ହାତ ବଢ଼ାଇଲାରୁ ମଧ୍ୟ ତାକୁ ଗ୍ରହଣ କରିଥିଲା କରମର୍ଦ୍ଦନ ପାଇଁ । ଏବଂ ଯେତିକି ଝୁଙ୍କିବା କଥା, ଠିକ୍ ସେତିକି ଝୁଙ୍କିଥିଲା ।

ଖାସା ପିଲାଟାଏ । ଏମାନେହିଁ ମୋ ଦେଶର ଭବିଷ୍ୟତ । ଏବଂ ତାଙ୍କର ମଡ଼େଲ୍ ହେଉଛି, ହେବା ଉଚିତ, ଦେବୁ ନାଏକ । ଆଉ ହୁଏତ ତା'ରି ପରି ଆଉ ଦି'ତିନି ଜଣ । ଯେଉଁମାନେ ଶିଖେଇଛନ୍ତି କେମିତି ମେଁ ମେଁ ନ ହୋଇ ଚଢ଼ଉ କରିବାକୁ ହୁଏ ଶିକାର ଉପରେ । ସିଏ ସ୍ବଦେଶୀ ବେପାରୀ ହେଉ, କି ଫେର୍ଣ୍ଣି ମେଣ୍ଢାଲ୍ ମାଇଚିଆଗଣ । ତା'ହେଲେ ଯାଇଁ ଜିତିବ । ତମେ ଆଉ ତମ ଦେଶ । ଆଉ ସେତେବେଳେ ମନେ ପକାଇବ ମୋତେ···

ସଞ୍ଜର ଅନ୍ଧାର ଆସ୍ତୁରଣ ଟାଣିନେଇ ଆସିଲାଣି । ମଧ୍ୟ ନୀରବତା । କାନ୍ଦୁଥିବା କୁକୁରର କ୍ୟାଉଁ କ୍ୟାଉଁ ମଧ୍ୟ ବନ୍ଦ ହୋଇଗଲାଣି । ଶେଲିକୁ ଚେନ୍‌ରୁ ଫିଟାଇଦେଇ ବୁଲାଇବାକୁ ନେଇ ଚାଲେଣି ସେମାନେ । ଦେବୁ ନାଏକଙ୍କର ଖିଆଲ୍ ହେଲା ଯେ

ଏଇକ୍ଷଣି ତାଙ୍କର ପାର୍କରେ ଓ୍ୱାକଙ୍ଗ୍ କରିବା କଥା ଲମ୍ବା ଲମ୍ବା ପାହୁଣ୍ଡ ପକାଇ । ଜଣେ ଅଧେ ନମସ୍କାର ପକାଇବେ, ଜଣେ ଅଧେ ପାଖେଇ ଆସି ଖୋସାମତ କରିବାକୁ ଚେଷ୍ଟା କରିବେ, କିନ୍ତୁ ଦେବୁ ନାଏକ ବାଟ ଚାଲୁଥିବ ତାଙ୍କୁ ଆଡ଼େଇ-ଦେଇ । ଏକମୁହାଁ । କିନ୍ତୁ ଆଜି ଶଳା କିଛୁ କରିବାକୁ ଇଚ୍ଛା ହେଉନାହିଁ !

ଏଇ ସମୟରେ ହଠାତ୍ ଧାଇଁ ଆସିଲା ମୀନା 'ଅଜା, ଅଜା, ଦେଖ !' ବୋଲି ପାଟି କରି । ଗୁଡ଼ାଏ କୁକୁରଛୁଆଙ୍କୁ କୁଣ୍ଢେଇ ଧରି । ଏବଂ ତାଙ୍କୁ ସେ ତତ୍‌କ୍ଷଣାତ୍ ଗୁଡ଼ି ଦେଲା ଅଜାଙ୍କ ପାଖରେ । ତହୁଁ ସଞ୍ଚଟା ଅସ୍ଥିର ହୋଇ ଉଠିଲି ତାଙ୍କ କୁଁ-କୁଁ ଶବ୍ଦରେ । ଏବଂ ଦେବୁ ନାୟକ 'ଇଏ କଅଣ ? 'ନେଇ ଯା' ତାଙ୍କୁ ନଉଛୁ ନା ନାହିଁ ବୋଲି ଗୋଡ଼ ଟେକିଲେ ସୋଫା ଉପରକୁ ।

ତଥାପି ମୀନା ହସୁଥାଏ । ଆଉ କୁକୁର ଛୁଆମାନେ ତାଙ୍କୁ ଆକ୍ରମଣ କରୁ-ଥାଆନ୍ତି । ଚଢ଼ିବାକୁ ଚେଷ୍ଟା କରୁଥାଆନ୍ତି ସୋଫାର ଖୁରା ବାଟ ଦେଇ ।

"ଡ୍ୟାମ୍ ଇଟ୍ ! ତୋ ଶେଲି କୁଆଡ଼େ ଗଲା ? ତୁ ଗଲୁନାହିଁ ତା' ସାଙ୍ଗରେ ?"

"ସେଇଟା ବଡ଼ ହୋଇ ଗଲାଣି । ଖାଲି କ୍ୟାଉଁ କ୍ୟାଉଁ ହୁଏ । ମୁଁ ଏମାଙ୍କୁ ଗୋଟେଇ ଆଣିଛି ରାସ୍ତା ଉପରୁ । ଏଇଥିରୁ ଗୋଟାକୁ ରଖିବି ମୋ ପାଖରେ । ଆଉ ସେ କୁଁ କୁଁ ହେବ ମୋ କୋଳରେ । କାନ୍ଦିବ ଆଉ ଗେହ୍ଲେଇ ହେବ ।"

ଇତିମଧ୍ୟରେ ସେଥିରୁ ଗୋଟାଏ ଆସି ପହଞ୍ଚି ଗଲାଣି ସୋଫା ଉପରେ, ଓ ତାଙ୍କ ପାଦକୁ ଚାଟିବାକୁ ବସିଛି । ଦେବୁ ନାୟକ ଆଉ ସମ୍ଭାଳି ପାରିଲେ ନାହିଁ । ତାକୁ ବେକରୁ ଧରି ଗୁଡ଼ିଦେଲେ ତଳକୁ । ଆଉ କହିଲେ, "ନେଇ ଯା', ନେଇ ଯା' ଏଗୁଡ଼ାଙ୍କୁ । ଗେଟ୍ ଆଉଟ୍ ।"

"ୟୁ ଆର୍ ସୋ ମିଇନ୍ ଅଜା, ମିଇନ୍—" କହି ମୀନା ପଳେଇଗଲା ତାଙ୍କ ପାଖରୁ, କୁକୁର ଛୁଆମାନଙ୍କୁ ଗୋଟାଇ ନେଇ ।

ନୀରବତା ଓ ଅନ୍ଧାର ପୁଣି ଏକାଠି ହୋଇଗଲେ । ଏବଂ ଦେବୁ ନାଏକଙ୍କୁ ଉସ୍‌କାଇଲେ ମନଇଚ୍ଛା ଭାବିବା ପାଇଁ । ହେଲେ ତାଙ୍କ ଭାବନା ଭିତରେ କେବଳ ଗୋଟାଏ ସ୍ୱର ଥିଲା, ଯାହାକୁ କେତେକ କ୍ରୋଧ ନୁହେଁ, ଗ୍ଲାନି ବୋଲି କହିପାରନ୍ତି । ଯେ ସେ ଏଥି ପୂର୍ବରୁ କେବେହେଲେ ମୀନାକୁ 'ଗେଟ୍ ଆଉଟ୍' ବୋଲି କହି ନଥିଲେ କି ତାଠୁଁ ଶୁଣି ନଥିଲେ ଏମିତିକା କଥା ।

...ହଁ, ମୁଁ ମିଇନ୍ । ଜାଣି ନଥିଲୁ ତୋ ଅଜାକୁ ଅଜଯାଏଁ ? ଦୁନିଆଁ ଯାକ ଜାଣନ୍ତି ଆଉ ତୁ ଜାଣିପାରିଲୁ ନାହିଁ, ଯେ କୋଳପଶା କୁଁ କୁଁ ମୋ ଦେହରେ

ଯାଏ ନାହିଁ । ହେଲେ ତମେ ସମସ୍ତେ ବୁଝିବ । କେବେ ହେଲେ ବୁଝିବ । ଦେବୁ ନାଏକ ଯାହା କରିଯାଇଛି ଦେଶ ପାଇଁ, ଆଉ ତମକୁ ମଣିଷ କରିବା ପାଇଁ ।

ହ୍ୟାପ୍ ଲଭ୍ ଫର୍ ମୁଁ ଜାଣେ ନାହିଁ । କି ଗୃହେଁ ନାହିଁ କାହାଠୁଁ । ଦ୍ୱିପିନ୍‌ର ସ୍ମାର୍ଟ୍ ନାତି ଟୋକା ହେଉ କି ମୋ ଗେହ୍ଲେଇ ନାତୁଣୀ ହେଉ, କି ଆଉ ଯିଏ । ମୁଁ ଜାଣେ ତମ ସମସ୍ତଙ୍କ ହାତ ଖୁଲୁବୁଲୁ ହେଉଛି, କେବେ ତମ ଜୀବନର ଅରମାନ ମେଣ୍ଟେଇବ, ଆଉ ଗୃପୁଡ଼ାଏ କଷିଦେବ ମୋ ଗାଲରେ । ବଟ୍ ଆଇ ଡୋଣ୍ଟ୍ କେୟାର । ଆଇ ଜଷ୍ଟ୍ ଡୋଣ୍ଟ୍ କେୟାର ।...

ନା, ଏହି ଅବସ୍ଥାରେ ଦେବୁ ନାଏକଙ୍କ ମନେପଡ଼ି ନଥିଲା ଯେ ସେ ଅନ୍ତତଃ ଥରୁଟାଏ ଲୋଡ଼ିଥିଲେ ଜଣଙ୍କର ଦରଦ, ତାକୁ ଭଲପାଇବା କୁହ କି ଆଉ ଯାହା, ଯେତେବେଳେ ତାଙ୍କର ଚମଡ଼ା ବ୍ୟବସାୟ ବରବାଦ୍ ହୋଇଗଲା, କଲିକତାରେ ଥିବା ତାଙ୍କ ବିରାଟ ଲେଦର ଏମ୍ପୋରିୟମ୍ ଶତ୍ରୁ ହାତକୁ ଗୃଲିଗଲା, ଏବଂ ସ୍କଚ୍ ପିଇବା ପାଇଁ ମଧ୍ୟ ପଇସା ନଥିଲା ପାଖରେ, ସେତେବେଳେ ସେ ତାଙ୍କ ଦ୍ୱିତୀୟା ସ୍ତ୍ରୀ ଦାମିନୀ ଦତ୍ତର କୋଳରେ ପଶି କୁଁ କୁଁ ହେବାକୁ ଗୃହୁଁଥିଲେ । ଏବଂ ସେ ତାଙ୍କର ମତିଭ୍ରମ ଦେଖି କହିଥିଲା, ଛୁଗୁଲେଇଲା ପରି—ହେ ! ହ୍ୱାଟ୍ ଇଜ୍ ରଙ୍ଗ୍ ଉଇଥ୍ ୟୁ ? କ'ଣ ହୋଇଛି ତୁମର ?

ଏବଂ ଯଦି କେହି ଭାବୁଥାଏ ଯେ ଅନ୍ଧାର ଭିତରେ ହଜି ଯାଇଥିବ ଗୋଟାଏ ବୁଢ଼ାର ଲୁହ, ଏବଂ ସେ ତାକୁ ନିଦାଘରେ ଗ୍ଗୁଡ଼ି ଦେଇଥିବ, 'ଶଳା ବୋହି ଯା' କେତେ ବୋହିବାକୁ ଗୃହୁଁ' ଏହି ପ୍ରକାର ଆବେଗରେ, କାହିଁକନା ଆଜି କେହି ନାହାନ୍ତି ତାକୁ ଦେଖିବା ପାଇଁ କି କଅଣ ହୋଇଛି ତମର ବୋଲି କହିବା ପାଇଁ, ସେଭଳି ଭାବନାକୁ ତୁଚ୍ଛ ରୋମାଣ୍ଟିକ୍ କଳ୍ପନା ଛଡ଼ା ଆଉ କିଛି କହିବା ଉଚିତ ହେବ ନାହିଁ ।

# କୁକୁରଙ୍କ କାନ୍ଦଣା

ବିପିନବାବୁ କ'ଣ ନେତା ହୋଇ ପାରିଥାଆନ୍ତେ ? ସେହି ସେହି ପ୍ରସଙ୍ଗରେ ଗୋଟାଏ ପାଲଟା ପ୍ରଶ୍ନ ମଧ୍ୟ ପଚାରିବାକୁ ଇଚ୍ଛା ହୁଏ—ଦେବୁ ନାଏକ କ'ଣ କବିତା ଲେଖି ପାରି-ଥାଆନ୍ତେ ? ବିପିନବାବୁ ଲେଖାଲେଖି କରନ୍ତି ବୋଲି କୌଣସି ଉଲ୍ଲେଖ ନାହିଁ ଏଇ ଗପରେ, କିନ୍ତୁ ମନେହୁଏ ଯେ ଯେଉଁ ଲୋକ କୁକୁରଙ୍କ କାନ୍ଦଣାରେ ଏମିତି ତରଳି ଯାଇପାରେ ଏବଂ ପ୍ରତିବାଦ ସ୍ୱରୂପ ଓହରିଆସେ ଗୋଟାଏ ଦରକାରୀ ଆପଏଣ୍ଟମେଣ୍ଟରୁ, ତା'ର ଭାବକାତରତା ଅନେଇ ରହିଛି ଶବ୍ଦରେ ଓ ଛନ୍ଦରେ ବାନ୍ଧି ହୋଇଯିବ ବୋଲି । ସେ ଯାହାହେଉ, ବିପିନବାବୁ ମଧ୍ୟ ସୁଖରେ ଏବଂ ସମ୍ମାନର ସହ ପାରି ହୋଇ ଆସିଛନ୍ତି ତାଙ୍କ ଜୀବନକୁ, ତେଣୁ ତାଙ୍କୁ ଅସଫଳ ବୋଲି କୁହାଯାଇ ନପାରେ । କିନ୍ତୁ ଏହା ମଧ୍ୟ ସତ ଯେ, ତାଙ୍କର କାହିଁରେ କ'ଣ ଈର୍ଷା ପିଲଦିନର ଦେବ୍‌ଭାଇ ଉପରେ ଯେ କେବଳ ତା' ଜୀବନରେ ବିରାଟ ସଫଳତା ହାସଲ କରିଛି ତା' ନୁହେଁ, ମଧ୍ୟ ଗୋଟାଏ ବିରାଟ ନେତା ବୋଲାଉଛି । ସୁନାକଲସ ତା'ର ଉପରେ ଢଳା ହୋଇଛି, କାରଣ ଯେତେ ଅଶ୍ଲୀଳ ହେଲେ ମଧ୍ୟ ସେଇ ଲୋକଟା କ୍ଷମତାକୁ ଚହିଁଛି, ହାସଲ କରିଛି, ଏବଂ ଜାଣେ ତାକୁ କେମିତି ପ୍ରୟୋଗ କରିବାକୁ ହେବ । ସେହେତୁ ବିପିନବାବୁମାନେ ରହୁଛନ୍ତି ଓ କାନ୍ଦୁଛନ୍ତି—ଏଇଟା ଅନ୍ୟାୟ ନୁହେଁ କି ?

ଆପାତତଃ ଅନ୍ୟାୟ । କାତ୍ମ୍ୟ ଜୀବନର ଏକ ବିସ୍ମୟକର ତଥ୍ୟ । ଏବଂ ବିସ୍ମୟ ଆହୁରି ବଢ଼ିଯାଏ ଯେତେବେଳେ ଆମେ ଦେଖୁଁ ଯେ ତଥାପି ଈର୍ଷାଳୁ ଭଲଲୋକମାନେ ସାଧାରଣତଃ କେବଳ ତାଙ୍କୁହିଁ ଶ୍ରେଷ୍ଠ ଧଅନ୍ତି ଅନ୍ୟମାନଙ୍କୁ ଛାଡ଼ି, କାରଣ ସେମାନେ ତାଙ୍କୁହିଁ ଯୋଗ୍ୟ ବୋଲି ଭାବନ୍ତି କେଉଁ ସଙ୍ଘର, ଦଳର କି ଦେଶର ନେତା ହେବା ପାଇଁ, ସେଥିର ଦାୟିତ୍ୱ ତୁଲେଇବା ପାଇଁ ।

ସେଇଠୁଁ ବୋଧହୁଏ ପ୍ରଶ୍ନ ଉଠିପାରେ—ବେଶ୍ ତ ! ଏଇ କ୍ଷମତାପ୍ରବଣ କ୍ଷମତାଶୀଳ ଲୋକମାନେ ତ ଲୋକନେତା ଅର୍ଥାତ୍ ଦୁର୍ବଳ ଗାଈଗୋରୁ ଜାତୀୟ ଜନଗଣଙ୍କୁ ଠିକଣା ବାଟରେ ଆଡ଼େଇ ନେବା କଥା । ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ହୁଏତ ଏଇ ମହାଗର୍ବୀ ଲୋକଟା ଥରେ ଅଧେ ଅପମାନ ପାଇଛି କାହାଠୁଁ ଯିଏ ତାକୁ ଓଲଟି ଗୃପୁଡ଼ାଏ ମାରିବାର ସାହସ କରିପାରିଛି । ହୁଏତ ତା' ଜୀବନର କେଉଁ ବିଫଳ ମୁହୂର୍ତ୍ତରେ ସେ ତା' ପତ୍ନୀ କିମ୍ବା ପ୍ରେମିକାର ଛାତିରେ ମୁଣ୍ଡ ଗୁଞ୍ଜି ଦେଇ ପାରିଥାଏ । କିନ୍ତୁ ମନେ ରଖିବା କଥା ଯେ ସେ ସେହି ସମସ୍ତ ଦୁର୍ଘଟଣାରୁ ଅବଲମ୍ବେ ଉଧୁରି ଆସି ପାରିଛି ଯେତେକ ତା'ର କିଛି ହୋଇ ନାହିଁ କି ହୋଇ ନଥିଲା । ଏବଂ ଯଦିବା ତା' ଆଖିରୁ ଲୁହ ଝରିଥାଏ ତାକୁ କେହିହେଲେ ଦେଖି ନାହିଁ କେବେ । ଏଇ ଲୋକମାନେ ଝୁଣ୍ଟିଲେ ବି କ୍ଷଣକରେ ଝାଡ଼ିଝୁଡ଼ି ହୋଇ ନିଜର କ୍ଷମତାକୁ ଜାହିର୍ କରିପାରନ୍ତି । ନିଜ ପାଇଁ, ଉଦାରତା ଦେଖାଇ କେଉଁ 'ମାଇଚିଆ' ସମ୍ପର୍କୀୟର ନାତିଟୋକା ପାଇଁ, ତଥା ଦେଶ ପାଇଁ, ଜନଗଣଙ୍କ ପାଇଁ । ସେହେତୁ ଈର୍ଷାଳୁ ବିପିନ୍‌ବାବୁମାନେ ତାଙ୍କୁହିଁ ଭୋଟ ଦେଇ ଗାଦିରେ ନ ବସେଇ ରହିପାରନ୍ତି ନାହିଁ । ଏବଂ ବିପିନବାବୁ-ମାନେ ଯେତେ ଭଲ କି ଗୁଣୀଜ୍ଞାନୀ ବୋଲାଇଲେ ମଧ୍ୟ ତାଙ୍କୁ ଗାଦିରେ ବସେଇବା, କ୍ଷମତାର ଲଗାମ୍‌କୁ ତାଙ୍କ ହାତରେ ଧରେଇ ଦେବାର ପ୍ରଶ୍ନ ଉଠେ ନାହିଁ । କିଓ, ଯେଉଁ ଲୋକଟା କ୍ଳର୍କଙ୍କ କାନ୍ଦଣାରେ ଏତେ ବିଚଳିତ ହୋଇଉଠେ, ତାକୁ କୋଉ ବୁଦ୍ଧିରେ କିଏ ଜନଗଣ ଅଧିନାୟକ କରିବାକୁ ଚାହିଁବ ?

କ୍ଷମା କରିବେ । ତଥାପି ଆଶ୍ଚର୍ଯ୍ୟ ହେବାକୁ ପଡ଼ୁଛି । କାରଣ ଆମେ ଗୁଣ, ଜ୍ଞାନ ଓ ଭଲପଣିଆର ଯଥେଷ୍ଟ ସମ୍ମାନ ଦେଉ ଆମ ସମାଜରେ । କିନ୍ତୁ ଯେତେବେଳେ କେଉଁ ମୁଖିଆର ଆବଶ୍ୟକତା ହୁଏ ଗୋଷ୍ଠୀ, ଦଳ କି ଦେଶ ପାଇଁ ଯେ କ୍ଷମତା ଖଟେଇ ପାରିବ ସମୂହ ସ୍ୱାର୍ଥର ସିଦ୍ଧି ଲାଭ ପାଇଁ, ସେତେବେଳେ ଆମର ଲୋଡ଼ା ହୁଏ ଦେବୁ ନାୟକଙ୍କ ପରି ଜଣେ 'ବଳୁଆ' ଲୋକ, ସେ ଗୁଣୀ, ଜ୍ଞାନୀ କି ଭଲ ନହେଲେ ନାହିଁ । କିନ୍ତୁ କାହିଁକି ?

ଗୁଣ ଜ୍ଞାନ ତଥା ଭଲପଣିଆର ଗାରମା କ'ଣ ଶକ୍ତିର ଆଧାର ହୋଇପାରିବ ନାହିଁ ଯେ କେଉଁ 'ବଳୁଆ' ଲୋକର ଆବଶ୍ୟକତା ଅଛି, ସେହି ଶକ୍ତିକୁ ସମୂହ ସ୍ୱାର୍ଥ ଦିଗରେ ପ୍ରୟୋଗ କରିବା ପାଇଁ ?

ବଳ ମାନେ କ'ଣ କେବଳ ବାହୁବଳ, ଧନବଳ, ଏବଂ ରାଷ୍ଟ୍ରୀୟ ସ୍ତରରେ ଗୁଳିବାରୁଦର ବଳକୁ ବୁଝାଇବା କଥା ?

ଅର୍ଥାତ୍, ରାଜନୀତି ବିଜ୍ଞାନର ପରିପ୍ରେକ୍ଷୀରେ, ହବ୍‌ସ୍‌ଙ୍କର ଥିଓରି ଯେ ଜନଗଣ ସାଧାରଣତଃ ଖରାପ ଓ ସ୍ୱାର୍ଥପର ମାନସିକତାର, ତେଣୁ ତାଙ୍କୁ ଠିକଣା ସ୍ୱଭାବରେ ଚଳେଇବାକୁ ହେଲେ ଉପଯୁକ୍ତ ଠେଙ୍ଗାଗୁଳିଙ୍କର ଆବଶ୍ୟକତା ରହିଛି, ଏହି ତଥ୍ୟଟିକୁ ମାନି ନେବାକୁ ପଡ଼ିବ ? ଏବଂ ପ୍ଲାଟୋଙ୍କର 'ଦାର୍ଶନିକ-ରାଜା' ଆଦର୍ଶକୁ ତୁଚ୍ଛା ଅସମ୍ଭବ ଆଦର୍ଶ ବୋଲି ଧରି ନେବା କଥା ?

ନା । ଜଣେ ବୁଦ୍ଧିଜୀବୀ ଭାରତୀୟ ନାଗରିକ ହିସାବରେ ମୁଁ ଏହି ପ୍ରତ୍ୟେକ ପ୍ରଶ୍ନର ପଛରେ ଥିବା ଧାରଣାକୁ ପ୍ରତ୍ୟାଖ୍ୟାନ କରିବାକୁ ଚାହେଁ । ଦୃଢ଼ତାର ସହ । ଦେଢ଼ୁ ନାଏକ ଜାତୀୟ ନେତୃତ୍ୱ ଉଚିତ ନୁହେଁ ଦେଶ ଓ ଦଶର ମଙ୍ଗଳ ପାଇଁ । ଏମିତି ହେଉଛି, ତା'ର କାରଣ ବୋଧହୁଏ ଏଇ ଯେ ସାମନ୍ତବାଦୀ ମନୋଭାବ ତଥାପି ତିଷ୍ଠି ରହିଛି ଆମ ଭିତରେ । ଗଣତନ୍ତ୍ର ତଥାପି ଦୁର୍ବଳ ହୋଇ ରହିଛି । ଧନୀ-ଦରିଦ୍ରର ବିଭେଦ, ଅଶିକ୍ଷା, କୁସଂସ୍କାର ଆଦି ନାନାଦି କାରଣରୁ ଗଣଦେବତା ତଥାପି ନିଜକୁ ପ୍ରତିଷ୍ଠିତ କରି ପାରିନାହିଁ । କିନ୍ତୁ ଏହି ପରିସ୍ଥିତି ବଦଳୁଛି ଏବଂ ବଦଳିବ, ଏ ବିଷୟରେ ମୋର କୌଣସି ସନ୍ଦେହ ନାହିଁ । ତେଣୁ ଭବିଷ୍ୟତରେ ଅଶ୍ଳୀଳ ଦେଢ଼ୁ ନାୟକମାନେ ହିଁ କେବଳ ନେତା ହୋଇ ପାରିବେ, ଏବଂ ସମ୍ବେଦନଶୀଳ ବିପିନବାବୁମାନେ ସେଭଳି ମର୍ଯ୍ୟାଦାର ଅଯୋଗ୍ୟ, ଏହା ମୁଁ କଦାପି ସ୍ୱୀକାର କରି ପାରିବି ନାହିଁ । ହେଲେ, ବିପିନବାବୁ, କୁକୁଡ଼ମାନଙ୍କ ପାଇଁ କାନ୍ଦିଲେ ଯାଏ ଆସେ ନାହିଁ, କିନ୍ତୁ କୌଣସି ଦୋଷୀ ପାଇଁ କାନ୍ଦିଲେ ଚଳିବ ନାହିଁ । ନିରପେକ୍ଷ, ତେଣୁ ଅଳ୍ପ ବହୁତ ନିର୍ମମ ହେବାକୁ ପଡ଼ିବ ଯଦି ତୁମକୁ କ୍ଷମତାର ଅଧିକାରୀ କରାଯାଏ । ଏବଂ ତାକୁ ନିଷ୍ଠୁରତା ବୋଲି କୁହାଯିବ ନାହିଁ । ଏବଂ ଦେଢ଼ୁ

ନାୟକ ହୁଅ କି ବିପିନବାବୁ, ତୁମକୁ ଯଥାବିଧି ଉତ୍ତର ଦେବାକୁ ପଡ଼ିବ ତୁମର କୁକର୍ମ ପାଇଁ, ଯେଉଁଥିରେ ଜନଗଣର ସମୂହ ସ୍ୱାର୍ଥ ବ୍ୟାହତ ହୋଇଛି ବୋଲି ମନେହୁଏ । ଏହି ଯଥାର୍ଥ ଗଣତନ୍ତ୍ର ସୁଦୂର ନୁହେଁ ବୋଲି ମୋର ବିଶ୍ୱାସ, କେବଳ ଭାରତ ପାଇଁ ନୁହେଁ, ମଧ୍ୟ ବିଶ୍ୱର ସମସ୍ତ ଦେଶ ପାଇଁ, ଯଦିଓ ଦାର୍ଶନିକ-ମାନଙ୍କ ରାଜା ହେବା ଲାଗି ଆହୁରି ଅନେକ ସମୟ ଲାଗିବ ହୁଏତ ।

କିନ୍ତୁ ମୁଁ ସନ୍ଦିହାନ କେବଳ ଗୋଟିଏ 'ସାମୂହିକ ସ୍ୱାର୍ଥ'ର ସଦ୍‌ଗତି ବିଷୟରେ । ତାହା ହେଉଛି ବିଶ୍ୱର ସାମଗ୍ରିକ ସ୍ୱାର୍ଥ । ମୋର ମନେହୁଏ ଯେ ଆମର ମାନସିକତାରେ ଏଇ ସ୍ୱାର୍ଥର ଅନୁଭବ ତଥାପି ପହୁଞ୍ଚି ପାରି ନାହିଁ । ଯେପର୍ଯ୍ୟନ୍ତ ଆମ ବିଶ୍ୱରେ ଜାତିଗତ ରାଷ୍ଟ୍ର (nation-state)ର ବ୍ୟବସ୍ଥା ସ୍ୱତଃସିଦ୍ଧ ବୋଲି ଧରି ନିଆଯାଏ, ସେତେଦିନ ଯାଏଁ କେବଳ ବଳୁଆ ରାଷ୍ଟ୍ର ହିଁ ତା'ର ପ୍ରଭାବ ପକେଇ ପାରିବ ଅନ୍ୟମାନଙ୍କ ଉପରେ, ସେହି ବଳ ଯେତେ ଅଶ୍ଳୀଳ ହେଉ ପଛେ । ଏବଂ ଦେବୁ ନାୟକମାନେ ନେତା ହେବା ପାଇଁ ଅଧିକ ଯୋଗ୍ୟ ବୋଲି ବିବେଚିତ ହେବେ ରାଷ୍ଟ୍ରର ତଥାକଥିତ ବିପଦ ସମୟରେ । ତେଣୁ କେବଳ ଆଶା କରିବା କଥା ଯେ ସେଭଳି ବିପତ୍ତି ନଆସୁ ଆମ ଦେଶରେ, ତାହା ସତ ହେଉ କି ବାହାନା ଏବଂ ବିପିନବାବୁମାନେ ଯଥାକ୍ରମେ ଆଗେଇ ଆସନ୍ତୁ ନେତା ହେବା ଲାଗି ।



# ଭୟ, ପ୍ରେମ, ଗେଣ୍ଡୁଫୁଲ୍ ଇତ୍ୟାଦି

ଅବସରପ୍ରାପ୍ତ ଉଚ୍ଚାଧିକାରୀ ଗଗନବାବୁଙ୍କୁ ଜଣା ଯେ ସେ ଗୋଟିଏ ଭୟାଳୁ ପ୍ରାଣୀ । ହେଲେ ଆତ୍ମଦର୍ଶନର ଏଇ ତଥ୍ୟଟିକୁ ସେ ପ୍ରାୟତଃ ପ୍ରଶ୍ରୟ ଦେଉ ନଥିଲେ, ତାଙ୍କ ମୁଣ୍ଡର ସମସ୍ତ ବାଳ ଧଳା ହେବା ଯାଏଁ । କିନ୍ତୁ ଦିନେ ସକାଳୁଆ ଖବର-କାଗଜରେ ପୃଷ୍ଠା ଓଲଟାଉ ଓଲଟାଉ ସେ ସ୍ଥିର କଲେ ଯେ ବେଳ ହେଲାଣି ଏଇ କଳା ଦାଗଟାକୁ ପୋଛି ଦେବାପାଇଁ । ଯଦିଓ ସମାଜ ସଂସାରର ଦୃଷ୍ଟିରେ ତାଙ୍କ ଛବିମୂର୍ତ୍ତି ସଦା ଉଜ୍ଜ୍ୱଳ ହୋଇ ରହିଛି । ଏବଂ ଶୁକ୍ଳକେଶମଣ୍ଡିତ ହେଲା ପରେ ଅଧିକ ସୁନ୍ଦର ଦିଶୁଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର ସ୍ୱଳ୍ପ-ଭାଷୀ, ମିଷ୍ଟହାସୀ ଉଦାରଗମ୍ଭୀର ଚେହେରାରୁ ଯେଉଁ ବ୍ୟକ୍ତିତ୍ୱ ଫୁଟି ଉଠୁଛି, ତାକୁ କିଏ ଅସ୍ୱୀକାର କରିବ ? ନା ତାଙ୍କ ଚାକିରି ଜୀବନର ସୁଖ୍ୟାତିକୁ ? ଏବଂ ସେଇଥି-ପାଇଁ ତାଙ୍କୁ ବେଳ ଅଣ୍ଟୁ ନାହିଁ ବିଭିନ୍ନ ସାଂସ୍କୃତିକ ସଭାରେ ସଭାପତି, ମୁଖ୍ୟଅତିଥି, ଅନ୍ତତଃ ଜଣେ ବରେଣ୍ୟ ଅତିଥିହୋଇ ଦେଶବାସୀଙ୍କୁ କିଛି ସନ୍ଦେଶ ଶୁଣାଇବା ପାଇଁ ।

କିନ୍ତୁ ଗଗନବାବୁଙ୍କ ସ୍ମୃତିରେ ତଥାପି ଲାଖି ରହିଛି ଗୋଟାଏ ପିଲାଦିନର ଘଟଣା । ସେ ତାଙ୍କ ବଡ଼ଭାଇଙ୍କ ଫାଉଣ୍ଟେନ୍ ପେନ୍ ଚୋରି କରିଥିଲେ । ହେଲେ ତାଙ୍କର ସାହସ ହେଲା ନାହିଁ 'ମୁଁ ଯାହା କରିଛି ଠିକ୍ କରିଛି', ବୋଲି କହିବା ପାଇଁ ନିଜକୁ, ଅଥବା ଅନୁତପ୍ତ ହୋଇ ସେମାନଙ୍କ ଆଗରେ ମାନି ନେବାକୁ ଯେ ମୁଁ ଭୁଲ୍ କରିଛି, ମୋତେ କ୍ଷମା କର । ଅପରନ୍ତୁ ସେ କଲେ କ'ଣ ନା ଚୋରିକୁ ନେଇ ପାଟି-ତୁଣ୍ଡ ହେଲା ପରେ ସେ ଚୁପ୍‌କିନା ନେଇ ତାକୁ ରଖିଦେଇ ଆସିଲେ ତା' ଯଥା-ସ୍ଥାନରେ । ଯଦିଓ ଧରା ପଡ଼ିବାର କୌଣସି ଭୟ ନଥିଲା । ଏବଂ ଏ ବିଷୟରେ ସେ କେବେହେଲେ କିଛି କହିନାହାନ୍ତି କାହାକୁ ।

ଯୌବନ ଜୀବନରେ ମଧ୍ୟ ସେହି ପ୍ରକାର ଘଟଣା ଘଟିଛି । ଗଗନବାବୁ ବେଶ୍ୟାଘରକୁ ଥରେ ଦି'ଥର ଯାଇଛନ୍ତି, ସାଙ୍ଗମାନଙ୍କ କଥାରେ ପଡ଼ି । ସେତେ-ବେଳେ ସେ ଅବଶ୍ୟ ନିଜର ବାହାଦୁରୀ ଦେଖାଉଥିଲେ, ସେହିପ୍ରକାର ଗପ ପଡ଼ିଲା ପରେ । କିନ୍ତୁ ବାହାସାହା ହେଲା ପରେ ଘଟଣାଟା ଲୁପ୍ତ ହୋଇଗଲାଣି ତାଙ୍କ ଜୀବନର ଇତିହାସରୁ । ତାଙ୍କର ବୁଝିବା ଉଚିତ ଥିଲା ଯେ ଆଧୁନିକ ସମାଜ ତଥା

ତାଙ୍କ ଉଦାରଚେତା ସ୍ତ୍ରୀ ତାଙ୍କୁ କ୍ଷମାଦୃଷ୍ଟିରେ ଦେଖି ନଥାନ୍ତେ, ଏଇ ଯୌବନ-ସୁଲଭ ସର୍ବସାଧାରଣ ଦୁର୍ଘଟଣାକୁ ନେଇ। କିନ୍ତୁ ସେ ସେଭଳି ଚେଷ୍ଟା ନେବାକୁ ଚାହିଁଲେ ନାହିଁ। ଭାବିଲେ, ଦରକାର କଅଣ ? କୋଉ ଅତୀତ ଦୁର୍ଘଟଣାର କୌଣସି ସମ୍ପର୍କ ନାହିଁ ମୋର ବର୍ତ୍ତମାନର ବ୍ୟକ୍ତିତ୍ୱ ଉପରେ।

ପ୍ରେମ ଜୀବନରେ ମଧ୍ୟ ତଦ୍ରୂପ। ଜୀବନର ବିଭିନ୍ନ ପର୍ଯ୍ୟାୟରେ ଗଗନବାବୁ ବିଭିନ୍ନ ସ୍ତ୍ରୀମାନଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ। ବାହାଘର ପୂର୍ବରୁ ଦେଢ଼ଜଣ (ଜଣେ ଲିଙ୍ଗଭେଦରେ ନାରୀ ନହେଲେ ମଧ୍ୟ ନାରୀଭାବରେ ହିଁ ଯାଇଥିଲା), ଏବଂ ବାହାଘର ପରେ ତିନିଜଣ। ପ୍ରେମ ମାନେ ପ୍ରେମ, ଭଲ ପାଇବା ଯେତେବେଳେ ଗୋଟାଏ ଭଲ କଥା। ତେଣୁ ତାକୁ ଅସ୍ୱୀକାର କରିବାରେ କୌଣସି ବାଧା ନଥିଲା। ଆଉ ଯଦିବା ଭାବିଲି ଯେ ବିବାହ-ଚୁକ୍ତିର ଉଲ୍ଲଂଘନକୁ ଭଲକଥା ବୋଲି କୁହାଯାଇ ନପାରେ, ତା'ହେଲେ ତାକୁ ଭୁଲ୍, ହୁଏତ ପାପ ବୋଲି ମାନିନେବାରେ ମଧ୍ୟ କୌଣସି ଅସୁବିଧା ନଥିଲା। ଉଦାରଚେତା ସ୍ତ୍ରୀ ତମକୁ କ୍ଷମା କରି ଦେଇପାରିଥାନ୍ତେ। କିନ୍ତୁ ସେ କିଛି କଲେ ନାହିଁ। ତା'ର ସତ ସୁଖକୁ ସ୍ୱୀକାର କଲେ ନାହିଁ କି ସେଥିରେ ଥିବା ସମ୍ଭାବିତ ଦୋଷକୁ। ସ୍ତ୍ରୀଙ୍କ କଥା ଛାଡ଼ିଦିଅ, ଏପରିକି ନିଜ ଡାଇରିଲେଖାର ଭାବାର୍ଥ କିମ୍ବା ଭାବାର୍ଥ ସାହାଯ୍ୟରେ ଘଟଣାର ଭଲମନ୍ଦ ବ୍ୟକ୍ତ କଲେ ନାହିଁ। କାରଣ—ତାଙ୍କର ମନକୁ ଆସେ ଯେ ଜୟନ୍ତୀ ଥିଲା ଜଣେ ବନ୍ଧୁପତ୍ନୀ, ଯେହେତୁ ସେ ପତ୍ନୀଙ୍କ ପ୍ରତି ବିଶ୍ୱାସଘାତକତା କରିବା ଛଡ଼ା ବନ୍ଧୁ ପ୍ରତି ଉଚିତ ବ୍ୟବହାର କରିନାହାନ୍ତି। ଯଦିଓ ସୁଶୀଳା ଜୟନ୍ତୀ ପାଇଁକି ଭଲ ପାଇବାରେ ଏକ ସୁସ୍ଥ ଏବଂ ସ୍ୱଚ୍ଛ ଅନୁଭବ ଥିଲା, ଏବଂ ସେ ତାକୁ ଥରେଅଧେ ଚୁମ୍ବନ କରିବା ଛଡ଼ା ଆଉ କିଛି କରିବାର ମନେ ପଡ଼ୁନାହିଁ। ମାଷ୍ଟ୍ରାଣୀ ପୂର୍ଣ୍ଣିମା ଦାସ ଅବଶ୍ୟ ଅବିବାହିତା ଥିଲା, ଏବଂ ତା' ସହିତ ଯେଉଁ ପ୍ରେମ ହୋଇଥିଲା, ସେଥିରେ ଆଉ ଗୋଟିଏ ମହାନତା ଥିଲା। ସରସ୍ୱତୀ ବନ୍ଦନା। ଦିହେଁ ଗୋପନରେ କବିତା ଲେଖୁଥିଲେ, ଏବଂ ଏହି ଲୁଚିଛପି କବିତାର ଆଦାନପ୍ରଦାନ ତାଙ୍କ ପ୍ରେମକୁ ପ୍ରଜ୍ଜ୍ୱଳିତ କରୁଥିଲା। କିନ୍ତୁ ଦୁଃଖର ବିଷୟ ଯେ ଥରେ ସେଭଳି ଘଟଣା ବି ଘଟିଗଲା ତା' ସାଙ୍ଗକୁ। ପ୍ରଜ୍ଜ୍ୱଳିତ ଅଗ୍ନିର ଲେଲିହାନ ଜିହ୍ୱାକୁ ସମ୍ଭାଳି ହେଲା ନାହିଁ। ବାକି ରହିଲା ମଧ୍ୟବୟସର ହତଭାଗ୍ୟବତୀ ମେହେତା। ଜୁନିୟର୍ ସହକର୍ମିଣୀ। ସେ ଅବିବାହିତା, ଓ ତା' ସହିତ ଯୌନ ସମ୍ପର୍କର ପ୍ରଶ୍ନ ଉଠୁ ନଥିଲା (ଅନେକେ କହିପାରନ୍ତି ଯେ ସେ ଦିଗରେ ତାଙ୍କର ସାହସ ହୋଇ ନଥାନ୍ତା), ଏବଂ ଅଙ୍ଗସ୍ପର୍ଶ କେବଳ ହାତକୁ ମୁଠେଇ ଧରିବା କିମ୍ବା ପିଠିକୁ ଆଉଁସି ଦେବାରେ ସୀମିତ ହୋଇ ରହିଥିଲା, ଯାହାକୁ ବଡ଼ଭାଇପଣିଆରେ ସାମିଲ୍ କରିନେଇ ହେବ। ଏହି ପ୍ରେମକୁ ସ୍ୱୀକାର କରିନେଲେ କିଛି କ୍ଷତି ହୋଇ ନଥାନ୍ତା। କିନ୍ତୁ କ'ଣ ହେଲା କି ଗଗନବାବୁଙ୍କ ସୁପାରିସ ଉପରେ ଯତାବତୀର ପ୍ରମୋସନ୍ ନିର୍ଭର କରୁଥିଲା। ଏବଂ

ଗଗନବାବୁ ତା'ର କର୍ମକୁଶଳତାକୁ ଅତ୍ୟଧିକ ବଢ଼େଇଚଢ଼େଇ ବନେଇଚୁନେଇ ଲେଖିଲେ ତାଙ୍କ ସୁପାରିସ ପତ୍ରରେ । ପୁଣି ବିଚିତ୍ର କଥା ଯେ ସୁପାରିସ ପତ୍ର ଲେଖିଲା ବେଳେ ସେ ଏକ ଅର୍ଦ୍ଧ-ଦୈହିକ ଆନନ୍ଦ ଅନୁଭବ କଲେ । ସତେକି ତଦ୍ଦ୍ୱାରା ସେ ସ୍ୱର୍ଣ୍ଣ ସୁଖର ଇଲକାକୁ ବଢ଼େଇଦେଇ ପାରୁଛନ୍ତି, ତା'ର ବିଭିନ୍ନ ନିଷିଦ୍ଧ ଅଞ୍ଚଳକୁ ଛୁଇଁ ଆସିପାରୁଛନ୍ତି । ଏହି ସୁପାରିସ ବଳରେ ସତ୍ୟବତୀକୁ ଯେଉଁ ପ୍ରମୋସନ୍ ମିଳିଲା, ତାକୁ ଡବଲ ପ୍ରମୋସନ୍ ବୋଲି କହିବାକୁ ହେବ । ହେଲେ ଗଗନବାବୁ ନିଜକୁ ଦୋଷୀ ବୋଲି ସ୍ୱୀକାର କଲେ ନାହିଁ; କହିଲେ ଦକ୍ଷତାର ଅନେକ ଦିଗ ଅଛି ଯାହା ବାହାରକୁ ଜଣାପଡ଼େ ନାହିଁ, ଏବଂ ସେ ତାକୁ ଚିହ୍ନିଛନ୍ତି, ଜାଣିଛନ୍ତି, ଯେଉଁଥିପାଇଁ ତାଙ୍କର ଏଇ ଉଚ୍ଛ୍ୱସିତ ସୁପାରିସ । ତା' ଛଡ଼ା ପ୍ରିୟାପ୍ରୀତି ତୋଷଣର ଯେଉଁ ଅଭିଯୋଗ କରାଗଲା କର୍ତ୍ତୃପକ୍ଷଙ୍କ ବିରୁଦ୍ଧରେ, ସେଥିରେ କେହିହେଲେ ଗଗନବାବୁଙ୍କ ନାଆଁ ଧରି ନଥିଲେ । ସମସ୍ତେ ଜାଣନ୍ତି ଯେ କେମିତିକା ଲୋକ, କଡ଼ା ନିରପେକ୍ଷ, ଏବଂ ସ୍ତ୍ରୈଣତାଜାତୀୟ ଦୁର୍ବଳତାର କେତେ ଊର୍ଦ୍ଧ୍ୱରେ । ତଥାପି ସେ ଏହି ପ୍ରେମର ମହତ୍ତ୍ୱକୁ ଶହେରୁ ଶହେ ମାର୍କ ଦେଇ ନିଜକୁ ଧନ୍ୟବାଦ ଦେଇ ପାରି ନଥିଲେ । କାଳେ ସେ ତା'ର ଦୁରୁପଯୋଗ କରିଥିବେ ପରି ।

ଆଜି ସେ ଦୃଢ଼ତାର ସହିତ କହୁଛନ୍ତି ନିଜକୁ ଯେ ତାଙ୍କର କୌଣସି ପ୍ରେମ ଦୂଷିତ ନୁହେଁ । ଚନ୍ଦ୍ରମାର ତଥାକଥିତ କଳଙ୍କକୁ ଯଦି ଦୋଷ ବୋଲି କୁହାନଯାଏ । ଖାଲି ଏତିକି ଯେ ସେ ଭୀରୁ, ଭୀରୁତା ହେତୁ ଅକାରଣ ହେଉପଛେ । କଥା ହେଉଛି ଯେ ସେ ଜଣେ ନିଖୁଣତାବାଦୀ, ପରଫେକ୍ସନିଷ୍ଟ । ତାଙ୍କ ନୀତିବୋଧର ମାନଦଣ୍ଡ ଏତେ କଠୋର, ଏତେ ଅସାଧାରଣ, ଯେ ତା'ର ମୂଲ୍ୟାୟନ ତାଙ୍କୁ ଏମିତି ଅଡ଼ୁଆରେ ପକାଉଛି । ପ୍ରେମରେ ଯତ୍‌ସାମାନ୍ୟ ମଇଳା ରହିଗଲା ପରି ମନେ ହେଉଛି ।

ଯାହାହେଉ, ତାଙ୍କ ଛବିମୂର୍ତ୍ତି ଶୁକ୍ଳକେଶ ବିମଣ୍ଡିତ ହୋଇ ମହାମହିମାମୟ ହୋଇ ଆସିଥିଲାବେଳେ ସେ ଏକ ଫାଲ୍‌ଗୁନ ପ୍ରଭାତରେ ସ୍ୱୀକାର କଲେ ଯେ ଭୀରୁ ମଧ୍ୟ ଗୋଟାଏ ଦୋଷ । ଏବଂ ଆଜି ଗୋଟାଏ ସୁଯୋଗ ମିଳିଛି ସେହି ଭୀରୁରୁ ମୁକ୍ତ ହେବା ପାଇଁ ।

ଗଗନବାବୁ ସ୍ଥିର କଲେ ଯେ ଆଜି ସେ ତାଙ୍କର ଗୋଟାଏ ପ୍ରେମକୁ ସ୍ୱୀକାର କରିବେ । ଅନ୍ୟ ଏକ ପ୍ରେମ, ଯାହାକୁ ସେ ପ୍ରାୟ ଭୁଲିଯାଇଥିଲେ କହିଲେ ଚଳେ । ଏତେ ପ୍ଲାଟୋନିକ୍ । ଏତେ ମହାନ୍ ସେଇ ପ୍ରେମ, ଯେ ତା'ର ଅସୁବିଧା ହେଲା ରହିବା ପାଇଁ ତାଙ୍କ ଭଗ୍ନପ୍ରେମ ଅଧ୍ୟୁଷିତ ଚଦାକାଶରେ ? ସତ ! ଆଜି ମୁଁ ତାକୁ ଫେରାଇ ଆଣିବି । କେବଳ ମନ ଭିତରେ ନୁହେଁ, ପ୍ରକାଶ୍ୟରେ ! ମୁଁ ତାକୁ ସ୍ୱୀକାର କରିବି, ନିଜ

ଆଗରେ, ପତ୍ନୀଙ୍କ ଆଗରେ, ସାରା ପୃଥିବୀ ସାମ୍ନାରେ । ଏଇ ହେଉ ମୋର ଭୟ-ଶୂନ୍ୟତାର ପ୍ରଥମ ପଦକ୍ଷେପ, ପ୍ରଥମ ପରୀକ୍ଷା । ଆଉ ଦେଖିବ ମୁଁ ସେଥିରେ ଜିତୁଛି ନା ହାରୁଛି । ···ଗଗନବାବୁ ଅଧିକରୁ ଅଧିକ ଉତ୍ତେଜିତ ହେଲେ ।

କାରଣ ଆଜି ମୁଁ ଯିବ ସତୀଚଉରାକୁ । ଖବରକାଗଜର ସ୍ତମ୍ଭରେ ଜଣେ ନାରୀକୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରାଯାଇଛି ତାଙ୍କ ଆତ୍ମୀୟସ୍ୱଜନଙ୍କ ତରଫରୁ । ତାଙ୍କ ଅଷ୍ଟାଦଶ ଶ୍ରାଦ୍ଧ ଦିବସରେ ।

ମୁଁ ମଧ୍ୟ ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରିବ । ତାଙ୍କ ସମାଧିରେ ଫୁଲ ଚଢ଼େଇ ନମସ୍କାର କରିବ । ମୁଁ ତାଙ୍କ ଆତ୍ମୀୟରୁ ବଳି ଆତ୍ମୀୟ, ଯେହେତୁ ମୁଁ ତାଙ୍କୁ ଭଲ ପାଉଥିଲି । ପୂର୍ଣ୍ଣଚ୍ଛେଦ ।

ମୁଁ ଡାକ୍ତର କାଦମ୍ବିନୀ ପରିଡ଼ାଙ୍କୁ ଭଲପାଉଥିଲି ।

ମୁଁ କାଦମ୍ବିନୀକୁ ଭଲପାଉଥିଲି ।

ମୁଁ ଅନ୍ୟତମ 'ମଉସା'ଙ୍କ ଝିଅ ବିନକୁ ଭଲପାଉଥିଲି ।

ମୁଁ ଏଇ ସତ କଥାଟିକୁ ସ୍ୱୀକାର କରିବ ସର୍ବଜନ ସମ୍ମୁଖରେ । ଆଉ ପ୍ରଥମେ ତା'ର ଘୋଷଣା କରିବ ମୋ ସ୍ତ୍ରୀଙ୍କ ଆଗରେ । ହେଲା ?

ଏବଂ ସତରେ ସେ ସେଇୟା କଲେ । ପତ୍ନୀଙ୍କ ଆଗରେ ଘୋଷଣା କଲେ ଯେ ଆଜି ସେ ସତୀଚଉରାକୁ ଯିବେ । ଏବଂ ବଗିଚାରୁ କେତୋଟି ଗେଣ୍ଡୁଫୁଲ ନେଇ ଯିବେ, ଜଣକ ସମାଧିରେ ଅର୍ପଣ କରିବାପାଇଁ । କାରଣ ଆଜି ତାଙ୍କର ଶ୍ରାଦ୍ଧ ଦିବସ ।

"ଆଚ୍ଛା ?" ପତ୍ନୀ ପଚାରିଲେ, ଈଷତ୍ ବିସ୍ମିତ ହୋଇ, "କିଏ ସେ ଭଦ୍ରଲୋକ ?"

"ଭଦ୍ରଲୋକ ନୁହେଁ, ଭଦ୍ରମହିଳା ।" ଗଗନବାବୁ କହିଲେ ଗମ୍ଭୀର ସ୍ୱରରେ "ଡାକ୍ତର କାଦମ୍ବିନୀ ପରିଡ଼ା ।"

—"ତମେ ତାଙ୍କୁ କିପରି ଜାଣିଲ ? କିନ୍ତୁ ସେ ତ ତମ କ୍ଲାସ୍‌ମେଟ୍ ହୋଇ ନ ଥିବେ ?"

"ମୋଠୁଁ ଯୋଡ଼ାଏ ଉପର କ୍ଲାସ୍‌ରେ ଥିଲେ, ମୋର ଯେତେଦୂର ମନେ ପଡ଼ୁଛି···"

"ତା' ମାନେ କ'ଣ ସେ ତୁମର ଗାର୍ଲଫ୍ରେଣ୍ଡ୍ ଥିଲେ ?" ପତ୍ନୀଙ୍କ ଓଠରେ ଚତୁର ମଧୁର ହସ ।

କିନ୍ତୁ ଗଗନବାବୁ ତାଙ୍କ ରସିକତାରେ ଭୁଲିଗଲେ ନାହିଁ । ତାଙ୍କ ଗମ୍ଭୀର ମୁଦ୍ରାକୁ ଅକ୍ଷୁଣ୍ଣ ରଖିଲେ, ଏବଂ କହିଲେ, "ଗାର୍ଲଫ୍ରେଣ୍ଡ୍ ନୁହେଁ, ମାନେ ସାଧାରଣ ଅର୍ଥରେ ଯାହାକୁ ଗାର୍ଲଫ୍ରେଣ୍ଡ୍ କୁହାଯାଏ । ମୁଁ ତାକୁ ଭଲ ପାଉଥିଲି ।"

"ଆଇ ସି..." ପତ୍ନୀ କହିଲେ ଅନୁରୂପ ଗମ୍ଭୀରତା ଦେଖାଇ । କିନ୍ତୁ ଗଗନବାବୁଙ୍କର ମନେହେଲା ଯେ ତାହା କୃତ୍ରିମ, କୌତୁକକୁ ଘୋଡ଼ାଇ ରଖିବାର ପ୍ରଚେଷ୍ଟା ।

ଗଗନବାବୁଙ୍କୁ ଦୁଃଖ ଲାଗିଲା । ବୁଢ଼ାଙ୍କ ମୁହଁରେ ପ୍ରେମ ଜିନିଷଟା ଜୋକ୍ ପରି ମନେହୁଏ କାହିଁକି ? ପ୍ରେମର ଆବେଗ କ'ଣ କେବଳ ଦେହକୁ ନେଇ ଗଢ଼ା ? ତା'ଛଡ଼ା ସେମାନେ କ'ଣ ଦିନେ ଟୋକା ହୋଇନଥିଲେ ନା ତାଙ୍କର ଯୋଗ୍ୟତା ନଥିଲା ସମସ୍ତ ସମ୍ପୂର୍ଣ୍ଣ ଅଙ୍ଗରେ ପ୍ରେମ କରିବା ପାଇଁ ? ବିଶେଷତଃ ତମେ ପତ୍ନୀ ମହୋଦୟା, ତମେ ବି ତ ଆସି ବୁଢ଼ୀ ହେଲଣି, ତମକୁ କଥାଟା ଏତେ କଉତୁକିଆ ଲାଗୁଛି କାହିଁକି ? ଦଶ ପନ୍ଦର ବର୍ଷ ତଳେ ମୁଁ ଯଦି ଏଇ କଥା କହି-ଥାଆନ୍ତି, ତମେ କେମିତି ତମତମ କି ଅମଥମ ହୋଇଥାଆନ୍ତ ମୁଁ ବେଶ୍ ଅନୁମାନ କରିପାରୁଛି । କିନ୍ତୁ ଆଜି ଏମିତି କ'ଣ ହୋଇଗଲା କି ? ପୁରୁଣା ସତଟା ମିଛ ହୋଇଗଲା ପଛକୁ ପଳେଇ ଯାଇଛି ବୋଲି ? ମୂର୍ଖତାର ଗୋଟାଏ ସୀମା ଅଛି ।

ନୁହ ନୁହ, ଏତିକିରେ ସରିଲା ନାହିଁ । ଏଇଠୁଁ ଆରମ୍ଭ । ସ୍ତ୍ରୀ' ଘରେ ପରେ ମୁଁ କହିବ ମୋର ସମସ୍ତ ପ୍ରେମ କାହାଣୀ । ଠିକିନଖି କରି କହିବ । ଜୟନ୍ତୀ, ପୂର୍ଣ୍ଣିମା, ସତ୍ୟବତୀ ଓଗେରଙ୍କ କଥା ସଫେଇ ଦେବ ନାହିଁ, କ୍ଷମା ମାଗିବ ନାହିଁ, କି ବଢ଼େଇ କରିବେ ନାହିଁ । କହିବ ଯାହାସବୁ ଘଟିଛି, କାରଣ ତାହାହିଁ ସତ୍ୟ । ଏବଂ ସତ୍ୟକୁ ଭୟ କରିବା ଅନ୍ୟାୟ ଏବଂ ସେହି ଅଯଥା ଅନାବଶ୍ୟକ ଭୟକୁ ମୁଁ ଆଜି ନାଶ କରିବାକୁ ଯାଉଛି । କ'ଣ ବୁଝୁଛ ମୁଁ ଯାହା କହୁଛି ?

ତମେ ମୋତେ ସୁଯୋଗ ଦେଉନାହଁ କହିବା ପାଇଁ, ତମ ମିଛ ନିର୍ବିକାରପଣର ଢଙ୍ଗ ଦେଖାଇ । ନହେଲେ ମୁଁ କହିଥାଆନ୍ତି, ଅବଶ୍ୟ କହିଥାଆନ୍ତି ଯେ ମୁଁ ବିନାର ଦେହରେ ହାତ ଦେଇନାହିଁ ସିନା, ମୁଁ ତାକୁ ସ୍ୱତମତ ଭଲପାଉଛି । କାରଣ ତା' ସାଙ୍ଗରେ ଦେଖା ହେଲେ ମୋ ଛାତିଟା ଧପ୍‌ଧପ୍ ହୁଏ । ଖାଲି ଟୋକାବେଳେ ନୁହେ, ପରଜୀବନରେ ଓ ବାହାହେଲା ପରେ ମଧ୍ୟ । ଏବଂ ହଠାତ୍ ପାଟିରୁ କଥା ବାହାରେ ନାହିଁ । ଏବଂ ବାହାରିଲାକ୍ଷଣି କୁଆଡ଼େ ବୋଲି କୁଆଡ଼େ ମାଡ଼ିଯାଏ । ତା'ର ସ୍ଫୀତବକ୍ଷ, ବିଶାଳ ଆଖିର ଦୀପ୍ତ ଚାହାଣି, ପ୍ରଶାନ୍ତ ବଦନର ସ୍ନିଗ୍ଧ ହାସ, ସେଇଠୁଁ ତା'ର ଭଗ୍-କଳାହୀ କଣ୍ଠର ସମାନ୍ୟ କୁଶଳ ପ୍ରଶ୍ନଟିକ, "ଆଉ କ'ଣ ଖବର ଗଗନବାବୁ ?"

ମେଉଥିରେ ମୁଁ ଅଭିଭୂତ ହୋଇପଡ଼େ । ଏବଂ ବକର ବକର ହୁଏ ମୋର ଯେତେକ ଜରୁରୀ କାମକୁ ଭୁଲିଯାଇ । ଏଇଆକୁ ଯଦି ପ୍ରେମ ନକହିବ, ଆଉ କହିବ କାହାକୁ ?

କେତେକ ତାକୁ ଗଜଗମନା ବୋଲି କୁହନ୍ତି, ତା' ଦେହର ବିପୁଳତାକୁ ଆକ୍ଷେପ କରି । କେତେକ ମଧ୍ୟ କୁହନ୍ତି, କୋଉ ହିସାବରେ କୁହନ୍ତି ଭଗବାନଙ୍କୁ ଜଣା, ଯେ ସେ ଅଳ୍ପବୁଦ୍ଧିଆ ଗ୍ରେଡେଇ କରି ଗୃଲେ । କିନ୍ତୁ ଏହି ପ୍ରକାର କୌଣସି ଅବଗୁଣ ମୋ ଆଖିରେ ପଡ଼େ ନାହିଁ । ଯ୍ୱା'କୁ ଯଦି ପ୍ରେମ ନ କହିବ, ତା'ହେଲେ ବୁଝିବାକୁ ହେବ ଯେ ତମ ମାନସିକତାରେ ଗୋବର ଛଡ଼ା ଆଉ କିଛି ଥିବାର ସମ୍ଭାବନା ନାହିଁ ।

ଡାକ୍ତରାଣୀ ହିସାବରେ ବି ବେଶ୍ ନାଁ କରିଥିଲି ଝିଅଟା । କିନ୍ତୁ ବିଗୃଷ୍ଟି ମରିଗଲା ହଠାତ୍, ଅଳ୍ପ ବୟସରେ । କିନ୍ତୁ ମୁଁ ସେତେବେଳେ ବାହାରେ ଥିଲି. ନହେଲେ ନିଶ୍ଚୟ ଆସିଥାନ୍ତି ଶେଷ ଦର୍ଶନ ପାଇଁ । ବୁଜି ହୋଇ ରହିଥିବ ତା'ର ସେଇ ବିଶାଳ ଆଖି ଦିଓଟି ଚିରଦିନ ପାଇଁ···ଗଗନବାବୁ ଏକ ଦାରୁଣ ବ୍ୟଥା ଅନୁଭବ କଲେ ତାଙ୍କ ଗ୍ରୁଡିରେ । ଏବଂ ଅବିଳମ୍ବେ ସେଠିକି ଯିବେ ବୋଲି ବସିଲେ । ପ୍ରଥମେ ଗେଣ୍ଡୁଫୁଲ, ସରସ ସତେଜ ଓଜନିଆ ଗେଣ୍ଡୁଫୁଲ, ଯାହା ମୋ ବଗିଗୃର ବିଶେଷତ୍ୱ । ଅନ୍ତତଃ ପନ୍ଦର କୋଡ଼ିଏଟି ନେବାକୁ ହେବ । ତାକୁ ବିଛେଇ-ଦେବି, ସଜେଇଦେବି ତା' ପାଦଦେଶରେ, ସମାଧିର ଗୃରିପାଖରେ ।

ମୁଁ ଜାଣେ ସତିଚଉରିରେ ତା'ର ସମାଧି କରାଯାଇଛି । ଏବଂ ଜାଣିଛି ସେ କେଉଁଠି ଅଛି । ଶ୍ମଶାନର ଶେଷ ମୁଣ୍ଡରେ, ପଶ୍ଚିମ ଦିଗକୁ । ମୁଁ ଥରେ ଯାଇଥିଲି ସେଠିକି ଦି'ତିନି ବର୍ଷ ତଳେ, ମୋର ମଉସା ସ୍ୱର୍ଗତ ଦିବାକର ଦାସ୍‌ପଟ୍ଟନାୟକ, ଏମ୍. ଏ., ବି. ଏଲ୍, ସ୍ୱନାମଧନ୍ୟ କଲେକ୍ଟର ଓ ଜିଲ୍ଲା ମାଜିଷ୍ଟ୍ରେଟ୍ (ଯାହାଙ୍କ ଖୋଲା ହୋଇ ଲେଖା ହୋଇଛି ତାଙ୍କ ସମାଧିର ମାର୍ବଲ୍ ପଥର ଫଳକରେ)ଙ୍କର ଶ୍ରାଦ୍ଧ ଦିବସରେ । ଅକଳିଆରେ ଚଢ଼ି ଯାଇଥିଲି ବନ୍ଲୁଭାଇହେବିକାଙ୍କ ଗହଣରେ । ସେଇଠି ବୁଲୁବୁଲୁ ଦେଖିଥିଲି ତା'ର ସମାଧି । ଦୂରେଇ ହୋଇ ରହିଛି, ଏକୁଟିଆରେ । ମହା ମହା ନେତା, ଲେଖକ, ସମାଜସେବକ, ଗୁଣୀଜ୍ଞାନୀଙ୍କ ଗହଳରେ ନ ପଶି କୋଉ କୋଣରେ ଲୁଚି କରି ବସିଲା ପରି । ଯେ—ମୋତେ କାହିଁକି ଏତେ ଶୀଘ୍ର ଉଠାଇଆଣିଲ ଭଗବାନ ? ବେଶୀ ଦିନ ବଞ୍ଚିଥିଲେ ହୁଏତ ମୁଁ ଏମାନଙ୍କ ପରି ଧ୍ୱଜା ଉଡ଼େଇ ପାରି ନଥାନ୍ତି । ତଥାପି ଆହୁରି କେତେ ରୋଗୀଙ୍କର ଉପକାର କରିପାରିଥାଆନ୍ତି, ଏବଂ ଅନେକ ନିରୋଗୀଙ୍କୁ ଆନନ୍ଦ ଦେଇ ପାରିଥାଆନ୍ତି, କେବଳ ତାଙ୍କ ପାଖକୁ ଆସି 'ଆଉ କ'ଣ ଖବର ?' ବୋଲି ପଗୃରିବାରେ । ଦୁଃଖ ନାହିଁ ବିନ, ଦେଖେ କାହିଁ କେତେ ବର୍ଷପରେ ତୋର ଜଣେ ନୀରବ ପ୍ରେମୀ

ଆସିଛୁ ତୋ ପାଖକୁ, ତା'ର ଶ୍ରଦ୍ଧାଞ୍ଜଳି ବାଢ଼ିଦେବା ପାଇଁ । ତା'ର ପ୍ରେମକୁ ସ୍ୱୀକାର କରିବା ଲାଗି । ଏଇଥିରୁ ଦେଖିନୁ ତୋର ଆକର୍ଷଣର ଶକ୍ତି କେତେ ଦୂର, କିଭଳି କାଳଜୟୀ ?…ଗଗନବାବୁ ଉଦ୍ୟତ ହେଲେ ସେଠିକି ଯିବା ପାଇଁ ।

କିନ୍ତୁ ଫୁଲତୋଳା ଆରମ୍ଭ ନକରୁଣୁ ସେ ଅଟକି ଗଲେ । କାରଣ ଗୋଟାଏ ଖାସା ବିଚାର ତାଙ୍କ ମୁଣ୍ଡରେ ପଶିଲା । ଭାବିଲେ—ଆରେ ମୁଁ ଏଇକ୍ଷଣି ଯିବି କାହିଁକି, ଏଇ ସକାଳଟାରୁ ? ଏଇକ୍ଷଣି ତ ତା'ର ଆତ୍ମୀୟସ୍ୱଜନ ଯାଇଥିବେ ସେଠିକି, ଯେଉଁମାନେ ବିଜ୍ଞାପନ ଦେଇଛନ୍ତି ଖବରକାଗଜରେ । ବାହା ତ ହୋଇ ନଥିଲା ମଲାଯାଏଁ, ମୁଁ ଯେତେଦୂର ଜାଣେ । ତେଣୁ ତା'ର ଭାଇଭଉଣୀ ପୁଅଝିଅ ଓଗେର ଭିଡ଼ ଜମେଇ ଥିବେ ସେଠି, ତାଙ୍କ ଆତ୍ମୀୟତା ଜାହିର କରିବାଲାଗି । ବିଜ୍ଞାପନର ଯଥାର୍ଥତା ପ୍ରତିପାଦନ କରିଲା ପରି । କିନ୍ତୁ କହିବା ବାହୁଲ୍ୟ ଯେ ମୁଁ ତାଙ୍କ ଦଳରେ ନାହିଁ । ମୋ ଭଲ ପାଇବାର ରଙ୍ଗ ନିଆରା, ତା'ର ମୂଲ୍ୟ ନିଆରା ।

ଏହି ପ୍ରକାର ବିଚାରପୂର୍ବକ ସେ ତାଙ୍କ ଉଦ୍ୟମକୁ ସ୍ଥଗିତ ରଖିଲେ, ବର୍ତ୍ତମାନ ପାଇଁ । ଠିକ୍ କଲେ ଯେ ସେ ଆଜି ଉପରବେଳା ଯିବେ । ପତ୍ନୀଙ୍କୁ ମଧ୍ୟ ଜଣେଇ-ଦେଲେ ତାଙ୍କ ନିର୍ଣ୍ଣୟ । କିନ୍ତୁ ପତ୍ନୀ ତାଙ୍କୁ ସମର୍ଥନ କରି ଗୋଟାଏ ଅବାନ୍ତର କଥା କହିଲେ । କହିଲେ, "ହଁ, ଉପରବେଳା ଯିବ, ଖରାଟା ନଇଁଯାଉ ଟିକିଏ ।"… ହୁଁ଼, କୋଉ ଖରା ଏତେ ପ୍ରଚଣ୍ଡ ନୁହେଁ ଯେ ବଳିଯିବ ତାଙ୍କ ପ୍ରେମ ଆବେଗର ତାତିକୁ ।

ଯାହାହେଉ, ଗେଣ୍ଡୁ ଫୁଲରେ ଭରିଯାଇଥିବା ଫୁଲଡାଲିଟିକୁ ନେଇ ସେଠି ପହଞ୍ଚିଲା ବେଳକୁ ଖରାଟା ବେଶ୍ ନଇଁଗଲାଣି । ଗଗନବାବୁ ରିକ୍ସାକୁ ଛାଡ଼ିଦେଲେ । ଇଏ ତରବରିଆ କାମ ନୁହେଁ । ଉପଚାର ନୁହେଁ, ସଭାସମିତିରେ ଯେମିତି ହୁଏ । ପ୍ରତିକୃତିରେ ଫୁଲଟିଏ ଚଢ଼େଇ ନମସ୍କାର କର । ବାସ୍, କାମ ସରେ, ବର୍ତ୍ତମାନ ମଞ୍ଚକୁ ଫେରିଆସି ସଭାକାର୍ଯ୍ୟ ଆରମ୍ଭ କରାଯାଉ । ନା, ଏଠି ସମୟ ଲାଗିବ, ବେଶ୍ କିଛି ସମୟ ଲାଗିବ ।

କିନ୍ତୁ ସଶାନଘରର ଫାଟକ ପାଖରେ ପହଞ୍ଚିଲାବେଳକୁ ସେ ଗୋଟାଏ ଅସାଧାରଣ ଦୃଶ୍ୟର ସମ୍ମୁଖୀନ ହେଲେ । ଲୋକବାକ କେହି ଦିଶୁନାହାନ୍ତି କୁଆଡ଼େ । ହେଲେ ଗୁଡ଼ାଏ ଗାଈ ଜମା ହୋଇଛନ୍ତି ଫାଟକର ସେପାଖରେ, ଏବଂ ବାହାରକୁ ପଳେଇ ଆସିବା ଲାଗି ଚେଷ୍ଟା କରୁଛନ୍ତି ।

କ'ଣ କରାଯିବ ତା'ହେଲେ ?

ଗଗନବାବୁ ନିଜ ଉପରେ ବିରକ୍ତ ହେଲେ । କ'ଣ ପ୍ରତ୍ୟେକ ନୂଆ ପରିସ୍ଥିତି ଗୋଟାଏ ସମସ୍ୟା ହୋଇ ଠିଆହୋଇଯାଉଛି ତମ ଆଗରେ ଯେ ତା'ର ଗୋଟାଏ ସମାଧାନ ଦରକାର ? ନା କହିବାକୁ ଚାହଁ ଯେ ଗାଈମାନଙ୍କୁ ବି ତୁମେ ଭୟ କର ?

ଯାନ୍ତି, ଆଗେଇଯାଅ, ଖୋଲିଦିଅ ଫାଟକ, ଏବଂ ଆଡ଼େଇ ହୋଇଯାଅ। ସେଇଠୁ ଗାଈମାନେ ପଦାକୁ ବାହାରି ଆସିବେ, ଆଉ ତମେ ସ୍ୱଚ୍ଛନ୍ଦରେ ପଶି ଯାଇପାରିବ ସମାଧିର ପ୍ରାଙ୍ଗଣ ଭିତରକୁ, ଏବଂ ଫୁଲ ଚଢ଼େଇବ ତୁମର ନିର୍ଦ୍ଦିଷ୍ଟ ସମାଧିରେ।

ତେବେ ଭାବନା ଓ କାର୍ଯ୍ୟ ମଧ୍ୟରେ ଯେଉଁ ବ୍ୟବଧାନ ରହିଥାଏ, ତା'ରି ଭିତରେ ଅନ୍ୟ ଏକ ଭଦ୍ରବ୍ୟକ୍ତିଙ୍କର ଆବିର୍ଭାବ ହେଲା, ଏବଂ ସେ ପଛରୁ ପାଟିକରି ଉଠିଲେ—

"ଆରେ ଆରେ, ସ୍ୟେ କ'ଣ କରୁଛନ୍ତି ? ଗାଈମାନେ ପଳାଇଯିବେ ଯେ !"

ଗଗନବାବୁ ମୁହଁ ଫେରାଇ ଗୋଟାଏ ଚିହ୍ନା ମୁହଁ ଦେଖିଲେ। ଏବଂ କ୍ରମଶଃ ଚିହ୍ନିଲେ। କ୍ରମଶଃ, କାହିଁକି ନା ଏଇ ପ୍ରକ୍ରିୟାରେ କିଛିଟା ସମୟ ଲାଗୁଛି ଆଜି-କାଲି। ହିଁ, ଇଏ ହେଉଛନ୍ତି ଜଣେ ସମବୟସ୍କ, ହୁଏତ ସହପାଠୀ, ନାଗରିକ। ବିଷ୍ଣୁ ମିଶ୍ର, ଓକିଲ। ବନ୍ଧୁ ନୁହଁନ୍ତି, କିନ୍ତୁ ନମସ୍କାରଟାଏ ପକାନ୍ତି ଯେତେବେଳେ ରାସ୍ତା-ଘାଟରେ ଦେଖା ହୋଇଯାଏ ମଝିରେ ମଝିରେ। ଏବଂ ତା'ପରେ କେମିତି ଗୋଟାଏ ତଳେଇ କରି ଅନାନ୍ତି ତମ ଆଡ଼କୁ, ସତେକି ଚିହ୍ନିଲେ ମଧ୍ୟ ସେ ତମକୁ ଆଉ ଟିକିଏ ଭଲ ଭାବରେ ଦେଖିବାକୁ ଚାହାନ୍ତି, କେଉଁ ନୂଆ ଉପସର୍ଗର ପରିଚୟ ପାଇଲା ପରି। ଆଜି ମଧ୍ୟ ସେଇଆ, କିନ୍ତୁ ପରେ ପରେ ଗୋଟାଏ ଭାଷଣ ଶୁଣାଇଲେ—"ଗାଈ-ମାନଙ୍କୁ ଏଠି ଜାଣିଶୁଣି ଛଡ଼ା ହୋଇଛି ପରା, ବୁଝୁ ନାହାନ୍ତି ? ଫିଟିଗଲେ ତାଙ୍କୁ ଜଗିବ କିଏ ? ଆଉ ସେ ଆପଣଙ୍କୁ ଶୋଧିବ ନାହିଁ ମନେ ମନେ ?" ତାଙ୍କର ମଇଳା କସରା ଦାନ୍ତର ଅଧା ହସ ଭଲ ଲାଗିଲା ନାହିଁ ଗଗନବାବୁଙ୍କୁ।

"ଆସନ୍ତୁ, ଡରିବାର କିଛି ନାହିଁ", ଏହା କହି ବିଷ୍ଣୁବାବୁ କାଇଦାରେ ଫାଟକକୁ ଧୀରେ ଧୀରେ ଫିଟାଇ ଗାଈମାନଙ୍କୁ ଘଉଡ଼ାଇଦେଲେ ଭିତରକୁ। ଏବଂ ଗଗନବାବୁଙ୍କୁ ତଥା ନିଜକୁ ସମାଚଉହଦିର ହତା ଭିତରକୁ ନେଇଆସି ଫାଟକ ବନ୍ଦ କରିଦେଲେ। ସମସ୍ୟାର ସମାଧାନ ହେଲା। ଯଦିଓ କହିବା ବାହୁଲ୍ୟ ଯେ ଘଟଣାଟା ଆଦୌ ରୁଚିକର ହୋଇ ନଥିଲା ଗଗନବାବୁଙ୍କ ପାଇଁ।

ବିଷ୍ଣୁବାବୁଙ୍କର ଆଖି ପଡ଼ିଲା ଗେଣ୍ଡୁଫୁଲର ପାଛିଆ ଉପରେ। ପ୍ରଶ୍ନ କଲେ, "କିଏଣ କାହାର ସମାଧି ଉପରେ ଚଢ଼ାଇବା ପାଇଁ ଆଣିଛନ୍ତି ?"

"ହିଁ।" ଗଗନବାବୁ ତାଙ୍କ ଉତ୍ତରକୁ ହେତୁକରେ ରଖିଲେ। ଯେମିତିକା ଅବାନ୍ତର ପ୍ରଶ୍ନ, ତାଙ୍କୁ ଅଧିକ ସମ୍ମାନ ଦେବା ଉଚିତ ନୁହେଁ। କିଓ, ଫୁଲ କେଉଁଥି-ପାଇଁ ଆସେ ସମାଚଉହଦିକୁ ? ତା' ସାଙ୍ଗରେ ବସି ଖେଳିବା ପାଇଁ ?

କିନ୍ତୁ କେବଳ ସେଇ ଦି'ଜଣ ସମାଚଉହଦି ଭିତରେ ରହିଥିଲେ ସେତେ-ବେଳେ, ଅବଶ୍ୟ ଗାଈମାନଙ୍କୁ ଛାଡ଼ିଦେଇ। ଉପରେ ଉଦାସ ଅପରାହ୍ଣ, ଏବଂ ତଳେ

ନୀରବ ନିଶ୍ଚଳ ସମାଧିଙ୍କ ମେଳା । ପରସ୍ପରକୁ କଥା ନକହି ରହିହେବ କେତେ ସମୟ ? ତା'ଛଡା ଲୁଚ୍ଚାଚୋରା କିଛି ନାହିଁ । ମୋର ଉଦ୍ଦେଶ୍ୟଟା କ'ଣ ବୋଲି ବୁଝନ୍ତୁ ଏଇ ଲୋକଟା । ଏହି ଭାବରେ ଗଗନବାବୁ ପ୍ରରୋଚିତ ହେଲେ କଥାଟାକୁ ଛୁଆଁଇଦେବା ଲାଗି । କହିଲେ—

"ମୁଁ ଆସିଥିଲି ଡକ୍ଟର କାଦମ୍ବିନୀଙ୍କ ସମାଧିରେ ଫୁଲ ଚଢ଼ାଇବା ପାଇଁ । ଆଜି ତାଙ୍କର ଶ୍ରାଦ୍ଧ ଦିବସ । ଆଉ ଆପଣ ?"

"ମୁଁ ଏମିତି ଏଠିକି ଆସେ ମଝିରେ ମଝିରେ । ପ୍ରାୟ ସମସ୍ତେ ମୋର ଶ୍ରଦ୍ଧା ଓ ଭକ୍ତିର ପାତ୍ର । ଆସେ ସେମାନଙ୍କୁ ଧ୍ୟାନେ କରିବା ପାଇଁ, ଆଉ ଫେରିଯାଏ କିଛି ସମୟ ପରେ ··ଭାରି ବଢ଼ିଆ ହୋଇଛି ଆପଣଙ୍କର ଏଇ ଫୁଲସବୁ । କିଣିଛନ୍ତି, ନା ଆପଣଙ୍କ ବଗିଚାର ?"

"ମୋ ବଗିଚାର", ଗଗନବାବୁ କହିଲେ ଗର୍ବର ସହିତ ! "ଦେବି ଦି'ଟା ଆପଣଙ୍କୁ ?"

"ନୋ, ଥ୍ୟାଙ୍କସ୍ ।"

ଠିକ୍ ଅଛି, ମୋର ଗରଜ ପଡ଼ିଛି ତମକୁ ଦେବାପାଇଁ ! ମୋ ଫୁଲ ମୋର, ତଥା ତା'ର ଗ୍ରହୀତା । କିନ୍ତୁ ତମେ ଥରେ ହେଲେ କେମିତି ପଚାରିଲ ନାହିଁ ସେ ମୋର କ'ଣ ହୁଅନ୍ତି ବୋଲି ? ଜ୍ଞାତି, କୁଟୁମ୍ବ ହୋଇ ନଥିବେ, କାରଣ ମୁଁ ଦାସପଟ୍ଟନାୟକକୁ ସେ ଥିଲେ ପଣ୍ଡା । ତଥାପି ତମର କୌତୂହଳ ହେଉନାହିଁ ଜାଣିବା ପାଇଁ ? କିନ୍ତୁ ପଚାରିଥିଲେ ମୁଁ ସିଧାସଳଖ କହିଦେଇଥାଅନ୍ତି ତମକୁ ଯେ ମୁଁ ତାଙ୍କୁ ଭଲ ପାଉଥିଲି । ପଣ୍ଡିକୁ କହିପାରିଲି, ଆଉ ତମପରି ଜଣେ ଇତରସାଧାରଣ ବାହାର ଲୋକକୁ କହିପାରି ନଥାଆନ୍ତି ? ଠିକ୍ ଅଛି, ଆଇ କୁଡ୍ ନଟ୍ କେୟାର୍-ଲେସ୍" । ଗଗନବାବୁ ଦୃଢ଼ ପଦକ୍ଷେପରେ ଅଗ୍ରସର ହେଲେ ଡକ୍ଟର କାଦମ୍ବିନୀ ପଣ୍ଡାଙ୍କ ସମାଧି ଆଡ଼କୁ ।

ଗାଈମାନଙ୍କ ଭିତରୁ କେଇଟା ଫାଟକ ପାଖରେ ପଇଁତରା ମାରୁଥିଲେ, କାଳେ କେଉଁ ଦୟାଳୁ ପୁଣି ଆସି ପହଞ୍ଚିବ ଫାଟକ ଖୋଲିଦେବା ପାଇଁ । କିନ୍ତୁ ଅଧିକାଂଶ ଭାଗ୍ୟକୁ ଆଦରି ଘାସ ଚରୁଥିଲେ । ମାନେ ଯେଉଁ ନାମ ମାତ୍ର ଘାସ ଠାଏ ଠାଏ ଲାଗି ରହିଥିଲା ଶ୍ମଶାନର ଲୁଖୁରା ଭୂଇଁରେ, ସେଥିରେ ମୁହଁ ଲଗାଉଥିଲେ, ଏବଂ କ୍ଷଣକରେ ବୋର ହୋଇ ଉଠିଯାଉଥିଲେ ଆଉ କେଉଁଠିକି । ବିଷ୍ଟୁବାବୁ ଗଲେଣି କୁଆଡ଼େ । ଆକାଶରେ ଟେକାଏ ମେଘ ମଧ୍ୟ ଦେଖାଦେଲାଣି, ଗଗନବାବୁଙ୍କ ପ୍ରେମ ଉପାଖ୍ୟାନକୁ ଘଣ୍ଟ ଘୋଡାଇଲା ପରି ।

ସମାଧିପାଖରେ ପହଞ୍ଚିଲେ ଗଗନବାବୁ । ଦୁ' ମିନଟ୍ ଠିଆହୋଇ ରହିଲେ ତା' ଆଗରେ, ଏବଂ ମନେ ମନେ କହିଲେ—ମୁଁ ତୁମକୁ ଆଜି ସ୍ମରଣ କରୁଛି ବନି । ମୁଁ ତୁମକୁ ଭଲପାଏ । ତୁମର ଆତ୍ମା ଶାନ୍ତିରେ ଥାଉ, ପରମଶାନ୍ତି ଲଭ କରୁ···

ତା'ପରେ ସେ ଫୁଲଗୁଡ଼ିକୁ ଗୋଟି ଗୋଟି କରି କାଢ଼ିଲେ ତାଙ୍କ ପାଛିଆ ଭିତରୁ, ଏବଂ ତାକୁ ସଜାଇବାକୁ ଲଗିଲେ ତାଙ୍କ ପରିକଳ୍ପନା ଅନୁଯାୟୀ । ସମାଧିର ବୃନ୍ତପାଖରେ, ତା'ର ସିମେଣ୍ଟଚଟାଣ ପାଦଦେଶରେ ।

ଗୁଡ୍ । ତାଙ୍କ ମନଟା ପୂରିଗଲା ।···ଯାହା ଭାବିଥିଲି ସେଇଆ କଲି । ଧନ୍ୟବାଦ···ତେବେ ସେ ନିଜକୁ ଧନ୍ୟବାଦ ଦେଲେ କି ଆଉ କାହାକୁ, ବୁଝି ହେଲା ନାହିଁ ।

ଏଥରକି ସିଧାସଳଖ ଫେରିବା କଥା । ଆଉ କ'ଣ କାମ ଅଛି ଏଠି ? ହେଲେ ତାଙ୍କର ମନେ ହେଲା ଯେ ତାଙ୍କର ଉଚ୍ଚାରଣ ଅପୂର୍ଣ୍ଣ ରହିଗଲା । ବନି ଶୁଣିଥିବ ନିଶ୍ଚୟ, ତେବେ ସେ ତ ନିସ୍ପନ୍ଦ, ନୀରବ । କବରସ୍ଥାନର ମଣ୍ଡିପରେ କ'ଣ କେହି ନାହାଁନ୍ତି ଶୁଣିବା ଲଗି, ଭ୍ରାମ୍ୟମାଣ ଗାଈମାନଙ୍କ ଛଡ଼ା ?

ଅଛନ୍ତି । ଅନ୍ତତଃ ବିଷ୍ଣୁ ମିଶ୍ର ଲୋକଟା । ତା'ର ଶ୍ରଦ୍ଧା ସକଳଙ୍କ ଉପରେ ବୋଲି କହୁଛି ସିନା, ସମ୍ଭବତଃ ସେ ବି ଆସିଥିବ ମୋର, ଆଇ ମିନ୍, କାଦମ୍ବିନୀର ସମାଧି ପାଖକୁ । ମୋତେ ଜାଣିଶୁଣି ଲୁଚୁଉଥିବ । ସମସ୍ତେ କ'ଣ ମୋ ପରି ହୋଇଛନ୍ତି, ଯେ ନିଜକୁ ଏମିତି ସ୍ୱଚ୍ଛ ନିର୍ମଳ ରୂପରେ ଦେଖିବାକୁ ଚାହିଁବ, ସଞ୍ଜ ବୁଡ଼ିଲା ପୂର୍ବରୁ ? ମାନେ ଯଦିବା ଭୟ ବୋଲି ଗୋଟାଏ ଜିନିଷ ରହିଛି ନିଜ ଭିତରେ, ତାକୁ ନିର୍ମୂଳ କରିଦେବାର ପଣ କରିବ, ଆପଣାର ଶାନ୍ତିଠାରୁ ବଳି ପ୍ରଶାନ୍ତି ପାଇଁ ।

ସେଇଠୁଁ ତାଙ୍କର ଇଚ୍ଛା ହେଲା ବିଷ୍ଣୁ ମିଶ୍ରଙ୍କୁ ଖୋଜି ଆଣିବେ ତାଙ୍କର ଉଚ୍ଚାରଣକୁ ଶୁଣିବା ଲଗି । ଶୁଣ, ଆଉ ବୁଝ ତା'ର ମହତ୍ତ୍ୱକୁ । କାଦମ୍ବିନୀ ମୋର କିଏ, ଓ ତାଙ୍କ ସଙ୍ଗରେ ମୋର କାଭଲି ସମ୍ପର୍କ, ସେ ବିଷୟରେ କିଛି ନ ପଚାରିଲେ ବି ମୁଁ ତା'ର ସୂଚନା ଦେବି ତମକୁ । ସ୍ପେକ୍‌ଟୋକ୍ ଶବ୍ଦରେ ନ ହେଲେ ମଧ୍ୟ ମୋର ଭାବଭଙ୍ଗୀରେ । ଆସ—

ଯଥାଶୀଘ୍ର ଦେଖାହେଲା ବିଷ୍ଣୁ ମିଶ୍ରଙ୍କ ସାଙ୍ଗରେ, ଏବଂ ଗଗନବାବୁ ଉପରେ ପଡ଼ି ତାଙ୍କୁ ଜଣାଇଦେଲେ ଯେ ତାଙ୍କ କାମ ପୂରା ହୋଇଗଲାଣି । ପୁଣି କହିଲେ ଯେ ସାଧାରଣ ଅର୍ଥରେ ଡାକ୍ତର୍ କାଦମ୍ବିନୀ ତାଙ୍କର ଆତ୍ମୀୟସ୍ୱଜନ ନହେଲେ ମଧ୍ୟ

ତା'ଠାରୁ ଅଧିକ ।···ଏଇଥିରୁ ତମର ବୁଝିବା ଉଚିତ ଯାହା ବୁଝିବା କଥା, ଯଦି ତମେ ନିହାତି ନିର୍ବୋଧ ହୋଇ ନଥିବ ।···'ହେଇ, ଦେଖନ୍ତୁ', ବୋଲି କହି ଗଗନବାବୁ ମୁହଁ ଫେରାଇଲେ, ଏବଂ ଇସାରା କଲେ ଖଣ୍ଡେ ଦୂରରେ ଥିବା କାଦମ୍ବିନୀଙ୍କ ସମାଧି ଆଡ଼କୁ ।

"ହଁ, ମୁଁ ଦେଖିଛି", ବିଷ୍ଟୁବାବୁ କହିଲେ ।

କିନ୍ତୁ ଗଗନବାବୁ ତାକୁ ଦେଖିଲି ମଧ୍ୟ ଦେଖିଲେ ନାହିଁ । ତାଙ୍କ ଚକ୍ଷୁ ବିସ୍ଫାରିତ ହୋଇ ଉଠିଲା । ଘଟଣାଟା କଅଣ ବୁଝିପାରିଲେ ନାହିଁ । ଧାଇଁଗଲେ ସେଠିକି, ବିଷ୍ଟୁବାବୁଙ୍କୁ ପଛରେ ପକେଇ । ଦେଖିଲେ ଯେ ଠିକ୍ ସେଇ ସମାଧି··· କାଦମ୍ବିନୀ ପରିଡ଼ା, ଯେ ଅମୁକ ତାରିଖରେ ଇହଧାମ ତ୍ୟାଗ କଲେ ଆତ୍ମୀୟ-ସ୍ୱଜନଙ୍କୁ ଶୋକସାଗରରେ ଭସେଇଦେଇ । କିନ୍ତୁ ଫୁଲ ବୋଲି ଗୋଟିଏ ନାହିଁ ତା' ପାଦଦେଶରେ । କ'ଣ ହେଲା ?

ବୁଝିବାରେ ବିଳମ୍ବ ହେଲା ନାହିଁ । କାରଣ ସେ ସ୍ୱଚକ୍ଷୁରେ ଦେଖିଲେ ତାକୁ, ସମାଧିର ପଛପଟକୁ ଯାଇ । ଅବଶିଷ୍ଟ ଗୋଟିଏ ମାତ୍ର ଫୁଲକୁ ପାଟିରେ ପକେଇ ଚାଲିଯାଉଛି, ତା' ଲାଙ୍ଗୁଡ଼ ହଲେଇଦେଇ ।

ସବାଖିଆ ଗାଈ ଗୋଟିଏ ଫୁଲ ବି ରଖିଲା ନାହିଁ ! ଆଖି ପିଛୁଡ଼ାରେ ସବୁ ସାଫ୍ କରିଦେଲା !

ବିଷ୍ଟୁବାବୁ ସେଠିକି ଆସି ପହଞ୍ଚିଗଲେଣି ଯେତେବେଳକୁ । ଗଗନବାବୁ ବାଳିବାଳି ହୋଇ ଚାହିଁଲେ ତାଙ୍କ ଆଡ଼କୁ । ଅସହାୟତାର ଭଙ୍ଗୀରେ । କହିଲେ—

"ଏଇଠି ଥିଲା ଆଜ୍ଞା, ଏଇକ୍ଷଣି ଥିଲା । ମୁଁ କେତେ ଚମତ୍କାର ଭାବରେ ସଜେଇଥିଲି ତାକୁ, ମଝିରେ ଗୋଟାଏ ସ୍ୱସ୍ତିକ ବି ଥିଲା, କିନ୍ତୁ ହ୍ୟାପ୍···ମୁଁ ଜାଣି ନଥିଲି ଗାଈଗୁଡ଼ାକ ଫୁଲ ବି ଖାଇଯାଆନ୍ତି !"

"ସବୁ ଖାଇଯାଆନ୍ତି ଆଜ୍ଞା, ସବୁ ଖାଇଯାଆନ୍ତି । କିଛି ବାକି ରଖନ୍ତି ନାହିଁ । ଅବଶ୍ୟ ଆପଣଙ୍କ ହାତ ସମାଧିର ଉପରକୁ ପାଇ ନଥିବ । ତା'ହେଲେ ହୁଏତ ଆପଣଙ୍କ ଫୁଲ ରକ୍ଷା ପାଇ ଯାଇଥାଆନ୍ତା—"

କଥାଟା କଟା ଘା'ରେ ଚୂନ ପରି ଲାଗିଲା ଗଗନବାବୁଙ୍କୁ । ସତେକି ସେ ପ୍ରକୃତରେ ଖର୍ବ, ସବୁ ହିସାବରେ । ନହେଲେ ତାଙ୍କର ଏଭଳି ଦଶା ହୋଇ ନଥାନ୍ତା ।

ବିଷ୍ଣୁବାବୁ ଫେରିଗଲେ କିଛି ସମୟପରେ, ଗଗନବାବୁଙ୍କଠାରୁ ବିଦାୟ ନେଇ । କିନ୍ତୁ ଗଗନବାବୁ ସେଠୁଁ ଚାଲିଯିବାକୁ ଚାହିଁଲେ ନାହିଁ । ତାଙ୍କର ମନେ ହେଲା ଯେ ଏଭଳି ପରାଭବ କ୍ୱଚିତ୍ ଆସେ ମଣିଷର ଜୀବନରେ । ତେଣୁ ତା'ର ଅନୁଭବ ଆବଶ୍ୟକ । ଅନୁଭବରୁ ଅବବୋଧ ।

ସନ୍ଧ୍ୟା ବୁଡ଼ିବାକୁ ବାକି ଥିଲେ ମଧ୍ୟ ଚାହୁଁ ଚାହୁଁ ସନ୍ଧ୍ୟା ହୋଇଆସିଲା ପରି ଲାଗିଲା । ମେଘ ଘୋଟି ହୋଇଗଲାଣି ଆକାଶରେ । ଏବଂ ଆଉ କେହିହେଲେ ନାହାନ୍ତି ଏଠି, ନୀରବ ନିଶ୍ଚଳ ଆତ୍ମୀୟମାନଙ୍କ ଛଡ଼ା । ମୂକ ଗାଈମାନେ ମଧ୍ୟ ସେଇ ନୀରବତାର ସନ୍ଧୀ, ଅବସାନର ଅଂଶବଶେଷ । କାଠଯୋଡ଼ିର କୁଳୁକୁଳୁ ଶୁଭୁଛି କି ? ଧାତ୍, ନଈରେ କୋଉ ପାଣି ଅଛି ଯେ ଶୁଭିବ, ପୁଣି ଏତେ ଦୂରରୁ ? କୋଉ ପିଲାର ପାଟି ଶୁଭୁଛି କି ? ନା, ସବୁ ଭ୍ରମ । ମିଛୁଟାରେ ମନକୁ ଅନ୍ୟ ଆଡ଼କୁ ନେଇଯାଅ ନାହିଁ । ଅନୁଭବ କର । ଏଇ ନିଷ୍କ୍ରୁଣ ନୀରବ ଶେଷ କଥାକୁ …

କେଉଁ ଗୋଟିଏ ସମାଧିର ପାଦଦେଶରେ ବସି ରହିଥିଲେ ସେ । ଏବଂ ନିଶ୍ଚିହ୍ନତାର ବାସ୍ତବ ସତ୍ୟକୁ ଅନୁଭବ କଲେ । ଗଭୀରରୁ ଗଭୀରକୁ ଯାଇ ।

ସେଇଠୁଁ ତାଙ୍କର ମନେହେଲା ଯେ ଡରଭୟ ବି ସବୁ କଟିଯାଇଛି ତାଙ୍କ ମନରୁ । ଆଉ କୌଣସି ପରୀକ୍ଷା ନିରୀକ୍ଷାର ଆବଶ୍ୟକତା ନାହିଁ । ଧନ୍ୟବାଦ ! କାଳ ଗାଈ ସବୁ ସାଙ୍ଗ କରିଦେଇ ଯାଇଛି, ଖାଲି ତାଙ୍କ ଗେଣ୍ଡୁଫୁଲ ନୁହେଁ, ମଧ୍ୟ ଭୟ । ଆଉ ପ୍ରେମ, ମଧ୍ୟ ପ୍ରେମ…

କିନ୍ତୁ ତା'ପରେ ଯେଉଁ ବିଷାଦର ହାବୁକା ଉଠିଲା ତାଙ୍କ ମନରେ, ତାକୁ ସେ ସମ୍ଭାଳିପାରିଲେ ନାହିଁ । କହିଲେ, ନା, ମୁଁ ଏଠି ଆଉ ରହିପାରିବି ନାହିଁ । ମୋତେ ଯିବାକୁ ପଡ଼ିବ ଘରକୁ, ମୋ ପତ୍ନୀ ପାଖକୁ । ମୁଁ ତାକୁ ନିର୍ଭୟରେ କହିବି ସବୁ କଥା, ମୂଳରୁ ଶେଷଯାଏଁ । ଆଜିର ହାସ୍ୟାସ୍ପଦ ଘଟଣାଯାଏଁ । କେମିତି କାଳ ଗାଈ ସବୁ ସାଫ୍ କରିଦେଲା । ନିମେଷରେ ସବୁ କିଛି ନିଶ୍ଚିହ୍ନ କରି ଚାଲିଗଲା । ସେଇଠୁଁ ଆମେ ଦହେଁ ହସିବା ସେଇ ଆବ୍‌ସର୍ଡ଼ର ଅଦ୍ଭୁତକୁ ଅବଜ୍ଞା କଲାପରି । କେବଳ ସେଇ ଔଷଧହିଁ କାଟ୍ କରିବ ଏଇ ଅଳଗା ବିଷାଦକୁ…

ମୁଁ ଜାଣେ ମୋ ପତ୍ନୀ ଯୋଗ ଦେବ ମୋ ସାଙ୍ଗରେ । କାରଣ ସେ ମୋର ପତ୍ନୀ, ଜୀବନସାଥୀ । ସେ ଅନ୍ୟତମ ନାରୀ ନୁହେଁ, କି ତା' ନାଆଁ ଅମୁକ ନୁହେଁ । କାରଣ ତା'ହେଲେ ପ୍ରଶ୍ନ ଉଠିବ ଯେ ତା' ପ୍ରେମ କେଉଁ ଧରଣର ଥିଲା, କେତେଦୂର ନିର୍ମଳ ଥିଲା, କେତେ ଦୂଷିତ ଥିଲା ଅନ୍ୟମାନଙ୍କ ତୁଳନାରେ । ଡାମ୍ ଇଟ୍ ! ସେସବୁ ବାଜେ କଥା । କେବଳ କାଳ ଗାଈ ହିଁ ସତ୍ୟ, ଏବଂ ତା'ର ଭକ୍ଷଣ—

ଯେତେକ ଭୟ, ପ୍ରେମ, ହିଂସା, କରୁଣା ଇତ୍ୟାଦିର ଉଣା ହେଉ କି ଅଧିକ, ଧୋବ ହେଉ କି ମଇଳା । କିନ୍ତୁ ତହୁଁ ତାକୁ ବିବାଦ ବୋଲି ଭାବିବା କାହିଁକି, ବୁଦ୍ଧଙ୍କ ପରି ?

ଆମେ ହସିବା ଗୋ ହସିବା, ଗେଣ୍ଡୁ ଫୁଲଖିଆ ଗାଈକୁ ନେଇ । ମୁଁ, ଅଞ୍ଜ ମୋର ପତ୍ନୀ, ମୋର ସାଥୀ, ସହଧର୍ମିଣୀ । ମୂର୍ତ୍ତିମନ୍ତ ସହ-ଅନୁଭୂତି । ଏବଂ ଆମେ ହସି ଉଡ଼େଇଦେବା ଆମ ବିଷାଦକୁ, ତାକୁ ସମୂଳେ ନାଶ କରିଦେବା ।

ଗଗନବାବୁଙ୍କ କୃତନିଷ୍ଟମ୍ଭ ହସ ପୂରୁ ହୋଇଯାଇଥିଲା ପତ୍ତିତଉସରୁ ବାହାରି ଆସିଲା ବେଳଠୁଁ ।

# ଭୟ, ପ୍ରେମ, ଗେଣ୍ଡୁଫୁଲ ଇତ୍ୟାଦି

'ଇତ୍ୟାଦି' କଥା ଛାଡ଼ନ୍ତୁ । ମୁଖ୍ୟତଃ ଭୟ, ପ୍ରେମ ଓ ଗେଣ୍ଡୁଫୁଲ, ଏଇ ତିନିଟା ଜିନିଷକୁ କାଳଗାଣ୍ଡି ଏକାଧାରରେ ଆତ୍ମସାତ୍ କରିଦେଲା ଆମ ବିଭ୍ରାନ୍ତ ଗଗନବାବୁଙ୍କ ପାଇଁ, ଏବଂ ତାଙ୍କର ଚୈତନ୍ୟୋଦୟ ହେଲା ଯେ ଏଇ ହେଉଛି ଜୀବଦଶାର ଶେଷ କଥା, ସାର କଥା । ପ୍ରଥମେ ତାଙ୍କ ମନ ବିଷାଦରେ ଭରିଗଲା, କିନ୍ତୁ ତା'ପରେ ତାଙ୍କର ମନେହେଲା ଯେ ଦୁଃଖର କାରଣ ନାହିଁ, ଏହାହିଁ ଲୀଳା, ତାମସା, ବାୟୋସ୍କୋପ୍, ମାନେ ଏକ ମିଛମାୟା ଯାହାକୁ କେବଳ ଉପଭୋଗ କରିବା କଥା । ବିଶେଷତଃ 'ଜୀବନସାଥୀ' ସାଙ୍ଗରେ ଏକାଠି ହୋଇ, ସିନେମା ହଲ୍‌ରେ ପାଖାପାଖି ଓ ହାତ ଛନ୍ଦାଛନ୍ଦି ହୋଇ ବସିଲା ପରି । ଚମତ୍କାର ! ଏହାଠାରୁ ବଳି ସୁଖକର ପରିଣତି ଆଉ କ'ଣ ହୋଇ ପାରିଥାଆନ୍ତା ? ଲେଖକ ମହାଶୟଙ୍କୁ ଆନ୍ତରିକ ଧନ୍ୟବାଦ ଦେବା ଉଚିତ, ଗଗନବାବୁଙ୍କ ତରଫରୁ ।

କିନ୍ତୁ କ୍ଷମା କରିବେ, ତଥାପି କେତୋଟି ଭୟ ରହି-ଯାଉଛି ମୋ ମନରେ, ଏବଂ ମୋର ଆଶା ତାହା ଭ୍ରମାତ୍ମକ ବୋଲି ପ୍ରମାଣିତ ହେବ—

ପ୍ରଥମ କଥା, ନୀରବ କିଅର ସଟ୍ଟଚାଉସିରେ ରଚିତ ଏକ ମନୋରମ ସନ୍ଧ୍ୟାର ଅନୁଭବ ଗପଟିର ସାର୍ଥକ କ୍ଲାଇମାକ୍ସ ହୋଇପାରେ, କିନ୍ତୁ ଗଗନବାବୁଙ୍କ ପାଇଁ ଆହୁରି କେତେ ସକାଳ ସଞ୍ଜ ବାକି ପଡ଼ିଛି । ତେଣୁ ମନରେ ସନ୍ଦେହ ଆସେ ଯେ ଏଇ ଅନୁଭବର ଆବେଶ, କିମ୍ବା ଅବବୋଧ ତିଷ୍ଠି ରହିପାରିବ ତ ତାଙ୍କର ଶେଷ ସଞ୍ଜଯାଏଁ ? ଅବବୋଧରୁ କେଉଁ ଉପଲବ୍ଧି ମିଳିବା ଯାଏଁ ?

ସେଇଠୁଁ ବୋଧହୁଏ ଗଗନବାବୁ ବାହାରି ଆସିବେ ସଟ୍ଟଚାଉସିରୁ, ପ୍ରଶ୍ନକର୍ତ୍ତାଙ୍କୁ ଭେଟିବା ଲାଗି । ଓଠରେ ସେଇ

କୃତଜ୍ଞତାମୟ ସ୍ମିତହାସ । ଏବଂ କହିବେ—'ଅବଶ୍ୟ । ହେଲେ କେଉଁଥିପାଇଁ ଆପଣଙ୍କ ମନକୁ ପାପ ଛୁଉଁଛି, କହିପାରିବେ କି ? ସବୁଟିକ କି ମୋର ଅନୁଭବଟା ନିହାତି ହାଲୁକା ଥିଲା ? ନା ଉପରଠାଉରିଆ ?' ତାଙ୍କ ସ୍ମିତହାସ ହୁଏତ ପ୍ରସାରିତ ଏବଂ ଶବ୍ଦାୟିତ ହୋଇ ଉଠିବ, ସନ୍ଦେହକୁ ଚ୍ୟାଲେଞ୍ଜ୍ କଲା ପରି ।

ଧନ୍ୟବାଦ୍ ! ବୁଝିଲି ଯେ ମୋର ଏଇ ଭୟ ଏକାନ୍ତ ଭ୍ରମାତ୍ମକ । ଆପଣଙ୍କ ଅନୁଭବରେ ଖେଳପଣ ନଥିଲା, ଏପରି ଭାବିବାର କୌଣସି କାରଣ ନାହିଁ । ଅପରନ୍ତୁ ମୋର ଭାବିବା ଉଚିତ ଥିଲା, ଆପଣ ଯେପରି ଭାବରେ ନିଜକୁ ନିରେଖି ଦେଖି ପାରୁଛନ୍ତି ଯେ ଆପଣ କେଉଁ ଇତର ସାଧାରଣ ଖେଳସମାନ ବ୍ୟକ୍ତି ନୁହନ୍ତି, ବସ୍ତୁବସ୍ତୁର ଗହ୍ଵରକୁ ଯିବା ଆପଣଙ୍କର ଏକ ଦୁର୍ଲଭ ସ୍ଵଗୁଣ । ସେହେତୁ ମୋର ଆଶା କରିବା କଥା ଯେ ଆପଣ ନିଜ ମନକୁ ଯଥାବଧି ଶାନ୍ତ ଓ ସମାହିତ କରି ପାରିଛନ୍ତି ସେଦିନର ସବାଶିଆ ହସ୍ତରେ, ଏବଂ ତା'ର ସୁଶୀତଳ ଗ୍ରାହ୍ୟ ଲମ୍ବି ଯିବ ଆପଣଙ୍କର ଶେଷ ସନ୍ଧ୍ୟା ଯାଏଁ । ସେହେତୁ ଆପଣ ଆଉ କେବେ ଉଦ୍‌ବିଗ୍ନ କି ଅଶାନ୍ତ ହେବେ ନାହିଁ, ଆପଣଙ୍କ ପ୍ରେମର ଭଲମନ୍ଦ ଏବଂ ଭୟର ସତମିଛ ନେଇ । ଏବଂ ଆପଣଙ୍କ ବଗିଚାର ସଜ-ସୁନ୍ଦର ଗେଣ୍ଡୁ ଫୁଲଗୁଡ଼ିକୁ ପୁଣି କୋଉ ଗାଈ ମୁହଁକୁ ପେଲି ଦେବାର ଦୁର୍ବୁଦ୍ଧି କରିବେ ନାହିଁ ।

ହଉ, ଭଗବାନ୍ କରନ୍ତୁ, ସେଇଆ ହେଉ । ହେଲେ ଆହୁରି ଗୋଟିଏ ଭୟ ତଥାପି ଯାଉନାହିଁ ମୋ ମନରୁ । ଚୈତନ୍ୟୋଦୟ ହେଲାପରେ ଆପଣ ଯେଉଁ ଡେନ୍‌ମ୍ୟାନ୍ ଫକଲ୍‌ଟିଏ ଶୁଣାଇଲେ ନିଜକୁ । କହିଲେ—"ନା, ମୁଁ ଏଠି ଆଉ ରହିପାରିବ ନାହିଁ । ମୋତେ ଯିବାକୁ ପଡ଼ିବ ଘରକୁ, ମୋ ପତ୍ନୀ ପାଖକୁ । ମୁଁ ତାକୁ ନିର୍ଭୟରେ କହିବ ସବୁ କଥା, ମୂଳରୁ ଶେଷ ଯାଏଁ । ଆଜିର ହାସ୍ୟାସ୍ପଦ ଘଟଣା ଯାଏଁ । କେମିତି କାଲି ଗାଈ ସବୁ ସାଫ୍ କରିଦେଲା ··"

ସବୁ କଥା, ମୂଳରୁ ଶେଷଯାଏଁ । କହିପାରିବେ କି ସେହି ସମସ୍ତ ଆବେଗ ଓ ପ୍ରଲୋଭନର ସତ କଥା, ବେଶ୍ୟାଳୟରୁ ଆରମ୍ଭ କରି ଜୟନ୍ତୀ ପାଢ଼, ପୂର୍ଣ୍ଣିମା ଦାସ, ସତ୍ୟବତୀ

ମେହେତ୍ତା ଓଗେରକୁ ନେଇ, ଯାହାକୁ ଆପଣ ଚରିତାର୍ଥ କଲେ ମଧ୍ୟ ପ୍ରକୃତରେ କରିନାହାନ୍ତି, ଅଟକି ଯାଇଛନ୍ତି ବୋଲି ଭାବୁଛନ୍ତି ? କାହା ସାଙ୍ଗରେ ଆପଣ କେତେଦୂର ଆଗେଇଲେ, କେଉଁଠୁ ଫେରି ଆସିଲେ, ଏବଂ କାହିଁକି, ସେଥିର ସମ୍ପୂର୍ଣ୍ଣ ନିଃସଙ୍କୋଚ ସତ୍ୟପାଠ···ପାରିବେ ତ ? ଏବଂ ଆପଣଙ୍କର କ'ଣ ବିଶ୍ୱାସ ହେଉଛି ଯେ ଆପଣଙ୍କ ପତ୍ନୀ, ଯେ ହୁଏତ ଏତେଟା ଦାର୍ଶନିକ ଭାବାପନ୍ନ ନୁହଁନ୍ତି, ସେ ତାକୁ ସ୍ୱଚ୍ଛନ୍ଦରେ ଗ୍ରହଣ କରିନେବେ ? ଆପଣଙ୍କୁ ଜେରା କରି ନବସିଲେ ବି ଆପଣଙ୍କ ପ୍ରତି ରହିଥିବା ତାଙ୍କର ସରଳ ବିଶ୍ୱାସ କ'ଣ ଅଳ୍ପବହୁତ ପ୍ରଦୂଷିତ ହୋଇ ଉଠିବ ନାହିଁ ? ଏବଂ ଧରନ୍ତୁ ସେ ମଧ୍ୟ ତାଙ୍କ ନିଜ ଜୀବନର ସତ୍ୟପାଠ ଶୁଣାଇ କହିବେ ଆପଣଙ୍କୁ, ଆପଣଙ୍କ ପ୍ରଗଲ୍‌ଭ ସତ୍ୟ ନିଷ୍ଠାର ମୁକାବିଲା କଲା ପରି, ଆପଣ ତାକୁ ସ୍ୱଚ୍ଛନ୍ଦରେ ଗ୍ରହଣ କରିପାରିବେ ତ ? ଏଇ ହେଉଛି ମୋର ଭୟ । କାରଣ ମଣିଷ ମଣିଷର ସମ୍ପର୍କ, ବିଶେଷତଃ ପୁରୁଷ-ନାରୀର ଯୌନ ସମ୍ପର୍କ, ଯାହାର ଭାବଗତ ପାଚନ ଅତ୍ୟନ୍ତ ଜଟିଳ, ହେଲେ ଘନିଷ୍ଠ, ସେଥିରେ କେତୋଟି କଳ୍ପିତ ଅଥବା 'ସାମୟିକ' ସତ୍ୟ (ଯଥା, ଆଉ ଯେଉଁମାନେ ଥାଆନ୍ତୁ ନା କାହିଁକି, ଆମ ଦୁହିଁଙ୍କର ଭଲପାଇବା ହିଁ ସବୁଠାରୁ ବିଶୁଦ୍ଧ ଏବଂ ସୁନ୍ଦର)କୁ ସାରସତ୍ୟ ବୋଲି ମୁଠେଇ ଧରିଲେ ଭଲ । ଅଧିକ ସତ୍ୟନିଷ୍ଠ ହେବାକୁ ଯାଇ ସମସ୍ତ ଘଟଣାର ବ୍ୟାଖ୍ୟା ବିଶ୍ଳେଷଣ କରି ବସିଲେ, ପୁଣି ଅପରପକ୍ଷ ଆଗରେ, ସେଥିରେ ଥିବା ନାନା ନଗ୍ନ-କୁତ୍ସିତ ବାସ୍ତବତାର ସଂଘାତକୁ ସାଧାରଣତଃ ସମ୍ଭାଳି ହେବ ନାହିଁ ମୋର ଆଶଙ୍କା । ମନସ୍ତତ୍ତ୍ୱ ମଧ୍ୟ ମୋର ଆଶଙ୍କାକୁ ସମର୍ଥନ କରେ ବୋଲି ମୋର ଧାରଣା । ଜଣେ ଇତିହାସବିତ୍ କହିଛନ୍ତି ଯେ ଇଂଲଣ୍ଡର ରାଜା ପ୍ରଥମ ଜେମ୍‌ସ୍ 'ଈଶ୍ୱର ଦତ୍ତ ରାଜକୀୟ ଅଧିକାର' (Divine Right of Kings)କୁ ଅତ୍ୟଧିକ ଚର୍ଚ୍ଚା କରି ବସିଲେ, ସେଇଥିପାଇଁ କଥାଟା ଏମିତି ଗଣ୍ଡଗୋଳିଆ ହୋଇ ଉଠିଲା । ବୁଦ୍ଧିର ସହିତ ତାକୁ ଗୋଟାଏ ସାଧାରଣ ସତ୍ୟ ଭାବରେ ଚଳେଇ ନେଇଥିଲେ ସେ ଏତେ ହଟହଟାରେ ପଡ଼ି ନଥାଆନ୍ତେ ଏବଂ ତାଙ୍କ ପୁଅ ଏବଂ ଉତ୍ତରାଧିକାରୀ ପ୍ରଥମ ଚାର୍ଲସ୍‌ଙ୍କ ମୁଣ୍ଡକାଟ ହୋଇ ନଥାଆନ୍ତା ।

ଯେହେତୁ ଗଗନବାବୁ ମୋର ଅନୁରୋଧ ଆପଣ ଆପଣଙ୍କ 'ସବୁ କଥା'କୁ ବଞ୍ଚେଇ କରି କୁହନ୍ତୁ ପତ୍ନୀଙ୍କ ଆଗରେ। ସେଥିର ହାସ୍ୟାସ୍ପଦ ତାମ୍‌ସାପଣକୁହିଁ ଝୁଲସେଇ ଦିଅନ୍ତୁ ଏକ ଦାର୍ଶନିକ ତଥ୍ୟ ହିସାବରେ। ସେଥିର ସମ୍ପୂର୍ଣ୍ଣ ସମାଲୋଚନା ଏବଂ ଟୀକାଟିପ୍ପଣୀ ଅନାବଶ୍ୟକ । କ'ଣ ବୁଝିଲେ ନା ମୁଁ କ'ଣ କହୁଛି ?

ତେବେ କିଏ କହୁଛି ଆପଣ କିମ୍ବା ଆପଣଙ୍କ ପତ୍ନୀଙ୍କ ମନ ଦୁର୍ବଳ ହୋଇଥିବ ସାଧାରଣ ମଣିଷଙ୍କ ପରି ? ବାସ୍ତବ ସତ୍ୟକୁ ଗ୍ରହଣ କରିପାରିବାର କ୍ଷମତା, ସେଥିର ଲକ୍ଷ୍ମଣରେଖା ଆମମାନଙ୍କଠାରୁ ଅନେକ ଅଧିକ ବଳିଷ୍ଠ ଏବଂ ସୁଦୂରପ୍ରସାରୀ ହୋଇ ନଥିବ କାହିଁକି ? ସେ ଯାହା ହେଉପଛେ ଆପଣଙ୍କ ଉମ୍ମୁକ୍ତନ୍ୟତା ତଥା ଆପଣଙ୍କ ଯୁଗ୍ମ 'ଜୀବନ ସାଥୀ' ଗତ ଗାରିମା ତିଷ୍ଠି ରହୁ ଆପଣଙ୍କ ଶେଷ ସନ୍ତ ଯାଏଁ, ଏତିକି ପ୍ରାର୍ଥନା ।

(କହିବାକୁ ଭଲ ଲାଗୁଛି ଯେ ମୁଁ ପାଠକ-ପାଠିକାମାନଙ୍କ ଠାରୁ ଏକାଧିକ ପ୍ରଶଂସାମୂଳକ ପତ୍ର ପାଇଛି ଏଇ ଗପଟିକୁ ନେଇ । ଏବଂ ଏହି ଅବସରରେ ମୁଁ ପୁଣି ଥରେ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି ସେମାନଙ୍କ ପ୍ରତି ।



# କୋକୁଆଭୟର ଶେଷ କଥା

କୋକୁଆ ! ଛଅଗୋଟି ପକ୍ଷ ତା'ର ନବଗୋଟି ନେତ୍ର । ଛଅଗୋଟି ଗୋଡ଼ ତା'ର ଭୟଙ୍କର ଗାତ୍ର । କାହୁଁ ଆସିଲା ଏହି ଅଦ୍ଭୁତ ଜନ୍ତୁ ଯେ ନଗର ଭିତରେ ପଶି ଖାଇଚାଲିଛି ଲୋକମାନଙ୍କୁ ? କିଏ କହୁଛି ମୋର ପୁଅକୁ ଖାଇଲା, କିଏ କହୁଛି ମୋର ସ୍ୱାମୀକୁ ମାରିଲା, କିଏ କୁହେ ମୋର ଶ୍ୱଶୁରକୁ, ଦିଅରକୁ, ଇତ୍ୟାଦି । ପୁଣି କିଏ କୁହେ ମୋର କୁଣିଆ ଆସୁଥିଲା, ବାଟରେ ଆସନ୍ତେ ତାକୁ ଗୋଡ଼ାଇ ଖାଇଲା । କୋକୁଆ ଭୟରେ ଲୋକେ ଘରୁ ବାହାରିଲେ ନାହିଁ, ପୁରୀ ଅନ୍ଧାର ଦିଶିଲା ।

କିନ୍ତୁ ଦ୍ୱାରକାରେ କୋକୁଆ ? ଯେଉଁଠି ସ୍ୱୟଂ ଶ୍ରୀକୃଷ୍ଣ ବିଦ୍ୟମାନ, ସେଠି ପୁଣି ଏହି ନାହିଁନଥିବା ଜନ୍ତୁର ଅତ୍ୟାଚାର ? ଏହା କିପରି ସମ୍ଭବ ? ସେଇଠୁ ଲୋକମାନେ କହିଲେ, ଚାଲ ଏକାଠି ହୋଇ ଯିବା ତାଙ୍କ ପାଖକୁ । ଜଗତର କର୍ତ୍ତା ସେହି ସବୁରି ଠାକୁର । ସେହି ଏକା ଆମକୁ ରକ୍ଷା କରି ପାରିବେ ଏହି କୋକୁଆ ଭୟରୁ । କେବଳ ଜଣେ ବୃଦ୍ଧର ମନ ବୁଝିଲା ନାହିଁ । କହିଲା, ରକ୍ଷା ନାହିଁ, ରକ୍ଷା ନାହିଁ । ଯାହାଙ୍କ ଭୟରେ ଯମ ପଶିପାରେ ନାହିଁ, ତାଙ୍କର ନଗରୀରେ କୋକୁଆର ଆବିର୍ଭାବ ସମ୍ଭବ ନୁହେଁ । ତେଣୁ ଏକ ଅଶୁଭ ଅଘଟଣ ଘଟିବାକୁ ଯାଉଛି । ଠାକୁରେ ରହିବେ ନାହିଁ ଏଠି । ଏବଂ ନାଶ ଯିବ ଏହି ଯଦୁବଂଶ ।

ହାୟ ! ଏହା କ'ଣ ସତ ହୋଇପାରେ ? ଲୋକମାନେ ତଥାପି ଦମ୍ଭ ଧରିଲେ । ଶ୍ରୀକୃଷ୍ଣହିଁ ଜାଣନ୍ତି ସତ କି ମିଛ । କେବଳ ସେହି ବୁଝିବେ ଆମ ଦୁଃଖ ।

ଲୋକଙ୍କ ବିକଳ ଦେଖି ଭବତ୍ରାସ୍ଥୀ ନଜେ ଗଲେ ତାଙ୍କ ପାଖକୁ । ରାଜା ଉଗ୍ରସେନଙ୍କ ଦରବାରକୁ ଯାଇ ମିଳିଲେ ପ୍ରଜାମାନଙ୍କ ସହିତ । କିନ୍ତୁ ଏ କଅଣ ? ଶ୍ରୀକୃଷ୍ଣଙ୍କ ମୁହଁ ଏଭଳି ବିରୂପ ଦିଶୁଛି କାହିଁକି ? ସତେକି ତାଙ୍କୁ ମଧ୍ୟ ବୁଝି ଦିଶୁନାହିଁ ! ବଡ଼ଭାଇ ବଳରାମ ସେଠାରେ ଆସି ପହୁଞ୍ଚିଥିଲରୁ ସେ ତାଙ୍କୁ ଏକଲାଗି ହୋଇ ବୁଝି ମାଗିଲେ । ପୁଣି ରାଜା ଉଗ୍ରସେନଙ୍କୁ ପଚାରିଲେ । ଯେ କେମିତି ମାରିବା ତାକୁ, ଏହି କୋକୁଆ ଜନ୍ତୁଟାକୁ । ତହୁଁ ଉଗ୍ରସେନ ବଖାଣିଲେ ଯେ କେମିତି ଆଠ ସଜ କରି ଯାଇଥିଲେ ତାକୁ ମାରିବାକୁ, କିନ୍ତୁ ମାୟାବୀ ଗୃହଁଗୃହଁ କୁଆଡେ ଅଦୃଶ୍ୟ ହୋଇଗଲେ, ଏବଂ ସେ ତା'ର ଭେଟ ପାଇଲେ ନାହିଁ ।

କେହି ବୁଝିପାରିଲେ ନାହିଁ ଯେ ଏହି ମାୟା ବିଚାର ନୁହେଁ । କାରଣ ନିଜେ ମାୟାଧର ହିଁ ତାକୁ ଗଢ଼ିଛନ୍ତି । କୋଳୁଆର ରଚୟିତା ଆଉ କେହି ନୁହେଁ, ସ୍ୱୟଂ ଶ୍ରୀକୃଷ୍ଣ ।

ବୁଝିବେ କେମିତି ? ପ୍ରତ୍ୟେକ ଅନ୍ଧାରକୁ ଆଲୁଅ ଯୋଗାଇବାକୁ ହେବ, ପ୍ରତ୍ୟେକ ପାପକୁ ତା'ର ପ୍ରାୟଶ୍ଚିତ୍ତ, ପ୍ରତ୍ୟେକ ଋଣକୁ ତା'ର ପରିଶୋଧ, ଏବଂ ପ୍ରତ୍ୟେକ ଦୁଃଖୀକୁ ତା'ର ପାଉଣା, ଯେମିତିକି ତା'ର ସତ ଲୁହଟିକ ସତ ହୋଇ ରହିବ, ମାଟିରେ ମିଶି ନଷ୍ଟ ହୋଇଯିବ ନାହିଁ—ଏହି ତତ୍ତ୍ୱର ମାହାତ୍ମ୍ୟକୁ ଆଉ କିଏ ବୁଝିବ ସୁଦର୍ଶନଙ୍କ ଛଡ଼ା ? ଏବଂ ସୃଷ୍ଟିର ଏହି ନିରପେକ୍ଷ ନିର୍ମମ ନୀତିରୁ କିଏ ଭଲା ମୁକ୍ତ ହୋଇ ପାରିବ ? ନା ଯଦୁବଂଶ, ନା ସେ ନିଜେ, ପଞ୍ଚଭୂତଧାରୀ ଶ୍ରୀକୃଷ୍ଣ ? କିନ୍ତୁ ଲୋକେ ବୁଝିବେ ନାହିଁ । କହିବେ ମହାଭାରତ ସରିଗଲା, ଧର୍ମ୍ମପୂଜା ଉଠିଲା, ଏଣିକି ଆଉ କିଛି ଭାବିବାର ନାହିଁ । ଭଗବାନ୍ ଅଛନ୍ତି, ଏବଂ ପୃଥିବୀରେ ସବୁ ଭଲ, ସବୁ ସୁନ୍ଦର । କିନ୍ତୁ ତା' ହୁଏ ନାହିଁ । ହେବାର ନୁହେଁ । ଅବିଚ୍ଛେଦ୍ୟ ଆଲୁଅ ନାହିଁ କି ଅନ୍ଧାର ନାହିଁ ଏହି ପୃଥିବୀରେ, ଅନାବିଲ ପୁଣ୍ୟ ଅବା ଅବାରିତ ପାପ । କିନ୍ତୁ ଅଛି ଏହି କ୍ଷତିପୂରଣର ପଣ । ଉତ୍ତରଦାୟିତ୍ୱର ତାଡ଼ନା । ସେଇଥିପାଇଁ ଚକ ଘୂରୁଛି, ଘୂରୁଥିବ...ହେଲେ କିଏ ବୁଝିବ ଏହି ସରଳ ସତ୍ୟଟିକୁ ? ବୁଝିଥିଲା କି ତ୍ରେତୟାର ଅଯୋଧ୍ୟା, ନା ବୁଝିବ ଦ୍ୱାପରର ଦ୍ୱାରକା ? ଦ୍ୱାରକାପତି ଦୁଃଖ କଲେ, କିନ୍ତୁ ବାଧ୍ୟ ହେଲେ ତାଙ୍କ ମନକଥା ମନରେ ରଖିବା ପାଇଁ ।

କୋଳୁଆ ଆସିଛି, ତା'ର ଆସିବାର ଥିଲା । କାହିଁକିନା ଅଘଟଣର କାରଣ ଯୋଗାଇବାକୁ ହେବ । ଯଦୁପତିଙ୍କ ଦେହତ୍ୟାଗ, ଯଦୁବଂଶର ଧ୍ୱଂସ । ଉପାୟ ନାହିଁ, ଉପାୟ ନାହିଁ ।

ଆଉ କାହାକଥା ଗୁଡ଼ । ବଡ଼ଭାଇ ବଳରାମ ମଧ୍ୟ ବୁଝିଲେ ନାହିଁ କୋଳୁଆର ତତ୍ତ୍ୱ, ନାରାୟଣଙ୍କ ମାୟା, ଯେତେବେଳେ କୃଷ୍ଣ ତାଙ୍କୁ କହିଲେ ଯେ କାଲି ପ୍ରଭାତରେ ତୁମେ ତୁମ ପୁଅମାନଙ୍କୁ ନେଇ ବାହାର, ମୁଁ ମଧ୍ୟ ବାହାରିବି ମୋର ଦାୟାଦଙ୍କୁ ନେଇ, ଏବଂ ଆମେ କୋଳୁଆକୁ ବେଢ଼ି ଯାଇ ମାରିବା । ଦୁର୍ବାସା ମହର୍ଷିଙ୍କର ଶାପ ଅଛି ଯେ ଯଦୁବଂଶ ଧ୍ୱଂସ ହେବ, ତେଣୁ ଆମେ କୋଳୁଆକୁ ମାରିଲା ପରେ ପ୍ରଭାସ-ତୀର୍ଥକୁ ଯିବା, ଏବଂ ସ୍ନାନାନ୍ତରେ ବିପ୍ରମାନଙ୍କୁ ମିଷ୍ଟାନ୍ନ ତଥା ଗୃହିବାଣୀ ଦେଇ ତୋଷିବା । ବ୍ରହ୍ମ ଅଭିଶାପରୁ ପାର ହୋଇଦେବା । କଥାଟା ପାଇଗଲା ବଳରାମଙ୍କ ମନକୁ । ବୁଝିଲେ ନାହିଁ ଯେ ଇଏ ହେଉଛି ଗୋବିନ୍ଦଙ୍କ ଫନ୍ଦି, କୁଳକୁଟୁମ୍ବଙ୍କ ବିନାଶ ପାଇଁ । ବୁଝିଲେ ନାହିଁ ଯେ ଅଭିଶାପ ଫଳିବ ହିଁ ଫଳିବ, ଯିଏ ତାହା ଯଥାର୍ଥ ହୋଇଯାଏ । କେହି ତାକୁ ଟଳେଇ ଦେଇ ପାରିବ ନାହିଁ ।

ତହୁଁ ଶ୍ରୀକୃଷ୍ଣ ନିଜ ମନ୍ଦିରକୁ ଯାଇ ରୁକ୍ମଣୀ, ସତ୍ୟଭାମାଙ୍କୁ ମଧ୍ୟ ଶୁଣାଇଲେ କୋକୁଆଭୟର କାହାଣୀ । ଏବଂ କହିଲେ ଯେ କାଲି ପ୍ରଭାତରେ ସେ ତାକୁ ମାରିବାକୁ ଯିବେ, ପୁଅନାତି ସହ । ବଳରାମଙ୍କୁ ସାଙ୍ଗରେ ନେଇ । ସେଇଠୁଁ ସେ ତାଙ୍କ ପୁଅ-ମାନଙ୍କୁ ଡାକି କହିଲେ ସେହି କଥା । ଯାହାର ମାୟା ବ୍ରହ୍ମାଙ୍କୁ ଅଗୋଚର, ଏବଂ ତାଙ୍କ ଅଗ୍ରଜ ମଧ୍ୟ ତା'ର ଭେଦ ପାଇଲେ ନାହିଁ, ତାକୁ ପ୍ରଦ୍ୟୁମ୍ନ, ଶାମ୍ବ ଆଦି ତରୁଣ କୁମରମାନେ ବୁଝିବେ କେମିତି ? ପୁତ୍ରବର୍ଗ ପ୍ରତିଜ୍ଞା କଲେ ଶ୍ରୀକୃଷ୍ଣଙ୍କ ଆଗରେ, ଯେ ସେମାନେ କୋକୁଆକୁ ମାରିବେ ଯେଉଁଠି ହେଲେ । ଯେଉଁଠି ପଶିବ ସେ ପାପିଷ୍ଠ ସପ୍ତବ୍ରହ୍ମାଣ୍ଡରେ, ତାକୁ ଗୋଡ଼େଇ ଗୋଡ଼େଇ ନଷ୍ଟ କରିଦେବେ । କିନ୍ତୁ କୁମରମାନଙ୍କର ଏହି ଆସ୍ଫାଳନ କେତେ ଦୁଃଖ ଦେଲା ତାଙ୍କ ବାପାଙ୍କ ମନରେ, ତାହା କେବଳ ସେହି ଜାଣିଥିଲେ । କୁମର ନିଧନର ଦୃଶ୍ୟ ଦିଶିଗଲା ତାଙ୍କୁ ଜଳ-ଜଳ ହୋଇ । ଏବଂ ମନେ ପଡ଼ିଲା ଶତପୁତ୍ର ହରାଇଥିବା ଗାନ୍ଧାରୀଙ୍କ ଅଭିଶାପ— "ଶୁଣ ପୀତବାସ ! ତୁ ମୋର ପୁତ୍ରମାନଙ୍କୁ ମରାଇଛୁ ମୋ ଆଗରେ । ତୋ ଆଗରେ ତୋର ପୁତ୍ରମାନେ ମଧ୍ୟ ଯମପୁରକୁ ଯିବେ । ମୋର ମୃତ୍ୟୁ ବେଳକୁ କେହି ନଥିବେ ମୋ ପାଖରେ । ତୋର ମୃତ୍ୟୁ ବେଳକୁ ମଧ୍ୟ କେହି ରହିବେ ନାହିଁ ତୋ ପାଇଁ ।" ବ୍ରାହ୍ମଣମାନଙ୍କୁ ସିନା ମିଷ୍ଟାନ୍ନ ଦେଇ ତୋଷ କରିବାର କଳ୍ପନା କରି ହେଉଥିଲା, ତାହା ଯେତେ ମିଛ ହେଉ ପଛେ, ଗାନ୍ଧାରୀଙ୍କୁ କେଉଁ ମିଷ୍ଟାନ୍ନର ଲୋଭ ଦେଖାଇ ପାରିଥାଆନ୍ତେ କୃଷ୍ଣ, ତାଙ୍କ ଅଣଲେଉଟା ପୁଅଙ୍କ ବଦଳରେ ? ମରିବେ ମୋ ଝାର ପୁଅମାନେ ମୋରି ଆଖି ଆଗରେ, କେହି ତାଙ୍କୁ ବଞ୍ଚାଇ ପାରିବେ ନାହିଁ । ଏହି ସନ୍ତାପରେ ଘାରି ହେଉଥିଲେ କୃଷ୍ଣ । କିନ୍ତୁ ତାଙ୍କ ମାୟାଜାଲ ଟିକିଏ ହେଲେ କୋହଲ ହେଲ ନାହିଁ । ସୃଷ୍ଟିର ଦାୟିତ୍ୱ ତୁଲେଇବାକୁ ହେବ, ତା'ର ନିୟମ ପାଳିବାକୁ ହେବ ।

ତା' ପରଦିନ ସକାଳେ । ପୁଅମାନେ ରଥରେ ବସିଲେ, ନାତିମାନେ ଅଶ୍ୱରେ ଓ ଗଜରେ । ଅନୁରୂପ ସଜ ହେଲେ ଅନ୍ୟାନ୍ୟ ଯାଦବ । ଏବଂ ଆସ ଆସ ଗୃଳ ଗୃଳ ଶବ୍ଦରେ ପୃଥିବୀ କମ୍ପାଇଲେ, ଆଷାଢ଼ ମାସରେ ମେଘନାଦ ପରି । ଗୋବିନ୍ଦ ନିଜେ ତାଙ୍କ ରଥରେ ବସିଲେ, ଶଙ୍ଖଚକ୍ରଗଦାପଦ୍ମ ଚତୁର୍ଭୁଜ ହୋଇ । ତେଣେ ବଳରାମ ସଜ ହୋଇ ବସିଲେ ତାଙ୍କ ତାଳଧ୍ୱଜ ରଥରେ, ହଳ, ମୂଷଳ ଧରି । ତହୁଁ ସମସ୍ତେ ରୁଣ୍ଡ ହେଲେ ସିଂହଦ୍ୱାର ଠାରେ । ଶ୍ରୀକୃଷ୍ଣ ବାହାରିଲେ ଦକ୍ଷିଣ ଦ୍ୱାରରୁ, ଏବଂ ଅନ୍ୟମାନେ ତାଙ୍କ ପଛେ ପଛେ । ମାରି ମାରି ଧରି ଧରି ବୋଲି ଚିତ୍କାର କରି ଧାଇଁଗଲେ କୋକୁଆକୁ ମାରିବା ପାଇଁ । ଶବ୍ଦ ଶୁଣି କୋକୁଆ ବାହାରି ଆସିଲା, ଏବଂ ପଳାୟନ କଲା । ଦୂରରୁ ଦୂରକୁ, ଦ୍ୱାରକାକୁ ଛାଡ଼ି ପଚାଶ ଯୋଜନ । ହରି ବଳରାମ ଧାଇଁଲେ ପଛରେ । ପଛେ ପଛେ ଯେତେକ ଯାଦବ । ଏକା ନିଃଶ୍ୱାସରେ ପହୁଞ୍ଚିଲେ ତା'ପାଖରେ । ଯମୁନା ନିକଟରେ । ନଦୀର ଗୋଧିକା

ପାଟରେ । ପ୍ରକୃତପକ୍ଷେ କୃଷ୍ଣହିଁ ମାୟା କରି ଭେଟ କରାଇଲେ ତାକୁ । ତାଙ୍କ ଯୋଦ୍ଧାଙ୍କ ପାଙ୍ଗରେ । କିନ୍ତୁ ଗୋଟାଏ କ୍ଷୁଦ୍ରମୂନ ପେଷିଲେ ତା' ଆଡ଼କୁ । କିନ୍ତୁ ମୂନ ବାଜିଲା ନାହିଁ ତା' ଦେହରେ, ଏବଂ ସେ ଖସିଗଲା କଦମ୍ବ ମୂଳକୁ । ଖଣ୍ଡେ ଦୂରୁ ବଳରାମ ଦେଖିଲେ ଏହି ଦୃଶ୍ୟ । ରଥରୁ ଓହ୍ଲାଇ ତାକୁ ପିଟିଲେ ତାଙ୍କ ମୂଷଳରେ । କିନ୍ତୁ କୁଆଡ଼େ ଗଲା ସେ କୋକୁଆ ? ବଳରାମ ଦେଖିଲେ ସେ ବୃକ୍ଷଟାକୁ ହିଁ ପିଟି ଚାଲିଛନ୍ତି !

କୋକୁଆ ଉଭେଇଗଲା । ହେଲେ କଦମ୍ବରୁ ଫୁଟି ବାହାରିଲା କାଦମ୍ବରୀ ରସ । ସତେକି ଯାଦବଙ୍କ ଶୋଷ ମେଣ୍ଟାଇବା ପାଇଁ । ପ୍ରଥମେ ବଳରାମ ସେହି ରସ ଅଥବା ମଦ୍ୟକୁ ପାନ କଲେ । ତାଙ୍କ ଦେଖାଦେଖି ଅନ୍ୟମାନେ ପିଇଲେ ମନ ଇଚ୍ଛା ।

କିନ୍ତୁ କିଭଳି ସେ ମଦ୍ୟ ! ସେମାନେ ଯେ କେବଳ ଉନ୍ମତ୍ତ ହେଲେ ତା' ନୁହେଁ, ପରସ୍ପରକୁ ଚିହ୍ନି ପାରିଲେ ନାହିଁ, କିଏ ପର କିଏ ଆପଣା ବୋଲି ମଧ୍ୟ ଜାଣି ପାରିଲେ ନାହିଁ । ଏଣେ ସେ କୋକୁଆ ପୁଣି ଆସି ଦେଖାଦେଲା ବଳରାମଙ୍କୁ, ଏବଂ ସେ 'ହେଇଟି କୋକୁଆ' ବୋଲି ଧାଇଁଲେ ତା' ପଛରେ । ପଇଁଚାଳିଶ ଯୋଜନ ପଥ ପାରି ହୋଇଗଲେ । ପୃଥିବୀ କମ୍ପି ଉଠିଲା ଧାବମାନ ବଳରାମଙ୍କ କ୍ରୋଧରେ । ଧାଇଁ ଧାଇଁ ପହଞ୍ଚିଲେ ନୀଳକନ୍ଦର ବନର କଳ୍ପବଟ ପାଖରେ, ଯେଉଁଠି କୋକୁଆ ଲୁଚିଗଲା ବୋଲି ତାଙ୍କର ମନେ ହେଲା । ତହୁଁ ସେ ତାକୁ ମୂଷଳ ଉଞ୍ଚାଇ ମାରିବାକୁ ଗଲାରୁ ଆକାଶବାଣୀ ହେଲା,—' ଆସ ବଳରାମ, ବିଳମ୍ବ ନକର । ସର୍ପ-ରୂପ ଧରି ଆସ ଏଥି ଭିତରକୁ । ଏବଂ ଶୋଇଯାଅ ଅନନ୍ତ ଶଯ୍ୟାରେ ।" ବଳରାମ ସେହି ଅନୁଯାୟୀ ପଶିଲେ ତା' ଭିତରକୁ, ଧଳା ନାଗଟିଏ ହୋଇ । କିନ୍ତୁ କୁମରମାନେ କାହୁଁ ଜାଣିବେ ସେ କଥା ? ସେମାନେ ଭାବିଲେ ଯେ ବଳରାମ ମଧ୍ୟ ଗଲେଣି ଦୁଷ୍ଟ କୋକୁଆର ଗର୍ଭକୁ । ସେଇଠୁଁ କୋକୁଆ ପୁଣି ଦୃଶ୍ୟ ହେଲା, ଏବଂ ପଶ୍ଚିମକୁ ପଳେଇଲା । ପଛେ ପଛେ କୃଷ୍ଣ ଓ ତାଙ୍କ ପୁଅ ନାତିମାନେ । କୋକୁଆ ପଶିଲା ସନ୍ତରା ବନରେ, ଏବଂ ଏମାନେ ଯାଇଁ ପହଞ୍ଚିଲେ ସେଠି ।

ତା'ପରେ ଘଟିଲା ଏକ ଅଦ୍ଭୁତ ଘଟଣା । ଜଗତଟା ଅନ୍ଧାର ଦିଶିଲା । ଅଥବା କୁମରଗଣ ଅନ୍ଧ ହୋଇଗଲେ । ଏବଂ ସେହିମାନେହିଁ କୋକୁଆପରି ଦିଶିଲେ ପରସ୍ପରର ଆଖିରେ । ତହୁଁ କି ଭୟାବହ ଏବଂ ମର୍ମନ୍ତୁଦ ଦୃଶ୍ୟ ଦେଖିବାକୁ ପଡ଼ିଲା କୃଷ୍ଣ ଭଗବାନଙ୍କୁ ! ତାଙ୍କରି ଆଖି ଆଗରେ ସେମାନେ ମାମାରି ହଣାହଣି ହେଲେ । ପ୍ରଦ୍ୟୁମ୍ନ ବଧ କଲା ଶାମ୍ବକୁ । ତହୁଁ ଅନିରୁଦ୍ଧଙ୍କୁ । ଏବଂ ଗଦାକୁ । ପୁଣି ସାନନ୍ଦ ମାରିଲା ଆନନ୍ଦକୁ । ଏହିପରି ଭାବରେ ସେମାନେ ଘୋର ଯୁଦ୍ଧ କଲେ ପରସ୍ପର

ସହିତ, ଗୃହଜନ ନମାନି, ସମସ୍ତ ଯାଦବଙ୍କ ଶିରଚ୍ଛେଦ ହେବାଯାଏଁ । ରକ୍ତନଦୀ ବହିଲ ସେହି ପଞ୍ଚ ଦୁଇଯୋଜନବ୍ୟାପୀ ସନ୍ତରି ବନରେ । ଏବଂ ତୃପ୍ତ ହେଲ ଗାନ୍ଧାରୀଙ୍କ ଆତ୍ମା । ହେଲେ ପଞ୍ଚଭୂତଧାରୀ ଶ୍ରୀକୃଷ୍ଣଙ୍କୁ କାନ୍ଦିବାକୁ ପଡ଼ିଲ । ଧାର ଧାର ହୋଇ ଅଶ୍ରୁ ବହିଗଲ ପଦ୍ମଲୋଚନରୁ । ଏଇଆ ଦେଖିବାକୁ ଥିଲ ମୋ କପାଳରେ ? ହଉ ବିଧାତା ଇଚ୍ଛା ପୂର୍ଣ୍ଣ ହେଉ···ଧର୍ମଲୀଳା ଲୀଳାୟିତ ହେଉ !

କିନ୍ତୁ ସନ୍ତପ୍ତ ଶ୍ରୀହରି ସମୟ ପାଇଲେ ନାହିଁ ନିଜକୁ ବୋଧ ଦେବା ପାଇଁ । ପଦ୍ମନ କାହୁଁ ଆସି ପହଞ୍ଚିଲ ତାଙ୍କ ସମ୍ମୁଖରେ, ଏବଂ ସେ ସୁଦର୍ଶନଚକ୍ରକୁ ଫିଙ୍ଗି-ଦେଲେ ତା' ଆଡ଼କୁ । ପଦ୍ମନର ମୁଣ୍ଡ କଟିଗଲ. ହେଲେ ଚକ୍ର ଆଉ ଫେର ଆସିଲ ନାହିଁ ତାଙ୍କ ହାତକୁ । ପୁତ୍ରମାନେ ଗଲେ. ବଂଶନାଶ ହେଲ, ଶେଷକୁ ଶକ୍ତିସାମର୍ଥ୍ୟର ଶେଷ ଅସ୍ତ୍ରଟିକ ମଧ୍ୟ ଚାଲିଗଲ ତାଙ୍କ ହାତରୁ । ଆଉ ରହିଲ କ'ଣ ? ଏହି କ'ଣ କୃଷ୍ଣଲୀଳାର ଶେଷ ?

ନା, ଆହୁର ଅଛି । ଶ୍ରୀକୃଷ୍ଣଙ୍କ ପ୍ରାଣ ଅଛି, ପିଣ୍ଡ ଅଛି । ତେଣୁ କୃଷ୍ଣଲୀଳାର ପୂର୍ତ୍ତି ହୋଇ ନାହିଁ । ବିଧାତାଙ୍କର ଆହୁର କିଛି କହିବାର ଅଛି ତାଙ୍କ ଅବତାର ମାଧ୍ୟମରେ···ସେଥିର ସମ୍ପୂର୍ଣ୍ଣ ସଫଳତା ପାଇଁ ।

ଯାହାହେଉ ଏହାହିଁ ତ ଶାନ୍ତ, ଶୋକାବଶେଷର ଏହି କେତୋଟି ମୁହୂର୍ତ୍ତ ! ଶ୍ରୀକୃଷ୍ଣ ଅବଶ୍ୟ ଜାଣିଥିଲେ ଯେ ମରଦେହୀ ମଣିଷ ସିନା କେବେହେଲେ ତା'ର ଦାୟିତ୍ୱକୁ ହାର ଦେଇ ଶୋଇ ଯାଇପାରେ, ବିଧାତାର ସେ ଭାଗ୍ୟ କାହିଁ ? ଚକ୍ର କ'ଣ କେବେହେଲେ ଅଟକିଯିବ ନା ତାକୁ ଟିକିଏ ଅବସର ମିଳିବ ଶୋଇଯିବା ପାଇଁ ? ତେବେ ଆପାତତଃ ଲୋଭନୀୟ ଦିଶୁଛି ଏଇ ଶିଆଳିର ଲତା, ଖଡ଼ର ଦୋଳି ପର, ଏବଂ ଦକ୍ଷିଣା ପବନ ବହୁଛି ସିର ସିର ହୋଇ । ଶ୍ରୀକୃଷ୍ଣ ତା'ର ନିମନ୍ତ୍ରଣକୁ ସ୍ୱୀକାର କଲେ, ଓ ଯାଇଁ ଶୋଇଗଲେ ତା' ଉପରେ, ପାଦରେ ପାଦ ରଖି । ଚୁହୁଁ ଚୁହୁଁ ନିଦ ଯୋଟିଗଲ ତାଙ୍କୁ ।

ତହୁଁ ସୃଷ୍ଟି ହେଲ ବିଧାତାଙ୍କ ନୂତନ କର୍ମକାଣ୍ଡ । ଅନେକ ଅନେକ ଦିନୁଁ ତା'ର ଆରମ୍ଭ, ତ୍ରେତୟା ଯୁଗରୁ ।

ଜାରି ନାମକ ଏକ ଶବର ଥିଲ ସେହି ଅଞ୍ଚଳରେ । ରାତି ପହରକ ପରେ ତା'ର ହଠାତ୍ ମନ ହେଲ ସେ ମୃଗୟାରେ ବାହାରିବ । ହରିଣ ମୃଗ ଆଜି ଶିକାର କରି ଆଣିବ । ଶବରୁଣୀ ହାତରେ ତା' ଫିରକି କାଠର ଧନୁ ମଗେଇଲ, ଓ ବାହାରି ପଡ଼ିଲ ତା'ର ଖାମଖିଆଲି ଅଭିଯାନରେ । ସେଦିନ ଜ୍ୟେଷ୍ଠମାସ ଶୁକ୍ଳପକ୍ଷ ପୂର୍ଣ୍ଣିମା । ରେବତୀ ନକ୍ଷତ୍ର ଓ ମୀନଚନ୍ଦ୍ରର ପବିତ୍ର ସଂଯୋଗ । ଆୟୁଷ୍ମାନ୍ ଯୋଗ । ପୃଥ୍ୱୀଯାକ ଶୁଭ୍ର, ସୁନ୍ଦର । କିନ୍ତୁ ଜନ୍ତୁମାନେ କାହାନ୍ତି ? ଶବର ବୁଲି ବୁଲି ଥକିଗଲ । ସେଇଠୁଁ

ରିତ ପାଦିବାକୁ ମାଉ ଗୃଣଦଣ୍ଡ ଅଛି ତାକୁ ଦୃଶ୍ୟ ହେଲା ଶ୍ରୀକୃଷ୍ଣଙ୍କ ବାଆଁ ପାଦର ଆଙ୍ଗୁଠି । ଆଃ, ଏତେବେଳକେ ! ହରିଣର କାନ ହେବ ନିଶ୍ଚୟ । ଜାରା କାଣ୍ଡ ବିନ୍ଧିଲା ଓ ତାହା ସିଧାସଳଖ ବାଜିଲା ପ୍ରଭୁଙ୍କ ପାଦରେ । କିନ୍ତୁ ଜାରା ଯେତେବେଳେ ଧାଇଁଗଲା ତା' ଶିକାରକୁ ହାସଲ କରିବା ପାଇଁ, ତା'ର ହୁଁସା ଉଡ଼ିଗଲା ଶିକାରର ଚେହେରା ଦେଖି । ଦେଖିଲା ଯେ ତାହା କେଉଁ ଜନ୍ତୁ ନୁହେଁ, ମଣିଷ । ଏବଂ ଶଙ୍ଖଚକ୍ର-ଗଦାପଦ୍ମଧାରୀ ମଣିଷ, ସ୍ୱୟଂ ଶ୍ରୀକୃଷ୍ଣ ! ହାୟ ! ମୁଁ କ'ଣ କଲିଟି, ମୋର ଶବର ଜନ୍ମକୁ ଧିକ୍, ଏତେ ବଡ଼ ଦ୍ରୋହ ପରେ ମୋତେ ଠାବ ମିଳିବ ନାହିଁ ସପ୍ତବ୍ରହ୍ମାଣ୍ଡରେ, ଏହି ପ୍ରକାର ଗ୍ଳାନି ଓ ଭୟରେ ଦଗ୍ଧ ହୋଇ ସେ ଗଲା ନାହିଁ ପ୍ରଭୁଙ୍କ ପାଖକୁ । ଦୂରରୁ ଥାଇ ସ୍ତୁତି କଲା । କିନ୍ତୁ ଦୟାମୟ ଶ୍ରୀକୃଷ୍ଣ ତାକୁ ପାଖକୁ ଡାକିଲେ । କହିଲେ, ଭୟ ନାହିଁ । ଦୋଷ ତୋର ନୁହେଁ । ଏହାହିଁ ହେବାର ଥିଲା ।

ଜରାଏ କହିଲା, ମଣିମା, ମୋ ପାଖରେ କାଣ୍ଡପାଆର ଔଷଧ ଅଛି । ମୋତେ ଆଜ୍ଞା ହେଉ କାଣ୍ଡ କାଢ଼ି ନେବି, ଘାଆ ଶୁଖେଇ ଦେବି । ଶ୍ରୀପାଦପଦ୍ମ ପୁଣି ସୁସ୍ଥ-ସୁନ୍ଦର ହୋଇ ଉଠିବ । କିନ୍ତୁ ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟ ଭିନ୍ନ । କହିଲେ, ନା, ଛୁଅଁ ନାହିଁ ମୋର ଦେହ । ହେଲେ, କରିବୁ ଗୋଟାଏ କାମ ମୋ ପାଇଁ ? ତା'ହେଲେ ଯାଅ ହସ୍ତିନାପୁରକୁ, ପାଣ୍ଡବଙ୍କ ସାଙ୍ଗରେ ଦେଖାକର, ଓ ପାର୍ଥକୁ ପହଞ୍ଚାଇ ଦେ ମୋ ପାଖରେ । ମୋ ଜଳାପୋଡ଼ା ଶୁଳିଯିବ ତା' ସ୍ପର୍ଶରେ । ଅଙ୍ଗ ଶୀତଳ ହେବ ।

ଆଜ୍ଞା ପାଇଲାରୁ ଶବର ଗଲା ହସ୍ତିନାପୁରକୁ । ଏବଂ ଖବର ପଠାଇଲା ଯେ ସେ କୃଷ୍ଣଙ୍କ ବାର୍ତ୍ତା ନେଇ ଆସିଛି, ଯୁଧିଷ୍ଠିରଙ୍କ ପାଖକୁ । ସେଇଠୁଁ ଯୁଧିଷ୍ଠିରଙ୍କ ଶ୍ରୀମୁଖରେ ଜଣାଇଲା ଯେ କୃଷ୍ଣ ରହିଛନ୍ତି ସୁରେଶ୍ୱର ବନରେ, ଏବଂ ଡକାଇଛନ୍ତି ପାଣ୍ଡବମାନଙ୍କୁ । ପୁଣି କହିଛନ୍ତି ଯେ ଆଉ କେହି ନ ଆସି ପାରିଲେ ଅର୍ଜୁନ ଆସିବେ ଯେମିତି ହେଲେ ।

କଥା କଅଣ ? ସନ୍ଦେହ ହେଲା ପାଣ୍ଡବଙ୍କ ମନରେ । ଭାବିଲେ କିଛି ଗୋଟାଏ ଅଘଟଣ ଘଟିଛି, ନହେଲେ ଏଭଳି ଗୋଟାଏ ଲୋକ ଆସି ନଥାଆନ୍ତା ଏହି ପ୍ରକାର ବାର୍ତ୍ତା ନେଇ । ସେଇଠୁଁ ସହଦେବଙ୍କୁ ପଚାରିଲେ ଗୃଣିଭାଇଯାକ । କାରଣ ଆଗତ ଭବିଷ୍ୟ ସବୁ ଜଣାଅଛି ତାଙ୍କୁ, ସେହି କେବଳ ଏହି ରହସ୍ୟର ଉନ୍ମୋଚନ କରିପାରିବେ ।

ଅତି ଗୂଢ଼ କଥା । ସହଦେବ ନୀରବ ରହିଲେ କିଛି ସମୟ । କିନ୍ତୁ ଶେଷକୁ ତାଙ୍କୁ କହିବାକୁ ପଡ଼ିଲା ସମସ୍ତ ବିଷୟ । ଉପାୟ ନାହିଁ । ତାଙ୍କୁ ମଧ୍ୟ ତୁଲାଇବାକୁ ପଡ଼ିବ ତାଙ୍କ ଭବିଷ୍ୟଜ୍ଞାନର ଦାୟିତ୍ୱ ।

ତହୁଁ ସେ ଶୁଣାଇଲେ ସେହି ଅସମ୍ଭାବ୍ୟ ଅଘଟଣର କାହାଣୀ । କେପରି ଓ ଓ କାହିଁକି ଯଦୁବଂଶ ନାଶ ହୋଇଯାଇଛି । ଏବଂ କୃଷ୍ଣ ମୃତ୍ୟୁଶଯ୍ୟାରେ ଅପେକ୍ଷା

କରିଛନ୍ତି ଅର୍ଜୁନଙ୍କ ସ୍ପର୍ଶ ପାଇବା ପାଇଁ । ସେତକ ପାଇଲାରୁ ଶାନ୍ତ ହେବ ତାଙ୍କ ଦାହ, ଏବଂ ସେ ଦେହ ତ୍ୟାଗ କରି ଯିବେ ନିଜ ପୁରକୁ ।

ଯୁଧିଷ୍ଠିର ଜ୍ଞାନ ହରାଇଲେ । କଅଣ କରିବେ ବୋଲି ବୁଝି ହଉନିଲା ନାହିଁ । ଏଣେ ଶବର ତାଙ୍କୁ ତ୍ୱରାନ୍ୱିତ କଲା, କହିଲା ଆଉ ବିଳମ୍ବ କଲେ ଚଳିବ ନାହିଁ । ବିକଳରେ ପଚାରିଲେ ପାଞ୍ଚଭାଇଯାକ—କିନ୍ତୁ ସେ ରହିଥିବେଟି ଆମେ ପହଞ୍ଚିବା ଯାଏଁ ? ଶବର ତାଙ୍କୁ ଆଶ୍ୱାସନା ଦେଲା, ହେଲେ ସେମାନେ ସନ୍ଦିଗ୍ଧ ହୋଇ ରହିଲେ ।

ତହୁଁ ଧର୍ମରାଜ, ଯେ ସୃଷ୍ଟିଧର୍ମର ନୀତିନିୟମକୁ ବୁଝାନ୍ତି, ପଚାରିଲେ ଗୋଟାଏ ଠିକଣା ପ୍ରଶ୍ନ ଯାହା କାହାର ମନକୁ ଜୁଟି ନଥିଲା ଏତେବେଳଯାଏଁ—

"କିନ୍ତୁ ଶବର କାହିଁକି ବିନ୍ଧିଲା ତା'ଶର ବାସୁଦେବଙ୍କୁ ?"

ସହଦେବ ତା'ର ଉତ୍ତରକୁ ଏଡ଼ାଇ ଦେଇ ପାରିଲେ ନାହିଁ । କହିଲେ ଆଉ ଗୋଟାଏ କାହାଣୀ ତ୍ରେତୟା ଯୁଗର । କେମିତି ବିଗତ ଯୁଗର ଋଣ ଶୁଝାଇବାକୁ ପଡ଼ୁଛି ଏ ଯୁଗରେ । କାରଣ ଯେତେ ଡେରି ହେଲେ ହେଉ, ଉଧାର ଗୌଣିକ ଫେରାଇ ଦେବାକୁ ପଡ଼ିବ । ସୃଷ୍ଟିର ନିୟମ ।

କହିଲେ, କୃଷ୍ଣ ଥିଲେ ରାମଚନ୍ଦ୍ର ତ୍ରେତୟା ଯୁଗରେ । ସେଇଠୁଁ ସେ ଶୁଣାଇଲେ ରାମାୟଣ କଥା । ଶ୍ରୀରାମଙ୍କ ଜନ୍ମ, କୈଶୋର ଓ ଯୌବନର ଲୀଳା । କେମିତି ସେ ତାଡ଼କାସୁରୀକୁ ବଧ କଲେ ବିଶ୍ୱାମିତ୍ରଙ୍କ ଯାଗ ରକ୍ଷା ପାଇଁ, ଅହଲ୍ୟାକୁ ମୁକ୍ତି ଦେଲେ, ଏବଂ ସୀତାଙ୍କୁ ବିଭାହେଲେ ଶିବଧନୁ ଭଗ୍ନ କରି । ତହୁଁ କୈକେୟୀଙ୍କ ବରଭିକ୍ଷା, ଦଶରଥଙ୍କ ସତ୍ୟପାଳନ, ଓ ରାମ-ସୀତାଙ୍କ ବନବାସର କାହାଣୀ । ତା'ପରେ ରାବଣର ସୀତାହରଣ, ରାମଚନ୍ଦ୍ରଙ୍କ ଶୋକ, ଏବଂ ସୀତାଙ୍କୁ ଉଦ୍ଧାର କରିବାର ପଣ ଓ ଆୟୋଜନ । ଏହି ପର୍ଯ୍ୟାୟରେ ସେ କହିଗଲେ କେମିତି ରାମ ବନ୍ଧୁ ହେଲେ ସୁଗ୍ରୀବ ସହିତ, ଓ ତା'ର ଭାଇ ବାଲୀକୁ ବଧ କଲେ ସୁଗ୍ରୀବକୁ ସିଂହାସନରେ ବସାଇବା ପାଇଁ । ଶେଷକୁ କିପରି ହନୁମାନ, ସୁଗ୍ରୀବ, ଅଙ୍ଗଦ ଆଦି ସମସ୍ତ ବାନରସେନାଙ୍କ ସାହାଯ୍ୟରେ ଲଙ୍କାଗଡ଼ ଜିଣିଲେ, ରାବଣକୁ ମାରିଲେ, ଓ ସୀତାଙ୍କୁ ଫେରାଇ ଆଣିଲେ ଅଯୋଧ୍ୟାକୁ । ତହୁଁ ରାମାଭିଷେକ । ରାମରାଜ୍ୟର ଆରମ୍ଭ ।

କିନ୍ତୁ ଏଇଠି କ'ଣ କଥା ସରିଲା ? ନା । ସରିଲା ନାହିଁ ରାମାୟଣ, ନା ସରିଯାଇଛି ମହାଭାରତ । ଅନେକ ଋଣ ଶୁଝାଇବାର ଥିଲା, ଏବଂ ଶୁଝିନାହିଁ ଆଜଯାଏଁ ।

ଯକେ ରାମଚନ୍ଦ୍ର ଡକାଇ ପଠାଇଲେ ଅଙ୍ଗଦକୁ । ବାଳୀସୁତକୁ ସ୍ମରଣ କରାଇ ଦେଲେ ଯେ ତା'ର ଗୋଟାଏ ଋଣ ଶୁଝାଇବାକୁ ଅଛି । ପିତୃଋଣ । ଯାହାକୁ କଦାପି ଟାଳି ଦେଇ ହେବ ନାହିଁ । କହିଲେ, ଭୁଲିବୁ ନାହିଁ ଯେ ଯେତେହେଲେ ମୁଁ ତୋ ପିତାର ଶତ୍ରୁ । ମୋର ବାଣରେ ତା'ର ପ୍ରାଣ ଗଲା । ତେଣୁ ତୋତେ ତା'ର ପ୍ରତିଶୋଧ ନେବାକୁ ପଡ଼ିବ, ତା'ହେଲେ ଯାଇଁ ତୁ ମୁକ୍ତ ହୋଇ ପାରିବୁ ତୋ ପିତୃଋଣରୁ । ତେଣୁ ମନେ ରଖ, ମୁଁ ଯାହା କହୁଛି । ମୁଁ ପୁଣି ଜନ୍ମ ହେବ ଦ୍ୱାପର ଯୁଗରେ, ବାସୁଦେବ ଘରେ । ଏବଂ ତୁ ଜନ୍ମ ହେବୁ ବସୁ ଶବରର ଘରେ । ତୋ ନାଆଁ ହେବ ଜାରାଶବର । କାଳକ୍ରମେ ହେବ ମହାଭାରତ ଯୁଦ୍ଧ । ଏବଂ ଯୁଦ୍ଧାନ୍ତରେ ଯଦୁବଂଶ ଧ୍ୱଂସ, ଯଥାସମୟରେ । ଶେଷକୁ ମୁଁ ଶୋଇଥିବ ସୁରେଶ୍ୱର ବନର ଶିଆଳି ଲତାରେ । ସୁଖନିଦ୍ରାରେ ଶୋଇ ପାଦ ହଲାଉଥିବ । ଏବଂ ତୁ ମୃଗୟାରେ ବାହାରି ଦେଖିବୁ ଯେ ହରିଣଟାଏ ତା'ର କାନ ହଲାଉଛି । ସେଇଠୁଁ ଶର ପେଷିବୁ ତା' ଆଡ଼କୁ । ତହୁଁ ମୁକ୍ତ ହେବୁ ପିତୃଋଣରୁ ।

ଶୁଣିଲେ ସଭିଏଁ ଏହି ଯୁଗଯୁଗାନ୍ତରର ଅପୂର୍ବ ପରିଶୋଧ ତଥା ପ୍ରତିଶୋଧର କାହାଣୀ । ସ୍ୱୟଂ ଶ୍ରୀକୃଷ୍ଣଙ୍କ ଭାଆରି । ଆଉ ବିଳମ୍ବ କାହିଁକି ? ଚାଲି ଯିବା ସମସ୍ତେ ତାଙ୍କ ଶେଷଦର୍ଶନ ପାଇଁ । ଯେଉଁଠି ସେ କଷ୍ଟ ପାଉଛନ୍ତି ଏବଂ ଅପେକ୍ଷା କରି ରହିଛନ୍ତି ଆମକୁ । ପାଣ୍ଡବମାନେ ବ୍ୟାକୁଳ ହୋଇ ଧାଇଁଗଲେ ସୁରେଶ୍ୱର ବନକୁ, ଜାରାଶବର ପଛେ ପଛେ ।

ଶ୍ରୀକୃଷ୍ଣ ଚକ୍ଷୁ ଫେଡ଼ି ନିରେଖିଲେ ପାଣ୍ଡବ ଭାଇମାନଙ୍କୁ । ଏବଂ ଅର୍ଜୁନଙ୍କୁ ତାଙ୍କ ପାଦତଳେ ଦେଖିଲାରୁ ଗଦ୍‌ଗଦ ହୋଇ କହିଲେ, ବିକଳ କଣ୍ଠରେ— "ତୋହର ସ୍ପର୍ଶକୁ ମୁଁ ରହିଁ ରହିଛି ପାର୍ଥ, ତା'ହେଲେ ଯାଇଁ ମୋର ଏହି ଜ୍ୱାଳାର ଉପଶମ ହେବ । ଆସ, ଆସ ମୋ ପାଖକୁ···"

ସନ୍ଦେହ ନାହିଁ ଯେ ଅର୍ଜୁନ ତତ୍‌କ୍ଷଣାତ୍ ତାଙ୍କ ପାଖକୁ ଆତୁର ଘୁଞ୍ଚି ଆସି ତାଙ୍କୁ ସ୍ପର୍ଶ କରିଥାଆନ୍ତେ । ପରମସଖାଙ୍କ ଦୁଃଖ ମୋଚନ ପାଇଁ ସେ ତାଙ୍କର ଏହି ସାମାନ୍ୟ ଅନୁରୋଧ ରକ୍ଷା କରି ପାରି ନଥାଆନ୍ତେ ? କିନ୍ତୁ ସମ୍ବେଦନାରେ ଘାରି ହେଲେ ମଧ୍ୟ ସେ ନିଜକୁ ସମ୍ଭାଳି ନେଲେ, ତାଙ୍କୁ ଛୁଇଁବାର କୌଣସି ପ୍ରୟତ୍ନ କଲେ ନାହିଁ । କାରଣ ସହଦେବ ତାଙ୍କୁ ପୂର୍ବରୁ ସାବଧାନ କରି ଦେଇଥିଲେ । ଯେ କଦାପି ଛୁଇଁବ ନାହିଁ ତାଙ୍କୁ । ଛୁଇଁଲେ ହିଁ ସେ ପ୍ରାଣତ୍ୟାଗ କରିବେ । ଯେଉଁ ବିଷ୍ଣୁକଳାଟି ରହିଛି ଅର୍ଜୁନଙ୍କଠାରେ, ତାହା ଫେରିଯିବ ବିଷ୍ଣୁଙ୍କ ପାଖକୁ । ବିଷ୍ଣୁ ଫେରିଯିବେ ସ୍ୱଧାମକୁ, ଷୋଳକଳା ନେଇ ।

ତହୁଁ କୃଷ୍ଣ ଭର୍ତ୍ସନା କଲେ ତାଙ୍କ ବନ୍ଧୁଙ୍କୁ । କହିଲେ—ମୁଁ ତୋ ପାଇଁ କେତେ ଦୁଃଖ ନପାଇଛି, କିନ୍ତୁ ତୁ ମୋତେ ଛୁଇଁଲୁ ନାହିଁ ମୋର ପ୍ରାଣ ଯିବା

ଦେଲେ ? ଏପରିକି କହିଲେ ଯେ ତୁ ଜାରଜ ତୋର କୁଳଗୋତ୍ର ନାହିଁ, ନହେଲେ ତୁ ଏଭଳି ନିର୍ଦ୍ଦୟ ହୋଇ ନଥାନ୍ତୁ । କିନ୍ତୁ ଅର୍ଜ୍ଜୁନ ଚର୍ଚ୍ଚିଲେ ନାହିଁ । ଭାବିଲେ— ଯେତେ ଗାଳି ଦେବେ ଦିଅନ୍ତୁ, ମୁଁ କେମିତି ତାଙ୍କୁ ମରିବାକୁ ଦେବି ? ମୁଁ କ'ଣ ଏତେ ନିର୍ବୋଧ ନା ଅକୃତଜ୍ଞ ହୋଇଛି ?

କିନ୍ତୁ କିଏ ଭଲ ଜାଣିପାରିବ ଶଠସୁନ୍ଦରଙ୍କୁ ? ଶ୍ରୀକୃଷ୍ଣ କହିଲେ— ହଉ, ମୋତେ ନଛୁଇଁଲୁ ନାହିଁ । ତୋ ଧନୁଗୁଣଟାକୁ ଟିକିଏ ବଢ଼େଇ ଦେ' ମୋ ହାତକୁ ? ଅର୍ଜ୍ଜୁନ ତାଙ୍କ କଥା ମାନିଲେ । ଆପାତତଃ ନମାନିବାର କୌଣସି କାରଣ ନଥିଲା । କିନ୍ତୁ ସେଇଟି ହେଲା ଯବନିକାର ପତନ । କାରଣ ସେହି ଧନୁଗୁଣରେ ଫେରିଆସିଲା ତାଙ୍କ ଅବଶିଷ୍ଟ କଳା, ଶ୍ରୀକୃଷ୍ଣଙ୍କ ପାଖକୁ । ଷୋଳକଳା ସଂପୂର୍ଣ୍ଣ ହେଲା ।

ତେବେ ପ୍ରାଣ ଛାଡ଼ିବା ପୂର୍ବରୁ ଶ୍ରୀକୃଷ୍ଣ ତାଙ୍କ ପରମ ସଖାଙ୍କୁ କେତୋଟି ନିର୍ଦ୍ଦେଶ ଦେଲେ ତାଙ୍କ ସଂସାର ଦାୟିତ୍ୱକୁ ନିଭାଇବା ପାଇଁ । କହିଲେ ତୁ ଦ୍ୱାରକାପୁରକୁ ଯିବୁ, ଓ ମୋର ଭାର୍ଯ୍ୟା ରୁକ୍ମିଣୀଙ୍କୁ ସମ୍ଭାଳି କରି ନେଇଆସିବୁ ହସ୍ତିନାକୁ, କାରଣ ଦ୍ୱାରକାପୁରୀ ଶୀଘ୍ର ଜଳମଗ୍ନ ହେବ । ଅଭିଶାପର ଅନ୍ୟତମ ସୂଚୀ ।

ନିସ୍ପନ୍ଦିତ ହେଲେ ପୀତବାସ । ଆଖି ବୁଜିଦେଲେ ଶେଷଥର ପାଇଁ । ପଛରେ ପଡ଼ି ରହିଲେ କମଳା, ଓ ପାଣ୍ଡବାଦି ବନ୍ଧୁପରିଜନ । ପ୍ରାଣ ଚାଲିଗଲା, ଖାଲି ପିଣ୍ଡ ପଡ଼ି ରହିଲା ।

ଅର୍ଜ୍ଜୁନ ଅଝଟରେ କାନ୍ଦି ଉଠିଲେ । କାହିଁଗଲ ସଖା ଆମକୁ ଛାଡ଼ିଦେଇ ? ତୁମେ ଥିଲ ପାଣ୍ଡବଙ୍କ ହିତ । ତୁମରି ସହାରେ ଆମେ କାହାରିକୁ ଭୟ କରୁ ନଥିଲୁ । ତୁମରି ବଳରେ ଆମର ବିଜୟ, ଆମର ସଫଳତା । ଯୁଧିଷ୍ଠିରଙ୍କର ରାଜସୂୟ ଯଜ୍ଞ ମଧ୍ୟ ନିର୍ବିଘ୍ନରେ ସଂପନ୍ନ ହୋଇଯାଇଛି, କେବଳ ତୁମରି ସହାୟତାରେ । କାହିଁକି ଆମକୁ ଏକାକରି ଚାଲିଗଲ ? କେମିତି ବଞ୍ଚିବୁ ଆମେ ତୁମ ବିହୁନରେ ?

ସ୍ଥିତପ୍ରଜ୍ଞ ସହଦେବ ତାଙ୍କୁ ବୋଧ ଦେଲେ, ଏବଂ କହିଲେ ଯେ ଉପସ୍ଥିତ କାର୍ଯ୍ୟ କରିବାକୁ ପଡ଼ିବ । ପିଣ୍ଡଟିକୁ ତୁରନ୍ତ ଦଗ୍ଧ କରିବାକୁ ହେବ । ତହୁଁ ଚନ୍ଦନ କାଠରେ ଗୋଟିଏ ଖଟ ତିଆରି କରାଗଲା, ଏବଂ ଶ୍ରୀକୃଷ୍ଣଙ୍କ ମୃତ ପିଣ୍ଡକୁ ଶୁଆଇ ଦିଆଗଲା ତା' ଉପରେ । ସୁନ୍ଦରେଶ୍ୱର ଅରଣ୍ୟର ଚାରିକୋଶ ଦୂରରେ ଥିବା ମହୋଦଧି ପାଖକୁ ନିଆଗଲା । ଏବଂ ସେଠାରେ ବାଲିଗିରି ମଧ୍ୟରେ ଯେଉଁ କଳ୍ପବଟ ଅଛି, ସେହି ପବିତ୍ର ସ୍ଥଳୀ, ସଳଖପୁରର ବାଟ ସ୍ୱର୍ଗକୁ ଯିବା ପାଇଁ, ତେଣୁ ତା'ର ନାମ ସ୍ୱର୍ଗଦ୍ୱାର, ସେହିଠାରେ ପ୍ରଭୁଙ୍କ ମରଶରୀରକୁ ଦାହ କରାଗଲା ।

କିନ୍ତୁ ଇଏ କି ଅଦ୍ଭୁତ କଥା ? ପ୍ରଭୁଙ୍କ ଦେହ ଅଧିକରୁ ଅଧିକ ଉଜ୍ଜ୍ୱଳ ହୋଇ ଉଠୁଛି. ହେଲେ ନିଆଁର ଗୋଟିଏ ହେଲେ ଲୋମ ପୋଡ଼ିବାକୁ ନାହିଁ । ପାଞ୍ଚ ରାତି କଟିଗଲା, ଘିଅ ଢଳା ହେଲା ବର୍ଷାଧାରା ପରି, ତଥାପି ସେ ଦେହର କିଛି

ହେଲ ନାହିଁ । ତହୁଁ ଆକାଶବାଣୀ ହେଲ—"ତୁମକୁ କଏ ଏହି ବୁଦ୍ଧି ଦେଲା ଯୁଧିଷ୍ଠିର ? କେମିତି ଭାବିଲ ଯେ ସେହି ଦିବ୍ୟଦେହ ନିଆଁରେ ପୋଡ଼ି ହେବ, ଅବା ତା'ର ବିନାଶ ହେବ ପାଣି-ପବନରେ ? ଯାଅ, ବର୍ତ୍ତମାନ ତାକୁ ଶୀତଳେଇ ଦିଅ ତୀର୍ଥ ଜଳରେ, ଏବଂ ମେଲିଦିଅ ସମୁଦ୍ରରେ ।"

ପ୍ରାଣ ଯିନା ଗଲ, ପିଣ୍ଡର କ'ଣ କିଛି ଭୂମିକା ନାହିଁ ? କୃଷ୍ଣ ହୋଇ ଅବତରି ଥିଲେ ସେ ଯୁଗରେ, ସେବେଳର ପାପ ତାପ ହରିନେବା ପାଇଁ, ଏବଂ ସେହି କାମଟି ସଭଲେ ଯଥାସମୟରେ । କିନ୍ତୁ ଏହି ଅବିନାଶୀ ପିଣ୍ଡ କ'ଣ ଭଗବାନ କୃଷ୍ଣଙ୍କର ମହିମାକୁ ବଞ୍ଚାଇ ପାରିବ ନାହିଁ କାଳକାଳକୁ ! ହଁ, ତାହାହିଁ ପ୍ରଭୁଙ୍କର ଇଚ୍ଛା । ସେହେତୁ ପୁଣି ଦୈବବାଣୀ ହେଲ ଯେ ଏ ପିଣ୍ଡ ଲଗିବ ବାଙ୍କୀ ମୁହାଣରେ । ବିରାଜିବ ନୀଳଗିରି ଠାରେ, କଳିଯୁଗ ପ୍ରବେଶ କଲ ପରେ । ତାଙ୍କୁ ଶବର ପୂଜିବ କିଛିଦିନ । ତା'ପରେ ରାଜା ଇନ୍ଦ୍ରଦ୍ୟୁମ୍ନ ତାଙ୍କୁ ପୂଜା କରିବେ ଦାରୁବ୍ରହ୍ମ ରୂପେ, ରାଜ-ପ୍ରାସାଦରେ ।

କିନ୍ତୁ ଜାରାଶବର ଯେଉଁ କୀର୍ତ୍ତି କଲ ପାଣ୍ଡବଙ୍କୁ ଶ୍ରୀକୃଷ୍ଣଙ୍କ ପାଖରେ ପହଞ୍ଚେଇ ଦେଇ, ସେଥିର କ'ଣ କିଛି ପୁରସ୍କାର ନାହିଁ ? ଭଗବାନଙ୍କ ରାଜ୍ୟରେ କ'ଣ ଖାଲି ଅଛି ଅଭିଶାପର ଦୁର୍ନିବାର କ୍ରମ, ବରଦାନ ନୁହେଁ ? ଅଛି, ଅବଶ୍ୟ ଅଛି । ଶୁକମୁନି ସହାମ୍ୟରେ ବୁଝାଇଲେ ପରୀକ୍ଷିତଙ୍କୁ, କୃଷ୍ଣଚରିତର ଏହି ଅଧ୍ୟାୟଟିକୁ ଶେଷ କଲ ପୂର୍ବରୁ । କହିଲେ ଯେ ପରମ ଭକ୍ତ ଶବର, ଯେ କେବଳ ପିତୃଋଣ ସୁଝିବା ପାଇଁ ଜନ୍ମ ହୋଇଥିଲ ଦ୍ୱାପରରେ, ସେ ମଧ୍ୟ ଯିବ ସ୍ୱର୍ଗପୁରକୁ । ଏବଂ ତାରାଟିଏ ହୋଇ ଉଦୟ ହେଉଥିବ ଠାକୁରଙ୍କ ପାଖରେ । ଚିରଦିନ ପାଇଁ ।

ସେହି କୃଷ୍ଣ, ଆର୍ତ୍ତତ୍ରାଣ ପତିତପାବନ, ସେହି ଆଜି ବିଦ୍ୟମାନ ଶ୍ରୀକ୍ଷେତ୍ରରେ । ଜଗନ୍ନାଥ ରୂପେ । ଦାରୁବ୍ରହ୍ମ ଶୁଣୁଛନ୍ତି ଲକ୍ଷ ଲକ୍ଷ ଆରତ ପତିତଙ୍କ ଦୁଃଖ । ଶୁଣୁ ନାହାନ୍ତି କି ?

ଏହି ମନୁଷ୍ୟଜନ୍ମ କ'ଣ ଅର୍ଥହୀନ ? ତଥା କୋଉଆସକ୍ତିଳ ? ଏବଂ ଅକାରଣ ଗୋପାଳବାବୁଙ୍କ ଦୁଃଖ ରାମବାବୁଙ୍କ ଶୋକ, ଅବା ଗୋବରଗୋଟେଇର କ୍ଲେଶ ? ଚକାଡୋଳା ଦେଖୁଛି, ଶୁଣୁଛି. ଏବଂ କହିଲ ପରି ଲଗୁଛି—ନା, ନା, ନା ! ଭୟ ନାହିଁ । ପ୍ରତ୍ୟେକ କର୍ମର ଫଳ ଅଛି, କାରଣ ଅଛି । ପ୍ରତ୍ୟେକ ଅନ୍ଧାରକୁ ଆଲୁଅ, ପ୍ରତ୍ୟେକ ଅଭାବକୁ ଭାବ, ଏବଂ ପ୍ରତ୍ୟେକ ଋଣକୁ ତା'ର ପରିଶୋଧ । ଏ ଜନ୍ମରେ ନହେଲେ ବି ଆରଜନ୍ମରେ ଅବା ଅନ୍ୟ କେଉଁ ଯୁଗରେ···

ହଉ, ତବ ଲୀଳା ପୂର୍ଣ୍ଣ ହେଉ ଲୀଳାମୟ ! ଭକ୍ତ ହାତ ଯୋଡ଼େ ଜଗତ୍‌ପିତା ଜଗନ୍ନାଥଙ୍କୁ । ଆଉ କିବା ଗତି ଅଛି ତା'ର, ଅଳ୍ପବୁଦ୍ଧି ଅଂଧାର ?

# କୋକୁଆଭୟର ଶେଷ କଥା

ପୁରାଣ କଥାକୁ ଆଶ୍ରୟ କରି ଯେଉଁ ଅଳ୍ପ କେତୋଟି ଗଳ୍ପ ଲେଖିବାର ସୁଯୋଗ ମିଳିଛି ମୋତେ, 'ସାରଳା ସାହିତ୍ୟ ସଂସଦ'ର ନିରଳସ କର୍ମକର୍ତ୍ତା ବନ୍ଧୁ ପ୍ରଭାକର ସ୍ୱାଇଁଙ୍କର ଅନୁରୋଧକୁ ଏଡ଼ି ନପାରି, ସେଗୁଡ଼ିକୁ ମୁଁ ସ୍ୱତନ୍ତ୍ର ସମ୍ମାନ ଦେଇ ଆସିଛି। ଏବଂ ସେଥିପାଇଁ ମୁଁ ପ୍ରଭାକରବାବୁଙ୍କ ପ୍ରତି କୃତଜ୍ଞ। କାରଣ ସେଥିରେ ମୁଁ ପୁରାଣର ଚରିତ୍ର ଓ ଘଟଣାମାନଙ୍କୁ ଭଲକି ଭଲ ନୂଆ, ହେଲେ ତାତ୍ପର୍ଯ୍ୟପୂର୍ଣ୍ଣ, ରୂପରେ ଦେଖିବାର ସୌଭାଗ୍ୟ ଲାଭ କରିଛି, ଏବଂ ମୋର ମନେ ହୋଇଛି ଯେ ଏବେ ମଧ୍ୟ ରହିଛି ସେହି ମଣିଷ, ସେହି ଦେବତା ତଥା ରାକ୍ଷସ। ସେହି କୃଷ୍ଣ ଏବଂ ସେହି କୋକୁଆ। ପ୍ରଭେଦ କେବଳ ଦେଶ-କାଳ-ପାତ୍ର ଏବଂ ଯୁଗୋପଯୋଗୀ ବେଶଭୂଷା ନେଇ। ତା'ଛଡ଼ା ସେ ବେଳର କାବ୍ୟଧର୍ମୀ କଳାକାରମାନେ କଭଳି ଭାଷା ଓ କଳ୍ପନାର ଛୁନ୍ଦର ଦେଖାଇ ଜନସାଧାରଣଙ୍କର ଏତେ ପ୍ରିୟପାତ୍ର ହୋଇ ପାରିଥିଲେ ତାଙ୍କର ସେହି ସୃଜନୀ କଳା ମଧ୍ୟ ମୋତେ ମୁଗ୍ଧ କରିଛି। ଏବଂ ମୁଁ ଆଶା କରେ ତାହା ଏହି ବିନୀତ ଲେଖକକୁ ପ୍ରୋତ୍ସାହିତ କରିଛି, ଆହୁରି ଟିକିଏ ଦୁଃସାହସୀ ହୋଇ ଆଗକୁ ମାଡ଼ିଯିବା ପାଇଁ।

ଧରନ୍ତୁ ଏଇ କୋକୁଆ ଉପାଖ୍ୟାନ। ଷଡ଼ଗୋଟି ପକ୍ଷ ତାର ତିନିଗୋଟି ନେତ୍ର। ଷଡ଼ଗୋଟି ତା'ର ଭୟଙ୍କର ଗାତ୍ର। କନ୍ତୁ କାହୁଁ ଆସିଲା ଏହି କୋକୁଆ? କେଉଁଠୁ ତାକୁ ଧରି ଆଣିଲେ ଆମ ଆଦିକବି ସାରଳା ଦାସ, ମହାଭାରତର ମୁଣ୍ଡି ମାରିବା ଲାଗି? ସଂସ୍କୃତ ମହାଭାରତରେ ତା'ର ରୂପଶ୍ରୀ ଦେଖିବାକୁ ମିଳେ ନାହିଁ। ହେଲେ ଆଦିକବିଙ୍କର ମନହେଲା ସେମିତି ଗୋଟିଏ ବିଚିତ୍ର ଜନ୍ତୁ ଗଢ଼ିବା ପାଇଁ, ଯେପରିକି ଯଦୁବଂଶ ଧ୍ୱଂସର କାହାଣୀ କେବଳ ଏକ ଦୈବ ଅଭିଶାପର ନୀତିକଥା ହୋଇ ରହିବ ନାହିଁ, ଆମକୁ ବିମୋହିତ କରିବ ଏକ

ଅପୂର୍ବ ସୁନ୍ଦର ଦୃଶ୍ୟ ଦେଖାଇ । ଆତୁର ଅଛି । ତାଙ୍କର ସୃଜନ ପ୍ରବୃତ୍ତି କେବଳ କାବ୍ୟସୁଲଭ ନୁହେଁ, ସେଥିରେ ମଧ୍ୟ ଅଛି ଦେଶ-ପ୍ରୀତିର ଛଟା । ନହେଲେ କ'ଣ ସେ କ'ଣ ଶ୍ରୀକୃଷ୍ଣଙ୍କ ଦରପୋଡ଼ା ପିଣ୍ଡକୁ ଆମ ବାଙ୍କୀ ମୁହାଣରେ ଲଗାଇଥାଆନ୍ତେ, ଏବଂ ସେ ଆଜି ଦାରୁବ୍ରହ୍ମରୂପେ ପୂଜା ପାଉଥାଆନ୍ତେ ଶ୍ରୀକ୍ଷେତ୍ରରେ ?

ବର୍ତ୍ତମାନ ଦେଖିବା ଗପଟିରେ କଅଣ ଅଛି, କାହାଣୀର ବୈଚିତ୍ର୍ୟ ଛଡ଼ା । ମନେହୁଏ ଯେ ଏଥିରେ ଥିବା ବକ୍ତବ୍ୟର ତାତ୍ତ୍ୱିକ ତଥ୍ୟ ଅତ୍ୟନ୍ତ ସ୍ପଷ୍ଟ ଏବଂ ସରଳ ଲେଖକଙ୍କ ଭାଷାରେ ପ୍ରତ୍ୟେକ ଅନ୍ଧାରକୁ ଆଲୁଅ ଯୋଗାଇବାକୁ ହେବ, ପ୍ରତ୍ୟେକ ପାପକୁ ତା'ର ପ୍ରାୟଶ୍ଚିତ୍ତ, ପ୍ରତ୍ୟେକ ଋଣକୁ ତା'ର ପରିଶୋଧ ଏବଂ ପ୍ରତ୍ୟେକ ଦୁଃଖୀକୁ ତା'ର ପାଉଣା, ଯେମିତିକି ତା'ର ସତ ଲୁହତକ ସତ ହୋଇ ରହିବ, ମାଟିରେ ମିଶି ନଷ୍ଟ ହୋଇ ଯିବ ନାହିଁ । କିନ୍ତୁ ତା'ପରେ ସେ କହୁଛନ୍ତି କ'ଣ ନା ଏହି ତତ୍ତ୍ୱର ମାହାତ୍ମ୍ୟକୁ ଆଉ କେହି ବୁଝିବ ନାହିଁ ସୁଦର୍ଶନଙ୍କ ଛଡ଼ା । କିଓ କାହିଁକି ? ମଣିଷ ବି କ'ଣ ଏଇଆ ବୁଝେ ନାହିଁ ? ନହେଲେ ପରିବାର, ସମାଜ, ରାଷ୍ଟ୍ର, ଏସବୁର ବ୍ୟବସ୍ଥା କରି ଯାଇଛି କାହିଁକି ? ଏଇଥିପାଇଁ ଯେ ପ୍ରତ୍ୟେକ ବ୍ୟକ୍ତି ଏକ ସମଷ୍ଟିର ଅଧୀନ ହୋଇ ରହିବ ଏବଂ ପ୍ରତ୍ୟେକକୁ ତା'ର ପାଉଣା ମିଳିବ, ସମଷ୍ଟିର ଯଥାଯୋଗ୍ୟ ନିୟମ ଓ ପ୍ରଶାସନ କରିଆରେ । ସୁଜନକୁ ମିଳିବ ତା'ର ନ୍ୟାଯ୍ୟ ସ୍ୱୀକୃତି, ଏବଂ ଦୁର୍ଜନକୁ ତା'ର ଉପଯୁକ୍ତ ଶାସ୍ତି । କିନ୍ତୁ ଏହି ତତ୍ତ୍ୱର ଗୁହାଡାକୁ ମୋଟାମୋଟି ଭାବେ ସାରିଦେଲେ ଚଳିବ ନାହିଁ, ତାକୁ ଆମୂଳଚୂଳ ପୂରଣ କରିବାକୁ ହେବ, ଏହାହିଁ ବୋଧହୁଏ ଏହି ଗଳ୍ପର ବକ୍ତବ୍ୟ । ତେଣୁ ମହାଭାରତର ମୋଟ କଥା ହେଲା 'ସତ୍ୟର ଜୟ, ଧର୍ମର ଜୟ' ଏବଂ ସେ ଦିଗରେ ପ୍ରତ୍ୟେକ ଚରିତ୍ର ନିଜ ନିଜର ଭୂମିକା ନିଭେଇଛନ୍ତି ବୋଲି କହିଲେ ଯଥେଷ୍ଟ ନୁହେଁ । ଦେଖିବାକୁ ହେବ ପ୍ରତ୍ୟେକ ବ୍ୟକ୍ତିର ସମୁଚିତ ହିସାବନିକାଶ କରାଯାଇଛି କି ନାହିଁ, ସେ ଧର୍ମଯୁଦ୍ଧର ଏପାଖରେ ଥାଉ କି ସେପାଖରେ । ଯଥା—ଦୁର୍ନୀତି କୌରବ-ମାନେ ମଲେ ଭଲ ହେଲା, କିନ୍ତୁ ଗାନ୍ଧାରୀଙ୍କ ଶହେ ପୁଅ

ଗୋଟି ଗୋଟି ହୋଇ ମଲେ ସେ ବଞ୍ଚି ଥାଉଁ ଥାଉଁ, ଏଇଟା କ'ଣ ଭଲକଥା ହେଲ ? ନା, ଧର୍ମଯୁଦ୍ଧର ରଚୟିତା ଓ ବୁଦ୍ଧି-ଦାତା ଖୋଦ୍ ଶ୍ରୀକୃଷ୍ଣଙ୍କୁ ହିଁ ତା'ର ଶାସ୍ତି ଭୋଗିବାକୁ ପଡ଼ିବ । ଗାନ୍ଧାରୀଙ୍କ ଆଖିର ଲୁହକୁ ମିଳିବ ତା'ର ନ୍ୟାଯ୍ୟ ପାଉଣା । ଶ୍ରୀକୃଷ୍ଣଙ୍କ ପ୍ରତ୍ୟେକ ସନ୍ତାନ ମରିବେ ସେ ବଞ୍ଚି ଥାଉଁ ଥାଉଁ । କେହି ତାଙ୍କ ପାଖରେ ନ ଥିବେ ସେ ମଲାବେଳକୁ । ସେମିତି ଭଲ ହେଲ ରାମଚନ୍ଦ୍ର ବାଲିକୁ ବଧ କଲେ, ନ ହେଲେ ସେ ବାନରସେନାଙ୍କ ସାହାଯ୍ୟ ପାଇ ନଥାଆନ୍ତେ, ଏବଂ ହୁଏତ ଲଙ୍କାଗଡ଼ ଜିଣି ପାରି ନଥାଆନ୍ତେ । ଏବଂ ବାଲୀର ପୁଅ ଅଙ୍ଗଦ ଅବଶ୍ୟ ଗୋଟାଏ ଭଲ କାମ କଲ ସେହି ବାନର-ସେନାରେ ସାମିଲ୍ ହୋଇ । କିନ୍ତୁ ତା' ବାପ ଭଲ ହେଉ ବା ଖରାପ, ପିତୃହନ୍ତାର ପ୍ରତିଶୋଧ ନେବା ତା'ର କର୍ତ୍ତବ୍ୟ । ଏ ଜନ୍ମରେ ନହେଲ ନାହିଁ, ଆର ଜନ୍ମରେ । ତେଣୁ ଶ୍ରୀକୃଷ୍ଣରୂପୀ ରାମଚନ୍ଦ୍ରଙ୍କୁ ମରିବାକୁ ପଡ଼ିବ ଜାରାଶବରରୂପୀ ଅଙ୍ଗଦ ହାତରେ, ହେଉ ପଛେ ତାହା ଭୁଲ୍‌ବଶତଃ । କାହାର ରକ୍ଷା ନାହିଁ । ଏବଂ ଯିଏ ଭଲ କାମଟିଏ କଲ, ସୁଖ ଆଣିଦେଲ ଆଉ କାହାକୁ, ତାକୁ ତା'ର ସ୍ୱର୍ଣ୍ଣପଦକ ମିଳିବ ନାହିଁ କେମିତି ? ସେହେତୁ ପାଣ୍ଡବମାନଙ୍କୁ ମୃତ୍ୟୁମୁଖୀ ଶ୍ରୀକୃଷ୍ଣଙ୍କ ପାଖରେ ଆଣି ପହଞ୍ଚେଇ-ଥିବା ଜାରାଶବରକୁ ମିଳିବାର ଥିଲ ତା'ର ଯଥାଯୋଗ୍ୟ ପୁରସ୍କାର । ଏବଂ ସେ ତାରାଟିଏ ହୋଇ ଜୁଳୁଜୁଳୁ ହେଲ ଜଗନ୍ନାଥଙ୍କ ପାଖରେ, ଚିରଦିନ ପାଇଁ । ଇତ୍ୟାଦି । କୁହନ୍ତୁ, ଆଉ କୋଉଠି କିଛି ବାକି ରହିଲ କି ? ଥିଲେ ପରବର୍ତ୍ତୀ ବ୍ୟାସକବିମାନେ ଅବଶ୍ୟ ତାଙ୍କ ଦେଖିଲ କାମ କରିବେ । ଲେଖକ କଥାଟାକୁ ଆହୁରି ବୁଝେଇକରି କହିଛନ୍ତି ଯେ ପୃଥିବୀରେ ସବୁ ଭଲ, ସବୁ ସୁନ୍ଦର ନ ହୋଇପାରେ, ଏଠି ଅବିଚ୍ଛେଦ୍ୟ ଆଲୁଅ ନାହିଁ କି ଅନ୍ଧାର, ଅନାବିଲ ପୁଣ୍ୟ ଅବା ଅବାରିତ ପାପ । କିନ୍ତୁ ଅଛି ଏଇ କ୍ଷତିପୂରଣର ପଣ । ଉତ୍ତର ଦାୟିତ୍ୱର ତାଡ଼ନା । ଚକ ଘୂରୁଛି । ଏହାହିଁ ସୃଷ୍ଟିର ନିୟମ, ତେଣୁ ମଣିଷ ମଧ ଏହାର ଅନୁସରଣ କରିବାକୁ ଚାହିଁଛି ତା' ନିଜ ଗଢ଼ା ସଂସାରରେ । ସେହେତୁ କଥାଟା ଆଦୌ ଦୁର୍ବୋଧ ନୁହେଁ, ଲେଖକ ମହାଶୟ, ଯାହା ଆପଣ ଯୋଡ଼ି ଦେବାକୁ ଚାହିଁଲେ ଆପଣଙ୍କ ଟିପ୍‌ପଣୀରେ । ହିସାବ ଖାତାର ଦୁଇ ପାଖରେ ଥିବା

ଲିଭଯିବାର ଅଙ୍କ ମିଳିବାକୁ ବାଧ୍ୟ । ଆଜି ନହେଲେ କାଲି, ଅବା କେଉଁ ପରଜନ୍ମରେ । ପୂର୍ଣ୍ଣଚ୍ଛେଦ ।

କିନ୍ତୁ କ୍ଷମା କରିବେ ଲେଖକ ମହାଶୟ, ଗୋଟାଏ କଥା ସହଜେ ବୁଝିହେଉ ନାହିଁ । ବ୍ୟାସକବି, ଆଦିକବିଙ୍କ କଥା ଦୋସରା, କିନ୍ତୁ ଆପଣ ପରି ଜଣେ ବାସ୍ତବତାବାଦୀ ଆଧୁନିକ ଲେଖକ, ଏହାହିଁ କ'ଣ ଆପଣଙ୍କର ଅନୁଭୂତ ସତ୍ୟ ? ଖଣ୍ଡିତ ମଣିଷ ସଂସାର କଥା ଛାଡ଼ନ୍ତୁ, ସତରେ କ'ଣ ଏଇଆ ହେଉଛି ଭଗବାନଙ୍କ ସୃଷ୍ଟିରେ ? ଯାହାକୁ ଯାହା ମିଳିବାର କଥା ମିଳି ଯାଉଛି ? ପାପୀ ଦଣ୍ଡ୍ୟ ଆରମ୍ଭ କରୁ ନାହିଁ ନା ଅକାରଣରେ କେହି କଷ୍ଟ ପାଉ ନାହିଁ ? ନା, ଆପଣ ନିଜେ ଜାଣନ୍ତି ଯେ ଏମିତି ହୁଏ ନାହିଁ । ଖାଲି ଆପଣଙ୍କ ସାହିତ୍ୟ ନୁହେଁ, ଆଧୁନିକ ଜଗତର ଏକ ପ୍ରଭାବଶାଳୀ ଦର୍ଶନ ବିନାଦ୍ୱିଧାରେ କହୁଛି ଯେ ଏଇ ସୃଷ୍ଟିଟା ଅଳୀକ । ଆବ୍‌ସର୍ଡ୍ । ଏହାହିଁ ବୁଝିବାକୁ ଚେଷ୍ଟା କର, ପୂରାପୂରି 'ସ୍ୱାଧୀନ' ହେବାକୁ ଶିଖ, ଏବଂ ସେଇଠୁଁ କରି ଯାଅ, ଯାହା ତୁମର କରିବା କଥା । ମନୋବୃତ୍ତି ସହ । ଯେଉଁଥିରେ ତମର ତଥା ତମ ପଡ଼ୋଶୀର ଏବଂ ସଂସାରର ମଙ୍ଗଳ ହେବ । ଏହାଛଡ଼ା ଆଉ କିଛି ଭାବିବା ଏବଂ କରିବାକୁ ଚାହିଁବା ନିରର୍ଥକ ।

ଆଃ ! ମୁଁ କ'ଣ ଜାଣେ ନାହିଁ ସେକଥା । ହେଲେ ମୁଁ ମଧ୍ୟ କହିବାକୁ ଚାହେଁ ଯେ ଏତିକିରେ ମୋର ମନ ବୁଝୁ ନାହିଁ, ଏବଂ ମୁଁ ଶେଷ ପ୍ରଶ୍ନଠାରୁ ପୂରାପୂରି ବିଚ୍ଛିନ୍ନ ହୋଇ ଯାଇପାରିବି ନାହିଁ । ମଣିଷ ଜନ୍ମ ପାଇଥିବାରୁ ଏହାହିଁ ମୋ ମନୋବୃତ୍ତିର ଦୁର୍ଦ୍ଦଶା, ଏବଂ ମୁଁ ସେଥିରୁ ଉଧୁରି ଆସି ପାରିବିନାହିଁ । ମୋତେ ଏଇ ଅଭିଶାପଟିକୁ ନିଭେଇବାକୁ ପଡ଼ିବ ।

ତେଣୁ ଉପରୋକ୍ତ ତତ୍ତ୍ୱ କଥା ମୋର ଅନୁଭୂତ ସତ୍ୟ ନହେଲି ନାହିଁ, ମୁଁ ତଥାପି କହିବି ଏବଂ କହୁଥିବି—କିନ୍ତୁ କାହିଁକି ? କାହିଁକି ଏମିତି ହେବ ? ଏହାହିଁ ମୋର, ତଥା ପ୍ରତ୍ୟେକ କଳାକାରର ଶେଷକଥା, ତା'ର ଜିଦଖୋର ଜିଜ୍ଞାସା । ଏବଂ ସେହେତୁ ସେଥିର ନିଜ ଗଢ଼ା ଅନିବାର୍ଯ୍ୟ ଉତ୍ତର, ଯେ

ଏମିତି ହେବାର ନୁହେଁ । ଯାହା ସୁନ୍ଦର ତାହାହିଁ ସତ । ତାହା ବାସ୍ତବ କି ଅନୁଭୂତ ନହେଲେ ମଧ୍ୟ ଯୁକ୍ତିଯୁକ୍ତ । ଅତଏବ ଅଙ୍କ ମିଳିବ ହିଁ ମିଳିବ । ସେଣିକି କିଏ ପରଜନ୍ମକୁ ଲେଉଡ଼ିବ, କିମ୍ବା ଆଉ କେଉଁ ସନ୍ତୋଷିଆ ସ୍ୱର୍ଗ ସେକଥା ଭିନ୍ନ ।



# ବିଜୟିନୀ

ପିକ୍‌ନିକ୍‌ର ଆନନ୍ଦ ଅନେକ ବଡ଼ ମଣିଷଙ୍କୁ ପିଲା ହେବାକୁ ଉତ୍ସାହ ଦିଏ । ତେଣୁ ସେମାନେ ଦୋଳାୟିତ ହୁଅନ୍ତି, ଏବଂ ନାନା ବେସୁରା ବେତାଳିଆ ଧ୍ୱନି ସୃଷ୍ଟି କରିଅନ୍ତି ଆକାଶ ପୃଥିବୀକୁ, ସ୍ୱଧର୍ମ ପାଳନ କରି ଚାଲୁଥିବା ପ୍ରକୃତି ଓ ପଶୁପକ୍ଷୀମାନଙ୍କୁ ଚମକେଇ ଦେଇ । ସେହେତୁ ମୋର ଆଶ୍ଚର୍ଯ୍ୟ ହେବାର କିଛି ନଥିଲା, ଯେତେବେଳେ ମୁଁ ଦଳେ ପୁରୁଷ-ସ୍ତ୍ରୀଙ୍କୁ ସେହିପ୍ରକାର ବ୍ୟବହାର କରୁଥିବାର ଦେଖିଲି, ମା'ଆ ତାରିଣୀଙ୍କ ଆଡ଼୍‌ଆଲରେ । କିନ୍ତୁ ସେମାନେ ଯେତେବେଳେ ପାଖେଇ ଆସିଲେ ମୋ ଆଡ଼କୁ, ମୋ ଟ୍ରାନ୍‌ଜିଷ୍ଟରରୁ ଧ୍ୱନିତ କିଶୋରକୁମାର ଓ ଲତା ମଙ୍ଗେସ୍‌କରମାନଙ୍କୁ ଅବଜ୍ଞା କରି, ମୁଁ ଅଳ୍ପବହୁତ ବିରକ୍ତ ହୋଇ ଅନେଇଲି ସେମାନଙ୍କ ଆଡ଼କୁ ଏବଂ ଲକ୍ଷ୍ୟ କଲି କେତେଜଣଙ୍କୁ ଯେଉଁମାନେ ବେଶୀ ଝୁଲୁଛନ୍ତି, ହସୁଛନ୍ତି ଏବଂ ତଥାକଥିତ ଗୀତ ମେଲି ଦେଇଛନ୍ତି ।

ତାଙ୍କର ଭିତରୁ ଜଣେ ମୋର ପରିଚିତା ମନେ ହେଲା । କିନ୍ତୁ ସେ କିଏ ବୋଲି ଚିହ୍ନିଲି ଆଗରୁ, ସେଇ ନିଜେ ମାଡ଼ି ଆସିଲା ମୋ ଆଗକୁ, ଏବଂ ପାଟି କରି ଉଠିଲା, ନିହାତି ଅଭଦ୍ର ସ୍ୱରରେ—

"ଆରେ, ନାରୁଭାଇ ତମେ ? ଏଠି ବସି କ'ଣ କରୁଛ ଏକୁଟିଆ ?" ସତେକି ଏଠି ଖାଲି ମତ୍ତ ହେବା କଥା, ଏକୁଟିଆରେ ବସି ରେଡ଼ିଓ ଶୁଣିବା ଅନ୍ୟାୟ !

ଚନ୍ଦ୍ରା । ମୋର ଚିହ୍ନିବାକୁ ଡେରି ଲାଗିଲା ନାହିଁ । ତୋ' ଭଳିଆ କେଇଟା ଫୁଲେଇ ଫାଙ୍କିଲି ଝିଅ ଅଛନ୍ତି ଆମ ପୃଥିବୀରେ ? ଯଦିଓ ତୁ ବୁଢ଼ୀଟିଏ ହେଲୁଣି, ଆଉ ହାତୀ ପରି ମୋଟେଇ ଗଲୁଣି । ଯାହାହେଉ ଅନେକ ବର୍ଷ ପରେ ଦେଖା ହେଲେ ଯେଉଁପ୍ରକାର ଖବରଅନ୍ତରର ଆଦାନପ୍ରଦାନ ହୁଏ, ତା'ର ମଝିରେ ସେ ଯାହା କହିଲା ସେଇଠୁଁ ମୋ କାହାଣୀର ଆରମ୍ଭ । ପଚାରିଲି—

"ବ୍ରଜଭାଇଙ୍କ ଖବର କ'ଣ ? ଶୁଣିଲି ସେ ଭାରି ଦୁଃଖରେ ଅଛନ୍ତି ।"

"ଦୁଃଖରେ ?"

"ଆଇ ମିନ୍, ସହଜେ ଶଙ୍ଖାଘ୍ୱାର୍ କଲେଣି, ବୁଢ଼ା ହେଲେଣି, ପିଲାଛୁଆ ନାହାନ୍ତି, ମୁଁ ସେକଥା କହୁନାହିଁ । ବଡଲୋକ ଘରେ ବଦ ଘାଣ୍ଟି ହେଉଛନ୍ତି । ଆଉ ସେ ତେଜ ନାହିଁ କି ଚେହେରା । ତା' ଛଡ଼ା…"

ଚନ୍ଦ୍ରା ଅଟକିଗଲା, ଏବଂ ମୁଁ ଅପେକ୍ଷା କଲି । ସେଇଠୁଁ ସେ କହିଲା ପଦେ, ଅଧାଥାରେ । ଏବଂ ଜାଣିଶୁଣି, ମୋତେ ଖୁଆ ଦେଲା ପରି । କାରଣ ବ୍ରଜର ସ୍ତ୍ରୀ ମାଲୁ ଆମ ଗାଆଁ ଝିଅ, ଏବଂ ଅନେକ ଦିନର ଭାଇ-ଭଉଣୀ ସଂପର୍କ ଅଛି ଆମ ଭିତରେ ବୋଲି ବେଶ୍ ଜଣା ଅଛି ତାକୁ । କହିଲା—

"ଖାଲି ଆମ ମାଲୁଅପା ଟିକିଏ ଭିନ୍ନ ରକମର ହୋଇଥାଆନ୍ତା କି ! ତା'ହେଲେ ତାଙ୍କର ଅଧା ଦୁଃଖ ଚାଲି ଯାଇଥାଆନ୍ତା ।"

ସତେ ? ମୁଁ ରାଗରେ କୁହୁଳି ଉଠିଲି । କାହା ଭଳିଆ ହୋଇଥାଆନ୍ତା ସେ ? ତୋ ପରି ଛଇଳ ? ନା ସୁନ୍ଦରୀ ସୁନା ପରି ଗର୍ବୀ ? ମୋର କ'ଣ ମନେ ନାହିଁ ସେବେକାର କଥା, ତମେ ସବୁ କେମିତି ମରୁଥିଲ ସୁପୁରୁଷ କମ୍ପାନୀ ଏକ୍ଜିକିଉଟିଭ୍ ବ୍ରଜ ପଟ୍ଟନାଏକକୁ ବାହା ହେବା ଲାଗି ? କିନ୍ତୁ ସେ ନିଜ ଇଚ୍ଛାରେ ବାହା ହେଲା ଆମ ସାଦାସିଧା ମାଲୁଟିକୁ । କିଏ କୁହେ ଖେଳୁଆଡ଼ ବ୍ରଜ ବାଜି ପକେଇଥିଲା ତା'ର କୋଉ ବନ୍ଧୁ ସାଙ୍ଗରେ, ଯେ ସେ ମାଲୁ-ଟାଇପ୍‌ର ଝିଅକୁ ମଧ୍ୟ ବାହା ହୋଇ ପାରେ । ଏବଂ କିଏ କୁହେ ଯେ ମାଲୁର ବାପା, ଜଗନ୍ନାଥ ମଉସା, ଏମ୍. ଏଲ୍. ଏ. ଗୋଟାଏ ଲୋଭ ଦେଖେଇଥିଲେ ତାକୁ ଯାହା ଫସରଫାଟି ଗଲା, କାରଣ ତାଙ୍କ ପାର୍ଟି ହାରିଗଲା ପର ନିର୍ବାଚନରେ । ସେ ଯାହା ହେଉ ପଛେ, ମାଲୁ ଜିତିଲା, ଆଉ ତମେ ସବୁ ହାରିଗଲ । ହିଂସାରେ ଜଳୁଛ ତମେ ସବୁ, ସେଇ ଦିନଠୁଁ । କ'ଣ ମାଲୁଅପା ଆଉ ପ୍ରକାରେ ହୋଇଥିଲେ…ରବିସ୍ !

ପ୍ରକୃତ କଥା ହେଉଛି ଯେ ବ୍ରଜ ହିଁ ତାକୁ ଅପମାନ ଦେଇ ଆସିଛି ଜୀବନ-ଯାକ । ଏମିତିକି, ବାହାର ଲୋକଙ୍କ ଆଗରେ । ଛୁଗୁଲେଇ କରି କହୁଛି ତା' ଗୃରୁ-ଚଣ୍ଡାଳିଣୀ ଭାଷାରେ, ଆଉ ଫାଲକିଆ ହସଟିଏ ହସି, ଯେ ଆକର୍ଷଣ ବୋଲି କିଛି ନାହିଁ ଆମ ମାଲୁ ପାଖରେ । ସେ ବୋକୀ, ଅଳସେଇ, ଅସୁନ୍ଦରୀ, ଇତ୍ୟାଦି । ତେଣୁ ଦୟା ଆସିବା ଉଚିତ ମାଲୁ ଉପରେ, ଯେ ସବୁକିଛି ହଜମ କରି ନେଇଛି । କାହିଁକିନା ସେ ବ୍ରଜକୁ ଭଲ ପାଇଥିଲା, ଏବଂ ପଣ କରିଛି ବୋଲି ମନେହୁଏ ଯେ ତାକୁ ସବୁଦିନେ ଭଲ ପାଇବ । ସତେକି ତା'ର ଜିତାପଟକୁ ସେ କଦାପି ହରେଇବାକୁ ଦେବ ନାହିଁ । ହଁ, ସେ ହିସାବରେ ସେ ବୋକୀଟିଏ, ଅସଲ ବୋକୀ !

ଯାହାହେଉ, ଚନ୍ଦ୍ରାଠାରୁ ସେଇ ପଦକ ଶୁଣିଲା ପରେ ମୁଁ ଠିକ୍ କଲି ଯେ ମୁଁ ଯିବି ବ୍ରଜ-ମାଲୁଙ୍କ ଘରକୁ । ଏମିତି ବି ଅନେକ ବର୍ଷ ଦେଖା ହୋଇ ନାହିଁ

ତାଙ୍କ ସାଙ୍ଗରେ, କାହିଁକିନା ମୁଁ ବାହାରେ ଥିଲି । ଯିବ, ଆଉ ଦେଖିବ କେଉଁଠି କିଛି ବଦଳିଛି କି ନାହିଁ । ମୋର ପୂର୍ଣ୍ଣ ବିଶ୍ୱାସ ଥିଲା ଯେ ମୁଁ ପୁଣି ପ୍ରମାଣ କରି ଦେଇ ପାରିବି, ଅନ୍ତତଃ ନିଜର ସନ୍ତୋଷ ପାଇଁ—ହଂସକୁଟିଆ ଚନ୍ଦ୍ରାମାନେ କିଛି ନ ବୁଝିଲେ ନାହିଁ—ଯେ ନିଲୁ ହିଁ ଦମ୍ଭାର ପାତ୍ରୀ, ତା'ର ସେଇ ସ୍ୱାମୀଟା ନୁହେଁ, ସେ ଯେତେ ବୁଢ଼ା ହୋଇଥାଉ, କି ରୋଗ ବଇସ୍ୱଗରେ ପାଣ୍ଡି ହେଉଥାଉ ।

ଠିକଣା ବୁଝି ଗଲି ତାଙ୍କ ନୂଆ ଘରକୁ । ଏତେ ବର୍ଷ ପରେ ମୋର ଏଇ ହଠାତ୍ ଆବିର୍ଭାବରେ ଦୁହେଁ ସହଜେ ଆଶ୍ଚର୍ଯ୍ୟ ହେଲେ ଏବଂ ଖୁସି ହେଲେ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ପ୍ରଥମରୁ ଯେଉଁ ପ୍ରଭେଦ ଦେଖିଲି ଦୁହିଁଙ୍କ ସ୍ୱାଗତ କରିବାର ଭଙ୍ଗୀରେ, ସେଥିରେ ମୋର ଦୃଢ଼ତା ଦବିଗଲା । କାରଣ ଯେଉଁଠି ବ୍ରଜ ଉଚ୍ଛ୍ୱସିତ ଅଭିବାଦନ ସହ ମୋତେ କୁଣ୍ଢେଇ ପକେଇଲେ, ନିଲୁ କ'ଣ ଗୋଟାଏ ଆନନ୍ଦ-ହସ ହସି ପାରି ନଥାଆନ୍ତା, ଭଉଣୀମାନେ ଯେମିତି ହସନ୍ତି, ଶୁଭାକାଙ୍କ୍ଷୀ ବନ୍ଧୁମାନଙ୍କୁ ପନ୍ଦର କୋଡ଼ିଏ ବର୍ଷ ପରେ ଦେଖିଲାବେଳେ ? ଖାଲି ସେତିକି ନୁହେଁ, ମୁଁ ଲକ୍ଷ୍ୟ କଲି ଦୁଃଖର ସହିତ, ଯେ ତା'ର କେଇଟା ପୁରୁଣା ଅଭ୍ୟାସ ବଦଳି ନାହିଁ ଆଜିଯାଏଁ ।

ଅଶୋଭନୀୟ, କହିବାକୁ ଗଲେ ଅଶ୍ଳୀଳ ଅଭ୍ୟାସ । ସୁଖ ହେଉ ବା ଦୁଃଖ, ଯେ କୌଣସି କାରଣରୁ ଉତ୍ତେଜିତ ହେଲେ ସେ କେଇଟା ଅସଣ୍ଡା କାମ କରେ, ଯେଉଁଥିପାଇଁ ସେ କେତେ ଗାଳିମନ୍ଦ ଖାଇଛି ମାଉସୀଙ୍କ ଠାରୁ । କିନ୍ତୁ ହାୟ ! ବୁଢ଼ୀଦିନେ ବି ସେଇଆ କରିବାକୁ ଥିଲା ? ମୋତେ ଦେଖି ସେ ହସିଲା ପରି ହସିଲା ନାହିଁ ସିନା, କିନ୍ତୁ ଦ୍ରୁତତାର ସହ ତା' ନଖକୁ କାମୁଡ଼ିବାକୁ ଲାଗିଲା । ଏବଂ ଯାହାର ଦାନ୍ତ କେବେହେଲେ ସମତୁଲ ନଥିଲା, ସେହି ଦୃଶ୍ୟ କିଭଳି ଅପ୍ରୀତିକର ହୋଇଥିବ ତାହା ସହଜେ ଅନୁମେୟ ।

ରୁହନ୍ତୁ, ଆହୁରି ଅଛି । କୌଣସି ଅଭ୍ୟାସ ବଦଳି ନାହିଁ । ବ୍ରଜ ଓ ମୁଁ ଆସି ଗପିଲୁଣି ପ୍ରାୟ ଅଧଘଣ୍ଟାଏ ହେଲା, ଏବଂ ବ୍ରଜ କେତେଥର କହିଲାଣି ନିଲୁକୁ ଯେ ତମ ଗେହ୍ଲାଭାଇ ଆସିଛନ୍ତି ଏତେଦିନ ପରେ, ତାଙ୍କ ଖବର ବୁଝ, କିନ୍ତୁ ନିଲୁର ହୋଲେ ନା ଡୋଲେ । ସେମିତି ନଖ କାମୁଡ଼ୁଛି, ଆଉ ପିଇଯାଉଛି ଆମ କଥା । ସତେକି ଅବଧୂତଟିଏ । ବୋଲି ଗୋଟାଏ ଜିନିଷ ତା' ଜାତକରେ ନାହିଁ । ଅବଶ୍ୟ ମୁଁ ଜାଣେ ଯେ ଇଏ କେବଳ ତା' ଅଳସୁଆପଣ, ଆଉ କିଛି ନୁହେଁ । କିନ୍ତୁ ବାହାର ଲୋକେ କ'ଣ ବୁଝିବେ ସେ କଥା ?

ଗପୁଗପୁ ବ୍ରଜ ବର୍ଣ୍ଣନା କରୁଥିଲା ତା' ରୋଗ ବଇରାଗର କାହାଣୀ । ରୋଗ ହେଉ କି ରାଗ, ବ୍ରଜର ବର୍ଣ୍ଣନାଶୈଳୀ ଅନୁପମ । ତେଣୁ ଶୁଣିବାକୁ ଭଲ ଲାଗୁଥିଲା

ତା' ଗପ—ଡାକ୍ତରମାନଙ୍କ ଭ୍ରମ, ଜାବାଣ୍ଡ୍‌-ଦୌରାତ୍ମ୍ୟର କ୍ରମ, ଠିକଣା ଔଷଧ ମଗେଇବାର ବିପୁଳ ଉଦ୍ୟମ, ଇତ୍ୟାଦିର ନାଟକୀୟ ବିନ୍ୟାସ । କିନ୍ତୁ ସେ ହଠାତ୍ ରହିଗଲା, ଏବଂ ହାଁପେଇଲା । ଏବଂ ମୋର ବୁଝିବାରେ ବାକି କ'ଣ ରହିଲା ନାହିଁ ଯେ ସେ ପ୍ରକୃତରେ ରୋଗୀଟିଏ ।

କିନ୍ତୁ ତତ୍‌କ୍ଷଣାତ୍ ମାଲୁ ନଖକାମୁଡ଼ା ଛାଡ଼ିଦେଇ କଥାର ଖିଅ ଧରିଲା । ଆରମ୍ଭ କଲା—କ'ଣ ହେଲା କି···। ଏବଂ ମୁଁ ହାହି ହାହି ଡାକିଲି । କାରଣ ମୁଁ ଧରି ନେଲି ଯେ ଅଯଥାରେ ଲମ୍ବେଇ ଲମ୍ବେଇ କଥା କହିବାର ଅଭ୍ୟାସ ମଧ୍ୟ ଯାଇ ନଥିବ ତା'ର । ତେଣୁ ସେ ମୋତେ ବୋର୍ କରିବ । ପ୍ରତିକାର ସ୍ୱରୂପ ମୁଁ ଅସ୍ଥିରତାର ଲକ୍ଷଣ ଦେଖେଇଲି ତା' କଥା ମଝିରେ । ମୋର ଗୋଟାଏ ଜରୁରୀ କାମ ଅଛି, ମୋତେ ଏଥର ଉଠିବାକୁ ପଡ଼ିବ—ଏଇ ଭାବରେ । କିନ୍ତୁ ବ୍ରଜ ହାତ ଉଠେଇଲା, ମୋତେ ବସିବା ପାଇଁ ଅନୁରୋଧ କଲା ପରି । ଏବଂ ତା'ର ସେଇ ମାର୍କାମରା ଫାଳକିଆ ହସଟିଏ ହସି କହିଲା—

"ବସ ମ ନାରୁ ଭାଇ । ରାମାୟଣର ଅଧାରୁ ଉଠିଯିବ ? ସ୍ୱାମୀର ଆରୋଗ୍ୟ ପାଇଁ ରାମାୟଣ ପଢ଼ା ହୁଏ ବୋଲି ଜଣା ନାହିଁ ତମକୁ ? ଆଉ କ'ଣ ବୁଝିପାରୁ ନାହିଁ ଯେ ତମ ଭଉଣୀଙ୍କର ଅନ୍ତତଃ ଏଇ ଗୋଟିଏ ନ୍ୟାଯ୍ୟ ଚିନ୍ତା ରହିବା ଆବଶ୍ୟକ ଆଜିକାଲି, ଯେ ତାଙ୍କ ସ୍ୱାମୀଟା ବଞ୍ଚିଯାଉ ଆଉ କେଇଟା ବର୍ଷ ?"

ମାଲୁ ଦାନ୍ତ ଚିକିଡ଼ିଲା । ମନେ ହେଲା ସେଇ ଗୋଟିଏ ପ୍ରତିକ୍ରିୟା ଜଣା ଅଛି ତାକୁ, ସ୍ୱାମୀଉବାଚରେ ପ୍ରଶଂସା ଥାଉ କି ବିଦ୍ରୂପ ।

ନା, କିଛି ବଦଳି ନାହିଁ । ବରଂ ବୟସ ବଢ଼ିଲାରୁ ସବୁକିଛି ଆହୁରି କଠେଇ ହୋଇଯାଇଛି ।

ବେଶ୍ । ତା' ହେଲେ ମାଲୁର ଭଲପାଇବା ବି କ'ଣ ଆହୁରି ଆଙ୍କୁଡ଼ି ଧରି ନଥିବ ତା' ସ୍ୱାମୀକୁ ? ଏବଂ ନିଃସନ୍ଦେହରେ ତା'ର ସେଇ ଗୋଟିଏ ଭଲ ଅଭ୍ୟାସ, ରୋଗୀମାନଙ୍କର ସେବା ଶୁଶ୍ରୂଷା କରିବା, ତା'ର ପରାକାଷ୍ଠା କ'ଣ ଆହୁରି ଫୁଟି ଉଠୁ ନଥିବ ତା' ସ୍ୱାମୀର ଆରୋଗ୍ୟ ପାଇଁ ? ମୁଁ ଅଡ଼ି ବସିଲି ତା'ର ସମ୍ୟକ୍ ପ୍ରମାଣ ପାଇବା ଲାଗି । ଏବଂ ସ୍ଥିର କଲି ଯେ ମୁଁ ଏଥର ବାରମ୍ବାର ଆସିବି ଏମାନଙ୍କ ଘରକୁ, ପ୍ରମାଣର ଦଲିଲ୍ ଠିକଣା କରିବା ଯାଏଁ ।

ମୁଁ ଭାବି ନଥିଲି ସେଇ ଚ୍ୟାଲେଞ୍ଜ୍‌ର ମୁହୂର୍ତ୍ତ ଆସି ପହଞ୍ଚିଯିବ ଏତେ ଶୀଘ୍ର, ଏବଂ ଗୋଟାଏ ଅପ୍ରତ୍ୟାଶିତ, ହେଲେ ଟାଣୁଆ ଜବାବ୍ ମିଳିଯିବ ମୋ ପ୍ରଶ୍ନର ।

ବ୍ରଜର ପେଟରେ ଯେଉଁ ଘାଆ ଆବିଷ୍କାର ହୋଇଥିଲା, ତା'ର ପ୍ରକୋପ ବଢ଼ି ବଢ଼ି ଗଲା । ଡାକ୍ତର ତାକୁ ଜଣେଇ ଦେଇଥିଲେ ଯେ ସିଏ କ୍ୟାନ୍‌ସର ନୁହେଁ, ତେବେ କ୍ୟାନ୍‌ସର୍ ଆଡକୁ ଗତି କରିପାରେ । ସେହେତୁ ଏକେ ଯନ୍ତ୍ରଣା, ଦୁଇରେ ଦୁଶ୍ଚିନ୍ତା ଭୋଗିବାକୁ ପଡ଼ୁଥିଲା ତାକୁ । ଫଳରେ ସେ ଯେତିକି ଦମ୍ଭମାସ୍ତ ଦିଶୁଥିଲା, ସେତିକି ଚିଡ଼ଚିଡ଼ି ହେଉଥିଲା ମୀଲୁ ଉପରେ, ମୀଲୁ ତା'ର ଯେତେ ଖିଦ୍‌ମତ୍ କଲେ ମଧ୍ୟ । ଏବଂ ମୋତେ ତା'ର ସେଇ ଦୋମୁଣ୍ଡିଆ ଚୁଗୁଲିଆ କଥା ବି ଶୁଣାଉଥିଲା 'ତମ ଭଉଣୀ'ଙ୍କ ଉଦ୍ଦେଶ୍ୟରେ । ସତେକି ସେଇ ଗୋଟିଏ ଉପଭୋଗ ରହିଯାଇଛି ତା' ପାଇଁ ତା'ର ଏଇ ଦୁର୍ବିସହ ଜୀବନରେ । ଯଥା :

—ହେଇ, ଆସି ବିରାଜମାନ ହେଲେଣି ତମ ଭଉଣୀ । ସାଜଶୃଙ୍ଗାରରେ ଡେରି ହୋଇଗଲା ଟିକିଏ (ଫାଜିଲିଆ ହସ)···ଅବଶ୍ୟ ତା'ର ଆବଶ୍ୟକତା କ'ଣ ଥିଲା ଭଗବାନଙ୍କୁ ଜଣା !

—ଆଜି ପରମ ସୌଭାଗ୍ୟ ତମର, ନାରୁ ଭାଇ । ଦେଖୁଛ ତା' ସାଙ୍ଗକୁ ଦି'ଟା ଚୂଡ଼ାମୁଡ଼ି ବି ମିଳିଯାଇଛି । ଅବଶ୍ୟ ଆଶା କରୁଛି ଯେ ଗୃ' ଅଣ୍ଡା ହୋଇ ଯାଇନଥିବ, କାରଣ ପୂର୍ବାସ୍ତ ଘରେ ଅଛି ଆଜି । ଇତ୍ୟାଦି ।

ହେଲେ ମୀଲୁର ପ୍ରତିକ୍ରିୟା ସବୁଦିନେ ସେଇଆ । ଦାନ୍ତନିକୁଡ଼ା ହସ । ଏବଂ ପ୍ରବଳ ନଖକାମୁଡ଼ା ।

କିନ୍ତୁ ମୀଲୁକୁ ଚୁଗୁଲେଇବାର ଏଇ ମଉଜଟିକି ମଧ୍ୟ ଶୀଘ୍ର ଗୁଲିଗଲା ବ୍ରଜ ପାଇଁ । ତା'ର ଯନ୍ତ୍ରଣାର ଅବଧି ବଢ଼ିବାକୁ ଲାଗିଲା, ଏବଂ ସେ ବେଶୀ ସମୟ ଯାଏଁ ଶୋଇ ରହି ବଡ଼ବଡ଼ି ହେଲା । ଏଇ 'ଷ୍ଟୁପିଡ୍' ଜୀବନ, ସଂସାର, ତଥା ଦିଅଁ ଦେବତାଙ୍କ ଉଦ୍ଦେଶ୍ୟରେ, ଯେଉଁଥିରେ ମୀଲୁ ସାମିଲ୍ ଥିଲା । ଦିନେ ଏମିତି ହେଲା ଯେ ମୀଲୁ ଅନିଶ୍ଚିତ ଭାବରେ ମୋତେ ଅନୁରୋଧ କଲା (ମୁଁ କ'ଣ କହୁଥିଲି କି··· ଅବଶ୍ୟ ଭାଉଜ ଏକୁଟିଆ ଥିବେ···ଫୋନ୍‌ଟା ବି କାମ ଦେଉ ନାହିଁ) ରାତିରେ ରହିଯିବା ପାଇଁ ସେଠି ।

ଏବଂ ସେଇଦିନ ରାତିରେ ଏଇ ଘଟଣା ଘଟିବାର ଥିଲା । ଯାହା ମୁଁ ସ୍ୱଚକ୍ଷୁରେ ଦେଖିଲି ।

ରାତିଅଧରେ ମୋ ନିଦ ଭାଙ୍ଗିଗଲା । ଦେଖିଲି ବ୍ରଜ ଉପରବାରଣ୍ଡାର ରେଲିଙ୍ଗ୍‌କୁ ଧରି ଠିଆ ହୋଇଛି । ହଠାତ୍ ମୋର ମନେହେଲା ଯେ ସେ ଖାଲି ଠିଆ ହୋଇନାହିଁ, ତଳକୁ ଝୁଙ୍କି ଆସୁଛି । ଏବଂ ଆରେ···ସେଇଠି ଗୋଟାଏ ଫାଙ୍କ ନାହିଁ କି ରେଲିଙ୍ଗ୍ ଭିତରେ ? କଥା କଅଣ ? ଚଟ୍‌କିନା ମୁଁ ଉଠି ପଡ଼ିଲି ।

କିନ୍ତୁ କିଛୁ କରିବାକୁ ଯିବା ପୂର୍ବରୁ ଦେଖିଲି ମିଲୁ ଆସି ହାଜର୍ ତା' ପାଖରେ । କହୁଛି—

"କ'ଣ କରୁଛ ତମେ ?"

"ଓଃ, ଗୁଡ୍ ମୋଡେ···"

"ଶୁଣ, ପ୍ଲିଜ୍ ଶୁଣ, ମୁଁ ଅଛି ପରା !"

ଦେଖିଲି ବ୍ରଜ ମିଲୁ ଆଡ଼କୁ ଅନେଇଛି ମୁହୂର୍ତ୍ତିକ ପାଇଁ । ବାରଣ୍ଡାର ରାତି ଆଲୁଅ ତୋଫା ନ ହୋଇପାରେ । କିନ୍ତୁ ମୁଁ କ'ଣ ଏତେ କଳ୍ପନାପ୍ରବଣ ହୋଇଛି ଯେ ବ୍ରଜର ଗୃହିଣୀ, ତଥା ତା'ର ମଧୁଣିଆ ହସ (ଯାହାକୁ ସେ ମିଲୁ ଛଡ଼ା ଦୁନିଆଁ ସାରା ବାଣ୍ଟି ଆସିଛି ମୋର ଧାରଣା), ତାକୁ ମୁଁ ଭୁଲ୍ କଲି ବୁଝିବାରେ ? ପୁଣି ଦେଖିଲି ବ୍ରଜ କେମିତି ଫେରି ଆସୁଛି ନୀରବରେ । ସୁନାପିଲାଟାଏ ପରି ।

ତା' ପରଦିନ । ବ୍ରଜ ସତକୁ ସତ ପୁନର୍ଜନ୍ମ ପାଇଲା ପରି ଦିଶୁଥିଲା । ଏବଂ ବୁଢ଼ୀଶୁଙ୍କୁଟୀ ମିଲୁ ସୁନ୍ଦର ଦିଶୁଥିଲା ବୋଲି କହିଲେ ଭୁଲ୍ ହେବ ହୁଏତ, କିନ୍ତୁ ତା' ମୁହଁରେ ଯେଉଁ ଜ୍ୟୋତି ଫୁଟି ଉଠୁଥିଲା, ତା' କେବଳ ଗୋଟିଏ ଶ୍ରେଣୀର ନାରୀ-ମାନଙ୍କ ପାଖରେ ଦେଖାଯାଏ ।

"ଜାଣିଛ ନାରୁଭାଇ, ତମ ଭଉଣୀ ମୋତେ ବଞ୍ଚେଇ ଦେଲେ କାଲି ରାତିରେ" ବ୍ରଜ ଆରମ୍ଭ କଲା ।

"ହଉ ଥାଉ", ମିଲୁ ତାକୁ ଥଆଇଲା ।

"ରାତି ଅଧରେ ମୋର ମନେ ପଡ଼ିଲା ଯେ ମୋର ଔଷଧ ଖାଇବା ବେଳ ଗଡ଼ି ଗଲାଣି । ସେଇଠୁଁ ମୁଁ ବାରଣ୍ଡାକୁ ଉଠି ଆସିଲି, ଟେବୁଲ୍ ପାଖକୁ ଯିବି ବୋଲି, ଯେଉଁଠି ଔଷଧପତ୍ର ଥୁଆ ହୋଇଥାଏ । କିନ୍ତୁ ମୋର ଖିଆଲ୍ ନାହିଁ ଯେ ରେଲିଙ୍ଗ୍ ଭିତରେ ଗୋଟାଏ ଫାଙ୍କ ଅଛି···।"

ମିଲୁ ଗୋଟାଏ ଚପାହସ ହସିଲା । ମାଆମାନେ ଯେମିତି ହସନ୍ତି, ପିଲା-ମାନଙ୍କ ମିଛ ସଫେଇକୁ ଶୁଣି ।

ଗୁଡ୍ ଲକ୍ ବ୍ରଜ ପଟ୍ଟନାୟକ ! 'ମୁଁ ଅଛି ପରା ?' ଏଇ ଆଶ୍ୱାସନାରୁ ବଳି ଆଉ କୋଉ ମହୌଷଧ ଲୋଡ଼ା ଥିଲା ତୋର ? କିନ୍ତୁ ବୁଡ୍‌ବକ୍, ବୁଢ଼ା ହେଲାରୁ ଯାଇଁ ବୁଝିଲୁ ଯେ ଘରଣୀତା ସାଙ୍ଗରେ ଫେଣ୍ଟ୍ ଖେଳିବା କେତେ କ୍ଲାନ୍ତିକର । କାରଣ ସେଥିରେ କେହି କାହାକୁ ଗୋଲ୍ ଦେଇ ପାରିବା ଅସମ୍ଭବ । ଅଥଚ କେତେ ଶାନ୍ତ, ଅରେ ତାକୁ ମାଆ ରୂପରେ ବରି ନେଇ ପାରିଲେ !

# ଟିପ୍ପଣୀ

ଗପ ଶେଷକୁ ନାରୁଭାଇ ଯେଉଁ ପଦୁଟିଏ ଶୁଣେଇଲେ ବ୍ରଜବାବୁଙ୍କ ଉଦ୍ଦେଶ୍ୟରେ, ମନସ୍ତାତ୍ତ୍ୱିକ ତଥ୍ୟଟିଏ ଛାଡ଼ିଦେଲା ପରି, ତାକୁ ଯଦି ସେ ପ୍ରକୃତରେ ଶୁଣିଥାଆନ୍ତେ, ତା'ହେଲେ ସେ କ'ଣ କେବଳ ତାଙ୍କର ମାର୍କାମରା ହସଟିଏ ହସି ରହି ଯାଇଥାଆନ୍ତେ ? ବୋଧହୁଏ ନୁହେଁ । କଥାଟା ଏତେ ଆବ୍‌ସଡ଼୍ ଲଗିଥାଆନ୍ତା ତାଙ୍କୁ ଯେ ମୋର ମନେ ହୁଏ ସେ ଠୋ' ଠୋ' ହୋଇ ହସିଥାଆନ୍ତେ, ହସି ହସି ଗଡ଼ି ଯାଇଥାଆନ୍ତେ । ଆଉ କହିଥାଆନ୍ତେ—କଅଣ କହିଲ ନାରୁଭାଇ ! ତମ ଭଉଣୀଙ୍କୁ ମୁଁ ମାଆ ରୂପରେ ବର ନେଇଥାଆନ୍ତି ? ହେ ଭଗବାନ୍ !

ଏହାହିଁ ତାଙ୍କଠୁଁ ଆଶା କରାଯାଏ । ଯେଉଁ ଲୋକ ଏତେ ସଚେତନ ତା' ରୂପଗୁଣର ମାହାତ୍ମ୍ୟକୁ ନେଇ, ଭାବେ ଯେ ସେଇଥିପାଇଁ ଏତେ ସଫଳ ହୋଇପାରିଛି ତା' ଜୀବନରେ, ସେ କ'ଣ କେବେହେଲେ ସ୍ୱୀକାର କରିବ ଯେ ସେ ଆଜି ବୁଢ଼ା ହୋଇ ଗଲଣି କି ରୋଗରେ ପଡ଼ିଛି ବୋଲି ତା'ର କୋଉ 'ମାଆ'ଟିଏ ଲୋଡ଼ିବା ଆବଶ୍ୟକ, ତା' କୋଳରେ ମୁଣ୍ଡ ଗୁଞ୍ଜିବା ଲାଗି ? ତା'ଛଡ଼ା ପତ୍ନୀକୁ ମାଆ ରୂପରେ ପାଇବାର ସୂକ୍ଷ୍ମ ତତ୍ତ୍ୱବିଶେଷ ତାଙ୍କ ମୁଣ୍ଡରେ ପଶି ନଥାଆନ୍ତା । କାରଣ ଆତ୍ମବଡ଼ିମା ସାଙ୍ଗରେ ସୂକ୍ଷ୍ମ ଅବବୋଧ ଖାପ୍ ଖାଏ ନାହିଁ । ବ୍ରଜବାବୁମାନଙ୍କ ଭାବ-ମାନସରେ ଥିବା ପ୍ରତ୍ୟେକ ଅକ୍ଷର ବଡ଼ ବଡ଼ ହରଫ୍‌ରେ ଲେଖା । ତେଣୁ ସେମାନେ କେମିତି ବୁଝିବେ ଯେ ପତ୍ନୀଠାରେ ଅଳ୍ପବହୁତ ମାତୃଭାବ ରହିବା ବିଚିତ୍ର ନୁହେଁ ?

ଯାହାହେଉ, ବ୍ରଜବାବୁଙ୍କ କଥା ଛାଡ଼ନ୍ତୁ । ବର୍ତ୍ତମାନ ବିଚାର କରାଯାଉ ଯେ ନାରୁଭାଇ ଯେଉଁ ତଥ୍ୟଟିଏ ବାଢ଼ିଦେଲେ, ତାହା ସର୍ବସାଧାରଣ ସ୍ୱାମୀ-ସ୍ତ୍ରୀଙ୍କ ସଂସାରରେ କେତେଦୂର ପ୍ରଯୁଜ୍ୟ ଏବଂ ଗ୍ରହଣୀୟ । ନାରୁଭାଇ ବିଚାରରେ ଗୋଟିଏ

ପ୍ରାଥମିକ ବକ୍ତବ୍ୟ ରହିଛି । ତାହା ହେଉଛି ଏଇ ଯେ ପରଣୀତା ହାଙ୍ଗରେ ପେଣ୍ଡୁ ଖେଳିବା ନିତାନ୍ତ କ୍ଲାନ୍ତିକର । ଯେହେତୁ ସେ କହୁଛନ୍ତି ଯେ ଏଇ କ୍ଲାନ୍ତି ଦୂର କରିବାକୁ ହେଲେ ଏଇଆ କର, ପତ୍ନୀକୁ ମାଥା ଉପରେ ବସେଇଅ । କାରଣ ଖେଳରେ ଜିତିବା-ହାରିବା କମ କେବେହେଲେ ସମ୍ଭବ ନାହିଁ, ଏବଂ ଶେଷକୁ ତମେ ଥକିଯିବ । କଅଣ ଲାଭ ସେଥିରେ ? ବରଂ... । କିନ୍ତୁ ଏଇ ବିଭାଗରେ ଥିବା ମନସ୍ତାତ୍ତ୍ୱିକ ଚିକିତ୍ସକମାନେ ବୋଧହୁଏ କହିବେ ଯେ ଏଭଳି ଗୋଟାଏ ହତାଶିଆ ଅଧମତାରଣ ପନ୍ଥାର କୌଣସି ଆବଶ୍ୟକତା ନାହିଁ । କହିବେ ଯେ ଏଇ ଯେଉଁ ଖେଳ କଥା କହୁଛ, ତା'ର ଅର୍ଥ ଇଡାଓଟର୍, ଦ୍ୱନ୍ଦ୍ୱ । ଆଉ ଦ୍ୱନ୍ଦ୍ୱ ଯଦି ତୁମ ଯୁଗ୍ମ ଜୀବନଧାରାର ସ୍ୱଗୁଣ ହୁଏ, ତା'ହେଲେ ତାହା କ୍ଳାନ୍ତିକର ତଥା କ୍ଳେଶଦାୟକ ହେବ ନାହିଁ କେମିତି ? କିନ୍ତୁ ସେପରି ଭାବିବା ଉଚିତ ନୁହେଁ । ମନେ ରଖିବାକୁ ହେବ ଯେ ତୁମେ ଦୁଇଜଣ ପରସ୍ପରର ଜୀବନସାଥୀ । ସବୁଥିରେ ସମାନ-ସମାନ, ଫିଫ୍ଟି-ଫିଫ୍ଟି । କେହି କାହାଠୁଁ ସାନ ନୁହେଁ କି ବଡ ନୁହେଁ, ତେଣୁ କେହି କାହାକୁ ଗୋଲ୍ ଦେଇ ଜିତି ଯିବାର ପ୍ରଶ୍ନ ଉଠୁନାହିଁ । ବୁଝିଲ ?

ଚିକିତ୍ସକ ସୁଲଭ ଠିକଣା ପରାମର୍ଶ । କିନ୍ତୁ ତାହା କ'ଣ ପ୍ରକୃତରେ ସମ୍ଭବ ? ଯେଉଁଠି କେବଳ ସାହଚର୍ଯ୍ୟ ନାହିଁ, ଅଛି ଅନ୍ତରଙ୍ଗତା, 'ମୋର ତୁମେ'ର ନିବିଡ଼ ଅନୁଭବ, ସେଠି ସମାନ୍ତରାଳ ସାଥୀଭାବ ଟିକିଏ ରହିପାରିବ କି ? ଏବଂ ଯେଉଁଠି ଏଇ ନିବିଡ଼ତା ନାହିଁ, ସ୍ୱାମୀସ୍ତ୍ରୀ ପାଖାପାଖି ହୋଇ ମଧ୍ୟ କେବଳ ଭାସି ଭାସି ଯାଉଛନ୍ତି, ସ୍ରୋତରେ ଦୋଳାୟମାନ କୁଟାକାଠି ପରି, ସେଠି ପ୍ରେମର ପ୍ରଶ୍ନ ଉଠୁ ନାହିଁ କି ଘୃଣାର, କିମ୍ବା କେଉଁ ତୀବ୍ର ଆବେଗର । ସେହେତୁ କେଉଁ ଦ୍ୱନ୍ଦ୍ୱର । କିନ୍ତୁ ତାହାହିଁ କ'ଣ ବାଞ୍ଛନୀୟ ସମ୍ପର୍କ (ଯଦି ତାହାକୁ ସମ୍ପର୍କ ବୋଲି କୁହାଯାଏ) ପତିପତ୍ନୀଙ୍କ ମଧ୍ୟରେ ? ନାହିଁ ଆଜ୍ଞା, କ୍ଷମା କରିବେ, ମୁଁ ସେଭଳି ହାଲୁକା ସୌଜନ୍ୟମୂଳକ ସହବାସକୁ ଦାମ୍ପତ୍ୟର ଆଦର୍ଶ ବୋଲି ମାନି ନେଇ ପାରୁ ନାହିଁ । ମୋ ମତରେ ପ୍ରତ୍ୟେକ ଆତ୍ମସମ୍ମାନ ବିଶିଷ୍ଟ ପତିପତ୍ନୀଙ୍କ ମଧ୍ୟରେ ବେଶ୍ ମୋଟା ଧାରଣର ଦ୍ୱନ୍ଦ୍ୱ ଅନିବାର୍ଯ୍ୟ, ଉପରୋକ୍ତ ଅନ୍ତରଙ୍ଗ 'ମୋର ତୁମେ' ସମ୍ପର୍କକୁ

ଯଦି ସ୍ୱାଭାବିକ ବୋଲି ଧରି ନିଆଯାଏ । ଏହି ପରିପ୍ରେକ୍ଷୀରେ ମାର୍ଟିନ୍ ବ୍ୟୁବର୍ ନାମକ ଜଣେ ଆଧୁନିକ ଦାର୍ଶନିକ ତଥା ମନ-ସ୍ତତ୍ତ୍ୱବିତ୍ ଯାହା କହିଛନ୍ତି, ତାହା ପ୍ରଣିଧାନଯୋଗ୍ୟ । କହିଲେ ଯେକୌଣସି ଅନ୍ତରଙ୍ଗ ସମ୍ପର୍କରେ 'ମୁଁ' ତୁମକୁହିଁ ଲୋଡ଼େ ସବୁଠାରୁ ବେଶି, କାରଣ ସେ ଚାହେଁ ତା'ର ଆଖିରେ ହିଁ ବଡ଼ ହୋଇ ଦିଶିବ ବୋଲି । ସେହେତୁ ସେ ତା'ର ବଡ଼ପଣ ଜାହିର୍ କରେ ତା' ଉପରେ । କିନ୍ତୁ ସେ ଭୁଲିଯାଏ ଯେ ସହଜେ ତା'ର 'ତୁମେ' ମଧ୍ୟ ବଡ଼ ହୋଇ ଦିଶିବାକୁ ଚାହେଁ ତା' ଆଗରେ । ଫଳରେ ସଂଘର୍ଷ । ମୁଁ ଭାବେ ସେ ଖାସ୍ କଥା କହିଛନ୍ତି । ତୀବ୍ର ଅନୁଭବର ଦିଆନିଆ ହିଁ ପ୍ରାପ୍ୟ ପତିପତ୍ନୀଙ୍କର, ତଦ୍‌ଜନିତ ସଂଘର୍ଷ ସମେତ । ସେମାନେ କେଉଁ ଭାସମାନ ତୃଣ ନୁହଁନ୍ତି ।

ବେଶ୍ । କିନ୍ତୁ ଏଇ ସଂଘର୍ଷ ଯଦି ଲାଗି ରହିଥାଏ ତା' ହେଲେ ତାହା କ୍ଲାନ୍ତିକର ତଥା କ୍ଲେଶଦାୟକ ହେବ ନାହିଁ କେମିତି ? ତା'ର ଉତ୍ତରରେ ମୁଁ କହିବି ଯେ ଚେଷ୍ଟା କର ତାହା ଯେମିତି ଲାଗି ନରହେ । ଭାସମାନ ଜୀବନ ପରି ଅବିରତ ଦ୍ୱନ୍ଦ୍ୱରେ ଘାଣ୍ଟି ହେଉଥିବା ଯୁଗ୍ମଜୀବନ ମଧ୍ୟ କିଛି କମ୍ ଯନ୍ତ୍ରଣା ନୁହେଁ । ତେବେ ଉପାୟ ? ଏଇଠି ନାରୁଭାଇଙ୍କ ସାନକୁହାକୁ ହେଜିବା ହେଉ । ତା'ର ବ୍ୟାଖ୍ୟା ହିସାବରେ ମୁଁ କହିବାକୁ ଚାହେଁ ଯେ ଉପରୋକ୍ତ ବଡ଼-ସାନ ବଦଳକୁ ଅନିବାର୍ଯ୍ୟ ବୋଲି ମାନିନେଲେ ମଧ୍ୟ କେତୋଟି କ୍ଷେତ୍ରରେ 'ସେ ମୋଠୁଁ ବଡ଼' ଏବଂ ଅନ୍ୟ କେତୋଟି କ୍ଷେତ୍ରରେ 'ମୁଁ ତା'ଠୁଁ ବଡ଼' ବୋଲି ଗୋଟାଏ ପରସ୍ପର ସାହାଯ୍ୟକୃତ ସନ୍ଧି ପ୍ରସ୍ତୁତ କରିନେଲେ ଭଲ । ସେହି ହିସାବରେ ନାରୁଭାଇଙ୍କ ପରାମର୍ଶକୁ ହସି ଉଡ଼େଇଦେବା ଆଦୌ ଉଚିତ ହେବ ନାହିଁ ବୋଲି ମୁଁ ମନେକରେ । ହେଲେ ତାହା ଦ୍ୱିପାକ୍ଷିକ ହେଉ । ଅର୍ଥାତ୍ ସ୍ୱାମୀର ଚଉଡ଼ା ଗୁଡ଼ ଏବଂ ସ୍ତ୍ରୀର ଉତ୍ତୁମ କୋଳ ଉଭୟ ବରଣୀୟ ସମସ୍ତ ଅସମୟରେ । ଏବଂ ସେଥିରେ ଦାମ୍ପତ୍ୟ ସଂଘର୍ଷର ଲାଘବ ହେବା ସଙ୍ଗେ ସଙ୍ଗେ 'ଫିଫ୍‌ଟି-ଫିଫ୍‌ଟି' ମୂଳକ ଆତ୍ମସମ୍ମାନରେ ମଧ୍ୟ ଆଞ୍ଚ ଲାଗିବ ନାହିଁ ବୋଲି ମୋର ବିଶ୍ୱାସ ।

ତେବେ ଇଏ ହେଲା ଏକ ସର୍ବସାଧାରଣ ବିଳୁଆାଚରର, ଯେଉଁଠି 'ମୁଁ' ଏବଂ 'ତୁମେ' ଏ ଦିହିଁଙ୍କର ବ୍ୟକ୍ତିତ୍ୱ ପ୍ରାୟ ଏକା

ଭଲ । ସେହେତୁ ତାହା ବ୍ରଜବାବୁ ଓ ନୀଳୁଦେଈଙ୍କ ମଧ୍ୟରେ ଥିବା ଘୋର ଆତ୍ମସଂଯମକୁ ସୂଚାଇବ ବୋଲି କୁହାଯାଇ ନପାରେ । କିନ୍ତୁ ଉପସ୍ଥିତ କ୍ଷେତ୍ରରେ ଅର୍ଥାତ୍ ଦୁହିଁଙ୍କ ବର୍ତ୍ତମାନ ପରିସ୍ଥିତିରେ ନାତୁଣୀଙ୍କ ପରାମର୍ଶଟିକୁ ଗ୍ରହଣ କରି ନେଇ ପାରିଲେ ପ୍ରକୃତରେ ଭଲ ହୁଅନ୍ତା ନାହିଁ କି ଦି'ଜଣଙ୍କ ପାଇଁ ? ତା'ହେଲେ ବୋଧହୁଏ ଏତେଦିନକେ ତାଙ୍କର ପ୍ରେମବିହୀନ ବିବାହବନ୍ଧନ ଅଳ୍ପବହୁତ ପ୍ରୀତିକର ହୋଇ ଉଠନ୍ତା । ଏବେ ବ୍ରଜବାବୁଙ୍କ ଜୀବନବ୍ୟାପୀ ପ୍ରଚଣ୍ଡ ବଡ଼ିମାକୁ ଯେଉଁ କଷ୍ଟ ହେଉଛି ବ୍ୟାଧି ଓ ବାର୍ଦ୍ଧକ୍ୟଜନିତ ପରାଭବ ଯୋଗୁଁ, ସେଥିରୁ ସେ ଟିକିଏ ରକ୍ଷା ପାଇଯାଆନ୍ତେ । ଏବଂ ବ୍ରଜବାବୁଙ୍କର ଏକ ଅଯୋଗ୍ୟ ସାଥୀ ବୋଲି ପରିଗଣିତ ହେଉଥିବା ନୀଳୁଦେଈ ତାଙ୍କ ହୀନମନ୍ୟତାରୁ ବର୍ତ୍ତିଯାଆନ୍ତେ ଅନ୍ତତଃ ତାଙ୍କର ଏଇ ବୁଢ଼ୀ ବୟସରେ । 'ମୁଁ ଅଛି ପରା !' ତାଙ୍କର ଏଇ କଳ୍ପିତ ବଡ଼ପଣକୁ ନେଇ, ତାକୁ ମାତୃଭାବ କୁହ, କି ଆଉ ଯାହା । ତା'ଛଡ଼ା ଆଉ ଉପାୟ କଅଣ ?



(ଏହି ଗଳ୍ପଟି ପ୍ରଥମେ 'ଆକାଶବାଣୀ', କଟକ ଦ୍ୱାରା ପ୍ରଚାରିତ ହୋଇଥିଲା ।)

# ଭିନ୍ନ ସ୍ୱାଦୁ

ତାରୁ ଛାତ ଉପରୁ ଓହ୍ଲେଇ ଆସିଲା । ଛାତରୁ ଫାଳିକିଆ ଜହ୍ନ ଓ ତାରାମାନଙ୍କୁ ଦେଖିବାକୁ ଭଲ ଲାଗୁଥିଲା ନିଶ୍ଚୟ । କିନ୍ତୁ ମଣିଷ କେତେ ସମୟ ଉପରକୁ ଅନେଇ ରହିବ ? ନା ସେମାନେ କୋଉଁ ଧରା ଦେବେ ତମ ହାତରେ, ଯେତେ ହସୁଥାଅନ୍ତୁ, ପୁଲକିତ ହୋଇ ଉଠନ୍ତୁ, କି ଆଖିମିଟିକା ମାରୁଥାଆନ୍ତୁ, ତାଙ୍କ ସ୍ୱର୍ଗୀୟ ଢଙ୍ଗଭଙ୍ଗୀରେ ପରାକାଷ୍ଠା ଦେଖାଇ ? କିନ୍ତୁ ତଳକୁ ଅନେଇଲେ ଗଲା । ନଉଦନଆ କୁତ୍ସିତ ଗଲା । ଅବଶ୍ୟ ରାତ ହୋଇଥିବାରୁ ଗଳିଟା କେବଳ ତା'ର ମୌଳିକ କୁତ୍ସିତପଣକୁ ଦେଖଉଛି ଓ ଶୁଙ୍ଘଉଛି (ବେଶୀ ଭାଗ ଶୁଙ୍ଘଉଛି) । ତା' ଉପରେ ଆନନ୍ଦ କରୁଥିବା ଅବର୍ଯ୍ୟା ପିଲାମାନଙ୍କ ଖେଳ, ପାଣିକଳତଳେ ଗାଧୋଉଥିବା ଧୋକଡ଼ୀ ବୁଢ଼ୀର ଦେହ, ଅଗଣିତ ମାଛିମାନଙ୍କୁ ପିଠିରେ ବସେଇ ନ ଘୁଞ୍ଚିଲା ପରି ଘୁଞ୍ଚୁଥିବା ଷଣ୍ଢ ଏବଂ ବିଭିନ୍ନ ଦାଣ୍ଡପିଣ୍ଡାରେ ଆରାମ କରୁଥିବା ବୁଢ଼ା-ଦରବୁଢ଼ା ବେକାରମାନଙ୍କର ହାଇମରା ଦୃଶ୍ୟ ଦେଖିବାକୁ ମିଳୁ ନାହିଁ । କିନ୍ତୁ ଅନ୍ଧାରରେ ଲିଭି ଯାଇଥିବା ଛବିଗୁଡ଼ାକ ବି ଦିଶିଯାଉଛି ତାରୁକୁ, ଟିକିଏ ଅନେଇ ରହିଲେ ସେ ଆଡ଼କୁ । ଦିଶିଯାଉଛି ମଧ୍ୟ ଗଳିର ନାଳ ଉପରେ ଅନୁଷ୍ଠିତ ନାନାବିଧ ଶୌଚକର୍ମର ରୂପରେଖ, ଯେଉଁଥିକୁ କୌଣସି ସଂକୋଚ ନାହିଁ ଏଇକ୍ଷଣି ।

ଏବଂ କାନ ଡେରିଲେ ଶୁଭିଯାଉଛି ଗଳିବୁଢ଼ୀର କଣ୍ଠାସମ୍ପା, ତା' ଭେଣ୍ଡିଆ ପୁଅମାନଙ୍କ ପ୍ରତି । 'ଶଳେ' କେମିତି ଜନ୍ମ ହେଲେ ତାଠୁଁ, ତା'ର ପ୍ରସିଦ୍ଧ ସୂଚନା ହୁଏତ ମିଳିଯିବ ଶୀଘ୍ର ।

ନାଃ ! ଆଉ ରହି ହେବ ନାହିଁ ଏଠି । ଗୁଳୁଗୁଳି ଗରମରୁ ରକ୍ଷା ପାଇବା ପାଇଁ (ଫ୍ୟାନ୍ ବନ୍ଦ ହୋଇ ରହିଛି କେବେଠୁଁ) ତାରୁ ଆସିଥିଲା ଉପରକୁ, କିନ୍ତୁ ଦେଖୁଛି ଏଠି ରହିହେବ ନାହିଁ । ଫେରିଯିବାକୁ ହେବ ତା'ର ଟ୍ରଙ୍କିକୁ । ତା'ର ଡ୍ରଇଂରୁମ୍-କମ୍-ଲିଭିଂରୁମ୍-କମ୍-ଷ୍ଟଡ଼ିକୁ । ସେଠି ଅନ୍ତତଃ ସଭ୍ୟତା ଅଛି । ଏବଂ ସୌନ୍ଦର୍ଯ୍ୟବୋଧ ।

ତେବେ କହିଲେ ଭୁଲ୍ ହେବ ଯେ ତାରୁ କେବଳ ଗରମରୁ ରକ୍ଷା ପାଇବା ଲାଗି ଆସିଥିଲା ଛାତ ଉପରକୁ । ନା' ତା'ର ଧାରଣା ଥିଲା ଯେ ଏଠାହିଁ କବିତା

କଥା । କୌଣସି ନୂତନ ସୁଖବୋଧ କିମ୍ବା ଦୁଃଖବୋଧକୁ ଗ୍ରହଣ କରିବାକୁ ହେଲେ ନିଜକୁ ପୂରାପୂରି ଏକୁଟିଆ କରି ଦେବାକୁ ହୁଏ । ଏବଂ ଶ୍ରୁତଟିଏ ହାତପାହାନ୍ତାରେ ଥିଲେ ସେଇଠିକି ଯିବା ଉଚିତ । ଭାବୁକ ଜଗତର ପ୍ରଥା । କିନ୍ତୁ ଦୁଃଖର ସହିତ ସେ ଆବସ୍ଥାର କଲି ଯେ ଇଏ ସେମିତିକା ଶ୍ରୁତ ନୁହେଁ । ଭାବୁକମାନେ ପଶିପାରିବେ ନାହିଁ ଏଠି ।

ଠିକ୍ ଅଛି । ମୋ ଟ୍ରଙ୍କ୍ ଘର ଚଳିବ । ଆଲୁଅ ଲିଭେଇ ଦେବି । ଅଉ ଲମ୍ବି ଯିବି ମୋ ଆରାମକୁର୍ସୀରେ । ଏବଂ ଭାବିବି ମୋର ଯାହା ଭାବିବାକୁ ଅଛି ।

ଭାବିବାକୁ ଅଛି । ଏଣୁତେଣୁ ଭାବନା ନୁହେଁ, ସାରା ଜୀବନର ନିଷ୍ପତ୍ତି । ଯାହାକୁ ଯଥାଶୀଘ୍ର କରିବାକୁ ପଡ଼ିବ । ବୟସ କି ସମୟ ବସି ରହି ନାହିଁ । ନା ମୋର ସମ୍ଭାବ୍ୟ ସାଥୀମାନେ ଅନେଇ ରହି ନାହାନ୍ତି, ମୋ ମୁହଁକୁ ଚାହିଁ ।

ଗୋଟାଏ ଦରକାରୀ ପ୍ରାଥମିକ କାମ ସାରିଦେଲିଣି । ଅଜିଯାଏଁ ବୋଉର ବିଶ୍ୱାସ ଥିଲା ଯେ ମୁଁ ଯେତେ ଫାଜିଲାମି କଲେ ମଧ ମୋର କୌଣସି ଆପତ୍ତି ରହିବ ନାହିଁ ଗାଆଁ କନିଆ ସୁରମାକୁ ବାହା ହେବା ପାଇଁ ଯାହା ସାଙ୍ଗରେ ମୁଁ ପିଲାଦିନୁ ଖେଳି ଆସିଛୁ । ନ ହେଲେ ସେ ଓ ମାମୁମାନେ ଯେଉଁଠି ଠିକ୍ କରିବେ, ଜାତିପତିର, କୁଳଶୀଳ (ଏବଂ ଆଶା କରାଯାଉଥିବା ଯୌତୁକର ପରିମାଣ) ଅନୁଯାୟୀ । କିନ୍ତୁ ଏବେ ମୁଁ ତାକୁ ବୁଝେଇ ଦେଇଛି ଏବଂ ସେ ନିଶ୍ଚୟ ବୁଝିଥିବ ଯେ ଲଭ୍ ବୋଲି ଗୋଟାଏ ଜିନିଷ ଅଛି । ପ୍ରେମ ନୁହେଁ, ଲଭ୍ । ପ୍ରେମ କହିଲେ ବୋଉ କ'ଣ ବୋଲି କ'ଣ ଭାବି ନେଇ ପାରେ, ହୁଏତ ରାସଲୀଳା ମନେ ପଡ଼ିବ ତା'ର । ତାକୁ କହିଲି ଯେ ଲଭ୍ କରି ବାହାହେବା କିଛି ନୂଆ କଥା ନୁହେଁ ଆମ ଆଧୁନିକ ଓଡ଼ିଆ ସମାଜରେ । କିନ୍ତୁ ତୁ ତ ଗାଆଁରେ ରହି ଆସିଛୁ ଜୀବନଯାକ, ସେଇଲାଗି ସହର ରଙ୍ଗଢଙ୍ଗ ତୋର ଆଖିରେ ପଡ଼ି ନାହିଁ ବିଶେଷ, ଆଉ ତୁ ଭାବୁଛୁ ଯେ ଆଜିକାଲି ବି ସମସ୍ତଙ୍କ ଘରେ ସେମିତିକା ଜାତକଦେଖା ବାହାଘର ଠିକଣା କରାଯାଉଛି, ମଧ୍ୟସ୍ଥଙ୍କ ଜରିଆରେ । ହଁ, ହେଉଛି । କିନ୍ତୁ ଲଭ୍-ମ୍ୟାରେଜ୍‌ର ମାତ୍ରା ବି ବେଶ୍ ବଢ଼ିଗଲାଣି ଆମ ସମାଜରେ । ଏବଂ ତାହାହିଁ ଉଚିତ । ଆମେ ଯେମିତି ନିଜେ ସ୍ଥିର କରୁଛୁ ଆମେ କ'ଣ ଖାଇବୁ, ପିନ୍ଧିବୁ, କେଉଁବାଟେ ଟଙ୍କା ରୋଜଗାର କରିବୁ, ଆଉ କେଉଁ ଦେବତାକୁ ପୂଜା କରିବୁ, ସେମିତି କ'ଣ ଆମର ଉଚିତ ନୁହେଁ ଠିକଣା କରିବା ଆମେ କେଉଁଠି ବାହା ହେବୁ ? ଯେ ଏଇ ଝିଅଟି ମୋତେ ସୁହୁଁ କରିବ, ମାନେ ମୋର ଉପଯୁକ୍ତ ସାଥୀ, ଘରଣୀ ଓ ମୋ ପିଲାଙ୍କୁଆଙ୍କ ମାଆ ହୋଇ ପାରିବ ? କ'ଣ ମୁଁ ଭୁଲ୍ କହିଲି ବୋଉ ?

କଥାଟା ତା' ମନକୁ ପାଇଲା କି ନପାଇଲା ଭଗବାନଙ୍କୁ ଜଣା, କିନ୍ତୁ ତା'ର ସାହସ ନଥିଲା ମୋ ଯୁକ୍ତିକୁ ଖଣ୍ଡନ କରିବା ଲାଗି । କେବେହେଲେ ନଥିଲା । ଆଉ ଆଜି ତ ମୁଁ ସହଜେ ଗୋଟାଏ ବିଦ୍ୟାବୁଦ୍ଧିର ଭଣ୍ଡାର ତା' ଆଖିରେ । ମୋର ସ୍ୱର୍ଗବାସୀ ପାଠୁଆ ବାପା ମଧ୍ୟ କିଛି ବାଟ ଯାଇ ଫେରି ଆସୁଥିଲେ । ମୋ ଟାଣୁଆ ଯୁକ୍ତିର ସମ୍ମାନ ନଦେଇ ରହିପାରୁ ନଥିଲେ ।

ନହେଲେ କି କୋଉ ମଫସଲ ସ୍କୁଲ୍‌ର ଅଙ୍କମାଷ୍ଟର ତ୍ରିଲୋଚନ ରାଉତର ପୁଅ ତାରାପଦ ରାଉତ ପହଞ୍ଚି ଥାଆନ୍ତା । ସେ ଆଜି ପହଞ୍ଚିଛି ଯେଉଁଠି ? ମଫସଲ ଗ୍ରାମ୍ୟ ସହରରେ ଗାଦି ମାଡ଼ି ବସିଥାଆନ୍ତା । ଏବଂ ଆହୁରି ଆହୁରି ପାଠ ପଢ଼ି, ସ୍କଲାରସିପ୍ ପରେ ସ୍କଲାରସିପ୍ ହାସଲ କରି ନେଇ ଏମ୍. ଏ. ପାସ୍ କରନ୍ତାଣି ? ଫାଷ୍ଟକ୍ଲାସ୍ ନହେଲେ ବି ଉଚ୍ଚ ସେକେଣ୍ଡ କ୍ଲାସ୍ ତ ? ଏବଂ ତାରୁର ବିଶ୍ୱାସ ଅଛି ଯେ ସେ ବଡ଼-ହାକିମ, ରାଜଦୂତ ବା ସେମିତି କିଛି ହେବ ଭବିଷ୍ୟତରେ । ଟାଣୁଆ ଯୁକ୍ତି ସାଙ୍ଗକୁ ଆତ୍ମବିଶ୍ୱାସ । ଏଇ ହେଲା ମୋ ସଫଳତାର ଗୁରୁକାଠି ।

କିନ୍ତୁ ହାୟରେ ଆମ ରକ୍ଷଣଶୀଳ ସମାଜ ! ଏମ୍. ଏ. ପାସ୍ କଲାପରେ ମଧ୍ୟ ସେମାନେ ମୋ ସାଙ୍ଗରେ ଲାଗିଥିଲେ ନୂଆ ଖୋଲିଥିବା ଆମ ଗାଁ ପାଖର ମାଣିକେଶ୍ୱର କଲେଜ୍‌ରେ ପାଠ ପଢ଼େଇବା ଲାଗି । ଆଉ ମୁଁ ଯେତିକି କହିଲି ଯେ ପାଠ ପଢ଼େଇବା ମୋ ଜୀବନର ଉଦ୍ଦେଶ୍ୟ ନୁହେଁ, ମୁଁ ଚାହେଁ ଆଇ. ଏ. ଏସ୍., ଆଇ. ଏଫ୍. ଏସ୍. ବା ସେମିତି କିଛି ଗୋଟାଏ ହେବି, ତେଣୁ ପାଠ ପଢ଼େଇବା ସାଙ୍ଗକୁ ମୋତେ ସେ ସବୁଥିର ପରୀକ୍ଷା ପାଇଁ ପ୍ରିପେୟାର୍ କରିବାକୁ ପଡ଼ିବ, ନିର୍ବୋଧଙ୍କ ଦଳ ମୋତେ କହୁଛନ୍ତି କ'ଣ ନା ଗାଆଁରେ ବି ପ୍ରିପେୟାର୍ କରିହେବ । ବୁଝି ନାହାନ୍ତି ଯେ ଲାଇବ୍ରେରୀ, ଟିଉଟରିଆଲ୍ ଆଦି ସୁବିଧାସୁଯୋଗ ଛଡ଼ା ଆଉ ଗୋଟାଏ ବଡ଼ କାରଣ ଅଛି ସହରରେ ରହିବାର ଆଟ୍‌ମସ୍‌ଫିଅର୍ । ଯେଉଁ ବାତାବରଣରେ ଭିନ୍ନ ସ୍ୱାଦକୁ ଲୋଡ଼ିବାର ତାଡ଼ନା ଅଧିକରୁ ଅଧିକ ଦୁର୍ଦ୍ଦାନ୍ତ ହୋଇଉଠେ ।

ସବୁ ଉଚ୍ଚାଭିଳାଷ ଏବଂ ପ୍ରଗତି ପଛରେ ଏଇଆ ଅଛି, ଏକ ଭିନ୍ନ ସ୍ୱାଦୁର ଲୋଭ । ଝିଙ୍ଗିଣିଆଳୁ ଛାଡ଼ିଦେଇ ବିରିଆନିର ଲୋଭ । ସେଇ ଲୋଭ ମୋତେ ମଫସଲରୁ ସହରକୁ ଟାଣି ଆଣିଲା ପାଠ ପଢ଼ିବା ପାଇଁ । ଏବଂ ଆଜି ସେଇ ଲୋଭ ମୋତେ ଅସ୍ଥିର କରୁଛି । ଏଇ ସହର ଉପରେ ଭରା ଦେଇ ବଡ ସହରକୁ, ତହୁଁ ଦେଶବିଦେଶକୁ ଯିବା ପାଇଁ, ସେଠିକା କଲ୍‌ଚର୍‌ର ସ୍ୱାଦୁ ପାଇବା ଲାଗି ।

ମୋର ଦୁର୍ଭାଗ୍ୟ ଯେ କ୍ୟାପିଟାଲ୍‌ର କୋଉ କଲେଜ୍‌ରେ ଚାକିରି ମିଳିଲା ନାହିଁ । ମିଳିଲା ପ୍ରାଚୀନ କଟକ ସହରର ଗୋଟାଏ ସେକେଣ୍ଡ କ୍ଲାସ୍ କଲେଜରେ ।

ପୁଣି ଏମିତିକା ଗନ୍ଧିଆ ଗଳି ଛଡ଼ା ମୁଁ ଆଉ କେଉଁଠି ଭଡ଼ାଘରଟିଏ ପାଇଲି ନାହିଁ, ମୋ ପାଣ୍ଠିକୁ କୁଳେଇଲା ପରି । ହଉ, ଇଏ ବି ତ ସହର । ଆଉ ଏଇ ସହରକୁ ଆସିଛି ବୋଲି ତ ମୋର ଦେଖାହେଲା ମୀରା, ରାଣୀ, ସବ୍‌ନମ୍ ଆଉ ବୁଲ୍‌ବୁଲ୍ ଆଦି ଝିଅମାନଙ୍କ ସାଙ୍ଗରେ । ମଫସଲ କଲେଜ୍‌ରେ ପାଠ ପଢ଼ୁଥିଲେ କ'ଣ ଏହି ପ୍ରକାର ଚରିତ୍ର କେବେହେଲେ ଆବିର୍ଭୂତ ହୋଇଥାଆନ୍ତେ ମୋର ପାର୍ଶ୍ୱୀ ହିସାବରେ ? ଏବଂ ମୁଁ ଭାବିପାରୁ ଥାଆନ୍ତି ଯେ ଏମାନଙ୍କ ମଧ୍ୟରୁ କାହାକୁ ବାଛିହେଲେ କେଉଁ ଏକ ଭିନ୍ନ ଜଗତର ଦ୍ୱାର ଖୋଲିଯିବ ମୋ ପାଇଁ ?

ଗୁଡ଼୍, ପ୍ରଥମ ଘାଟି ପାରି ହୋଇଗଲାଣି । ଲଭ୍-ମ୍ୟାରେଜ୍‌ର ସାରତତ୍ତ୍ୱଟିକୁ ବୁଝେଇ ଦେଇଛି ମୋ ବୋଉକୁ । ଏଇକ୍ଷଣି ବଲ୍ ଆସି ପଡ଼ିଛି ମୋ କୋର୍ଟରେ । ମୋର ଦାୟିତ୍ୱ, ମୋର ମୁଣ୍ଡବ୍ୟଥା ।

ପ୍ରଶ୍ନ ହେଉଛି—କାହାକୁ ଲଭ୍ କଲେ ଭଲ ହେବ ସବୁଠୁଁ ? କେଉଁ ଲଭ୍‌ର ଭିନ୍ନ ସ୍ୱାଦ ପ୍ରକୃତିରେ ଭିନ୍ନ ହୋଇଥିବ, ଆଉ ମୋତେ ନେଇଯିବ ଏଇ ପୁରୁଣା ମଫସଲ ଓ ପୁରୁଣା ଗ୍ଲେଟ ସହରରୁ ପାରି ହୋଇ ଏକ ନୂଆ ଜଗତକୁ ଯେଉଁଠିକା କଲ୍‌ଚର୍‌ର ବାସ୍ନା ମିଶିଯାଉଥିବ ମୋ ପରିଣୀତାର ହସ, ରସ, ସ୍ୱେଦ ଓ ସୁଗନ୍ଧ ସାଙ୍ଗରେ ?

ବଡ଼ ଟ୍ରିକିଭି ଏବଂ ଅଧିକ ଅର୍ଥ ଆନୁଷଙ୍ଗିକ । ଅସଲ ହେଉଛି ଏଇ ଭିନ୍ନ ସ୍ୱାଦର ମହକ । ତା'ର ନିମନ୍ତ୍ରଣକୁ ରକ୍ଷା କରି ନ ପାରିଲେ ଆଉ ରହିଲା କ'ଣ ? କୋଉ ରାମା, ଦାମା, ଶାମା ବଡ଼ଲୋକ ହୋଇ ଦି' ଦି'ଟା କୋଠା ବାଡ଼ଉନାହିଁ, ହେଲେ ପଡ଼ି ରହିଛି ତା' ମଫସଲର ଦଳୁଆ ପୋଖରୀ ଅବା ଗ୍ଲେଟ ସହରର ଗନ୍ଧିଆ ନର୍ଦ୍ଦମା ପାଖରେ ଏବଂ ଗୁଡ଼ାଏ ଅର୍ଦ୍ଧାଳିଆ ଖାଉଛି, ପିଉଛି, ପିଲା ଜନ୍ମ କରୁଛି ଆଉ ବଞ୍ଚି ରହିଛି ? ନୋ, ଥ୍ୟାଙ୍କ୍‌ସ୍ । ତାରାପଦ ରାଉତ ଭିନ୍ନ ଧାତୁରେ ଗଢ଼ା । କୌଣସି ସୁଯୋଗ ସେ ଛାଡ଼ିବ ନାହିଁ, ଯଥାର୍ଥରେ ନିଜକୁ ବଢ଼େଇବା ପାଇଁ ନୂତନରୁ ବଳି ନୂତନ ଅନୁଭବ ଦେଇ ।

ସେଇଲାଗି ଆଜିର ଏଇ ଗୁରୁତର ଏବଂ କଠିନ ପ୍ରଶ୍ନ । ମୁଁ ଲଭ୍ କରି ବାହା ହେବି ସତ, କିନ୍ତୁ କାହାକୁ ଲଭ୍ କରିବି ଏମାନଙ୍କ ଭିତରୁ ? ମୀରା, ନା ରାଣୀ, ନା ସବ୍‌ନମ୍, ନା ବୁଲ୍‌ବୁଲ୍ କିମ୍ବା ଆଉ କାହାକୁ ? ଯେଉଁ ଲଭ୍‌ର ସ୍ୱାଭାବିକ ପରିଣାମ, ଅର୍ଥାତ୍ ବିବାହ, ଅନୁକୂଳ ହେବ ମୋର ଭିନ୍ନସ୍ୱାଦପ୍ରବଣ ଆଡ୍‌ଭେଞ୍ଚର୍ ପାଇଁ ? ଥରେ ଭୁଲ୍ କରି ବସିଲେ ଗଲା । ଗୁଡ଼ପଥର ପ୍ରଗତି ପାଦ ମିଳେଇ ଟ୍ରିଲପାରି ନାହିଁ ଆଜିଯାଏ, ଲଭ୍ ମ୍ୟାରେଜ୍‌ର ଜୟଯାତ୍ରା ସାଙ୍ଗରେ···।

ତାରୁ ଆଖି ବୁଜି ଦେଲା ତା'ର ଚୁଙ୍ଗୀଘର ଆଗ୍ରମଚଉକି ଉପରେ ଲମ୍ବି ଯାଇ । ଅପସର ଗଲେ ଢୋଲ ବଜାଉଥିବା ନର୍ତ୍ତକୀ, କାଚଆଖିଆ ପେଗ୍, ଚକାଡୋଳା ଜଗନ୍ନାଥ ଏବଂ କେଉଁ ରମଣୀର କୁହୁଡ଼ିଆ ଇଜରବଜର ହୋଇ-ଯାଇଥିବା ନଗ୍ନତା—ଆଧୁନିକ କଳାକୃତିର ବିଭିନ୍ନ ନମୁନା, ଯାହାକୁ ସେ ସଜେଇ ରଖିଛି ତା' ରୁମ୍‌ରେ । ବର୍ତ୍ତମାନ ଅବାଧରେ ଆସନ୍ତୁ ସେମାନେ, ମୀରା, ରାଣୀ ଓଗେର, ଯେଉଁମାନଙ୍କ ଭିତରୁ ଜଣକୁ ବାଛିବାକୁ ପଡ଼ିବ ।

ଭାବି ବସିଲା ବେଳକୁ ଯୋଡ଼ାଏ ପ୍ରଶ୍ନ ତା' ମନକୁ ଆସୁଥିଲା, ଯାହାକୁ ବାତିଲ କରିବା ପାଇଁ ବିଶେଷ ସମୟ ଲାଗି ନ ଥିଲା । ପ୍ରଥମ କଥା ହେଲା ଯେ ତୁ ସିନା ଲଭ୍ କରିବୁ ତାଙ୍କୁ, ସେମାନେ ତୋତେ ଗ୍ରହଣ କଲେ ତ ? ତା'ର ଉତ୍ତର ହେଉଛି ତାରୁର ଆତ୍ମବିଶ୍ୱାସ । ମୋ ଲଭ୍‌କୁ ସେମାନେ ସହଜେ ଆଡ଼େଇ ଦେଇ ପାରିବେ ନାହିଁ । ଦ୍ୱିତୀୟ ପ୍ରଶ୍ନ ମୌଳିକ ତଥା ତାତ୍ତ୍ୱିକ । ଲଭ୍ କୁହ କି ପ୍ରେମ କି ଆଉ ଯାହା, ତାକୁ କ'ଣ ଏମିତି ବିଚାରିଚିନ୍ତି ତିଆରି କରାଯାଏ ? ଆପେ ଆପେ ଗଢ଼ି ଉଠିବା କ'ଣ ତା'ର ଅନ୍ୟତମ ସ୍ୱଧର୍ମ ନୁହେଁ ? ତା'ର ଉତ୍ତରରେ ତାରୁ ପ୍ରଥମେ ଟିକିଏ ହସି ଦେଲା ଫିକ୍‌କିନା, ସେଇ ରୋମାଣ୍ଟିକ୍ ଧାରଣା ତ୍ରୁଟି । ସେଇଠୁଁ କହିଲା, କ୍ଷମା କର, ଆପେ ଆପେ ବୋଲି କିଛି ଗଢ଼ା ହୋଇଯାଏ ନାହିଁ ବିଳିଷ୍ଟ ବୁର୍ଜିବାଦୀର ସଂସାରରେ । ହଁ, ପ୍ରଥମେ ଗୋଟାଏ ଭିତ୍ତିଭୂମି ଆବଶ୍ୟକ । ଯେ ମୋଟାମୋଟି ଏଇମାନେ ମୋର ପ୍ରେମର ଯୋଗ୍ୟ । ତଥା ତାକୁ ସ୍ୱୀକାର କରି ପାରିବେ । ସେଥିକି ବାଛବିଗୃହ କରିବାକୁ ପଡ଼ିବ ଏବଂ ସ୍ଥିର କରିବାକୁ ହେବ କେଉଁ ଗଜୁରି ଉଠିଥିବା ପ୍ରୀତିଭାବକୁ ପ୍ରେମର ପର୍ଯ୍ୟାୟକୁ ନେଇ ଯାଇ ପାରିଲେ ସବୁଠାରୁ ଭଲ ହେବ ପରା ।

ସେଇ ହିସାବରେ ଭିତ୍ତିଭୂମି ଠିକ୍ ଅଛି । ଓ-କେ । ଏମାନେ ସମସ୍ତେ ଆଧୁନିକା ଏବଂ ସ୍ୱାଧୀନଚେତା । ଉଚ୍ଚଶିକ୍ଷା ଅଭିଳାଷୀ ଏବଂ କେହି ଅସୁନ୍ଦର ନୁହନ୍ତି । ଏବଂ ସବୁଠାରୁ ବଡ଼କଥା ହେଉଛି ଏଇ ଯେ ଏମାନେ କେହି ପରମ୍ପରା, ଅନ୍ୟ ଅର୍ଥରେ ଗଡ୍‌ଡାଲିକାର ବିଶେଷ ଆଗ୍ରହୀ ଥିଲା ପରି ମନେ ହୁଏ ନାହିଁ । ତେଣୁ ସେମାନେ ମୋର ଆଡ୍‌ଭେଞ୍ଚର୍‌ମୂଳକ ମନୋଭାବରେ ଶଙ୍କି ଯିବେ ନାହିଁ । ଖାଲି ମୋର ଦେଖିବା କଥା ଯେ କିଏ କେତେଦୂର ଆଗେଇ ଆସିଲଣି ବାପଅଜାଙ୍କ ଭୌଗୋଳିକ ତଥା ସାଂସ୍କୃତିକ ଚିର୍କିଶାଳରୁ, ତେଣୁ ଆଶା କରାଯାଏ ସେ ମୋତେ ଆହୁରି ଅଧିକ ଦୂରକୁ ନେଇଯାଇ ପାରିବ, ଯେଉଁଠିକାର ଭିନ୍ନ ପାଣିପବନ ମୋତେ ସବୁଠାରୁ ଅଧିକ ଭୁଲେଇ ଦେଇ ପାରିବ ।

ମାଇ ଡିଅର୍ ଗାର୍ଲ୍‌ସ୍, ତମେ ସମସ୍ତେ ମୋଟାମୋଟି ସୁନ୍ଦର, ତେଣୁ ଅବଶ୍ୟ ଏକପ୍ରକାର ଉଷ୍ମ ଏବଂ ପ୍ରୀତିକର ଆବେଗ ଆସିବ ତମକୁ କୁଣ୍ଢେଇ ଧରିଲେ,

କିମ୍ବା ଚୁମ୍ବନ ଦେଲେ, କିନ୍ତୁ ସେଇ ଯଥେଷ୍ଟ ନୁହେଁ, ସେଇ ଯଥେଷ୍ଟ ନୁହେଁ । କହିଲା, କାହାର ଆଶ୍ଳେଷରେ ମୁଁ ମୋର କାମ୍ୟ ହେଲେ ଆପାତତଃ ଅପହୃଷ୍ଟ ଭିନ୍ନସ୍ୱାଦୁର ଇଙ୍ଗିତ ପାଇବ ? ଇଙ୍ଗିତ ଏବଂ ଗୋଟାଏ ଟାଙ୍ଗୁଆ ପ୍ରତିଶ୍ରୁତି, ଯାହାକୁ କେହି ସହଜରେ ନଷ୍ଟ କରି ଦେଇ ପାରିବେ ନାହିଁ ?

ହୁଏତ ତାରୁ ପ୍ରତ୍ୟେକଙ୍କର ସ୍ୱଭାବ ଚରିତ୍ରକୁ ବିଶ୍ଳେଷଣ କରି ପାରିଥାଆନ୍ତା, ସେମାନଙ୍କ ଚାଲିଚଳନର ଖିଅ ଧରି ସେକ୍ସଟୋଲଜି ବୈଜ୍ଞାନିକ ପଦ୍ଧତି ଅନୁଯାୟୀ । ଏବଂ ସେଇଠୁଁ ନିର୍ବାଚିତ ଟିଏଟିକୁ କଳ୍ପନାର ଆଲିଙ୍ଗନ କରିଥାଆନ୍ତା, ପ୍ରେମର ଆବାହନ କଲା ପରି । କିନ୍ତୁ ସେ ସେମିତି କଲା ନାହିଁ ତା'ର ଯୌବନଦୋଷ ହେଉ ବା ପ୍ରଚ୍ଛନ୍ନ ରୋମାଣ୍ଟିକ୍‌ପଣ (ଯାହାକୁ ହୁଏତ ସେ ସ୍ୱୀକାର କରିବାକୁ ମଙ୍ଗିବ ନାହିଁ) । ସେ ପ୍ରଥମେ ବିଭିନ୍ନ ଆଶ୍ଳେଷକୁ ଅନୁଭବ କରିବାକୁ ଚାହିଁଲା, ନିମୀଳିତ ଚକ୍ଷୁର କଳ୍ପନାରେ ଏବଂ ଆଶା କଲା ଯେ ସେଇଠୁଁ ସମସ୍ତ ତଥ୍ୟର ଟୋଟାଲ୍ ମିଳାଯିବ ତାକୁ ତା'ର ନିର୍ଣ୍ଣୟରେ ପହଞ୍ଚିବା ଲାଗି ।

ନାମ୍ବ ମହାପାତ୍ର । ବେଶଭୂଷା ଯଦି ଆଧୁନିକପଣର ଲକ୍ଷଣ ହୁଏ, ତା' ହେଲେ ସେ ସବୁଠାରୁ ବେଶି ମଡ଼ର୍ଣ୍ଣ, କଟକ ସୋସାଇଟିକୁ ଚାହିଁ । କାରଣ ସେ ଚିପା ସ୍ୱେଟର୍ ଆଉ ପ୍ୟାଣ୍ଟ ପିନ୍ଧିବାକୁ ପଶ୍ଚାତ୍‌ପଦ ହୁଏ ନାହିଁ । ତା' ଆଙ୍ଗରେ ପଞ୍ଚତାସ୍ଥ ହୋଇଛୁ 'ଦି ପ୍ରଗ୍ରେସିଭ୍ କମ୍ପ୍ୟୁଟର ସୋସାଇଟି'ର କର୍ମଶାଳାରେ । ପଲିଟିକାଲ୍ ସାଇନ୍‌ସରେ ଅନର୍ସ ନେଇ ବି. ଏ. ପଢ଼ୁଛି । ଶ୍ୟାମଳ ଚେହେରା ହେଲେ ମଧ୍ୟ ଗଢ଼ଣ ମନ୍ଦ ନୁହେଁ । ବିଶେଷତଃ ତା'ର ଆଖି ଦି'ଟା ପ୍ରଶଂସନୀୟ । ତିନି ଭାଇରେ ଗୋଟିଏ ଭଉଣୀ, ବାପାମାଆଙ୍କର ଗେହ୍ଲା । ଅଳ୍ପ କଥା କୁହେ । ତାରୁ ତାକୁ ଭିଡ଼ି ଧରିଲା ତା'ର ବାହୁ ବନ୍ଧନରେ । ଛିପି ଦେହ । ଯାହାକି ଅଙ୍ଗୁର ନିଦା ଲାଗୁଛି ଚିପାକ୍ରେସ୍ ଜନିତ ମାଂସଳତାକୁ ନେଇ । ଏବଂ ସେ କଥା କହୁନାହିଁ । ହୁଏତ ସେ ଅଫିସରଆଣୀ ହେବ, ସରକାର ଘରେ କିମ୍ବା କୋଉ କମ୍ପାନୀରେ । କିଛି କମ୍ ନୁହେଁ ତା'ର ଉଚ୍ଚାଭିଳାଷ ଏବଂ ଅଧ୍ୟବସାୟ । କିନ୍ତୁ···କିନ୍ତୁ କାହିଁ ତା'ର ଆଗ୍ରହ କେଉଁ ନୂତନ ଅନୁଭବ ପାଇଁ ? ତା' ହେଲେ ସେ କ'ଣ କିଛି ହେଲେ କୁହନ୍ତା ନାହିଁ, ତା' ଆଉ କିଛି ଗୋଟାଏ କରନ୍ତା ନାହିଁ ମୋ ମୁଣ୍ଡବାଳକୁ ଖୁସ୍‌ଖୁସ୍ କରିବା, ମୋ ତେ କୁତୁକୁତୁ କରିବା ବା ସେମିତି କିଛି ? କିନ୍ତୁ ମନେ ହେଉଛି ସେଭଳି ଉଦ୍ୟମ ତା'ଠାରୁ ଆଶା କରାଯାଏ ନାହିଁ । ସତେକି ପ୍ରେମଭିକ୍ଷା କରୁଥିବା ପୁରୁଷଙ୍କର ଏହାହିଁ କରିବା କଥା । ପ୍ରତିଦ୍ୱନ୍ଦ୍ୱିତା ଅନାବଶ୍ୟକ । ଏତେ ଚିପା ତା'ର ନିଜତ୍ୱ—ନିଜତ୍ୱ ନୁହେଁ, ଔଦ୍ଧତ୍ୟ ବି ନୁହେଁ, ନିଜ ଆଡ଼ୁ କିଛି ଆରମ୍ଭ କରିବାର ପ୍ରବଣତା ଅର୍ଥାତ୍ ଇନିସିଏଟିଭ୍‌ର ଅଭାବ—କେମିତି ଆଶା କରିବ ଯେ ସେ ମୋତେ ଟାଣି ଟାଣି ନେବ କେଉଁ ଅତ୍ୟାଧୁନିକ ଡାନ୍ସକୁ ଯିବା ଲାଗି, କୋଉଁ ଅପରିଚିତ

ଶିଳ୍ପୀର ଚମକପ୍ରଦ ପେଣ୍ଟିଂକୁ ଚାହେଁଇବ ବୋଲି, ଅଥବା କେଉଁ ନୂଆ ପଲ୍ମାନ୍ ଛନ୍ଦର ବର୍ଣ୍ଣମୟ ପାଠ ଶୁଣେଇବା ପାଇଁ ? ନା, ସେଭଳି ଆଗ୍ରହ କି କୌତୂହଳର ସମ୍ଭାବନା ନାହିଁ ତା' ଆଡ଼ୁ, ସେ ଦିଲ୍ଲୀରେ ଥାଉ କି ଟୋକିଓରେ । ତା' ଛଡ଼ା ତା'ର ଭାଇମାନେ ଯେଉଁଠି ଥାଆନ୍ତୁ ପଛେ, ସେ ଅଦ୍ୟାବଧି ଏଇ ଓଡ଼ିଶାରେ ରହିଛି, ତା'ର ନାମ୍‌ଜାଦା ଆଡ଼୍‌ଭୋକେଟ୍ ବାପାଙ୍କ ବାହୁଗ୍ରସ୍ତା ତଳେ । ନା, ଚଳିବ ନାହିଁ । ସେ ଯେତେ ବଡ଼ଲୋକର ଝିଅ ହେଉ କି ଚପାପ୍ୟାଣ୍ଟ୍ ପିନ୍ଧୁ । ତା' ଦେହମନର ନଦା କଡ଼ା ବାସ୍ନା ବାନ୍ଧି ଦେବ ତମକୁ, ଉଡ଼େଇ ନେଇ ପାରିବ ନାହିଁ ।…ତାରୁ ଆଖି ଖୋଲିଲି । ଦୀର୍ଘ ନିଃଶ୍ୱାସ ପକେଇଲି । ଗୋଟାଏ ଚୁନ୍ଧି ଦେଉଥିବା ଅକ୍ଟୋପସରୁ ମୁକୁଳି ଆସିଲା ପରି ।

ରାଣୀ ମହାନ୍ତି । ସଲ୍‌ଓ୍ୱାର୍ କମିଜ୍ ପିନ୍ଧା ଚଷମାଧାରିଣୀ, ଗୋରୀଟିଏ । ଗୃହାଣିରେ ତାରି ଫୁଟେଇପାରେ କଥା କହିଲା ବେଳେ, ବିଶେଷତଃ ଯୁକ୍ତି କଲା ବେଳେ । ଅନେକ ଦିନ ବମ୍ବେରେ ରହିଛି ତା'ର କମ୍ପାନୀ ଏକ୍‌ଜିକ୍ୟୁଟିଭ୍ ବାପାଙ୍କ ସାଙ୍ଗରେ । ଏଇକ୍ଷଣି ଏଇଠି ଅଛି ବାପାଙ୍କ ଅବସର ପରେ, ନିଜର ଏମ୍. ଏ. ପାଠ (ସୋସିଓଲଜି ? ନା ସାଇକୋଲଜି ?) ସରିଗଲା ଉତ୍ତାରୁ । ତା' ସାଙ୍ଗରେ ଦେଖାହୁଏ ପ୍ରଜାତନ୍ତ୍ର ଆଲୋଚନାଚକ୍ରରେ, ଯେଉଁଠି ସେ ଶ୍ରୋତାମଣ୍ଡଳୀରୁ ଉଠି ଆସିଲା କିଛି କହିବ ବୋଲି । ଏବଂ କହିଲା ଗୋଟାଏ ଚମକପ୍ରଦ କଥା, ନାରୀମାନଙ୍କ ଆରକ୍ଷଣ ବ୍ୟବସ୍ଥା ବିଷୟରେ, ଯାହାକି ଥିଲା ଆଲୋଚନାର ବିଷୟବସ୍ତୁ । କହିଲା, ଦୟାକରି ଦୟା ଦେଖାନ୍ତୁ ନାହିଁ ଆମ ଉପରେ । ଆମେ ନ୍ୟାୟ ଚାହୁଁ, ଆରକ୍ଷଣ ନୁହେଁ କି ସଂରକ୍ଷଣ, କିମ୍ବା ରକ୍ଷଣାବେକ୍ଷଣ । ଭଲ କଥା । ତା'ର ଇଣ୍ଟେଲେକ୍‌ଚୁଆଲ୍ ଉଗ୍ରତା ଏବଂ ଅସ୍ଥିରତା ମିଶି ଯାଉଛି ମୋ ସାଙ୍ଗରେ ।

…କିନ୍ତୁ ତାକୁ ଆଲିଙ୍ଗନ କଲାବେଳକୁ ଗୋଟାଏ ଅଦ୍ଭୁତ ଧାରଣା ମନକୁ ଆସୁଛି । ମନେ ହେଉଛି ସେ ହସୁଛି । ହେଲେ ଖୁସି ହେବା ସାଙ୍ଗକୁ ଟିକିଏ ଥଟ୍ଟା କଲାପରି । ଯେ ମୁଁ ଜାଣିଥିଲି ଏଇଆ କରିବ ତମେ । ଏହାହିଁ ଆଶା କରାଯାଏ ତମ ପରି ଗୋଟିଏ ସ୍ୱାଦୁଲୋଭୀ ପ୍ରେମିକ ପାଖରୁ । ସତେକି ସେ ମୋ ଲଭ୍‌ର ବର୍ଣ୍ଣମାଳା ପଢ଼ି ପାରୁଛି ସହଜରେ । ଏବଂ ସେଥିରେ ମଜା ଲାଗୁଛି ତାକୁ । ଡ୍ୟାମ୍ ଇଟ୍ । ତୋ ମୁଣ୍ଡରେ ପଶିବ ନାହିଁ ମୋର ସ୍ୱାଦୁହନ୍ଧାନୀ ମାନସିକତାର ବଡ଼ପଣ, ତା'ର ତାତ୍ତ୍ୱିକ ଅର୍ଥ । ମଞ୍ଚକୁ ଯିବା ପାଇଁ ହମହମ ହେଉଥିବା ଲୋକ ବୁଝିବ କେମିତି ? ଥାଉ, ମୋର ଲୋଡ଼ା ନାହିଁ ତୋର ସାହଚର୍ଯ୍ୟ ।…ତାରୁକୁ ବେଶି ସମୟ ଲାଗିଲା ନାହିଁ ନିଜକୁ ତା'ର ବାହୁପାଶରୁ ମୁକୁଳେଇ ଆଣିବା ପାଇଁ ।

—ସବ୍‌ନମ୍ । କଳ୍ପନାରେ ହେଉ ପଛେ ତାରୁର ଦେହ ଶିହରି ଉଠିଲା ତାକୁ ଆଲିଙ୍ଗନ କଲାବେଳକୁ । ଏବଂ ତାକୁ ନିବିଡ଼ରେ, ଆତୁର ନିବିଡରେ, କାବୁଡ଼ି

ଧରିବାକୁ ଇଚ୍ଛା ହେଲା, କାରଣ ସେ ସବୁଠାରୁ ବେଶୀ ସୁନ୍ଦରୀ ଏମାନଙ୍କ ଭିତରେ । ଧାରୁଆ ମାପଚୁପାକରା ମୁହଁ, ଉହିଁକୁ ଗୋଟିଏ ନାକମାଛି, ଦେହର କ୍ଲାସିକ୍ ଢଙ୍ଗାଚ । ଏବଂ ଉଦାରପ୍ରସନ୍ନ ହସ । ସତେକି ସେ ଦେବୀଟିଏ । ତମର ସମସ୍ତ ପ୍ରଶ୍ନ, ସମସ୍ତ ଉତ୍ତର ଏବଂ କାମକାମନାକୁ ଅଭୟ ଦେବା ପାଇଁ ପ୍ରସ୍ତୁତ, ଯଦି ତମେ ତା'ର ଭକ୍ତ ହୋଇଥାଅ । କିନ୍ତୁ ଦୁଃଖର ବିଷୟ ତାକୁ ଦେବୀ ବୋଲି କୁହାଯାଇ ପାରିବ ନାହିଁ । କାରଣ ସେ ମୁସଲ୍‌ମାନ୍ । ଦୁବାଇରୁ ଖିପ୍ରଣ •ବଡ଼ଲୋକ ହୋଇ ଫେରି ଆସିଥିବା ଶିଳ୍ପପତି ଶେଖ୍ ଅନ୍‌ୱାର ଆଲ୍ଲୀଙ୍କ ଝିଅ । ସବ୍‌ନମ୍ ମ୍ୟାନେଜ୍‌ମେଣ୍ଟ କରୁଛି କ୍ୟାପିଟାଲ୍‌ର କେଭ୍ୟୁର୍ସ ଇନ୍‌ଷ୍ଟିଚ୍ୟୁଟ୍‌ରେ । ମନୋଭାବ ଉଗ୍ର ନୁହେଁ, ଉନ୍ମୁଖ । ଧୀର ଚିତ୍ତରେ ଶୁଣିବାକୁ ଚାହେଁ ତୁମେ କ'ଣ କହିବାକୁ ବସିଛ । ତା'ପରେ ସେ ହୁଏତ କହିବ କିଛି, ତା'ର ସେଇ ଅନବଦ୍ୟ ହସଟିଏ ଢାଳି ଦେଇ । ହଁ, ସେ ପ୍ରକୃତରେ ଦେବୀଟିଏ । ତା' ସାଙ୍ଗରେ ଆକସ୍ମିକ ଭାବରେ ଦେଖା ହୁଏ ଭୁବନେଶ୍ୱରରେ ଅନୁଷ୍ଠିତ ଗୋଟିଏ ସାଂସ୍କୃତିକ ସମାବେଶରେ, ଯେଉଁଠି ଦୁହେଁ ପାଖାପାଖି ଚଉକିରେ ବସିଥିଲେ । ସେଠି କେତେକ ବକ୍ତା ଯେଉଁ ପ୍ରକାର ଆକ୍ରମଣ କଲେ ତଥାକଥିତ ଅପସଂସ୍କୃତି ଉପରେ ତାକୁ ତାରୁ ସହିପାରିଲା ନାହିଁ । 'ରବିସ୍ !' ବୋଲି କହିଲା, ପାର୍ଶ୍ୱବର୍ତ୍ତୀମାନଙ୍କୁ ଚମକେଇଦେଇ । କିନ୍ତୁ ଆଶ୍ଚର୍ଯ୍ୟ ହେଲି ଯେ ତରୁଣୀ ଜଣକେ ତା'ର ବ୍ୟାଖ୍ୟା ଶୁଣିବାକୁ ଚାହେଁ ତା'ଠାରୁ । ସେଇଠୁ ତାରୁ ତାକୁ ବୁଝେଇବାକୁ ଲଗିଲା ହଲ୍ ଭିତରେ ଏବଂ ହଲ୍‌ରୁ ବାହାରି ଆସିଲାପରେ, ଯେ ଅଭିନବକୁ ପ୍ରୋତ୍ସାହନ ଦେଲେ ଯାଇଁ ସଂସ୍କୃତିର ଅଗ୍ରଗତି ହେବ, ତେଣୁ ତାକୁ ନିନ୍ଦା କରିବା ଘୋର ମୂର୍ଖତା । ହଁ, ସେ ବୁଝିଛି ଭିନ୍ନ ସ୍ୱାଦର ମହତ୍ତ୍ୱ, ଯେମିତି ଭାବରେ ସେ ମୋ କଥାକୁ ପିଇ ଯାଉଥିଲା ମଝିରେ ମଝିରେ । କିନ୍ତୁ ଦୁର୍ଭାଗ୍ୟକୁ ତା' ନାଆଁ ସବ୍‌ନମ୍ । ନିଜେ ଗୋଟିଏ ପ୍ରଚଣ୍ଡ ଭିନ୍ନ ସ୍ୱାଦର ପ୍ରତୀକ, ସାଂପ୍ରଦାୟିକ ସ୍ତରରେ । ତାକୁ ଲଭ୍ କଲେ କରିବ ସିନା. ବାହା ହେବ କେମିତି ? ଖାଲି ବୋଉ ନୁହେଁ, ଭାଇବନ୍ଧୁ କୁଟୁମ୍ବଙ୍କର ସମଗ୍ର ସମାଜ ଦୂରେଇ ଦିବ ମୋଠୁଁ । କାହିଁକି ଭଲା ମୁଁ ମୂଳରୁ ତାଙ୍କ ସାହାଯ୍ୟ ସହଯୋଗ ହରେଇବି ? ସାରା ଜୀବନଟା ପଡ଼ିଛି ଭିନ୍ନ ସ୍ୱାଦର ଲେଭଲ୍‌କୁ ଚରିତାର୍ଥ କରିବା ଲାଗି । ତାକୁ ଏତିକି ବେଳଠୁଁ ବିପଦରେ ପକେଇବା ଅନୁଚିତ । ବୁଦ୍ଧିମାନର କାର୍ଯ୍ୟ ନୁହେଁ । ତାରୁ ଦୁଃଖର ସହିତ ନିଜକୁ ମୁକୁଳେଇ ଆଣିଲା ସବ୍‌ନମ୍‌ର ବାହୁବନ୍ଧନରୁ । ଏବଂ ମନେ ମନେ କହିଲା—''କ୍ଷମା କର, ପୁଣି କେବେ । ହୁଏତ ଆର ଜନ୍ମରେ ।''

ବାକି ରହିଲା ବୁଲ୍‌ବୁଲ୍, ଭଲ ନାଆଁ ସୁଚରିତା ପ୍ରଧାନ । ଏମାନଙ୍କ ଭିତରୁ ସେହି ଜଣକ ଶାଢ଼ିପିନ୍ଧା ଝିଅ । ଯଦିଓ ସେ ଜନ୍ମ ହୋଇଛି ଆମେରିକାରେ ଏବଂ ମାତ୍ର ବର୍ଷେ ହେଲା ଆସିଛି ଓଡ଼ିଶାକୁ । କିନ୍ତୁ ସେ ତା' ଶାଢ଼ିପ୍ରୀତିର ବଡ଼େଇ କରେ ନାହିଁ । କୁହେ ଯେ ମୋତେ ଆଉ କିଛି ପିନ୍ଧିବାକୁ ଭଲ ଲାଗେ ନାହିଁ ।

କୁହେ ନାହିଁ ଯେ ପାଶ୍ଚାତ୍ୟ ଦେଶରେ ଶାଡ଼ିର ମର୍ଯ୍ୟାଦା କାହିଁରେ କଅଣ ଏବଂ ଶାଢ଼ିସୁନ୍ଦରୀମାନଙ୍କୁ ଏକ ସ୍ୱତନ୍ତ୍ର ସିଂହାସନରେ ବସେଇଥାଏ ସେଠିକାର ହାଇ-ସୋସାଇଟି । ତା' ବାପା ଡକ୍ଟର ଗଣେଶ ପ୍ରଧାନ ହୃଦ୍‌ରୋଗ ବିଶେଷଜ୍ଞ ହୋଇ ବେଶ୍ କିଛି ଅର୍ଥ କମେଇଥିଲେ ସେଠି, କିନ୍ତୁ ତାଙ୍କ ବାପାଙ୍କ ମୃତ୍ୟୁ ପରେ ତାଙ୍କୁ ଏଠିକି ଆସିବାକୁ ପଡ଼ିଛି ପାରିବାରିକ ଓ ସମ୍ପତ୍ତିଗତ କାରଣରୁ । କେତେ-ଦିନ ରହିବେ ଭଗବାନଙ୍କୁ ଜଣା । ବୁଲ୍‌ବୁଲ ଏଇଠିକା କଲେଜ୍‌ରେ ପଢ଼ୁଛି, ବି.ଏ. ପାଠ ସରି ନାହିଁ ଆଜଯାଏଁ । ତା'ରୁମ୍ ମାମୁଁଝିଅ ଭଉଣୀ ମିତା ତା'ର ସହପାଠିନୀ ଏବଂ ସେହି ସୂତ୍ରରେ ଦୁହିଁଙ୍କ ଚିହ୍ନା । ସାନଭଉଣୀ ଅଳି କଲା ପରି କହିଲା— "ଇକନମିକ୍‌ସ୍‌ର କେଇଟା ପାଠ ସେ ବୁଝିପାରୁ ନାହିଁ ଭଲ କରି, କାରଣ ଏଠିକାର ସିଲାବସ୍ ଭିନ୍ନ, ପଢ଼େଇବାର ଢଙ୍ଗ ବି ଅଲଗା । ବୁଝିଲ ନା ତାରୁଭାଇ ? କିନ୍ତୁ ସେ ଖୁବ ଇଣ୍ଟେଲିଜେଣ୍ଟ୍ ପିଲା । କଥା ହେଉଛି, ସେ ଘୋଷାବାଲାଦ ନୁହେଁ, ତା'ର ସବୁଆଡ଼କୁ ମନ, ସବୁକିଛି ଜାଣିବାକୁ ଚାହେଁ, ଦେଖିବାକୁ ଚାହେଁ । ଭର୍ସେଟାଇଲ୍ ଇଣ୍ଟରେଷ୍ଟ । ତେଣୁ ମୁଁ କ'ଣ କହୁଥିଲି କି ତାକୁ ଟିକିଏ ଗାଇଡ଼୍ କରି ଦିଅନ୍ତ ନାହିଁ ?" ଅଗତ୍ୟା ତାରୁ ରାଜି ହୋଇଗଲା । ଏବଂ ମିତା ଦୁହିଁଙ୍କର ଭେଟ କରେଇ ଦେଲା ଆପଣା ଡ୍ରଇଂରୁମ୍‌ରେ ଗୋଟିଏ ଘରୋଇ ପରିବେଶରେ ।

କିନ୍ତୁ ତାରୁ ତାକୁ ଯଥାଶୀଘ୍ର ଏବଂ ସ୍ୱଚ୍ଛନ୍ଦରେ ଆଲିଙ୍ଗନ କରିପାରିଲା ନାହିଁ । ସେଥିପାଇଁ ତାକୁ ଯତ୍ସାମାନ୍ୟ ଚେଷ୍ଟା କରିବାକୁ ପଡ଼ିଲା । ତା'ର କାରଣ ନୁହେଁ ଯେ ବୁଲ୍‌ବୁଲ୍ ଦେଖିବାକୁ ସୁନ୍ଦର ନୁହେଁ । ଖୁବ୍ ବାଛି ନବସିଲେ ତାକୁ ଅସୁନ୍ଦର ବୋଲି କୁହାଯିବ ନାହିଁ । ସାମାନ୍ୟ ଚେପ୍‌ଟା ନାକ ଓ ଚଉଡ଼ା ମୁହଁ ହେଲେ ମଧ୍ୟ ଗୋରା ତକ୍‌ତକ୍ ଦେହ, ଏବଂ ସାନ-ସମତୁଲ ଦି'ପାଟି ଦାନ୍ତର ଚମତ୍କାର ହସ । ଖିଲ ଖିଲ ହସ । କଥା କଥାକେ ହସ । କିନ୍ତୁ ଅସୁବିଧା ହେଲା ସେଇଠି । ପରିଚୟ ହେବାର କେଇଟା ଦିନ ନ ଯାଉଣୁ ସେ ଏମିତି ହସିବାକୁ ଲାଗିଲା, ଏଣୁତେଣୁ କଥା ପକେଇଲା 'ତାରୁଭାଇ'ଙ୍କ ସାଙ୍ଗରେ, ଏବଂ ତା'ର ସର୍ବବ୍ୟାପୀ ସର୍ବଦର୍ଶୀ କୌତୂହଳର ନମୁନା ଦେଖାଇଲା (ଯଥା: ଜାଣିଛନ୍ତି ? ସେଠି 'ଲ୍ୟରେ କାଭର୍ଣ୍ଣ୍‌ସ୍' ବୋଲି ଗୋଟିଏ ଜାଗା ଅଛି, ଯେଉଁଠି କେଇଟା ପଥରର ଚେହେରା ଅଣ୍ଡା-ଫ୍ରାଏ ପରି ଦେଖାଯାଏ । ସେମିତିକା କିଛି ମଜାର ପଥର କ'ଣ ନାହିଁ ଆମ ଦେଶରେ ? ନଥିଲେ ବି ଆମେ କ'ଣ ତାକୁ ଗଢ଼ିପାରନ୍ତେ ନାହିଁ ଟୁରିଷ୍ଟମାନଙ୍କ ପାଇଁ ? ହିଃ ହିଃ···ବିଅର୍‌ରେ ପିଡାପାଣି କାହିଁକି ଏତେ ଭଲ ଲାଗେ ଆପଣମାନଙ୍କୁ ? ତା'ଠୁ ଭଲ ଚରେଇତା ପାଣି ପିଇ ନାହାନ୍ତି. ଯେଉଁଥିରେ ପେଟ ଠିକ୍ ରହିବ ? ହିଃ ହିଃ···ଲଭ୍ କ'ଣ ଏମିତି ଗୋଟାଏ ଅପୂର୍ବ ଜିନିଷ ମ ? ମୁଁ ତ ଢ଼ଣା ଅଧିକେ ଦମତ୍ରଙ୍କୁ ଲଭ୍ କରେ—କ'ଣ କହୁଛୁ ମିତା ? ହିଃ ହିଃ···ଇତ୍ୟାଦି) ଯେ ତାରୁର ମନେ ହେଉଥିଲା ବେଳେବେଳେ ଯେ ସେ ପ୍ରକୃତରେ ଗୋଟାଏ

ଫାଜିଲ୍ ସାନଭଉଣୀ, ଯାହାକୁ ମଝିରେ ମଝିରେ କାନ ମୋଡ଼ି ଚିଆଁଇବା ଦରକାର, ତା'ର ପ୍ରଗଲ୍‌ଭ ଚପଳତା ପାଇଁ । ଏଭଳି ଗୋଟିଏ ଝିଅକୁ ଆଲିଙ୍ଗନ କରିବାକୁ ଗଲେ ଟିକିଏ ଅସୁବିଧାରେ ପଡ଼ିବ ନାହିଁ ମଣିଷ ?

କିନ୍ତୁ ତାରୁ ହଟିଲା ନାହିଁ । ଲଟେଇ କରି ଚାଲିଲା ତା'ର ଏଇ ଅଳଣା ଭ୍ରାତୃଭାବ ସାଙ୍ଗରେ । କାରଣ ତା'ର ମନେ ହେଲା ଯେ ଏଇଠି ତା'ର ପ୍ରେମ ପରିକ୍ରମା ଶେଷ କରିବାକୁ ପଡ଼ିବ । ଏଇଥିପାଇଁ ନୁହେଁ ଯେ ବୁଲ୍‌ବୁଲ୍ ପରେ ଆଉ କେହି ସୁପରିଚିତା ନାହାନ୍ତି ତା' ଆଖି ଆଗରେ, ଯାହାକୁ ଲଭ୍ କରିହେବ ଏବଂ ଯେ ତା'ର ସାଥୀ ହୋଇ ତା' ଭିନ୍ନସ୍ୱାଦୁପ୍ରବଣତାକୁ ଉସ୍‌କେଇବ ବୋଲି ଭାବିବା ସ୍ୱାଭାବିକ । କଥା ହେଉଛି ଯେ ଏଭଳି ଆଗ୍ରହଭରା ପ୍ରାଣବନ୍ତ ଝିଅଟିଏ ସହଜେ ମିଳିବ ନାହିଁ ତାକୁ, ସେ ଯେତେ ପିଲାଳିଆ ହେଉ ପଛେ । ପିଲାଳିଆ କାହିଁକି ହେବ ସେ ? ସେ ମଧ୍ୟ କ'ଣ ଜାଣିବାକୁ ଚାହିଁ ନାହିଁ ଆବ୍‌ଷ୍ଟ୍ରାକ୍ଟ ରିଏଲିଜିମ୍ ବିଷୟରେ ? ଏବଂ ଓଡ଼ିଶୀ ଓ କୁଚିପୁଡ଼ି ନାଚର ସାମଞ୍ଜସ୍ୟ ବିଷୟରେ ? ଯଦିଓ ସିରିୟସ୍ ପ୍ରଶ୍ନ ପଚାରିଲା ବେଳେ ବି ସେ କାହିଁକି ହସିଉଠେ ବେଳେବେଳେ ତା'ର କେଉଁ ବ୍ୟକ୍ତିଗତ ଅନୁଭୂତିକୁ ମନେ ପକାଇ, ତା' ବୁଝିବା କଷ୍ଟ । ତା' ଛଡ଼ା ଗ୍ରାଜୁଏସନ୍ ପରେ ସେ କୁଆଡ଼େ ବୋଲି କୁଆଡ଼େ ଯାଇପାରେ । ଉତ୍କଳ ପ୍ରଧାନ କ'ଣ ହାତରେ ଏଠି ପଡ଼ି ରହିବେ ତାଙ୍କ ସଂପତ୍ତିର ସବୁ ସମସ୍ୟା ତୁଟିଗଲା ପରେ ? ଜାତୀୟ ଅର୍ଥନୀତି ସଂକ୍ରାନ୍ତରେ ଭାରତସରକାରଙ୍କ ଉଦାରୀକରଣ ନୀତି ବିଷୟରେ ପଡ଼ିଥିଲା ଥରେ । ଏବଂ ତା'ର ଭଲ ମନ୍ଦ ଆଲୋଚନା ସାଙ୍ଗକୁ ବୁଲ୍‌ବୁଲ୍ ପକେଇଲା ବିଦେଶୀ ଚକୋଲେଟ୍ କଥା । ସେଥିରେ ବିଭିନ୍ନ-ବିଚିତ୍ର ସ୍ୱାଦୁ । ଯଥା—'କିଟ୍-କ୍ୟାଟ୍' ନାମକ ଚକୋଲେଟ୍ । କୁଡ଼ମୁଡ଼୍ ହୁଏ ବିସ୍କୁଟ୍ ପରି, ହେଲେ ତା'ର କୁଆଡ଼େ ସବୁଠାରୁ ଫେଭରିଟ୍ ଥିଲା । ବାସ୍ନା ଯେତିକି ମିଠା, ତା'ର ସ୍ୱାଦୁ ସେତିକି ଚିକ୍‌କଣ— ଆଃ ! ବୁଲ୍‌ବୁଲ୍‌ର ଉପଭୋଗୀ ଆତ୍ମା ଯେମିତି ଫୁଟି ଉଠୁଥିଲା ସେତେବେଳେ ତା' ମୁହଁର ଚେହେରାରେ, ତାକୁ ଦେଖିବା କଥା ।

କିଟ୍-କ୍ୟାଟ୍ ! ହଠାତ୍ ତାରାପଦର ମନେ ପଡ଼ିଲା । ହଁ, ଏବେ ସେ ଦେଖି ଆସିଛି ଏଇ ଅପୂର୍ବ ବସ୍ତୁଟିକୁ, ବକ୍‌ସିବଜାରର ଗୋଟିଏ ବଡ଼ ଦୋକାନରେ । କୁଆଡ଼େ ଏଇ ଅଳ୍ପଦିନ ହେଲା ଆସିଛି କଟକକୁ । ତେଣୁ ସମ୍ଭବତଃ ବୁଲ୍‌ବୁଲ୍‌ର ନଜରରେ ପଡ଼ି ନଥିବ । ତା'ହେଲେ ଗୋଟାଏ କାମ କଲେ କେମିତି ହୁଅନ୍ତା ? ସେଇଥିରୁ କେତୋଟି ଧରି ପହଞ୍ଚିଗଲେ କେମିତି ହୁଅନ୍ତା ବୁଲ୍‌ବୁଲ୍ ପାଖରେ ? କୋଉଠି ଲେଖା ହୋଇଛି ଯେ କେବଳ ଫୁଲ ତୋଡ଼ା କିମ୍ବା ହୀରାମୁଦି ହିଁ ଉପହାର ଦିଆଯାଏ ଗ୍ରେଣ୍ଡ୍‌ଫ୍ରେଣ୍ଡ୍‌କୁ ? ଅନବଦ୍ୟ ଏବଂ ନୂତନତମ ବିଦେଶୀ ଚକୋଲେଟ୍ ବୋଧହୁଏ ପ୍ରେମ୍ୟସ୍ୱର ଏଭଳି ଏକ ବିଶିଷ୍ଟ ପ୍ରଣୟକୁ ଆଗେଇ ନେବା ପାଇଁ ।

କେଉଁ ଗଳିବୁଢ଼ାକୁ ଗଳିର ଅଧିଷ୍ଠାତ୍ରୀ ଦେବତା ବୋଲି କହିବ ? ଯାହାର ଅଶ୍ଳୀଳ ମୁଖରତା ତା'ର କୁତ୍ସିତପଣକୁ ବ୍ୟକ୍ତ କରେ ? ନା ଯାହାର ଅଶ୍ଳୀଳ ନୀରବତା ତମର ସୂକ୍ଷ୍ମସୁନ୍ଦର ଉଦ୍ୟମକୁ ଉପହାସ କରେ ? ଗଳିର ବାସିନ୍ଦା ହେଲେ ମଧ୍ୟ ବାହାରୁ ଉଠି ଆସିଥିବାରୁ ତାରୁ ଆଜିଯାଏଁ ସେମାନଙ୍କୁ ସାମିଲ୍ କରି ନେଇ ପାରି ନାହିଁ ତା' ଦିନଚର୍ଯ୍ୟାର ଅନୁଭବ ଦ୍ୱାରାବରେ । ଏବେ ମଧ୍ୟ ସେ ପ୍ରଥମଟିର କଟାସମ୍ପାକୁ ସହ୍ୟ କରିପାରେ ନାହିଁ ଏବଂ ଶ୍ରୁତିପଥରୁ ପଳେଇ ଆସେ ଯେତେ ଶୀଘ୍ର ପାରେ । ଏବଂ ଦ୍ୱିତୀୟର ଦର୍ଶନରୁ ପଳେଇ ଯାଏ ଗୁଟିପିଟି ହୋଇ । ହେଲେ କାହାରିକୁ ପୂରାପୂରି ଆଡ଼େଇ ଦେଇ ହୁଏ ନାହିଁ । କାରଣ ପ୍ରଥମ ଜଣକ ଥାଏ ଗଳିର ମଝିଆମଝି, ତା'ର ବସାଘରଠୁଁ ଟିକିଏ ଦୂରରେ । ଦାଣ୍ଡପିଣ୍ଡାର ଗୋଟିଏ ଘେର ଦିଆ କୋଣରେ, ଯେଉଁଠି ତା' ପିଲାମାନେ ତାକୁ ଠାବ ଦେଇଛନ୍ତି । ଏବଂ ଦ୍ୱିତୀୟ ଜଣକ ବସିଥାଏ ଗଳି ମୁଣ୍ଡରେ, ତା'ର କଲେଜକୁ ଯିବା ବାଟରେ । ତା'ପ୍ରିୟ ସ୍କୁଟର୍‌ରେ ଯାଏ ତା କଲେଜ୍‌କୁ । କିନ୍ତୁ ଗଳିମୁଣ୍ଡରେ ଭୁଁ କିନା ମୋଡ଼ କାଟି ପଳେଇଯିବା ସମ୍ଭବ ନୁହେଁ । ତା ଛଡ଼ା ଗାଈଁ, ଠେଲାଗାଡ଼ି, ଲୋକବାକ ଏବଂ ଷଣ୍ଢମାନେ ତ ଅଛନ୍ତି ତା' ଗତିକୁ ଧିମେଇଦେବା ପାଇଁ । ଅଗତ୍ୟା ସେଇ ନୀରବ-ଅଶ୍ଳୀଳ ବୁଢ଼ାକୁ ଦେଖିବାକୁ ପଡ଼େ, ହେଉ ପଛେ ଅଳ୍ପ କେତୋଟି ମୁହୂର୍ତ୍ତ ପାଇଁ ।

ନୀରବ ହେଲେ ମଧ୍ୟ ସେ ଅଶ୍ଳୀଳ, କାରଣ ତା'ର ପାଟିଟା ମେଲା ଥାଏ ସବୁବେଳେ । ଗୋଟାଏ ନଦାନ୍ତ୍ କଳା ଓ ଅବଡ଼ାଖାବଡ଼ା ମୁହଁର ପାଟି । ଅଥଚ ଆଖି ଦିଟା ଖୋଲି ଥିଲେ ମଧ୍ୟ ବୁଜି ହୋଇ ରହିଲା ପରି ଦେଖାଯାଏ । ସତେକି ଏଇ ଅଧାପନ୍ତରିଆ 'ଆଁ' ହିଁ ତା'ର ଏକମାତ୍ର ଅଭିବ୍ୟକ୍ତି ଏବଂ ବୁଭୁକ୍ଷା ହିଁ ତା' ବଞ୍ଚିବାର ଏକମାତ୍ର କାରଣ ଏବଂ ଉଦ୍ଦେଶ୍ୟ । ଅନ୍ୟମାନଙ୍କ ପରି ତାକୁ ମଧ୍ୟ ତା' ସାମନାରେ ବିଛା ହୋଇଥିବା କନା ଖଣ୍ଡିକ ଉପରେ ଦଶ କୋଡ଼ିଏ ପଇସା ପକେଇ ଦିଏ । କିନ୍ତୁ ତା'ର ପ୍ରବଳ ଇଚ୍ଛା ହୁଏ ତା'ର ସେଇ କୁତ୍ସିତ ପାଟିଟାକୁ ବନ୍ଦ କରିଦେବା ପାଇଁ, କଦଳୀଟାଏ ମାଡ଼ି ଦେଇ କିମ୍ବା ଅନ୍ୟ ଯେକୌଣସି ଉପାୟରେ । ଯାହା ସେ କରିବାକୁ ଅକ୍ଷମ । ଏବଂ ତା'ର ମନେହୁଏ ଯେ ଏହି ଅକ୍ଷମତାର ବୋଧ ମଧ୍ୟ ଆସୁଥିବ ଅନ୍ୟମାନଙ୍କ ମନରେ, ସେମାନେ ଯେତେବେଳେ ଯାଆନ୍ତି ସେଇବାଟେ । ପଇସା କେଇଟା ଫିଙ୍ଗି ଦିଅ କି ନ ଦିଅ, କିଛି ଯାଏଆସେ ନାହିଁ । ରକ୍ଷା ନାହିଁ ସେଇ ବିକଟ ବ୍ୟାଦନାରୁ !

ଗୁଟେଇଟି କିଟ୍-କ୍ୟାଟ୍ ଚକୋଲେଟ୍‌କୁ ନେଇ ବୁଲ୍‌ବୁଲ୍‌ର ଘରକୁ ବାହାରିବା ଦିନ ଝିପିଝିପି ବର୍ଷା ହେଉଥାଏ । କିନ୍ତୁ ଏଭଳି ବର୍ଷା ନୁହେଁ ଯେ ଗଳିମୁଣ୍ଡରେ ବସିଥିବା ବୁଢ଼ା ପଦାକୁ ନ ଆସି ଲୁଚି ରହିଥିବ କେଉଁ କୋରଡ଼ରେ ।

ଏବଂ ଏଭଳି ବର୍ଷା ନୁହେଁ ଯେ ଷଣ୍ଢମାନେ ଗତିଶୀଳ ହେବେ ନାହିଁ । ତା' ଛଡ଼ା କୋଉ ବର୍ଷା କେବେହେଲେ ଅଟକେଇ ପାରିଲାଣି କି ଗଳିପିଲାଙ୍କ କୁହାଟ ଏବଂ ଧାବନକୁ, ତା'ର କାରଣ ଥାଉ କି ନଥାଉ ?

ଯେହେତୁ ଦୁର୍ଭାଗ୍ୟର ବିଷୟ, ଗୋଟାଏ ଦୁର୍ଘଟଣା ଘଟିଲା ସେଦିନ ସକାଳେ, ଯେତେବେଳେ ତାରୁ ସ୍କୁଟର୍‌ରେ ଚଢ଼ି ପହଞ୍ଚିଥିଲା ଗଳି ମୁଣ୍ଡରେ, ଚକୋଲେଟ୍-ଜନିତ ଆବେଗରେ ଆପ୍ଲୁତ ହୋଇ । ଷଣ୍ଢର ଆକସ୍ମିକ୍ ଆବିର୍ଭାବ ସାଙ୍ଗକୁ ପିଲାଙ୍କର ରେରେକାର ଓ ଧାବନ ତା'ର ଭାବଭାବନାକୁ ଏମିତି ଚହଲେଇ ଦେଲା ଯେ ସେ ତା'ର ବାହନକୁ ସମ୍ଭାଳି ପାରିଲା ନାହିଁ ଏବଂ ତାହା ପରେ ପରେ ଷଣ୍ଢ ଏବଂ ବାଳକ ସାଙ୍ଗରେ ପିଟି ହୋଇଗଲା । ପିଟି ହୋଇ ତା' ମାଲିକକୁ ଖସେଇ ଦେଲା ତଳକୁ । ଗୋଟାଏ ଚକୋଲେଟ୍ ମଧ୍ୟ ଖସିପଡ଼ିଲା ସ୍କୁଟରରୁ ଝୁଲା ହୋଇଥିବା ମୁଣିରୁ ।

ସେଇଠୁଁ ତାରୁର ଆଖି ଆଗରେ ଘଟିଗଲା ସେହି ଅପଦୃଶ୍ୟ, ଯାହାକୁ ସେ ବାରଣ କରି ପାରିଲା ନାହିଁ । ଖାଲି ଭକୁଆ ହୋଇ ଅନେଇ ରହିଲା ତା' ଆଡ଼କୁ ତା'ର କଚଡ଼ାଖିଆ ଦେହକୁ ଆଉଁସି ଆଉଁସି ।

ଗଳିବୁଢ଼ା ହାତ ବଢ଼େଇଛି ଚକୋଲେଟ୍ ଆଡ଼କୁ । ଏବଂ ଦେଖୁ ଦେଖୁ ତା'କୁ ଉଠେଇ ନେଲାଣି କାଦୁଅରୁ । ପୁଣି ତା'କୁ ଚପୁଛି । ହେ ଭଗବାନ୍ !

"ଚପ୍‌ନା ତାକୁ ଚପ୍‌ନା ! କାଗଜଖୋଳକୁ ଚିରି ଦେ, ତା' ଭିତରେ ଚକୋଲେଟ୍ ଅଛି···" ଏମିତି ଯେମିତି ସାଧାରଣ ଚକୋଲେଟ୍ ନୁହେଁ, ସଦ୍ୟ ବିଦେଶରୁ ଆସିଥିବା ଚକୋଲେଟ୍ । ଗୋଟି ଅଠେଇଶ ଟଙ୍କା ।

କାଗଜକୁ ଖୋଲିଲା ମାତ୍ରେ ବୁଢ଼ା ଜାଣିପାରିଲା ଯେ ଇଏ ଗୋଟାଏ ଖାଦ୍ୟପଦାର୍ଥ । ତେଣୁ ସେ ତାକୁ ପାଟିରେ ପୂରେଇଲା । ଏବଂ ତା' ପାଟି ସରସିକ୍ତ ହୋଇ ଉଠିଲା ।

ଗୋଟାଏ ଗଲା ଗଲା, ଆଉ ଜଣକର ତ ମୁଣିରେ ଥିଲା ? ତାକୁ ମଧ୍ୟ ତା'ଆଡ଼କୁ ଫିଙ୍ଗିବାର କ'ଣ ଦରକାର ଥିଲା ? କିନ୍ତୁ ତାରୁ ସ୍କୁଟର୍‌ଟାକୁ ଉଠେଇ ନେଇ ଠିଆ କରେଇଲା । ଓ ନିଜେ ସେଇଠି ଛିଡ଼ା ହୋଇ ରହିଲା । ଏବଂ ଦେଖିବାକୁ ଲାଗିଲା ବୁଢ଼ାର ଚକୋଲେଟ୍‌କୁ ଗୁଳୁଗୁଳୁ କରି ଖାଇବାର ଦୃଶ୍ୟ । ଯେତେକ ସିଏ ଚୂଡ଼ାମୂର୍ତ୍ତି ହୋଇଛି ! ହଁ, ତା' ନୁହେଁ ତ ଆଉ କ'ଣ ? ସେ କୋଉଠୁଁ ବୁଝିବ ଫରେନ୍ ଚକୋଲେଟ୍‌ର ଅପରୂପ ସ୍ୱାଦୁ ? ଖାଦ୍ୟ ମାନେହିଁ ଖାଦ୍ୟ, ବଞ୍ଚିବାର ସ୍ୱାଦୁ-ଟିକ, ଯାହାକୁ ପାଇବା ପାଇଁ ତା' ପାଟି ମେଲା ହୋଇ ରହୁଛି ସବୁବେଳେ । ଆଃ !

କେଡ଼େ ଆନନ୍ଦରେ ଶଳା ଖାଇ ଗ୍ଭଲିଛି ତାକୁ, ଦୁଇ ହାତକୁ ବଟବଟ କରି ! ଯେଉଁ ଚକୋଲେଟ୍ ଆସିଥିଲା ଖାସ୍ ବୁଲ୍‌ବୁଲ୍ ପାଇଁ ତାକୁ ଲଭ୍ କରି…ଆଉ ଲଭ୍ ନାଇଁ ! ସେଇଠୁଁ ତାରୁ ରାଗରେ ବାକି ଦିନଟାକୁ ବି ଫିଙ୍ଗିଦେଲା ତା' ଆଡ଼କୁ ଏବଂ ମନେ ମନେ କହିଲା—

"ନେ ଶଳା ଖା" ! ଏକାଥରକେ ପୂରିଯାଉ ତୋ ପେଟ । ମରିଯାଉ ତୋ ଭୋକ । ଆଉ ତୋ ଅପରିଛନ୍ନଆ "ଆଁ ଟା ବୁଜି ହୋଇଯାଉ, ଏକଦମ୍ ବୁଜି ହୋଇଯାଉ…।"

କିନ୍ତୁ କ୍ରମଶଃ ଏକ ବିଚିତ୍ର ବୈଷମ୍ୟର ଅନୁଭବ ଆସିଲା ତା' ମନରେ । ସତେକି ଏଠି ମରଣ ଜୀବନକୁ ପାଉଛି କିଛିକ୍ଷଣ ପାଇଁ ଏବଂ ତାକୁ ଉପଭୋଗ କରୁଛି । ଅଥବା ଜୀବନ ଗେଲ ହେଉଛି ମରଣ ସାଙ୍ଗରେ । ସେଇ ଏକା କଥା ।

ତାରୁ ଆଉ ଗଳ୍ପ ନାହିଁ କୋଉଠିକି । ବିଧ୍ୱସ୍ତ ହୋଇ ଫେରି ଆସିଲା ତା' ବସାକୁ । ପ୍ରତିବେଶୀ ବୁଢ଼ୀର କଟାସମ୍ପା ମଧ୍ୟ ତା' କାନକୁ ଶୁଭିଲା ନାହିଁ । ଖାଲି ଗୋଟିଏ କଥା ତା' ମନକୁ ଆସୁଥାଏ ବାରମ୍ବାର—ମୁଁ ଯୋଉ ଦୃଶ୍ୟଟା ଦେଖି ଆସିଲି ସିଏ କ'ଣ ବେଶୀ ଆବ୍‌ସର୍ଡ୍ ମୋ ପ୍ରେମର ସନ୍ଧାନଠାରୁ ?

ତେବେ କିଛି ଦିନ ପରେ ସେ ଘଟଣାଟାକୁ ବର୍ଣ୍ଣନା କଲା ମିତା ଆଗରେ । ଗୋଟାଏ ମଜାକଥା ଶୁଣେଇଲା ପରି । ତା'ର ସନ୍ଦେହ ନ ଥିଲା ଯେ ସେ ତା'ର ପୁନରାବୃତ୍ତି କରିବ ତା' ସହପାଠିନୀ ଆଗରେ—ଯେ ତୋ ପାଇଁ ଯେଉଁ ବିଶିଷ୍ଟ ଚକୋଲେଟ୍ ଆଣୁଥିଲେ ଆମ ଭାଇ, ତା'ର ଅବସ୍ଥା କ'ଣ ହେଲା ଦେଖ୍ । କିନ୍ତୁ ସେ, ମୁଁ ପରୁଆ କରି ନାହିଁ । ଜାଣିଗ୍ଭଏ ରସବୋଧ ଥିଲେ ସେ ମ୍ଯା'କୁ ଜୋକ୍ ବୋଲି ଭାବିବ । ଭାବିବା ଉଚିତ । ତା' ଛଡ଼ା ଆଉ କିଛି ଉପାୟ ଅଛି କି ଏଇ ସଂସାରର ଅଲୀକତା, ତା'ର ଅବ୍‌ସର୍ଡ୍‌ପଣକୁ ଜିତିବା ପାଇଁ ?

କିନ୍ତୁ କ୍ରମଶଃ ସେ ଲକ୍ଷ୍ୟ କଲା ବୁଲ୍‌ବୁଲ୍‌କୁ, ତାକୁ ଇକନମିକ୍‌ସ୍ ପାଠ ବୁଝେଇବା କ୍ରମରେ, ଯେ ଝିଅ କେମିତି ଗୋଟାଏ ଅଜବ୍ ଚ୍ଛାଣିରେ ଗ୍ଭହୁଁଛି ତା' ଆଡ଼କୁ ନୂଆ ଦେଖିଲା ପରି । ଏବଂ ଚପଲତାର ଭାବ ଦେଖାଉ ନାହିଁ ଆଗ ଭଳି । କ'ଣ ହେଲା ? ହଠାତ୍ ଏମିତି ସିରିୟସ୍ କାହିଁକି ? କ'ଣ ବିଗିଡ଼ିଗଲା ତୋର ? ନା ମୋର କିଛି ଅବଗୁଣ ତୋ ଆଖିରେ ପଡ଼ିଲା, ଯାହାକୁ ତୁ ସହଜ ଭାବରେ ଗ୍ରହଣ କରିପାରୁ ନାହୁଁ ? କିନ୍ତୁ ତାରୁ ତାକୁ ପଗ୍ଭରିବାକୁ ସାହସ କଲା ନାହିଁ ।

ହେଲେ ସେ ମିତାକୁ ପଗ୍ଭରିଲା ଦିନେ । ନ ପଗ୍ଭରି ରହି ପାରିଲା ନାହିଁ ଏବଂ ସେଇ ତା'ର ରହସ୍ୟ ଉନ୍ମୋଚନ କଲା । ମୁରୁକିହସାଟିଏ ଦେଇ କହିଲା— "କହିବି ତାରୁଭାଇ, କହିବି ? କିଛି ଖରାପ ଭାବିବ ନାହିଁ ତ ?"

"ଗୋ ଆହେଡ଼୍ ।"

"ମୋର ମନେ ହେଉଛି, ଏକ୍ସ୍‌କ୍ୟୁଜ୍ ମି, ସେ ଯେ ତମ ପ୍ରେମ୍‌ରେ ପଡ଼ିଛି ।"

"ହ୍ୱାଟ୍ ? ତୋ ମୁଣ୍ଡ ଖରାପ ?

"ନାଇଁ ତାରୁଭାଇ, ଯେଉଁଦିନଠୁଁ ମୁଁ ତାକୁ ଶୁଣେଇଲି ତମର ଚକୋଲେଟ୍ ଗପ—କିଛି ଭୁଲ୍ କରିଛି କି ? ତମେ ତ କହି ନ ଥିଲ ତାକୁ ସିକ୍ରେଟ୍ ରଖିବା ପାଇଁ—ସେଇଦିନଠୁଁ ତା'ର ଏଇ ପରିବର୍ତ୍ତନ ଦେଖୁଛି । ଆଉ କେତେଥର ମୋତେ କହିଲାଣି ତମ କଥା ପଡ଼ିଲାରୁ, ଯେ ତମେ ଆଜକାଲିକାର ଶିକ୍ଷିତ ଯୁବକମାନଙ୍କ ପରି ନୁହଁ । ଅନେକ ଭିନ୍ନ ସେମାନଙ୍କଠାରୁ । କୋମଳ ଭାବରେ କୁଢ଼୍‌ବୁଢ଼୍, ସମ୍ବେଦନାରେ ସରିଯାଇଛି । ନହେଲେ କ'ଣ ଗୋଟିଏ ପରେ ଗୋଟିଏ ଚକୋଲେଟ୍ ବଢ଼େଇ ଦେଇଥାଆନ୍ତା ଗୋଟାଏ ଭିକାରି ଆଡ଼କୁ, ଯାହାକୁ ତମେ ଆଣିଥିଲ ତମ ତରୁଣୀର ସାଙ୍ଗକୁ ଖୁସି କରିବା ପାଇଁ ? ଏବଂ ସେଠି ଠିଆହୋଇ ତା'ର ତୃପ୍ତିକୁ ଉପଭୋଗ କରିଥାଆନ୍ତ ? ଏବଂ ମୋର ଧାରଣା ଦୃଢ଼ୀଭୂତ ହେଲା, ଯେତେବେଳେ ସେ ବାଆଁରେଇ ହୋଇ ପଗ୍ଭରିଲା ତମର ବାହାଘର ଲଗିଛି କି ନାହିଁ···।"

ତାରୁ ସ୍ତବ୍ଧ ହେଲା । ଭାବିଲା—ପ୍ରକୃତରେ ତା' ନୁହେଁ କି ? ନିଜକୁ ନିଊନ ବୋଲି ମଣିବା ମୋର ଗୋଟିଏ ବଦଭ୍ୟାସ । ମୁଁ ମହାନ୍ ନ ହୋଇପାରେ, କିନ୍ତୁ ମୁଁ ପ୍ରକୃତରେ ଭିନ୍ନ ନୁହେଁ କି ମୋର ସମବୟସୀ ବନ୍ଧୁମାନଙ୍କଠାରୁ ? ବୁଢ଼ାଟା ଉପରେ ଯେତେ ରାଗିଲେ ବି ମୋତେ କ'ଣ ପ୍ରକୃତରେ ଖୁସି ଲାଗିଲା ନାହିଁ ତା'ର ଚକୋଲେଟ୍‌ଖିଆ ଉଲ୍ଲାସକୁ ଦେଖି ?

ତାରୁର ବାକ୍‌ଶୂନ୍ୟ ହାବଭାବରୁ ମିତା କ'ଣ ବୁଝିଲା କେଜାଣି ତାକୁ ପଗ୍ଭରିଲା ପରିହାସ ଛଳରେ—

"ତା'ହେଲେ କ'ଣ କହୁଛ ତାରୁଭାଇ, ସେମାନଙ୍କୁ କହିବି କି ପ୍ରସ୍ତାବଟା ପକେଇବା ପାଇଁ ?"

"ମଲା, କହନୁ, କିଏ ମନା କରୁଛି ତୋତେ ?" ତାରୁ ତା'ର ଉତ୍ତର ଦେଲା ଅନୁରୂପ ଭଙ୍ଗୀରେ । କିନ୍ତୁ ଆଶା କଲା ଯେ ବୁଦ୍ଧିମତୀ ତା'ର ମର୍ମ ବୁଝିବ ଏବଂ କରିବ ଯାହା କରିବା କଥା ।

# ଭିନ୍ନ ସ୍ୱାଦୁ

ଏଇ ତାରୁ ଚରିତ୍ରଟିର ଭବିଷ୍ୟତ ବିଷୟରେ କ'ଣ ମନେ ହେଉଛି ଆପଣଙ୍କର ? ସେ କ'ଣ ସତରେ କେଉଁ ଭିନ୍ନ ଅପରୂପ ରାଜ୍ୟକୁ ଲମ୍ଫ ଦେଇ ପାରିବ ବୁଲ୍‌ବୁଲ୍‌କୁ ବାହା ହୋଇ ? କେଜାଣି । ବୁଲ୍‌ବୁଲ୍‌କୁ ବାହା ନହୋଇ ଆଉ କାହାକୁ, ମାନେ ମୀରା ମହାପାତ୍ର, ରାଣୀ ମହାନ୍ତି, ସବ୍‌ନମ୍ ଅଥବା କଳ୍ପନାରେ କୁଣ୍ଢେଇ ଧରି ନଥିବା ଆଉ କାହାକୁ ବାହାହେଲେ ଯେ ଶ୍ରେୟସ୍କର ହୁଅନ୍ତା, ମୁଁ ସେକଥା କହୁନାହିଁ । ତା'ର ବୁଦ୍ଧି-ବିଭ୍ରାଟରେ ଭୁଲ୍ ହୋଇଗଲା, ତା' ନୁହେଁ । ମୋର ମନେହୁଏ ଯେ ତାରୁ ସେଇମାନଙ୍କ ଭିତରୁ ଜଣେ, ଯେଉଁମାନେ କଳ୍ପନାରେ ଘୋଡ଼ା ଚଢ଼ନ୍ତି, କେଜାଣି କେତେ ଦିଗ୍‌ବିଜୟ କରି ଆସନ୍ତି, ଏକାଧିକ ରାଜକୁମାରୀଙ୍କୁ ଆଲିଙ୍ଗନ କରନ୍ତି, ହେଲେ କାର୍ଯ୍ୟତଃ ଫେଲ୍ ମାରନ୍ତି । ତା' ବୋଲି ସେମାନେ କ'ଣ ହାରିଯାଆନ୍ତି ନା କଅଣ ? କଳ୍ପନାର ଚତୁରଙ୍ଗ ପୁଣି କେତେ ରଙ୍ଗ ଦେଖାଏ, କେଉଁ ନୂଆ ସ୍ୱାଦୁର ଆନନ୍ଦ ପାଇବା ପାଇଁ । କଳ୍ପନା କ'ଣ କେବେହେଲେ ହାରିଯାଇ ପାରେ ମଣିଷର ଯେକୌଣସି ପରିସ୍ଥିତିରେ ? ଅବା ତା'ର ଯେକୌଣସି ବୟସରେ ?

ମୋର ଏମିତି ଭାବିବାର କାରଣ ଏହିପ୍ରକାର :

ବାରୁ, ଯଦି ଭାବିଲୁ ଯେ ଏଇ କେତେଜଣ ଝିଅଙ୍କୁ ଭଲ ପାଇ ହେବ, ଏବଂ ସେଇମାନେ ତୋର ହାତ ଧରି ନେଇଯିବେ ନାନା ଅଭିନବ ରାଜ୍ୟର ଅନୁଭବ ଆଡ଼କୁ, ତା'ହେଲେ ପ୍ରଥମେ ତୋ ଅନୁମାନର ସତମିଛକୁ ପରଖିବା ଉଚିତ ନଥିଲା କି ? ମାନେ ଜଣ ଜଣ କରି ତାଙ୍କ ସାଙ୍ଗରେ ମିଳାମିଶା କଲୁ ନାହିଁ, ସେ ଦେଶରେ ଯେମିତି 'ଡେଟ୍' କରନ୍ତି ? କାଁ ଭାଁ । ଭେଟ ହୋଇଛି ସେମାନଙ୍କ ସାଙ୍ଗରେ (କେବଳ ବୁଲବୁଲ୍ ଛଡ଼ା

ଯାହାକୁ ପାଠ ପଢ଼େଇବାକୁ ହୁଏ ମଝିରେ ମଝିରେ), ହେଲେ ସେଇଥିରେ ତୁ ଗୋଟାଏ ଭିତ୍ତିଭୂମି ତିଆରି କରି ନେଲୁ ତାଙ୍କୁ ଲଭ୍ କରିବା ପାଇଁ, ଯେଉଁଥିରେ ତୋର ଭିନ୍ନ ସ୍ୱାଦୁଗତ ମୌଳିକ ଉଦ୍ଦେଶ୍ୟ ସାଧିତ ହୋଇପାରିବ ? ଆଉ ସେଇଠୁଁ କଲୁ କ'ଣ ନା, ମନେ ମନେ ତାଙ୍କୁ କୁଣ୍ଢେଇ ଧରିଲୁ ତୋ ନିରୋଳା ଟୁଙ୍ଗି ଘର ଭିତରେ, ତାଙ୍କ ସ୍ୱଭାବ ଚରିତ୍ରକୁ କଳି ତାଙ୍କର ଭିତରୁ କାହାକୁ ହେଲେ ବାଛିବା ପାଇଁ ? ଏହେତୁ ମୋର ମନେହୁଏ ଯେ ଏଇ ତାରୁଟି ବାସ୍ତବରେ ମୁହଁଗେଲ୍ଲି, ଲାଜକୁଳା; କହିବାକୁ ଗଲେ ଭୀରୁ । ତେଣୁ ଯେଉଁ ଆଡ୍‌ଭେଞ୍ଚରର ମନୋବୃତ୍ତି ରହିଛି ତା'ର ମାନସିକତାରେ, ଯେ ନୂଆ କିଛି କରିବ, ନୂଆ କିଛି ଦେଖିବ, ନୂଆ କିଛି ପାଇବ, ଇତ୍ୟାଦି, ସେଥିପାଇଁ ଯେଉଁ ଝାଲନାଲ ବୁହାଇବା ଆବଶ୍ୟକ, ହୁଏତ ବିପଦ ବରଣ କରିବାକୁ ପଡ଼ିପାରେ, ଯଦି ସେଇ ଅଭିନବତ୍ୱ କେଉଁ ଅପହୁଞ୍ଚ ଏଭରେଷ୍ଟ୍ ହୋଇଥାଏ, ତାହା ବୋଧହୁଏ କେବଳ ସେଇ ମନରେ ହିଁ ନାଚକୁଦ କରିବାକୁ ଭଲପାଏ । ମାନେ ସେଇଠି ଅଳସେଇ ଯାଏ । ସତେକି ସେଇ ହେଉଛି ଆଡ୍‌ଭେଞ୍ଚରର ପହିଲି ଓ ଶେଷ କଥା !

ଯଦିବା ସେ ଏଇ କାଳ୍ପନିକ ଆଶ୍ଳେଷ ବିଳାସକୁହିଁ ପ୍ରାଧାନ୍ୟ ଦେବାକୁ ଚାହିଁଲି, ତା'ହେଲେ ସେ କହିବ ଯାହା ତା'ର କରିବା କଥା, ସେ କ'ଣ ପ୍ରକୃତରେ ମାନିନେଇ ପାରିଲି ତହିଁରୁ ଉଦ୍‌ଭୂତ ଅନୁଭବର ସୂଚନା କି ଇଙ୍ଗିତ ? ସବୁଠୁଁ ସୁଖ ମିଳିଲି ତାକୁ ସବ୍‌ନମ୍‌କୁ କୁଣ୍ଢେଇ ଧରିବାରେ, କାରଣ ତା'ର ରୂପଗୁଣହିଁ ତାକୁ ସବୁଠାରୁ ବେଶୀ ଆକୃଷ୍ଟ କରିଥିଲି । ଝିଅଟି ନିଜେହିଁ ଗୋଟିଏ ଭିନ୍ନ ସ୍ୱାଦୁର ପ୍ରତୀକ ବୋଲି ତା'ର ମନକୁ ଆସିଥିଲି । ଅଥଚ ତାକୁ ବାହାହେଲେ ସେ ତା'ର ପରିବାର ଓ ଭାଇବନ୍ଧୁ କୁଟୁମ୍ବଙ୍କଠାରୁ ବିଚ୍ଛିନ୍ନ ହୋଇଯାଇପାରେ, ଏଇ ଆଶଙ୍କା ତାକୁ ବିଚଳିତ କଲି ଏବଂ ସେ ଅବିଳମ୍ବେ ମୁକୁଳି ଆସିଲି ସେଇ ଆଶ୍ଳେଷରୁ, ଦୀର୍ଘ ନିଃଶ୍ୱାସଟିଏ ପକାଇ । ଏବଂ ଶେଷକୁ ସେ ଫାଜିଲ୍ ସାନ ଭଉଣୀ ବୋଲି ମନେ ହେଉଥିବା ବୁଲ୍‌ବୁଲ୍‌କୁହିଁ କାହିଁକି ବାଛିଲି, ତା'ର କାରଣ ମୋତେ ଜଳଜଳ ହୋଇ ଦିଶିଯାଉଛି ।

ଅଜଣାପଣର ଗହନରେ ପଶି ସେଥିର ଭଲମନ୍ଦ ଠଉରେଇବାର କ୍ଳେଶ ତାକୁ ସୁହାଇଲା ନାହିଁ । ତା'ଠୁଁ ଭଲ ଏଇ ଜଣାଶୁଣା ଝିଅ ସାଙ୍ଗରେ ଘର କରିବା । ଭିନ୍ନ ସ୍ୱାଦର ଯେତେକ କାମନା-ବାସନା ତା'ରି ଦ୍ୱାରା ପୂରଣ ହୋଇ ପାରିବ, ଏଇ ଆଶାରେ । ମୁଁ କ'ଣ ଭୁଲ କହିଲି ?

ଏବଂ ମଜା କଥା ହେଉଛି ଯେ ବୁଲବୁଲ୍‌କୁ ବାହା ହେବାର ବ୍ୟଗ୍ରର ଗୋଟାଏ ସତସତିକା ଇଚ୍ଛାରେ ପରିଣତ ହେଲା ଯେଉଁ କାରଣରୁ, ସେଥିରେ ଭିନ୍ନ ସ୍ୱାଦ ପ୍ରବଣତା ନଥିଲା ବୋଲି କହିଲେ ଚଳେ । ସେଥିରେ ଥିଲା ଗୋଟାଏ ଅପ୍ରତ୍ୟାଶିତ ଭାବମୂର୍ତ୍ତିକୁ ଲାଭ କରିବାର ଲୋଭ, ଯାହା ବୁଲ୍‌ବୁଲ୍ ଆଣି ପହଞ୍ଚେଇ ଦେଇଥିଲା ତା' ପାଖରେ, ଭଉଣୀ ମିତା ଜରିଆରେ । କଅଣ ନା ସେ ଦମ୍ଭରେ ବଗଲାତ ହୋଇ ଗୋଟାଏ ଭିଖାରି ମୁହଁରେ ଗୋଟାକ ପରେ ଗୋଟାଏ ଚକୋଲେଟ୍ ମାଡ଼ିଦେଇ ଗଲା, ପୁଣି ଭଉଣୀର ସାଙ୍ଗ ପାଇଁ ଆଣିଥିବା ଚକୋଲେଟ୍, ଏହା ଏକ ଅସାମାନ୍ୟ ଭିନ୍ନ ମଣିଷର ପରିଚୟ ଦିଏ । ତାକୁ କେମିତି ଭଲା ଏଇ ଭିନ୍ନତାର ଗୌରବକୁ ହାତଛଡ଼ା କରିବାକୁ ଚାହିଁଥାଆନ୍ତା ?

ମୋଟାମୋଟି ମୋର ଧାରଣାଠାରୁ ଗୋଟିଏ ପ୍ରକୃଷ୍ଟ ରୋମାଣ୍ଟିକ୍ ଶ୍ରେଣୀର ଜୀବ । ସେହିମାନଙ୍କ ଭିତରୁ ଜଣେ, ଯେଉଁମାନଙ୍କର ବିଭିନ୍ନ ଭିନ୍ନ ସ୍ୱାଦର ଲୋଭ ଗୋଟିଏ ସୂତ୍ରରେ ବନ୍ଧା ହୋଇଥାଏ—ଭଲପାଇବାର କେଉଁ ଏକ ଅପୂର୍ବ ଅନୁଭବର କାମନା । ଏବଂ ଏହିମାନେହିଁ କଳ୍ପନାକୁ ଅତି ମାତ୍ରାରେ ଅଶ୍ରମ୍ଭ କରିଥାଆନ୍ତି, ତାଙ୍କର ସାଧ ମେଣ୍ଟାଇବା ଲାଗି । କାରଣ ଜୀବନର ବାସ୍ତବ ଅନୁଭୂତିରେ ତାଙ୍କର ପେଟ ପୂରେ ନାହିଁ କେବେହେଲେ । ସେମାନେ ତାଙ୍କ ସ୍ନେହମୟୀ ବୋଉମାନଙ୍କୁ 'ଲଭ୍'ର ତତ୍ତ୍ୱ ବୁଝେଇ ପାରନ୍ତି, ଉଦାର ବାପା-ମାନଙ୍କ ସାଙ୍ଗରେ ତୁମୁଳ ତର୍କ କରିପାରନ୍ତି ଦେଶର ରାଜନୀତି କି ଅର୍ଥନୀତିକୁ ନେଇ, କିନ୍ତୁ ସେମାନେ ବାସ୍ତବ ଲଢ଼େଇର ପକ୍ଷପାତୀ ନୁହନ୍ତି, ଯେଉଁଥିରେ ଲହୁଲୁହାଣ ହେବାର ସମ୍ଭାବନା ଅଛି ଏବଂ ସେମାନେ ପ୍ରକୃତରେ ସଂବେଦନଶୀଳ, ଭିତରୁ

ଅଧିକ । ତେଣୁ ବିରକ୍ତ ହେଲେ ମଧ୍ୟ ସେମାନେ ଆଉ କାହାର ବାସ୍ତବ, ତେଣୁ ଅଶ୍ଳୀଳ ଦୁଃଖକୁ ଆଦୌ ସହ୍ୟ କରିପାରନ୍ତି ନାହିଁ । ତାକୁ ଦୂର କରିବା ଲାଗି ଉଚ୍ଛନ୍ନ ହୋଇ ଉଠନ୍ତି, ଏପରିକି ପ୍ରେମାସ୍ପଦା ପାଇଁ ଉର୍ଦ୍ଦିଷ୍ଟ ଚକୋଲେଟ୍ ବିନମସ୍ତରେ ।

ପ୍ରେମ ଲାଗି ଆତୁର ହେଉଥିବା ତମଭଳିଆ ଗୋଟିଏ ଲୋକକୁ କିଏ ଭଲ ଭଲ ନପାଇ ରହିପାରିବ କହିଲ, ଭାରୁବାବୁ ? ହଉ, ଭଗବାନ୍ କରନ୍ତୁ, ତମେ ଓ ବୁଲ୍‌ବୁଲ୍‌ଙ୍କ ଭିତରେ ଆସି ପହଞ୍ଚିଥିବା ଭଲପାଇବା ସବୁମତେ ସାର୍ଥକ ହେଉ, ତମେ ଦିହେଁ ବୁଢ଼ାବୁଢ଼ୀ ହେବାଯାଏଁ । ଏବଂ ସେଇ ଭଲପାଇବା ଜରିଆରେ ତମେ ଭିନ୍ନ ସ୍ୱାଦର ଅନୁଭବୀ ହୁଅ । କିନ୍ତୁ ସାବଧାନ—ସେଇ ଦାମ୍ପତ୍ୟ ଶେଷ ଓ ଗୃହକାନ୍ତର ସୀମା ଭିତରେ ଥାଉ ।



# ଦୟନୀୟ ଦୁଃଖ

ବିଫଳ ନିର୍ବୋଧ ମଣିଷମାନଙ୍କୁ ଲୋକେ ଭଲ ପାଆନ୍ତି ବୋଲି କହିବା ହୁଏତ ଭୁଲ୍ ହେବ, କାରଣ ସେଥିରେ ଗଣି ଗଣି ଦୟାଥାଏ । କିନ୍ତୁ କାଣିଚାଏ ଭଲପାଇବା ଥାଏ ତ ? ଏହି ତଥ୍ୟଟି ପ୍ରତିପାଦିତ ହୋଇ ଆସିଛି ପୃଥିବୀର ଯେତେ ରୋମାଣ୍ଟିକ୍ କାବ୍ୟକବିତା ଏବଂ କଥାକାହାଣୀରେ । 'ଆହା, ବିଚରା !' କହିବା ସାଙ୍ଗକୁ ମନଟା ଚାଲିଯାଏ ତାଙ୍କ ଆଡ଼କୁ । ଯେମିତିକି ମନଟା ଦୂରେଇ ହୋଇ-ଯାଏ ଚତୁର ଓ ସଫଳ ଲୋକମାନଙ୍କଠାରୁ, ଯଦିଓ ସେମାନେ କାହାର କିଛି ଅନିଷ୍ଟ କରିଥିବେ ବୋଲି ନିଶ୍ଚିତରେ କୁହାଯାଇ ନପାରେ ।

ଏହେତୁ ମୁଁ ଯଦି ସଫଳ ରାମବାବୁମାନଙ୍କୁ ସମ୍ମାନସୂଚକ ନମସ୍କାରଟାଏ ପକେଇ ବିଫଳ ଗୋପାଲବାବୁମାନଙ୍କୁ ସ୍ନେହମିଶା ଦୟା (ଅଥବା ଦୟାମିଶା ସ୍ନେହ) ଦେଖାଏ, ତା' ହେଲେ କିଏ କହିବ ମୁଁ ଗୋଟାଏ ନୂଆ କାମ କରୁଛି ବୋଲି ? ଖୁବ୍ ବେଶୀ ହେଲେ କହିବ ଯେ ମୁଁ ରୋମାଣ୍ଟିକ୍ ଦଳରେ ଗଣା । ଧନ୍ୟବାଦ । ସେଥିକୁ ମୋର ଆପତ୍ତି ନାହିଁ କିନ୍ତୁ ମୋର ସମସ୍ୟା ହେଉଛି ମୋର ଜଣେ ସମବୟସ୍କ ଅର୍ଥାତ୍ ବୁଢ଼ା ବାଲ୍ୟବନ୍ଧୁକୁ ନେଇ, ଯେ ଗୋପାଲବାବୁଙ୍କ ଶ୍ରେଣୀରେ ପଡ଼ିବ ଏବଂ ଯାହାକୁ ମୁଁ ସେହି ପ୍ରକାର ଭଲପାଏ, ଅବଶ୍ୟ ଭଲପାଏ, ହେଲେ ମୁଁ ତା'ଠାରୁ ଦୂରେଇ ଯିବାକୁ ଚାହୁଁଛି । କାରଣ ତା'ର ସଦ୍ୟତମ ଦୁଃଖ ଏଭଳି ଅଯୌକ୍ତିକ ଓ ପରସ୍ପରବିରୋଧୀ, ଯେ ଏଥର ତାକୁ ପରସ୍ତେ ଗାଳି ଦେବା ଉଚିତ, ସୁନେଲି ଦୟା ଦେଖାଇବା ଦୂରର କଥା । କିଓ, ପ୍ରତ୍ୟେକ ଦୁଃଖର କିଛି ଗୋଟାଏ କାରଣ ଥିବା ଦରକାର ତ, ଅନ୍ତତଃ ତୁମ ନିଜର ମାପକାଠି ଅନୁଯାୟୀ ? କିନ୍ତୁ ସେ ଯେଉଁ ପ୍ରକାର ଦୁଃଖରେ ଭାଙ୍ଗି ପଡ଼ୁଛି ଏବେ, ତା' ମୁହଁରେ ହସ ଟିକେ ନାହିଁ, ତାହା ଏମିତି ଆବ୍‌ସର୍ଡ୍ ଯେ ମୋତେ ଲାଗୁଛି ତା' ରଙ୍ଗଢଙ୍ଗ ଦେଖି । କିନ୍ତୁ ଲାଜକଥା ଯେ ଯେତେ ରାଗିଲେ ବି ବୁଢ଼ାର ମୁହଁଟାକୁ ଦେଖିଲେ ଅତୀତର ସେଇ ଶିଶୁକୁ ଦେଖିଲା ପରି ମନେ ହେଉଛି, ମନେ ହେଉଛି ମୁଁ ବି ଗୋଟାଏ ଶିଶୁ, ଏବଂ ଆମ ଦି'ଜଣଙ୍କର ଏକାଠି ମିଶି ଭେଁ ଭେଁ ହୋଇ କାନ୍ଦିବା ଦରକାର !

ନାଃ ! ମୁଁ ଠିକ୍ କରିଛି ଯେ ମୁଁ ଆଉ ତା' ପାଖ ମାଡ଼ିବ ନାହିଁ । ଏଇ ସହର ଛାଡ଼ି ଦେବ । ଆଉ କେଉଁଠି ପ୍ରାକ୍ଟିସ୍ କରିବ । କିଛି ଲାଗାପଦା ନାହିଁ

ମୋର ଏଠି । ମୋ ପିଲାମାନେ ବାହାରେ ଅଛନ୍ତି, ସୁଖରେ ଅଛନ୍ତି । ବଡ଼ଲୋକ ନ ହେଲେ ବି ମୋର ଅବସ୍ଥା ଖରାପ ନୁହେଁ । ଯେଉଁଠି ହେଲେ ଆମେ ଦୁଇ ପ୍ରାଣୀ ବେଶ୍ ଚଳିଯିବୁ, ଆମର ସଞ୍ଚିତ ଧନ ଏବଂ ମୋର ଯତ୍‌ସାମାନ୍ୟ ଡାକ୍ତରି ପ୍ରାକ୍‌ଟିସ୍‌କୁ ନେଇ । ତା' ହେଲେ ମୁଁ ସକାଳସନ୍ଧ୍ୟା କାହିଁକି ଦେଖୁଥିବି ସେଇ ବୋକାମୁହାଁ ଦୁଃଖୀଟାକୁ, ଯେ ଏଭଳି ଯନ୍ତ୍ରଣା ଦେଉଛି ମୋତେ ? ମୋର ସୁସ୍ଥ ସ୍ୱଭାବଚରିତ୍ରକୁ ବି ବଦଳେଇବାକୁ ବସିଛି ?

କିନ୍ତୁ ତା' ଆଗରୁ ଏଇ କଥାଟିକୁ କହୁଛି ଶୁଣନ୍ତୁ, ତା' ବିଷୟରେ । ଇଏ ମୋର ସଫେଇ ନୁହେଁ । ମୁଁ କୋଉ ଦୋଷ କରିଛି ଯେ ମୋତେ ସଫେଇ ଦେବାକୁ ପଡ଼ିବ ? ମୁଁ ମଧ୍ୟ କହୁନାହିଁ ତା' ପ୍ରତି ଦୟା କି ସ୍ନେହ ଦେଖାଇବା ଲାଗି । ବରଂ ମୁଁ ଜଣାଇବାକୁ ଚାହେଁ ତା'ର ଦୁଃଖଟା କେତେ ଆବ୍‌ସର୍ଡ୍ କେତେ ଦୟନୀୟ । ତା' ଉପରୁ ଆପଣ ହସନ୍ତୁ ନର୍ମାଲ୍ ମଣିଷଙ୍କ ପରି, ରାଗନ୍ତୁ, ଅଥବା କାନ୍ଦିଲା ପରି ରାଗନ୍ତୁ କେଉଁ ଏକ ଦୁର୍ବଳ ମୁହୂର୍ତ୍ତରେ, ମୋର ଯେଉଁ ଦଶା ହେଉଛି ଆଜିକାଲି ।

ଆମେ ପିଲାଦିନର ସାଙ୍ଗ । କିନ୍ତୁ ସାଙ୍ଗ ହେବା ପୂର୍ବରୁ ସେ କେବଳ ମୋର ଅନ୍ୟତମ ସହପାଠୀ ଥିଲା । ତାକୁ ଜାଣିଥିଲି ଗୋଟିଏ ଗୋଲ୍‌ଗାଲିଆ ମୋଟା ହିସାବରେ ଯେ ପ୍ରତ୍ୟେକ ସାର୍‌ଙ୍କ ପ୍ରତ୍ୟେକ ଜୋକ୍, ତଥା ପ୍ରତ୍ୟେକ ସହପାଠୀର ଯାବତୀୟ ରସରସିଆ ଗାଲୁଗପକୁ ଉପଭୋଗ କରେ, ଏବଂ ସଶବ୍ଦରେ ହସି ଉଠେ । ସେଇଠୁଁ ଆମ ଦୃଷ୍ଟି ତା' ଆଡ଼କୁ ଯାଏ, କାରଣ ତା' ହସର ଶବ୍ଦ ଗୋଟାଏ ଆନନ୍ଦର ହାବୁକା ବୋଲି ମନେ ହୁଏ । ଯାହାକି ନୈସର୍ଗିକ । ଏବଂ ଯାହା ତମକୁ କହେଇ ଦିଏ···ଧନ୍ୟବାଦ, ଧନ୍ୟବାଦ, ମୋର ଏଇ ସୁନ୍ଦର ସଂସାରର ସାଥୀମାନେ । କିନ୍ତୁ ସେ ନିଜେ କୌଣସି ରସରସିଆ କଥା ଶୁଣେଇଛି ବୋଲି ମୋର ମନେ ପଡ଼ୁ ନାହିଁ । ସତେକି ସେ ସେଥିରେ ଅପାରଗ, ଅର୍ଥାତ୍ ସ୍ୱାର୍ଥପର, କାରଣ ସେ ସାନ ପିଲାଟାଏ । କେବଳ ନେବାକୁ ଆସିଛି, ଦେବାକୁ ନୁହେଁ ।

ତା'ର ଏହିପ୍ରକାର ଚେହେରା ଓ ଚାଲିଚଳଣିକୁ ନେଇ ସେ କେମିତି ଭଲ ମୋର ସାଙ୍ଗ ହୋଇ ପାରିଥାଆନ୍ତା ?

କିନ୍ତୁ ଗୋଟାଏ ଘଟଣାକୁ ନେଇ ମୋର ହଠାତ୍ ଗୋଟାଏ ସାଥୀଭାବ ଉପୁଜିଲା ତା' ପ୍ରତି । ମନେହେଲା ମୁଁ ତା'ର ଏଇ ମାଡ଼ଖିଆ ଦୃଶ୍ୟ ଦେଖି ପାରିବି ନାହିଁ । ମୁଁ ଧାଇଁଗଲି ସ୍କୁଲ ପଛରେ ଥିବା ବାଲିଡ଼ିପ ଆଡ଼କୁ, ଯେଉଁଠି ସେ ନିର୍ଘାତ୍ ମାଡ଼ ଖାଉଥିଲା କ୍ଲାସ୍‌ର ବଳୁଆ ପିଲା ପ୍ରଜାପତି ପଣ୍ଡା ପାଖରୁ । "କ'ଣ ହେଲା ?

କ'ଣ ହେଲା ? କାହିଁକି ତାକୁ ପିଟି ଚାଲିଛୁ ସେମିତି ?'', ମୁଁ ପଚାରିଲି ତାକୁ। ଉତ୍ତରରେ ସେ ଦାନ୍ତ ଦେଖେଇ କହିଲା ହେଁ ହେଁ ହୋଇ, "ତୋର କ'ଣ ଗଲା ବେ ? ଆମେ ଯୁଦ୍ଧ କରୁଛୁ, ଯୁଦ୍ଧ। ଓ୍ୱାର୍ ! ଆଉ ସିଏ ହାରି ଯାଇଛି ।'' ବିଜୟର ଉଲ୍ଲାସ ଫୁଟି ଉଠୁଥିଲା ତା'ର ଲୁଗୁଡ଼ିଆ ବସନ୍ତମୁହାଁ ଚେହେରାରେ, ତା' ସାନ ଆଖିର ମୁନିଆଁ ଚାହାଣିରେ ।

ସେଇଠୁଁ ଆମ ଧର୍ମଶାସ୍ତ୍ରୀ ଭଗିଆ (ତା' ନାଆଁ ଭଗବାନ୍—ଠିକଣା ନାଆଁ ଟିଏ ନୁହେଁ ?) କହୁଛି, "ନାହିଁ, ନାହିଁ, ଶୁଣ । ଆମର ବାଜି ପଡ଼ିଗଲା ଗୋଟାଏ ଜିନିଷ ନେଇ । ସେଇଠୁ ଆମେ ଯୁଦ୍ଧ କଲୁ । କଥା ଥିଲା ଯେ ଯିଏ ଜିତିବ, ତା'କୁଇ ମିଳିବ···''

"ଷ୍ଟପ୍ ! ଆଉ ପଦେ ଯଦି ତୋ ପାଟିରୁ କିଛି ବାହାରେ ନା''—ପଣ୍ଡା ତାକୁ ଧମକେଇଲା ।

ହଉ, ହଉ, ମୁଁ କିଛି କହିବି ନାହିଁ ସେକଥା । କିନ୍ତୁ ମୁଁ ପ୍ରକୃତରେ ଜିତି ଯାଇଥିଲି, ମୁଁ ସତ କହୁଛି । ମୁଁ ଯେତେବେଳେ ତା' ହାତକୁ ମୋଡ଼ି ଦେଲି ତା' ପଛ ପାଖକୁ ନେଇ, ସେ 'ଗୁଡ଼େ, ଗୁଡ଼େ' ବୋଲି ପାଟି କରି ଉଠିଲା । ଆଉ କହିଲା, ହଉ ମୁଁ ହାରିଗଲି । କିନ୍ତୁ ମୁଁ ତାକୁ ଯେମିତି ଛାଡ଼ି ଦେଇଛି ନା, ସେ ମୋତେ ମାଡ଼ି ବସିଲା, ମୁଁ ସତ କହୁଛି···

ମୁଁ କଟମଟ କରି ଅନେଇଲି ପଣ୍ଡା ଆଡ଼କୁ । କିନ୍ତୁ ସେ ହସୁଛି ସେମିତି, ବେହିଆଙ୍କ ପରି । ଆଉ କହିଲା—'ହଁ, ସେ ସତ କହୁଛି । କିନ୍ତୁ ଅଲ୍ ଇଜ୍ ଫେୟାର୍ ଇନ୍ ଲଭ୍ ଏଣ୍ଡ୍ ଓ୍ୱାର୍ । ମନେ ନାହିଁ ନକୁଳ ସାର୍ କ'ଣ କହୁଥିଲେ ସେଦିନ ? ତାକୁ ଟିକିଏ ବୁଝେଇ ଦେ' ତା'ର ଅର୍ଥ···''

କିନ୍ତୁ ମୁଁ ନା ତାକୁ ବୁଝେଇବାକୁ ଗଲି, ନା ପଣ୍ଡା ସାଙ୍ଗରେ ଲଢ଼େଇ କଲି । ସବ୍‌ସେ ଚୁପ୍ ଭଲା । ମାନେ କୌଣସି ଗଣ୍ଡଗୋଳ ଭିତରକୁ ଯାଆ ନାହିଁ, ବିରୁଡ଼ି ଗାତରେ ହାତ ଦିଅ ନାହିଁ, ଯଦି ସେଥିରେ ଟାଣୁଆ ସ୍ୱାର୍ଥ ନାହିଁ ତମର । ଯାହାକି ମୋ ସଫଳ ଜୀବନର ମୂଳମନ୍ତ୍ର ହୋଇ ଆସିଛି ବୋଲି କହିଲେ ଚଳେ । ହେଲେ ମୁଁ ଯେତେବେଳେ ଭଗିକୁ ଉଠେଇ ଆଣିଲି ବାଲିଗଦା ଉପରୁ, ଆଉ ସେ ଅସହାୟ କ୍ରୋଧରେ ପ୍ରତିବାଦ କରି ଚାଲିଥାଏ—"ନା, ଇଏ ଫେୟାର୍ ନୁହେଁ ! ଯୁଦ୍ଧରେ ବି କ'ଣ କିଛି ବାଗବାଇଶ ନାହିଁ ? ଆଉ ହାରିଗଲି ବୋଲି କହିଲା ପରେ ବି ସେ ପୁଣି ମାଡ଼ି ଆସିବ ମୋ ଉପରକୁ, ମୋ ହାତ ଛଡ଼େଇ ନେଲାରୁ ?'' ଇତ୍ୟାଦି, ମୋ ମନଟା କରୁଣାରେ ଭରିଗଲା ତା' ପାଇଁ । କାରଣ ଯୁଦ୍ଧରେ କ'ଣ ଫେୟାର୍ କି ଅନ୍‌ଫେୟାର୍ ଭଗବାନ୍ ଜାଣନ୍ତି (ବଡ ହେଲାରୁ

ବୁଝିଲି ଯେ ହଁ, ଭଗବାନ୍ ଜାଣନ୍ତି, ଅନ୍ତତଃ ମହାଭାରତର କୃଷ୍ଣ), କିନ୍ତୁ ଏଇ ଭଗବାନ୍‌ଙ୍କ ଅଯଥାରେ ମାଡ଼ ଖାଇଲା । କାହିଁକିନା ସେ ଊଣାଅଧିକେ ବୋକା । ବିଚରା !

ସେଇ ପଦକରେ ମିଶିଗଲା ଟିକିଏ ସ୍ନେହ, ଟିକିଏ ଭଲପାଇବା । ସତେକି ନିର୍ବୋଧ ମାନେହିଁ ନିର୍ଦ୍ଦୋଷ, ସେ କିଛି ଦୋଷ କରୁ ବା ନକରୁ । ମୁଁ ମୋ ହାତ ବଢ଼େଇ ଦେଲି ତା'ଆଡକୁ ଆଉ କହିଲି—ଆ ମୋ ସାଙ୍ଗରେ ।

"କୁଆଡ଼େ ?"

"ଦାମ ଗୁଡ଼ିଆ ଦୋକାନକୁ । ସିଙ୍ଗଡ଼ା ଛଣା ହେଉଥିବ ଏଇକ୍ଷଣି । ଗରମାଗରମ୍ ।"

ମାଡ଼ୁଆ ଫିକ୍‌କିନି ହସି ଦେଲା, ତା'ର ସମସ୍ତ ଦୁଃଖ ଲିଭି ଯାଇଥିଲା ପରି । ମୋତେ ଟିକିଏ ଆଶ୍ଚର୍ଯ୍ୟ ଲଗିଲା, କିନ୍ତୁ ପରେ ପରେ ବୁଝିପାରିଲି ଯେ ଏଇ ବି ବାଳୁତପଣର ଅନ୍ୟତମ ଲକ୍ଷଣ ।

ଗୋଟାଏ କଥା ରହିଗଲା ରହସ୍ୟ ସେଦିନ । କୋଉ ଜିନିଷ ପାଇଁ ବାଜି ପଡ଼ିଗଲା ସେ ଦି' ଜଣଙ୍କର ? ପଣ୍ଡା କାହିଁକି ତାକୁ ଏମିତି ଦବେଇ ଦେଲା, କାଳେ ତା' ପାଟିରୁ କିଛି ବାହାରିଯିବ ବୋଲି ? ଏବଂ ବିଜେତାକୁ କ'ଣ ମିଳିବାର ଥିଲା, ଯେଉଁଥିପାଇଁ ଏଇ ମହାଭାରତର ସୃଷ୍ଟି ହେଲା ?

ପଣ୍ଡାର ଆଶଙ୍କା ଅମୂଳକ ଥିଲା ! ଭଗି କେବେହେଲେ ରହସ୍ୟଟାକୁ ଫିଟେଇ ଦେଇ ନ ଥା'ନ୍ତା । ଆଜିଯାଏ ମଧ୍ୟ ଫିଟେଇ ନାହିଁ ମୋ ଆଗରେ । କାହିଁକିନା ସେମାନେ କଥା ଦେଇଥିଲେ ପରସ୍ପରକୁ ଯେ ଜିନିଷଟା କ'ଣ ବୋଲି କେହି ଯେମିତି ନ ଜାଣନ୍ତି ତାଙ୍କ ଛଡ଼ା । ଯାହା ମୁଁ ପରେ ବୁଝିଲି ପଣ୍ଡାଠାରୁ । ଏବଂ ସେଇ କହିଲା ମୋତେ, ବାହାଦୁରୀ ଦେଖେଇ—

"କେଇଟା ସିଙ୍ଗଡ଼ା ତାକୁ ଖୋଇଲୁ ସେଦିନ ? ହ୍ୟାପ୍ ବୁଡ଼୍‌ବକ୍ । ସିଙ୍ଗଡ଼ାହିଁ ତା'ର କପାଳରେ ଅଛି । କୋଉ ବୁଦ୍ଧିରେ ଭାବିଥିଲା ତାକୁ ଆଉ କିଛି ମିଳିଯିବ ବୋଲି ?"

ମୋର ବିମୂଢ଼ତାକୁ ଉପଭୋଗ କଲା ପରି ସେ ମାଛି ପଦୁଟିଏ କହିଲା ରହସ୍ୟର ଉନ୍ମୋଚନ କରି । ସତେକି ଯଥେଷ୍ଟ, ବିସ୍ଫୋରଣ ପାଇଁ । ଯେଉଁଥିରେ ମୋ ଭଳି ଇତରସାଧାରଣ ଲୋକମାନେ ବିଧ୍ୱସ୍ତ ହୋଇଯିବେ, ଏବଂ ତା' ବିଜୟୀର ମହିମା ଝଲି ଉଠିବ ଦପ୍‌ଦପ୍ ହୋଇ । କହିଲା—

"ସୁନ୍ଦରୀ"

ମୁଁ ଯଥାସାମାନ୍ୟ ବିସ୍ମିତ ହେଲେ ମଧ୍ୟ ବିଧ୍ୱସ୍ତ ହେଲିନାହିଁ । କାରଣ ମୁଁ ପ୍ରଜାପତି ପଣ୍ଡାଙ୍କୁ ଜାଣେ । ସେ କେମିତି କଥାକଥାକେ ନିଜର ବଡ଼େଇ କରେ । କ'ଣଟା ମିଳିଗଲା ତାଙ୍କୁ ? ମୁଁ କେବେହେଲେ ବିଶ୍ୱାସ କରି ନାହିଁ ଯେ ସହପାଠିନୀ ସୁଭଦ୍ରା (ଆମ ଭାଷାରେ 'ସୁନ୍ଦରୀ') ହାତରୁ କୌଣସି ବିଶେଷ ପୁରସ୍କାର ମିଳିଗଲା ତାଙ୍କୁ । ଯେତେବେଳେ ଖଣ୍ଡାମି ! ହୁଏତ ତା' ହାତକୁ କୋଉ ବହି କି ନୋଟ୍‌କଥା ବଢ଼େଇ ଦେବାର ଅଗ୍ରାଧିକାର, କିମ୍ବା ସେମିତି କିଛି ପିଲାଳିଆ ବାଜି ପଡ଼ିଥିଲା ତାଙ୍କ ଭିତରେ । ଆଉ କ'ଣଟା ହୋଇଥିବ ? ଯାହାହେଉ ବାହାପିଆ ପଣ୍ଡାର ଜିତାପଟକୁ ତୁଚ୍ଛ କରିଦେବା ସଙ୍ଗେ ସଙ୍ଗେ ମୋ ମନରେ ଆସିଲା ଯେ ଭଗିକୁ ଅନ୍ୟାୟରେ ହରେଇ ଦିଆ ହୋଇଛି । କିନ୍ତୁ ହତଭାଗା ଏତେ ଶୀଘ୍ର ତା' ପରିଭବକୁ ଭୁଲିଗଲା କେମିତି ମ ? ଦାମର ଗରମାଗରମ୍ ସିଙ୍ଗଡ଼ା କ'ଣ ଏତେ ବେଶୀ ଉପାଦେୟ ସୁନ୍ଦରୀଠାରୁ ?

ହଉ, ଏକା ମାଘକେ ଶୀତ ଯାଏ ନାହିଁ । ମୁଁ ପ୍ରାର୍ଥନା କଲି ତା' ପାଇଁ, ଯେ ଏଣିକି ତାକୁ ଜିତେଇ ଦିଅ ପ୍ରଭୁ । ଯେତିକି ସେ ଜିତିବ ତା' ଜୀବନରେ, ମୁଁ ସେତିକି ଖୁସି ହେବି, ଏବଂ ହାରିଲେ ଦୁଃଖ କରିବି । ଏହାହିଁ ଭଲ ପାଇବା ।

କ୍ରମଶଃ ମୋର ମନେହେଲା ଯେ, 'ଭଗବାନ୍ ଦାସକୁ 'ମୁଁ ଭଲ ପାଏ', ଏଇ ସଚେତନତାହିଁ ମୋତେ ସୁଖ ଆଣି ଦେଉଛି । ନିଜକୁ ବାହାବା କରିପାରିବାର ସୁଖ । ସତେକି ତାକୁ ଭଲ ପାଇବା ହେତୁ କିଛି ଗୋଟାଏ ଅଧିକା ଭଲପଣ ଯୋଡ଼ି ହୋଇଯାଉଛି ମୋ ଚରିତ୍ରରେ, କିମ୍ବା କେଉଁ ପ୍ରଚ୍ଛନ୍ନ ଅପୂରଣ ଦୂର ହୋଇ ଯାଉଛି ।

ମୁଁ ଉପରେ ପଡ଼ି ତା'ର ସାଙ୍ଗ ହେଲି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସ୍ୱଭାବତଃ ସେ ମଧ୍ୟ ମୋ ସାଙ୍ଗରେ ବେଶୀ ଗପିବାକୁ ଓ ଖେଳବୁଲ କରିବାକୁ ଚାହିଁଲା । ଏବଂ ମୁଁ ତା' ଘରକୁ ଯାଇ ତାଙ୍କ ପରିବାର ସାଙ୍ଗରେ ମିଶିବାର ସୁଯୋଗ ପାଇଲି । ଯେତେକ 'ଧର୍ମକଥା' ଶୁଣିଲି ତା'ର ଅମିନ ବାପାଙ୍କଠାରୁ, ଓ ବିବିଧ ପିଠାପଣାର ସଦ୍‌ବ୍ୟବହାର କଲି ତା' ମାଆଙ୍କର ସ୍ନେହଶ୍ରଦ୍ଧା ଟାଳି ଦେଇ ନପାରି ।

ଏବଂ ଆହୁରି ଅଧିକ ଅବଗତ ହେଲି ଭଗିର ନାନାଦି ଦୈନନ୍ଦିନ ଦୁଃଖ ବିଷୟରେ ।

ଯଥା ତା'ର ସାନ ଭାଇମାନେ କେମିତି ତା'ର ନାନା ନିଜସ୍ୱ ବସ୍ତୁ ଉପରେ ଚଢ଼ାଉ କରୁଛନ୍ତି । କିଏ ତା'ର ପ୍ରିୟ ନଈ-ପାହାଡ଼ ସିନେରି ଛବି ଖଣ୍ଡିକ ନେଇ-ଗଲାଣି, କହୁଛି କ'ଣ ନା ଇଏ ମୋର ଭୂଗୋଳ ପାଇଁ ଦରକାର, ତ କିଏ ତା' ବ୍ୟାଡ଼ମିଣ୍ଟନ୍ ରାକେଟ୍‌ରେ ଖେଳି ତାକୁ ଛିଣ୍ଡେଇ ସାରିଲଣି, ଯେହେତୁ ତା' ପାଇଁ

ନୂଆ ପ୍ରକେଟ୍ କେହି କିଣି ଦେଇ ନାହାନ୍ତି । ଏବଂ ଭଉଣୀଟା ତ ତା'ର କୌଣସି ଲଜେନ୍ସ କି ଚକୋଲେଟ୍ ବାକି ରଖେ ନାହିଁ ! ହେଲେ ତାକୁ ସବୁଠାରୁ ବାଧେ ବାପାଙ୍କର ଅନ୍ୟାୟ । କ'ଣ ନା ଭଗିଆ ବଡ଼ଭାଇ । ତେଣୁ ତା'ର ଏଇସବୁ ଗ୍ରେଟ-ମୋଟ ଜିନଷ ଛାଡ଼ି ଦେବା ଉଚିତ ସାନମାନଙ୍କ ପାଇଁ । ତା' ମାନେ ମୁଁ କ'ଣ କେବେହେଲେ କିଛି ମୋର ନିଜର ବୋଲି କହିପାରିବି ନାହିଁ, ଯଦି ସାନମାନେ ତାକୁ ଜିଦ କରନ୍ତି ନେବା ପାଇଁ, ଯେକୌଣସି କାରଣରୁ ?

ତେବେ ମୁଁ ଛିପି ରଖେ ଯେ ନ୍ୟାୟ-ଅନ୍ୟାୟର ଏଭଳି ଗୋଟାଏ ବକ୍ତବ୍ୟ ଛାଡ଼ି ନେବାପରେ ସେ ତା' ଦୁଃଖକୁ 'ହଉ, ଏଥର ତୁମେ ଯାଇପାର' ବୋଲି ବିଦାୟ ଦିଏ । ଏବଂ ହସେ, ଖେଳେ, ଓ ନାନାଦି ଫେଚ୍କାମି ମଧ୍ୟ କରେ ଆମ ସମସ୍ତଙ୍କ ପରି । ସେଇଠୁଁ ମୋର ମନେ ପଡ଼ିଯାଏ "ସୁନ୍ଦରୀ ଓ ସିଙ୍ଗନା" ଉପାଖ୍ୟାନ । ହଁ, ଦୁଷ୍ଟାମି କରିବାରେ ପ୍ରଭେଦ କେବଳ ଏତିକି ତା'ର ଏବଂ ଆମ ଭିତରେ, ଯେ ଯେତେବେଳେ ମାଷ୍ଟର ପଚାରନ୍ତି, କିଏ ଏଇ ଖରାପ କାମ କରିଛି, ଯଥା କ୍ୟାଲେଣ୍ଡରର ରମଣୀର ମୁହଁରେ ନିଶଟିଏ ଆଙ୍କି ଦେଇଛି, ସେ ଆମମାନଙ୍କ ପରି ମୁଣ୍ଡ ହଲାଏ ନାହିଁ ଦୃଢ଼ ପ୍ରତିବାଦର ଭଙ୍ଗୀରେ । ଅପରନ୍ତୁ ମୁଣ୍ଡ ତଳକୁ କରେ । ଅର୍ଥାତ୍ ମୁଁ ଏବଂ ମୋର ସାଙ୍ଗମାନେ ଏଇ କୁକର୍ମ ପାଇଁ ଦାୟୀ । ଆମକୁ ଦଣ୍ଡ ଦିଅ ।

କିନ୍ତୁ ମଜା କଥା ହେଉଛି ଯେ ତାକୁ ବାଧେ ଦୋଷୀକୁ ଠିକଣା ଦଣ୍ଡ ଦିଆଗଲେ । କହିଲି—ବାପାଙ୍କର ଏମିତି ମାରିବା ଉଚିତ ନଥିଲା ନିଶଅଙ୍କୁ । ତା' ପିଠିରେ ଦାଗ ବସି ଯାଇଥିବ । ଅବଶ୍ୟ ସେ ମୋ ଫାଉଣ୍ଟେନ୍‌ପେନ୍‌କୁ ଚୋରି କରି ଥିଲା, ମିଛ ମଧ୍ୟ କହିଛି କିନ୍ତୁ ତାକୁ ପରନ୍ତେ ଗାଳି ଦେଇଥିଲେ ଚଳି ନଥାଆନ୍ତା ? ଅର୍ଥାତ୍ ଦୋଷୀର ଦଣ୍ଡ ପାଇବା ଉଚିତ, କିନ୍ତୁ ତା' ପିଠିରେ ଦାଗ ନ ପଡ଼ୁ, ତା' ମନରେ ବିଶେଷ କଷ୍ଟ ନହେଉ ମନେ ରହିଲା ଭଳି । ସହଜେ ମୋତେ ହସ ମାଡ଼େ ···ଏଇ ତୋର ଲଜିକ୍ ?

ଆଜି ମଧ୍ୟ ମୋତେ ହସ ମାଡ଼ିବା କଥା । କାରଣ ଯଦିଓ ଏତେଦିନକେ ସେ ସତଅଠକା ମୁହଁ ଶୁଖାଇଛି ତା' ବୁଢ଼ା ବୟସରେ, ମରଣାନ୍ତକ ମାଡ଼ ଖାଇଲା ପରି, ସେଥିରେ ଲଜିକ୍ ନାହିଁ । ମୋଟେ ନାହିଁ । ଏଥିରେ ବି ଦୁଃଖ, ସେଥିରେ ବି ଦୁଃଖ, ପଇସାର ଆଗ ପଛ ଉଭୟ ସମାନ, ଯେଉଁଟା ଚିତ୍ ହୋଇ ପଡ଼ିଲେ ବି ତମେ ହାରିଲ—ଏଥିରେ କିଛି ମାନେ ଅଛି ? କିନ୍ତୁ ମୁଁ କଥାଟାକୁ ହସି ଉଡ଼େଇ ଦେଇ ପାରୁ ନାହିଁ । ଖାଲି ଇଚ୍ଛା ହେଉଛି ତା'ଠୁଁ ଗୁଟିପିଟି ପଳେଇ ଯିବା ପାଇଁ···

ଶୁଣନ୍ତୁ, ଆଗେ ଆମ ଟୋକାଦିନର କଥାଗୁଡ଼ାକ ସାରିଦିଏ । କ୍ରମଶଃ ଆମେ ଦହେଁ ମାଟ୍ରିକ୍ ପାସ୍ କଲୁ । ତା'ର ଫାଷ୍ଟ ଡିଭିଜନ, ମୋର ସେକେଣ୍ଡ୍ ଡିଭିଜନ ।

କିନ୍ତୁ ମୋର ଭଲେ ହେଲେ ଈର୍ଷାଭାବ ଆସି ନଥିଲା ତା'ପ୍ରତି । ଅପରନ୍ତୁ ମୋତେ ଖାଲି ଖୁସି ଲାଗିଲା ଯେ ସେ କେବଳ ଫାଷ୍ଟ ଡିଭିଜନ ପାଇ ନାହିଁ, ୟୁନିଭର୍ସିଟିରେ ପଞ୍ଚମ ସ୍ଥାନ ପାଇଛି । ମୁଁ ତାକୁ କୁଣ୍ଢେଇ ପକେଇଲି । ମନେ ମନେ କହିଲି— ଏଥର ତୋର ପଥ ସୁଗମ ହୋଇଗଲା, ଘୋଡ଼ାର ଉପରେ ସବାର୍ ହେବା ପାଇଁ । ଏଥର ଆଉ ଚିନ୍ତା କଅଣ ?

ଇଣ୍ଟରମିଡ଼ିଏଟ୍‌ରେ ଆମେ କଟକରେ ପଢ଼ିଲୁ, ଏକା କଲେଜ୍‌ରେ । ଏଣିକି ତା' 'ଦୁଃଖ' ସବୁ କବିତାରେ ଫୁଟି ଉଠିଲା ବିଶେଷତଃ ପ୍ରେମକୁ ନେଇ ନାନା ପାଇବା-ନପାଇବାର ଦୁଃଖ । ହେଲେ ସେ ତା'ର କୌଣସି କବିତାକୁ ଛପେଇଲା ନାହିଁ । କହିଲା—ସବୁ ପାଠକ କ'ଣ ମୋର ମନକଥା ବୁଝି ପାରିବେ ତୋ ପରି ? ଆଉ ମୂଲ୍ୟ ଦେବେ ମୋ କବିତାର ? ଯଥାକ୍ରମେ ମୋର ମନେ ହେଲା ଯେ ଦିନେ ମୁଁ ଯିନା ଉପରେ ପଢ଼ି ତା'ର ହାଙ୍ଗ ହୋଇଥିଲି, ଏଣିକି ସେଇ ଲାଗି ରହିବାକୁ ବସିଛି ମୋ ସାଙ୍ଗରେ ତା' ଦୁଃଖ, ତା' କବିତା, ଇତ୍ୟାଦି ଇତ୍ୟାଦି ସମେତ । କିରେ, ତୁ ତ ଏତେ ବଡ଼ ସ୍କଲାର୍ ହେଲୁଣି, କୋଉଠି ବୋଲି କୋଉଠି ପହଞ୍ଚିବୁ ପାଇଁ । ଏଣିକି ଏଇ ପୁରୁଣା ପିଲାଦିନ ସାଙ୍ଗର ଦରକାର କ'ଣ, ତୋ'ର କୋଉ ମିଛିମିଛିକା ଦୁଃଖରେ ଖବର ନେବ ଆଉ ତୋତେ ନେଇଯିବ କୋଉ ଯେ ଦାମ୍ ଗୁଡ଼ିଆ ଦୋକାନକୁ ?

କିନ୍ତୁ ତା' ହେଲା ନାହିଁ । ହୁଏତ ଆମେ ଗୁଏଁ ଗୁଏଁ ଦୂରେଇ ଦେଇଥା'ନ୍ତୁ । କାରଣ ମୁଁ ପାଟଣାକୁ ଆସିଲି ମେଡ଼ିକାଲ୍ ପଢ଼ିବା ପାଇଁ, ଆଉ ସେ କଟକ କଲେଜ୍‌ରୁ ବି. ଏ. ପାସ୍ କଲା, ଇଂରେଜୀ ଅନର୍ସରେ ଫାଷ୍ଟ କ୍ଲାସ୍ ଫାଷ୍ଟ ହୋଇ । କିନ୍ତୁ ମାସକୁ ଅନ୍ତତଃ ଥରେ ଖଣ୍ଡେ ଚିଠି ଲେଖୁଥିଲା ମୋ ପାଖକୁ ଏବଂ ବେଳେ ବେଳେ ସଂଲଗ୍ନ କବିତାଟିଏ । କହୁଥିଲା ମ୍ୟା'କୁ ପଢ଼ିବୁ ଆଉ ପଢ଼ିସାରି ଚିରି ଦେବୁ । ଏଥିରେ ମଣିଷ କ'ଣ କରିବ କୁହ !

ସେତିକିରେ ସରିଲା ନାହିଁ । ବି. ଏ. ପରେ ସେ ବି ପାଟଣାକୁ ଆସିଲା ଏମ୍. ଏ. ପଢ଼ିବା ପାଇଁ । କୁଆଡ଼େ ପାଟଣା କଲେଜ୍‌ରେ ଯେଉଁ ପ୍ରଫେସର ଭାର୍ଗବ ଅଛନ୍ତି ଇଂରାଜୀ ଡିପାର୍ଟମେଣ୍ଟ୍‌ରେ, ସେ ବି କବିତା ଲେଖନ୍ତି । ଇଂରେଜୀରେ ଏବଂ ଏମିତିକା କବିତା ଯେ ତା'ର ମନେହୁଏ ଯେ ସେ ତା'ର ମନକଥାଗୁଡ଼ାକ ଓଟାରି ନେଇଛନ୍ତି । ସେଇଥିପାଇଁ ସେ ତା' ବାପାଙ୍କ ସାଙ୍ଗରେ ଲାଗିଗଲା ଏଇଠିକି ଆସି ପାଠ ପଢ଼ିବ ବୋଲି । ଏମିତିକା ବେହେଲ କଥା ଶୁଣିଥିଲ କେବେ ? ଯାହାହେଉ ତା' ବାପା ଆପତ୍ତି କରି ପାରିଲେ ନାହିଁ, କାରଣ ତାଙ୍କ ହାତରୁ ବିଶେଷ କିଛି ପଡ଼ୁଲା ନାହିଁ, ତ୍ରିଶିକୁ ମିଳୁଥିବା ସ୍କଲାରସିପ୍ ଯୋଗୁଁ ।

ଅଗତ୍ୟା ଆମ ବନ୍ଧୁତ୍ୱ ପୁଣି ଜମିଗଲା । ମୋର ସାଧ୍ୟ ନଥିଲା ନିଜକୁ ଦୂରେଇ ନେବା ପାଇଁ ଏବଂ ମୋତେ ପୁଣି ଗ୍ରହଣ କରିବାକୁ ପଡ଼ିଲା ତା'ର ନିତ୍ୟନୂତନ ଦୁଃଖର କାହାଣୀ, ଯାହା ସେମିତି ଆସେ-ଯାଏ, ଏବଂ ଆମେ ଯଥାଶୀଘ୍ର ତା'ର ଉଦ୍‌ଯାପନ କରୁ 'ପିଣ୍ଟୁ' ଦୋକାନର ମୋଗଲାଇ ପରଟାରେ । ଗୁଣାତ୍ମକ ଦୃଷ୍ଟିରୁ ଦାମଗୁଡ଼ିଆର ସିଙ୍ଗଡ଼ା ଓ ପିଣ୍ଟୁର ମୋଗଲାଇ ଭିତରେ କୌଣସି ପ୍ରଭେଦ ଥିଲା ବୋଲି ମୋର ମନେ ହେଉନଥିଲା ।

କିନ୍ତୁ ଦିନେ ସେ ଗୋଟାଏ ଭାବଗତ ଗଭୀର ଦୁଃଖର ସମ୍ବାଦ ଶୁଣାଇଲା ମୋତେ । ଗଙ୍ଗା ନଈ କୂଳରେ । ସ୍ପଷ୍ଟ ଭାବରେ ଦିଶିଯାଉଛି ତା'ର ଜଳଗମ୍ଭୀର ମୁହଁ, ଗଙ୍ଗାର ଗୋଳିଆ ପାଣି ଆଡ଼କୁ ଅନେଇ ରହି । ସେଇଠୁଁ ସେ କହୁଛି, ତା'ର ଦୃଷ୍ଟି ନ ଫେରାଇ—

'ବାପା ଚିଠି ଲେଖିଛନ୍ତି ମୋ ପାଖକୁ । ମୋ ବାହାଘର ରାୟ ବାହାଦୁର ବିକାଶ ଚୌଧୁରୀଙ୍କ ଝିଅ ରୂପା ସାଙ୍ଗରେ ହେବ । ଯଦିଓ ମୁଁ ତାଙ୍କୁ (ମାନେ ବୋଉକୁ) କେବେଠୁଁ ଜଣେଇ ଦେଇ ସାରିଛି, ଯେ ମୁଁ ଆମ ହାଇସ୍କୁଲର ପଦନମାଆର ଝିଅ ସୁଲିକୁ ଭଲପାଏ, ଏବଂ ତାକୁଇ ବାହା ହେବାକୁ ଚାହେଁ । ବାପାବୋଉ ମୋ କଥାଟାକୁ ଗ୍ରାହ୍ୟ ବି କଲେ ନାହିଁ ? ହେଲା ଏବେ ସେମାନେ ଗରିବ କି ଶ୍ରେଷ୍ଠଜାତି କି ଆଉ ଯାହା, ସେ ବିଷୟରେ ଟିକିଏ ତର୍କ କରିବାକୁ ବି ସୁଯୋଗ ଦେଲେ ନାହିଁ ମୋତେ । ତା'ହେଲେ ମୁଁ ତାକୁ ନିଶ୍ଚୟ ମଙ୍ଗେଇ ନେଇ ପାରିଥାନ୍ତି···ଏଇଟା ଅନ୍ୟାୟ ! ନିହାତି ଅନ୍ୟାୟ !!'

ସେ କହିଚାଲିଛି ସେମିତି ପାଣିକୁ ଅନେଇ । ଯେତେବେଳେ ସେ ଗଙ୍ଗାକୁହିଁ କହୁଛି ଯେ ଏତେ ମହାନ୍ ଏତେ ପବିତ୍ର ହୋଇ ତା'ର ଏତେ ଗୋଳିଆ ଦିଶିବାଟା ନିହାତି ଅନ୍ୟାୟ !

ମୋତେ ସମୟ ଲଗିଲା ନାହିଁ ମୋର ବନ୍ଧୁତ୍ୱ ଜାହିର୍ କରିବା ଲାଗି । ସେକ୍‌ଠୋକ୍ ପରାମର୍ଶ ବୋଲି—

'ଆରେ, ତୁ ସିଧାସଳଖ ଲେଖି ଦେଉନୁ' ଯେ କ୍ଷମା କରନ୍ତୁ ବାପା, ମୁଁ ସେଠି ବାହା ହୋଇ ପାରିବି ନାହିଁ, କାରଣ ମୁଁ ସୁଲିକୁ ବାହା ହେବାକୁ ଚାହେଁ, ଯାହା ମୁଁ କେବେଠୁଁ ଜଣେଇ ଦେଇଛି । ତୁ କ'ଣ ପିଲା ହୋଇଛୁ ଯେ ବାପାବୋଉ ଯାହା କହିବେ, ତୁ ତାକୁ ମାନିନେବାକୁ ବାଧ୍ୟ ?'

ସେଇଠୁଁ ସେ ଅନେଇଲା ମୋ ମୁହଁକୁ । ଏବଂ କହିଲା ଅତମତ ହୋଇ, 'ତା' ନୁହେଁ ଯେ···କିନ୍ତୁ କଷ୍ଟ ହେବ ସେମାନଙ୍କ ମନରେ । ତୁ ଜାଣି ନାହୁଁ ମୋ

ବାପାବୋଉଙ୍କୁ । 'ହଉ, ତୋ'ର ଯାହା ଇଚ୍ଛା' ବୋଲି କହିବେ, କିନ୍ତୁ ନିହାତି କଷ୍ଟ ହେବ ତାଙ୍କ ମନରେ । ଏକ୍‌ଦମ୍ ଭାଙ୍ଗି ପଡ଼ିବେ…'

ମରି ତା' ହେଲେ ! ମୋର ପାଟି କରି ଉଠିବାକୁ ଇଚ୍ଛା ହେଲା ତା' ଉପରେ । ମାଡ଼ୁଆ କ'ଣ ଆଉ ଗଛରେ ଫଳନ୍ତି ? ଘୋର ଅନ୍ୟାୟକୁ ସହିଯିବୁ, କାରଣ ନିହାତି କଷ୍ଟ ହେବ ସେମାନଙ୍କ ମନରେ, ତା'ର ପ୍ରତିରୋଧ କଲେ । ଏଭଳି ଦୁଃଖୀର ଦୁଃଖକୁ କୋଉ ବ୍ରହ୍ମା ବି ଘୁଞ୍ଚେଇ ପାରିବ ନାହିଁ । ମୁଁ ତ ଗ୍ଲାନିର ସାଗରଟାଏ !

ଯାହାହେଉ କହିବା ବାହୁଲ୍ୟ ଯେ ସେ ତା' ବାପାବୋଉଙ୍କ ମନରେ କଷ୍ଟ ଦେଇ ନାହିଁ । ଏବଂ ଏଭଳି ଦୃଢ଼ତାର ସହିତ ସେ ଅତୀତର ସ୍ମୃତିକୁ ବର୍ଜନ କରି ରୂପାକୁହିଁ ଭଲପାଇବ ବୋଲି ପଣ କରିଥିଲା, ଯେ ଚଉଠି ରାତିରେ ସେ ରୂପାକୁ କହିଲା ତା'ର ଅତୀତ ପ୍ରେମର କାହାଣୀ, ଯାହାକୁ ସେ ପୁରାପୁରି ମୂଳପୋଛ କରିଦେଇଛି । କୁଆଡ଼େ ରୂପାଠାରୁ କୌଣସି ଉତ୍ତର ମିଳି ନଥିଲା । ହେଲେ ସେ ଖୁସି ଯେ ତା'ର ମନଟା ସାଫ୍ ହୋଇ ଯାଇଛି । କହିଲା—ଅତୀତ ଉପରେ ତ ଭବିଷ୍ୟତ ଠିଆହୋଇଛି ? ତେଣୁ ଭଗବାନ ଦାସର କ'ଣ ଉଚିତ ନୁହେଁ ତା'ର ଇତିହାସକୁ ଫିଟେଇ ଖୋଲି ଦେବା ତା'ର ନବପରିଣୀତା ଆଗରେ, ଯାହାକୁ ସେ ତା'ର ଜୀବନର ସାଥୀ ବୋଲି ବରି ନେଇଛି ? କିଛି ଲୁଚେଇ ରଖିବାଟା ନିହାତି ଅନ୍ୟାୟ ହୋଇ ନଥାଆନ୍ତା ?

ମୋତେ ଯେତେବେଳେ ସେ ଶୁଣେଇଲା ତା' ଦାମ୍ପତ୍ୟ ପ୍ରେମର ପହିଲି କାହାଣୀଟିକୁ ମୁଁ ବି ଚୁପ୍ ରହିଲି ରୂପା ପରି କିନ୍ତୁ ମୋ ମନରେ ଆସୁଥିଲା ଯେ ରୂପା କ'ଣ ତା' ସ୍ୱାମୀକୁ କେବଳ ଗୋଟିଏ ମହାମୂର୍ଖ ବୋଲି ଭାବୁଥିବ, ଯାହା ମୁଁ ଭାବୁଛି ? ମୂଳରୁ ତା' ମନଟା କଣ ଫିଡ଼ିକି ଯାଇ ନଥିବ ତା' ସ୍ୱାମୀଠାରୁ, ଯେ ସେ ତାକୁ ଗୋଟାଏ ସେକେଣ୍ଡ୍-ହ୍ୟାଣ୍ଡ୍ ପ୍ରେମର ଭେଟି ଦେବାକୁ ଆସିଛି ? ନା ନା, ରୂପବତୀ ରୂପା ମଧ୍ୟ ଉଚ୍ଚଶିକ୍ଷିତା ବୋଲି ଶୁଣିଛି । ତେଣୁ ସେ କ'ଣ ଯଥାର୍ଥରେ ବୁଦ୍ଧିମତୀ ହୋଇ ନଥିବ ? ବୁଝିପାରି ନଥିବ ଯେ ତା'ର ସ୍ୱାମୀଟି ନିର୍ବୋଧ ହୋଇଥିଲେ ମଧ୍ୟ ତା'ର ପ୍ରେମରେ ମଳାଧୂଳି ନାହିଁ ? ଅପରନ୍ତୁ ସେ ଗୋଟିଏ ଉଚ୍ଚଧରଣର ପ୍ରେମିକ ବୋଲି କହିବାକୁ ହେବ ?

ପ୍ରାୟ ପାଞ୍ଚ ବର୍ଷ ପରେ ଯାଇ ବୁଝିଲି ଯେ ସେ ପ୍ରକୃତରେ ବୁଦ୍ଧିମତୀ, କିନ୍ତୁ ଭିନ୍ନ ଭାବରେ । ସେତେବେଳକୁ ଭଗବାନ୍ ସର୍ବଭାରତୀୟ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଇଣ୍ଡିଆନ୍ ରେଭିନିଉ ସର୍ଭିସରେ ଯୋଗ ଦେଲାଣି, ଏବଂ ଦିଲ୍ଲୀରେ ଅଛି କୋଉଁ ଟ୍ରେନିଙ୍ଗ୍ ନେବା ପାଇଁ ଏବଂ ମୁଁ ମଧ୍ୟ ଦିଲ୍ଲୀରେ ଅଛି । ପାଥୋଲଜିରେ

ପୋଷ୍ଟ-ଗ୍ରାଜୁଏଟ୍ କରୁଛୁ ଅଲ୍‌ଇଣ୍ଡିଆ ମେଡ଼ିକାଲ୍ ଇନ୍‌ଷ୍ଟିଚ୍ୟୁଟ୍‌ରେ । ଅବଶ୍ୟ ତା' ପୂର୍ବରୁ ମୋର ଅନେକ ଥର ଦେଖା ହେଲଣି ରୂପା ଭାଉଜଙ୍କ ସାଙ୍ଗରେ, ଏବଂ ଭାଉଜ ହିସାବରେ ମୁଁ ତାଙ୍କୁ ବେଶ୍ ଭଲ ପାଇ ସାରିଲଣି । କାରଣ କେବଳ ରୂପ ନୁହେଁ, ଚେହେରାର ରଙ୍ଗ ଓ ମାପଚୁପ୍ ନୁହେଁ, ସେଥିର ପ୍ରକାଶଭଙ୍ଗୀ—ଵନ୍ଦୁଲ ହସ, କଥାଗୁରୁଗ୍ର, ଆତିଥ୍ୟପରାୟଣତା, ସବୁ ପ୍ରକାରର ଆଲାପରେ ଯୋଗ ଦେଇ ପାରିବାର ବ୍ୟାପକ (ହୁଏତ ହାଲୁକା) ଜ୍ଞାନ, ଇତ୍ୟାଦି ଯୋଗୁଁ ସେ ମୋର ଜଣେ ଫେଭରିଟ୍ ବନ୍ଧୁପତ୍ନୀ ଓରଫ୍ ଭାଉଜ ହୋଇ ସାରିଥିଲେ । ତାଙ୍କ ବୁଦ୍ଧିର ଉତ୍କର୍ଷ ବିଷୟରେ ମୋର ଆଦୌ ସନ୍ଦେହ ନଥିଲା । କିନ୍ତୁ ଦିଲ୍ଲୀରେ ହିଁ ବୁଝିଲି ସେଇ ବୁଦ୍ଧିର କରାମତି କେତେ ।

ଗୋଟିଏ ନର୍ଦ୍ଦୋଷ ନିରାମିଷ ଭଲ ପାଇବା ଭିତରେ ଆମିଷର ବାସ୍ନା କେମିତି କୁଆଡ଼ୁ ଆସି ପହୁଞ୍ଚିଯାଏ, ତା'ର ସମୀକ୍ଷା କରି ସେଥିପାଇଁ କିଏ ବେଶି ପରିମାଣରେ ଦାୟୀ ବୋଲି କହିହେବ କି ? ତେଣୁ ମୁଁ କଦାପି କହିବି ନାହିଁ, ଯେ ରୂପା ଭାଉଜଙ୍କ ଯୋଗୁଁ ଏଇଆ ହେଲା କି ନହେଲା । କିନ୍ତୁ ମାନିବାକୁ ପଡ଼ିବ ଯେ ଯେଉଁ ଆକର୍ଷଣ ଗଢ଼ି ଉଠିଥିଲା ଆମ ଭିତରେ, ତାହା ଘନୀଭୂତ ହୋଇଗଲା ଦିଲ୍ଲୀର ରହଣି ବେଳେ । କାରଣ ଆମ ମିଳାମିଶା ସ୍ୱଭାବତଃ ବଢ଼ି ଯାଇଥିଲା, ଏବଂ ଆମେ ଦୀର୍ଘ ସମୟ ଯାଏ ଏକାଠି ଏବଂ ଏକୁଟିଆ ରହୁଥିଲୁ ତାଙ୍କର ଗୋଲ୍‌ମାର୍କେଟ୍ ଉପରେ ଥିବା ଭଡ଼ାଘରର ନିରୋଳା ଡ୍ରଇଂରୁମ୍‌ରେ । ନିଷ୍ଠାପର ଭଗବାନ୍ ତା'ର ଟାଇମ୍ କାର୍ଯ୍ୟନିର୍ଘଣ୍ଟକୁ ଛାଡ଼ି ଆମ ସହିତ ଯୋଗ ଦେଇ ପାରୁ ନଥିଲା । ତେଣୁ ଆମେ ନିର୍ବାଧରେ ଦି'ଜଣିଆ ହସଖୁସି ହେଉଥିଲୁ, କହିବାକୁ ଗଲେ ଦିଅର ଭାଉଜ ରଙ୍ଗରସ ହେଉଥିଲୁ । ଆଧୁନିକ, ଅର୍ଥାତ୍ ନିଃସଂକୋଚ କିନ୍ତୁ ସୁରୁଚିକ୍ଷଣ ଭାଷା ଓ ଭାବଭଙ୍ଗୀ ଦ୍ୱାରା ।

ସେଦିନ ଝିପିରି ଝିପିରି ବର୍ଷା ହେଉଥିଲା । ରୂପା ଚୌଧୁରୀ ସୋଫା ଉପରେ ଲମ୍ବି ଯାଇଥିଲେ । ମୁଁ ବସିଥିଲି ପାଖ ଚଉକିରେ । ତାଙ୍କ ମୁହଁ ଉତ୍ଫୁଲ୍ଲିତ ହେଉଥିଲା ମୋ ସାଙ୍ଗରେ କଥା କହିଲାବେଳେ, ଏବଂ ଉପଭୋଗୀ ଆନନ୍ଦର ଗୋଟାଏ ଝଲକ ଦେଖାଇ ଫେରିଆସୁଥିଲା ତା'ର ସ୍ୱାଭାବିକ ଶାନ୍ତିତ ଅବସ୍ଥାକୁ । ଏଇ ଝଲକ-ଦୃଶ୍ୟଗୁଡ଼ିକ ମାରାତ୍ମକ ନୁହେଁ କି ? ନିଜେକେ ତୁମକୁ ଚଢ଼େଇବାକୁ ଚାହେଁ—ପାଣିବ କି ଦୃଶ୍ୟଟିକୁ ପୂରା କରିବା ପାଇଁ ? ସ୍ଥାୟୀ କରିବା ପାଇଁ ? ମୁଁ ତାଙ୍କ ପାଖକୁ ଘୁଞ୍ଚି ଆସିଲି । ଏହି ସମୟରେ ସେ ତାଙ୍କ ମେଲେଇ ହୋଇଥିବା ହାତଟାକୁ ହଠାତ୍ ଟାଣି ଆଣିଲେ ଖୋଲା ଝରକା ମୁହଁରୁ, ଚମକି ଉଠିଲି ପରି । ପଚାରିଲି, "କ'ଣ ହେଲା କି ?" ସେଇଠୁଁ ସେ ଈଷତ୍ ହସିଦେଇ କହିଲେ—

"କିଛି ନାହିଁ । ଆଷାଢ଼ ଦେବତା ଟିକିଏ ଦୁଷ୍ଟାମି କରୁଥିଲା ମୋ ସାଙ୍ଗରେ । ଫୋଡ଼ଦେଲେ କି ଚମୁଟି ଦେଲେ, କି ଆଉ କଅଣ କଲେ ଭଗବାନ୍ ଜାଣନ୍ତି, କିନ୍ତୁ ମୋତେ ଗୁଡ଼ିଏ ଜଳନ ଲାଗିଲା ।"

"ଏଏଲା ? ଦେଖେ, ଦେଖେ..."

ସେ ହାତଟିକୁ ବଢ଼େଇଦେଲେ ମୋ ଆଡ଼କୁ ଏବଂ ମୁଁ ଜଳକଣାଟିକୁ ପୋଛିଦେଲି ମୋ ହାତରେ । ସେଇଠୁଁ କ୍ଷଣିକ ଆବେଗରେ ଆଉ ଗୋଟାଏ କାମ କଲି । ଚୁମାଟିଏ ଦେଲି ତା'ଉପରେ ।

"ଆରେ, ତମେ ତ ଆତୁର, ଦୁଷ୍ଟ !" କହି ସେ ତାଙ୍କ ହାତ ଘୁଞ୍ଚେଇ ଆଣିଲେ କୃତ୍ରିମ କ୍ରୋଧରେ ।

ସେଇଠୁଁ ଅନେକ କିଛି ଘଟି ପାରିଥାଆନ୍ତା । କାରଣ ଘରେ କେହି ନ ଥିଲେ, ଏବଂ ଆପାତତଃ କାହାର ଆସି ପହଞ୍ଚିଯିବାର ସମ୍ଭାବନା ନଥିଲା । କିନ୍ତୁ କିଛି ଘଟିଲା ନାହିଁ । ମୁଁ ତାଙ୍କ ମିଛ ରାଗକୁ ସମ୍ମାନ ଦେଖାଇ କହିଲି 'ସରି...', ଏବଂ ଅନ୍ୟ କଥା ପକେଇଲି ଏବଂ ବାହିଁକି କାହିଁ ଟାଙ୍ଗ୍‌ଟାଙ୍ଗ୍ ହୋଇ ବସିଲି, ସହଜ ସ୍ୱାଭାବିକ ଭଙ୍ଗୀରେ । ମୋତେ ବରଂ ଟିକିଏ ଅପ୍ରତିଭ ଲାଗୁଥିଲା କିଛି ସମୟ ପାଇଁ । କିନ୍ତୁ ମୋର ଅଧାପନ୍ତରିଆ ଆଚରଣରେ ଆହତ ହେବାର ସାମାନ୍ୟତମ ଲକ୍ଷଣ ପାଇଲି ନାହିଁ ତାଙ୍କ ମୁହଁର ଚେହେରା କିମ୍ବା କଥାକୁହା ଢଙ୍ଗରେ । ବୁଦ୍ଧିମତୀ ଆଉ କାହାକୁ କୁହାଯାଏ ?

ବୁଦ୍ଧିମତୀ ଆଉ କାହାକୁ କହନ୍ତି, ସେ ପତ୍ନୀପ୍ରେମର ଯେଉଁ ଆବେଗ ଦେଖାଇଲେ ଭଗବାନ୍ ଫେରି ଆସିଲାରୁ ? ଏବଂ ମୋତେ ସାକ୍ଷୀ ରଖି ? ସତେକି ସେ କହିବାକୁ ଚାହୁଁଥିଲେ—ଏଇ ଦେଖ, ଦେଖୁଛ ତ, ମୁଁ ମୋ ସ୍ୱାମୀଙ୍କୁ କେତେ ଭଲପାଏ ? ତେଣୁ ଭାବ ନାହିଁ ଯେ ତମେ ଗୋଟାଏ ସାରଥି ଦେଖେଇଲ, ଅଧାରୁ ଅଟକି ଯାଇ ।

ସେତିକବେଳେ ମୋର ମନକୁ ଆସିଲା ମୁହୂର୍ତ୍ତକ ପାଇଁ ଯେ କିଛି କ୍ଷତି ହୋଇ ନଥାଆନ୍ତା ମୁଁ ଅଳ୍ପବହୁତ ଆଗେଇ ଯାଇଥିଲେ । ମୁଁ କିଛି ହେଲେ ଅନ୍ୟାୟ କରି ନଥାଆନ୍ତି ମୋ ବନ୍ଧୁ ପ୍ରତି । ଠିକଣା ପତ୍ନୀଟିଏ ମିଳି ଯାଇଛି ତାକୁ ! ଆଉ ଯେଉଁଥିରେ ବିଫଳ ହେଉ ବା ନହେଉ, ସେ କେବେହେଲେ ବିଫଳ ହେବ ନାହିଁ ତା'ର ଦାମ୍ପତ୍ୟ ଜୀବନରେ ।

ମୋର ଯିବାଆସିବା କମିଗଲା ସେଠିକି । କହିଲି, ପରୀକ୍ଷା ପାଖେଇ ଆସିଲାଣି, ପାଠପଢ଼ାରୁ ଫୁରୁସତ୍ ନାହିଁ ଯାହାକି ମୋଟାମୋଟି ସତ ବୋଲି

ମାନିବାକୁ ପଡ଼ିବ । ଏବଂ ପରୀକ୍ଷା ସରିଲା ପରେ ମୁଁ ଯଥାଶୀଘ୍ର ଦିଲ୍ଲୀରୁ ବିଦାୟ ନେଲି । ରୂପା-ଭଗବାନଙ୍କଠାରୁ ବିଦାୟ ନେଲା ବେଳେ ରୂପାବାଉଜଙ୍କ ମୁହଁକୁ ସ୍ଥିର ଦୃଷ୍ଟିରେ ଅନେଇବାର କୌଣସି ଆବଶ୍ୟକତା ହିଁ ନଥିଲା ।

ଭଗବାନ୍ ଅବଶ୍ୟ ମୋର ପ୍ରିୟବନ୍ଧୁ ହୋଇ ରହିଲା । ତା' ବୋଲି କ'ଣ ଆମେ ଜୀବନଯାକ ମାସକୁ-ଖଣ୍ଡେ ଲେଖାଏଁ ଚିଠି ଲେଖୁଥିବୁ ପରସ୍ପରକୁ ? ଆଉ ସେ ତା'ର ତଥାକଥିତ ଦୁଃଖକାହାଣୀ ଶୁଣାଉଥିବ ମୋତେ, ଏବଂ ମୁଁ ତା'ର ଉଚିତ ପ୍ରତିକ୍ରିୟା ସଜାଡ଼ିଲା ବେଳକୁ ସେ ତାକୁ ଭୁଲିଯାଉଥିବ କି ଦୁଃଖ-ଦେଲାବେଳକୁ କ୍ଷମା କରି ଦେଉଥିବ, ଉଦାରତାର ପରାକାଷ୍ଠା ଦେଖାଇ ? ନୋ, ଥ୍ୟାଙ୍କସ୍ । ମୁଁ ଆଉ ନାହିଁ ସେଇ ଗଣ୍ଡମି ଭିତରେ । ମୁଁ ବି ବାହା ହେଲିଣି ଇତି-ମଧ୍ୟରେ । ମୋର ନିଜ କାମ ଅଛି । ନିଜ ପରିବାର, ଏବଂ ନିଜ ଦୁଃଖ । ତୁ ସେଇ ପୁରୁଣା ଶିଶୁଟା ପରି, ତୁ ଖାଲି ନେଇ ଜାଣିଛୁ । ତୁ କିଛି ହେଲେ ଦେଇ ପାରିବୁ କି ମୋତେ, ମୋ ଦୁଃଖ ଦୂର କରିବା ଲାଗି ?

ଆପେ ଆପେ ମୁଁ ତା'ଠୁଁ ଆଡ଼େଇ ହୋଇଗଲି । ସେ କୁଆଡ଼େ ବୋଲି କୁଆଡ଼େ ବୁଲିଲା ତା' ଚାକିରି ଜୀବନରେ । ଆଉ ମୁଁ ପ୍ରାକ୍ଟିସ୍ କଲି କଟକରେ । କେବେ କେମିତି ଦେଖା ହୁଏ ଆମର, ସେ ଛୁଟିରେ ଘରକୁ ଆସିଲା ବେଳେ । ମଧ୍ୟ ବେଳେବେଳେ ତା' ଚାକିରି ଜାଗାରେ, କଲିକତା, ଦିଲ୍ଲୀ ଆଦି ସହରରେ, ଯେଉଁଠି ମୋର କୌଣସି କନ୍‌ଫରେନ୍ସ୍ କିମ୍ବା ପାରିବାରିକ କାମ ଥାଏ । ସେହି ସମୟରେ ସେ ଅନେକ କଥା କହିଥାଏ ମୋତେ, ଯେଉଁଥିରେ 'ଦୁଃଖ'ର ଉପାଦାନ ଥାଏ, କିନ୍ତୁ ମୁଁ ତାକୁ ଘେନା କରେ ନାହିଁ । ଜାଣିବାକୁ ପାଇଲି ଯେ ତା'ର ଏକାଧିକ ସହକର୍ମୀ କୋଉଠି ବୋଲି କୋଉଠି ପହଞ୍ଚିଲେଣି । କିଏ ଭାରତ ସରକାରଙ୍କ ସଚିବ ତ କିଏ ରିଜର୍ଭ୍ ବ୍ୟାଙ୍କର ଡେପୁଟି ଗଭର୍ଣ୍ଣର ତ କିଏ ବିଶ୍ୱବ୍ୟାଙ୍କ୍‌ରେ ଅନ୍ୟତମ ଡାଇରେକ୍ଟର୍ । ଅଥଚ ଇଏ କେବଳ ପାହାଚ ଉଠି ଉଠି ଚାଲିଛି । କିନ୍ତୁ ସେ ବିଷୟରେ ସେ ମୋର ସହାନୁଭୂତି ଲୋଡ଼େ ନାହିଁ । କାହିଁକି ଯେ ଯେତେହେଲେ ସେ ତଳକୁ ଖସି ନାହିଁ । କିମ୍ବା ଚାକିରି ପଞ୍ଜିକାରୁ ଉଦ୍ଧୃତ କୌଣସି ପ୍ରତିକୂଳ ମନ୍ତବ୍ୟର ନକଲ ପହଞ୍ଚିନାହିଁ ତା' ପାଖରେ । ତା'ହେଲେ ତୋର ଆଉ ଦୁଃଖ କ'ଣ ? କାହିଁ ବିଫଳତା ? ତୋ ନାକଟା ଯଦି ବେଶୀ ପାଲିସ୍ ଦିଶୁଛି ତୋ ସାଙ୍ଗଭାଇ ତୁଳନାରେ, ଯେଉଁଥିପାଇଁ ସେମାନେ କୋଉ ସୁନାକଳସ ଢାଳି ପାରୁ ନାହାନ୍ତି ତୋ ମୁଣ୍ଡ ଉପରେ, ତା' ହେଲେ ତାକୁ ଅନ୍ୟାୟ ବୋଲି କହିବ କେମିତି ? ନାଇଁମ, ତୁ ଠିକ୍ ଅଛୁ, ସେମିତି ଅଛୁ ଅଜ କଥାକଥାକେ ହସି ଦେଉଛୁ ସେମିତି, ଦୁନିଆର ଅଦଭୁତିକୁ ଭୁଲିଯାଇ କିମ୍ବା କ୍ଷମା କରି ପରି । କାରଣ ଯେତେହେଲେ ଆଗକୁ ଅଛି ଗରମାଗରମ୍ ସିଙ୍ଗଡ଼ା କି ମୋଗଲାଇ ପରଟା...।

ତା' ଛଡ଼ା କହୁଛୁ ପରା, ଆଉ କେଉଁଥିରେ ସଫଳ ହେଲେ କେତେ କ ନହେଲେ କେତେ, ତୋ ଦାମ୍ପତ୍ୟ ଜୀବନ ସଦା ସୁଖମୟ ହୋଇ ରହିବ । ଥ୍ୟାଙ୍କ୍ସ୍ ଟୁ ଆମର ବୁଦ୍ଧିମତୀ ରୂପାଭାଉଜ !

ଏହିପରି ଭାବରେ ଆମେ ଟୋକା ହେଉ ହେଉ ଦରବୁଢ଼ା ହେଲୁ, ଏବଂ କ୍ରମଶଃ ବୁଢ଼ା ହେଲୁ । ଘରସଂସାର କଲୁ, ଟଙ୍କା ରୋଜଗାର କଲୁ । ମୁଁ ଗୋଟାଏ କୋଠା ବାଡ଼େଇଲି, ସେ କିନ୍ତୁ ତା'ର ପୈତୃକ ଘରକୁ ଫେରି ଆସିଲା, ଅବସର ନେଲା ପରେ । ମୋର ଦୁଇ ପୁଅ ଓ ଗୋଟିଏ ଝିଅ ବଡ଼ ହେଲେଣି, ଏବଂ ନିଜ ନିଜ ସଂସାର କରି ଅଛନ୍ତି । ତା'ର ଗୋଟିଏ ବୋଲି ଝିଅ ସୁନନ୍ଦା, କମ୍ପ୍ୟୁଟର୍ ପାଠରେ ପଣ୍ଡିତ ହୋଇ କାମ କରୁଛି ବମ୍ବେର କେଉଁ ଶିଳ୍ପସଂସ୍ଥାରେ । ସେ ବି ବାହା ହୋଇଛି, ସ୍ୱାମୀ କମ୍ପାନୀ ଏକ୍ଜିକ୍ୟୁଟିଭ୍ ଏବଂ ତା'ର ବି ଗୋଟିଏ ଗୁଲୁଗୁଲିଆ ଝିଅ । ମୁଁ ତାକୁ ଦେଖି ଆସିଥିଲି ବମ୍ବେରେ । ମାଆସୁଆଗିଆ ଗେହ୍ଲେଇଟିଏ...

ଏହି ସମୟରେ ଘଟିଲା ସେଇ ବଜ୍ରପାତ । ରୂପାଭାଉଜ ବମ୍ବେରେ ଥିଲେ ଝିଅ ପାଖରେ । ହଠାତ୍ ଦିନେ ଖବର ଆସି ପହଞ୍ଚିଲା କଟକରେ. ଯେ ମାଆଝିଅ ଦିହେଁ ପ୍ରାଣ ହରେଇଛନ୍ତି ଗୋଟାଏ ସଡ଼କ ଦୁର୍ଘଟଣାରେ । କିନ୍ତୁ କୋଳରେ ଥିବା ନାତୁଣୀଟିର କିଛି ହୋଇନାହିଁ, ବଞ୍ଚିଯାଇଛି ବରିଷ୍ଣୁ ।

ଭଗବାନ୍ ନିଜେ ଆସିଥିଲା ମୋ ଘରକୁ, ଏଇ ଖବରଟାକୁ ଦେବା ପାଇଁ । ମୁଁ ତାକୁ ଜାବୁଡ଼ି ଧରିଲି ଅନେକ ସମୟ ଯାଏଁ, ଗଭୀର ସମବେଦନାରେ ଆପ୍ଲୁତ ହୋଇ । ଲୁହ ଝରିଲା ମୋ ଆଖିରୁ । କିନ୍ତୁ ତା'ର ଅପଲକ ଆଖି ଦି'ଟା ଶିଠା, ଶୁଖିଲା । କେବଳ ଗୋଟାଏ ପ୍ରଶ୍ନ ପଚାରୁଛି, ସେଇ ପୁରୁଣା ପ୍ରଶ୍ନର ନୂତନତମ ଏବଂ ବୋଧହୁଏ ଶେଷ ସଂସ୍କରଣ—

ଦିସ୍ ଇଜ୍ ନଟ୍ ଫେୟାର୍ ! ଅନ୍ୟାୟ ! ନିହାତି ଅନ୍ୟାୟ !

...ହଁ ରେ, ପ୍ରିୟ ବନ୍ଧୁ ମୋର ! ଯେ ହଜାରେ ପରାଭବକୁ ହଜମ କରି ନେଇଛି, ହସି ଦେଇଛି, ଭୁଲିଯାଇଛି, ଅବା ସେମାନଙ୍କୁ କ୍ଷମା କରି ଦେଇଛି, ତା' ଉପରେ ଏଭଳି ଚୋଟେ ପକେଇବା କୋଉ ଆଡ଼ର ନ୍ୟାୟ ? କିନ୍ତୁ ଇଏ ଅସଲ ଭଗବାନର କୃତ, କୋଉ ମଣିଷର ନୁହେଁ କି ସମାଜର । ହୁଏତ ଯେ ମାଡ଼ ଖାଇବାରେ ଅଭ୍ୟସ୍ତ, ତାକୁଇ ଆହୁରି ଗୋଟାଏ ମାଡ, ପ୍ରାଣାନ୍ତକ ପ୍ରହାର ଦେବାକୁ ଇଚ୍ଛା ହେଲା ତାଙ୍କର...

ଏହାପରେ ସେ ପୁଣି ମୋ ପାଖକୁ ଲାଗି ଆସିଲା, ଓ ମୁଁ ତାକୁ ବାଧା ଦେବି ନାହିଁ । ବାରମ୍ବାର ମୋ ଘରକୁ ଆସେ । ଚୁପ୍‌ଚାପ୍ ହୋଇ ବସି ରହେ, ଖବର-କାଗଜ ପଢ଼େ, ଏବଂ ଶୂନ୍ୟ ଦୃଷ୍ଟିରେ ଅନାଏ ଆକାଶକୁ । ମଝି ମୋ ଆଡ଼କୁ ।

...ଆରେ, ମୁଁ କ'ଣ କରିବି ? ମୋ ଆଡ଼କୁ କାହିଁକି ଅନେଇ ରହିଛୁ ସେମିତି ? ମୁଁ ତୋର ବନ୍ଧୁ ବୋଲି କ'ଣ ଅସାଧ୍ୟ ସାଧନ କରି ପାରିବି, ଫେରେଇ ଆଣିବି ତୋ ସ୍ତ୍ରୀ-ପିଲାଙ୍କୁ ? ନା ତୋତେ ଅପମାନ ଦେବି, ତୋ ମନ ଭୁଲେଇବାର ଚେଷ୍ଟା କରି ? ଶତ୍ରୁକୁ ବି ଏଭଳି ଦୁଃଖ ନହେଉ...

ବେଳେବେଳେ ମୋର ସ୍ତ୍ରୀ ସରମା ବ୍ୟସ୍ତ ହୋଇ ଉଠେ । କୁହେ—ହଁ, ମୁଁ ଜାଣୁଛି ସେ ଦୁଃଖୀ । କିନ୍ତୁ ବୁଢ଼ାଙ୍କର କ'ଣ ଆଉ କିଛି କାମ ନାହିଁ ? ନା ତାଙ୍କର ଆଉ କେହି ବନ୍ଧୁ ନାହାନ୍ତି ତମ ଛଡ଼ା ? ଏଇଠିକି ଆସି ବସି ରହିଲେ ଅସୁବିଧା କ'ଣ ହେବ ? ବରଂ ତାଙ୍କର ବୁଝିବା ଦରକାର ଯେ ଆମର ବି କିଛି କାମ ଥାଇପାରେ, ଆଉ ସେ ଆମକୁ ଅଡୁଆରେ ପକାଉଛନ୍ତି । ଅଯଥାରେ ମୁଁ କୌଣସିମତେ ବୋଧଦିଏ ସରମାକୁ । କହେ, କିଛି ଉପାୟ ନାହିଁ ମୋର । ସେ ମୋର ବାଲ୍ୟବନ୍ଧୁ ଯେତେହେଲେ । ଏବଂ ମୁଁ ତାକୁ ଭଲପାଏ । ସେଇଠୁଁ ସେ ଆଉ କ'ଣ କହିବ ବୋଲି କହିପାରେ ନାହିଁ ।

ଏହି ପରିସ୍ଥିତିରେ ବୁଝିପାରୁଥିବେ ମୋତେ କେତେ ଖୁସି ଲାଗେ ସେ ଯେତେବେଳେ ବମ୍ବେ ଯାଏ ମଝିରେ ମଝିରେ, ତା'ର ମାଆଛେଉଣ୍ଡ ଟିକି ନାତୁଣୀଟିକୁ ଦେଖି ଆସିବା ପାଇଁ । ମୁଁ ଆନ୍ତରିକ ଭାବେ ବୋଝେଇ ନଏ ତା'ର ଉଚ୍ଛୁଳା ଆବେଗ ଏବଂ ପ୍ରାର୍ଥନା କରେ—ହେ ଭଗବାନ ! ତା' ଦୁଃଖ ଟିକେ ହାଲୁକା ହୋଇଯାଉ ଏଥର, ତା' ଗେହ୍ଲା ନାତୁଣୀକୁ ଦେଖି ଆସିଲା ପରେ ଏତିକି ହେଲେ ଦୟା କର ତା' ଉପରେ ।

କିନ୍ତୁ ତା' ହୁଏ ନାହିଁ । ବରଂ ଫେରିଆସିଲା ପରେ ସେ କେବଳ ଶୂନ୍ୟକୁ ଅନେଇ ଦେଖେ ନାହିଁ, ମୋ ହାତକୁ ଧରି ପକାଏ ବେଳେ ବେଳେ, ଆଶ୍ରାର ଭାବ ଦେଖାଇ । ଏବଂ କୁହେ—"ବୁଝିଲୁ ନା, ମୋ ଭଳି ନଷ୍ଟର ଆଉ କେହି ନାହିଁ ପୃଥିବୀରେ । କାହିଁକିନା ମୁଁ ତାକୁ ଠକେଇ କରି ଚାଲି ଆସିଲି । ମୋ ପ୍ୟାଣ୍ଟକୁ ଟାଣି ଧରିଥାଏ ଆଉ ମୋ ପଛେ ପଛେ ଚାଲୁଥାଏ, ଯେମିତି ଦେଖିଲା, ମୋର ସୁଟ୍‌କେଶ୍ ସଜଡ଼ା ହେବା ଦେଖି, ଯେ ଅଜା ଚାଲିଯିବେ ଏଠୁଁ, ଆଉ ରହିବେ ନାହିଁ ତା' ପାଖରେ । ମାମା ଯେମିତି ଚାଲିଗଲା କୁଆଡ଼େ ଆଉ ମୋଟେ ଫେରିଲା ନାହିଁ । ମୁଁ ତାକୁ ଭୁଲେଇ ଦେଇ କହିଲି ଯେ ମୁଁ ତୋ ପାଖକୁ ଫେରି ଆସିବି କାଲି ସକାଳେ । ଏତେ ବଡ଼ ଚକୋଲେଟ୍ ଧରି । ବିଚରା ଅନେଇ ରହିଥିବ ମୋ ବାଟକୁ । କିନ୍ତୁ ମୁଁ କେମିତି ଭଲି ସେଠି ରହିପାରିବି ସବୁଦିନ ପାଇଁ, କହିଲୁ ?"

ପୁଣି ସେଇ କଥା ? ଆରେ, ମୁଁ କ'ଣ କହିବି ? ତୋର ଇଚ୍ଛା ହେଲେ ତୁ ଘରଦ୍ୱାର ଛାଡ଼ି ନାତୁଣୀ ପାଖରେ ରହିପାରିବୁ ସବୁଦିନ ପାଇଁ । ଲୋକେ କ'ଣ

ରହୁନାହାନ୍ତି ସେମିତି ? ମୋର ମନେହୁଏ ଯେ ସେଇ ଜଣେ ମୋ ପ୍ୟାଣ୍ଟକୁ ଭିଡ଼ି ଧରୁଛି, ମୋଠାରୁ କିଛି ଗୋଟାଏ ଉତ୍ତର ପାଇବ ବୋଲି । ସୁରମାର ଓଠ ଦି'ଟା ଚପି ହୋଇଯାଏ, ମୁଁ ଯେତେବେଳେ ବନ୍ଧୁର ଦୁର୍ଦ୍ଦଶା ବଖାଣି ବସେ ତା' ଆଗରେ ।

ମୁଖ୍ୟତଃ ଏଇ କାରବାର ଚାଲିଛି ଆମ ଦି'ଘର ଭିତରେ ଗତ ଦୁଇବର୍ଷ ହେଲା । ଏବଂ ମୁଁ କେବେହେଲେ ଊଣା କରି ନାହିଁ ମୋ ସହାନୁଭୂତିରେ, ମନେ ମନେ ଯେତେ ଅସ୍ଥିର ହେଲେ ମଧ୍ୟ ।

କିନ୍ତୁ ଏଥର କ'ଣ ହେଲା ଜାଣନ୍ତି ? ବମ୍ବେରୁ ଫେରି ଆସିଛି ଜାଣି ମୁଁ ଯେତେବେଳେ ଯାଇଥିଲି ତା' ଘରକୁ (ଆଜିକାଲି ମୁଁ ମଧ୍ୟ ମଝିରେ ମଝିରେ ଯାଉଛି ସେଠିକି, ସେ ଆସି ମୋ ଘରେ ପହଞ୍ଚିବା ପୂର୍ବରୁ), ସେ ମୋତେ କହିଲା ଅନେକ ମୁହୂର୍ତ୍ତର ନୀରବତା ପରେ, ଥଙ୍ଗେଇ ଥଙ୍ଗେଇ—

"ଏଥର ସେ ମୋତେ ମୋଟେ ହଇରାଣ କରି ନାହିଁ । ତା' ବାପା ତା' ପାଇଁ ଗୋଟାଏ ପୁରୁଖା ସ୍ତ୍ରୀଲୋକ ଯୋଗାଡ଼ କରି ଆଣିଛି, ଟାଣୁଆ ଗଭର୍ଣ୍ଣେସ୍ ଟାଇପ୍, ଆଉ ସେ ଦିନରାତି ତାରି ପାଖରେ ରହୁଛି । ଖାଲି ଶୁଣିଲି 'ହ୍ୟାଲୋ'ଟିଏ କହିଲା ମୋତେ, ପାଠ ପଢ଼ିଲା ପରି । ଟୋକା ଥରେ ହେଲେ ଆସିଲା ନାହିଁ ମୋ ପାଖକୁ । ଟିକିଏ ଗେହ୍ଲା ହେଲା ନାହିଁ ମୋ କୋଳରେ ବସି । ଅଜା ଉପରେ ବି ତା'ର ଆସ୍ଥା ଚାଲିଗଲାଣି । ମୁଁ ଆଉ କେହି ନୁହେଁ ତା'ର···"

ଏବଂ ଜୀବନରେ ପ୍ରଥମ ଥର ପାଇଁ ମୁଁ ଦେଖିଲି ଯେ ସେ ତା' ଦୁଃଖରେ କାନ୍ଦି ପାରୁଛି । ଉତୁରି ଆସିଥିବା ଟୋପାଏ ଲୁହକୁ ସେ ଚଟ୍‌କିନା ପୋଛି ପକେଇଲା ତା' ଆଖିରୁ । ଏବଂ ମୁଁ ବଲ୍‌ବଲ୍ ହୋଇ ଅନେଇ ରହିଲି ତା' ଆଡ଼କୁ । ମୁଁହିଁ ବୋକା ପାଲଟିଗଲି ।

# ଦୟନୀୟ ଦୁଃଖ

ନା, କ୍ଷମା କରିବେ, ମୁଁ ଏଇ ଭଗବାନ୍ ଚରିତ୍ରଟି ଉପରେ କୌଣସି ଟୀକାଟିପ୍ପଣୀ ବାଢ଼ି ଦେଇ ପାରୁନାହିଁ । ଦେଖୁନାହାଁନ୍ତି ? ତା' ଉପରେ ଯେତେ ରାଗିଲେ ବି ମୁଁ ମୋ ଶେଷଧାଡ଼ିରେ କହି ସାରିଛି ଯେ ମୁଇଁ ବୋକା ପାଲଟିଗଲି । କାରଣ ବୋକାଟା ତା' ଜୀବନରେ ଯେତେ ପରାଭବ ପାଇଥିଲେ ମଧ୍ୟ ତା' ଆଖିରୁ ଲୁହ ଝରି ନ ଥିଲା ଆଜିଯାଏଁ । ପରାଭବକୁ ଯେତେ 'ଅନ୍ୟାୟ' ବୋଲି କହି ହେଲେ ମଧ୍ୟ ସେ ସେଥିରୁ ଉଧୁରି ଆସି ସଂସାର ଖେଳରେ ପୁଣି ନିଜକୁ ସାମିଲ୍ କରି ନେଇ ପାରୁଥିଲା । ସେହେତୁ କଥାଟା ଛୁଇଁ ଯାଉଥିଲା, ଏବଂ ତା' ପ୍ରତି ମୋର ଯେଉଁ ଭଲପାଇବା ଥିଲା, ମୁଁ ତାକୁ ମୋଠୁଁ ଟିକିଏ ଦୂରେଇ ରଖି ପାରୁଥିଲି । ଅର୍ଥାତ୍ ମୁଁ ତୋତେ ଅବଶ୍ୟ ଭଲ ପାଏ, ମୋର ସମବେଦନା ଉଚ୍ଛୁଳି ଉଠୁଛି ତୋ' ପାଇଁ, କିନ୍ତୁ ଧନ୍ୟବାଦ, ତୁ ଗୋଟିଏ ବିଚିତ୍ର ଜୀବ, ଏବଂ ମୁଁ ଯେତେହେଲେ ଗୋଟିଏ ସୁସ୍ଥ ନର୍ମାଲ୍ ମଣିଷ । କିନ୍ତୁ ବୁଢ଼ା ବୟସରେ ଏବଂ ପ୍ରଥମ ଥର ପାଇଁ ତା' ଆଖିରୁ ସେଇ ଯେଉଁ ଲୁହ ଟୋପାଏ ଝରିଲା ନା, ମୁଁ ସେଥିରେ ବୋକା ପାଲଟିଗଲି । ମାନେ, ବୁଝୁଁଛନ୍ତି ନା ମୋର କ'ଣ ହେଲା ? ମୋର ମନେ ହେଲା ଯେ ମୋ ଆଖିରୁ ବି ଲୁହ ଟୋପାଏ ଝରି ପଡ଼ିବ ଏଇକ୍ଷଣି । ଏବଂ ଏତେଦିନକେ । ସମବେଦନା ସୀମା ଟପିଯିବ । କହିବାକୁ ଗଲେ ସେ କେବଳ ମୋର ଗୋଟିଏ ଚରିତ୍ର ହୋଇ ରହିବ ନାହିଁ । ଏଇ ନିରପେକ୍ଷ ଲେଖକ, ଊର୍ଦ୍ଧ୍ୱରେ ଥାଇ ବିଚରା ପ୍ରାଣୀମାନଙ୍କ ସୁଖଦୁଃଖ ଦେଖି ହାଲୁକାରେ ହସୁଥିବା କି ଦୁଃଖ କରୁଥିବା ଲେଖକ, ଏକାକାର ହୋଇଯିବ ତା'ର ଏଇ ବିଚିତ୍ର ଚରିତ୍ରଟି ସାଙ୍ଗରେ । ସତେକି ସେଇ ନିଜେ ହେଉଛି ଭଗବାନ୍ ଦାସ, ନିର୍ବୋଧ ବିଫଳ ମଣିଷଟିଏ, ଯାହାର ନିର୍ଲିପ୍ତ

ହାଲୁକାପଣର ପଡଆରି ଆଉ ତିଷ୍ଠି ରହିପାରିଲି ନାହିଁ । ବିଚରା !

ନା । ମୁଁ 'ବିଚରା' ନୁହେଁ, ଧନ୍ୟବାଦ । ମୁଁ ମୋ ଲେଖକୀୟ ଚରିତ୍ରକୁ ତଳେ ପକେଇ ପାରିବ ନାହିଁ । ତେଣୁ ଭଗବାନ୍ ତାହାଙ୍କୁ ବାଦ୍ ଦିଆଯାଉ ମୋର ଏଇ ପୋଷ୍ଟ-ମର୍ଟେମ୍ କାତୀୟ ଆଳାପ-ଆଲୋଚନା ଭିତରୁ । କେବଳ ଗୋଟାଏ ତାତ୍ତ୍ୱିକ ବିଚାର କରାଯାଉ ଏଇ 'ଦୁଃଖ' ଜିନିଷଟାକୁ ନେଇ । ନା କ'ଣ କହୁଛନ୍ତି ?

ପ୍ରଥମେ, ଏବଂ ସେଇ ବୋଧହୁଏ ମୋର ଶେଷ ପ୍ରଶ୍ନ ହୋଇ ରହିବ—ପ୍ରକୃତରେ ମଣିଷର ଯେକୌଣସି ଦୁଃଖକୁ କ'ଣ ଅକାରଣ, ଆବ୍‌ସର୍ଡ୍, ତେଣୁ ଦାୟୀତ୍ୱହୀନ ବୋଲି କହିହେବ, ସେ ଭଗିଆ ପର ଯେତେ ବିଚିତ୍ର ହେଉ ନା କାହିଁକି ?

ମୁଁ ତା'ର ଉତ୍ତରରେ କହିବି, ଏବଂ ଦୃଢ଼ କଣ୍ଠରେ କହିବି ଯେ ମୌଳିକ ଅର୍ଥରେ ପ୍ରତ୍ୟେକ ଦୁଃଖ ସକାରଣ । ଯଥାର୍ଥ । ଦୁଃଖୀ ମଣିଷର କୌଣସି ଦୋଷ ନାହିଁ: ଦୋଷ ଦୁଃଖଦାୟକର । ଏବଂ ସେହି ଦୁଃଖଦାୟକ ଅପର ମଣିଷ ନୁହେଁ, ସେହି ଉପରବାଲା, ଯାହାଙ୍କୁ ଭଗବାନ୍ କୁହାଯାଏ । ଅଥବା, ଭଗବାନ୍ ଅଛନ୍ତି ବୋଲି ଯଦି ବିଶ୍ୱାସ ନ କରୁଥାଅ, ତା'ହେଲେ ମଣିଷକୁ ନେଇ ଯେଉଁ ବ୍ୟବସ୍ଥା କରାଯାଇଛି ଏହି ସୃଷ୍ଟିର, ସେହି ବ୍ୟବସ୍ଥାର ।

ବ୍ୟବସ୍ଥାର ଅସ୍ୱୀକାରମ୍ଭ ହେଲା, ତାକୁ ଯେପରି ଭାବରେ ଗ୍ରୁଣ୍ଡିଦିଆଗଲା ପୃଥିବୀର ଆଲୁଅ ଓ କୋଳାହଳ ଭିତରେ । ମାତୃଗର୍ଭର ଉଷୁମ ଅନ୍ଧାରିଆ ଆବେଶରୁ ଓଟାରି ଆଣି, ଏବଂ ଲଙ୍ଗଳା (ପ୍ରତ୍ୟେକ ଅର୍ଥରେ ଲଙ୍ଗଳା), ଏକୁଟିଆ କରି । ତେଣୁ ତା' ଚେତନାର ପହିଲି ଅନୁଭବ ହେଲା ଅସହାୟତା । ଏବଂ ତା' ପହିଲି କାନ୍ଦଣାର ପରିଭାଷା ହେଉଛି ଏଇ ଅସହାୟତାର ଦୁଃଖ । ସେହି ଦୁଃଖ, ଭାବି ଦେଖନ୍ତୁ, କ'ଣ ଯଥାର୍ଥ ନୁହେଁ ? କାହିଁକିନା ସେ ନିଶ୍ଚିନ୍ତ ହୋଇ ରହିଥିଲା ଯେଉଁ ଅନ୍ଧାରରେ, ତାକୁ ଆଲୁଅକୁ ଟାଣି ଆଣିଲ କାହିଁକି, ପୁଣି ଏମିତି ଏକୁଟିଆ ଆଉ ଲଙ୍ଗଳା କରି ଯେମିତିକି ସେ ଆଉ କାହାକୁ ଲୋଡ଼ିବାକୁ, ଆଙ୍କୁଡ଼ି ଧରିବାକୁ ବାଧ୍ୟ ହେବ ? ଏବଂ ତାକୁ ନପାଇଲେ, କାନ୍ଦ

ତା'ଠୁଁ କିଛି ନ ପାଇଲେ ତାକୁ ଶୁଣି କାନ୍ଦିବାକୁ ପଡ଼ିବ ? ଏଇ ଲୋଡ଼ିବା ଚହିଁବାର ବ୍ୟାକୁଳତା, ଏଇ ତ ଜୀବନର ସହଜ ଏବଂ ସହଜାତ ସ୍ୱର, ଯାହାର ସାରେଗାମା ତମକୁ ଶୁଣି ଶୁଣାଇବାକୁ ପଡ଼େ ବଞ୍ଚିଥିଲା ଯାଏଁ । ଆଉ ତାକୁ ଯଦି କେଉଁ ବୁଦ୍ଧ କି ବେଦାନ୍ତ କୁହେ ଯେ 'ବତ୍ସ, ଏହାହିଁ କାମନା, ତୋ ଦୁଃଖର କାରଣ, ତେଣୁ ସେଥିରୁ ବିଚ୍ଛିନ୍ନ ହୁଅ, ବିଚ୍ୟୁତ ହୁଅ' ଇତ୍ୟାଦି ଇତ୍ୟାଦି, ତାହା କଟା ଘାଆରେ ଚୂନ ଦେଲା ପରି ନୁହେଁ କି ? ଯାହାକୁ ଲଙ୍ଗଳା ଏକୁଟିଆ କରି ଜନ୍ମ ଦେଲ, ତାକୁ କହୁଛ କ'ଣ ନା ତୋ'ର କିଛି ଲୋଡ଼ିବା ଚହିଁବା ଦରକାର ନାହିଁ ?

ଦ୍ୱିତୀୟ କଥା ହେଲା ଏଇ, ଯାହାକି ତା'ର ଏକୁଟିଆ-ପଣ ସହିତ ସଂଲଗ୍ନ, ଯେ ତାକୁ କୁହାଗଲା ସେ ହେଉଛି ସ୍ୱତନ୍ତ୍ର । ଏବଂ ତାହହିଁ ତା'ର ସ୍ୱଧର୍ମ । ମାନେ ତୁ ଆଉ କାହାପରି ନୁହେଁ । ତେଣୁ ତୁ ପୂରାପୂରି ମିଶିଯାଇ ପାରିବୁ ନାହିଁ ଆଦି କାହାଠାରେ, ଆଉ କେଉଁ ଜଣକର କାମନାବାସନା ତଥା ତାକୁ ଚରିତାର୍ଥ କରିବାର ପ୍ରକ୍ରିୟା ସାଙ୍ଗରେ । ସେ ଯେତେ ତଥାକଥିତ ନିଜର ହେଉ ପଛେ, ତା'ର ନାନାଦି ଇଚ୍ଛା-ଅନିଚ୍ଛା, ପ୍ରେମ-ଘୃଣା, ଜିଜ୍ଞାସା କି ଜିଜୀବିଷା ତୋ'ଠୁଁ କିଛି ପରିମାଣରେ ଭିନ୍ନ ହେବାକୁ ବାଧ୍ୟ । ଫଳରେ ସମ୍ପର୍କ ବାନ୍ଧିବାକୁ ଯାଇ (ଯାହାକି ଅନିବାର୍ଯ୍ୟ, ଏକୁଟିଆ ଅସହାୟତାକୁ ଅନ୍ତତଃ ଯତ୍‌ସାମାନ୍ୟ ଦୂର କରିବା ଲାଗି) ତୋ'ର ନିଜତ୍ୱକୁ ଖାପ୍ ଖୁଆଇ ହେବ ତା'ର ନିଜତ୍ୱ ସାଙ୍ଗରେ, ଯେଉଁ କ୍ଳେଶକର ବ୍ୟାପାରକୁ 'ଆଡ୍‌ଜଷ୍ଟ୍‌ମେଣ୍ଟ୍' କୁହାଯାଏ, ମନସ୍ତତ୍ତ୍ୱବିଦ୍‌ର ଇଂରେଜୀରେ, ଅଥବା ତା' ସାଙ୍ଗରେ ଲଢ଼େଇ କରିବାକୁ ପଡ଼ିବ, ଯାହାର ଫଳାଫଳ ସହଜେ ବିଷମ । ହଁ, ସହଯୋଗ, ସାହଚର୍ଯ୍ୟ, ସହାବସ୍ଥାନ ଆଦି ପାରସ୍ପରିକ ଓ ସାମୂହିକ ସ୍ୱାର୍ଥସାଧନର ଅନେକ କଳାକୌଶଳ ଅଛି, ସେଥିର ପ୍ରତିକାର ଲାଗି । କିନ୍ତୁ ଏଠି ପ୍ରତିକାରର ଅର୍ଥ ଗୋଟିଏ ପ୍ରାଥମିକ ଏବଂ ନୈସର୍ଗିକ ବ୍ୟାଧିର ଦୂରୀକରଣ, ତେଣୁ ତାହା କେବେହେଲେ ପୂରାପୂରି ସଫଳ ହୋଇପାରିବ କି ? ନା । ସେହେତୁ ଅଭାବର କି ନପାଇବାର ଦୁଃଖ ରହିବ ହିଁ ରହିବ, ତାହା ବେଶି ହେଉ କି କମ୍ ବୋଲି ମନେ ହେଉ, ଦୁଃଖୀର ସହିଷ୍ଣୁତା ନେଇ । ଏଇଠି ମନେ ରଖିବାକୁ ହେବ

ଯେ ତମେ ପଶୁ ନୁହଁ, ତେଣୁ ଏଇ ସ୍ୱତନ୍ତ୍ରମନ୍ୟତା ଅର୍ଥାତ୍ ନିଜ ଭିତରେ ବନ୍ଦୀ ହୋଇ ରହିଥିବାର ବିଚ୍ଛିନ୍ନତାବୋଧକୁ ଦୂର କରି ଦେଇ ହେବ ନାହିଁ, କେଉଁ ଜାନ୍ତବ 'ଗୋଠ' ଜାତୀୟ ପ୍ରବୃତ୍ତିକୁ ଆଶ୍ରା କରି । ପ୍ରତ୍ୟେକ ଗୋଠଧର୍ମୀ ମତବାଦ, ଅନ୍ୟ ଅର୍ଥରେ ଫାସିଜମ୍‌ର ମନୋଭାବ, ଅବଲମ୍ବେ ଭୂଶୁଣ୍ଡି ଯାଉଛି ବୈୟକ୍ତିକତାର ତଥାକଥିତ ଗର୍ଭମାକୁ ଫେରି ପାଇବା ଲାଗି । ହେଲେ ସେଇଠୁଁ ଦୁଃଖ । ପୁଣି ତମେ ପଶୁ ନ ହୋଇ ମଣିଷ ହୋଇଥିବାରୁ କେବଳ ଭାବର ଅଧୀନ ନୁହଁ, ମଧ୍ୟ ଭାବନାର । ତେଣୁ ତମେ ଦୁଃଖକୁ ଚଟ୍‌କିନି ମିଶେଇ ନେଇ ପାରିବ ନାହିଁ ତମ ଶିରାଧମନୀରେ, ଅହରହ ପ୍ରବୃତ୍ତିରେ ସଞ୍ଚାଳିତ ହୋଇ । ତମେ ଦୁଃଖକୁ ନେଇ ଭାବିବ, ତାକୁ ଗୁଳିଲେଇ ହେବ, ଯନ୍ତ୍ରଣା ଆସିବା ଯାଏଁ ।

ସବାଶେଷକୁ ତମେ କେବଳ ଭାବ ନାହିଁ, ମଣିଷଟିଏ ହୋଇଥିବା ଯୋଗୁଁ, ତମେ 'କାହିଁକି ?' 'କାହିଁକି ଏମିତି ହେବ, ଏଇଟା ଅନ୍ୟାୟ !' ବୋଲି ପଚାରୁଥାଅ, ଫାଟରେଇ ହୁଅ । ହେଲେ କାହାକୁ ପଚାରି ତା' ଭଗବାନଙ୍କୁ ଜଣା । ଏଇ ଅଭିଯୋଗପଣ, ଯାହାକୁ ଦାର୍ଶନିକ ଜିଜ୍ଞାସାର ମର୍ଯ୍ୟାଦା ଦିଆଯାଏ, ତାହାହିଁ ଦୁଃଖର ଶେଷକଥା, ତା'ର ଚୂଡ଼ାମଣି, କାହିଁକିନା ସେଥିର କୌଣସି ଉତ୍ତର ନାହିଁ ।

ସେହେତୁ ନିର୍ବୋଧ, ବିଫଳ, ହେଲେ ସରଳ ଓ ସୁକୁମାରିଆ ଭଗବାନ୍ ଦାସର ଦୁଃଖକୁ ଦୟନୀୟ ବୋଲି କୁହାଯାଇପାରେ କେବଳ ଗୋଟିଏ କାରଣରୁ । ସେ ବେହିଆ ତଥାପି ହସୁଥିଲା ଏତେଦିନ ଯାଏଁ । ମୋତେ ଯେତେ ମାଡ଼ ଦେଲେ ଦିଅ, ମୁଁ ତଥାପି ହସୁଥିବି— ଏଇ ଭାବରେ । ଦୁଃଖ ନାମକ ବ୍ୟବସ୍ଥାକୁ ଅବଜ୍ଞା କଲି ପରି । କେଉଁ ବିଧାତା କ 'ବ୍ୟବସ୍ଥା' ତାଁର ଏଇ ଅବଜ୍ଞାକୁ ସହ୍ୟ କରିପାରିବ, କହିଲେ ? ତେଣୁ ଲୋକଟାକୁ କାନ୍ଦିବାକୁ ପଡ଼ିଲା । ଯାହାହେଉ କାନ୍ଦିବାକୁ ପଡ଼ିଲା, ଏବଂ ସେମାନେ ଜିତିଲେ । ହେଲେ, ଲଜ୍ଜାର ବିଷୟ, ଯେ ମୃଦୁମନ୍ଦ ହସିବାରେ (ଯେଉଁଥିରେ ଆମୋଦ ଓ ସମ୍ବେଦନା ଉଭୟ ଥାଏ) ଅଭ୍ୟସ୍ତ

ଲେଖକ, ଯେ 'ଧାତ୍‌ତେରି ! ଏଭଳି ଦୁଃଖକୁ ଦୟା ଦେଖାଇବା ଉଚିତ' ବୋଲି ଗୋଟିଏ ମନ୍ତବ୍ୟ ଝାଡ଼ି ଦେଇଥିଲା, ତା'ର ବି ମନେ ହେଉଛି ସେ କାନ୍ଦି ପକେଇବ କି କ'ଣ । କିନ୍ତୁ ଭୟ ନାହିଁ, ସେ କାନ୍ଦିବ ନାହିଁ, ନିଜକୁ ସମ୍ଭାଳି ନେଇ ପାରିବ । ତା'ର ସେ କ୍ଷମତା ଅଛି ।

କିନ୍ତୁ ଦୁଃଖର ତତ୍ତ୍ୱକୁ ନେଇ ସେ ନିର୍ଭୟରେ କହିବାକୁ ଚାହେଁ ଯେ ମଣିଷର ଦୁଃଖ ଅଟେ ଦୁଃଖ । ସକାରଣ । ପୂର୍ଣ୍ଣଚ୍ଛେଦ ।



# ତରଙ୍ଗ

ଶୂନ୍ୟତାରୁହିଁ ଶାନ୍ତି ଆସେ । ଦେଖୁନା, ବର୍ତ୍ତମାନ କ'ଣ ମନରେ ଆସୁଛି, ଏକ ମହାନ୍ ସୁନ୍ଦର ଶାନ୍ତିଭାବ ଛଡ଼ା ? ଆଗରେ ଯମୁନା ନଈ । ନଈ କୂଳରେ ଭେଳା ଭେଳା ଧୋବଲି ଚଢ଼େଇ ଉଡଉଡ ହେଉଛନ୍ତି, କ'ଣ ସବୁ ଝୁଙ୍କୁଛନ୍ତି, ସେଇଠୁଁ ଉଡ଼ି ଯାଉଛନ୍ତି ପାଣିରେ ବସି ଖେଳିବା ପାଇଁ ଏବଂ ଯମୁନାରେ ତରଙ୍ଗ । ଉତ୍ତାଳ ନୁହେଁ କି ଉଚ୍ଛଳ ନୁହେଁ, ମୃଦୁମଧୁର । ଶାନ୍ତିକୁ ଚହଲେଇ ଦେଲାପରି ।

ଭୋଳାନାଥବାବୁ ଏହି ମର୍ମରେ ନିଜର ନବଜାଗ୍ରତ ଶାନ୍ତିବୋଧକୁ ଚହଲୁ-ଥିଲେ, ହେଜୁଥିଲେ, ଏବଂ ଭାବୁଥିଲେ ଯେ ସେ ମିଛୁଟାରେ ଏଡ଼େ ମୁହଁ କରିଥିଲେ, ବାପାବୋଉଙ୍କ ଭସ୍ମାବଶେଷ ନେଇ ଘରୁ ବାହାରିବା ପୂର୍ବରୁ । ହଁ, ସେତେବେଳେ ମନେ ହେଉଥିଲା ଯେ ସେ ତାଙ୍କୁ ନିଶ୍ଚିହ୍ନ କରିବାକୁ ଯାଉଛନ୍ତି । ଖାଲି ତାଙ୍କ ଘରର ଅଗଣାରୁ ନୁହେଁ, ମଧ୍ୟ ତାଙ୍କ ମାନସପଟରୁ । ଯେମିତିକି ଶୂନ୍ୟତା ସଂପୂର୍ଣ୍ଣ ହୋଇ-ଯିବ । କ'ଣ ନା ତାଙ୍କ ଆତ୍ମାକୁ ଏତେଦିନ ଯାଏଁ ବନ୍ଧନରେ ପକେଇ ରଖିବା ଉଚିତ ନୁହେଁ । ତାଙ୍କୁ ମୁକ୍ତି ଦିଅ । ସେମାନେ ଅଖଣ୍ଡ ସ୍ୱର୍ଗଲାଭ କରନ୍ତୁ, ମର୍ତ୍ତ୍ୟକୁ ଫେରି ଆସିବାର କଷ୍ଟ ନକରନ୍ତୁ । ଇତ୍ୟାଦି ! ରବିଶ୍ ! ଆତ୍ମା ଯଦି ଅନୁଭବୀ ହୋଇଥାଏ, ତା'ହେଲେ ସେମାନେ କାହିଁକି ରହିବେ ନାହିଁ ମୋ ପାଖରେ, ମୋ ଘର ଅଗଣାରେ ? ମରା କଥା ଭିନ୍ନ, ପିଲାଙ୍କ କଥା ଭିନ୍ନ । ସେମାନେ ତାଙ୍କୁ ଅନୁଭବ କରି ନାହାନ୍ତି ତାଙ୍କ ଜୀବନଟାଯାକ, ମୁଁ ଯେମିତି କରିଛି । ମୋର ଶିରା-ଧମନୀରେ, ମୋର ପ୍ରତିଟି ରକ୍ତବିନ୍ଦୁରେ । ଯେଉଁ ଅନୁଭବ ଜରି ଯାଇଛି ଏଇ ପୁରୁଣା ଘରର କାନ୍ଥରେ, ଚଟାଣରେ, ସେଥିର ପ୍ରତ୍ୟେକ ଠଣାରେ, ପିମ୍ପୁଡ଼ିଗାତରେ (ଗୁରୁଣ୍ଡିଲା ବେଳେ ମୁଁ କୁଆଡ଼େ ଜଦା ପିମ୍ପୁଡ଼ିମାନଙ୍କୁ ମାରି ଦେଇ ପାଟିରେ ପକଉଥିଲି । ବୋଉଟା ମିଛୁଆଣି ! ନହେଲେ କି ତା' ପୁଅ ଗୋଟାଏ ଲେଖକ ହୋଇଥାଆନ୍ତା ?) ପିଲାଦିନର ବିଶିଷ୍ଟ ଅନ୍ଧାରୁଆ କୋଣରେ, ଯେଉଁଠି କାନ୍ଥରେ ଡେରି ହୋଇଥିବା ବଗଟ ହେଁସ ଏକ ବିଶାଳ ପିତ୍ତଳ ଗୋବବସା ସିନ୍ଦୁକର ପହରା ଦେଉଥିଲା, ଆଉ ଆମେ କୁଲୁରୁକାଲୁରୁ ହେଉଥିଲୁ ତା' ପଛରେ ବସି । 'ଆମେ' ଯେ ସବୁବେଳେ ଭାଇ-ଭାଇ ଥିଲୁ ତା' ନୁହେଁ, ଦିନାକେତେ ପଡ଼ିଶାଘର ମିଲି ବି ସାଙ୍ଗସୁଖ ହେଉଥିଲା ସେଠି, ଚପି ହୋଇଯାଉଥିଲା ମୋ ଦେହରେ, ଆଉ ଅତି ବେଶୀ କୁଲୁରୁକାଲୁରୁ ହେଉଥିଲା—ଫୁଲେଇଟାଏ ! (ଆରେ, କଏ ପଶିଛି ତା'

ଭିତରେ ? ଆସ, ବାହାର ଆସ । ଆମ୍ବମଚଉକରୁ ଜେଜେ ପାଟି କରି ଉଠନ୍ତି । ହେଲେ ଗରିଲା ପରି ମନେ ହୁଅନ୍ତି ନାହିଁ । ଦ୍ୱିତୀୟ ଥର ଡାକ ଛାଡ଼ନ୍ତି ତାଙ୍କ ଚାଙ୍ଗରେ ବସି ଚୁଡ଼ାଭଜା ଖାଇବା ପାଇଁ, ଆଉ ଆମେ ସୁନାପିଲା ପରି ବାହାରି ଆସୁ ତାଙ୍କ ଆଜ୍ଞା ପାଳନ କଲାପରି । ଏବଂ ଚୁଡ଼ାଭଜାରୁ ଯେତିକି କାଳ୍ କିସ୍‌ମିସ୍ ଟୁଙ୍କି ବାରେ ଲଗିପଡ଼ୁ, ମଧ୍ୟ ଛଡ଼ାଛଡ଼ି ହେଉ, କଳି କରୁ।…ହୁଁ, ତଳପିଣ୍ଡାର ସେଇ ଆମ୍ବମଚଉକଟା ଏବେ ମଧ୍ୟ ବିଦ୍ୟମାନ, ତା'ର ଲମ୍ବା ଦ'ହାତକୁ ମେଲେଇ ଦେଇ । ହେଲେ ଖାଲି ପଡ଼ିଛି ।

ମନେ ପଡ଼ୁଛି । ଜେଜେଙ୍କ ପରେ ବାପା । ଯେତେବେଳେ ସେ ବୁଢ଼ା ହେଲେଣି, ଆଉ ମୁଁ ଜଣେ ଉଚ୍ଚଶିକ୍ଷିତ ମଧ୍ୟବୟସ୍କ ପଦାଧିକାରୀ । ଧୀରକଣ୍ଠରେ ଡାକନ୍ତି, ମୁଁ ଯେତେବେଳେ ଯାଏ ସେଇ ବାଟ ଦେଇ । —"କୁଆଡ଼େ ବାହାରିଛୁ କି ? ଆ' ବସ୍ ମୋ ପାଖରେ ।…ବୁଝିଲୁ ଭେଲା, ଏଇ ନେହେରୁମିଆଁ ଯୋଗୁଁ ଦେଶଟା ଛାରଖାର ହୋଇଗଲା !" ବାପା ଜାଣିଶୁଣି ଉଖୁରେଇ ହୁଅନ୍ତି ଏମିତି, ତାଙ୍କ 'ହୁଦୁହୁ' ସାଙ୍ଗରେ ମୋର ଅପଡ଼ ବୋଲି ଜାଣିଥିଲେ ମଧ୍ୟ । ସହଜେ ମୁଁ ପୁଣି ତାତି ଉଠେ ଓ ଯୁକ୍ତି କରେ ତାଙ୍କ ସାଙ୍ଗରେ ନେହେରୁଙ୍କ ତରଫରୁ । କିନ୍ତୁ ବାପା ଆଦୌ ବିଚଳିତ ହୁଅନ୍ତି ନାହିଁ, ପାଲଟା ଯୁକ୍ତି ମଧ୍ୟ କରନ୍ତି ନାହିଁ । ସତେକି ସେ ତାଙ୍କ କାମ ପୂରା କରି ଦେଇଛନ୍ତି । ନିଜକୁ ବ୍ୟକ୍ତ କରି ଦେଇଛନ୍ତି ତାଙ୍କ ପାଠୁଆ ପୁଅ ଆଗରେ । ଘରେ ଆଉ କିଏ ଅଛି ଯେ ତାଙ୍କ କଥା ଶୁଣିବ, ଓ ଦେଖିବ ମୂଳ ଦେଇ ଗୋଟାଏ ଜ୍ଞାନଗର୍ଭ ତର୍କ ଆରମ୍ଭ କରିଦେବ ? ବାପାଙ୍କୁ ଭଲ ଲାଗେ । ସତକଥା କହିବାକୁ ଗଲେ ମୋତେ ବି ଭଲ ଲାଗେ ।

ସେ ଖାଲି ମୋର ବାପା ନଥିଲେ, ସେ ଥିଲେ ମୋର ସାଙ୍ଗ !

ଏମିତି ନାନା ତଥାକଥିତ ଆଲୋଚନା ହୁଏ ଆମ ଭିତରେ । ବିଦେଶୀ ନୀତିଠାରୁ ଆରମ୍ଭ କରି ସରକାରଙ୍କ ସାମ୍ୟବାଦ, ଇଂରେଜୀଶିକ୍ଷା ଇତ୍ୟାଦି ଇତ୍ୟାଦିକୁ ନେଇ । ଆମ୍ବମଚଉକରେ ଲମ୍ବି ଯାଇଥିବା ବାପା ଓ ପାଖ ଚଉକରେ ବସିଥିବା ତାଙ୍କ ବଡ଼ପୁଅଙ୍କ ଭିତରେ । ନେପଥ୍ୟେ ବୋଉ ଆଉ ତମେ । ଉଲୁଗୁଣା ଦିଅ ତମେ ଦ'ଜଣ ଯାକ (ବାପାଙ୍କ କାନକୁ ଶୁଭେ ନଶୁଭେ ସେକଥା ଭିନ୍ନ), ଯେ ବାପା ଖାଲି ଘରର ମାଈପିଙ୍କ ଉପରେ ଫଅଁ ଫଅଁ ହୁଅନ୍ତି ଗୃହଳଡ଼ାଇକୁ ନେଇ, କିନ୍ତୁ ପୁଅଙ୍କ ସାଙ୍ଗରେ ଡିସ୍‌କସନ୍ ହୁଏ ଡିସ୍‌କସନ୍ !

ଆରେ କହିଲ ପରା ସେ ମୋର ସାଙ୍ଗ ଥିଲେ । କୋଉ ବିଷୟରେ ଆମର ଡିସ୍‌କସନ୍ ନହୋଇଛି ? କହିଲେ, 'ବାର୍ଥ୍ କଣ୍ଟ୍ରୋଲ୍ ! ଯେତିକି ଭଣ୍ଡାମି ! ସେମିତିକା ଆମ୍ବମରେ ବେଧ ପକେଇ ହେବ…" ମୁଁ ମାଡ଼ି ବସିଲି ତାଙ୍କୁ ।

ମଣିଷର ନୈସର୍ଗିକ ସେକ୍ସପ୍ରବୃତ୍ତି ଉପରେ ଗୋଟାଏ ଭାଷଣ ଶୁଣାଇଲି । କହିଲି ଯେ ତାକୁ ସଂଯତ କରିବ କି ନ କରିବ ସେକଥା ଅଲଗା, ନିଜର ନୀତିବୋଧ ଦୃଷ୍ଟିରୁ କିନ୍ତୁ ଜନବହୁଳ ଭାରତର ସ୍ୱାର୍ଥଦୃଷ୍ଟିରୁ ଇଏ ଆମର କର୍ତ୍ତବ୍ୟ । ବାପା ଚୁପ୍ ରୁହନ୍ତି । କିନ୍ତୁ ଦିନେ କହି ପକେଇଲେ ବ୍ୟାଥାତୁର କଣ୍ଠରେ, "ଶୁଣ୍, ତୁ କିନ୍ତୁ ସେସବୁ କିଛି କରିବୁ ନାହିଁ, ବୁଝିଲୁ ?" ସାଙ୍ଗପଣିଆ ଚଳିଲା ନାହିଁ ଆଉ । ବାପା ପୁଅକୁ ମିନତି କରୁଛି । ଯୁକ୍ତିରେ ଜିଣି ହେବ ନାହିଁ ତାକୁ, ତେଣୁ ତା'ର ହୃଦୟକୁ ଛୁଇଁବାକୁ ହେବ । କମ୍ ଫିକର ଜଣା ନଥିଲା କି ଆମ ବାପାଙ୍କୁ !

ସେଇ ବାପାଙ୍କୁ ତାଡ଼ି ନିଆ ହେଉଛି ସିମେଣ୍ଟ ସମାଧି ଭିତରୁ । ହେଲେ ଏବେ ଆମେ କରୁ ନାହୁଁ ସେଇ କାମଟା । ରଦୁଆ କରୁଛି । ଯେଉଁ ଟିକିଏ ବାପା ରହିଛନ୍ତି ତା' ଭିତରେ ଚମୁଟାଏ ପାଉଁଶ ହୋଇ, ତାକୁ କାଢ଼ି ଆଣୁଛି । ଆଉ କହୁଛି – ତମେ ଆଉ ରହି ପାରିବ ନାହିଁ ଏଠି, ବୁଝିଲ ବଡ଼ବାବୁ ? ଆମ ବାବୁ-ମାଆଙ୍କ ହୁକୁମ୍ । ତମେ ପଡ଼ିବ ଯାଇଁ ତ୍ରିବେଣୀ ସଙ୍ଗମରେ । ମୋକ୍ଷ ହେବ ତମର, ମୋକ୍ଷ···

ବଦ୍‌ମାସ୍‌ଟାଏ ! କହିଲା—ମୁଁ ନିଜ ଆଖିରେ ଦେଖିଛି ପରା ? ବାଡ଼ିଆଡ଼େ କ'ଣ ଖୁସ୍‌ଖୁସ୍ ହେଉଛି ମୁଁ ଗଳି ଦେଖିବା ପାଇଁ । ଧାହାଟୋକାଙ୍କୁ ବିଶ୍ୱାସ ନାହିଁ । ପାଟେରି ତେଇଁ ଆସିଛନ୍ତି ମୋ କଦଳୀକାନ୍ଧିକୁ ଚୋରି କରିନେବେ । କିନ୍ତୁ ଦେଖିଲି କ'ଣ କହିବ ? ଆମ ବଡ଼ବାବୁ ପହରା ଦେଉଛନ୍ତି ସେଠି । ଇଲେ ବୋପାଲେ କହି ମୁଁ ଏକା ଭାଆଁକେ ଭାଗେ !" ମିଛ । ତାହା ମିଛ ତୋର ମୂର୍ଖ ମନର ବିକାର । ଆମ ବାପାଙ୍କର ଆଉ କିଛି କାମ ନଥିଲା, ଭୂତ ହୋଇ ପହରା ଦେଇଥିଲେ ତୋ କଦଳୀକାନ୍ଧିକୁ ! କିନ୍ତୁ ଦୁଃଖର ବିଷୟ, ତମେ ତା' କଥାରେ କାନ ଦେଲ, ମୀରା । ଆଉ ମୋତେ ପରେ କହିଲ ଯେ ଯେତେଦିନ ଯାଏଁ ଅସ୍ଥି ରହିଥିବ ଘରେ, ସେତେଦିନ ଯାଏଁ ଲୋକମାନେ ଭୂତ ଦେଖିବେ ଏଠି । ଖାଲି ଚାକରବାକର ନୁହେଁ, ଯେଉଁ ଭଡ଼ାଟିଆଙ୍କୁ ରଖିବ ବୋଲି ବସିଛ ତଳ ମହଲାରେ, ସେମାନେ ବି ଭୂତ ଦେଖିବେ । ତମେ ଜାଣିଛ ଆମ ଲୋକମାନଙ୍କ କଥା । ପ୍ରକାରାନ୍ତରେ କୁହାଗଲା ଯେ ମୁଁ ଯାହା ଲଗେଇଛି ତମ ସାଙ୍ଗରେ ଏତେଦିନ ହେଲା, ସେଇ କାମଟାକୁ ଶୀଘ୍ର ସାରିଦେଇ ଆସ । ବୁଝିଲି, ବୁଝିଲି ତମେ ଠିକ୍ କଥା କହୁଛ । ମୁଁ ପଦୁଟିଏ ପ୍ରତିବାଦ କରି ନ ଥିଲି । ଅପଚାନ୍ତୁ ଘନଘନ ମୁଣ୍ଡ ଟୁଙ୍ଗାରି ଥିଲି । କିନ୍ତୁ କିଏ ଜାଣିଥିଲା ସେଇ ଦିନଟା ଗୁହୁଁ ଗୁହୁଁ ଆସି ପହଞ୍ଚିଯିବ ? ଭାରତ ସେବାଶ୍ରମରେ ରହିବା ଠିକଣା ହୋଇଯିବ, ଟ୍ରେନ୍‌ରେ ବର୍ଥ ମିଳିଯିବ ? ଆଉ ମୋତେ ଦେଖିବାକୁ ପଡ଼ିବ ତାଙ୍କୁ ତାଡ଼ି ଆଣିବାର ଦୃଶ୍ୟ ?

"ଆରେ-ରେ, କ'ଣ କରୁଛୁ ? କ'ଣ ତାଳି ହୋଇଗଲା ?"

"କିଛି ନାହିଁ ଆଜ୍ଞା, ବଡ଼ମାଆଙ୍କ ଅସ୍ଥି ତେଲରେ ବୁଡ଼ା ହୋଇ ରହିଥିଲା, ଖରାପ ହେବ ନାହିଁ ବୋଲି, ସେଇଥିରୁ ଟିକିଏ ଲାଗି ହୋଇଗଲା ।"

ତେଲ ନୁହେଁ ତ ମୁଁ କ'ଣ କହୁଛି ମୋ ବୋଉର ରକ୍ତ ଲାଗି ହୋଇ ଗଲା ? ଭୋଲାନାଥବାବୁଙ୍କ ଲାଲ ମୁହଁ ଆହୁରି ଲାଲ ହୋଇ ଉଠିଲା ତାଙ୍କର ଅକାରଣ କ୍ରୋଧକୁ ଲୁଚିବାକୁ ଯାଇ । ଖାଲି ରଘୁଆ ଉପରେ ନୁହେଁ, ସେ ନିଜ ଉପରେ ବି ରାଗିଲେ, କହିଲେ—ମୂର୍ଖ ! କୋଉ ରକ୍ତ ଥିଲା ତା'ର ଦୁର୍ବଳ ହାଡ଼ଚମ ଦେହରେ, ଯେ ବୋହିପଡ଼ିବ ଏମିତି ?

ସବୁଦିନେ ଶୁଣୁଚି । ଶୁଣୁଚି ଓ ସୁକୁମାରୀ । ଟିକିଏ ପାଟିତୁଣ୍ଡରେ ତା' ମୁଣ୍ଡ କ'ଣ ହୋଇଯିବ । ଟିକିଏ କଥାରେ କାନ୍ଦି ପକେଇବ । ଏବଂ କାହାରି ମନରେ କଷ୍ଟ ଦେବ ନାହିଁ । କିନ୍ତୁ ବସ୍ତୁଗ୍ରେ ସେଇଠି ଅସୁବିଧା । ସିଧା କଥା କହିପାରେ ନାହିଁ କାଳେ କିଏ ଭୁଲ୍ ବୁଝିବ ବୋଲି, ଆଉ ନିଜେ ବିପଦରେ ପଡ଼େ । ହେଲେ ସେ ତା' ବୁଢ଼ା ପୁଅକୁ ଘଣ୍ଟି ଘୋଡ଼େଇ ରଖେ ତା'ର ପାରୁପର୍ଯ୍ୟନ୍ତ, ଯଦିଓ ସେଥିରେ ଦରକାର ନଥାଏ ଅନେକ ସମୟରେ । ବୋଉ ଭାବେ ଯେ ତା'ର ଭୋଳା ପୁଅଟାକୁ ସମସ୍ତେ ଭୁଲ୍ ବୁଝୁଛନ୍ତି । ତେଣୁ ଥଟ୍ଟାରେ ବି ଯଦି କେହି କିଛି କହେ ତା' ବିରୁଦ୍ଧରେ, ସେ ଗୋଟାଏ ସଫେଇ ବାଢ଼ି ବସେ ପୁଅ ତରଫରୁ । ଦୁର୍ବଳ ବୋଉ ବୁଝିଥିଲା ମୋର ଦୁର୍ବଳତା, ବୋଧହୁଏ ଉଚିତରୁ ବେଶୀ ।

ବାପାଙ୍କ ଆରାମଚଉକି ପରି ପଟାଖଟ ବି ଖାଲି ପଡ଼ିଛି ତା' ମଲା ଦିନୁ । ଯେଉଁଠି ସେ ପଡ଼ି ରହିଥାଏ ସଦାବେଳେ, ଆଉ ବକର ବକର ହୁଏ ବାପାଙ୍କ ସାଙ୍ଗରେ । ବାପା କ'ଣ ଶୁଣନ୍ତି କି ନଶୁଣନ୍ତି ଭଗବାନ୍‌ଙ୍କୁ ଜଣା, କିନ୍ତୁ ଥାଇ ଥାଇ ଚିଡ଼ି ଉଠନ୍ତି—ଓହୋ ! ତମର କାହିଁକି ମୁଣ୍ଡ ବଥଉଛି, ମୁଁ ବୁଝିବି ନାହିଁ ସେକଥା ? ପ୍ରତ୍ୟେକ ଅଭିଯୋଗ କି ପରାମର୍ଶକୁ ସେଇ ଏକା ଭଳି ଉତ୍ତର । ମୁଁ ବୁଝିବି । ତମେ ମାଇପି ଲୋକ, କ'ଣ ଜାଣିଛ ସେ ବିଷୟରେ ? ତଥାପି ବୋଉର ବକର ବକର କେବେହେଲେ ବନ୍ଦ ହୁଏ ନାହିଁ, କି ବାପାଙ୍କର ମର୍ଦ୍ଦ-ତଥା-ସ୍ୱାମୀସୁଲଭ ଉଚ୍ଚାରଣ । କିନ୍ତୁ ତା'ରି ଭିତରେ ବି ବାପା ବେଳେବେଳେ ଖୁସିଗପ ହୁଅନ୍ତି ବୋଉ ସାଙ୍ଗରେ—"ମନେ ପଡ଼ୁଛି, ଭୋଳବୋଉ ? ଏଇ ଟୋକା ଯେତେବେଳେ ପାଞ୍ଚ ବର୍ଷର ହୋଇଥିଲା, ଆଉ ଆମେ ପୁରୀରେ ଥିଲେ, ଇଏ କେମିତି ଗୋଟାଏ ଦୋଅଣି ଗିଳି ଦେଇଥିଲା ? ସେଇ ଦିନଠୁଁ ମୋର ମହା ଡର, ପିଲାଙ୍କ ହାତକୁ ଟଙ୍କାପଇସା ବଢ଼େଇ ଦେବାକୁ···" କିନ୍ତୁ ବୋଉକୁ ଗୋଟାଏ ସୁବିଧା ମିଳିଯାଏ ବାପାଙ୍କୁ ଚିଡ଼େଇବା ପାଇଁ । କୁହେ—"ହଃ ! ତମର କୋଉ କଥାକୁ ଡର ନୁହେଁ କି ତମ ପିଲାଙ୍କୁ ନେଇ ?" ବାପା କିନ୍ତୁ ହସି ଦିଅନ୍ତି ବିଦ୍ରୂପ

ବିଶେଷକୁ ଉପଭୋଗ କଲା ପରେ । ପ୍ରତାପୀ ହାକିମ ସୋମନାଥ ଦାସ ପିଲାଙ୍କ ପାଇଁ ଚିନ୍ତା ନାହିଁ ତ ଆଉ କ'ଣ ଚିନ୍ତା ନିଜ ପାଇଁ ? ନା ଦୁନିଆଁର ରାମାଦାମା-ଶାମାଙ୍କ ପାଇଁ ?

ଆଜି ପଟାଖଟ ଅନେଇଛି ଆରାମଚଉକିକୁ । ଆରାମଚଉକି ଅନେଇଛି ପଟାଖଟକୁ । ମୁଁ କୋଉଥିରେ ବସି ନାହିଁ । କି ବସିବି ନାହିଁ କିନ୍ତୁ ମୁଁ ତାକୁ ସବୁ ହଟେଇ ଦେବା ଲାଗି ଚାହେଁ ନାହିଁ ସେଠୁଁ । କାଳେ ସେମାନେ ଏବେ ବି ମନ କରିବେ ସେଠିକି ଆସି ଲମ୍ବିଯିବା ପାଇଁ । ଲମ୍ବିଯିବେ, ଆଉ ବୁଢ଼ାଦିନିଆ କଳି କରିବେ କି ପ୍ରେମ···

ଭୋଳାବାବୁଙ୍କ ମୁହଁର ଭାବ କୋହଳ ହୋଇ ଆସିଥିଲା ଏମିତି ଭାବିଲା ବେଳେ । କହିବାକୁ ଗଲେ ଅଳ୍ପବହୁତ ହସିଲା ପରି । କିନ୍ତୁ ମୁହୂର୍ତ୍ତିକ ପରେ, ତାଙ୍କର ଚେତା ହେଲା ଯେ କଳ୍ପନା ହେଉ କି ଫ୍ୟାଣ୍ଟାସି ଏଣିକି ତା'ର ସମ୍ଭାବନା ବି ନାହିଁ । କାହିଁକିନା ସେମାନଙ୍କ ଆତ୍ମାକୁ କୁହାଯାଉଛି—ବାହାର ଯା' ଏଠୁଁ ! ବାହାର ଯା', ନହେଲେ ତମକୁ ମୋକ୍ଷ ମିଳିବ ନାହିଁ କି ଆମକୁ ଶାନ୍ତି ମିଳିବ ନାହିଁ !

ସେଇକିବେଳେ ତାଙ୍କ ନୀରବ କ୍ରୋଧ ସବୁଠାରୁ ଉପରକୁ ଚଢ଼ି ଯାଉଥିଲା କିନ୍ତୁ ସେଥିପାଇଁ ସେ ମୀରାକୁ କିମ୍ବା ନିଜକୁ ଦୋଷ ଦେଲେ ନାହିଁ । ମାଡ଼ ହେଲା ରଘୁଆ ଉପରେ, ଯେ ଭସ୍ମୀକୃତ ଦୁଇଟି ଅସ୍ଥିର ପାତ୍ରକୁ ନେଇ ଆସୁଥିଲା ତାଙ୍କ ଆଡ଼କୁ । ଆସି ବଢ଼େଇ ଦେବ ତାଙ୍କ ହାତରେ ।···ବେଶ୍ ଭଲ କଥା, ତୋ' କାମଟାକୁ ସାରି ଦେଲୁ, କିନ୍ତୁ ସେଥିରେ ଏତେ ଖୁସି ହେବାର କ'ଣ ଅଛି ?

ଯାହାହେଉ ଭୋଳାନାଥବାବୁଙ୍କୁ କିଛି କହିବା ଦରକାର ହେଲା ନାହିଁ ପ୍ରଥମେ । ଦେଖିଲେ ମୀରା ହାତ ବଢ଼େଇ ନେଇ ଆସୁଛି ତାକୁ । କହିଲା, "ଦିଅ, 'ମୁଁ ତାକୁ ଭଲ କରି ବାନ୍ଧିବୁନ୍ଧି ଦିଏ । ନହେଲେ ତମେ ଯେମିତି ଅଥରପା ଲୋକ, କୋଉଠି ଗଳେଇ ପକେଇବ ତାକୁ । ଶୁଣ, କିଛି ହେଲେ ଘରକୁ ଫେରିବ ନାହିଁ—ବୁଝିଲ ? ସବୁ ଭସେଇ ଦେବ ସଙ୍ଗମରେ···"

ହଁ, ସବୁ ଭସେଇ ଦେବ ସଙ୍ଗମରେ । ବାପା ବୋଉଙ୍କର କିଛି ବୋଲି କିଛି ଫେରି ଆସିବ ନାହିଁ ଏଇ ଘରକୁ । ଯେଉଁଠି ବାପା ଜନ୍ମ ହୋଇଥିଲେ । ଆଉ ବୋଉ ବୋହୂ ହୋଇ ଆସିଥିଲା । ଖାଲି ଯୋଉ ବଡ଼ ଫଟୋ ଦି'ଟା ଟଙ୍ଗା ହୋଇଛି ଦାଣ୍ଡଘରେ, ସେଇ ଥିବ ତାଙ୍କ ସ୍ମୃତିର ଚିହ୍ନକ । ନା ତାକୁ ବି ନେଇ ଭସେଇ ଦେବ ସଙ୍ଗମରେ ?

ଭୋଲାନାଥବାବୁ ମୀରା ଆଡ଼କୁ ଅନେଇଲେ । କ୍ରୋଧ ନୁହେଁ, ଆହତ ଅଭିମାନ ଜମି ଯାଇଥିଲା ତାଙ୍କ ମୁହଁରେ ।···ନା, ମୀରା, ତମ ଦୋଷ ନୁହେଁ । ତମେ ମୋତେ ଠିକଣା ପରାମର୍ଶ ଦେଇ ଆସିଛ. ମୂଳରୁ ଶେଷ ଯାଏଁ । ଶାସ୍ତ୍ର ଅନୁଯାୟୀ ତାକୁ ଖୁଣିବାର ନୁହେଁ । ଯେତେଦିନ ଏଠି ରହିଥିବେ ସେମାନେ, ତାଙ୍କ ଅସ୍ଥି ହେଉ କି ଆତ୍ମା, ସେତେଦିନ ଯାଏଁ ସେମାନେ କଷ୍ଟ ପାଇବେ । ଅତଏବ ତାଙ୍କୁ ବିଦାୟ ଦିଅ ଚିରଦିନ ପାଇଁ । ଠିକ୍ କଥା, ଖାଣ୍ଟି କଥା । ଯଥାଶୀଘ୍ର ସାରି ଦିଅ କାମଟାକୁ । କାରଣ ପୁଅ ବି ବୁଢ଼ା ହେଲଣି । ସଙ୍ଗମକୁ ଯାତ୍ରା କରିବାର ଶକ୍ତି ବି ଚାଲିଯିବ କେତେଦିନ ପରେ । ନା ମୀରା, ମୁଁ ତମକୁ ମୋଟେ ଦୋଷ ଦେଉ ନାହିଁ । କିନ୍ତୁ ଏ ବିଷୟରେ ଏତେ ତତ୍ପରତା ନ ଦେଖେଇଲେ ଚଳି ନ ଥା'ନ୍ତା ?

ବିଦାୟୀ ଭାବାବେଗ, ଗୋଟାଏ ଅମୂଲ୍ୟ ଧନର ଅବଶେଷକୁ ଚିରଦିନ ପାଇଁ ହରେଇଲା ପରେ, ତା'ର ଧାପେ ମଧ୍ୟ କ'ଣ ମୁକ୍ତି ଦେଉ ନାହିଁ ତମ ମନକୁ ?

"ଶୁଣ, ସ୍ମା'କୁ ସାବଧାନରେ ରଖିବ । ଆଉ ଶେଷ ମୁହୂର୍ତ୍ତରେ ଦେଖେଇବ ପଣ୍ଡାକୁ, ଯାହାକୁ ସେମାନେ ଠିକଣା କରିଥିବେ ତମ ପାଇଁ । ନ ହେଲେ···ଆରେ, ତମର କ'ଣ ହୋଇଛି ? ନର୍ଭସ୍ ହେଉଛ ନା କ'ଣ ?"

ନର୍ଭସ୍ ? ଶେଷକୁ ଏଇଆ ବୁଝିଲ ତମେ ? ଭୋଲାବାବୁ ହସି ପକେଇଲେ । କିନ୍ତୁ ତାକୁ ଶୁଖିଲା ହସ ବୋଲି କହିବାକୁ ପଡ଼ିବ । ସେଇଠୁଁ ମୀରା ଦେବୀ ତାଙ୍କ ହାତ ଦି'ଟାକୁ ଧରି ପକେଇ କହୁଛନ୍ତି—

"ମୁଁ ତ ତମ ସାଙ୍ଗରେ ଯିବି ବୋଲି ବାହାରିଥିଲି । କିନ୍ତୁ ତମେ ନିଜେ ମନା କଲ । କହିଲ, ମ୍ୟାଲେରିଆ ହେଉ କି ଆଉ ଯାହା, ଏବେ ଗୋଟାଏ ଲମ୍ବା ବେମାରିରୁ ଉଠିଛି । ତମର ଆସିବା ଉଚିତ ନୁହେଁ । କିନ୍ତୁ ଦେଖୁଛି ମୋର ଜୋର୍ କରିବା ଉଚିତ ଥିଲା । ବୁଢ଼ା ବୟସରେ ତମକୁ କୋଉଠିକି ହେଲେ ଏକୁଟିଆ ଛାଡ଼ିବା ଉଚିତ ନୁହେଁ । ଆଉ କୋଉଥିକି ଭୟ ନାହିଁ ଯେ, ଖାଲି ତମ ନିଜର ସ୍ୱାସ୍ଥ୍ୟ ପାଇଁ । ନା ଆଉ କୋଉଥିକି ଭୟ କରିବାର କାରଣ ଅଛି ବୋଲି କହିବାକୁ ଚାହିଁ ?" ମୀରା ମୃଦୁମନ୍ଦ ହସଟିଏ ଛାଡ଼ି ଦେଲେ । ଅର୍ଥପୂର୍ଣ୍ଣ ହସ ।

ଖୁଞ୍ଚାଏ ଦେଲ ନା ଛାଡ଼ିଲ ! ନାଇଁ ମୀରା, ମୋ ପାଟିରୁ ପଦେ ହେଲେ କିଛି ବାହାରିବ ନାହିଁ, ଆଗ ଭଳି । 'ହ୍ୱାଟ୍ ଡୁ ୟୁ ମିନ୍ ?' ବୋଲି ପଚାରିବି ନାହିଁ ତମକୁ ଚ୍ୟାଲେଞ୍ଜ୍ କଲା ପରି । ସେଇଠୁଁ ତମେ କହିବ ଗମ୍ଭୀର ହୋଇ, 'ତମେ ଜାଣିଥିବ ।' ସେଇଠୁଁ ମୁଁ କହିବି, 'ନାଇଁ ମୁଁ ଜାଣେ ନାହିଁ କିଛି । କାହିଁକନା

ମୁଁ ଏମିତି କିଛି କାମ କରି ନାହିଁ, ଯାହାକି ତମେ କରି ନାହିଁ । ପ୍ରଭେଦ କେବଳ ମାତ୍ରାରେ । ତା' ଛଡ଼ା ପୁରୁଷ କେବଳ ଖେଳେ, ହୁଏତ ଭିନ୍ନ ସ୍ୱାଦୁ ପାଇବା ଲାଗି, କିନ୍ତୁ ନାରୀ ତା'ର ନୂଆ ଏକ୍ସପିରିଏନ୍ସକୁ ଅତି ମୂଲ୍ୟବାନ୍ ବୋଲି ମନେ କରେ । ତା'ର ମନେହୁଏ ଯେ ଏଇ ହେଉଛି ପ୍ରକୃତ ପ୍ରେମ, ହୃଦୟର ଦିଆନିଆ । ସେଇଠୁଁ ତମେ କହିବ, 'ରଖ ତମ ଲେକ୍‌ଚର୍ । ତମେ ଜାଣିଛ ତମେ କ'ଣ କରିଛ ଆଉ ମୁଁ କ'ଣ କରିଛି । ଆଉ କିଏ ହୋଇଥିଲେ— ।' ସେଇଠୁଁ ଚାଲିବ ପାଳି ହୁଏତ ମୁଁ ଦୁମ୍‌ଦୁମ୍ ହୋଇ ପଳେଇଯିବି ସେଠୁଁ, ତମର ବାକ୍ୟ-ବାଣରୁ ରକ୍ଷା ପାଇବା ଲାଗି । ହୁଏତ ମୁଁ ଏମିତି ରାଗିଯିବି ଯେ ନିଜକୁ ସମ୍ଭାଳି ପାରିବି ନାହିଁ, ପଢ଼ୁଥିବା ବହିକୁ ଫାଡ଼ିଦେବି, ଗ୍ଲାସ୍‌କୁ ତଳେ କଚାଡ଼ି ଦେବି, ଆଉ କ'ଣ ବୋଲି କ'ଣ କରିବି । ସେଇଠୁଁ ତମେ ମୋ ଆଡ଼କୁ କଟମଟ କରି ଚାହିଁବ, ଆଉ କହିବ—ବାହାରିଲା ରାଗ !...

କିନ୍ତୁ ସିଏ ଅତୀତ । ନିକଟ ଅତୀତ ନୁହେଁ । କେଉଁ ଯୁଗର କଥା ବୋଲି ମନେହୁଏ । ଯେତେବେଳେ ରକ୍ତ ଚଞ୍ଚଳ ଥିଲା, ଉଷ୍ମ ଥିଲା, ଆଉ ତା'ର ରଙ୍ଗ ବି ନାଲିଆ ଥିଲା । କ୍ରମଶଃ ସେମିତିକା କଳିକଜିଆ ପାଟିତୁଣ୍ଡ ନିରର୍ଥକ ବୋଲି ମନେ ହୋଇଛି । ଆମର ପିଲାମାନଙ୍କ ଆଗରେ ଯେଉଁ ତାମସା କରିବାକୁ ଲାଜ ଲାଗୁଥିଲା ସେମାନେ ବଡ଼ ହେଲାରୁ, ନାତିନାତୁଣୀମାନଙ୍କ ଆଗରେ ତା'ର ସମ୍ଭାବ୍ୟ ବିକଟାଳ ରୂପକୁ ଅନୁମାନ କରି ହେଲା ନାହିଁ । କ୍ରମଶଃ ସବୁ କନ୍ଦଳ ଥମି ଯାଇଛି । ସବୁକିଛି ଶୀତଳ ହୋଇଯାଇଛି । ରାତି ଶେଯରେ ବି । କନ୍ଦଳ ନାହିଁ କି ହଠାତ୍ ମନ ହେଉ ନାହିଁ କନ୍ଦଳଟାକୁ ହାଣି ଦେବା ପାଇଁ ଆଉ ଗୋଟାଏ ଧରଣର ଯୁଦ୍ଧରେ । ଯାହା ସରିଗଲା ପରେ ରକ୍ତ ବୁହେ ନାହିଁ, କେବଳ ଲୁହ । ଏବଂ ପୁରୁଣା ପ୍ରତିଶ୍ରୁତି ଦୋହରେଇ ହୁଏ ନୂଆ ନୂଆ ଭାଷାରେ ।

ଭାବିଲା ବେଳକୁ ହସ ଲାଗୁଛି । ଆମେ କ'ଣ ସେଇ ମଣିଷ ଥିଲେ ? ଯାହାହେଉ ଗଲାଣି ସେସବୁ, କେବେଠୁଁ ଗଲାଣି । ପିଲାମାନେ ମଧ୍ୟ ପାଖରୁ ଗଲେଣି, ନାତିନାତୁଣୀ ବି । ପୈତୃକ ଘରର କାନ୍ଥଗୁଡ଼ା ଖାଲି ସାକ୍ଷୀ ହୋଇ ପାରିବ ଯଦି ସେହିପ୍ରକାର ବେହେଲ ଦୃଶ୍ୟ ରଚିତ ହୁଏ ବୁଢ଼ାବୁଢ଼ୀଙ୍କ ଭିତରେ । ଆଉ ତାଙ୍କୁ ଯଦି ହସ ଲାଗିବ ନା, ତା'ହେଲେ ତାଙ୍କ ପୁରୁଣା ମାଟିଚୂନ ଦେହ ମିଛୁଟାରେ ଫାଟିଯିବ ପରା, ଝଡ଼ିପଡ଼ିବ ଖଣ୍ଡି ଖଣ୍ଡି ହୋଇ !

ନିଜକଥା ଛାଡ଼. ପିଲିପିଲିଙ୍କୁ ନେଇ କେଉଁ ଯୁକ୍ତିତର୍କ ପାଟିତୁଣ୍ଡ ହେବାର ଅବକାଶ ନାହିଁ । ତମେ ଭୁଲିକୁ ମୁହଁ ଦେଇଛ, ତମେ ପାତରଅନ୍ତର କରୁଛ ଭୁଲି ଦୁଲିଙ୍କ ଭିତରେ, ବାହାଘର ପାଇଁ ଗହଣା ଖଣ୍ଡେ କିଣିପାରିବ ନାହିଁ ତ ଝିଅର ବାପ ହୋଇଥିଲ କାହିଁକି, ଇତ୍ୟାଦି ଇତ୍ୟାଦିର ରଣଦୁନ୍ଦୁଭି ବାଜି ଉଠିବ, ଏଭଳି କୌଣସି ଆଶଙ୍କା ନାହିଁ ।

କେବଳ ରହିଛି ଏଇ ବିରାଟ ହାତିଶାଳ ପରି ଘରଅଗଣା ଓ ବାରଦୁଆରର ଯାକ । ହେଲେ ସେଥିରେ କେଉଁଠା ସ୍ମୃତି କଥା କହୁଥିଲା ମୋର ଜନ୍ମଜୀବନକୁ ନେଇ; ତା' ବି ଗଲା । ଯିବନି କେମିତି, ଯଦି ତା'ର ସମ୍ପର୍କକୁ ଏମିତି ଫିଙ୍ଗି ଦିଆଯାଏ ? ଫିଙ୍ଗି ଦିଆଯାଏ କି ପବିତ୍ର ଜଳରେ ଭସେଇ ଦିଆଯାଏ, ସେଇ ଏକା କଥା ।

ନା ମାଉସୀ, ମୁଁ କିଛି କହିବି ନାହିଁ । କାହିଁ କେତେ ଦିନପରେ ଖୁଞ୍ଚାଟାଏ ଦେଲ ମୋତେ ରସିକତା ଛଳରେ । କିନ୍ତୁ ମୁଁ ତମକୁ ଓଲଟା ଖୁଞ୍ଚା ଦେବି ନାହିଁ । ପାଲଟା ରସିକତାର ଛଳନା କରିବି ନାହିଁ । ସେସବୁ ଢଙ୍ଗ ଜଣା ନାହିଁ ମୋତେ । ଭୋଳବାବୁଙ୍କ ଭିତର ଚେହେରା ଅବ୍ୟାହତ ରହିଲା ।

'ନା ମାଉସୀ, ମୁଁ ତମକୁ କିଛି କହିବି ନାହିଁ ।' ଭୋଳବାବୁଙ୍କର ଏଇ ନିଷ୍ପତ୍ତି ଗର୍ଜି ଉଠିଲା ତାଙ୍କ ମନରେ, ଯେତେବେଳେ ସେ ଦେଖିଲେ ଯେ ସମାଧିଟାକୁ ବି ପୂରାପୂରି ଭାଙ୍ଗି ଦିଆ ହେଉଛି ସେଥିରୁ ଅସ୍ଥି ବାହାର କରି ନେଲା ପରେ ।... କିଛି କହିବି ନାହିଁ କାରଣ ମୁଁ ଜାଣେ ତମେ ତା'ର କ'ଣ ଉତ୍ତର ଦେବ । କହିବ ଯେ ଇଏ ସତସତିକା ସମାଧି ନୁହେଁ । ଅସ୍ଥିର ସୁରକ୍ଷା ଓ ସମ୍ମାନ ପାଇଁ ଗୋଟାଏ ଇଟାସିମେଣ୍ଟର ବସ୍ତୁ ତିଆରି ହୋଇଥିଲା ଯାହା । ଅସ୍ଥି ତ ଗଲା, ଆଉ ଇଏ ରହିବ କାହିଁକି ? ସମାଧି କେଉଁଠି ତୋଳାହେବ ସେ ବିଷୟରେ ପରେ ଭାବିବାକୁ ହେବ । ଯେଉଁଠି ସେମାନଙ୍କୁ ପୋଡ଼ାହୋଇଥିଲା କିମ୍ବା ଆଉ କେଉଁଠି, ଯେମିତିକି କେହି ତା'ର ହତାଦର କରିବେ ନାହିଁ, ମଣିଷଠାରୁ କୁକୁର ଯାଏଁ । କିନ୍ତୁ ଏଠି ରଖିବ କେମିତି ? ତଳମହଲାକୁ ଭଡ଼ାଦେବ ବୋଲି କହୁଥିଲ ପରା ? ତା'ହେଲେ କିଏ ତା'ର ହେପାଜତ କରିବ ?

ଠିକ୍ ଅଛି । ଭାଙ୍ଗି ଦିଅ ତାକୁ । ଏମିତି ଭାଙ୍ଗି ଦିଅ ଯେ ତା'ର ଚିହ୍ନବର୍ଣ୍ଣ ରହିବ ନାହିଁ ।

ଶୂନ୍ୟତାକୁ ଟିକିଏ ଅସୁବିଧା ହେଉଥିଲା ହୁଏତ । ସ୍ମୃତିର ସମ୍ପର୍କ ସାଙ୍ଗରେ ଝୁଣ୍ଟିବାକୁ ପଡୁଥିଲା କେତେବେଳେ କେମିତି । କିନ୍ତୁ ଆଉ ପରୁଆ କ'ଣ ଏବେ ? ବର୍ତ୍ତମାନ ସିଏ ହେଣ୍ଟି ମାରିବ ମୁକୁଳା ଘରଦୁଆର ଭିତରେ । ଆଉ ଆମେ ବୁଢ଼ାବୁଢ଼ୀ ତାକୁ ଅନୁଭବ କରିବା । କହିବାକୁ ଗଲେ ଉପଭୋଗ କରିବା । ଭଲ, ଭଲ ସେଇଆ ହେଉ ।...

ଅସ୍ଥିକୁ ହାତରେ ଧରି ପରି ଗ୍ରୁଡ଼ିକ୍ରା ସମୟରେ ମାଉସୀଦେବୀ ତାଙ୍କୁ ଅଟକେଇ ରହିଲେ କ୍ଷଣକ ପାଇଁ । କହିଲେ—

"ରୁହ, ଟିକିଏ ରୁହ । ଚଣ୍ଡୀଙ୍କର ଏଇ ଶୁଖିଲା ଧଣ୍ଡା ନେଇଯାଅ ସାଙ୍ଗରେ । ପାଇ ଦିଅ ଟିକିଏ । ଆଉ ବାକୀତକ ପକେଟ୍‌ରେ ରଖିବ—ବୁଝିଲ ?"

...ମଲା, ତମେ ମୋର ବୋଉ ନା କଅଣ ? ବୋଉ ଏକଥା କରେ । ଏକ୍‌ଦମ୍ ବୁଢ଼ୀ ହୋଇ ଚାଲିପାରୁ ନଥିବାବେଳେ ବି ଘ୍ରୋଷେଇ ଘ୍ରୋଷେଇ ଆସେ, ମୋ ପକେଟ୍‌ରେ ଧଣ୍ଡା ପୂରେଇ ଦେବାଲାଗି ଯେତେବେଳେ ମୁଁ ଘରୁ ବାହାରକୁ ଯାଏ କିଛି ଦିନ ପାଇଁ ।...ଭୋଳାବାବୁ ଧଣ୍ଡା ଗ୍ରହଣ କଲେ । ମୀରାଦେବୀଙ୍କୁ 'ଥ୍ୟାଙ୍କ୍‌ସ୍' ମଧ୍ୟ କହିଲେ । ହେଲେ ତାଙ୍କ ମନରେ ଆସିଲା ଯେ ବୋଉକୁ ତ ଏଥିପାଇଁ ସେ ଧନ୍ୟବାଦ ଦେଇ ନଥିଲେ କେବେହେଲେ ? ବରଂ ଚିଡ଼ି ଉଠୁଥିଲେ ବେଳେବେଳେ—'ଓ-ହୋ ! ମୋର ଏଣେ ଡେରି ହୋଇ ଯାଉଛି, ଆଉ ତୋର ଗୋଟାଏ ସୁଆଙ୍ଗ ଚାଲିଛି—'

"ଭଲରେ ଭଲରେ ଫେରି ଆସିବ," ମୀରା କହିଥିଲା ବିଦାୟ ନେଲାବେଳେ । ସେତିକିବେଳେ ଭୋଳାବାବୁଙ୍କ ମନରେ ଆସିଥିଲା ଯେ ସେ ବୁଢ଼ୀ ହେଲାଣି ସିନା, କିନ୍ତୁ ତା' ଚେହେରାରେ ଗୋଟାଏ ନୂଆ ଧରଣର ସୌନ୍ଦର୍ଯ୍ୟ ଫୁଟିଉଠିଛି, ଯାହାକୁ ସେ କେଜାଣି କେମିତି ଲକ୍ଷ୍ୟ କରି ପାରି ନଥିଲେ ଆଜିଯାଏଁ । ଧଳା-କଳା କେଶର ପ୍ରାଚୁର୍ଯ୍ୟ ଭିତରେ ଯେଉଁ ଚଷମାଧାରିଣୀର ମୁହଁ ତାଙ୍କ ଶୁଭ ମନାସୁଛି, ତା'ର ସୌନ୍ଦର୍ଯ୍ୟ ନିଆରା । ଲବଣ୍ୟକୁ ପାରିହୋଇ, ମଧ୍ୟ ସଂସାରସଙ୍କୁଳ ଯମୁନାକୁ ପାରି ହୋଇ ଆସୁଥିବାର ସଫଳତାବୋଧ । ତହୁଁ ଏକ ଅପରୂପ ସ୍ନିଗ୍ଧତା । କ'ଣ ଅଛି ସେଥିରେ ? ପୋଖତ ହୋଇଥିବା ସ୍ନେହ ? ଜୀବନକୁ ତଥାପି ନମସ୍କାର କରୁଥିବା କାରୁଣ୍ୟ ? ନା ଆଉ କ'ଣ ? ଭୋଳାବାବୁଙ୍କୁ ଅଳ୍ପବହୁତ ଅଖାଡ଼ୁଆ ଲାଗିଲା ମୀରାଦେବୀଙ୍କଠାରୁ ବିଦାୟ ନେଇ 'ବାଏ' କହିଲାବେଳେ । ସତେକି ସେ ସେଇ ମର୍ଯ୍ୟାଦାବନ୍ତ ସୌନ୍ଦର୍ଯ୍ୟ ସାଙ୍ଗରେ ନିଜକୁ ଖାପ୍‌ଖୁଆଇ ପାରୁନାହାନ୍ତି ।

କିନ୍ତୁ ସେଇ ସ୍ଥାନମନ୍ୟତା ପୁରାପୁରି କଟିଗଲାଣି ଏଇକ୍ଷଣି, ସଙ୍ଗମରେ ଅସ୍ଥି ବିସର୍ଜନ କରି ଯମୁନା କୂଳକୁ ଫେରି ଆସିଲା ପରେ । ବର୍ତ୍ତମାନ ସେବାଶ୍ରମର ଡେରାକୁ ଫେରିଯିବା କଥା । କିନ୍ତୁ ଫେରିଯିବାକୁ ମନ ହେଉ ନାହିଁ ଭୋଳାବାବୁଙ୍କର । ମନେ ହେଉଛି ଯେ ଏଇ ଅନିର୍ବଚନୀୟ ଶାନ୍ତିକୁ ଆହୁରି ଆହୁରି ଅନୁଭବ ନକଲେ ପେଟ ପୂରିବ ନାହିଁ । ଯେଉଁଠିକି ଶାନ୍ତିର ତରଙ୍ଗ ଖେଳିଯିବ ଦେହଯାକ । ଅଭାବ ଅପୂରଣର ରନ୍ଧ୍ରଟିଏ ବି ବାକୀ ରହିବ ନାହିଁ । ତର୍ପଣ ପାଇଁ, ଶ୍ରାଦ୍ଧ ପାଇଁ, ବିସର୍ଜନ ପାଇଁ ଆସିଥିବା ଭେଲା ଭେଲା ଶ୍ରଦ୍ଧାଳୁଙ୍କ ଦେହମନକୁ ପ୍ଳାବିତ ଓ ପୁଲକିତ କରୁଥିବା ଅନୁଭବ ସାଙ୍ଗରେ ମିଶିଗଲା ପରି ।...ହଁ, ମୁଁ ବି ତମରି ଭିତରୁ ଜଣେ । ପିତୃପୁରୁଷଙ୍କୁ ଦେଇଛି ଓ ପାଇଛି । ଧନ୍ୟ ହୋଇଛି । ଧନ୍ୟବାଦ ମୀରା, ଧନ୍ୟବାଦଯୁଗଯୁଗର ହିନ୍ଦୁ ସଂସ୍କାର, ଧନ୍ୟବାଦ ପଣ୍ଡିତଜୀ ।

ସେବାଶ୍ରମ ଯୋଗାଡ଼ କରି ଦେଇଥିବା ଗୋଟି ଓ ଲମ୍ବାଚଉଡ଼ା ପଣ୍ଡିତଙ୍କ ଅନବଦ୍ୟ ମନ୍ତ୍ର ପଢ଼ିଛନ୍ତି । ଦେବଦେବୀଙ୍କୁ ଆବାହନ କରିଛନ୍ତି । ଏବଂ ତାଙ୍କଠାରେ ମାଗୁଣି କରିଛନ୍ତି ମୋ ପାଇଁ, ସ୍ପଷ୍ଟତର ସୁସ୍ପଷ୍ଟ ଉଚ୍ଚାରଣ କରି, ଯେ ମୋର ବାପା-ବୋଉ, ତାଙ୍କ ବାପାବୋଉ, ଏମିତି ମୋ ସାତପୁରୁଷଙ୍କୁ ଶାନ୍ତି ଦିଅ । ସେମାନେ ଯଦି କେଉଁ ଅଭୋଜ୍ୟ ଭୋଜନ କରିଥାଆନ୍ତି, ଅଲେହ୍ୟ ଲେହନ କରିଥାଆନ୍ତି, କାୟମନୋବାକ୍ୟରେ ନାନା ବର୍ଜନୀୟ ବସ୍ତୁକୁ ବର୍ଜନ କରିପାରି ନଥାଆନ୍ତି, ତା' ହେଲେ ତାଙ୍କୁ କ୍ଷମା କର । ସେଇ ପାପକୁ ମୁଁ ବରି ନେଉଛି, ଯେମିତିକି ସେମାନେ ସ୍ୱର୍ଗରେ ବସି ରହି ଅଖଣ୍ଡ ଶାନ୍ତି ଲଭ କରି ପାରିବେ । ଆଃ ! ଦେଇଛି ଓ ପାଇଛି । ସେମାନଙ୍କୁ ଶାନ୍ତି ଆଣି ଦେଇଛି, ଏବଂ ନିଜକୁ ବି ।

ଶୂନ୍ୟତାରୁ ହିଁ ଶାନ୍ତି ଆସେ । ଖାଲି ତାକୁ ଅନୁଭବ କରି ପାରିଲେ ହେଲା ।

ଭୋଳବାବୁ ଆଖିବୁଜି ତାକୁ ଅନୁଭବ କଲେ, ଅନୁଧ୍ୟାନ କଲେ । ଶାନ୍ତି ତରଙ୍ଗାୟିତ ହେଉଛି । ଯମୁନାରେ ତରଙ୍ଗ, ମୃଦୁମନ୍ଦ ତରଙ୍ଗ । ଏବଂ ମାଛଲିମାନେ ଖେଳୁଛନ୍ତି ସେଥିରେ ।

ଭୋଳବାବୁ ଶାନ୍ତିସ୍ୱପ୍ନରେ ଭୋଳ ହୋଇଗଲେ । ଆଚ୍ଛନ୍ନ ହୋଇପଡ଼ିଲେ । ଏବଂ ତାଙ୍କର ଇଚ୍ଛା ହେଲା ନାହିଁ ଆଖି ଖୋଲିବା ପାଇଁ, କାଳେ ଏଇ ମୋହ ଭାଙ୍ଗିଯିବ । ଦୃଶ୍ୟ ଜଗତର ପ୍ରାଣୀମାନେ ଦଗା ଦେବେ ତାଙ୍କୁ ।

କିନ୍ତୁ ଧୀରେ ଧୀରେ ତାଙ୍କର ମନେ ହେଲା ଯେ ଶାନ୍ତି ଆଉ କୁଳୁକୁଳୁ ହେଉ ନାହିଁ । କାରଣ ଏଇ ହେଉଛି ତା'ର ନିୟମ । ଅଶାନ୍ତରୁ ଶାନ୍ତ, ଶାନ୍ତରୁ ଅଶାନ୍ତ । ସଂସାରର ଭେଦକଥା ।

ସବୁ ସରିଯାଇଛି । ବାପାବୋଉ ସରିଯାଇଛନ୍ତି, ଏବଂ ତାଙ୍କୁ ନେଇ ଯେତେକ ଅନୁଭବ । ଭୋଳ ସମସ୍ତଙ୍କୁ ବିସର୍ଜନ କରିଆସିଛି ସଙ୍ଗମରେ । ଘରେ ଅପେକ୍ଷା କରି ରହିଛି କେବଳ ଏହି ଅନନ୍ତତାର ଅବବୋଧ । ସବୁକିଛି ନିଶ୍ଚିହ୍ନ ହୋଇଯାଇଛି, ସମ୍ପର୍କ ସମେତ । ଖାଲି ଆମେ ଦୁ' ଜଣ ରହିଥିବୁ ସେଠି, ବଞ୍ଚିଥିଲା ଯାଏଁ । ଏବଂ ଆମ ଭିତରେ ବି ଶାନ୍ତି, ନିବିଡ଼ ନିସ୍ତରଙ୍ଗ ଶାନ୍ତି···

ଏଇ ସମୟରେ ତାଙ୍କ କାନରେ ପଡ଼ିଲା—

"ଆଦ୍‌ମୀ ଲୋଗ୍ ଅପନେ ଦାଦାଜୀକୋ ୟାଦ୍ କରତେ, ଔର୍ ବଧବା ଲୋଗ୍ ଆପ୍‌ନେ ପତିକେ ଦାଦାଜୀକୋ···"

ଭୋଳବାବୁ ଆଖି ଖୋଲିବାକୁ ବାଧ୍ୟ ହେଲେ । ଏବଂ ଦେଖିଲେ ଯେ ଗୋଟାଏ କ୍ଲାସ୍ ବସିଛି ପଣ୍ଡିତଜୀଙ୍କ ସାମ୍ନାରେ । ଯେଉଁ ଜାଗାରେ ସେ ଭୋଳ-

ବାବୁଙ୍କୁ ବଡେଇ ପ୍ରାର୍ଥନା କରୁଥିଲେ ତାଙ୍କ ପିତୃପୁରୁଷଙ୍କ ଆତ୍ମାର ସଦ୍‌ଗତି ପାଇଁ, ସେଇଠି ଏକ ନୂଆ ପର୍ବ ଅନୁଷ୍ଠିତ ହେଉଛି । ବୋଧହୁଏ ସେ ଆଉ କେତେ ଶ୍ରଦ୍ଧାଳୁଙ୍କୁ ନେଇ ଆଉ କେତେ କର୍ମକର୍ମାଣି ସାରଦେବେଣି ଏଥି ଭିତରେ । ବର୍ତ୍ତମାନ ଆଠଜଣ ଶ୍ରଦ୍ଧାଳୁ ଧାଡ଼ି କରି ବସିଛନ୍ତି ତାଙ୍କ ଆଗରେ । ଗୁଚ୍ଛଗୁଚ୍ଛରେ ତିଆରି ପିଣ୍ଡର ଗୋଲ୍ ଗୋଲ୍ ବାଣ୍ଡିଲ ବଢ଼ା ହୋଇଛି ପ୍ରତ୍ୟେକଙ୍କ ସାମନାରେ ଥିବା କଦଳୀ ପତରରେ । ପଣ୍ଡିତଜୀ କହୁଛନ୍ତି ଏଇଆ କୁହ, ଏଇଆ କର, ଏବଂ ଅମୁକ ପିତୃପୁରୁଷଙ୍କୁ ମନେପକାଅ । ତା'ପରେ ପିଣ୍ଡଟିଏ ଲେଖାଏଁ ଅର୍ପଣ କରା ହେଉଛି ତାଙ୍କ ଆତ୍ମାର ସଦ୍‌ଗତି ପାଇଁ । ଏବଂ ବାଣ୍ଡିଲବିଶେଷକୁ କାଢ଼ି ଦିଆ ହେଉଛି, ପତରରୁ ଭୂଇଁକୁ । ଶ୍ରଦ୍ଧାଳୁଙ୍କ ଭିତରୁ ତିନିଜଣ ପୁରୁଷ, ଏବଂ ତିନିଜଣ ବିଧବା । ବିଧବାଙ୍କ ମୁଣ୍ଡ ଲଣ୍ଡା ।

ହିନ୍ଦୀର ତତ୍‌କାଳ ତର୍ଜମା କରାଯାଉଛି ବଙ୍ଗଳାରେ । ମଝିରେ ମଝିରେ ଓଡ଼ିଆ ମଧ୍ୟ ବାହାରି ପଡ଼ୁଛି ପଣ୍ଡିତଜୀଙ୍କ ମୁହଁରୁ । ଜଣାପଡ଼ୁଛି ଯେ ତିନିଭାଷାର ଲୋକ ଅଛନ୍ତି ସମ୍ଭାଙ୍କ ଭିତରେ । ତେବେ ଲଣ୍ଡାମୁଣ୍ଡ ସ୍ତ୍ରୀ ଲୋକମାନେ ବଙ୍ଗଭାଷୀ ବୋଲି ସ୍ପଷ୍ଟ ବୁଝାପଡ଼ୁଛି ।

ପୂର୍ବବଙ୍ଗରୁ ମାଡ଼ଖାଇ ମରା ବିଧବା । ପରିତ୍ୟକ୍ତା ଏବଂ ବିତାଡ଼ିତା । ଯେଉଁ-ମାନଙ୍କର ସବୁ ସୁଖ ପୋଡ଼ି ଯାଇଛି, ତଥା ତାକୁ ପୋଡ଼ି ଦିଆଯାଇଛି । ଏବଂ ଯେଉଁମାନେ କୌଣସିମତେ ତାଙ୍କ ଶେଷଜୀବନଟା ବିତେଇ ଦିଅନ୍ତି ପୁରୀରେ, ବାରାଣସୀରେ, କିମ୍ବା ଆଉ କେଉଁ ଧର୍ମସ୍ଥଳୀରେ । ଭିକ ଓ ଭଜନକୁ ଆଶ୍ରା କରି ।

ଭୋଳବାବୁଙ୍କର ମନ ଚାଲିଗଲା ଧାଡ଼ିରେ ଥିବା ଏହି ଅଭିଶପ୍ତାମାନଙ୍କ ଆଡ଼କୁ । ଏବଂ ସେ ତାଙ୍କର ଆଚରଣକୁ ହିଁ ଲକ୍ଷ୍ୟ କରୁଥିଲେ । ବିଶେଷ ଭାବରେ । ଦୁଃଖଶୋକରେ ସିଠା ପଡ଼ି ଯାଇଥିବା ଭାବହୀନ ମୁହଁର ଚେହେରା । ଦେଖୁଥିଲେ ପଣ୍ଡିତଙ୍କ ଗୁରୁଗମ୍ଭୀର ଉଚ୍ଚାରଣ କିଭଳି ପ୍ରଭାବ ପକାଉଛି ତା' ଉପରେ, ଏବଂ ତାହା କିଭଳି ଉଦ୍‌ବୋଧିତ ହୋଇ ଉଠୁଛି ଶାସ୍ତ୍ରଗତ ଉଚିତ କାମ କରିବା ଲାଗି ତାଙ୍କର ପରଲୋକଗତ ସ୍ୱାମୀମାନଙ୍କ ପାଇଁ । ସେଇଥିରେହିଁ ମୋକ୍ଷ । ପଣ୍ଡିତଜୀଙ୍କର ପ୍ରତ୍ୟେକ ଆହ୍ୱାନରେ କିଛି ଭିନ୍ନ ବ୍ୟବସ୍ଥା ରହିଛି 'ବିଧବା ଲୋଗ୍' ମାନଙ୍କ ପାଇଁ । ଗୋଟିକ ପରେ ଗୋଟିଏ ।

ହଠାତ୍ ଭୋଳବାବୁଙ୍କୁ ଲାଗିଲା ଯେ ତାଙ୍କ ଭିତରୁ ଜଣେ କ'ଣ ବିଡ଼ବିଡ଼ ହେଉଛି ପଣ୍ଡିତଜୀଙ୍କର ଶ୍ଳୋକ ସାଙ୍ଗକୁ । ସନ୍ଦେହ ସେ ତା' ନିଜର ପଦଭାଷା ତିଆରି କରୁଛି, ଏବଂ ତାକୁଇ ଶୁଣାଉଛି ତା'ର ସ୍ୱର୍ଗବାସୀ ପ୍ରିୟଜନମାନଙ୍କୁ ।

ଆରେ, ସେ କ'ଣ ହସୁଛି ନା ତା' ମୁହଁଟା ସେମିତି ମ ? ଭୋଳବାବୁଙ୍କ ସମବେଦନା ଚହଲିଗଲା । ମନେହେଲା ଇଏ ବୋଧହୁଏ ସବୁଠୁଁ ବେଶୀ ଦୟନୀୟା । ସାଧାରଣ ସହାନୁଭୂତି ଯଥେଷ୍ଟ ନୁହେଁ ସ୍ତ୍ରୀ' ପାଇଁ । ଉପଗ୍ରହ ସବ ଆସୁଛି । ପିଣ୍ଡ-ବାଟୁଲିଗୁଡ଼ିକ ଗୋଟି ଗୋଟି ହୋଇ ସ୍ଥାନାନ୍ତରିତ ହେଉଛି ପତରରୁ ଭୂଇଁକୁ । କିନ୍ତୁ ଚେନାଏ ହସ ହେଉ କି ବିକୃତିର ରେଖା, ଲିଭିବାକୁ ନାହିଁ ସ୍ତ୍ରୀଲୋକର ଓଠରୁ । ଭୋଳବାବୁ ଆଶ୍ଚର୍ଯ୍ୟ ହୋଇ ଅନେଇ ରହିଥିଲେ ତାକୁ ।

"ବିଧବା ଲେଗ୍— ।" ପଣ୍ଡିତ୍‌ଜୀ ହଠାତ୍ ଅଟକିଗଲେ ଏବଂ ଅନେଇଲେ ତା'ର ଆଡ଼କୁ । "ହେ ଭଗବାନ୍ ! ପତ୍ତା ଖାଲି ହୋ ଗୟା ତୁମ୍‌ହାରା ?" ପଣ୍ଡିତ୍‌ଜୀ ତା'ର ବଙ୍ଗଳା ତର୍ଜମା କରିବାକୁ ବି ଭୁଲିଗଲେ । ଏବଂ ବିସ୍ଫାରିତ ଆଖି ଦି'ଟା ଥାପି ଦେଲେ ତା' ଉପରେ ।

କଥା କ'ଣ ବୋଲି ଅନ୍ୟମାନେ ମଧ୍ୟ ଅନେଇଲେ ତା' ଆଡ଼କୁ । କିନ୍ତୁ ସ୍ତ୍ରୀଲୋକଟାର ମୁହଁର ଭାବ ଟିକିଏ ହେଲେ ବଦଳିଲା ପରି ଦିଶୁ ନ ଥିଲା । ବରଂ ସନ୍ଦେହ ହେଉଥିଲା ଯେ ସେ ଦର୍ଶକମାନଙ୍କର ବିସ୍ମୟ-କୌତୂହଳକୁ ଉପଭୋଗ କରୁଛି !

ଯଥାଶୀଘ୍ର ବୁଝାପଡ଼ିଲା ବିସ୍ମୟର କାରଣ । ସମସ୍ତଙ୍କ ପତରରେ ଗୋଟାଏ ଲେଖାଏଁ ବାଟୁଲି ବାକି ଅଛି ଶେଷ ପିତୃପୁରୁଷଙ୍କ ପାଇଁ । କିନ୍ତୁ ସ୍ତ୍ରୀ'ର ପତର ଖାଲି ପଡ଼ିଛି । ତା'ର ଅର୍ଥ ସେ ଅଧିକା ବାଟୁଲିଟିଏ ବାଢ଼ି ଦେଇଛି କାହା ପାଇଁ ।

"କ୍ୟା ହୁୟା ମାଗୀ ? ଦିମାଗ୍ ଫିର୍ ଗିୟା କ୍ୟା ? ପଣ୍ଡିତ୍‌ଜୀ ପଚାରିଲେ ତାକୁ, ତାଚ୍ଛଲ୍ୟଭରା କ୍ରୋଧ ଦେଖାଇ ।

ଉତ୍ତର ନାହିଁ । ହେଲେ ଆଉ ଜଣେ କହୁଛି, ତା'ର ଗ୍ରାମବାସୀ ହେବ ପରା—"ନା ପଣ୍ଡିତ୍‌ଜୀ, ଦିମାଗ୍ ବୋଧ୍ ହବେ କୋଥାୟ ଆଟ୍‌କେ ଗିୟେ ଛିଲୋ । ସେ ତା'ର ଆପନ୍‌ଜନକେ ଏକ୍‌ଟୁ ବେଶୀ ଭାଲୋବାସେ କିନା, ତା'ଇ" ତା'ର ରସିକତାକୁ ସମସ୍ତେ ଉପଭୋଗ କଲେ ଏବଂ ହସି ଉଠିଲେ । ହେଲେ ସ୍ତ୍ରୀଲୋକଟାକୁ ଲାଜ ମାଡ଼ିବା ଦୂରର କଥା, ମନେହେଲା ସେ ଏହାହିଁ ଚାହୁଁଥିଲା ।

କିନ୍ତୁ ଭୋଳବାବୁଙ୍କ ପାଖରେ ଠିଆହୋଇଥିବା ଜଣେ କିଏ କହୁଥିଲା ତାଙ୍କୁ ଅନୁଚ୍ଚ ସ୍ୱରରେ—

"ଇଏ ଗୋଟାଏ ଢଙ୍ଗ ମାଗୀର । ଏଇଆ ସେ କରେ ପ୍ରତ୍ୟେକ ବର୍ଷ । ଗୋଟାଏ ବାଟୁଲି କିଅଣ୍ଟା ହୁଏ କି ବଳି ପଡ଼େ ତା' ପତରରେ । ସତେକି ସେ ଖେଳୁଛି ତା' ମର୍ଦ ସାଙ୍ଗରେ ! ମହା ପାଜି । କମ୍ ଝଗଡ଼ା ସେ କରୁ ନଥିଲା ତା' ସାଙ୍ଗରେ, ସେ ବଞ୍ଚିଥିଲା ବେଳେ..."

ଭୋଳବାବୁ ବଲବଲ ହୋଇ ଅନେଇଲେ ତା' ମୁହଁକୁ । ଇଏ କେମିତି ଜାଣିଲା ? ହୁଏତ ଇଏ ବି ଗ୍ରାମବାସୀ । ଯାହାହେଉ ସେ ମିଛ କହିବ କାହିଁକି ? ହେଲେ ସେ ତାକୁ କିଛି ପଚରାଉଚରା କଲେ ନାହିଁ ।

ମିଛ ନୁହେଁ, ସତ । ସେ ପ୍ରକୃତରେ ଖେଳୁଥିଲା ତା' ମର୍ଦ୍ଦ ସାଙ୍ଗରେ । ଝଗଡ଼ା ହେଉ କି ଗେଲ, ସେ ଏମିତି ବଞ୍ଚେଇ ରଖିଛି ତା'ର ଦାମ୍ପତ୍ୟ ଜୀବନକୁ । ପ୍ରତ୍ୟେକ ବର୍ଷ ଆସୁଛି, ହସୁଛି, ଆଉ ଖେଳୁଛି ଏଇ ଖେଳ ତା'ର ପୁରୁଷ ସାଙ୍ଗରେ, ଯଦିଓ ସେ ମଲାଣି କାହିଁ କେତେ ବର୍ଷ ହେଲା ।

ଏମିତି ବି ହୁଏ । ସମ୍ଭବ । ତା' ହେଲେ ବଞ୍ଚି ଥାଉ ଥାଉ ମରିଯିବୁ କାହିଁକି ? ସବୁ କିଛି ଶାନ୍ତ ଶୀତଳ ହୋଇଯିବ କାହିଁକି ଆମେ ମରିବା ଆଗରୁ ? ସନ୍ଧ୍ୟା ତ ଆସିବ ନିଶ୍ଚୟ ରାତି ହେଲା ପୂର୍ବରୁ, କିନ୍ତୁ ଇଚ୍ଛା କଲେ ଆମେ କ'ଣ ତାକୁ ମୁଖର କରି ଦେଇ ପାରିବା ନାହିଁ ? ମେଞ୍ଚାଏ ରଙ୍ଗ ବୋଳି ଦେଇ ପାରିବା ନାହିଁ ତା' ଦେହରେ ? କିଛି ହେଲେ ଅସାଧ୍ୟ ନୁହେଁ ମଣିଷପିଲାର ।

ମନେ ହେଲା ଯେ କେବଳ ଗୋଟିଏ ପଦକୁ ଘୋଷି ଗୁଲାଥିଲେ, ଘରକୁ ଫେରିବାଯାଏଁ, ଟ୍ରେନ୍‌ର ଘର୍ଘର ସାଙ୍ଗରେ ତାଳ ଦେଇ ପରି ।—ଶାନ୍ତ, ମାଇ ଫୁଟ୍ !

× × କେତେ କ'ଣ ଗୁହିଁଥିଲେ ସେ । ଯେ ସେ ନାରୀ ସାଙ୍ଗରେ ଗୋଟାଏ ଘୋଡମତ ଝଗଡ଼ା ଆରମ୍ଭ କରିଦେବ, ଘରେ ପହଞ୍ଚୁ ନପହଞ୍ଚୁଣୁ । ଯେମିତିକି ମାନଭଞ୍ଜନର ଧାରାଶ୍ରାବଣକୁ ରୋକ ହେବ ନାହିଁ ରାତି ଅଧିକୁ । ସେଥିରେ ସେକ୍‌ସ ନଥିଲେ ନାହିଁ ।

କିନ୍ତୁ କେଜାଣି କାହିଁକି ଆରମ୍ଭଟା ମନମୁତାବକ ହୋଇପାରିଲା ନାହିଁ । କାରଣ ଭୋଳବାବୁଙ୍କ ଚଡ଼ଚଡ଼ ଭାବକୁ ନାରୀଦେବୀ ଗ୍ରାହ୍ୟ କଲେ ନାହିଁ । ଭାବିଲେ ଦେହରେ ମନରେ ଥକି ଯାଇଛି ଲୋକଟା । ତେଣୁ ଚୁପ୍ ରହିଲେ ଭଲ ।

ହେଲେ ସେ ଚୁପ୍ ରହି ପାରିଲେ ନାହିଁ, ଯେତେବେଳେ ଭୋଳବାବୁ ରାତି ଅଧରେ ହଠାତ୍ କୁଣ୍ଢେଇ ଧରିଲେ ତାଙ୍କୁ, ଏବଂ ଚୁମା ପରେ ଚୁମା ଦେବାକୁ ଲାଗିଲେ । ନିର୍ବାକ୍ ରହିପାରିଲେ ନାହିଁ ।...

"କିଓ, କ'ଣ ହୋଇଛି ତମର ? କଥା ନାହିଁ ବାର୍ତ୍ତା ନାହିଁ, ଏମିତି ମାତି ଉଠିଛ କାହିଁକି ? ନିଶ୍ଚୟ କୋଉ ସୁନ୍ଦରୀଟିଏ ଜୁଟିଗଲା ସେଠି, ଆଉ ବାବୁ ବାଉଳା

ହୋଇଗଲେ । ମୁଁ ପରା ସେଇଥିପାଇଁ ତମକୁ ଏକୁଟିଆରେ ଛାଡ଼ୁ ନଥିଲି ବାହାରକୁ ?''

ଭୋଳବାବୁ ଆହୁରି ଚମତ୍କୃତ କରିବାକୁ ଚାହିଁଲେ ତାଙ୍କ ପତ୍ନୀଙ୍କୁ । କହିଲେ—

''ହଁ, ତା'ର ମୁଣ୍ଡ ଲମ୍ବା ହୋଇପାରେ, କିନ୍ତୁ ତାକୁ ସୁନ୍ଦରୀ କହିବାରେ ମୋର କୌଣସି ଆପତ୍ତି ନାହିଁ ।''

# ତରଙ୍ଗ

ଏଇ ଗପଟିକୁ ମୁଁ ମୋ ଷୋଡ଼ଶ ଗଳ୍ପ ସଂକଳନର ଶୀର୍ଷରେ ରଖିବାକୁ ଚାହିଁଲି, ତା'ର କାରଣ ମୋର ମନେ ହେଲି ଯେ ନହେଲେ ସୁନ୍ଦର ଦିଶିବ ନାହିଁ। ଯେମିତିକି ମୁଁ ମୋ 'ମଣିହରା' ଓ 'ଧବଳ ଆକାଶ' ଏଇ ଦୁଇଟି ଗପକୁ ଯଥାକ୍ରମେ ଚତୁର୍ଥ ଓ ଚତୁର୍ଦ୍ଦଶ ଗଳ୍ପସଂକଳନର ଶୀର୍ଷରେ ନରଖି ରହିପାରିଲି ନାହିଁ। ତା' ବୋଲି ଏଇ କେତୋଟି ଗପ ଯେ ମୋର ସର୍ବୋତ୍କୃଷ୍ଟ ଗପମାନଙ୍କ ଭିତରେ ଗଣା, ତା' କିଏ କହିଲା ? ପାଠକପାଠିକାମାନେ ବିଚାର କରିବେ ସେ ବିଷୟରେ। କିନ୍ତୁ ମୁଁ ସେମାନଙ୍କୁ ସେହି ପ୍ରକାର ମର୍ଯ୍ୟାଦା ନ ଦେଇଥାଆନ୍ତି କେମିତି ? ଆଜ୍ଞା, ସେଗୁଡ଼ିକ ମୋ ନିଜ ଗପ ପରା !

ହସିବା କଥା। କିନ୍ତୁ, ଲେଖକର ପୁଣି 'ନିଜ ଗପ'ଟିଏ କେଉଁଠୁ ଆସିଲା ? ସବୁଥିରେ ତ ସେ ନିଜେ ରହିଛି, ତଥା ତା'ର ପରିଚିତ ସଂସାର, ଏବଂ ତାକୁ ସବୁ ନେଇ ସେ ଗୋଟିଏ ସତମିଛର କାହାଣୀ ତିଆରି କରେ। ଏବଂ କୁହେ— ଦେଖନ୍ତୁ, ଏଇ ହେଉଛି ମୋର ଅନୁଭବ, ମୋର ଚିନ୍ତା, ଏବଂ ମୋର ବକ୍ତବ୍ୟ, ଜୀବନର ଚରୁଡ଼ାଏ ନେଇ, ଯାହାକୁ ମୁଁ ଅଙ୍ଗେ ନିଭେଇଛି ବୋଲି ଜାଣ। ତେଣୁ ଆପଣଙ୍କୁ ନିଶ୍ଚୟ ସତ ବୋଲି ଲାଗିବ, ଲାଗିବା ଉଚିତ। କିନ୍ତୁ ଏଇ କେତୋଟିରେ ଆଖି ବୁଜିଁଛି, ଚାରି ପକାଉଛି, ଏଇ ହେଉଛି ମୋର ଅନୁଭୂତି (କଳ୍ପିତ ହେଲେ ମଧ୍ୟ ଅନୁଭୂତ) ସତ, ଏହି ପ୍ରକାର କୌଣସି ଟାଣୁଆ ଦାବି ବା ବ୍ୟାକୁଳ ଆବେଦନ ନାହିଁ। ସେଥିର ଅବକାଶ ନାହିଁ। କାରଣ ଏଠି ମୋର ଲେଖକପଣିଆ ପଛକୁ ଘୁଞ୍ଚି ଯାଇଛି, ଆଉ ତା' ଜାଗାରେ ବସିରହିଛି ମୁଁ ନିଜେ, ସର୍ବସାଧାରଣ ଦୁଃଖୀ ମଣିଷଟିଏ, ଯେ ଏଇ ଛଳରେ ନିଜକୁ ଟିକିଏ ଖଲାସ କରିଦେବାକୁ ଚାହେଁ—ଦି'ଟୋପା ଲୁହ ଗଡ଼େଇ,

ଗ୍ରାହକୁ ମର୍ଜି ବିଦାର ବାହାର ଆସୁଥିବା କେଇଟା ଦୀର୍ଘନିଃଶ୍ୱାସ ପକେଇ, ଏବଂ ବଡ଼ବଡ଼ ହୋଇ । କାହିଁକିନା କେଉଁଠି ତା' ଆଠମାସର ବାଳୁତ ଶିଶୁ ତାକୁ ଛାଡ଼ିଦେଇ ଚାଲିଗଲା ତ କେଉଁଠି ତା'ର ସଅଁଚଉଦ ବର୍ଷ ବୟସର ସୁକୁମାରୀ ସ୍ୱପ୍ନାଳୀ ଓ ସ୍ୱବାହିତା ଝିଅ କାର୍ ଦୁର୍ଘଟଣାରେ ପ୍ରାଣ ହରାଇଲା, ଏବଂ କେଉଁଠି ତା'ର ବୁଢ଼ାବୁଢ଼ୀ ବାପମାଆ ବିଦାୟ ନେଇ ଚାଲିଗଲେ ସବୁଦିନ ପାଇଁ, ଘରଟାକୁ ଶୂନ୍ୟ କରିଦେଇ । ମୂଳ ଘଟଣା ଓ ସେଥିର ଅନୁଭବ କେବଳ ତା'ର, ତା'ର ନିଜର, ସେଥିରେ ଅଳ୍ପ ବହୁତ ମିଛ ଯୋଡ଼ା ହୋଇଥାଉ ପଛକେ, ତାକୁ ଗପଟିଏ କରି ଗଢ଼ିବା ଲାଗି । ତାକୁ ଆପଣ ସତ ବୋଲି ନମଣିଲେ, କିମ୍ବା ସେଥିରେ ଥିବା ଭାବ ଭାବନାକୁ ଆଦର ନ କଲେ, ଯାଏ କେତେ ଆସେ କେତେ !

ଲେଖକମାନେ ଭୁଆଡ଼େ ଅଭିଶପ୍ତ । ସେଇଥିପାଇଁ ସେମାନେ ତାଙ୍କ ନିବଡ଼ ଅନ୍ତରଙ୍ଗ ଦୁଃଖକୁ ଏମିତି ହତାଦର କରନ୍ତି, ହାଟରେ ବାଟରେ ଗଡ଼େଇ ଦେଇ । କିନ୍ତୁ ଅର୍ନେଷ୍ଟ୍ ହେମିଙ୍ଗ୍‌ୱେ, ଫ୍ରାନ୍ସୁଆ ସାଗାନ୍ ଆଦି କେତେଜଣ ଲେଖକ ଏଇ ଆକ୍ଷେପକୁ ସ୍ୱୀକାର କଲେ ମଧ୍ୟ କହିଛନ୍ତି ଯେ ଏହାହିଁ କରିବା କଥା । କିନ୍ତୁ କ'ଣ ମିଳିବ ମୋତେ କୋଉ ସଫେଇ କି ସାର୍ଟିଫିକେଟ୍‌ରୁ ? ଏହିସବୁ ଗପରେ ମୁଁ କେବଳ ଗୋଟିଏ ବାପ, ଏବଂ ବାପମାଆଙ୍କର ବୁଢ଼ାପୁଅ ଛଡ଼ା ଆଉ କିଛି ନୁହେଁ । ଏବଂ ମୋର ମୁଖ୍ୟ ଉଦ୍ଦେଶ୍ୟ ହେଲା ଏମିତି ପଦାଟାରେ ବସି କାନ୍ଦିବା କି ଆଉ ଯାହା, ତାହା ଆପଣଙ୍କୁ ଭଲ ଲାଗୁ ବା ନଲାଗୁ ।

ତେବେ ଏଇ ଗପଟି ଅନ୍ୟ ଦୁଇଟି ଗପଠାରୁ ଭିନ୍ନ ଏଇ ହିସାବରେ ଯେ ଏଠି ମୋର ନିଜକାନ୍ଦ ନିଜକୋଧ (ଯେଉଁଥିରେ ମୁଁ ପିଲାର ମାଆକୁ ମଧ୍ୟ ଜାବୁଡ଼ି ଧରିଛି) ସର୍ବପ୍ରଧାନ ନୁହେଁ । କାରଣ ଯେକୌଣସି ତୃତୀୟ ବ୍ୟକ୍ତି ମୋର କୋଧ-କାନ୍ଦକୁ ଅକାରଣ ନହେଲେ ମଧ୍ୟ ଅତ୍ୟଧିକ ବୋଲି କହିପାରେ । କହିବ—ମଲା, ତମେ ଆସି ବୁଢ଼ା ହେଲଣି, ଆଉ ତମ ବାପାବୋଉ ଆଜିଯାଏଁ ବଞ୍ଚି ରହିଥା'ନ୍ତେ ନା କ'ଣ ?

ବାପାଙ୍କୁ ଚଉରାନବେ ବର୍ଷ ହୋଇଥିଲା ତାଙ୍କ ମଲା ବେଳକୁ, ଆଉ ବୋଉକୁ ସତାଅଶୀ ବର୍ଷ । ଦୁ' ଜଣଯାକ ବିଶେଷ କିଛି କଷ୍ଟ ନପାଇ ଚାଲିଗଲେ ଗୋଟାଏ ଯୋଡ଼ାଏ ଦିନରେ । ଏଥିରେ ବିଧାତାଙ୍କୁ ଧନ୍ୟବାଦ ଦେବା କଥା । ଆଉ ତମେ କ'ଣ କରୁଛ ନା ତମ ଦୁଃଖର ଢେଲକ ଦେଖଉଛ, ତା'ର ବଡ଼େଇ କରୁଛ, ଏମିତି ଗୋଟିଏ ଗପ ତିଆରି କରି ? ମୁଁ ଜାଣିଛି ସେକଥା । ସେଇଥିପାଇଁ ଲକ୍ଷ୍ୟ କରିବେ ଯେ ମୁଁ ଏଥିରେ ସେମିତି କିଛି କାନ୍ଦ ନାହିଁ କି ରାଗି ନାହିଁ ବିଧାତାଙ୍କ ଉପରେ, ହାତଯୋଡ଼ି କୃତଜ୍ଞ ହୋଇ ନାହିଁ ପିଲାଙ୍କ ପରି । ବୁଢ଼ାପୁଅ-ସୁଲଭ ଉଚିତ ଆଚରଣ କରିଛି । କେବଳ ଦୀର୍ଘନିଃଶ୍ୱାସ (ରଦୁଆ ଗୃହର ଉପରେ ହୁଏତ ଟିକିଏ ତମତମ ହୋଇ ଉଠିଛି, ଗୁଡ଼ ସେକଥା) ଏବଂ ଶୂନ୍ୟତା ଓ ଶାନ୍ତିକୁ ନେଇ ଦୁ'ପଦ ଏଣୁ-ତେଣୁ ବିସ୍ତର । ତଥା ପ୍ରୟାଗର ସଙ୍ଗମତୀର୍ଥରେ ଘଟିଥିବା ଗୋଟିଏ କଉତୁକିଆ ଘଟଣାର ବର୍ଣ୍ଣନା । ହଁ, ତା' ପୂର୍ବରୁ କେତେ ସ୍ମୃତିକୁ ଡାକି ଆଣିଛି, ଆଉ କେତେ କଥା କହିଛି ସେଇ ଶୂନ୍ୟତାକୁ ଚହଲାଇବା ଲାଗି । କହିଛି, ଯେ ଆଜି ସେଇ ପଟାଖଟ ଆଉ ଆରାମଚଉକି ପଡ଼ିରହିଛି ସେଇଠି, ଇଏ ଅନେଇଛି ତା' ଆଡ଼କୁ ଆଉ ସିଏ ଅନେଇଛି ଯା'ଆଡ଼କୁ । କିନ୍ତୁ ଦୁହିଁଙ୍କି ଦୁହେଁ ମୂକ, ନିର୍ଜୀବ, ନୀରବ । ସେତିକି ବି କ'ଣ କହି ନ ଥା'ନ୍ତି ? ଆଉ ଏଇ ସବୁ କଥା ପଢ଼ୁ ପଢ଼ୁ ସାନଭଉଣୀଟା କାନ୍ଦ ପକେଇଲା, ମୁଁ କ'ଣ ସେଥିକୁ ଦାୟୀ ?

ନା, ଆପଣ ବୋଧହୁଏ ସ୍ୱୀକାର କରିବେ ଯେ ଏଇ ଗପରେ ମୁଁ ମୋ ନିଜ ଦୁଃଖକୁ ପଦାରେ ପକେଇ ଯେତେ ଫେଣେଇଲେ ମଧ୍ୟ, ଗୋଟିଏ ତାତ୍ତ୍ୱିକ ତଥ୍ୟର ଅବତାରଣା କରିଛି, ଯାହାକୁ ସ୍ଥିରଚିତ୍ତରେ ବିଚାର କରାଯାଇ ପାରିବ । କହିଲି, ଶୂନ୍ୟତାରୁ ଶାନ୍ତି ଆସେ । ପୁଣି କହିଲି, ଅବୀଚିରୁ ବୀଚି ଓ ବୀଚିରୁ ଅବୀଚି, ଏଇ ହେଲା ଜୀବନ-ମୃତ୍ୟୁର କ୍ରମ । ଠିକ୍ କଥା । କିନ୍ତୁ ସେଇଠୁଁ ପ୍ରଶ୍ନ ଉଠୁଛି ଯେ ଏଇ ଯେଉଁ ତରଙ୍ଗର ରଙ୍ଗ, ଦୁଇ ଅନନ୍ତ ଅବ୍ୟକ୍ତ ମଧ୍ୟରେ 'ବ୍ୟକ୍ତମଧ୍ୟାନି ଭାରତ'ର ଦୁ'ଦିନିଆ ଅନୁଭବ ତାକୁ କ'ଣ କେତେବେଳେ 'ଆଉ ସେତିକି ହେଲା', ଏଣିକି ମୋର ଶୋଇବା ପାଇଁ ଶୂନ୍ୟତାର ଶାନ୍ତି ଲାଗି ପ୍ରସ୍ତୁତ ହେବା ଉଚିତ ବୋଲି ମନେ କରିବା ଉଚିତ ?

ଅନ୍ୟ ଅର୍ଥରେ ବଞ୍ଚି ଥାଉଁ ଥାଉଁ କ'ଣ ନଭ୍ରଙ୍ଗତାକୁ ଲୋଡ଼ିବା ଭଲ, ଯେମିତକି ଜୀବନର ଶେଷ ପର୍ଯ୍ୟାୟଟି ସ୍ୱଚ୍ଛନ୍ଦରେ ସମାହିତ ହୋଇ ପାରିବ, ଧୀରେ ଧୀରେ କେଉଁ ଦିଗନ୍ତରେ ମିଳେଇ ଗଲା ପରି ? ନା ଜୀବନକୁ ଯେତେଦିନ ଯାଏଁ ତରଙ୍ଗାୟିତ କରି ପାରିବ ସେତେ ତା'ର ସୁନ୍ଦରପଣକୁ ଶେଷଯାଏ ଅନୁଭବ କରିବା ଲାଗି ?

ଧର୍ମାତ୍ମା ଆନନ୍ଦ କୁମାରସ୍ୱାମୀ କହିଲେ—"I do not want to die unannihilate" । ଅର୍ଥାତ୍ ମୁଁ ବସ୍ତୁତଃ ନିଶ୍ଚିହ୍ନ ନ ହୋଇ ମରିବାକୁ ଚାହେଁ ନାହିଁ । ସତେକି ମୃତ୍ୟୁହିଁ ଜୀବନର ସାର୍ଥକତା, ସେଥିର ଉପଲବ୍ଧି, ତେଣୁ ତାକୁ ଲଭିବାକୁ ହେଲେ ଯଥାସମୟରେ ଘର ଓଳେଇ, ଆସନ ପାରି, ତାକୁ ଆବାହନ କରିବାହିଁ ବୁଦ୍ଧିମାନର କାର୍ଯ୍ୟ । ନହେଲେ ଡମକୁ ଭୂସ୍‌କିନା ଦାଢ଼ରୁ ଖସି ପଡ଼ିଲା ପରି ଲାଗିବ । ସେଥିରେ କେଉଁ ମର୍ଯ୍ୟାଦା ଅଛି ନା ମାଧୁର୍ଯ୍ୟ ?. କିନ୍ତୁ ପ୍ରୟାଗର ସେଇ ଲଣ୍ଡାମୁଣ୍ଡିଆ ବିଧବା ବୁଢ଼ୀର ଭିନ୍ନ ବିଚାର । ସେ ତା' ପରଲୋକଗତ ମର୍ଦ ସାଙ୍ଗରେ ଖେଳିବାକୁ ଚାହେଁ, ଅନ୍ତତଃ ଏମିତି ବର୍ଷକୁ ଥରେ, ତା' ଆତ୍ମାର ତୁଷ୍ଟି ପାଇଁ ବଢ଼ା ହୋଇଥିବା ଭୋଜ୍ୟର ବାଟୁଲିକୁ ନେଇ । ସେଇ 'ମାଗୀ'ର ଆଚରଣ କ'ଣ ହେତେ ହାସ୍ୟାସ୍ପଦ ? ତା' ହୋଇଥିଲେ ସୁଶିକ୍ଷିତ ଭୋଲାନାଥବାବୁ କ'ଣ ଏଭଳି ଗୋଟିଏ ଚମକ ଦେଖାଇ ଆ'ନ୍ତେ ବୟୋବୃଦ୍ଧା ପତ୍ନୀ ଜୀବଦେବୀଙ୍କ ଗାଢ ଅଧରେ ଉଠେଇ··· ?

ଥାଉ଼ନ୍ତୁ । ଭୋଳବାବୁଙ୍କ କାବ୍ୟିକ ଆଚରଣ କେବଳ ଏଇ ଗପର କ୍ଲାଇମାକ୍‌ସ ପାଇଁ ଉଦ୍ଦିଷ୍ଟ ବୋଲି କୁହାଯାଇପାରେ । ଏବଂ ପାଠକପାଠିକାମାନେ ମୋତେ ନିଶ୍ଚୟ ପଚାରିବେ ଏବଂ ତାହା ପଚାରିବା ଯଥାର୍ଥ—କିନ୍ତୁ ଲେଖକ ମହାଶୟ, ଆପଣଙ୍କର ମତ କ'ଣ ଏ ବିଷୟରେ ? ଆପଣଙ୍କର ଭାବଗତ କି ବୁଦ୍ଧିଗତ ପ୍ରବୃତ୍ତି କେଉଁ ଆଡ଼କୁ ଯାଉଛି ? କୁମାରସ୍ୱାମୀଙ୍କର ଆଧ୍ୟାତ୍ମିକ ପରାମର୍ଶ ଗ୍ରହଣ କରିବେ, ନା ଭୋଳବାବୁଙ୍କ ପଦାଙ୍କ ଅନୁସରଣ କରିବେ ?

କ'ଣ କହିବି ? ମୁଁ କ'ଣ ବୁଝୁନାହିଁ କୁମାରସ୍ୱାମୀ କଭଳି ଗୋଟିଏ ସାରକଥା କହିଲେ ହେଲେ ମୁଁ କ'ଣ ମନା କରି ପାରିବି ଯେ ଶେଷଯାଏଁ ତରଙ୍ଗାୟିତ ହେବାର କାମନା ମୋତେ ଉସ୍କେଇଛି ? ତେଣୁ ଦ୍ୱିଧାରେ ପଡ଼ି ମୁଁ ଜଣେ ପ୍ରଖ୍ୟାତ ଇଂରାଜୀ ଲେଖକ, ହେଲେ ସମଧର୍ମୀ, ଉଇଲିୟମ୍ ସାରୋୟାନଙ୍କର ଉକ୍ତି ଉଦ୍ଧାର କରି କାହିବାକୁ ଚାହେଁ—"ମୁଁ ଯେମିତି ଅସହାୟ ହୋଇ ଜନ୍ମ ହୋଇଥିଲି, ଅସହାୟ ହୋଇ ମରିବି, ମୁଁ ସେମିତି ଲେଖି ଚାଲିଛି ଅସହାୟ ହୋଇ," ହଁ, ତାହାହିଁ ମୋ ଜୀବନର ଅଙ୍ଗୀକାର, ଏଇ ସନ୍ଧ୍ୟାବେଳକୁ । ଆଉ କିଛି ନୁହେଁ, କେଉଁ ଦରକାଣ୍ଟି ବୋଲିଥିବା ପାର୍ଥିବ ଉଦ୍ୟମକୁ ଆଙ୍କୁଡ଼ି ଧରି ସେଥିରୁ କିଛି ସୁଖ ପାଇବାର ପଣ, ଯାହାକୁ ଆସକ୍ତି କୁହାଯିବ । ଏବଂ ସେହି 'ଅଦରକାଣ୍ଟି' ସର୍ଜନା ହିଁ ମୋର ଧୂପଦୀପ ଦିଆ ଉପଚାର, ମୃତ୍ୟୁ ନାମକ ଉପଲବ୍ଧିକୁ ଲଭିବା ପାଇଁ । ହେଲେ ଏବେ ତାହା ନିଶ୍ଚିହ୍ନତା ନୁହେଁ, ଯଥାଯୋଗ୍ୟ ନିବୃତ୍ତି ମଧ୍ୟ ନୁହେଁ, କେବଳ ତରଙ୍ଗ । ତଥାପି ତରଙ୍ଗ । ଯାହାହେଉ, ଆଶୀର୍ବାଦ କରନ୍ତୁ ଯେ ମୁଁ ସେଇଥିରେ ପହଁରି, ବୁଡ଼ି ଯାଇ, ଆଉ ଚବରଚବର ହୋଇ ଖେଳୁଥାଏ, ମୋର ଶେଷ ନିଃଶ୍ୱାସ ଯାଏଁ ।



# ସୁଟନଲି ଶୀତ

ଏହି ସମୟରେ ଏମିତି ଶୀତ ହୁଏ ଦିଲ୍ଲୀରେ, ଯେଉଁଥିରେ ତମ ଅସ୍ଥିମଜା ଥରି ଉଠେ, ଏ ବିଷୟରେ ମହେଶବାବୁଙ୍କର ଯଥେଷ୍ଟ ଧାରଣା ନଥିଲା ବୋଲି କୁହାଯାଇ ନପାରେ । କାରଣ ପୂରା ଯୋଡ଼ିଏ ବର୍ଷ, ଏବଂ ତା' ଉପରୁ ଆହୁରି ସାତମାସ ସେ ଏଇଠି କଟେଇଛନ୍ତି । ଜୀବନର ଗୋଟିଏ ସ୍ମରଣୀୟ ପରିଚ୍ଛେଦ । ପୋଷ୍ଟଗ୍ରାଜୁଏଟ୍ ପଢ଼ା ଶେଷ କରି କର୍ମକ୍ଷେତ୍ରରେ ପାଦ ଦେବାର ସନ୍ଧିକ୍ଷଣ । ଯେତେ-ବେଳେ ସେ ଭାବିଚିନ୍ତି ସ୍ଥିର କଲେ ଯେ ମୁଁ ଏଇ କାମ କରିବି ମୋ ଜୀବନରେ । ଅନ୍ୟମାନେ କୁହନ୍ତି ମୁଁ ଏଇଆ ହେବି—ଡାକ୍ତର, ଇଞ୍ଜିନିୟର୍, ଓକିଲ୍ ସରକାରୀ ଅଫିସର୍, କମ୍ପାନୀ ଏକ୍‌ଜିକିଉଟିଭ୍, ଇତ୍ୟାଦି । କିନ୍ତୁ ମହେଶବାବୁ କହିଲେ ମୁଁ ଏଇ କାମ କରିବି । ପେଟ ପୋଷିବା ପାଇଁ ହଳ ଚଳାଏ କି ହୁକୁମ୍ ଚଳାଏ, ମୋର 'କାମ' ହେବ ଏଇଆ ।

ସେଇ କାମକୁ ସାଧାରଣ ଅର୍ଥରେ ରାଜନୀତି କହିଲେ ମହେଶବାବୁଙ୍କୁ ଭଲ ଲାଗିବ ନାହିଁ । ଜନସେବା କହିଲେ ମଧ୍ୟ ତାଙ୍କ ମନକୁ ପାଇବ ନାହିଁ । ପ୍ରଥମଟିର ଦୁର୍ନାମ ସେ ନେବାକୁ ଚାହାନ୍ତି ନାହିଁ । ଏବଂ କେବଳ ଦୁଃଖୀରଙ୍କିମାନଙ୍କର ସେବା କରି ତାଙ୍କ ଲୁହ ପୋଛି ଦେବା ତାଙ୍କର ଉଦ୍ଦେଶ୍ୟ ନୁହେଁ । ମହେଶ ମହାନ୍ତି ନିଜକୁ ଉପସ୍ଥାପିତ କରିବ ଏଇ ସର୍ବଭାରତୀୟ ଜନସମାଜରେ । ଯାହା ସମାଜର ଚିନ୍ତାଧାରାକୁ ପ୍ରଭାବିତ କରିବ, ବିଶେଷ ସାହାଯ୍ୟ କରିବ ତାକୁ ଠିକଣା ବାଟରେ ଚଳେଇ ନେବା ଲାଗି, ଏବଂ ଦେଶର ମଙ୍ଗଳ ହେବ । ଲୋକେ ମନେ ରଖିବେ ମହେଶ ମହାନ୍ତିଙ୍କୁ ।

ସେତେବେଳେ ଦିଲ୍ଲୀର ଶୀତ ତାଙ୍କ ଉତ୍ସାହକୁ ଅଧିକ ଶକ୍ତି ଆଣିଦେଇଥିଲା । ଯେଉଁଥିରେ ସେ ଥାଇ ଥାଇ ରୋମାଞ୍ଚିତ ହୋଇ ଉଠୁଥିଲେ । କାରଣ ଏଇ ଶୀତ-ଋତୁରେ, ଦିଲ୍ଲୀରହଣିର ପ୍ରଥମ ଡିସେମ୍ବର-ଜାନୁଆରିରେ, ସେ ଗୋଟିଏ ଦଳ ଗଢ଼ିଥିଲେ ତାଙ୍କ କଲେଜ୍‌ରେ, ଦି'ତିନିଜଣ ସହପାଠୀଙ୍କୁ ନେଇ, ଯାହାର ନାଆଁ ଦିଆଗଲା "ନିର୍ମଳ ସମାଜ ଆନ୍ଦୋଳନ" । ଏବଂ ମନେ ଅଛି ସେଇ ବର୍ଷର 'ନିଉ ଇଅର୍ ଇଭ୍' ରାତିରେ 'ଭଲ୍‌ଗା' ନାମକ ରେସ୍ତୋରାଁରେ ଉତ୍ସବ ମନାଇଲା ବେଳେ ସହପାଠିନୀ ନମିତା ବଜାଜ୍‌କୁ ଗୋଟାଏ ହାଡ଼ ଚୋବେଇବାର ଦେଖି ତାଙ୍କ ମନରେ ଆସିଲା ଯେ ଇଏ ମଧ୍ୟ ଗୋଟାଏ ପ୍ରଦୂଷଣ । ନମିତାର ଜିନ୍ସ୍‌ଶ୍ରୀ, ତା'ର ଧୀରବଚନ

ଏବଂ କୋମଳ ଭାବଭଙ୍ଗୀ ସାଙ୍ଗରେ ଏଇ ହାଡ଼ ଗ୍ରେବାଇବାର ଦୃଶ୍ୟ ମୋଟେ ଖାପ୍ ଖାଉ ନାହିଁ । ଅହିଂସା ଉପରେ ହିଂସାର, ସୁନ୍ଦର ଉପରେ ଅସୁନ୍ଦରର ଆକ୍ରମଣ ପରି । ପ୍ରଦୂଷଣ ଆଉ କାହାକୁ କୁହନ୍ତି ? ଏବଂ ସେଇଠୁଁ ସେ ଠିକ୍ କଲେ ଯେ ଯେହେତୁ ପ୍ରତ୍ୟେକ ମଣିଷ ସ୍ୱଭାବତଃ ସ୍ୱଚ୍ଛ ଓ ସୁନ୍ଦର (କମିତା ହୁଏତ ତା'ର ଗୋଟାଏ ମଡ୍ଡେଲ୍), ସେ ଏଣିକି ମାଛମାଂସ ଛାଡ଼ିଦେବେ । ନୂଆ ବର୍ଷର ଅନ୍ୟତମ ନିଷ୍ପତ୍ତି, ଏନ୍. ଏସ୍. ଏ.ର ଆଦର୍ଶରୁ ଉଦ୍‌ଭୂତ, ଯାହାର ପ୍ରତିଶ୍ରୁତି ଏହିପ୍ରକାର ଭାରତବାସୀମାନଙ୍କ ପ୍ରତି—

ଆମେ କୌଣସି 'ବାଦ'ରେ ବିଶ୍ୱାସ କରୁ ନା, କିନ୍ତୁ ଆମେ ଚାହୁଁ ନିର୍ମଳ ସମାଜ । ଆମେ ଦୁର୍ନୀତିର ଚୂଲମଇଲାକୁ ଧୋଇ ଦେବାକୁ ଚାହୁଁ, ଯେମିତିକି ପ୍ରତ୍ୟେକ ନୀତିନିୟମ ଯଥାର୍ଥରେ କାର୍ଯ୍ୟକାରୀ ହୋଇପାରିବ, ତାହା ଯେକୌଣସି 'ବାଦ' ଉପରେ ପ୍ରତିଷ୍ଠିତ ହେଉ ନା କାହିଁକି । ଦୁର୍ନୀତି ଯାହା ପ୍ରଦୂଷଣ ସେଇଆ; ଉଭୟ ଅସୁନ୍ଦର । ଦୁର୍ନୀତି ଯାହା ମିଥ୍ୟାଚାର ସେଇଆ, ଉଭୟ ଅସୁନ୍ଦର । ଦୁର୍ନୀତି ଯାହା ଶଠତା ସେଇଆ, ଉଭୟ ଅସୁନ୍ଦର ।

ଏହେତୁ ଭାଇ ଓ ଭଉଣୀମାନେ, ଆସ ଆମେ ଏକ ନିର୍ମଳ ଓ ସୁନ୍ଦର ସମାଜ ଗଢ଼ି ତୋଳିବା । ତା'ହେଲେ ଗାନ୍ଧୀ ହୁଅନ୍ତୁ କି ମାର୍କସ୍, ଉଭୟ ଆମକୁ ଆଶୀର୍ବାଦ କରିବେ ଏବଂ ଗଣତନ୍ତ୍ର ପ୍ରତିଷ୍ଠିତ ହୋଇ ପାରିବ ଆମ ଦେଶରେ, ଇତ୍ୟାଦି ।

ଏବଂ ଏଇ ଶୀତଋତୁରେ, ପୁରପୂର ମନେ ଅଛି ସେଦିନର କଥା, 'ଏନ୍. ଏସ୍. ଏ.'ର ପ୍ରତିଷ୍ଠିତ ତଥା ପ୍ରଥମ ସଭାପତି ମହେଶ ମହାନ୍ତି ଆନ୍ଦୋଳନର ପ୍ରଥମ ସଚିବ କୁମାରୀ ଶୀଲି ସମ୍ପିନ୍‌ଙ୍କ ଆଖିରେ ଆଖି ରଖି ସୁସ୍ପଷ୍ଟ ଉଚ୍ଚାରଣ କରି କହିଥିଲେ, "ଆଇ ଲଭ୍ ୟୁ, ଶୀଲି ।" ଶୀଲି ସମ୍ପିନ୍ ଚମକି ଉଠିଥିଲେ, ସେଇଠୁ ହସି ପକେଇଥିଲେ । କିନ୍ତୁ ସେ ମଧ୍ୟ ତତ୍‌କ୍ଷଣାତ୍ ଏବଂ ବିନା ଦ୍ୱିଧାରେ କହିଥିଲେ "ଥ୍ୟାଙ୍କ୍ ୟୁ" । ତାଙ୍କ ପିନ୍ଧିଥିବା ପୁଲ୍‌ଓଭର-କର୍ମନ୍‌ର ରଙ୍ଗ, ମାନେ ତା' ଉପର ଅଂଶର ରଙ୍ଗ ମଧ୍ୟ ମନେ ପଡ଼ୁଯାଉଛି । ନାରଙ୍ଗି-ସୁନେଲି କି ହଳଦିଆ-ସୁନେଲି ବୋଲି କହିହେଉ ନାହିଁ । କିନ୍ତୁ ସୁନେଲି ନିଶ୍ଚୟ, ଏବଂ ତାହା ଝଲି ଉଠୁଥିଲି ଶୀତସୂର୍ଯ୍ୟର ସ୍ପର୍ଶରେ । ଯେମିତି ଝଟକୁଥିଲି ଶୀଲିଙ୍କ ସ୍ୱଚ୍ଛ ସମତୁଲ ଦାନ୍ତ ଦି'ପାଟିର ହସଖଣ୍ଡିକ । ତହୁଁ ତରୁଣ ମହେଶବାବୁ ଯେଉଁ ଶିହରଣ ଅନୁଭବ କଲେ, ତାକୁ ସେ ସହଜେ ଏକ ନିର୍ମଳସୁନ୍ଦର ପ୍ରେମର ସଂଘାତ ବୋଲି ବରି ନେଇଥିଲେ । କାରଣ ସେତିକିବେଳେ ଯେ ଲେଡି ଗାର୍ଡ଼ନ୍ସ୍‌ର ଶୀତ ସମାରୋହ ଅଧିକ ତତ୍ପର ହୋଇ ଉଠିଥିଲି, ଏଭଳି ଭାବିବାର କୌଣସି କାରଣ ନଥିଲି । ଶୀଲି 'ମୁଁ ବି ତୁମକୁ ଭଲପାଏ' ବୋଲି କହିନାହିଁ ସତ, କିନ୍ତୁ ତା'ର ସମୁଜ୍ଜ୍ୱଳ ସହାସ୍ୟ 'ଥ୍ୟାଙ୍କ୍ ୟୁ',

ତାହାହିଁ ଯଥେଷ୍ଟ ଥିଲା ଶିହରଣ ପାଇଁ । ପାଖରେ ଆଉ କେହି ନଥିଲେ ସେତେବେଳେ, ପିକ୍‌ନିକ୍‌ରେ ଆସିଥିବା ଗ୍ରୁପଗ୍ରୁପଙ୍କ ଦଳ । ସେହେତୁ ଏଇ ମୁକାବିଲା, ସମ୍ଭବ ହୋଇଗଲା ଏବଂ ତା'ପରେ ମହେଶବାବୁଙ୍କର ମନେ ହୋଇଥିଲା ଯେ ଶୀଲା ଉଚ୍ଛ୍ୱସିତ, ଉଚିତରୁ ଅଧିକ ଏବଂ ଅଧିକରୁ ଅଧିକ ତେଜରେ ତର୍କ କରୁଛି ଅନ୍ୟମାନଙ୍କ ସାଙ୍ଗରେ, ଦେଶରେ ଘୋର ଦୁର୍ଦ୍ଦିନରେ ଏନ୍. ଏସ୍. ଏ.ର ଭୂମିକାକୁ ନେଇ ଏବଂ ତା'ର ଉଜ୍ଜ୍ୱଳ ହସଗୁଡ଼ାକ ଢେଉ ପରେ ଢେଉ ଖେଳୁଛି ଲୋଦି ଗାର୍ଡ଼େନ୍‌ସ୍‌ର ଘାସ ଓ ଲତାପତରକୁ ଦୋଳାୟିତ କରି । ତା' ମାନେ ସେ ମୋର ପ୍ରେମ ଘୋଷଣାକୁ ଗ୍ରହଣ କରିଛି । ତା'ର ପ୍ରତିଦାନ ନଦେଇ ପାରିଲେ ନାହିଁ ।

କିନ୍ତୁ ସେ କାହିଁକି ଏମିତି କରିଛଡ଼ା ଦେଉଛି ମୋତେ ? ପ୍ରେମ ଘୋଷଣାର ପରବର୍ତ୍ତୀ ଦିନଗୁଡ଼ିକର ଏହି ପ୍ରଶ୍ନ ଉଠିଥିଲା ତାଙ୍କ ମନରେ । ଏନ୍. ଏସ୍. ଏ.ର ସଚିବ ହିସାବରେ ସେ ମଧ୍ୟ ତା'ର କର୍ତ୍ତବ୍ୟ କରୁଛି, ନାନାଦି ବିଷୟରେ ଆଳାପ କରୁଛି, କିନ୍ତୁ ବେଶି ସମୟ ଯାଏଁ ଏକୁଟିଆ ରହୁନାହିଁ ତାଙ୍କ ପାଖରେ । ସତେକି ମହେଶଜୀ ପୁଣି କିଛି କହିବେ ତାଙ୍କ ପ୍ରେମକୁ ନେଇ, ଏବଂ ଏଥର ସେ କେବଳ ଥ୍ୟାଙ୍କ୍‌ ସ୍‌ଟିଏ ଦେଇ ପାର୍ ପାଇ ପାରିବ ନାହିଁ । ହଁ, ସେଇଆ ହୋଇଛି । ମହେଶବାବୁ ତା'ର ନାରୀସୁଲଭ ସଂକୋଚ ପ୍ରତି ଦୟା ଦେଖାଉଥିଲେ ଉଦାରତାପୂର୍ବକ । ପୁଅର୍ ଗାର୍ଲ୍ ! ଆନ୍ଦୋଳନର ସକ୍ରିୟ ସଦସ୍ୟ ତଥା ସଚିବ ହୋଇ ମଧ୍ୟ ତୁ ସିଧାସଳଖ କହିପାରିଲୁ ନାହିଁ, ଯେ କ୍ଷମା କରନ୍ତୁ ମହେଶଜୀ, ଥ୍ୟାଙ୍କ୍ ୟୁ ଫର୍ ୟୋର୍ ଲଭ୍, ହେଲେ ମୁଁ ବର୍ତ୍ତମାନ ତା'ର ପ୍ରତିଦାନ ଦେଇ ପାରିବି ନାହିଁ, ଯେକୌଣସି କାରଣରୁ ?

ଯାହାହେଉ, ଆଜି ଆଉ ଗୋଟାଏ ପ୍ରଶ୍ନ ତାଙ୍କ ମନକୁ ଆସୁଛି, ପ୍ରାୟ କୋଡ଼ିଏ ବର୍ଷ ପରେ, ଏବଂ ତାଙ୍କୁ ବିସ୍ମିତ ତଥା ଆନ୍ଦୋଳିତ କରୁଛି । ...ଝିଅ ଯେତେବେଳେ କହିଲା, ଯେ କ୍ୱାଇଁ ବିଶ୍ୱନାଥ ଯେଉଁ ମଲ୍‌ଟିନ୍ୟାସନାଲ୍ କମ୍ପାନୀ 'ଏସିଆ ଭିଜନ୍'ରେ ପଶିବା ପାଇଁ ଗୁହେଁ, ତା'ର ପର୍ସନେଲ୍ ମ୍ୟାନେଜର୍ ହେଉଛନ୍ତି ଜଣେ ଭଦ୍ରମହିଳା, ଏବଂ ତାଙ୍କ ନାଆଁ ହେଉଛି ଶୀଲା ସକ୍ସେନା, ସେଥିରେ ମୁଁ ପ୍ରଥମେ ଚମକି ଉଠିଥିଲି । ତା'ପରେ ଭାବିଲି ଯେ ଇଏ ସେଇ ଶୀଲା ନହୋଇ ପାରେ । କାରଣ ତା'ର ସାଙ୍ଗିଆ ବଦଳି ନାହିଁ କେମିତି ? ନା ସେ ଆଉ ଜଣେ ସକ୍ସେନାକୁ ବାହା ହୋଇଛି ? କିନ୍ତୁ ଏଇଠିକି ଆସି ବୁଝୁଛି, ସେବେଳର ସହପାଠୀ ଅଶୋକ ବର୍ମା କହିଲା ସେ କଥା, ଯେ ହଁ, ଇଏ ସେଇ ଶୀଲା ଏବଂ ସେ ଆଜିଯାଏଁ ବାହା ହୋଇ ନାହିଁ । ଆଶ୍ଚର୍ଯ୍ୟ ! କିନ୍ତୁ ମୁଁ ଏତେ ବୁଡ଼୍‌ବକ୍ ନୁହେଁ ଯେ ଭାବିବି— ଡ୍ୟାମ୍ ଇଟ୍ ! ମୁଁ ଏତେ ବୁଡ଼୍‌ବକ୍ ନୁହେଁ କି ରୋମାଣ୍ଟିକ୍ ନୁହେଁ । ସେ ବି ନୁହେଁ । ଏନ୍. ଏସ୍. ଏ.ର କୌଣସି ସଦସ୍ୟ ସେମିତି ନଥିଲେ । ରୋମାଣ୍ଟିକ୍ ଭାବ ବି

ଗୋଟାଏ ଗୋଲପୀ କୁହୁଡ଼ି, ପ୍ରଦୂଷଣ, ଯାହା ସତକୁ ଘୋଡ଼େଇ ଦିଏ, ନିଜକୁ ଠକେଇ ଦିଏ ।

ନା, ଆମେ ସମସ୍ତେ ସତ ଥିଲୁ, ଏନ୍. ଏମ୍. ଏ.ର ସେଇ ପ୍ରଥମ ବାରଜଣ ମେମ୍ବର ଶୀଲି ସମେତ ।

ହଁ, ସିଏ ଥିଲା ଜୀବନର ଗୋଟିଏ ସୁନ୍ଦର ମୁହୂର୍ତ୍ତ ଏବଂ ମୁଁ ତା'ର ସ୍ମୃତିକୁ ଭଲପାଏ, ଭଲ ପାଇବା ଉଚିତ । ଗଭୀର ଶ୍ରଦ୍ଧା ଓ ସମ୍ମାନର ସହ । ···ମହେଶ-ବାବୁ ଗୋଟାଏ ଦୀର୍ଘ ନିଃଶ୍ୱାସ ପକାଇଲେ, ତାଙ୍କର ଆତ୍ମବିଶ୍ୱାସକୁ ଚହଲେଇଲା ପରି ।

···ଶୀଲି ସାଙ୍ଗରେ ଦେଖା ହେଲାରୁ ମୁଁ ସେଇ ସୁନ୍ଦର ମୁହୂର୍ତ୍ତଗୁଡ଼ିକୁ ପୁଣି ଥରେ ଅନୁଭବ କରିପାରିଛି, ଏହାହିଁ କ'ଣ ମୋର ଦିଲ୍ଲୀ ଆସିବାର ପ୍ରକୃତ ଉଦ୍ଦେଶ୍ୟ ନୁହେଁ ? ମୁଁ ଝିଅକୁ ବି କହିଛି ସେ କଥା, ଭିନ୍ନ ଭାବରେ । କହିଲି ଯେ ମୁଁ ରାଜି ଅଛି ଦିଲ୍ଲୀକୁ ଯାଇ ଶୀଲି ସହାନିଙ୍କ ସଙ୍ଗରେ ଦେଖା କରିବା ପାଇଁ, ଯଦି ସେ ସେଇ ଶୀଲି ହୋଇଥାଆନ୍ତି, କାରଣ ସେ ମୋର ସହପାଠିନୀ ତଥା ସହକର୍ମିଣୀ ଥିଲେ, ମୁଁ ସେଠି ଏମ୍. ଏ. କଲାବେଳେ । ମୋତେ ଭଲ ଲାଗିବ ଦେଖା ହେଲେ ତାଙ୍କ ସାଙ୍ଗରେ, ଏତେ ଦିନ ପରେ । କିନ୍ତୁ ସିନା, ମୁଁ କେବେହେଲେ ସୁପାରିସ କରି ପାରିବି ନାହିଁ ବନ୍ଧୁ ପାଇଁ । ତୁ ତ ଜାଣିଛୁ ତୋ ବାପାକୁ । ରିନୁ ସାଙ୍ଗେ ସାଙ୍ଗେ ଉତ୍ତର ଦେଇଥିଲା—'ମୁଁ କ'ଣ ସେ କଥା କହୁଛି ବାପା, ନା କେବେହେଲେ କହି ପାରିବି ? କିନ୍ତୁ ତମେ ଯଦି କହୁଛ ତୁମକୁ ଭଲ ଲାଗିବ ତାଙ୍କ ସାଙ୍ଗରେ ଦେଖା କଲେ ··'

ରିନୁର ଗୃହାଣିରେ ମିନତି ଥିଲା । କହିଲି, ହଉ ମୁଁ ଯିବି ଏବଂ ଆଶା କରୁଛି ସେ ସେଇ ଶୀଲି ହୋଇଥିବେ । ଏବଂ ସେ ଯେମିତି କୁରୁଳି ଉଠିଲି ଆନନ୍ଦ-ବିସ୍ମୟରେ, ମୁଁ ଯେତେବେଳେ ଫୋନ୍ କଲି ତାଙ୍କୁ, ଆଉ ତା' ଘରକୁ ଆସିବା ପାଇଁ ନିମନ୍ତ୍ରଣ କଲି ଆଜି ଅପରବେଳା ସାଢ଼େ ତିନିଟା ବେଳକୁ, ମୋର ସନ୍ଦେହ ନାହିଁ ଯେ ସେ ଯଥାର୍ଥରେ ସେଦିନର ସେଇ ଶୀଲି । ଦରବୁଢ଼ୀ ହେବଣି ଏଇକ୍ଷଣି, ତା'ଛଡ଼ା ଗୋଟାଏ ସିନିୟର୍ କମ୍ପାନୀ ଏକ୍ଜିକ୍ୟୁଟିଭ୍, ହେଲେ ସେ ସେଇ ଶୀଲି । ଯେମିତିକି ମୁଁ ସେଇ ମହେଶ । ହୁଏ ପଛେ ତଥାକଥିତ ମଫସଲ ହାଇସ୍କୁଲର ସାଧାରଣ ହେଡ୍ମାଷ୍ଟରଟିଏ । ଦୀପଶିଖା ତଥାପି ଜଳୁଛି, ଜଳୁଥିବ— ମୋ ଭିତରେ, ତା' ଭିତରେ, ଆମ ବାରଜଣଙ୍କ ଭିତରେ ।

ମିଛ ନଥିଲା ସେଦିନର ସଂକଳ୍ପ । ଏନ୍, ଏମ୍. ଏ. ଗୋଲ୍ ଖେଳୁ ନଥିଲା ସମାଜ ସାଙ୍ଗରେ ।···

ଏମିତି ଭାବୁ ଭାବୁ ଏବଂ ସେବେଳର ଜନପଥ ମାର୍କେଟ୍ କେତେ ବଦଳି ଗଲାଣି, ଟୁରିଷ୍ଟମାନଙ୍କ ପାଇଁ ନିର୍ଦ୍ଦିଷ୍ଟ କେତେ ନୂଆ ନୂଆ ଏବଂ ଭେଜାଲ୍ ଆର୍ଟ୍ ସାମଗ୍ରୀରେ ଭରିଗଲାଣି, ସେ ବିଷୟରେ ମୁଣ୍ଡ ନଖେଳାଇ, ଏବଂ କେବଳ ଏକ ପ୍ରଚଣ୍ଡ ଠେଲପେଲରେ ନୂତନତ୍ୱକୁ ଅନୁଭବ କରି, ମହେଶବାବୁଙ୍କର ହଠାତ୍ ମନେହେଲା, ଜନପଥର ଦୋକାନ ଧାଡ଼ିରୁ ବାହାରି ହୋଇ ଗୋଟାଏ ଖୋଲା ଜାଗାରେ ପହଞ୍ଚି ତାଙ୍କର ଚତୁଃପାର୍ଶ୍ୱକୁ ଚାହିଁଲା ବେଳକୁ, ଯେ ସେ ବୋଧହୁଏ ଜାଣିଶୁଣି ଏଇ 'ନୂଆ' ଦିଲ୍ଲୀ ଆଡ଼କୁ ଅନଉନାହାଁନ୍ତି । ତା'ର ପ୍ରଦୂଷିତ ହାଉଆକୁ ଶୁଙ୍ଘି କରି ମଧ୍ୟ ଶୁଙ୍ଘୁନାହାନ୍ତି । ମାନେ ସେ ଗୋଟାଏ ପ୍ରକଟ ଓ ପରିଷ୍କୃତ ସତକୁ ଗ୍ରହଣ କରିପାରୁନାହାନ୍ତି, କାହିଁକିନା ହେଇ ସୁନେଲି ଶୀତରୌଦ୍ରଟା ସତେ ହଜି-ଯାଇଛି, ହରିଯାଇଛି, ମରିଯାଇଛି ବୋଲି ସେ ବିଶ୍ୱାସ କରିବାକୁ ନାରାଜ ।

'ଆଇ ଲଭ୍ ୟୁ ଶୀଲା !'ର ପ୍ରତିଧ୍ୱନି କ୍ଷୀଣରୁ କ୍ଷୀଣତର ହୋଇ ନଷ୍ଟ ହୋଇଯିବଣି ଲକ୍ଷାଧିକ ଯାନବାହନରୁ ନିର୍ଗତ କଳା-ବାଦଲିଆ ଧୂଆଁରେ, ତଥା ସ୍କାଇ ସ୍କ୍ରେପରକୁ ନକଲ କରୁଥିବା ଉଚ୍ଚ ଉଚ୍ଚ ଅଟ୍ଟାଳିକାର ଲକ୍ଷାଧିକ ଭେଣ୍ଟିଲେଟର୍ ଭିତରେ ଛଟପଟ ହୋଇ ଏବଂ ସେହେତୁ ସିନିୟର୍ ଏକ୍ଜିକ୍ୟୁଟିଭ୍ ଶୀଲା ଦିଗ୍ୱିନ୍‌ର କୋମଳ ମୁଖମଣ୍ଡଳ ବେଶ୍ ଶକ୍ତ ହୋଇ ଯାଇଥିବ, ସେ କୁମାରୀ ହୋଇଥାଉ କି ଶ୍ରୀମତୀ, ଏଇ ସହଜ ସ୍ୱାଭାବିକ ସମ୍ଭାବନାକୁ ଗ୍ରହଣ କରିପାରୁ ନାହିଁ ମହେଶ ମହାନ୍ତି । କାରଣ ଏତେ ବର୍ଷର ବ୍ୟବଧାନ ପରେ, ଏତେ ବର୍ଷର ପରାଭବ ପରେ ସେ ଥକି ଯାଇଛି । ରୋମାଣ୍ଟିକ୍ ନହେଲେ ମଧ୍ୟ ସେ ରୋମାଣ୍ଟିକ୍ ଭାବକୁ ପ୍ରଶ୍ରୟ ଦେଉଛି ତା'ର ଭିତର ମନରେ । ତେଣୁ ଆଶା କରୁଛି ଯେ କୋଉ ଦୀପଶିଖା ତଥାପି ଜଳୁଥିବ ଶୀଲା ଦିଗ୍ୱିନ୍‌ର ହୃଦୟରେ ଏବଂ ତା'ର ମୁହଁ ଉଦ୍ଭାସିତ ହୋଇଉଠିବ ତା'ର ଏକ୍ସ-ପ୍ରେସିଡେଣ୍ଟଙ୍କୁ ଦେଖିଲା କ୍ଷଣି । ଯେ ମଧ୍ୟ ତା'ର ପ୍ରେମିକ ହେବାକୁ ବସିଥିଲା ଦିନେ, ଏବଂ କାଫେ କୋଟରେ ତା'ର ନିର୍ମଳ-ସୁନ୍ଦର ପ୍ରେମର ନିବେଦନ କରିଥିଲା, ନୈସର୍ଗିକ ପ୍ରକୃତି ପବନକୁ ସାକ୍ଷୀ ରଖି ।

ଏହାହିଁ କ'ଣ ଆଜିକାର ନିର୍ମମ ସତ୍ୟ ? ମୁଁ କ'ଣ ଜାଣିଶୁଣି ନିଜକୁ ଭୁଲେଇବାକୁ ଚାହୁଁଛି ? ଅସମ୍ଭବ !

ଚିରପରିଚିତ କନଟ୍‌ପ୍ଲେସ୍‌ର କରିଡର୍‌ରେ ପହଞ୍ଚି ବାଟ ଚାଲିଲାବେଳେ ମହେଶବାବୁ ତାଙ୍କ ଆତ୍ମବିଶ୍ୱାସକୁ ଫେରିପାଇ ଆସୁଥିଲେ । ଦୃଢ଼ତାର ସହ ଏବଂ ଯଥାର୍ଥରେ କିଛି ବଦଳି ନାହିଁ, ସବୁକିଛି ସେଇଆ ଅଛି, ଏହି ମର୍ମରେ ସେ ପଶିଗଲେ 'ୟୁନାଇଟେଡ୍ କଫି ହାଉସ୍' ଭିତରକୁ । ଅତୀତର ସେଇ ଫେଭରିଟ୍ କଫି ହାଉସ୍ । ମୋର, ଶୀଲାର, ଆଉ ଏନ୍. ଏସ୍. ଏ.ର ।

କିନ୍ତୁ ପଚ୍ଛନ୍ତୁ ଦେଖିଲେ ଯେ ତା'ର ଚେହେରା ପୂରାପୂରି ବଦଳି ଯାଇଛି । ବାହାରେ କେତେ ପୋଷାକ ଆଉ ଓଜନଆ ଦିଶୁଛି । ମନେ ହେଉ ନାହିଁ ଯେ ଏଇଠି କୋଉଠି ବସୁଥିଲେ ଆମେ କପେ କପେ କଫି ଓ 'ଦୋସା'କୁ ନେଇ ଏବଂ ଅନ୍ୟାନ୍ୟ ଆଳାପ ଆଲୋଚନା କରୁଥିଲେ ଏନ୍. ଏସ୍. ଏ. ତଥା ସମାଜସଂସ୍କାରର ଭବିଷ୍ୟତ ଉପରେ ।

ଫର୍‌ଗେଟ୍ ଇଟ୍ ! ସେଇ ଟେବୁଲ୍ ଚଉକି ନଥାଉ କି ସେଇ ବାତାବରଣ, କିନ୍ତୁ ଇଏ କ'ଣ ସବୁ ନୁହେଁ, ଯେ ମୋ ପ୍ରେମପୋଷଣାର ପ୍ରାୟ ତିନିମାସ ବିତିଗଲା ପରେ ମଧ୍ୟ ଆନ୍ଦୋଳନର ସଚିବ ଶୀଳ୍ପ ସର୍ଗନ୍ ତା'ର ଅଧ୍ୟକ୍ଷ ମହେଶ ମହାନ୍ତି ସାଙ୍ଗରେ ନିଃସଙ୍କୋଚ ଆଲୋଚନା କରୁଥିଲା ଏଠି ? ଏବଂ ସେତେବେଳେ କ'ଣ ତା' ହାଲୁକା ନୀଳ ଆଖି (ଅନେକଟା ଶ୍ୱେତାଙ୍ଗିନୀମାନଙ୍କ ପରି) ରେ ତାରା ଫୁଟୁ ନଥିଲା, ନା ଉଜ୍ଜ୍ୱଳତା କିଛି ଊଣା ଥିଲା ତା'ର ଶୁଭ୍ର ଦନ୍ତପଂକ୍ତିର ହସରେ ? ତେଣୁ ବୁଝିବାକୁ ହେବ ଯେ ବ୍ୟକ୍ତିଗତ ସ୍ତରରେ ମୋ ପ୍ରେମର ପ୍ରତିଦାନ ଦେଇ ନପାରିଲେ ମଧ୍ୟ ସେ ସେତିକି ଅନୁଗତ ଥିଲା ଏନ୍. ଏସ୍. ଏ.ର ଆଦର୍ଶ, ତଥା ତା'ର ପ୍ରତିଷ୍ଠାତା ଓ ଅଧ୍ୟକ୍ଷ ମହେଶଙ୍କଙ୍କ ପ୍ରତି । ଯଦିଓ ଏନ୍. ଏସ୍. ଏ ନିର୍ଯାତ୍ ହାରି ଯାଇଥିଲା ନିକଟରେ ଅନୁଷ୍ଠିତ କଲେଜ୍ ଇଲେକ୍‌ସନ୍‌ରେ । ତା'ର କୌଣସି ପ୍ରାର୍ଥୀ କର୍ମକର୍ତ୍ତା ହେବା ଦୂରର କଥା, କଲେଜ୍ କାଉନ୍‌ସିଲ୍‌ର ଗୋଟିଏ ହେଲେ ସିଟ୍ ହାସଲ କରି ପାରି ନଥିଲେ । ଷ୍ଟୁଡେଣ୍ଟସ୍ କଂଗ୍ରେସ, ଷ୍ଟୁଡେଣ୍ଟସ୍ ଫେଡ଼େରେ-ସନ୍ ଓ ବିଦ୍ୟାର୍ଥୀ ପରିଷଦ ସମସ୍ତଙ୍କୁ କିଛି କିଛି ମିଳିଥିଲା । କିନ୍ତୁ ଏନ୍. ଏସ୍. ଏ.ର ଖାତାରେ ଶୂନ୍ । ଥୋକେ ଥଟ୍ଟା କରୁଥିଲେ ଆମକୁ, ଯେ ତମେ ମାଈ ନୁହେଁ କି ଗାଈ ନୁହଁ, ଫିଶ୍ ନର୍ ଫାଉଲ୍, ନର୍ ଗୁଡ୍ ରେଡ୍ ହେରିଙ୍ଗ୍, ତେଣୁ ତମେ କେମିତି ଆଶା କରୁଥିଲ ତମକୁ କିଏ ଭୋଟ୍ ଦେବ ବୋଲି ? ତଥାପି—ତଥାପି ଆମେ ତିଳେହେଲେ ଦବି ଯାଇ ନଥିଲୁ । ଅପରନ୍ତୁ କେମିତି ଘର ଘର ବୁଲି ସହଧର୍ମୀ ଦେଶପ୍ରାଣ ନାଗରିକମାନଙ୍କଠାରୁ ଚୃନ୍ଦା ଅଦାୟ କରିବା ଏବଂ ସେଇ ଟଙ୍କାରେ ଆମର ଯୁଗୋପଯୋଗୀ ଆଦର୍ଶକୁ ପ୍ରଚାର କରିବା ପ୍ରତି ପତ୍ରିକାର ଜରି-ଆରେ, ଏହାହିଁ ଥିଲା ଆମ ସେତେବେଳର ଅଳାପ ଆଲୋଚନାର ସାରାଂଶ । ବିଶେଷତଃ ଆମ ଦୁ'ଜଣଙ୍କ ଭିତରେ । ଏବଂ କହୁଛି ପରା, ଆବେଗ କି ଉତ୍ସାହ କେଉଁଥିରେ କିଛି ଊଣା ପଡ଼ି ନଥିଲା । ସାନି ପରାଭବ ପରେ ମଧ୍ୟ ଆମ ଦାମ୍ଭିଶିଖର ସେତିକି ଉତ୍ତୁଙ୍ଗ ହୋଇ ରହିଥିଲା । ଏଇଥିରୁ ବୁଝ କେତେ ମହାନ୍ ଓ ବଳିଷ୍ଠ ଥିଲା ଆମ ଆନ୍ଦୋଳନ, କେତେ ଶକ୍ତ ଥିଲା ତା'ର ମୂଳଦୁଆ । ତେଣୁ କେମିତି କହୁଛ ଯେ ଏଥି ଭିତରେ ଗୁଡ଼ାଏ ସମସ୍ତ ଗୃହଳ ଯାଇଛି ବୋଲି ଦୀପଶିଖାଟା ଲିଭି ଯାଇଥିବ ? ଅସମ୍ଭବ ॥

ଥିବ, ଅଛି, ପ୍ରକଟ ନ ହେଲେ ବି ସ୍ତିମିତ କି ପ୍ରଚ୍ଛନ୍ନ, ଯାହାକୁ ଅଚିରେ ଚେଇ ଦେଇ ହେବ । ଶୀଳା ଆଉ ତା' ମହେଶ୍ଵରଙ୍କ ଭିତରେ । ସେଇ ନିର୍ମଳସୁନ୍ଦର ଆଦର୍ଶ, ଆଉ ପ୍ରେମ, ଅଥବା ଅନୁରାଗ ଅଥବା ପ୍ରୀତି···

ମହେଶବାବୁ ପୁନରୁଜ୍ଜୀବିତ ହୋଇ ତାଙ୍କ କଣ୍ଠିକୁ ବାରମ୍ବାର ଚୁମ୍ବନରେ ଗୋଠେଲଇବାକୁ ଲାଗିଲେ ।

କହିହେବ ନାହିଁ କ'ଣ ହୋଇଥା'ନ୍ତା ଯଦି ମୁଁ ରହି ଯାଇଥା'ନ୍ତି ଦିଲ୍ଲୀରେ । ତା' ହେଲେ ହୁଏତ ଏନ୍. ଏମ୍. ଏ. ନଥା'ନ୍ତା, କାରଣ ଅନ୍ୟ ସଦସ୍ୟମାନେ କ୍ରମଶଃ ଦୂରେଇ ହୋଇଯାଉଥିଲେ ଯେଝା ଯେଝା ବ୍ୟକ୍ତିଗତ ପରିସ୍ଥିତିର ଚାପରେ, କିନ୍ତୁ ଆମ ଦୁଇଜଣଙ୍କ ଆନ୍ଦୋଳନର ବୈଠକଖାନା, ଅର୍ଥାତ୍ ଲାଇବ୍ରେରୀର ସେଇ ଛୋଟିଆ ନିରୋଳା କମରାରେ ଅଧିକରୁ ଅଧିକ ସମୟ କଟେଇବାକୁ ପଡ଼ିଥା'ନ୍ତା. ଆନ୍ଦୋଳନକୁ ଗୋଟାଏ ନୂତନ ରୂପରେଖ ଆଣିଦେବା ଲାଗି । ଏବଂ ଆମର ଘନିଷ୍ଠ ଅନ୍ତରଙ୍ଗତା କେଉଁଆଡ଼କୁ ଯାଇଥା'ନ୍ତା, କିଏ କହିବ ? କେତେଦିନ ଆଉ 'ସେ ବିଷୟ'ରେ ଚୁପ୍ ରହିଥା'ନ୍ତା ?

ଆରେ, ମୁଁ କହୁନାହିଁ ଯେ ସେ ମୋର ପ୍ରେମଯାଚନାକୁ ବରି ନେଇଥିଲା ମନେ ମନେ, କିନ୍ତୁ ତାକୁ ସଙ୍କୋଚ ଲାଗୁଥିଲା ତାକୁ ପ୍ରକାଶ୍ୟରେ ସ୍ୱୀକାର କରିବା ଲାଗି । ହୋଇପାରେ ଯେ ତା'ର ଅନୁରୂପ ଆଗ୍ରହ ନଥିଲା, ଅଥବା ସେ ଡରୁଥିଲା କାଳେ ପ୍ରେମ ତାକୁ ଚଟ୍‌କିନା ଟାଣି ନେବ ବିବାହ ବନ୍ଧନ ଆଡ଼କୁ, ଏବଂ ସେ ସେଥିପାଇଁ ପ୍ରସ୍ତୁତ ନଥିଲା ସେତେବେଳେ । ଏବଂ ମୁଁ ମୋଟେ ଭାବୁନାହିଁ ଯେ ଆଜି ମୋତେ ଦେଖିଲାକ୍ଷଣି ସେ କିଛି ଗୋଟାଏ ରୋମାଣ୍ଟିକ୍ ଭାବ ଦେଖାଇବ । କିନ୍ତୁ ମୁଁ ଅବଶ୍ୟ କହିବି ଯେ ଆମେ ସଧର୍ମୀ ଓ ସମଦର୍ଶୀ ଥିଲୁ । ଏବଂ ଯାହା ଥିଲା ଆମ ଭିତରେ ଓ ତା'ର ଜ୍ୟୋତି କିଛି କମ୍ ନଥିଲା, ତାହା ପୂରାପୂରି ଲିଭି ଯାଇଥିବ ବୋଲି ଭାବିବା ନିତାନ୍ତ ଅନ୍ୟାୟ ।

ତେଣୁ ଏତେଦିନ ପରେ ମୋତେ ଦେଖିଲେ ତା'ର ଅବଶ୍ୟ ମନେ ପଡ଼ିବ ସେଦିନର କଥା । ସେଦିନର ଶୀତଋତୁ, ଯାହା ଝଟକୁଥିଲା ସୂର୍ଯ୍ୟର ସୁନେଲି କିରଣରେ, ତା'ର ଉପାଦାନ ନାରଙ୍ଗୀ-ସୁନେଲି ହେଉ କି ହଳଦିଆ-ସୁନେଲି । ପୋତି ହୋଇଯାଇଥିବା ସୁନା ପୁଣି ଝକଝକ ହୋଇ ଉଠିବ, ଏବଂ ଆମେ ଦିହେଁ ହାତ ବଢ଼େଇବୁ ତା'କୁ ଛୁଇଁବା ଲାଗି ।

ଦୁଃଖର ବିଷୟ ମୋତେ ହଠାତ୍ ଫେରିଯିବାକୁ ପଡ଼ିଲା ଓଡ଼ିଶାକୁ ବାପାଙ୍କର ଅସୁସ୍ଥତା ଯୋଗୁଁ ଏବଂ ମୁଁ ସେଇଠି ରହିଗଲି । ନା, ଦୁଃଖର ବିଷୟ ବୋଲି କହିବି କାହିଁକି ? ସେଇଠି ତ ମୋର ଦେଖା ହେଲା ସୁପ୍ରୀତି ସାଙ୍ଗରେ, ଯାହାକୁ

ମୁଁ ଭଲ ପାଇଲି, ଯଥାମତ ଭଲ ପାଇଲି ଏବଂ ସେ ମୋତେ ଭଲ ପାଇଲା, ଯଥାମତ ଭଲ ପାଇଲା, ଆମେ ଯଥାଶୀଘ୍ର ବାହାହୋଇ ପଡ଼ିଲୁ ଏବଂ ଆମର କୁନୁମୁନିଆ ଝିଅଟିଏ ହେଲା, ସୁନାନାକି ଝିଅ ରନୁ, ଆଜି ଯାହାର ପାଇଁ ମୁଁ ଆସିଛି ଦିଲ୍ଲୀକୁ ।

ମୁଁ ଠିକ୍ ତା' କଥାରେ ଆସିନାହିଁ ସତ, ମାନେ ତା'ର ମନସ୍କାମନା ପୂର୍ଣ୍ଣ କରିବା ଲାଗି । କିନ୍ତୁ ସେଇ ତ ଗୋଟାଏ ସୁଯୋଗ ବାଢ଼ି ଦେଲା ମୋତେ, ପୁଣି ଥରେ ଦେଖା କରିବା ପାଇଁ ଶୀଳା ସାଙ୍ଗରେ ? ଇଏ କ'ଣ ଅନ୍ତତଃ ଗୋଟାଏ ନିହାତି ମଜାକଥା ନୁହେଁ ଯେ ଏତେଦିନ ପରେ ମୋର ଦେଖା ହେଉଛି ଗୋଟିଏ ଝିଅ ସାଙ୍ଗରେ, ଯେ ମୋ କର୍ମଜୀବନର ପହିଲି ସାଥୀ ବୋଲି କହିବାକୁ ହେବ ? ସୁଶ୍ରୀ ସପ୍ରତିଭ ନାରୀଟିଏ, ଯାହାକୁ ମୁଁ ଆଇ ଲଭ୍ ୟୁ !' ର ଅମୃତବୋଲା ପଦଟିଏ ଶୁଣେଇଥିଲି ଦିନେ ?

ମହେଶବାବୁ ହାତଘଡ଼ି ଦେଖିଲେ । ଆହୁରି ଘଣ୍ଟାଏ ଉପରେ ଅଛି ସାଢ଼େ ଛଅଟା ବାଜିବାକୁ । ଏ—ଫାଇଭ୍, ଗୁଲ୍‌ମୋହର୍ ପାର୍କ । ନୂଆଦିଲ୍ଲୀର ଗୋଟିଏ ସମ୍ଭ୍ରାନ୍ତ ସୌଖୀନ କଲୋନୀ । ସ୍ୱାଭାବିକ । 'ଏସିଆ ଭିଜନ୍'ର ପର୍ସନେଲ୍ ମ୍ୟାନେଜର କ'ଣ ରହୁଥା'ନ୍ତେ କରୋଲ୍‌ବାଗ୍‌ରେ ନା ଦରିଆଗଞ୍ଜ୍‌ରେ ?

ପାଞ୍ଚମିନିଟ୍ ନଯାଉଣୁ ମହେଶବାବୁ ପୁଣି ଥରେ ତାଙ୍କ ହାତଘଡ଼ି ଦେଖିଲେ । ସତେକି ସଦାଜାଗ୍ରତ ହୋଇ ରହିବାକୁ ପଡ଼ିବ । ନହେଲେ ଏଇ ଆପଏଣ୍ଟ୍‌ମେଣ୍ଟ୍, ଜୀବନରେ ଥରେ ଆସେ ଏମିତିକା ଆପଏଣ୍ଟ୍‌ମେଣ୍ଟ୍, ହାତଛଡ଼ା ହୋଇଯିବ ।

କଫି ହାଉସ୍‌ରୁ ବାହାରି ଆସିଲା ପରେ ତତ୍‌କ୍ଷଣାତ୍ ଅଟୋରିକ୍‌ସାଟିଏ ଧରି ଯାଇ ହେଉ ନାହିଁ ଗୁଲ୍‌ମୋହର୍ ପାର୍କକୁ । ଅତି ଶୀଘ୍ର ପହଞ୍ଚିବାଟା ଉଚିତ ହେବ ନାହିଁ । ସେହେତୁ ମହେଶବାବୁଙ୍କୁ କନଟ୍‌ପ୍ଲେସ୍ ଏବଂ ତା'ର ଆଖପାଖରେ ପରିକ୍ରମା ମାରିବାକୁ ପଡ଼ିଲା ପ୍ରାୟ ଅଧଘଣ୍ଟାଯାଏଁ ।

କିନ୍ତୁ ସେ ଏକ ଅଭୂତପୂର୍ବ ଉଦ୍‌ବିଗ୍ନତା ଅନୁଭବ କଲେ ସେଇ ସମସ୍ତ-ତକ । ଯେମିତିକି କେଉଁ ଗୋଟାଏ ପରୀକ୍ଷା କି ପ୍ରମାଣର ମୁହୂର୍ତ୍ତ ପାଖେଇ ଆସୁଛି । ତା'ରି ଉପରେ ନିର୍ଭର କରେ ତାଙ୍କ ପଚିଶବର୍ଷିଆ ସାରା ଜୀବନର ହିସାବନିକାଶ । ଆୟବ୍ୟୟର ଯୋଡ଼ାଯୋଡ଼ି କଟାକଟି ପରେ ଏକ ଅବିଚ୍ଛେଦ୍ୟ ଲଭ୍ୟ, ଆତ୍ମସଫଳତାର ଆଶ୍ୱାସନା ।

ହାଫକ୍ଲମଣ୍ଟି ତ ଉଚ୍ଚ ଉଚ୍ଚ କୋଠା, ଚକଚକିଆ ଦୋକାନବଜାର, ତଥା ସାଜସଜ ହୋଇ ବାଟ ଚାଲୁଥିବା ଦିଲ୍ଲୀବାଲା ଦିଲ୍ଲୀବାଲୀମାନେ ତାଙ୍କ ଆଡ଼କୁ

ଅନେଇ ହସିଲି ପରି ମନେ ହେଲା । କାହିଁକିନା ମହେଶବାବୁ ତାଙ୍କ ଆଡ଼କୁ ଚାହିଁ ବାରମ୍ବାର କହୁଥିଲେ ଯେ ତମେ ସବୁ ଜିତିଯାଇଛ ବୋଲି ଭାବ ନାହିଁ । ଏଇ ପ୍ରଦୂଷିତ ସଫଳତା, ଲାଞ୍ଚଖୋର ଓ ଶଠତା ଉପରେ ପ୍ରତିଷ୍ଠିତ ସମୃଦ୍ଧିକୁ ମୁଁ ଧିକ୍କାର କରୁଛି । ହେଲେ ସେମାନେ ତଥାପି ହସୁଥିଲେ । ଏବଂ ମହେଶବାବୁ ତାଙ୍କୁ ତଥାପି ଧିକ୍କାର କରୁଥିଲେ । କହୁଥିଲେ ମୁଁ ହାରିଯାଇ ନାହିଁ କି ଶୀଘ୍ର ମୁହଁ ବୁଲେଇ ଦେଇ ନାହିଁ । ମୁଁ ବିଫଳ ନୁହେଁ କି ସେ ବିମୁଖ ନୁହେଁ । ମିଛ, ମିଛ ! ଦେଖିବ କ'ଣ ହେବ । ସୁସ୍ପଷ୍ଟ ସୂଚନା ମିଳିଯିବ ତମକୁ ଯେତେବେଳେ ପୁଣି ଦେଖା ହେବ ଆମ ଦି'ଜଣଙ୍କର କୋଡ଼ିଏ ବର୍ଷ ପରେ । ଦେଖିବ ।

···ହେଲା ଏବେ ଏନ୍. ଏସ୍. ଏ ଭୂଶୁଣ୍ଡି ଗଳ୍ପ । ଆଉ ମହେଶ ମହାନ୍ତି ନୂଆ କିଛି ଗଢ଼ି ପାରିଲା ନାହିଁ ଓଡ଼ିଶାକୁ ଗଲା ପରେ । କେତେଦିନଯାଏଁ ଯୋଗ ଦେଲା ଗାନ୍ଧୀବାଦୀ 'ଜାଗରଣ' ଦଳରେ । ହେଲେ ସେଥିରେ ତିଷ୍ଠି ରହି ପାରିଲା ନାହିଁ । ଯାହାକୁ ଗାନ୍ଧୀଙ୍କ ଅବତାର ବୋଲି ଭାବୁଥିଲା, ତାଙ୍କ ରଙ୍ଗରୂପ ବଦଳିଗଲା ମନ୍ତ୍ରୀ ହେଲା ପରେ । ସେ ବି ଦୁର୍ନୀତି କଲେ । ଏବଂ ଲୋକେ ତାଙ୍କୁ ହଟେଇ ଦେଲେ । ସେଇଠୁଁ ଅଧମତାରଣ ସର୍ବମଙ୍ଗଳ ଦଳରେ ମିଶିଲା, ଆଉ ଆମେ କେତେ କ'ଣ ଯୋଜନା ତିଆରି କଲୁ, ଯେମିତିକି ଆମ ଓଡ଼ିଶା ପ୍ରଗତିର ଶୀର୍ଷରେ ପହଞ୍ଚିବ, ଆମ ଲୋକଙ୍କ ଶସ୍ୟଭଣ୍ଡାର ଋଦ୍ଧ ହୋଇଯିବ, ଘରେ ଘରେ ପୁଣି ଭାଗବତ ପଢ଼ାହେବ, ମାଆ ଲକ୍ଷ୍ମୀ, ମାଆ ସରସ୍ୱତୀ ଦିହେଁ ହସି ଉଠିବେ, ଏବଂ ସବୁକିଛି ନିର୍ମଳ ଆଉ ସୁନ୍ଦର ହୋଇଯିବ । କିନ୍ତୁ ଦେଖିଲି ଯେ ପ୍ରଗତିରୁ ଦୁର୍ନୀତି ବଳି ଯାଉଛି । ଟଙ୍କା ଦେଇ ଭୋଟ କିଣିବାକୁ ହେବ । ଠିକଣା ଲୋକଙ୍କୁ ଧରିବାକୁ ହେବ କିଛି ଗୋଟାଏ କଲ୍ୟାଣକର କାମ କରିବାକୁ ହେଲେ, ଯେଉଁମାନେ କମିସନ୍ (ଯାହାକୁ ଆଗେ ଲାଞ୍ଚ ବୋଲି କୁହାଯାଉଥିଲା) ଦେଇ ପାରିବେ ଓ ନେଇ ପାରିବେ, କର୍ତ୍ତୃପକ୍ଷମାନଙ୍କୁ ଖୁସ୍ କରି ପାରିବେ । ତଦୁପରି ବାଣ୍ଟମାରଣା, କ୍ଷୁଦ୍ରନେତାରୁ ବଡ଼ନେତାଙ୍କ ଯାଏଁ, ସରପଞ୍ଚରୁ ବଡ଼ହାକିମଙ୍କ ଯାଏଁ । ସେଇଠୁଁ ମୁଁ କ'ଣ କରି ପାରିଥା'ନ୍ତି ?

ଶେଷକୁ ମୋତେ ଦୁଃଖର ସହିତ ଭାବିବାକୁ ପଡ଼ିଲା ଯେ କେବଳ ମୁହିଁ ସୁନ୍ଦର, ମୁହିଁ ନିର୍ମଳ, ଏବଂ ମୋ ସ୍ତ୍ରୀ ସୁପ୍ରୀତି ଏବଂ ମୋ ସୁନାନାକୀ ଝିଅ । ଆମେ ଆମର ଦୂରେଇ ରହିବୁ ସେମାନଙ୍କଠାରୁ । ଦି'ପଇସା ରୋଜଗାର କରି ଚଳିଯିବୁ ଯେକୌଣସିମତେ । ସେଇଠୁଁ ବିଭିନ୍ନ ସ୍କୁଲରେ ପଶି ଏବଂ ସେଥିରେ ଦୁର୍ଗନ୍ଧକୁ ସହି ନପାରି ମାଷ୍ଟରଟିଏ ହୋଇ ରହିଲି । ଯେଉଁଠି ନିଜକୁ ବଞ୍ଚେଇ ରଖି ପାରିଛି ବୋଲି ମୋର ବିଶ୍ୱାସ । ଯଥା, କୌଣସି ଅଯୋଗ୍ୟ ପିଲାକୁ ମୁଁ ପାସ୍ କରେଇ ନାହିଁ, କୋଉ ନେତା କି ହାକିମଙ୍କ ତାଡ଼ନାରେ । ତା'ଛଡ଼ା ମୁଁ ଟାଣୁଆ ପ୍ରବନ୍ଧ ଲେଖୁଥିଲି ଦୁର୍ନୀତି ବିରୁଦ୍ଧରେ, ଯେତେବେଳେ କେଉଁ ଅପଦୃଶ୍ୟକୁ

ସହ୍ୟ ହେଉ ନଥିଲା । ସୁପ୍ରୀତି ହସୁଥିଲା, କିନ୍ତୁ ମୁଁ ମୋ କର୍ତ୍ତବ୍ୟରେ ଅଟଳ ରହୁଥିଲି, —ରାମଚନ୍ଦ୍ର, ଗାନ୍ଧୀ ଏବଂ ବିରଜୁ ପ୍ରଧାନ ଆଦି ବୀରପୁରୁଷମାନଙ୍କୁ ମନେ ପକାଇ ।

କିନ୍ତୁ ମୋ ସୁପ୍ରୀତି ମୋତେ ଛାଡ଼ି ଦେଇ ଚାଲିଗଲା । ଲୋକେ କହିଲେ କାମଳ ରୋଗଟା ନିଶ୍ଚୟ ଭଲ ହୋଇ ଯାଇଥା'ନ୍ତା, କିନ୍ତୁ ତମେ ତାକୁ ଠିକଣା ବେଳେ ନେଇ ଯାଇ ପାରିଲ ନାହିଁ ବଡ଼ ଡାକ୍ତରଙ୍କ ପାଖକୁ । ପ୍ରକାରାନ୍ତରେ କହିଲେ ଯେ ତମେ ନିର୍ଧନ । ନିର୍ଧନ, ଅଉ ନିପାରିଲା । ସେଇ ଏକା କଥା ।

ଖାଲି ରହିଲା ରାନୁ । ମୋ ନିର୍ମଳ-ସୁନ୍ଦର ସଂସାରରେ ଗୋଟିଏ ବୋଲି ବାସିନ୍ଦା । ସୁଖର ବିଷୟ ମୋ ଜ୍ୱାଇଁ ବିଶ୍ୱନାଥ ବି ସେମିତି ପଢ଼ିଲା । ରୂପଗୁଣ କେଉଁଥିରେ ଖୁଣିବାକୁ ନାହିଁ ତାକୁ । ସେମାନଙ୍କର ସ୍ୱପ୍ନ ସଫଳ ହେଉ, ଭଗବାନ୍ !…

ଅଟୋରିକ୍ସାଟିଏ ଧରି ଗୁଲ୍‌ମୋହର୍ ପାର୍କରେ ପହଞ୍ଚିଲା ବେଳକୁ ସେ ଯଥେଷ୍ଟ ଦମ୍ଭର ସହିତ ଶୁଣାଇ ପାରିଲେ 'ସେମାନଙ୍କୁ', ତାଙ୍କ ଅଭିଳା ଉପହାସକୁ ଶେଷଥର ପାଇଁ ବାତିଲ୍ କରିଦେଲା ପରି—

ନା, ଶୀଲି କି ମୁଁ, ଆମେ କେହି ବିଫଳ ନୁହେଁ କି ବିମୁଖ ନୁହେଁ । ଏନ୍. ଏସ୍. ଏ.ର ପ୍ରତିଶ୍ରୁତିକୁ ସେ ବି ବଞ୍ଚେଇ ରଖିଥିବ ତା' କର୍ମଜୀବନରେ । ଦୁର୍ନୀତିକୁ ପ୍ରଶ୍ରୟ ଦେଇ ନ ଥିବ । ଏବଂ ସେଦିନର ସୁନ୍ଦର ସକାଳକୁ ନିଶ୍ଚୟ ମନେ ରଖିଥିବ । ତା' ହୃଦୟରେ ବି ଜଳୁଥିବ ସେଇ ଦୀପଶିଖାଟିଏ । ସ୍ନେହର ଅଭାବରେ ହୁଏତ ସ୍ତିମିତ ହୋଇ ଯାଇଥିବ ଅଳ୍ପବହୁତ, କିନ୍ତୁ କଦାପି ନିର୍ବାପିତ ହୋଇ ନଥିବ । ତେଣୁ ଆମର ଭେଟ ହେଲାକ୍ଷଣି ପୁଣି ତେଜି ଉଠିବ । ଅବଶ୍ୟ ।

ଶୁଣ, ଇଏ ଗୋଟାଏ ସାଧାରଣ ପୁନର୍ମିଳନ ନୁହେଁ । ଇଏ ହେଉଛି, ହେଉଛି କାବ୍ୟିକ ପୁନର୍ମିଳନ । ଆଦର୍ଶର, ଜ୍ୟୋତିର…

କହିହେବ ନାହିଁ, ମହେଶବାବୁଙ୍କ ଉଦ୍‌ବିଗ୍ନତା ଥପ୍ କରି ରହିଗଲା କି କୁଆଡ଼େ ଯିବ ବୋଲି ବାଟ ପାଇଲା ନାହିଁ, ଯେତେବେଳେ ଏ—ଫାଇଭ୍‌ର କର୍ତ୍ତ୍ରୀ ନିଜେ ଆସି କବାଟ ଖୋଲିଦେଲେ ବେଲ୍ ବାଜିଲା କ୍ଷଣି । କାରଣ ତାଙ୍କୁ ଦେଖି ସେ କ'ଣ କହିବେ କି କ'ଣ କରିବେ ବୋଲି ବୁଝି ପାରିଲେ ନାହିଁ । ଯନ୍ତ୍ରଚାଳିତ ସହାସ୍ୟ ନମସ୍କାରଟିଏ ପକେଇବା ଛଡ଼ା ।

…ସେଇ ଶୀଲି । ଏବଂ ସେ କେବଳ ହସୁନାହିଁ, ହ୍ୟାଲୋ ମହେଶ୍‌ଜୀ' ବୋଲି ସ୍ୱାଗତ ଜଣାଉ ନାହିଁ, କେବଳ ସୁନ୍ଦର ଦିଶୁ ନାହିଁ, ସେ ଫୁଲ୍ଲକୁସୁମିତା ।

ତା'ର ଜ୍ୟୋତି କେବଳ ଶିଖାଟିଏ, ଧାରଟିଏ, କି ସ୍ଥିର ବଳୟ ପରି ଦିଶୁନାହିଁ । ଦିଶୁଛି ଗଢ଼ା ହେଲା ପରି । ପ୍ରୌଢ଼ତ୍ୱର ମାଂସଳ ଐଶ୍ୱର୍ଯ୍ୟରେ ମାଠିମୁଠି ହୋଇ, ସମ୍ପୂର୍ଣ୍ଣ ଉଚ୍ଚାଗତର ଗରିମାକୁ ନେଇ । 'ଏସିଆ ଭିଜନ୍'ର ପର୍ସନେଲ୍ ମ୍ୟାନେଜର କେବଳ ତାଙ୍କ ପଦବୀରେ ପ୍ରତିଷ୍ଠିତ ନୁହନ୍ତି, ସେ କୋଡ଼ିଏ ବର୍ଷ ତଳର ଜ୍ୟୋତିର୍ମୟୀ ରୂପକୁ ମିଶେଇ ଦେଇଛନ୍ତି ତାଙ୍କ ପ୍ରତିଷ୍ଠା ସାଙ୍ଗରେ । ସେହେତୁ ଏଇ ବଳୟ, ଘନଗହନ ବଳୟ···

"ଆସନ୍ତୁ, ମହେଶ୍ୱଙ୍କ, ଅନେକ ଅନେକ ଦିନ ପରେ—"

ପ୍ରସାରିତ ହାତ, ଉଦ୍‌ଭାସିତ ମୁହଁ । ବିମୂଢ଼ତା ଦୂର ହୋଇଗଲା ପରେ ମହେଶବାବୁ କେବଳ ନମସ୍କାରଟିଏ କରି ରହିପାରିଲେ ନାହିଁ । ସେ ପ୍ରସାରିତ ହାତ ଦୁଇଟିକୁ ଏକାଠି କରି ତୋଳି ଧରିଲେ । ଏବଂ କହିଲେ—

"ଥ୍ୟାଙ୍କ୍ ୟୁ ! ଥ୍ୟାଙ୍କ୍ ୟୁ !" କୋଡ଼ିଏ ବର୍ଷ ତଳର ସେଇ ଧନ୍ୟବାଦ ଅର୍ପଣକୁ ଦି'ଗୁଣା କରି ତାଙ୍କରି ହାତକୁ ବଢ଼େଇଦେଲା ପରି । ଏବଂ ସେଦିନ ପରି ବି ଶୀଲା ହସି ଉଠିଲେ । ଯଦିଓ ସେଦିନର ପ୍ରେମ ଘୋଷଣା ପରି ଇଏ ବି ସେତିକ ଅର୍ଥହୀନ । ହେଲେ ଅପରୂପ । ଏବଂ ଆନନ୍ଦବର୍ଦ୍ଧକ ।

ଦିହେଁ ସୋଫାରେ ବସିଲେ ପାଖାପାଖି ହୋଇ । ପେଲବ ଅଙ୍ଗରେ ଆବୃତ ରେଶମୀ ଶାଢ଼ିର ପଣତ ଝୁଲି ପଡ଼ିଥିଲା ମହେଶବାବୁଙ୍କୁ ଛୁଇଁ ନ ଛୁଇଁଲାପରି । ଯେମିତିକି ଐଶ୍ୱର୍ଯ୍ୟ ହିଁ ଐଶ୍ୱର୍ଯ୍ୟର ପରିଧାନ ହେବା କଥା । ଏବଂ ପରିବେଶ । ଯଥା ଏଇ ନରମ ଗଦି, ଚକ୍‌ଚକ୍ କଳା କ୍ୟାବିନେଟ୍ ଓ ଥାକମାନଙ୍କ ଉପରେ ଶୋଭା ପାଉଥିବା ନାନାଦି କୃତ୍ରିମସୁନ୍ଦର ଘୋଡ଼ା, ନର୍ତ୍ତକୀ, ଆଫ୍ରିକା ଦେଶର ଯୋଦ୍ଧା ଫ୍ରେମ୍‌ବନ୍ଧା ଫଟୋ, କାନ୍ଥରେ ଟଙ୍ଗା ହୋଇଥିବା ଦାମୀ ଅଏଲ୍-ପେଣ୍ଟିଙ୍ଗ୍, ଏବଂ ଗୋଡ଼ତଳକୁ ଏଇ ବହଳିଆ କାର୍ପେଟ୍ ।

ଏନ୍. ଏସ୍. ଏ.ର ପ୍ରାକ୍ତନ ସଚିବଙ୍କ ଏଇ ଐଶ୍ୱର୍ଯ୍ୟ-ସମ୍ପଦକୁ ଦେଖି ତା'ର ପ୍ରାକ୍ତନ ଅଧ୍ୟକ୍ଷ ଅଭିଭୂତ ହୋଇପଡ଼ିଲେ । କିନ୍ତୁ ଈର୍ଷାନ୍ୱିତ ହେଲେ ନାହିଁ । ଯଦିଓ ଇଏ ତାଙ୍କ ପ୍ରେମାସ୍ପଦାର ସମ୍ପଦ, ତେଣୁ ଈର୍ଷାର ପ୍ରଶ୍ନ ଉଠୁନାହିଁ । ବରଂ ତୃପ୍ତିଟା ପୂରି ହୋଇଗଲା ପରି ଲାଗୁଛି । ଏବଂ ଇଚ୍ଛା ହେଉଛି···କ'ଣ ଇଚ୍ଛା ହେଉଚି ବୁଝି ହେଉ ନାହିଁ । ଖାଲି ମନେ ହେଉଛି ଯେ ସେ ବି ସେଥିରେ ଥାପି ହୋଇଯାଉଛନ୍ତି. ଠିକଣା ଜାଗାରେ, ଯାହାହିଁ ତାଙ୍କଠୁଁ ଆଶା କରାଯାଏ ।

ଶୀଳାର ହସ ଲିଭୁନାହିଁ ତା' ମୁହଁରୁ । ତା' ସମ୍ଭ୍ରମରେ ମଳିନ୍ୟ ଲାଗୁ ନାହିଁ । ସେ ପ୍ରକୃତରେ ଖୁସି, ଯଥାର୍ଥରେ ଖୁସି, ମହେଶ୍ୱଙ୍କୁ ଅତିଥି ରୂପେ ପାଇ ତା'ର ଡ୍ରଇଂରୁମ୍‌ରେ । ଏତେ ଦିନ ପରେ···

"ଆଉ କ'ଣ ସବୁ ଖବର ?" ଶୀଲା ସମ୍ମାନ୍ ଆରମ୍ଭ କଲେ, "ମୋର ସୌଭାଗ୍ୟ ଯେ ଏତେଦିନ ପରେ ମନେ ପଡ଼ିଲା ଆପଣଙ୍କର..."

ମୁଁ କହୁ ନଥିଲି ? ମହେଶବାବୁ ଗଦ୍‌ଗଦ ହୋଇ ଉଠିଲେ । ଏବଂ ଏକା ନିହସରେ ଗାଇଗଲେ ତାଙ୍କ ଜୀବନ କାହାଣୀ । ହେଲେ ନିଜ ତରଫରୁ ମଧ୍ୟ କିଛି ପ୍ରଶ୍ନ ପଚାରିବା କଥା ବୋଲି ତାଙ୍କର ମନେ ହେଲା ନାହିଁ । ସତେକି ସବୁ ପ୍ରଶ୍ନର ଉତ୍ତର ମିଳିଯାଇଛି ତାଙ୍କୁ । ସେଇ ଶୀଲା ସମ୍ମାନ୍, ଏନ୍. ଏମ୍. ଏ.ର ପ୍ରାକ୍ତନ ସଚିବ । ସେ ତା'ର କ୍ୟୋତକୁ କେବଳ ବଜାୟ ରଖି ନାହିଁ, ତାକୁ ପରିପୁଷ୍ଟ, ପରିବର୍ଦ୍ଧିତ କରି ରଖିଛି, ପୁଣି କେବେ ତା'ର ଅଧ୍ୟକ୍ଷଙ୍କ ସାଙ୍ଗରେ ଦେଖା-ହେବ ବୋଲି ।

ଯେଉଁପରି ଭାବରେ ମହେଶବାବୁ ତାଙ୍କ ଜୀବନବୃତ୍ତାନ୍ତକୁ ଗାଇ ଗଲେ, ସେଥିରୁ ମନେ ହେବ ଯେ ବିଫଳତା ଛୁଇଁ ନାହିଁ ତାଙ୍କୁ । ସେ ମଧ୍ୟ ସାର୍ଥକତା ଲାଭ କରିଛନ୍ତି ତାଙ୍କ ଜୀବନରେ । ଯେଉଁପ୍ରକାର ସାର୍ଥକତା ଆଶା କରାଯାଏ ଏନ୍. ଏମ୍. ଏ.ର ପ୍ରତିଷ୍ଠାତାଠାରୁ । କଥା ମଝିରେ ଶୀଲାଜୀ ପଚାରିଲେ—

"ମିସେସ୍‌ଙ୍କୁ ସାଙ୍ଗରେ ଆଣିଲେ ନାହିଁ ?"

"ଓ—ମୁଁ ସେକଥା କହୁ ନାହିଁ ପରା ? ଓ୍ୱେଲ୍...ଦୁଃଖର ବିଷୟ ସେ ନାହିଁ । ଚାଲିଗଲାଣି ଆଜିକୁ ପ୍ରାୟ ଦଶବର୍ଷ ହେଲା ।"

"ଆଇ ଆମ୍ ସରି—ଆଇ ଆମ୍ ଭେରି ସରି ଟୁ ନୋ..."

ଦୀର୍ଘ ନୀରବତା । ଐଶ୍ୱର୍ଯ୍ୟମୟୀ ଯେଉଁ ସମବେଦନାର ଭାବ ଦେଖାଇଲେ ତାହା ଗଭୀର ବିଷାଦ ବୋଲି ମନେହେଲା । ଯାହାର ସମ୍ୟକ୍ ସୂଚନା ମିଳୁଥିଲା ତାଙ୍କ ଦୀର୍ଘନିଃଶ୍ୱାସରୁ । ତାଙ୍କ ବିପୁଳ ବକ୍ଷଦେଶକୁ ଆନ୍ଦୋଳିତ କରୁଥିବା ଦୀର୍ଘ ନିଃଶ୍ୱାସ ।

"ପିଲାମାନେ...?" ଶୀଲାଜୀ ପଚାରିଲେ ଅଟେଇ ଅଟେଇ ।

"ପିଲାମାନେ ନୁହେଁ । ଏକମାତ୍ର ସନ୍ତାନ । ସୁକୁମାରିଆ ଗେହ୍ଲା ଝିଅଟିଏ । ତା' ନାଆଁ ରଞ୍ଜନା । ତାକୁ ଆମେ ରନୁ ବୋଲି ଡାକୁ । ଚମତ୍କାର ଗୀତ ଗାଏ । ସିତାର ବି ଶିଖିଛି..."

ବିଷାଦର ବେଳା କଟିଗଲା ମହେଶବାବୁଙ୍କ ଉଚ୍ଛ୍ୱସିତ ବାତ୍ସଲ୍ୟ ପ୍ରେମର ହାଉଆରେ । ଶୀଲାଜୀ ପୁଣି ସସ୍ମିତା ହୋଇ ଉଠିଲେ ଏବଂ 'ଗୁଡ଼୍ ଗୁଡ଼୍' ବୋଲି

କହି ହେଲେ । ସେଇଠୁଁ ସୋଫାରୁ ଉଠି ପଡ଼ିଲେ, ଅତିଥି ସତ୍କାରର ବ୍ୟବସ୍ଥା କରିବା ପାଇଁ । ପଚାରିଲେ—

"କ'ଣ ପସନ୍ଦ କରିବେ ଏଇକ୍ଷଣି ? କଫି ନା ଚା' ? ଓହୋ—କ୍ଷମା କରିବେ, ମୁଁ ଭୁଲିଯାଇଥିଲି, ଆପଣ ତ କଫିର ଭକ୍ତ—" ତାଙ୍କ ସ୍ମିତହାସ ଖୋଲା-ହସରେ ପରିଣତ ହେଲା ।

ମହେଶବାବୁ କହିପାରିଲେ ନାହିଁ ଯେ ଦିଲ୍ଲୀ କଫିହାଉସ୍‌ର କଫି କେବେଠୁଁ ପାସୋର ହୋଇଗଲାଣି, ସେଣିକି ଜବନଟାଯାକ ଖାଲି କଡ଼ା ଚା', ପାଣିଚିଆ ଚା', ଚାଲୁ ଚା', ଯେତେବେଳେ ଯାହା । ସେ କେବଳ ଲକ୍ଷ୍ୟ କଲେ, ଶୀଲାଙ୍କଙ୍କ ସ୍ମୃତିର ଗୁଣକୁ ଧନ୍ୟବାଦ ଦେବା ସହ, ତାଙ୍କ ଦୋଳାୟିତ ଦେହର ଭଙ୍ଗୀ, ସେ ତାଙ୍କ ଭୃତ୍ୟକୁ କଫି ଇତ୍ୟାଦିର ବରାଦ୍ ଦେଇ ପୁଣି ଥରେ ତାଙ୍କ ଆସନ ଗ୍ରହଣ କରିବା ଯାଏଁ ।

କିନ୍ତୁ ମହେଶବାବୁଙ୍କ ଉଚ୍ଛ୍ୱାସ ଉଦ୍‌ଯାପିତ ହୋଇ ନଥିଲା । କହିଲେ—

"ଏଇ ଦି' ବର୍ଷ ହେଲା ବାହା ହୋଇଛି ସେ । ପ୍ରେମ କରି ବାହା ହୋଇଛି । ଆଉ ଯାହାକୁ ବାହା ହୋଇଛି, ଆମ ଜ୍ୱାଇଁ ବିଶ୍ୱନାଥ, ସେ କୋଟିକରେ ଗୋଟିଏ । ମୋଟାମୋଟି ତମର ଲାଇନ୍ । ବିଜିନେସ୍ ଆଡ୍‌ମିନିଷ୍ଟ୍ରେସନ୍‌ରେ ଏମ୍.ଏ., ତା'ପରେ ଡକ୍ଟରେଟ୍, ସେଇଠୁଁ କମ୍ପ୍ୟୁଟର୍ ସାଇନସ୍‌ରେ ଡିପ୍ଲୋମା ନେଇଛି । ମହା ପଣ୍ଡିତଟାଏ—"

"ଆଚ୍ଛା ? ଓ୍ୱାଣ୍ଡରଫୁଲ୍ ! କ'ଣ କରୁଛନ୍ତି ସେ ଏଇକ୍ଷଣି ?"

"ଗୋଟାଏ କଲେଜରେ ପାଠ ପଢ଼ାଉଛି । କିନ୍ତୁ ତା'ର ଉଚ୍ଚାଭିଳାଷ କାହିଁରେ କଅଣ । (ସେଇଠୁଁ ରହସ୍ୟ ଉନ୍ମୋଚନର ଭଙ୍ଗୀରେ) ଜାଣିଛ ? ସେ ତମରି କମ୍ପାନୀରେ ପଶିବାକୁ ଚାହେଁ । ଇଣ୍ଟରଭିଉ ବି ଦେଇ ସାରିଛି । ଆସିଷ୍ଟାଣ୍ଟ୍ ମ୍ୟାନେଜର୍, ସିଷ୍ଟମ୍‌ସର ପୋଷ୍ଟ୍ ପାଇଁ ଯେଉଁ ଆଡ୍‌ଭର୍ଟାଇଜ୍‌ମେଣ୍ଟ୍ ବାହାରିଥିଲା କାଗଜରେ···"

"ଆଚ୍ଛା ?"

ଶୀଲାଜୀ କେବଳ ବିସ୍ମୟର ଭାବ ଦେଖାଇଲେ ନାହିଁ । ମନେହେଲା ସେ ସୋଫାର ପଛକୁ ଘୁଞ୍ଚି ଯାଉଛନ୍ତି । ସେଇଠୁଁ କହିଲେ—

"ଆଇ ସି···ଆଇ ସି··· କିନ୍ତୁ ସିଲେକ୍‌ସନ୍ ତ ହୋଇଗଲାଣି ହପ୍ତାଏ ହେଲା । ଆପଣ ମୋତେ ଆଗରୁ କହିଲେ ନାହିଁ, କାହିଁକି ?"

ନା ନା, ମୁଁ ତା'ପାଇଁ କିଛି କହିବାକୁ ଆସି ନାହିଁ ଏଠିକି । ତେଣୁ ତମର ଆଦୌ ବ୍ୟସ୍ତ ହେବା ଦରକାର ନାହିଁ । ଏହି ମର୍ମରେ ପ୍ରତିବାଦ କରିବାକୁ ଯାଉଥିଲେ ମହେଶବାବୁ । କିନ୍ତୁ ତା' ପୂର୍ବରୁ ଶୀଲାଜୀ ଉଠି ପଡ଼ିଲେ ଓ ପାଖ କମରାକୁ ଯାଉଁ ଯାଉଁ କହିଲେ, "ତାଲିକାର ଗୋଟାଏ କପି ବୋଧହୁଏ ଅଛି ମୋ ପାଖରେ । ମୁଁ ଦେଖୁଛି ରୁହନ୍ତୁ ।"

କିଛି ସମୟ ପରେ ଫେରିଆସି ତାଲିକାକୁ ପଢ଼ି ବସିଲେ ମନେ ମନେ । ସେଇଠୁଁ କହିଲେ, "ହଁ ହଁ, ବିଶ୍ୱନାଥ ବୋଲି ଜଣେ ଅଛି ପ୍ୟାନେଲ୍‌ରେ । କିନ୍ତୁ ସେ ତ ବିଶ୍ୱନାଥ ମିତ୍ର, ବଙ୍ଗାଳୀ..."

"ଆରେ, ସେଇ ତ ମୋ ଜ୍ୱାଇଁ ! ରାନୁ ତାକୁ ଲଭ୍ କରି ବାହା ହୋଇଛି ପରା ?"

ଉତ୍‌ଫୁଲ୍ଲ ମହେଶବାବୁ ଆହୁରି କେତେ କ'ଣ ଗପି ଯାଇଥାଆନ୍ତି । ଗପିଲେ ମଧ୍ୟ । କିନ୍ତୁ ତାହା ପୂରାପୂରି ଏକତରଫା ବୋଲି ମନେହେଲା । କଫି ଓ ଘରତିଆରି ଗ୍ରେଟ ଗ୍ରେଟ ସିଙ୍ଗଡ଼ା ମଧ୍ୟ ଆସିଲା, ଏବଂ ସେ ତା'ର ସଦ୍‌ବ୍ୟବହାର କଲେ ଶୀଲାଜୀଙ୍କ ଅନୁରୋଧକ୍ରମେ । କିନ୍ତୁ ମହେଶବାବୁଙ୍କର ମନେ ହେଲା ଯେ ଦିନଟା ହଠାତ୍ ବାଧ ହୋଇଯାଇଛି । କୁଆଡ଼େ ଗଲା ଶୀଲାର ଉଦ୍‌ବେଳ ହସ, ସରାଗ ହସ ? ଏଇକ୍ଷଣି ଯେଉଁ ହସର ରେଖାଟିଏ ପଡ଼ି ରହିଛି ତା' ଲିପ୍‌ଷ୍ଟିକ୍ ବୋଳା ଓଠରେ, ସିଏ କ'ଣ କୋଉ ହସରେ ଲେଖା ? ଏବଂ ସିଏ ବି ବେଳେବେଳେ ଲୁଚି ହୋଇଗଲା ପରି ଲାଗୁଛି । ସତେକି ଇଏ ଗୋଟାଏ ଗତାନୁଗତିକ ଅତିଥି ସତ୍କାରର ପର୍ବ, ଯାହାକି 'ଏସିଆ ଭଜନ୍'ର ପର୍ସନେଲ୍ ମ୍ୟାନେଜର୍ ଶୀଲା ସକ୍ସେନାଙ୍କ ଠାରୁ ଆଶା କରାଯାଏ । ଇତରସାଧାରଣ ଲୌକିକତା, ଯେଉଁଥିରେ ସେ ଅଭ୍ୟସ୍ତ ।

ବିଦାୟ ନେଲାବେଳକୁ ସେଇ ଚୁଗ୍ଧ ହସ ଓ ଭଦ୍ରତାମୂଳକ ଦି'ପଦ କଥା—

"ଥ୍ୟାଙ୍କ୍ସ୍ ଫର୍ କମିଙ୍ଗ୍ । ପୁଣି ଆସିବେ । ଅଉ କହିବେ ଆଉ କିଛି ଦରକାର ଥିଲେ ।"

ଫାଟକରୁ ବାହାରି ଆସି ରାସ୍ତାରେ ପହଞ୍ଚିଲା ପରେ ଯେଉଁ ଅନୁଭବ ଗ୍ରାସି ଧରିଲା ମହେଶବାବୁଙ୍କୁ, ସ୍ୱା'କୁହିଁ ପରାଭବ କୁହନ୍ତି ବୋଲି ତାଙ୍କର ମନେ ହେଲା । ଭାବିଲେ ଏଭଳି ପ୍ରଚଣ୍ଡ ପରାଭବ କ'ଣ କେବେହେଲେ ଆସିଥିଲା ମୋ ଜୀବନରେ ?

"କିନ୍ତୁ କାହିଁକି ? କାହିଁକି ? ଶୀଲା, ତମେ କ'ଣ ସତରେ ଭାବିଲ ଯେ ମୁଁ ବି ସେମାନଙ୍କ ଭିତରୁ ଜଣେ, ଯେଉଁମାନେ ଆସନ୍ତି, ତମ ପାଖକୁ ତାଙ୍କ ପ୍ରାର୍ଥୀପକ୍ଷ ନେଇ ? ଯେଉଁ ଆନନ୍ଦ ଉଚ୍ଛୁଳି ଉଠୁଥିଲା ତମ ମନରେ, ସେଦିନର ସୁନେଲି ଶୀତକୁ ସ୍ମରଣ କରି, ତାକୁ ଏମିତି ଚଟ୍‌କିନା ପୋଛି ପକେଇଲ ? ଭାବିଲ ନାହିଁ ଯେ ମୁଁ ହେଉଛି ମହେଶ୍ୱର୍, ନିର୍ମଳ ସମାଜ ଆନ୍ଦୋଳନର ପ୍ରତିଷ୍ଠାତା, ଯେ କଦାପି କେଉଁ ଦୁର୍ନୀତିକୁ ପ୍ରଶ୍ରୟ ଦେବ ନାହିଁ, ସେ ତା' ଝିଅ ହେଉ, ଜ୍ୱାଇଁ ହେଉ, କି ଆଉ କିଏ ?..."

ତେବେ ମହେଶବାବୁ ମଧ୍ୟ ଜଣେ କଠୋର ଆତ୍ମ-ସମୀକ୍ଷକ । ଆତ୍ମଶଠତାକୁ କ'ଣ ସେ ଚିହ୍ନି ନାହାନ୍ତି, ଏନ୍, ଏସ୍, ଏ.ର ପ୍ରତିଷ୍ଠାତା ହୋଇ ? ତେଣୁ ସେ ତାଙ୍କ ଆଜିର କାର୍ଯ୍ୟକଳାପକୁ ନିରେଖି ଦେଖିଲେ ।

...ନା, ମୁଁ ଶୀଲକୁ ଠକେଇ ନାହିଁ କି ନିଜକୁ ଠକେଇ ନାହିଁ । ପରିବାର ବିଷୟରେ ସେ ନିଜେ ପଚାରିଲା, ଏବଂ ମୁଁ ତା'ର ଠିକଣା ଦେଲି । ଏବଂ ସହଜେ ଗୋଟାଏ ଠିକଣା ସତକଥା କହିଲି ଯେ ବିଶୁ ଇଣ୍ଟରଭ୍ୟୁ ଦେଇଛି ଏଇ କମ୍ପାନୀର ଗୋଟାଏ ଚାକିରି ପାଇଁ । ଏବଂ ସହଜେ ଖୁସି ହେଲି ଶୁଣି ଯେ ତା' ନାଆଁ ପ୍ୟାନେଲ୍‌ରେ ଅଛି । ନା, ମୋ ଦୋଷ ନୁହେଁ । ଶୀଲ ଭୁଲ୍ ବୁଝିଛି ମୋତେ ।

(ଆଉ ଟିକିଏ ଚିନ୍ତା କଲା ପରେ)

ଦୋଷ ଥିଲେ ଥିବ, ତାକୁ ହୁଏତ ପ୍ରଦୂଷଣ ବୋଲି କହିପାରି, କେବଳ ଗୋଟିଏ ବିଷୟ ନେଇ । ଶୀଲର ପୂର୍ବେ ପ୍ରତିଷ୍ଠିତ ଦେହର ଲାବଣ୍ୟ, ଉଚ୍ଛ୍ୱାସର ଆକର୍ଷଣ ବୋଧହୁଏ ଛୁଇଁଥିଲା ମୋ ମନକୁ । ଯାହାକି ସେଦିନର । 'ଆଇ ଲଭ୍ ୟୁ ଶୀଲ'ର ଉଚ୍ଚାରଣ ପରି ନୁହେଁ । ଏତେଟା ନିର୍ମଳ ନୁହେଁ କି ସୁନ୍ଦର ନୁହେଁ । ହୋଇଥିବ—

କିନ୍ତୁ କ'ଣ ହେଲା ସେଥିରେ ? ପରିସ୍ଥିତି ଭିନ୍ନ ହୋଇ ନଥିଲେ, ଦୈବାତ୍ ଓଡ଼ିଶାକୁ ଫେରି ଯାଇନଥିଲେ ଆମେ କ'ଣ ଆହୁରି ଅନ୍ତରଙ୍ଗ ହୋଇ ନ ଥା'ନ୍ତୁ ? ଏବଂ କୋଉ ବିଚିତ୍ର ଥିଲା ତାକୁ ବାହା ହୋଇ ଘର କରିବାରେ ? ଆଉ ସମ୍ଭାବ୍ୟ ପତ୍ନୀ, ଶଯ୍ୟାସଙ୍ଗିନୀ ପ୍ରତି ଏମିତି ଭାବରେ ଆକୃଷ୍ଟ ହେବା କ'ଣ ଏତେ ଖରାପ କଥା ?

ହେଲେ ଶୀତପବନଟା କେଉଁଠି ଥିଲା ଏତେବେଳଯାଏଁ, ହଠାତ୍ ଆସି ଥରେଇ ଦେଲା ତାଙ୍କ ଦେହକୁ । ଡୁଚ୍ଛା ହେମାଳ ପବନ ।

# ସୁନେଲି ଶୀତ

ମହେଶବାବୁ, ଶୀତ ପବନଟାକୁ ରୁକ୍ଷ ହେମାଳ ପବନ ବୋଲି କୁହନାହିଁ—ପ୍ଲିଜ୍ ! ସେପରି ଭାବିବାର କୌଣସି କାରଣ ନାହିଁ । ଯାହା ଥିବ ବୋଲି ଆଶା କରୁଥିଲ, ମାନେ ଯୌବନର ମୁହୂର୍ତ୍ତରୁ ଯାହା କିଛି ବାକି ରହିବା କଥା କୋଡ଼ିଏ ବର୍ଷ ଉତ୍ତାରୁ, ତା'ର ପ୍ରତିଶ୍ରୁତି ଏବେ ମଧ୍ୟ ଅଛି । ତୁମ ମନରେ ତଥା ଶୀଲା ସହାନିଙ୍କ ମନରେ, ସେହେତୁ ଏଇ ଶୀତ ପବନରେ । କହିବାକୁ ଗଲେ ସେଇଥିପାଇଁ ତ ଏଇ ଉଦ୍‌ବିଗ୍ନତା, ଏଇ ଆଶଙ୍କା ଯେ—ହାୟ ! ତା'ର ରଙ୍ଗରୂପ କ'ଣ ପୂରାପୂରି ଉଭେଇଗଲାଣି ଏଇ ଭିନ୍ନ ନୂଆ ଦିଲ୍ଲୀର ହାଓ୍ୱାରେ ? ନାଁ, ମହେଶବାବୁ ଅଛି, ଅଛି...

ଯା ମନ୍ତ ଯା ଗନ୍ତ ଭବେନ୍ତ୍ । ଅଛି ବୋଲି ଭାବନ୍ତୁ ମହେଶବାବୁ, ତା' ହେଲେ ଦେଖିବ ଯେ ତଥାପି ରହିଛି ସେଇ ଜନପଟା, ଯାହାକୁ ଖୋଜୁଥିଲ । ଜଣାଶୁଣା କଥା ଯେ ଗୋଲପୀ-ସୁନେଲି ତାରୁଣ୍ୟର ପ୍ରତିଶ୍ରୁତି କେବେହେଲେ ପୂରା ହୋଇପାରେନାହିଁ ମଣିଷ ଜୀବନର । ତା' ବୋଲି ସିଏ ହଜିଗଲା, ଲିଭିଗଲା, ମରିଗଲା ବୋଲି ଧରିନେବ କାହିଁକି ? ଅନ୍ୟ ଅର୍ଥରେ ମାନି ନେବ କାହିଁକି ?

ଇଏ କୋଉ ମନଭୁଲାଣିଆ ସାନ୍ତ୍ୱନା ନୁହେଁ, ଯେମିତିକି ତମେ ମୁହଁ ଶୁଖେଇ ଫେରିଯିବ ନାହିଁ ଓଡ଼ିଶାକୁ, ଏବଂ ଖୁସି ମନରେ କହିବ ତମ ଗେହ୍ଲା ଝିଅକୁ, ଯାହା ସେ ଜାଣିବା ପାଇଁ ଚାହିଁ ରହିଛି । ନା, ତା' ନୁହେଁ । ପ୍ରକୃତରେ ଯେଉଁ ଭାବରେ ତମର ତରଙ୍ଗ ଫୁଟି ଉଠିଛି ଏଇ ଗପରେ, ତା'ର ପରିପ୍ରେକ୍ଷୀରେ ଏହାହିଁ କହିବା ଯଥାର୍ଥ । ଯେ ମୋର ଦେହ ଯୋଉ ଥରି ଉଠୁଛି ଏଇକ୍ଷଣି, ତାକୁ ଯୌବନର ଶିହରଣ ବୋଲି ନ କହିପାର, କିନ୍ତୁ ସୀତ୍କାର ବୋଲି ଭାବିବା ଅନ୍ୟାୟ, ନିହାତି ଅନ୍ୟାୟ ।

ଜାଣିଛ ମହେଶବାବୁ, ତମ ପରି କେତେ ଲୋକ ଏମିତି କେତେ ସ୍ୱପ୍ନ ଦେଖିଥିବେ ତାଙ୍କ ଯୌବନରେ, ଏବଂ କେତେ ଭଳି ଅରୁଣିମାରେ ପଖାଳି ହୋଇ କେଉଁ ଆଦର୍ଶକୁ ତଥା ଯୁବତୀକୁ କୁଣ୍ଢେଇ ଧରିଥିବେ ? ଯୁବତୀଟିକୁ ତମେ ତ ଖାଲି 'ଆଇ ଲଭ୍ ୟୁ !' କହି ରହିଗଲ, ତା' ଆଗକୁ ଗଲ ନାହିଁ, ଭାରତୀୟ ପ୍ରେମର ଆଦର୍ଶକୁ ବଜାୟ ରଖି, ଯଦିଓ ସେଦିନରେ ଅନେକ ସୁବିଧା ସୁଯୋଗ ରହିଥିଲା ତମ ପାଇଁ । କିନ୍ତୁ ସେମାନେ, ପ୍ରାୟ ସମସ୍ତେ ସେହିସବୁ ସ୍ୱପ୍ନକୁ ପୁରାପୁରି ଭୁଲିଗଲେଣି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କମେଡ୍ ରାମ ଶେଷକୁ କେଉଁ ପେଣ୍ଟୁଆ ନେତାର ଗୋଡ଼ହାତ ଧରି ଗୃହକରିଟିଏ ଯୋଗାଡ଼ କରି ନେଲଣି ନିଜ ପାଇଁ, ତ ଗାନ୍ଧୀବାଦୀ ଶ୍ୟାମ ଯଥାକ୍ରମେ ମନ୍ତ୍ରୀଟିଏ ହୋଇ ଚିନଚିନଟା କୋଠାବାଡ଼େଇ ସାରିଲଣି, ଏବଂ ଯେଉଁ ଜ୍ୟୋତିର୍ମୟୀ ତରୁଣୀମାନଙ୍କୁ ସେମାନେ କୁଣ୍ଢେଇ ଧରିଥିଲେ, ସେମାନେ ଆଜି ହାକିମ କି ସୋସାଇଟି ଲେଡ଼ି ହୋଇ ସୁଖ କରୁଛନ୍ତି, ହୁଏତ ତାଙ୍କ ଅପ୍ରକଟ ଭିନ୍ନ ସ୍ୱପ୍ନମାନଙ୍କୁ ଚରିତାର୍ଥ କରି । ତାଙ୍କୁ ପଚାରିଲେ ସେ ହୁଏତ କହିବେ, ଅବା ବିବେକ ଦଂଶିଲାରୁ ସଫେଇ ଦେବେ ନିଜକୁ ଯେ ଆମେ ସେମିତି ଅଛୁ, ନିର୍ମଳ ଆଉ ସୁନ୍ଦର, ଆମେ ଦୁର୍ନୀତିର ଧାର ଧାରୁ ନାହିଁ, ତେବେ ମଣିଷକୁ ପ୍ରାକ୍ଟିକ୍ୟାଲ୍ ହେବାକୁ ପଡ଼ିବ, ବାପାମାଆ ପିଲାଛୁଆଙ୍କ ପ୍ରତି ଆମର ଗୋଟାଏ କର୍ତ୍ତବ୍ୟ ଅଛି, ଇତ୍ୟାଦି, ଇତ୍ୟାଦି ।

ସେ ହିସାବରେ ତମେ କେତେ ଊର୍ଦ୍ଧ୍ୱରେ ଅଛ ସେମାନଙ୍କଠାରୁ, ବୁଝିପାରୁଛ ? ବାଧ୍ୟ ହୋଇ ଦିଲ୍ଲୀରୁ ଚାଲି ଆସିଲା ପରେ ମଧ୍ୟ ତମେ 'ନିର୍ମଳ ସୁନ୍ଦର'ର ଆଦର୍ଶକୁ କୁଣ୍ଢେଇ ଧରିଲ, ଦୁର୍ନୀତିର ଦୁର୍ଗନ୍ଧରୁ ଦୂରେଇ ରଖିଲ ନିଜକୁ, ଏବଂ ଶେଷକୁ ସ୍କୁଲ୍ ମାଷ୍ଟରଟିଏ ହୋଇ ତମ ପେଟ ପୋଷିବାକୁ ସ୍ଥିର କଲ, ଏଇଟା କ'ଣ କମ୍ ବଡ଼ କଥା ? ସେଦିନର ସେଇ ଶୀଳାକୁ ପୁଣି ଥରେ ଦେଖିବା ବୋଲି ଯେଉଁ ଆଗ୍ରହ ଉଚ୍ଛୁଳି ଉଠିଲା ତମ ମନରେ, ସେଥିରେ ମଧ୍ୟ ମଳିଧୂଳି ନଥିଲା, ଟିକିଏ ବୋଲି । ହୁଏତ ତମ ମୁହଁର ଚେହେରା ଏମିତି ଝଲି ଉଠିଲା, ଯେତେବେଳେ ଶୁଣିଲ ଯେ ତ୍ୱାଇଁ ବିଶ୍ୱନାଥର ନାଆଁ ଅଛି ତାଙ୍କ ପ୍ୟାନେଲ୍‌ରେ, ଯେ ଶୀଳା ତମକୁ ଭୁଲ୍ ବୁଝିଲେ ଏବଂ ଭାବିଲେ ଯେ ତମେ ଖାସ୍ ସେହି ଉଦ୍ଦେଶ୍ୟରେ ଆସିଥିଲ ତାଙ୍କ ପାଖକୁ । କିନ୍ତୁ ତାହାକୁ

ଏକ ଦୁର୍ଭାଗ୍ୟ ବୋଲି କହିବାକୁ ହେବ । ଶୀଲାଙ୍କୁ ବା କାହିଁକି ଦୋଷ ଦେବା ? ସେ କେମିତି ଜାଣିବେ ଯେ ତମେ ସେମାନଙ୍କ ମଧ୍ୟରୁ ଜଣେ ନୁହେଁ, ଯେଉଁମାନେ ପୂର୍ବ ବନ୍ଧୁତାର ସୁଯୋଗ ନେଇ ଆସିଥିବେ କମ୍ପାନୀ ଏକ୍‌ଜିକ୍ୟୁଟିଭ୍ ଶୀଲାଙ୍କଙ୍କ ପାଖକୁ, ତାଙ୍କ ପିଲାପିଲି କି ବନ୍ଧୁବାନ୍ଧବଙ୍କୁ ତାଙ୍କ କମ୍ପାନୀରେ କି ଆଉ କେଉଁଠି 'ଲଗେଇ' ଦେବା ପାଇଁ ? ସେ କେମିତି ଜାଣିବେ ଯେ ତମେ ବାସ୍ତବରେ ପ୍ରବଞ୍ଚିତ ହୋଇ ନାହଁ, ଆସି ଏତେବର୍ଷ ହେଲା ? ଏବଂ ପ୍ରେମିକ ନ ହେଲେ ନାହିଁ ତଥାପି ତାଙ୍କର ଅଧକ୍ଷ ହୋଇପାରିବ, ପ୍ରାକ୍ତନ ଅନ୍ୟ ଏକ ଭାବନାର ପ୍ରତିଶ୍ରୁତିକୁ ନେଇ ?

ତମର ଅବିନାଶୀ ଆଦର୍ଶ ତମକୁ ମଧ୍ୟ ଟିକିଏ ନିବୋଧ କରି ନେଇଛି ବୋଲି ମନେହୁଏ । ସେଇଠୁଁ ମନେ ପଡ଼େ କାମ୍ୟୁଙ୍କ ଉକ୍ତି—ଆଧୁନିକ ଜଗତର ମଣିଷ ଯେତେବେଳେ ଟିକିଏ ମହାନ୍ ହେବାକୁ ବସେ, ସେ ଆହୁରି ଆବ୍‌ସର୍ଡ଼୍ ଦିଶେ ନାହିଁ କି ? ନ ହେଲେ ତମେ କ'ଣ ଭାବିଥା'ନ୍ତ ଯେ ତରୁଣୀ ଶୀଲା ପ୍ରତି ଯେଉଁ ପ୍ରେମଭାବ ଜାଗି ଉଠିଥିଲା ତମ ମନରେ, ତାହା ଏତେ ନିର୍ମଳ ଏତେ ସୁନ୍ଦର ଥିଲା ଯେ ସେଥିରେ ଦୈହିକ ଆକର୍ଷଣ ଟିକିଏ ହେଲେ ନ ଥିଲା ? ଏବଂ ସେହେତୁ ଆଜି ତା'ର ଫୁଲ୍ଲକୁସୁମିତ ଉଚ୍ଚ-ନୀଚ ଅଙ୍ଗଶୋଭାକୁ ନେଇ ତମ ମନରେ ଯେଉଁ 'ଭିନ୍ନ' ଭାବ ଆସିଲା, ତାକୁ ପ୍ରବଞ୍ଚଣ ବୋଲି କୁହାଯିବ, ଏବଂ ସେଇ ଅଧୋଗତି ଯୋଗୁଁ ତମ ଦେହଟା ଥରି ଉଠୁଛି ଏମିତି ? ବିଚରା !

ସତେ ମହାର୍ଘ ବସ୍ତୁଟିଏ ତମେ, ମହେଶବାବୁ, ଯେତିକି ଆଦର୍ଶବାଦୀ ସେତିକି ସ୍ପର୍ଶକାତର । ବୋଧହୁଏ ଦୁଇଟିଯାକ ମନୋଭାବ ଗୋଟିଏ ସୂତାରେ ଗୁନ୍ଥା । କିନ୍ତୁ କେଜାଣି କାହିଁକି ତମଭଳିଆ ଚରିତ୍ରମାନଙ୍କୁ ମୁଁ ଅନେକ ସମୟରେ ଖେଞ୍ଚି ଦେବାକୁ ଚାହେଁ ମୋ ଗପରେ । ଭାବିବାକୁ ଭଲ ଲାଗେ ଯେ ତମେ ସବୁ ଏତେ ଅବାସ୍ତବ ନୁହଁ ଆଜିର ଦୁନିଆରେ । କାଁ ଭାଁ ଜଣେ ଦି'ଜଣ ଥିଲେ ମଧ୍ୟ ତଥାପି ରହିଛନ୍ତି ଆମ ଗହଣରେ । ତେଣୁ ଆଶା ଅଛି ।



# ଦର୍ପଣ

ମାଧୁରୀ ମହାପାତ୍ର ଓ ମାମୁଁ ନାଏକ ଦୁଇଜଣ ଭଦ୍ରମହିଳା ପାଖାପାଖି ଯୋଡ଼ିଏ ଘରର ବାସିନ୍ଦା । ଏବଂ ଦୁହେଁ ଏକାକିନୀ । କାରଣ ଦୁହିଁଙ୍କ ସ୍ୱାମୀ ସ୍ୱର୍ଗଲାଭ କଲେଣି । ଏବଂ ମିସେସ୍ ନାଏକ ନିଃସନ୍ତାନ ହୋଇଥିବାରୁ ମିସେସ୍ ମହାପାତ୍ରଙ୍କ ପିଲାପିଲି କେହି ପାଖରେ ନାହାନ୍ତି । ସେହେତୁ ସେମାନଙ୍କ ପ୍ରତିବେଶୀପଣରେ ଏକପ୍ରକାର ଆତ୍ମୀୟତା ଆସି ଯାଇଥିଲା । ପ୍ରାୟ ପ୍ରତିଦିନ ଦେଖାହୁଏ ପରସ୍ପର ସହିତ, ଏବଂ ଦେଖାହେଲାକ୍ଷଣି ସହାସ୍ୟ କୁଶଳ ସମ୍ବାଦର ଦିଆନିଆ ହୁଏ—

"ନମସ୍କାର ମାଧୁରୀଅପା ।"

"ନମସ୍କାର ।"

ତା'ପରେ ପାଣିପାଗ, ନିଜ ନିଜ ବେମାର ଆରାମ, ପନିପରିବାର ଦର, କଲୋନିର କାରବାର, ଇତ୍ୟାଦି ବିଭିନ୍ନ ବିଷୟର ଚର୍ଚ୍ଚା ହୁଏ । ଯାହାର ଶେଷକଥା ହେଉଛି ଏଇ ଯେ କେଉଁଠି କିଛି ଭଲ ଆଡ଼କୁ ଯାଉ ନାହିଁ, କିନ୍ତୁ ଆମକୁ ଏମିତି ବଞ୍ଚିବାକୁ ହେବ । ଯାହା ମାଧୁରୀ ପ୍ରକାଶ କରନ୍ତି ବହୁଳ ଶବ୍ଦ ଓ ବାକ୍ୟର ମାଧ୍ୟମରେ । ଏବଂ ସ୍ୱଳ୍ପଭାଷୀ ମାମୁଁ ପ୍ରାୟଶଃ ମୁଣ୍ଡ ହୁଙ୍କାର ଅଥବା ମୁଣ୍ଡ ହଲେଇ ତା'ର ସମର୍ଥନ କରନ୍ତି । ମଝିରେ ମଝିରେ ଏକ ତାଚ୍ଛଲ୍ୟସୂଚକ ହସ ମଧ୍ୟ ଛାଡ଼ି ଦିଅନ୍ତି ସରକାର ତଥା ନିଜକୁ ଭଲ ବୋଲି ମଣୁଥିବା ନାନାଦି ବ୍ୟକ୍ତିମାନଙ୍କ ଉଦ୍ଦେଶ୍ୟରେ, ଯେଉଁମାନେ ତୁମର କ୍ଷତିକାରକ । କିନ୍ତୁ ବିଶେଷ ଆଶ୍ଚର୍ଯ୍ୟର ବିଷୟ ଯେ ବାର୍ତ୍ତାଳାପ ଶେଷରେ ମାମୁଁ ଯେଉଁ ବିଦାୟକାଳୀନ ହସଟିଏ ବାଢ଼ି ଦିଅନ୍ତି 'ଯାଉଛି' ବୋଲି କହି, ତାହା ମଧ୍ୟ ମାଧୁରୀଙ୍କୁ ତାଚ୍ଛଲ୍ୟସୂଚକ ବୋଲି ମନେହୁଏ, ଏବଂ ସେ ପୁଣି ଥରେ ମନକୁ ମନ କୁହନ୍ତି—ସେ କ'ଣ ଏମିତି ଭାବୁଛି କି ନିଜକୁ ? ସତେକି ତାଙ୍କୁ ସମର୍ଥନ କଲେ ମଧ୍ୟ ସେ ତାଙ୍କୁ ବିଦ୍ରୂପ କରୁଛି, ଦୟା ଦେଖାଇବା ସହି । ଯେ ତୋର ଆସ୍ଥା ନାହିଁ ନିଜ ଉପରେ, ତୋର ବୁଦ୍ଧି ପାକଲ ନୁହେଁ, ଅଥବା ସେହିଭଳି କିଛି, ଏବଂ ସେଇଲାଗି ତୋର ଏଇ ଦୁରବସ୍ଥା । ଯାହାର ଅନ୍ୟ ନାଆଁ ବିଭ୍ରାନ୍ତି । ସଂସାରଟା ବାଜେ ହେଲେ ମଧ୍ୟ ତୁ ତା' ଉପରେ ସବାର ହୋଇ ପାରୁନୁ ଠିକଣା ସ୍ୱାର୍ଥସିଦ୍ଧି ପାଇଁ । ପୁଅର୍ ଥିଙ୍ଗ୍ !

ଦୁହେଁ ଦୁହେଁ ଦ'ବର୍ଷ ବିତିଗଲାଣି । ସାଥୀତ୍ୱ ଦୋରସ୍ତ ହେବା ସଙ୍ଗେ ସଙ୍ଗେ ମାଧୁରୀଙ୍କ ମନ ଭିତରେ କୁହୁଳୁଥିବା ଆକ୍ଷେପ 'ସେ କ'ଣ ଭାବିଛି କି ନିଜକୁ ?' ମଧ୍ୟ ପରସ୍ତ ପରସ୍ତ ହୋଇ ଅତ୍ୟନ୍ତ ଜଟିଳ ହୋଇଗଲାଣି । ତା'ର ବିଶ୍ଳେଷଣ ସମୟସାପେକ୍ଷ । ତେବେ ସେଥିର ଯତ୍‌ସାମାନ୍ୟ ଆଭାସ ଦେଇ ହେବ ।

ପ୍ରଥମ କଥା—ମୁଁ କେମିତି ତୋ'ର ଅପା ହେଲି ? କୋଉ ହିସାବରେ ? ମୋ ସାନଭଉଣୀ ମାଣିକ ତୋ ସାଙ୍ଗରେ ପଢୁଥିଲା ବୋଲି ମୁଁ ତୋର ଅପା ହୋଇଗଲି ? ମୁଁ ତୋଠୁ ବଡ଼ ଦିଶୁଛି ? ତା' ଛଡ଼ା ଜାଣିଛୁ ମୁଁ ତାଙ୍କଠୁଁ କେତେ ସାନ ? ଯେଉଁଠି ତମେ ସ୍ୱାମୀସ୍ତ୍ରୀ ଏକା ବୟସର ହୋଇଥିବ ବୋଲି ମନେହୁଏ । ମୋଟ ଉପରେ ମୋତେ ମିସେସ୍ ମହାପାତ୍ର ବୋଲି ଡାକିଲେ କ'ଣ କ୍ଷତି ହୋଇ-ଥାଆନ୍ତା ? ତୁ ମୋର କୋଉ ଭାଇବନ୍ଧୁ କୁଟୁମ୍ବ, ଯେ ମୋତେ ଅପା ବୋଲି ନଡାକିଲେ ତୋ ପେଟ ପୂରୁ ନଥିଲା ? ଯେତେକ ଢଙ୍ଗ !

ପୁଣି ଦେଖନ୍ତୁ, ମୋ କଥାଟା ନସରୁଣୁ ସେ କେମିତି ତତ୍ପର ହୋଇଉଠେ ଫେରିଯିବା ଲାଗି, ଆଉ 'ଯାଉଛି' ବୋଲି କୁହେ ତା'ର ସେଇ ମାର୍କାମରା ହସ ଖଣ୍ଡେ ଛାଡ଼ିଦେଇ ? ଯେତେକ ମୁଁ ତା'ର ମୂଲ୍ୟବାନ୍ ସମୟକୁ ନଷ୍ଟ କରି ଦେଉଛି ।

ତା'ଛଡ଼ା···ତା'ଛଡ଼ା ଅନେକ କିଛି···ଯାହାର ବ୍ୟାଖ୍ୟା କରିହେବ ନାହିଁ, ହେଲେ ଯାହା ଇନ୍ଧନ ଯୋଗାଇଥାଏ ତାଙ୍କ ଆକ୍ଷେପକୁ ସତେଜ କରି ରଖିବା ଦିଗରେ । ତା'ର ଚେହେରା ଯେମିତିକା, ମାଧୁରୀଙ୍କ ରୂପରଙ୍ଗର ବିପରୀତ କହିଲେ ଚଳେ, ସାବନା ରଙ୍ଗ, ପାତଳା ଗଢ଼ଣ, ଧାଡ଼ୁଆ ମୁହଁ, ଆଉ ଘଞ୍ଚ ଭ୍ରୂଲତା ତଳେ ଦି'ଟା କଳା ଡୋଳାର ମୁନିଆଁ ଚାହାଣି, ଆଉ ସେ ଯେମିତି ବସେଇ ବସେଇ ଅଳ୍ପ କଥା କୁହେ, ଯେମିତି ଠିଆହୁଏ, ଏବଂ ସର୍ବୋପରି ତା'ର ସେଇ ହସଖଣ୍ଡିକ—ଏଇ ସମସ୍ତ ଚେହେରା ଓ ସେଥିର ଭାବଭଙ୍ଗୀ ମାଧୁରୀଙ୍କ ଉଚ୍ଛଳ ଅଭିବ୍ୟକ୍ତିକୁ ଦବେଇଦିଏ । ଅନ୍ତତଃ ମାଧୁରୀଙ୍କୁ ସେମିତି ଲାଗେ । ଏବଂ ମାତ୍ର 'ହଁ' ଭରିଲେ ବି ମାଧୁରୀଙ୍କର ମନେହୁଏ ତା'ର ଅର୍ଥ ଭିନ୍ନ । ସେ ଉପୁରିଆ ହଁ କରୁଛି ମୋତେ ଦୟା ଦେଖାଇ ।

···କିଲେ, ମୁଁ କେଉଁ ହିସାବରେ ବେଶି ଦୟନୀୟା ଜାଣିପାରେ କି ? ଆମେ ଦିହେଁ ବିଧବା । ପୂର୍ଣ୍ଣଚ୍ଛେଦ । ନା କହିବାକୁ ଗଲେ ଦୁହେଁ ଯେ ତୁ ହେଉଛୁ ଆଧୁନିକା ବିଧବା, ଆଉ ମୁଁ ହେଉଛି ହୀନମାନି ହତଭାଗିନୀ ? ତୁ ଯେମିତି ହାତରେ ଚୁଡ଼ି ପିନ୍ଧୁଛୁ, ଧଡ଼ିଲଗା ଶାଢ଼ି ପିନ୍ଧୁଛୁ, ମୁଁ ବି ସେଇଆ କରୁଛି । ପ୍ରଭେଦ ଭିତରେ ଏତିକ ଯେ ମୁଁ ସିନ୍ଦୂର ଟୋପା ଲଗେଇବା ଛାଡ଼ିଦେଇଛି, ଆଉ ତୁ ଗୋଟାଏ ଟିକିଲି ଲଗଉଛୁ ତୋ କପାଳରେ, ଟୋକୀମାନଙ୍କ ପରି । ମୁଁ ମୋ ସ୍ୱାମୀକୁ ହରେଇଛି ଏଇ ଅଭାବଟାକୁ ଭୁଲି ହେଉ ନାହିଁ, ସେଥିଲାଗି ମୋ ମନ କହୁଛି ଯେ ସଧବାପଣର ସେଇ ସନ୍ତକଟିକ ନରହିଲେ ଭଲ । ମୋ ମନ କହୁଛି, କୋଉ ସମାଜ ମୋତେ

ବାଧେ କରୁ ନାହିଁ—ବୁଝିଲୁ ? ସେଇଲାଗି ତୁ ମୋତେ ବେଶି ମଡ଼ର୍ଣ୍ଣ ବୋଲି ଭାବ ନା । ହଁ, ଯଦି କହନ୍ତୁ ଯେ ମୋ ସ୍ୱାମୀ ମୋତେ ବାରଣ କରିଛନ୍ତି ମୋ କପାଳକୁ ନୁଖୁରା କରିବାକୁ, ତା' ହେଲେ ବୁଝନ୍ତି । କିନ୍ତୁ ତା' ବି ନୁହେଁ । ହୋଇଥିଲେ ଯେ ତୁ ମୋତେ କୁହନ୍ତୁ ସେକଥା, ତା' ମୁଁ ଆଶା କରୁନାହିଁ । ଯେତେ ସାଙ୍ଗ ହେଲେ ବି ତୁ କେବେହେଲେ ନିଜକୁ ଫିଟେଇ କରି କହିବୁ ନାହିଁ କାହା ଆଗରେ । ସତେକି ସିଏ ବି ଗୋଟାଏ ବଡ଼ପଣ । ଯଦିଓ ସେମିତିକା ସ୍ୱାମୀସୁଆଗ ନେଇ ବଢ଼େଇ କରିବା କଥା । ମୁଁ ହୋଇଥିଲେ ନିଶ୍ଚୟ ମୋ ପାଟିରୁ ବାହାରିଯା'ନ୍ତା ।

ଅସଲ କଥା ହେଉଛି ସେ ଦିଗରେ କିଛି ନାହିଁ ତୋ ପାଖରେ ବଢ଼େଇ କରିବା ଲାଗି । ସ୍ୱଚକ୍ଷୁରେ ଦେଖିନାହିଁ ତୋ ସ୍ୱାମୀ ପ୍ରଫେସର୍ ସୁରେନ୍ଦ୍ର ନାଏକଙ୍କୁ । କିନ୍ତୁ ମୁଁ ଶୁଣିଛି ତାଙ୍କ ବିଷୟରେ । ତମେ ଦି'ଜଣ କୁଆଡ଼େ ଭାଇଭଉଣୀ ପରି ଦେଖାଯାଅ । ସେ ବି ଜଣେ କାଳିଆ ଧେଡ଼ିଆ ଭଦ୍ରଲୋକ । ବିଚକ୍ଷଣ ପ୍ରଫେସର୍ । କିନ୍ତୁ ପାର୍ଟିଫାର୍ଟିରେ ତାଙ୍କ ପାଟିରୁ କଥା ବାହାରେ ନାହିଁ । ତୁ ତ ଯାହାହେଉ ହସୁ ତୋ ହିସାବରେ, ତାକୁ ମିଠା କୁହ କି ପିତା । କିନ୍ତୁ ତାଙ୍କୁ ତା' ବି ଜଣା ନାହିଁ । ତେଣୁ ଶୋଇବା ଶେଯରେ ତମ ଦି'ଜଣଙ୍କ ନୀରବ ପ୍ରେମ କେଉଁ ପ୍ରକାର ହୋଇଥିବ ତା' ଭାବିବାର ବିଷୟ । ଏବଂ ମହଜେ ସେ କେଉଁ ସୁଆଗିଆ କି ରୋମାଣ୍ଟିକ୍ ରାଣ ଗୁଡ଼ା ଯାଇ ନଥିବେ ତୋ ପାଇଁ ।

ଠିକ୍ ଅଛି ମୁଁ ତୋ ପ୍ରତି ଦୟା ଦେଖାଉ ନାହିଁ । କିନ୍ତୁ ତୁ ଓଲଟି ଏମିତି ଦୟା ଦେଖାଉଛୁ କାହିଁକି ମୋ ଉପରେ ? କେଉଁ ଗୁଣରେ ?

ସତେକି ମୁଁ ଯୋଉ ହସଖୁସି ଆଣିବାକୁ ଚେଷ୍ଟା କରୁଛି ମୋ ଏକୁଟିଆ ଜୀବନରେ, ତା'ର କୌଣସି ମୂଲ୍ୟ ନାହିଁ । ଏବଂ ମର୍ଯ୍ୟାଦା ନାହିଁ ମୋ ଦୁଃଖରେ । ଆଉ ତୋର ଦୁଃଖସୁଖ ବିବର୍ଜିତ ଚୁପ୍‌ଚୁପିଆ ବହିପଢ଼ା କ୍ୟାସେଟ୍‌ଶୁଣା ଜୀବନହିଁ ସାର; ଭାଗ୍ୟବିଧାତାଙ୍କୁ ଠିକଣା ଉତ୍ତର ! ବେଶ୍, ତୋ କଥା ତୁ ବୁଝିବୁ । କିନ୍ତୁ ମୋ ସାଙ୍ଗରେ ଲଖି ରହିଛୁ ଜୁଇ ପରି, ଆଉ ମୋ ବାଟରେ ମୋତେ ଟିକିଏ ସୁଖ କରିବାକୁ କି କାନ୍ଦିବାକୁ ଦେବୁ ନାହିଁ, ଯା'ର ଅର୍ଥ କ'ଣ ? ମୁଁ ଯୁଆଡ଼େ ଯାଏ, ବଜାର ହେଉ କି ଏକ୍‌ଜିବସନ୍ କି କୁମାର ସାନୁ ନାଇଟ୍, ତୋର କ'ଣ ଆସିବା ଦରକାର ମୋ ଲାଙ୍ଗୁଡ଼ ହୋଇ, ଯେମିତିକି ଆମର ଅପୂର୍ବ ଯୋଡ଼ିକୁ ସମସ୍ତେ ଦେଖିବେ ଓ ବାହାବା କରିବେ ?

କାହିଁକି କାହିଁକି, ଗନ୍ଧିଆ ଦର୍ପଣଟାଏ ତୋଳି ଧରିଛୁ ମୋ ଆଡ଼କୁ, ଆଉ କହୁଛୁ—ଦେଖ, ଦେଖ ମାଧୁରୀ ଅପା, ଦେଖ ତମ ଚେହେରା ଚରିତ୍ରକୁ । ଦେଖୁଛ ତ ତମ ନିଜଗଢ଼ା ସୁଖଦୁଃଖଗୁଡ଼ାକ କେତେ ଫମ୍ପା, ଆଉ ମନଭୁଲାଣିଆ ?

ମୁଁ ବି ଅଳନ୍ଦୁକା କାହିଁକି ଛାଡ଼ିପାରୁ ନାହିଁ ତାକୁ ? ସତେକି ମୋର ବି ଦରକାର ଏମିତି ଗୋଟାଏ ଦର୍ପଣ ମୋର ଏକୁଟିଆ ଜୀବନରେ ନିଜକୁ ଚିହ୍ନିବା ପାଇଁ କି ଧରି ରଖିବା ପାଇଁ ! ନା, ଭାବିନିଅ ଯେ ମୋର ବି ଜିଦ ଲାଗିଛି ତାକୁ ଦେଖେଇ ଦେବା ପାଇଁ ଯେ ମୁଁ ଯଥାର୍ଥରେ ଦୁଃଖୀ । ଏବଂ ଯଥାର୍ଥରେ ସୁଖୀ । ପାଇବା-ନପାଇବାର ଭାଗମାପ ନେଇ । ତା'ର କିଛି ଅଧିକା ନାହିଁ ମୋଠାରୁ । ଅନ୍ତତଃ ମୋର ଗୋଟାଏ ଜିନିଷ ଅଛି, ଯାହା ତା'ର ବିଲ୍‌କୁଲ୍ ନାହିଁ । ମୋର ପରିବାର । ଛଅଟା ପୁଅଝିଅ ଆଉ ଆଠଟି ନାତିନାତୁଣୀଙ୍କ ପରିବାର । ବାବୁନି. ପାପୁନି, ପିଲୁ, ମିଲୁ, ନୀଲୁ ଆଉ ଟୁକୁନି, ଏବଂ ସେମାନଙ୍କର ଲାଲ୍‌ମନି, ଆର୍‌ମାନି, ହିରେ, ସିକର୍ ଓଗେରଙ୍କୁ ନେଇ ଗୁଲୁଗୁଲିଆ କୁନୁମୁନିଆ ଆଠଜଣ । ପେଟ ପୂରିଯିବ, ଛାତି ଭରି ଉଠିବ, ସେମାନଙ୍କୁ ଦେଖିଲେ । ମୋ ପାଖରେ କେହି ନ ଥିଲେ ନାହିଁ, ହାତୀ ବନ୍ଧରେ ଥିଲେ ବି ରଜାର । ରଜା ନ ଥିଲେ ବି ରାଣୀର ।

ଏହି ଭାବରେ ମାଧୁରୀ ମାୟା-ଦର୍ପଣର ପ୍ରତିରୋଧ କରୁଥିଲେ । କିନ୍ତୁ ମନେ ମନେ ଭୟ ହେଉଥିଲା ଯେ ବଡ଼େଇ କଲା ପରି କିଛି କହିଲେ ଯେ 'ସତେ ?' ବୋଲି ଏମିତି ପଦେ କହିବ, ଭୂରୁ ଉପରକୁ ଟେକି, ଏବଂ ତା' ଅଣହେସର କରାମତି ଦେଖାଇବ, ଯେ ତାକୁ ସହ୍ୟ କରି ହେବ ନାହିଁ । ତଥାପି ସେ ତାଙ୍କ 'ଜିଦଖୋର' ପଣରୁ କ୍ଷାନ୍ତ ହୋଇ ନଥିଲେ । ଭାବୁଥିଲେ ଯେ ମୁଁ ଦେଖେଇ ଦେଖେଇ କହିବି, ଠିକଣା ସୂଚନା ଦେବି ମୋ ସମ୍ପଦର, ଛାଡ଼ିବି ନାହିଁ । ସେ ବୁଝିବ ଯେ ବୁଝିବ ।

କିନ୍ତୁ ଏଭଳି ପରିସ୍ଥିତି ଅନିବାର୍ଯ୍ୟ ନଥିଲା । ହୁଏତ ତାଙ୍କ ସ୍ୱାମୀମାନେ ନିଜ ନିଜ ଜନ୍ମସ୍ଥାନ, ଆଦିନିବାସ, କିମ୍ବା ସେହି ପ୍ରକାର ସ୍ଥାନରେ ରହିପାରିଥା'ନ୍ତେ ରିଟାୟାର୍‌ମେଣ୍ଟ୍ ପରେ, ଆପଣା ଭାଇବନ୍ଧୁ ବିରାଦରଙ୍କୁ ନେଇ । ନନ୍ଦନଗର କଲୋନିର ସରକାରଙ୍କ ଦ୍ୱାରା ନିର୍ମିତ ଫ୍ଲାଟ୍‌ରେ ରହିଯିବାର କୌଣସି ବିଶେଷ କାରଣ ନଥିଲା, ଆପାତତଃ । କିନ୍ତୁ ଅଦୃଷ୍ଟର ବରାଦ୍ ଯେ କ୍ୟାପିଟାଲ୍‌ର ଯଥେଷ୍ଟ ଦୂରରେ ଥିବା ଏଇ ନିରୋଳା ଜାଗାଟି ତାଙ୍କୁ ଲୋଭେଇଲା । ଏକଦା ଏଇଠି ରହି-ଯିବାକୁ ମନ ହେଲା । କିନ୍ତୁ ଦେଖିବାକୁ ଗଲେ କ'ଣ ଏମିତି ଲୋଭନୀୟ ଅଛି ଏଠି ? ରୂପା-ନଈର ଶୀର୍ଣ୍ଣ ରୂପେଲି ତନୁଶ୍ରୀ, ଏବଂ ତା' ପଛକୁ ଥିବା ନୀଳଶୈଳର ଶୋଭା ଛଡ଼ା କ'ଣଟା ଅଛି ? ହଁ, କହିବ ଯେ ଗୋଟାଏ କୃଷି ମହାବିଦ୍ୟାଳୟ ଅଛି, ଯେଉଁଠି ସୁରେନ୍ଦ୍ରବାବୁ କେମିଷ୍ଟ୍ରୀ ପଢ଼ଉଥିଲେ । ଏବଂ ଖଣ୍ଡେ ଦୂରରେ ଗୋଟାଏ ପୁରୁଣା ମନ୍ଦିର ଅଛି, ଯେଉଁଠି ମାଆ ଭବାନୀ ଚଣ୍ଡୀରୂପ ଧାରଣ କରି ନାହାନ୍ତି । କ'ଣ ହେଲା ସେଠୁଁ ? ସେଥିରୁ କ'ଣଟା ମିଳିବ ରିଟାୟାର୍‌ମେଣ୍ଟ୍ ପରେ ? କିନ୍ତୁ

ଯୋଗ ଦେଖ, ସୁରେନ୍ଦ୍ରବାବୁ ତାଙ୍କ ସହକର୍ମୀ ପ୍ରଫେସର୍ ହର୍ଷ ମିଶ୍ରଙ୍କ ସୁପାରିସ ଏବଂ ପତ୍ନୀ ମାଧ୍ୱୀଦେବୀଙ୍କ ସମର୍ଥନକୁ ମାନି ନେଇ ଅବସର ନେଲା ପରେ ଏଇଠି ରହିବେ ବୋଲି ସ୍ଥିର କଲେ, ଏବଂ ତାଙ୍କ ମାଷ୍ଟରୀଆ ଜୀବନର ସଞ୍ଚିତ ଧନକୁ ଏଇ ସମତୁଲ ଟାଇପ୍ ସିକ୍ସ୍ ଘର ଖଣ୍ଡେ କିଣିବାରେ ନିୟୋଜିତ କଲେ। ହର୍ଷ ମିଶ୍ର କହିଲେ ଅବସର ପରେ ମଣିଷର ଆଉ କ'ଣ ଦରକାର ନିର୍ମଳ ସୁସ୍ଥ ପରିବେଶ ଏବଂ ପ୍ରକୃତିର ଶୋଭା ଛଡ଼ା ? ସୁରେନ୍ଦ୍ରବାବୁ କେବଳ ହଁ ଭରିଲେ ନୁହେଁ, କହିଲେ ତା'ଛଡ଼ା ମୋର ବଳ ନାହିଁ ଘର ଖଣ୍ଡେ ତୋଳିବା ପାଇଁ। ମୁଁ ମହା ଅଯୋଗ୍ୟ ସେଦିଗରେ। କିନ୍ତୁ ତମେ ମାମୁମାଈଁ ଦି'ପ୍ରାଣୀ, ତମର ଥ୍ରି-ବେଡ୍-ରୁମ୍ ଫ୍ଲାଟ୍ କିଣିବା କ'ଣ ଦରକାର ଥିଲା ? ହେଲେ ଏହି ପ୍ରଶ୍ନ କେହି ଉଠେଇ ନାହାନ୍ତି। କିଏ ନ ଜାଣେ ଯେ ଇଣ୍ଟେଲେକ୍ଚୁଆଲ୍ ମାଧ୍ୱୀ ନାଏକଙ୍କ ସୁଖବୋଧ ପାଇଁ ଅନ୍ତତଃ ଗୋଟିଏ ସ୍ୱତନ୍ତ୍ର କମରା ଦରକାର ଯେଉଁଠି ତାଙ୍କ ଗଦା ଗଦା ବହି, ମ୍ୟୁଜିକ୍ ସିଷ୍ଟମ୍, ଏବଂ ମାଲ ମାଲ କ୍ୟାସେଟ୍ ସ୍ଥାନ ପାଇ ପାରିବ ? ଏଇ ଘ୍ରେଟିଆ ଭଡ଼ାଘରେ ସେଇ ସାରସ୍ୱତ ସମ୍ପଦର କଦଳା ହତାଦର କରିବାକୁ ପଡ଼ୁଛି, ତା' କ'ଣ କେହି ଦେଖୁ ନାହାନ୍ତି ? ଏହିପରି ଭାବରେ ନନ୍ଦନଗରର ଏ-୩୧୯ ନମ୍ବର ଏକମହଲା ଫ୍ଲାଟ୍‌କୁ ସୁରେନ୍ଦ୍ରବାବୁ କିଣିନେଲେ, ଏବଂ ସେଇଠି ବସା ବାନ୍ଧିଲେ ରିଟାୟାର୍‌ମେଣ୍ଟର ପ୍ରାୟ ବର୍ଷେ ପୂର୍ବରୁ। କିନ୍ତୁ ଦୁର୍ଭାଗ୍ୟ ଯେ ସେ ଗୃହେଟି ମାସ ବି ସେଠି ରହିପାରିଲେ ନାହିଁ। ପତ୍ନୀଙ୍କ ମ୍ୟୁଜିକ୍‌ସିଷ୍ଟମ୍‌ରୁ ନିର୍ଗତ ବଡ଼ ବଡ଼ କ୍ଲାସିକାଲ୍ ସଂଗୀତରେ ମଜ୍ଜି ଯାଇ ପାରିଲେ ନାହିଁ, ଯାହା ସେ ଆଶା କରୁଥିଲେ। ହଠାତ୍ ଦିନେ ହୃଦ୍‌ଘାତରେ ଚାଲିଗଲେ। ଡାକ୍ତର କହିଲେ ସେରେବ୍ରାଲ୍ ମ୍ୟାଲେରିଆ। କିଛିଦିନ ଉତ୍ତାରୁ ଜଣେ ବନ୍ଧୁ ଯେତେବେଳେ ପଚାରିଲେ ମାଧ୍ୱୀଙ୍କୁ ତାଙ୍କ ଭବିଷ୍ୟତ ରହଣି ବିଷୟରେ, ସେ ଯେଉଁ ମୁରୁକିହସା ଦେଲେ, ତାକୁ କେବଳ ମାଧୁରୀ କାହିଁକି ଯେକୌଣସି ଲୋକ ବିଦ୍ରୂପାତ୍ମକ ବୋଲି ଭାବିବ। ମଧ୍ୟ ସେ ତାଙ୍କ ହସର ଉଦ୍ଦେଶ୍ୟକୁ ଦି'ପଦ କଥାରେ ବୁଝେଇ ଦେଇଥିଲେ ପ୍ରଶ୍ନକର୍ତ୍ତାର ବିମୂଢ଼ ଚାହାଣିକୁ ଲକ୍ଷ୍ୟ କରି। କହିଲେ—"ପ୍ରଫେସର୍ ସାହେବ ଚାଲିଗଲେ ବୋଲି ମୋତେ ବି କ'ଣ ପଳେଇ-ଯିବାକୁ ପଡ଼ିବ ?" ଅର୍ଥାତ୍ ଏ୍ୟା'କୁ କ'ଣ ଆଉ ମୋର ଘର ବୋଲି କୁହାଯିବ ନାହିଁ ?

କିନ୍ତୁ ମାଧୁରୀଙ୍କ କ୍ଷେତ୍ରରେ ଘଟଣା ଭିନ୍ନ ପ୍ରକାର ହୋଇଗଲା, ଏବଂ ଏକାଧିକ କାରଣ ଥିଲା ତାଙ୍କର ଏଠୁ ଚାଲିଯିବାର ପି. ଡବ୍ଲ୍ୟୁ. ଡି. ଇଞ୍ଜିନିୟର୍ ସ୍ୱାମୀ ନିଖିଳବାବୁଙ୍କ ଅକାଳ ବିୟୋଗ ପରେ। ନିଖିଳବାବୁ ବିପୁଳ ଅର୍ଥ ଉପାର୍ଜନ କରି-ଥିଲେ ତାଙ୍କ ଚାକିରି ଜୀବନରେ, ଏବଂ ସହଜେ କେବଳ ଦରମା ଗଣ୍ଡାକ ତା'ର ଆଧାର ନଥିଲା। ଏବଂ ସେ ବିଭିନ୍ନ ସ୍ଥାନରେ ଘର କିଣିଛନ୍ତି ଓ ବିକିଛନ୍ତି, ବିଭିନ୍ନ

ସମୟରେ ଜାଗ୍ରତ ରୁଚି ଅନୁଯାୟୀ, ଯାହାକୁ ଅନେକେ ତାଙ୍କର ବଡ଼ଲୋକି ଖିଆଲ୍ ବୋଲି କହିପାରନ୍ତି । ସେମିତିକା ଗୋଟାଏ ଖିଆଲ୍‌ରେ ସେ ଏଠି ଘର ଖଣ୍ଡେ କିଣି ପକେଇଲେ, ଯେତେବେଳେ ସେ ଦକ୍ଷିଣପୂର୍ବ ସର୍କଲ୍‌ର ସୁପରିନ୍‌ଟେଣ୍ଡିଙ୍ଗ୍ ଇଞ୍ଜିନିୟର୍ ଥିଲେ ଏବଂ ଘଟଣାକ୍ରମରେ ଏଠିକି ଆସୁଥିଲେ । କହିଲେ, ଏଇ ନନ୍ଦନଗର କଲୋନି ମୋର ଏକ ବିଶିଷ୍ଟ କୃତି, ଭାବୁଛି ରିଟାୟାର୍‌ମେଣ୍ଟ୍ ପରେ ଏଇଠି ରହିଗଲେ ମନ୍ଦ ହେବ ନାହିଁ । ଟୁକୁନି ପଚାରିଲା—ପୁଣି ପରେ କିଏ ରହିବ ? ମିଲୁ କହିଲା—, ପୁଣି ଘରକୁ ମାର୍ ଗୋଲି, କ୍ୟାପିଟାଲ୍‌ରେ ଯେଉଁ 'ନିଖିଲ-ମାଧୁରୀ' ତୋଳିଛ, ଏତେ ବଢ଼ିଆ କୋଠା, ତାକୁ କ'ଣ ଭୂତ ଖାଇବେ ? ନିଖିଲବାବୁ ହସି ହସି ପିଲାଙ୍କ ପ୍ରଶ୍ନବାଣକୁ ଏଡ଼ାଇ ଦେଲେ, ତାଙ୍କ ମଉଜିଆ ଢଙ୍ଗରେ । କହିଲେ,—ନୋ ଫିଅର୍ସ୍ । କାହାକୁ ଭୂତ ଖାଇବେ ନାହିଁ । କିଛି କେଉଁଠି ନଷ୍ଟ ହେବ ନାହିଁ । କିନ୍ତୁ ଆଗେ ଏଠି ରହିଯାଏ ଥୋଡ଼ାଏ ଦିନ ରିଟାୟାର୍‌ମେଣ୍ଟ୍ ପରେ, ତା' ପରେ ଦେଖାଯିବ । ସେଇଠୁଁ ମାଧୁରୀଙ୍କ ଆଡ଼କୁ ଆଖିମିଟିକା ମାରି କହିଲେ—ମୋତେ ମାଆ ଭବାନୀ ଡାକୁଛନ୍ତି ପରା ! ଅର୍ଥାତ୍, ଦେଖ ମୁଁ କେତେ ଧାର୍ମିକ ହେବାକୁ ବସିଲାଣି, ତମକୁ ଖୁସି କରିବା ପାଇଁ । ମାଧୁରୀ ହସିଲେ, ଏବଂ ସ୍ୱାମୀଙ୍କ ଧାର୍ମିକତାକୁ ସତ ମଣିଲା ପରି କହିଲେ—ଯାହା ହେଉ ଏତେ ଦିନକେ…! କିନ୍ତୁ କିଏ ଜାଣିଥିଲା ଯେ ଅବସର ନେବାର ଦି'ମାସ ନଯାଉଣୁ, ଏବଂ ଏଠି ସ୍ଥିତିମତ ଆସନ ଜମେଇବା ପୂର୍ବରୁ ସେ ଚାଲିଯିବେ ଏମିତି ? ଭବାନୀଙ୍କ କୋପଦୃଷ୍ଟି ? ନା ରିଟାୟାର୍‌ମେଣ୍ଟ୍ ପରେ ପରେ ତାଙ୍କ ମଦପିଆର ମାତ୍ରା ବଢ଼ିଗଲା, କାମଦାମ ଏବଂ ସମଧର୍ମୀ ସାଙ୍ଗମାନଙ୍କ ଅଭାବ ହେତୁ ନିରକ୍ତୁଆ ପରି ମନେ ହେଉଥିବା ପରିସ୍ଥିତି ଯୋଗୁଁ, ଯେଉଁଥିରେ ତାଙ୍କ ରକ୍ତଚାପ ସମ୍ଭାଳା ପଡ଼ିଲା ନାହିଁ ? ଯାହାହେଉ ଦିନେ ହଠାତ୍ ତାଙ୍କ ନାକରୁ ରକ୍ତ ଝରିଲା ଗଳଗଳ ହୋଇ, ସେଇଠୁଁ ସେ ଅଚେତ ହୋଇ ପଡ଼ିଲେ, ଏବଂ କେଇ ଘଣ୍ଟା ଭିତରେ ସବୁ ଶେଷ । ମୃତ୍ୟୁବେଳକୁ କେହି ନ ଥିଲେ ମାଧୁରୀଙ୍କ ଛଡ଼ା । କିନ୍ତୁ ଯଥାକ୍ରମେ ଏ-୩୨୫ ନମ୍ବର ଫ୍ଲାଟ୍ ପରିବାର ସମେତ ଅନେକ ବନ୍ଧୁ, ପ୍ରାକ୍ତନ ସହକର୍ମୀ ଏବଂ ସାହିପଡ଼ିଶାଙ୍କ ବ୍ୟକ୍ତ-ଅବ୍ୟକ୍ତ ସମବେଦନାରେ ଉଚ୍ଛୁଳି ଉଠିଲା । ସମସ୍ତେ ଦେଖିଲେ ମାଧୁରୀ କେମିତି କାନ୍ଦୁଛନ୍ତି, କାନ୍ଦି ଚାଲିଛନ୍ତି, ଲୁହର ଛୁଟଣ ସରିବାକୁ ନାହିଁ । ସେତିକିବେଳେ ଥୋକେ ହୁଏତ ମନେ ପକେଇଥିବେ ପ୍ରାୟ ବର୍ଷେକ ତଳର ଏହିଭଳି ଆଉ ଗୋଟିଏ ଦୃଶ୍ୟ, ଯେଉଁଥିରେ ଦୃଶ୍ୟର ଶ୍ରେଷ୍ଠାଂଶରେ ଥିବା ବିଧବାଜଣକ ଆଦୌ କାନ୍ଦୁ ନଥିଲେ । ଅପରନ୍ତୁ ଝିଏ ଲୁହ ପୋଛୁଥିଲା, ତା' ଆଡ଼କୁ ଅନଉଥିଲେ ବିସ୍ମିତ ହୋଇ ପରି, ସତେକି ସେ ଗୋଟିଏ ଅସଙ୍ଗତ କାମ କରୁଛି । ସେହି ଭଦ୍ରମହିଳା ମାନ୍ୟା ନାଏକ, ପ୍ରତିବେଶିନୀଙ୍କ ହାତ ଧରି କହିଥିଲେ, "ଏମିତି ହୁଏ ମାଧୁରୀଅପା, ଏମିତି ହୁଏ ।" ଧୈର୍ଯ୍ୟ ଧରି ବୋଲି ମଧ୍ୟ କହି ନଥିଲେ । ଖାଲି ଏଇ ପଦେ କଥା, ଗୋଟାଏ ସରଳ ସାଧାରଣ

ସାତ୍ୟ, ଯାହାକୁ ଏ ସ୍ତ୍ରୀଲୋକଟା ବୁଝିପାରୁ ନାହିଁ । କିନ୍ତୁ ମାଧୁରୀଙ୍କୁ ଏହି ସାନ୍ତ୍ୱନା ବିଶେଷ ଭଲ ଲାଗିଥିଲା । ମନେହେଲା ସେ ଉଚିତରୁ ଅଧିକ କାନ୍ଦୁଛନ୍ତି । ଥ୍ୟାଙ୍କ୍ ୟୁ ମାଷ୍ଟ୍ରା, ମୋର ଦରକାର ଥିଲା ତମରି ଭଳି ଗୋଟିଏ ସାଥୀ । ସେଇଠୁଁ ଆରମ୍ଭ । ଏକ ଅନନ୍ୟ ଆତ୍ମୀୟତାର ଅନୁଭବ, ଏବଂ ତା'ର ରୂପଗୁଣ ଯାହା ହେଉ ପଛକେ ।

ସେହି ଶୋକାର୍ତ୍ତ ଦିନଗୁଡ଼ିକର ହାଉଯାଉ ଭିତରେ ସେ ନନ୍ଦନଗରର ଆଉ କେତେଜଣ ଲୋକଙ୍କୁ ମଧ୍ୟ ଚିହ୍ନିଲେ, ଲୁହର ଝାପ୍‌ସା ପରଦା ଭିତରେ । ଯେଉଁମାନେ ଆଗେଇ ଆସିଥିଲେ ତାଙ୍କ ପାଖକୁ, ସେମାନଙ୍କର ଗଭୀର ସମବେଦନା ଜଣାଇବା ପାଇଁ ତାଙ୍କ ଭିତରେ ଥିଲେ ଅଧ୍ୟାପକ ହର୍ଷ ମିଶ୍ର, ମୋଟାସୋଟା ଗୋରା ଚେହେରା, ଯେ ପ୍ରକୃତରେ ହର୍ଷୋତ୍‌ଫୁଲ୍ଲ ଦିଶନ୍ତି । ସେହେତୁ ସେ ଯେତେବେଳେ ଆସିଲେ ସମବେଦନା ବ୍ୟକ୍ତ କରିବା ଲାଗି, ମାଧୁରୀଙ୍କର ମନେହେଲା କେଉଁଠି କ'ଣ ଅଖାଡ଼ୁଆ ଲାଗୁଛି । ତା' ପରେ ହଠାତ୍ ତାଙ୍କୁ ଲାଗିଲା ଯେ ଭଦ୍ରଲୋକ ସ୍ୱାମୀ ନିଖିଳ-ବାବୁଙ୍କ ସହୋଦର ପରି ଦିଶୁଛନ୍ତି ! ମୁହଁର ଗଢ଼ଣ ଭିନ୍ନ ହେଲେ ମଧ୍ୟ ସେହିଭଳି ଦୀପ୍ତ, ଦୃପ୍ତ ଏବଂ ଉତ୍‌ଫୁଲ୍ଲ ଚେହେରାର ଅଧିକାରୀ, ଯାହାଙ୍କ ପାଇଁ ମୃତ୍ୟୁସମେତ ଯେକୌଣସି ଦୁଃଖ ଗୋଟାଏ ବ୍ୟତିକ୍ରମ ମାତ୍ର । ଶୋକ ଭିତରେ ବି ରାଗ ଆସିଲା ସ୍ୱାମୀଙ୍କ ଉପରେ । ଅଭଦ୍ରଲୋକ ଗୋଟାଏ ଖେଳ ଖେଳି କରି ଗଲେ ମୋ ସାଙ୍ଗରେ ! ଆଉ ଜଣଙ୍କର ମୁହଁ ବାରି ହୋଇଯାଇଥିଲା ସେତେବେଳେ । ପୂରା ମଣିଷ ନୁହେଁ । ପିଲାଟିଏ । ସେ ପଶି ଆସିଥିଲା ଗହଳି ଭିତରକୁ, କାହାରି କଥା ନ ମାନି । ଯେତିକି ତା'ର ବି ଗୋଟାଏ ଅଧିକାର ଅଛି ସମବେଦନା ଜଣାଇବା ପାଇଁ । ଛନଛନିଆ ମୁହଁ, ତରାଟରା ଆଖି । ତାକୁ ଯେ କାହିଁକି ଟାଣି ନିଆ ହେଲା ବାହାରକୁ, ସେ ବୁଝି ପାରିଲେ ନାହିଁ । ପରେ ଜଣେ କହିଲା—ସେ ପରା କହ୍ନେଇ, ପରିବାବୁଙ୍କ ପୁଅ ! ଏଇ ୩୨୦ ନମ୍ବରରେ ଥା'ନ୍ତି । ବିଚରା ପିଲାଟାଏ ହୋଇ ରହିଗଲା । ଆସି ନଅଦଶ ବର୍ଷର ହେଲାଣି କିନ୍ତୁ ତା'ର ବୁଦ୍ଧି ହୋଇନାହିଁ । ସେମିତି ହସୁଛି, କାନ୍ଦୁଛି, ଆଉ ଦୁଷ୍ଟାମି କରୁଛି ଚାରିପାଞ୍ଚ ବର୍ଷର ପିଲାଙ୍କ ପରି । କିନ୍ତୁ ଯାହାକୁ ଭଲ ପାଇବ ନା, ତାକୁ ଗେହ୍ଲା କରି କରି ଅଥୟ କରି ଦେବ । ତା'ର ତିନିଟା ଭାଇଭଉଣୀ, ସମସ୍ତେ ନର୍ମାଲ୍ ଖାଲି ଏଇ ପିଲାଟା···ୟା'ର ପାଇଁ ଯେତିକି ଦୁଃଖ ବାପମାଆଙ୍କର । ମାଧୁରୀ ଚଟ୍‌କିନି ବୁଝିପାରି ନଥିଲେ ସେତେବେଳେ, ଯେ ଏମିତିକା ସୁନ୍ଦରିଆ ଗୁଲୁଗୁଲିଆ 'ପ୍ରେମିକ' ପିଲାଟି ପାଇଁ କାହିଁକି ଦୁଃଖ ହେବ କୋଉ ବାପାମାଆଙ୍କର । ପରେ ଯାଇଁ ଚେତା ପଶିଲା ଯେ ସେ ପଛୁଆ ପିଲା, ଯାହାକୁ ରିଟାର୍ଡେଡ୍ କୁହାଯାଏ ଇଂରେଜୀରେ ।

ଏତେ ବଡ଼ ପରିବାର ଥାଉଁ ଥାଉଁ ମାଧୁରୀ କାହିଁକି ଏଠି ରହିବା ପାଇଁ ସ୍ଥିର କଲେ, କିଏ କହିବ ? ବାହାହେଲା ପୁଅଝିଅ, ତଥା ଅଭିଆଡ଼ା ପୁଅ ଦି'

ଜଣ, ସମସ୍ତେ ଲଗେଇଲେ ବୋଉ ସାଙ୍ଗରେ, ତାଙ୍କ ପାଖରେ ଆସି ରହିବାକୁ । ଏଇ ବି ନୁହେଁ ଯେ ନିଖିଲବାବୁଙ୍କର ଇଚ୍ଛା ଥିଲ ଏଇଠି ତାଙ୍କ ଶେଷ ଜୀବନ ବିତେଇବେ । ବରଂ କହିଲେ ଚଳେ ଯେ କ୍ୟାପିଟାଲ୍‌ର 'ନିଖିଲ-ମାଧୁରୀ' ନିର୍ଦ୍ଦିଷ୍ଟ ଥିଲ ସେଥିପାଇଁ । ତଥାପି ସେ କାହିଁକି ଅଡ଼ି ବସିଲେ ଏଇଠି ରହିବେ ବୋଲି ? ଭବାନୀ ମାଅଙ୍କ ଡାକ, ନଈ ପାହାଡ଼ର ଆକର୍ଷଣ, ନା ଆଉ କ'ଣ ? ମନେହୁଏ ଯେ ସେ ସବୁର ଭୂମିକା ଥାଇପାରେ. କିନ୍ତୁ ତାଙ୍କୁ ମଧ୍ୟ ଗୋଟାଏ ସୁଯୋଗ ଅଥବା ଚ୍ୟାଲେଞ୍ଜ୍ ମିଳିଛି ବୋଲି ଲଗିଲା । 'ସେମାନଙ୍କୁ' ଦେଖେଇ ଦେବା ଲଗି ଯେ ସେ ଅବଳା, ନିପାରିଲା ନୁହଁନ୍ତି, ଯାହା ସେମାନେ ଭାବି ଆସିଛନ୍ତି । ବିଶେଷତଃ ପିଲାମାନେ ଓ ସେମାନଙ୍କ ବାପା । କହିଲେ, ନା ମୁଁ ଏଇଠି ରହିବି । ସେ ଯଥେଷ୍ଟ ଟଙ୍କା ରଖିଯାଇଛନ୍ତି ମୋ ପାଇଁ । ପୁରୁଣା ଗୃହକରଟିଏ ବି ଅଛି । ଆଉ କ'ଣ ଦରକାର ?

ତା' ଛଡ଼ା ମୋତେ ମିଳିଯାଇଛି ଏଇ ପଡ଼ୋଶୀ ଜଣକ, ସେ କହିଲେ ନିଜକୁ । ସମଦୁଃଖିନୀ । ଠିକଣା କଥା କହୁଛି—'ଏମିତ ହୁଏ, ଏମିତ ହୁଏ' । ଲେଖା ହୋଇ ନାହିଁ ଯେ ସ୍ତ୍ରୀମାନେ ଆଗେ ମରିବେ । ସ୍ୱାମୀମାନେ ବି ଆଗରୁ ମରିଯା'ନ୍ତି । କ'ଣ ହେଲା ସେଥିଁ ? ତା' ମାନେ କ'ଣ ତାଙ୍କର ସ୍ତ୍ରୀମାନେ, ଆଧୁନିକା ବୋଲାଉଥିବା ବିଧବାମାନେ ଆଉ କାହାର ଅଣ୍ଡା ନେବାକୁ ବାଧ୍ୟ ? ନା ମୁଁ ଆଧୁନିକା ନୁହେଁ କୋଉ ହିସାବରେ ? ସେତେବେଳେ ସେ କ'ଣ ଜାଣିଥିଲେ ଯେ ଏଇ ଜଣକି କେବଳ ତାଙ୍କର ଦୈନନ୍ଦିନ ସାଥୀ ହୋଇରହିବ ନାହିଁ, ଗୋଟାଏ ସ୍ୱଚ୍ଛମତ ଦର୍ପଣ ପାଲଟିଯିବ ? ଆଉ କହିବା, ଦେଖେ, ଦେଖେ ତୋ ସୁଖଦୁଃଖର ସାକଣ୍ଟାରକୁ, ତୋ'ର ଯେତେକ ଗୁଣ ଅବଗୁଣ । ସେଇ ଭଲ ତୋ ପାଇଁ । ମାନେ ତୋ ଭଳି ଗୋଟିଏ ମଣିଷ ପାଇଁ । କ'ଣ ବୁଝୁଛୁ ନା ମୁଁ କ'ଣ କହିବାକୁ ଚାହେଁ ମୋ ଭାବଭଙ୍ଗୀରେ ? ଫେଶପା ହସ, ଭ୍ରୂକୁଟେକା ବିସ୍ମୟ, ଆଉ ପଦେ ପଦେ 'ଆଚ୍ଛା ?' 'ସତେ', କି 'ଶଏଲ'ର ମାଧ୍ୟମରେ ? 'ଏମିତ ହୁଏ'ର ପର କଥା ବୁଝୁଛୁ ତ ଏଇକ୍ଷଣି ? ତା' ହେଉଛି :

—ତୋ ଦୁଃଖଟା କିଛି ନୂଆ କି ନିଆରା ନୁହେଁ । ବରଂ ଅନେକ ଛେଦ ଅଛି ସେଥିରେ, ଯାହାକୁ ତୁ ଲୁଚେଇ ଦେଇ ପାରୁ ନାହୁଁ ।

—ତେବୁ ତୋର ସୁଖବୋଧ ବି କୋଉ ବାରହ୍ମ ନୁହେଁ କୌଣସିମତେ ବଞ୍ଚି ରହିବା ପାଇଁ ।

—'ଏମିତ ବଞ୍ଚିବାକୁ ହୁଏ'ର ଅର୍ଥ ଏଇ ଯେ ପ୍ରତ୍ୟେକ ମଣିଷର, ବିଶେଷତଃ ସ୍ତ୍ରୀଲୋକର ଏମିତ ବଞ୍ଚିବା ଉଚିତ, ସିଏ ସଧବା ହେଉ କି ବିଧବା, କିମ୍ବା ଅଭିଆଡ଼ୀ । ନିଜକୁ ଚିହ୍ନି, ଆଉ ନିଜର ଅନୁଭୂତି ଉପରେ ସବାର ହୋଇ ।

—ରୁ ପାରୁନୁ କଲୋ ? ଡର ମାଡ଼ୁଛୁ ତୋ ଛାଇକୁ ଦେଖିବା ଲାଗି ଏଇ ଦର୍ପଣରେ ? ବଗୃଣ୍ଣ···

ଏବକୁ ମାଧୁରୀଙ୍କ କ୍ରୋଧ ଏତେ ବଢ଼ିଗଲାଣି (ମାମ୍ପାଙ୍କ ଉପରେ ତଥା ନଜ ଉପରେ) ଯେ ସେ ଆଜକାଲ ଅଳ୍ପବହୁତ ମିଛ କହିବା ପାଇଁ ମଧ୍ୟ ପଶ୍ଚାତ୍ପଦ ହେଉନାହାନ୍ତି । ଯଥା ନଖିଳବାବୁଙ୍କ ଦ୍ୱିତୀୟ ଶ୍ରାଦ୍ଧଦବସରେ ତାଙ୍କ ଫଟୋରେ ଗତବର୍ଷ ପର ଯେକୌଣସି ସତେଜ ଫୁଲମାଳା ଚଢ଼େଇଲେ ଚଳଥା'ନ୍ତା । କନ୍ତୁ ମାଧୁରୀ ଖୋଜଲୋଡ଼ି ଗୋଲାପ କଢ଼ିର ମାଳା ଚଢ଼େଇଲେ, ଏବଂ ମାମ୍ପାଙ୍କୁ କେଉଁ ଗୋଟାଏ ବାହାନାରେ ଘର ଭିତରକୁ ଡାକନେଲେ, ଯେମିତକ ତାଙ୍କ ଦୃଷ୍ଟି ପଡ଼ିବ ସେଇ ଫଟୋ ଉପରେ । ଏବଂ କହିଲେ ଯେ ଗୋଲାପ ଫୁଲ ପ୍ରତ ବଶେଷ ଆଗ୍ରହ ଥିଲା ତାଙ୍କ ସ୍ୱାମୀଙ୍କର, ସେଇଲାଗି ସେ ବଶେଷ ଚେଷ୍ଟା କର ଏଇ ଫୁଲମାଳାଟିକୁ ଯୋଗାଡ଼ କର ଆଣିଛନ୍ତି କ୍ୟାପିଟାଲ୍‌ରୁ । ମାମ୍ପା 'ଆଚ୍ଛା' କହିବା ସହ ଗୋଟାଏ ଟିପ୍ପଣୀ ଦେଲେ ଯେ ଦୁଃଖର ବଷୟ, ସଜଫୁଲ ଦନକ ଭିତରେ ମଉଳ ଯାଏ, ତେଣୁ ଭଲ ହେବ ଗୋଟାଏ କାଗଜଗୋଲାପର ମାଳା ଯଦ ପିନ୍ଧେଇ ଦଅନ୍ତି । ତାଙ୍କୁ ଫୁଲ ନ ବାସିଲେ ନାହିଁ, ସେ ତା' ରଙ୍ଗକୁ ଦେଖି ଖୁସି ହେଉଥିବେ ସବୁଦନ ପାଇଁ । ମାଧୁରୀ ପ୍ରଚ୍ଛନ୍ନ ବଦ୍ରୂପକୁ ଗ୍ରାହ୍ୟ କଲେ ନାହିଁ । କହିଲେ ହଁ, ସେଇଆ କଲେ ହେବ ।

ପୁଣି ସ୍ୱାମୀ ପରବାରଙ୍କ ବଭିନ୍ନ ଫଟୋକୁ ଆଲ୍‌ବମ୍‌ରୁ ଉଦ୍ଧାର କର ସେ ତାକୁ ଫ୍ରେମ୍‌ରେ ବନ୍ଧେଇ ଫ୍ରିଜ୍, କ୍ୟାବନେଟ୍ ଅାଦ ବସ୍ତୁମାନଙ୍କ ଉପରେ ସଜେଇଲେ ମଧ୍ୟ କେତୋଟିକୁ ବାଛି କର କାନ୍ଥରେ ଟାଙ୍ଗିଲେ ଏବଂ ତାକୁ ନେଇ ଜୀବନର ବଗତ ସୁଖମୟ ମୁହୂର୍ତ୍ତଗୁଡ଼କର ନକ୍ସା ଆଙ୍କିବାକୁ ଲଗିଲେ ମାମ୍ପାଙ୍କ ଆଗରେ, ଟିକଏ ସୁବଧା ପାଇଲେ । ଯଥା, ଏଇ ନଶୁଆ ଗୁଡ଼ିଏ ଟୋକାଟା କଏ ଜାଣିଛ ? ଇଏ ହେଉଛି ମୋ ବଡ଼ପୁଅ ବାବୁନ, ଆର୍ମି ଅଫିସର୍, ମେଜର୍ ବଶ୍ୱଜତ୍ ମହାପାତ୍ର । କନ୍ତୁ ଏଇ ବାରବର କେତେ ଡରୁଆ ଥିଲେ ତାଙ୍କ ପିଲଦନେ ତମେ ବଶ୍ୱାସ କରବ ନାହିଁ (ହସର ହାବୁକାଏ), ସ୍ୱପ୍ନରେ ଚମକ ଉଠି ପଶିଯିବ ଆମ ଭିତରେ ଆସି (ମାମ୍ପାଙ୍କ ଭ୍ରୂରୁ ଉପରକୁ ଉଠିଯାଏ, ପଚାରନ୍ତି 'ଆମ ଭିତରେ'), ମାନେ ଆମ ଶୋଇବା ଖଟରେ, ଆମ ଦୁ'ଜଣଙ୍କ ଭିତରେ । (ହେଲ ? ନା ଆହୁର ସ୍ପଷ୍ଟ କର କହିବା ଦରକାର, ତମର ଉପଭୋଗ ପାଇଁ ?), ଅଉ ତା' ମୁହଁ ଗୁଞ୍ଜିଦଏ ମୋ ଛାତରେ ('ଆଚ୍ଛା', ମାମ୍ପା ପଚାରନ୍ତି, 'ପୁଅକୁ କେତେବର୍ଷ ହୋଇଥିଲ ସେତେବେଳକୁ ?) ଇଏ ହେଉଛନ୍ତି ଆମ ନାତୁଣୀରହ ଦୁଓଟି, ଲଲ୍‌ମନ ଆଉ ଆସ୍‌ମାନ । ଯାଆଁଳା । ଏକାଭଳ ନାକ, ଏକାଭଳ ଓଠ, ଏକାଭଳ ହସ, ଆଉ ଏକାଭଳ ଦୁଷ୍ଟ । ତାଙ୍କ ମାଆ ବ ମହାଦୁଷ୍ଟ ଥିଲ, ମୋତେ ରଖେଇ ଥୋଇ

ଦେଇ ନଥିଲା—ବୁଝିଲ ନା ? କୁଆଡ଼େ ମୁଁ ଥରେ ତାକୁ ରାଗିକରି କହୁଥିଲି ଯେ ଭଗବାନ୍ କରନ୍ତୁ ତୋର ଡବଲ୍ ଡବଲ୍ ପିଲା ହୁଅନ୍ତୁ ତୋରି ପରି ('ରିଏଲି ? ସୁଧାର ଭଗବାନ୍‌ଟିଏ ତମର !', ମାସ୍ତ୍ରୀ ସହାସ୍ୟ ମନ୍ତବ୍ୟଟିଏ ଗୁଞ୍ଜି ଦିଅନ୍ତି)…ଇଏ ଆମ ଝୁନ୍ନ, ସବାସାନ । ଖେଳୁଆଡ଼ ଟୋକା, ତା' ବାପ ପରି । ସେ ବାହା ହୋଇଗଲେ ମୋର ଚିନ୍ତା ଗଲା ('ଚିନ୍ତା ?', ମାସ୍ତ୍ରୀଙ୍କ ଭ୍ରୂରୁ ପୁଣି ଟେକି ହୋଇଯାଏ । 'ତମକୁ ଚିନ୍ତା କରିବାକୁ ହେବ ତା' ବାହାଘର ନେଇ ? ଏତେ ଆସ୍ଥା ତା'ର ତମ ଉପରେ ?' ସେଇଁଠୁ ତାଙ୍କ ଓଠଚିପା ହସ ଖଣ୍ଡିକ) ଇତ୍ୟାଦି ।

ମାଧୁରୀ ସଂଗିନୀଙ୍କର କୌଣସି ପ୍ରତିକ୍ରିୟାକୁ ବିଦ୍ରୂପ ବୋଲି ନଭାବି ରହି ପାରନ୍ତି ନାହିଁ । ଯଦିଓ ତାକୁ ସଂଗିନୀସୁଲଭ ପରିହାସ ବୋଲି ଧରି ନେଇ ହୁଅନ୍ତା । ଭାବନ୍ତି, ନା, ଅତି ସୂକ୍ଷ୍ମ ତା'ର ଉପହାସ, ଯେମିତିକି ତାଙ୍କୁ ଦୋଷ ଦେଇ ହେବ ନାହିଁ । ମୁଁ ରାଗିଲେ ସେ ଗୁହିଁବ ମୋ ଆଡକୁ ଆଶ୍ଚର୍ଯ୍ୟ ହୋଇ, କିଛି ନଜାଣିଲା ପରି । ଅର୍ଥାତ୍—ଆରେ, ମୁଁ କ'ଣ କହିଲି କି ? ତମର କ'ଣ ସେନ୍‌ସ ଅଫ୍ ହ୍ୟୁମର୍ ନାହିଁ ଟିକିଏ ହେଲେ, ନା ତମେ ସତରେ ହୁଣ୍ଡୀଟିଏ ?

କିନ୍ତୁ ଥକିଗଲେ ବି ମାଧୁରୀ ତାଙ୍କ ଉଦ୍ୟମକୁ କୋହଲ କରିବାକୁ ଚାହାଁନ୍ତି ନାହିଁ । ସତେକି ଏହାହିଁ ମାଧୁରୀ ମହାପାତ୍ରଙ୍କର କର୍ତ୍ତବ୍ୟ ।

ଝିଅ ମିଲୁ ଥରେ ଆସିଥିଲା ଏଠିକି ତା' ପୁଅ ସିଜରକୁ ନେଇ । ପାପୁନ ତା'ର ପଞ୍ଜାବୀ ସ୍ତ୍ରୀକୁ ନେଇ ଆସିଥିଲା, ଆଉ ଏଠି ମାସେ ଖଣ୍ଡେ ରହିକରି ଗଲା । ସାନପୁଅ ଝୁନ୍ନ ତ କେତେଥର ଆସିକରି ଗଲାଣି ଏବଂ ମାଧୁରୀ ଆଦୌ ହେଳା କରି ନାହାନ୍ତି ସେମାନଙ୍କୁ ତାଙ୍କ ମାସ୍ତ୍ରୀମାଉସୀଙ୍କ ସାଙ୍ଗରେ ଚିହ୍ନା କରେଇଦେବା ପାଇଁ । ମାସ୍ତ୍ରୀ ବି ସେମାନଙ୍କୁ ଚା' ଜଳଖିଆ ଦେଇ ଆପ୍ୟାୟିତ କରିଥିଲେ, ଭଗିନୀ ସଦୃଶ ପ୍ରତିବେଶିନୀଠାରୁ ଯାହା ଆଶା କରାଯାଏ । କିନ୍ତୁ ମାଧୁରୀଙ୍କ ବିଶ୍ୱାସ ଯେ ସେମାନଙ୍କୁ ମଧ୍ୟ ସେ ପାସଙ୍ଗରେ ପକେଇ ନାହିଁ । ଯଦିଓ ବିଦ୍ୟାବୁଦ୍ଧିରେ ସେମାନେ ତା'ଠୁ କିଛି କମ୍ ନୁହଁନ୍ତି । ନହେଲେ ସେ କ'ଣ କାହାରିକୁ ହେଲେ ତା'ର ଗ୍ରେପରି ଉଚାଙ୍ଗ ସଙ୍ଗୀତ ଶୁଣେଇ ନଥାଆନ୍ତା, କିମ୍ବା ତା' ମୋଟା ମୋଟା ବହିର ପରିଚୟ ଦେଇ ନଥାଆନ୍ତା ? କ'ଣ କରିବ ବିଗୃରି ! ସେ ତ ନିଜେ ଗୋଟାଏ ମହାମିଥ୍ୟା । କେଇଟା ବହି ସେ ପଢ଼ିଥିବ ନିଜେ ? ନା କୋଉ ରାଗରାଗିଣୀର ମହତ୍ତ୍ୱ ଜଣାଇଥିବ ତାକୁ ? ହେଲେ ସେ ତା' ଆଖିରେ ଦେଖୁ ନଥିବ କି ମୋ ପିଲାମାନେ କେତେ ସୁନ୍ଦର, କେତେ ଯୋଗ୍ୟର ?…

ନିଜର ଘରସଂସାରର ଉତ୍କର୍ଷ ପ୍ରତିପାଦନ କରିବା ଦିଗରେ ଆଉ ଗୋଟିଏ ଦୃଷ୍ଟାନ୍ତ ସୃଷ୍ଟି କରି ପାରିଥିଲେ ମାଧୁରୀ ମହାପାତ୍ର । ଦାଣ୍ଡ ଅଗଣାର ଉଦ୍ୟାନ ।

ଗୋଟିଏ ଅଭିଜ୍ଞ ମାଳୀ ସାହାଯ୍ୟରେ ତାଙ୍କ ଫୁଲବଗିଚ୍ଚଟି ବେଶ୍ ଗଢ଼ି ଉଠିଲା । କେଉଁ ଦେଖଣାହାରର ଆଖିରେ ନ ପଡ଼ିବ ନାହିଁ । ବିଶେଷତଃ ପଞ୍ଚମୁଖୀ ମନ୍ଦାର-ଫୁଲ, ନାଲିଟହଟହ, ଯାହା ବଗିଚ୍ଚର ଗୋଟିଏ କୋଣରୁ ଅନେଇଥାଏ ବାହାରକୁ, ଆଉ ଲୋଭଉଥାଏ ବାଟଚଲା ମଣିଷମାନଙ୍କୁ । ମାଧୁରୀ ଗର୍ବ କରନ୍ତି ତାଙ୍କ ବଗିଚ୍ଚକୁ ନେଇ । ମନେହୁଏ, ଇଏ ବି ତାଙ୍କର ଏକ ଯୁଦୃଶ୍ୟ ସମ୍ପଦ । ପରିବାରର ପ୍ରତୀକ । ଫୁଲଫଳରେ ଫାଟି ପଡ଼ୁଛି ମୋ ବଗିଚ୍ଚ । ଯାହା ତା'ର ନାହିଁ । ପ୍ରାମୁଁ ସେଇକିଟିକେ ଜାଗା ପାଇଛି ସେ, ତା'ଘର ଆଗକୁ । ହେଲେ ସିଏ ସେମିତି ପଡ଼ିଆ ପଡ଼ିଛି । ବିବାକ୍ ଲୁଖୁରି । ବନ୍ଧ୍ୟା ।

ଦେଖଣାହାରର ଆଖି ଠାକ ଯାଏ ସିନା, କାହାର କାମ ନାହିଁ ଯେ ତାକୁ ଅନେଇ ରହିବ ? ହେଲେ ଜଣକର କିଛି କାମ ନଥିଲା ପରି ଲାଗେ । ୩୬୦ ନମ୍ବରର ସେଇ ସବୁଦିନିଆ ପିଲା । କହ୍ନେଇ । ଯାହାର କାମ ନାହିଁ କି ସ୍କୁଲଫୁଲ କିଛି ନାହିଁ, ଏବଂ ଆକଟ ନମାନି ଦୌଡ଼ି ପଳେଇଯିବା ଯାହାର ଅଭ୍ୟାସ ! ସେଇ ସ୍ଥିରଦୃଷ୍ଟିରେ ଅନେଇ ରହେ ତାଙ୍କ ବଗିଚ୍ଚକୁ, ବିଶେଷତଃ ନାଲି ମନ୍ଦାରଫୁଲକୁ । ମାଧୁରୀଙ୍କୁ ଦେଖିଲେ ହସିଦିଏ । କେଡେ ମଜାର ହସ ମ ପିଲାଟାର ! ହେଲେ ତାଙ୍କର ସାହସ ହୁଏ ନାହିଁ ତାକୁ ପ୍ରଶ୍ରୟ ଦେବେ । ଏପରିକି ତା' ହସରେ ହସଟିଏ ଥାପି ଦେବେ, ପରକୁ ଡାକି ତା'ହାତରେ ଫୁଲଟିଏ ଧରେଇ ଦେବା ଦୂରର କଥା । ମନେହୁଏ ଯେ ଏଇ ଲବୁରିଖିଆ ପଚୁଆ ପିଲାର ପ୍ରଭାବରୁ ନିଜକୁ ବଞ୍ଚେଇ ରଖିବା ଉଚିତ, ସେ ଯେତେ ସୁନ୍ଦରିଆ ହେଉପଛେ ।

ଏମିତି ଭାବରେ କଟିଗଲାଣି ଦି'ବର୍ଷ ଚ୍ଚରମାସ । ନନ୍ଦନଗରର ବାସିନ୍ଦା-ମାନଙ୍କ ଦୃଷ୍ଟିରେ ଅପୂର୍ବ ଯୋଡ଼ି ଏଇ ଦୁଇଟି ବିଧବାଙ୍କର । ଥାଲୁଥୁଲୁ ଗୋଗ୍ଧିଟିଏ । ପୂରିଲା ହସହସ ମୁହଁ, ମଣ୍ଡାପିଠା ପରି । ଆଉ ଆରଜି ସାବନା ପାତଳୀ ସ୍ତ୍ରୀ ଲୋକଟିଏ, ଯେ ତମକୁ ଅନେଇ ବସିବ, ତମେ ତାଙ୍କ ଆଡ଼କୁ ନ ଅନଉଣୁ । ସତେକି ସେ କେବଳ ସାର୍ଥୀ ନୁହେଁ ଗୋଗ୍ଧି ବିଧବାଟିର, ସେ ତା'ର ରକ୍ଷାକର୍ତ୍ତ୍ରୀଙ୍କ ଦାୟିତ୍ୱ ଗ୍ରହଣ କରିଛି, ତା'ର ସ୍ୱାମୀ ଚ୍ଚଲିଯିବା ଦିନୁ । ବିଧିବିଧାନକୁ ଧନ୍ୟ କହିବ । ଦାରୁଣ ଦୁଃଖ ଆଣିଦେଇଛନ୍ତି ଦି'ଜଣଙ୍କୁ, ହେଲେ ସେମାନଙ୍କୁ ଏକାଠି କରିଛନ୍ତି ଏମିତି ପରସ୍ପର ଦୁଃଖର ସାଥୀ ହେବା ପାଇଁ ।

ସେଇଠୁଁ ଗୋଟାଏ ଦିନର କଥା । ନନ୍ଦନଗରରେ ଦଶହରା ଉତ୍ସବର ଶେଷ ଦିନ । ଦେବୀ ଆଜି ବିସର୍ଜନ ହେବେ । ବିଧବାମାନେ କାହିଁକି ଯିବେ ମଣ୍ଡପକୁ, ଦେବୀଙ୍କ ବଳେଣି ସିନ୍ଦୁର ଆଣି ସୁନ୍ଥାରେ ଲଗାଇବା ପାଇଁ ? ତେଣୁ ମାଧୁରୀ ଆଜି ପଦାକୁ ବାହାରିବା ପାଇଁ ମନ କରି ନାହାନ୍ତି କିନ୍ତୁ ଆଜି ଯେଉଁପ୍ରକାର ଶୂନ୍ୟତା-ବୋଧ ଆସୁଛି ତାଙ୍କ ମନରେ, ତା'ର କାରଣ ନୁହେଁ ଯେ ସେ କଲୋନୀର ଆନନ୍ଦ-

ଉତ୍ସବରେ ଯୋଗ ଦେଇ ପାରୁ ନାହାନ୍ତି । ସେ ମାସ୍ଟ୍ରା ନାଏକଙ୍କ ପାଖକୁ ଯାଇପାରୁ ନାହାନ୍ତି, ଏହାହିଁ ତାଙ୍କ ଛଟପଟର କାରଣ···ସେ ତିନଦିନ ହେଲା ଦେଖା କରି ନାହିଁ ମୋ ସାଙ୍ଗରେ । ଯଦିଓ କେବେଠୁଁ ମୋତେ କହି ଆସୁଛି ଯେ ପୂଜାବେଳକୁ ଏଇଆ କରିବା, ସେଇଆ କରିବା, ଭବାନୀ ମନ୍ଦିରକୁ ଯିବା, ଟ୍ୟାକ୍ସି ଭଡ଼ା କରି କ୍ୟାପିଟାଲକୁ ଯିବା ଆଉ 'ବମ୍ବେ' ବୋଲି ଗୋଟିଏ ନୂଆ ନାଆଁ କରି ଫିଲ୍ମ ଦେଖି ଆସିବା ଇତ୍ୟାଦି । ଯେତେଥର ଯାଇଛି ତା' ଘରକୁ, ଘରେ ତାଲା ପଡ଼ିଛି । କିନ୍ତୁ ଆଜି ସକାଳୁ ସକାଳୁ ଫେରି ଆସିଛି ବୋଲି ମନେ ହେଉଛି । ତା' ହେଲେ କ'ଣ ଯିବ ସେଠିକି ଏଇକ୍ଷଣି ? ଆଉ ପଚାରିବ ସେ କୁଆଡ଼େ ଯାଇଥିଲା ବୋଲି ? ଛାଡ଼, ମୋର ଗରଜ ପଡ଼ିଛି । ମ୍ୟାଡ଼ାମଙ୍କର କ'ଣ ପ୍ରଥମେ ଆସିବା ଉଚିତ ନୁହେଁ ମୋ ପାଖକୁ ? ଅନ୍ତତଃ 'ସରି' କହିବା ଲାଗି ?

ଏମିତି ଭାବୁ ଭାବୁ ସକାଳ ବାସି ହୋଇଗଲା । ଢୋଲ ବାଜିଲା, ବିସର୍ଜନ ପର୍ବ ସରିଗଲା । ମାଧୁରୀଙ୍କର ମଧ୍ୟାହ୍ନଭୋଜନ ବି ସରିଗଲାଣି । ହେଲେ ତାଙ୍କର ବିଶ୍ରାମ ସରିବାକୁ ନାହିଁ, ବ୍ୟସ୍ତତା କିଛି ନାହିଁ । ଏବଂ ସେ ଅଧିକରୁ ଅଧିକ ଉଦାସ ହୋଇପଡ଼ିଛନ୍ତି ବୋଲି ମନେ ହେଉଛି ।

ଶେଷକୁ ସେ ସ୍ଥିର କଲେ ଯେ ସେ ଯିବେ ସେଠିକି । ଏଇଥିପାଇଁ ନୁହେଁ ଯେ ତାଙ୍କ ଏକୁଟିଆପଣକୁ ଆଉ ସହି ହେଉ ନାହିଁ । ଯିବେ ତାକୁ ଦି'ପଦ ଶୁଣେଇବା ପାଇଁ । ଏବଂ ଜଣେଇ ଦେବା ପାଇଁ ଯେ ସେ ବହୁତ ଫୂର୍ତ୍ତି କରିଛନ୍ତି ଏଇ ଗୁରିଟା ଦିନ, ଅନ୍ୟମାନଙ୍କ ସାଙ୍ଗରେ ।

ସେଠି ପହଞ୍ଚିଲା କ୍ଷଣି ମାସ୍ଟ୍ରା ଟେବୁଲ୍ ଉପରୁ ଆଖି ଉଠେଇ ଅନେଇଲେ ସଙ୍ଗିନୀକୁ । ମନେହେଲା କ'ଣ ଲେଖାଲେଖି କରୁଥିଲେ । ତାକୁ ଛାଡ଼ିଦେଇ ସ୍ୱାଗତ ଜଣାଇଲେ ତାଙ୍କୁ—

"ବସ, ବସ, ମାଧୁରୀ ଅପା । ସରି, ମୁଁ ଟିକିଏ ବ୍ୟସ୍ତ ଥିଲି ଏଇ କେତେ ଦିନ । ସେଇଲାଗି ତମ ସାଙ୍ଗରେ ଦେଖା କରି ପାରି ନଥିଲି । ବାହାରକୁ ଚାଲି ଯାଇଥିଲି ହଠାତ୍ ଗୋଟାଏ କାରଣରୁ । ଯାହାହେଉ କାମଟା ଛିଣ୍ଡି ଯାଇଛି ।"

"କାମ ?"

"ହଁ, ଗୋଟାଏ ଜରୁରୀ କାମ । ନିଜ ବିଷୟରେ ଗୋଟାଏ ନିଷ୍ପତ୍ତି ନେବାର ଥିଲା । (ପୁଣି ସେଇ ଓଠଚିପା ହସ) ମୋର ବାହାଘର ।"

"ହ୍ୟାଟ୍ ? ?"

"ହଁ, ମୋ ବାହାଘର । ମୁଁ ସ୍ଥିର କରିଛି ଆଉ ଥରେ ବାହା ହେବି ବୋଲି । ମୋର ଭାବୀ ସ୍ୱାମୀଙ୍କ ନାଆଁ ହର୍ଷ ମିଶ୍ର । ସ୍ତ୍ରୀଙ୍କର ସାଙ୍ଗ ଥିଲେ । ବ୍ୟାଚେଲର୍ । ସେ ବି ଏଇ ଦୀନବନ୍ଧୁ ଏଗ୍ରିକଲ୍‌ଚରାଲ୍ କଲେଜ୍‌ର ଟିଚର୍, ତମେ ଦେଖିଥିବ ମ ତାଙ୍କୁ । ସେଇ ମୋତେ ଡାକି ନେଇଥିଲେ, କଥାଟାକୁ ପକ୍‌କା କରିବା ଲାଗି···।"

ମାଧୁରୀ ଅବାକ୍ ହୋଇ ଅନେଇଥିଲେ ବାନ୍ଧବୀକୁ । କେଡ଼େ ସହଜରେ କହିଯାଉଛି ଏଡ଼େ ବଡ଼ କଥା ! ମୁହଁକୁ ଟିକିଏ ଲାଜ ନାହିଁ । ଟିକିଏ ସଫେଇ ଦେବା ଦରକାର ବୋଲି ମନେ କରୁନାହିଁ । ବରଂ ତା'ର ସେଇ ଛୁଚୁଗୁଲିଆ ହସ ମୋର ଆଖିରେ ଆଙ୍ଗୁଳି ଗେଞ୍ଜି କହୁଛି—ଦେଖିଲୁ ତୁଣ୍ଡୀ ? ଦେଖେ କେମିତି ବଞ୍ଚିବାକୁ ହୁଏ । ଏଇ ହେଉଛି ବୁଦ୍ଧି ଆଉ କାମ । ଖାଲି ନିଜ ଉପରେ ଆସ୍ଥା ଥିଲେ ହେଲା ।

ଅଭିନନ୍ଦନ ଜଣାଇବା ପାଇଁ ସମୟ ଲାଗିଲା ଏବଂ ତାକୁ ପ୍ରଶ୍ନ କହିବା ପୂର୍ବରୁ ମାୟା କହିଲେ ଆଉ ପଦେ—

"ମୁଁ ଏଇ ଘର ଛାଡ଼ି ଦେଉଛି । ଆମର ରେଜେଷ୍ଟ୍ରି ମ୍ୟାରେଜ୍ ହେବ ଆସନ୍ତା ସୋମବାର ଦିନ । ତା'ପରେ ଆମେ ଭାବିଛୁ ଖାଜୁରାହୋ ଯିବୁ, କିଛି ଦିନ । ଆମ ହନିମୁନ୍ ପାଇଁ । ସେଠୁଁ ଫେରିଲେ ପରେ ମୁଁ ରହିବି ତାଙ୍କ ସରକାରୀ କ୍ୱାର୍ଟର୍ସରେ । ରିସେପ୍‌ସନ୍ କେବେ ଦେବୁ ଠିକ୍ ହୋଇନାହିଁ । କିନ୍ତୁ ତମେ ଆସିବ ନିଶ୍ଚୟ ରିସେପ୍‌ସନ୍‌କୁ । ଆଜିଠୁଁ କଥା ରହିଲା ।"

ମାଧୁରୀ ଯଥାଶୀଘ୍ର ଫେରି ଆସିଲେ ମାୟା ପାଖରୁ । ଏତେ ଦିନର ବାନ୍ଧବୀ ପ୍ରତି ତାଙ୍କର ଘୋର ବିତୃଷ୍ଣା ସାଙ୍ଗକୁ ଏଇ ହାରିଯିବାର ଭାବ ମଧ୍ୟ କୋଉଠୁ ଆସୁଛି ବୋଲି ବୁଝିବା ପାଇଁ । ଏବଂ ସଂସାର ଉପରେ ଭୀଷଣ ରାଗିବା ପାଇଁ । ସତେକି ଗୋଟାଏ ଦର୍ପଣ ମିଳିଥିଲା ତାଙ୍କୁ ଯାହାର ଭିତରେ ସେ ଏଠି ଥିଲେ ଏଇ ଦି'ଟା ବର୍ଷ, ଏବଂ ତାକୁ ହଠାତ୍ କାଢ଼ି ନିଆଗଲା ଏମିତି । ଅଭଦ୍ରଙ୍କ ପରି ।

ଯେମିତିକି ଯଥେଷ୍ଟ ସମୟ ବିତିଗଲାଣି । ଏବଂ ଇତିମଧ୍ୟରେ ମାଧୁରୀ ତା'ର ଯଥାର୍ଥ ପ୍ରତିଚ୍ଛବିକୁ ଦେଖିଥିବ, ଚିହ୍ନିଥିବ ଏବଂ ଗ୍ରହଣ କରିଥିବ ବୋଲି ଆଶା କରାଯାଏ, ସେ ଯେତେ ସ୍ୱଳ୍ପବୁଦ୍ଧି ହେଉନା କାହିଁକି । ଯେ ତୁଚ୍ଛା ବଡ଼େଇର କିଛି ମୂଲ୍ୟ ନାହିଁ । ସେ ଯାହା ଥିଲା ବାହା ହେଲାଦିନୁ କି ପିଲାଟି ଦିନୁ, ସେଇଆ ଅଛି । ଯେତିକି ତୁଣ୍ଡୀ, ସେତିକି ନିପାରିଲା । ସ୍ୱାମୀ ତାକୁ ଅବଶ୍ୟ ଭଲ ପାଉଥିଲେ, କିନ୍ତୁ ତା' ସାଙ୍ଗକୁ ଭଲ ପାଉଥିଲେ ତାଙ୍କ ଜୀବନରେ ଆସିଥିବା ଅଧ ଡଜନେ କି ତାଠୁଁ ବେଶି ନାରୀ-ମାନଙ୍କୁ । ଖୋଲାଖୋଲି ପ୍ରେମ ହେଉଥିଲା ତାଙ୍କ ସାଙ୍ଗରେ, କାରଣ ସେ ପୂରାପୂରି

ନିର୍ଭୟ ଥିଲେ ମାଧୁରୀକୁ ନେଇ । ସେ ମାଧୁରୀକୁ ବେଶ୍ ଜାଣିଅଛନ୍ତି, ମୁଁ ତାକୁ ମଧ୍ୟ ଭଲପାଏ, ଏବଂ ବିଶେଷ ଭାବରେ । ସେତିକି ଯଥେଷ୍ଟ ତା' ପାଇଁ । ତା'ଛଡ଼ା, ତା'ର ଶକ୍ତି ନାହିଁ ପ୍ରତିବାଦ କରିବ । ତେଣୁ ସେ ମାଧୁରୀକୁ ନେବେ ତାଙ୍କ ଦରକାର ଅନୁଯାୟୀ ଏବଂ ଛଅଟିଅଟା ପିଲାଙ୍କ ବାପ ହେବାର ଗୌରବ ଲାଭ କରି ପାରିବେ । ପିଲାମାନେ ମଧ୍ୟ ତାଙ୍କ ବୋଉକୁ ଭଲପାଆନ୍ତି, କିନ୍ତୁ ବାପାଙ୍କ କଥା ଶୁଣନ୍ତି । ବଡ଼ ହେଲାରୁ ବୋଉ ଉପରେ ରାଗନ୍ତି ବି ନାହିଁ, ତା'ର କେଉଁ ଅନ୍ୟାୟ ଅବିଚାର ପାଇଁ । କାରଣ ସେଦିଗରେ ତା'ର କୌଣସି ଭୁଲ୍ ଘଟିବାର ସମ୍ଭାବନା ନାହିଁ । ବୋଉଟା ହୁଣ୍ଡୀ । ତାକୁ ଖାଲି ଟିକିଏ ଆଦର କଲେ ହେଲା । ସ୍ୱାମୀ ପରିବାରର ଖେଳଣା, ପୁଷି ବିଲେଇ, କିମ୍ବା ଭେକ ମେଣ୍ଢାଇବାର ସାଧନ । ତା'ଛଡ଼ା ଆଉ କ'ଣ ? କୋଉ ଯଶ ନା ମର୍ଯ୍ୟାଦା ଅଛି ଏଇ ଭଲ ପାଇବାରେ ? ସ୍ୱାମୀ ମଲାପରେ ଗୋଟାଏ ଜିଦ ଆସିଥିଲା ମନରେ ଯେ ଏଥର ମୁଁ ମୋର ଏକୁଟିଆ ରହିବି । ମୋ ଦୁଃଖ, ମୋ ସୁଖ, ସିଏ ମୋର । ପୁରାପୁରି ମୋର । ସେଥିପାଇଁ ମୁଁ କାହାରି ଉପରେ ନିର୍ଭର କରିବି ନାହିଁ । କିନ୍ତୁ ତଥାପି ଗୋଟାଏ ଦର୍ପଣ ଦରକାର ପଡ଼ିଲା ମୋର । ଗୋଟାଏ ହଂସୁକୁଟିଆ ଦର୍ପଣ । ଯାହାହେଉ ସିଏ ବି ଗଲା । ଭଲ ହୋଇଛି···ଭଲ ହୋଇଛି···

କିନ୍ତୁ ଘରେ ନ ପହଞ୍ଚୁଣୁ ଗୋଟାଏ ଦୃଶ୍ୟ ଅଟକେଇ ଦେଲା ତାଙ୍କୁ ଦାଣ୍ଡ ଦରଜା ପାଖରେ । କହ୍ନେଇ ପୁଣି ଆସି ଅନେଇ ରହିଛି ତାଙ୍କ ବଗିଚାକୁ । ତାଙ୍କୁ ଦେଖି ହସିଦେଲା ଫିକ୍ କିନା । ଏଥର କିନ୍ତୁ ମାଧୁରୀ ତାକୁ ଆଡ଼େଇ ଦେଇ ପଶିଗଲେ ନାହିଁ ଘର ଭିତରକୁ । ସେ ମଧ୍ୟ ଟିକିଏ ହସିଦେଲେ ତା' ଆଡ଼କୁ ଚାହିଁ । ଖାଲି ସେତିକି ନୁହେଁ । ସେ କ୍ରମଶଃ ତା' ଆଡ଼କୁ ଆଗେଇ ଗଲେ । ତାକୁ ପାଖକୁ ଡାକିଲେ । 'ଆ' 'ଆ' ମୋ ପାଖକୁ କହି ହାତ ବଢ଼େଇଲେ । ଏବଂ କହ୍ନେଇ ପଳେଇଗଲା ନାହିଁ । ଭୁସ୍ କିନା ଅଜାଡ଼ି ହୋଇ ପଡ଼ିଲା ତାଙ୍କ ଉପରେ । ସତେକି ସେ ଏଇ ମୁହୂର୍ତ୍ତଗୁଡ଼ିକୁ ଚାହିଁ ରହିଥିଲା, ତା'ର ଚିରନ୍ତନ ପିଲାଦିନିଆ ଜୀବନଟା ଯାଚି । ଏବଂ ଗେହ୍ଲାରେ ଗେହ୍ଲାରେ ଅଥୟ କରିଦେଲା ମାଧୁରୀଙ୍କୁ ।

କିଏ କହିଲା ଭଲ ପାଇବା ସାଙ୍ଗକୁ ଗୋଟାଏ ମର୍ଯ୍ୟାଦା ଥିବା ଦରକାର ? କେଉଁ ଦୁହିଁଆଯାକ ମୋତେ ଭଲ ପାଆନ୍ତି, ଭଲ ନପାଇ ରହିପାରନ୍ତି ନାହିଁ··· (ମାୟା ବି ଭଲ ପାଉଥିଲା, ନହେଲେ ସେ ଏମିତି ଲାଖି ହୋଇ ରହି ନଥାନ୍ତା ମୋ ସାଙ୍ଗରେ, ଆଉ ବାପୋଇ, ଏମିତି ଗୋଟିଏ ଲୋକକୁ ବାହା ହେବାକୁ ଯାଉ ନଥାଆନ୍ତା, ଯେ ଅନେକଟା ମୋ ସ୍ୱାମୀଙ୍କ ପରି ଦେଖିବାକୁ), ଏଇ କ'ଣ ଲାଞ୍ଛନା ନୁହେଁ ? ହୁଣ୍ଡୀ ରାଧାଙ୍କର କି ଯଶୋଦାଙ୍କର କ'ଣ ଖାଲି ଏଇଆ ଦରକାର

ନଥିଲା ତାଙ୍କ ଜୀବନକୁ ସାର୍ଥକ କରିବା ପାଇଁ ? ଥ୍ୟାଙ୍କ୍ ୟୁ ମୋ ବାଲ୍ୟତ କହ୍ନେଇ ଥ୍ୟାଙ୍କ୍ ୟୁ, ଥ୍ୟାଙ୍କ୍ ୟୁ ।

ଦେହର ତାଡ଼ନା କି ବୁଦ୍ଧିର ବିଚାର ଚୁଲିକି ଯାଉ, ମୁଁ ଖାଲି ଏଇ ସରଳଆ ଆବେଗର ଋଣୀ ହୋଇପାରିଛୁ, ବନ୍ଧୁଟିଏ ପାଇଲେ ବି ତାକୁ ସିନ୍ଦୁ କରି ଦେଇ ପାରିଛୁ, ଏଇ ହେଉଛି ମୋ ସୁନା ମେଡ଼ାଲ । ଆଉ କ'ଣ ଦରକାର ?

× × କହିବା ବାହୁଲ୍ୟ ଯେ ମାଧୁସ୍ମି ଆଉ ବେଶିଦିନ ରହିପାରିଲେ ନାହିଁ ନନ୍ଦନଗରରେ । ବୋଉଠୁଁ ଚିଠି ପାଇ ବାବୁନ ଆସି ନେଇଗଲା ତାଙ୍କୁ, ପୁନାରେ କାଣ୍ଟନ୍‌ମେଣ୍ଟ୍ କ୍ୱାର୍ଟର୍ସରେ ରହିବା ପାଇଁ ତା' ହେପାଜତ୍‌ରେ । କିନ୍ତୁ ଯିବାଦିନ ମାଧୁସ୍ମି ମହାପାତ୍ର ଗୋଟାଏ ବିଚିତ୍ର କାମ କଲେ, ନନ୍ଦନଗରରେ ବାସିନ୍ଦାମାନଙ୍କ ଫଡ଼ା ଫଡା ଗୁହାଣିକୁ ଖାତିର୍ ନକରି । ମନ୍ଦାର ଫୁଲଟିକୁ ବେଢ଼ିଥିବା ବଗ୍ଧୁ ବଗ୍ଧୁ ଫୁଲର ତୋଡ଼ାଟିଏ ନେଇ ୩୨୦ ନମ୍ବରକୁ ଗଲେ ଓ ତାକୁ ଧରେଇଦେଲେ କହ୍ନେଇ ହାତରେ । ଏବଂ ଟୋକା ତାଙ୍କୁ ଆକ୍ରମଣ କରିବା ପୂର୍ବରୁ ପଳେଇ ଆସିଲେ ସେଠୁଁ ।

# ଦର୍ପଣ

ସହାନୁଭୂତ ଉଚ୍ଛଳ ଉଠୁଛି ମାଧୁରୀ ମହାପାତ୍ରଙ୍କ ପାଇଁ । ମଧ୍ୟ ଭଲ ପାଇବା, ଯେହେତୁ ତାଙ୍କ ବିପୁଳ ଉଚ୍ଛଳ ଚେହେରାର ଭାବଭଙ୍ଗୀ ଅଜାଡ଼ି ହୋଇପଡ଼େ ତମ ଆଡ଼କୁ, ଯହାରଦ୍ୱାରା ସହଜେ ଭଲ ପାଇଲା ପରି । ଏବଂ ଦୁଃଖ ଆସେ ମନରେ ଯେ ଏଭଳି ଏକ ପ୍ରେମାସ୍ପଦା ନାରୀଙ୍କୁ ତାଙ୍କ ସଫଳ ସ୍ୱାମୀ ଉଚିତ ଭାବରେ ଭଲ ପାଇ ପାରିଲେ ନାହିଁ, ଓ ତାଙ୍କ ମୃତ୍ୟୁ ପରେ ପ୍ରତିବେଶିନୀ, ତଥା ସମଦୁଃଖିନୀ ବୋଲି ମନେ ହେଉଥିବା ମାମ୍ପା ନାଏକ ଏମିତି ଗୋଟାଏ ଖଳ ଦର୍ପଣ ତୋଳି ଧରିଲେ ତାଙ୍କ ଆଡ଼କୁ, ଯେଉଁଥିରୁ ତାଙ୍କର ମନେ ହେଲା ଯେ ସେ ସତରେ ଗୋଟିଏ ହୁଣ୍ଡୀ ନପାରିଲା ମଣିଷ । ଏଣେ 'ଛିଃ' ବୋଲି ନ କହିଲେ ମଧ୍ୟ ଭଲ ପାଇ ହେଉ ନାହିଁ ସେଇ ସ୍ୱଳ୍ପଭାଷିଣୀ, ସତେ ନିଜକୁ କ'ଣ ବୋଲି କ'ଣ ମନେ କରୁଥିବା ମାମ୍ପା ନାଏକଙ୍କୁ ଯେ ଶେଷକୁ ତାଙ୍କ ଦେଖିଲା କାମ କଲେ । ମାନେ ସ୍ୱାମୀ ମରିବାର କେଇଟା ବର୍ଷ ନ ଯାଉଣୁ ଆଉ ଗୋଟିଏ ପୁରୁଷକୁ ବାହାହେବାକୁ ସ୍ଥିର କଲେ । ପୁଣି କହୁଛନ୍ତି କ'ଣ ନା ହନିମୁନ୍ ପାଇଁ ଯିବେ ଖାଜୁରାହୋକୁ । ଟିକିଏ ଲାଜ ନାହିଁ ତାଙ୍କ ମୁହଁକୁ ?

ପ୍ରଶ୍ନ ଉଠୁଛି—ଏହି ପ୍ରକାର ପ୍ରତିକ୍ରିୟା ସ୍ୱାଭାବିକ ହୋଇପାରେ, କିନ୍ତୁ ତାହା କ'ଣ ପୁରାପୂରି ଯଥାର୍ଥ ?

ପାଠକପାଠିକାମାନେ ବୋଧହୁଏ ତା'ର ଉତ୍ତର ଦେବେ—ମଲା ? ଲେଖକ ମହାଶୟ କ'ଣ ଏହି ଚରିତ୍ର ଦୁଇଟିକୁ ସୃଷ୍ଟି କରି ନାହାଁନ୍ତି, ଠିକ୍ ଏହିଭଳି ପ୍ରତିକ୍ରିୟା ପାଇବା ପାଇଁ ଆମଠାରୁ ?

ଏହି ଉତ୍ତରଟିକୁ ମାନି ନେବାକୁ ପଡ଼ୁଛି । ମନେ ହେଉଛି ଯେ ମୁଁ ଯେଉଁ ବୈଷମ୍ୟର ଉପସ୍ଥାପନା କରିଛି ଏହି ଦୁଇ

ଚରିତ୍ରଙ୍କ ମଧ୍ୟରେ, ସେଥିର ପ୍ରମାଣମନ୍ତ୍ର ଶେଷକଥା ହେଲା ଏଇ ଯେ ଆପଣ ଜଣକୁ ଭଲ ପାଇଲା ପରି ସହାନୁଭୂତି ଦେଖାଇବେ, ଏବଂ ଅନ୍ୟ ଜଣକ ପାଖରୁ ଆଡ଼େଇ ହୋଇଯିବେ । ହଉ । ମୁଁ ମଧ୍ୟ ଆପଣମାନଙ୍କ ମଧ୍ୟରୁ ଜଣେ । ମୋର ମଧ୍ୟ ଇଚ୍ଛା ହେଉଛି, ଆନ୍ତରିକ ଶୁଭେଚ୍ଛା ଜଣାଇବି ମାଧୁରୀ ମହାପାତ୍ରଙ୍କ ପ୍ରତି । ସେ ନନ୍ଦନଗରରୁ ଫେରିଗଲା ପରେ ଆପଣ ସୁଖରେ ରହନ୍ତୁ ଆପଣଙ୍କ 'ନିଜ' ଲୋକମାନଙ୍କ ଗହଣରେ, ଯେଉଁମାନେ ଆପଣଙ୍କୁ ଅଳ୍ପବହୁତ ଦୟା କଲେ ମଧ୍ୟ ଏତେ ଭଲ ପା'ନ୍ତି, ଏବଂ ସେଠି ପୁଣି କୋଉ ମାୟା ନାଏକ ଆସି ଅଯଥାରେ ଗୋଟାଏ ଦର୍ପଣ ଟେକି ନ ଧରୁ ଆପଣଙ୍କ ଆଗରେ । ହେଲେ ଉକ୍ତ ମାୟା ନାଏକଙ୍କ ଶୁଭବିବାହ ପାଇଁ କ'ଣ କିଛି ଶୁଭେଚ୍ଛା ଜଣାଇବେ ନାହିଁ ବୋଲି ପଚାରୁ ହେଲେ ମୁଁ କହିବି—ଆଜ୍ଞା, ସେ କ'ଣ ଚାହିଁବେ କେଉଁ ଶୁଭେଚ୍ଛା ଆମମାନଙ୍କଠାରୁ ? ନିଜ ଉପରେ ଯାହାଙ୍କର ଏତେ ବିଶ୍ୱାସ, ଯେ ସେ ତାଙ୍କ ନିଜ ଭାଗ୍ୟବିଧାତାର କାଣିଚୁଏ ପଦାରେ ପକେଇବାକୁ ନାରାଜ, କାଳେ ଆମର ଇତର ସାଧାରଣ ଦୃଷ୍ଟି ପଡ଼ିବ ତା'ଉପରେ, ତାଙ୍କର କ'ଣଟା ଲୋଡ଼ା ଆମଠାରୁ ? ଆଉ । ସେ ମଧ୍ୟ ସୁଖରେ ରହନ୍ତୁ, ଖଜୁରାହୋରୁ ଯେତେକ ପ୍ରେରଣା ସଂଗ୍ରହ କରି, କିନ୍ତୁ ତା'ଠାରୁ ଅଧିକ କୌଣସି ସମ୍ମୋହ ଭାବର ଅବତାରଣା କରି ଆମକୁ ତଥା ଭଦ୍ରମହିଳାଙ୍କୁ ଅଡୁଆରେ ପକାନ୍ତୁ ନାହିଁ—

କିନ୍ତୁ ଆଜି ମୋର ମନେ ହେଉଛି ଯେ ଏ ଦୁଇଟି ଚରିତ୍ରଙ୍କୁ କ୍ଷୁଦ୍ରଗଳ୍ପ ପରିବର୍ତ୍ତେ ଗୋଟିଏ ଉପନ୍ୟାସର ନାୟିକା କରିଥିଲେ ମୁଁ ବୋଧହୁଏ ତାଙ୍କ ଭିତରେ ଥିବା ଏଇ ଗୌର-ଶ୍ୟାମ ବୈଷମ୍ୟକୁ ଏତେ ସୁସ୍ପଷ୍ଟ କରିବାକୁ ଚାହିଁ ନ ଥା'ନ୍ତି, ଯେଉଁଥିରେ ତାଙ୍କ ପ୍ରତି ଜାଗି ଉଠୁଥିବା ଅନୁରାଗ-ବିରାଗର ବିଭେଦ ମଧ୍ୟ ଏମିତି ଆଖିଦୃଶିଆ ହୋଇ ନ ଥା'ନ୍ତା । ମୋତେ ପ୍ରଶସ୍ତ କ୍ଷେତ୍ର ମିଳିଥା'ନ୍ତା ତାଙ୍କ ଚାରିତ୍ରିକ ଦୋଷଗୁଣକୁ ଖେଳେଇବା ପାଇଁ, ଫେଣେଇବା ପାଇଁ, ଯଦ୍ଦ୍ୱାରା ଏଇ ବୈଷମ୍ୟ-ବିଭେଦର ରଙ୍ଗ ଟିକିଏ ହାଲୁକା ହୋଇ ଯାଇଥା'ନ୍ତା । ଅର୍ଥାତ୍ ଆପଣ ମାଧୁରୀଙ୍କ ଆଡ଼କୁ ଏତେ ଢଳି ଯାଇ ନ ଥା'ନ୍ତେ କି ମାୟାଙ୍କଠାରୁ ଘୁଞ୍ଚି ଆସି ନ ଥା'ନ୍ତେ । ଯା'ଙ୍କୁ ଟିକିଏ ମଧୁରିଆ ଚୁମ୍ବା ଦେବାକୁ ଇଚ୍ଛା ହୋଇଥା'ନ୍ତା,

ଏବଂ ତାଙ୍କ ପ୍ରତି ଅଳ୍ପବହୁତ ସହାନୁଭୂତି, ତାହା ଭଲ ପାଇବା ଯାଏଁ ନ ଯାଇ ପାରନ୍ତେ ନାହିଁ ।

ଦେଖନ୍ତୁ ଏଇ 'ମାୟୁସ୍ତ୍ରୀ ଅପା'ଙ୍କ ଚରିତ୍ର । ବେଳେ ବେଳେ କ'ଣ ମନେ ହୁଏ ନାହିଁ ଯେ ଏଇ ସ୍ୱଳ୍ପବୁଦ୍ଧି ତଥା ଅପାରଦର୍ଶୀ (ଅର୍ଥାତ୍ ଜୁଣ୍ଡୀ ଏବଂ ଜପାଗଲା) ମଣିଷମାନେ ଚାହାନ୍ତି ଯେ ଅନ୍ୟମାନେ ତାଙ୍କ ପ୍ରତି ଦୟା ଦେଖାନ୍ତୁ ? ସତେକି ନିଜକୁ ଯଥାବିଧି ଉପସ୍ଥାପିତ କରିବା ଲାଗି ଯେଉଁ ଉଦ୍ୟମ ଆବଶ୍ୟକ ତାହା କଷ୍ଟସାଧ୍ୟ, ତେଣୁ ତା'ଠୁଁ ଭଲ ଏଇ ଅସହାୟତାଟି ପରିସ୍ଫୁଟ ହୋଇ ଉଠୁ ଯେମିତିକି ସମସ୍ତେ ବୁଝିବେ ଯେ ତାଙ୍କ ପ୍ରତି ଅନ୍ୟାୟ କରା ହେଉଛି । ତାଙ୍କ ସ୍ୱଭାବ ଚରିତ୍ରର ମାଧୁର୍ଯ୍ୟକୁ ଉପଯୁକ୍ତ ପ୍ରତିଦାନ ମିଳୁନାହିଁ ଏଇ ସଂସାରଠାରୁ । ସେମାନେ ଯେ ସଚେତନ ମନରେ ଏହି ପ୍ରକାର ଆଚରଣ କରନ୍ତି, ତା' ହୁଏତ ନହୋଇପାରେ, କିନ୍ତୁ ଯଥାକ୍ରମେ ଏଇ ଅସହାୟତାବୋଧ ହିଁ ତାଙ୍କର ଏକମାତ୍ର ତଥା ଅମୋଘ ଅସ୍ତ୍ର ହୋଇଉଠେ, ସଂସାରର ସହାନୁଭୂତିକୁ ଟାଣି ଆଣିବା ପାଇଁ ତାଙ୍କ ପ୍ରତି । କିନ୍ତୁ ଦୁଃଖର ବିଷୟ ଏହି ଅସ୍ତ୍ର କାଟୁ କଲା ନାହିଁ ମାୟା ନାଏକଙ୍କଠାରେ । ସେଇଥିପାଇଁ ସେ ଏମିତି ରବେଇ-ଝବେଇ ହେଲେ ତାଙ୍କ ଉପରେ, ହେଲେ ମନେ ମନେ । ଭାବିବା କଥା ଯେ ତଥାପି ସେ ସେଇ ମାୟା ଦର୍ପଣକୁ ଦୂରେଇ ଦେବାକୁ ଚାହୁଁ ନ ଥିଲେ ତାଙ୍କ ପାଖରୁ । ସତେକି ତାହାହିଁ ଭଲ ଲାଗୁଛି ତାଙ୍କୁ, ତାଙ୍କ ଅସହାୟତାକୁ ଏମିତି ଗୃହ୍ଲେଇ ହୋଇ ତାଙ୍କ ପ୍ରତି କରାଯାଉଥିବା ଅତ୍ୟାଚାର ପ୍ରତି ବିଧାତାର ଦୃଷ୍ଟି ଆକର୍ଷଣ କରିବା ଲାଗି । ନା, ମୁଁ ମାନୁଛି ଯେ ମାୟୁସ୍ତ୍ରୀ ମହାପାତ୍ର ଆମ ସହାନୁଭୂତିର ପାତ୍ରୀ । ତେବେ ତାଙ୍କୁ ଟିକିଏ ଝିଆଣିବା ମଧ୍ୟ ଯଥାର୍ଥ ବୋଲି ମୋର ମନେହୁଏ । ଯେ ତମର ଏଇ ଆତ୍ମପୀଡ଼ନ ଅପରିହାର୍ଯ୍ୟ ନୁହେଁ, ତମେ ଚେଷ୍ଟା କରିଥିଲେ ତମର ବ୍ୟକ୍ତିତ୍ୱକୁ ଯଥାବିଧି ଉପସ୍ଥାପିତ କରିପାରିଥା'ନ୍ତ, ଏବଂ କେଉଁ 'ଅଟଲେଡ଼ା' ଦର୍ପଣ ତମକୁ ଏମିତି ହଇରାଣ କରି ନ ଥା'ନ୍ତା ।

ଅପରପକ୍ଷରେ ଦେଖନ୍ତୁ ଏଇ ମାୟା ନାଏକ ଭଦ୍ରମହିଳା ଜଣଙ୍କୁ । ସେ କ'ଣ ପ୍ରକୃତରେ ତାଙ୍କର ବିଦ୍ୟାବୁଦ୍ଧିଗତ ବ୍ୟକ୍ତିତ୍ୱକୁ ନେଇ ଏମିତି ଧନୀ ହୋଇପାରିଛନ୍ତି ଯେ ସେ

ବାହାର ଦୁନିଆ ସାଙ୍ଗରେ ହେଲମେଲ ହେବା ଅନାବଶ୍ୟକ ବୋଲି ମନେ କରନ୍ତି ? ଖାଲି ଖେଲ ଖେଲିଲା ପରି କେଉଁ ମାଧୁରୀଅପାଙ୍କ ଉପରେ ନିଜର ବଡ଼ପଣକୁ ଟିକିଏ ଜାହିର୍ କରିବା ଛଡ଼ା ? ବେଳେ ବେଳେ ମନେହୁଏ ଯେ ଉଣା ରୂପସୀ କିମ୍ବା ଜୀବନଗତ କେଉଁ ଅଭାବ ଯୋଗୁଁ ସେ ନିଜକୁ ଏମିତି ସଙ୍କୁଚିତ କରି ଦେଇଛନ୍ତି । ନିଜକୁ ଲୁଚେଇ ରଖିବାକୁ ଚାହାଁନ୍ତି ସଂସାରଠାରୁ, କାଳେ କିଏ ଜାଣି ପାରିବ ତାଙ୍କର ଦୁଃଖ କେଉଁଠି, ଅଭାବ କ'ଣ ଏବଂ ତାଙ୍କ ପ୍ରତି ଦୟା ଦେଖାଇବ । ହେଲେ ଉପୁରିଆ ଗୋଟାଏ କାଢ଼ ଦେଖାନ୍ତି ଯେ ସେ ଦବାର୍ ହୋଇ ପାରୁଛନ୍ତି ସଂସାର ଉପରେ, ଏବଂ ତାଙ୍କୁ ଅବଶ୍ୟ ଜଣା 'କେମିତି ବଞ୍ଚିବାକୁ ହୁଏ' । ଏହେତୁ ଏହି ଚରିତ୍ରକୁ ମଧ କ'ଣ ତା'ର ପ୍ରତିରକ୍ଷାମୂଳକ, ତେଣୁ ମିଛ ଉଚ୍ଚମନ୍ୟତା ପାଇଁ ଧିଆରିବା ସଙ୍ଗେ ସଙ୍ଗେ, ତା'ପ୍ରତି ଯତ୍‌ସାମାନ୍ୟ ସହାନୁଭୂତି ଦେଖାଇବା ଉଚିତ ନୁହେଁ ?

ତେଣୁ ଚାଲନ୍ତୁ ତାଙ୍କୁ ମଧ ଆନ୍ତରିକ ଶୁଭକାମନା ଜଣାଇବା ଯେ ସେ ଏଭଳି ସୁଖ କରନ୍ତୁ ହର୍ଷୋତ୍‌ଫୁଲ୍ଲ ହର୍ଷ ମିଶ୍ରଙ୍କ ସାଙ୍ଗରେ, ଯେ ତାଙ୍କ ମନ-ବାତାୟନ ଆଉ ଟିକିଏ ଉନ୍ମୁକ୍ତ ହୋଇ ଉଠିବ ବାହାର ସଂସାର ପାଇଁ । ତେବେ ଗୋଟିଏ ଭୟ ମଧ ମନକୁ ଆସୁଛି । ମାଧୁରୀ ଯାହା କହୁଥିଲେ, ଯଦି ହର୍ଷ ମିଶ୍ରଙ୍କର ଚେହେରା ଚରିତ୍ର ମିଶି ଯାଉଥାଏ ତାଙ୍କ ପରଲୋକଗତ ସ୍ୱାମୀ ନିଖିଳବାବୁଙ୍କ ସାଙ୍ଗରେ ତା'ହେଲେ ଯେ ମାମ୍ୟା ନାଏକଙ୍କୁ ଠକେଇବେ ନାହିଁ ତ, ନିଖିଳବାବୁ ଯେମିତି ତାଙ୍କ ସ୍ତ୍ରୀଙ୍କୁ ଠକେଇଥିଲେ ? ହୁଣ୍ଡୀର କିଛି କ୍ଷତି ହେବ ନାହିଁ ସେଥିରେ, ଏଇ ଭାବରେ ? କାରଣ ତା'ହେଲେ ଗବାକ୍ଷ ଖୋଲିଯିବ କ'ଣ, ଆହୁରି ଏମିତି ଚପି ହୋଇଯିବ ଯେ ତାଙ୍କ ସଂସାରବିମୁଖତା ବିଷାଦରୁ ବଳି ବିଷ ଘାଲାଟିଯିବା ବିଚିତ୍ର ନୁହେଁ, ଏବଂ ତା'ର ପରିଣାମ କ'ଣ ହେବ, କିଭଳି ବିସ୍ଫୋରଣ ଘଟାଇବ, କହି ହେବ ନାହିଁ । ପ୍ରାର୍ଥନା କରନ୍ତୁ ଯେ ସେମିତି କିଛି ନ ହେଉ ।

●

# ବୀରପୁତ୍ର ଓ ତା'ର ମାଆମାନେ

ଇନ୍ଦ୍ରଜିତର ଲୁପ୍ତ ନାଆଁ ହେଉଛି ଅଇଁଠା । ଅପତ୍ରିଆଣି ହୋଇଥିବାରୁ ତାକୁ ଏଇ ନାଆଁ ଦିଆ ହୋଇଥିଲା ପ୍ରଥମେ । ତା'ର ଜନ୍ମ ହେଲା ପୂର୍ବରୁ ଦି'ଦି'ଟା ଭାଇଭଉଣୀ ବେଶିଦିନ ତିଷ୍ଠି ରହିପାରି ନଥିଲେ, ତେଣୁ ଆଶା କରାଗଲା ଯେ ଏଇ ବିଲୁଆପରି ମନେହେଉଥିବା ପିଲାଟା ଉପରେ ଲଣ୍ଡା-ଛେପ ପକେଇ ତାକୁ 'ଅଇଁଠା' ବୋଲି ଡାକିଲେ ଯମଦେବତା ଅନେଇବ ନାହିଁ ତା' ଆଡ଼କୁ । ମଧ୍ୟ ସେଇଆ ହେଲା । ଅଇଁଠା କେବଳ ବଞ୍ଚି ରହିଲା ନୁହେଁ, ଭୂମିଷ୍ଠ ହେଲାବେଳକୁ ସେ ଯେଉଁ ଚିତ୍କାର କରିଥିଲା ତା'ର ପ୍ରଥମ 'କୁଆଁ କୁଆଁ' ହିସାବରେ, ଏବଂ ଗୋଟାଏ ଦିନ ନଯାଉଣୁ ସେ ଯେଉଁ ହାଉଁହାଉଁ ସ୍ୱରର ନମୁନା ଦେଖାଇଲା, ଓ ତା'ର ବାପ ବିଚରା ରାହାସବାବୁଙ୍କୁ ଦୁଷ୍ପ୍ରାପ୍ୟ ଟିଣଦୁଧ କିଣିବା ପାଇଁ ବାରଦୁଆର ଶୁଣ୍ଢି ପିଣ୍ଡା ହେବାକୁ ପଡ଼ିଲା, ସେଥିରୁ ଜଙ୍କବପା କ୍ରମଶଃ ଏକ ଦୁର୍ଦ୍ଧର୍ଷ ଅପରାଜେୟ ଜୀବନର ପ୍ରତିଶ୍ରୁତି ବୋଲି ମନେହେଲା ଏବଂ ରାହାସବାବୁଙ୍କୁ ଦିଶିଗଲା ଯେ ଏଇ ପିଲା କିଛି ଗୋଟାଏ ହେବ ବଡ଼ ହେଲେ । ମାନେ କୌଣସି ଏକ ଗଡ଼ ଜିତିଲା ପରି, କୌଣସି ଏକ ଉଚ୍ଚ ଆସନରେ ବସି ହୁକୁମ୍ ଚଳେଇଲା ପରି, ଯାହାକି 'ଗେଟ୍ ଆଉଟ୍!' ଠାରୁ ଅନେକ ଅଧିକ ଶକ୍ତିଶାଳୀ ହୋଇଥିବ (ରାହାସବାବୁ ସପ୍ଲାଇ ଅଫିସର ଅନ୍ୟତମ କିରାଣି ହୋଇଥିବାରୁ ତାଙ୍କର କଳ୍ପନା ଅଧିକ ଶକ୍ତିଶାଳୀ ହୋଇପାରି ନଥିଲା), ଏବଂ ବାପ ହୋଇ ତାକୁ ସେ ଦିଗରେ ସାହାଯ୍ୟ କରିବା ତାଙ୍କର ବିଶେଷ କର୍ତ୍ତବ୍ୟ । ତେଣୁ ସ୍କୁଲ୍‌ରେ ନାଆଁ ଲେଖେଇଲାବେଳକୁ ସେ ଭାବିଲେ ଯେ ପୁଅର କିଛି ଗୋଟାଏ ଟାଣୁଆ ନାଆଁ ଦିଆଯାଉ । ହେଲା ଏବେ ବଡ଼ ଭାଇ ନାଆଁ କୃଷ୍ଣପ୍ରସାଦ, ତା' ବୋଲି କ'ଣ ଲେଖା ହୋଇଛି ଯେ ୟା' ନାଆଁ ଦିଆଯିବ ଶିବ-ପ୍ରସାଦ, ବିଷ୍ଣୁପ୍ରସାଦ, ବା ସେଇଭଳି କିଛି ? ରାହାସବାବୁ କାହାରି ସୁପାରିସକୁ ଗ୍ରାହ୍ୟ କଲେ ନାହିଁ । ଆପଣା ବିଚାରରେ ତା' ନାଆଁ ଦେଲେ ଇନ୍ଦ୍ରଜିତ୍ । ଏବଂ ତାକୁ ଗେହ୍ଲାରେ ଜିତୁବାବୁ ବୋଲି ଡାକିବାକୁ ଲାଗିଲେ । ଗୃହସ୍ୱାମୀଙ୍କର ଇଚ୍ଛା ଅନୁଯାୟୀ, ତଥା ହେତୁ ପାଇଲା ପରେ ବାଳକର ଘୋର ଆପତ୍ତି ହେତୁ ତା'ର ପୁରୁଣା ନାଆଁ କ୍ରମଶଃ ଲୋପ ପାଇ ଯାଇଥିଲା ତାକୁ ଦଶବାର ବର୍ଷ ହେଲା ବେଳକୁ । କିନ୍ତୁ ମାଆ ସରୋଜିନୀ ତଥାପି ମାଆ ବିମଳାଙ୍କୁ ପ୍ରାର୍ଥନା କରନ୍ତି ମଝିରେ ମଝିରେ—ମୋ ଅଇଁଠାକୁ ଘଣ୍ଟ ଘୋଡ଼େଇ ରଖ ମାଆ ! କାହାରି ନଜର ନପଡ଼ୁ ମୋ ପୁଅ ଉପରେ…

ଅପର୍ଣ୍ଣିଆଣି ମାଆର ମନ ସହଜେ ଦୁଡ଼୍‌ବୁଡ଼ୁଆ । କିନ୍ତୁ ତା'ଛଡ଼ା ଇନ୍ଦ୍ରଜିତ୍ ମଧ୍ୟ ତା'ଶୈଶବର ପ୍ରତିଶ୍ରୁତି ବଜାୟ ରଖି ପାରିଥିଲି, ତେଣୁ ଦୁଷ୍ଟ ଲୋକମାନଙ୍କର 'ନଜର' ତା'ଉପରେ ପଡ଼ିବ ବୋଲି ଭାବିବା ବିଚିତ୍ର ନ ଥିଲି । ତାକୁ ବିଶେଷ ସୁନ୍ଦର ବୋଲି କୁହାଯାଇ ନ ପାରେ । କିନ୍ତୁ ତା'ର ହୃଷ୍ଟପୁଷ୍ଟ ଦେହ, ଏବଂ ଦେହର ପ୍ରକଟିତ ଶକ୍ତି—ଯଥା ବଗିଚ୍ଛର ଗଛରୁ ଡାଳକୁ ଡେଇଁବା, କୁଦାମାରି ଆଲମାରି ଉପରେ ରଖା ହୋଇଥିବା ନଫିଇ ଫୁଟବଲ୍‌କୁ ଉଦ୍ଧାର କରିବା, କବାବ୍-ଖୋର ଗୁଣ୍ଡକରଟୋକା ଶତ୍ରୁଙ୍କୁ ଉପଯୁକ୍ତ ଶିକ୍ଷା ଦେବା, ଜିଦିଆ ସାନ ଭଉଣୀ ଟିନକୁ ମାଆର ମାଡ଼ମରା ଉଦ୍ୟମରୁ ରକ୍ଷା କରିବା, ଇତ୍ୟାଦି—ହେତୁ ଅଳ୍ପବହୁତ ଈର୍ଷାଭାବ ନଥିବ କି ସମବୟସୀ ପିଲା ଓ ତାଙ୍କ ମାଆମାନଙ୍କ ମନରେ ? ସେହେତୁ ସର୍ବୋଜ୍ଜଙ୍କୁ ଦୋଷ ଦେବାର ନୁହେଁ, ଯେ ସେ ଅଯଥାରେ ମାଆ ବିମଳାଙ୍କୁ ଡାକୁଥିଲେ ଏମିତି ।

ଖାଲି ଏତିକି ଯେ ସେ ରହାସବାବୁଙ୍କ ମନରେ ବଢ଼ି ଗୁଲୁଥିବା ଗୋଟାଏ ଭିନ୍ନ ଧରଣର ଦୁର୍ଷ୍ଟିନ୍ତାକୁ ବିଶେଷ ଗୁରୁତ୍ୱ ଦେଉ ନ ଥିଲେ । ସେକଥା ପଡ଼ିଲାରୁ ହସି ଦେଉଥିଲେ, ଏବଂ କହୁଥିଲେ—ମଲା, କାହିଁକି ଭାବୁଛ ଯେ ଇଏ ବି କୃଷ୍ଣ ଭଳିଆ କ୍ଲାସ୍‌ରେ ଫାଷ୍ଟ୍-ସେକେଣ୍ଡ୍ ହବ ? ତମର ସବୁ ପିଲାଏ ଗୋଟାଏ ଗୋଟାଏ ପଣ୍ଡିତ ହେବେ ବୋଲି କିଏ କହିଲା ? ସେଇଠୁଁ ରହାସବାବୁ ପ୍ରଶ୍ନାକୁଳ ଦୃଷ୍ଟିରେ ଅନାନ୍ତି ସ୍ତ୍ରୀଙ୍କ ଆଡ଼କୁ—କିନ୍ତୁ କହିପାରିବ କି ସର, ସେ ଆଉ କ'ଣ ହେବ ବୋଲି ମନେ ହେଉଛି ? ପାଠପଢ଼ା ନ ହେଲି ନାହିଁ, ଆଉ କେଉଁଥିରେ ସେ ଦ'ପଦରୁ ବାସୁଛି ବୋଲି କହି ପାରିବ ? କଥାକଥାକେ ବଳ ଦେଖାଉଛି ସତ, କିନ୍ତୁ ସ୍କୁଲ୍ ସ୍ପୋର୍ଟସ୍‌ରେ କଣଟା କଲା ? ନା ଭବିଷ୍ୟତରେ କିଛି କରିବାର ସୂଚନା ମିଳୁଛି ତମକୁ ? ଆଉ ଛବି ଆଙ୍କିବା, ଗୀତ ବୋଲିବା, କଲକବ୍‌ଜା ସଜାଡ଼ିବା ଇତ୍ୟାଦି କେଉଁଥିରେ ତା'ର ମନ ଅଛି କହିଲ ଦେଖି ? ହେଲେ ସେ ଆଖି ଫେରାଇ ଆଣନ୍ତି ସ୍ତ୍ରୀଙ୍କଠାରୁ । ତର୍କ କରି ଲାଭ ନାହିଁ ସ୍ତ୍ରୀ'ଙ୍କ ସାଙ୍ଗରେ । ମାଆମାନେ ଯୁଗେ ଯୁଗେ ଅନ୍ଧ ତାଙ୍କ ପିଲାମାନଙ୍କୁ ନେଇ । କିନ୍ତୁ ମାଆମାନେ ହିଁ ତ ପ୍ରେରଣା ଯୋଗାଇଥା'ନ୍ତି ତାଙ୍କ ପିଲାମାନଙ୍କୁ, ବିଶେଷତଃ ପୁଅମାନଙ୍କୁ, 'ବଡ଼' ହେବା ଲାଗି ? ଇତିହାସ କହୁଛି ସେ କଥା । ସର ବି ପାରନ୍ତା । ପୁଅକୁ କେବଳ ଗେହ୍ଲା ନ କରି, ତା' ମନରେ ଛପି ରହିଥିବା ଉଚ୍ଚାଭିଳାଷକୁ ତେଜି ଦେଇ ପାରନ୍ତା । ଟୋକା ତା' ମାଆକୁ ଖୁବ୍ ଭଲପାଏ, ଆଉ ଖାତିର୍ କରେ, ସନ୍ଦେହ ନାହିଁ ଏଥିରେ···

ରହାସବାବୁ ଦୁଃଖ କରନ୍ତି ଯେ ଯାହା ହେବାର କଥା ତା'ର ଲକ୍ଷଣ ଦିଶୁ ନାହିଁ ଆଜିଯାଏଁ । କିନ୍ତୁ ସେ ମାନିବାକୁ ନାରାଜ ହୁଅନ୍ତି ଯେ ତାଙ୍କ ଦିଆ

'ଇନ୍ଦ୍ରଜିତ୍' ନାଆଁ ଟା ଖାଲି ଗୋଟାଏ ନାଆଁ ହୋଇ ରହିଯିବ । ସେ ତାଙ୍କର ଅଷ୍ଟ-ଇନ୍ଦ୍ରିୟ ଉପରେ ଭରସା ରଖନ୍ତି ଯେ ଏଇ ବଳୁଆ, ବାହାଦୁରିଆ ଏବଂ ଅସ୍ଥିର ପିଲାଟା କିଛି ଗୋଟାଏ ନ ହୋଇ ରହି ପାରିବ ନାହିଁ । କଦାପି ତା' ବାପା ଭଳି ଗୋଟାଏ କିରାଣିଆ ଚାକିରିରେ ବର୍ଷପତ୍ର ତା' ଜୀବନଟାକୁ ନଷ୍ଟ କରିଦେବ ନାହିଁ । ନେଭର୍ !

ରାହାସବାବୁ ନିଶ୍ୱାସ ମାରିଲେ ଯେତେବେଳେ ସେ ଶୁଣିଲେ ଟୋକା ତା' ପଢ଼ାଘରେ ଆସନ ଜମେଇଥିବା ବେଳେ ସାଙ୍ଗଙ୍କ ଆଗରେ ଗୋଟାଏ ଜବରଦସ୍ତ୍ ଘୋଷଣା କରୁଛି—"ଶଳା, ମୁଁ ଯାହା ହୁଏ ପଛେ, ହାତଗୋଡ଼ ଜାକି କରି ରହିବି ନାହିଁ କୋଉ ଚାକିରି ଉପରେ । ଲେଖି ନିଅ ମୋଠୁଁ । ଯୁଦ୍ଧ କରିବି କି ହଲ କରିବି, କି ଆଉ ଯାହା । ହେଲେ ଶୁଖି ଶୁଖି ମରିବି ନାହିଁ, ବୁଝିଲ ?"

ଏଇଆ ଶୁଣିବାକୁ ଚାହିଁଥିଲିରେ ପୁଅ ! ଧନ୍ୟବାଦ୍ ! ଜାଣିଲି ଯେ ତୁ ଚାକିରିଆ କ୍ଲାବକୁ ଘୃଣା କରୁ । ତୁ ଗୋଟାଏ ସର୍ବଶ୍ୱ କିଛି ନା କିଛି ହେବାକୁ ଚାହୁଁ । କିନ୍ତୁ କ'ଣ ସେ ଜିନିଷଟା, ଆଉ କେବେଠୁଁ ତା'ର ଚେହେରା ଦେଖେଇବୁ ମୋତେ କହିଲୁ ?

···"ହେ ଭଗବାନ ! ମୋର ଏଇ ପୁଅଟା କ'ଣ ଛତରା ହୋଇଯିବ ?"

ଛତରା !! ଏଇ ଶବ୍ଦଟାକୁ ନେଇ ଯେଉଁ ଛବିମୂର୍ତ୍ତି ଠିଆ ହୋଇଯାଏ ତାଙ୍କ ଆଖି ଆଗରେ ତାକୁ ଦେଖି ସେ ସିକୁଡ଼ି ଯାଆନ୍ତି । ଯଥା—ଦାହିର ଲୁଙ୍ଗି ପିନ୍ଧା ନାଲିଆଡ଼ିଆ ନାଥୁରାମ୍ (ବାପମାଆ ତା' ନାଆଁ ଦେଇଥିଲେ ପ୍ରାଣନାଥ) ଆସି ଦାନ୍ତ ଗିଜିଡ଼େ ତାଙ୍କ ମୁହଁକୁ ଅନେଇ । କୁହେ—ମଉସା, ମୁଁ ତମକୁ କେତେଦିନୁ କହିଲଣି କହିଲ, ଯେ ମୋର ଅଧିକା ଆଉ ଦିନଟା ରେସନ୍ କାର୍ଡ଼ ଚାହିଁ ? ଏତିକ ହେଲ ନାହିଁ ତମ ଦେଇ ? ଶୁଣ, ଏଇ ହପ୍ତାକ ଭିତରେ ଯଦି ନକରିବ ନା, ତା' ହେଲେ ଦେଖିବ !···ବୋତାମ ବିବର୍ଜିତ ଫତେଇ ଭିତରୁ ସ୍ୱଚ୍ଛଦୃଶ୍ୟ ସୁନା-ଚେନ୍‌ର ଶୋଭା ଦେଖେଇ ନିଶକୁ ହାଉଳୁଥିବା ରଙ୍ଗୁ ପଡ଼ିଆରି (ତା' ବାପ ଘରର ପୁରୋହିତ ଥିଲା) ଗୋଟାଏ ରସିଦ୍ ବହି ଖୋଲି କରି ଥୋଉଛି ତାଙ୍କ ଆଗରେ । କହୁଛି—କୁହ ମଉସା, କେତେ ଲେଖିବି ତମ ନାଆଁରେ ? ମାତ୍ର ପଚିଶ ଟଙ୍କା ଚାନ୍ଦାବନି ଏଥର । ଆମେ ଯେଉଁ ପ୍ଲାନ୍ କରୁଛୁ ଏଥର ଆମ ଦୁର୍ଗାମାଆଙ୍କ ପାଇଁ, ସେଥିଲାଗି ମୁଣ୍ଡପିଛା ମିନିମମ୍ ଦୁଇଶହ ଟଙ୍କା ଦରକାର ଆମର । ତେଣିକି ତମ ଇଚ୍ଛା । ପାଖରେ ଥାଇ ତା ଗୋଡ଼ ଦେହ୍ରାକୁ ଗୋଟାଏ ବାଡ଼ିରେ ଠୁକ୍ ଠୁକ୍ କରୁଥିବା ଆଉ ଜଣେ ଯୁବକ କହୁଛି ସେଇଠୁଁ—ଏତେ ପଚାରୁଛୁ କ'ଣ ବେ ? ମଉସା ଯୋଉ ଅଫିସ୍‌ରେ ଅଛନ୍ତି, ତାଙ୍କୁ ଟଙ୍କା କୋଉ ଅପୂରୁବ ହୋଇଛି ? ଲେଖେ

ଦିନଗଦି ଟଙ୍କା ।···ତାଳଗଛ ପରି ଡେଙ୍ଗା, ବାବୁରି ବାଳ, ଆଉ ସିଗ୍ରେଟ୍ ଫୁଙ୍କି ଫୁଙ୍କି ଆଖିକୁ କୁଞ୍ଚଉଥିବା ମଟ୍ ମହାନ୍ତି ଅଣ୍ଟାରେ ହାତ ଦେଇ ଠିଆହୋଇଛି, ଆଉ ପଦ୍ମନର ବରପିଆଳି ଦୋକାନକୁ ଧ୍ୱଂସ କରିଯାଉଥିବା ପ୍ରକିସ୍ତାକୁ ଉଦାରଖ କରୁଛି । ସାଦର ସମ୍ଭାଷଣପୂର୍ବକ କହୁଛି—ଆରେ ରହାସଦା' (ତା'ର ମୋହରର ବାପା ଅନାଦି ମହାନ୍ତି ଲେଖାଯୋଖା ଭାଇ ହୁଅନ୍ତି ରହାସବାବୁଙ୍କର), ତମେ କୁଆଡ଼େ ଗଡ଼ି ପଡ଼ିଲ ଇଆଡ଼େ ସକାଳୁ ସକାଳୁ ? ହଉ ଦେଖ, ବେଧିଆକୁ କେମିତିକା ଶାସ୍ତି ଦିଆ ହେଉଛି । ହ୍ୟାପ୍ ଜୋର୍ ଠକୁଥିଲ ଆମକୁ, ଆଉ କହିଲେ କାଢ଼ି ଦେଖଉଥିଲ ନା, ଦେଖ ତା' ଅବସ୍ଥା ! ହେଇ, ଏଇକ୍ଷଣି ହାତଯୋଡ଼ି ଦାନ୍ତନକୁଟି ଆସୁଛି ମୋ ପାଖକୁ । ଶ-ଅ-ଳା !···

ଟୋକିକ ଗୋଟି ଦରପାଠୁଆ ବେକାର ଏବଂ ଛତରା, ହେଲେ କାହାକୁ ପଦେ କହିହେବ ନାହିଁ । କାରଣ ତା' ପରେ ତମର ଦଶା କ'ଣ ହେବ, ତା' ଭାବିବାର ବିଷୟ । ଆଉ ସେତେବେଳେ କୋଉ ହପ୍ତା-ଖିଆ ପୁଲିସ୍‌ବାଲା କ ଉପର-ମୁହାଁ ହାକମ ତମ ପିଠିରେ ପଡ଼ିବ ନାହିଁ ଆସି । ରକ୍ଷା କଲେ କରିବ ତାଙ୍କର ଭିତରୁ ଜଣେ । ଯେହେତୁ କଳ୍ପନାରେ ଅରି ଉଠନ୍ତି ରହାସବାବୁ ନିଜ ପୁଅ କଥା ଭାବି—ଯେ ଆଜି ଛତରା ସେ କାଲିକି ଗୁଣ୍ଡା । ସୃଷ୍ଟିର ନିୟମ । ଅଣ୍ଡାରୁ ଛୁଆ ବାହାରିଲାପରି । ହେ ଭଗବାନ ! ହେ ଭଗବାନ ! ସତରେ କ'ଣ ଏଇଆ ହେବାକୁ ଅଛି ମୋ କପାଳରେ ?

ରହାସବାବୁଙ୍କର ଆଶଙ୍କା ଅମୂଳକ ନଥିଲା । ନାନାଦି ଲକ୍ଷଣ ତାଙ୍କ ଆଖିରେ ପଡ଼ୁଥିଲା ଯାହାକି ପୁଅର ଛତରାପଣ (ବସ୍ତୁତଃ ଗୁଣ୍ଡାଗିରି)ର ଉଦାହରଣ ବୋଲି ତାଙ୍କର ମନେ ହେଉଥିଲା, ତାକୁ ଅଠର ବର୍ଷ ହେଲା ବେଳକୁ । ପ୍ରଥମ କଥା ସେ ପ୍ଲସ୍‌-ଟୁରେ ରହିଗଲା । ଥରେ ଫେଲ୍ ହେଲା ପରେ ସେ କହି ବୁଲିଲା ଯେ ଏଇ ଗନ୍ଧିଆ ପୋଚରା ସିଷ୍ଟମ୍ ତାକୁ ସୁହାଉ ନାହିଁ, ଏବଂ ସେ ଏଥିରୁ ଖଲାସ ହେବାକୁ ଚାହେଁ । ଅର୍ଥାତ୍ ସେ ଆଉ ପାଠ ପଢ଼ିବ ନାହିଁ । କହିଲା, ତା'ଛଡ଼ା ମୁଁ ଯାହା ଜାଣିବାର ଜାଣି ସାରିଛି, ଆଉ କିଛି ଲୋଡ଼ା ନାହିଁ ମୋର । ରହାସବାବୁ ପଚାରିଲେ—ତା'ହେଲେ ଆଉ କ'ଣ କରିବୁ ? କେମିତି ତୋ ପେଟ ପୋଷିବୁ ? ବାହାହେଲେ ତୋ ଫ୍ୟାମିଲିକୁ ଚଳେଇବୁ କେମିତି ? ଇନ୍ଦ୍ରଜିତ୍ ମୁହେଁ ମୁହେଁ ଉତ୍ତର ଦେଲା—ମୋ କଥା କି ଭବିଷ୍ୟତରେ ମୋର କୋଉ ଫ୍ୟାମିଲି ହେବେ, ତାଙ୍କ ବିଷୟରେ ତମର ଭାବିବା ଦରକାର ନାହିଁ ବାପା । ଖାଲି ମୋତେ ଆଉ ପାଞ୍ଚଟା ବର୍ଷ ସମୟ ଦିଅ ।

ରହାସବାବୁ ତାଙ୍କ ଅବାଗିଆ ପୁଅଟାକୁ ପାଞ୍ଚବର୍ଷ କାହିଁକି ସାରା ଜୀବନର ମହଲତ୍ ଦେବାକୁ ପ୍ରସ୍ତୁତ ଥିଲେ, ଯଦି ସେ ଛତରାପଣର ରାସ୍ତାରୁ ଓହରି ଆସିଲା

ପର ମନେ ହୁଅନ୍ତା । କିନ୍ତୁ କାହିଁ ? ବରଂ ସମସ୍ତ ଲକ୍ଷଣ ଅଧିକରୁ ଅଧିକ ଘନୀଭୂତ ଓ ପରିସ୍ଫୁଟ ହୋଇ ଉଠୁଛି । ଯଥା —

ତା' ପାଟିରୁ ଯେଉଁସବୁ ଶବ୍ଦ ଉଚ୍ଚାରିତ ହେଉଛି, ଓଡ଼ିଆ, ଇଂରାଜୀ ଓ ହିନ୍ଦୀ ମିଶାମିଶି ନିରର୍ଥକ ଶବ୍ଦ, ତାହା 'ଶଳା', 'ଶିଟ୍' ଆଦି ସର୍ବସାଧାରଣ ସ୍ତରରୁ ଅନେକ ଉଚ୍ଚ୍ୱକୁ ଉଠିଗଲାଣି, ଯେଉଁଥିରୁ ଜଣାପଡ଼େ ଯେ ତା'ର ସାଙ୍ଗମାନେ କୌଣସି ନିର୍ଦ୍ଦିଷ୍ଟ ଜାତିକୁଳଶୀଳର ସଂସ୍କାର ଭିତରେ ବନ୍ଧା ନୁହଁନ୍ତି । ସେମାନେ ସର୍ବଭାରତୀୟ ବତ୍‌ବକାରର ଲୋକ । ଏକ ଭିନ୍ନ ମହାମାନବୀୟ ସାଗର ତୀରରେ ଉବୁଟୁବୁ ହେଉଥିବା ଫେଣ । କାତୁଆ ସେଇଥିରୁ ଗୋଟିଏ ।

—ସେ ପ୍ରାୟ ଘରେ ନଥାଏ ଏବଂ ଦଳ ବାନ୍ଧି ବୁଲୁଥାଏ ବୋଲି ସୁହାସ-ବାବୁଙ୍କର ଚରମାନେ କୁହନ୍ତି ତାଙ୍କୁ । ଦଳରେ ଏଇ ସାହିର କେତେକ ଚିହ୍ନା ଲୋକଙ୍କ ମୁହଁ ମଧ୍ୟ ଦେଖିବାକୁ ମିଳେ ବୋଲି କୁହନ୍ତି । ଏପରିକି ଜଣେ ତର ତର କହିଲା ଥରେ—"ମୁଁ କହିପାରିବି ନାହିଁ ଆଜ୍ଞା, କିନ୍ତୁ ଜଣେ ଡେଙ୍ଗା ଲୋକ ଥିଲା ତାଙ୍କ ଭିତରେ । ଯିଏ ତାଙ୍କ ସର୍ଦ୍ଦାର ପରି ମନେ ହେଉଥିଲା । ଭାବିଲି ଇଏ ଆମ ମଟୁ-ବାବୁ ନୁହେଁ ତ ?"

ମଟୁଆ ? ଶେଷକୁ ମଟୁଆର ପାଲରେ ପଡ଼ିଲାଣି ଏ ଟୋକା । ସେଦିନ ରାତିରେ ନିଦ ହୋଇ ନଥିଲା ସୁହାସବାବୁଙ୍କର ।

ଯାହାହେଉ ସୁହାସବାବୁଙ୍କୁ ଧନ୍ୟବାଦ ଦେବା କଥା ସେ ଯେ ନିଜକୁ ସଯତ କରି ରଖିଥିଲେ । ପ୍ରତାପୀ ପୁଅ ଉପରେ ପାଟିତୁଣ୍ଡ କରିବାର ସାହସ ନଥିଲା ବୋଲି କହିପାରି, କିନ୍ତୁ ତା'ଛଡ଼ା ତାଙ୍କର ତଥାପି ଭରସା ଥିଲା ତାଙ୍କ ସ୍ନାୟୁକେନ୍ଦ୍ରୀୟ ଉପରେ । ତେଣୁ ସେ କାଳାତିକାଳ କରି ଭବିତବ୍ୟତାର ବାଟରେ କଣ୍ଟା ପକେଇବାକୁ ଚାହୁଁ ନଥିଲେ । ପୁଣି ପୁଅ ଯେତେବେଳେ ତା'ର କୋଉ ପଞ୍ଚ-ବର୍ଷୀୟ ଯୋଜନାର ମହଲତ ମାଗିଛି ତାଙ୍କୁ, ଅନ୍ତତଃ ସେଇ ସମୟତକ ଚୁପ୍ ରହିଯିବା ଭଲ ନୁହେଁ କି ?

ହେଲେ ତାଙ୍କର ରାଗ ଆସୁଥିଲା ଯେତେବେଳେ ସେ ମା'ଆ-ପୁଅଙ୍କ କାରବାରକୁ ଲକ୍ଷ୍ୟ କରୁଥିଲେ । ଘଟଣା ଆସି ଏତେ ଦୂର ହେଲାଣି, ତଥାପି ତମେ ସେମିତି ଅନ୍ଧହୋଇ ଅଛ ? ଦିନ ପରେ ଦିନ ଅଧରାତିରେ ଫେରୁଛି ଆଉ ତମକୁ ନିଦରୁ ଉଠଉଛି, ତଥାପି ତାକୁ ପଦେ ହେଲେ କହିବାକୁ ନାହିଁ ? ତା' ପାଇଁ ବଢ଼ା ହୋଇ ରହିଥିବା ଖାଦ୍ୟ ନଷ୍ଟ ହେଉଛି, ତଥାପି ତମ ପାଟି ଖୋଲୁ ନାହିଁ ? ଧନ୍ୟ ତୁମେ ! ଖାଲି ସେତିକି ନୁହେଁ, ଭେଣ୍ଡିଆ ପୁଅଖଣ୍ଡକ ଯେଉଁ ଗେହ୍ଲା ହେଉଛି ମାଆ

ପାଖରେ, ତା' ଦେଖିବା କଥା । ମାଇଚିଆ ଟୋକା ! ଯେତିକ ମାଇଚିଆ ସେତିକ ବାହାପିଆ । ତା'ର ଯେତେକ 'ସାରଙ୍ଗ'ର କାହାଣୀ ଗାଇଯାଏ ତା' ମାଆ ଆଗରେ, ଆଉ ଇଏଁ ତାକୁ ପିଇ ଯାଆନ୍ତି । ପୁଣି ତାକୁ ସଗର୍ବରେ ଚଲେ କରନ୍ତି ମୋ ଆଗରେ—

ଜାଣିଛ ନା ? ପାଶ ହେବ ନାହିଁ ତମ ସାରବର ପୁଅକୁ ! ଆମ ସାହିର ଟେମିବୋଉ ବୁଢ଼ୀ, ବର୍ଷକ ମାସେ ହେଲା ସେଗୁଡ଼ି କୋଉ ଅସାଧ ବେମାରରେ, ହେଲେ ତାକୁ ବେଡ୍ ମିଳୁ ନଥିଲା ହସ୍‌ପିଟାଲ୍‌ରେ, ଇଏ ତାଙ୍କ ବଡ଼ ଡାକ୍ତରଙ୍କ ସାଙ୍ଗରେ କଜିଆ କରି ତା'ର ସବୁ ବ୍ୟବସ୍ଥା କରି ଆସିଛି ପରା ?…ଯୋଉ ନୂଆ ଷ୍ଟେଡ଼ିୟମ୍ ନା କଅଣ ତିଆରି ହେଉଛି, ମୂଲିଆ ମୂଲିଆଣୀଙ୍କୁ ଠାବ ମିଳୁ ନଥିଲା କୁଡ଼ିଆଟିଏ ପାରି ରହିବା ପାଇଁ ସେଠି, ଆମ ପୁଅ କେମିତି ତା'ର ବନ୍ଦୋବସ୍ତ କରି ଆସିଛି କହିବ ?…ଏଇକ୍ଷଣି ତା'ର ଜିଦ ଲାଗିଛି ତେଲଙ୍ଗା ସାହି ଆଗର ଯେଉଁ ଗନ୍ଧିଆ ନାଳ ଖଣ୍ଡିକ ଅଛି ତାକୁ କେମିତି ସଫା କରେଇବ… ଅଜ ବୁଝେଁ, ସେ ପିଲାଦିନୁ ସେମିତି, ଗରିବଗୁରୁବାଙ୍କ ଦୁଃଖ ସହିପାରେ ନାହିଁ । ମନେ ନାହିଁ, ସେ ପିଲାଦିନେ ତମ ବାପାଙ୍କ ନୂଆ ଧୋତି ଖଣ୍ଡିକ ବଢ଼େଇ ଦେଇ-ଥିଲା ଗୋଟାଏ ଭିଖାରି ହାତକୁ, କାହିଁକି ନା ସେ ଛିଣ୍ଡା କରିଆଟା ପିନ୍ଧିକରି ଆସିଥିଲା, ଆଉ କହିଲା ତା'ର ପିନ୍ଧିବାକୁ ଲୁଗା ଖଣ୍ଡେ ନାହିଁ ?

ହଁ ସର, ମନେଅଛି । ଆଉ ଜାଣିଛି ସେ ଯେଉଁସବୁ 'ମହତ୍' କାମ କରୁଛି ଏଇକ୍ଷଣି । ପରୋପକାର କରିବାରେ କେହି ବଳେଇ ଯିବ ନାହିଁ ତାକୁ । କିନ୍ତୁ ସେଥିପାଇଁ ଛଅଟା ଲୋକଙ୍କ ସାଙ୍ଗରେ କଜିଆ କରିବା ଦରକାର ଏବଂ ଦରକାର ହେଲେ ଭଙ୍ଗାରୁଜା ଆଉ ମାଡ଼ ଫଉଜଦାରି । ହୁଏତ ହାଣକାଟ । ଆରେ ବୁଝିନା, ସେଇ ପରା ଗୁଣ୍ଡାମାନଙ୍କ ଧର୍ମ ? କ'ଣ ନା ଆମେ ହେଉଛୁ ଆଇନ, ଆମେ ହେଉଛୁ ଭଗବାନ…। ସର, ମାଆ ହୋଇ ତାକୁ ଟିକିଏ ବୁଝେଇ ଦିଅନ୍ତି ନାହିଁ, ଯେ ଏତେ ମହାନ୍ ନହୋଇ ନର୍ମାଲ୍ ହେଲେ କେତେ ଉପକାର କରନ୍ତା ସେ ନିଜର ଆଉ ଆମ ସମସ୍ତଙ୍କର ?

କିନ୍ତୁ ଦିନେ ସରୋଜିନୀ ଗୋଟାଏ ଖବର ଶୁଣେଇଲେ ତାଙ୍କୁ, ଯେଉଁଥିରେ ସେ ଉଦ୍‌ବିଗ୍ନ ହୋଇ ଉଠିଲେ । କୁଆଡ଼େ ପୁଅ କହୁଥିଲା ଯେ ତା' ମଟ୍ରସାଇକଲୁ ପୁଲିସ୍ ଗିରଫ୍ କରି ନେଇଛି, ସେ ଆର ସାହିର ଗୁଣ୍ଡା ଖିମ ଦଳେଇକୁ ଛୁରି ମାରିଛି ବୋଲି ସନ୍ଦେହ କରି । ଓ ଗଡ୍ ! ଆମର ଗୁଣମଣି ନଥିଲା ତ ତା' ଭିତରେ ? କିନ୍ତୁ କିଛିଦିନ ପରେ ଶୁଣିଲେ କ'ଣ ନା କୋଉ ମନ୍ତ୍ରୀ ପୁଲିସ୍‌କୁ ହୁକୁମ୍ ଦେଇଛନ୍ତି ତାଙ୍କୁ ଖଲାସ କରିବା ଲାଗି । ଏବଂ ମଟ୍ରୁ ହସି ହସି ଫେରି

ଆସିଛୁ ଜେଲ୍‌ରୁ । ଆଚ୍ଛା ? ଏତେ ଡ଼ଙ୍ଗକୁ ପହୁଞ୍ଚ ଅଛୁ ତା'ର ? ସେଦିନର ସ୍ୱରରେ ବି ସୁହାସବାବୁଙ୍କର ଆଡ଼ିକୁ ନିନ୍ଦ ଆସି ନଥିଲ । କିନ୍ତୁ ସେଥିରେ କେବଳ ଆଶଙ୍କା ନଥିଲ ପୁଅ ପାଇଁ । ତା'ସାଙ୍ଗକୁ ଗୋଟାଏ ସମ୍ଭାବନା ମଧ୍ୟ ଗୋଳାଆପୋଳାଆ ହୋଇ ଦଶିଯାଉଥିଲ ତାଙ୍କୁ । ଯେଉଁଥିରେ ଏକ ଅପୂର୍ବ ଉତ୍ତେଜନା ଆସୁଥିଲ ତାଙ୍କ ମନରେ ।

ଗୁଣ୍ଡା ହେଉ ପଛେ ମୋ ପୁଅ,.ସେ ବି କ'ଣ ଉପରକୁ ଉଠି ପାରନ୍ତା ନାହିଁ ମଟ୍ଟୁଆର ଲଙ୍ଗୁଡ଼ ଧରି ? ତା'ହେଲେ ପିତଳଟା ଗ୍ଲୁଏଁ ଗ୍ଲୁଏଁ ସୁନା ପାଲଟି-ଯା'ନ୍ତା ।

ସୁହାସବାବୁ ପୁଣି ଖୁସି ହେଲେ ଯେ ମଟ୍ଟୁଆ ତାଙ୍କ ସାତ ନମ୍ବର ଓ୍ୱାର୍ଡ଼'ର କାଉନ୍‌ସିଲର୍ ପଦ ପାଇଁ ଠିଆହୋଇଛୁ, ଆଉ ଜିତୁ ପ୍ରାଣପଣେ ଲାଗି ପଡ଼ିଛୁ ତାକୁ ଜିତେଇବା ପାଇଁ । ଏବଂ ତାଙ୍କ ମନ ଆନନ୍ଦରେ ଭରିଗଲା, ଯେତେବେଳେ 'ଆମ ମଟ୍ଟୁଭାଇ ଜିତଛୁ' ବୋଲି ଗୋଟାଏ ଶୋଭାଯାତ୍ରା ଅନୁଷ୍ଠିତ ହେଲା ଯୋଉଁକେ ସାହିବାଲାଙ୍କୁ ନେଇ, ଏବଂ ଜିତୁ ତା'ର ଅନ୍ୟତମ ଅଗ୍ରଣୀ ହୋଇ ଗଳା ଫଟେଇ ଚିତ୍କାର କରୁଥିଲା ବୋଲି ଶୁଣିଲେ—ମଟ୍ଟୁଭାଇ ଜିନ୍ଦାବାଦ୍ ! ଇନ୍‌କିଲବ୍ ଜିନ୍ଦାବାଦ୍ !

ଏହି କ୍ରମରେ ସୁହାସବାବୁ ଆଦୌ ବିସ୍ମିତ ହେଲେ ନାହିଁ, ଯେତେବେଳେ ଜିତୁ ଦିନେ ଆସି ଘୋଷଣା କଲା ଯେ ସେ ସର୍ବମଙ୍ଗଳ ପାର୍ଟିରେ ଜଏନ୍ କରିଛୁ । ମଟ୍ଟୁଭାଇର ପଛେ ପଛେ, ଓ ତା'ର ପରାମର୍ଶ ଅନୁଯାୟୀ । ସେ ପୁଅର ପିଠି ଥାପୁଡ଼େଇ କହିଲେ—ବେଷ୍ଟ ଅଫ୍ ଲକ୍ ! ଏବଂ ମୁରୁକି ମୁରୁକି ହସିଲେ ଅନେକ ସମୟ ଯାଏଁ । ଏଣିକି କିଏ ମୋ ପୁଅକୁ ଗୁଣ୍ଡା ବୋଲି କହିବ ? ଏମିତି କହିଲାବାଲା ?

…ସିଏ ଥିଲା ତିନିବର୍ଷ ତଳର ଇତିହାସ । ଆଜି ସୁହାସବାବୁଙ୍କ ଘରେ ଗୋଟାଏ ଉତ୍ସବର ଆସର ଜମିଛୁ । ଯୁବ ସର୍ବମଙ୍ଗଳର ପ୍ରାଦେଶିକ ଶାଖାର ନବ-ନିଯୁକ୍ତ ସଚିବ ଇନ୍ଦ୍ରଜିତ୍ ମହାନ୍ତିଙ୍କୁ ବଧେଇ ଦେବା ଲାଗି । ଏବଂ ସୁହାସବାବୁଙ୍କର ସ୍ମିତହାସ ଯେତିକି ପ୍ରଶସ୍ତ ସେତିକି ପ୍ରଗଳ୍‌ଭ ମନେହେଉଛୁ—ଆମେ ଜିତିଛୁ ରେ ପୁଅ ! ତୋ ପାଞ୍ଚବର୍ଷିଆ ଯୋଜନା ସଫଳ ହୋଇଛୁ । ତଥା ମୋର ଷଷ୍ଠେନ୍ଦ୍ରିୟ !

ଆସରରେ କେବଳ ପାର୍ଟିର ଲୋକେ ନ ଥିଲେ, ମଧ୍ୟ ଜିତୁର ଅନ୍ୟ ସାଙ୍ଗମାନେ ଯେଉଁମାନଙ୍କ ମଧ୍ୟରୁ ଅନେକ ପାର୍ଟିକୁ ଭଲ ପାଆନ୍ତି ! ତେଣୁ ଆଶା

କରନ୍ତି ଯେ ଯଥାଶୀଘ୍ର ପାର୍ଟି ତାଙ୍କୁ ପାଖକୁ ଡାକି ନେବ ଏବଂ ଭଲପାଇବାର ପୁରସ୍କାରଟିଏ ତାଙ୍କ ହାତକୁ ବଢ଼େଇ ଦେବ । ଜିତୁଭାଇ କ'ଣ ଜାଣେ ନାହିଁ ଆମେ କିଭଳି କାମ କରିଛୁ ତା'ସାଙ୍ଗରେ ମିଶି ଏବଂ ଭବିଷ୍ୟତରେ କିଭଳି କାମ କରିପାରୁ ପାର୍ଟିପାଇଁ ଅର୍ଥାତ୍ ଦେଶ ପାଇଁ ? ଖୋଦ୍ ମଣ୍ଟୁଭାଇ ବି ଅଛନ୍ତି ନିମନ୍ତ୍ରିତ କେତେକ ବରିଷ୍ଠ ନେତାଙ୍କ ଭିତରୁ, ସେମାନେ ବି ଚିହ୍ନି ରଖନ୍ତୁ ଆମକୁ, ଏଇ ଅବସରରେ । ଏହେତୁ ଇନ୍ଦ୍ରଜିତ୍‌କୁ ବଧେଇ ଦେବା ସହିତ ସେମାନେ ନିଜ ନିଜକୁ ତଥା ପରସ୍ପରକୁ ବଧେଇ ଦେବାରେ ଲାଗି ପଡ଼ିଥିଲେ । ଏବଂ ଆସନ୍ନ ନିର୍ବାଚନରେ ଜନକଲ୍ୟାଣ ପାର୍ଟି ଅବଶ୍ୟ ହାରିବ ଓ ସର୍ବମଙ୍ଗଳ ପାର୍ଟି ସରକାର ଗଢ଼ିବ ତା'ର ନିର୍ଭର ପ୍ରତିଶ୍ରୁତି ଯୋଗାଇ ଦିଆଯାଉଥିଲା ବରିଷ୍ଠ ନେତାମାନଙ୍କୁ । ବାଦାନୁବାଦର ପ୍ରଶ୍ନ ଉଠୁ ନଥିଲା । କେବଳ ବୀରତ୍ୱର ଗାଥା, ଆନନ୍ଦ ଏବଂ ଉତ୍ସାହର ଧ୍ୱନି ଏବଂ କଥା-କଥାକେ—'ମନେ ଅଛି ଜିତୁଭାଇ···?' ହେଲେ ଇନ୍ଦ୍ରଜିତ୍ ଖାଲି ଟିକିଏ ହସିଦେବା ଛଡ଼ା କୌଣସି ଚପଳତା ଦେଖାଉ ନଥିଲା । ତା'ର ନୂତନ ଦାୟିତ୍ୱ ପ୍ରତି ସଚେତନ ହେଲା ପରି ।

ପରିବାରବର୍ଗଙ୍କୁ ମନା ବି ନଥିଲା ଆସରରେ ଯୋଗ ଦେବା ଲାଗି । ଅପରନ୍ତୁ ଇନ୍ଦ୍ରଜିତ୍ ନିଜେ ଅନୁରୋଧ କରିଥିଲା ତା'ର ବାପାବୋଉ ଓ ବଡ଼ଭାଇଙ୍କୁ ଆସରରେ ଯୋଗ ଦେବା ଲାଗି । କିନ୍ତୁ କୃଷ୍ଣପ୍ରସାଦ ଅତିଥିମାନଙ୍କ ସହିତ ଦି'ପଦ କଥାଭାଷା କରି ଚାଲିଯାଇଛନ୍ତି ସେଠୁଁ । ବାପା ରାହାସବାବୁ ଚାଲି ଯାଇନାହାନ୍ତି, କିନ୍ତୁ ଖଣ୍ଡେ ଦୂରରେ ବସିଛନ୍ତି ପାଖ କମରାରେ । ଉଚ୍ଛୁଳ ତରଙ୍ଗକୁ ସୀମାବଦ୍ଧ କରି ରଖିଲା ପରି । ଏବଂ ଦୃଶ୍ୟଟିକୁ ଉପଭୋଗ କରୁଛନ୍ତି, ପରମ ଗର୍ବ ଏବଂ ଆନନ୍ଦର କଥା ସହିତ । ମା'ଆ ସରୋଜିନୀ ଆସୁଛନ୍ତି ଯାଉଛନ୍ତି ଅତିଥିମାନଙ୍କୁ ଚା'ଜଳଖିଆ ପରଷିବା ଲାଗି ।

'ମନେ ଅଛି ଜିତୁଭାଇ ?'ର କ୍ରମରେ ଜଣେ କିଏ ଗୋଟାଏ ଉପାଖ୍ୟାନ ବାଢ଼ି ବସିଲା, ଯାହା ବର୍ଷିକ ତଳେ ରାଜ୍ୟରେ ଚହଲ ପକେଇଥିଲା—ଯେତେବେଳେ ଜନକଲ୍ୟାଣ ସରକାରର ଗଣବିରୋଧୀ ନାନା କୁକର୍ମ ବିରୁଦ୍ଧରେ ବିକ୍ଷୋଭ କରିବାର ପରିପ୍ରେକ୍ଷୀରେ ସହରର ମୁଖ୍ୟ ଡାକଘରକୁ ରାତାରାତି ପୋଡ଼ି ଦିଆହୋଇଥିଲା, କିନ୍ତୁ କିଏ ଏଇ କାଣ୍ଡ କରିଛି ବୋଲି ଜଣାପଡ଼ିଲା ନାହିଁ । ସର୍ବମଙ୍ଗଳ ପାର୍ଟିର ନେତାମାନେ କହିଲେ ଆମେ ହିଂସାରେ ବିଶ୍ୱାସ କରୁ ନାହିଁ । ଗୁଣ୍ଡାଗିରି ଆମ ଜାତକରେ ନାହିଁ କିନ୍ତୁ ଜାଣିବା ଲୋକେ ଜାଣିଲେ କିଏ ସେଥିପାଇଁ ଦାୟୀ । ଏହେତୁ ଉପଖ୍ୟାନଟି ଆରମ୍ଭ ହେଉ ନହେଉଣୁ ରହିଗଲା ଅପ୍ରକାଶ । ମଣ୍ଟୁବାବୁ ଭୂରୁ କୁଞ୍ଚେଇ ଅନେଇଲେ ଅର୍ବାଚୀନ ଅପରିପକ୍ୱ ଲୋକଟା ଆଡ଼କୁ । ଏବଂ ଇନ୍ଦ୍ରଜିତ୍ ଯେପରି ଭାବରେ ଅନେଇଲା ତା' ବାପାଙ୍କ ଆଡ଼କୁ, ହୁଏତ ମୁହୂର୍ତ୍ତିକ ପାଇଁ, ସେଥିରେ କିଞ୍ଚିତ୍ ନିସ୍ତାର ଭାବ ଥିଲା ବୋଲି କହିଲେ ଭୁଲ୍ ହେବ ନାହିଁ ।

କିନ୍ତୁ ରାଧାସବାବୁ ଯେଉଁ ଆମୋଦମଧୁର ଗୃହାଣିଟିଏ ବଢ଼ାଇଦେଲେ ପୁଅ ଆଡ଼କୁ, ତା'ର ଅର୍ଥ ସେ ଧର ପାର ନଥିବ—

ହଁରେ ପୁଅ, ମୁଁ ଜାଣିଛି । ମୁଁ ଜାଣିଛି । ଜାଣିଛି ଯେ ତୁ ସେଇ ଦଳରେ ଥିଲୁ । କହିବାକୁ ଗଲେ ବାନରସେନାଙ୍କ ଭିତରେ ତୁଇ ଥିଲୁ ଅସଲ ହନୁମାନ୍ । ମୋର ଗୁପ୍ତଚର ମୋତେ ଟିକନଖି ସବୁ ଖବର ଦେଇଛି । କିନ୍ତୁ କ'ଣ ହେଲା ସେଥିରେ ? ଏ ଯୁଗର ହନୁମାନ୍ ଆଉ କଭଳି ଖାରତ୍ୱ ଦେଖାଇବ, ଶତ୍ରୁପକ୍ଷକୁ ଚମକେଇଲା ଭଳି ଏମିତି ଗୋଟାଏ ଚମତ୍କାର ଦେଖେଇବା ଛଡ଼ା ?

ଏହି ଆନନ୍ଦ ଉତ୍ସବରେ କଏ ସବୁଠାରୁ ବେଶୀ ଖୁସି ହେଉଥିବ ? ସହଜେ ପୁଅର ମାଆ ହୋଇଥିବେ ବୋଲି ଭାବିବା ସ୍ୱାଭାବିକ । ହଁ, ଆନନ୍ଦରେ ତାଙ୍କ ମନ ଘର ଧରୁ ନଥିଲା । କିନ୍ତୁ ଯାଉଣୁ ଆସୁଣୁ ପୁଅର ରାଜକାନ୍ତ ଠାଣିକୁ ଦେଖି ଗୋଟାଏ ଅହେତୁକ ଭୟ ମଧ ତାଙ୍କ ମନକୁ ଆସୁଥିଲା ଏବଂ ସେ ମାଆ ବିମଳାଙ୍କୁ ପୁଣି ମନେ ପକାଉଥିଲେ—

ଏତିକରେ ଥାଉ ମାଆ, ଏତିକରେ ଥାଉ । ଏଇ ଯଥେଷ୍ଟ । ସେ ଆହୁର ଉଚ୍ଚକୁ ନଯାଉ, ମନ୍ତ୍ରୀ ଫନ୍ତ୍ରୀ କିଛି ନହେଉ !

( ୨ )

ଇତିମଧ୍ୟରେ ପାଞ୍ଚ ବର୍ଷ ବିତିଗଲାଣି ।···

ଦ-ଦ'ଟା ନିର୍ବାଚନ ସରିଗଲାଣି । ପ୍ରଥମଟିର ଫଳାଫଳ ଅନୁଯାୟୀ ଜନକଲ୍ୟାଣ ସରକାର ଗାଦିଚ୍ୟୁତ ହୋଇଥିଲା ଏବଂ ସର୍ବମଙ୍ଗଳ ପାର୍ଟି କ୍ଷମତାକୁ ଆସିଥିଲା । କିନ୍ତୁ ତାଙ୍କର ପାଞ୍ଚବର୍ଷିଆ କାର୍ଯ୍ୟକାଳ ପୂରିଲା ପୂର୍ବରୁ ଯେଉଁ ନିର୍ବାଚନ କରାଇବାକୁ ପଡ଼ିଲା, ତା'ର ସମ୍ପୂର୍ଣ୍ଣ ଫଳାଫଳ ଘୋଷିତ ହେଲା ପରେ ସ୍ପଷ୍ଟ ଜଣା ପଡ଼ୁଛି ଯେ ଏଥର ଜନକଲ୍ୟାଣ ପୁଣି ଫେରି ଆସିବ କ୍ଷମତାକୁ । ଯଦିଓ କେତୋଟି ଗ୍ରୁପ୍ ଗ୍ରୁପ୍ ପାର୍ଟିଙ୍କ ସହିତ ମେଣ୍ଟ ବାନ୍ଧିବା ଦରକାର ପଡ଼ିପାରେ । କିନ୍ତୁ ସର୍ବମଙ୍ଗଳ ଅନେକ ପଛରେ । ସରକାର ଗଢ଼ିବାର କୌଣସି ଆଶା ନାହିଁ ତାଙ୍କ ପାଇଁ । ବିଶେଷ ଲକ୍ଷ୍ୟର ବିଷୟ ଯେ ପାର୍ଟିର ଏକାଧିକ ତୁଙ୍ଗ ନେତା ଓ ନେତ୍ରୀ ଟଳି ପଡ଼ିଛନ୍ତି । ତାଙ୍କ ଭିତରେ ଅଛନ୍ତି ମ୍ୟାଡ଼ାମ୍ ଶ୍ରୀରାଧା ହାମନ୍ତରାଏ, ଯେ ବିଦାୟୀ ମନ୍ତ୍ରିମଣ୍ଡଳରେ ଶିକ୍ଷା ଓ ସଂସ୍କୃତି ମନ୍ତ୍ରୀ ହେବା ଛଡ଼ା ପାର୍ଟିର ଏକ ପ୍ରଚଣ୍ଡ ଶକ୍ତିରୂପିଣୀ ପ୍ରତୀକ ରୂପେ ପ୍ରତିଭାତ ହେଉଥିଲେ । ନଥିଲେ କି ଇନ୍ଦ୍ରଜିତ୍ ପ୍ରଥମ ସାକ୍ଷାତ୍‌ରେ ହିଁ ତାଙ୍କୁ ତା'ର ତେଜସ୍ୱିନୀ ମାଆ ବୋଲି ବରି ନେଇଥା'ନ୍ତା ?

…ମୋ ଜନ୍ମକଲା ମାଆକୁ ମୁଁ ଭଲ ପାଏ । ଅତ୍ୟଧିକ ଭଲ ପାଏ । କିନ୍ତୁ ସେ ମୋର କର୍ମକ୍ଷେତ୍ରର ନେତ୍ରୀ ହୋଇ ପାରି ନ ଥା'ନ୍ତା । ସେଇ ଅଭାବଟା ଚାଲିଗଲା ଏଥର । ଥ୍ୟାଙ୍କ୍ ୟୁ । ଥ୍ୟାଙ୍କ୍ ୟୁ ମଣ୍ଟୁ ଭାଇ । ଥ୍ୟାଙ୍କ୍ ୟୁ ମୋର ଉଦାର ବାପା ଏବଂ ମୋର ଆଦରଣୀୟା ସହକର୍ମୀଗଣ । ତୁମମାନଙ୍କ ଯୋଗୁଁ ମୋତେ ମିଳିଯାଇଛି ଆଜି ଏଇ ତେଜସ୍ୱିନୀ ମାଆ ଜଣକ । ଏଣିକି ଦେଖ ମୋର କର୍ମନୈପୁଣ୍ୟ…

ଏହିପ୍ରକାର ଉଦ୍‌ଭାସିତ ଏବଂ ଉଦ୍ବେଳିତ ହୋଇ ସେ ଫେରି ଆସିଥିଲା ସେଦିନ ତାଙ୍କ ପାଖରୁ । ଯୁବ ସର୍ବମଙ୍ଗଳାର ସଚିବ ପଦରେ ଅଧିଷ୍ଠିତ ହେବାର କିଛିଦିନ ପରେ । ଠିକଣା ଭାବରେ କହିବାକୁ ଗଲେ, ଉତ୍ସବ ଆସରର ପରବର୍ତ୍ତୀ ଦିନ ।

ଆଜି ତାଙ୍କ ଭିତର ଡ୍ରଇଂରୁମ୍‌ର ସୋଫାରେ ବସିରହି ମ୍ୟାଡ଼ାମ୍‌ଙ୍କର ଆସିବାକୁ ଅପେକ୍ଷା କରିଥିବା ବେଳେ ତା'ର ମନେପଡ଼ି ଯାଉଥିଲା ସେଦିନର ସେହି ଅବିସ୍ମରଣୀୟ ଅନୁଭବ ଏବଂ ସେଥିର ଶିହରଣ ମଧ୍ୟ ଫେରି ଆସିଲା ପରି ଲାଗୁଥିଲା ତାକୁ । ପରବର୍ତ୍ତୀ ପାଞ୍ଚବର୍ଷରେ ଅନୁଭୂତ ଶିହରଣର ଉତ୍ସ ।

…ଇସ୍ ! ମ୍ୟାଡ଼ାମ୍ କ'ଣ ଏତେ ସୁନ୍ଦର ଦେଖିବାକୁ ? ଆଖି ନାକ କାନ ଇତ୍ୟାଦିର ମାପଚୁପରେ ତାଙ୍କୁ ହୁଏତ ପର୍‌ଫେକ୍ଟ୍ କୁହାଯିବ ନାହିଁ । ତାଙ୍କଠାରୁ ବଳି ଗୌରାଙ୍ଗୀ ମଧ୍ୟ ଆହୁରି ଅଛନ୍ତି କିନ୍ତୁ ମୁଁ ପୂର୍ବରୁ ଦେଖି ନଥିଲି ଏଭଳି ଦୀପ୍ତିମନ୍ତ ଗୃହିଣୀ, ଯାହା ତାଙ୍କ ସର୍ବାଙ୍ଗରୁ, ସମଗ୍ର ବ୍ୟକ୍ତିତ୍ୱରୁ ଉତୁରି ଆସୁଛି । ଖାସ୍ ମୋତେ ହିଁ କିଛି କହିବ ବୋଲି । ଆତ୍ମୀୟତାରେ ଜୁଡ଼୍‌ବୁଡ଼୍ ହେଲେ ଲେଶମାତ୍ର ଦୁର୍ବଳତା ନାହିଁ ସେଥିରେ । ସତେକି ସେ କେବଳ ମାଆ ନୁହନ୍ତି, ସେ ମଧ୍ୟ ଦେବୀ, ଏବଂ ସେ ଚାହାନ୍ତି ମୁଁ ଦେବୀଙ୍କର ଯୋଗ୍ୟ ସନ୍ତାନ ହୋଇ ପାରିବି…

ଅକୁହା କଥା ଶବ୍ଦାୟିତ ହେଲା ଏବଂ ଇନ୍ଦ୍ରଜିତ୍ କେଉଁ ଗୋଟିଏ ବୋଲି ଶବ୍ଦକୁ ହରେଇବାକୁ ଚାହିଁଲା ନାହିଁ । ଏଇ ହେଉଛନ୍ତି ସର୍ବମଙ୍ଗଳା ପାର୍ଟିର ସ୍ୱନାମଧନ୍ୟା ନେତ୍ରୀ । ଯେ ସ୍ୱାମୀଙ୍କ ମୃତ୍ୟୁପରେ (ବରିଷ୍ଠ ପ୍ରଶାସକ ପଦରୁ ବାଧ୍ୟତାମୂଳକ ଅବସର ନେଲାପରେ ସେ ବେଶୀଦିନ ବଞ୍ଚି ରହି ପାରିଲେ ନାହିଁ), ନିଜକୁ ଉତ୍ସର୍ଗ କରିଛନ୍ତି ଦେଶ ସେବାରେ । ଲକ୍ଷ ଲକ୍ଷ ସନ୍ତାନଙ୍କର ଜନନୀ ହେବା ଲାଗି, ଯଦିଓ ତାଙ୍କ ନିଜର ପିଲାଟିଏ ନାହିଁ । କିମ୍ବା ହୁଏତ ସେଇଥିଲାଗି । କହିଲେ କେତୋଟି ସାରକଥା, ଇନ୍ଦ୍ରଜିତ୍‌କୁ ବସେଇ ଦେଲା ପରେ । ମନେ ପଡ଼ିଯାଉଛି ସେଥିର ଅନ୍ତିମ ଶେଷ ପଦ କେତୋଟି—

"...ତୁମେ କରିଯାଅ ତୁମର କାମ । ଏଣିକି ତୁମେ କେବଳ କର୍ମୀ ନୁହେଁ, ମଧ୍ୟ ଜଣେ ନେତା । କେବଳ ସିପାହୀ ନୁହଁ, ମଧ୍ୟ ଜଣେ ସେନାପତି । କିନ୍ତୁ ମନେରଖ ଯେ ତୁମ ଉପରକୁ ମଧ୍ୟ ଅଛନ୍ତି ଏକାଧିକ ସେନାପତି, ବିଭିନ୍ନ ଦିଗ୍‌ଦର୍ଶନ ଦେବା ଲାଗି ଏବଂ ଭୁଲିବ ନାହିଁ, କଦାପି ଭୁଲିବ ନାହିଁ ଯେ ସର୍ବୋପରି କେବଳ ଜଣେ । ଭାରତମାତା । ତାଙ୍କର ସେବା ପାଇଁ ତୁମେ ଆସିଛ ଏଠିକି, ତାଙ୍କୁ ହିଁ ଜିତେଇବା ପାଇଁ ।"

ଆପଣ ହିଁ ଭାରତମାତା ମ୍ୟାଡ଼ାମ୍ । ଇନ୍ଦ୍ରଜିତ୍‌ର ମନକୁ ଆସିଲା ।

"ସେଇ ହେଉଛି ତୁମ କାମ । କର୍ମଂ ବା ସାଧୟେତ୍, ଶରୀରଂ ବା ପାତୟେତ୍ । କେବଳ ନିଜ ଶରୀର ନୁହେଁ, ଅନ୍ୟମାନଙ୍କର ମଧ୍ୟ । ଆତ୍ମବଳି ଓ ଶତ୍ରୁନିଧନ ଗୋଟିଏ ସୂତ୍ରରେ ଗୁନ୍ଥା । ବୁଝୁଛ ନା ଇନ୍ଦ୍ରଜିତ୍, ମୁଁ ଯାହା କହୁଛି ?"

"ୟେସ୍ ମ୍ୟାଡ଼ାମ୍ !" ଇନ୍ଦ୍ରଜିତ୍ ମୁଣ୍ଡ ଟେକିଧରି କହିଲା, ଦୃଢ଼ତାର ସହ ।

"ତେବେ ଲାଗିପଡ଼ ଆଜିଠୁଁ । ଖାଲି ଏଇ ଇଲେକ୍‌ସନ୍‌ଟା ଜିତିବା ପାଇଁ ନୁହେଁ । ୟା'କୁ ତ ଆମେ ଜିତିବୁ, ସନ୍ଦେହ ନାହିଁ ଏଥିରେ । କିନ୍ତୁ ଦେଖ ଯେମିତି ଏଇ ଜିତାପଟ ଜାରି ରହେ କାଲି କାଲିକୁ । ନହେଲେ ଆମେ ମାଆକୁ ଠକିଦେଲୁ ଜାଣ ।"

"ନା, ମାଆ, ତା'କଦାପି ହେବ ନାହିଁ !"

ବୋଧହୁଏ ସେ ଆଶା କରି ନଥିଲେ ଏତେ ଶୀଘ୍ର ଏଭଳି ପ୍ରତିଶ୍ରୁତିଟିଏ ପାଇବେ ବୋଲି ତାଙ୍କ ଭକ୍ତଠାରୁ । ଯେ ତାଙ୍କୁ ମାଆ ବୋଲି ଡାକିଲା ! ତାଙ୍କ ଗୃହାଣି ଝଲି ଉଠିଲା । ବିସ୍ମୟରୁ ବଳି ଆନନ୍ଦରେ । ସେଇଠୁଁ ଇନ୍ଦ୍ରଜିତ୍ ତାଙ୍କ ପାଦ ଛୁଇଁ ପ୍ରଣାମ କଲା ଏବଂ ସସ୍ମିତା ମାଆ ତାକୁ କହିଲେ ଆଶୀର୍ବାଦ ଦେଲା ବେଳକୁ—

"ଇନ୍ଦ୍ରଜିତ୍ ଭଳି ପୁଅଟିଏ ଥାଉଁ ଥାଉଁ ଆଉ ଚିନ୍ତା କ'ଣ ଆମର ?"

ଇନ୍ଦ୍ରଜିତ୍ ସେଇ ପହିଲି ରୋମାଞ୍ଚକୁ ପୁଣି ଥରେ ଅନୁଭବ କଲା । ଅନ୍ତରର ନିବିଡ଼ରେ । ଏବଂ କହିଲା ମନେ ମନେ—ନା ମାଆ, ଆମେ ହାରି ଯାଇ ନାହୁଁ । ଯାଏ ଗୋଟାଏ ସାମୟିକ ବିଚ୍ୟୁତି, ଆଉ କିଛି ନୁହେଁ । ଭାରତମାତା କ'ଣ କେବେ-ହେଲେ ହାରି ଯାଇପାରେ ?

ପୁନରୁଜ୍ଜୀବିତ ହେଲା ପରି ଇନ୍ଦ୍ରଜିତ୍ ନିଜକୁ ସଳଖେଇ ନେଲା ଯୋଫା ଉପରେ, ଏବଂ ଅନେଇ ରହିଲା ଭିତର କମରାର ଦରଜାରେ ଝୁଲୁଥିବା ପରଦା

ଆଡ଼କୁ । ପରଦାରେ ଅଙ୍କା ହୋଇଥିବା ପୂର୍ଣ୍ଣକୁମ୍ଭକୁ ସନ୍ତର୍ପଣରେ ଆଡ଼େଇ ଦେଇ, ଏଇକ୍ଷଣି ବାହାର ଆସିବେ ସେ, 'ମା ଭୈଃ !'ର ବାଣୀ ଶୁଣାଇବେ, ଏବଂ ଆମେ ପୁଣି ଏକ ନୂତନ ଅଭିଯାନର ଚଠା ପ୍ରସ୍ତୁତ କରିବା ।

କିନ୍ତୁ ପୂର୍ଣ୍ଣକୁମ୍ଭକୁ ଭୃକ୍ଷେପ ନ କରି ଆଡ଼େଇ ଦେଇ ଯେ ପଶି ଆସିଲେ ଭିତରକୁ ସେ ମ୍ୟାଡ଼ାମ୍ ନ ଥିଲେ । ଜଣେ ଟୋକା, ତା'ର ବୟସର । ହେଲେ ଯେମିତି ଫିଟ୍‌ଫାଟ୍, ଠାଣି ବି ସେମିତିକା । ହଠାତ୍ କେଇ ହେଉଛି ଏଇ ଘରର ଯୁବରାଜ, ଅସଲ କର୍ତ୍ତା । ଏବଂ ଆଗନ୍ତୁକ ଉପରେ ଆଖି ପଡ଼ିଲାକ୍ଷଣି ସେ ଏମିତି କାବା ହେଲା ପରି ଦିଶୁଛି, ଯେମିତିକି ତାକୁ ନିଜ ଘରେ କେଉଁ ଅପଦୃଶ୍ୟ ଦେଖିବାକୁ ପଡ଼ୁଛି । ପଚାରିଲା—

"କିଏ ତମେ, କାହାକୁ ଖୋଜୁଛ ?"

ଟୋକା ବୋଧହୁଏ ଜାଣେ ନାହିଁ ଯେ ମୁଁ ଏଇଠି ବସିବା ଲୋକ । ଦରଲୋକ । ଦାଣ୍ଡପିଣ୍ଡାରେ ଅପେକ୍ଷା କରି ବସିବା ମୋର ଅଭ୍ୟାସ ନୁହେଁ । ଇନ୍ଦ୍ରଜିତ୍ ସିଧାସଳଖ ଉତ୍ତର ଦେଲା—

"ମୋ ନାଁ ଇନ୍ଦ୍ରଜିତ୍ ମହାନ୍ତି । ମୁଁ ରଞ୍ଜନାଙ୍କୁ ଫୋନ୍ କରି ଜଣେଇ ଦେଇଥିଲି ଏଠିକି ଆସିବି ବୋଲି—"

"ହ୍ୱାଟ୍ ? ୟୁ ମିନ୍ ରଞ୍ଜୁ...କେବେଠୁଁ ଜାଣିଛ ତାଙ୍କୁ ?"

ଇନ୍ଦ୍ରଜିତ୍ ସ୍ୱଚ୍ଛନ୍ଦରେ କହିପାରିଥାନ୍ତା ଯେ ସେ ପାର୍ଟିର ଜଣେ ସମ୍ମାନନୀୟ କର୍ମକର୍ତ୍ତା, ଏବଂ ମ୍ୟାଡ଼ାମଙ୍କ ସହିତ ତଥା ତାଙ୍କ ପାଖରେ ରହୁଥିବା ଝିଆରି ରଞ୍ଜନା ସହିତ ତା'ର ଅନେକ ଦିନର ପରିଚୟ । କିନ୍ତୁ ସେ କୌଣସି ସଫେଇ ଦେବାର ମୁଡ୍‌ରେ ନ ଥିଲା ।...ତୁ କିଏ ମୋତେ ଜେରା କରିବାକୁ ? ହୋଇପାରେ ତୁ ତାଙ୍କର କୋଉ ସମ୍ପର୍କୀୟ । ତା'ବୋଲି ମୋର ସମ୍ପର୍କ, କର୍ମଜଗତର ସମ୍ପର୍କ, କିଛି କମ୍ ନୁହେଁ । ବରଂ ଅଧିକ ମୂଲ୍ୟବାନ୍ । ବୁଝିଲୁ ?...ଇନ୍ଦ୍ରଜିତ୍ କେବଳ ହସିଦେଲା ଗୋଟାଏ ଅବାନ୍ତର ପ୍ରଶ୍ନ ଶୁଣିଲା ପରି । ଏବଂ ତାକୁ ମଜା ଲାଗିଲା ଯେ ଲୋକଟା ରାଗି ଉଠୁଛି, ହେଲେ ବୁଝିପାରୁନି କ'ଣ କରିବ ବୋଲି ।

ଭାଗ୍ୟ ଭଲ ଠିକ୍ ଏଇ ସମୟରେ କୁମାରୀ ରଞ୍ଜନା ମଧ୍ୟ ପରଦା ଠେଲି ବାହାରି ଆସିଲେ ଏବଂ ଇନ୍ଦ୍ରଜିତ୍‌କୁ ଦେଖି କହିଲେ—

"ହ୍ୟାଲୋ...ଆଉ ଟିକିଏ ଅପେକ୍ଷା କରିବାକୁ ହେବ ଆପଣଙ୍କୁ । ମାଉସୀ ବ୍ୟସ୍ତ ଅଛନ୍ତି ଗୋଟାଏ କାମରେ—"

ସେଇଠୁଁ ଦୃଶ୍ୟମାନ ବ୍ୟକ୍ତିର ବିମୂଢ଼ତାକୁ ଲକ୍ଷ୍ୟ କରି ସେ ହସିଦେଲେ ଫିକ୍-କିନା ଏବଂ ତା'ହାତକୁ ଧରି ପକେଇ କହିଲେ—

"ଏ ଜଣେ ଭଦ୍ରଲୋକ ଆମର । ପାର୍ଟି ଓ୍ୱାର୍କର୍ ।"

"ଆଇ ସି—", ଆଉ ଲୋକଟା କହିଲା ବସେଇ ବସେଇ । ସତେକି କଥାଟା ସ୍ପଷ୍ଟ ହୋଇଗଲା ଏଥର । ସେଇଠୁଁ ଦୁହେଁ ହାତ ଧରାଧରି ହୋଇ ପ୍ରସ୍ଥାନ କଲେ ।

କେବଳ ପାର୍ଟି ଓ୍ୱାର୍କର୍ ? ଆଉ କିଛି ନୁହେଁ ? ଏବଂ ଲୋକଟା 'ଆଇ ସି—' ବୋଲି ଯେମିତି କହିଲା, ସେଥିରୁ ମନେହେବ ସେ ବେଶ୍ ବୁଝିପାରୁଛି ସେମାନେ କେଉଁ ଧରଣର ଲୋକ । ନେତାମାନଙ୍କ ହାତବାରିସି, ଟହଲିଆ, ଅବା ସେମିତିକା କିଛି । ଇନ୍ଦ୍ରଜିତ୍ ରାଗିଲା, ଏବଂ ଦୁଃଖ କଲା ଯେ ତାକୁ ଠିକଣା ଜବାବ୍ ଦେବାକୁ ସମୟ ମିଳିଲା ନାହିଁ । କିନ୍ତୁ ରଞ୍ଜନା କ'ଣ କଥାଟାକୁ ଉଚିତ ଭାବରେ କହି ପାରି ନ ଥା'ନ୍ତା ? ଏତେଦିନର ଜଗୁବାବୁ, ଯାହାଙ୍କଠାରୁ ସେ ଦୁନିଆ ଖବର, ଗୁପ୍‌ଚୁପିଆ ପଲିଟିକ୍ସ ଖବର ଜାଣିବା ପାଇଁ ନେହୁରା ହୁଏ (ବେଳେ ବେଳେ ଗୋଟାଏ ରୋମାଣ୍ଟିକ୍ ଭାବ ମଧ୍ୟ ଆସେ ମୋ ମନକୁ ତା'ର ହାଲୁକା ପିଲାଳିଆ ରଙ୍ଗଢଙ୍ଗ ସତ୍ତ୍ୱେ, ସେକଥା ଗୁଡ଼ି), ସେ ଆଜି କେବଳ ଗୋଟାଏ ଭଦ୍ରଲୋକ ହୋଇ ରହିଗଲେ ? ଏନି ଓ୍ୱେ, ତୋ ଉପରେ ରାଗି କରି ଲାଭ ନାହିଁ । ମୁଁ ତୋ ପାଖକୁ ଆସି ନାହିଁ । ଆସିଛି ତୋ' ମାଉସୀ, ହେଲେ ମୋର ମ୍ୟାଡ଼ାମ୍, ମାନେ ମାଆଙ୍କ ପାଖକୁ । ସେଇ ଜାଣନ୍ତି ତାଙ୍କ ପୁଅକୁ । ଇନ୍ଦ୍ରଜିତ୍ ଭଳି ପୁଅଟିଏ ଥାଉଁ ଥାଉଁ"...

ଶେଷକୁ ମ୍ୟାଡ଼ାମ୍ ଆବିର୍ଭୂତ ହେଲେ ଇନ୍ଦ୍ରଜିତ୍ ସାମ୍ନାରେ ।

ଇନ୍ଦ୍ରଜିତ୍ ତା'ର ପାଞ୍ଚବର୍ଷ ତଳର ସ୍ମୃତିକୁ ମନପ୍ରାଣ ଦେଇ ଡାକି ଆଣିଥିଲା ସତ, କିନ୍ତୁ ତା'ମନରେ ମଧ୍ୟ ଯତ୍‌ସାମାନ୍ୟ ଆଶଙ୍କା ରହିଥିଲା ଯେ ନିର୍ବାଚନରେ ହାରିଯାଇଥିବା ମ୍ୟାଡ଼ାମ୍ ଠିକ୍ ପୂର୍ବଭଳି ପ୍ରସନ୍ନ-ସୁନ୍ଦର ଦେଖାଯିବେ ବୋଲି କହି ହେବ ନାହିଁ । ଅଧିକନ୍ତୁ ସେ ଅଳ୍ପବହୁତ ରାଗିଯାଉଛନ୍ତି, ଏବଂ ଦୋଷ ଦେଇ ପାରନ୍ତି ଯୁବସର୍ବମଙ୍ଗଳର କର୍ମୀ ଓ କର୍ମକର୍ତ୍ତାମାନଙ୍କୁ, ଯେ ସେମାନେ ପାର୍ଟିକୁ ଜିତେଇ ପାରିଲେ ନାହିଁ, ଯାହା ତାଙ୍କଠୁଁ ଆଶା କରାଯାଉଥିଲା । ଯଥେଷ୍ଟ ମାଡ଼ପିଟ ଜନ୍ଦାରି ହୋଇଛି ଏଇ ନିର୍ବାଚନରେ, ଦୁଇଦଳ ଓ ତାଙ୍କ ସମର୍ଥକମାନଙ୍କ ମଧ୍ୟରେ । ମୋଟ ତେଇଶଜଣ ଲୋକ ପ୍ରାଣ ହରେଇଛନ୍ତି । ଥୋକେ ପୁଲିସ୍‌ର ଗୁଳିମାଡ଼ରେ, ଏବଂ ଅନ୍ୟମାନେ ହଣାକଟା ହୋଇ । ଠିକ୍ ଅଛି । ଗଣତାନ୍ତ୍ରିକ ନିର୍ବାଚନରେ ଏମିତି ହୁଏ । କିନ୍ତୁ ତଥାପି ସେମାନେ ଜିତିଲେ, ଏବଂ ଆମେ

ହାରଲୁ । ତା'ଛଡ଼ା ତାଙ୍କ ରାଗିବାର ଗୋଟିଏ ବିଶେଷ କାରଣ ଅଛି । ମ୍ୟାଡ଼ାମ୍‌ଙ୍କର ମରୁଆ ନିର୍ବାଚନ ମଣ୍ଡଳୀରେ ଅପରପକ୍ଷର ଜଣେ ପ୍ରଭାବଶାଳୀ ଥିଲାବାଲା ସ୍ଥାନୀୟ ନେତାଙ୍କୁ ମାରି ଦିଆ ହୋଇଛି । ତେଣୁ ମ୍ୟାଡ଼ାମ୍ ଭାବିପାରନ୍ତି ଯେ ସେଇଥିପାଇଁ ଲୋକେ ଫିଙ୍ଗିକଗଲେ । ଇନ୍ଦ୍ରଜିତ୍ ତା'ର ଦୋଷ ସ୍ୱୀକାର କରିବାକୁ ପ୍ରସ୍ତୁତ ଥିଲା । ତେବେ ସେ କହିବ ଯେ ଘଟଣା ଏତେଦୂର ଯାଇ ନଥାଆନ୍ତା ଯଦି ଲୋକଟା ମ୍ୟାଡ଼ାମ୍‌ଙ୍କ ଚରିତ୍ର ନେଇ ନାନା କୁତ୍ସିତ ଆକ୍ଷେପ କରି ନଥାନ୍ତା । କିନ୍ତୁ ସେ ଯାହା କହିଲା, ସେଥିରେ ତା'ର ରକ୍ତ ତାତି ଉଠିଲା । ମାଆର ଅପମାନ ସହି ହେଲା ନାହିଁ, ଏବଂ ସେ ଦଳର ସିପାହୀମାନଙ୍କୁ ଇଙ୍ଗିତରେ ନିର୍ଦ୍ଦେଶ ଦେଲା ତା' ଉପରେ ଟେକା-ପଥର ବୃଷ୍ଟି କରିବା ଲାଗି । ହଁ, ସେ ନିଜେ ବି ଗୋଟାଏ ବୋଲୁଅ ଫିଙ୍ଗିଥିଲା, ଯାହା ତା' ମୁଣ୍ଡରେ ବାଜି ଥାଇପାରେ । କିନ୍ତୁ କିଏ ଜାଣିଥିଲା ସେ ଏଇ ଟେକା-ମାଡ଼ରେ ଟଳି ପଡ଼ିବ ? ଏତେ ସୁକୁମାରିଆ ଯଦି, କିଏ ତାଙ୍କୁ କହୁଥିଲା ଫୁଲ୍‌କା ଉପରକୁ ଉଡୁକି ଆସିବା ଲାଗି ? ହଉ, ମୁଁ ସବୁ ମାନିନେବି । ଯେତେହେଲେ ସବୁ ତ ହେଇ ଦେଶମାତୃକା ପାଇଁ, ମାନେ ମାଆର ମାନ ବଞ୍ଚେଇବା ପାଇଁ ?

ମାଆମାନେ ମଧ୍ୟ ରାଗନ୍ତି । ଏବଂ ରାଗିଲେ ସେମାନେ ପୁଅମାନଙ୍କ ସଫେଇ ଶୁଣିବାକୁ ପ୍ରସ୍ତୁତ ନଥାଆନ୍ତି । ହଉ, ଝଡ଼ ବହିଯାଉ । ତା'ପରେ ଆମେ ଆଗ ଭଳି ମୁହଁକୁ ମୁହଁ ଯୋଡ଼ି ବସିବୁ ଏଇ କମରାରେ, ଏବଂ ଭବିଷ୍ୟତର ଖସଡ଼ା ତିଆରି କରିବୁ । ଗୋଟାଏ ହିସାବରେ ଇନ୍ଦ୍ରଜିତ୍ ଭାବି ଖୁସିହେଲା ଯେ ସେ ଅନ୍ତତଃ ଗୋଟାଏ ସାମାନ୍ୟ ଚହଲାଲୋକ ନୁହେଁ ୟାଙ୍କ ପାଇଁ । ଅତି ଆପଣାର ଜଣେ । ନହେଲେ ସେ ଏମିତି ରାଗିପାରି ନଥାଆନ୍ତେ । ସେହେତୁ ସେ ଚୁପ୍‌କିନା ଶୁଣିଯାଉ-ଥିଲା, ମଥା ପାତି ସହି ଯାଉଥିଲା ତାଙ୍କର ଭର୍ତ୍ସନା । କିନ୍ତୁ ହଠାତ୍ ଗୋଟାଏ ମସ୍ତବଡ଼ ବୋଲୁଅ ବାଜିଲା ଆସି ତା' ମଥାରେ, ଏବଂ ତା' ମୁଣ୍ଡ ଘୂରେଇ-ଗଲା । ଯେତେବେଳେ ସେ ଶୁଣିଲା ମ୍ୟାଡାମ୍ କହୁଛନ୍ତି—

"ପଦ୍ମକ୍ଷିତ ପାନ୍ଦ ମଞ୍ଚେ ଭଲ ହୋଇଛି । ଗୋଟାଏ କଣ୍ଟା ଯାଇଛି । ଏବଂ ଆମେ ଜାଣୁ ତମେ ଜଣେ ବିଚକ୍ଷଣ ଗୁଣ୍ଡା, ଯେଉଁଥିପାଇଁ ତମକୁ ନିଆଗଲା ଆମ ପାର୍ଟିକୁ, ଏବଂ ଉଚ୍ଚ ଆସନରେ ବସେଇ ଦିଆଗଲା । କିନ୍ତୁ ମୁଁ ଜାଣି ନଥିଲି ତମେ ଏମିତିକା ନିର୍ବୁଦ୍ଧିଆ ଗୁଣ୍ଡା । ଇଲେକ୍‌ସନ ପରେ ସେଇ କାମଟା କରିଲେ ଭଲ ହୋଇ ନଥାଆନ୍ତା ? ଏତିକ ବୁଝିଲ ନାହିଁ ଯେ ସେ ରାତାରାତି ଶହୀଦ୍ ହୋଇଗଲା, ଆଉ ଆମ ଭୋଟ୍ ମାଡ଼ ଖାଇଗଲା ?···

ଏଁ ? ଗୁଣ୍ଡା ? ଇନ୍ଦ୍ରଜିତ୍ ଭଲ ପୁଅଟିଏ (ଗୁଣ୍ଡାଟିଏ) ଥାଉଁ ଥାଉଁ ତମକୁ କେହି ହରେଇ ପାରିବେ ନାହିଁ ବୋଲି ଭାବିଲ ? ଏଇ ହେଉଛି ତମର ମାଆପଣିଆ ?

ଆହତ ଇନ୍ଦ୍ରଜିତ୍‌ର କାନରେ ପହଞ୍ଚିଲା ନାହିଁ ସେ ଆଉ ଯାହା ସବୁ କହୁଛନ୍ତି । କହୁଛନ୍ତି ଯେ ପୁଲିସ୍ କେସ୍‌ରେ ପାର୍ଟିର କିଛି କରିବାର ନାହିଁ । ଆମ ହାତରୁ କ୍ଷମତା ଚାଲିଗଲାଣି ତା' ନୁହେଁ, ସମସ୍ତେ ଜାଣନ୍ତି ଯେ ଆମେ ହିଂସାରେ ବିଶ୍ୱାସ କରୁନାହିଁ ।···ମାର ଗୋଲି ପୁଲିସ୍ କେସ୍‌କୁ ! ଯେଉଁ ରକ୍ତ ଝରୁଛି ଏଇକ୍ଷଣି, ଝରି ଚାଲିଛି ମୋ କଟାଘାଆରୁ, ତାକୁ ସମ୍ଭାଳିବ କେମିତି ?

ହଉ, ବୋହିଯାଉ, ନିଷ୍କାସିତ ହୋଇଯାଉ ଏଇ ପାଞ୍ଚବର୍ଷର ଯେତିକି ଅନୁଭବ, ଆଦର୍ଶ ଆଉ ଅଭିଳାଷ ଗୋଟାଏ ମିଛ ମାଆକୁ ନେଇ । ଗୁଣ୍ଡା ଜିତୁ ଏଥର ତା' ନିଜ କାମ କରିବ । ଦେଖିଲା କାମ । ହେଲେ ଏତେ ଊର୍ଦ୍ଧ୍ୱକୁ ଉଠିଯିବ ଯେ କେହି ଧରିପାରିବ ନାହିଁ ତାକୁ । ସ୍ୱର୍ଗର ଇନ୍ଦ୍ର କି ଇନ୍ଦ୍ରଜିତ୍‌କୁ କିଏ ଗୁଣ୍ଡା ବୋଲି କହିଲାଣି ନା କହିବ, ଯେତେ ଚଡ଼କ ପଡ଼ୁ ପଛେ ତମ ମୁଣ୍ଡରେ ?

( ୩ )

ଜନକଲ୍ୟାଣ ପାର୍ଟିର ତୁଙ୍ଗ ନେତା ପଞ୍ଚାନନ ଚୌଧୁରୀ ପୁଣି ଥରେ କହିଲେ, ସାମନାରେ ବସିଥିବା ଯୁବକଙ୍କ ଉଦ୍ଦେଶ୍ୟରେ—

"ଭଲ କରିଛ ବାବୁ, ଭଲ କରିଛ । ୟୁ ହାଭ୍ ଡନ୍ ଦ' ରାଇଟ୍ ଥିଙ୍ଗ୍ !" କିନ୍ତୁ ଏଥର ଆଉ ପଦେ ଯୋଡ଼ି ଦେଲେ ସେଥିରେ, ଯାହା ଇନ୍ଦ୍ରଜିତ୍‌କୁ ଭଲ ଲାଗିଲା ନାହିଁ । ଏବଂ ତା' ହାତ ମୁଠାଇ ହୋଇ ଆସିଲା ଆପେ ଆପେ । କହିଲେ, "ଭଲ କରିଛ ସେଇ ଖଚଡ଼ା ପାର୍ଟିରୁ ବାହାରି ଆସିଛ । ଆଉ ସେଇ ବଜ୍ଜାତ୍ ମାଇକିନିଆର କବଳରୁ···"

ଶାନ୍ତ ହୋଇଯା' ଜିତୁ । ଏଇକ୍ଷଣି ସେ ତୋର କେହି ନୁହେଁ । ସେ ବଜ୍ଜାତ୍ ମାଇକିନିଆ ହୁଅନ୍ତୁ କି ମାତୃଭୂଦେବୀ, ତାଙ୍କ ସାଙ୍ଗରେ ତୋର କିଛି ସମ୍ପର୍କ ନାହିଁ । ତୁ ଆସିଛୁ ତୋ' ମତଲବ ନେଇ । ଜିନିଷଟାକୁ ସ୍ପଷ୍ଟ କରିଦେ ସ୍ୟା'ଙ୍କ ଆଗରେ ।

କିନ୍ତୁ ସେ ଦିଗରେ କିଛି ଉଦ୍ୟମ କଲା ପୂର୍ବରୁ ଜଣେ ଭଦ୍ରମହିଳା ଆସି ପହଞ୍ଚିଗଲେ ଚା' ଜଳଖିଆ ନେଇ, ଅତିଥିଙ୍କୁ ଆପ୍ୟାୟିତ କରିବା ଲାଗି । ଏବଂ କହିଲେ, ନମସ୍କାରପୂର୍ବକ ଠିଆହେଉଥିବା ଇନ୍ଦ୍ରଜିତ୍‌କୁ—

"ବସ ପୁଅ । ଅନେକ ଦୂରରୁ ଆସିଛ ବୋଲି ଶୁଣିଲି । ଆଗେ ଟିକିଏ ସୁସ୍ଥ ହୋଇ ଉଠ । ତା'ପରେ ଗପୁଥା, ଯାହା ଗପିବ ତମେ ଦି'ଜଣଯାକ; ତମ ଗ୍ରେପାଛଡ଼ା ପଲିଟିକ୍ସ୍···" କୃଶାଙ୍ଗିନୀ ମିଷ୍ଟଭାଷିଣୀ ମଧ୍ୟ ହସି ଦେଲେ ଟିକିଏ ।

···ତେଜସ୍ୱିନୀ ନୁହଁନ୍ତି, କିନ୍ତୁ ଜ୍ୟୋତିର୍ମୟୀ । ପ୍ରକୃତରେ ଏମିତି ହେବା ଉଚିତ ମାଆମାନଙ୍କର । କହିବାକୁ ଗଲେ ମୋର ମାଆର ଇମେଜ୍, କିନ୍ତୁ ଅଧିକ

ଆତ୍ମବିଶ୍ୱାସ ଅଛି ସ୍ତ୍ରୀ'ଙ୍କ ଚେହେରାରେ । ଯେତେହେଲେ ଏତେ ବଡ଼ ନେତାଙ୍କ ସ୍ତ୍ରୀ । ଆଉ ଏଇକ୍ଷଣି ତ ମନ୍ତ୍ରିଆଣୀ, ନୂଆ କ୍ୟାବିନେଟ୍‌ର ନମ୍ବର ଦୁଇ ମନ୍ତ୍ରୀଙ୍କ ପତ୍ନୀ ।

ଜଗୁ ! ପୁଣି ସେଇ ମାଆପଣିଆର ଭୂତ ଧରୁଛି ତୋତେ ? ଟିକିଏ ଲାଜ ନାହିଁ ତୋ' ମୁହଁକୁ ? ହଁ ସେ ମନ୍ତ୍ରିଆଣୀ । ସେତିକି ଜାଣିବା ଦରକାର ତୋର । ତା'ର ଫାଇଦା ନେ, ଯେତେ ନେଇପାରୁଛୁ । ଏବଂ ତୋ ଭବିଷ୍ୟତକୁ ଠିକଣା କରିନେ, ବୁଝିଲୁ ?...

ଇନ୍ଦ୍ରଜିତ୍ ଯଥାଶୀଘ୍ର ନିଜକୁ ସଜାଡ଼ି ନେଲା । ଏବଂ ପଞ୍ଚାନନବାବୁ ଯାହା ସବୁ କହିବାକୁ ଲାଗିଲେ ଜନକଲ୍ୟାଣର ଆଦର୍ଶ ଓ ଆଭିମୁଖ୍ୟ ବିଷୟରେ, ଯେଉଁଥିରେ ଦେଶମାତୃକା ସାମିଲ୍ ଥିଲେ, ତାକୁ ନିର୍ବିକାର ହୋଇ ଶୁଣିଗଲା 'ୟେସ୍ ସାର୍' 'ୟେସ୍ ସାର୍' କହି । କିନ୍ତୁ ସାକ୍ଷାତ୍‌କାର ସରିବା ପୂର୍ବରୁ ସେ ନିଜର ଉଦ୍ଦେଶ୍ୟକୁ ମଧ୍ୟ ସ୍ପଷ୍ଟ କରିଦେଇ ପାରିଥିଲା । ଏବଂ ତାକୁ ମୋଟାମୋଟି ଗୋଟାଏ ଆଶ୍ୱାସନା ମିଳିଲା ଯେ ଏଠି ସେ ଯଥାଶୀଘ୍ର ଉପରକୁ ଉଠିବ । ଆସନ୍ତା ଉପନିର୍ବାଚନରେ ସେ ପ୍ରାର୍ଥୀ ହେବ ଜନକଲ୍ୟାଣ ତରଫରୁ । ଏବଂ ଭୋଟ୍‌ରେ ଜିଣିବା ପରେ (ଯାହାକି ଅବଶ୍ୟମ୍ଭାବୀ) ତାକୁ ଯୁବକଲ୍ୟାଣ ବିଭାଗର ରାଷ୍ଟ୍ରମନ୍ତ୍ରୀ କରି ଦିଆଯାଇପାରେ । କହିଲେ, 'ସବୁ ତମ ଉପରେ ନିର୍ଭର କରେ ଇନ୍ଦ୍ରଜିତ୍... ।'

ହଁ ଆଜ୍ଞା, ମୋ ଉପରେ ନିର୍ଭର କରେ ! ଏବଂ ମୁଁ ଜାଣେ ମୋର କ'ଣ କରିବା ଉଚିତ ।

ଘରେ ପହଞ୍ଚି ଜଗୁ ତା'ର ମାଆକୁ କୁଣ୍ଢେଇ ଧରି ଘୂରେଇବାକୁ ଲାଗିଲା । ପୁଅର ଏଭଳି ମଉଆର ଢଙ୍ଗ କିଛି ନୂଆ ନୁହେଁ ତାଙ୍କ ପାଇଁ । ତଥାପି ସେ କୁତୂହଳୀ ହୋଇ ପଚାରିଲେ—

"କିରେ କ'ଣ ହେଲା ? କେଉଁଥିପାଇଁ ଏତେ ଖୁସି ?"

"ହବ ଆଉ କ'ଣ ? ମୁଁ ଗୋଟାଏ ମନ୍ତ୍ରୀ ହେଉଛି ପରା କାଲି ସକାଳେ !" କହିସାରି ଠୋ' ଠୋ' ହୋଇ ହସିଲା ।

—ମୁଁ ଜାଣିଥିଲି ଏଇଆ ହେବ । ଏଇଆକୁ ଡରୁଥିଲି ମୁଁ ।...ସରୋଜିନୀଙ୍କ ଆଖି ଛଳଛଳ ହୋଇ ଉଠିଲା ।

ଅଜବ୍ ପ୍ରାଣୀ ଏଇ ମାଆମାନେ ସତେ ! ଜଗୁ ଅନେଇ ରହିଲା ତା' ମାଆ ଆଡ଼କୁ । କେଉଁଠି ଖୁସି ହେଲେ କ'ଣ ଏମିତ କାନ୍ଦିବା ଦରକାର ?

# ବୀରପୁତ୍ର ଓ ତା'ର ମାଆମାନେ

ଇଂରାଜୀରେ ଗୋଟିଏ ପଦ ଅଛି—'longer than life' । ଅର୍ଥାତ୍ ଜୀବନରୁ ବଳି ବୃହତ୍ତର । ଅନେକ ଲେଖକ ତାଙ୍କ ଚରିତ୍ରମାନଙ୍କୁ ଏମିତି 'ବଡ଼' କରି ଥାଆନ୍ତି, ତାଙ୍କ ଭଲ ଗୁଣ କି ମନ୍ଦ ଗୁଣକୁ ଏମିତି ଚଢ଼ା ରଙ୍ଗ ଦେଇ ଚିତ୍ରିତ କରନ୍ତି ଯେ ସେହି ଚରିତ୍ରମାନଙ୍କୁ ଉପରୋକ୍ତ ଆଖ୍ୟା ଦିଆଯାଇଥାଏ । ସେହେତୁ ସେମାନଙ୍କୁ ବାସ୍ତବ ବୋଲି କହି ହୁଏ ନାହିଁ । ହେଲେ ବେଳେବେଳେ ଲେଖକଙ୍କ ତରଫରୁ ଗୋଟାଏ ସଫେଇ ବାଢ଼ି ଦିଆଯାଏ ଯେ—ସାହିତ୍ୟର କ'ଣ ଉଚିତ ନୁହେଁ କୌଣସି ଆଦର୍ଶ ଚରିତ୍ରର ଉପସ୍ଥାପନା କରିବା, ଯାହା ସୁଲଭ ନ ହେଲେ ମଧ୍ୟ କୌଣସି ଏକ ସମ୍ଭାବନାର ପ୍ରତୀକ ହୋଇ ପାରିବ, ଏବଂ ଲେଖକର ତାତ୍ତ୍ୱିକ ବକ୍ତବ୍ୟ ଆହୁରି ସୁସ୍ପଷ୍ଟ ହୋଇ ଉଠିବ ? ଏହି ସଫେଇ ଆଦୌ ଗ୍ରହଣୀୟ ନୁହେଁ ବୋଲି କହିଲେ ଭୁଲ୍ ହେବ । ସବୁ ନିର୍ଭର କରେ ଚିତ୍ରଣର କଳା ଓ କାରିଗରି ଉପରେ । ତାହା ଯେତିକି ଉତ୍କୃଷ୍ଟ ହୋଇଥିବ, ଚରିତ୍ର-ବିଶେଷ ସେତିକି ସତ ବୋଲି ମନେ ହେବ, ମାନେ ହୁଏତ ଦୁର୍ଲ୍ଲଭ, କିନ୍ତୁ ଅବାସ୍ତବ ନୁହେଁ । ଯାହାହେଉ, ଏହିସବୁ କ୍ଷେତ୍ରରେ ଲେଖକ ଆଖିଦେଖା ବାସ୍ତବରୁ ଟିକିଏ ଆଗକୁ ମାଡ଼ିଯାଏ । ମୁଁ ମଧ୍ୟ ମୋର କେତୋଟି ଗପରେ ଏହିପ୍ରକାର ଅତିଶୟୋକ୍ତିର ଲୋଭ ସମ୍ଭାଳି ପାରିନାହିଁ । ଜଣେ ଅଧେ ବୀରପୁରୁଷ ଓ ବୀରା-ଙ୍ଗନାଙ୍କୁ ଠିଆ କରେଇଛି, କେଉଁ ଉଜ୍ଜ୍ୱଳ ସମ୍ଭାବନାକୁ ହେରୁ ବାନ୍ଧିଲି ପରି ।

ହେଲେ ଏଇ ଗପରେ ଥିବା ବୀରପୁତ୍ରର ଚରିତ୍ରକୁ ଅନୁଧ୍ୟାନ କଲେ ଆପଣ ବୋଧହୁଏ ମୋ ସହିତ ଏକମତ ହେବେ ଯେ ତାକୁ କେବେହେଲେ ଜୀବନରୁ ବଳି ବୃହତ୍ତର ବୋଲି କୁହାଯିବ ନାହିଁ । କାରଣ ତାକୁ ଆଙ୍କିବାରେ ଉଚିତରୁ ବେଶି ଚଢ଼ାରଙ୍ଗ ଦେବା ଦୂରର କଥା, ମୁଁ ଉଚିତରୁ ଊଣା ହାଲୁକା

ରଙ୍ଗ ଦେଇଛୁ ବୋଲି ମୋର ମନେ ହୁଏ । ଅତିଶୟୋକ୍ତି ନୁହେଁ, ହୁଏତ ମୋତେ ସ୍ୱଳ୍ପକଥନର ଦୋଷରେ ଦୋଷୀ କରି-ଯାଇପାରିବ । କାରଣ ଦେଖନ୍ତୁ ଯେ ଅଇଁଠା ଓରଫ୍ ଇନ୍ଦ୍ରଜିତ୍‌ର ଛତିରିପଣ ବଢ଼ି ବଢ଼ି ଗୁଣ୍ଡାଗିରି ଯାଏଁ ଯାଇଛି ସିନା, ସେ କୌଣସି ବେପରୁଆ ଓ ଦୁଃସାହସୀ ଚରିତ୍ର ଦେଖାଇ ପାରିନାହିଁ, ଯେଉଁଥିରୁ ଏକ ଦୁର୍ଦ୍ଧର୍ଷ ନେତୃତ୍ୱର ପ୍ରତିଶ୍ରୁତି ମିଳୁଛି ତା' ଭବିଷ୍ୟତ ପାଇଁ । ପାର୍ଟି ବଦଳେଇଲେ କେତେ ନା କେଉଁ ନୂଆ ମାଆଙ୍କୁ ବରିନେଲେ କେତେ ! ହେଲା ଏବେ ସହକର୍ମୀ-ମାନଙ୍କ ସାଙ୍ଗରେ ମିଶି ସେ ଗୋଟାଏ ପୋଷ୍ଟ ଅଫିସ୍‌ରେ ନିଆଁ ଲଗେଇ ଦେଲା, କି ଆସେମ୍ବ୍ଲି ନିର୍ବାଚନ ପାଇଁ ପ୍ରାର୍ଥୀ ହୋଇଥିବା ସଜ୍ଜନ ଉପରକୁ ବୋମାଟାଏ ଫିଙ୍ଗି ଦେଲା, କିନ୍ତୁ ଏ ଦିଗରେ ଆଜିର ବାସ୍ତବତା, ଯୁବନେତା ପର୍ଯ୍ୟାୟରେ ମଧ୍ୟ, ଅନେକ ଅଧିକ ଭୟଙ୍କର ନୁହେଁ କି ? ତା'ଛଡ଼ା ସେ କ'ଣ ପ୍ରକୃତରେ ପାର୍ଟିର ତୁଙ୍ଗ ନାୟିକା ମ୍ୟାଡ଼ାମ୍ ଶ୍ରୀମତୀ ସାମନ୍ତ-ରାଏଙ୍କଠାରେ ଦେଶମାତୃକାର ଦିବ୍ୟରୂପ ଦେଖି ନ ଥିଲା ? ଭ୍ରାନ୍ତ ହେଉ ପଛେ, କେଉଁଠି ରାଜନୈତିକ ଗୁଣ୍ଡା ଏଭଳି ଏକ ମାତୃଭକ୍ତି ଦ୍ୱାରା ପ୍ରଣୋଦିତ ହୋଇଛନ୍ତି ତାଙ୍କ ଚରିତ୍ର ଦେଖାଇବା ଲାଗି, ଯାହାକୁ ଆପଣମାନେ ହୁଏତ ଅପକର୍ମ ବୋଲି କହିବେ ? ସତରେ, କେଜାଣି କାହିଁକି ମୁଁ ଜିତୁବାବୁଙ୍କୁ ନିହାତି କୁତ୍ସିତ କରି ଦେଖାଇ ପାରିଲି ନାହିଁ । ଯଦିଓ ତାହାହିଁ ଆଜିର ବାସ୍ତବତା ହୋଇପାରେ । ଏବଂ ମୋର ମନେହେଲା ପିଲାଟା ଏତେ ମନ୍ଦ ହୋଇ ନ ଥା'ନ୍ତା ବୋଧହୁଏ, ଯଦି ସମାଜ ତା'ର ଚରିତ୍ରକୁ ଏତେ ପ୍ରଶ୍ରୟ ଦେଇ ନ ଥା'ନ୍ତା ।

ଏହାହିଁ ସବୁଠାରୁ ବେଶୀ ଶୋଚନୀୟ ବୋଲି ମୋର ମନେ ହୁଏ । ସମାଜର ଏଇ ଉଦାରତା । ଉଦାରତାରୁ ବଳି ପ୍ରୋତ୍ସାହନ, ତାହା ପ୍ରତ୍ୟକ୍ଷ ନ ହେଉ ପଛେ—ହିଁ ରେ ବାବୁ, ଇଏ ବି ଗୋଟାଏ ବାଟ ଜୀବନରେ ସଫଳ ହେବା ପାଇଁ, ଯଦି ତୋ ଗୁଣ୍ଡାଗିରି ପ୍ରକୃତରେ ଗୁଣ୍ଡାଗିରି ଆଡ଼କୁ ଗତି କରିପାରେ । ଜିତୁବାବୁର ବାପା ରାହାସବାବୁ କଳ୍ପିତ ନୁହନ୍ତି, ସେ ମୋର ଜଣେ ଅତି ପରିଚିତ ବ୍ୟକ୍ତି । ଏବଂ ସେ ପ୍ରାୟ ଗର୍ବର ସହିତ କହିଛନ୍ତି ମୋତେ, ନସିଣ୍ଟା ଆଟିମିଟିକାଟିଏ ମାରି, 'ଇଏ ବି

ସେଇ ଘରପୋଡ଼ିଆଙ୍କ ଦଳରେ ଥିଲା, ମୁଁ କ'ଣ ଜାଣେ ନାହିଁ ସେ କଥା ?' ଉହ୍ୟ ରହିଗଲା ଯେ ଏହାହିଁ ସ୍ୱାଭାବିକ । ଇଏ କୋଉ ଇତର ସାଧାରଣ ଘରପୋଡ଼ା ନୁହେଁ, ଇଏ ହେଉଛି ରାଜନୀତି । ପୁଅ ମୋର ଲଫଙ୍ଗା ଓ ବେକାର ହୋଇ ବୁଲୁ ନାହିଁ ଆଉ, ଭଗବାନଙ୍କ କୃପାରୁ ତାକୁ ଗୋଟାଏ କନାରା ମିଳିଯାଇଛି । ଏବଂ ତାଙ୍କର ବରାଦ୍ ଥିଲେ ସେ ଆହୁରି ଉପରକୁ ଉଠିବ, ମନ୍ତ୍ରୀଟିଏ ହେବ । ସେଇଠୁଁ କସ୍ମିନ୍‌କାଳେ କୋଉ ପୁଲିସ୍ ତାକୁ ଧରି ପାରିବ ନାହିଁ । ହୁଏତ କୋଉ ତଦନ୍ତ କମିସନ୍ ରାୟ ଦେବ ତା'ବିରୁଦ୍ଧରେ, ତା' ପାର୍ଟି କ୍ଷମତାରୁ ଖସି ଆସିଲେ । କିନ୍ତୁ କେଉଁଟା କମିସନ୍‌ର ରାୟ କାର୍ଯ୍ୟକାରୀ ହୋଇଛି ଆମ ଦେଶରେ, ଯଦି ଅଭିଯୁକ୍ତ ଆସାମୀ ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, କିମ୍ବା ଯେକୌଣସି ମନ୍ତ୍ରୀଟିଏ ହୋଇଥାଏ, ସେ ତା'ର କ୍ଷମତା କୌଶଳକୁ ପୁରାପୁରି ଭୁଲି ଯାଇ ନ ଥିଲେ ? ଏଇ ହେଲା ଆଜିକାର ଅନେକ ରାହାସବାବୁଙ୍କର ଆଶା ଓ ଅଭିଳାଷ, ତାଙ୍କର ଅବାଗିଆ ସନ୍ତାନମାନଙ୍କୁ ନେଇ । ଯାହା ଏକ ବାସ୍ତବ ସତ୍ୟ । ଏବଂ ଦୁର୍ଭାଗ୍ୟଜନକ ।

ଗୁଣ୍ଡାଗିରି ସହିତ ସମ୍ପୃକ୍ତ ହେଉ ବା ନହେଉ, ଦୁର୍ନୀତିକୁ ନେଇ ମଧ୍ୟ ସେହିଭଳି ଏକ ବାସ୍ତବ ସତ୍ୟ କେବେଠୁଁ ଚାଲୁ ହୋଇଗଲାଣି ଆମ ସମାଜରେ । ଏଇ ରାହାସବାବୁ (ମନେ ରଖନ୍ତୁ ଯେ ସେ ଜଣେ ଅତି ଅମାୟିକ ଭଦ୍ରଲୋକ, ଏବଂ ତାଙ୍କୁ ଏକ ସ୍ନେହୀ ଏବଂ କର୍ତ୍ତବ୍ୟପରାୟଣ ସ୍ୱାମୀ ତଥା ପିଲାଛୁଆଙ୍କ ବାପା ବୋଲି କୁହାଯିବ) ଥରେ ମୋତେ କହିଲେ, ଏବଂ ସେଥିରେ ଆଖିମିଟିକାଟିଏ ମଧ୍ୟ ନ ଥିଲା, ଯେ ସେ ଯେଉଁ ଡିପାର୍ଟ୍‌ମେଣ୍ଟ୍‌ରେ କାମ କରନ୍ତି, ସେଠି ସହଜେ ନାନା ଅତ୍ୟାଚାର କରାଯାଏ ବିଚରା ବ୍ୟବସାୟୀମାନଙ୍କ ଉପରେ; କିନ୍ତୁ ସେ ନିଜେ ଭିନ୍ନ ଧାତୁରେ ଗଢ଼ା । ସେ ସେସବୁଥିରେ ନ ଥା'ନ୍ତି । ହଁ ପ୍ରାୟ ସବୁ ବ୍ୟବସାୟୀ ଦୈନିକ ଶହେ ଟଙ୍କା ହିସାବରେ ତାଙ୍କ ପାଖକୁ ମଧ୍ୟ ଲଫାପାଟିଏ ପଠେଇ ଦିଅନ୍ତି, ଧନ୍ୟବାଦ ! କିନ୍ତୁ ସେ କେବେହେଲେ କାହା ଉପରେ ଜୋର୍ ଜବରଦସ୍ତି କରି ମାଗନ୍ତି ଯେ ମୋତେ ଏତିକି ଟଙ୍କା ଦିଅ, ନହେଲେ ମୁଁ ତମ କାରବାରର ଗଫଲତିକୁ ଧରି ପକେଇ ଦେବି । ନା, ମୁଁ କେବେହେଲେ ସେଭଳି କୁକର୍ମ କରି ନାହିଁ କି କରିବି ନାହିଁ ।

ଏଇ ହେଲା ବ୍ୟବସାୟିକତା ଯୁକ୍ତ ରାଜସେବା । ଏବଂ ଏଇ ହେଲା ରାଜନୀତି । ୟା'କୁ ଲାଞ୍ଚଖୋର ବୋଲି କହିବ ନାହିଁ କି ତାକୁ ଗୁଣ୍ଡାଗିରି । ଯେଉଁ ସମାଜରେ ଏହି ସାଧାରଣ ସତ୍ୟ ପ୍ରତିଷ୍ଠିତ ହୋଇ ସାରିଲାଣି, କଥା ଓଡ଼ିଆରେ କହିଲେ ଚେର ମାଡ଼ିଗଲାଣି, ସେଠି କେତେଦୂର ରାଗି ହେବ ଜାରୁବାବୁମାନଙ୍କ ଉପରେ ? ଅବା କେତେଦିନ ଯାଏଁ ତାଙ୍କୁ ଜେଲ୍‌ରେ ଠୁଙ୍କି ଦେଇ ନିଃଶ୍ୱାସ ମାରି ହେବ । ଯଦି ସେଭଳି କ୍ଷମତା ଥାଏ ତମ ହାତରେ ? ବରଂ ଭଲ ହେବ ଯଦି ଆପଣ ତା'ର ସ୍ନେହମୟୀ ଜନ୍ମକଲା ମାଆର ଲୁହକୁ ପୋଛି ଦେଇ କହିପାରିବେ—ନାଇଁ ମାଆ, କମଳା ଏତେ ନିଷ୍ଠୁର ହେବେ ନାହିଁ ତମ ଉପରେ । ତମ ଅର୍ଜୁନ ମନ୍ତ୍ରୀ ହେବ ନାହିଁ । ବାପର ପୁଅ ହେଲେ ମଧ୍ୟ ସେ ତମଠୁଁ ଜନ୍ମ ହୋଇଛି, ଆଉ ତମର ମାତୃହୃଦୟ ଜାଣେ ଯେ ସେ ମନ୍ତ୍ରି ପଦକୁ 'ଯୋଗ୍ୟ' ନୁହେଁ ମୋଟେ ।



# ଓଦା ମାଟି

ବିଶ୍ୱଭୂଷଣ ରାୟ ପୋଇଗୁଲଆ ଲୁଙ୍ଗି ଖଣ୍ଡେ ପିନ୍ଧି ବସିଥିଲେ ତାଙ୍କ ପୈତୃକ ଘରର ବାଣଆଡ଼େ । ଗୋଟିଏ ବେତଚଉକରେ ବସି ଗୋଡ଼ ଦି'ଟାକୁ ଲମ୍ବେଇ ଦେଇଥିଲେ ଆଉ ଗୋଟିଏ ବେତଚଉକ ଉପରେ । ଏବଂ ଆକାଶକୁ ଅନଉଥିଲେ ।···କେଉଁ ଜଣେ କବି ଆକାଶକୁ ଅଚହ୍ନା ଆଉ ମାଟିକୁ ଚହ୍ନା ବୋଲି କହିଛନ୍ତି ପରା ? ଭୁଲ୍ । ଆକାଶ ମଧ୍ୟ ଚହ୍ନା ବୋଲି ମନେ ହେବ ଯଦି ତମେ ଠିକଣା ଜାଗାରେ ସ୍ଥାନିତ ହୋଇ ତା' ଆଡ଼କୁ ଅନେଇବ ମନ ଦେଇ । ମୋର ଯେମିତି ମନେ ହେଉଛି ଆଜ, କାହିଁ କେତେ ବର୍ଷ ପରେ । ସତେକି ଏଇ କେଉଁଟା ମେଘଛୁଆ ଯେଉଁମାନେ ଖେଳୁଛନ୍ତି ଜହ୍ନ ସାଙ୍ଗରେ, ସେମାନେ ସର୍ବ-ସାଧାରଣ ମେଘ ନୁହନ୍ତି । ସେମାନେ ମୋର ଅନେକ ଦିନର ଚହ୍ନା । ଯେତେବେଳେ ମୁଁ ଏଇ ଦିନ ଏଇ ବାରଘର ଅଗଣାରେ ଧସ୍ତାଧସ୍ତି ହେଉଥିଲି ଛବିରୁବି ମଦନଗୋପାଳଆଙ୍କ ସାଙ୍ଗରେ । ମୁଠେଇ ଧରିଥିବା ଅବିର ମୁଠାରୁ ଖସି ପଡ଼ୁଥାଏ, ଡର ମାଡ଼ୁଥାଏ ଯେ ମୋ ରଙ୍ଗ ବୁଲେଇବି ନାହିଁ ମୋଟେ, ଆଉ ସେମାନେ ମୋ ମୁହଁକୁ କ'ଣ ବୋଲି କ'ଣ କରି ଥୋଇବେ । ହେଲେ ମୁଁ ତାଙ୍କୁ କୋଉ ଗୁଡ଼ୁଥିଲି ନା କ'ଣ ? ଗୁଡ଼ୁ ନଥିଲି, ଆଉ ଏଇ ଆକାଶର ଜହ୍ନ ମୋତେ ଉସ୍‌କେଉଥାଏ । କହୁଥାଏ, ଦେଖିନୁ ଏମାନେ କେମିତି ଲଗିଛନ୍ତି ମୋ ସାଙ୍ଗରେ । କିନ୍ତୁ ମୁଁ କୋଉ ପଳେଇଯାଉଛି ନା ଗୁଡ଼ିଦେଉଛି ତାଙ୍କୁ ?

ଏଇକ୍ଷଣି ବି ଲଗିଛି ସେମିତିକା ଖେଳ । ସେଇ ପୁରୁଣା ଖେଳ । ଚହ୍ନା ଆକାଶଇ ହୃଦରର, ଏଇ ହୋଲି ଦିନକୁ । ହେଲି ଏବେ ଚାଳିଶ କି ଅଧିକ ବର୍ଷ ପାରି ହୋଇଗଲାଣି ଏଥି ଭିତରେ, ଏବଂ ମୁଁ ବୁଢ଼ା ହେବାକୁ ବସିଲିଣି । ମୋଟ କଥା ହେଉଛି ଯେ ମୁଁ ଖୁସି, ଜହ୍ନଙ୍କବନର ସଙ୍ଗୀତ ବି ଖୁସି ! କେହି କାହାକୁ ବର୍ଜନ କରି ନାହିଁ । ଧନ୍ୟବାଦ ।

କିଏ କହିବ ମୁଁ ସେଇ 'ବି. ବି. ରେ', ଯେ ପ୍ରାୟ ସାରା ପୃଥିବୀ ବୁଲି ଆସିଛି, ଆର୍ଜେଣ୍ଟିନାରେ 'ପିନ୍‌କୋ ସାଓ୍ୱାର୍' ମଦ ଓ 'ଲଙ୍ଗୋଷ୍ଟିନୋ', ବଡ଼ ଚିଙ୍ଗୁଡ଼ିର, ସଦ୍‌ବ୍ୟବହାର କରିଛି; ଗ୍ରୀନ୍‌ଉଇଚ୍ ଭିଲେଜ୍‌ରେ ଭିନ୍ନ ଧରଣର ବନ୍ଧୁ (ତାଙ୍କୁ ବିଟ୍‌ନିକ୍ କୁହ ବା ଧାତୁଗତ ବିଦ୍ରୋହୀ) ମାନଙ୍କ ସାଙ୍ଗରେ ବସି କୋଉ

ଭିନ୍ନ ରେସ୍ତୋରାଁର କ୍ଳେଶଦାୟକ ପରିବେଶକୁ ଉପଭୋଗ କରିଛୁ ଏବଂ ଭାବିବାକୁ ଚେଷ୍ଟା କରିଛୁ ଯେ ଏଠି ଯେଉଁ ଚୁମ୍ବନର ଦିଆନିଆ ଚାଲିଛି ତା'ର ମୂଲ୍ୟ କିଆଉ; ବ୍ୟାଙ୍କ୍‌କକ୍‌ରେ ପୂଜା ପାଉଥିବା ମାଲ ମାଲ ବୁଦ୍ଧମାନଙ୍କ ଭିତରେ ପ୍ରଭେଦ ଖୋଜିବାକୁ ଯାଇ ନିରାଶ ହୋଇଛୁ, ଓ ଶେଷକୁ ସେଠିକା ବ୍ରହ୍ମାମନ୍ଦିରରେ ହାତ ଯୋଡ଼ିଛୁ; ମେକ୍ସିକୋ ସିଟିରେ ବୁଲ୍‌-ଫାଇଟ୍‌ର ଅନ୍ୟତମ ଦର୍ଶକ ହୋଇ ମୁଁ ମଧ୍ୟ 'ଓ-ଲେ' 'ଓ-ଲେ' ବୋଲି ପାଟି କରିଛୁ, ଜନ୍ତୁଟାକୁ ପୁଣି ଥରେ ଖୋଞ୍ଚି, ରଗେଇ, ତା' ଦେହରୁ ରକ୍ତ ବୁହାଉଥିବା ବୀରବରକୁ ଉସ୍‌କେଇବା ପାଇଁ; ୟୁରୋପର ନାନା ନାଇଟ୍‌କ୍ଲବ୍‌ରେ ସେକ୍ସ୍‌-ଖେଳର କେତେ ବିଚିତ୍ର ବିକୃତ ସଂସ୍କରଣରେ ଯୋଗ ଦେଇଛୁ ଆଦିମ ସୁଖର ନୂତନତମ ଆଦିମତାକୁ ଚାଖିବା ପାଇଁ, ଇତ୍ୟାଦି ଇତ୍ୟାଦି ଇତ୍ୟାଦି ?

ମଧ୍ୟ ବୁଦ୍ଧିଜୀବୀସୁଲଭ ଏବଂ ବୁଦ୍ଧିବାଦୀସମ୍ମତ ନାନା ପାଠ ପଢ଼ିଛୁ ତାଙ୍କ ଲାଇବ୍ରେରୀମାନଙ୍କରେ, ବିଭିନ୍ନ ଚିତ୍ରକଳାର ମତଲବ ବୁଝିବାକୁ ଚେଷ୍ଟା କରିଛୁ ତାଙ୍କ ପ୍ରଖ୍ୟାତ ଆର୍ଟ୍‌ ଗ୍ୟାଲେରୀମାନଙ୍କରେ, ବିଭିନ୍ନ କନ୍‌ସର୍ଟ୍‌ ହଲ୍‌ରେ ଅନ୍ୟତମ ବିମୁଗ୍ଧ ଶ୍ରୋତା ହୋଇ ଆଖିବୁଜି ଦେଇଛୁ, ଇତ୍ୟାଦି । ଅର୍ଥାତ୍‌ ବୌଦ୍ଧିକ ଖେଳ ମଧ୍ୟ ଖେଳିଛୁ, ଯେତେଟା ସମ୍ଭବ ।

ହେଲେ ବର୍ତ୍ତମାନ ଫେରି ଆସିଛୁ ଏଇ ମୋର ନିଜ ଭୂଇଁକୁ । ଖାଲି ଭାରତ ନୁହେଁ, ଭାରତର କୋଉ କୋଣରେ ଥିବା ଏଇ ମୋର ନିଜ ଘରକୁ, ଯାହାର ଭୂଇଁ ଏବେ ମଧ୍ୟ ଓଦା ହୋଇ ରହିଛି ମୋ ପାଇଁ, କେଜାଣି କେତେ ଅଭୁଲା ସ୍ମୃତିକୁ ନେଇ । ଫେରି ଆସିଛୁ ମାନେ, ଯଥାଶୀଘ୍ର ପୁରାପୂରି ଫେରି ଆସିବାର ଉଦ୍ଦେଶ୍ୟ ନେଇ ଆସିଛୁ । ଜାଣିଶୁଣି, ବୁଝିବିଚାରି । ଯେତିକି ଅପର ସଂସ୍କୃତିକୁ ଅଳ୍ପବହୁତ ଅନୁଭବ କରି ସାରିଲା ପରେ ଆପଣା ସଂସ୍କୃତିରେ ଡୁବିଯିବା ଲାଗି ! ଷାଠିଏକୁ ଟିକିଏ ଡେରି ଅଛୁ, ହେଲେ ସଞ୍ଜ ହାତପାହାନ୍ତାରେ ବୋଲି କହିଲେ ଭୁଲ୍‌ ହେବ ନାହିଁ । ଏଇ ହେଉଛି ବେଳ, ଠିକଣା ଜାଗାରେ ନିଜକୁ ଥାପିଦେବା ଲାଗି । ଯେମିତିକି ଡୁବିଯିବାର କ୍ରମକୁ ଉତ୍ତରୋତ୍ତର ଘନ ଓ ଘନିଷ୍ଠ କରି ହେବ । ଏବଂ ଶେଷ ଡୁବନ୍‌କୁ ଶାନ୍ତ । ଆଃ !

ଦୁଃଖର ବିଷୟ ଜୟନ୍ତୀ ମୋ ବିଚାରକୁ ଗ୍ରହଣ କରି ପାରିନାହିଁ ଆଜିଯାଏଁ । ଏଇ ସାଂସ୍କୃତିକ ପଦକ୍ଷେପର ଆବେଗ କିମ୍ବା ତା'ର ମହତ୍ତ୍ୱ କିଛି ପହଞ୍ଚିନାହିଁ ତା' ପାଖରେ । କହୁଛି କ'ଣ ନା ଯେଉଁଠି ଆରାମରେ ଚଳି ହେବ ବୁଢ଼ାଦିନକୁ, ସେଇ ସବୁଠୁଁ ଭଲ । ବୁଢ଼ାଟାକୁ କୋଉ ବନ୍ଧାଛନ୍ଦା ଲୋଡ଼ିବ କାହିଁକି ? ପିଲାଛୁଆଙ୍କ ବନ୍ଧନ ଖସିଗଲାଣି କେବେଠୁଁ । ଆଉ କୋଉ ବନ୍ଧନ ଖୋଜା ପଡ଼ିଛି ତମର ? ହଉ, ଯାଅ ତମେ ଘରୁ ବୁଲି ଆସ ଟିକିଏ । ମାନେ ଯାହାକୁ ତମେ

ଘର ବୋଲି ଭାବୁଛ । କିନ୍ତୁ ମୁଁ ରହୁଛି ଏଠି ଦିଲ୍ଲୀରେ, ମୋ ଝିଅ ପାଖରେ । ପରେ ସ୍ଥିର କରିବା କ'ଣ କରିବା କଥା ।

ବୁଝୁନାହିଁ ସେ । କିନ୍ତୁ ବୁଝିବ । ଯେ ବୁଢ଼ା ଦିନର ଈପ୍ସିତ ଶେଷକଥା ହେଉଛି ଆରାମରେ ଡୁବିଯିବା, ଉଡ଼ି ପଳେଇବା ନୁହେଁ ।

ଫାଟକ ଖୋଲିବାର ଶବ୍ଦ । ବିଶୁବାବୁ ଗୋଡ଼ ତଳକୁ କଲେ । କିଏ ଜଣେ ଆସିଲା ହତା ଭିତରକୁ । ନିଜକୁ ଜର୍ଣ୍ଣାଲିଷ୍ଟ ବୋଲିଉଥିବା କେଉଁ ଗୋଟାଏ ବାଜେ ଲୋକ ହୁଏତ ଆସିଥିବ, ବି. ବି. ସି.ର ନାମ୍‌ଜାଦା ଭାରତୀୟ ପ୍ରତିନିଧି ବି. ବି. ରେଙ୍କ ସାଙ୍ଗରେ ଦେଖା କରିବା ଲାଗି ଏବଂ ନିଜର ଫାଇଦା ଉଦ୍ଦେଶ୍ୟରେ । ଏଣେ ମୁଣ୍ଡ ଖେଳାଉଥିବ ଯେ ମୁଁ କ'ଣ ହିତରେ ଗୋଟାଏ ବୁଡ଼୍‌ବକ୍ ଯେ ବାଲ୍ୟବୟସ୍ର ଥାଉଁ ଥାଉଁ ଘର ନାଆଁରେ ଏଭଳି ଗୋଟାଏ ପୁରୁଣା ଗନ୍ଧିଆ ସହରରେ ରହିବ ବୋଲି ଭାବୁଛି, ନା ମୋର କୌଣସି ଭିତର ଉଦ୍ଦେଶ୍ୟ ଅଛି । ବିଶୁବାବୁ ସଦୟ ହସଟିଏ ହସିଲେ, ଏଠିକା ଲୋକଙ୍କ ସଂକୀର୍ଣ୍ଣ ମନୋବୃତ୍ତିକୁ ନେଇ । ଏବଂ ଆଶା କଲେ ଯେ ହୁଏତ କେଉଁ ବାଞ୍ଛିତ ଅନ୍ୟ ଧରଣର ଲୋକ ଆସିଥିବ । ଭାଇବନ୍ଧୁ କୁଟୁମ୍ବ ଜାତୀୟ । ଘରକୁ ଫେରି ଆସିଥିବା ସ୍ୱର୍ଗୀୟ ରାଏ ବାହାଦୁରଙ୍କ ନାତି ତଥା ସ୍ୱର୍ଗୀୟ ପ୍ରଫେସରଙ୍କ ପୁଅ ସାଙ୍ଗରେ ଦେଖା କରିବା ଲାଗି ।

ନାଲି କଣ୍ଟର ଶବ୍ଦ···

ବିଶୁବାବୁ ସିଧା ହୋଇ ବସିଲେ । ସମ୍ପର୍କୀୟ ତା'ହେଲେ । ହୁଏତ ସ୍ୱାମୀ-ସ୍ତ୍ରୀ ଦି'ଜଣ । ସମ୍ପର୍କୀୟା ସ୍ତ୍ରୀ ଆସିଛି ଗୋଟାଏ ଫ୍ରଣ୍ଟ ହୋଇ, ସ୍ୱାମୀ ପାଇଁ କିଛି ଗୋଟାଏ ଫାଇଦା ହାସଲ କରିବା ଲାଗି । କିଛି କ୍ଷତି ନାହିଁ । ମୋର ବି ସ୍ୱାର୍ଥ ଅଛି, ଯଦି ତମେ ପ୍ରକୃତରେ ମୋର ସମ୍ପର୍କୀୟ କି ପିଲାଦିନର ସାଙ୍ଗ ହୋଇଥିବ । କାରଣ ଅନ୍ତତଃ ଗୋଟାଏ ସୁଦୃଶ୍ୟ ଛୁଟା ନିଶ୍ଚୟ ଲାଗିଥିବ ତମ ଦେହରେ, ଏବଂ ମୁଁ ତାକୁ ଉପଭୋଗ କରିବି । ଏବଂ ଏମିତି ଗୋଟିଏ ଗୋଟିଏ ଉପଭୋଗକୁ ନେଇ ମୋର ଢେର ମାଡ଼ିଯିବ ଏଠି, ଆଉ ମୁଁ ଜୟନ୍ତୀକୁ ଟାଣି ନେଇ ଆସିବି ମୋ ପାଖକୁ । ନିଜର ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟକୁ ପୁଣି ଠଉରେଇଲା ପରି ସେ ତାଙ୍କ ଲୁଙ୍ଗିକୁ ସଜାଡ଼ି ଦେଲେ । ଏବଂ ପାଦ ତଳର ଔଦାମାଟିକୁ ନିବିଡ଼ରେ ଅନୁଭବ କରିବାକୁ ଚାହିଁଲେ ।

କ'ଣ ହେଲା ? ଆଗନ୍ତୁକ ଜଣେ କି ଦି'ଜଣ ଗଲେ କୁଆଡ଼େ ?

ବିଶୁବାବୁଙ୍କ ମନକୁ ଆସିଲା ଯେ ସିଏ ହୁଏନ୍ତି ପଛକେ, ଘରର ବେଲ୍ ବଜେଇଥିବେ । ଏବଂ କବାଟ ଖୋଲିବାକୁ ଆସିଥିବା ରଧିଆ ତାଙ୍କୁ ନିଶ୍ଚୟ କହିଥିବ ଯେ ବାବୁ ଏକୁଟିଆ ବାରଆଡ଼େ ବସିଛନ୍ତି । ତେଣୁ ଦାଣ୍ଡଦୁଆର ମୁହଁରୁ ସିଧା ବାର-

ଆଜିକୁ ଆସିବେ ବୋଲି ଆଶା କରିବା ଉଚିତ । ସିଧା ବାଟ ପଡ଼ିଛି, ଋଷିଆ ତାଙ୍କୁ ନିଶ୍ଚୟ କହିଥିବ ସେକଥା । କିନ୍ତୁ ତା' ହେଲେ ଏତେ ଡେରି ଲଗୁଛି କାହିଁକି ? ଘର ଭିତରେ ପଶିଛନ୍ତି ? କିଓ, କାହିଁକି ?

କିନ୍ତୁ ବିଶୁବାବୁ ଏହି ପ୍ରଶ୍ନ ଉପରେ ବିଶେଷ ଗୁରୁତ୍ୱ ଦେବାକୁ ଚାହିଁଲେ ନାହିଁ । ପୁରୁଣା ଭଙ୍ଗିଆ ଘର ଭିତରେ କୋଉ ଧନରତ୍ନ ଗୁଣ୍ଡା ହୋଇ ରହିଛି ଯେ କିଏ ଘୁଲାଏ ନେଇଯିବ ସେଥିରୁ ? ହଁ, ସମ୍ପତ୍ତି ଅଛି । କିନ୍ତୁ ତାହା ମାନସିକ, ଏବଂ କେବଳ ସେଇ ଲୋକ ପାଇଁ ଯେ ତାକୁ ଯତ୍ନରେ ଗଚ୍ଛିତ କରି ରଖିଛି । ଯଥା ବିଶୁ ରାଏ, ରାଏ ବାହାଦୁର ପୁଲିନ୍ ବିହାରୀ ରାଙ୍କ ନାତି ଏବଂ ପ୍ରଫେସର୍ ଜଗବନ୍ଧୁ ରାଏଙ୍କ କୃତିତ୍ୱ ପୁଅ, ଯିଏ ସବୁଠାରୁ ଘରଛଡ଼ା ବୋଲି ମନେ ହେଉଥିଲା । ହଁ, ମୁଁ ବି. ଏ. ପାସ୍ କରିକରୁ ପଳେଇ ଯାଇଥିଲି ଏଠୁଁ ଗ୍ରୁଟିପିଟି ହୋଇ । ଯେତେକ ନୂଆ ଦୁନିଆଁ ଦେଖିବା ଲଗି । ଏବଂ ପଳଉ ପଳଉ ଦିଲ୍ଲୀ କି ବମ୍ବେରେ ଲଖିଗଲି ନାହିଁ । ଜର୍ଣ୍ଣାଲିଜମ୍ ପାଠ ଶେଷ କରିଛି କି ନାହିଁ, ପଳେଇଗଲି ଲଣ୍ଡନ୍ । ସେଇଠୁଁ, ଥ୍ୟାଙ୍କ୍‌ସ୍ ଟୁ ମାଇଁ ଡିଅର୍ ଫ୍ରେଣ୍ଡ୍ ଫ୍ରାନ୍‌ସୁଆ, ଆଉ ତା'ର ଅପର୍ଯ୍ୟାପ୍ତ ପୈତୃକ ଧନ, ସେ ମୋତେ ବସେଇ ଦେଲା ପ୍ୟାରିସ୍‌ରେ, ସେଇଠୁଁ ବର୍ଲିନ୍, ବର୍ଲିନ୍ ୱାଲ୍ ବି ଭାଙ୍ଗିଗଲା ମୋ କପାଳକୁ···ଗ୍ରେଟ୍, ସିଏ ଗୋଟାଏ ରିଏଲ୍ ଆଡ୍‌ଭେଞ୍ଚର୍ ଏବଂ ସଫଳତାର କାହାଣୀ । ଯାହାହେଉ ମୁଁ ପ୍ରଥମେ ଠିକ୍ କଲି ଏଠିକି ଫେରି ଆସିବା ଲଗି । ଅନ୍ତତଃ ଏଠି ରହିବି କିଛି ଦିନ, ବେଶ୍ କିଛି ଦିନ, ଆଉ ସେଇଠୁଁ ପୂରାପୂରି ଫେରି ଆସିବି । ଆଉ ଦି' ଭାଇଯାକ ଏଇ ଇଣ୍ଡିଆରେ ଅଛନ୍ତି, ଜଣେ ଭିଲାଇ ଷ୍ଟିଲ୍ ପ୍ଲାଣ୍ଟ୍‌ରେ, ଏବଂ ଅନ୍ୟଜଣକ ୟୁ. ପି. ର ଆଇ. ଏ. ଏସ୍. କ୍ୟାଡ଼ରରେ । କିନ୍ତୁ କେହି ଏଠି ସେଟଲ୍ କରିବାକୁ ନାରାଜ । ଓଲଟି ଏଇ ଘରଟାକୁ ବିକି ଦେବାକୁ ଚାହୁଁଥିଲେ । କିନ୍ତୁ ମୁଁ ଅଡ଼ି ବସିଲି । କହିଲି ନାଇଁ ମୋର ବଡ଼ଭାଇମାନେ, ସେକଥା ହେବ ନାହିଁ । ମୋତେ ଗୋଟାଏ ଚାନ୍‌ସ୍ ଦିଅ ଏଠି ରହିବା ପାଇଁ । ଭଗବାନଙ୍କ କୃପାରୁ ମୋ ହାତରେ ବେଶ୍ କିଛି ପୁଞ୍ଜି ଅଛି ଯା'କୁ ମରାମତି କରିବା ଲଗି ଯେମିତିକି ଘରଟା ଅଳ୍ପବହୁତ ରହିବା ଯୋଗ୍ୟ ହୋଇଯିବ । ଦାଣ୍ଡଘର ଆଉ ଆରମ୍ଭ ହୋଇଗଲାଣି କାମଟା, ଯେମିତିକି ପ୍ରଥମେ ବାପାଙ୍କର ଲାଇବ୍ରେରୀ—ଚମକି ଉଠିବ, ସେବେଲର ନାଦା ଶିଶୁକାଠ କାଚ ଆଲମାରି ଭିତରୁ । ତା' ପରେ ଅନ୍ୟ କମରା, ଅଗଣା, ସିନ୍ଦୁକ, ଆଲମାରି···ଅନେକ କାମ ବାକି ଅଛି । ହେଲେ ଆଗେ ଅନୁଭବ କରିସାରେ ଏଇ ଜଙ୍ଗଲିଆ ବାଗଟାକୁ !

ବାଗରେ ଶାଗମୁଗ ନ ଥାଉ କି ଯୂଥି ଜାଇ ରଜନୀଗନ୍ଧା । କଦଳୀଗଛଗୁଡ଼ାକ ତ ତଥାପି ଭିଡ଼ ଲଗେଇଛନ୍ତି ! ପୁରୁଷାନୁକ୍ରମେ ମୁଣ୍ଡ ଟେକୁଛନ୍ତି, ମରୁଛନ୍ତି, ଆଉ ଏଇ ମାଟିକୁ ଆହୁରି ଆହୁରି ଉର୍ବର କରୁଛନ୍ତି ତାଙ୍କ ଜୀବନମରଣକୁ ନେଇ ।

ପୁଆ ପରେ ପୁଆ ଗଜୁରୁଛି ଏଇ ମାଟିରୁ । ହ୍ୱାପ ରଥିଆ କହୁଥିଲା କ'ଣ ନା ଗଛ-ଗୁଡ଼ା ୟୁସ୍‌ଲେସ୍ ହୋଇଗଲେଣି । ଟୋକାର ପାଟିରୁ କମ୍ ଇଂରେଜୀ ବାହାରେ କି ? ଯଦିଓ ତା' ବାପ ମକରଧ୍ୱଟା ଗଜମୂର୍ଖ ଥିଲା । ହେଲେ ହଜାରେ ପଣ୍ଡିତିଆ ପ୍ରଶ୍ନ ପଚାରୁଥିଲା ଆମ ବାପାଙ୍କୁ । ଆଉ ଆମ ପ୍ରଫେସର୍ ବାପାଙ୍କୁ ଧନ୍ୟ କହିବ ! ସେ କି ତା' ପ୍ରଶ୍ନର ଉତ୍ତର ଯୋଗାଉଥିଲେ । ଯଥା—କମ୍ୟୁନିଷ୍ଟମାନେ କ'ଣ ସତରେ କହୁଛନ୍ତି 'ସର୍ବେ ହୋଇବେ ଏକାକାର, ନଥିବ ଭେଦର ବିଚାର ? ତା' ହେଲେ ତାଙ୍କୁ ଗୁଳି କରି ମାରିଦେବା ଦରକାର, ନା କ'ଣ ଆଜ୍ଞା ?' ସେଇଠୁଁ ବାପା ମୃଦୁ ହସଟିଏ ହସି ତା'ର ଭ୍ରମ ଦୂର କରିବାରେ ଲାଗି ପଡ଼ନ୍ତି ।

ଇଏ ଖାଲି ଗୋଟାଏ ପୁରୁଣା ଓ ବିରାଟ କୋଠାଘର ନୁହେଁ । ଏକ ପୁରୁଣା ଓ ବିରାଟ ଜ୍ଞାନର ଐତିହ୍ୟ ମଧ୍ୟ ଭରି ରହିଛି ଏଥିରେ । ଜ୍ଞାନର, ବୁଦ୍ଧିର, ଆଉ ବଡ଼ିମାର । ରାଏ ବାହାଦୁର ପୁଲିନ୍ ବିହାରୀ ରାଏଙ୍କଠାରୁ ଆରମ୍ଭ କରି ବି. ବି. ରେଙ୍କ ଯାଏଁ । ଆଉ ସେଇ ବଡ଼ିମାର ଶେଷକଥା ହେଲା ଖାନ୍‌ଦାନ । ବଡ଼ଲୋକ ନୁହେଁ, ଖାନ୍‌ଦାନ, ଆରିଷ୍ଟୋକ୍ରାସି ! ମୁଁ ତା'ର ଦାୟାଦ ।

ଆଉ ଇଏ ହେଉଛି ସେଇ ଖାନ୍‌ଦାନର ବାରିଆଡ଼ । ମାନେ ଖେଳ ଭୂଇଁ, ବିଶ୍ରାମାଗାର । ତଥା ସ୍ମୃତିଚାରଣର ବିସ୍ତୃତ କ୍ୟାନ୍‌ଭାସ୍ । ଫୁଲ କି ଫଳଟାଏ ନଥିଲେ ଭସିଯାଉଛି !

ଆରେ, ଗଲେ କୁଆଡ଼େ ସେମାନେ ? ନା ମୋତେ ଭୂତ ଲାଗିଥିଲା ଯେ ହଠାତ୍ କେଉଁ ସ୍ତ୍ରୀଲୋକର ପାଟି ଶୁଭିଗଲା ମୋତେ ? ହେଇ, ପୁଣି ଶୁଭୁଛି ସେଇ ସ୍ୱର ଖଣ୍ଡିକ । ପାଖରୁ ଶୁଭିଲାପରି ଲାଗୁଛି । ପଛ ଅଗଣାରୁ । ମଲା, ସେଠି କ'ଣ କରୁଛନ୍ତି ସେମାନେ ? କୋଉ ଭୋଜିଭାତର ପ୍ଲାନ୍ ଠିକ୍ କରୁଛନ୍ତି ମୋ ପାଇଁ ?

ନା ଇଏ ରଥିଆର କୋଉ ନିଜ ଲୋକ ? ତାଙ୍କୁ ଘରେ ପୂରେଇଛି ମୋତେ ନପଚାରି ?

ତଥାପି ବିଶୁବାବୁ ତାଙ୍କ ଆଶ୍ଚର୍ଯ୍ୟ ଭାବକୁ ବଢ଼େଇଲେ ନାହିଁ କି ବିରକ୍ତିକୁ ପ୍ରଶ୍ରୟ ଦେଲେ ନାହିଁ, ଗୋଟାଏ ଜିଦ କଲା ପରି । ସେ ଆଜିକା ସଞ୍ଜରେ, ଏଇ ଦୋଳ ପୂନେଇଁରେ, ଉଦ୍ଧ୍ୱମୂଳିଆ ଅବିରମଖା କହ୍ନ ଯେତେବେଳେ ଖେଳୁଛି ଏମିତି ଚଗଲା ମେଘମାନଙ୍କ ସାଙ୍ଗରେ, ଆଉ ଏଇ ଦୋମାଟି ଅଳିକ ଏତେ ଶାନ୍ତ ଆଣି ଦେଉଛି, ଜୀବନର ଲକ୍ଷେ ବିଭ୍ରାନ୍ତ ବିକୂଳକୁ ଆଲିଙ୍ଗ୍ କରିଦେଲା ପରି, ବିଶୁ ରାଏ ଏଠୁ ଉଠିବେ ନାହିଁ ସହଜେ । ଯିଏ ଆସୁଛି ଆସୁ କି ନଆସୁ ।

ବିଶୁବାବୁ ବସି ରହିଲେ । ଏବଂ ଗୋଟାଏ ଦୀର୍ଘ ନିଃଶ୍ୱାସ ପକେଇଲେ । ପୁରା ଦିନଟା ଚାଲିଗଲା, ହେଲେ କେହି ଆସିଲେ ନାହିଁ ଆଜି ପରି ଦିନରେ ଖାଲି ଜଣକ ଛଡ଼ା । ଆରେ, ମୁଁ କ'ଣ ସେଇ ଛବିରୁବି ମଦନାଗୋପାଳଆଙ୍କୁ ଖୋଜୁଛି ନା' କ'ଣ ମ ? ମୁଁ କ'ଣ ଜାଣେ ନାହିଁ ସେମାନେ ପିଦେଣି କୁଆଡ଼େ, ଛନ୍ନଛଡ଼ା ହୋଇ ? କିନ୍ତୁ ତାଙ୍କ ବଦଳରେ ଆଉ କେହି ଆସି ନଥାଆନ୍ତେ, ଯେଉଁମାନେ ମୋ ବାଲ୍ୟ ଓ କୈଶୋର, ଏବଂ ଆଦ୍ୟ ଯୌବନର ସ୍ମୃତିରେ ଗୋଳେଇ ଘୋଳେଇ ହୋଇ ରହିଥିଲେ ? କିଓ, କଷ୍ଟ ହେଉ ପଛେ, ଏଇ ପ୍ରାସାଦତୁଲ୍ୟ ଘର, ଯାହାର ଫାଟକକୁ ଲାଗିଥିବା ମାର୍ବଲ୍ ଫଳକରେ ଏବେ ସୁଦ୍ଧା ଲେଖା ହୋଇ ରହିଛି "ମାତୃଗୃହ", ଆଉ ତା' ତଳକୁ "ରାଏ ବାହାଦୁର ପୁଲିନ୍ ବିହାରୀ ରାୟ" (ନାମ୍‌ଜାଦା କଣ୍ଟ୍ରାକ୍ଟର ଓ ସମାଜସେବୀ ରାଏ ବାହାଦୁର, ଆଉ କିଛି ଦିନ ବଞ୍ଚିଥିଲେ ଓ. ବି. ଇ. ଉପାଧି ପାଇଥାଆନ୍ତେ ବୋଲି ଶୁଣା ହେଉଥିଲା), ଯିଏ ଏଇ ଘର ତୋଳିଥିଲେ ପ୍ରଥମେ, ସେଇଠୁଁ ତାଙ୍କର ପୁଅ ଜ୍ଞାନଗର୍ଭ ପ୍ରଫେସର୍ ଜଗବନ୍ଧୁ ରାଏ, ଅଗଣିତ ଅନୁଗତ ଛାତ୍ରଛାତ୍ରୀ ଆସୁଥିଲେ ତାଙ୍କ ପାଖକୁ, ତା' ଛଡ଼ା ମୋ ଭାଇଭଉଣୀଙ୍କ କେତେ ସାଙ୍ଗସାଥୀ ଥିଲେ···ଏଇ ବନେଦି ଖାନ୍‌ଦାନ ଘର କେତେ କାହାକୁ ଅନୁଗୃହୀତ କରିଥିବ, ଆପ୍ୟାୟିତ କରିଥିବ, ହ୍ୟାପ୍ ସେମାନଙ୍କ ଭିତରୁ କାହାର ଆଖିରେ ପଡ଼ି ନଥିବ, ଖବରକାଗଜରେ ଯେଉଁ ଚାପୁଆ ବ୍ରମ୍ପ ବାହାରିଥିଲା ମୋ ଘରବାହୁଡ଼ା ବିଷୟରେ ? ଅବଶ୍ୟ ଆଖିରେ ପଡ଼ିଛି, କିନ୍ତୁ ବାଜେ ଲୋକମାନଙ୍କର । ବିଶିଷ୍ଟ କଣ୍ଡ୍ରାକ୍ଟର୍ ବି. ବି. ରେଙ୍କ ସାଙ୍ଗରେ ସଂପର୍କ ଯୋଡ଼ିବା ଲାଗି । ଏଇକ୍ଷଣି ନହେଲେ ବି ପରେ, କେତେବେଳେ କାମରେ ଆସିବ, ଏଇ ଆଶାରେ । କିନ୍ତୁ କେହି ହେଲେ କ'ଣ ଆସିବେ ନାହିଁ ମୋ ଅତୀତକୁ ନେଇ, ଯେଉଁଥିରେ ସ୍ମୃତିକୁ ପ୍ରକୃତରେ କିଛି ଖୋରାକ୍ ମିଳିବ, ଆଉ ମୁଁ କହିବି ଥ୍ୟାଙ୍କ୍ସ, ଏମିତିକା ଅନୁଭବ ଲୋଡ଼ା ଥିଲା ମୋର ?

ଜଣେ ଆସିଥିଲା ଆଜି ସେଇ ଅତୀତକୁ ନେଇ । ମୋର ନହେଲେ ବି ଏଇ 'ମାତୃଗୃହ'ର ଅତୀତକୁ ନେଇ, ଯେଉଁଥିରେ ମୁଁ ସାମିଲ୍ ଥିଲି । ଭଲ ଲାଗିଲା । କୋଉ ପୃଥ୍ୱୀ ନାଏକ, ତାକ ନାଆଁ ପମୁ । ମୁଁ ତାକୁ ଚିହ୍ନି ପାରିଲି ନାହିଁ । ଟିକିଏ ମାଇଚିଆ ମନେହେଉଛି । ଟଙ୍ଗଅଙ୍ଗ ହୋଇ କଥା କହୁଥିଲା । ଭକ୍ତିର ସହିତ ଅଦ୍ଧର ଟିକିଏ ଲଗେଇଦେଲା ବିଶୁଭାଇର କପାଳରେ । ଆଉ ପଚାରୁଥିଲା ଜୀବନଭାଇ ଓ ଦେବନଭାଇ, ମାନେ ମୋର ବଡ଼ ଦ'ଭାଇଙ୍କ କଥା । ମଝି ମୋ ସାନଭଉଣୀ ସୁମୀ ବିଷୟରେ । ଆଉ ହେତକବେଳେ ତା' ପାଟି ବେଶି ଖନ ବାଜି ଯାଉଥିଲା । ଆମ ସୁମୀଟା କମ୍ ସୁନ୍ଦରୀଟିଏ ନଥିଲା କି ! କିନ୍ତୁ ରାଏ ବାହାଦୁରଙ୍କ ସୁନ୍ଦରୀ ନାତୁଣୀକୁ ପ୍ରେମ କରିବା କ'ଣ ଏତେ ସହଜ କଥା ? ତେଣୁ ଡରକୁଳା ଟୋକା ବୋଧହୁଏ ଖାଲି ଗୋଟାଏ ନୀରବ ପ୍ରେମିକ ହୋଇ ରହିଗଲା । ପୁଅର୍ ଥିଙ୍ଗ୍ ! ହେଲେ ମୁଁ ଫେରି ଆସିଛି ବୋଲି ଜାଣିଲାକୁ ଆସିଥିଲା ସେଇ ସ୍ମୃତିରେ ପଖାଳି ହେବା ପାଇଁ । ଗୁଡ୍ !

ଏମିତିକା କ୍ୟାରେକ୍ଟର ଖୋର ଲୋଡ଼ା, ଅଧିକରୁ ଅଧିକ । ଏବଂ ଆହୁରି ପ୍ରତ୍ୟକ୍ଷ ଓ ଜୀବନ୍ତ...

ଆରେ, ଆସୁନ କାହିଁକି, ଆସ ! ମୋ ଆପଣା ସ୍ମୃତି-ଜଗତ୍‌ର ଝିଅଟି ଧର, ଯାହାକୁ ମୁଁ ପୁଣି ଲଭିବାକୁ ବସିଛି, ମୋ ସନ୍ତକୁ ସୁନ୍ଦର କରିବ ବୋଲି । ଆଉ ଡରିବାର କିଛି ନାହିଁ ମ ! ମୁଁ ଏଇ ଖାନ୍‌ଦାନ୍‌ର ନାତି ହୋଇ-ପାରେ, କିନ୍ତୁ ମୁଁ ଗଣତାନ୍ତ୍ରିକ ଯୁଗର ଲୋକ, ବୁଝେ ଜର୍ଣ୍ଣାଲିଷ୍ଟ୍, ଯେ ଗ୍ରେଟ୍ ଭିଖାରିଙ୍କଠାରୁ ଆରମ୍ଭ କରି ମହା ମହା ହେଲବ୍ରିଟୀଙ୍କ ସାଙ୍ଗରେ ସାଙ୍ଗ ହୋଇ-ପାରେ 'ସ୍କୁପ୍'ଟାଏ ହାସଲ କରି ନେବା ପାଇଁ, କିମ୍ବା ମଣିଷଙ୍କୁ ନେଇ ଗୋଟାଏ ମଜାର ସତକଥା, ଯାହା ଚମତ୍କାର 'କପି' ହୋଇ ପାରିବ ଆମ ଏଡ଼ିଟର୍‌ମାନଙ୍କ ପାଇଁ । ଅବଶ୍ୟ ମୁଁ ଏଇକ୍ଷଣି କୋଉ ଚମତ୍କାରିତା ଖୋଜୁ ନାହିଁ, ଖାଲି ଏକ ଅନ୍ତ-ରଙ୍ଗତାର ସ୍ପର୍ଶ । ଘରବାହୁଡ଼ାର ଆବେଗକୁ ଦେଲି ପରି...

ମନେ ହେଲା ବିଶୁବାବୁଙ୍କର ବ୍ୟାକୁଳ 'ଆସ୍, ଆସ'କୁ ନକଲ କଲା ପରି ଅଦୂରବର୍ତ୍ତୀ କୋଇଲିଟାଏ (ଯିଏ ଘଣ୍ଟାଏ ହେଲା ଗୋଟାଏ ନାଟ ଲଗେଇଛି ବୋଲି ବିଶୁବାବୁ ଚିଡ଼ୁଥିଲେ ତା' ଉପରେ, ଆଉ କୋଇଲିର 'କୁହୁ'କୁ ଯେ କାହିଁକି ଏତେ ମଧୁର କୁହନ୍ତି ବୋଲି ବୁଝିପାରୁ ନଥିଲେ) ଆହୁରି ଜୋର୍‌ରେ ଘାଣ୍ଟି କରି ଉଠୁଛି ।

ଆଉ ସେତିକିବେଳେ ରଥିଆ ପଶି ଆସିଲା ବାଗର ଗ୍ରେଟ ଫାଟକ ଖୋଲି ଦେଇ । ଧଇଁସଇଁ ହୋଇ କହିଲା, "ମ୍ୟାଡ଼ାମ୍ ପୁଷ୍ପନାମ୍ନୀ ଆସିଛନ୍ତି —"

"କିଏ ?" ବିଶୁବାବୁ ଅନେଇଲେ ତା' ଆଡ଼କୁ ବିଗିଲା ପରି । ଯେମିତିକି ତାଙ୍କ ଯଥାର୍ଥ ବ୍ୟାକୁଳତାକୁ ଥଟ୍ଟା କରୁଛନ୍ତି ଏମାନେ, ପାଜି କୋଇଲିଠାରୁ ଆରମ୍ଭ କରି ଏଇ ଚଗଲା ଟୋକା ଯାଏଁ ।

କିନ୍ତୁ ରଥିଆର ପଛେ ପଛେ ଜଣେ ନାରୀମୂର୍ତ୍ତି ପ୍ରକୃତରେ ଆବିର୍ଭୂତ ହେଲେ, ଏବଂ ହୋ-ହୋ ହେଇ ହସିଉଠିଲେ । କହିଲେ "ପୁଷ୍ପନାମ୍ନୀ ନୁହେଁବେ, ପୁଷ୍କରିଣୀ...(ସେଇଠୁଁ ବିଶୁବାବୁଙ୍କ ଆଡ଼କୁ ଅନେଇ) ନମସ୍କାର ବିଶୁବାବୁ, ଚିହ୍ନିଲ କି ମୋତେ ?"

ବିଶୁବାବୁ ଠିଆହୋଇ ପଡ଼ି ତାଙ୍କୁ ପ୍ରତିନମସ୍କାର କଲେ । ହେଲେ ସ୍ପଷ୍ଟ ବୁଝାପଡ଼ୁଥିଲା ଯେ ସେ ତାଙ୍କୁ ଚିହ୍ନିପାରୁ ନାହାନ୍ତି ।

ଯାହାର ଉତ୍ତରରେ ନାରୀମୂର୍ତ୍ତି ପୁଣି ଗୋଟାଏ ବିରାଟ ହସ ହସି ଉଠିଲେ, ଏବଂ କହିଲେ—

"ସତରେ ଚହ୍ନି ପାରୁ ନାହିଁ ? ମୋ ଡାକ ନାଆଁ ଥିଲା ପୁତୁଲି । ଯାହାକୁ ତମେ ଜାଣିଶୁଣି ମୁତୁଲି ବୋଲି ଡାକୁଥିଲ, ଆଉ ମୁଁ ରାଗିଲାରୁ କହୁଥିଲ—'ଆଲୋ, ମୁଁ କ'ଣ ତତେ ମୁତୁରୀ ବୋଲି ଡାକୁଛି ଯେ ତୁ ଏତେ ଖପା ହୋଇ ଯାଉଚୁ ? ମୁତୁରୀ ନୁହେଁ, ମୁତୁଲି···କ'ଣ ମନେ ପଡ଼ିଲା ଏଥର ?"

ଏଥର ବିଶୁବାବୁଙ୍କର ନିଶ୍ଚୟ ମନେପଡ଼ିଲା, ଯାହା ତାଙ୍କ ବିସ୍ଫାରିତ ଚକ୍ଷୁରୁ ଜଣାପଡ଼ୁଥିଲା । ହେଲେ କ୍ଷଣକ ପାଇଁ ତାଙ୍କ ପାଟିରୁ କଥା ବାହାରିଲା ନାହିଁ । ସେଇଠୁଁ ସେ ହସିଉଠି ହୋଇ କହିଲେ—

"ଗଡ୍ ! ତମେ···ଆଇ ମିନ୍ ତୁ !"

ଖୋଲି ବିସ୍ମୟ । ଏଇ ପୁତୁଲି ନାମକ ନାରୀଙ୍କୁ ସେ ପୁଣି ଦେଖିବେ ବୋଲି ଆଶା କରି ନଥିଲେ, ଏବଂ ସେ ବୋଧହୁଏ ଅନେକ ଅନେକ ଧନ ଡଲର ଲୋକ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ସେ ଯେଉଁ ସସ୍ମିତ ଭାବଟି ଦେଖେଇଲେ ତାଙ୍କ ବିସ୍ମୟ ହାଙ୍ଗକୁ, ତାହା ଚେଷ୍ଟାକୃତ ମନେହେଲା । ଯେମିତିକି ଭଦ୍ରତା ଖାତିରରେ ଟିକିଏ ହସିବା କଥା, କିନ୍ତୁ ତାଙ୍କ ଆନନ୍ଦ ଉଚ୍ଛୁଳି ଉଠିପାରୁ ନାହିଁ । ଯଦିଓ ସେ ଦିନେ ସେହି ନାରୀ ସାଙ୍ଗରେ ଖେଳକଉତୁକ ହେଉଥିଲେ । ଏବଂ ଅବଶ୍ୟ ଅନ୍ତରଙ୍ଗ ଖେଳ-କଉତୁକ, ତାହା ଯେତେ ପିଲାଳିଆ ହେଉ ପଛକେ, ନହେଲେ ତାକୁ ଜାଣିଶୁଣି 'ମୁତୁଲି' ବୋଲି ଡାକୁ ନଥାଆନ୍ତେ ସେତେବେଳେ ।

ତା'ଛଡ଼ା ଲକ୍ଷ୍ୟ କଲେ ଜାଣିହେବ ଯେ ତାଙ୍କ ଭ୍ରୂରୁ ବି ଟିକିଏ କୁଞ୍ଚେଇ ହୋଇଗଲା, 'ଗଡ୍ !' ଇତ୍ୟାଦି କହିଲାବେଳେ । ସତେକି ଗଡ୍ ଅତୀତର ପୁତୁଳିକୁ କାଳକ୍ରମେ ଏମିତି ଅସୁନ୍ଦର କି ଅଦ୍ଭୁତ କରି ଥୋଇବେ ବୋଲି ସେ କଦାପି ଭାବି ନଥିଲେ ।

ଆଗନ୍ତୁକା ଗଡ଼ଗଡ଼ ହୋଇ କହି ଯାଉଥିଲେ—

"ମୁଁ ତନ୍ନତନ୍ନ କରି ମତେ ଦେଖି ଆସିଲିଣି—ବୁଝିଲ ବିଶୁବାବୁ ? ତମେ ଯୋଉଠି ପାଠ ପଢ଼ୁଥିଲ, ପୁଣି ପାଠପଢ଼ା ଛାଡ଼ିଦେଇ ମୋତେ ଯୋଉଠିକି ନେଇ ଯାଉଥିଲ··(ପଛକୁ ବୁଲିପଡ଼ି ଅନେଇଲେ, କାଳେ ରଥିଆ ଠିଆହୋଇ ରହି ଶୁଣୁଥିବ ତାଙ୍କ କଥା, ଏବଂ ଆଶ୍ୱସ୍ତ ହେଲେ ଯେ ସେ ହେଠୁଁ ଚାଲିଗଲାଣି । ସେଇଠୁଁ ଟିକିଏ ହସିଦେଲେ, କିନ୍ତୁ ପରେ ପରେ ଗମ୍ଭୀର ହୋଇଗଲେ) ଛାଡ଼ ଯେସବୁ ପୁରୁଣା କଥା । ତଥାପି ଟିକିଏ ଦେଖିବାକୁ ମନେହେଲା, ଏତେଦିନ ପରେ । କ'ଣ କିଛି ଭୁଲ୍ କଲି ?"

ବିଶୁବାବୁ ତତ୍‌କ୍ଷଣାତ୍ ମୁଣ୍ଡ ହଲେଇଲେ । ଏବଂ ଦୃଢ଼ତାର ସହ । ଅର୍ଥାତ୍ ସେଭଳି ପ୍ରଶ୍ନ ଉଠି ନପାରେ । କିନ୍ତୁ ଏଇକ୍ଷଣି ଯୋଉ ପୁତୁଳି କଥା କହୁଛି, ହସୁଛି, କଉତୁକ କରୁଛି, ପୁଣି ଗମ୍ଭୀର ହୋଇ ଉଠୁଛି, ସିଏ ମୋଟେ ମିଶୁ ନାହିଁ ସେବକାର ସେଇ ବାର ତେର ବର୍ଷର ଝିଅ ସାଙ୍ଗରେ, ଯାହାକୁ ସେ ପୁତୁଳି ବୋଲି ଡାକୁଥିଲେ । ତା' ପାଟିଟା ଏତେ ଚଗ୍ ନଥିଲା । ସେ ଏତେ ଜୋର୍‌ରେ ହସୁ ନଥିଲା । ଗାଲ ଦି'ଟା ଓଉଫଡ଼ା ପରି ଦିଶୁ ନଥିଲା । ଆଉ ଗୋରୀ ନହେଲେ ବି ଏତେ କାଳୀ ଦିଶୁ ନଥିଲା, ଏଇକ୍ଷଣି ଯେମିତି ଦେଖାଯାଉଛି । ତା' ବଡ଼ ପିଲାଟିଏ ହେଲେ ବି ଅଳ୍ପବହୁତ ସଂଭ୍ରମ ଥିଲା ତା' ପାଖରେ, ଝିଅପିଲାଙ୍କଠୁଁ ଯାହା ଆଶା କରାଯାଏ । କିନ୍ତୁ ଏଇ ଅଧାବୟସୀ ମାଇକିନିଆଟାର ଲାଜସରମ ବୋଲି କିଛି ନାହିଁ ମନେ ହେଉଛି ।

ସେ ଯେମିତିକା ଝିଅ, ମାନେ ଯେଉଁ କୁଳଶୀଳରେ ତା'ର ଜନ୍ମ, ତାଠୁଁ ଆଉ କ'ଣ ଆଶା କରୁଥିଲି ବିଶୁବାବୁ ? ସେମିତିକା ଝିଅ ଦରବୁଢ଼ୀ ହେଲାରୁ କେମିତି ଦେଖାଯାଆନ୍ତା ? ସୋସାଇଟି ଲେଡ଼ି ?

"ଆରେ, ଠିଆହୋଇ ରହିଛ କାହିଁକି ମ ?" ଆଗନ୍ତୁକା କହିଲେ ପୁଣି ଗୋଟାଏ ଖଣ୍ଡି ହସ ଦେଇ, "ବସ ବସ, ମୁଁ ବି ବସୁଛି ଆର ଚଉକିରେ । ମୁଁ ଆସିଛି ଗୋଟାଏ କାମରେ ।"

ଦେଖୁଛ ତ ବି. ବି ରେ ମାହେବ, ସେ କଭଳି ଢଙ୍ଗରେ କଥା କହୁଛି ତମ ସାଙ୍ଗରେ, ତମକୁ ହୁକୁମ୍ ଦେଲା ଭଳି ? ଏଇ ଦୁର୍ବିନୀତ ଠାଣି ବି କ'ଣ ଯୋଡ଼ା ହୋଇଛି ତା'ର ଜନ୍ମଜାତକ ସାଙ୍ଗରେ ? ନା, ମିଷ୍ଟର୍ ରେ, ତମ ଗଣତାନ୍ତ୍ରିକ ମନ ଏତେ ସଂକୀର୍ଣ୍ଣ ହୋଇ ନପାରେ । ତମେ ନିଜେ ଜାଣିଛ ସେକଥା । ଏବଂ ଜାଣିଛ ଯେ ଏଇ ପୁଷ୍କରିଣୀ ଓରଫ୍ ପୁତୁଳି କେଉଁ ଅଧିକାରରେ ଏମିତିକା କଥା କହିପାରୁଛି ତମକୁ, ଏହି ପ୍ରକାର ଭଙ୍ଗୀରେ । ସିଏଓ ତା' ମାଆ, ତା' ନାଆଁ ହେଉଛି ତାରା, ସେ ଥିଲା ଏଇ ଘରର ଦାସୀ । ଯେତେବେଳେ ତମର ଦେଖାହେଲା ପ୍ରଥମେ, ମା' ଝିଅଙ୍କ ସାଙ୍ଗରେ । ଖରାଛୁଟିରେ ଆସିଥିଲ ଏଠିକି କିଛି ଦିନ ପାଇଁ । ବାପା ନୂଆ ଗୃହକାର କରିଥିଲେ, ଦୂର ମଫସଲ କଲେଜ୍‌ରେ । ବୋଉକୁ କହିଲେ ମୁଁ ଆସିପାରିବି ନାହିଁ, ତମେ ଯାଅ । ତମର ଗୋଟାଏ କର୍ତ୍ତବ୍ୟ ତମ ଶଶୁରଙ୍କ ପ୍ରତି । ଆଉ ଏଇ ଟୋକା ବିଶୁକୁ ବି ନେଇଯାଅ । ଆର ତିନିଜଣ ତ ମଙ୍ଗ୍ନାହାନ୍ତି, କିନ୍ତୁ ସ୍ୱା'କୁ ସେଇ ବାଗଘର ଅଗଣା ଭଲ ଲାଗିବ ନିଶ୍ଚୟ । ଉଧମ୍ ମଚେଇବ । ଯେଉଁଠୁଁ ସେ ତାଙ୍କ ଉଦାର ହାତଟିଏ ଛାଡ଼ିଦେଲେ । କଅଣ ମନେପଡ଼ୁ ନାହିଁ ?

ହାଁ, ହାଁ । ବେଶ୍ ମନେପଡ଼ୁଛି ସବୁ କଥା । ଅବଶ୍ୟ ଏଇ ବାଗଘର ଅଗଣା, ସବୁକିଛି କିଣି ନେଇଥିଲି ମୋତେ ସେତେବେଳେ । ଏବଂ ଏଇ ପୁତୁଳିଟା

ମୋର ସାଙ୍ଗ ହୋଇଥିଲା । ମୋତେ ଭଲ ଲାଗୁଥିଲା ତା'ର ଝିଲିଝିଲି ହସ, ଖେଳ-ପାଳିଆ ଢାଙ୍ଗ, ଏବଂ ଫେଚ୍‌କାମି । ତା'ର ସେଇ ଗୋଟା ସୁନ୍ଦରିଆ ମାଆ ଜଣକ ବି । ଆଉ ମନେଅଛି ସେ କେତେ ଗେହ୍ଲା କରୁଥିଲା ମୋତେ । କିନ୍ତୁ ତା ବୋଲି କୋଉ ଅଧିକାରଟା ମିଳିଗଲା ମ୍ୟା'ଙ୍କୁ ଯେ ସେ ଆଜି ଏମିତି ଅଭଦ୍ରଙ୍କ ଭାବରେ କଥା କହିବ, ମୋର ଖୋଦ୍ ସାନଭଉଣୀ କି ଗାର୍ଲ ଫ୍ରେଣ୍ଡ୍ ପରି ? ତା'ର ଭାବିବା ଉଚିତ ଯେ ସେ ଯେତେହେଲେ— କ'ଣ ଭାବିବା ଉଚିତ ? ଯେ ତମେ ଯୋଉ ସବୁ କାମ ତା' ସାଙ୍ଗରେ କଲ, କିବାଡ଼ ଦେହଲଗା କାମ, ସେ ହିସାବରେ ସେ ଆହୁରି କାଛି, ଆହୁରି ଅଧିକ ?

ବାଜେ କଥା ! ପିଲାଦିନେ ଏମିତି ବହୁତ ନନ୍‌ସେନ୍‌ସ କାମ କରି ହୋଇ-ଯାଏ । କିନ୍ତୁ ସେଥିରେ କିଛି ହେଲେ ବଦଳେ ନାହିଁ । ମୋର ବି ବଦଳି ନଥିଲା, ବିଶେଷତଃ ବୋଉ ଯେତେବେଳେ ଆମର ମିଳାମିଶାକୁ ପସନ୍ଦ କଲା ନାହିଁ । କହିଲା ନାହିଁ ଯେ ସେ ଗୋଟାଏ ଗୃହକର୍ତ୍ତ୍ରୀର ଝିଅ, ତେଣୁ ତୁ ତା' ସାଙ୍ଗରେ ମିଶିବୁ ନାହିଁ । ଖାଲି ଏତିକି କହିଲା ଯେ ଏଇଟା ଭଲ କଥା ନୁହେଁ, ବାପା ଶୁଣିଲେ ରାଗିବେ । ଯାହାହେଉ, ମୁଁ ସେଇଦିନଠୁଁ ଦୂରେଇ ଗଲି ପୁତୁଲିଠାରୁ । ଆଉ ସତ କହୁଛି— ଛୁଟିର ବାକି କେଇଟା ଦିନ ଆମେ କୋଉ କଣ୍ଡେଲା ଘର ଭିତରେ ପଶି ଖିଲିଖିଲି, କୁତୁକୁତୁ ହେଲୁ ନାହିଁ କି ଆଉ କିଛି ପିଲାଳିଆ, କହିଲେ କୁହ ଖରାପ କାମ କଲୁ ନାହିଁ, ତା' ଯୋଗୁଁ ଯେ ମୋ ମନରେ ଭୀଷଣ କଷ୍ଟ ହେଲା ତା' ନୁହେଁ । ବରଂ ମୋତେ ବାଧିଲା, ବୋଉ ଯେତେବେଳେ ଖିଡମତ ଚଢ଼ିଲା ମୋ ଉପରେ ଯେ ମୁଁ ମଝିରେ ମଝିରେ ଚୁପ୍‌କିନା ଚାଲିଯାଉଛି ତାରାମାଉସୀ ପାଖକୁ । ଆଉ ସେ ମୋତେ ଗେହ୍ଲା କରୁଛି, ପାଖରେ ଶୁଆଉଛି । କିନ୍ତୁ ସେ ତଥାପି କହିଲା ନାହିଁ ମୋତେ କେଉଁଥିପାଇଁ ବାରଣ କରୁଛି । କହିଲା ନାହିଁ ଯେ ସେ ତୁଚ୍ଛା ଦାସୀଟିଏ, ସତରେ କୋଉ ମାଉସୀ ପିଉସୀ ନୁହେଁ । ଖାଲି ପୁଣି ସେଇ ଧମକ, ଜୋର୍‌ଦାର୍ ଧମକ ଏଥର—'ବାପା ଭୀଷଣ ରାଗିବେ ଏକଥା ଶୁଣିଲେ, ବୁଝିଲୁ ?'

ବିଶୁବାବୁଙ୍କର ମନେ ପଡ଼ିଗଲା ତାରାମାଉସୀର ଉଷ୍ମ କୋଳ । ଏବଂ ପ୍ରଲମ୍ବିତ ପ୍ରଚଣ୍ଡ ଗେହ୍ଲା । ସେଇଠୁଁ ସେ ପଚାରି ବସିଲେ ପୁତୁଲିଙ୍କୁ, ତାଙ୍କ କଥା ମଝିରେ—

"ତୋ ମାଆ, ତାରାମାଉସୀ, କେମିତି ଅଛନ୍ତି ?"

ଉତ୍ତରରେ ପୁତୁଲି ଯାହା କହିଲେ, ତା' ବିଶୁବାବୁଙ୍କୁ ମୋଟେ ଭଲ ଲାଗିଲା ନାହିଁ ।

"କେବେଠୁଁ ଖତମ୍ ହୋଇଗଲାଣି ମୋ ବାଆ। ତମେ କ'ଣ ଭାବିଥିଲ ସେ ବଞ୍ଚିବ ବୋଲି, ତମ ଜେଜେ ଯେତେବେଳେ ତାଙ୍କୁ ଧକ୍କା ମାରି ବାହାର କରିଦେଲେ ଏଠୁଁ ?"

ଧକ୍କା ଫକ୍କା ମାରି ନାହାନ୍ତି କିଛି। ଆମ ଜେଜେ ସେମିତିକା ଲୋକ ନୁହଁନ୍ତି। ତା'ଛଡା ସେ ଜଣେ ମାନ୍ୟଗଣ୍ୟ ମୁଖିଆ ଥିଲେ ଏଇ ଅଞ୍ଚଳର। ବିନା କାରଣରେ ସେ କାହାକୁ ଦଣ୍ଡ ଦିଅନ୍ତି ନାହିଁ। କିନ୍ତୁ ବିଶୁବାବୁ ନୀରବ ରହିଲେ। କିଛି ଲାଭ ନାହିଁ ଏଇ ସ୍ତ୍ରୀଲୋକଟା ସାଙ୍ଗରେ ଯୁକ୍ତିତର୍କ କରି। ମେଞ୍ଚାଏ ଚୋକା, କହିବାକୁ ଗଲେ ଶିଏଲ୍ ମୁରୁବ୍ବିଟାଏ, କ'ଣ ତାକୁ ଜଣାଥିଲା ସେତେବେଳେ ଏ ବିଷୟରେ ?

ହେଲେ ମାଆଝିଅଙ୍କୁ ତଡିଦେବାର କାରଣ ବିଷୟରେ ସେ ଯେ ନିଜେ ଅବଗତ ଥିଲେ, ତା'ନୁହେଁ। ମାନେ ପ୍ରଥମେ ବୁଝିପାରିଲେ ନାହିଁ କାହିଁକି ଏମିତି ହେଲା, ଯେତେବେଳେ ସେ ଦି' ବର୍ଷ ପରେ ଫେରି ଆସି ଦେଖିଲେ ଯେ ମାଆଝିଅ କେହି ନାହାନ୍ତି ଏଠି। କ'ଣ ହେଲା ? ସେମାନେ କ'ଣ ଏମିତି ଖରାପ କାମ କଲେ ଯେ ଜେଜେ ତାଙ୍କୁ ଘରୁ ବାହାର କରିଦେଲେ ଏକାବେଳକେ ? ଏବଂ ପରେ ଯେତେବେଳେ କାରଣସ୍ୱରୂପ କିଛି ଗୋଟାଏ ଖବର ଆସିଲା, ସେ ତାକୁ ସ୍ୱୀକାର କଲେ ବୋଲି କହିହେବ ନାହିଁ। ଅପରନ୍ତୁ ଗୋଟାଏ ବିଚିତ୍ର ସମ୍ଭାବନା ତାଙ୍କ ମନକୁ ଆସିଲା, ପ୍ରୀତିକର ଚିହ୍ନଟିଏ ଦିଶିଗଲା ପରି, ଯେ ସେମିତି ହୋଇଥିଲେ କେତେ ଭଲ ହୋଇଥାଆନ୍ତା ପରା !

ଯାହାହେଉ ସେ ଚୁପ୍ ରହିଲେ ଏଇକ୍ଷଣି। ଏବଂ ଅପେକ୍ଷା କଲେ, ଏଇ ସ୍ତ୍ରୀଲୋକଟା କହିଯାଉ ଯାହା କହିବାକୁ ଆସିଛି। ବି.ଏ.ରେ ଯେତିକି ଉଦାର, ସେତିକି ଆଧୁନିକ। ପୁଣି ଜଣେ ସ୍ୱନାମଧନ୍ୟ ଜର୍ଣ୍ଣାଲିଷ୍ଟ। ସେହେତୁ ସେ ଏଇ ଘରବାର ଦୁଆର ସାଙ୍ଗରେ ସଂଲଗ୍ନ ସମସ୍ତ ସ୍ମୃତିକୁ ଭଲପାଏ, ତମ ଆଖିରେ ସିଏ ଭଲ ହେଉ କି ଖରାପ। କାହିଁକିନା ସେଇ ସ୍ମୃତିର ଏଇ ମାଟିରୁ ଉପୁଜିଥିବା ସଂସ୍କୃତିର ଗୋଟାଏ ଅନ୍ତରଙ୍ଗ ବାସ୍ନା ଅଛି, ଯାହାକୁ ସେ ପୁଣି ଫେରି ପାଇବାକୁ ଚାହେଁ, ସନ୍ଧ୍ୟା ହେଲା ବେଳକୁ। ହେଲେ ମୁଁ ସେବେକାର ପ୍ରତ୍ୟେକ ଅନୁଭୂତିକୁ ଯେ ଠିକ୍ ସେମିତି ଭାବରେ ଗ୍ରହଣ କରିବି, ଏକଥା କିଏ କହିଲା ? ଏଇକ୍ଷଣି ମୁଁ ପିଲା ନୁହେଁ, ବଡ଼। ପ୍ରବୀଣ, ବିଜ୍ଞ। ମୋର ଖାଲି ଦରକାର ସେଇ ବାସ୍ନାଟିକି। ବିଶୁ-ବାବୁଙ୍କର ହଠାତ୍ ମନେପଡ଼ିଗଲା ତାରାମାଉସୀ କୋଳରେ ଲେପ୍‌ଟି ହୋଇ ଶୋଇଥିବା ବେଳର ବାସ୍ନା, ଏବଂ ସେ ତାକୁ ହସି ହସି ଘଉଡ଼େଇ ଦେଲେ। କହିଲେ, ମୋତେ ଏମିତି ଚଢ଼େଇବା ଦରକାର ନାହିଁ। ଏବଂ ଘଉଡ଼େଇ ଦେଲା ବେଳକୁ ବର୍ତ୍ତମାନ ମୁହୂର୍ତ୍ତର ଗୋଟାଏ ବାସ୍ନା ମଧ୍ୟ ଅତି ଉତ୍କଟ ମନେହେଲା

ତାଙ୍କୁ । ପୁତୁଳି ଯେଉଁ ଶସ୍ତା ଅତର ମାଖି ହୋଇଛି ତା' ଦେହରେ । ସ୍ବା'କୁହିଁ ଅସନା ବୋଲି କହିବ, ତାକୁ ନୁହେଁ । ଯାହାହେଉ କହିଯାଉ ସେ ଯାହା କହିବ ବୋଲି ଆସିଛି । ମୁଁ ଶୁଣିଯିବ । ତାହାହିଁ ଜର୍ଣ୍ଣାଲିଷ୍ଟ୍‌ର ଧର୍ମ ।

—"ଶୁଣ ବଶୁବାବୁ, ମୁଁ ଗୋଟାଏ ବିଶେଷ କାରଣରୁ ଆସିଛି । ଯେତେ-ବେଳେ ଶୁଣିଲି ଯେ ତମେ ଫେରି ଆସିଛ ତମ ଘରକୁ, ତମର ଏଇ ପୁରୁଣା ଖାନ୍‌ଦାନ ଘରକୁ ।"

ମଲା, ଏଥିରେ କୋଉ ରସ ମଡ଼ାଉଛି ତୋତେ ? ହସୁଛୁ କାହିଁକି ନହସିଲି ଭଳି ?

"ମୁଁ ଭାବିଲି ଏଇ ଗୋଟାଏ ସୁଯୋଗ ମିଳିଛି, ପଛଟାକୁ ଭୁଲିଯିବା ପାଇଁ । ମୋର କୌଣସି ରାଗ ନାହିଁ ଏଇକ୍ଷଣି ତମ ଜେଜେଙ୍କ ଉପରେ କି ଆଉ କାହା ଉପରେ । ତମର ଜେଜେ କି ବାପାମାଆ କେହି ନାହାନ୍ତି ଏଇକ୍ଷଣି । ମୋ ମାଆ ବି ତ କେବଠୁଁ ଯାଇଁ ବସିଲାଣି ସ୍ବର୍ଗରେ । ସେଇଠି ସେ ହୁଏତ ବୁଢ଼ୀମଣା ହେଉଥିବ ତାଙ୍କ ସାଙ୍ଗରେ । କିନ୍ତୁ ଆମେ ତ ଅଛୁ ! ସେ ପାଖରୁ ତମେ, ଆଉ ଏପାଖରୁ ମୁଁ । ଆଉ ତମର କିଛି ଖରାପ ଧାରଣା ନାହିଁ ମୋ ଉପରେ । ନା ଅଛି ବୋଲି କହୁଚ ? (ପୁଣି ସେଇ ଅଭଦ୍ର ମୁରୁକିହସା-ଡ୍ୟାମ୍ ଇଟ୍ !) ସେଇଲାଗି ମୁଁ ଭାବିଲି ଯେ ଆଜି ପରି ଗୋଟାଏ ଦିନରେ ମୁଁ ତମ ସାଙ୍ଗରେ ଦେଖା କରି ଆସିବି । ଖାଲି ଦେଖା କରିବା ନୁହେଁ, ତମକୁ ନିମନ୍ତ୍ରଣ କରି ଆସିବି—"

ଏଇଆ କହି ଆଗନ୍ତୁକା ତାଙ୍କ ହାତରେ ଥିବା ଭ୍ୟାନିଟି ବ୍ୟାଗ୍‌ରୁ ଗୋଟାଏ ଲଫାପା ବାହାର କଲେ । ତା' ଉପରେ ନାଲିକାଳିରେ କ'ଣ ଲେଖା ହୋଇଛି । ସେଇଠୁଁ କହିଲେ—

"ମୋ ଝିଅ ଟ୍ୱେଲ୍ଭ୍ ଟୁର ବାହାଘର । ନାଆଁ ସ୍ବପ୍ନା । ତା' ବାପା ଜଣେ ଅଭିନେତା କି ନା, ଶୁଣିଥିବ ତାଙ୍କ ନାଆଁ, ଅଳକା ଗଣନାଟ୍ୟର ସବୁଠୁଁ ବଡ଼ ହୀରୋ ସିନ୍ଧୁ ମହାନ୍ତି (ହିଁ-ହିଁ), ସେଇଲାଗି ଏମିତି ଗୋଟାଏ ନାଟୁଆ ନାଆଁ ଦେଲେ ତାଙ୍କ ଗେଲବସର ଝିଅକୁ···

ମୁଁ ତା'ହେଲେ ଉଠୁଛି ବଶୁବାବୁ, ଏଇ ରହିଲା କାର୍ଡ଼ । ଭାଉଜ ଆସିଥିଲେ କେତେ ଭଲ ହୋଇଥାଆନ୍ତା । କିନ୍ତୁ ତମେ ଅଭଦ୍ର ଲୋକ, ତାଙ୍କୁ ଛାଡ଼ିଦେଇ ଆସିଛ କେଉଁଠି । ଯାହାହେଉ ତମେ ଆସିବ, ନିଶ୍ଚୟ ଆସିବ, ତମକୁ ମୋ ରାଣ ।"

× × 'ମୋ ରାଣ' ! ସତେକି ତା' ରାଣକୁ ମୁଁ କାଟିଦେଇ ପାରିବ ନାହିଁ । ପୁଣି ଚଟ୍‌କିନି ଜମ୍ବୁନୀକୁ ଭାଉଜ କରିଦେଲା ନା ଛାଡ଼ିଲା । ଲାଜ ନାହିଁ ତୋ ମୁହଁକୁ ଟିକିଏ ?

ପୁତୁଲ ଚାଲିଗଲା ପରେ ମଧ୍ୟ ବିଶୁବାବୁ ସେଇଠି ବସି ରହିଥିଲେ । ଆକାଶକୁ ଅନାଉ ନଥିଲେ । ମାଟିକୁ ବି ଛୁଇଁବ, ଆହୁରି ଛୁଇଁବ ବୋଲି ହେଉ ନଥିଲେ । ଖାଲି ସିଧାସଳଖ ଅନେଇଥିଲେ ସାମ୍ନାର କଦଳୀ ବନ ତଥା ଉଜୁଡ଼ା ବଗିଚାର ବିରୂପକୁ । ଏବଂ ଭାବୁଥିଲେ ନାନା କଥା ସେଇ ପୁତୁଲକୁ ନେଇ । ହେଲେ ଠିକଣା ଭାବରେ ଭାବୁ ନଥିଲେ । ତାକୁ ଗୋଳେଇ ପୋଳେଇ ଦେଉଥିଲେ, ଯେମିତିକି କେଉଁ ନିର୍ଦ୍ଦିଷ୍ଟ ଭାବନାର ଖିଅ ଧରିବାକୁ ପଡ଼ିବ ନାହିଁ, ତା'ର ହିସାବନିକାଶ କରିବା ଲାଗି । ଶେଷକୁ ସେ ଗୋଟାଏ ଦୀର୍ଘନିଃଶ୍ୱାସ ପକେଇ କହିଲେ ନିଜକୁ, ରାଗିଲା ପରି—

ହଁ, ମୁଁ ଯିବ ଝୁମ୍ପୁରୁର ବାହାଘରକୁ । ଅଲବତ୍ ଯିବ । ନଯିବାର କୌଣସି କାରଣ ନାହିଁ । ତା' ମାଆ ଖଣ୍ଡିଏ ହୋଇପାରେ ଗୋଟାଏ···ଗୋଟାଏ ସ୍ଥୂଳ ଅଭଦ୍ର ପ୍ରାଣୀ, କିନ୍ତୁ ସେଥିରେ କିଛି ଯାଏଆସେ ନାହିଁ । ନିରପେକ୍ଷ ନିର୍ଭୀକ ସାମ୍ବାଦିକ ବି. ବି.ରେ ସେଭଳି କୌଣସି ବାଛବିଚାର କରେ ନାହିଁ, ଗୋଟିଏ ଠିକଣା 'କପି' ତିଆରି କରିବା ଲାଗି । ଆଉ ଇଏ ବି ଗୋଟିଏ ମହା ଇଣ୍ଟରେଷ୍ଟିଙ୍ଗ୍ କପି ମୋ ପାଇଁ । ସେ ଦିନର 'ମୁତୁଲି' ଏଇକ୍ଷଣି ଗୋଟାଏ ଜବର୍ ବଡ଼ପାଟିଆ ମାଇକିନିଆ, ଶସ୍ତା ଅତରମଖା ମାଇକିନିଆ, ଯାହା ସାଙ୍ଗରେ ଦିନେ ମୋର ଗୋଟାଏ ସଂପର୍କ ଥିଲା ବୋଲି କହିପାରି । ଡଲ୍ ନଟ୍ ମ୍ୟାଟର୍ ! ଏଇକ୍ଷଣି ସେ ଗୋଟାଏ ମଧ୍ୟବିତ୍ତ ପରିବାରର କର୍ତ୍ତ୍ରୀ, କୋଉ ଅଭିନେତାର ପତ୍ନୀ, ଆଉ ତା' ଝିଅର ଭଲ ନାଆଁ ସ୍ୱପ୍ନା, ଯିଏ ବି.ଏ. ପଢ଼ୁଛି, ଆଉ କୋଉ ଓକିଲକୁ ବାହାହେବାକୁ ଯାଉଛି । ସକ୍‌ସେସ୍ ଷ୍ଟୋରି ଆଉ କାହାକୁ କୁହନ୍ତି ? ତେଣୁ ଅନ୍ତତଃ ଗୋଟାଏ କଣ୍ଟ୍ରାଷ୍ଟ ହିସାବରେ ମୁଁ ତାକୁ ଗ୍ରହଣ କରିବ । ଅବଶ୍ୟ କରିବ । ଆଉ ଜୟନ୍ତୀକୁ ବି ଜଣେଇ ଦେବ । ପିଲାମାନେ ବି ଜାଣନ୍ତୁ, କିଛି କ୍ଷତି ନାହିଁ ।

କିନ୍ତୁ···କିନ୍ତୁ···ଜେଜେଙ୍କ ଭଳିଆ ଜଣେ ଦିଲ୍‌ଦାରିଆ ଲୋକ, ସେ ସେମାନଙ୍କୁ ତଡ଼ି ନଦେଲେ ଚଳି ନଥାଆନ୍ତା ? ବିପତ୍ନୀକ ବଡ଼ବାବୁଙ୍କର କେତେ ସେବା କରି ନ ଥିଲା ତାରିମାଉସୀ !

ମଲା, ତମେ କ'ଣ ତା'ର କାରଣ ଜାଣିନାହଁ ନା କ'ଣ ମ ? ଏଇ ଛୁଗୁଲିଆ ପ୍ରଶ୍ନ ତାଙ୍କ ମନକୁ ଆସିଲାକ୍ଷଣି ତାଙ୍କ ଆଖି ଆଗରେ ନାଚିଗଲା ପିଲାଦିନର ସେଇ ପ୍ରୀତିକର କଳ୍ପନାର ଚିତ୍ର । ଜେଜେ ତାରିମାଉସୀକୁ ବାହା ହୋଇ ପାରି ନଥାନ୍ତେ ? ରକ୍ଷିତା ହେଲାରୁ ସେ ତା' ଉପରେ ରାଗିଗଲେ କୋଉ କଥାରେ (ହୁଏତ ସେ ଆଉ କାହା ସାଙ୍ଗରେ ମିଶୁଛି ବୋଲି ଜାଣିଲେ), ଆଉ ତାକୁ ଚଟ୍‌କିନି ବାହାର କରିଦେଲେ ?

କିନ୍ତୁ ମନେରଖ, ମୁଁ ଯେତେବେଳେ ମିଶୁଥିଲି ପୁତୁଲି ସାଙ୍ଗରେ, ସେତେ-ବେଳେ ମୋର ଧାରଣା ନଥିଲା ଯେ ତାରିମାଉସୀ ଜେଜେଙ୍କର ରକ୍ଷିତା, ଆଉ

ସମ୍ଭବତଃ ପୁତୁଲ ହେଉଛି ତାଙ୍କର ଝିଅ। ରକ୍ଷିତାର ଅର୍ଥ ବି ମୋତେ ଜଣାନଥିଲା ଠିକ୍ ଭାବରେ। ଅତଏବ ମୁଁ ଜାଣିଶୁଣି କିଛି ଜଘନ୍ୟ କାମ କରି ନାହିଁ।

ଅବଶ୍ୟ ପୁତୁଲି ଯଦି ଜେଜେଙ୍କର ଝିଅ ହୁଏ, ତା'ହେଲେ ସେ ହେବ ମୋର...ମାଈଁ ଗଡ୍।

ସବୁ ମିଛ। ଯାହା ସତ ନୁହେଁ, ତାକୁଇ କେବଳ ମିଛ କୁହାଯାଏ ନାହିଁ। ଯାହା ସତ ହେଲେ ମଧ୍ୟ ଗ୍ରହଣଯୋଗ୍ୟ ନୁହେଁ, ତାକୁ ମଧ୍ୟ ମିଛ କୁହାଯାଏ। କୁହାଯିବା ଉଚିତ। ନହେଲେ ଆମ ସଭ୍ୟତା ଭୁଶୁଡ଼ି ଯିବ ନାହିଁ ମୂଳରୁ ? ଯଥା—ଜଣେ ପ୍ରତିଷ୍ଠିତ ଜଜ୍, ଦେଶବିଦେଶରେ ଯାହାର ନାଆଁ ପଡ଼ୁଛି, ସେ କେବେ-ହେଲେ ଲାଞ୍ଚ ନେଇ ନପାରେ ଯଦିଓ ଏକାଧିକ ଲୋକ ତା'ର ଗୃହପ୍ ପ୍ରମାଣ ପାଇଛନ୍ତି। ଅଥବା ଜଣେ ସୁବିଖ୍ୟାତ ବିଦ୍ୱାନ୍, ଯାହାର ବହିସବୁ ପୋଷ୍ଟ-ଗ୍ରାଜୁଏଟ୍ କ୍ଲାସ୍‌ରେ ପଢ଼ା ହୁଏ, ସେ ତା' ସ୍ତ୍ରୀକୁ ମାଡ଼ ମାରେ, ପୁଣି ତା' ସାମନାରେ ଆଉ କେଉଁ ସ୍ତ୍ରୀକୁ ଉପଭୋଗ କରେ, ଏହି ତଥ୍ୟ କଦାପି ଗ୍ରହଣଯୋଗ୍ୟ ନୁହେଁ। ସେହେତୁ ତାରାମାଉସୀ କେବଳ ଗୋଟାଏ ଦାସୀ ଥିଲା, କୋଉ ରକ୍ଷିତା ଫକ୍ଷିତା ନୁହେଁ। ଜେଜେ ସେମିତିକା ଲୋକ ନୁହଁନ୍ତି। ଆଉ ମୁଁ ପୁତୁଲି ସାଙ୍ଗରେ ଲାଗିଥିଲି ସେତେ-ବେଳେ, ପୃଥିବୀର ଲକ୍ଷେ ଟୀନ୍-ଏଜରଙ୍କ ପରି। ଯାହାକୁ ପାପ ବୋଲି କହିବା ହାସ୍ୟାସ୍ପଦ।

ସବୁ ମିଛ। ସେଇଠୁଁ ବିଶ୍ୱବାବୁ କେଜାଣି କାହିଁକି ଆକାଶକୁ ଅନେଇଲେ। ଏବଂ ଦେଖିଲେ ସେଠି ଅଦ୍ୟାବଧି ଚାଲିଛି ସେଇ ଜହ୍ନ-ମେଘ ଲୁଚକାଳି ଖେଳ।

ଏଥର କିନ୍ତୁ ତାଙ୍କର ମନେହେଲା ନାହିଁ ଯେ ତା'ର କୌଣସି ପୁରୁଣା ଏବଂ ବିଶିଷ୍ଟ ସଂପର୍କ ଅଛି ଏଇ ଖାନ୍‌ଦାନ ବାରପର ସାଙ୍ଗରେ। ଆଉ ତା'ର ଏଇ ଓଦାମାଟି ସାଙ୍ଗରେ। ଓଦାମାଟି ଚେଷ୍ଟାକୁ ଟାଣିନିଏ ସିନା କିନ୍ତୁ କାଦୁଅ ହୋଇଯାଏ। ତା'ର ସ୍ୱଭାବ ସେଇଆ। ଏବଂ ସହଜେ ଲାଖିଯାଏ ତମ ଦେହରେ, କେଉଁଠି ନା କେଉଁଠି। କିନ୍ତୁ ଏଇ ଚହ୍ଲା-ଅଚହ୍ଲା ଆକାଶ, ଇଏ ଖାଲି ଏ ଘରର ନୁହେଁ, ଇଏ ମଧ୍ୟ ଆମେରିକାରେ ଥିବା ଡେନ୍‌ଭର୍‌ର ଯେଉଁଠି ଝିଅ ମୀରା ଅଛି, ବମ୍ବେର ଯେଉଁଠି ପୁଅ ପ୍ରଦୀପ ଅଛି, ଆଉ ଦିଲ୍ଲୀର ଯେଉଁଠି ଜୟନ୍ତୀ ଅଛି ଆଉ ଝିଅ ଶୀଲା ସାଙ୍ଗରେ। ଏବଂ ଇଏ ସବୁବେଳେ ଶୁଖିଲା ଓ ସୁନ୍ଦର, ଯେତେ ମନଲୋଭା ହେଉନା କାହିଁକି। ଭୟ ନାହିଁ ଯେ ଇଏ ଲାଖିହିବ ତମ ଦେହରେ, ଥାନ ଅଥାନରେ। ଆଉ କାଣିଲାରୁ ତମକୁ ଚିଟିଚିଟି ଲାଗିବ। ସିକସିକ ଲାଗିବ।

ଜୟନ୍ତୀ ବୋଧହୁଏ କିଛି ଭୁଲ୍ କହି ନଥିଲା। ଡୁବି ଯିବାଠାରୁ ଉଡ଼ି ଉଡ଼ି ଯିବାହିଁ ଶ୍ରେୟସ୍କର ତମ ସଞ୍ଜବେଳାକୁ। ମେଘୁରକୁ ହାଲୁକାରେ ପାରି ହୋଇଗଲା ପରି...।

# ଓଦାମାଟି

ଛିଃ ! କେଉଁ ସୁଦୂର ଅତୀତରେ ପୁତୁଲି ଓରଫ୍ ମୁତୁଣିର ଅପ୍ରତ୍ୟାଶିତ ଆବିର୍ଭାବ ହେତୁ ଉନ୍ମନା ବିଶ୍ୱଭୂଷଣ ବାବୁଙ୍କର ଭାବାନ୍ତର ଆସିଲା, ତେଣୁ ସେ ତାଙ୍କ ସୁରୁଚି-ସଂସ୍କୃତିର ନିର୍ଣ୍ଣୟକୁ ଜାବୁଡ଼ି ଧରିପାରିଲେ ନାହିଁ, ବାଧ୍ୟ ହୋଇ ଗୋଡ଼ ଦି'ଟାକୁ ଉଠେଇ ଆଣିଲେ ଓଦାମାଟି ଉପରୁ···ଏହି ମର୍ମରେ କେତେକ ହୁଏତ ସମବେଦନା ଜଣାଇବାକୁ ଚାହିଁବେ ଭଦ୍ରଲୋକଙ୍କ ପ୍ରତି । ଖାଲି ସେତିକି ନୁହେଁ, ସମବେଦନା ସହିତ ତାଙ୍କ ସ୍ତୁତିଗାନ ମଧ୍ୟ କରିପାରନ୍ତି । କହିବେ—ବି. ବିଂରେଙ୍କ ପରି ଲୋକ ପୃଥିବୀକୁ ଖୋଜି ଆସିଥିବା ବିଖ୍ୟାତ ଜର୍ଣ୍ଣାଲିଷ୍ଟ ସେ ଶେଷରେ ଏଇ ଶ୍ରେଷ୍ଠ ସହରରେ ରହିବାକୁ ସ୍ଥିର କଲେ, ପୁଣି ଏଇ ପୁରୁଣା ଖାନ୍‌ଦାନି ହେଲେ ଭଙ୍ଗାଚୁଙ୍ଗା ଘରେ, ଏହାହିଁ କ'ଣ ବଡ଼ କଥା ନୁହେଁ ? କିନ୍ତୁ ଦୁର୍ଭାଗ୍ୟ ଯେ ତାଙ୍କ ସୂକ୍ଷ୍ମ, ଶାଳୀନ, ରୁଚିସମ୍ପନ୍ନ ମନକୁ ଏଭଳି ଗୋଟାଏ ଧକ୍କା ହେଲା, ଯାହା ସେ ସ୍ୱପ୍ନରେ ସୁଦ୍ଧା ଭାବି ପାରି ନଥିବେ । ଭଲା ଅତୀତ କ'ଣ ଆଉ କାହାକୁ ପହଞ୍ଚେଇ ପାରି ନଥାଆନ୍ତା ତାଙ୍କ ପାଖରେ, ଏଭଳି ଏକ ସୁରୁଚିମଧୁର ଅବରମଣୀ ସନ୍ଧ୍ୟାରେ, ଏଇ ବଡ଼ପାଟିଆ ଅଶ୍ଳୀଳ ସ୍ତ୍ରୀଲୋକଟା ଛଡ଼ା ?

କିନ୍ତୁ କ୍ଷମା କରିବେ ମୁଁ ଏଇ ସଫେଇଟିକୁ ଗ୍ରହଣ କରି ପାରୁ ନାହିଁ । ମୋର ମନେହେଉଛି ଯେ ଭଦ୍ରଲୋକଙ୍କର ସୁରୁଚି-ସଂସ୍କୃତିଗତ ପ୍ରାଣ ଏତେଟା ବଳିଷ୍ଠ ନୁହେଁ । ନହେଲେ ତା'ର ଏଇ ଦଶା ହୋଇ ନଥାନ୍ତା । ବିଗତ ପୁତୁଲିର ଆବିର୍ଭାବ ଯୋଗୁଁ ଅନ୍ତତଃ ଅତୀତର ସ୍ନେହଶୀଳା ତାରାମାଉସୀକୁ ମନେ ପକାଇ । ଅପରନ୍ତୁ ତାରାମାଉସୀଙ୍କ ଉଷ୍ମ କୋଳର ବାସ୍ନା ମିଶି ଯାଇ ପାରିଥାଆନ୍ତା ଉକ୍ତ ଓଦାମାଟିର ବାସ୍ନା ସାଙ୍ଗରେ, ପୁତୁଲି ଦେହର ଶସ୍ତା ଅତର ବାସ୍ନାକୁ ବାତିଲ୍ କରିଦେଇ । ସେଇଠୁଁ ପ୍ରଶ୍ନ ଉଠୁଛି ଯେ ତାଙ୍କ ରୁଚି ଏବଂ ସଂସ୍କୃତିର କ'ଣ ଯଥେଷ୍ଟ

ଅନ୍ତର୍ନିହିତ ଶକ୍ତି ଥିଲା, ଯାହା ତାଙ୍କୁ ବଳ ଦେଇଥାଆନ୍ତା । ଏହିପ୍ରକାର ପ୍ରତିକୂଳ ପରିସ୍ଥିତିର ମୁକାବିଲା କରିବା ପାଇଁ, ତାହା ଯେତେ ସାମାନ୍ୟ ହେଉନା କାହିଁକି ? ଏବଂ ମୋର ସନ୍ଦେହ ହେଉଛି ଯେ ପ୍ରକୃତରେ ନଥିଲା ସେମିତି କିଛି ।

ପ୍ରଥମେ ଏଇ ସ୍ମୃତି କଥା ଦେଖାଯାଉ । କେବଳ ବାଲ୍ୟ, କୈଶୋର, ଏବଂ ଆଦ୍ୟ ଯୌବନର ସ୍ମୃତି, କାରଣ ସେ ବି.ଏ. ପାସ୍ କରିବା ପୂର୍ବରୁ ଛୁଟିପିଟି ହୋଇ ପଳେଇ ଯାଇଥିଲେ ଏଠୁଁ । ବସ୍ତୁତଃ ବାଲ୍ୟ ଓ କୈଶୋରର ସ୍ମୃତି । ଯାହାକି ମଧୁମୟ ବୋଲି ମନେ ହେଉଥିବ ତାଙ୍କୁ, ଯେହେତୁ ତା' ପରେ ପରେ ତାଙ୍କୁ ଛୁଟିପିଟି ହୋଇ ପଳେଇ ଯିବାକୁ ମନ ହେଲା । ହଁ, ଏଇ ସମୟଟି ସାଧାରଣତଃ ଲାଗି ରହେ ତମ ମନରେ, ଯେତେ-ବେଳେ ମଣିଷ ପିଲା ନାଚୁଥାଏ, କାନ୍ଦୁଥାଏ ଏକ ସରଳ ସ୍ୱଚ୍ଛନ୍ଦ ଆବେଗରେ ଥେଇ ଥେଇ ହୋଇ ଏବଂ କେତେବେଳେ କେମିତି ମାଡ଼ ଖାଇଲେ ଓ କାନ୍ଦିଲେ ବି ତାହା ସହଜେ ଭୁଲି ହୋଇ-ଯାଏ । ବିଶ୍ୱଭୂଷଣ ମଧ୍ୟ ସେହି ସ୍ମୃତିକୁ ଭଲପାଆନ୍ତି ଏବଂ ତାହା ସ୍ୱାଭାବିକ । କିନ୍ତୁ ସିଏ ତ ତାଙ୍କ ନିଜର ଗୋପନ ଧନ । ଯେଉଁଠି ରହିଲେ ବି ତାକୁ କିଏ ତାଙ୍କଠୁଁ ଛଡ଼େଇ ନେଇଯିବ ନା କଅଣ ? ହଁ, ଏଠି ରହିଲେ ତାହା ହୁଏତ ଉଜ୍ଜୀବିତ ହୋଇ ଉଠିବ—ସେଇ ଦଳୁଆ ପୋଖରୀ, ସେଇ ଡଇଁହୁଙ୍କା ସେଇ ବରଫିଆଳର ଦୋକାନ ଇତ୍ୟାଦିକୁ ମନେପକାଇ । କିନ୍ତୁ ସେଦିନର ସେଇ ଅନୁଭବଗୁଡ଼ିକ ଫେରି ଆସିପାରିବ କି ? ନା, ତା' ସମ୍ଭବ ନୁହେଁ । କାରଣ ତମେ ଆଉ ପିଲା ହୋଇ ନାହଁ, ତେଣୁ ପୁଣି ସେଇଭଳି ଆବେଗର ଶରିଖ ହୋଇପାରିବ ନାହିଁ । ଖାଲି ମନେପଡ଼ିବ, ଓ ମନେ ପଡ଼ିଲାରୁ ମଜା ଲାଗିବ । ତେବେ ସ୍ମୃତି ହୁଏତ ଅଧିକ କାର୍ଯ୍ୟକାରୀ ହୋଇ ଉଠନ୍ତା, ବିଗତ ଅନୁଭବ ଫେରି ଆସିଲା ପରି ମନେ ହୁଅନ୍ତା, ଯଦି ପିଲାଦିନର ସାଥୀମାନେ ମଧ୍ୟ ଫେରିଆସନ୍ତେ ତମ ପାଖକୁ, ସେହି ପୁରୁଣା ସାଥୀତ୍ୱ ନେଇ । କିନ୍ତୁ ତାହା ପ୍ରାୟଶଃ ସମ୍ଭବ ହୁଏ ନାହିଁ । ଯଦି ତମର ଯୌବନ ଓ ମଧ୍ୟବୟସ ଆଉ କେଉଁଠି କଟିଛି, ତେଣୁ ତମେ ତାଙ୍କଠୁଁ ବିଚ୍ଛିନ୍ନ ହୋଇଯାଇଛ, ସେଇ ବିଚ୍ଛିନ୍ନତାକୁ ପୁଣି କ୍ୱଚିତ୍ ଯୋଡ଼ିଦେଇ ହୁଏ । ସେମାନେ ହୁଏତ ସେଠି ଆଉ ନଥାଆନ୍ତି । ଥିଲେ ମଧ୍ୟ ବଦଳି ଯାଇଥାଆନ୍ତି, ଚଲାପଥର ଭିନ୍ନ

ଆଶା, ଅଭିଳାଷ, ବୃତ୍ତି, ପରିବାର ଇତ୍ୟାଦିକୁ ନେଇ । ସେହେତୁ ବିଶ୍ୱଭୂଷଣ ଓରଫ୍ ବି.ବି.ରେ ସାହେବ କୋଉ ଭୂର୍ଦ୍ଧିରେ ଅନେଇ ରହିଥିଲେ, ଯେ କଣକ ପରେ କଣେ ଆସି ତାଙ୍କ ସାଙ୍ଗରେ ହୋଲି ଖେଳିବେ ସେଦିନ, ତାହା ଭାବିବା ବିଷୟ ।

ସଂସ୍କୃତିର ପରିଆଣି ଆଧୁନିକ ବିଚାର । ଏଇ ଶ୍ରେଷ୍ଠ ସହରଟି ଭାରତର ଏକ ସ୍ୱତନ୍ତ୍ର ରାଜ୍ୟରେ ଅବସ୍ଥିତ, ତେଣୁ ମାନିବାକୁ ପଡ଼ିବ ଯେ ଏହି ଅଞ୍ଚଳର ଭାଷା, ସାହିତ୍ୟ ଓ ସଂସ୍କୃତିର ଅଳ୍ପ-ବହୁତ ଭିନ୍ନତା ଓ ବୈଶିଷ୍ଟ୍ୟ ରହିଛି । ହେଲେ ତାହା ଭାରତୀୟ ସଂସ୍କୃତିର ଅଂଶବିଶେଷ ନୁହେଁ କି ? ତେଣୁ ଯଦି ତମେ ନିଜେ ସେହି ବିଶିଷ୍ଟ ସଂସ୍କୃତି ଦିଗରେ ବିଶେଷ କିଛି କରିନାହଁ, କରୁନାହଁ ବା କରିବାକୁ ଚାହୁଁନାହଁ, ତା'ହେଲେ ଭାରତର ଯେକୌଣସି ସ୍ଥାନରେ ରହିଥିଲେ ମଧ୍ୟ ତମେ କ'ଣ ସେହି ସଂସ୍କୃତିର ଦାୟାଦ ବୋଲି ନିଜକୁ ମନେ କରିପାରିବ ନାହିଁ ? ଏବଂ ତା'ର ବାର୍ତ୍ତାବହ ହୋଇପାରିବ ନାହିଁ, ଆବଶ୍ୟକତା ଅନୁଯାୟୀ ? ହଁ, ଯଦି ତମକୁ ପୁଣି ଆର୍ଜେଣ୍ଟିନାକୁ ଯାଇ 'ଲାଙ୍ଗୋସ୍ତିନୋ'ର ସ୍ୱାଦ ସେବନ କରି, ସେଇଠି ସବୁଦିନ ପାଇଁ ରହିବାକୁ କୁହା ଯାଇଥାଆନ୍ତା, ସେକଥା ଭିନ୍ନ । ତା' ହେଲେ ହୁଏତ ତମେ ବିଚ୍ଛିନ୍ନ ହୋଇ ପଡ଼ିଥାଆନ୍ତ ଗୋଟିଏ ସଂସ୍କୃତିରୁ, ଯେଉଁଥିରେ ତମେ ପରିପୁଷ୍ଟ ହୋଇଛ ତମ ପିଲାଟି ଦିନୁ । କିନ୍ତୁ ଉତ୍କଳୀୟ ସଂସ୍କୃତିର ଅଭିବୃଦ୍ଧି ଦିଗରେ ତମର କୌଣସି ବିଶେଷ ଦାୟିତ୍ୱ କି ଯୋଜନା ରହିଛି, ଅଥବା ବିଦେଶରେ ଶେଷ ଜୀବନ ବିତାଇବାର ପ୍ରଶ୍ନ ଉଠୁଛି ବୋଲି ମନେ ହେଉ ନାହିଁ ତ ଏଇ ଗପରେ ? ପତ୍ନୀଙ୍କ କଥାରୁ ଜଣା ପଡ଼ୁଛି ଯେ ଦିଲ୍ଲୀରେ ରହିଲେ ତାଙ୍କୁ ଭଲ ଲାଗିବ । ଦିଲ୍ଲୀ ନହେଲେ ଆଉ କେଉଁଠି । ମାରାଦେବୀଙ୍କ କହିଲା ପରି ଯେଉଁଠି ହେଲେ ସ୍ୱଚ୍ଛନ୍ଦରେ ଚଳିଯାଇ ହେବ ବୁଢ଼ା ଦିନକୁ ।

ତା'ହେଲେ କଥା କଅଣ ବିଶ୍ୱଭୂଷଣ ? କାହିଁକି ଏମିତି କ୍ଷୀଣ ହୋଇ ବସିଥିଲ, ଗୋଟାଏ ନୈତିକ ଆଦର୍ଶର ପରାକାଷ୍ଠା ଦେଖାଇଲା ପରି, ଯେ ଏଇଠି ରହିଯିବ ? ସେଇଠୁ ପ୍ରଫୁଲ୍ଲ-ସଂଘାତରେ ଏମିତି ବିବ୍ରତ ହୋଇପଡ଼ିଲ ଯେ ଭାବୁଛ ଯେ ଏଇ

ଓଦାମାଟି ସୁହାଇବ ନାହିଁ ତମକୁ ? କ'ଣ ନା ଡୁବିଯିବାଠାରୁ ଉଡ଼ି ଉଡ଼ି ଯିବା ହିଁ ଶ୍ରେୟସ୍କର ସଞ୍ଜବେଳକୁ ?

ତମକୁ ଚୁଟୁକୁଲେଇବା ମୋର ଉଦ୍ଦେଶ୍ୟ ନୁହେଁ । କିନ୍ତୁ ମୋର କ'ଣ ମନେ ହେଉଛି କହିବି ? ଭାବୁଛି ହୁଏତ ଇଏ ଗୋଟାଏ 'ନଷ୍ଟାଲଜିଆ' ଅର୍ଥାତ ସ୍ମୃତିଚାରଣର ସଉକ୍ ଥିଲା ପାଇଁ । ଏକ ରୋମାଣ୍ଟିକ୍ ମନୋଭାବ, ଯାହା ସହଜେ ତିଷ୍ଠି ରହି ପାରିଲା ନାହିଁ । ଅଥବା ତମେ ତମର ବୃତ୍ତିଗତ ସୁନାମ ସାଙ୍ଗରେ ତମ 'ଖାନଦାନ'ର ଉତ୍ତରାଧିକାରକୁ ଯୋଡ଼ି ଏକ ଅତି-ବିଶିଷ୍ଟ ପ୍ରତିଭାର ଅଧିକାରୀ ହେବାକୁ ବସିଥିଲ । ଲବ୍ଧପ୍ରତିଷ୍ଠ ସାମ୍ବାଦିକ ବି.ବି.ରେ, ଏବଂ ରାୟବାହାଦୁର ପୁଳିନବିହାରୀ ରାୟଙ୍କ ନାତି ଓ ପ୍ରଫେସର ଜଗବନ୍ଧୁ ରାୟଙ୍କ ପୁଅ ବିଶ୍ୱଭୂଷଣ ରାୟଙ୍କୁ ଏକାଠି କରି ଏକ ଅପୂର୍ବ ସୁନ୍ଦର ବ୍ୟକ୍ତିତ୍ୱକୁ ଠିଆ କରେଇବାକୁ ଚାହୁଁଥିଲ 'ମାତୃଛାୟା' ତଳେ । କିନ୍ତୁ କେଉଁଠି ଥିଲା ସେଇ ପୁତୁଳି ମାଇକିନିଆଁଟା, ଆସି ପହଞ୍ଚିଗଲା ପୁରୁଣା କଦଳୀବନ ସାମନାରେ, ଆଉ ମାଟିର ଓଦାଭାବଟା ଏମିତି ଚଟିଚଟି ଝିକିଝିକି ଲାଗିଲା ତମକୁ, ଯେ ତମେ ଡରିଗଲ ।

ଡରିବାର କୌଣସି କାରଣ ନଥିଲା ବିଶ୍ୱଭୂଷଣ, ଯଦି ତମେ ପ୍ରକୃତରେ ଗୋଟିଏ ନିବେଦିତ ପୂଜାରୀ ହୋଇଥାଆନ୍ତ, ସ୍ମୃତିର କି ସଂସ୍କୃତିର । ମଧ୍ୟ ଡରିବାର କୌଣସି କାରଣ ନଥିଲା ଯଦି ତମେ ଯଥାର୍ଥରେ ସଂଭ୍ରାନ୍ତ କି ଗଣତାନ୍ତ୍ରିକ ହୋଇ-ଥାଆନ୍ତ । ରକ୍ଷିତା ସୁନ୍ଦରୀମାନେ କୋଉ ଅପୂରୁବ ନଥିଲେ ଜେଜେ-ଅଜାଙ୍କ ସାମନ୍ତବାଦୀ ଯୁଗରେ । ଏବଂ ଆଧୁନିକ ଗଣ-ତାନ୍ତ୍ରିକ ଯୁଗରେ ପୁତୁଳିମାନଙ୍କ ସ୍ମୃତି ତମ ଜନ-ଜୀବନର ଇତିହାସକୁ ଅଧିକ ଆମୋଦଜନକ ତଥା ରୁଚିମନ୍ତ କରୁଛି ବୋଲି ଭାବିବା କଥା ।

ନା ବିଶ୍ୱଭୂଷଣ ଓରଫ୍ ବି.ରି.ରେ ସାହେବ, ତମେ ରହି ପାରି ନଥାଆନ୍ତ ଏଠି ସବୁଦିନ ପାଇଁ । ମୁଁ ଚିହ୍ନିଛି ତମକୁ । କାହିଁକି ନା ତମେ ଆମର ଭିତରୁ ଜଣେ ।



# ଅନେକ ଦିନର ସୂର୍ଯ୍ୟ

ସୁଶ୍ରୀ ବନୀତା ବେହେରା ତାଙ୍କର ଶୋଇବା ଘରୁ ଉଠି ଆସି ଅଫିସ୍ ରୁମ୍‌ରେ ପହଞ୍ଚିଲେ । ଯଦିଓ ଗଦାଗଦା ବନ୍ଧ କାଗଜ ଏବଂ ଏକା ଧରଣର ଆସବାବ୍ ପତ୍ରରେ ଭରି ଯାଇଥିବା ଦୁଇଟି କମରା ଭିତରୁ କେଉଁଠି ସେ ଶୁଅନ୍ତି ଏବଂ କେଉଁଠି କାମ କରନ୍ତି ତାହା ଠଉରେଇବା କଷ୍ଟ । ସେଇଠୁଁ କେଉଁ ଏକ ଦୁର୍ବୋଧ ତାଡ଼ନାର ବଶବର୍ତ୍ତୀ ହୋଇ ସେ ପରଦା ଆଡ଼େଇ ଦେଇ ବାଲ୍‌କନିକୁ ଆସିଲେ । ଏବଂ ମେ ମାସ ମଧ୍ୟାହ୍ନର ପ୍ରଚଣ୍ଡ ସୂର୍ଯ୍ୟକୁ ଅନୁଭବ କଲେ ।

...ଇସ୍ । ଏଇଆକୁ ଯେ କୁହନ୍ତି ସୂର୍ଯ୍ୟ ! ଏବଂ ତା'ର ପ୍ରଚଣ୍ଡ କ୍ରୋଧ । ଏଇ ଅବାରିତ ଯାଲିସ୍‌ବିହୀନ କ୍ରୋଧ ହିଁ ଏଇକ୍ଷଣି ଦରକାର ଆମ ସମାଜରେ । ଯେମିତିକି ସବୁ ଗ୍ଲେଟିକଥା, ସବୁ ମିଛକଥା, ଏବଂ ଯେତେକ ସଂକୀର୍ଣ୍ଣ ସ୍ୱାର୍ଥ ପୋଡ଼ିଜଳି ଭସ୍ମ ହୋଇଯିବ । ନୂଆ ଯୁଗର ଖସଡ଼ା ପ୍ରସ୍ତୁତ ହୋଇ ନାହିଁ, ତେଣୁ ସବୁର୍ କର, ତା'ପରେ ଯାଇଁ ତମ ରାଗ ଦେଖେଇବ, ନ ହେଲେ ଅରାଜକତା ମାଡ଼ିଯିବ ଆମ ଦେଶରେ—ଏହି ପ୍ରକାର ପୁରୁଣା ମନୋଭାବର ଅନ୍ୟ ନାମ ଭୀରୁତା । ବନୀତା ବେହେରା କେବେହେଲେ ସେଭଳି ଧରଣର ସାନକଥାକୁ ଗ୍ରହଣ କରି ନାହିଁ, କି କରିବ ନାହିଁ । ପାର୍ଟିର ବଡ଼ ପଣ୍ଡାମାନେ ଯାହା କହିଲେ କୁହନ୍ତୁ ପଛେ । ଖୁବ୍ ବେଶୀରେ ପାର୍ଟିରୁ ନିକାଲ୍ ଦେବେ ମୋତେ—ଆଉ କ'ଣଟା କରିବେ ? ହେଲେ ବନୀତାର କିଛି ଯାଏଆସେ ନାହିଁ ସେଥିରେ । ସେ ଜନନେତ୍ରୀ । ଅମୁକ ପାର୍ଟି କି ସମୁକ ପାର୍ଟିର ସଦସ୍ୟ ହେବା ଗୋଟାଏ ଆନୁଷଙ୍ଗିକ ପ୍ରକ୍ରିୟା, ଯେମିତିକି ତମେ ଯଥାକ୍ରମେ କ୍ଷମତାକୁ ଆସିପାରିବ, କିମ୍ବା କ୍ଷମତାସୀନ ସରକାର ତମକୁ ଯଥୋଚିତ ସମ୍ମାନ ଦେବ, ଶତ୍ରୁ ହିସାବରେ ।

କିନ୍ତୁ ସମସ୍ତେ ଜାଣନ୍ତି ଯେ ମୁଁ ସେଭଳି କୌଣସି ସଫଳତାରେ ଆଗ୍ରହୀ ନୁହେଁ । କାରଣ ଜନଗଣ ମୋତେ ଭଲ ପାଆନ୍ତି । ଭଲ ପାଆନ୍ତି ଏଥିପାଇଁ ଯେ ମୁଁ ତାଙ୍କର ରାଗ ଓ ତାଙ୍କର ଦୁଃଖକୁ ଠିକଣା ଭାଷା ଦେଇ ପାରେ କର୍ତ୍ତୃପକ୍ଷଙ୍କ ଅବଗତି ପାଇଁ । ଯେଉଁଥିରେ କର୍ତ୍ତୃପକ୍ଷ ବିଚଳିତ ହୋଇ ଉଠନ୍ତି ଏବଂ କିଛି ହେଲେ କରିବା ପାଇଁ ବାଧ୍ୟ ହୁଅନ୍ତି । ନ ହେଲେ ଅବସ୍ଥା ସାଂଘାତିକ ହୋଇ ଉଠିବ । ସାର୍, ବିଶ୍ୱାସ ନାହିଁ ଏ ସ୍ତ୍ରୀଲୋକଟାକୁ ! ସେ ଖାଲି କଥାକଥାକେ ଅନଶନ କରେ

ନାହିଁ, ସେ ମଧ ପ୍ରକୃତରେ ମରିବାକୁ ପ୍ରସ୍ତୁତ ବୋଲି ମନେ ହୁଏ ପ୍ରତ୍ୟେକ ଥର । କେବଳ ଗୁଣ୍ଡ ଫୁଲେଇ କେଉଁ ନଡ଼ିଆ ର୍‌ୟାଲିର ଅଗଣୀ ହୋଇ ବାହାର ଆସେ ନାହିଁ, ସେ ତମକୁ ଚ୍ୟାଲେଞ୍ଜ୍ କରେ ତା' ଗୁଣ୍ଡକୁ ଗୁଳି ମାରିବା ଲାଗି । ନାଆଁ ହେଉଛି ବନୀତା, କିନ୍ତୁ ମହା ଦୁର୍ବିନୀତା ଟିଏ । ଆଗେ ତାକୁ ଶାନ୍ତ କରାଯାଉ କୌଣସିମତେ, ତା' ପରେ ଧରେ ଛୋଟିଆ କାଇଦାରେ ଖସି ଆସିବା ଆମ ପ୍ରତିଶ୍ରୁତିରୁ । ବନୀତା ମନେ ମନେ ହସିଲେ, ରାଜଦରବାରରେ ଘଟୁଥିବା ଏଭଳି କାରବାର କଳ୍ପନା କରି । ହୁଁ ! କୋଉ ପାର୍ଟି ମୋତେ ବାନ୍ଧି ରଖି ପାରିବ ? ନା କୋଉ ପାର୍ଟିର ସରକାର ମୋତେ ଭସ୍ମ ନ କରି ରହିପାରିବ ?

କିନ୍ତୁ ଅସଲ କଥା ହେଉଛି ଏଇ କ୍ରୋଧ । ଏଇ କ୍ରୋଧର ଜ୍ୱାଳା । ତା'ର ଅନୁଭବ ପୂରାପୂରି ଶୋଇ ନ ପଡ଼େ ଯେମିତି ଆମ ଲୋକମାନଙ୍କ ମନରେ, ଯାହାକୁ ବନୀତା ବେହେରା ବି ଜଗାଇ ଦେଇ ପାରିବ ନାହିଁ । ସେଇ ହେଉଛି ମୋର ଭସ୍ମ···

ହେଲେ ସେ ଯଥାଶୀଘ୍ର ସେହି ପ୍ରକାର ଭସ୍ମକୁ ଅସ୍ୱୀକାର କଲେ । ଅଧିକନ୍ତୁ ବ୍ୟାଲ୍‌କନିର ରେଲିଙ୍ଗ୍ ଆଡ଼କୁ ଆଗେଇ ଯାଇ ସୂର୍ଯ୍ୟଙ୍କ କ୍ରୋଧ ଏବଂ ସେଥିର ଜ୍ୱାଳାକୁ ଆହୁରି ପ୍ରତ୍ୟକ୍ଷରେ ଅନୁଭବ କରିବାକୁ ଚାହିଁଲେ । ପ୍ରତ୍ୟକ୍ଷରେ ଏବଂ ପ୍ରଚଣ୍ଡରେ । ସତେକି ଜନଗଣର ଯଦି କିଛି ଅକ୍ଷମତା ଥାଏ ଏ ଦିଗରେ ସେ ତାକୁ ଦୂର କରିବାର ଶକ୍ତି ଲୋଡ଼ୁଛନ୍ତି ।

···ପାରିବ । ଅଲବତ୍ ପାରିବ । କୋଉ ଫ୍ୟାମିଲି ବି ନାହାନ୍ତି ମୋର, ସ୍ୱାମୀ-ପିଲା ଓଗେରେ, ଯେଉଁମାନେ ମୋତେ ଝିଙ୍କି ଧରିବେ କି ପଛରୁ ଟାଣିବେ । ମୋର ସ୍ୱାର୍ଥ କେବଳ ଏଇ ରାଜ୍ୟର, ଏଇ ଦେଶର, ହତଭାଗା ଲୋକମାନଙ୍କୁ ନେଇ । ବଡ଼ଅପା ବୁଝିବେ ଆମ କଥା । ବଡ଼ଅପା କଥା ଦେଇଛନ୍ତି ଯେ ଝଡ଼ରେ ନଷ୍ଟ ହୋଇଯାଇଥିବା ଏଇ ବସ୍ତିଖଣ୍ଡକ ପୁଣି ମୁଣ୍ଡ ଟେକିବ । ବଡ଼ଅପା କାନ୍ଦି ପକେଇଛନ୍ତି ଆମ ହସ୍‌ପିଟାଲରେ ରୋଗୀମାନଙ୍କୁ ଦେଖି । କେମିତି ସେମାନେ ତଳେ ପଡ଼ିଛନ୍ତି, ଆଉ ବଇଁଳରେ ଡାକ ଛାଡ଼ୁଛନ୍ତି, ହେଲେ କେହି ଶୁଣୁନାହାନ୍ତି ତାଙ୍କ ଚିତ୍କାର । କଲେକ୍ଟର ଗଗନ ଦାସ ଉପରେ ସେ କେମିତି ରାଗି ଉଠିଲେ ସେଦିନ, ଦେଖିଲ ? କହିଲେ ତମକୁ କ'ଣ ଜଣା ନାହିଁ ଦାସବାବୁ, ନଇଁ'ମା କାହାକୁ କହନ୍ତି ? ଶୁଣ, ଯଦି ପାଞ୍ଚ ଦିନ ଭିତରେ ସ୍ଥାନକୁ ସଫା ନ କର, ତା' ହେଲେ ମୁଁ ଏଇଠି ଧାରଣା ଦେବି,—ବୁଝିଲ ? ଏଇ ହେଉଛି ମୋର ସୁନାମ, ଏଇ ହେଉଛି ମୋର ଦୁର୍ନାମ । ଯେଉଁଥିପାଇଁ ବନୀତା ଦୁର୍ବିନୀତା ବୋଲାଉଛି ।···

ଏହିପରି ଭାବରେ ସେ ମଧ୍ୟାହ୍ନ ସୂର୍ଯ୍ୟର ଉତ୍ତାପକୁ ଯଥାବଧି ଅନୁଭବ କରେ । ଏବଂ ସ୍ୱର୍ଗୀୟ ନେତାଙ୍କର ମହିମାକୁ ସ୍ମରଣ କଲେ, ବିନମ୍ରର ସହିତ । ଧନ୍ୟବାଦ । ସେଇଠୁଁ ସେ ଭାବିଲେ ଆସନ୍ତା ନିର୍ବାଚନ କଥା ।...ହଁ, ମୁଁ ରାଜି ହୋଇଛି ଆସନ୍ତା ନିର୍ବାଚନରେ ଲଢ଼ିବା ପାଇଁ । କିନ୍ତୁ ଖାଲି ଏଇ ହତଭାଗାମାନଙ୍କୁ ଯତ୍‌ସାମାନ୍ୟ ସୁଖ ଓ ସମ୍ମାନ ଆଣିଦେବା ଲାଗି । କିନ୍ତୁ ଯେଉଁଦିନ ଦେଖିବି ଯେ ଏମ୍. ଏଲ୍. ଏ. କି ମନ୍ତ୍ରୀ ହେବା ଦ୍ୱାରା ମୁଁ କେବଳ ଗୋଟାଏ ଆଇନ୍‌ଗତ କ୍ଷମତା ହାସଲ କରି ନେଇଛି, ହେଲେ ମୋର ତେଜ ମଉଳି ଗଲଣି କମ୍ବା କାମ ଦେଉ ନାହିଁ ଆଗ ଭଳି, ସେଇଦିନ ଏବଂ ସେଇ ମୁହୂର୍ତ୍ତରେ ମୁଁ ଇସ୍ତଫା ଦେବି ।

ଗୁଡ଼୍, ସିଏ ପର କଥା । ବର୍ତ୍ତମାନର ସମସ୍ୟା ହେଉଛି ଯେ ଆମ ପାର୍ଟି ଜିତିବ । କୌଣସି ସନ୍ଦେହ ନାହିଁ ଏଥିରେ । କିନ୍ତୁ ଏଥର ତାକୁ ଗୋଟାଏ ଲଢ଼ୁଆ ପାର୍ଟି ହେବାକୁ ପଡ଼ିବ, ନହେଲେ ପୁଣି ଯୋଉ କଥାକୁ ସେଇ କଥା । ନା, ତା' ହେବ ନାହିଁ । ଦୀର୍ଘ ପନ୍ଦର ବର୍ଷ ପରେ ସର୍ବମଙ୍ଗଳ ପାର୍ଟି କ୍ଷମତାକୁ ଫେରି ଆସୁଛି କାହିଁକିନା ବିନିଅପାଙ୍କର ଆବିର୍ଭାବ ହୋଇଛି ଏଇ ପାର୍ଟିର ନେତୃତ୍ୱରେ । ସେଇଲାଗି ଲୋକମାନେ ଭୋଟ ଦେବେ ଆମକୁ । କାହିଁକିନା ବିନିଅପା ରାଗିଛନ୍ତି ଆଉ କାନ୍ଦିଛନ୍ତି ତାଙ୍କ ପାଇଁ । ଏବଂ ତାଙ୍କୁ କଥା ଦେଇଛନ୍ତି । ତା'ର ଅର୍ଥ ମୋତେ ରହିବାକୁ ପଡ଼ିବ ସରକାରରେ, ବାଧ୍ୟ ହୋଇ । କିନ୍ତୁ ମୁଁ ତାଙ୍କୁ ଆଶ୍ୱାସନା ଦେଇଛି, ପ୍ରତିଶ୍ରୁତି ଦେଇଛି ଯେ ତାଙ୍କ ବିନିଅପା ବଦଳିବ ନାହିଁ କେବେହେଲେ, ସେ ମନ୍ତ୍ରୀ ହେଉ ବା ନହେଉ । ରହସ୍ୟ କଲି ପରି କହିଥିଲି ସେଦିନ ଗୋଟାଏ ନିର୍ବାଚନୀ ସଭାରେ, ଯେ ତା'ର ଏଇ ଅପରୂପ ଚେହେରା ଖଣ୍ଡିକ ସବୁଦିନେ ଜଳୁଥିବ ଏମିତି । ଶୋଭା ପାଉଥିବ । ଏବଂ ଉପସ୍ଥିତ ଜନତା ହସି ଉଠିଥିଲେ, ବିନିଅପାଙ୍କ ରସିକତାରେ ।

ସେତେବେଳେ ଜନତାର ଆଗଧାଡ଼ିରେ ବସିଥିବା ବୁଢ଼ୀଟିଏ ମଧ୍ୟ ହସି ଦେଇଥିଲା ଟିକିଏ । କିନ୍ତୁ ତା'ର ରସବୋଧରେ ଥିଲା ଏକ ଭିନ୍ନ ଆନନ୍ଦର ଅନୁଭବ । ହଁ ଲୋ ଝିଅ, ଏଇ ହେଉଛି ଠିକଣା ଚେହେରା । ସୁନ୍ଦର ନହେଇଛି ଭଲ ହେଇଛି । ତମେଇ ସେଇ ରାକ୍ଷସମାନଙ୍କ ନାକ କାଟି ଦେଇପାରିବ । କେଡ଼େ ସୁନ୍ଦର ନଥିଲା ମୋ ଝିଅ ! ଖଣ୍ଡମଣ୍ଡଳରେ କେହି ନଥିଲେ ତା'ପରି । ଧନେଶ୍ୱର ସ୍ୱାଇଁ ବାଛି ବାଛି ବୋହୂ କରିଥିଲା ତାକୁ, ତା' ଡାକ୍ତରପୁଅ ପାଇଁ । କିନ୍ତୁ କ'ଣଟା ଲାଭ ହେଲା ତା'ର ? କମ୍ ଗଞ୍ଜଣା ଶୁଣିବାକୁ ପଡ଼ି ନାହିଁ ତାକୁ, ଯୌତୁକରେ ଗୋଟାଏ କଲର ଟି. ଭି. ଆଉ ଓ୍ୱାସିଙ୍ଗ୍ ମେସିନ୍ ଆଣିପାରିଲା ନାହିଁ ବୋଲି । ଶେଷକୁ କୁଆଡ଼େ ତା' ଗୋଡ଼ ଖସିଗଲା ତାଙ୍କ ପୋଖରୀ କୂଳରେ, ଆଉ ସିଏ ବୁଡ଼ିମଲା । ମିଛ ! ଗୋଡ ଖସି ନାହିଁ, ତମେମାନେ ତାକୁ ପେଲିଦେଲ । ପାଣିକୁ ପେଲିଦେଲ ମୋ ସୁକୁମାରୀ ସୁନ୍ଦରୀ ଝିଅଟାକୁ । ମୁଁ କ'ଣ ଜାଣେ ନାହିଁ ସେକଥା ? (ବୁଢ଼ୀଟାଏ ଲୁହ ପୋଛି ଦେଇ)

ନାହିଁ କି ହିଅ, ଆଉ ତୋ ଚେହେରା ଏମିତ । ଏଇ ସାବନା ଚଟକା ମୁହଁ, ଉଞ୍ଚ କପାଳ, ଆଉ କଟା ଚୋମଣି । ଆଉ ଏସବୁ, ଆଉ ତା' ସାଙ୍ଗକୁ ତୋର ଏଇ ମୁନିଆଁ ଆଖି ଦ'ଟା ଆଉ ସରୁ ଧାରୁଆ ଓଠ । ଆଖି ଦ'ଟା ଜାଳିଦେବ, ଏବଂ ଓଠ ଦ'ଟା କାଟି ଚୁଣ୍ଡେଇ ଦେବ ଦରକାର ହେଲେ । ବୁଢ଼ା ହାତଯୋଡ଼ି ନମସ୍କାର କଲା ଆଧୁନିକ ଯୁଗର ସେଇ ଶକ୍ତିରୂପିଣୀ କନ୍ୟାଟିକୁ । ହେଲେ ପାଖରେ ବସିଥିବା ଲୋକମାନେ ତା'ର ଏଇ ରଙ୍ଗଢଙ୍ଗ ଦେଖି ଆଶ୍ଚର୍ଯ୍ୟ ହେଲା ପରି ଲଗିଲା ନାହିଁ । ସତେକି ଏଭଳି ଦୃଶ୍ୟ କିଛି ନୂଆ ନୁହେଁ ବନିଅପାଙ୍କ ସଭାରେ ।

ବନିତା ମଧ୍ୟ ଲକ୍ଷ୍ୟ କରିଥିଲେ ବୁଢ଼ାର ସେଇ ଅଶ୍ରୁଳ ଭକ୍ତିଭାବ । ଏବଂ କ୍ଷଣକ ପାଇଁ ତାଙ୍କ ଭୀଷଣ ଅଡୁଆ ଅଡୁଆ ହୋଇ ଯାଇଥିଲା । ମନେହେଲା ସିଏ ତାଙ୍କ ସ୍ୱର୍ଗୀୟ ବାପା, ଅନୁତପ୍ତ ବାପା । ଝିଅଟା ପାଖରୁ କ୍ଷମା ମାଗୁଛନ୍ତି । ଛିଃ ! ନାଇଁ ବାପା, ମୋତେ ଭଲ ଲାଗେ ନାହିଁ ସେମିତିକା ଦୁର୍ବଳତା । ମୋଟେ ଭଲ ଲାଗେ ନାହିଁ । ଶୁଣ, ମୁଁ ଜିଦ୍‌ରେ ବାହା ନହେଲାରୁ ତମେ ମୋତେ ବାର କଥା କହିଲ, କି ବୋଉ ତମ କଥାକୁ କାଟି ଦେଇ ମୋତେ ଉସ୍‌କେଇଲା ବୋଲି ମୁଁ ଆସିନାହିଁ ଏଇ ବାଟକୁ । ମୁଁ ନିଜ ଇଚ୍ଛାରେ ଆସିଛି ନିଜର ଗୋଟାଏ ଅଦମ୍ୟ ଇଚ୍ଛାକୁ ପୂରଣ କରିବା ଲାଗି । ମୁଁ କିଛି ଗୋଟାଏ କରିବ ବୋଲି । କୋଉ ଜଣକ ପାଇଁ ନୁହେଁ, ଅନେକ ଅନ୍ୟମାନଙ୍କ ପାଇଁ । ଯାହାହେଉ ବନିତା ଯଥାଶୀଘ୍ର ନିଜକୁ ସଜାଡ଼ି ନେଇ ପାରିଥିଲେ । ଏବଂ ଅଣ୍ଟାରେ କାନି ଭିଡ଼ି ଗର୍ଜି ଉଠିଥିଲେ ତାଙ୍କ ବଳିଷ୍ଠ ହାତକୁ ପ୍ରସାରିତ କରି—'ହଁ, ମୁଁ ଯାହା କହୁଥିଲି ଏଇ ହେଉଛି ଆମର ଲକ୍ଷ୍ୟ, ଏଇ ହେଉଛି ଆମର ପଣ, ପ୍ରତିଶ୍ରୁତି···

କେଜାଣି କାହିଁକି ସେଇ ବୁଢ଼ା କଥା ଆଜି ମନେପଡ଼ିଲା ବନିତାଙ୍କର, ମଧ୍ୟାହ୍ନ ସୂର୍ଯ୍ୟଠାରୁ କେଉଁ ଅଧିକ ଉତ୍ତାପ ଅବା ଗାରିମାକୁ ଲୋଡ଼ୁଥିବା ବେଳେ । ···ବାପା, ତମେ ମିଛୁଟାରେ ଏତେ ଶୀଘ୍ର ଗୁଳିଯିବା କ'ଣ ଉଚିତ ହେଲା ? ଆଉ କେଇଟା ବର୍ଷ ରହି ଯାଇଥିଲେ ଭଲ ହୋଇ ନଥାଆନ୍ତା ? ତା'ହେଲେ ତମେ ବି ଖୁସି ହେଉଥାଆନ୍ତ ବୋଉ ପରି, ଯେ ତମ ଝିଅ କରୁଛି ଏମିତିକା କାମ, କଲ୍ୟାଣର କାମ, ଯେଉଁଥିପାଇଁ ସେ ଜନଗଣର ବନିଅପା ବୋଲାଉଛି । ବାହାସାହା ହୋଇ ଗୁଡ଼ାଏ ପିଲା ଜନ୍ମ କରି ତାଙ୍କ ସାଙ୍ଗରେ ଘାଣ୍ଟି ହେଉଥିଲେ ତମେ କ'ଣ ବେଶୀ ଖୁସି ହୋଇଥାଆନ୍ତ ?

ବୋଉ କହୁଥିଲା ଆସିବ ବୋଲି । କହିଲା ମୁଁ ବେଲଉଣ୍ଟି ଆସିବ, ଯେତେ-ବେଳେ ଲୋକମାନେ ହାଉଯାଉ ହେଉ ନଥିବେ ତୋ ପାଖରେ । ଆମେ ମାଆ ଝିଅ ଚୋଡ଼ ଲମ୍ବେଇ ବସିବା ଘଣ୍ଟାଏ ଦ'ଘଣ୍ଟା, ଆଉ ତୁ ଗପିବୁ ତୋ ପଲିଟିକସ୍‌ର ମଜା

ମଜା କଥା । ମୁଁ ମିଛୁମିଛୁକା ରାଗି ଯାଇଥିଲି ତା’ ଉପରେ । କହିଲି ବୋଉ, ମୁଁ କ’ଣ ମଜା କରୁଛି ନା କ’ଣ ମ ? ତୋର ଏଇ ଧାରଣା ତୋ ଝିଅର କାମ ଉପରେ ? କିନ୍ତୁ ମୁଁ ଜାଣେ ସେ ସେମିତି କିଛି ଭାବେ ନାହିଁ । ପ୍ରକୃତରେ ତା’ର କାହିଁରେ କ’ଣ ଗର୍ବ ତା’ ଝିଅକୁ ନେଇ । ବୋଉ ତୁ ତା’ ହେଲେ ଆସୁନୁ କାହିଁକି ଏଇ ଦ’ପହର ବେଳକୁ ? ତୁ ତ ଜାଣିଛୁ ସନ୍ତ ହେଉ ନହେଉ ଏଇ ଘର ଖଣ୍ଡକ ଉଠିବ ପଡ଼ିବ ଆମ ପଲିଟିକ୍ସବାଲାଙ୍କ ପାର୍ଟିଫଣ୍ଡରେ । ବିଶେଷତଃ ଆସନ୍ତା ଇଲେକ୍ସନ୍ ଯୋଗୁଁ । କିନ୍ତୁ ସହଜେ କେହି ଆସିବେ ନାହିଁ ଏଇ ପ୍ରଚଣ୍ଡ ଖରାରେ । କିନ୍ତୁ ତୁ ଆସିବୁ ନାହିଁ କାହିଁକି ? ତୁ ତ ଆସିବୁ ଆମ ଆର୍କିଟେକ୍ଟ ବଡ଼ଭାଇଙ୍କ ଏୟାରକଣ୍ଡିସନ୍ କାର୍‌ରେ, ତୋତେ କୋଉ ଖରା ବାଧିବ ନା କ’ଣ ? ଜାଣିଛୁ, ଆସି ମାସକ ଉପରେ ହେବ, ତୁ ପାଦ ଦେଇ ନାହୁଁ ମୋ ଘରେ ? ହଁ, କାହିଁକି ପଚାରିବୁ ? ଏଇକ୍ଷଣି ତ ନୂଆ ନାତିଟିଏ ଆସିଛି ତୋ କୋଳକୁ, ତୁ କାହିଁକି ପଚାରିବୁ ତୋର ଅଭିଆଡ଼ୀ ବୁଢ଼ୀ ଝିଅଟାକୁ ?

ଏହିପରି ଭାବରେ ତାଙ୍କ ବୋଉ ଉପରେ ଅଭିମାନ କରି ବ୍ୟାଲ୍‌କନିରୁ ଫେରି ଆସିଲା ବେଳକୁ ବନିତାଙ୍କ ଆଖିରେ ପଡ଼ିଲା ଗୋଟାଏ ଧଳା ଆମ୍ବାସାଡ଼ାର୍, ଅଟକି ଯାଉଛି, ଠିକ୍ ତାଙ୍କ ଘର ସାମ୍‌ନାରେ ।

...ଓ୍ୱାଣ୍ଡର୍‌ଫୁଲ୍ । ବୋଉ, ଦେଖୁଛୁ, ତୋ ଝିଅର କରାମତି ? ଛୋଟ ମନ୍ତ୍ରୀଟିଏ ହେଲେ ଅଧିକା କ’ଣ ହେବ ? ସ୍ମରଣ କଲି ମାତ୍ରେ ତୁ ଆସି ହାଜର୍ ମୋ ପାଖରେ । ଥ୍ୟାଙ୍କ୍ ୟୁ ମାଇଁ ଡିଅର୍ ବୋଉ...

କାର୍‌ରୁ ଯେଉଁ ଭଦ୍ରଲୋକ ଓହ୍ଲାଇ ଆସି ଉପରକୁ ଅନେଇଲେ, ସେ ଦେଖିଲେ ବନିତାଙ୍କର ପ୍ରଶସ୍ତ ହସ । ଏବଂ ତାହା ଲିଭିଯିବା ପୂର୍ବରୁ ସେ ଆଗେଇ ଆସିଥିଲେ ସିଡ଼ି ପାହାଚକୁ । ତେଣୁ ସେ ଧରି ନେଇଥିଲେ ଯେ ବନି ଖୁସି ହେଉଛି ତାଙ୍କୁ ଦେଖି । ଅନେକ ଦିନ ପରେ ଦେଖୁଛି କି ନା, ସେଇଥିଲାଗି । ସ୍ୱାଭାବିକ । ଆମେ ଖାଲି ଏକା ପାର୍ଟିର ମେମ୍ବର ନୋହୁଁ । ଅନେକ ଦିନର ପରିଚୟ ଆମ ଭିତରେ । ନେତାଜୀ ସୁଭାଷଚନ୍ଦ୍ର କଲେଜ୍‌ରେ ଏକଦା ଇତିହାସ ଅନର୍ସ ନେଇ ପାଠ ପଢ଼ୁଥିବା ବନିତା ବେହେରା ଏବଂ ଅନିରୁଦ୍ଧ ମହାନ୍ତିଙ୍କ ଭିତରେ । କଲେଜ୍ ୟୁନିଅନ୍‌ର ଭାଇସ୍-ପ୍ରେସିଡେଣ୍ଟ ଏବଂ ୟୁନିଅନ୍‌ର ମୁଖପତ୍ର ‘ପ୍ରଗତି’ର ସମ୍ପାଦକଙ୍କ ଭିତରେ । ଅନିରୁଦ୍ଧବାବୁ ସାନନ୍ଦ ହସ ହସୁଥିଲେ ସିଡ଼ି ପାହାଚରେ ଚଢ଼ିଲା ବେଳେ । ଭାବୁଥିଲେ ଯେ ତାଙ୍କର ଆଶଙ୍କା ଅମୂଳକ । ବନି କିଛି ଖରାପ ଭାବିବ ନାହିଁ ନଇଁ ମୁ ଟେଲିବେଲଟାରେ ତାକୁ ଏମିତି ଡିଷ୍ଟର୍ବ କଲାରୁ । ଧନ୍ୟବାଦ ବନି । ମୋର ଆସିବା ଦରକାର ଥିଲା ତମ ପାଖକୁ । ଆଇ କୁଡ୍ ନଟ୍ ହେଲ୍‌ପ୍ ଇଟ୍ !

ହେଲେ ତାଙ୍କ ହସ ଲିଭିଗଲା ପରେ ବନୀତା ଯାହା ଭାବୁଥିଲେ, ତାହା ମୋଟାମୋଟି ଏହିପ୍ରକାର—

ଇଏ କୁଆଡ଼େ ଆସିଛୁ ? ଥରେ ଦେଖା ହୋଇଥିଲା ଏବେ କେଉଁ ଗୋଟାଏ ସାହିତ୍ୟ ସଭାରେ । ଇଲେକ୍‌ସନ୍ ଋତୁ ଆରମ୍ଭ ପୂର୍ବରୁ । କିନ୍ତୁ ସେ ଏଇକ୍ଷଣି କାହିଁକି ହଠାତ୍ ଆସିଛୁ ମୋ ଘରକୁ ? ପୁଣି ଏଇ ଅବେଳାରେ ?

ମନ, ଏତିକି ବୁଝିପାରୁନାହଁ ବନିଅପା ? ନା ଜାଣିଲେ ମଧ୍ୟ ଆଶା କରୁଛ ଯେ ପ୍ରାକ୍ତନ ସହପାଠୀ ଏବଂ ସହକର୍ମୀ ତଥା ଶ୍ରଦ୍ଧାଭାଜନ ଏଇ ଅନିବାବୁ ଜଣକ ଇତର ସାଧାରଣ ଅନ୍ୟମାନଙ୍କ ପରି ନୁହେଁ ?

ନା ନା, ମୁଁ ଏତେ ନିର୍ବୋଧ ନୁହେଁ । ମୁଁ ଜାଣିଛି ତା' ଆସିବାର ମତଲବ କ'ଣ । ପ୍ରଭେଦ କେବଳ ଏତିକି ଯେ ସେ ମୋତେ ବନିଅପା ବୋଲି ଡାକିବ ନାହିଁ । ବନି ବୋଲି ଡାକିବ, ସେବେକା ସମ୍ପର୍କର ଅଧିକାରକୁ ନେଇ । କିନ୍ତୁ ଗତଥର ଯେତେବେଳେ ଦେଖା ହୋଇଥିଲା ତା' ସାଙ୍ଗରେ, ସେ ମୋତେ ମିସ୍ ବେହେରା ବୋଲି ଡାକି ନାହିଁ କି ? ଡ୍ୟାମ୍ ଇଟ୍ ! ସେସବୁଥିରେ ଯାଏ କେତେ ଆସେ କେତେ ? ସେ ବି ଜଣେ ପ୍ରାର୍ଥୀ, ଓ ତା'ର ଉଦ୍ଦେଶ୍ୟ ବି ସେଇଆ । ବନି-ଅପାଙ୍କୁ ଧର, ସେ ସିଲେକ୍‌ସନ୍ କମିଟିରେ ନଥିଲେ ବି । କାରଣ ସେ ଯଦି ପଛେ କୁହନ୍ତେ ନା ତମ ତରଫରୁ, ତା' ହେଲେ କେହି ତମ ପ୍ରାର୍ଥୀପତ୍ରକୁ କାଟି ଦେଇ ପାରିବ ନାହିଁ । ହଁ, ସେଇଥିପାଇଁ ନିଶ୍ଚୟ ତମେ ଧାଇଁ ଆସିଛ ମୋ ପାଖକୁ, ଶ୍ରଦ୍ଧେୟ ଅନିରୁଦ୍ଧ ମହାନ୍ତି, ନିଦାଘ ଗ୍ରୀଷ୍ମକୁ ପଚୁଆ ନ କରି । କାହିଁକି ନା କାଲି ହେଉଛି ପ୍ରାର୍ଥୀପତ୍ର ଦାଖଲ କରିବାର ଶେଷଦିନ । ଏବଂ ଯେହେତୁ ତମେ ମୋତେ 'ବନି' ବୋଲି ଡାକି ପାରିବ, ତମେ ତା'ର ଫାଇଦା ନେବାକୁ ଚାହଁ । ନିରୋଳାରେ ଦେଖା କରିବ ମୋ ସାଙ୍ଗରେ, ଏବଂ ମୋର ସୁପାରିସ ନେଇଯିବ । ହୁଏତ ବନ୍ଧୁ-ସୁଲଭ ଭିନ୍ନ କାଇଦାରେ । ନେଉଥିଲା ପରି ନୁହେଁ, ଆଶ୍ୱସ୍ତ ହେଲା ପରି ଯେ କିଛି ଗଣ୍ଡଗୋଳ ହେବ ନାହିଁ ଶେଷ ମୁହୂର୍ତ୍ତରେ । କ'ଣ ଏଇଆ ନା, ମାଇଁ ଡିଅର୍ ଅନିବାବୁ ? ମୁଁ ଜାଣିଛି ସେକଥା, ଜାଣିଛି । ହେଲେ ଟିକିଏ, ଆଶ୍ଚର୍ଯ୍ୟ ଲାଗିଥିଲା ପ୍ରଥମେ, କ୍ଷମା କର ।

କିନ୍ତୁ ତମର ଏତିକିବେଳେ ଆସିବାକୁ ଥିଲା, ଯେତେବେଳେ ମୁଁ ମୋ ବୋଉକୁ ଖୋଜୁଥିଲି ? ଅବଶ୍ୟ ମୁଁ ଗୋଟାଏ ବୋକୀ । ଏଇ ଧଉଡ଼ା ଆମ୍ବାସଡ଼ରଟାକୁ ଦେଖି ମୁଁ କେମିତି ଭାବିଲି ବୋଉ ଆସିଛି ବୋଲି ? ଭୁଲିଗଲି ଯେ ଧଳାରଙ୍ଗ ହେଲେ ମଧ୍ୟ ଭାଇଙ୍କର ମାରୁତି କାର୍ ? ନେତ୍ରୀଙ୍କର ମୁଣ୍ଡ ବିଗିଡ଼ି ଗଲାଣି, ଆଉ କିଛି ନୁହେଁ । ରୌଦ୍ରତାପ ହେଉ ବା ଇଲେକ୍‌ସନ୍‌ର ଚାପ । ସେ ଯାହାହେଉ ବନୀତା ବେହେରା କରିଦିବ, ଯାହା ତା'ର କରିବା କଥା । ପ୍ରକୃତି ସୃଷ୍ଟି ତାକୁ ଯେଉଁ

ଶକ୍ତି ଦେଇ ଆସିଛୁ, ଶକ୍ତି ଆଉ ସାହସ, ତାହା କେବେହେଲେ ଅନ୍ୟଥା ହେବ ନାହିଁ । ଆରକ ଅନିରୁଦ୍ଧ ମହାନ୍ତି ହେଉ କି ରାଜ୍ୟର ମୁଖ୍ୟମନ୍ତ୍ରୀ, କି ଦେଶର ପ୍ରଧାନମନ୍ତ୍ରୀ । ଆସିବା ହେଉ ଅନିବାବୁ…

ଭଦ୍ରତାସୂଚକ ସ୍ମିତହାସ ଫେରି ଆସିଥିଲା ବନିତାଙ୍କ ଓଠକୁ, ଆଗନ୍ତୁକଙ୍କୁ ପ୍ରତିନମସ୍କାର କଲାବେଳେ । କହିଲେ—

'ଆସନ୍ତୁ, ଆସନ୍ତୁ । କେମିତି ଏଇ ଖରାବେଳକୁ ହଠାତ୍ ?"

"ମୁଁ ଆଜି ପାଞ୍ଚ ବସ୍‌ରେ ଫେରିଯିବି ସମ୍ବଲପୁର । କିନ୍ତୁ ମୋର ଟିକିଏ କାମ ଥିଲା ଆପଣଙ୍କ ସାଙ୍ଗରେ…ତମ ସାଙ୍ଗରେ ବନି…ଫେରିଯିବା ଆଗରୁ । ସେଇଲାଗି ଜଣେ ସାଙ୍ଗଠୁଁ ଏଇ କାର୍ ମାଗିକରି ଆଣିଛି । ଭାବୁଛି ଯେମିତି ହେଲେ ତମ ସାଙ୍ଗରେ ଦେଖା କରିଯିବି । ତମେ ଚଢ଼ ପଛେ …"

"ଚଢ଼ିବି ? କିଓ ଚଢ଼ିବି କାହିଁକି ?" ବନିତା ହୋ' ହୋ' ହୋଇ ହସି ଉଠିଲେ । ଏବଂ କହିଲେ, "ୟୁ ଆର୍ ଅଲ୍‌ୱେଜ୍ ୱେଲ୍‌କମ୍ ଅନିବାବୁ…"

ସେଇଠୁଁ ଅନିବାବୁ ଯେଉଁ ଭାବରେ ଅନାଇଲେ ବନିତାଙ୍କୁ, ଏକ ଗଭୀର କୃତଜ୍ଞତାର ଗୁହାଣିରେ, ତାହା ବନିତା ଲକ୍ଷ୍ୟ କରିଥିବେ ନିଶ୍ଚୟ । ନହେଲେ, ସେ ତାଙ୍କୁ 'କ'ଣ ଖବର ?' ପିଲାମାନେ କେମିତି ଅଛନ୍ତି ? ଇତ୍ୟାଦି ମାମୁଲି ପ୍ରଶ୍ନର ଉତ୍ତର ଦେବାର ଅଡ଼ୁଆରେ ନ ପକେଇ ପ୍ରଥମେ କହି ନ ଥା'ନ୍ତେ, "ଭିତରକୁ ଆସନ୍ତୁ । ଟିକିଏ ବିଶ୍ରାମ ନିଅନ୍ତୁ ପ୍ରଥମେ । ଭାରି କ୍ଲାନ୍ତ ଦିଶୁଛନ୍ତି ଆପଣ । ଆସନ୍ତୁ, ଗଡ଼ି ଯାଆନ୍ତୁ ଏଇ ଖଟ ଉପରେ…।"

ଲୋକଟା ଅଳ୍ପକରେ କ୍ଲାନ୍ତ ହୋଇଯାଏ । ଆଜି ନୁହେଁ, ସେବେଠୁଁ । ଏବଂ ଏମିତି ଭାବରେ ଅନାଏ ତମ ଆଡ଼କୁ ଯେ ମନେ ହେବ ସେ କହୁଛି—ମୁଁ ପିଲାଟାଏ, ମୋତେ ଏତେ କ୍ଲାନ୍ତ କରିବା ଉଚିତ ନ ଥିଲା ତମର ।

ହଁ, ତମେ ସେମିତି ଅଛ ଅନିବାବୁ । ତେଣୁ ମୁଁ ତମକୁ ଅବଶ୍ୟ ଯୋଗାଇବି ମୋ ଘରଭଳର ଶୁଇ, ଏବଂ ମୋର ଆତିଥ୍ୟ । ହୁଏତ ଅନ୍ୟମାନଙ୍କଠାରୁ ଅଧିକ । ତା' ବୋଲି ଭାବ ନାହିଁ ଯେ—। ଏନିୱେ, ଆଗେ ଶୋଇପଡ଼ ଟିକିଏ । ଆଉ ମୁଁ ଦେଖେ କ'ଣ କୋଲ୍‌ଡ୍ରିଙ୍କ୍ ଅଛି ଫ୍ରିଜ୍‌ରେ । ଗତକାଲି ସନ୍ଧ୍ୟାରେ ଯେଉଁ ବୈଠକ ବସିଥିଲା, ତା' ପ୍ରକୋପରୁ ଆଉ କିଛି ବାକି ଥିବ ବୋଲି ମନେ ହେଉ ନାହିଁ ।

ଲୋକଟା କ୍ଲାନ୍ତ ହେଲେ କ'ଣ ବେଶି ପିଲାଙ୍କ ପରି ଦେଖାଯାଏ ? କାହିଁକି ? ଦୂର୍, ଇଏ ବି ଗୋଟାଏ ଢଙ୍ଗ । ଜାଣିତରେ ନ ହେଲେ ବି ସହ୍ଜାରଗତ । ବୁଝିଆ ସୁଲଭ ।

କିନ୍ତୁ ଆସି ଦରବୁଢ଼ା ହେଲଣି । ଏଇକ୍ଷଣି ଆଉ ମୋଟେ ଖାପ୍ ଆଉ ନାହିଁ ସେମିତିକା ଚଙ୍ଗ, ଯାହା ଟୋକାବେଳେ ହୁଏତ ସୁହାଉଥିଲା ତମକୁ । ଠିକ୍ ଅଛି, ତମ କଥା ତମେ ଜାଣିଛ, ମୋର ସେଥିରେ କିଛି କହିବାର ନାହିଁ ।

ମନେ ମନେ ଏହି ପ୍ରକାର ଟିପ୍ପଣୀ ଦେବା ସହ ବନୀତା ଅନିବାବୁଙ୍କୁ ତାଙ୍କ ଅଫିସ୍‌ଘରେ ପଡ଼ିଥିବା ତଥାକଥିତ ଖଟରେ (ତଥାକଥିତ, କାହିଁକନା କେଇଟା କାଠତାବଲ ଉପରେ ଗଦି ପଡ଼ି ହୋଇଥିବାରୁ ତାକୁ ଖଟ ରୂପରେ ବ୍ୟବହାର କରାଯାଇପାରେ) ଶୋଇବାକୁ କହି ଫ୍ରିଜ୍‌ରୁ ଗୋଟିଏ କମଳା ରସର ପାନୀୟ ଉଦ୍ଧାର କରି ଆଣିଲେ । ଏବଂ ସେଇଟିକୁ ଅନିବାବୁଙ୍କ ହାତକୁ ବଢ଼େଇ ଦେଉଁ ଦେଉଁ ତାଙ୍କ ମନକୁ ଆସିଲ—

କିନ୍ତୁ ଲୋକଟାର ବୟସ ପ୍ରକୃତରେ ଜଣାପଡ଼ୁନାହିଁ । ଯୌବନଟା ଖାଲି ଟିକିଏ ପାକଲ ହେଲ ପରି ଦିଶୁଛି । ସେମିତି ଗୋରା, ତିଖ ନାକ ଆଗରେ ବିନ୍ଦୁ ବିନ୍ଦୁ ଝାଳ, ଆଉ ସେଇ ସ୍କଲର୍‌ସୁଲଭ କୁଞ୍ଚିତ କପାଳ । ଏବଂ ଆଗ୍ରହୀ ଆଖି ଦି'ଟା । ତମଠୁଁ କିଛି ପାଇବାର ଆଗ୍ରହ । ସତେକି ସେ ତମଠୁଁ ବୟସରେ କିଛିଟା ବଡ଼ ହୋଇପାରେ ହୁଏତ, କିନ୍ତୁ ବିଦ୍ୟାବୁଦ୍ଧିରେ ସାନ । 'ପ୍ରଗତି'ର ସମ୍ପାଦକ ଆସିଛି କଲେଜ୍ ୟୁନିଅନ୍‌ର ଭାଇସ୍-ପ୍ରେସିଡେଣ୍ଟ୍‌ଙ୍କ ପାଖକୁ । ତାଙ୍କଠୁଁ ବୁଝି ନେବ ବୋଲି । ହେଲେ ତା'ର ଆଗ୍ରହ ଦେଖେଇବା ଗୋଟାଏ ବିରାଟ ଚଙ୍ଗ । ଯେ ଯାହା ଗୁହୁଁଛି ସେଇଆ କରିବ, କିନ୍ତୁ ଦେଖେଇ ହେବ ଯେ ତା'ର ପରମ ଆଗ୍ରହ ତମ କଥା ଶୁଣିବା ଲାଗି । ଆଉ ତା' ବୟସ ବଢ଼ିବ କେମିତି କହୁନ ? କୋଉ ଖରାତରାରେ ବୁଲୁଛି ଆମ ପରି ଯେ ତା' ଅଙ୍ଗରେ ଆଞ୍ଚ ଲାଗିବ ?

କିନ୍ତୁ ବନୀତା ସେଇ ଅଙ୍ଗର ସୁରକ୍ଷା ଦିଗରେ ଯାହା କରିବାର କଲେ, ଏବଂ ଅନିବାବୁ ସେଥିକୁ ବିଶେଷ ଆପତ୍ତି କଲେ ନାହିଁ । ଶୀତଳ ପାନୀୟ ଦେବାର କିଛି ସମୟ ପରେ ସେ ତାଙ୍କୁ କିଛି ସାଣ୍ଡୱିଚ୍, ଏବଂ ପାଚିଲା ଆମ୍ବ ସେବନ କରିବାକୁ ଅନୁରୋଧ କଲେ । କ୍ଷମା ମାଗିଲେ ଯେ ଏହାଛଡ଼ା ସେ ଆଉ କିଛି ଯାଚି ପାରିବେ ନାହିଁ, କାରଣ କଣିକିଆ ଲୋକର ଲଞ୍ଚ୍ ସରିଗଲଣି କେବେଠୁଁ । କିନ୍ତୁ ଆପଣଙ୍କୁ ଲଞ୍ଚ୍ ଖାଇବା ପାଇଁ ସମୟ ମିଳିନାହିଁ ବୋଲି କହୁଛନ୍ତି, ତେଣୁ ଆପଣଙ୍କୁ ଏଇ ସାମାନ୍ୟ ଫଳମୂଳ ଦି'ଟା ଖାଇବାକୁ ପଡ଼ିବ...।' ସେଇଠୁଁ ଅନିବାବୁ 'ଅନେକ ଧନ୍ୟବାଦ' କହି ସେତକ ଖାଇ ନେଲେ ଆଗ୍ରହ ପୂର୍ବକ । ତା' ପରେ ତାଙ୍କୁ କୁହାଗଲା କିଛି ସମୟ ପାଇଁ ଆଖିବୁଜି ଦେବାକୁ । ଉଠିଲା ପରେ କହିବେ ଆପଣଙ୍କର ଯାହା କହିବାର ଅଛି । ଏବଂ ଅନିବାବୁ ସେଥିରେ ପ୍ରତିବାଦ କରି ପାରିଲେ ନାହିଁ । ଖଟ ଉପରେ ଲମ୍ବି ଯାଇ ଚୁପ୍‌କିନା ଆଖି ବୁଜି ଦେଲେ, ଏବଂ ବନୀତା ପାଦ ଚପି ଚପି ସେଠୁଁ ଗୁଲି ଆସିଲେ ।

...ମୁଁ ଜାଣେ ତମର କ'ଣ କହିବାର ଅଛି । କେଉଁ ଉଦ୍ଦେଶ୍ୟ ନେଇ ଆସିଛ ମୋ ପାଖକୁ ଏଇ ଉଦୁଉଦିଆ ଖରାରେ । ଏବଂ ମୁଁ ଜାଣେ ମୁଁ ତୁମକୁ କ'ଣ କହିବି । ଦୁଃଖ ପ୍ରକାଶ କରିବି ଯେ ତମକୁ ଟିକେଟ୍ ଦିଆ ହେଲା ନାହିଁ । କିନ୍ତୁ ତା' ପରେ କହିବି ଯେ କ୍ଷମା କରିବେ ମୁଁ ସେ ଦିଗରେ କିଛି କରି ପାରିବି ନାହିଁ । ନିର୍ଣ୍ଣୟ ସିଲେକ୍‌ସନ୍ କମିଟି ହାତରେ । କିନ୍ତୁ ତମକୁ ହତାଦର କରିବା ଦୂରର କଥା, ମୁଁ ତମକୁ ଆରାମ ଦେବି, ଯେତେ ସମୟ ଯାଏଁ ତମେ ଅଛ ମୋ ଘରେ । ଶୋଇପଡ଼ ଅନିବାବୁ, ଶୋଇପଡ଼ ।

ବିନୀତା ଅନିବାବୁଙ୍କୁ ଅଫିସ୍ ଘରେ ଶୁଆଇ ଦେଇ ଆସିଲାପରେ ନିଜେ ତାଙ୍କ ଶୋଇବା ଘରକୁ ଗଲେ ନାହିଁ ବିଶ୍ରାମ ନେବା ଲାଗି । ଓଲଟି ପୁଣି ଠିଆ ହେଲେ ଆସି ବାଲ୍‌କନିର ରେଲିଙ୍ଗ୍ ପାଖରେ ରୌଦ୍ରତାପକୁ ପୁଣି ଥରେ ଲେଉଟିଲା ପରି । ଅଥବା ସୂର୍ଯ୍ୟଦେବଙ୍କୁ ଆଶ୍ୱାସନା ଦେଲାପରି ଯେ ସେମାନେ ଶୋଇଲେ ଶୁଅନ୍ତୁ, କିନ୍ତୁ ମୁଁ ତାଙ୍କ ପରି ନୁହେଁ । ମୁଁ ବିନୀତା ବେହେରା । ଯେଉଁମାନେ ହାଲିଆ ହୋଇ ଶୋଇଯାଆନ୍ତି, ତାଙ୍କର ସ୍ୱାର୍ଥ ପାଇଁ ମୋର ଚେଇଁ ରହିବା କଥା । ମୁଁ ସେଥିରେ ହେଳା କରିବି ନାହିଁ ।

...କିନ୍ତୁ ବିନି, ତା' ବୋଲି ତୋତେ କ'ଣ କିଏ ମନା କରୁଛି ଦଶ ପନ୍ଦର ମିନିଟ୍ ଆଖି ବୁଜି ଦେବାକୁ ? ନା ତୋର ସଜାଗପଣିଆ ଊଣା ହୋଇଯିବ ସେଥିରେ ? ଗତକାଲି କମ୍ପାନ ତା' ପୂର୍ବଦିନ ଖରାବେଳେ ତୁ କ'ଣ ଶୋଇପଡି ନଥିଲୁ ଟିକିଏ ? ଏବଂ ଆଜି ଏଇ ଲୋକଟା ଆସି ପହଞ୍ଚି ଯାଇ ନଥିଲେ ବି କ'ଣ ସେଇଆ ହୋଇ ନଥାଆନ୍ତା ? କିନ୍ତୁ ମନେହେଉଛି ସିଏ ଏଠି ଥିବାରୁ ତୋତେ ଅସ୍ଥିର ଲାଗୁଛି । ଯେମିତିକି ତାକୁ ନେଇ କିଛି ଗୋଟାଏ ସଫେଇ ଦେବାର ଅଛି, ଏବଂ ସେତିକି ପୂରା ନହେଲା ଯାଏଁ ତୋତେ ଅସ୍ଥିର ଲାଗୁଛି ।

ରବିସ୍ ! ମୁଁ ଦୋଷ କରି ନାହିଁ ଯେ ମୋତେ ସଫେଇ ଦେବାକୁ ପଡ଼ିବ କୋଉ ଜଜ୍ ଆଗରେ । କିନ୍ତୁ ହଁ, ମୋତେ ଅସ୍ଥିର ଲାଗୁଛି ଗୋଟାଏ ହିସାବରେ । ମୁଁ ଜାଣେ ସିଏ କୋଉଥିପାଇଁ ଆସିଛି । ହେଲେ ସେ କ୍ଳାନ୍ତିର ପେଖନା କରୁଛି । ମୋର ଆତିଥ୍ୟକୁ ଭେକେଇଲା ପରି ହେଉଛି । ଚଟ୍‌କିନି କହିଦେଉ ନାହିଁ ସେ ଯାହା କହିବାକୁ ଚାହେଁ । ସୁନାପିଲା ପରି ମାନିନେଉଛି ହୋଷ୍ଟେସ୍‌ଙ୍କ ନିର୍ଦ୍ଦେଶ । କହିଦେଲେ ସିନା ଛିଣ୍ଡି ଯାଆନ୍ତା କଥାଟା ?

ସୁନାପିଲା, ମାଇଁ ଫୁଟ୍ ! ଯେତେ ଟୋକା ଭଳି ଦିଶିଲେ ମଧ୍ୟ ତମେ ଆଉ ଟୋକା ହୋଇ ନାହଁ । ତମକୁ ଲାଜ ମାଡ଼ିବା ଉଚିତ, ସେଭଳି ଭାବ ଯଦି ତମ ମନରେ ଆସୁଥାଏ । ବାହାସାହା ହେଲଣି କେବେଠୁଁ । ମୁଁ ଥରେ ଦି'ଥର ଦେଖିଛି

ତମ ସ୍ତ୍ରୀଙ୍କୁ । ସର୍ବସାଧାରଣ ଗୃହିଣୀଟିଏ । ରଜନୀଘ କ କୋଉ ନୀତ ତା' ମୁଣ୍ଡରେ ପଶୁ ନଥିବ, ରାନ୍ଧିବା କ ଯୋଡ଼ିବିଛଣାରେ ଶୋଇବାର ନୀତି ଛଡ଼ା । ଯୋଡ଼ିଏ ପିଲାଙ୍କ ବାପ ହୋଇଛ ବୋଲି ଶୁଣିଛୁ, ସେମାନେ କଲେଜ୍‌ରେ ପଢ଼ିଲେଣି ଏଇଥିଣି । ଏବଂ ପଲିଟିକ୍ସ ବି କରିଲେଣି ଆସି ପନ୍ଦର କୋଡ଼ିଏ ବର୍ଷ ହେଲା । ହୋଇପାରେ ଯେ ତମ ପଲିଟିକ୍ସ ଭିନ୍ନ ମୋଠାରୁ । ବିଶେଷ ଭାବରେ ଭିନ୍ନ, କାରଣ ମନେହୁଏ ଯେ କ୍ରୋଧ ବୋଲି ଗୋଟାଏ ଜିନିଷ ନାହିଁ ତମ ଜାତକରେ । ଏଇଟା ନିହାତି ଅନ୍ୟାୟ୍ୟ ଅନୁଚିତ ବୋଲି ବୁଝିଲେ ବି ପ୍ରତିକାର ପାଇଁ ତମେ ଦରବାରରେ ଗୁହାରି କରିବ, ଏଣେ ଲୋକମାନଙ୍କୁ ବୁଝେଇ ବସିବ ଯେ ଭାଇଭଉଣୀମାନେ, ଏତେ ଉତ୍ୟକ୍ତ ହୁଅ ନାହିଁ । ଧୈର୍ଯ୍ୟ ଧର । ବୁଢ଼ା ବକ୍ ! କେମିତି ତମ ମୁଣ୍ଡରେ ପଶେ ନାହିଁ ଯେ ଏମିତି ଭାବରେ ଅନ୍ୟାୟ୍ୟଟା ଦେହସୁହା ହୋଇଯାଏ । ହଁ, ତମେ ବହୁତ କାମ କରିଛ ଲୋକମାନଙ୍କ ପାଇଁ । କିନ୍ତୁ ସେ କାମର କିଛି ମୂଲ୍ୟ ନାହିଁ । ସେଥିରେ ହୁଏତ ଯଥାକ୍ରମେ କୋଉ କେସ୍‌ର ଫଇସଲା ହୋଇଯାଏ, କିନ୍ତୁ କିଛି ବଦଳେ ନାହିଁ ବଦଳାଇଲା ପରି । ସେଭଳି ଗତିକୁ ପ୍ରଗତି କୁହାଯାଏ ନାହିଁ, ବିପ୍ଳବ କଥା ଛାଡ଼ । ଠିକ୍ ଅଛି । ତମେ ସୁଖରେ ଥାଅ । (ଖାଇଲା ପରେ ଯେଉଁ ପାନ ଖଣ୍ଡିକ ଖାଅ, ସେଥିରେ ଜାଇଫଳ ଟିକିଏ ପଡ଼ୁଛି ନା ନାହିଁ ଆଜିକାଲି ?) ଏବଂ ଶାନ୍ତି ପାଠ କର । କିନ୍ତୁ ଦୟା କରି ନିଜକୁ ପିଲା ବୋଲି ଭାବ ନାହିଁ । ବୟସର ଭାରିପଣ, ସଂସାରରେ ଏତେଦିନ ଆତ-ଯାତ ହେବାର ଅଭିଜ୍ଞତା, ସ୍ତ୍ରୀ'ର କ'ଣ କିଛି ପ୍ରଭାବ ପଡ଼ି ନାହିଁ ତମର ଚେହେରା କି ବ୍ୟବହାରରେ ? କାହିଁକି ନିଜକୁ ଏମିତି ହାସ୍ୟାସ୍ପଦ କରି ରଖିଛ ?

ହଉ, ଦୟାକରି ଉଠିପଡ଼ ଶୀଘ୍ର, ଏବଂ କୁହ ତମର ଯାହା କହିବାର ଅଛି ? ମୁଁ ଅପେକ୍ଷା କରିଛି ।

ଯାହାହେଉ ବନିତାଙ୍କୁ ବେଶି ସମୟ ଅପେକ୍ଷା କରିବାକୁ ପଡ଼ିଲା ନାହିଁ । ଅନିବାବୁ ଯଥାଶୀଘ୍ର ଉଠିପଡ଼ି ମୁହଁହାତ ଧୋଇ, ଏବଂ ଆଖିରେ ଚଷମା ଲଗେଇ ଅନେଇଲେ ସର୍ବସାମାନ୍ୟ ଗାମ୍ଭୀର୍ଯ୍ୟ ଦିଶୁଥିବା ଅତଥିସତ୍କାରିଣୀଙ୍କ ଆଡ଼କୁ । ଏବଂ ତାଙ୍କୁ ନିରାଶ କଲେ ନାହିଁ, ସେ ଯେତେବେଳେ ତାଙ୍କୁ 'ଓ୍ୱେଲ୍' ? ବୋଲି ପଚାରିଲେ । ନାଲିଟିଆ, ହେଲେ କ୍ଳାନ୍ତିବିବର୍ଜିତ ଶାନ୍ତ ଗୃହିଣୀ ଏବଂ ସ୍ମିତହାସ୍ୟ ନେଇ ସେ କହିଲେ ବନିତାଙ୍କୁ—

"ଜାଣିଛ ବନି ? ସେମାନେ ଟିକେଟ୍ ଦେଲେ ନାହିଁ ମୋତେ । ମୁଁ ସିଧା ଆସୁଛି ତମ ପାଖକୁ, ତାଙ୍କ ସାଙ୍ଗରେ ଦେଖା କରିସାରିଲା ପରେ । କହିଲେ— ଆପଣ ବିଦ୍ୱାନ ଲୋକ, ଆପଣ କିଛୁଟାରେ ସେଇ ପାଗଳାଖାନା ଭିତରେ ପଶିବେ କାହିଁକି ? ବରଂ ଆମର ଯେଉଁ ତାତ୍ତ୍ୱିକ ମାସିକ ପତ୍ରିକା ବାହାରିବାର ସ୍ଥିର ହୋଇଛି, 'ମଙ୍ଗଳାଦ୍ୱିନ', ଆପଣ ତା'ର ଦାୟିତ୍ୱ ନେଲେ ଭଲ ହୁଅନ୍ତା ନାହିଁ ?..."

…ଗୁଡ୍ । ବାଗକୁ ଆସିଲ ଏଥର । ବୁଝିଲ ଯେ ତମକୁ ଏମ୍. ଏଲ୍. ଏ. ଏବଂ ସମ୍ଭାବିତ ମନ୍ତ୍ରୀ ହେବାକୁ ମନା କରାଗଲା । ଏବଂ ତମେ ସେଇ ଦୁଃଖକୁ ଅଜାଡ଼ି ଦେବାକୁ ଆସିଛ ମୋ ଆଗରେ, ଯେହେତୁ ମୁଁ ଦିନେ ତମର ସହକର୍ମୀ ଥିଲି, ଏବଂ ତମର ଆଶା ମୁଁ ତା'ର ଖାତିର୍‌ରେ କିଛି କରିପାରେ ତମ ପାଇଁ, ତମେ ଯେତେବେଳେ ଏମିତି ଗିଡ଼ିଗିଡ଼ି ହେବ, ମୋର ନର୍ଭେଲା ଖରାବେଲ୍‌ଟାରେ । ଓ-କେ । କହିଯାଅ କାମଟା ଛୁଟିଯାଉ ଶୀଘ୍ର ।

"ମୋର ମନଟା ମରିଗଲା ସତ, କିନ୍ତୁ ମୁଁ ବୁଝିଲି ତାଙ୍କ କଥା । ସ୍ୱୀକାର କଲି ଯେ ବୋଧହୁଏ ଏହାହିଁ ଉପଯୁକ୍ତ କାମ ମୋ ପାଇଁ । ପାର୍ଟିର ନୀତି ଏବଂ ଆଦର୍ଶକୁ ଯଥାବିଧି ବୁଝେଇବା ଆମ ଲୋକମାନଙ୍କୁ । ସେଥିର ଆଳାପଆଲୋଚନା କରିବା । ଏମ୍.ଏଲ୍.ଏ. ପଣର ଦଉଡ଼ମଡ଼ି ହୁଏତ ମୋ ଧାତୁରେ ଯିବ ନାହିଁ ।

କିନ୍ତୁ ସେଠୁଁ ଚାଲି ଆସିଲା ବେଳକୁ ଗୋଟାଏ ବ୍ୟାକୁଳତା ଜାଗି ଉଠିଲା ମୋ ମନରେ । ଯାହାକି ଆଜିର ନୁହେଁ, ଅନେକ ଦିନର, ହେଲେ ଆଜି ମୁଁ ଛଟପଟ ହୋଇ ଉଠିଲି ତା'ର ତାଡ଼ନାରେ । ଏବଂ ମୁଁ ସ୍ଥିର କଲି ତମ ସାଙ୍ଗରେ ଦେଖା କରି ଯିବି, ତମେ ଯାହା ଭାବ ପଛେ । ନହେଲେ ମୋର ସାଧ ମେଣ୍ଟିବ ନାହିଁ ଆଉ ।

ଓ୍ୱେଲ୍ ବନ୍ଧୁ, ମୁଁ ଜାଣେ ଆମ ପାର୍ଟି ଜିତିବ ଏଥର । ଏବଂ ସରକାର ଗଢ଼ିବ । ଏବଂ ତମକୁ ସେମାନେ ମନ୍ତ୍ରୀ ନକରେଇ ଛାଡ଼ିବେ ନାହିଁ । କିନ୍ତୁ ମନ୍ତ୍ରୀ ହୁଅ ବା ନୁହେଁ, ତମେହିଁ ନେତା ହୋଇ ରହିବ, ଏଥିରେ ସନ୍ଦେହ ନାହିଁ ! ମୁଁ ଖାଲି ଏତିକି କହିବାକୁ ଆସିଥିଲି ଯେ ମୁଁ ଏହି ନେତାପଣକୁ ଲୋଡ଼ୁଛି । ପ୍ରତ୍ୟକ୍ଷରେ । ସର୍ବାନ୍ତଃକରଣରେ । କାରଣ ତମର ଯାହା ଅଛି ଆଉ କାହାର ନାହିଁ ଆମ ପାର୍ଟିରେ । ଏକ ପ୍ରଚଣ୍ଡ ଆନ୍ତରିକତା…"

ଯାହାର ଅନ୍ୟ ନାମ କ୍ରୋଧ, ବିନୀତା ମନେ ମନେ କହୁଥିଲେ ତାଙ୍କୁ । ହେଲେ ତମକୁ କିଏ କହୁଛି ସେଇ ଆନ୍ତରିକତା, କି କ୍ରୋଧ, କି ଆଉ କେଉଁ ଆବେଗର ପାଖ ମାଡ଼ିବାକୁ ? ବିନୀତା ତାଙ୍କର ଘୋର ବିସ୍ମୟକୁ ଖୋଲାଇ ଦେବାକୁ ଚାହୁଁଥିଲେ ।

"ମୋତେ ଭୁଲ୍ ବୁଝିବ ନାହିଁ ବନ୍ଧୁ, ମୁଁ ତୁମର ତୋଷାମଦ କରିବା ପାଇଁ ଆସି ନାହିଁ ଏଠିକି । କିନ୍ତୁ ଦୟାକରି ମୋତେ ସେଇ ନେତୃତ୍ୱର ପ୍ରସାଦରୁ ବଞ୍ଚିତ କରିବ ନାହିଁ । ଆଇ ମିନ୍ ଇଟ୍ । ମୋତେ ପାସୋରି ଯିବ ନାହିଁ, ପ୍ଲିଜ୍ । ମୋତେ ବି ଡାକିବ, ଦରକାର ପଡ଼ିଲେ, ତମର ସିପାହୀ ହେବା ପାଇଁ…"

କିନ୍ତୁ କାହିଁକି ?? ଯୁକ୍ତି କରି ଜାଣେ ନାହିଁ, ତମର ମନ ବି ନାହିଁ ସେ ଆଡ଼କୁ, ହେଲେ କହୁଛ କ'ଣ ନା ମୋର ସିପାହୀ ହୋଇ ନପାରିଲେ ତମର

କିବକଣ୍ଠ ବଦ୍‌ବାଦ୍‌ ହୋଇଯିବ ? ତମର କ'ଣ ମୁଣ୍ଡ ଖରାପ ହୋଇଗଲାଣି ? ଏହିଭଳି ନାନା ପ୍ରଶ୍ନ ପଚାରିବାକୁ ଇଚ୍ଛା ହେଉଥାଏ ବନୀତାଙ୍କର, କିନ୍ତୁ ସେଥିରେ କେବଳ ବିସ୍ମୟର ଭାବ ନଥିଲା । ଆଉ କେତେ କ'ଣ ଭାବର ଉଦ୍ରେକ ହେଉଥିଲା, ଯାହାକୁ ସେ ଠଉରେଇ ପାରୁ ନଥିଲେ । ଏବଂ ଠଉରେଇଲା ପରେ ମନେହେଲାରୁ ତା'କୁ କାଟି ଦେଉଥିଲେ, 'ମିଛ, ମିଛ' ବୋଲି କହୁଥିଲେ । ତେବେ ଗୋଟାଏ ବିଚିତ୍ର ଲୁଚି ଆଲୁଅର ଖେଳ ପରିସ୍ଫୁଟ ହୋଇ ଉଠୁଥିଲା ତାଙ୍କ ଚେହେରାରେ । କାହାଣି କଅଁଳରୁ କରୁଣ ହେଉ ହେଉ ହଠାତ୍ କଳା ଉଠୁଛି । ପୁଣି ୫୦ ବର୍ଷ ସତ ହସ ହସୁହସୁ ଛୁଗୁଲେଇଲା ପରି ଦିଶୁଛି । ଏବଂ ସର୍ବୋପରି ମନେ ପଡ଼ିଯାଉଛି ସେଦିନର ସେଇ ଦୃଶ୍ୟ, ଅନେକ ଅନେକ ଦିନ ତଳର । ଯେତେବେଳେ ସୂର୍ଯ୍ୟ ରଞ୍ଜିତ ଥିଲା, ବନୀତା କେହି ହୋଇ ନଥିଲା, କେବଳ ତରୁଣୀଟିଏ, ଯେ କଥା-କଥାକେ ହସେ, ତର୍କ କରେ, ଏବଂ ନବାବ୍ ପୁଅକୁ ଜବାବ୍ ଦେଇପାରେ । ମଧ୍ୟ ଲୁଚେଇ ଲୁଚେଇ କାନ୍ଦେ, କୌଣସି ପରାଜୟବୋଧକୁ କାଟି ଦେଇ ନପାରିଲେ । ସେତେବେଳେ ସେ କଲେଜ୍ ୟୁନିଅନର ଭାଇସ୍-ପ୍ରେସିଡେଣ୍ଟ ହୋଇ ନଥିଲା କି ଅନିମହାନ୍ତି 'ପ୍ରଗତି'ର ସଂପାଦକ, କିନ୍ତୁ ଦୁହିଁଙ୍କର ବନ୍ଧୁତା ବେଶ୍ ଗଢ଼ି ଉଠିଥିଲା । ଏବଂ ମନେ ହେଉଥିଲା ଯେ ଏକା ଅନର୍ସ କ୍ଲାସ୍‌ରେ ପଢ଼ିବା ହେତୁ ନୋଟ୍‌ର ଦିଆନିଆ ଛଡ଼ା, ଆହୁରି କେତେକ ଉପାଦାନ ମଧ୍ୟ ଥିବ ସେଇ ଆତ୍ମୀୟତାରେ ।

ନହେଲେ ଅନିରୁଦ୍ଧ ବାରମ୍ବାର ଆସୁ ନଥାଆନ୍ତା ବନୀତାର ବାପା ପ୍ରସିଦ୍ଧ ଆଡ୍‌ଭୋକେଟ୍ ଉତ୍ତମ ବେହେରାଙ୍କ ଘରକୁ । ଏବଂ ବାପାମାଆ ବି ନିଜର ଅନ୍ୟତମ ସହପାଠୀକୁ ଏତେ ଆଦର କରୁ ନଥାଆନ୍ତେ । ପିଲାଟା ଯେତିକି ସୁନ୍ଦର, ସେତିକି ବୁଦ୍ଧିଆ । ଖାଲି ପଢ଼ାରେ ଫାଷ୍ଟ ନୁହେଁ, ଡିବେଟ୍ ଇତ୍ୟାଦିରେ ବି ଧୁରନ୍ଧର ବୋଲି ବିନି କହୁଥିଲା । ସବୁ ପ୍ରସ୍ତାବକୁ ତ ନାକ ଟେକିଲା ଆମ ଝିଅ, ଏଣିକି ପ୍ରସ୍ତାବ ବି ଦେଇ ହେଉ ନାହିଁ କେଉଁଠିକି । ହେଲେ ୟାଙ୍କର ଏଇ ଯେଉଁ ମିଳାମିଶା ଚାଲିଛି ଇଏ ଲଭ୍-ମ୍ୟାରେଜ୍ ଆଡ଼କୁ ଯାଆନ୍ତା ନାହିଁ ? ବନୀତା ଏଇ ମନୋଭାବର ଇଙ୍ଗିତ ପାଇଛି, କିନ୍ତୁ ତାକୁ ପରିହାସରେ ଉଡ଼େଇ ଦେଇଛି ।

କିନ୍ତୁ ସେଦିନ ପରିହାସର ଅବକାଶ ନଥିଲା । ଯାହା ସେ ଶୁଣିଲା ଖୋଦ୍ ଅନିରୁଦ୍ଧର ମୁହଁରୁ ତାକୁ ସେ ହସି ଉଡ଼େଇ ଦେଇ ପାରିଲା ନାହିଁ । ଏମିତି କହି-ଯାଉଥିଲା ଏଇ ଲୋକଟା, ତା'ର ଉଚ୍ଛୁଳା ଆବେଗକୁ ରୋକି ନପାରିଲା ପରି । ଏକୁଟିଆ କମରା । ବାପାବୋଉ, ଭାଇଭଉଣୀ କେହି ନାହାନ୍ତି ପାଖରେ । ରାତି ଆଠଟା କି ନଅଟା ହେବ । ଏବେ ଯେଉଁ ନାଟକ ଅଭିନୀତ ହୋଇଥିଲା କଲେଜ୍‌ରେ, ୧୮୧୭ର ହିନ୍ଦୁ ବିଦ୍ରୋହ ଉପରେ ଆଧାରିତ 'ବହ୍ନିଶିଖା', ଯାହାର ମୁଖ୍ୟ ଚରିତ୍ର

ଥିଲେ ଝାନ୍ସୀର ରାଣୀ, ତା'ର କଥା ପଢ଼ିଥିଲା । ନାଟକଟି ସୁଧୀମହଲରେ ପ୍ରଶଂସିତ ହୋଇଥିଲା, ଏବଂ ତାହା ଦୁହିଁଙ୍କ ପାଇଁ ଥିଲା ଏକ ବିଶେଷ ଆନନ୍ଦର ବିବାହ । କାରଣ ବିନୀତା ସେଥିରେ ନାୟିକା 'ଝାନ୍ସୀର ରାଣୀ' ଭୂମିକାରେ ଅବତୀର୍ଣ୍ଣ ହୋଇ-ଥିଲା, ଏବଂ ଅନିରୁଦ୍ଧ ତା'ର ସଂଳାପ ରଚନା କରିଥିଲା । ଗପୁଗପୁ ଅନିରୁଦ୍ଧର ସ୍ୱର ବଦଳି ଯାଇଥିଲା । ଏବଂ ମନେ ହେଲା ସେ ପାଖେଇ ଆସୁଛି, କେଉଁ ଗୋପନ ନୂଆ କଥାଟିଏ କହିବ ବୋଲି । କହିଲା—

"ଆମର ସଫଳତା କେବଳ ଜଣକ ଯୋଗୁଁ, ବିନି । ଆମ ରାଣୀଙ୍କ ପାଇଁ । ଶଏଲ, ତମେ ଅଭିନୟ କଲ ପରି ଲାଗୁ ନଥିଲା । କେମିତି ଲାଗିବ, କହନ୍ତୁ ? ରାଣୀଭାବ ତମର ସହଜାତ । ତମ ଭାବଭଙ୍ଗୀ, ଗ୍ରୀବାଣି, ହସ, ଇତ୍ୟାଦି ଇତ୍ୟାଦି, ସବୁଥିରେ ଅଛି । ତାକୁଇ ଖାଲି ଟିକିଏ ଫେଣ୍ଟିବା କଥା..."

"ସତେ ?"

"ମୁଁ ସତ କହୁଛି ବିନି—" ଏତିକି କହି ସେ ହାତ ବଢ଼େଇଥିଲା ବିନି ଆଡ଼କୁ ଏବଂ ବିନି ତା' ହାତରେ ହାତ ରଖି କହିଥିଲା, 'ଥ୍ୟାଙ୍କ୍ସ୍ ! ଥ୍ୟାଙ୍କ୍ ୟୁ ଭେରି ମଚ୍' ।"

କିନ୍ତୁ ତା'ପରେ ? ତା'ପରେ ତମେ ଅଟକିଗଲ କାହିଁକି ? କିଏ ବାଧା ଦେଲା ତମକୁ ? ଏଣେ ବିନି ଅପେକ୍ଷା କରି ରହିଥିଲା । ଏବଂ ଅପେକ୍ଷା କରି କରି ରାଗି ଉଠିଥିଲା ବୋଲି କହିଲେ ଭୁଲ୍ ହେବ ନାହିଁ । ଏମିତି ରାଗି ଉଠିଥିଲା ଯେ ମୁହୂର୍ତ୍ତିକ ପାଇଁ ତା'ର ଇଚ୍ଛା ହୋଇଥିଲା ଏଇ ଭୀରୁ ଲୋକଟାକୁ କାମୁଡ଼ି ଧରି ତା' ଓଠକୁ କାମୁଡ଼ି ଛିଣ୍ଡେଇ ଦେବାକୁ...

ଅତୀତର ସେଇ ଅଭୁଲା ଦୃଶ୍ୟଟାକୁ ତତ୍‌କ୍ଷଣାତ୍ ବାତିଲ୍ କରିଦେଲେ ବିନୀତା ବେହେରା । ଏବଂ ବର୍ତ୍ତମାନକୁ ଫେରି ଆସିଲେ । ଦେଖିଲେ ଅନିବାବୁଙ୍କର କଥାରି ସୁଅ ଥମିଯାଇଛି । ବୋଧହୁଏ ଅପରପକ୍ଷର ଭାବାନ୍ତର ଲକ୍ଷ୍ୟ କରି । ସେଇଠୁ ଅନିବାବୁ କହୁଛନ୍ତି—

"କ୍ଷମା କରିବ, ମୁଁ କ'ଣ ଏମିତେଇ ଗପିଗଲି ତମ ଆଗରେ । ଓ-କେ, ଲେଟ୍ ମି ଗୋ ନାଓ ।"

ବିନୀତା ଉଠି ଠିଆହେଲେ । ମନେ ହେଲା ତାଙ୍କ ଓଠ ଥରି ଉଠୁଛି, ପାଟି ପାକୁ ପାକୁ ହେଉଛି; ବିଶେଷ କିଛି କହିବ ବୋଲି । ହେଲେ ଅତୀତର ସେଇ ପୁରୁଣା 'ଥ୍ୟାଙ୍କ୍ସ୍' ଛଡ଼ା ଆଉ କିଛି ବାହାରିଲା ନାହିଁ ତାଙ୍କ ମୁହଁରୁ । ତାହା ମଧ୍ୟ ଥିଲା କୃତ୍ରିମ, ପୂର୍ବର ସରାଗ ଟିକିଏ ବୋଲି ନଥିଲା ସେଥିରେ । ସତେ ଯ

ଆଉ କିଛି କହି ହେଉ ନାହିଁ । କହି ବସିଲେ କ'ଣ ବୋଲି କ'ଣ କହି ହୋଇଯିବ । ଯାହା ତାଙ୍କ ତରଫ ସାଙ୍ଗରେ ମୋଟେ ଖାପ୍ ଖାଇବ ନାହିଁ । କାରଣ ସେଇ ସବୁ ଭାବ କେବେଠୁଁ ଜଳାପୋଡ଼ା ହୋଇଯାଇଛି, ଯେତିକ ବ୍ୟକ୍ତିଗତ କାମନା, ବାସନା, ମାନ ଅଭିମାନର ସାମାନ୍ୟ ସ୍ୱାର୍ଥ ।

ଖାଲି ସେ ଏତିକି ଜଣାଇବାକୁ ଚାହୁଁଥିଲେ ଅତିଥିଙ୍କୁ, ଯାହା ତାଙ୍କର ସଫେଇ ବୋଲି ମନେ ହେଉଥିଲା—

ହଁ, ତମ ନାଆଁ ଉଠିଥିଲା ମନୋନୟନ ପାଇଁ । କିନ୍ତୁ ମୁଁ ତାକୁ କାଟି ଦେଲି । ଜୋର୍ କରି କହିଲି ଯେ ସେ ପାରିବେ ନାହିଁ । ନିଜେ ତ ତାଢ଼ ଉଠି ପାରିବେ ନାହିଁ, ଆଉ କାହାକୁ ତଡେଇବେ କ'ଣ ? ଆମେ କ'ଣ ଚାହୁଁ ଏମିତିକା ଲୋକ, ଆମର ଲଢ଼େଇକୁ ଆଗେଇଦେବା ପାଇଁ ? କିନ୍ତୁ ସତ କହୁଛି ଅନିବାବୁ, ଅତୀତର ସେଇ ଆବ୍‌ସର୍ଡ଼୍ ଦୃଶ୍ୟଟା ମୋଟେ ମୋର ମନକୁ ଆସି ନ ଥିଲା ସେତେବେଳେ ।

କିନ୍ତୁ ତମକୁ ଜାଣିବାକୁ ପଡ଼ିବ ଯେ ବିଫଳତା ମୋର ନଥିଲା, ଥିଲା ତମର । ବୁଝିଲ ? ତମ ଭାଷାରେ ତୁଚ୍ଛା ଆନୁଗତ୍ୟ ନଥିଲା ସେତେବେଳେ, ଏଇକ୍ଷଣି ଯାହା ଦେଖେଇ ହେଉଛ । ତମେ ଲୋଭଉଥିଲ ମୋ ରାଣୀଭାବକୁ ଦେଖି । ପୂର୍ଣ୍ଣଚ୍ଛେଦ । କିଓ, ମୁଁ ସେତେବେଳେ ତରୁଣୀ ଥିଲି ମ ସେତେବେଳେ ? ଆଉ ତରୁଣୀ ରାଣୀ କ'ଣ ସହଜେ ସୁନ୍ଦର ନୁହେଁ ? କିନ୍ତୁ ତମେ ଡରିଗଲ । ହୁଏତ ମୋର ସେଇ ରାଣୀଭାବ ଆଜି ନେତ୍ରୀଭାବରେ ପାଲଟି ଯାଇଛି, ଯାହାକୁ ତମେ ପୁଣି ଛୁଇଁବାକୁ ଚାହୁଁଛ, ପାର୍ଟିର ଟିକେଟ୍ ନ ମିଳିଲାରୁ । କ'ଣ ଏଇଆ ନା ? ବିଚରା !

ଛାଡ଼, ଆଜିକା ସୂର୍ଯ୍ୟରେ କୋଉ ରଙ୍ଗ ନାହିଁ ଏଇକ୍ଷଣି । ଖାଲି ଗୋଟାଏ ଜ୍ୱଳନ୍ତା ଦୀପ୍ତି । ଯେତିକି ଶୁଭ୍ର, ସେତିକି ନିର୍ମମ ଏବଂ ନିରପେକ୍ଷ । କେବଳ ସେଇ ଜନଗଣର ମଙ୍ଗଳ ପାଇଁ ଉଦ୍ଦିଷ୍ଟ ।

ହେଲେ, କିଏ କହିବ ? ବୁଢ଼ୀ ହେଲି ବେଳକୁ ମୁଁ ଯଦି ଦୁର୍ବଳ ହୋଇ-ପଡ଼େ, ଆଉ ତମେ ଯଦି ଟୋକା ହୋଇଥାଅ, ତା' ହେଲେ ମୁଁ ତମକୁ ମୋ ସିପାହୀ କରିବାକୁ ଚାହିଁବି ନାହିଁ ବୋଲି କିଏ କହିବ ?

ସେହେତୁ ବନୀତା ଅନିବାବୁଙ୍କୁ ପୁଣି ଥରେ 'ଥ୍ୟାଙ୍କ୍ସ' କହିଲେ, ସେ କାର୍‌ରେ ବସିଲା ବେଳକୁ । କିନ୍ତୁ ଏଥର ହସହସ ହୋଇ । ନିଜକୁ ଅଳ୍ପବହୁତ ଛାଡ଼େଇଲା ପରେ ।

# ଅନେକ ଦିନର ସୂର୍ଯ୍ୟ

ନିଜେ ତ ଠାଉ ଉଠି ପାରିବେ ନାହିଁ, ସେ ଆଉ କାହାକୁ ଉଠେଇବେ କ'ଣ ?

ଏଇ ଯେଉଁ ସାରଗର୍ଭିକ କଥାଟି ଆସିଲା ବିନୀତାଙ୍କ ମନକୁ, ଅନିବାବୁଙ୍କ ପ୍ରାର୍ଥୀତ୍ୱର ବିରୋଧ କରିବାକୁ ଯାଇ, ତାହା କେତେଦୂର ମାରାତ୍ମକ ବୁଝିପାରୁଥିବେ । ତାତ୍ତ୍ୱିକ ତଥ୍ୟ ହିସାବରେ ହୁଏତ କହିହେବ ଯେ କାମନା ଓ କ୍ରୋଧ, ଉଭୟରେ ସେଇ ବିଶିଷ୍ଟ ଉପାଦାନ ରହିଛି । ଭାବାବେଗର ଗନ୍ଧ । ତେଣୁ ତମେ ସେଥିରେ ଯଦି ହାରିଗଲ, ଏଥିରେ ମଧ୍ୟ ଫେଲ୍ ମାରିବାକୁ ବାଧ୍ୟ । ଠିକ୍ କଥା । କିନ୍ତୁ ତମେ ତମ ନିଜ ନାୟିକଜୀବନର ଅନୁଭୂତିକୁ ନେଇ ଅନିବାବୁଙ୍କୁ କାଠଗଡ଼ାରେ ଠିଆ କରେଇଲ, ଆଜିକାର ଏକ ରାଜନୈତିକ ନିର୍ଣ୍ଣୟରେ ପହଞ୍ଚିବା ପାଇଁ, ଏଇଟା କ'ଣ ଭଲ କଥା ହେଲା ?

ତେବେ ତମକୁ ଦୋଷ ଦେଇ ହେଉ ନାହିଁ । କହିହେଉ ନାହିଁ ଯେ ଏତେବର୍ଷ ନେତ୍ରୀ ତାଙ୍କ ଯୌବନରେ ଘଟିଥିବା କେଉଁ ପ୍ରେମପରାଜୟକୁ ତାଙ୍କ ମନରେ ଗୁପି ରଖିଥିଲେ, ଏବଂ ତାଙ୍କୁ ଗୋଟାଏ ସୁଯୋଗ ମିଳିଲା ଏଇକ୍ଷଣି ତା'ର ପ୍ରତିଶୋଧ ନେବା ଲାଗି । ଧାତ୍, ସେମିତି କିଛି ନୁହେଁ । ତମର ଖାଲି ମନେ ପଡ଼ିଲା ସେଇ କଥାଟା, ପାଉଁଶ ହୋଇଯାଇଥିବା ନିଆଁଟା ପୁଣି ଜଳି ଉଠିଲା ପରି ଲାଗିଲା, ମାତ୍ର କ୍ଷଣକ ପାଇଁ, ଏବଂ ତାହା ଅନାୟାସରେ ଖାପ୍ ଖାଇଗଲା ଉପସ୍ଥିତ ପ୍ରଶ୍ନର ଉତ୍ତର ସାଙ୍ଗରେ । ଅନିରୁଦ୍ଧବାବୁ ଶାନ୍ତିପ୍ରିୟ, ଅର୍ଥାତ୍ ଭୀରୁ । ସେ ଜନଗଣଙ୍କୁ କେବଳ ପାଠ ପଢ଼େଇ ପାରିବେ, ତାଙ୍କର ନେତା ହୋଇ ବାଟ କଢ଼େଇ ପାରିବେ ନାହିଁ ସଚିବାଳୟ ଆଡ଼କୁ, ଏବଂ ତ୍ରୁଟି ପଢ଼େଇ ପାରିବେ ନାହିଁ ପୁଲିସ୍‌ର ଗୁଳି ଖାଇବା ଲାଗି । ଏବଂ ସେହିଥି ମଧ୍ୟ ରଥା ମାଲୀ ରାଜନୀତି ସଂପୂର୍ଣ୍ଣ ଭିନ୍ନ ଜିନିଷ

ବୈଦେଶିର ଗଜମାଣ୍ଡଠାରୁ । ତେଣୁ ମେ କେମିତ ଭଲ ଏହି ଅକ୍ଷମ ଲୋକଟାର ପ୍ରାର୍ଥୀତ୍ୱକୁ ସମର୍ଥନ କରିଆ'ନ୍ତେ, ସେ ଯେତେ ଭଲ ପାଠୁଆ ହେଉ ପଛେ ? ନା ବାନଅପା, ତମେ ଠିକ୍ କରିଛ ତମ ହିସାବରେ । ଧନ୍ୟବାଦ ।

ହୁଁ, ବିଗତ ଅତୀତର ଯେଉଁ ନାଆଁଟା ଜଳି ଉଠିଲା ତାହା କେବେଠୁଁ ପାଉଁଶ ହୋଇଯାଇଥିଲା, ଏବଂ ତା'ର ସମ୍ପର୍କ ଥିଲା ଗୋଟିଏ ସର୍ବସାଧାରଣ ତରୁଣୀ ସାଙ୍ଗରେ । କିନ୍ତୁ ତମେ ଆଜି ଜନଗଣର ନେତ୍ରୀ । ତେଣୁ ଏହି ପୁନରୁଜ୍ଜୀବିତ ନାଆଁର ଦୃଶ୍ୟ ଟିକିଏ ଅଭଲ, ଅବାଞ୍ଛିତ, ଏବଂ ଅସୁନ୍ଦର ଲାଗୁ ନାହିଁ କି ? ଲାଗୁଛି । କିନ୍ତୁ ତାହା ମଧ୍ୟ କ'ଣ ସ୍ୱାଭାବିକ ନୁହେଁ ? ମନଗହନର କାରବାର କ'ଣ କେବେହେଲେ ତମର ବୋଲ ମାନେ, ନା କୋଉ ଉଚିତ-ଅନୁଚିତ ସୁନ୍ଦର-ଅସୁନ୍ଦରର ବାଛବିଚାର କରିଥାଏ ? ବରଂ ସେହି ଅଗ୍ନିସଂସ୍କାର ତାଙ୍କ ନିର୍ଣ୍ଣୟକୁ ନିରୂପିତ କରି ନ ଥିଲା, ଖାଲି ତାଙ୍କର ସୁଚିନ୍ତିତ ନିର୍ଣ୍ଣୟ ତଳେ ଗାରଟିଏ ଟାଣି ଦେଇ ଥିଲା, ଏହାହିଁ ସୁଖର ବିଷୟ ।

ଏଣେ ଅନିରୁଦ୍ଧବାବୁ ବନିତାଙ୍କୁ ଯେଉଁ ଆବେଦନ ଜଣାଇଲେ ଆଜି, ତଥା ସେଦିନ ଯେଉଁ ଆବେଦନ ଜଣାଇ ପାରିଲେ ନାହିଁ, ସେଥିରୁ ବାରି ପଡୁଥିବା ତାଙ୍କର ଦୁର୍ବଳତା କି ଅକ୍ଷମତା ପାଇଁ ତାଙ୍କୁ କେତେଦୂର ଦୋଷ ଦେଇ ହେବ ? ଆଜି ସେ ଯେଉଁଭଳି ମୁକ୍ତ କଣ୍ଠରେ ତାଙ୍କର ଆନୁଗତ୍ୟ ଜଣାଇଲେ ଏହି ନେତ୍ରୀଙ୍କ ପ୍ରତି, କହିଲେ ମୋ ନାଆଁକୁ କାଟି ଦେଲେ ସେମାନେ, କିଛି କ୍ଷତି ନାହିଁ, କିନ୍ତୁ ମୁଁ ତମର ସିପାହୀ ହୋଇ ରହିବାକୁ ଚାହେଁ, ଏଥିରେ ଯେଉଁ ନିଃସଙ୍କୋଚ ଆନ୍ତରିକତା ଫୁଟି ଉଠୁଛି, ତାହା କ'ଣ ପ୍ରଶଂସନୀୟ ନୁହେଁ ? ଅନିରୁଦ୍ଧବାବୁ ଜାଣନ୍ତି ତାଙ୍କର ଦୁର୍ବଳତା କେଉଁଠି । ଯେଉଁଥିପାଇଁ ସେ ଜନନେତା ହେବାର ଯୋଗ୍ୟ ନୁହଁନ୍ତି । ହେଲେ ସେ ତାଙ୍କ ଛାତ୍ରାବସ୍ଥାରୁ ଟାଣି ହୋଇ ଆସିଛନ୍ତି ଏହି ନାରୀମୂର୍ତ୍ତିଙ୍କ ଆଡ଼କୁ, 'ଝାନ୍‌ସୀ କି ରାଣୀ'ଙ୍କ ରାଣୀଭାବ ପ୍ରତି । ଆଜି ବନି ପ୍ରକୃତରେ ଗୋଟିଏ ଯଥାର୍ଥ ଏବଂ ସଫଳ ନେତ୍ରୀ ହେଲା ପରେ ସେ ନିଜକୁ ନିବେଦିତ କଲେ ସେହି ରାଣୀଙ୍କ ପାଖରେ । ଏଭଳି ନିଷ୍ଠାକୁ କ'ଣ ଏକପ୍ରକାର ବୀରତ୍ୱ କୁହାଯିବ ନାହିଁ, ଯାହା କ୍ୱଚିତ୍ କେଉଁ

ପୁରୁଷଠାରୁ ଆଶା କରାଯାଏ, ବିଶେଷତଃ ତା'ର କେଉଁ ବିଫଳତାର ପରେ ପରେ, ଏବଂ ତା'ର ପରିପ୍ରେକ୍ଷୀରେ ? କିନ୍ତୁ ଏଇଠି ଟିକିଏ ହସି ଦେବାକୁ ମନ ହେବ ହୁଏତ । ପଚାରିବାକୁ ଇଚ୍ଛା ହେବ—କିଓ, ଏଇ ବୀରପୁରୁଷଙ୍କର ପାଟି ନା ହାତଗୋଡ଼ ବାନ୍ଧି ହୋଇ ଯାଉଥିଲା ସେଦିନ ? 'ଝାନ୍ସୀ କୀ ରାଣୀ'ଙ୍କ ହାତ ଧରି ପକେଇଲେ ତାଙ୍କ ରାଣୀଭାବରେ ଗଦ୍‌ଗଦ ହୋଇ, ହେଲେ ତା'ର ଟିକିଏ ଆଗକୁ ଯାଇ ପାରିଲେ ନାହିଁ ? ଉଚିତ ପ୍ରଶ୍ନ । କିନ୍ତୁ ସେଥିକୁ ଏକ ଅପ୍ରିୟ ସତ୍ୟର ଉତ୍ତର ମିଳିପାରେ । ବନୀତା ବେହେରା ସୁନ୍ଦର ନୁହେଁ । ପୂର୍ଣ୍ଣଚ୍ଛେଦ । ସାବନା ଠେକା ମୁହଁ, ଉଞ୍ଚ କପାଳ, କଣ୍ଠା ଯୋମଣି, ଇତ୍ୟାଦି । ତେଣୁ ଅନବାବୁଙ୍କ ମନରେ କେଉଁ ଯୌନ ଏବଂ ଦୈହିକ କାମନା ଜାଗି ଉଠି ପାରିଲା ନାହିଁ ତାଙ୍କ 'ରାଣୀ'ଙ୍କ ପାଇଁ । ଏହା ମଧ୍ୟ କ'ଣ ସ୍ୱାଭାବିକ ନୁହେଁ ? ଏହି ସନ୍ଦର୍ଭରେ ବନୀତାଙ୍କର ଆତ୍ମପ୍ରେମୀ ଅନୁମାନ ଯେ ତରୁଣୀ ବନ ସୁନ୍ଦର ଦେଖା ଯାଉଥିବ ତା'ର ସେହି ରାଣୀଭାବ ନେଇ, ତେଣୁ ଅନ ମହାନ୍ତି ଅବଶ୍ୟ ଲୋଭଉଥିବ ତା' ପ୍ରତି, ହେଲେ ଛେଲୁଆଣ୍ଟା ଫେଲ୍ ମାରିଲା, ତାହା କେତେଦୂର ଗ୍ରହଣୀୟ, ତା' ଭାବିବା ବିଷୟ ।

ନାଇଁ ବନୀତା, ଭଲ ହେବ ଯଦି ତମେ ଏଇ ବାସ୍ତବ, ହେଲେ ନିର୍ମମ ସତ୍ୟକୁ ମାନିନିଅ ଯେ ଅନ ମହାନ୍ତିର ଯେଉଁ ଆକର୍ଷଣ ରହିଛି ତମ ପାଇଁ, ସେଥିରେ କେବଳ ତମ ରାଣୀଭାବ, ଦେବୀଭାବ, ସେହେତୁ ମାତୃଭାବ ହିଁ ଝଲି ଉଠୁଛି । ସେତିକ ତା'ର କାମ୍ୟ । କିନ୍ତୁ ତାହାହିଁ କ'ଣ ତମର ବରଣୀୟ ନୁହେଁ ? ଜନଗଣ ତମକୁ ଯେଉଁ ଆସନରେ ବସେଇ ଦାଣିଲେଣି, ଏପରିକି ଶ୍ରୋତାମଣ୍ଡଳୀରେ ବସିଥିବା ବୁଢ଼ାଟିଏ ତମକୁ ହାତଯୋଡ଼ି ନମସ୍କାର କରୁଛି, ଶକ୍ତିରୂପିଣୀ ମାଆଟିଏ ପାଇଲା ପରି, ଏଇ ମାତୃଭାବର ଅନୁଭବ କ'ଣ ତମକୁ ଯଥେଷ୍ଟ ଗର୍ବ ଓ ଗୌରବ ଆଣିଦେଉ ନାହିଁ ? ଏବଂ ସେହି ମାତୃଭାବରୁ ଯଦି କିଛି ଅଧିକ ବିଶେଷ ଦେଇ ପାରିଲା ତମର ଏଇ ଭକ୍ତଟିକୁ, ହେଲା ଏବେ ସେ ତମର ପ୍ରଣୟୀ ହୋଇ ପାରିଲା ନାହିଁ, ସେଥିରେ କ'ଣ ତମକୁ କିଛି ମିଳିଗଲା ପରି ମନେ ହେବ ନାହିଁ ?

କାହିଁକି ଭାବୁଛ, ନିଜକୁ ଅଣ୍ଟା କଲା ପରି, ଯେ, ବୁଢ଼ୀ-ହାନେ ତମେ ଦୁର୍ବଳ ହୋଇ ପଡ଼ିବ, ଆଉ ବୋଧହୁଏ ତମର

ଦୁର୍ବଳତା ଆସିବ, ତଥାପି ଟୋକା ଭଳି ଦିଶୁଥିବା ଏଇ ସିପାହୀ ପ୍ରତି ? ଛିଃ, ସେଭଳି ଭାବନା ତମକୁ ଶୋଭା ପାଏ ନାହିଁ । ହଁ, ଯୌନପ୍ରେମର ଆଉ ଗୋଟାଏ ଦିଗ ଅଛି । ସେକ୍ସ୍ । ସେଥିରୁ ତମେ ବଞ୍ଚିତ ହୋଇ ପଡ଼ିଲ ଏଇ ଚେରୁଆମାନଙ୍କ ଯୋଗୁଁ, ଏଭଳି ଭାବ ମଧ୍ୟ ଯେମିତି ନ ଆସୁ ତମ ମନରେ । ମାଓ-ଜେ-ଟୁଙ୍ଗ୍ଙ୍କ ଚତୁର୍ଥ ପତ୍ନୀ ଯାହାଙ୍କୁ ସେ ବିଶେଷ ଭଲ ପାଉଥିଲେ, ଏବଂ ଶେଷକୁ ଯାହାଙ୍କ ହାତକୁ ବିପ୍ଳବର ଷ୍ଟିରିଙ୍ଗ୍ ଆସିଗଲା, ସେ ଥରେ କହିଥିଲେ ଯେ ସେକ୍ସ୍ର ଶେଷକଥା ହେଉଛି ପାଓ୍ୱାର୍, କ୍ଷମତା, ଏବଂ ତାହାହିଁ ମଣିଷର ସବୁଠାରୁ ଉପଭୋଗ୍ୟ ଅନୁଭବ । ଏଇ କଥାଟାରେ କିଛି ସତ୍ୟତା ଅଛି ବୋଲି ମନେ ହେଉ ନାହିଁ ତମର ? ଆଉ ତମେ କ'ଣ ଭାବୁନାହଁ ଯେ ତମେ ନ ଚାହିଁଲେ ମଧ୍ୟ ସେଇ କ୍ଷମତା ଆପେ ଆପେ ଆସିଯିବ ତମ ହାତକୁ, ଏବଂ ତାହା ଭଲ ଲାଗିବ ତମକୁ ?

ତେଣୁ ହେ 'ଦୁର୍ବିନୀତା' ବନିତା, ପ୍ରସନ୍ନ ହୁଅ ତମର ଏଇ ଭକ୍ତଟି ଉପରେ । ଏବଂ ତାକୁ ତମ କୋଳକୁ ନେଇ ଯାଅ, ତମ ନିଜ ହିସାବରେ । ସେଥିରେ ତମ ଦି'ଜଣଙ୍କୁ ଭଲ ଲାଗିବ । ଏବଂ ତାହା କ'ଣ ଏକ ସାର୍ଥକତା କହିବାକୁ ଗଲେ ଅନନ୍ୟ ସାର୍ଥକତା ନୁହେଁ ଭଲପାଇବାର ?



# ଆଈଙ୍କ ହସ

ପ୍ରମୋଦ ଓ କୁମୁଦ ତଲଉପର ଦ'ଭାଇ । ଲୋକେ ଦେଖିଛନ୍ତି ଏବଂ ମନେ ରଖିଛନ୍ତି ଯେ କେବେ ଥରେ ସେମାନେ ତାଙ୍କ ଘରକୁ ବୁଲି ଯାଇଥିଲେ; ଏବଂ ଦେଖିଥିଲେ ଏଇ ପିଲା ଦ'ଟା କିଭଳି ମୁଷ୍ଟିଛଡ଼ା କଳି କରୁଛନ୍ତି ପରସ୍ପର ସହିତ । ଯଥା; ଥରେ କୁଆଡ଼େ ଦ'ଭାଇ ନବାକ୍ ହୋଇ ଠିଆହୋଇଥିଲେ ଖଟ ଉପରେ । ହେଲେ ପରସ୍ପରର କାନକୁ ମୁଠେଇ ଧରି । ସତେକି ସେମାନେ ଦୃଢ଼ପ୍ରତିଜ୍ଞ ଯେ ଅନନ୍ତକାଳ ପର୍ଯ୍ୟନ୍ତ ସେମାନେ ଏମିତି ଠିଆହୋଇ ରହିଥିବେ, ଲୋକେ ଆସନ୍ତୁ ଯାଆନ୍ତୁ, ଝଡ଼ ହେଉ, ବର୍ଷା ହେଉ ଅଥବା ଭୂମିକମ୍ପ ଯେ ପର୍ଯ୍ୟନ୍ତ ଦ୍ୱନ୍ଦ୍ୱର ଉଚିତ ସମାଧାନ ନହୋଇଛି ।

କିନ୍ତୁ ସେ ଦ'ଜଣଙ୍କ ଭିତରେ ଯେଉଁ ଅସାଧାରଣ ଆତ୍ମୀୟତା ଥିଲି, ସେ ବିଷୟରେ ଲୋକେ କିଛି ଜାଣିପାରୁ ନଥିବେ ବୋଲି ତାଙ୍କ ମାଆ ଦେବକୀ ମହାପାତ୍ର ସୁବିଧା ପାଇଲାକ୍ଷଣି ସେମାନଙ୍କୁ ତା'ର ତଥ୍ୟ ବୁଝେଇ ବସନ୍ତି । କୁହନ୍ତି ଯେ ହଜାରେ କଳିକଜିଆ ସତ୍ତ୍ୱେ ଜଣେ ଆଉ ଜଣକ ତରଫରୁ ଲଢ଼େଇ କରିବାରେ ମଧ୍ୟ ଆଗଭର ହୋଇଉଠେ । ଯଥା ଜଣେ ଯଦି ଗାଳିଖାଏ ତା' ବାପମାଆଙ୍କଠାରୁ (ପ୍ରକୃତପକ୍ଷେ ବାପାଙ୍କଠାରୁ, କାରଣ ମାଆ ସେ ଦିଗରେ ଅପାରଗ) ଆଉକ ଧାଇଁ ଆସେ ଭାଇ ତରଫରୁ ଓକିଲାତି କରିବା ଲାଗି । ଯଦିଓ ସେ କହିପାରନ୍ତି ନାହିଁ ଯେ ଓକିଲାତି କରିବାର ଢଙ୍ଗ ଅଲଗା ଦ'ଜଣଙ୍କ ଭିତରେ । ବଡ ପ୍ରମୋଦ, ଓରଫ୍ ପୁନୁ ଯୁକ୍ତି କରିପାରେ ନାହିଁ । ଖାଲି ଗମ୍ଭୀର ହୋଇ ଅନାଏ ବାପାଙ୍କ ଆଡ଼କୁ । ଏବଂ ମଝିରେ ମଝିରେ କହିଉଠେ ଭଗ୍ନ'ନାର ବିରାମ ବେଳେ—"ନାଇଁ ବାପା, ତା' ଦୋଷ ନୁହେଁ, ଆପଣ ଭୁଲ ବୁଝିଛନ୍ତି", 'ତା' ଭିତରେ ଆଉ କେତେ କଥା ଅଛି ଆପଣ ଜାଣନ୍ତି ନାହିଁ, ବୋଉକୁ ପଚାରନ୍ତୁ', ଇତ୍ୟାଦି । କିନ୍ତୁ ସାନ କୁନୁ ବାପାଙ୍କ କଥା ଉପରେ କଥା କହିବାକୁ ଡରେ ନାହିଁ । ଏବଂ କେଉଁ ସାକ୍ଷୀ ଦରକାର ପଡ଼େ ନାହିଁ ତା'ର । ସେ ତାତି ଉଠେ ଏବଂ ନାନାଦି ତଥ୍ୟ ବାଢ଼ିଦିଏ ବାପାଙ୍କ ସାମ୍ନାରେ, ନିର୍ଦ୍ଦୋଷ ଭାଇ ତରଫରୁ । ଏପରିକି ବେଳେବେଳେ ମନେହୁଏ ଯେ ସେ ବାପାଙ୍କୁ ପ୍ରକାରାନ୍ତରେ ଅନ୍ୟତମ ବୁଦ୍ଧିବିବେକ ବିବର୍ଜିତ ଅତ୍ୟାଚାରୀ ରଜା ବୋଲି କହୁଛି । କିନ୍ତୁ ଦେବକୀ ସେଇ ତାରତମ୍ୟ ଦେଖାଇ ପାରନ୍ତି ନାହିଁ ଦ'ଭାଇଙ୍କ ଭିତରେ ।

କେବଳ ଦୋହରେଇ ହୁଅନ୍ତି, ଏମୂତେଣୁ ଉଦାହରଣ ପୂର୍ବକ, ଯେ ବାହାରକୁ ଯାହା ମନେ ହେଉଥିଲେ ମଧ୍ୟ ଏକ ନିବିଡ଼ ଆତ୍ମୀୟତା ରହିଛି ଦୁ'ଜଣଙ୍କ ଭିତରେ । ଫଳରେ କଥାଟା ଜମେ ନାହିଁ, ଏବଂ ଶ୍ରୋତାଗଣ ଆଶ୍ଚର୍ଯ୍ୟ ହୁଅନ୍ତି ଯେ ମାଆଟା ଏତେ ବ୍ୟସ୍ତ ହୋଇ ଉଠୁଛି କାହିଁକି ଏଇ ସାମାନ୍ୟ ଜିନିଷଟାକୁ ବୁଝେଇବା ଲାଗି । କିଓ. ତଳ-ଉପର ଲାଗି ଯେତିକି କଳି କରନ୍ତି; ସେତିକି ଭାବ ମଧ୍ୟ ଥାଏ ତାଙ୍କ ଭିତରେ, ଏକଥା କିଏ ନଜାଣେ କି ? ତା'ଛଡ଼ା ଆମେ ଖାଲି ଟିକିଏ ରହସ୍ୟ କଲୁ, ତାଙ୍କ ଜାନ-ଟଣାଟଣି ଯୁଦ୍ଧକୁ ନେଇ, କିନ୍ତୁ ତମେ ସେଥିରେ ଏତେ ସିରିୟସ୍ ହୋଇ ଉଠୁଛ କାହିଁକି ?

ଯାହାହେଉ ସେମାନେ ବଡ଼ ହେଲେ ଏବଂ କ୍ରମଶଃ ସେମାନେ ପ୍ରକୃତରେ କେମିତି ପରସ୍ପରଠାରୁ ଦୂରେଇ ଯିବାକୁ ଚାହୁଁନାହାନ୍ତି, ଏହାହିଁ ବାହାର ଲୋକ-ମାନଙ୍କ ଆଖିରେ ପଡ଼ିଲା । କଳିକଜିଆ କଥା ଛାଡ଼, ସେମାନଙ୍କୁ କୌଣସି ବିଷୟ ନେଇ ପ୍ରବଳ ଯୁକ୍ତିତର୍କ କରିବାର ମଧ୍ୟ ଦେଖାଗଲା ନାହିଁ । ତେବେ ତା'ର କାରଣ ଆଉ ଯାହା ହେଉ ନହେଉ, ପୁଲୁ କୁନୁ ସାଙ୍ଗରେ ଲଢ଼ି ପାରୁଥିବ ବୋଲି ମନେ ହେଲା ନାହିଁ । କେମିତି ଲଢ଼ିବ, ଯଦି ସେ କେବଳ ମୁଣ୍ଡ ହଲେଇ, କିମ୍ବା 'ଆଇ ଡୋଣ୍ଟ୍ ଥିଙ୍କ୍ ସୋ', 'ତୁ ଭୁଲ୍ ବୁଝିଛୁ, ଫିସରଙ୍କ ବହି ପଢ଼୍' ଇତ୍ୟାଦି ଟିପ୍ପଣୀ ଖଣ୍ଡେ ଖଣ୍ଡେ ଛାଡ଼ି ଦେଇ କିଛି ଗୋଟାଏ ତଥ୍ୟମୂଳକ ଆଲୋଚନା କରିବାକୁ ନ ଚାହିଁଲା ? କିରେ, କଥା କ'ଣ ? ଛେଳିଆ ନା ଅଳସୁଆଟାଏ ମ ? ତୋର କ'ଣ ବୁଦ୍ଧି ନାହିଁ, ନା ତୁ ତା'ଠାରୁ କମ୍ ପାଠ ପଢ଼ିଛୁ ? ହେଲା ଏବେ ସେ କ୍ଲାସ୍‌ରେ ଫାଷ୍ଟ-ସେକେଣ୍ଡ୍ ହେଉଛି, ଡିବେଟ୍‌ରେ ନାଆଁ କରୁଛି, ଆଉ ଟେନିସ୍ ବି ଏମିତି ସର୍ଭ୍ କରୁଛି ଯେ କେହି ତା'ର ମୁକାବିଲା କରିପାରୁ ନାହାଁନ୍ତି । କିନ୍ତୁ ତୁ କୋଉ ଫେଲ୍ ହେଉଛୁ ? ଫେଲ୍ ନ ହେବା କଥା ଛଡ଼ା, ତୁ ବି କ'ଣ ମୋଟାମୋଟି ଭଲ ମାର୍କ୍ ରଖୁନାହୁଁ ? ତା' ଛଡ଼ା ସେ ମିଠା ଆଉ ବୁଦ୍ଧିଆ କବିତାଟିଏ ଲେଖି ପାରିବ କି ତୋ ପରି, ଯଦିଓ ତୁ ତାକୁ କାହାରିକୁ ଦେଖାଇବାକୁ ଚାହୁଁନା ? ହେଲେ ପୁଲୁ ଜାଣିଶୁଣି ଚୁପ୍ ରହିଯାଏ ! କାରଣ ତା'ର ବିଶ୍ୱାସ ଯେ ଯୁକ୍ତିତର୍କ କରି କିଛି ଲାଭ ନାହିଁ । କଥାଟା ଏତେ ସହଜ ନୁହେଁ । କିନ୍ତୁ କୁନୁ ଅଳ୍ପ ସମୟ ଭିତରେ ଏତେ କଥା ଟାଣିରେ କହି ପାରିବ, ଆଉ ସଜେଇଲା ପରି, ଯେ ମନେ ହେବ ଯେ ତାହାହିଁ ସତ । ମୁଁ ତା'ର ଠିକଣା ଉତ୍ତର ଦେଇ ପାରିବ ନାହିଁ । ତେଣୁ ଖାଲି କହିଦେଲେ ଗଲା ଯେ ମୁଁ ତୋ ସହିତ ଏକମତ ନୁହେଁ । ଦ୍ୟାଟ୍‌ସ୍ ଅଲ୍ । ଭୁଲିବା ଉଚିତ ନୁହେଁ ଯେ ପୃଥିବୀରେ ଅନେକ କଥା ଅଛି, ଯେଉଁଥିରେ ଆମେ ଦୁ'ଜଣ ପୂରାପୂରି ଏକମତ । ଯଥା ଆମେ ଏକମତ ଯେ ରସାଳ ରସଗୋଲାଠାରୁ ଉତ୍କୃଷ୍ଟ ମିଠା କିଛି ନାହିଁ ଭାରତବର୍ଷରେ । ଭାରତବର୍ଷ କାହିଁକି, ସାରା ସଂସାରରେ । ଆମେ ଏକମତ ଯେ ଆମର ମୂର୍ଖ ଏବଂ ଦରିଦ୍ର

ଜନତା ଗଣତନ୍ତ୍ର ପାଇଁ ଯୋଗ୍ୟ ହୋଇ ପାରି ନାହାନ୍ତି ଆଜିଯାଏଁ, ଏହା ସତ୍ୟ ହେଲେ ମଧ୍ୟ ଆମର ଗଣତନ୍ତ୍ର ଲୋଡ଼ା । ନ ହେଲେ ସେମାନେ କେବଳ ମୂର୍ଖ ଦରିଦ୍ର ହୋଇ ରହିବେ ନାହିଁ, ମଧ୍ୟ ମୂକ ମେଣ୍ଢା ପାଲଟିଯିବେ । ଏବଂ ଆମେ ଏକମତ ଯେ ଆମ ଆଈ ଗୋଟିଏ ବିଚିତ୍ର ପ୍ରାଣୀ । ଶଏଲ୍ ଫନ୍‌ମା !

ଆଈ ଚରିତ୍ରର ବୈଚିତ୍ର୍ୟ ଉପରେ କୁନୁ ଏକ-ଦୁଇ-ତିନି କରି ଗୋଟାଏ ବ୍ୟାଖ୍ୟା କହିଦେଇ ଭାଇ ଆଗରେ, ଏବଂ ପୁନୁ ମୁରୁକିହସା ଦେଇ ମୁଣ୍ଡ ଟୁଙ୍ଗାରେ । ମୋଟାମୋଟି କୁନୁ ଯାହା କହୁଛି ସତ । ଏକ, ଆଈଙ୍କ ତେଜ । ସେ ଅଜାଙ୍କ ଆଗରେ ଯେମିତି କଥା କହୁଛନ୍ତି, ସମାନ ଦୃଢ଼ତାର ସହ, ତାଙ୍କ ପୁଅଝିଅଙ୍କ ସାଙ୍ଗରେ ବି ସେମିତି ଭାବରେ କଥା କୁହନ୍ତି, ଏବଂ ଆମ ସାଙ୍ଗରେ ବି । ମାନେ ମୁଁ ଯାହା କହୁଛି ତାହା ତଥାକଥିତ ମାଇପିକଥା ନୁହେଁ, ଦାନକଥା ନୁହେଁ ତା'ର ମୂଲ୍ୟ ଦେବାକୁ ପଡ଼ିବ । ନଦେଲେ ବି ମୋର କ୍ଷତି ଯାଉଛି ! ମୁଁ କହୁଛି ତମର ଏଇସବୁ କଂପ୍ୟୁଟର୍, ମିଶାଣ ଫେଡ଼ାଣ ମେସିନ୍, ଫ୍ୟାକ୍ସ ମାକ୍ସ୍, ଏଗୁଡ଼ା ନିହାତି ବାଜେ ଜିନିଷ—ବୁଝିଲ ? ଏଥିରେ ମଣିଷର ବୁଦ୍ଧି ବୃତ୍ତି ନଷ୍ଟ ହୋଇଯାଏ ।···ଶୁଣ୍ ଦେଖି, ଡାକ୍ତରଙ୍କ ବହିପଢ଼ା ଥିଓରିକୁ ମାର୍ ଗୋଲି, କୋଲାଇଟିସ୍ ଫୋଲାଇଟିସ୍ କିଛି ହୋଇନାହିଁ ଆମ ପୁନୁର । ତା'ର ଖାଲି ଟିକିଏ ପେଟ ଗରମ । ସକାଳ ସନ୍ଧ୍ୟା ଚୂଡ଼ାକୁ ଭଲ ଭାବରେ ବତୁରେଇ ଦହି ଗୋଳେଇ ଖାଇବାକୁ ଦେଲୁ ତାକୁ ? ଦେଖିବୁ ସେ କେମିତି ଚେଙ୍ଗା ହୋଇ ଉଠିବ ।···ଆଧୁନିକ କବିତାକୁ ବୁଝିହୁଏ ନାହିଁ ବୋଲି କହୁଛି ସିନା, କିନ୍ତୁ ବୁଝିପାରିଥିଲେ ଆହୁରି ବିପଦ । କାହିଁକିନା ସେଗୁଡ଼ାକ ରୁଚ୍ଛା ମିଛ ବୋଲି ଲାଗିବ । (ଏହି ସମୟରେ ପୁନୁ ସନ୍ଦିଗ୍ଧ ଦୃଷ୍ଟିରେ ଅନାଏ କୁନୁ ଆଡ଼କୁ—ଏମାନେ କେହି ପଢ଼ିଛନ୍ତି କି ମୋ କବିତା ?)···ଇତ୍ୟାଦି । ଏଇ ତେଜରେ ଅଛି ଏକ ନିର୍ଭୀକ ସ୍ପଷ୍ଟବାଦିତା, ଏବଂ ଦୁର୍ଦ୍ଧର୍ଷ ଆତ୍ମବିଶ୍ୱାସ ତାଙ୍କ କଥା ଶୁଣି କିଏ ବଙ୍କା ହସ ହସୁ ବା ମୁଣ୍ଡ ଟୁଙ୍ଗାଉ, ସେଥିରେ କିଛି ଯାଏଆସେ ନାହିଁ ତାଙ୍କର । କିଏ ଯୁକ୍ତି କରି ବସିଲେ ସେ ସେଥିରେ କାନ ଦିଅନ୍ତି ନାହିଁ । ଖାଲି କୁହନ୍ତି, ସେଗୁଡ଼ା ବାଜେ କଥା, ମୁଁ ସେଥିରେ ବିଶ୍ୱାସ କରେ ନାହିଁ । ବାସ୍, ତା' ପରେ ଆଉ କିଛି କହିବାର ନାହିଁ ତାଙ୍କ ପିଢ଼ିର ଦରପାଠୁଆ ସ୍ତ୍ରୀମାନଙ୍କ ଭିତରେ କେତେଜଣ ଏମିତିକା ତେଜ ପାଇଛନ୍ତି କହିଲ ? ପୁନୁ ମୁଣ୍ଡ ଟୁଙ୍ଗାରେ । ଦ୍ୱିତୀୟରେ, ତାଙ୍କର ଆତ୍ମବିଭ୍ରମ । ଅବଶ୍ୟ ଉଣା ଅଧିକେ ସମସ୍ତେ ଗର୍ବ କରନ୍ତି ନିଜକୁ ତଥା ବାପମାଆ, ସ୍ୱାମୀ ସ୍ତ୍ରୀ, ଏବଂ ପୁଅଝିଅମାନଙ୍କୁ ନେଇ । କିନ୍ତୁ ଆମ ଆଈଙ୍କ ପରି ଦେଖିଛ ଆଉ କାହାକୁ ? ଏଣେ ଅଜାଙ୍କୁ କହିବେ ଯେ ଇଏ କୋଉ ନୂଆ କଥା ନୁହେଁ, ହେଲେ ବୁଢ଼ା ହେଲରୁ ତମେ ବେଶୀ ବୋକା ହୋଇ ଉଠୁଛ, ଆମ ବୋଉକୁ ହୁଣ୍ଡୀ ବୋଲି କହିବେ, ମାଉସୀଙ୍କୁ ଚଣ୍ଡୀ ବୋଲି କହିବେ, ଆଉ ଦାନୁ ମାମୁଙ୍କୁ ମୋଟୁ ବୋଲି ଚିଡ଼େଇବେ, ଏବଂ ରାଗିଲ ବେଳେ କ'ଣ

ବୋଲି କ'ଣ ସଂପିଠିବେ ସମସ୍ତଙ୍କୁ । କିନ୍ତୁ ଧୀର ଶାନ୍ତ ମୁହୂର୍ତ୍ତିରେ କୁହନ୍ତି, ବିଶେଷତଃ ଆମେ ଯେତେବେଳେ ପାଖରେ ଥାଉ, ସତେକି ଖାସ୍ ଆମକୁ ଶୁଣାଇବା ପାଇଁ କୁହାଯାଉଛି ଏକଥା, ଯେ ତାଙ୍କ ସ୍ୱାମୀ ଆଉ ପିଲାମାନଙ୍କ ପରି ଏତେ ଗୁଣର ମଣିଷ ଆଉ କେହି ନାହାନ୍ତି ଏଇ ପୃଥିବୀରେ । ଏବଂ ତାଙ୍କ ଜୀବନ ଧନ୍ୟ ହୋଇଛି ସେମାନଙ୍କୁ ପାଇ । ସେଇଠୁଁ ଆମକୁ ଚଡ଼ାନ୍ତି ।···ହୁଁ ! ମୋର କୋଉ ପିଲା ଏତେ ଅବାଗିଆ ହୋଇ ନ ଥିଲେ ତମ ଚଣ୍ଡାଲମାନଙ୍କ ପରି ! ସ୍ୱା' ପରି ମାଇମୁହାଁ ହୋଇ ନଥିଲେ କି ତା' ପରି ଛତରା । ସେଇଠୁଁ ଆମ ବୋଉ କେମିତି ପ୍ରତିବାଦ କରେ ମନେ ଅଛି ? କୁହେ, ନାଇଁ ବୋଉ, ପୁନୁକୁ ମାଇମୁହାଁ ବୋଲି କିଏ କହିବ ? ସେ ଟିକିଏ ବେଶୀ ଭାବି ବସେ କିନା, ସେଇଲାଗି ଭ୍ରମ ହୁଏ ତମମାନଙ୍କର । ଆଉ କୁନୁକୁ ଛତରା ବୋଲି କହୁଛ ? ସେ ପରା ଇଣ୍ଟର୍-ସ୍କୁଲ୍ ଡିବେଟ୍‌ରେ ଫାଷ୍ଟ୍ ହୋଇଛି ଏଥର ? ଏତିକିରେ ଆମ ଆଈ କେମିତି ହସି ଉଠନ୍ତି, ଆଉ ହସି ହସି ଗଡ଼ିଯା'ନ୍ତି ତା' ଦେଖିବା କଥା । କହନ୍ତି—ମୁଁ କହୁ ନ ଥିଲି ମୋ ଝିଅଟି ଗୋଟିଏ ହୁଣ୍ଡୀ ? କାଲେ, ମୁଁ କ'ଣ ଜାଣି ନାହିଁ ସେକଥା ? ଆଲୋ, ଇଏ ପରା ହେଉଛି ମୋ ହଜ୍‌ବ୍ୟାଣ୍ଡ୍ ନମ୍ବର ଦୁଇ, ଆଉ ସିଏ ହେଉଛି ମୋ ଲଭର୍, ମୁଁ ତାଙ୍କୁ ଯା'ଛୁ ତା' କହିବ ନାହିଁ ତ ଆଉ କହିବ କାହାକୁ ? ହସନ୍ତି ତ ହସନ୍ତି, ହସି ଚାଲିଥା'ନ୍ତି । ତୁଳନା ନାହିଁ ସେଇ ହସର !

ହଁ, ଅଉ ସବୁକଥା ଛାଡ଼ିଦିଅ, ତାଙ୍କ ସ୍ପେଶାଲ୍ ହସଖଣ୍ଡିକ ହେଉଛି ତାଙ୍କର ସବୁଠୁଁ ବଡ଼ ବୈଶିଷ୍ଟ୍ୟ । ନା କ'ଣ କହୁଛ ଭାଇ ? ମନେ ପକାଅ । ତାଙ୍କର ହସ ବେଶୀ ସମୟ ଯାଏଁ ଚାଲିଥାଏ, ଖାଲି ତାଙ୍କ ଓଠର କି ମୁହଁର ହୋଇ ରହେ ନାହିଁ, ତାଙ୍କ ସର୍ବାଙ୍ଗରେ ଚହଟିଯାଏ, ଆଉ ବୋହିଯାଏ, ବୋହି ବୋହି ଯାଏ ପାଖରେ ଥିବା ଆମ ସମସ୍ତଙ୍କୁ ପୂରାପୂରି ନ ଭିଜାଇଲେ ଛାଡ଼େ ନାହିଁ, ଏଇ ହିସାବରେ ଯେ କେବଳ ତାକୁ ଗ୍ରେଟ୍ କୁହାଯିବ ତା' ନୁହେଁ । ସେଇ ହସହିଁ ଆଈଙ୍କ ଜୀବନର ଶେଷ କଥା, ତାଙ୍କ ଜୀବନ ନାଟକର ଶେଷ ଦୃଶ୍ୟ ହୋଇଥିବ ପରା ବୋଲି ମନେ ହୁଏ । ତାଙ୍କ ବ୍ୟକ୍ତିତ୍ୱକୁ ଚହ୍ଲେଇ ଦିଏ । ଯେ ଶେଷକୁ ସେ ମହାଖୁସ୍ ! ଏଇ ଜୀବନଟା ବଢ଼ିଆ କାମ ଦେଇଛି ତାଙ୍କୁ । ଧନ୍ୟବାଦ ଭଗବାନ୍, ଧନ୍ୟବାଦ ମୋର ପୁଅଝିଅ ପରିବାର, ମୋର ହଜ୍‌ବ୍ୟାଣ୍ଡ୍ ନମ୍ବର ଓ୍ୱାନ୍, ହଜ୍‌ବ୍ୟାଣ୍ଡ୍ ନମ୍ବର ଟୂ···

ଦି'ଭାଇଯାକ ହସି ଉଠନ୍ତି । ସତରେ ଅଦ୍ଭୁତ ଆମ ଆଈଜଣକ । ଉଇ ଲଭ୍ ହର୍ ! ହେଲେ ହସିସାରିଲା ପରେ ପୁନୁ ଟିକିଏ ଭାବିଲା ପରି ହୁଏ । ତା'ର ମନେ ହୁଏ ଯେ ବ୍ୟାପାରଟା ଏତେ ସରଳ ନୁହେଁ । କାରଣ ଯାହା ଅଦ୍ଭୁତ କି ଅସାଧାରଣ, ତା' ପଛରେ ନିଶ୍ଚୟ ଗୋଟାଏ ରହସ୍ୟ ଥିବ ।

କାଳକ୍ରମେ ଏଭଳି ଦିନ ଅସିଲା ଯେ ପୁଲୁ ଓ କୁନୁ ସର୍ବଦା ଏକାଠି, ଅନ୍ତତଃ ପାଖାପାଖି ଗୋଟିଏ ସହରରେ ରହିବାକୁ ଏକ କଠୋର ଆବଶ୍ୟକତା ମନେ କଲେ । କାରଣ ମାଆ ଦେବକୀ ସେମାନଙ୍କୁ ଛାଡ଼ି ଚାଲିଗଲେ ହଠାତ୍ । ପ୍ରଥମ ଏବଂ ଶେଷ ହାର୍ଟ ଆଟାକ୍ । ଡାକ୍ତର କହିଲେ ଯେ ଏମିତି ଘଟିବା ଆଦୌ ଅସ୍ୱାଭାବିକ ନୁହେଁ ଆଜିର ଦୁନିଆଁ ରେ, ଯେଉଁଠି ନାନାଧରଣର ଟେନ୍‌ସନ୍ ଲାଗି ରହିଛି ସବୁବେଳେ । କିନ୍ତୁ କଥାଟା ଭାଇ ଦି'ଜଣଙ୍କ ମନକୁ ପାଇଲା ନାହିଁ । ବୋଉର ଆମର କୋଉ ଟେନ୍‌ସନ୍ ଥିଲା ? ରାଗିଲେ ବି ସେ କାହା ଉପରେ ରାଗି ପାରେ ନାହିଁ ଭଲ ଭାବରେ । ମଧ୍ୟ କାନ୍ଦି ପକାଏ ବେଳେ ବେଳେ । ଏବଂ ପରେ ଅକାରଣରେ କୁହେ ସେଇ ଲୋକଟାକୁ ଯାହା ଉପରେ ସେ ରାଗିଥାଏ, ସେ ବାପା ହୁଅନ୍ତୁ, ଆମେ ହେଉ, କି ଚାକରଟୋକା ଯେ ସେମିତି ମିନ୍ କରି ନଥିଲି । ଆମକୁ ତ ଏମିତି ଗେହ୍ଲା କରି ବସେ ଯେ ମଣିଷକୁ ଲାଜ ମାଡ଼ିବା କଥା । ନା କ'ଣ କହୁଚ ଭାଇ ? —କୁନୁ ପଚାରେ ପୁଲୁକୁ, ଏବଂ ପୁଲୁ ମୁଣ୍ଡ ଟୁଙ୍ଗାରେ । କିନ୍ତୁ ମନେ ମନେ କୁହେ ଯେ ତାକୁ ଯେତେବେଳେ ଗେହ୍ଲା କରେ, ସେଇଠୁଁ ସେ ତା ମୁହଁକୁ ଏମିତି ଚାହେଁ, ବୁଝିହୁଏ ନାହିଁ । ସତେକି ସେ ତାକୁ ଆହୁରି ଅଧିକ ଆଶ୍ୱାସନା ଦେବାକୁ ଚାହୁଁଛି । କିମ୍ବା ସ୍ୱୀକୃତି ଲୋଡ଼ୁଛି ତା'ଠାରୁ । ଛାଡ଼, ବୋଉ ଚାଲିଗଲା । ସଂସାରରେ ଆଉ କିଏ ଅଛି, ନା ହେବ ବୋଉ ପରି ? ଏବଂ ବୋଉ ମଲାପରେ ବାପା ଶଶାଙ୍କ ମହାପାତ୍ର ଏତେ ଅଧିକ ଚୂପ୍‌ଚାପ୍ ହୋଇଯିବେ ବୋଲି କିଏ ଜାଣିଥିଲା ? ଖାଲି ସେତିକି ନୁହେଁ, ସମସ୍ତ ପୁରିଲା ପୂର୍ବରୁ ସେ ତାଙ୍କ ଇନ୍‌ସିଓରାନସ୍ ଚାକିରିରୁ ରିଟାୟାର୍ କରି ପୁନାରେ କେଉଁ 'ଦିବ୍ୟଜ୍ୟୋତି' ଆଶ୍ରମରେ ରହିବାକୁ ସ୍ଥିର କଲେ । କହିଲେ ମୋ ପୁଅ ଦି'ଜଣ ବଡ଼ ହେଲେଣି, ଏବଂ କୋଉ ଝିଅ ନାହିଁ ଯେ ତା' ବାହାଘର କଥା ଭାବିବି । ଆଉ ଏମାନେ ଦିହିଁଙ୍କ ଦିହେଁ ବୁଢ଼ିଆ ! ସାନଟାକୁ ତ ବ୍ରିଲିୟାଣ୍ଟ୍ କୁହାଯିବ । ତା'ହେଲେ ମୁଁ କାହିଁକି ଚିନ୍ତା କରିବି ତାଙ୍କ ବିଷୟରେ ? ଅବଶ୍ୟ ଏମାନେ ତାଙ୍କ ନିଜ ଗୋଡ଼ରେ ଠିଆହୋଇ ନାହାନ୍ତି ଆଜିଯାଏଁ । କିନ୍ତୁ ମୁଁ ତାଙ୍କ ପାଇଁ ଯଥେଷ୍ଟ ଅର୍ଥର ବ୍ୟବସ୍ଥା କରି ଦେଇଛି । ସେମାନେ ରହନ୍ତୁ ଯେଉଁଠି ରହିବେ, ତାଙ୍କ ଉଚ୍ଚଶିକ୍ଷାର ମୁଣ୍ଡି ମରିବା ଯାଏଁ ।

ଏହି ପରିସ୍ଥିତିରେ ପୁଲୁ ଓ କୁନୁ ଦିଲ୍ଲୀରେ ଅଛନ୍ତି ଏବେଯାଏଁ । କିନ୍ତୁ ଏକା ଜାଗାରେ ରହିବା ସମ୍ଭବ ହେଲା ନାହିଁ । କୁନୁର ମ୍ୟାନେଜ୍‌ମେଣ୍ଟ କୋର୍ସ ସରି-ଗଲାଣି, ପୁଲୁ ବି ଏମ୍. ଏ. ପାସ୍ କରିଗଲାଣି । ଦିହେଁ ଦିଲ୍ଲୀରେ ଅଛନ୍ତି, କେବଳ ଭବିଷ୍ୟତର ମୂଳଦୁଆ ପକେଇବା ପାଇଁ । ସେହେତୁ ହୁଏତ ଏକାଠି ରହି ପାରି-ଥାଆନ୍ତେ ସେମାନେ । କିନ୍ତୁ କୁନୁ କହିଲା ଯେ ମୋର ବହୁତ ଇଣ୍ଟର-ଆକ୍‌ସନ ଦରକାର ବିଭିନ୍ନ ମ୍ୟାନେଜରମାନଙ୍କ ସାଙ୍ଗରେ, ଯେମିତିକି ମୁଁ ଗୋଟାଏ ଭଲ କମ୍ପାନୀରେ ପଶି ପାରିବି । ତେଣୁ ମୋତେ ଗୋଟାଏ 'ଠିକଣା' ଜାଗାରେ ରହିବାକୁ

ପଡ଼ିବ । ବୁଝୁଁଛ ନା ମୁଁ କ'ଣ କହୁଛି ? ପୁଲୁ ମୁଣ୍ଡ ଝୁଙ୍କାଇଲା । କେଉଁ କାରଣରୁ ତା'ର ବି ଅଲଗା ରହିବା ଦରକାର । ସେକଥା ସେ କହିପାରିଲା ନାହିଁ । ଯେହେତୁ ସେମିତି କିଛି କାରଣ ନଥିଲା । ତାଲି କହିଲା, ମୁଁ ବି ଅଲଗା ରହିବାକୁ ଚାହେଁ ମୋର ରିସର୍ଚ୍ଚ ପାଇଁ । ଇତିହାସରେ ସେକେଣ୍ଡ କ୍ଲାସ୍ ପାଇଥିବା ଝିଅର ରିସର୍ଚ୍ଚ ପାଇଁ ଡକ୍ଟରେଟ୍ ପାଇବା ଉଚିତ, ନହେଲେ ତାକୁ ଲେକ୍‌ଚରର୍‌ର ଚାକିରି ମିଳିବ ନାହିଁ । କିନ୍ତୁ ସେ କେଉଁ ସବ୍‌ଜେକ୍ଟ ଉପରେ ରିସର୍ଚ୍ଚ କରିବ, ଏବଂ ଅଲଗା ରହିଲେ କ'ଣ ଲାଭ ହେବ ସେ ବାବଦରେ ସେ ବିଷୟରେ କିଲୁ କିଛି ପଚାରିଲା ନାହିଁ, କି ପୁଲୁ ନିଜ ଆଡ଼ୁ କିଛି କହିଲା ନାହିଁ । କିନ୍ତୁ ଦୁହେଁ ପ୍ରାୟ ସମସ୍ୱରରେ ପ୍ରସ୍ତାବ କଲେ ଯେ ସେମାନେ ଅନ୍ତତଃ ହପ୍ତାକୁ ଥରେ ଦେଖା କରିବେ ପରସ୍ପର ସହିତ । ଏକାଠି ବସି ଖାଇବେ କେଉଁଠି ହେଲେ, ଓ ତା'ପରେ ଫେରିଯିବେ ନିଜ ନିଜ ଡେରାକୁ । ସ୍ଥିର ହେଲା ଯେ ସେହି ଦିନଟି ଶୁକ୍ରବାର ଉପରବେଳା ହେଉ···ଫାଇନ୍ !

ଦୁହେଁ ଆନନ୍ଦରେ କୁଣ୍ଢାକୁଣ୍ଢି ହେଲେ । ଯାହାହେଉ ଏଭଳି ଏକ ବ୍ୟବସ୍ଥା କରାଗଲା ଯାହା ତାଙ୍କୁ ଏକାଠି କରି ରଖିବ, ନିୟମିତ ପୂର୍ବକ । ଏକାଠି ହେବାର ଅବଧି ଯେତେ ସାମାନ୍ୟ ହେଲେ ମଧ୍ୟ ।

ଏବଂ ହପ୍ତାକ ଉତ୍ତାରୁ ଦେଖାହେଲା ମାତ୍ରେ ସେମାନେ ପରସ୍ପରକୁ 'ହାଏ !' କହି କୁଣ୍ଢାକୁଣ୍ଢି ହୁଅନ୍ତି । ଏଇ ରୁଟିନ୍‌ରେ ମଧ୍ୟ କେବେହେଲେ କିଛି ପରିବର୍ତ୍ତନ ହୁଏ ନାହିଁ ।

ଆଜି ମଧ୍ୟ ସେଇଆ ହେଲା । ଜନାକୀର୍ଣ୍ଣ କାର୍ଲୋଲ୍‌ବାଗ୍ ବଜାରର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ । କାରଣ ତା'ପରେ କେଉଁ 'ଦେଶୀ' ଭୋଜନାଳୟରେ ସୁପ୍ରସିଦ୍ଧ କୁଲ୍‌ଫି ଖାଇବାର ଯୋଜନା ରହିଛି । କିନ୍ତୁ ସେଇଥିପାଇଁ ଯେ କୋଳାକୋଳିଟା ଉଚିତରୁ ଅଧିକ ସଂକ୍ଷିପ୍ତ ବୋଲି ମନେହେଲା, କେବଳ ତା' ନୁହେଁ । ଅନ୍ୟ କାରଣ ହେଉଛି ଯେ ପୁଲୁର ଗୋଟାଏ ଦୁଃସମ୍ବାଦ ଦେବାକୁ ଥିଲା । ସେ ପକେଟ୍‌ରୁ ଖଣ୍ଡେ ଚିଠି କାଢ଼ି ଆଣି କିଲୁ ହାତକୁ ବଢ଼େଇଦେଲା, ଏବଂ କହିଲା—

"ଆଈ ଶକ୍ତ ବେମାର, ମରିବେ କି ବଞ୍ଚିବେ । ବାପା ଚିଠି ଦେଇଛନ୍ତି ଏବଂ ଲେଖିଛନ୍ତି ଯେ ଆଈ ଖୋଜୁଛନ୍ତି ଆମ ଦୁ'ଜଣଙ୍କୁ । ଦୁ'ଜଣଯାକ ଯାଇ ନପାରିଲେ ଅନ୍ତତଃ ଜଣକର ଯିବା ଉଚିତ ।"

କୁଲ୍‌ଫିର ଯୋଜନା ସ୍ଥଗିତ ରହିଲା । ଦୁହେଁ ଅବିଳମ୍ବେ ନିକଟତମ କେଉଁ ଗୋଟାଏ ରେସ୍ତୋରାଁରେ ପଶି ଯାଇ କପେ କପେ ଚା' ଧରି ବସିପଡ଼ିଲେ । ଏବଂ ଅନେଇଲେ ପରସ୍ପରର ମୁହଁକୁ । ଶେଷକୁ ଆଈଙ୍କର ବି ପାଳି ଆସିଗଲା ! ଅନେକ ଦିନ ହେଲା ଦେଖା ହୋଇ ନାହିଁ ତାଙ୍କ ସାଙ୍ଗରେ, କାରଣ ସେ ଅଛନ୍ତି

ଓଡ଼ିଶାର ପାନପଡ଼ା ନାମକ ଏକ ସୁଦୂର ମଫସଲ ଗାଆଁରେ । ଏବଂ ବୋଉ ଚାଲିଗଲା ପରେ ଦି'ଭାଇ ଛୁଟିରେ ପୁନାରେ ଥିବା ବାପାଙ୍କ ପାଖକୁ ନ ଯାଇ ଓଡ଼ିଶାକୁ ଯିବେ କାହିଁକି ? ହଁ, ସେଇ ଏକା ରହିଯାଇଛନ୍ତି ସେ ପିଢ଼ିର ନିଜ ଲୋକମାନଙ୍କ ଭିତରେ । ଜେଜେମା ଜେଜେବାପା ତ ଗଲେଣି କେବେଠୁଁ । ଅଜା ମଧ୍ୟ ଚାଲିଗଲେଣି, ବୋଉ ଯିବାର ଦି'ବର୍ଷ ଆଗରୁ । ଖାଲି ଏଇ ଜଣକ ଥିଲେ । ଆମର ଆଈ । ଆମର ଶ୍ରେଷ୍ଠ ଆଈ, ଯେ ପୃଥିବୀର ଆଉ କେଉଁ ଆଈ ପରି ନୁହଁନ୍ତି । ସେ ବି କ'ଣ ଚାଲିଯିବେ ? କାହିଁକି ? ଅନ୍ୟାୟ, ଅନୁଚିତ...

ଜୀବନ ମରଣରେ ଏହିପ୍ରକାର ଅବାନ୍ତର ପ୍ରଶ୍ନ ଦିହିଁଙ୍କ ମନରେ ସୃଷ୍ଟି ହେଉଥାଏ, ଏବଂ ସେମାନେ ଚୁପ୍‌ଚାପ୍ ହୋଇ ବସି ରହିଥା'ନ୍ତି ପରସ୍ପରର ମୁହଁକୁ ଅନେଇ । ଚା' ଥଣ୍ଡା ହୋଇଯାଉଥାଏ ।

ଯାହାହେଉ ନସ୍ତାଟାକୁ ସମ୍ଭାଳି ନେଇ ସାରିଲା ପରେ କଥା ଉଠିଲା ଯେ କିଏ ଯିବ ଏଇକ୍ଷଣି ଆଈଙ୍କ ପାଖକୁ । ଅବଶ୍ୟ ନୀତି ଦୃଷ୍ଟିରୁ ଦିହିଁଙ୍କର ଯିବା ଉଚିତ । ତିକ୍ତ-ମଧୁର ହସଟିଏ ଦେଖା ଦେଲା ଦିହିଁଙ୍କ ଓଠରେ, ଯାହାର ଅର୍ଥ ଯେ ଜଣେ ସେକେଣ୍ଡ୍ ହନିମୁନ୍ ହେଲେ ଆଉ ଜଣକ ଲଭର୍ । ତେଣୁ ଜଣେ କେହି ଓହରିଯିବାର ପ୍ରଶ୍ନ ଉଠୁଛି କେଉଁଠୁ ? କିନ୍ତୁ ଭାବନାର ସେଇ ଖିଅକୁ ଧରି କୁନୁ ଏଭଳି ଗୋଟାଏ ଆବ୍‌ସର୍ଡ଼୍ ମନ୍ତବ୍ୟ କରିବ ବୋଲି କିଏ ଜାଣିଥିଲା ? କହିଲା—

"ଆଈ ଆଉ ହସୁ ନଥିବେ । ହସିବେ ନାହିଁ ।"

ମୁଣ୍ଡ ଝୁଙ୍କାଇବା ପରିବର୍ତ୍ତେ ପୁନୁ ସାନଭାଇର ମୁହଁକୁ ଚାହିଁଲା କଟମଟ ହୋଇ । ନିହାତି ସତକଥା ଟାଏ କହିଲୁ । କିନ୍ତୁ କାହିଁକି କହିଲୁ ଏମିତିକା କଥା ? ଏତେ ବ୍ରିଲିୟାଣ୍ଟ୍ ହୋଇ ତୁ ବେଳେ ବେଳେ ଏମିତି ନିର୍ବୁଦ୍ଧିଆ କଥା କଲୁ କାହିଁକି ? ନିଷ୍ଠୁର ସତକଥାଗୁଡ଼ାକୁ କିଏ କହିପକାଏ ଭୁସ୍‌କିନି, ସାନପିଲା ଅବା ବୋକା ମଣିଷଙ୍କ ଛଡ଼ା ? ହଁ, ଆଈଙ୍କ ହସଖଣ୍ଡିକ ବି ବୁଡ଼ିଗଲା ଆମ ପାଇଁ । ଦୁର୍ଭାଗ୍ୟ !

ଦୁହିଁଙ୍କର ଯିବା ଉଚିତ ହେଲେ ମଧ୍ୟ କ'ଣ ଲେଖା ହୋଇଛି ଯେ ଦିହେଁ ଏକାଠି ପହୁଞ୍ଚିବେ ସେଠି ? ତେଣୁ ସ୍ଥିର ହେଲା ଯେ ଆଗେ କୁନୁ ଯିବ ଆଈଙ୍କ ପାଖକୁ, ଏବଂ ପୁନୁ ଯିବ କିଛି ଦିନ ପରେ । ଏଇକ୍ଷଣି ପୁନୁର ଗୋଟାଏ ଜରୁରୀ ଓ ବିଶେଷ କାମ ଅଛି କି ନା, ସେଇଲାଗି । କାମଟା କ'ଣ ବୋଲି ପୁନୁ କହିଲା ନାହିଁ । କହିବାର କୌଣସି ଆବଶ୍ୟକତା ନଥିଲା । ନୀଳିମା କୁଲ୍‌କର୍ଣ୍ଣୀ ନାମକ ଜଣେ ନାଗ୍ପୁରିଆ ବନ୍ଧୁ ଓ ତରୁଣୀ ଅଧ୍ୟାପିକା ବମ୍ବେରୁ ଫେରୁଛି ଦି'ଦିନ ପରେ, ଏବଂ ସେ ହେଉଛି ତା' ଭବିଷ୍ୟତ ଯୋଜନାର ଏକ ବିଶେଷ ଅଙ୍ଗ । ଫେରିଲା ପରେ

ତା'ର ପ୍ରଥମେ ଦେଖା ହେବା ଦରକାର ପ୍ରମୋଦ ମହାପାତ୍ର ସାଙ୍ଗରେ । ନୂଆଦିଲ୍ଲୀ ରେଲ୍‌ୱେ ଷ୍ଟେସନ୍‌ରେ । ଏବଂ ସେହି ଅପେକ୍ଷିତ ପୁନର୍ମିଳନର ଆନନ୍ଦକୁ ବାଧିତ କରିଦେବା ଉଚିତ ନୁହେଁ, ଆଈଙ୍କ ଲାଗି ।

( ୨ )

ଆଈ ସୁନ୍ଦରମଣି ସାହୁ, ସ୍ୱର୍ଗତ କାନୁନ୍‌ଗୋ ବେଣୀମାଧବ ସାହୁଙ୍କ ସ୍ତ୍ରୀ, ତଥା ଦେବକୀ, ଯୂଥିକା ଓ ବୀଥିକା ନାମକ ତିନୋଟି କନ୍ୟା ଏବଂ ଦିନେଶ ନାମକ ପୁଅର ମାଆ, ରୋଗଶଯ୍ୟାରେ ପଡ଼ି ରହିଥିଲେ ମଧ୍ୟ ମୋଟେ ହସୁ ନଥିଲେ ବୋଲି କହିଲେ ଭୁଲ୍ ହେବ । ଅବଶ୍ୟ ହସୁଥିଲେ । ତାଙ୍କ ବେମାରି କଥା ଶୁଣି ଧାଇଁ ଆସିଥିବା ଝିଅଜ୍ୱାଇଁମାନଙ୍କ ମୁହଁ ଦେଖିଲାକ୍ଷଣି ତାଙ୍କ ପ୍ରସାରିତ ଓଠ ଅବଶ୍ୟ ଜଣାଇ ଦେଉଥିଲା ଯେ ଯାହାହେଉ ଆସି ପହଞ୍ଚିଗଲ, ଧନ୍ୟବାଦ, ଅନେକ ଧନ୍ୟବାଦ । ନାତିନାତୁଣୀମାନେ ବେଳେବେଳେ ତାଙ୍କୁ ସାନ୍ତ୍ୱନା ଦେବାକୁ ଯାଇ ତାଙ୍କ କପାଳ ଆଉଁସି ଦିଅନ୍ତି, ଏବଂ ତାଙ୍କୁ ନାନାଦି ଅବାନ୍ତର ପ୍ରଶ୍ନ ପଚାରନ୍ତି, ଯଥା—ଆଈ, ତମର କ'ଣ ହୋଇଛି ? ତମେ କେବେ ବିଛଣାରୁ ଉଠିବ ? ପାଣି ପିଇବ ? ଦୁଧ ପିଇବ ? ଚକୋଲେଟ୍ ଖାଇବ ? ଚକୋଲେଟ୍ କଥା ପଡ଼ିଲାରୁ ଆଉ ଜଣେ ହସିଦିଏ । ନୁହେ, ଆରେ ଆଈଙ୍କର ଦାନ୍ତ ନାହିଁ ପରା, ତାଙ୍କୁ ଚକୋଲେଟ୍ ଯାଚୁଛୁ କେମିତି ? ସେ କ'ଣ ତାକୁ କୁଟି କରି ଖାଇବେ ? ଏହିପ୍ରକାର ପ୍ରଶ୍ନୋତ୍ତର ଶୁଣିଲେ ତାଙ୍କ ସ୍ମିତହାସ ସୁସ୍ପଷ୍ଟ ହୋଇ ଉଠେ, ଏବଂ ଲାଗି ରହେ କିଛି ସମୟ । କିନ୍ତୁ ମାନିବାକୁ ପଡ଼ିବ ଯେ ପୂର୍ବର ସେଇ ଉଚ୍ଛୁଳା ନାହିଁନଥିବା ହସ କଥା ଛାଡ଼, ଅଧିକାଂଶ ସମୟ ସେ ବିଷଣ୍ଣ ଦିଶୁଥିଲେ । ଦେହର ଯନ୍ତ୍ରଣା ନୁହେଁ, କାରଣ ତା' ହେଲେ ତାଙ୍କ କପାଳ କୁଞ୍ଚେଇ ହୋଇଯାଉ ଥାଆନ୍ତା, ଆଖି ବୁଜି ହୋଇଯାଉ ଥାଆନ୍ତା, ଏବଂ ଓଠର ଗାର ବିକୃତ ହୋଇ ଉଠୁଥା'ନ୍ତା । ନା, ମନେ ହେଉଛି ସେ କେଉଁ ଗଭୀର ଦୁଃଖରେ ଅଭିଭୂତ ହୋଇ ପଡ଼ିଛନ୍ତି । ଏକ ଏକାନ୍ତ ଏବଂ ନିବିଡ଼ ଦୁଃଖ, ଯାହାର ପ୍ରତିକାର ପାଇଁ କେହି କିଛି କରିପାରିବେ ନାହିଁ । ମରି ନ ଯାଇ ବଞ୍ଚିଗଲେ ମଧ୍ୟ ଉଦ୍ଧାର ମିଳିବ ନାହିଁ ସେଇ ଦୁଃଖରୁ ।

...ମୁଁ ବଞ୍ଚିଯିବି ହୁଏତ । ଡାକ୍ତର କହୁଥିଲେ କିଡ୍‌ନି ପୁଣି ସକ୍ରିୟ ହୋଇ ଉଠିପାରେ । କିନ୍ତୁ ମୁଁ ବଞ୍ଚିଲେ କ'ଣ ଦେବା ଫେରି ଆସିବ ମୋ ପାଖକୁ ? ଆଉ ମୁଁ ତାକୁ ପୁଣି ଥରେ କହିବାର ସୁବିଧା ପାଇବି ଯେ ରୁ'ଚା ନାହାତି ହୁଣ୍ଡୀ, କେମିତି ଭାବିଲୁ ଯେ ମୁଁ ଯୂଥିକା ବିତୁନି କ ଆଉ କାହାକୁ ତୋ'ଠୁ ବେଶୀ ଭଲପାଏ ? ସେଇଠୁ ତାକୁ ଟାଣି ଆଣିଥାଆନ୍ତି ମୋ ଛାତିକୁ, ନରେଲା ବନ୍ଦ କମରା ଭିତରେ, ଆଉ ସେ ଦୁଦୁଖିଆ ଛୋଟ ପିଲାଟିଏ ପରି ତା' ମୁଣ୍ଡ ଗୁଞ୍ଜି ଦିଅନ୍ତା ମୋ ଦେହରେ, ଆଉ କାନ୍ଦନ୍ତା ସୁଁ ସୁଁ ହୋଇ, ସଡ଼ସଡ଼ ହୋଇ ।

ସବୁଥର ଏମିତି ହୁଏ । କିନ୍ତୁ ଗତଥର କାହିଁକି କେଜାଣି ମୁଁ ସେତିକି କରି ପାରିଲି ନାହିଁ ଠିକଣା ସମୟରେ । ଆଉ ସେ ଫେରିଗଲା ଦିଲ୍ଲୀକୁ , ତା'ପରଦିନ ସକାଳେ । ମୁଁ ତା' ହାତକୁ ମୁଠେଇ ଧରିଥିଲି ସତ, ତାକୁ ବୁଝାଉଥିଏ ହୋଇ ଥା' ବୋଲି କହୁଥିଲି, କିନ୍ତୁ ମାନଭଞ୍ଜନଟା ବାକି ରହିଗଲା । ଭାବିଥିଲି ତା' ସାଙ୍ଗରେ ଦେଖାହେବ ପୁଣି ଦି'ତିନି ମାସ ପରେ, ଶଶାଙ୍କ କହୁଥିଲା ସେ ଆସିବ ଇଆଡ଼େ କୋଉ କେସ୍‌ରେ । କିନ୍ତୁ ତା'ଆଗରୁ ସେ ଚାଲିଗଲା । ହୃଣ୍ଡୀ ଚାଲିଗଲା ମୋତେ ଠକେଇ ଦେଇ । ଟିକିଏ ହେଲେ ବୁଝିଲା ନାହିଁ ତା' ବୋଉକୁ ।

ମରିଗଲେ ଭଲ ହେବ ପରା ! ତା'ହେଲେ ସେପୁରରେ ଦେଖା ହୁଅନ୍ତା ତା' ସାଙ୍ଗରେ, ଆଉ ମୁଁ ତାକୁ ପୁଣି ଥରେ ମୋ ଛାତିକୁ ଟାଣି ଆଣି ବୁଝେଇଦେଇ ପାରନ୍ତି ଯେ ସେ ଗୋଟାଏ କପଟ ହୃଣ୍ଡୀ···

କିନ୍ତୁ ରୋଗଶଯ୍ୟାରେ ଏବଂ ସେଇ ପରିସ୍ଥିତିରେ ମଧ୍ୟ କେହିହେଲେ ତାଙ୍କୁ କାନ୍ଦିବାର ଦେଖିନାହାନ୍ତି । ସତେକି ଦୁଃଖିନୀ ହେଲେ ମଧ୍ୟ ସେ ଏତେ ହୀନମାନ ହୋଇଯାଇନାହାନ୍ତି ଏଇଛଣି, ଯେ ସେ ଏମିତି ଗୋଟାଏ ଖରାପ କାମ କରିବେ, ଯାହା ସେ କେବେହେଲେ କରି ନାହାନ୍ତି ତାଙ୍କ ଜୀବନରେ । ଆଖିରୁ ଲୁହ ଗଡ଼େଇବେ ଆଉ କାହା ଆଗରେ ।

···କିନ୍ତୁ ଗତଥର ସେ ଟିକିଏ ବେଶି ଭଡ଼ଭଡ଼ ହେଲା ନାହିଁ କି ? କୋଉ ପିଲାଦିନେ ତାକୁ ହଂସୁକୁଟିଆ ବୋଲି କହୁଥିଲି, ତା'ର ଉଲୁଗୁଣା ଦେଲା । ଯୁଇର ବାହାଘରରେ ମୁଁ କୋଉ ସୁଟ୍‌କେଶ ସଜାଡ଼ୁଥିଲି ତା'ପାଇଁ, ଆଉ କୁଆଡେ ସେ ଆସି ପହୁଞ୍ଚିଲାରୁ ମୁଁ ତାକୁ ବନ୍ଦ କରିଦେଲି, କାହିଁକିନା ମୁଁ ଚାହୁଁ ନଥିଲି ସେ ତାକୁ ଦେଖିବ ବୋଲି । ବରୁନର ବାହାଘର ରିସେପ୍‌ସନରେ ମୁଁ କୁଆଡ଼େ ବଡ଼ବଡ଼ିଆ ଗେଷ୍ଟମାନଙ୍କୁ ଆଗେ ନେଇ ଯାଉଥିଲି ଯୁଇ ଆଉ ତା' ବିଲାତ ଫେରନ୍ତା ଏଫ୍. ଆର୍. ସି. ଏସ୍. ଡାକ୍ତର ସ୍ୱାମୀ ହାଙ୍ଗରେ ଚହ୍ଲା କରିଦେବା ପାଇଁ, ଆଉ ଭୁଲି ଯାଇଥିଲି ଯେ ମୋ ବଡ଼ଝିଅ ବି ଅନେକ-ଦୂରରୁ ଆସିଛି ତା' ଫାମିଲିକୁ ନେଇ । ବେଶିଗୁଡ଼ାଏ କହିହେଲା, ଯାହା ନିହାତି ମିଛ । ମୋଟ କଥା କ'ଣ ନା, ସେ ମୋର ଯୋଗୁଁ ବରୁନ ପରି ଉଚ୍ଚଶିକ୍ଷା ପାଇଲା ନାହିଁ, କି ଯୁଇ ପରି ନିଜ ଇଚ୍ଛାରେ ବାହା ହୋଇ ପାରିଲା ନାହିଁ । ଯଦିଓ କହିଲା ଯେ ଥ୍ୟାଙ୍କ୍ ଗଡ୍ ମୁଁ ମହାସୁଖରେ ଅଛି ମୋ ସ୍ୱାମୀ ପିଲାଙ୍କୁ ନେଇ ଇତ୍ୟାଦି, ଇତ୍ୟାଦି । ଯେତେକ ବାଜେ କଥା, ଯାହାର ଗଣ୍ଡି ନାହିଁ କି ମୁଣ୍ଡ ନାହିଁ । ସେଇଥିପାଇଁ ମୁଁ ତାକୁ ଚଟ୍‌କିନି ଟାଣି ଆଣିପାରିଲି ନାହିଁ ମୋ ଛାତିକୁ, ଯେତେବେଳେ ସେ ମୋତେ କ୍ଷମା ମାଗିଲା କେତେ ଘଣ୍ଟା ପରେ । କିନ୍ତୁ ତୋ ବୋଉର ବି କଅଣ ଗୋଟାଏ ଆତ୍ମାଭିମାନ ନାହିଁ ? ଅବଶ୍ୟ ମୁଁ ଜାଣେ ତୁ ସେମିତି କିଛି ମିନ୍ କରି ନଥିଲୁ । ତୋ ମନଟା ଶାନ୍ତ ହୁଏ ନାହିଁ, ମଝିରେ

ମଝିରେ ଏମିତି ଝଡ଼େଇ ନହେଲେ ତୋ ମାଆ ଉପରେ । ସତେକି କୋଉ ଡାକ୍ତର କହିଛି ଯେ ଏଇଟା ଦରକାର ତୋ ସ୍ୱାସ୍ଥ୍ୟ ପାଇଁ ! ହୁଣ୍ଡୀ ! ସତରେ ହୁଣ୍ଡୀଟିଏ—

ହୁଣ୍ଡୀ ନୁହେଁ, ଗୃଧିଣୀ । ମହା ଫିସାଦିଆ ମୋର ଏଇ ଝିଅଟା ! ନହେଲେ କ'ଣ ମୋତେ ଏମିତି ଠକେଇଦେଇ ଚାଲି ଯାଇଥାଆନ୍ତା ? ଆଉ କହିଯାଇଥାଆନ୍ତା ଯେ ମୁଁ ଦୋଷୀ, ମୁଁ ଯାଉଛି ତା' ପାଖରେ ?…

ପାଖରେ କେହି ନଥିଲେ ଏମିତି ଭାବିଲେବେଳେ । ତେଣୁ ଯେଉଁ ଲୁହର ବୁନ୍ଦାଟିଏ ଆସିବାକୁ ବସିଥିଲା ତାଙ୍କ ଆଖିକୁ, ତାକୁ ସେ ବାରଣ କଲେ ନାହିଁ । ହେଲେ ଆସୁ ନଆସୁଣୁ ସେ ତାକୁ ଚଟ୍‌କିନା ପୋଛି ପକେଇଲେ । ଏବଂ ହଠାତ୍ ମନେ ପଡ଼ିଗଲା ଗୋଟାଏ କଥା ।

…'ଆଇ ଲଭ୍ ୟୁ, ବୋଉ' । ନାଲି ନେଳି ସୂତା, ଟବା ଟବା ଅକ୍ଷର । ହେଲେ ତୁଇ ତାକୁ ପ୍ରେଜେଣ୍ଟ ଦେଇଥିଲୁ ମୋତେ, ମୋର କୋଉ ଜନ୍ମଦିନରେ—ମନେ ଅଛି ? ସେତେବେଳେ ତୋତେ ସାତଆଠବର୍ଷରୁ ବେଶି ହେବ ନାହିଁ । ହୁଏତ ମୁଁ ତୋତେ ହଂସୁକୁଟିଆ ବୋଲି କହିଥିଲି କେବେ, ସେଇ ସମୟରେ । ତୋତେ ତ ସିଲେଇ ଫିଲେଇ ଆସେ ନାହିଁ ସେମିତି କିଛି, ଯୁଝି ପରି । ତଥାପି ମନପ୍ରାଣ ଦେଇ କେଜାଣି କେତେଦିନ ଲାଗି ତୁ ତାକୁ ସିଲେଇ କରିଥିଲୁ । ମୋତେ ପ୍ରେଜେଣ୍ଟ୍ ଦେବା ପାଇଁ । ତା' ମାନେ ତୁ ମୋତେ ପ୍ରକୃତରେ ଭଲପାଉଥିଲୁ ସେତେବେଳେ । ବରାବର ଭଲ ପାଉ । ପ୍ରକୃତରେ ତୋ ମନରେ କିଛି ନାହିଁ ଯେ ମୁଁ ତୋତେ ଘୃଣା କରିଛି କେଉଁଥିରେ, ପାତରଅନ୍ତର କରିଛି ତୋ ସାନ ଭଉଣୀମାନଙ୍କ ସାଙ୍ଗରେ ।

ରହ, ସିଏ ଅଛି କୋଉଠି, ମୁଁ ତାକୁ ବାହାର କରି ଆଣିଲି । ଆଉ ତାକୁ ବଢ଼େଇ ଦେବି କାହା ହାତକୁ, ଜାଣିଛୁ ? ତୋର ଧନୁର୍ଦ୍ଧର ସାନପୁଅ ହାତକୁ, ମୋ 'ଲଭର୍', ଯିଏ ଆସୁଛି ମୋ ସାଙ୍ଗରେ ଦେଖା କରିବ ବୋଲି । ତା' ଚଟି ଖଣ୍ଡିକ ଅଛି ମୋ ତକିଆ ତଳେ । କହିବି, ଦେଖେ ତୋ ବୋଉ କେମିତିକା ପ୍ରେଜେଣ୍ଟ ଦେଇଥିଲା ମୋତେ ତା' ପିଲାଦିନେ । ମୁଁ ତ ଚାଲିଯାଉଛି, ମୋ ଘରେ ଆଉ କିଏ ଏଇ ସମ୍ପତ୍ତିକୁ ସାଇତି ରଖିବ, ତମ ଦି'ଜଣଙ୍କ ଛଡ଼ା ? ତୁ ତ ଆଗେ ଆସି ପହଞ୍ଚିଛୁ ମୋ ପାଖରେ, ଆରଟା କେବେ ଆସିବ, ଆଉ ସେତେବେଳକୁ ମୁଁ ବଞ୍ଚିଥିବି କି ନାହିଁ ଭଗବାନ ଜାଣନ୍ତି, ତେଣୁ ମୁଁ ତୋର ହାତକୁ ବଢ଼େଇଦେଉଛି ମୋର ଏଇ ଅମୂଲ୍ୟ ସଂପତ୍ତିଟିକୁ—ଆଇ ଲଭ୍ ୟୁ, ବୋଉ ! ହୁଣ୍ଡୀକୁ ନିଶ୍ଚୟ ପହଞ୍ଚିବ ଏଇ ଖବର, ସେପୁରରେ । ଆଉ ସେ ଖୁସି ହେବ । କ୍ଷମା କରିଦେବ ତା' ବୋଉଟାକୁ ।

ତୋତେ ଦେଲେ ଯାହା, ପୁନୁକୁ ଦେଲେ ବି ସେଇଆ । ଅଭିନ୍ନ ଆତ୍ମା ତମ ଦୁହିଁଙ୍କର । ଯେମିତି ଖଟ ଉପରେ କାନ ଧରାଧରି ହୋଇ ଠିଆ ହୋଇଥିଲ କେବେ, ସୃଷ୍ଟିର ଶେଷ ଯାଏଁ । କିଏ କହୁଥିଲା ସେକଥା, ମନେ ପଡ଼ୁନାହିଁ । ଆଉ ଆଜ ଯାଏଁ ବି ସେମିତି ଅଛ, କେହି କାହାଠୁଁ ଦୂରେଇ ଯିବାକୁ ନାରାଜ । ଆରେ, ବୋକାଛୁଆଗୁଡ଼ା, ବାହାହେଲା ପରେ କ'ଣ କରିବ ? ତମ ସ୍ତ୍ରୀ ଦି'ଟାଙ୍କୁ ବି କ'ଣ ନେଇଯିବ ଏକା ଖଟ ଉପରକୁ ?···

ଅଭିଶ୍ରୁ, ହେଲେ ରସୋତ୍ତୀର୍ଣ୍ଣ, ସ୍ମିତହାସଟିଏ ଦେଖା ଦେଲା ଆଈ ସୁନ୍ଦରମଣିଙ୍କ ମୁହଁରେ । ଏବଂ ତା' ସାଙ୍ଗକୁ ସେ ତାଙ୍କ ବଡ଼ଝିଅକୁ ମନେ ପକେଇଲେ ଓ କହିଲେ—

ତୁ କ'ଣ ସତେ ମୋତେ ଧାରୁଆ କରି ଗୁଡ଼ିଦେବୁ ବୋଲି ଭାବୁଛୁ ? ନାଇଁ ଲୋ ଝିଅ ତା' ହେବ ନାହିଁ । କେହି ପାରି ନାହିଁ, ତୋ ବାପଠାରୁ ଆରମ୍ଭ କରି ଯେତେକ ଭାଇବନ୍ଧୁ, ସାହିପଡ଼ିଶା, ଜ୍ଞାତିକୁଟୁମ୍ବ ଓଗେର । ସତ ହେଉ କି ମିଛ, ମୁଁ କାହାକୁ ପଦେଅଧେ ନ ଶୁଣେଇ ଛାଡ଼ି ନାହିଁ । କିନ୍ତୁ ମୋ ମନରେ କିଛି ନ ଥାଏ । ସମସ୍ତେ ଜାଣନ୍ତି ମୁଁ ବଦ୍‌ରାଗୀ, ଯାହା ମନକୁ ଆସେ, କହିଦିଏ ଚଟ୍‌କିନା । ହେଲେ ମୋ ମନଟା ନିର୍ମଳ । ତେଣୁ ମୁଁ କାହାର ପାଖରେ ଧାରୁଆ ନୁହେଁ । ତୋ ବାପା ବି ମୋ ହାତଟାକୁ ଧରି ପକେଇ କହିଲେ କେତେ କଥା, ତାଙ୍କ ଜୀବ ଛାଡ଼ିଲା ଆଗରୁ । ମୋତେ ହିଁ କ୍ଷମା ମାଗିଲା ପରି । ଆଉ ତୁ ଝିଅଟା, ମୋଠୁଁ ଜନ୍ମ ହୋଇଛୁ, ତୁ ମୋତେ ଜିତିଯିବୁ ବୋଲି ଭାବୁଛୁ ? ସତେ ?

ଦେଖ୍, ମୁଁ କେମିତି ତୋ ପ୍ରେଜେଣ୍ଟ୍ ଖଣ୍ଡିକ ବଢ଼େଇ ଦେବି ପୁନୁ ହାତକୁ । ଆଉ ସେଇଠୁଁ ତୁ ବୁଝିବୁ ଲୋ ଝିଅ, ବୁଝିବୁ ! ଲାଜେଇ ଯିବୁ । ନାଇଁ ନାଇଁ ମିଛ କଥା ବୋଲି ହାତଗୋଡ଼ ଛାଟି ଦେବୁ ପିଲାଙ୍କ ପରି, ହେଲେ ମନା କରି ପାରିବୁ ନାହିଁ ଯେ ଜିନିଷଟାକୁ ତୁଇ ଦେଇଛୁ ମୋତେ । ଶେଷକୁ ତୁ କହିବୁ ମୋତେ, ଆସ୍ତେ କିନା,—ହଁ ଲୋ ବୋଉ, ମୁଁ ତୋତେ ଭଲପାଏ । ସେଇଠୁଁ ମୁଁ ଶାନ୍ତିରେ ମରି ପାରିବି । ଦିବ୍ୟ ଶାନ୍ତିରେ···

( ୩ )

ମାମୁଁଘରକୁ ଯିବା ବାଟଯାକ ଲୁନୁ ମନେ ମନେ ଖୁସି ହେଉଥାଏ ଯେ ସେ ପ୍ରାଣପଣେ ଚେଷ୍ଟା କରିବ ଆଈଙ୍କୁ ହସେଇବା ପାଇଁ । ମୁଁ ତାଙ୍କର ଲଭର୍ ପରି, ସେ କୁରୁଳି ଖାଉଥାଏ, ମୋର କ'ଣ କର୍ତ୍ତବ୍ୟ ନୁହେଁ ତାଙ୍କୁ ଖୁସ୍ କରିବା ? ତା' ଛଡ଼ା ତା'ର ମନେ ହେଉଥିଲା ଯେ ଆଈ ଖଟରେ ପଡ଼ି କୁନ୍ଥଉଥିବେ, ଦୁଃ

ଆଃ କି ଗଅଁଗଅଁ ହେଉଥିବେ, ଏଇ ଅପଦୃଶ୍ୟ ସେ ବରଦାସ୍ତ କରି ପାରିବ ନାହିଁ । ହଁ, ସେ ହୁଏତ ଆଗଭଳି ଉଚ୍ଛୁଳା ହସ ହସି ପାରିବେ ନାହିଁ, ସନ୍ତେଇ ପୃଥିବୀଟା ତାଙ୍କ ଗୋଡ଼ ତଳେ, ଏବଂ ସେ ତାକୁ ଭୋଗ କରି ସାରିଲା ପରେ ଆଉ କ'ଣ କରିବେ ବୁଝି ପାରୁ ନାହାଁନ୍ତି, ତେଣୁ ଏମିତି ବାଉଳା ଧରିଛନ୍ତି । କିନ୍ତୁ ତଥାପି ମୁଁ କ'ଣ ତାଙ୍କ ମନରେ କିଛିଟା ସରାଗ ଆଣି ଦେଇ ପାରିବ ନାହିଁ, ଯେଉଁଥିରେ ସେ ଆମର ସେଇ ପୁରୁଣା ଆଈ ପରି ମନେ ହେବେ ? କୁନୁ ତା'ର ଏଇ ଇଚ୍ଛାପୂରଣର ଉଦ୍ଦେଶ୍ୟକୁ ଗୋଟାଏ ଚ୍ୟାଲେଞ୍ଜ୍ ହିସାବରେ ଗ୍ରହଣ କଲା । ଯେମିତିକି ସେ ସ୍କୁଲ ଫାଇନାଲ୍‌ରେ ବିଚକଟିଆ ଫିଜିକ୍ସରେ ମଧ୍ୟ ଫାଷ୍ଟ୍ ଡିଭିଜନ ମାର୍କ୍ ରଖିବା, କଲେଜ୍ ଡିବେଟ୍‌ରେ ସ୍ୱନାମଧନ୍ୟ ପାର୍ଥ ମୁଖାର୍ଜିଙ୍କୁ ହରାଇବା, ଅଥବା କଲେଜ୍‌ର 'ଏ' ଟେନିସ୍ ଟିମ୍‌ରେ ଅନ୍ତର୍ଭୁକ୍ତ ହେବାର ଇଚ୍ଛାକୁ ଚ୍ୟାଲେଞ୍ଜ୍ ରୂପେ ଗ୍ରହଣ କରିଥିଲା । ଏବଂ ଉତ୍ତୀର୍ଣ୍ଣ ହୋଇଥିଲା । ତେଣୁ ପରିବାରଗତ ଏଇ ମଜାର ପରୀକ୍ଷାରେ ସେ ଫେଲ୍ ମାରିବ କାହିଁକି ?

କିନ୍ତୁ ପାହପଡ଼ାରେ ପହଞ୍ଚି ଆଈଙ୍କ ସାଙ୍ଗରେ ଦେଖା ହେଲା ପରେ ତା'ର ମନେ ହେଲା ଯେ କଥାଟାକୁ ସେ ଅଯଥାରେ ବଡ଼ କରି ଥୋଇଥିଲା । ଆଈ ଯେତେହେଲେ ବୁଢ଼ୀ ହେଲେଣି, ଏବଂ ତାଙ୍କୁ ଏଭଳି ଗୋଟାଏ ରୋଗ ହୋଇଛି, ଯେଉଁଥିରେ ଯେତିକି ଯନ୍ତ୍ରଣା ସେତିକି ଦୁଶ୍ଚିନ୍ତା ଭୋଗିବା ସ୍ୱାଭାବିକ । କିନ୍ତୁ ତଥାପି କାହିଁ ତାଙ୍କ ମୁହଁରେ କୋଉ ଯନ୍ତ୍ରଣାର ଚିହ୍ନ ? ଅବା ଦୁଶ୍ଚିନ୍ତାର ଲକ୍ଷଣ ? ମୋତେ ଦେଖି ଯେମିତି କୁଣ୍ଢେଇ ପକେଇଲେ, 'ଏତେଦିନ ପରେ ଆଇଲୁ ମୋ ଲଭର୍ ବୟ୍ !' ବୋଲି ସମ୍ବୋଧିଲେ, ଆମ ଦି' ଭାଇଙ୍କ ଯାବତୀୟ ହାଲ୍‌ଚାଲ ପଚାରିଲେ, ଏବଂ ଏଣୁ ତେଣୁ ଅଟ୍ଟପରିହାସ କଲେ, ସେଥିରେ କିଏ କହିବ ତାଙ୍କର କିଛି ହୋଇଛି ବୋଲି ?

ଦିନ ପରେ ଦିନ ତା'ର ଏଇ ଧାରଣା ଦୃଢ଼ୀଭୂତ ହେଲା, କିନ୍ତୁ ତା' ସାଙ୍ଗକୁ ତାକୁ ଟିକିଏ ଆଶ୍ଚର୍ଯ୍ୟ ଲାଗିଲା । ସନ୍ଦେହ ହେଲା ଯେ ଆଈ ସତ୍‌ସାମାନ୍ୟ ପୋଜ୍ କରୁଥିବେ ତା' ଆଗରେ । ତେଣୁ ସେ ଅରେ ପାଦ ଚପି ଚପି ଯାଇଥିଲା ତାଙ୍କ କମରାକୁ, ଏବଂ ଦେଖିଲା ସେ ଆଖିବୁଜି ଶୋଇଛନ୍ତି । ଶାନ୍ତିରେ ଶୋଇଛନ୍ତି, ଦୁଃଖକଷ୍ଟର ଚିହ୍ନବର୍ଣ୍ଣ ନାହିଁ ତାଙ୍କ ମୁହଁରେ । ଏପରିକି ତା'ର ଭ୍ରମ ହେଲା ଯେ ସେ ହସୁଛନ୍ତି, କେଉଁ ଗୋଟାଏ ସୁଖସ୍ୱପ୍ନ ଦେଖିଲା ପରି !

...ହଁ, ହୁଏତ ସେ ଟିକିଏ ବେଶୀ ସେଣ୍ଟିମେଣ୍ଟାଲ୍ ହେଲା ପରି ଲାଗୁଛନ୍ତି, ଯାହା ସେ ଆଗରୁ ନ ଥିଲେ । ହେଇ, ସେଦିନ ସେ ଯେଉଁ ଚୁମ୍କିକାମକାକରା ଲଟା ମଡ଼େଇଥିବା 'ଆଇ ଲଭ୍ ୟୁ, ବୋଉ' ବସ୍ତୁଟିକୁ ମୋ ହାତକୁ ବଢ଼େଇ ଦେଲେ ଏବଂ କହିଲେ ଯେ ପିଲାଦିନେ ବୋଉ ତାଙ୍କୁ ଏଇ ଉପହାରଟି ଦେଇଥିଲା,

ତାଙ୍କର କୋଉ କଳ୍ପନାରେ, ସେତେବେଳେ ସେ ଏତେ ସମସ୍ତ ଯାଏଁ ମୋ ହାତକୁ ମୁଠେଇ ଧରିଲେ. ଏବଂ ଅନେଇ ରହିଲେ ମୋ ଆଡ଼କୁ, ଯେ ମୋର ମନେ ହେଲା ସେ କାନ୍ଦି ପକେଇବେ । ହେଲେ ସେ କାନ୍ଦିଲେ ନାହିଁ । ଆମ ଆଇଙ୍କୁ ମୁଁ କେବେହେଲେ କାନ୍ଦିବାରେ ଦେଖି ନାହିଁ । ଅପରନ୍ତୁ ହଠାତ୍ ହସି ଉଠି କହିଲେ—

"ଦେଖୁଛୁ, ତୋ କାହ୍ନୁଗୁ ବୋଉ ମୋତେ କେତେ ଲଭ୍ କରେ ? ତୁମେ ଦି'ଜଣ ତ ତମ ବୋଉକୁ ଏତେ ଭଲ ପାଅ, ତମେ ତା' ଦି' ଆଖିର ପୁତୁଳି, କିନ୍ତୁ ତମେ ତାକୁ ଦେଇଛ କି କେବେ ଏମିତିକା ପ୍ରେଜେଣ୍ଟ ?"

ଏହିପରି ଭାବରେ କୁନୁ ନିଜକୁ କୃତକୃତ୍ୟ ମନେ କଲା । ଭାବିଲା ଯେ ଆଇଙ୍କର ସ୍ୱଗୁଣ କୁହ କି ତା'ର ସଫଳତା, ଚ୍ୟାଲେଞ୍ଜ୍ଟା ଆପେ ଆପେ ଉଭେଇ ଯାଇଛି ।

ଏବଂ ତା'ର ଆନନ୍ଦ ଦ୍ୱିଗୁଣିତ ହେଲା ଯେତେବେଳେ ଭାଇଠାରୁ ଗୋଟାଏ ଚିଠି ଆସି ପହଁଞ୍ଚିଲା, ଏବଂ ସେଇ ଖବର ପାଇ ଆଈ ବିଛଣାରୁ ଉଠି ପଡ଼ିଲେ, ଏବଂ ଆଖି ଦି'ଟାକୁ ମେଲେଇ ଦେଇ କହିଲେ—

"ସତେ ? ମୋ ସେକେଣ୍ଡ୍ ହଜବ୍ୟାଣ୍ଡ୍ ବି ଆସୁଛି ଏଇ ରବିବାର ଦିନ ? ବଢ଼ିଆ ! ଆଉ ମୋର ଚିନ୍ତା କ'ଣ ? (ସେଇଠୁଁ କୁନୁ ଆଡ଼କୁ ଗମ୍ଭୀର ଭାବରେ ଅନେଇ) କିନ୍ତୁ ଶୁଣ୍ ! ତମେ ଦି'ଜଣ ଏକାଠି ଆସିବ ନାହିଁ ମୋ ରୁମ୍‌କୁ । ଜଣ ଜଣ କରି ଆସିବ । ବୁଝିଲ ?"

ତା'ପରେ ସେ ଏମିତି ହସିଲେ ଠୋ ଠୋ ହୋଇ ଯେ କୁନୁର ମନେ ହେଲା ଯେ ପୂର୍ବର ସେଇ ହସ ନ ହେଲେ ମଧ୍ୟ ଇଏ ତା'ର ପାଖାପାଖି···ଓ୍ୱାଣ୍ଡର୍-ଫୁଲ୍ ! ସି ଇଜ୍ ଦ' ମୋଷ୍ଟ୍ ଓ୍ୱାଣ୍ଡର୍‌ଫୁଲ୍ ଆଈ ଇନ୍ ଦ' ଓ୍ୱାର୍ଲ୍ଡ୍ ! ଆମ ଆଈ ତ ସହଜେ ସୁନ୍ଦର, ତା' ସାଙ୍ଗକୁ ଏଇ ଯେଉଁ ମହାନନ୍ଦ ହସ, ଇଏ ଯେତେ-ବେଳେ ଝଟକ ଉଠେ ନା, ସେତେବେଳେ କୋଉ ନାତି ତାଙ୍କୁ ପୃଥିବୀର ସବୁଠାରୁ ସୁନ୍ଦର ଆଈ ବୋଲି ନ କହି ରହିପାରିବ ?

କିନ୍ତୁ ଅବିକଳ ସେଇ ହସ, ପୃଥିବୀକୁ ଓଲଟେଇ ଦେଲା ପରି, ଯାହା ପୂର୍ବେ ଦେଖିବାକୁ ମିଳୁଥିଲା, ସିଏ କ'ଣ ଥରେ ହେଲେ ଫେରି ଆସିବ ନାହିଁ, ତାଙ୍କ ଦି' ନାତିଙ୍କ ଗହଣରେ ? ହୋଇପାରେ ଯେ ମୁଁ ଦୁରାଭିଳାଷୀ । କିନ୍ତୁ ମୋର ସେ ଅଧିକାର ଅଛି । କିଏ ଜାଣେ···

କିନ୍ତୁ ସେ କଳ୍ପନା କରି ନଥିଲା ଯେ ଏତେଶୀଘ୍ର ଏବଂ ଏପରି ଭାବରେ ତା'ର ଅଭିଳାଷ ପୂର୍ଣ୍ଣ ହେବ ।

ପୁନୁ ଆସି ପହଞ୍ଚିଗଲାଣି । ଏବଂ ଯାହା ଆଶା କରାଯାଉ ଥିଲା, ଆଈ ତା' ସାଙ୍ଗରେ ମଧ୍ୟ ଏକ ସହାସ୍ୟ ପୁନର୍ମିଳନରେ ଦୃଶ୍ୟ ରଚନା କରି ସାରିଲେଣି । ସେଥିରେ ବିଶେଷ ଆନନ୍ଦିତ ଅବା ଆଶ୍ଚର୍ଯ୍ୟ ହେବାର କିଛି ନଥିଲା କୁନୁ ପାଇଁ ।

କିନ୍ତୁ ଘଟଣା ଘଟିଲା ସେଇଦିନ ସନ୍ଧ୍ୟାବେଳେ । ଦି' ଭାଇ ଯାକ ସେତେବେଳେ ଥିଲେ ତାଙ୍କ କମରାରେ । ଆଈ ହଠାତ୍ କହି ଉଠିଲେ ପୁନୁ ଆଡ଼କୁ ଚାହିଁ ।

"ଜାଣିଛୁ ପୁନୁ ? ମୁଁ ଗୋଟାଏ ଅମୂଲ୍ୟ ରତ୍ନ ବଢ଼େଇ ଦେଇଛି ତୋ ସାନଭାଇ ହାତକୁ । ହେଲେ ସେ ତମ ଦି'ଜଣଙ୍କର । ତୁ ଆସି ନଥିଲୁ, ଆଉ ଆସିବୁ କି ନାହିଁ ବୋଲି ଜଣା ନଥିଲା । ସେଇଲାଗି ମୁଁ ବିଳମ୍ବ ନ କରି ତାକୁଇ ଦେଇଦେଲି । ତା' ଛଡ଼ା କି'ଣ ଫରକ୍ ଅଛି ମୋ ପାଇଁ ତମ ଦି'ଜଣଙ୍କ ଭିତରେ ? ନା କୋଉ ପ୍ରଭେଦ ଥିଲା ତମ ବୋଉର ଆଖିରେ ?…(ସେଇଠୁଁ ଉଲୁସି ଉଠିଲା ପରି) ଜାଣିଛୁ ସେ ଜିନିଷଟା କି'ଣ ? ତୋ ବୋଉ ତା' ପିଲାଦିନେ ମୋତେ ପ୍ରେଜେଣ୍ଟ୍ ଦେଇଥିଲା, ମୋର କୋଉ ଜନ୍ମଦିନରେ…ଆଇ ଲଭ୍ ୟୁ, ବୋଉ ! ବୁଝିଲୁ ? …ଆଇ ଲଭ୍ ୟୁ…କୁନୁ, ଆଣିଲୁ ତାକୁ ? ଦେଖେଇ ଦେ' ତୋ ଭାଇକୁ । ତା' ପରେ ତାକୁ କିଏ ରଖିଛି ରଖ, ତମ ଇଚ୍ଛା—"

କିନ୍ତୁ କୁନୁ ଆଈଙ୍କ ଆଦେଶ ପାଳନ କଲା ପୂର୍ବରୁ ପୁନୁ ତାକୁ ହାତ ଦେଖାଇ ବାରଣ କଲା । କହିଲା—

"ଥାଉ । ମୁଁ ତାକୁ ଦେଖିବି ପରେ । ଥାଉ କୁନୁ ପାଖରେ ବି ଥାଉ ଜିନିଷଟା ।"

"କାହିଁକି ?" ଆଈ ପଚାରିଲେ, ଟିକିଏ ଆଶ୍ଚର୍ଯ୍ୟ ହେଲା ପରି ।

"କାହିଁକିନା କିଛି ପ୍ରଭେଦ ନାହିଁ ଆମ ଭିତରେ", ପୁନୁ କହିଲା ହସି ହସି, "ତା' ଛଡ଼ା ବୋଉ କୁନୁକୁ ବେଶୀ ଭଲ ପାଉଥିଲା ।"

କୁନୁ ଜଳଜଳ ହୋଇ ଅନେଇଲା ଭାଇ ଆଡ଼କୁ, ଏବଂ ଆଈଙ୍କ ମୁହଁରୁ ଉଦ୍‌ଗତ ହେଲା—

"ଏଁ ? ?"

ସେଇଠୁଁ ଆରମ୍ଭ ହେଲା ତାଙ୍କର ବିରାଟ ହସ, ଗଡ଼ କାଟିଲା ପରି, ଯାହା ମିଶିଗଲା ପୁରୁଣା ସୁସ୍ଥ ଜୀବନର ହସ ସାଙ୍ଗରେ, ଏବଂ କୁନୁକୁ ଚମତ୍କୃତ କଲା । ଏବଂ ହସୁହସୁ ସେ କହିବାକୁ ଲାଗିଲେ—

"ଆମ ଦେଖା ପାତରଅନ୍ତର କରୁଚ୍ଛ ତମ ଦୁ'ଜଣଙ୍କ ଭିତରେ ? ତୁ ଏଇଆ କହିବାକୁ ଚାହୁଁ ? ଆରେ ବୁଡ଼୍‌ବକ୍, ତୁ ବି ଏଇଆ ଭାବୁଚୁ ? ପାଗଳ… ପାଗଳ…ଏମିତି କେବେ ହେଲଣି ନା ହେବ ? ମାଆ କେବେହେଲେ ପାତର-ଅନ୍ତର କରିପାରେ ତା' ପିଲାଙ୍କ ଭିତରେ ?…"

ଏମିତି କହିଲେ ଆଉ ହସିଲେ । ହସିଲେ ପାଗଳଙ୍କ ପରି । ଆଉ ଦୁ'ଭାଇ-ଯାକ କାବା ହୋଇ ଅନେଇ ରହିଲେ ତାଙ୍କ ଆଡ଼କୁ ।

ହେଲେ ଆଈ ତାଙ୍କୁ ସେମିତି ଠିଆହୋଇ ରହିବାକୁ ଦେଲେ ନାହିଁ । ଡାକିଲେ ତାଙ୍କ ପାଖକୁ—"ଆସ, ଆସ ମୋ ପାଖକୁ, ବୋକାଢୁଆ ଦୁ'ଟା, ଚାଲିଆସ ମୋ ଦୁ' ପାଖକୁ, ମୋ ସେକେଣ୍ଡ୍, ହଜ୍‌ବ୍ୟାଣ୍ଡ୍ ମୋ ଲଭର୍ ବୟ୍…"

ବୃଦ୍ଧା ଏବଂ ମୃତ୍ୟୁମୁଖୀ ଆଈ ଯେପରି ଭାବରେ ଦୁ'ଭାଇଙ୍କୁ ବେଢ଼େଇ ଧରି-ଥିଲେ ତାଙ୍କ ଦୁ' ହାତରେ, ଏକ ପ୍ରଶସ୍ତ ଅନବଦ୍ୟ ହସର ପରାକାଷ୍ଠା ଦେଖାଇ ସେହି ଅପୂର୍ବ ଦୃଶ୍ୟଟିକୁ ଧରି ରଖିବା କଥା ବଂଶଧରମାନଙ୍କ ପାଇଁ ସେହି ଦୃଷ୍ଟିରୁ ଆର ଓରଫ୍ ବଡୁନର ଟୀନ୍‌ଏଜର୍ ପୁଅ ମନୁ ଗୋଟାଏ ଠିକଣା କାମ କଲା । ଦୃଶ୍ୟଟିକୁ ଝିପି ନେଲା ତା'ର ବକ୍‌ସ କ୍ୟାମେରାରେ ।

ତିନିଙ୍କି ତିନିହେଁ ହସହସ ଦିଶୁଥିଲେ । କିନ୍ତୁ ହସଗୁଡ଼ିକର ପଛରେ ଥିବା ଭାବଭାବନାକୁ କେଉଁ କ୍ୟାମେରା ଦେଖି ପାରିବ ନା ସାଇତି ରଖି ପାରିବ ଭବିଷ୍ୟତ ପାଇଁ ? ସବୁଠାରୁ ଭାବଗର୍ଭକ ଥିଲା ପୁନୁର ଭାବନା, ଯାହାକୁ ହୁଏତ ପୁରୁଖା ଲୋକମାନେ ହସି ଉଡ଼େଇ ଦେଇପାରନ୍ତି । ସେ ଭାବୁଥିଲା—

ମୁଁ ମିଛ କହିଲି । ବୋଉ ପ୍ରକୃତରେ ମୋତେ ହିଁ ବେଶି ଭଲ ପାଉଥିଲା, କୁନୁକୁ ନୁହେଁ । କିନ୍ତୁ ମୁଁ ଜାଣିଶୁଣି ସେମିତି କହିଲି, ଯେମିତିକି ସେ ଖୁସି ହେବ । ହେଉ । ସବୁଥିରେ ସେ ତ ଝପି ଯାଇଛି ମୋତେ, ଖାଲି ଏଇ ଜିନିଷଟା କାହିଁକି ବାଦ୍ ପଡ଼ିବ ?

ତା'ଛଡ଼ା ବୋଉ ମୋତେ ବେଶି ଭଲ ପାଉଥିଲା, ଏଥିରେ ଗର୍ବ କରିବାର କିଛି ନାହିଁ । ବୋଉ ମୋ ପ୍ରତି ଦୟା ଦେଖାଉଥିଲା । ମୁଁ କ'ଣ ଜାଣିନାହିଁ ସେ କଥା ? ବୋଧହୁଏ ଭାବୁଥିଲା ଯେ ମୁଁ ତାର ପ୍ରତିଛବି । ସେ ଯେମିତି ଦୌଡ଼ରେ ହାରି ଯାଇଛି, ମୋର ବି ସେଇଆ ହୋଇଛି ।

କିନ୍ତୁ ମୋର ଦୁଃଖ ନାହିଁ । ମୁଁ ସିଲ୍‌ଲି ନୁହେଁ ବୋଉ ପରି କି ଆଈଙ୍କ ପରି । କାନ୍ଦିବି କି ହସିବି, ଆନ୍ତ ନିଜକୁ ଚହଲା ପକେଇବି ।

ଯାହାହେଉ ଗୋଟାଏ ଜିନିଷ ମିଳିଯାଇଛି ମୋତେ । ସେଇଁଥିରେ ପ୍ରତି-ଯୋଗିତାର ପ୍ରଶ୍ନ ଉଠୁନାହିଁ । କେହିହେଲେ ମୋତେ ହରାଇ ପାରିବ ନାହିଁ । ସେଇଁଥିରେ ମୁଁ ଫାଷ୍ଟ୍, ସଦାସର୍ବଦା ଫାଷ୍ଟ ।

ହଠାତ୍ ତା' ମନକୁ ଆସିଲା ଯେ ସେଥିରେ ବି ପ୍ରତିଯୋଗିତା କଦାପି ଆସିବ ନାହିଁ, ଏକଥା କେହି ଜୋର୍ କରି କହିପାରିବ ନାହିଁ । ତେଣୁ ସେତିକିବେଳେ ହସଟା ଉଭେଇଗଲା ତା' ମୁହଁରୁ । ଆଶା କରାଯାଏ ଯେ ଛବିତୋଳା ସରିଗଲାଣି ସେତେବେଳକୁ ।

କହିବା ବାହୁଲ୍ୟ ଯେ ଶେଷବେଳକୁ ସେ ଭାବୁଥିଲା ତା'ର ନବଲବ୍ଧ ପ୍ରାଇଜ୍ ଅର୍ଥାତ୍ ତା'ର ପ୍ରଣୟିନୀ ନୀଳିମା କଥା ଏବଂ ତାକୁ ନେଇ ପ୍ରତିଦ୍ୱନ୍ଦ୍ୱିତାର ପ୍ରଶ୍ନ ଉଠିଲାକ୍ଷଣି ଯେଉଁ ମନୋଭାବ ତା' ମନକୁ ଆସି ଗ୍ରାସିଗଲା, ତାହା ସର୍ବଥା ବର୍ଣ୍ଣନାତୀତ । ଭାଗ୍ୟ ଭଲ ତାହା କେଉଁ କ୍ୟାମେରାର ପହଞ୍ଚରେ ନାହିଁ । କାରଣ ସେଥିରେ ଥିଲା 'ହତ୍ୟା' ଏବଂ 'ଆତ୍ମହତ୍ୟା' ଜାତୀୟ ଭୟାନକ ବିଚାର ।

# ଆଈଙ୍କ ହସ

ଜଣେ ଲେଖକ କହିଥିଲେ ଯେ ପୃଥିବୀର ଅନ୍ୟ ଲୋକଙ୍କ ପରି କଳାକାରମାନେ ମଧ୍ୟ ଆଉ କାହା ଆଖିରେ ବଡ଼ କି ସୁନ୍ଦର ଦିଶିବା ପାଇଁ ଚାହାଁନ୍ତି, ତେବେ ତାଙ୍କର ଗୋଟାଏ ସୁବିଧା ଯେ ସେଥିପାଇଁ ନିଜର ମୁହଁ ଦେଖାଇବା ଦରକାର ପଡ଼େ ନାହିଁ । ସେହେତୁ ସେ ଦିଗରେ କୌଣସି କଷ୍ଟ କରିବାର ଆବଶ୍ୟକତା ନାହିଁ । କେବଳ ଅଭିନେତା ଜାତୀୟ କଳାକାରମାନଙ୍କ ଛଡ଼ା ଯେଉଁମାନଙ୍କ କଳା ସେମାନଙ୍କର ଦୃଶ୍ୟମାନ ଦେହେନ୍ଦ୍ରିୟଗଣ ସାଙ୍ଗରେ ଜଡ଼ିତ । ଲେଖକ ମହାଶୟ ଠିକ୍ କଥାଟିଏ କହିଲେ । ହେଲେ ମୁଁ ଆଉ ଟିକିଏ ଆଗକୁ ମାଡ଼ିଯାଇ କହିବି ଯେ ଏଇ ଠିକଣା ଭାବରେ ମୁହଁ ଦେଖାଇବାର ତାଡ଼ନା, ଯେମିତିକି ଆର ଲୋକଟି ମୋତେ ଭଲ ପାଇବ, ଏହା ବିଶେଷ କଷ୍ଟସାଧ୍ୟ ଅନ୍ତରଙ୍ଗ ମହଲରେ, ଅର୍ଥାତ୍ ସ୍ୱାମୀ-ସ୍ତ୍ରୀ, ବାପମାଆ, ପୁଅଝିଅ ଓ ଭାଇଭଉଣୀଙ୍କ ଭିତରେ । କାରଣ ତାଙ୍କ ଦେହେନ୍ଦ୍ରିୟଗଣର ହାତପାହାନ୍ତା ନିକଟତ୍ୱ ତଥା ଭଲପାଇବାର ଉଚିତ ଭାଗୀପଣ ଦାବି କରି ବସେ ଯେ ତମଠାରୁ ଆଶା କରାଯାଉଥିବା ପ୍ରେମପ୍ରୀତି ଶ୍ରଦ୍ଧାସ୍ନେହ ଆଦି ଭାବାବେଗକୁ ସ୍ୱତଃସିଦ୍ଧ ଭାବରେ ଧରି ନେଇ ହେବ ନାହିଁ । ତାହା ପ୍ରତ୍ୟକ୍ଷ ଏବଂ ପରିସ୍ଫୁଟ ହେବା ଆବଶ୍ୟକ ଆମ ଆଖି ଆଗରେ । ଯେପରିକି ସୁସ୍ପଷ୍ଟ ଭାବରେ ଜଣାପଡ଼ିବ, ନିଜନିଜକୁ ତଥା ଅପର ଲୋକମାନଙ୍କୁ, ଯେ ଆମ ଭିତରେ ରହିଛି ଏହି ବିଶିଷ୍ଟ ସଂପର୍କ ଯାହା କେବଳ ଆମର ଆମକୁ ନେଇ ଏବଂ ଆପଣି ପାଇଁ । ସେଥିରେ ଆଉ କାହାର ଦଖଲ ନାହିଁ । ଏବଂ ଏହି 'ପ୍ରଦର୍ଶନ' ଯନ୍ତ୍ରଣାଦାୟକ ହୋଇ ଉଠେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ, ଯେଉଁଠି ବ୍ୟକ୍ତିବିଶେଷ ସ୍ୱଭାବତଃ ପ୍ରଦର୍ଶନପ୍ରିୟ ନୁହେଁ । ତା'ର ଆତ୍ମବଡ଼ିମା ହେଉ ବା ସଂକୋଚଶୀଳତା ସେ ଏଇ ଦାୟିତ୍ୱଟିକୁ ତୁଲେଇ ପାରେ ନାହିଁ, ତା'ର କଥାକୁହା, ଭାବଭଙ୍ଗୀ, ହସରସ ଆଦି

ଉପାଦାନରେ ନିର୍ମିତ ଆଚରଣ ଦ୍ୱାରା । ଫଳରେ ଅବୁଝା-ମଣାର ସୃଷ୍ଟି ହୁଏ । ଏବଂ ପରିସ୍ଥିତି ଆହୁରି ବିଷମ ହୋଇଉଠେ ଯେତେବେଳେ କଥାଟା କେବଳ ଜଣକୁ ଜଣେ ଅର୍ଥାତ୍ 'ମୋର ତୁମେ' ଓ 'ତୁମର ମୁଁ', ସଂପର୍କରେ ସୀମାବଦ୍ଧ ନୁହେଁ । ମଧ୍ୟ ସମାନ ସମାନ ଭାବ ପ୍ରଦର୍ଶନ କରିବାର ଆବଶ୍ୟକତା ରହୁଛି ଏକାଧିକ ଅନ୍ତରଙ୍ଗ ନିଜ ଲୋକମାନଙ୍କ ପ୍ରତି । ନହେଲେ ତମକୁ ପାତରଅନ୍ତର କରିବାର ଦୋଷରେ ଅଭିଯୁକ୍ତ ହେବାକୁ ପଡ଼ିବ, ଏବଂ ସେଥିର ଉପଯୁକ୍ତ ସଫେଇ ଦେବାକୁ ପଡ଼ିବ । ନଦେଇ ପାରିଲେ ତମକୁ ହିଁ କାନ୍ଦିବାକୁ ପଡ଼ିବ, ପ୍ରକାଶ୍ୟରେ ହେଉ କି ଗୋପନରେ, ହାସ୍ୟପ୍ରବଣ 'ଆଇ'ଙ୍କୁ ମଧ୍ୟ ଯେମିତି କାନ୍ଦିବାକୁ ପଡ଼ିଲା ତାଙ୍କର ସମ୍ଭାବିତ ଶେଷ ବେଳକୁ ।

ହିଁ, ଏଇ ପ୍ରଦର୍ଶନ କୁଶଳତାରେ ଉତ୍ତୀର୍ଣ୍ଣ ହେବାକୁ ପଡ଼ିବ ଅନ୍ତରଙ୍ଗ ମହଲର ନାୟକ ଓ ନାୟିକାମାନଙ୍କୁ, ବିଶେଷତ ବାପମାଆ-ପୁଅଝିଅଙ୍କ ଭିତରେ ଥିବା ଭାବଗତ ସଂପର୍କକୁ ନେଇ, ଯେଉଁଠି ସେଥିର ସମାନ-ସମାନ ବଣ୍ଟନକୁ ଜାହିର୍ କରିବା ନିତାନ୍ତ ଆବଶ୍ୟକ । ଏବଂ ସେଥିପାଇଁ କେବଳ ତମର ଅଭି-ବ୍ୟକ୍ତିମୂଳକ ସ୍ୱଗୁଣକୁ ଚେଷ୍ଟାପୂର୍ବକ ବାଗେଇବାକୁ ପଡ଼ିବ ତା' ନୁହେଁ, ସମୟ ଓ ସୁଯୋଗର ଉପଯୁକ୍ତ ଏବଂ ପ୍ରଶସ୍ତ କ୍ଷେତ୍ର ମଧ୍ୟ ଲୋଡ଼ା । ବିଶେଷତଃ ଯେତେବେଳେ ପ୍ରଦର୍ଶନର କେଉଁ ସମ୍ଭାବିତ ଦୋଷତ୍ରୁଟିକୁ ସଜାଡ଼ିବାକୁ ପଡ଼େ, ପରବର୍ତ୍ତୀ ଆଚରଣ ତଥା ସଫେଇ ଦ୍ୱାରା । ହେଲେ, ଆଜିର କାର୍ଯ୍ୟବ୍ୟସ୍ତ ଅନୋଃଶ୍ୱାସୀ ଦୁନିଆଁରେ ଏହି କ୍ଷେତ୍ର ଅଧିକରୁ ଅଧିକ ସଂକୁଚିତ ହୋଇ ଆସୁଛି । ଏବଂ କିଏ କହିବ କେତେବେଳେ ଏଇ ସଜାଡ଼ିବାର ସମ୍ଭାବନାହିଁ ଗୁଳିଯିବ ତମ ହାତରୁ ? ଧର ଝିଅ ଦେବିକା ସହିତ ଯେଉଁ ଅବୁଝାମଣାକୁ ନେଇ ପାରିହେଲେ ଏଇ ଗପର ଆଇଜଣକ । ଏଥିପାଇଁ କିଏ ବେଶି ପରିମାଣରେ ଦାୟୀ, କହି ହେବ ନାହିଁ । ବାହାରକୁ ଅବଶ୍ୟ ଜଣାପଡ଼ୁଛି ଯେ ମାଆଙ୍କ ଦୋଷ ଅଧିକ, କାରଣ ତାଙ୍କର ଆତ୍ମବଡ଼ିମା ହେଉ କି ପ୍ରଚଣ୍ଡ ଆତ୍ମବିଶ୍ୱାସ, ସେ ନିଜକୁ ଠିକଣା ଭାବରେ ପହୁଁଚେଇ ପାରିଲେ ନାହିଁ ତାଙ୍କ ଝିଅ ପାଖରେ । କିନ୍ତୁ କ'ଣ ମନେହେଉ ନାହିଁ ଯେ ଝିଅ ଦେବିକା, ଯେ କଥାକଥାକେ ଏବଂ ସ୍ୱତଃପ୍ରବୃତ୍ତ ହୋଇ ନିଜର ସଫେଇ ଦେବାକୁ ବ୍ୟଗ୍ର ହୋଇ ଉଠେ, କୁହେ ମୁଁ

ସେମିତି 'ମିନ୍' କରି ନାହିଁ, ସେ ଅତ୍ୟନ୍ତ ଅଭାବଗ୍ରସ୍ତ ତା'ର ଆତ୍ମବିଶ୍ୱାସକୁ ନେଇ, ଏବଂ ସେଥିପାଇଁ ସେ ଅଯଥାରେ ଭୁଲ୍ ବୁଝିଛି ତା' ମାଆକୁ ? ଯାହାହେଉ, ସୁଖର ବିଷୟ ଯେ ବାହା-ହେଲା ଝିଅ ସାଙ୍ଗରେ କାରବାର ହେବାର କ୍ଷେତ୍ର ସୀମିତ ହେଲେ ମଧ୍ୟ ବାରମ୍ବାର ତେଜି ଉଠୁଥିବା ଏଇ ଅବୁଝାମଣା, ଯେ ବୋଉ ସେମାନଙ୍କୁ ବେଶି ଭଲପାଏ ମୋଠୁଁ, ଯଥାଶୀଘ୍ର ସଫାଡ଼ି ହୋଇଯାଏ । ସେଥିପାଇଁ ମାଆଝିଅଙ୍କ ଭିତରୁ କାହାକୁ ଅଧିକ ଧନ୍ୟବାଦ ଦେବା କଥା, ତା'ର ବିଗୃହ ପରେ, କିନ୍ତୁ କିଏ ଜାଣିଥିଲା ଯେ ଦେଖା ଏମିତି ଗୁଳିଯିବ ହଠାତ୍, ଏବଂ ମାଆର ମନେହେବ ଗଭଟରେ ତେଜି ଉଠିଥିବା ଅବୁଝାମଣାଟା ରହିଗଲା ସେମିତି ? ଏଇ ଟ୍ରାଜେଡ଼ି ପାଇଁ କାହାକୁ ଦାୟୀ କରିହେବ କହିଲେ ? ଆଶା କରାଯାଏ ଯେ ପୁନୁ ଓ କୁନୁ ତାଙ୍କୁ ସତରେ ହସେଇ ପାରିଲେ, ସ୍ୱଭମତ ହସେଇ ପାରିଲେ ଯେ ପୁନୁର ବିଶ୍ୱାସ ଦେଖା ବି ସେମିତି ପାତରଅନ୍ତର କରୁଛି ତା' ର ପିଲାଙ୍କ ଭିତରେ, ତେଣୁ ଇଏ ଗୋଟାଏ ଚରାଚରିତ ଭ୍ରମ ଆମ ପିଲାମାନଙ୍କର । ହେଲେ କେବଳ ଆଶା କରିବା କଥା । କହି-ହେବ ନାହିଁ ପୁଣି କେତେବେଳେ ତାଙ୍କର ମନେହେବ ଯେ ଦେଖା ମୋତେ ଭୁଲ୍ ବୁଝିଲା, ଆଉ ମୋତେ ସୁଯୋଗ ଦେଲା ନାହିଁ ସେଇ ଭ୍ରମକୁ ଦୂର କରିବା ଲାଗି, ଏବଂ ସେଇଠୁଁ ତାଙ୍କ ଆଖି ଛଳଛଳ ହୋଇଉଠିବ ।

ଏଇଠି ଗୋଟିଏ କଥା ବିଗୃହ କରିବା କଥା ମନସ୍ତାତ୍ତ୍ୱିକ ତଥ୍ୟ ହିସାବରେ । ବାପମାଆ ଓ ତାଙ୍କ ପିଲାଙ୍କ ଭିତରେ ଏହି ପ୍ରକାର ଅବୁଝାମଣା ଆସିଥାଏ, ଏବଂ ଅଧିକାଂଶ କ୍ଷେତ୍ରରେ ତାହା ଭ୍ରମାତ୍ମକ । କିନ୍ତୁ ଆଉ ଯେଉଁ କଥାଟି ହସିହସି କହିଲେ ତାଙ୍କ ଦୁଇ ନାତିଙ୍କୁ, କହିଲେ 'ମାଆ କ'ଣ କେବେହେଲେ ପାତରଅନ୍ତର କରିପାରେ ତା' ପିଲାଙ୍କ ଭିତରେ ?' ଏହାକୁ କ'ଣ ସ୍ୱତଃସିଦ୍ଧ ଏବଂ ନୈସର୍ଗିକ ସତ୍ୟ ବୋଲି ମାନି ନେଇ ହେବ ? ମାଆ (ଅଥବା ବାପା) ଅବଶ୍ୟ ଭଲପାଏ ତା' ପିଲା-ମାନଙ୍କୁ, ଅତ୍ୟନ୍ତ ଭଲପାଏ, ଯାହାର ସ୍ୱାର୍ଥତ୍ୟାଗମୂଳକ ଗଭୀରତାକୁ ପିଲାମାନେ କଳିପାରନ୍ତି ନାହିଁ ବେଳେବେଳେ । କିନ୍ତୁ ଜାଣତରେ ହେଉ ବା ଅଜାଣତରେ, ଏକାଧିକ ପିଲା-

ମାନଙ୍କୁ ଭଲ ପାଇବାରେ କ'ଣ ସତ୍ରସାମାନ୍ୟ ପ୍ରଭେଦ ଆସିଯାଏ ନାହିଁ, ଯେକୌଣସି କାରଣରୁ ?

ଶେଷକୁ ମୁଁ କହିବି ଯେ ଏଇ ଅନ୍ତରଙ୍ଗ ଭଲପାଇବାର ହିସାବକିତାବ ମହା ଗଣ୍ଡଗୋଳିଆ । ତାକୁ ସହଜେ କେଉଁ ସୂତ୍ରରେ କି କେଉଁ ଧାଗାରେ ବାନ୍ଧି ଦେଇ ହେବ ନାହିଁ । ତେଣୁ ମୋର ସୁପାରସ ଯେ ତମେ ବାପମାଆ ହୁଅ କି ପୁଅଝିଅ, ସେଥିର ଊଣା ଅଧିକକୁ ନେଇ ଯେତେ କମ୍ ସଚେତନ ହେବ ସେତେ ଭଲ । ଅପରପକ୍ଷେ ଦାର୍ଶନିକ କିମ୍ବା କଳାକାର ନ ହେଲେ ମଧ୍ୟ, ସେମାନଙ୍କର ମୁହଁଗୁଡ଼ା, ହେଲେ ବ୍ୟାପକ ଓ ନୈର୍ବ୍ୟକ୍ତିକ ଭଲ ପାଇବାର ତତ୍ତ୍ୱରୁ କିଛିଟା ଶିଖିବାକୁ ଚେଷ୍ଟା କର । ସାରା ଦୁନିଆଁଟା ପଡ଼ିଛି ଭଲ ପାଇବା ପାଇଁ, ତଥା ତା'ର ସତମିଛକୁ ଚିହ୍ନି ତା'ର ବୈଚିତ୍ର୍ୟକୁ ଉପଭୋଗ କରିବା ପାଇଁ । ମୁଁ ମୋର ଲେଖକୀୟ ପାଣ୍ଡିତ୍ୟ ଦେଖାଇ କହୁନାହିଁ ଏମିତି, କହୁଛି ବାପପଣିଆର ଅନୁଭୂତିକୁ ପାଖ ହୋଇ କେତେ-ଅଜାର ପ୍ରବୀଣତାକୁ ନେଇ । ଏବଂ ମୋର ଆଶା ଯେ ତା'ହେଲେ କେଉଁ ଅଜା କି ଆଈଙ୍କ ହସ ମଉଳିଯିବ ନାହିଁ, ବୟସ ଅନୁଯାୟୀ ତା'ର ରଙ୍ଗରୂପ ଯେତେ ବଦଳୁଥାଉ ପଛକେ ଉଲ୍ଲାସରୁ ଆମୋଦ ଯାଏଁ ।



# ଅଜା ନାତୁଣୀ ରହସ୍ୟ

ନାରାୟଣ ସାମନ୍ତ, ଓରଫ୍ ନାରଣବାବୁ, ଓରଫ୍ 'ଅଜା' ଅନେକ ସମୟ ଯାଏଁ ଅନେଇ ରହିଲେ, ସତେ ଖସି ପଳେଇ ଯାଉଥିବା ଯୋଡ଼ିଏ ଲୋକଙ୍କ ପୃଷ୍ଠ-ଦେଶକୁ । ହସି ହସି ହାତ ହଲେଇ, ଏବଂ ଅନର୍ଗଳ ବକରବକର ହେଉଥିବା ଅବସ୍ଥାରେ ଫାଟକଟାକୁ ଚଟ୍‌କିନା ଖୋଲି ଦେଇ କେଉଁ ଅଭିଯାନରେ ବାହାରି ପଡ଼ୁଥିବା ଗୋଟିଏ ତରୁଣ-ତରୁଣୀଙ୍କ ଯୋଡ଼ିକୁ । ଏବଂ ଦେଖୁ ଦେଖୁ ତାଙ୍କ ୫୦ ବ'ଟା ଆପେ ଚୁପ୍ ହୋଇଗଲା । ମଧ୍ୟ ଚିପି ହୋଇ ରହିଲା, ଯଦିଓ ସେ ନିଜକୁ ଡାଆରଲେ—କରେ, ତୋ ମୁଣ୍ଡ କାହିଁକି ବଥଉଛି ? ପ୍ରଥମ କଥା, ସେକାଳ ପଖାଳ ଗଲଣି । ଆଜକାଲି ଶିକ୍ଷିତା ସାବାଳିକା ଝିଅ ମଧ୍ୟ ସ୍ୱାଧୀନ । ଯଥାର୍ଥରେ ସ୍ୱାଧୀନା । ଦ୍ୱିତୀୟରେ ଯଦିବା କାହାର ଅଧିକାର ଥାଏ ତାକୁ ପ୍ରଶ୍ନ କରିବା ପାଇଁ ତା'ର ଭବିଷ୍ୟତ ବିଷୟରେ, ସେ ହେଉଛି କେବଳ ତା'ର ବାପା । ଏବଂ ବାପାମାଆ ଦୁହିଁଙ୍କ ଅଧିକାର ପଣ ଅଛି ତା' ହାତରେ, ଯେହେତୁ ସେ ଏକାଧାରରେ ତା'ର ବାପା ଓ ମାଆ । ଅତଏବ ଅଯଥାରେ ତୋ ୫୦ ବ'ଟାକୁ ଚିପି ରଖିଛୁ କାହିଁକି ?

ସହଜେ ତ ତୋ' ନାତୁଣୀ କୁହେ (ତା' ଦୋଷ ନୁହେଁ, ତା' ଆଈ ତାକୁ ଶିଖେଇଛି) ଯେ ଅଜା ହସନ୍ତି ନାହିଁ, ହସିଲେ ପଇସା ପଡ଼େ ତାଙ୍କୁ । ଆଉ ଆଜି ତୋର ଏଇ ଓହଳା ମୁହଁ, ଦେଖିଲେ ବିଚୁଆର ମନଟା ନିହାତି ଖଟ୍ଟା ହୋଇ ଯିବ ବୋଲି ଭାବି ପାରୁନୁ ? ମନେ ମନେ କହିବ—ଆଜି ପରି ଦିନରେ ତମର ହସିବାକୁ ମନ ହଉ ନାହିଁ ଟିକିଏ ? ତମ ଗେହ୍ଲା ନାଉଣୀ, ଗୋଟିଏ ବୋଲି ନାଉଣୀ, ତା' ବାପାର ଅନୁମତି କ୍ରମେ, କହିବାକୁ ଗଲେ ବାପାର ଇଚ୍ଛା ଅନୁଯାୟୀ ଜଣଙ୍କ ସାଙ୍ଗରେ ଯଥାବିଧି ମିଳାମିଶା କରିବାକୁ ଯାଉଛି । ତା' ସାଙ୍ଗରେ ଟିକିଏ ବୁଲି ବାହାରିଛି । ହୁଏତ ଦିହେଁ କେଉଁ ରେସ୍ତୋରାଁରେ ବସି ଲଞ୍ଚ୍ କରିବେ, ଏବଂ ଅଗଡ଼ମ୍ ବଗଡ଼ମ୍ ନାନା ବିଷୟରେ ନାନା କଥା ଗପିବେ, ମାଇ-କେଲ୍ ଜ୍ୟାକ୍‌ସନ୍‌ଠାରୁ ଆରମ୍ଭ କରି ଭାରତର ରାଜନୀତି ଯାଏଁ । ସେଇଠୁଁ କନଟ୍-ପ୍ଲେସ୍‌ରେ ଘୂରି ବୁଲିବେ କି କୋଉ ପାର୍କର ଗଛଇତଳେ ଲମ୍ବି ଯିବେ । କିନ୍ତୁ ଅପେକ୍ଷା କେବଳ ଗୋଟିଏ ସମ୍ବାଦ ପାଇଁ । ଝିଅ ଫେରିଆସି କହିବ ଯେ ତା'ର ଏଠି ଆପତ୍ତି ନାହିଁ । ସମ୍ଭବତଃ ସଂସ୍କାର ମୁତାବକ କେବଳ ମୁଣ୍ଡ ଟୁଙ୍ଗାରି, ଏବଂ ଅଳ୍ପବହୁତ ମୁଣ୍ଡ ତଳକୁ କରି କହିବା । ଖାଲି ତା' ବାପା ନୁହେଁ, ତା'ର ସମସ୍ତ କ୍ଷତକୁଟୁମ୍ବ

ତା'ର ସେଇ ସଲଜ ସମ୍ମତିଟିକୁ ଶୁଣିବା ଲାଗି ଅପେକ୍ଷା କରି ରହିଛନ୍ତି । କାରଣ ଏପରି ଗୋଟିଏ ପାତ୍ର ମିଳିବା ଦୁର୍ଲଭ । ଅରବିନ୍ଦ ଯେହେତୁ ଯେମିତି ସୁନ୍ଦର, ସେତିକି ଗୁଣରେ । ଗୋରା ପିନ୍ ପିନ୍ ଚେହେରା, ଧାରୁଆ ନାକ, ବଡ଼ ବଡ଼ ଆଖି ଇତ୍ୟାଦି, ଏଣେ ସୂନଭର୍ସିଟିର ଏକ ବିଶିଷ୍ଟ କୃତିଗ୍ରାଜ । ପୁଣି ତା' ବାପ କେବଳ ବଡ଼ଲୋକ ନୁହେଁ ସେ ଜଣେ ଅବସରପ୍ରାପ୍ତ ଉଚ୍ଚପଦାଧିକାରୀ । ଭାରତ ସରକାରଙ୍କ ଯୋଗାଣ ବିଭାଗର ପ୍ରାକ୍ତନ ମହାନିର୍ଦ୍ଦେଶକ । ଆଉ କଅଣ ଲୋଡ଼ା ଥିଲା କନ୍ୟା ପକ୍ଷର ? ତଥାପି କୋଉଠି ଥିଲୁ ତୁ ସ୍ନେପାଛଡ଼ା ଅଜାଟିଏ, ତୁ ଏମିତି ଗୋଟାଏ ଢଙ୍ଗ ଦେଖଉଛୁ, ଯେ ମନେହେବ ତୁ ତୋ ନାତୁଣୀର ସୁଖ ଚାହୁଁ ନାହୁଁ । ନ ହେଲେ ସେମାନେ ହାତଧରାଧରି ହୋଇ ଏକାଠି ବାହାରିଗଲା-ବେଳେ ତୁ ଠାକୁରଙ୍କୁ ଡାକିଲୁ ଯେ ସେମାନେ ଆହୁରି ହସଖୁସି ହୋଇ ଫେରି ଆସନ୍ତୁ, ଏବଂ ମୀନା ତା' ମୁଣ୍ଡ ଝୁଙ୍କାରୁ, ଫଳାଫଳ କଅଣ ହେଲା ବୋଲି ପଚାରିଲା ବେଳେ । ଅଥଚ ତୋର ଏଇ ଚେହେରା ଦେଖିଲେ କେହି ହେଲେ ଭାବିବ ଯେ—

ହଁ ହଁ, ମୁଁ ଜାଣେ । ଭାବିବ ଯେ ମୁଁ କୋଉ ପୁରୁଣାକାଳିଆ ରକ୍ଷଣଶୀଳ ଅଜା । ଯେ ମୁଁ ତାଙ୍କର ଏଇ ଡେଟିଙ୍ଗ୍ ପସନ୍ଦ କରେ ନାହିଁ, ତାହା ଯେତେ ଆଧୁନିକତା ହେଉ ନା କାହିଁକି । କିନ୍ତୁ ଯେଉଁମାନେ ମୋତେ ଜାଣନ୍ତି, ସେମାନେ କେବେହେଲେ ଏଭଳି ଆଶଙ୍କା କରିବେ ନାହିଁ ମୋ ବିଷୟରେ । ମୁଁ ବୁଢ଼ା ହୋଇ ଗଲଣି, ହେଲେ ଜୁଣା ହୋଇ ନାହିଁ ମୋର ମାନସିକ ପ୍ରବୃତ୍ତି । ଏବଂ ସେଥିରେ ଚକ୍‌ଚକ୍ ହେଉଥିବା ମୋର ଅଗ୍ରଗାମୀ ଆଧୁନିକତା । ମୀନା ଜାଣେ, ଜ୍ୱାଇଁ ଜାଣେ, ଦୁନିଆଁ ଜାଣେ ସେ କଥା । ହେହେତୁ ମୀନା ଓ ସେଇ ଟୋକା ଜଣକ ଏକାଠି ହୋଇ ବାହାରିଲେ ବୁଲି ଯାଇଛନ୍ତି ଏଥିରେ ମୋର କିଛି କହିବାର ନାହିଁ । ଏବଂ ତାଙ୍କର ଏଇ ପରିବାର-ଅନୁମୋଦିତ ଅଧା-ଲଭ୍ ମ୍ୟାରେଜ୍‌ର ଯୋଜନା ସଫଳ ହେଉ, ଏହା ଅବଶ୍ୟ ମୋର କାମ୍ୟ ।

କିନ୍ତୁ କଥା ହେଉଛି···କଥା ହେଉଛି ଯେ ମୁଁ କାହାରିକୁ କହି ପାରିବି ନାହିଁ କୋଉଥିକି ମୋର ଭୟ । କେହି ବୁଝିବ ନାହିଁ ଯେ ସେଇଦିନୁଁ, ମାନେ ପଅରଦିନ ରାତିରୁ ମୋ ମୁଣ୍ଡରେ ବିସ୍ତୁ କାମୁଡ଼ୁଛି, ଯେଉଁଦିନ ସେ ଟୋକାକୁ ଖାଇବାକୁ ଡକା ହୋଇଥିଲା, ଏବଂ ଝିଅର ବାପ ତା'ର ସମ୍ପୂର୍ଣ୍ଣ ପରିଚୟ ଦେଇ ସାରିଲା ପରେ, ଝିଅଖଣ୍ଡିକ ଗୋଟାଏ 'ପୁନଶ୍ଚ' ଯୋଡ଼ି ଦେଲା ତା' ସାଙ୍ଗକୁ, ପରିହାସ ଛଳରେ—

"କିନ୍ତୁ ଜାଣିଛ ଅଜା, ୟାଙ୍କର ଗୋଟାଏ ଆଳୁଦୋଷ ଅଛି । ମହା ଅ-ଡିଆଲିଷ୍ଟ୍ ! କିଆଡ଼େ ସେ ପେଟ ପାଇଁ ଯାହା କରନ୍ତୁ ପଛେ କିଛି ଗୋଟାଏ

କରିବେ ଏଇ ହତଭଗା ଦେଶ ପାଇଁ । 'ସୁପ୍ରିମ' ପାର୍ଟିର ମେମ୍ବର ହୋଇନାହାନ୍ତି ସିନା, କିନ୍ତୁ ତାଙ୍କ ଆଦର୍ଶ ଛୁଇଁଚି ବାବୁଙ୍କ ମନକୁ । କେତେବେଳେ ଯେ ଉଠିକରି ଆସିବେ ଫ୍ଲୋର୍‌କୁ ଉପରକୁ, କହି ହେବ ନାହିଁ । ଏଇ ଇଲେକ୍‌ସନ୍ ତ ଗଲା, ହେଲେ ଆସନ୍ତା ଲଢ଼େଇ ବେଶି ଦୂର ନୁହେଁ, ଯାହା ଜଣା ପଡ଼ୁଛି ମୋତେ···

ଆଉ ଶୁଣିବାକୁ ଧୈର୍ଯ୍ୟ ନଥିଲା ମୋର । ଆଇଡ଼ିଆଲିଷ୍ଟ୍ ? ଆଦର୍ଶବାଦୀ ? ପ୍ରାକ୍ତନ ଡାଇରେକ୍ଟର୍ ଜେନେରାଲ୍, ପବ୍ଲିକ୍ ଏଣ୍ଡ୍ ଡିସ୍‌ପୋଜାଲ୍‌ସ୍ ଭବାନୀଶଙ୍କର ମେହେଟାଙ୍କ ଯୋଗ୍ୟ ସନ୍ତାନ, ଯାହା ପାଇଁ ବିରାଟ ପୁଞ୍ଜି ସଞ୍ଚିତ ହୋଇ ରହିଛି, ତଥା ଦିଲ୍ଲୀ ସହରରେ ଦି' ଦି'ଟା ଫ୍ଲାଟ୍ (କୋଉଠୁ ଆସିଲା ଏତେ ଟଙ୍କା ବୋଲି ପଚାରି ନାହିଁ), ଏବଂ ଯିଏ ଏମ୍. ଏ. ଇତିହାସରେ ଫାଷ୍ଟ୍ କ୍ଲାସ୍ ଫାଷ୍ଟ୍, ଅବଲମ୍ବେ ଡକ୍ଟର ବୋଲାଇବ, ଏବଂ କିଛି ଗୋଟାଏ ଉଜ୍ଜ୍ୱଳ ଭବିଷ୍ୟତରେ ପାଦ ଦେବା ତା'ର କର୍ତ୍ତବ୍ୟ, ତା'ହା ଆଇ. ଏ. ଏସ୍. ହେଉ କମ୍ପାନି ମ୍ୟାନେଜ୍‌ମେଣ୍ଟ ବା ଆଉ ଯାହା, ତାକୁ ଆଦର୍ଶବାଦୀ ହେବାକୁ କିଏ କହୁଥିଲା ? ମୀନାକୁ ଜଣା ନାହିଁ ଯେଉଁ ଘୋର ବିପଦ ଲୁଚି ରହିଛି ଏଇ ଅନାବଶ୍ୟକ ଆଦର୍ଶବାଦ ଭିତରେ । କିନ୍ତୁ କଥାଟାକୁ ବୁଝେଇ ହେବ ନାହିଁ, ସେଇ ହେଉଛି ଅସୁବିଧା । ତଥାପି ମୋର ଆଶା ଥିଲା । ଯେ ସେମିତି ହୋଇ ନ ଥିବ ପରା, ମୁଁ ଯାହା ଭାବୁଛି । ତେଣୁ ଡିନର୍ ପରେ ମୁଁ ମୀନାକୁ ପାଖକୁ ଡାକି ଆଣି ଗୋଟାଏ ପ୍ରଶ୍ନ ପଚାରିଥିଲି । କିନ୍ତୁ ମୀନା ତା'ର ଯେଉଁ ଉତ୍ତର ଦେଲା, ସେଥିରେ ମୋର ଆଶା ତୁଟିଗଲା । ପ୍ରଶ୍ନ ଥିଲା—''ୟୁ ଡୋଣ୍ଟ୍ ମିନ୍ ଅର୍‌ବିନ୍ଦ୍ 'ସୁପ୍ରିମ' ପାର୍ଟିରେ ଜଏନ୍ କରିବେ ? ମାନେ ସେଥିରେ ଗୋଟାଏ ନେତା ହେବାକୁ ଚାହିଁବ—ଏମ୍. ଏଲ୍. ଏ. ଏମ୍. ପି. କିମ୍ବା ତା'ର ଗୋଟାଏ କର୍ମକର୍ତ୍ତା ? ଆଉ ତା'ର କ୍ୟାରିଅର୍‌କୁ ଭୁଲିଯିବ ? ନା ନା, ତା' ହୋଇ ନ ଥିବ । ଅର୍‌ବିନ୍ଦ ବୁଦ୍ଧିଆ ପିଲା, ସେ ଜାଣେ ଏଇ ପଲିଟିକ୍‌ସ୍ ଜିନିଷଟା କେତେ ଖରାପ, ଅନିଶ୍ଚିତ, କେତେ ବିଶ୍ୱାସଘାତକ···।'' ସେଇଠୁଁ ମୀନା ହୋ-ହୋ ହୋଇ ହସିଉଠିଲା ମୋ କଥା ନସରୁଣୁ । ଆଉ କହିଲା—

''ଅଜା, ୟୁ ଆର୍ ଇମ୍ପସିବ୍ଲ୍ ! ତମେ ସେଇ ପୁରୁଣା ଯୁଗରେ ଅଛ । ଯେତେବେଳେ ଗୋଟାଏ ଧାରଣା ଥିଲା ଯେ ଯାହାଙ୍କ ଦେଇ ପାଠଶାଠ ହୁଏ ନାହିଁ, ତେଣୁ ଆଶା ନ ଥାଏ ଯେ କିଛି ଗୋଟାଏ ଲାଭଜନକ ଚାକିରି କି ଧନ୍ଦା ମିଳିଯିବ ତାଙ୍କୁ, କେବଳ ସେଇମାନେ ରାଜନୀତିରେ ପଶନ୍ତି । ରଙ୍ଗ୍ ! ପଣ୍ଡିତମାନେ ବି ପଲିଟିକ୍‌ସ୍‌କୁ ଯାଆନ୍ତି ଆଜିକାଲି । ଏବଂ ଯିବା ଉଚିତ । ତା' ହେଲେ ଯାଇଁ ଆମ ଦେଶର ଚେହେରା ବଦଳିଯିବ । ଅରବିନ୍ଦ କହନ୍ତି ସେଇଆ, ଆଉ ମୋ ମତ ବି ସେଇଆ ।

ତା' ଛଡା ଆଉ ଗୋଟାଏ କଥା, ଅଜା ସେ ପାର୍ଟିରେ ମିଶିବେ କି ନ ମିଶିବେ ଏଇ ପ୍ରଶ୍ନର ବିଶେଷ କିଛି ମୂଲ୍ୟ ନାହିଁ ତାଙ୍କ ପାଖରେ । ଅସଲ ହେଉଛି

ଆଦର୍ଶ, ସେନ୍ସ୍ ଅଫ୍ ଭାଲ୍ୟୁଜ୍ । ଶୁଣ, ମୋ ସାଙ୍ଗ ସବିତା ଯାହା କହୁଥିଲା (ହସହସ ହୋଇ, ଏବଂ ଆତ୍ମୀୟ ଅଜାଙ୍କ ଗୋଟାଏ ଚମତ୍କାର କଥା ଶୁଣାଇଲା ପରେ), ଦେଖିଛ ତ...କେମିତିକା ବଗୁଟ ଆଖି ଦି'ଟା ପାଇଛନ୍ତି ସେ । ମେଞ୍ଚ ଆଖି କୁଆଡ଼େ ଜଳଉଠେ ସ୍ପାର୍କଭଳି, କେଉଁ ଅନ୍ୟାୟ-ଅବିଚାରର ଖବର ପାଇଲାକ୍ଷଣି । ସତେକି ତାଙ୍କର ଶାନ୍ତି ନାହିଁ, ତା'ର ପ୍ରତିକାର ନ କରିବା ଯାଏଁ । ମନେହୁଏ ତତ୍‌କ୍ଷଣାତ୍ ଭିଡ଼ିଯିବେ ସେଠିକି, ଗୋଟାଏ ହୁଙ୍କାର ଦେଇ ।...କହୁଛି ପରା, ଅଦ୍ଭୁତ ଲୋକଟିଏ ! ମହା ଅବାଗିଆ..."

ହେଇଟି ସେ ଚୁପ୍ ହୋଇଗଲା । ଏବଂ ତା' ଈଷତ୍ ଆନତ ବଦନର ଚାହାଣି ଯେଉଁ ସୂଚନା ଦେଲା, ସେଥିରୁ ବୁଝିବାରେ ବାକି ନ ଥିଲା ଯେ ସେ କହିବାକୁ ଚାହୁଁଛି—

କହିଲ ଅଜା, ଏମିତି ଗୋଟିଏ ଲୋକକୁ ଭଲ ପାଇବ ନାହିଁ, ତାକୁ ନେଇ ଘର କରିବ ନାହିଁ ତ ଆଉ କ'ଣ ଭେଲାଭେଲା ହୋଇଥିବା ଅର୍ଡିନାରି ଲୋକମାନଙ୍କ ଭିତରୁ କାହାକୁ ବାହାହେବ ମଣିଷ, ସିଏ ଯେତେ ବଡ଼ଲୋକ ବାପର ପୁଅ କି ଫାଷ୍ଟ କ୍ଲାସ୍ ଷ୍ଟୁଡେଣ୍ଟ ହେଉ ନା କାହିଁକି ?

ଆଜି ସେ ପ୍ରଥମଥର ବୁଲି ବାହାରିଛି ସେଇ ଅଦ୍ଭୁତ ଅବାଗିଆ ଲୋକ ସାଙ୍ଗରେ, ଯାହାର ତଥାକଥିତ ଆଦର୍ଶର ଜ୍ୟୋତି ତାକୁ ମୂଳରୁ ଚମକେଇ ଦେଇ ସାରିଲାଣି । ନିଆଁ ଲଗେଇ ଦେଇ ସାରିଲାଣି ତା'ର ପିଲାଳିଆ ମନରେ । ତେଣୁ ତିଳେମାତ୍ର ସନ୍ଦେହ ନାହିଁ ଯେ, ଫେରିଆସି ସେ 'ହଁ' ଭରିବ । ଓ-କେ । କିନ୍ତୁ ମୋତେ ଭୟ ଲାଗୁଛି ଏଇ ଦୁଃସ୍ୱପ୍ନ ନେଇ, ଯେଉଁଥିରେ ଏତେ ଆଲୁଅ, ଏତେ ନିଆଁ, ଏଭଳି ପ୍ରଚଣ୍ଡ ପ୍ରତିଶ୍ରୁତି ।

ମୋତେ ଭୟ ଲାଗୁଛି କାହିଁକିନା ମୋର ମନେପଡ଼ୁଛି । ଆଉ ମନେ ପକେଇ ଦେଉଛି ହଲ୍‌ରେ ଟଙ୍ଗା ହୋଇଥିବା ଏଇ ବଡ଼ ଫଟୋ ଖଣ୍ଡିକ । ଆଖି ଖୋଲିଲାକ୍ଷଣି ସେ ଅନେଉଛି ମୋ ଆଡ଼କୁ, ତା'ର ସେଇ ଅପରୂପ ନିଜସ୍ୱ ଚାହାଣିରେ । ଉଦାସ-କରୁଣ ଚାହାଣି, ଯାହା ମୋର ଆଉ କୋଉ ପିଲାଙ୍କର ନାହିଁ । ସେ ମୋତେ ଦୋଷ ଦେଉଛି ବୋଲି କହୁ ନାହିଁ, କିନ୍ତୁ ମନେ ହେଉଛି ସେମିତି । କେମିତି ଦୋଷ ଦେବ କହନ୍ତୁ ? ମୁଁ ତାକୁ ବାଧ କରିନାହିଁ କୋଉ କଥାରେ । ସେ ସ୍ୱଇଚ୍ଛାରେ ବାହା ହେଲା ଜଗନ୍ନାଥକୁ । ଖାଲି ରାଜି ହୋଇଗଲା ବୋଲି କୁହ ନାହିଁ । ସେ ବି ପ୍ରେମରେ ପଡ଼ିଥିଲା ବୋଲି କହିଲେ ଭୁଲ୍ ହେବ ନାହିଁ । କିନ୍ତୁ ଏଇକ୍ଷଣି ସେ ଏମିତି ଭାବରେ ଅନେଉଛି ମୋ ଆଡ଼କୁ, ଯେମିତିକି ମୋର କିଛି କରିବା ଦରକାର ତା' ସରଳିଆ ଝିଅକୁ ନେଇ । ନହେଲେ ଇତିହାସର

ପୁନରାବୃତ୍ତି ହେବ । ଏବଂ ସେଇ ଦୁଃଖଦ ଇତିହାସର ସାରମର୍ମକୁ କିଏ ଜାଣିଛି ତା' ବାପା ଛଡ଼ା ?

ସେ ଫୁଲରୁ ଫୁଲରୁ ହେଉ ନ ଥିଲି ଏଇ ମୀନା ଟୋକାଟା ପରି । କୋଉ ଜଳନ୍ତା ଆଖି ଦି'ଟାକୁ ଦେଖି ନଦେଖିଲା ସେଥିରେ ଜଳପୋଡ଼ି ହୋଇ ଯିବାର ଢଙ୍ଗ ନଥିଲା ତା' ପାଖରେ । ନା, ମୋ ସୁମିତା ସେମିତି ନଥିଲା । ଆମ କୋଉଁ ଜଗନ୍ନାଥଙ୍କୁ ସୁନ୍ଦର ବୋଲି ବି କହି ହେବ ନାହିଁ । ଆଖି ଦି'ଟା ବିଶେଷ ଶ୍ରେଷ୍ଠ ନହେଲେ ମଧ୍ୟ ତାକୁ ମୁଁ କେବେହେଲେ ଝଲି ଉଠିବାର ଦେଖି ନାହିଁ । ଆଉ ତା' ନାକ, ଓଠ, କପାଳ ଇତ୍ୟାଦିରେ କେଉଁ ଆକର୍ଷଣର ଉପାଦାନ ରହିଛି ବୋଲି ଭାବିବା କଷ୍ଟ । କିନ୍ତୁ ତଥାପି ମୋର ଶାନ୍ତ, ଶିଷ୍ଟ, ସ୍ଥିରମତି ଝିଅଟା ତା' ପ୍ରେମରେ ପଡ଼ିଲା । ଯେଉଁ ଝିଅ ଏକାଧିକ ଭଲ ଭଲ ପ୍ରସ୍ତାବକୁ ନାହିଁ କରି ଦେଇଥିଲା, ଆଉ ଆମର ଧୈର୍ଯ୍ୟଚ୍ୟୁତି ଆସିଥିଲା କହିଲେ ଚଳେ, ସେ ଗୋଟାଏ ନିହାତି ସାଧାରଣ ଘରର ଏବଂ ସାଧାରଣ ଚେହେରା ବିଶିଷ୍ଟ ନୂଆ ଡାକ୍ତରି ପାସ୍ କରି ଆସିଥିବା ଟୋକା ବିଷୟରେ ରାଜି ହୋଇଗଲା ଚଟ୍‌କିନା । ତା'ର କାରଣ କ'ଣ ମୁଁ ଜାଣେ ନାହିଁ ?

କାରଣ ହେଉଛି ଆଦର୍ଶ । କାର୍ଲ୍ ମାର୍କ୍ସ୍ ।

ରୁହନ୍ତୁ । ଭାବନ୍ତୁ ନାହିଁ ଯେ ସେ କମ୍ୟୁନିଷ୍ଟ୍ ଥିଲା ଏବଂ ମୋର ସେମାନଙ୍କ ସହିତ ଯେଉଁ ବିରୋଧ (ବିଦ୍ୱେଷ ବୋଲି କହୁନାହିଁ) ରହିଛି, ତା' ସତ୍ତ୍ୱେ ମୁଁ ସେଠି ପ୍ରସ୍ତାବ ପକେଇଲି, ଓ ସୁମିତାର ପୂର୍ବରାଗକୁ ପ୍ରଶ୍ରୟ ଦେଲି । ନା, ସେ କମ୍ୟୁନିଷ୍ଟ୍ ପାର୍ଟିର ସଭ୍ୟ ନଥିଲା, କିନ୍ତୁ ସେ କାର୍ଲ୍ ମାର୍କସ୍‌ଙ୍କ ଭକ୍ତ ଥିଲା । 'ଦାସ୍ କ୍ୟାପିଟାଲ୍'ଠାରୁ ଆରମ୍ଭ କରି ମାର୍କସ୍‌ଙ୍କ ଦ୍ୱାରା ରଚିତ ତଥା ତାଙ୍କ ଜୀବନ-ଦର୍ଶନ ଉପରେ ଲିଖିତ ନାନା ମୋଟା ମୋଟା ବହି ତା' ପଢ଼ା ଘରେ ସଜା ହୋଇ ରହିଥିଲା, ତା' ଡାକ୍ତରି ଟେକ୍ସ୍‌ଟବୁକ୍ ସାଙ୍ଗରେ । ମୁଁ ନିଜେ ଦେଖିଛି ସେଇ ଅପରୂପ ସହାବସ୍ଥାନର ଦୃଶ୍ୟ, ଯେତେବେଳେ ମୁଁ ପ୍ରଥମେ ଯାଇଥିଲି କଟକର ପେଟିନ୍ ସାହିରେ ଥିବା ତା' ବସାଘରକୁ, ବାହାଘର ଆଗରୁ । କାହିଁକି ଯାଇଥିଲି କହିବି ? ପିଲାଟା ଭଲ ବୋଲି ଯେତେ ଶୁଣିଥିଲି ମଧ୍ୟ, ଏବଂ ଯେତେହେଲେ ସେ ଗୋଟାଏ ଡାକ୍ତର ହେବାକୁ ଯାଉଛି, ତେଣୁ ତା' ସ୍ତ୍ରୀ ପିଲା ଭୋକରେ ରହିବେ ନାହିଁ, ଏଇ ଆଶ୍ୱାସନାରେ ନିଜକୁ ପରିପୁଷ୍ଟ କରି ସାରିଲା ପରେ ମଧ୍ୟ ମୁଁ ଚାହୁଁଥିଲି ତାକୁ ପାଖରୁ ଦେଖିବି, ତା' ସାଙ୍ଗରେ କଥାଭାଷା ହେବି, ଆଉ ଦେଖିବି ସେ କେମିତି ଚଳୁଛି ତା' ଏକୁଟିଆ ଗୃହ ଜୀବନରେ । କାହିଁକିନା ସାଆନ୍ତଆ ହାକିମବାବୁ ତାଙ୍କ ଭିତର ମନରେ ଟିକିଏ କୁଣ୍ଠା କୁଣ୍ଠା ହେଉଥିଲେ—ମୁଁ ମାନୁଛି ସେ କଥା ଯେ

ଏଇ ସାଧାରଣ ଘରର ପିଲା, ମୋହରିରର ବାପର ପୁଅ, ଯା' ସଂସାରରେ ତାଙ୍କ ଆଗମନରେ ବଢ଼ିଥିବା ଝିଅଟା ଦୁଃଖ ପାଇବ ନାହିଁ ତ ?

ହେଲେ ସେ ବିଷୟରେ ବିଶେଷ ଚିନ୍ତା କରି ହେଲା ନାହିଁ । ଡାକ୍ତର ଟୋକାର ଏତେ ଶ୍ରଦ୍ଧା ଅଛି ଏଇ ମହାମନୀଷୀଙ୍କ ପ୍ରତି, ଏଇ ଆବିଷ୍କାର ମୋତେ କିଛି କହିବାକୁ ଚାହିଁଲା । ମୁଁ ତାକୁ ଭଲ ମଣିବି କି ମନ୍ଦ ଠିକ୍ କରି ପାରିଲି ନାହିଁ । ହେଲେ ମୁଁ ଟାଣି ହୋଇଗଲି ତା' ବହିଥାକ ଆଡ଼କୁ । ଏବଂ ମାର୍କସ୍-ସାହିତ୍ୟର ଗୋଟିଏ ଚକଚକିଆ ବନ୍ଧେଇ ବହିକୁ ସନ୍ତର୍ପଣରେ କାଢ଼ି ଆଣି ତା'ର ପୃଷ୍ଠା ଓଲଟେଇବାକୁ ଲାଗିଲି । ତା'ପରେ ଯେତେବେଳେ ଫେରି ଚାହିଁଲି ଜଗନ୍ନାଥଆଡ଼କୁ, ଦେଖିଲି ସେ ଲାଜେଇଗଲା ପରି ହସୁଛି । ଅପ୍ରତିଭ ବିନମ୍ର ହସ । ସତେକି ସେ କହୁଛି—କ୍ଷମା କରିବେ ଆଜ୍ଞା, ମୋର ଏଇ ମହାର୍ଘ ଭଲଗୁଣଟାଏ ବି ରହିଛି । ତାକୁ ଭଲଗୁଣ କୁହନ୍ତୁ ବା ଦୁର୍ବଳତା । ମୁଁ ମାର୍କସୀୟ ଆଦର୍ଶର ପୂଜାରୀ ।

ସେଇଠୁ ମୁଁ ତା' ଆଡ଼କୁ ସ୍ଥିର ଚାହାଣିରେ ଅନେଇଲି, କିଛି ପଚାରିବାକୁ ଚାହିଁଲା ପରି । ଏବଂ ସେ ମୋ ଅକୁହା ପ୍ରଶ୍ନର ଉତ୍ତର ଦେଲା—

"ମୁଁ କମ୍ୟୁନିଷ୍ଟ୍ ପାର୍ଟିର ମେମ୍ବର ନୁହେଁ ସାର୍ । କହିବାକୁ ଗଲେ ମୁଁ ତାଙ୍କ ପାଖ ମାଡ଼େ ନାହିଁ । କିନ୍ତୁ ମୋର ପିଲାଦିନୁ ଗୋଟାଏ ଗଭୀର ଶ୍ରଦ୍ଧା ରହିଛି ମାର୍କସ୍‌ଙ୍କ ପ୍ରତି । ତାଙ୍କର ଯେଉଁ ଗଭୀର ସମ୍ବେଦନା ଥିଲା ମଣିଷଜାତି ପ୍ରତି, ବିଶେଷତଃ ଖଟିଖିଆ ଗରିବଙ୍କ ପ୍ରତି..."

ମୋର ମନେହେଲା ତା'ର ମୁହଁରେ ଭାବାବେଗର ରଙ୍ଗ ଫୁଟିଉଠୁଛି । ମୁଁ ମୁଗ୍ଧ ହେଲି । ଏବଂ ମୋ ପାଟିରୁ ବାହାରିଲା—

"ହଁ, ସେଇ କହିଥିଲେ ଯେ କୋଡ଼ି ଖାଇବାରେ ସୁଖ ନାହିଁ, ଯଦି ତମ ଫେକିଲ ଭାଇଟିଏ ସେଥିରୁ ବଞ୍ଚିତ ହୋଇ ରହିଲା । ତାଙ୍କର ଇକନମିକ୍ସ ବା ପଲିଟିକ୍ସ ଭିନ୍ନ ହୋଇପାରେ, କିନ୍ତୁ ସେ ହେଉଛନ୍ତି ଅନ୍ୟତମ ମହାତ୍ମା ଗାନ୍ଧୀ ।"

ଏଥର ତା'ର ଆଶ୍ଚର୍ଯ୍ୟ ହେବାର ପାଳି । କାବା ହୋଇ ଖୁସିଟାଏ ହେଲା ପରି ଦିଶିଲା । ସତେକି ସେ ଏଭଳି ପ୍ରତିକ୍ରିୟା ଆଶା କରି ନଥିଲା ତା'ର ସମ୍ଭାବ୍ୟ ଶ୍ୱଶୁରଙ୍କଠାରୁ । ଏବଂ ମୁଁ ମଧ୍ୟ ତା'ଆଡ଼କୁ ଅନୁରୂପ ସସ୍ମିତ ଏବଂ ସସ୍ନେହ ଚାହାଣିଟିଏ ବଢ଼େଇ ଦେଲି । ଏବଂ ମନେ ମନେ ଦୋହରେଇ ହେଲି—

ତମର ଆଦର୍ଶ କାର୍ଲ ମାର୍କସ୍, ଆଉ ମୋର ଆଦର୍ଶ ମହାତ୍ମା ଗାନ୍ଧୀ । ସେଇ ଏକା କଥା । ଧନ୍ୟବାଦ, ଧନ୍ୟବାଦ ।

ଅର୍ଥାତ୍ ମୋତେ ଭଲ ଲାଗିଲା । ନିଜକୁ ଚେତାଇ ଦେବା ପାଇଁ, ଯେ ମୋର ବି ଗୋଟାଏ ଟାଣୁଆ ଆଦର୍ଶ ଥିଲା, ଯେତେବେଳେ ମୁଁ ତା'ର ବୟସର ହୋଇଥିଲି । ଏବଂ କୌଣସି ପଲିଟିକ୍ସରେ ମିଶି ନଥିଲେ ବି ମୁଁ ତାଙ୍କୁ ମୋର ଗୁରୁ ବୋଲି ମଣିଥିଲି । ତାଙ୍କର "ମାଇ ଏକ୍ସପିରିମେଣ୍ଟସ୍ ଉଇଥ୍ ଟ୍ରୁଥ୍", ମୁଁ କେଜାଣି କେତେଥର ପଢ଼ିଥିବି ମୋ ଜୀବନରେ । ତେନ୍ଦୁଲକରଙ୍କର 'ମହାତ୍ମା'ର କେଇଟା ଭଲ୍ୟୁମ୍ ମଧ୍ୟ ଅଛି ମୋ ପାଖରେ । ଯଦିଓ ତାର ପୂରା ସିରିଜ୍ ହାଇଡ ରଖି ପାରିଲି ନାହିଁ । କେଜାଣି କେମିତି ହେଳାରେ ଚାଲିଗଲା ।

ଧନ୍ୟବାଦ ମୋର ଭଣଜା ଜ୍ୱାଇଁ, ଡକ୍ଟର ଜଗନ୍ନାଥ ରାଉତ । ମୁଁ ଭାବି ନଥିଲି ତମର ଏମିତି ଗୋଟାଏ ଆଦର୍ଶ ଥିବ, ଆଉ ତା' ମିଶି ଯାଉଥିବ ମୋ ଆଦର୍ଶ ସାଙ୍ଗରେ । ଏଣିକି ମୋର କୌଣସି ଦ୍ୱିଧା ନାହିଁ, କୌଣସି ଚିନ୍ତା ନାହିଁ । ଆଇ ଆମ୍ ହାପି !

ଆଦର୍ଶର ଏଇ ପରସ୍ପର ସାହାଯ୍ୟକୃତ ସନ୍ଧିକୁ ନେଇ ମୁଁ କ'ଣ ବାନ୍ଧି ପକେଇଲି ମୋର ଝିଅଟାକୁ ? ତାକୁ ପାଲରେ ପକେଇଦେଲି ? ମୁଁ ମୋର ଆଦର୍ଶ-ବୋଧକୁ ଫେର ପାଉଛି ଏଇ ନବଯୁବକର ସାନ୍ନିଧ୍ୟରେ, ଏବଂ ଏହି ଆନନ୍ଦଟା ଲାଗି ରହିଥାଉ ମୋ ଜୀବନରେ, ଏଇ କ'ଣ ଥିଲା ମୋର ସ୍ୱାର୍ଥ ? ଏବଂ ଏଇ ସ୍ୱାର୍ଥର ଶିକାର ହେଲା ମୋର ପାଠୋଇ, ସୁକୁମାରୀ, ବୁଦ୍ଧିମତୀ ଝିଅଟା ? ମିଛ, ମିଛ···

ଡକ୍ଟର ଜଗନ୍ନାଥ ରାଉତଙ୍କ ଦିଲ୍ଲୀରେ ଥିବା ପ୍ରାସାଦ ତୁଲ୍ୟ ଘରର ବାଲ୍କୋନି ଉପରେ ଗୋଟାଏ ଢୁଲ ଚଉକିରେ ଅବସ୍ଥିତ ନାରଣବାବୁ ଅଧିକରୁ ଅଧିକ ଢୁଲିବାକୁ ଲାଗିଲେ । ଏବଂ ନିଜ ମହଲରେ ଶୋଭାପାଉଥିବା ଝିଅର ବଡ଼ ଫଟୋକୁ ପଚାରିହେଲେ । କିନ୍ତୁ କ'ଣ ପଚାରିଲେ ବୋଲି କହି ହେବ ନାହିଁ । କାରଣ ତା' ସାଙ୍ଗରେ ସେ ନିଜର ସଫେଇ ମଧ୍ୟ ଦେଉଥିଲେ । ହେଲେ ସୁନୀତାର ବିଷାଦମଧୁର ହସ ତାଙ୍କୁ ଶାନ୍ତ କରିବାକୁ ଯାଇ କେବଳ ଗୋଟିଏ କଥା କହୁଥିଲା—ଛାଡ଼ ବାପା, ଗଲା କଥା ଗଲାଣି । କିନ୍ତୁ ମୀନଟାକୁ ଟିକିଏ ଶିକ୍ଷା ଦିଅ । ତାକୁ ବାଟକୁ ନେଇ ଆସ । ତମେ କ'ଣ ଚାହଁ ଯେ ତାକୁ ବି ମୋର ଦଶା ଭୋଗିବାକୁ ହେବ ? ଯେମିତିକି ମୁଁ କୋଉ ପାପ କରିଥିଲି ଯେ ତା'ର ପ୍ରାୟଶ୍ଚିତ୍ତ ସରିନାହିଁ ଆଜିଯାଏଁ ?

ଓଃ ! ମୁଁ କ'ଣଟା କରିପାରନ୍ତି ? ନାରଣବାବୁ ଚଉକିଟାର ଢୁଲପଣକୁ ଅଟକେଇ ଦେଲେ, ରାଗିଲା ପରି । କେହି କେମିତି ବୁଝୁନାହାଁ ଏଇ ସାମାନ୍ୟ କଥାଟା, ଯେ ମୁଁ କୋଉ ବୁଦ୍ଧିରେ ମୀନାକୁ କି ତା ବାପାକୁ କହିବି ଯେ ଆଦର୍ଶ-ବୋଧକୁ ସାଧୁ ସାବଧାନ ? କହିବି ଯେ ତା'ର ଯୋଗୁଁ ସହଜ ସାଧାରଣ ଭଲ ମଣିଷର ଚେହେରା ବଦଳିଯାଏ, ସେ ଗୋଟାଏ ଇମେଜ୍ ହୋଇଯାଏ, ଏବଂ ବିଡମ୍ବ

ତାକୁ ମୂଚୁଛୁ ପାରେ ନାହିଁ ? ମାନେ ଭଲ ମଣିଷଟା ଖାଉଁକନ ହୁଏ କମ୍ପା ଚପା-ସାଗରେ କୁହୁଳା ଉଠେ, ଯେତେବେଳେ କେହି କିଛି କୁହେ, ଅଙ୍କାରେ ହେଉପଛେ, ଯେଉଁଥିରେ ତା' ଇମେଜ୍‌କୁ ବାଧା ହେବ ?···ଡ୍ୟାମ୍ ଇଟ୍ ! ନାରଣବାବୁ ବ୍ୟତିବ୍ୟସ୍ତ ହୋଇ ଉଠିଲେ ନିଜର ଅସହାୟତାକୁ ଅନୁଭବ କରି । ଏବଂ ଉଠିଯାଇ ଗ୍ଲ' ଝିଆ ଟେବୁଲ୍ ଉପରେ ଖେଳାମେଲା ହୋଇ ପଡ଼ିଥିବା ସକାଳର ଖବର-କାଗଜକୁ ହାତରେ ଆଣି ଧରିଲେ । ଏବଂ ପୁଣି ଥରେ ତା' ଉପରେ ଆଖି ବୁଲେଇଲେ, ମନଟାକୁ ଅନ୍ୟ ଆଡ଼େ ନେଇଥିବା ଲାଗି ।

···କଅଣ ହେବ ଏଇ ଦେଶର ପରିସ୍ଥିତି ? ସମସ୍ତେ କହୁଛନ୍ତି ଯେ ଦେଶର ଦରିଦ୍ରନାରାୟଣଙ୍କୁ ସୁଖୀ କରାଇବାହିଁ ତାଙ୍କ ଜୀବନର ଲକ୍ଷ୍ୟ । ସର୍ବମଙ୍ଗଳ ପାର୍ଟି ଯାହା କହୁଛି, ଜନକଲ୍ୟାଣ ମଧ୍ୟ ସେଇଆ କହୁଛି, ମଧ୍ୟ ଦଳିତବନ୍ଧୁ, ମଧ୍ୟ ସୁଙ୍ଗମ । ଅଥଚ ସରକାରଟା ଗଢ଼ା ହୋଇପାରୁ ନାହିଁ ଗତ ଇଲେକ୍‌ସନ୍ ଉତ୍ତାରୁ । ବୁଝି ହେଉ ନାହିଁ ଶେଷକୁ କିଏ କାହା ସାଙ୍ଗରେ ମିଶିବ, ଆମେ ଭାଇ-ଭାଇ ଓ ସେମାନେ ଖରାପ ବୋଲି କହିବ, ଏବଂ ଦେଶଟାକୁ ଚଳେଇବ ।

ଉଃ ! ବାବୁ. ତମେ ସମସ୍ତେ ତ ଦେଶହିତୈଷୀ, ଏବଂ ସମସ୍ତେ ତ ପ୍ରାୟ ଏକା କଥା କହୁଛ । କିଏ କାହା ଉପରେ ଜୋର ଦେଉଛି ସେକଥା ଭିନ୍ନ । ତା' ହେଲେ ସଭିଏଁ ଏକାଠି ହୋଇ ଗୋଟାଏ ସରକାର ଗଢ଼ିପାରନ୍ତ ନାହିଁ ? କାହିଁକି ଏମିତି ବାହୁଆ ପିଟା ଲଗେଇଛ ଯେ ଗତ ଦୁ'ବର୍ଷ ଭିତରେ ତିନଟା ସରକାର ଗଢ଼ା ହୋଇ ଭାଙ୍ଗିଗଲଣି ? ତେବେ ମନେହୁଏ ଯେ ସୁଷମବାଲା, ଯେଉଁମାନେ ଦିଲ୍ଲୀର ଗାଦିରେ ବସିନାହାନ୍ତି ଆଜଯାଏଁ ସେଇମାନେ ବୋଧହୁଏ ମୋଟାମୋଟି ଖାଣ୍ଟି କଥା କହୁଛନ୍ତି. ଏବଂ କିଛିଟା ଆନ୍ତରିକତା ଅଛି ସେଥିରେ । ଏବଂ ବୋଧହୁଏ ସେଇମାନେ ହିଁ ଯଥାଶୀଘ୍ର ସରକାର ଗଢ଼ିବେ । ଅଧିକାଂଶ ଲୋକେ ସେଇଆ ଗୃହାନ୍ତି ବୋଲି ମନେ ହୁଏ ।

ସେଇ ହିସାବରେ ଅରବିନ୍ଦର ବଗୃରକୁ ଯଥାର୍ଥ ବୋଲି କହିବାକୁ ହେବ । କିନ୍ତୁ ଅସୁବିଧା ହେଉଛି ଏଇ ଅବିଶ୍ୱାସୀ ଆଦର୍ଶ ଜନଟା । ବିଦ୍ୱାନ୍ ବଡ଼ଲୋକ-ପିଲାଟାର ଅହେତୁକ ମୋହ ତା' ପ୍ରତି, ତା'ର ଏଇ ଅବାଗିଆ, ଆଉ ତା'ର ଜ୍ୱାଳାମୂର୍ତ୍ତି ଆଖି ଦୁ'ଟା···

କ୍ରମଶଃ ତାଙ୍କ ଆଖି ବୁଜି ହୋଇ ଆସିଲା, ପରିସ୍ଥିତିକୁ ସହି ନ ପାରିଲା ପରି । କିନ୍ତୁ ସେ ହୁଏତ ଢୁଲେଇ ନ ପଡ଼ି ଯଥାଶୀଘ୍ର ଜାଗ୍ରତ ହୋଇ ଉଠି ଥାଆନ୍ତେ, ଯଦି ଭୃତ୍ୟ ଖୁଦିହାଲ୍ ସିଂ ରତ୍ତୁ ପରିବର୍ତ୍ତନକୁ ଲକ୍ଷ୍ୟ ନ କରି ଗୋଟାଏ ଧରାବନ୍ଧା ରୁଟିନ୍ କାମ କରି ପକାଇ ନଥାଆନ୍ତା, ଦିନଯାକ କ୍ଲବ୍‌ରେ ରହୁଥିବା ସାହେବଙ୍କର ହୁକୁମ୍ ଅନୁଯାୟୀ । ଦିନ ଏଗାରଟା ବେଳକୁ କଡ଼େଇର ଲମ୍ବା ଲମ୍ବା

ଫଁରକାମାନଙ୍କୁ ବନ୍ଦ କରି ଦେଇ ଏୟାର୍ କଣ୍ଡିସନର୍‌ଟାକୁ ହାଲୁକାରେ ଚଳେଇ ଦେଇ ନ ଥାଆନ୍ତା, ସନ୍ଧ୍ୟାବେଳକୁ 'ଅଫ୍' କରଦେବ ବୋଲି ।

ଯାହାହେଉ ନାରାୟଣବାବୁଙ୍କ ଆଖିକୁ ନିଦ ଆସିଗଲା । ଏବଂ ତାଙ୍କ ଟଗୋଳିଆ-ଗୋଳିଆ ସ୍ୱପ୍ନରେ ମାର୍କ୍‌ସ୍ ଓ ମହାତ୍ମାଗାନ୍ଧୀ ଉଭୟ ଥିଲେ, ହେଲେ ଦୁଃଖୀ ଦେଖା-ଯାଉଥିଲେ । କିନ୍ତୁ ସୁଷମବାଲା ତାଙ୍କୁ ଦମ୍ଭ ଦେଉଥିଲେ । କହୁଥିଲେ ଚିନ୍ତା ନାହିଁ, ଭୁଲିଯାଅ ଉମର ଧାମ୍ବାଦମାନଙ୍କୁ, ମାନେ ଯେଉଁମାନେ ନିଜକୁ ଉମର ଦାମ୍ବାଦ ବୋଲି କହୁଥିଲେ । ସର୍ବମଙ୍ଗଳ, ଜନକଲ୍ୟାଣ, ଓଗେର ମୁସଲ୍‌ମାନ୍ ଦଳଗୁଡ଼ାଙ୍କୁ । ଆମେ ହିଁ ଉମର ଦାମ୍ବାଦ, ଏକାଧାରରେ ଉମ ଢ଼'ଜଙ୍ଗେର, ମଧ୍ୟ ଆବଶ୍ୟକ ଅନୁଯାୟୀ ହିଟ୍‌ଲର୍ ଅଥବା ଷ୍ଟାଲିନ୍‌ର…

'ଉଠିୟେ ନାନାଜୀ ! ଲଞ୍ଚ୍‌କା ଟାଇମ୍ ହୋ ଗିୟା ।''

ନାରାଣବାବୁ ତାଙ୍କ ପାଖରେ ଠିଆ ହୋଇଥିବା ଖୁସ୍‌ହାଲ୍ ସିଂକୁ ଅନେଇଲେ । ନିଦଭଙ୍ଗା ଜଳଜଳ ଚାହାଣିରେ । କିନ୍ତୁ ନିମେଷରେ ସେ ତାଙ୍କ ଦୃଷ୍ଟି ଉପରକୁ କଲେ । ସତେକି ଝିଅଟା ତଥାପି ଅପେକ୍ଷା କରି ରହିଛି ତାଙ୍କଠୁଁ କିଛି ଶୁଣିବ ବୋଲି । ଶୁଣିବ ସେ କେମିତି ମୀନା ଝିଅଟାକୁ ଉଦ୍ଧାର କରିବେ । କାରଣ କେବଳ ଅଜାହିଁ ତାକୁ ଉଦ୍ଧାର କରି ପାରିବ, ଆଉ କେହି ନୁହେଁ । ତା'ର ବାପା ନୁହେଁ । ତା' ଆଈ ମଧ୍ୟ ନୁହେଁ ଯେ ଇତିହାସଟାକୁ ଜାଣିଛି, ହେଲେ ତାକୁ ପାସୋରି ଯାଇଛି, କିମ୍ବା ପାସୋରିଯିବା ଉଚିତ ବୋଲି ମନେ କରେ ।

…ନା, କେହି ନାହିଁ । କେବଳ ମୁଁହିଁ ପାରିବ । ଏବଂ ମୁଁ କୌଣସି ବାଟେ କହିବ ମୋ ହୁଣ୍ଡୀ ନାତୁଣୀଟାକୁ । କଅଣ କହିବ ବୋଲି ପଚାର ନାହିଁ, କିନ୍ତୁ କହିବ । ଠିକଣା କଥା କହିବ । ଭୂତପୂର୍ବ ଜିଲ୍ଲା ଜଜ୍ ନାରାୟଣ ସାମନ୍ତ ତଥାପି ଫଇସଲା କରିପାରିବ, ରାୟ ଦେଇପାରିବ । ସେ ଏମିତି ବୁଢ଼ା ହୋଇ ଯାଇ ନାହିଁ ଯେ ତା' ଜଜ୍‌ପଣିଆ କି ଯାଆନ୍ତଆ ଦାୟିତ୍ୱଶୀଳତା ଉଭେଇ ଗଲାଣି ।…

ତଥାପି ସେ ଦିନଟାଯାକ ମୁହଁ ଲୁଚେଇଲା ପରି ହେଲେ । ବିଶେଷତଃ ତାଙ୍କ ନାତୁଣୀଠାରୁ । ମୀନା ସଞ୍ଜ ଆଗରୁ ଫେରିଛି କି ନାହିଁ ସେ ବିଷୟରେ ମୁଣ୍ଡ ପୂରେଇଲେ ନାହିଁ । ଫେରିଲା ପରେ ମଧ୍ୟ ତାକୁ କିଛି ପଚରାଉଚରା କଲେ ନାହିଁ । ଖୁସି ହେଲେ ଶୁଣି ଯେ ଜ୍ୱାଇଁର ଫେରିବାକୁ ଡେରି ହେବ, ଏବଂ ପତ୍ନୀ ନଳିନୀ ଦେବୀ ମଧ୍ୟ ଫୋନ୍ କରି ଜଣାଇଛନ୍ତି ଯେ ସେ ଯେଉଁ ବାଲ୍ୟବନ୍ଧୁର ଘରକୁ ଯାଇଛନ୍ତି, ସେଇଠି ରହିଯିବେ ଏଇ ରାତିଟା ! ଉତ୍ତମ ! ତା' ହେଲେ ଯଥେଷ୍ଟ ସମୟ ମିଳିବ, ଏଇ ମହଲର କେଉଁ ଗୋଟାଏ କୋଣରେ ବସି ଭାବିବାକୁ, ପୁଣି ଭାବିବାକୁ, ଯେ ସେ କେମିତି ତାଙ୍କର ସରଳମତି, ହେଲେ ସ୍ୱାଧୀନଚେତା ନାତୁଣୀର ମୁଣ୍ଡରେ ଉପଯୋଗୀ ଉପଦେଶ ଝଞ୍ଜି ଦେବେ । ଯାହାର ମର୍ମ ହେବ ଏଇ ଯେ—

ଅରବିନ୍ଦଙ୍କୁ ପ୍ରେମ କରୁଛୁ କର । ଆଉ ତାଙ୍କୁ ବାହା ହୋଇ ପଡ଼ ଯାହା ସମସ୍ତେ ଚାହୁଁଛନ୍ତି । କିନ୍ତୁ ଯେଉଁ ଜ୍ୟୋତିର ବଳୟ ଗଢ଼ିଛୁ ତା' ଇମେଜ୍ ଗୃହ-ପାଖେ, ତାକୁ ମୂଳପୋଛ କରିଦେ, ବାହାଘର ଆଗରୁ । ନ ହେଲେ ଅସୁବିଧାରେ ପଡ଼ିବୁ । ମହା ହାନସ୍ତା ହେବୁ ।

କିନ୍ତୁ କହିବ ନାହିଁ ତା' ମାଆର ଯାହା ହୋଇଥିଲା ତା' କେମିତି କହିବ ? କିନ୍ତୁ···କିନ୍ତୁ ନକହିଲେ ସେ କାହିଁକି ବିଶ୍ୱାସ କରିବ ମୋତେ ? ସେନା କରିବ ବୁଢ଼ା ଅଜାର ଅଗଭଙ୍ଗା ବିକୃତ ବିଗ୍ରହକୁ ?

ଏହି ପ୍ରକାର ମାନସିକ ଅବସ୍ଥାକୁ ନେଇ ସେ ବାରମ୍ବାର ଖଟରେ ଗଡ଼ିଲେ, ଏଣେତେଣେ ଘୁରି ବୁଲିଲେ, ଏବଂ ଖବରକାଗଜଟାକୁ ପୁଣି ପଢ଼ିବାକୁ ଯାଇ ବିରକ୍ତ ହେଲେ ।

ସେଇଠୁଁ ସଞ୍ଜ ହେଲା ଉତ୍ତାରୁ ଏଭଳି ଗୋଟାଏ ଘଟଣା ଘଟିଲା, ଯେଉଁଥିରେ ସେ ଅତ୍ୟନ୍ତ ବିଚଳିତ ହୋଇପଡ଼ିଲେ । ଏବଂ ରାଗିଲେ ପୃଥିବୀର ଯେତେକ ଝିଅ ପିଲାମାନଙ୍କ ଉପରେ, କାହିଁକିନା ସେମାନେ ବେଶିଗୁଡ଼ାଏ ଭଲ ପାଆନ୍ତି ତାଙ୍କ ବାପାମାନଙ୍କୁ, ହେଲେ ତାଙ୍କୁଇ ଦୋଷ ଦିଅନ୍ତି ଅଯଥାରେ ।

ହେଲା କ'ଣ କି ଗୋଟାଏ ଗୋଲ୍ ଜହ୍ନ ଉଠିଥିଲା ସେଦିନ ଆକାଶରେ । ଏବଂ ନାରଣବାବୁ ଖୁସି ହେଉଥିଲେ ଯେ ତା'ର ତୋଫା ଆଲୁଅ ବୋଧହୁଏ ତାଙ୍କୁ ପ୍ରୋତ୍ସାହିତ କରିବ ତାଙ୍କ ବକ୍ତବ୍ୟକୁ ସଜାଡ଼ିବା ପାଇଁ । କିନ୍ତୁ ଦୁର୍ଭାଗ୍ୟ ଯେ ଯେଉଁ ଜହ୍ନଟା ଖିଲିଖିଲି ହୋଇ ହସି ଉଠିଥିଲା ମାନାପରି, ସିଏ ହଠାତ୍ ପାଉଁଶିଆ ଦିଶିଲା । କେଉଁ ଅକାଳ ମେଘ ଜରିଗଲା ତା' ଦେହରେ, ଆଉ ତା' ଶିଖାକୁ ନଷ୍ଟ କରିଦେଲା । ସିଏ ଦେଖାଗଲା ସେଦିନର ସୁମାପରି ।

ଏଇ ଛୁଞ୍ଚକୁ ସେ ଆସିଥିଲା ଆଗନ୍ତୁକ ବାପାର ଅନୁରୋଧ କ୍ରମେ । ଏବଂ ଝିଅଟା ଖଙ୍ଗିପଡ଼ିଲା ତା' ବାପା ଯେତେବେଳେ ପଚାରିଲା—'ସୁମା କ'ଣ ହୋଇଛି ତୋର, କହିଲୁ । ମୁଁ କହୁନାହିଁ ତୁ ଶୁଖିଯାଇଛୁ ବୋଲି, କିନ୍ତୁ ତୋ ମୁହଁଟା ଶୁଖିଲା ଦିଶୁଛି ସବୁବେଳେ । ତୁ ଆଉ କାହାକୁ ଠକେଇପାରୁ, କିନ୍ତୁ ତୋ ବାପାକୁ ଠକେଇ ପାରିବୁ ନାହିଁ—ବୁଝିଲୁ ?'

କଳକଳ ହୋଇ ଦିଶିଯାଉଛି ତା' ମୁହଁ, ଏଇ ପାଂଶୁଳ ପରିହତ ଜହ୍ନଟା ପରି । ଉତ୍ତର ଦେବ କ'ଣ, ସେ ଭୁସ୍‌କିନା କାନ୍ଦି ପକାଉଛି । ଅନେକ ଦିନର ଚପା ଲୁହକୁ ଖଲାସ୍ କରିଦେଲା ପରି ତା'ର ପରମ ଶୁଭାକାଙ୍କ୍ଷୀ ଅତି ଆଦରର ବାପା ପାଖରେ । ଆଉ ଥଙ୍ଗଥଙ୍ଗ ହୋଇ କହୁଛି ତା' କାନ୍ଦ ଭିତରେ—

"ବାପା, ମାନୁଛୁ ଯେ ଆଉ କାହାକୁ ଠକେଇବା ଖରାପ । କିନ୍ତୁ ମଣିଷ କ'ଣ ନିଜକୁ ନିଜେ ଠକାଏ ନାହିଁ ? ତେଣୁ ଯଦି ତମକୁ କିଏ ଚେତାଇ ଦିଏ ସେକଥା, ସିଏ କ'ଣ ଏମିତି ଗୋଟାଏ ଖରାପ କାମ କଲା ଯେ ତମେ ତାକୁ ଛିଃ କରି ଦୂରେଇ ଦେବ । ତାକୁ ବାରକଥା କହିବ, ଆଉ ତା' ପାଖ ମାଡ଼ିବ ନାହିଁ ?"

କହୁଛି, ଆଉ କାନ୍ଦୁଛି । ପ୍ରଥମେ ତ ବୁଝିହେଲା ନାହିଁ, ସେ କ'ଣ କହୁଛି । କିନ୍ତୁ ଧୀରେ ଧୀରେ ବୁଝିଲି । ହେଲେ ବୁଝେଇ ପାରିଲି କୋଉଠୁଁ ? ତା'ର ମୁଣ୍ଡକୁ ଆଉଁସି ଦେବା ଛଡ଼ା ମୁଁ ଆଉ କିଛି କରିପାରିଲି ନାହିଁ ।

ବେଶ୍ ବୁଝିନେଲି, ବାହାଘର ପରଠୁଁ ତା'ର ଏଇ ତିନିବର୍ଷର ଇତିହାସ । ଯେଉଁ ସୁମିତା ସାମନ୍ତ ତା' ଭାବୀ ସ୍ୱାମୀର ପ୍ରେମରେ ପଡ଼ିଥିଲା, ମାନେ ତା' ଆଦର୍ଶର ପ୍ରେମରେ ପଡ଼ିଥିଲା (ମୋର ମନେଅଛି, ଯେତେବେଳେ ତା' ସାନଭଉଣୀ ପୁନି ଥଟ୍ଟାରେ କହିଲା ଯେ ଭିଣୋଇଙ୍କର ସବୁ ଭଲ ଯେ, ହେଲେ ସେ ଟିକିଏ ଗେଧେଇା, ସୁମି ତା'ର ଆସୁ ଉତ୍ତର ଦେଇଥିଲା—ଗେଧେଇା ନୁହେଁ, ମାଇଁ ଡିଅର୍ ସିଷ୍ଟର୍, ସେ ହେଉଛନ୍ତି ଓଜନିଆ, ତାଙ୍କ ମଗଜଟା ହାଲୁକା ନୁହେଁ, ସାଧାରଣଲୋକଙ୍କ ପରି···) ସେଇ କେମିତି ତାକୁ ଏକ ସର୍ବସାଧାରଣ ଆତ୍ମପ୍ରତାରକ ମଣିଷ ହିସାବରେ ଗଣି-ନେଲା, ହେଲେ ଜିନିଷଟାକୁ ସ୍ୱାଭାବିକ ବୋଲି ଷୋଳଅଣା ମାନି ନେଇ ପାରିଲା ନାହିଁ, 'ଲୁଚୁଛି ନା ଗୋଡ଼ ଦି'ଟା ଦିଶୁଛି' ବୋଲି ନକହି ରହିପାରିଲା ନାହିଁ, ଏବଂ ତା'ର ଫଳ ଭୋଗିଲା, ତା'ର ମର୍ମନ୍ତୁଦ ଇତିହାସ ।

କାହିଁକନା ଜଗନ୍ନାଥ ପ୍ରଥମେ ବଡ଼ଲୋକ ହେବାକୁ ସ୍ଥିର କଲା । ହେଲେ ସେହି ଉଦ୍ଦେଶ୍ୟ ନେଇ ସେ ଯାହା କିଛି କଲା, ଯାହା ଊଣାଅଧିକେ ପ୍ରତ୍ୟେକ ଉଚ୍ଚାଭିଳାଷୀ ନାଗରିକ କରିଥାଏ, ସେଥିରେ ଅଣ-ଆଦର୍ଶ ଗନ୍ଧେଇଲା ଆମ ସୁମିକୁ । ନା, ସେ ମାର୍କସ୍‌ଙ୍କୁ ଭୁଲି ନଥିଲା । ମୁଁ ନିଜେ ଶୁଣିଛି ସେ ଯେଉଁପ୍ରକାର ଭାଷଣ ଦିଏ ତା' ଡ୍ରଇଂରୁମ୍‌ରେ, ବିଭିନ୍ନ ବୁର୍ଜ୍ୱା ବନ୍ଧୁମାନଙ୍କ ଆଗରେ, ବସ୍ତି ବାଲାଙ୍କ ପ୍ରତି କରାଯାଉଥିବା ଅନ୍ୟାୟଠାରୁ ଆରମ୍ଭ କରି ସରକାରଙ୍କ ଉଦାରୀକରଣ ନୀତି ଯାଏଁ, ଯାହା ସୁସ୍ପଷ୍ଟ ସୂଚନା ଦିଏ ତା'ର ବାମପନ୍ଥୀ ଆଦର୍ଶର । ଏବଂ ମୁଁ ଖୁସି ହୁଏ ସୋଫା-ସୀନ ଅନ୍ୟତମ ଶ୍ରୋତାଟିଏ ହୋଇ । ଖୁସି ହୁଏ ଯେ ସୋଫାର ରଙ୍ଗରୂପ ଯଥେଷ୍ଟ ବଦଳି ଯାଇଥିଲେ ମଧ୍ୟ ଆମ କ୍ୱାର୍ଟରର ମୌଳିକ ରଙ୍ଗରୂପ ବଦଳି ନାହିଁ । ଧନ୍ୟବାଦ ! କିନ୍ତୁ ସୁମି ଯେ ସେଇଠି ବସି କାହିଁକି ଏମିତି ହସୁଛି ମନକୁ ମନ, ବୁଝିହୁଏ ନାହିଁ ।

କିନ୍ତୁ ହୁଣ୍ଡୀ, ତୁ ସେତିକିରେ ରହିଗଲୁ ନାହିଁ କାହିଁକି ? ପରିହାସରେ ହେଉ ପଛେ, ତାକୁ କାହିଁକି ପରେ ଚେତାଇ ଦେବାକୁ ମନହୁଏ ତୋର, ଯେ ତା'ର ଆଇଡ୍ୟାଲ୍‌ଗୁଡ଼ାକ ଫମ୍ପା ? ଯଥା—ସେ ଇନ୍‌କମ୍‌ଟ୍ୟାକ୍ସ ରିଟର୍ଣ୍ଣରେ ଯାବତୀୟ ମିଛ

ହିସାବ ଦେଉଛୁ, କର୍ପୋରେସନ୍‌ବାଲଙ୍କୁ 'ମିଠେଇଟିଆ' ଦେଉଛୁ ନୂଆ ଘରର ପ୍ଲାନ୍‌ଟା ପାସ୍ ହୋଇଯିବ ବୋଲି, ସେଥିରେ ନାନା ଆଇନ୍-ବିରୋଧୀ ଜିନିଷର ସୂଚନା ଥିଲେ ମଧ୍ୟ, ରୋଗୀମାନଙ୍କୁ ମିଛୁଟାରେ ନାନା ପରୀକ୍ଷାନିରୀକ୍ଷା କରେଇବାକୁ ବାଧ୍ୟ କରୁଛୁ ଯେହେତୁ ନିର୍ଦ୍ଦିଷ୍ଟ ଲାବୋରେଟୋରୀ ସାଙ୍ଗରେ ତା'ର ଗୋଟାଏ ଲାଭଜନକ ବ୍ୟବସ୍ଥା ରହିଛି, ଇତ୍ୟାଦି, ଇତ୍ୟାଦି ।

କ୍ରମଶଃ ଜଗନ୍ନାଥ ତାକୁ ପରିହାସ ବୋଲି ମାନି ନେଇ ପାରିଲେ ନାହିଁ । ଧରି ନେଲା ଯେ ଇଏ ହେଉଛି ଉପହାସ । ସୁମା ଦେଖେଇ ହେଉଛି ତା'ର ନୈତିକତା । ସତେକି ଭ୍ରଷ୍ଟ ସମାଜରେ ତିଷ୍ଠି ରହିବାର ଏହି ସବୁ ସର୍ବସମ୍ମତ କାଇଦାକୁ ଦୁର୍ନୀତି କୁହାଯିବ ! ଆଉ ତା'ର କିଛି ହେଲେ ସମ୍ପର୍କ ଅଛି ସାମ୍ୟବାଦର ଆଦର୍ଶ ସାଙ୍ଗରେ ! ସେହେତୁ ସେ ତା'ର ପ୍ରତିଶୋଧ ନେଲା । 'ଓଜନିଆ' ସିଷ୍ଟମ୍ ଲେକଟା ତା' ପତ୍ନୀକୁ କଥାକଥାକେ ବାପଘର ଲୋକମାନଙ୍କ କାରବାରକୁ ନେଇ ଏମିତିଏମିତି କହିଲା, ଯେଉଁଥିରେ ସୁମାକୁ ବାରମ୍ବାର କାନ୍ଦିବାକୁ ପଡ଼ିଲା ।

ମୋ'ଟ ଉପରେ ଗୋଟାଏ ବଡ଼ ଫାଟ ପଡ଼ିଗଲା ଦି'ଜଣଙ୍କ ଭିତରେ । ଏବଂ ସେଇ କ୍ରମବର୍ଦ୍ଧିଷ୍ଣୁ ଦୂରତ୍ୱକୁ ସହିପାରିଲା ନାହିଁ ମୋ ଝିଅଟା । ଆଉ ଆଜି ଭାଙ୍ଗିପଡ଼ୁଛି ଏମିତି, ତା' ବାପା ଆଗରେ, ଟିକିଏ ସହାନୁଭୂତି ପାଇଲାରୁ ।

ମୁଁ ତା' ମୁଣ୍ଡକୁ ଆଉଁସିବାକୁ ଲାଗିଲି । ଏବଂ କହିଲି, ମୁଁ ଜାଣେଲେ, ଜାଣେ । କିଛି ଶୁଣିଛି ତୋ ମାଆଠାରୁ, ଆଉ କିଛିଟା ଅନୁମାନ କରିଛି । ଏମିତି ହୁଏ । ହେଲେ ଇଏ ଚାଲିବ ନାହିଁ, ରହିବ ନାହିଁ ବେଶୀଦିନ, ମୋତେ ବିଶ୍ୱାସ କର । କହିଲି ନାହିଁ ଯେ ତୋ ବାପାର ବି ଗୋଟାଏ ମହାନ୍ ଆଦର୍ଶ ଥିଲା । ତା' ନାଆଁ ଗାନ୍ଧୀବାଦ । କିନ୍ତୁ ତୋ ମାଆ ସେଥିରେ ମୋହିତ ହୋଇ ଯାଇ ନଥିଲା । ତେଣୁ ମୁଁ ସେଇ ଆଦର୍ଶ ସାଙ୍ଗରେ ସାଲିସ୍ କରେ କି ନକରେ, ସେଥିରେ କିଛି ଅସୁବିଧା ହେଲା ନାହିଁ ଆମ ଭିତରେ । କିନ୍ତୁ ତୁ ଗୋଟାଏ ନିହାତି... ସ୍ୱର୍ଣ୍ଣକାତର ? ଯତ୍ୟାନନ୍ଦ ?) ଝିଅଟା । ସେଇଲାଗି ତୋ'ର ଏଇ ଦଶା । ଶେଷକୁ ମୁଁ ରାଗିଲି ତା' ଉପରେ, ଆଉ ଯେତେକ ବାପସୁଆଗୀ ଝିଅମାନଙ୍କ ଉପରେ । ନିଜେ ଭୁଲ୍ କରିବେ, ଆଉ ଆମକୁ କଷ୍ଟ ଦେବେ ଏମିତି ...

ସେଦିନ ଡିନର୍‌ଟେବୁଲ୍‌ରେ ନାରାଣବାବୁ ଅତ୍ୟଧିକ ଗମ୍ଭୀର ଦେଖାଯାଉଥିଲେ । ତାଙ୍କର ମନେ ହେଲା ମୀନା ଆଜି ବେଶୀଗୁଡ଼ାଏ ଜୋକ୍ ଶୁଣାଉଛି, ଆଜି ତା' ବାପା ଜଗନ୍ନାଥ ବେଶୀ ଗୁଡ଼ାଏ ହସୁଛି, ତାକୁ ଉପଭୋଗ କଲା ପରି । ଝିଲ୍‌ମିଲ୍, ବାପଝିଅ ଦି'ଜଣଯାକ !

ନାରଣବାବୁ ଥରେ ହେଲେ ଜଗନ୍ନାଥବାବୁଙ୍କୁ ପଗ୍ଠରିବାକୁ ଭରସି ପାରିଲେ ନାହିଁ, ଯେ କଅଣ ହେଲା ସେ ବିଷୟରେ । କାରଣ ତାଙ୍କର ସନ୍ଦେହ ନଥିଲା ଯେ ମୀନା ହିଁ ଜିତିଥିବ । ସେଇଠୁଁ ଅଜାର ଆଉ କିଛି କରିବାର ନଥିବ । ହେଲେ ସୁମା ଝିଅଟା ପୁଣି ଆସି ଠିଆହେବ ତାଙ୍କ ଆଗରେ, ଆଉ କହିବ—

ମୁଁ ଏଇଆ ହେବ ବୋଲି ଜାଣିଥିଲି, ଜାଣିଥିଲି ଯେ ତମେ ପାରିବ ନାହିଁ । ଝିଅ ବେଳକୁ ତ ପାରି ନଥିଲ, ଆଉ ଏଇକ୍ଷଣି ପାରିବ ତମ ନାତୁଣୀ ବେଳକୁ !

ହେଲେ ନାରଣବାବୁ ହାର୍ ମାନିଲେ ନାହିଁ । ଏବଂ ସେଦିନ ରାତିରେ ସେ ଗୋଟାଏ ଟାଣୁଆ ପ୍ରଶ୍ନ ପଚାରିଥିଲେ ଝିଅକୁ—ଆଇ ଆମ୍ ସରି, ମୁଁ ଏମିତି ପଚାରୁଛି ବୋଲି । କିନ୍ତୁ ଜଗନ୍ନାଥ ତୋତେ ଏତେ ଦୂରେଇ ଦେଇଥିଲା ଯଦି, ତା' ପରେ ତୋ' ପେଟରେ ପିଲା ରହିଲା କେମିତି ? କିନ୍ତୁ ସୁମା ତା'ର ଗୋଟାଏ ଠିକଣା ଓ ନିର୍ମମ ଜବାବ୍ ଦେଇଛି ବୋଲି ତାଙ୍କର ମନେ ହେଲା । କହିଲା—ମଲା ? ଏତିକି ବୁଝିପାରୁ ନାହଁ ? ତମ ଝିଅର କଅଣ ଏମିତି ଶକ୍ତି ନାହିଁ ଯେ ଗୋଟାଏ ଚ୍ୟାଲେଞ୍ଜ୍ ଗ୍ରହଣ କରିବ, ଆଉ ଜିତିବ ସେଥିରେ ? କିନ୍ତୁ ଦେଖିଲ ତ, ଜିତିଲା ପରେ ମୁଁ କେମିତି ସବୁକିଛି ଛାଡ଼ିଛୁଡ଼ି ଦେଇ ପଳେଇଗଲି ?

...ହଁ, ତୁ ହଠାତ୍ ଚାଲିଗଲୁ । କେତେଘଣ୍ଟା ପରେ କଅଣ ଗୋଟାଏ ଗଣ୍ଡ-ଗୋଳ ହେଲା, ଡାକ୍ତର ବି ଧରି ପାରିଲେ ନାହିଁ ସହଜେ, ଆଉ ତୁ ଆଖି ବୁଜି ଦେଲୁ, ଆଗରୁ ଟିକିଏ ହେଲେ ସୂଚନା ନ ଦେଇ । ମୁଁ ନୂଆ ନାତୁଣୀକୁ ଦେଖିବାକୁ ଆସିଥିଲି ଯେ, ଦେଖିଲି ତୋର ଚିରନିଦ୍ରାରେ ଶୋଇଥିବା ମୁହଁ । କେତେ ଶାନ୍ତ ଦିଶୁଥିଲା ମ, ତୋର ସେଇ ଉଦାସିଆ ମୁହଁଟା !

ଆଉ ଦେଖିଲି କେମିତି ଜଗନ୍ନାଥ କାନ୍ଦୁଛି ଅନର୍ଗଳ । ଲୁହର ଛୁଟିଣ ମରିବାକୁ ନାହିଁ । କୋଉ ବୁଡ଼୍‌ବକ୍ ତାକୁ ଦେଖିଲେ କହିବ ଏଇକ୍ଷଣି, ଯେ ସେ ତା' ଝିଅର ମାଆକୁ ଭଲପାଉ ନଥିଲା ? ତାକୁ ଦୂରେଇ ଦେଇଥିଲା ତା' 'ଇଗୋ'ରେ ଆଞ୍ଚ ଲାଗିଲାରୁ ?

ସୁମା ! ଭୁଲିଯା ହେଇ ସବୁ ପୁରୁଣା କଥା । ସବୁ ଭଲ, ସବୁ ସୁନ୍ଦର ଏଇକ୍ଷଣି । ପ୍ରଖ୍ୟାତ ହାର୍ଟ୍ ସ୍ପେଶାଲିଷ୍ଟ୍ ଡାକ୍ତର ଜଗନ୍ନାଥ ରାଉତଙ୍କ ସ୍ମାର୍ଟ୍ ଏବଂ ସୁଶିକ୍ଷିତା ଝିଅ ଜଣେ ସମ୍ଭ୍ରାନ୍ତ ବଡ଼ଲୋକ ବାପର ବ୍ରିଲିୟାଣ୍ଟ୍ ପୁଅକୁ ବାହା ହେବାକୁ ଯାଉଛି । ଏବଂ ସ୍ୱଭାବତଃ ଆନନ୍ଦରେ ଉଚ୍ଛୁଳା ଉଠୁଛି ଝିଅଟା । ହେଲା ଏବେ ତା' ସାଙ୍ଗକୁ ସେ ମଧ୍ୟ ପ୍ରେମରେ ପଡ଼ିଛି ଅରବିନ୍ଦର ଆଦର୍ଶ ଢାଙ୍ଗରେ, ଯାହାର ପ୍ରକୋପରେ କେଉଁ ଗୋଟାଏ ଜ୍ୟୋତି ଉଡୁର ଆସେ କି ନାଆଁ ବାହାରେ ତା'ର ବଡ଼ ବଡ଼ ଆଖିରୁ, କିନ୍ତୁ ସେଥିରେ ଏତେ ଚିନ୍ତା କରିବାର କିଛି ଅଛି କି ?

ଭୁଲ ଯା' ସୁନା ! ଭୁଲ ଯା' ଆଉ ମୋତେ ଭୁଲିଯିବାକୁ ଦେ' ସେଇ ପୁରୁଣା ଦୁଃଖଦ ଇତିହାସ, ଯାହାର ଚକ୍ରବର୍ତ୍ତି ବୃଦ୍ଧି ନାହିଁ କିଛି । ଯେମିତିକି କାଲି ସକାଳେ ମୁଁ ନିଜକୁ ହସଖୁସି ହୋଇପାରିବି ମୋ ଗେହ୍ଲା ନାତୁଣୀଟା ସାଙ୍ଗରେ ! ଏଇ ଥିଲା ନାରଣବାବୁଙ୍କର ବ୍ୟାକୁଳ ପ୍ରାର୍ଥନା, ଆଖିକୁ ନିଦ ଆସିଯିବା ପୂର୍ବରୁ ।

...ସବୁ ଦିନର ସକାଳ ଅଛି । ଏବଂ ପ୍ରତ୍ୟେକ ପ୍ରାର୍ଥନାର କିଛି ନା କିଛି ଫଳ ମିଳିଥାଏ । ତେଣୁ ନାରଣବାବୁଙ୍କ ମୁହଁର ରଙ୍ଗ ଅଳ୍ପବହୁତ ଫିଟି ଆସିଥିଲା ତା' ପରଦିନ ସକାଳେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ଭାବିବା କଥା ଯେ ସେଇ ଜ୍ୟୋତି କେତେ ସମୟ ଯାଏଁ ରହି ପାରିଥା'ନ୍ତା । ଯାହାହେଉ ସେ ସକାଳୁଆ ଭଲ ଲାଗିବା ଭାବକୁ ନିଠେଇ ନିଠେଇ ଅନୁଭବ କଲେ । ଚା' କପ୍‌ରେ ଧୀରେ ଧୀରେ ଚୁମୁକ ଦେବା ସହିତ । ଏବଂ ଯେହେତୁ ପରିବାରର ଆଉ କେହି ଏତେ ସହଲ ଉଠନ୍ତି ନାହିଁ, ସେ ସବୁଦିନ ପରି ସକାଳର ଖବରକାଗଜଟାକୁ ମଧ୍ୟ ଧୀରେ ସୁସ୍ଥେ ପଢ଼ିବାର ସୁଯୋଗ ପାଇଲେ ।

ଏବଂ ହେଡ୍‌ ଲାଇନ୍‌ଟାକୁ ଦେଖି ତାଙ୍କ ଚକ୍ଷୁ ବିସ୍ଫାରିତ ହୋଇଗଲା ।— ବାଃ ! ସରକାର ଗଢ଼ା ହେବାକୁ ଯାଉଛି ତା' ହେଲେ ? କେମିତି ଏମିତି ହେଲା ? ବିସ୍ମିତ ହୋଇ ନାରଣବାବୁ ସମ୍ବାଦଟାକୁ ଆମୂଳଚୂଳ ଜାଣିବାକୁ ଚାହିଁଲେ । ଯେମିତିକି ଏହି ଚମତ୍କାରିତାର ଭେଦ ତାଙ୍କୁ ଯଥାବଧି ଆନନ୍ଦ ଯୋଗାଇବ, ଚା' ପାନର ଉପଭୋଗ ସାଙ୍ଗକୁ ।

...ସର୍ବମଙ୍ଗଳର ଏକତୃତୀୟାଂଶ ଏମ୍. ପି. ଭୂସ୍କନା ଦଳ ଛାଡ଼ିଦେଲେ ? ଏବଂ କହିଲେ କଅଣ ନା ପାର୍ଟି ତା'ର ମହାନ୍ ପରମ୍ପରା, ଅର୍ଥାତ୍ ସର୍ବଜନଙ୍କ ମଙ୍ଗଳ ସାଧନର ଆଦର୍ଶ ଭୁଲିଗଲାଣି, ଯେହେତୁ ସେମାନଙ୍କର ଦଳତ୍ୟାଗ ଛଡ଼ା ଅନ୍ୟ ଉପାୟ ନଥିଲା । ଏବଂ ମଜା କଥା ହେଉଛି ଯେ ସେଥିର ଅଗ୍ରଣୀ ହେଉଛନ୍ତି ପୂର୍ବତନ ମନ୍ତ୍ରୀ ଧନୁର୍ଦ୍ଧର ବଯାକ୍, ଯାହାଙ୍କ ନାଆଁରେ ମହା ଲାଞ୍ଚଖୋରର ମାମଲା ଦାଏର୍ କରାଯିବ ବୋଲି ଧମକ ଦେଉଥିଲେ ଜନକଲ୍ୟାଣବାଲା । ବର୍ତ୍ତମାନ ସେ ମିଶିବେ ତାଙ୍କର ସାଙ୍ଗରେ !

ହେ ଭଗବାନ ! ଦଳିତ ବନ୍ଧୁଙ୍କର ବରିଷ୍ଠ ନେତା କୃଷ୍ଣମାଚାରୀ କହୁଛନ୍ତି କ'ଣ ନା ତାଙ୍କ ପାର୍ଟିର ଅଧ୍ୟକ୍ଷ ଗଣପତି ବର୍ମା ଫାସିଷ୍ଟ୍ ହୋଇ ଗଲେଣି ? ଯେଉଁ ଗଣପତି ତାଙ୍କର ଅନେକ ଦିନର ବନ୍ଧୁ ଓ ସହକର୍ମୀ, ଏବଂ ଦିହେଁ ଏକାଠି ପଶା ପେଲୁଥିଲେ 'ଜରୁରି ଅବସ୍ଥା'ର ଜେଲ୍‌ରେ ? କୃଷ୍ଣମାଚାରୀ ବି କୁଆଡ଼େ ମିଶିଯିବେ ଜନକଲ୍ୟାଣରେ, ତାଙ୍କର ସାତ ଆଠଜଣ ଗ୍ରୁପ୍‌ଙ୍କୁ ଧରି ।

ପୁଣି ଯୁଗନବାଲା ଯେଉଁ ଗୋଟାଏ ରାଜ୍ୟରେ ରାଜୁତି କରୁଛନ୍ତି, ସେଠି କୁଆଡ଼େ ତାଙ୍କର ଗୋଟାଏ ମନ୍ତ୍ରୀ ବଡ଼ବଜାରରେ ମାଡ଼ ଖାଇଲେଣି । ଏବଂ ଜନ-

କଲ୍ୟାଣର ଭୃଙ୍ଗ ନେତା ଜୟଦେବ ବ୍ରହ୍ମଗୁପ୍ତ ତାଙ୍କୁ ଛୁଗୁଡ଼ଲେଉଛନ୍ତି । କହୁଛନ୍ତି ଯେ ସୁଷମର ଅନ୍ୟନାମ ବିଷମ ।

ହେଲେ ସୁଷମର ନାସ୍ତିନେତ୍ରୀ ପ୍ରିୟମ୍ବଦା ଶାସ୍ତ୍ରୀଙ୍କର କହିବା କଥା ଯେ ଜନକଲ୍ୟାଣର ଧନବଳ ବଢ଼ିଗଲଣି ସର୍ବମଙ୍ଗଳର ବାହୁବଳଠାରୁ । ଯେହେତୁ ସେମାନେ ସାହସ ପାଇଛନ୍ତି କହିବାଲାଗି, ଯେ ସେମାନେ ସଂଖ୍ୟାଗରିଷ୍ଠ ହେଲେଣି, ତେଣୁ ରାଷ୍ଟ୍ରପତି ତାଙ୍କୁହିଁ ଡାକିବାକୁ ବାଧ୍ୟ, ସରକାର ଗଢ଼ିବା ଲାଗି । କିନ୍ତୁ ଅପେକ୍ଷା କର ଭାଇ ଓ ଭଉଣୀମାନେ, ସୁଷମର ବେଳକାଳ ଆସୁଛି । ଅତି ଶୀଘ୍ର ! କାରଣ ଆମେହିଁ ଜାଣିଛୁ ଏ ଦେଶର ଇତିହାସ କଅଣ, ସଂସ୍କୃତି କଅଣ, ଏବଂ ତା'ର ଆଦର୍ଶ କଅଣ ହେବା ଉଚିତ । ସେଇ ହେଉଛି ଆମର ବଳ । ଜୟହିନ୍ଦ୍ ।…

ବିଭ୍ରାନ୍ତ ନାରଣବାବୁଙ୍କୁ କେଜାଣି କାହିଁକି ହସ ମାଡ଼ିଲା ହଠାତ୍ । ସେଇଠୁଁ ସେ ହସିବାକୁ ଆରମ୍ଭ କଲେ । ପ୍ରଥମେ ମୁରୁକି ମୁରୁକି ହସିଲେ, ତା' ପରେ ସଶବ୍ଦରେ । ଏବଂ ଦିବ୍ୟ ହସି ଚାଲିଥିଲେ ଏକୁଟିଆରେ, ଯାହାର ଛାପ ସୁଦୃଶ୍ୟ ହେଉଥିଲା ତାଙ୍କ ମୁହଁରେ । ଯେତେବେଳେ ସେ ପହଞ୍ଚିଲେ ଯାଇଁ ବ୍ରେକ୍‌ଫାଷ୍ଟ୍ ଟେବୁଲ୍‌ରେ, ଏବଂ 'ହ୍ୟାଲୋ ଡାର୍ଲିଙ୍ଗ୍, ହାଓ ଆର୍ ୟୁ ?' ବୋଲି ସମ୍ବୋଧିଲେ ତାଙ୍କ ନାତୁଣୀକୁ ।

ମୀନାର ପାଟି ମେଲା ହୋଇଗଲା । ଏଭଳି ଡାକ ତାଙ୍କଠୁଁ ହୁଏତ ଶୁଣିବାକୁ ମିଳୁଥିଲା ଅନେକ ଅନେକ ଦିନ ତଳେ । କିନ୍ତୁ ଏବେକାର ହାଣ୍ଡିମୁହାଁ ଅଜାଙ୍କଠାରୁ ମିଳିବ ବୋଲି ଆଦୌ ଆଶା ନ ଥିଲା ।

ଡକ୍ଟର ରାଉତଙ୍କର ଭ୍ରୂରୁ ବି ସାମାନ୍ୟ ଊର୍ଦ୍ଧ୍ୱକୁ ଉଠିଗଲା । ସେ ଶାଶୁ-ଶ୍ୱଶୁରଙ୍କୁ ସାଦର ନିମନ୍ତ୍ରଣ କରି ଅଣାଇଥିଲେ ଦିଲ୍ଲୀକୁ, ମୀନାର ବାହାଘର ବିଷୟରେ ତାଙ୍କଠାରୁ ଯଥାବିଧି ପରାମର୍ଶ ନେଇ କଥାଟାକୁ ପକ୍କା କରିବା ଲାଗି । କିନ୍ତୁ ଦେଖିଲେ ଯେ ଯଦିଓ ଚଞ୍ଚଳା ଓ ହାସ୍ୟପ୍ରବଣା ଶାଶୁ ଯେମିତି ଥିଲେ ସେମିତି ଅଛନ୍ତି, ଗମ୍ଭୀର ପ୍ରକୃତିର ଶ୍ୱଶୁର ମହାଶୟ ଅତ୍ୟଧିକ ଗମ୍ଭୀର ଦେଖାଯାଉଛନ୍ତି । ଏପରିକି ମନେ ହେଉଛି ସେ କଷ୍ଟ ପାଉଛନ୍ତି । ଦିଲ୍ଲୀର ଜଳବାୟୁ ଯୋଗୁଁ ହେଉ (କିନ୍ତୁ ସେପ୍‌ଟେମ୍ବର ମାସର ଜଳବାୟୁ କଅଣ ଏମିତି ବାଧୁଛି ତାଙ୍କୁ ?) କିମ୍ବା… କିମ୍ବା ଆଉ କଅଣ ? ଯାହାହେଉ ଆଜି ସେ ମହା ଖୁସି । ଧନ୍ୟବାଦ, ଧନ୍ୟବାଦ । ବିସ୍ମୟାନନ୍ଦ ଭିତରୁ ତାଙ୍କର ସାହସ ହେଲା ଗୋଟାଏ କୁଶଳ ପ୍ରଶ୍ନ ପଚାରିବା ଲାଗି— "ନିଦ ଭଲ ହୋଇଥିଲା ବାପା ? କିଛି ଅସୁବିଧା ହୋଇ ନାହିଁ ତ ?"

ଉତ୍ତରରେ ନାରଣବାବୁ କେବଳ ମୁଣ୍ଡ ଟିଙ୍କାରିଲେ । ମୁହଁରେ ହସ ଲାଗି ରହିଥିଲା ସତ, କିନ୍ତୁ ସେ କିଛି ହେଲେ କହି ପାରିଲେ ନାହିଁ ତାଙ୍କର ପରିବର୍ତ୍ତିତ

ମିଜାଜ୍‌ର କାରଣ ଜାଣିବାକୁ ଚାହୁଁଥିବା ଉତ୍ସୁକ ବାପଝିଅଙ୍କୁ । ଖାଲି ଖବର-କାଗଜଟା ବଢ଼େଇ ଦେଲେ ସେମାନଙ୍କ ଆଡ଼କୁ । ଏବଂ ସବୁଥର ପରି ମୀନା ତାକୁ ଛଡ଼େଇ କରି ନେଇଗଲା ବାପାଙ୍କ ହାତରୁ, ଓ ପଢ଼ି ବସିଲା ।

ନାରଣବାବୁ ସମ୍ପୂର୍ଣ୍ଣ ନୀରବତାକୁ ଧରି ରଖିଲେ, ଏବଂ କହିଲେ ମନେ ମନେ—

କେମିତି ମୁଁ କହିବି ମୁଁ କେଉଁଥିପାଇଁ ଖୁସି ? ଯେ ମୁଁ ଏତେ ବୋକା ଥିଲି, ଏବଂ ଅଯଥାରେ ନିଜକୁ କଷ୍ଟ ଦେଉଚି ଏଇ କେଇଦିନ ହେଲା ?

କେମିତି ଭଲି ମୁଁ ଭାବିପାରିଲି ନାହିଁ ଯେ ଇଏ ହେଉଚି ନୂତନ ଯୁଗ, ଆଲ୍‌ଡ଼ସ୍ ହକ୍‌ସ୍‌ଲିଙ୍କ ଭାଷାରେ ଏକ । 'ସାହସିକ ନୂତନ ବିଶ୍ୱ', ଯାହା ବିଜ୍ଞାନୀ ବୁଦ୍ଧିମାନ୍ ମଣିଷର ହାତମୁଠାରେ ଅଛି ? ଦିନ ଥିଲା ଆମ ଲୋକେ ମହାତ୍ମା, ମାର୍କସ୍ ଆଦି ମନିଷୀମାନଙ୍କ ଆଦର୍ଶକୁ ଅନୁସରଣ କରୁଥିଲେ । ଏବଂ ସେଥିରେ କଷ୍ଟ ହେଲେ ସଫଳତା ପାଇଲାରୁ ନିଜକୁ ଧନ୍ୟ ମଣୁଥିଲେ । ତା'ପରେ ଦିନ ଆସିଲା, ଯେତେବେଳେ ତାଙ୍କର ଧାରଣା ହେଲା ଯେ ଅନୁସରଣ ଯାହା . ବସନଭୂଷଣ କଥନ ଭାଷଣ ଆଦିର ଅନୁକରଣ ସେଇଆ । ଅସଲ କଥା ହେଲା ଗୋଟାଏ ଠିକଣା ଭାବ-ମୂର୍ତ୍ତି । ଏଣେ ପଛକେ ତମେ ଯାହା କର ତମ ବାସ୍ତବ ସଂସାରକୁ ନେଇ । କିନ୍ତୁ ସେଇ ଢଙ୍ଗର ସୁନ୍ଦର ଭାବମୂର୍ତ୍ତିକୁ ବଞ୍ଚେଇ ରଖିବା କଷ୍ଟ, ବିଶେଷତଃ ନିଜ ଲୋକ-ମାନଙ୍କ ଗହଣରେ । ସେହେତୁ ଦୁଃଖ, ସେହେତୁ କ୍ରୋଧ, ହୁଏତ ଟ୍ରାଜେଡ଼ି—ନିଜ ପାଇଁ, ତଥା ନିଜ ଲୋକମାନଙ୍କ ପାଇଁ ।

କିନ୍ତୁ ଆଜି ସେକଥା ନାହିଁ । ଧନ୍ୟବାଦ । ସମସ୍ତେ ଜାଣିଲେଣି ଯେ ସେଇ ଅସମ୍ଭବ ଲୋକମାନଙ୍କୁ ଅନୁସରଣ କିମ୍ବା ଅନୁକରଣ କରିବା ବେକାର । କିନ୍ତୁ ତାଙ୍କ ଆଦର୍ଶର ଉଚ୍ଚାରଣ କରିବାକୁ ହେବ । ହେଲେ କେବଳ ଗୋଟାଏ ଉପଗ୍ରହ ହିସାବରେ । କୌଣସି ଭାବମୂର୍ତ୍ତିର ଅବକାଶ ନାହିଁ, କାରଣ ଗଣସମ୍ରାଟ୍‌ଙ୍କର ନୂଆ ପୋଷାକ ତାଙ୍କ ବିକଟ ନଗ୍ନତାକୁ କଦାପି ଘୋଡ଼େଇ ଦେଇ ପାରିବ ନାହିଁ । ସମସ୍ତେ ଜାଣନ୍ତି ସେକଥା । ତେଣୁ ସ୍ୱାର୍ଥସିଦ୍ଧି ହିଁ ପ୍ରଗତି । ପୂର୍ଣ୍ଣଚ୍ଛେଦ । ନିଜ ପାଇଁ, ତଥା ବିଶ୍ୱ ପାଇଁ ।

ତେଣୁ ଚିନ୍ତା ନାହିଁ । ଆଦୌ ଚିନ୍ତା କରିବାର କାରଣ ନାହିଁ ଆମର ଭାବୀ ଜ୍ୱାଇଁ ଅରବିନ୍ଦ ମେହେଟା ବିଷୟରେ । ସେ ତା' ଦେଖିଲା କାମ କରିବ । ରାଜନୀତିକୁ ହିଁ ତା'ର ଠିକଣା କ୍ୟାରିଅର୍ କରିପାରିବ, ଯଦ୍ଦ୍ୱାରା ପ୍ରଭୂତ କ୍ଷମତା ଓ ଧନ ଉଭୟ ମିଳିବ ତାକୁ । ଏବଂ ମୀନା ବି ଆପେ ଆପେ ସାମିଲ୍ ହୋଇ ଯାଇ ପାରିବ ସେଥିରେ···

ହଠାତ୍ ଶୁଣିଲେ ମୀନା ଖବରକାଗଜରୁ ମୁଣ୍ଡ ଉଠେଇ କହୁଛି—

"ଅରବିନ୍ଦ ଜାଣିଥିଲେ ଏଇଆ ହେବ । କାଲି କହୁଥିଲେ ପରା । ଯେ ସୁଇମ ପାର୍ଟି ତା'ର ଆଦର୍ଶ ହୁଡ଼ିଲାଣି, ତେଣୁ ସେ ଭାବୁଛନ୍ତି ଓହରି ଆସିବେ ।"

"ପଲିଟିକ୍ସରୁ ଓହରି ଆସିବ ?" ନାରଣବାବୁ ପଚାରିଲେ । "ଓ–ନୋ ! ତେବେ ଓ୍ୱାଚ୍ କରିବେ କିଛିଦିନ, କେଉଁ ପାର୍ଟିରେ ମିଶିଲେ ଭଲ ହେବ ବୋଲି । ମାନେ କାହାର ଆଦର୍ଶ ସବୁଠାରୁ ଉପଯୁକ୍ତ ହେବ ଆମ ଦେଶ ପାଇଁ, ଏବଂ କିଏ ତାକୁ ଚଳେଇ ପାରୁଛି…"

"ଗୁଡ୍ !" ନାରଣବାବୁ କହିଲେ, ପ୍ରଶସ୍ତ ହସଟିଏ ଢାଳି ଦେଇ ନାତୁଣୀ ଆଡ଼େ ।

ଏଥର ମୀନା ତାଙ୍କୁ ନପଚାରି ରହିପାରିଲା ନାହିଁ—"ଅଜା, କଥା କ'ଣ ? ଦି'ଦିନ ହେଲା ତ ଏତେ ମୁର୍ହି କରିଥିଲ, କଥାପଦେ କହୁ ନଥିଲ କାହା ସାଙ୍ଗରେ । ଆଜି କ'ଣ ହେଲା କି ?"

ନାରଣବାବୁ ଅମକାଇଗଲେ ମୁହୂର୍ତ୍ତିକ ପାଇଁ । କିନ୍ତୁ ପରେ ପରେ ସେ ମଧ୍ୟ । 'ସାହସିକ ନୂତନ ବିଶ୍ୱର' ନାଗରିକ ବୋଲି ଘୋଷଣା କଲେ ନିଜକୁ । ଏବଂ ରହସ୍ୟ କଲେ ନାତୁଣୀ ସାଙ୍ଗରେ, ଯାହା ସେ କାହିଁ କେବେ କରିଥିଲେ ହୁଏତ । କହିଲେ—

"କାହିଁକି ? କହିବି, କାହିଁକି ? କାହିଁକିନା ମୋର ଆଶା ଥିଲା ତୁ ତୋ ବୁଢ଼ା ଅଜାକୁ ବାହାହେବୁ, ଯାହା ତୁ କହୁଥିଲୁ ତୋ ପିଲାଦିନେ । କିନ୍ତୁ ଆସି ଦେଖିଲି ଯେ ଘଟଣା ଭିନ୍ନ । ତୁ ଆଉ ଗୋଟାଏ ଲୋକକୁ ବାହା ହେବାକୁ ଯାଉଛୁ । ଏଥିରେ ମୁଁ କେମିତି ମୁହଁ ଶୁଖେଇ ନଥାଆନ୍ତି, କହିଲୁ ?"

"କିନ୍ତୁ ଆଜି କ'ଣ ହେଲା ?" ମୀନା ପଚାରିଲା ମୁରୁକିହସାଟିଏ ଦେଇ ।

"ସକାଳୁ ଉଠି ମୁଁ ବୁଝି ସାରିଲିଣି ଯେ ମୁଁ ଗୋଟାଏ ବୋକା ଲୋକ । ଆଧୁନିକ ଯୁଗର ଅରବିନ୍ଦ ମେହେଡ଼ା ତୋ ଅଜାଠାରୁ ଯଥେଷ୍ଟ ଯୋଗ୍ୟ । ତୋ ବାପାଠାରୁ ମଧ୍ୟ ଯୋଗ୍ୟ । ତୋର ଭାଗ୍ୟ ଭଲ ତୁ ତାକୁ ବାହା ହେବାକୁ ଯାଉଛୁ । ତେଣୁ ତୋର ଶୁଭକାଙ୍କ୍ଷୀ ଅଜା ଖୁସି ହେଉଛି ଏମିତି । ତା'ର ନାତୁଣୀ, ଗୋଟିଏ ବୋଲି ଗେହ୍ଲା ନାତୁଣୀ, ସୁଖରେ ରହିବ ।

"ଆଚ୍ଛା ?"

"ଶୁଣ୍ । ତା'ର ଆଖି ଦି'ଟା ଜଳଉଠେ ପିନା, କୋଉ ଅନ୍ୟାୟ ଅତ୍ୟାଚାରର ଖବର ପାଇଲେ, ମୁଁ କିନ୍ତୁ ଆଉ ଗୋଟାଏ ମହତ୍ତ୍ୱର ସନ୍ଧାନ ପାଇଲି

ସେଦିନ ଯେବେ ତୁ ତାକୁ ଚିହ୍ନେଇଦେଲୁ ମୋତେ । କହିବା କହିବ, ସେ ଜିନିଷଟା କିଅଣ ?

(ଜାଣେ ନାହିଁ ମୋତେ ବି ସେଇ ଜିନିଷଟି କେମିତି ଦୃଶ୍ୟ ହେଉ ନଥିଲା ଏତେବେଳ ଯାଏଁ । ହେଉଥିଲେ ମୁଁ ତୁଚ୍ଛାଟାକୁ ଏତେ କଷ୍ଟ ପାଇ ନଥାଆନ୍ତି ଦି' ଦିନ ହେଲା)

"କୁହ, କହୁନ ?"

"ତୋ ଘରର ସେଇ ସୁନ୍ଦର ହସଟିକ । କୃଷ୍ଣଙ୍କ ହସ । କୋଉ ପୁରାଣ ଯୁଗର କୃଷ୍ଣ ନୁହେଁ ମ, ଏବେକାର । ଏଇ ବ୍ରେଭ୍ ନିଉ ଓ୍ୱାର୍ଲଡ୍‌ର କୃଷ୍ଣ ।"

(କପଟିଆ ନୁହେଁ, ମଉଜିଆ ହସ)

"ଅଜା, ୟୁ ଆର୍ ଇମ୍ପସିବ୍‌ଲ୍ ।" ମୀନା ମଧୁର ଭର୍ତ୍ସନାଟିଏ ଛୁଡ଼ିଦେଲା ଅଜାଙ୍କ ଆଡ଼କୁ । ତାଙ୍କ କଥାଟାକୁ ପୁରାପୁରି ନବୁଝି ତଥା ବୁଝିବା ଅନାବଶ୍ୟକ ବୋଲି ମନେକରି । ଅଜାମାନେ ସବୁଦିନେ ଏମିତି ।

ଏବଂ କହିବା ବାହୁଲ୍ୟ ଯେ ରହସ୍ୟରେ ଯୋଗ ଦେଇ ନପାରିଲେ ଡଃ ରାଉତ ଦୃଶ୍ୟଟିକୁ ବେଶ୍ ଉପଭୋଗ କରୁଥିଲେ । ଚାମଚଟାକୁ ଖାଲି ଚା' କପ୍‌ରେ ଟିଙ୍ଗ୍ ଟିଙ୍ଗ୍ କରି ।

# ଅଜା-ନାତୁଣୀ ରହସ୍ୟ

ଅଜା ଯେ କାହିଁକି ମୁହଁ ଓହଳେଇ ବସିଥିଲେ ଏତେଦିନ, ଏବଂ ଆଜି ଏମିତି ହସି ଉଠୁଛନ୍ତି ହଠାତ୍, ପୁଣି ଜୋକ୍ କରୁଛନ୍ତି ତାଙ୍କ ନାତୁଣୀ ସାଙ୍ଗରେ, ଯାହା ସେ କାହିଁ କେବେ କରିଥିଲେ ତା' ପିଲାଦିନେ, ତା'ର କାରଣ କ'ଣ ବୋଲି ଯଦି ପଚାରିଯାଏ ମୀନାକୁ, ସେ ବୋଧହୁଏ କହିବ ଯେ ଅଜାମାନଙ୍କଠାରୁ ଏହାହିଁ ଆଶା କରିଯାଏ। ଏଇ ଅବାଗିଆପଣ। କାହିଁକିନା ସେ ଅନେକ ଦୂରେଇ ଗଲେଣି ଆମର ଏଇ ସତ ସଂସାରଠାରୁ। ହେଲେ ଏଥି ଭିନ୍ନତାହିଁ ତାଙ୍କର ଅଜାପଣିଆ। ରହସ୍ୟ। ସେଥିପାଇଁ ମୁଁ ତାଙ୍କୁ ବେଶୀ ଭଲ ପାଏ।

ତେବେ ମୀନା ଯଦି ଭାବୁଥାଏ ଯେ ବୁଢ଼ା ହେଲାରୁ ହିଁ ଏମିତି ହୁଏ, ତା' ହେଲେ ତା'ର ବୁଦ୍ଧି ବିଚାରକୁ ସାମାନ୍ୟ ଓ ସର୍ବସାଧାରଣ ବୋଲି କହିବାକୁ ହେବ। କିନ୍ତୁ ଯଦି ସେ ଭାବୁଥାଏ ଯେ ସେ ଦୂରେଇଗଲେଣି ଆମର ଏଇ ସିଧାସଳଖ, ସୁସ୍ପଷ୍ଟ, ଏବଂ ଆଲୋକିତ ସଂସାରରୁ, କାରଣ ତାଙ୍କ ସେ ଯୁଗର ସଂସାର ଅନେକ ଭିନ୍ନ ଥିଲା, ଗୋଟାଏ ବିଚିତ୍ର କୁହୁଡ଼ିଆ ସଂସାର, ତା' ହେଲେ ତା' ଭାବନାରେ କିଛି ଓଜନ ଅଛି ବୋଲି ମାନିବାକୁ ପଡ଼ିବ, ଏବଂ ତା'ର ଆଲୋଚନା ଆବଶ୍ୟକ।

ସେ ଯୁଗ କ'ଣ ସତେ ଏତେ ଭିନ୍ନ ଥିଲା, ଯାହାକୁ ଆଜିର 'ଆଲୋକିତ' ସଂସାର ବୁଝିପାରୁ ନାହିଁ ? ନା ତା'ର ବିପରୀତ ହିଁ ସତ, ଅର୍ଥାତ୍ ଆଜିର ସଂସାର ଏତେ ଜଟିଳ, ଓ ମିଛସତକୁ ନେଇ ଜାଲୁଜାଲୁଆ ଯେ ତା'କୁ ବୁଝିବା କଷ୍ଟ ଆମ ଅଜାମାନଙ୍କ ପକ୍ଷରେ, ଯେଉଁମାନେ ଭାବୁଥିଲୁ ଯେ ଦୁଇରେ ଦୁଇ ମିଶିଲେ ଚାରି ହେବାକୁ ବାଧ୍ୟ, ଏବଂ ଯିଏ ଯେଉଁ ଆଦର୍ଶର ଉଚ୍ଚାରଣ କରେ ତା'ର ଆଚରଣ ମଧ୍ୟ ଅନୁରୂପ ହୋଇଥିବ, ଏହା ସ୍ୱତଃସିଦ୍ଧ ? ଆମେ କ'ଣ ପ୍ରକୃତରେ ଏତେ ସିଧା ଥିଲୁ, ଭଲ ଥିଲୁ ?

ନା 'ସତ୍ୟର ରଙ୍ଗ ଧୂସର', ମଣିଷ ମନରେ ନାନାଦି ପରସ୍ପର ବିରୋଧୀ ଭାବ ଏକାଠି ଘର କରିଥାଏ, ଇତ୍ୟାଦି ନାନା ମନସ୍ତାତ୍ତ୍ୱିକ ତଥ୍ୟ ବିଷୟରେ ଅନଭିଜ୍ଞ ଥିଲୁ, ଯାହା ଆମର ନିର୍ବୋଧତା ତଥା ଆତ୍ମଶଠତାର ପରିଚୟ ଦିଏ ?

ଯେହେତୁ ମୁଁ ନିଜେ ଅକାଦାଲରେ ଲେଖା, ମୋ ପକ୍ଷରେ ଠୋକ୍‌ଠୋକ୍ କିଛି ଗୋଟାଏ ମନ୍ତବ୍ୟ ଦେବା ବୋଧହୁଏ ସମୀଚୀନ ହେବ ନାହିଁ । କାରଣ ଆପଣ କହିବେ ଯେ ସହଜେ ମୁଁ ନିରପେକ୍ଷ ହୋଇ ପାରିବି ନାହିଁ । ବେଶ୍ । ସେହେତୁ ମୁଁ କେଉଁ ମନ୍ତବ୍ୟ ଶୁଣାଇବାକୁ ଯାଉ ନାହିଁ । ତେବେ କହୁଛି ଯେ ଗଳ୍ପ ଏଇ ଗପର ବୁଢ଼ା ଯାହା କହିଲେ, ତାଙ୍କର ସେଇ ସକାଳୁଆ ହସ-ରସର ସଫେଇ ଦେବାକୁ ଯାଇ, ତା'ର ବିଶଦବ୍ୟାଖ୍ୟା କରିବା । ଯେଉଁଠୁ ଆପଣ ନିଜେ ସ୍ଥିର କରିବେ ତାହା କେତେଦୂର ଗ୍ରହଣଯୋଗ୍ୟ, ଏବଂ ମୋର ପ୍ରତିକ୍ରିୟା କେତେଦୂର ସଙ୍ଗତ ।

ନାରଣବାବୁ ଯାହା କହିଲେ ତିନିପିଢ଼ିର ସୁଧୀଜନଙ୍କ ଭାବଭାବନା ଏବଂ ଆଗ୍ରହ ବ୍ୟବହାରକୁ ନେଇ, ତା'ର ସାରକଥା ହେଉଛି ଏଇ ଯେ ପ୍ରଥମ ପିଢ଼ିର ଲୋକମାନଙ୍କଠାରେ ତାଙ୍କ ଆଦର୍ଶଗତ ଉଚ୍ଚାରଣ ଏବଂ ଆଚରଣ ମଧ୍ୟରେ ଏକ ଉଚିତ ସାମଞ୍ଜସ୍ୟ ଥିଲା, କିନ୍ତୁ ଦ୍ୱିତୀୟ ପିଢ଼ିର ଲୋକମାନଙ୍କଠାରେ ଏହି ସାମଞ୍ଜସ୍ୟରେ ଫାଟ ଧରିଛି ବୋଲି ମନେ ହେଲା, ଯାହାକି ପାଖ ଲୋକମାନଙ୍କ ଦୃଷ୍ଟିକୁ ଏଡ଼ାଇ ପାରିଲା ନାହିଁ । ତଥାପି ଏହି ଲୋକମାନେ ଚାହୁଁଥିଲେ ଯେ କେହି ଯେମିତି ଏଇ ବିଚ୍ୟୁତିକୁ ଲକ୍ଷ୍ୟ ନକରୁ, ତାଙ୍କ ଭାବମୂର୍ତ୍ତିରେ ଆଞ୍ଚ ନଲାଗୁ । ହେଲେ ଆଜିର ସୁସ୍ପଷ୍ଟ ଆଲୋକିତ ସଂସାରର ଲୋକେ ଜାଣନ୍ତି ଯେ ଏହି ବୈଷମ୍ୟ ଅନସ୍ୱୀକାର୍ଯ୍ୟ, ତେଣୁ କେଉଁ ଭାବମୂର୍ତ୍ତିକୁ ବଞ୍ଚାଇ ରଖିବାକୁ ଚାହିଁବା ଅକାରଣ । ତେବେ ଉଚ୍ଚାରଣଟା ଥାଉ ନା, ଛଡ଼ କ'ଣ ? ଅତଏବ ଆଉ ଦୁଃଖ କରିବ କାହିଁକି କେଉଁ ଅସମଞ୍ଜସର ବାସ୍ତବ ସତ୍ୟକୁ ନେଇ ଯାହାକୁ ସେମାନେ ଲୁଚେଇ ପାରିଲେ ନାହିଁ, ବିଚରା ମଝି ପିଢ଼ିର ଲୋକେ ? ଆଜିର ଷାରବରମାନେ ପୂରାପୂରି ନିର୍ଲଜ୍ଜ ଏବଂ ନିଃଶଙ୍କ, ତାଙ୍କର ସିନିକ୍‌ପଣିଆକୁ ନେଇ । ଯେହେତୁ ସମସ୍ତେ ଜାଣନ୍ତି, ଆଦୌ ନିସ୍ପୃହେର

ନାହିଁ ସେଥିରେ, ଦ୍ୱନ୍ଦ୍ୱ ନାହିଁ କି ସଫେଇ ଦେବାର କୌଣସି କାରଣ ନାହିଁ, ନିଜକୁ କିମ୍ବା ଆଉ କାହାକୁ ଯେ—ମୂଲ୍ୟବୋଧ ମୃତ । ସ୍ୱାର୍ଥସିଦ୍ଧି ହିଁ ସତ । ପୂର୍ଣ୍ଣଚ୍ଛେଦ । ହେଲେ ଆଉ ନା ଆମର ଉଚ୍ଚାରଣଟିକ, କହିବାକୁ ଭଲ ଲାଗୁଛି, ଶୁଣିବାକୁ ଭଲ ଲାଗୁଛି । ସଂକ୍ଷେପରେ : ଆମେ ଭଲ ଥିଲୁ; ଆମ ପରେ ଆସିଥିବା ଲୋକମାନେ ଯଥେଷ୍ଟ ଭଲ ହୋଇପାରିଲେ ନାହିଁ, ହେଲେ ନିଜକୁ ଏବଂ ଅନ୍ୟମାନଙ୍କୁ ଠକେଇବାକୁ ଚେଷ୍ଟା କଲେ ଯେ ସେମାନେ ଭଲ; ଏବଂ ଆଜିର ଲୋକମାନେ ମାନି ନେଇଛନ୍ତି ଯେ 'ଭଲ ହେବାର ପ୍ରଶ୍ନ ଉଠୁ ନାହିଁ ।'

କ୍ଷମା କରିବେ, ମୁଁ ଏହି ସରଳୀକୃତ ବର୍ଣ୍ଣନାକୁ ପୂରାପୂରି ଗ୍ରହଣ କରିପାରୁ ନାହିଁ । ମୂଲ୍ୟବୋଧର ଏହି ଅନିବାର୍ଯ୍ୟ କ୍ଷୟିଷ୍ଣୁ-ଶୀଳତା ଏବଂ ମୃତ୍ୟୁ. ତଥା ତାକୁ ମାନିନେବାର ସତ୍‌ସାହସ ଓ ସାମର୍ଥ୍ୟ । ଏବଂ ତା'ର କାରଣ ହେଉଛି, ଯାହାକୁ ନାରଣବାବୁ ମଧ୍ୟ ସ୍ୱୀକାର କରୁଛନ୍ତି, ଯେ—ଉଚ୍ଚାରଣ ତଥାପି ଅଛି । କିଓ, କାହିଁକି ଅଛି ? କାହିଁକି କହିବାକୁ ଓ ଶୁଣିବାକୁ ଭଲ ଲାଗୁଛି ସେମିତିକା କଥା ? କାହିଁକି ? କାହିଁକି ? ?

କାହିଁକିନା ମୂଲ୍ୟବୋଧର ପ୍ରତ୍ୟକ୍ଷ ଅନୁଭବ ହୁଏତ ଚାଲି-ଗଲଣି ଆମ ସଂସାରରୁ, ତଥା ଆମ ମାନସିକତାରୁ । କିନ୍ତୁ ତା'ର ସ୍ମରଣ ଓ ସମ୍ଭାବନାକୁ ଛାଡ଼ି ଦେଇ ହେଉ ନାହିଁ । ସେଥିର ସ୍ୱପ୍ନକୁ ମୂରୁଛି ହେଉ ନାହିଁ । ଏବଂ ମୋର ଧାରଣା ଯେ ତାକୁ କେବେ କେଉଁ ଆସନ୍ତା କାଲିର ମଣିଷ ମଧ୍ୟ ପରିତ୍ୟାଗ କରିପାରିବ ନାହିଁ ।

କାରଣ ସତ୍ୟର ରଙ୍ଗ ଯେତେ ଧୂସର, ଏବଂ ମଣିଷ ମନ କି ସଂସାରର ବାସ୍ତବତା ଯେତେ ଜଟିଳ ହେଉ ନା କାହିଁକି, କେତେଗୁଡ଼ିଏ ନୀତିନିୟମର ଆବଶ୍ୟକତା ରହିଛି ମନର ଦେବାସୁରମାନଙ୍କୁ ନିୟନ୍ତ୍ରିତ କରିବା ଲାଗି ଯେପରିକି ମନଧନ କାର୍ଯ୍ୟକାରୀ ହୋଇପାରିବ, ତଥା ସଂସାରକୁ ଆଗେଇ ନେଇ ଯାଇ ପାରିବ । ତା'ର ଅବବୋଧ ହିଁ ମୂଲ୍ୟବୋଧ । ଏବଂ ତାହା କେବଳ ମୋଜେସ୍‌ଙ୍କର ଦଶବିଧ ଅନୁଶାସନ, ବୁଦ୍ଧଙ୍କ ଦୁଃଖମୋଚନକାରୀ ଏକ-ଦୁଇ-ତିନି ଉପଦେଶ, କିମ୍ବା ବେଦବାକ୍ୟରୁ ଆସିବ କାହିଁକି ? ମନସ୍ତତ୍ତ୍ୱ, ଦର୍ଶନ, ତଥା ଟିକିଏ ଗହ୍ୱରକୁ ଯାଇଥିବା

ସାଧାରଣଜ୍ଞାନ ମଧ୍ୟ କହିବ ଯେ ତଥାକଥିତ ଭଲପଣିଆ କେଉଁ ଅପହୃଞ୍ଚ ଆଦର୍ଶ ନୁହେଁ, ତାହା ନିରୁଦ୍‌ବେଗ ଏବଂ ସୁଦୀର୍ଘ ସୁଖ-ଲଭର ପ୍ରକୃଷ୍ଟ ଉପାୟ । ନିଜକୁ ନିଜେ ହୋଇ, ମଧ୍ୟ ସଂସାରରେ ଅନ୍ୟମାନଙ୍କ ସହିତ ସହାବସ୍ଥାନ କରିବାର ଆବଶ୍ୟକତାକୁ ନେଇ ।

ତେଣୁ ମୀନାର ପାଟିରୁ ଯେଉଁ ମୂଲ୍ୟବୋଧ 'ସେନ୍‌ସ୍ ଅଫ୍ ଭାଲ୍ୟୁଜ୍'ର ଉଚ୍ଚାରଣ ବାହାରୁଛି, ତାକୁ ଗୋଟାଏ ସମ୍ପା ଆଓ୍ୱାଜ୍ ବୋଲି ଭାବ ନାହିଁ, ନାରଣବାବୁ । ଧ୍ୱନି ନୁହେଁ, କେଉଁ ସଂସ୍କାରର ପ୍ରତିଧ୍ୱନି ମାତ୍ର ବୋଲି ଭାବିଲେ ମଧ୍ୟ ତା'ର କାର୍ଯ୍ୟ-କାରିତା ଉଭେଇ ଯାଇ ନାହିଁ । ଏବଂ ଭାବ ନାହିଁ ଯେ ସେ ଯେମିତି ମୁଗ୍‌ଧ ହୋଇ ଉଠୁଛି ଅରବିନ୍ଦ ମେହେତାର ଭାବଦଗ୍‌ଧ ଉଜ୍ଜ୍ୱଳ ଆଖିର ଚାହାଣିରେ, ସେଇ ଚାହାଣି କପଟୀ କୃଷ୍ଣଙ୍କର ହେଉ ବା ପାର୍ଥସାରଥିଙ୍କର, ତାହା ସମ୍ପୂର୍ଣ୍ଣ ମିଥ୍ୟା ଓ ତମ ନାଟୁଣୀଟା ଗୋଟିଏ ଦୁର୍ଣ୍ଣୀ । ନା, ସ୍ୱପ୍ନ ଅଛି, ଲକ୍ଷ୍ୟ ରହିଛି, ତେଣୁ ତାହା କେବେହେଲେ ସାର୍ଥକ ହେବ । ବିବର୍ତ୍ତନ ଏକା-ଧାରରେ ଦର୍ଶନ ଏବଂ ବିଜ୍ଞାନର ପରୀକ୍ଷାନିରୀକ୍ଷା ଦ୍ୱାରା ନିର୍ଣ୍ଣୀତ । ସେହେତୁ ହସ ନାରଣବାବୁ, ମୁଁ ମଧ୍ୟ ହସିବି ତମ ସାଙ୍ଗରେ ସମ-ଦୁଃଖୀ ହୋଇ, କିନ୍ତୁ ତାକୁ ଗୋଟାଏ ତୁଚ୍ଛା ଠକ୍କା ହସ ବୋଲି ଭାବ ନାହିଁ । ତାହା ବାଟ କଢ଼େଇ ନେବ ଯଥାର୍ଥ ଆନନ୍ଦ ଆଡ଼କୁ । ଏବଂ ଭବିଷ୍ୟତର ଅଜାକୁ 'ହସିବ କି କାନ୍ଦିବ', ଏଭଳି କୌଣସି କିନ୍ତୁ-ରଙ୍ଗର କଷ୍ଟ ଭୋଗିବାକୁ ପଡ଼ିବ ନାହିଁ ।



# ଗର୍ଭଧାରିଣୀ

ମାନମୟୀ ନାମକ ଭଦ୍ରମହିଳା କପରି ଗୋଟିଏ ଦିନ ଭିତରେ ଦି'ଥର ଏକ ଦାରୁଣ ଦୁର୍ବିପାକ, ଅର୍ଥାତ୍ ଗର୍ଭପାତରୁ ବର୍ତ୍ତିଗଲେ, ଏହି ଚମତ୍କାରତା ହେଉଛି ଏହି ଆଖ୍ୟାୟିକାର କଥାବସ୍ତୁ । କିନ୍ତୁ ମଜାକଥା ହେଉଛି ଯେ ନିଜେ ମାନମୟୀ ମହାନ୍ତି ଏ ବିଷୟରେ କିଛି ହେଲେ ଜାଣିପାରିଲେ ନାହିଁ । ଅପରନ୍ତୁ ତାଙ୍କୁ ବେଶ୍ ନିଦ ହୋଇଥିଲା ସେଦିନ ରାତିରେ । ଏପରିକି, କ'ଣ ସ୍ୱପ୍ନ ଦେଖୁଥିଲେ କେଜାଣି, ସେ ମଧ୍ୟ ଥରେ ଅଧେ ହସୁଥିଲେ ତାଙ୍କ ନିଦ୍ରିତ ଅବସ୍ଥାରେ । ସତେକି ଏଇ ଦିନଟି ବିଶେଷ ଫଳପ୍ରଦ ହୋଇପାରିଛି ତାଙ୍କ ପାଇଁ । ଜୟ ମା' କଣ୍ଟକଚଣ୍ଡୀ !

## ( ପ୍ରଥମ ଥର )

ପ୍ରଥମ ଦୁର୍ବିପାକର ଭୟ ଆସିଥିଲା ସନ୍ଧ୍ୟାବେଳେ । ଯେତେବେଳେ ସେ ଜନୈକ ସତୁଭାଇଙ୍କ ପୁଅ ସରୋଜର ବାହାଘର ରିସେପ୍ସନରେ ସାମିଲ୍ ହୋଇଥିଲେ । ସତୁଭାଇ ତାଙ୍କର ଲେଖାପୋଖା ପିଉସୀଙ୍କର ପୁଅ, ଯାହାଙ୍କ ପରିବାର ସହିତ ସେ ବିଶେଷ ପରିଚିତ ନୁହଁନ୍ତି । ସତୁଭାଇଙ୍କ ସାଙ୍ଗରେ ମଧ୍ୟ ତାଙ୍କର କ୍ୱଚିତ୍ କେବେ ଦେଖା ହୋଇଛି । ହେଲେ ସେ ପଡ଼ୋଶୀ ଏବଂ ପୁରୁଣାବୋହୂ ସ୍ଥାନୀୟା ରମାକୁ କହୁଥିଲେ କେତେଦିନ ତଳେ—'ମଲା, ସତୁଭାଇଟା ସିନା ବାରବୁଲା ହୋଇ ଦୂର ବୁଲୁଥିଲା କୁଆଡ଼େ ବୋଲି କୁଆଡ଼େ, ଆଉ ସେଇଲାଗି ଆମର ଦେଖା ହୋଇ ନାହିଁ ଯୁଗେ ହେଲା, କିନ୍ତୁ ତା ବୋଲି ତାଙ୍କର କ'ଣ ମନେ ନଥିବ ଆମ ପିଲାଦିନ କଥା ? ଆମେ ଯେତେବେଳେ ଖେଳୁଥିଲୁ ଏକାଠି, ମୁଁ ତାଙ୍କୁ ଚିଡ଼ଉଥିଲି, ଆଉ ସେ ମୋ ଚୁଟି ଟାଣୁଥିଲେ···କମ୍ ବଦ୍‌ରାଗୀ ଥିଲେ କି ସିଏ ?···ଆଉ ଆଜି ତାଙ୍କ ବଡ଼ପୁଅ ସରୋଜର ବାହାଘର ହେଉଛି, ସେ ମୋତେ ଡାକିବେ ନାହିଁ କେମିତି ? ସେ ବି ଜାଣିଛନ୍ତି ମୁଁ ଏଇ କଟକରେ ଅଛି ବୋଲି । ମୋ ପୁଅ ସାଙ୍ଗରେ ଦେଖା ହୋଇଛି ଏବେ । ଏକା ଅଫିସରେ କାମ କରନ୍ତି···ପରା, ଦେଖା ହେବ ନାହିଁ କେମିତି ? ଆଉ ଇଏ ଜଣେଇ ଦେଇଛି ସେ କାହାର ପୁଅ, କେଉଁଠି ଥାଏ, ଇତ୍ୟାଦି···' କିନ୍ତୁ କେଜାଣି କେମିତି ନିମନ୍ତ୍ରଣ ପତ୍ରଟିଏ ପହଞ୍ଚିଲା ନାହିଁ ତାଙ୍କ ପାଖକୁ । ଯାହା ରମା ଜାଣିବାକୁ ପାଇଥିଲା, ହେଲେ ଆଶ୍ଚର୍ଯ୍ୟ ହେଲା ନାହିଁ ।

ତେବେ କାର୍ଡ଼ ଖଣ୍ଡେ ପହଞ୍ଚିଲା ଶେଷକୁ । ଏବଂ କହିବାକୁ ଗଲେ ଶେଷ ମୁହୂର୍ତ୍ତରେ । ରିସେପ୍‌ସନ୍‌ ଦିନର ପୂର୍ବାହ୍ନରେ । କିନ୍ତୁ ମାନମୟୀ କ୍ଷୁଣ୍ଣ ହେଲେ ନାହିଁ । ଓଲଟି ସେତେବେଳେ ତାଙ୍କ ଘରକୁ ଆସିଥିବା ରମାକୁ ଦେଖେଇ ଦେଲେ ତାଙ୍କ କାର୍ଡ଼ । ଏବଂ ଦମ୍ଭିଲା ସ୍ୱରରେ କହିଲେ—'ଦେଖ ଦେଖ, ମୁଁ କହୁ ନଥିଲି ? ସେ କେମିତି ଭୁଲିଯିବେ ମୋତେ ?' ରମା ମାନିଗଲା ପରି ମୁଣ୍ଡ ହଲେଇଲା । କହିଲା ନାହିଁ ଯେ ଇଏ ହେଉଛି ତା'ର ଷଡ଼ଯନ୍ତ୍ର । ସେ ତା' ସ୍ୱାମୀ ପ୍ରସନ୍ନବାବୁଙ୍କୁ ପ୍ରବର୍ତ୍ତେଇ ଥିଲା କୌଣସିମତେ କାର୍ଡ଼ଟିଏ ପହଞ୍ଚେଇ ଦେବା ପାଇଁ ମାଲୁମାଉସୀଙ୍କ ପାଖରେ । କହିଲା, ସରୋଜର ଦାଦା ତମ ସାଙ୍ଗ ବୋଲି କହୁଛ, ଆଉ ତମେ ଏତିକି କରେଇଦେଇ ପାରିବ ନାହିଁ ? କାରଣ ତା'ର ଇଚ୍ଛା ହୋଇଥିଲା ଏଇ ଖେଳଟି ଖେଳିବା ପାଇଁ । ବୁଢ଼ୀ ଯାଆନ୍ତୁ ସେଠିକି । ଦେଖନ୍ତୁ ତାଙ୍କ ସତୁଭାଇ ତାଙ୍କୁ କେତେ ଖାତିର କରୁଛନ୍ତି । ତଥାପି ଯଦି ତାଙ୍କ ବାହାପିଆ ଢଙ୍ଗ କମିଯିବ, ମୁଁ ନେକଥା କହୁନାହିଁ, ହେଲେ ସେ ମନେ ମନେ ବୁଝିବେ ଯେ ତାଙ୍କ ଭାଉ କଅଣ !

ତେବେ ଭାଉର ପ୍ରଶ୍ନ ମୂଳରୁ ଉଠିଥିଲା ସେଠିକି ନଯାଉଣୁ, ତାଙ୍କ ନିଜ ଘରେ, କିନ୍ତୁ ମାନମୟୀ ଅବିଳମ୍ବେ ତା' ଉପରେ ସବାର ହୋଇ ପାରିଥିଲେ । ହର୍ଷୋତ୍ଫୁଲ୍ଲ ହୋଇ ସେ ପୁଅକୁ ଦେଖେଇଥିଲେ ତାଙ୍କ କାର୍ଡ ଏବଂ କହିଲେ— "ହେଇ ଦେଖ ! ସତୁଭାଇ ଆମକୁ ଡାକିଛନ୍ତି ଆଜି, ତାଙ୍କ ପୁଅ ବାହାଘର ରିସେପ୍‌ସନକୁ । ପିଲାଛୁଆ କଙ୍କାଳ, ବୋହୂ ହୁଏତ ଆସିପାରିବ ନାହିଁ, କିନ୍ତୁ ତୁ ଆସିବୁ ଯେମିତି ହେଲେ । ଏକେ ତୁ ତାଙ୍କ ଭଣଜା, ପୁଣି ଏକା ଅଫିସ୍‌ର ଲୋକ । ନଗଲେ ତାଙ୍କ ମନ ଖରାପ ହେବ !" କିନ୍ତୁ ନନ୍ଦନବାବୁ ଯାହା ଦେଖିଲେ ଲେଖା ହୋଇଛି କାର୍ଡ଼ ତଥା ଲଫାପା ଉପରେ, ସେଥିରେ ସେ ଭ୍ରୂକୁଞ୍ଚେଇବାକୁ ବାଧ୍ୟ ହେଲେ । କହିଲେ—"ବୋଉ, ଇଏତ ଲେଖା ହୋଇଛି, ଶ୍ରୀମତୀ ମାନମୟୀ ମହାନ୍ତି ଏଣ୍ଡ୍ ଫ୍ୟାମିଲି, ଆମେ ଯିବୁ କେମିତି ?" ସେଇଠୁଁ ମାନମୟୀ ଅବାକ୍ ହୋଇ ଅନେଇଲେ ତାଙ୍କ ଭେଣ୍ଡିଆ ପୁଅଆଡ଼କୁ । ସତେକି ଏଭଳି ଆସ୍ପର୍ଦ୍ଧା ସେ କେବେହେଲେ ଆଶା କରି ନଥିଲେ ତା'ଠାରୁ । କହିଲେ—

"କ'ଣ ହେଲା ? ତୁ ମୋ ଫ୍ୟାମିଲିର ନୁହଁ ?"

"ହଁ ଯେ—"

ନନ୍ଦନବାବୁ ତାଙ୍କ ବୋଉକୁ ବୁଝେଇପାରିଲେ ନାହିଁ ଯେ କାଇଦା ଅନୁଯାୟୀ କାର୍ଡ଼ ତାଙ୍କ ନାଆଁରେ ଆସିବା ଉଚିତ ଥିଲା । ନନ୍ଦନ ମହାନ୍ତି ହେଉଛି ଏଇ ଘରର କର୍ତ୍ତା, ଏବଂ ତା'ର ବିଧବା ବୋଉ ତା' ଫ୍ୟାମିଲିର ଜଣେ । ଏଇ ହେଉଛି ଆମ ସମାଜର ସଂସ୍କାରର ନିୟମ । କିନ୍ତୁ ସେ ଯଦି ହେଲେ କିଛି କହିପାରିଲେ ନାହିଁ ତାଙ୍କ ବୋଉକୁ । ଯେ ଅନେଇ ରହିଛି ତାଙ୍କ ଆଡ଼କୁ ପୃଥିବୀ

ଓଲଟିଗଲା ପରି । ସତେକି ମୁଣ୍ଡକୁ ହାତ ପାଇ ଯାଇଥିବା ପୁଅ ଗୋଟାଏ ଅକ୍ଷମଣୀୟ ଅପରାଧ କରିଛି । ଭାବିଲେ, ଇଏ ନୂଆ ନୁହେଁ । ଏମିତି କେତେ ଛୋଟବଡ଼ 'ଘଟଣା' ଘଟିଛି ଆମ ଜୀବନରେ, ଏବଂ ମୋତେହିଁ ହାର୍ ମାନିବାକୁ ପଡ଼ିଛି । ହଉ, ହଉ । ଫର୍ ଗଡ଼୍ସ୍ ସେକ୍ ରୁ ସେମିତି ଅନାନା ମୋ ଆଡ଼କୁ । ଅଶ୍ରୁଧାରାର ଧମକାଣି ଦେଲା ପରେ । ନନ୍ଦନବାବୁ ନିରସ୍ତ ହେଲେ । ତରବର ହୋଇ କହି ପକେଇଲେ— 'ଓ-କେ । ଠିକ୍ ଅଛି । ମୁଁ ଆସିବି ସେଠିକି । ଆଉ ଦେଖିବି ସରିତା ଯିବ କି ନାହିଁ ।' ଏବଂ ଦେଉଁ ଚାଲି ଆସିଲେ ।

କିନ୍ତୁ ତାଙ୍କ ଭୂରୁ ପୁଣି କୁଞ୍ଚେଇ ହୋଇ ଉଠୁଥିଲା । ସତେକି ତାଙ୍କୁ ପୁଣି ଗୋଟାଏ ଅବାଞ୍ଛିତ କାମ କରିବାକୁ ପଡ଼ୁଛି ତାଙ୍କର ଏହି ସ୍ନେହମୟୀ ହେଲେ ଚିରବ୍ରଣୀ ବୋଉକୁ ଖୁସି କରିବା ଲାଗି । କାମଟା କେବଳ ଏଥିପାଇଁ ଅବାଞ୍ଛିତ ନୁହେଁ ଯେ ତାଙ୍କୁ ବୋଉର ଲାଙ୍ଗୁଡ଼ ହୋଇ ଯିବାକୁ ପଡ଼ୁଛି ସେଠିକି । ଯାହାଙ୍କ ନିହାତି ଅସୁନ୍ଦର ଏଇ ବୟସରେ । ତା' ଛଡ଼ା, ଯାହାର ବାହାଘର ହେଉଛି ତା' ବାପା ହେଉଛନ୍ତି ସତ୍ୟେନ୍ଦ୍ର ମହାପାତ୍ର, ପ୍ରିମ୍ସ ଫର୍ମାସିଉଟିକାଲ୍ସର ଜେନେରାଲ୍ ମ୍ୟାନେଜର୍, ଆଉ ମୁଁ ହେଉଛି ସେଠାକାର ଅନ୍ୟତମ ଜୁନିଅର୍ ଅଫିସର୍ । ଜଣା ପଡ଼ୁଛି ସେ କେବଳ କମ୍ପାନୀର ବଡ଼ବଡ଼ିଆ କେତେଜଣଙ୍କୁ ଡାକିଛନ୍ତି, ନହେଲେ ମୋ ନାଆଁରେ କାର୍ଡ୍ ଆସିଥା'ନ୍ତା । ହେଲେ ମୁଁ ସେଠିକି ଯାଇ ମୁହଁ ଦେଖେଇବି, ଗେଟ୍-କ୍ରାଶ୍ କରି ଆସିଲା ପରି । କ'ଣ ନା, ମୁଁ ତମର ଅବିସ୍ମରଣୀୟ ଭଣଜା ପରା ? ଗ-ଡ୍ !···ଫଳରେ ଦେଖାଗଲା ଯେ ରଙ୍ଗବେରଙ୍ଗ ଆଲୁଅରେ ଝଲସୁଥିବା ଅତିଥି-ମାନଙ୍କର, ଏବଂ ବିଶେଷତଃ ତାଙ୍କ ନାରୀମାନଙ୍କର ବସନ ଭୂଷଣରେ ଝଟକୁଥିବା, ଏବଂ ସୁଶୋଭିତ ବ୍ୟଞ୍ଜନାବଳୀର ବାସ୍ନାରେ ମହକି ଉଠୁଥିବା ଲନ୍‌ରେ ଏକୁଟିଆ ଘୂରି ବୁଲୁଛନ୍ତି ନନ୍ଦନବାବୁ । ହେଲେ କାହାରି ଜାଣିବାର ଉପାୟ ନଥିଲା ଯେ ଚିନ୍ତାକୁଳ ଭଦ୍ରଲୋକ ବାରମ୍ବାର ଗୋଟିଏ ପ୍ରଶ୍ନ ପଚାରୁଥିଲେ ନିଜକୁ—ମୁଁ କ'ଣ ମୋର ବୋଉକୁ ଡରେ ?

କିନ୍ତୁ ରିସେପ୍‌ସନ୍ ଲନ୍‌ରେ ସତ୍ୟେନ୍ଦ୍ର ମହାପାତ୍ରଙ୍କର ତଥାକଥିତ ଭଉଣୀ ମାନମୟୀ ଏକାଧାରରେ ଝଲସୁଥିଲେ, ଝଟକୁଥିଲେ, ଏବଂ ମହକୁଥିଲେ ବୋଲି କହିଲେ କଳ୍ପନାକୁ ବାଧା ହେବ ନାହିଁ, ଯଦିଓ ବିଧବା ହୋଇଥିବାର ସଂସ୍କାର ଅନୁଯାୟୀ ସେ ସାଦା ଧଳା ଶାଢ଼ୀଟିଏ ପିନ୍ଧିଥିଲେ, ଏବଂ କେଉଁ ଗହଣା ଝଟକୁ ନଥିଲା କି ଅତର ମହକି ଉଠୁ ନଥିଲା ତାଙ୍କ ପାଖ ଦେଇ ଗଲାବେଳେ । ତା'ର କାରଣ ତାଙ୍କ ଭାବାବେଗ ଉଚ୍ଛୁଳି ଉଠୁଥିଲା । ନବବଧୂ ହାତକୁ କେବଳ ଶହେଏକ ମୁଦ୍ରା ବିଶିଷ୍ଟ ଲଫାଫାଟିଏ ବଢ଼େଇ ଦେଇ ତାକୁ ଆଶୀର୍ବାଦ କରି ନଥିଲେ । ସେ ନିଜକୁ ଉତ୍ତମ ରୂପେ ଚିହ୍ନେଇ ଦେଇଥିଲେ, ଯେ ତା' ଶ୍ୱଶୁର ହେଉଛନ୍ତି ତାଙ୍କ ଦଦୁଭାଇ,

ଦିନ୍ତାଦନେ ସେମାନେ କେତେ ସାଙ୍ଗ ହୋଇଥିଲେ, ସେ କେମିତି ଭଉଣୀଟାର ଚୁଟି ଟାଣୁଥିଲେ, ଇତ୍ୟାଦି । ସେଠୁଁ ଫେରିଆସି ସେ ଅନାୟାସରେ ବିଭିନ୍ନ ବୟସର ନାରୀମାନଙ୍କ ଗହଳରେ ମିଶି ଯାଉଥିଲେ, ଏବଂ ହସହସ ହୋଇ ଏଠୁ ସେଠିକି ଡିଆଁ ମାରୁଥିଲେ । ଡିଆଁ ମାରୁଥିଲେ, ଏବଂ ତାଙ୍କୁ ଦେଖି ଅଟକି ଯାଇଥିବା ଆଳାପକୁ ଫେରାଇ ଆଣୁଥିଲେ, କିଛି ଗୋଟାଏ ମଉଜିଆ କଥା ଛାଡ଼ି ଦେଇ ।

ଏହି କ୍ରମରେ ସେ ଉଚିତରୁ ଅଧିକ ସମୟ ଅଟକି ଯାଇଥିଲେ ଗୋଟିଏ ମିଶ୍ରିତ ଦଳରେ ଯେଉଁଠି ବୋହୂଝିଅ ତଥା ଅପାଭଉଜମାନେ ରୁଣ୍ଡ ହୋଇଥା'ନ୍ତି, ଏବଂ ସେମାନେ ଗୋଟିଏ ଦୁଃଖଦାୟକ ଏବଂ ଦୀର୍ଘନିଃଶ୍ୱାସଜଡ଼ିତ ସହାନୁଭୂତିର ଜାଲରେ ବାନ୍ଧି ହୋଇ ଯାଇଥା'ନ୍ତି । କଥା ପଡ଼ିଥିଲା ବର ସରୋଜ ମହାପାତ୍ରର ରୂପଗୁଣକୁ ନେଇ । କେଡ଼େ ସୁନ୍ଦରିଆ ଛନଛନିଆ ଟୋକାଟାଏ ମ ? କିଏ କହିବ ଯେ ତା'ର ବାହାହେଲା ବୟସ ହେଲଣି, ଆଉ ସେ କାଲି ସକାଳେ ବାପଟିଏ ହେବ ? ସେଇଠୁଁ ଜଣେ ପ୍ରୌଢ଼ା କହି ଉଠିଲେ, "ମଲା ? ହେବ ନାହିଁ କେମିତି ? ସେ ପରା ପୁରାପୁରି ତା' ମାଆ ପରି ଦେଖିବାକୁ ? ମୁଁ ଦେଖିଛି ତାଙ୍କୁ, ଯେତେବେଳେ ସେମାନେ ନୂଆ ବାହା ହୋଇ ଆସିଥିଲେ···ଏଣଳ କଉଟ୍ ଝିଅଟିଏ । କିନ୍ତୁ (ଦୀର୍ଘଶ୍ୱାସ) ପାଞ୍ଚଟା ବର୍ଷ ନଯାଉଣୁ···ଭଗବାନଙ୍କ ଇଚ୍ଛା !"

ପାଣିରେ ଟେକା ପଡ଼ିଲା । ଏବଂ ଜଣକ ପରେ ଜଣେ ମାଡ଼ି ବସିଲେ ତାଙ୍କୁ । ଯଥା—

"ଭଗବାନଙ୍କ ଇଚ୍ଛା ନୁହେଁ, ମିସେସ୍ ମିଶ୍ର, ତମର ସେଇ ପଞ୍ଜାବୀ ସୁନ୍ଦରୀର ଡିଆଣ । ତା'ର ଇଚ୍ଛା । ଆଉ ଜୋଉ ମର୍ଦ୍ଦକୁ ଲେଭେଇ ଥିଲା ସେ, ନହେଲେ ଦି' ବର୍ଷର ପୁଅଟାକୁ ଛାଡ଼ି ଦେଇ ପଳେଇ ଯାଇ ନ ଥା'ନ୍ତା ଏମିତି···"

"ଧର ବା ତମ ଦି' ଜଣଙ୍କର ପଡ଼ିଲା ନାହିଁ ମୋଟେ । କିନ୍ତୁ ଯେତେହେଲେ ତୁ ଗୋଟାଏ ମାଆ ତ ? ମାଆ ହୋଇ ତୋର କେମିତି ମନ ବଳିଲା ପୁଅଟାକୁ ଏମିତି ଫୋପାଡ଼ି ଦେଇ ଚାଲିଯିବାକୁ ?"

"ଖାଲି ସେତିକି ନୁହେଁ । ଗଲା ତ ଗଲା, ମୁଁ ଯାହା ଶୁଣିଛି ସେ ଅରେ ହେଲେ ପଚାରି ବୁଝି ନାହିଁ ତା' ପୁଅ ବିଷୟରେ, ତ' ପାଖକୁ ଚିଠି ଖଣ୍ଡେ ଦେବା ଦୂରର କଥା । ସେ କେତେ ବଡ଼ ହେଲଣି, କେମିତି ଦେଖା ଯାଉଛି, କ'ଣ ପାଠ ପଢ଼ିଲଣି, ଇତ୍ୟାଦି ଇତ୍ୟାଦି ।"

"ହେଲେ ନିହାତି ମାଆର ଫଟୋ ଖଣ୍ଡେ କ'ଣ ନଥିବ ସରୋଜ ପାଖରେ ? ଆଉ ସେ କ'ଣ ଝୁରୁ ନ ଥିବ ତା' ମାଆକୁ, ଲୁଚେଇ ଲୁଚେଇ ଦେଖୁ ନ

ଥିବ ତା' ଫଟୋକୁ ? ଆଉ ଆଜି ପରି ଦିନରେ ତା' ମନଟା କ'ଣ ହଉ ନ ଥିବ କହିଲ ?"

ସେଇଠୁଁ ଶୁଣାଗଲା ଲୋକମୁଖରେ ମାଳୁମାଉସୀ ନାମରେ ଅଭିହିତ ଭଦ୍ର-ମହିଳାଙ୍କର ମାର୍ଜିତ କଣ୍ଠସ୍ୱର । କୁଆପଥରରେ ପିଟି ହେଉଥିବା ଶ୍ରାବଣ ପରି କହିଲେ—

"ଯଦି ଥାଏ ତା' ଫଟୋ, ତା'ହେଲେ ତାକୁ ଟିକି ଟିକି କରି ଛିଣ୍ଡେଇ ଦେବା ଦରକାର । ଛିଣ୍ଡେଇ ଜାଳିଦେବା ଦରକାର । ସିଏ ମାଆ ନୁହେଁ, ରାକ୍ଷସୀ । ବାଘୁଣୀଠାରୁ ହୀନ ।···(ଟିକିଏ ଥମି ଯାଇ) ଯାହାକୁ ନଅମାସ ଗର୍ଭରେ ଧରିଛ, ସେ କେତେ ମୁଣ୍ଡିଆ ମାରିଛି ତମକୁ, କେତେ ଗୁପ୍‌ଚୁପ୍ କଥା ହୋଇଛି ତମ ସାଙ୍ଗରେ, ତମ ଦେହମନର ଟୁକୁଡ଼ାଏ ସେ, ତାକୁ ତମେ କେମିତି ଭୁଲିଯିବ କହିଲ ?

(ସେଇଠୁଁ ସ୍ୱରଟା ଟିକିଏ ଓଦା ଓଦା ହେଲାପରି ଲାଗିଲା) ମୋର ଏବେ ବି ମନେପଡ଼ୁଛି, ଯେତେବେଳେ ନନ୍ଦୁ ଟୋକା ମୋ ପେଟରେ ଥିଲା···କମ୍ ହଇରାଣ ମୋତେ କରିନାହିଁ ସେ !"

ପ୍ରସନ୍ନ ଦାଙ୍କ ସ୍ତ୍ରୀ ଏବଂ ମାନମୟୀଙ୍କ 'ପୁତୁରା ବୋହୂ' ରମା ସେଇ ଦଳରେ ଥିଲା, ଏବଂ ତତ୍‌କ୍ଷଣାତ୍ ତା'ର କାନ ଦି'ଟା ଠିଆହୋଇ ଯାଇଥିଲା ।

ମୁଁ କ'ଣ ସତରେ ଶୁଣିଲି ଯାହା ଶୁଣିଲାପରି ଲାଗୁଛି ? ନା ଇଏ ମାଳୁ-ମାଉସୀ ନୁହାଁନ୍ତି, ଆଉ କିଏ ତାଙ୍କରି ପରି ଦିଶୁଛନ୍ତି ? ସତ କି ମିଛ ବୁଝିଲା ପରି ରମା ଜଳଜଳ ହୋଇ ଅନେଇଲା ତାଙ୍କ ଆଡ଼କୁ । ଅବଶ୍ୟ ସେଇ, ଆମରି ସୁବିଖ୍ୟାତ ମାଳୁମାଉସୀ । ଭାବିଥିଲା ପାର୍ଟିକୁ ଆସିଲା ପରେ ବୁଢ଼ୀଙ୍କର ମଜା ବାହାରି ଯିବ । ଦେଖିବେ ସେ କେତେକର ଲୋକ, ତାଙ୍କ ସମ୍ମୁଖରେ କେମିତି ତାଙ୍କୁ ଚିହ୍ନି ପାରୁ-ନାହାଁନ୍ତି, ଭଦ୍ରତା ଖାତିର୍‌ରେ ନମସ୍କାରଟାଏ ପକେଇବା ଛଡ଼ା, ଦେଖିବେ ଅତିଥିମାନେ କେମିତି ତାଙ୍କ କଚିଛଡ଼ା ଦେଉଛନ୍ତି, ବିଶେଷତଃ ଝିଅବୋହୂମାନେ (ଘରଭଙ୍ଗା ରାଣ୍ଡୀଜଣକ ଏଠି ବି ଆସି ହାଜର, ଏହି ମର୍ମରେ), ଦେଖିବ···। କିନ୍ତୁ ତା' ହେଲା ନାହିଁ । ମନେହେଉଛି ସେ ଏଠି ବି ରାଜତ୍ୱ କରୁଛନ୍ତି । ମନ ଭିତରେ ଯିଏ ଯାହା ଭାବୁଥାଉ ପଛେ, ସେ ଅନାୟାସରେ ତାଙ୍କ ମାଳୁମାଉସୀପଣକୁ ଜାହିର୍ କରିପାରୁଛନ୍ତି ତାଙ୍କ ଉପରେ । ଦେଖ, ନାରୀଗଣ କେମିତି ଗମ୍ଭୀର ହୋଇ ଶୁଣୁଛନ୍ତି ଏଇକ୍ଷଣି, ତାଙ୍କ ନଅମାସିଆ ବେଦନାର କଥା । ସତେକି କେବଳ ଏଇ ସୁନ୍ଦରିଆ ବରଟି ତାଙ୍କ ସହାନୁଭୂତିର ପାତ୍ର ନୁହେଁ ଯେହେତୁ ତା'ର ମାଆ ତାକୁ ଛାଡ଼ିଦେଇ ଚାଲିଯାଇଛି ତା' ପିଲାଟି ଦିନୁ, ସେଥି ସହିତ ଏ ବୁଢ଼ା ଜଣକ ମଧ୍ୟ ତାଙ୍କ ସମବେଦନା ଲୋଡ଼ୁଛି, ଏବଂ ବଗୁଙ୍କୁ ସେତିକ ଯୋଗାଇଦେବା ଉଚିତ । ଗର୍ଭଧାରିଣୀ ମାଆଙ୍କର

କ'ଣ ମନେପଡ଼ୁଛି, କୋଉଥିପାଇଁ ତାଙ୍କ ଆଖି ଛଳଛଳ ହୋଇ ଆସୁଛି, ପଚାରନା ସେସବୁ କିଛି । ହୁଏତ ମନେପଡ଼ୁଛି ପୁଅର ବାପାଙ୍କ କଥା, ଯେ ତାଙ୍କୁ ଛାଡ଼ି ଦେଇ ସେପୁରକୁ ଚାଲି ଯାଇଛନ୍ତି କେବେଠୁଁ । ହୁଏତ ଅତୀତ, ତେଣୁ ଦୁଃଖଦାୟକ ।

—ଇସ୍ ! କି ମିଛ ! କେମିତି ତମ ଜିଭ ଲେଉଟିଲା ମାନୁମାଉସୀ, ଏମିତିକା କଥା କହିବା ପାଇଁ ? ଏତେ ସାହସ ? ଏଭଳି ଅଭିନୟ କରିପାର ତମେ ମୂର୍ଖ ଜନତା ଆଗରେ ?

ଏମିତି ସବୁ ଭାବୁ ଭାବୁ ରମା ହଠାତ୍ ଉତ୍ତେଜିତ ହୋଇ ଉଠିଲା । ଅଧିକରୁ ଅଧିକ ଉତ୍ତେଜିତ ହେଲା, ଗୋଟାଏ ଅନେକ ଦିନର ଜ୍ୱାଳାକୁ ଉସ୍କେଇଲା ପରି । ସତେକି ଏତେଦିନକେ ସୁଯୋଗ ମିଳିଛି ତାକୁ, ସାରାଜୀବନର ଗୋଟାଏ ଅରମାନ ମେଣ୍ଟାଇବା ଲାଗି । ଆଜି ଏଇ ଭରା ସଭାରେ, ଦୁନିଆଁ ଆଗରେ, ସେ ଗେହ୍ଲେଇ ହୋଇ ପଚାରିବ, ମାନୁମାଉସୀଙ୍କୁ, ଯାହାର ମର୍ମ କେବଳ ସେଇ ବୁଝିବେ ଆଉ କଳାକାଠ ପଡ଼ିଯିବେ, ଯେଉଁଠୁ ଅନ୍ୟମାନେ କିଛି ଗୋଟାଏ ସନ୍ଦେହ କରି ବସିବେ । ପଚାରିବ—

"ହଁ ମ, ମାନୁମାଉସୀ, ଆମେ କ'ଣ ଜାଣିନାହୁଁ ଗର୍ଭକଷ୍ଟ କାହାକୁ କୁହନ୍ତି ? କିନ୍ତୁ ଆମ ନନ୍ଦୁବାବୁଟି ଯେମିତିକା ଶାନ୍ତଶିଷ୍ଟ ପ୍ରାଣୀଟିଏ, ସେ ପେଟରେ ଥିଲାବେଳେ କ'ଣ ତମକୁ ବିଶେଷ କଷ୍ଟ ଦେଇଥିବେ ? ସେ ଯାହାହେଉ ପଛେ, ସେ ତମ ଚେହେରାକୁ ପୁରାପୁରି ଛାଙ୍କି ନେଇଛି—ନୁହେଁ ?"

କହିବ, ଅଲବତ୍ କହିବ । ତାଙ୍କ ମୁଖା ଖଣ୍ଡିକ ଖୋଲି ପକେଇବ ବଜାରରେ । ଜଣେଇଦେବ ଯେ ଗର୍ଭଧାରଣ ବୋଲି ଗୋଟିଏ ଜିନିଷ ତାଙ୍କ କପାଳରେ ନାହିଁ. କି ନଥିଲା । ନନ୍ଦୁ ତାଙ୍କ ପେଟର ପିଲା ନୁହେଁ । ସେ ତାକୁ ଗୋଟେଇ ଆଣିଛନ୍ତି । ଅନାଥାଶ୍ରମରୁ ଗୋଟେଇ ଆଣିଥିବା କଅଁଳା ପିଲା, ପାପ-ଗର୍ଭରୁ ଜନ୍ମିତ ପିଲା, ଯେ ଏଇ ବାଞ୍ଝୀକୁ କୃତାର୍ଥ କରିଦେଇ ପାରିଛି ।

ପ୍ରତିଶୋଧ ନେବ । ସେ ଯେଉଁ କ୍ଷତି କରିଛନ୍ତି ମୋର, ଆଜି ତା'ର ପ୍ରତି-ଶୋଧ ନେବ । ଏଭଳି ସୁଯୋଗ ମୋତେ ମିଳିବ ନାହିଁ ଆଉ···

ମନେପଡ଼ୁଛି ସେବେକା କଥା, ଯେତେବେଳେ ମୁଁ ନୂଆ ବାହା ହୋଇ ଆସିଥିଲି । ଆଉ ମୋର ତଥାକଥିତ ମୁହଁଫୋଡ଼ା ଭଦ୍ରଲୋକଙ୍କ ପ୍ରବଳ ଗେହ୍ଲାରେ ମୁଁ ଏମିତି ବିଭୋର ହୋଇ ଉଠିଥିଲି ଯେ ଭାବିଲି ମୋ ଭଳି ଭାଗ୍ୟବତୀ କେହି ନଥିବେ ପୃଥିବୀରେ । ଆଉ କ'ଣ ଦରକାର ? ଏଭଳି ଗୋଟିଏ ସ୍ୱାମୀ, ଏମିତିକା ଖାନ୍‌ଦାନ ପରିବାର, ସ୍ନେହୀ ଶାଶୂଶ୍ୱଶୁର, ଆଉ ଦି'ଟା ବତୁଲିଆ କଉତୁକିଆ ଦିଅର ନଣନ୍ଦ, ସ୍ୱାଁ'ଟାଠୁ ବଳି ଆଉ କ'ଣ ଲୋଡ଼ା ଥିଲା ମୋର ? ହେଲେ ବାଧାତା

ବୋଧହୁଏ ସହିପାରିଲି ନାହିଁ ମୋ ସୁଖ । ଦୁଃଖମୟ ସ୍ୱପ୍ନର ସକାଳେ ଯେଉଁ ଉଲ୍ଲାସ ତରଙ୍ଗ ଅଡ଼ା ବସିଥିଲି ତଥାପି ନିଭିବ ନାହିଁ ବୋଲି, ମୁଁ ତାକୁ କୌଣସିମତେ ସମ୍ଭାଳି ନେଇ ପାରିଲି ନାହିଁ । ଏବଂ ସେଇ ପରିସ୍ଥିତିରେ ମୁକୁଳା ଦରଜାକୁ ପରୁଆ ନକରି ସେ ଯେଉଁ ଅତ୍ୟାଚାର କରିଥିଲେ ମୋର ଓଠ ଓ ଗାଲ ଉପରେ, ତା'ର ନିଦର୍ଶନକୁ ପଣତ କାନିରେ ପୋଛିବାକୁ ଚେଷ୍ଟା କରୁଥିଲି, ଏହି ସମୟରେ ଆବିର୍ଭୂତ ହେଲେ ଜଣେ ଭଦ୍ରମହିଳା, ଯାହାଙ୍କୁ ଦେଖି ମୁଁ ଚମକି ପଡ଼ିଲି ।

ଚମକି ପଡ଼ିବା ସ୍ୱାଭାବିକ । ଭାବିଲି ଇଏ କିଛି ଦେଖି ନାହାନ୍ତି ତ ? ହେ ଭଗବାନ୍ ! କ'ଣ ଭାବିଥିବେ ସେ···ଭାବିଥିବେ କେଡ଼େ ଅଲାଜୁକୀ ଏଇ ଘ' ଘରର ବୋହୂଟା···

କିନ୍ତୁ ଚମକି ଉଠିବା ପରେ ଯେଉଁ ପ୍ରକାର ଭୟ ମୋତେ ଆକ୍ରମଣ କଲା ତାକୁ ଅସ୍ୱାଭାବିକ ବୋଲି କହିପାରି । କାରଣ ମୋର ମନେ ହେଲା ସେ ଏଇ ପରିବାରର କେହି ନୁହଁନ୍ତି । ତାଙ୍କ ଚେହେରା, ତାଙ୍କ ଠାଣି, ତାଙ୍କ ମୋଟା ଓଠର ବହଳିଆ ହସ, ସବୁକିଛି ଘୋଷଣା କରୁଛି ଯେ ସେ କେହି ନୁହଁନ୍ତି ଏଇ ଘରର । ପୂରାପୂରି ଭିନ୍ନ । ତେଣୁ ଆହୁରି ବିପଦ । ସେ ମୋତେ ବଦ୍‌ନାମ୍ କରିବେ ।

ଯାହାହେଉ ସେ ତାଙ୍କ ବହଳିଆ ହସକୁ ବଜାୟ ରଖି ସିଧାସଳଖ ପଶି ଆସିଲେ ଆମ ଶୋଇବା ଘରକୁ, ସତେକି ସେ ଏଇ ଘରର କର୍ତ୍ତ୍ରୀ । ଏବଂ ବସି ପଡ଼ିଲେ ଆମ ଖଟରେ । ଦୋଦୋପାଞ୍ଚ ହୋଇ ମୁଣ୍ଡ ଆଡ଼ାଏ ପକେଇଲି ତାଙ୍କୁ, କାଳେ କୋଉ ଗଣ୍ୟମାନ୍ୟ ବ୍ୟକ୍ତି ହୋଇଥିବେ ପରା, ଏବଂ ଠିଆହେଲି ତାଙ୍କ ସାମ୍ନାରେ, ଦୋଷୀଙ୍କ ପରି । ଏବଂ ସେ ମୋତେ ମୁଣ୍ଡରୁ ଗୋଡ଼ ଯାଏଁ ଦେଖିବା ଛଡ଼ା ଶୋଇବା ଘରର ସାଜସଜ୍ଜାକୁ ମଧ୍ୟ ଘୂରି ଘୂରି ଦେଖିଲେ । ମୁଁ ପ୍ରମାଦ ଗଣିଲି । ବାସି ବିଛଣା ତ ଘୋଡ଼େଇ ହୋଇଗଲାଣି, ବାସି ଲୁଗାପଟା ଧୁଆ ହେବାକୁ ଦିଆ ସରିଛି, ଫୁଲଦାନିର ବାସିଫୁଲ ବି କାଢ଼ି ନିଆଯାଇଛି, ତା' ହେଲେ ଆଉ କ'ଣ ଦେଖିବାର ଅଛି ? ହେଲେ ହସଖଣ୍ଡିକ ଲିଭୁନାହିଁ କାହିଁକି ତାଙ୍କ ଓଠରୁ ?

ସେଇଠୁଁ ସେ ସଶବ୍ଦରେ ହସି ଉଠିଲେ ହଠାତ୍, ଏବଂ କହିଲେ—

''ଆଲୋ ଜାଣି ନାହୁଁ ମୁଁ କିଏ ? ମୁଁ ପରା ତୋ ମାଉସୀ ? ମୁଁ ଏଠି ନଥିଲି ତମ ବାହାଘର ବେଳକୁ । ଗାଆଁକୁ ଯାଇଥିଲି ଗୋଟାଏ ଜରୁରୀ କାମରେ । ସେଇଲାଗି ଦେଖା ହୋଇ ନାହିଁ ଆମର···

ଆ ବ ମୋ ପାଖରେ । ମୁଁ ତୋ ଚାନ୍ଦମୁହଁକୁ ଟିକିଏ ଦେଖେ ଭଲ କରି । ଲତୁଅପା ଠିକ୍ କହୁଥିଲେ ମୋତେ—''

ଧନ୍ୟବାଦ । କିନ୍ତୁ ତଥାପି ତାଙ୍କ ପାଖକୁ ଯାଇ ବସି ପାରିଲି ନାହିଁ ତାଙ୍କ ପାଖରେ । ମୋତେ ଡର ଲାଗିଲା । କେବଳ ତାଙ୍କ ପ୍ରଶଂସାରେ ଟିକିଏ ଛୁଗୁଲିଆ ଭାବ ଅଛୁ, ସେ ମୋତେ ପରଖିବାକୁ ଚାହୁଁଛନ୍ତି । ସେହେତୁ ଲାଜେଇ ଲାଜେଇ ମୁଁ ସେମିତି ଠିଆହୋଇ ରହିଲି । ଆଉ ପଚାରିଲି, "ଚା' ଆଣି ଦେବି ? ନା ଲେମ୍ନ୍ ସରବତ୍ ?"

କିନ୍ତୁ ସେ ତା'ର ଉତ୍ତର ଦେଲେ ନାହିଁ । ଏବଂ କଣ୍ଠସ୍ୱରକୁ ଟିକିଏ ଧିମେଇ ଧିମେଇ ପଚାରିଲେ, "ମୋତେ ଦେଖିଲାକ୍ଷଣି ପ୍ରସନ୍ନ କୁଆଡ଼େ ପଳେଇଗଲା କି, ଏମିତି ଚୋରଙ୍କ ପରି ?"

ସେଇଠୁଁ ମୁଁ ଆହୁରି ଅପ୍ରତିଭ ହୋଇ ଉଠିଲି । ମୁହଁଟା ବି ରଙ୍ଗା ଦିଶୁ ଥାଇଥିବ ବୋଧହୁଏ । ଏବଂ ମୋର ମନେହେଲା ସେ ମୋର ମଜା ଦେଖୁଛନ୍ତି ।

ମୋର ସନ୍ଦେହ ହେଲା ଯେ ଏଇଥିରେ ହିଁ ତାଙ୍କ ଆନନ୍ଦ । ଏଇ ନିଷ୍ଠୁରତା । ଏମିତି ଅଧିକାର ଜମେଇବା ନିରୀହ ଲୋକମାନଙ୍କ ଉପରେ, ତାଙ୍କର କୋଉ ଭୁଲ୍ ସୃଷ୍ଟି ଆବସ୍ଥାର କଲ୍ପ ଉତ୍ପତ୍ତିରୁ । କାହିଁକି ଏଭଳି ଧାରଣା ହେଲା ମୁଁ ବୁଝେଇ ପାରିବି ନାହିଁ, କିନ୍ତୁ ବୋଧହୁଏ ତା'ର ମୂଳରେ ଥିଲା ତାଙ୍କର ସେଇ ପ୍ରତିଭାତ ବ୍ୟକ୍ତିତ୍ୱ ଯାହା ମୋତେ ଚମକେଇ ଦେଇଥିଲା, ଏବଂ ଡରଉଥିଲା । ସେଥିରେ ଅପରପଣିଆ । ସେ ନୁହଁନ୍ତି ଏମାନଙ୍କ ପରି । ନା, ସେ କଦାପି ମୋ ଶାଶୁଙ୍କର ଭଉଣୀ ହୋଇ ନଥିବେ । ଦାଦିଝିଅ କି ମାଉସୀଝିଅ ଭଉଣୀ ବି ହୋଇ ନଥିବେ । ଇଏ ଆଉ କେଉଁ ପରିବାରର, ବଂଶର ଆଉ କେଉଁ ଗ୍ରହର ମଣିଷ ।

ଏମାନେ ପ୍ରାୟ ସମସ୍ତେ ମାଟିମୂର୍ତ୍ତି ହୋଇ ଗୋରା, ଏବଂ ମୋଟାମୋଟି ଭଲ ଦେଖିବାକୁ । କିନ୍ତୁ ଇଏ କାଳୀ, ଡେଙ୍ଗୀ, ଏବଂ ସ୍ବାଙ୍କ୍ କୌଣସି ବ୍ୟାବରେ ସୁଦର୍ଶନା ବୋଲି କହିହେବ ନାହିଁ । ମୋଟା ନୁହଁନ୍ତି କି ପାତଳୀ ନୁହଁନ୍ତି, କେମିତି ଚୋଟାଏ ମଚିମଚିଆ କଳା ଓ ଚକ୍ଚକିଆ ମାଂସର ବିସ୍ତାର ଏବଂ ତା'ର ମୂର୍ତ୍ତିରେ ଯେଉଁ ଆଖି, ନାକ, ଇତ୍ୟାଦି ରହିଛି, ସେଥିରୁ ଏକ ପ୍ରକାର ଆଦିମ ହିଂସା ଫୁଟି ଉଠୁଛି, ଯାହା କେଉଁ ସୁସ୍ଥ ସାଧାରଣ ମଣିଷଠାରେ ଦେଖାଯାଏ ନାହିଁ । ଆଖିଗୁଡ଼ାକ ନିହାତି ଛୋଟ, ମୁହଁଟା ଚଟକା, କପାଳ ଅସାଧାରଣ ଉଚ୍ଚ, ଓଠ ଦିଓଟା ଅତ୍ୟଧିକ ଚଉଡ଼ା ଏବଂ ବହଳିଆ ଆଉ ସମତୁଲ ରୁଢ଼—ତାଙ୍କ ଚେହେରାର ଏଇ ସମସ୍ତ ଟିକିନିଖି ଲକ୍ଷଣକୁ ମୁଁ ପରେ ଚିପି ନେଲି ସିନା, କିନ୍ତୁ ପ୍ରଥମେ ମୋର ମନେହେଲା ସେ ଯେତେବେଳେ ମୋତେ ସହାସ୍ୟ ବଦନରେ ଅନେଇ ରହିଥାଆନ୍ତି ମୋର ମଜା ଦେଖିଲା ପରି, ଯେ—

ସେ ଗୋଟିଏ ସିଧା ହୋଇ ବସିଥିବା ସାପ ! ଅଶ୍ଳୀଳ ଏବଂ ଆକ୍ରମକ ସାପ ।

"ଆ, ଆ, ମୋ ପାଖକୁ ଆ ।"

ମାଉସୀ ଡାକୁଛନ୍ତି । କେଉଁ ନୂଆ ବୋହୂ ଏହି ନିମନ୍ତ୍ରଣକୁ ଉପେକ୍ଷା କରି ପାରିବ ? ତେଣୁ ମୁଁ ଧୀରେ ଧୀରେ ଘୁଞ୍ଚି ଆସିଲି ତାଙ୍କ ପାଖକୁ । କିନ୍ତୁ ଯେତେ ପାଖ ହୋଇ ଆସିଲି, ତାଙ୍କର ସେଇ କାଳ୍ପନିକ ରୂପ ଆହୁରି ଅଧିକ ପ୍ରକଟିତ ହୋଇ ଉଠିଲା । ସେହେତୁ କ୍ଷଣକ ପାଇଁ ମୋର ଆଖି ମଧ୍ୟ ବୁଜି ହୋଇ ଯାଇଥିବ ବୋଲି ମୋର ଧାରଣା । ଯାହାହେଉ ମୁଁ ଖୋଲା ଆଖିରେ ତାଙ୍କ ପାଖରେ ଯାଇଁ ବସିଲି, ସେ ମୋତେ ତଦଡ଼ବ ଚାହାଣିରେ ଅନେଇଲେ (ଗ୍ଲେଟ ଆଖିର ଅପଲକ ଚାହାଣି କେମିତି ହୋଇଥିବ ତାହା ସହଜେ ଅନୁମେୟ); ସେ ମୋ ବାହୁରେ ହାତ ରଖିଲେ ଏବଂ ମୋତେ ଧନ୍ୟବାଦ ଦେବା ଉଚିତ ଯେ ଶିହରଣ ସତ୍ତ୍ୱେ ମୁଁ ମୋ ହାତକୁ ଘୁଞ୍ଚେଇ ଆଣି ନଥିଲି । ସେ ଯାହା କହିଲେ ମୋତେ ଖାଲି ଫିସ୍ ଫିସ୍ ବୋଲି ମନେହେଲା, ଏବଂ ତାଙ୍କର ଜିହ୍ୱା ଚାଳନ ଉଚ୍ଚାରଣରୁ ଅଧିକ ସୁଦୃଶ୍ୟ ହେଲା । ଶେଷକୁ ଶୁଣିଲି ସେ କହୁଛନ୍ତି—

"ମୁଁ ଯାଉଛି ପରେ ଆସିବି । ପୁଣି ଆସିବି । ଆଉ ମନେରଖ, ମୋତେ କେବେ-ହେଲେ ପର ବୋଲି ଭାବିବୁ ନାହିଁ, ବୁଝିଲୁ ? ଜୟ ମା' କଟକଚଣ୍ଡୀ !"

ସେଇଠୁଁ ମୁଁ ତାଙ୍କ ମୁହଁକୁ ନଚାହିଁ ରହିପାରିଲି ନାହିଁ । ବଲବଲ ହୋଇ ଚାହିଁଲି ତାଙ୍କର ମୁହଁକୁ ଗଡ଼ ଜଡ଼ିଲାପରି ଗୋଟାଏ ଦାନ୍ତଚିଙ୍କଡ଼ା ମୁହଁକୁ । ହେ ଭଗବାନ ! ତମେ କେମିତି ଜାଣିଲ ମୁଁ ତମକୁ ପର ବୋଲି ମଣୁଥିଲି ? ଆଉ ତମେ କ'ଣ କରିବ ମୋର, ଯଦି ମୁଁ ତମକୁ ନିଜର ବୋଲି ମନେ ନକରେ ?

ମୋର ଚାହାଣି ନଇଁ ଆସିଲା ପ୍ରଥମେ, ତାଙ୍କର ନୁହେଁ । ଏବଂ ବିକଳାଙ୍ଗର ହସ ଆହୁରି ନିର୍ମମ ଓ ସାଲହବିହୀନ ବୋଲି ମନେହେଲା ଯେତେବେଳେ ସେ ଶେଷ ଥର ପାଇଁ 'ଯାଉଛି...ପୁଣି ଆସିବି ପରେ' ବୋଲି କହିକରି ଗଲେ । ଏବଂ ଆଉ ପଦେ ଯୋଡ଼ିଦେଲେ ସେଥିରେ—

"ନୂଆ ବୋହୂଟା, ଶୋଇବା ଘର ଦରଜାକୁ ଏମିତି ଟିଆମେଲା କରି ରଖିବୁ ନାହିଁ, ବୁଝିଲୁ ? ଅନ୍ୟମାନେ କ'ଣ ହୋଇଛନ୍ତି ତୋ ମାଉସୀ ପରି ?"

ସେଇ ହେଲା ଚେତାବନୀର ଶେଷକଥା । ମାନୁମାଉସୀଙ୍କ ବକ୍ତବ୍ୟର ମର୍ମ ; ସାଧୁ ସାବଧାନ, ମୋତେ ପର ବୋଲି ଭାବିବୁ ନାହିଁ । ନଚେତ୍...ଦେଖିବୁ କ'ଣ ହେବ । କାରଣ ତୋର ଏଇ ମାଉସୀ ଖଣ୍ଡିକ ଆଉ କାହାପରି ନୁହେଁ, ଆଉ କେଉଁ ଅର୍ଦ୍ଧନାରୀ ମାଉସୀଙ୍କ ପରି । ସେ ତୋର ଜୀବନ ନଷ୍ଟ କରି ଦେଇପାରିବ—ବୁଝିଲୁ ?

ବୁଝିଲି । କିନ୍ତୁ ପାରିଲି ନାହିଁ । ଭାଷାରେ, ଭାବରେ, କି ଭଙ୍ଗୀରେ ଜଣାଇ ଦେଇ ପାରିଲି ନାହିଁ ଯେ ତମେ ମୋର ପର ନୁହଁ, ଏକାନ୍ତ ନିଜର । ସେଇ ପ୍ରଥମ

ସାକ୍ଷାତ ତଥା ସଂଘାତର ସ୍ମୃତିକୁ ମନରୁ ପୋଛିଦେଇ ପାରିଲି ନାହିଁ । ଅପରନ୍ତୁ ମନେ ମନେ ବିଦ୍ରୋହ କରି ଉଠିଲି । ଯେ ହରି, ତମେ ମୋତେ ଜିତି ଯାଇ ନାହଁ, କି ଜିତିପାରିବ ନାହିଁ, ତମେ ମୋତେ ବ୍ଲାକ୍‌ମେଲ୍ କରି ପାରିବ ନାହିଁ । ମୁଁ ଆଜି-କାଲିକା ଝିଅ ।

ସେଦିନ ଯେମିତି ସେ ଫେରିଗଲେ ଉହ୍ୱରୁ ମୁଁ ମନେମନେ ପାଟି କରି ଉଠିଥିଲି ତାଙ୍କ ପଛରୁ—କ୍ଷମା କରିବ । ଇଏ ମୋ ସ୍ୱାମୀର ଘର । ଆଉ ଇଚ୍ଛା ହେଲେ ମୁଁ ଚବିଶଘଣ୍ଟା ସ୍କ୍ରୀ'ର-ଝରକା ଦୁଆରକୁ ଖୋଲା କରି ରଖିବି, ଆଉ ଗେହ୍ଲେଇ ହେବି ମୋ ସ୍ୱାମୀ ସାଙ୍ଗରେ । ତମେ ପୁଣି ଥରେ ଆସ, ବାରମ୍ବାର ଆସ, କି ମୂଳରୁ ନଆସ । ବୁଝିଲ, ମାଲୁମାଉସୀ ?

ପରେ ଶାଶୁଙ୍କଠାରୁ ବୁଝିଲି ଯେ ସେ କୋଉ ଆଳିଆ ଲେଖାରେ ବାଳିଆ ମାଉସୀ ବି ନୁହଁନ୍ତି । ଜ୍ଞାତିକୁଟୁମ୍ବଗତ ସମ୍ପର୍କ କିଛି ନାହିଁ ତାଙ୍କ ସାଙ୍ଗରେ । ହେଲେ ତାଙ୍କ ସ୍ୱାମୀ ଜଣେ ବେକାର, ଅଳସୁଆ ଏବଂ ତଥାକଥିତ 'ଭଲଲୋକ' ଥିଲେ ଯେ ମାଛିକ୍ ମରି ବୋଲି କହିପାରନ୍ତି ନାହିଁ, ଏବଂ କଥାକଥାକେ ଦାନ୍ତ ଦେଖାନ୍ତି । ଏବଂ ଶ୍ୱଶୁର ସେଲ୍‌ଟ୍ୟାକ୍ସ ଅଫିସର ହୋଇ ବାଲେଶ୍ୱରରେ ଥିଲାବେଳେ ତାଙ୍କ ସମ୍ପର୍କରେ ଆସିଲେ । ସେଇଠୁଁ ତାଙ୍କୁ ଭଲ ପାଇଲେ । ତାଙ୍କର ଅଳସୁଆମି କିମ୍ବା ନିରୀହପଣ ଯୋଗୁଁ ନୁହେଁ, ସେ କୁଆଡ଼େ ଜଣେ ମହାପଣ୍ଡିତ ଥିଲେ ଯାହା ଆମ ସାହିତ୍ୟପ୍ରେମୀ ଶ୍ୱଶୁର ମହାଶୟଙ୍କୁ ଆକୃଷ୍ଟ କରିଥିଲା । ମାତ୍ର ମାଟ୍ରିକ୍ ପାସ୍ କରିଥିଲେ ମଧ୍ୟ ସେ ଉପେନ୍ଦ୍ର ଭଞ୍ଜଙ୍କଠାରୁ ଆରମ୍ଭ କରି ଭବଭୂତିଙ୍କ ଯାଏଁ ନାନା ଓଡ଼ିଆ ଏବଂ ସଂସ୍କୃତ କାବ୍ୟର ସୁଲଳିତ ଆବୃତ୍ତି ଏବଂ ବ୍ୟାଖ୍ୟା କରି ବାପାଙ୍କୁ ଚମତ୍କୃତ କରି ପାରୁଥିଲେ ।

ନକୁଳ ମହାନ୍ତି ନାମକ ଏଇ ଭଦ୍ରଲୋକ ହଠାତ୍ ଦିନେ ପହଞ୍ଚିଲେ ବାପାଙ୍କ ପାଖରେ ତାଙ୍କ ନବବିବାହିତା ସ୍ତ୍ରୀଙ୍କୁ ଧରି, ଏବଂ କହିଲେ, "ସାର୍, ଆମ ଭବିଷ୍ୟତ ଆପଣଙ୍କୁ ଲଗିଲା ।" ଅର୍ଥାତ୍ ମୋତେ ଯେମିତି ହେଲେ ଖଣ୍ଡେ ଚାକିରି କରେଇ ଦିଅନ୍ତୁ । ନହେଲେ ଆମେ ବଞ୍ଚିବୁ କେମିତି ? ନା ମୋର ଶୁଭାକାଂକ୍ଷୀ ବୋଲାଇଲେ ମଧ୍ୟ କହିବାକୁ ଚାହାନ୍ତି ଯେ ମୋର ବାହା ହେବା ଉଚିତ ନଥିଲା ?

ନବବିବାହିତା ମାଲୁମାଉସୀ । ସେତେବେଳେ କେମିତି ଦେଖା ଯାଉଥିବେ ସେ ? କେଉଁ ପ୍ରକାର ଆକର୍ଷଣ ଥିଲା ତାଙ୍କଠାରେ, ଯେଉଁଥିରେ ନକୁଳମଉସା ବାନ୍ଧି ହୋଇଗଲେ ? ନା ଇଏ ତାଙ୍କୁ ଏମିତି ଖାପ୍‌ଚରେ ପକେଇଲେ ଯେ ଭଦ୍ର-ଲୋକଙ୍କର ଅନ୍ୟ ଗତି ନଥିଲା ? ମୋର ଭାରି ମନ ହେଉଥିଲା ସେ ବିଷୟରେ କିଛି ଜାଣିବା ଲାଗି । କାରଣ ଶାଶୁ କହିଲେ ଯେ ସେ 'ନିଜ ଇଚ୍ଛାରେ' ତାଙ୍କୁ ବାହା ହୋଇଥିଲେ ।

ଯାହାହେଉ, ଉଦାରଚରିତ ଶ୍ୱଶୁର ମହାଶୟ ତାଙ୍କୁ ଗୋଟିଏ ଷ୍ଟ୍ରେଟମୋଟ କରଣି ଚାକିରି କରେଇଦେଲେ, ଏବଂ ମୋର ସ୍ନେହମୟୀ ଶାଶୂ ତାଙ୍କ ସ୍ତ୍ରୀଙ୍କୁ ତାଙ୍କ ପାନଭରିଣି ହିସାବରେ ଗ୍ରହଣ କରିନେଲେ ।

ବଡ଼ ଦୁଃଖ ପାଇଛି ଏଇ ମାନୁ ଝିଅଟା, ଶାଶୂ କହୁଥିଲେ ମୋତେ, କିନ୍ତୁ ସେ କେବେହେଲେ ଭାଙ୍ଗି ପଡ଼େ ନାହିଁ । ଗରିବ ଘରର ଝିଅ, ପିଲାଦିନୁ ବାପମାଆଙ୍କୁ ହରେଇ ରହିଥିଲା ତା'ର କୋଉ ଖୁଡ଼ୀଙ୍କ ପାଖରେ । ସେଇଠୁଁ ହଠାତ୍ ବାହା ହୋଇ ପଡ଼ିଲା ନକୁଳବାବୁଙ୍କୁ । କିନ୍ତୁ କୋଉ ସୁଖ ପାଇଲା ତାଙ୍କୁ ନେଇ ? ଇଏ ତାଙ୍କୁ ଗୋଟିଏ ଚାକିରି କରେଇ ଦେଇଥିଲେ ସିନା, ସେ ତାକୁ କୋଉ ରଖି ପାରିଲେ ? ବର୍ଷେ ନଯାଉଣୁ ତଡ଼ା ଖାଇଲେ, କାମରେ ଗଫଲତି ଯୋଗୁଁ । ଆଉ ମାନୁ ସ୍ୱାମୀ' ଘରେ ତା' ଘରେ ସିଲେଇ କାମ କରି ପେଟ ପୋଷିଲା କୌଣସିମତେ । ସେଇଠୁଁ ବାହାଘରର ଛଅସାତବର୍ଷ ନଯାଉଣୁ ନକୁଳ ମହାନ୍ତି ବି ଖତମ୍ ଗୋଟାଏ ଦି' ଦିନଆ ଜରରେ । ସେତେବେଳକୁ ଇଏ ରଟାୟାର୍ କରି ସାରିଲେଣି, ଆଉ ଆମେ କଟକରେ ଆସି ରହିଲୁଣି । ଦିନେ ସକାଳୁ ସକାଳୁ ମାନୁ ଆସି ହାଜର ଆମ ଘରେ । କିନ୍ତୁ ଜାଣିଛୁ ନା ରମା, ସେତେବେଳେ ବି ତା' ଆଖିରେ ଲୁହ ନଥିଲା । ଆଉ ସେ ଟିକିଏ ହେଲେ କାକୁତି ମିନତି ହେଲା ନାହିଁ ଆମ ପାଖରେ । ଖାଲି କହିଲା—

'ଏଥର ମୁଁ କ'ଣ କରିବି କୁହ ଲଭୁଅପା । ମୋର ଆଉ କେହି ଅପା ନାହାନ୍ତି, କି ଭାଇ ନାହାନ୍ତି ତମ ଦି'ଜଣଙ୍କ ଛଡ଼ା । ସେଇଲାଗି ମୁଁ ଆସିଛି ତମ ପାଖକୁ । ଅନ୍ୟ ଅର୍ଥରେ ଏଣିକି ଦାୟିତ୍ୱ ମୋର ନୁହେଁ, ତମର ।'

ଏହି ଭାବରେ ମାନୁମାଉସୀ ଅଧିକାର ଜମେଇଲେ ଏଇ ପରିବାରରେ, ଆଶ୍ରିତାର ଭୂମିକାରେ । ଶ୍ୱଶୁରଙ୍କ କୃପାରୁ ଗୋଟିଏ ଭଡ଼ାଘର ଖଞ୍ଜି ଦିଆଗଲା ତାଙ୍କ ପାଇଁ, ତଥା ଗୋଟିଏ ସିଲେଇ କଳ, ଏବଂ ସେ ନିଜ ପେଟ ପୋଷିଲେ କୌଣସିମତେ । ବରଂଚ ତା' ପୁଅଟାକୁ ବି ମଣିଷ କଲା ସେଥିରେ, ଶାଶୂ କହିଲେ, ତାଙ୍କ ପ୍ରଶଂସାକୁ ଆହୁରି ମୋଟେଇଦେଲା ପରି ।

'ଯାହାହେଉ ପୁଅଟିଏ ଜନ୍ମ ହୋଇଯାଇଥିଲା ସେତେବେଳକୁ', ମୁଁ କହିଲି ସହାନୁଭୂତି ଦେଖାଇ ।

'ହୁଁ—' । ବୁଝିପାରିଲି ନାହିଁ ଶାଶୂ କାହିଁକି ଏମିତି ଗହୀରିଆ 'ହୁଁ'ଟିଏ କଲେ । ତା'ର ମର୍ମ ବୁଝିବାର ଶକ୍ତି ନଥିଲା ମୋର ସେତେବେଳେ ।

ହଁ, ଶାଶୂ ଯାହା କହିଲେ ମୋତେ ମାନୁମାଉସୀଙ୍କ ବିଷୟରେ ସେଥିରେ ମୋର ତାଙ୍କ ପ୍ରତି ଦୟା ଉପୁଜିବା ଉଚିତ ଥିଲା । ଅନ୍ତତଃ ତାଙ୍କର ଯେଉଁ ପ୍ରତିଭାତ ବ୍ୟକ୍ତିତ୍ୱ ମୋତେ ଡରାଇଥିଲା ଚତୁର୍ଥୀ ରାତିର ସକାଳେ, ତା'ର ଉଗ୍ରତା ଟିକିଏ

କମିଯିବା ଉଚିତ ଥିଲା । କିନ୍ତୁ ତା' ହେଲା ନାହିଁ । କାରଣ କେବଳ ତାଙ୍କର ସେଇ ବ୍ୟକ୍ତିତ୍ୱର ବିଭିନ୍ନ ରଙ୍ଗରୂପ ଦେଖିବାକୁ ମିଳିଲା ମୋତେ, ଯେତେବେଳେ ସେ ପୁଣି ଆସିଲେ, ଏବଂ ବାରମ୍ବାର ଆସିଲେ ତାଙ୍କର ପ୍ରଚଣ୍ଡ ଅନୁଯାୟୀ । ମୋର ମନେ ହେଲା ଯେ ମୋତେ ତାଙ୍କ 'ନଜର' କରିବା ଲାଗି ସେ ମୋତେ ଯେତେ ମୋଗ କରନ୍ତୁ ବା ଚଥାରନ୍ତୁ, ଫୁସ୍‌ଫୁସ୍ ହୁଅନ୍ତୁ, କି ହୋ' ହୋ' ହୁଅନ୍ତୁ, ସବୁଥିରେ ଅଛି ସେଇ ଗୋଟିଏ ପ୍ରବୃତ୍ତି । ଦର୍ଶନ । ଯାହାର ଅବଦାନ ବିଷ ।

—ଆଲୋ, ତୁ ତୋର ସବୁ ଗହଣାଗାଣ୍ଠି କଅଣ ଅପାଙ୍କ ପାଖରେ ଛାଡ଼ି ଦେଇଛୁ ? ବୋକୀଟା !

—ଶୁଣ୍, ତୋର ଯୋଉ ମଉଲାଶୁର ଆସିଥିଲେ ସେଦିନ, ତାଙ୍କୁ ସାବଧାନ ଥିବୁ । ସେ ମହା ଧୂର୍ତ୍ତ ଲୋକ, ଅପାଙ୍କ କାନରେ କ'ଣ ବୋଲି କ'ଣ ଫୋଡି ଦେଇ ପାରନ୍ତି···

—ତୋର ନନ୍ଦେ ଖଣ୍ଡିକ ଯେଉଁ ବାଦ କରୁଛି ନା ତୋ ସାଙ୍ଗରେ, ତୁ ବୋଲି ସହୁଛୁ ତାକୁ । ଆଉ କିଏ ହୋଇଥିଲେ···

ଇତ୍ୟାଦି ଇତ୍ୟାଦି । କିନ୍ତୁ ଦୁଃଖର ବିଷୟ ମୁଁ ଥରେ ହେଲେ ତାଙ୍କ କଥାରେ ମୁଣ୍ଡ ହଲାଇ ପାରିଲି ନାହିଁ କି ହସିପାରିଲି ନାହିଁ, ଯେଉଁଥିରୁ ମନେହେବ ମୁଁ ତାଙ୍କ ଆକ୍ଷେପକୁ ସମର୍ଥନ କରୁଛି । ବରଂ ମୋର କଠୋର ନିରୁତ୍ତରତା ତାଙ୍କୁ ସୁସ୍ପଷ୍ଟ ସୂଚନା ଦେଉଥିବ ଯେ ମୋତେ ଭଲ ଲାଗୁନାହିଁ ଏଭଳି କଥା ଶୁଣିବା ପାଇଁ ।

ମୁଁ କେବେହେଲେ ଭାବି ପାରିଲି ନାହିଁ ଯେ ଏଭଳି ଘରଭଙ୍ଗା, ହିଂସା ଓ ପରଶ୍ରୀକାତରତା ତାଙ୍କ ଦୁଃଖିନୀ ପଣର କ୍ଷତିପୂରଣ ହୋଇଥିବ ପରା । ତେଣୁ, କ'ଣ କରିବ, ମୋର ଦୟାଭାବ ଅଧାରୁ ଅଟକି ଯାଉଥିଲା, ଏବଂ ଆତ୍ମୀୟତାର ପ୍ରଶ୍ନ ଉଠିଲା ନାହିଁ ।

ତାଙ୍କ ଛଅସାତ ବର୍ଷର ଗୁଲୁଗୁଲିଆ ପୁଅ ନନ୍ଦୁ ମଧ୍ୟ ମୋତେ କିଣିନେଇ ପାରିଲେ ନାହିଁ । ବରଂ ତାକୁ ଯେତେବେଳେ ଦେଖେ ମୋର ମନେହୁଏ ଯେ ତାଙ୍କର କୌଣସି ଅଧିକାର ନାହିଁ ଏଭଳି ଗୋଟିଏ ପୁଅର ମାଆ ହେବା ଲାଗି ।

ଅଗତ୍ୟା ସେ ବୁଝିଲେ ଯେ ମୁଁ କସ୍ମିନ୍‌କାଳେ ତାଙ୍କ ନଜର ହୋଇ ପାରିବି ନାହିଁ । ବିଶ୍ୱର ପରଚେତକ ହୋଇ ପାରିବି ନାହିଁ । ଅତଏବ ମୁଁହିଁ ହେବି ତାଙ୍କ ଦଂଶନର ଶିକାର । ମୋତେ ହିଁ ସେ ନାଶ କରିବେ ପ୍ରଥମେ । ଯାହା ସେ ଧମକେଇ ଥିଲେ ସେଦିନ, ସେଇ ତୃତୀୟ ରାତିର ସକାଳେ, ଯଦି ମୁଁ ତାଙ୍କୁ ନଜର ନକରେ ।

ସେଇଠୁଁ ତାଙ୍କର ଚେଷ୍ଟା ହେଲା ମୋତେ କେମିତି ଦୂରେଇ ଦେବେ ମୋ ନିଜ ଲୋକଙ୍କଠାରୁ । ସ୍ୱାମୀ କଦାପି ତାଙ୍କ ପେଟ ଭିତରକୁ ଆସିବେ ନାହିଁ, ଏବଂ ସେ ମୋର ଗୁରୁଗମ୍ଭୀର ଶ୍ୱଶୁରଙ୍କ ପାଖ ମାଡ଼ନ୍ତି ନାହିଁ, ତେଣୁ ମୋ ଶାଶୁ ଓ ଦି'ଟା ଘରର ନଣନ୍ଦ ହେଲେ ତାଙ୍କ ମନୁଷ୍ୟସୁଲଭ ସହାନୁଭୂତିର ଶ୍ରୋତା । 'ଆଲୋ ତୋ ଭଉଜଟା କ'ଣ ଶୋଇଛି ଏତେବେଳ ଯାଏଁ ? ତୁ ଆସି ସ୍କୁଲ୍‌କୁ ବାହାରିଲୁଣି, ତୋ ମୁଣ୍ଡରେ ବେଣୀ ଦି'ଟା ବାନ୍ଧିଦେବାକୁ ନାହିଁ ? ···'ଅପା, ଏ ବୁଢ଼ୀ ବୟସରେ ତମକୁଇଁ ଏମିତି ଉପରତଳ ହେବାକୁ ହେବ ପିଲାଙ୍କ ଖବର ବୁଝିବା ପାଇଁ ? ବୋହୂ କୋଉ ରାଣୀ ହେବାକୁ ଆସିଛି ଏଠିକି ?,···'ତା'ର ବେଲ କୋଉଠି ଅଛି କହନ୍ତ' ? ସେ ପରା ମଡ଼ର୍ଣ୍ଣ ଝିଅ ! ସେରେମ ହେବା, ନଭେଲ୍ ପଢ଼ା, ଦର୍ପଣ ଆଗରେ ବସି ଚେହେରା ବାଗେଇବା, ଏଇସବୁ ଦରକାରୀ କାମ ଛାଡ଼ି ଦେଇ ସେ ଯିବ ଗୁଆ ଭାଙ୍ଗିବାକୁ ନା ବଢ଼ା ପାଣିବାକୁ ? ଶାଶୂଙ୍କର ଗୋଡ଼ ଘଷିଦେବା କଥା ଛାଡ଼, ସେ ତ ଗୋଟାଏ ଦାସୀପଣିଆ···ଇତ୍ୟାଦି ଇତ୍ୟାଦି । ଯାହା ମୁଁ ଶୁଣିବାକୁ ପାଏ ବିଭିନ୍ନ ସୂତ୍ରରୁ, ଏବଂ ବିଶ୍ୱାସ ନକରିବାର କାରଣ ନଥାଏ ।

ଧୀରପାଣି ପଥର କାଟେ, ଯଦି ତା'ର ନିରବଚ୍ଛିନ୍ନତା ଅକ୍ଷୁଣ୍ଣ ହୋଇ ରହେ । ଏବଂ ତାହାହିଁ ହେଲା । ଶାଶୂ କ୍ରମଶଃ ଦୂରେଇଗଲେ, ଅନ୍ତତଃ ସେଇଆ ମନେହେଲା ମୋର । ଦେଖେଇ ଦେଖେଇ କହିଲେ ଯେ ମୁଁ ଯେତେହେଲେ ବଡ଼ଲୋକଘର ଝିଅ, ପାଠୋଇ, ଆଧୁନିକା ଇତ୍ୟାଦି । ଯେହେତୁ ମୁଁ ଅମୁକ କାମ କରୁପାରୁ ନାହିଁ, ଅମୁକ ଜିନିଷକୁ ନାକ ଟେକୁଛି । ଆକ୍ଷେପ ତୁଳନାତ୍ମକ, ତେଣୁ ଆହୁରି ଅସହ୍ୟ ହୋଇ ଉଠିଲା, ଯେତେବେଳେ ଘରର ପ୍ରଦୀପ ବାହାହୋଇ ଆଉ ଗୋଟିଏ ବୋହୂ ଘରକୁ ଆଣିଲେ, ଏବଂ ବୋଉ କହିବାକୁ ଲାଗିଲେ ଯେ ମୋ ଦେଇ କିଛି ହେବ ନାହିଁ, କିନ୍ତୁ ସିଏ ପାରିବ, କୁହ ପାରିବ କାହିଁକିନା ସେ କୋଉ ବଡ଼ଲୋକ ଘରୁ ଆସି ନାହିଁ । ବି. ଏ., ଏମ୍. ଏ. ପାସ୍ କରି ନାହିଁ, ଇତ୍ୟାଦି ।

ଶାଶୂବୋହୂଙ୍କର ଖୋଲା କଳିକଜିଆ ଲାଗେ ନାହିଁ ଏମିତିକା ଖାନ୍‌ଦାନ ଘରେ । କିନ୍ତୁ ସେ ମୋଠାରୁ ଦୂରେଇଗଲେ, ଏଥିରେ ସନ୍ଦେହ ନାହିଁ । ଏବଂ ତା'ର ପ୍ରଭାବ ଅନ୍ୟମାନଙ୍କ ଉପରେ ବି ପଡ଼ିଲା ଅଳ୍ପ ବହୁତ । ଇଏ ମଧ୍ୟ ଭାବିଲେ ମୁଁ ତାଙ୍କୁ କିଛି କହିଲାରୁ, ଯେ ମୁଁ ବୋଉଙ୍କୁ ଭୁଲ୍ ବୁଝୁଛି ।

ବିଷ ଜରିଗଲା ମୋର ସୁନାର ସଂସାରରେ । ଅନ୍ତତଃ ମୋର ସେମିତି ମନେ ହେଲା । ଏବଂ ସେଥିପାଇଁ ମୁଁ ମାଳୁମାଉସୀଙ୍କୁ ହିଁ ଦାୟୀ ନକରି ରହିପାରିଲି ନାହିଁ । ସେଇ ମାଳୁମାଉସୀ, ସେଦିନର ସେଇ ଅଶ୍ଳୀଳ ଓ ବିଷଧର ସର୍ପ—

ରମା ଫେରିଆସିଲା ବର୍ତ୍ତମାନକୁ । ଏଇ ହେଉଛି ସେଇ ସର୍ପ । ସେଇ ମାନୁ-ମାଉସୀ, ପ୍ରାୟ ଷାଠିଏ ବର୍ଷର ବୁଢ଼ୀ ଏଇକ୍ଷଣି, ଯେ ଉଙ୍କୁଛି ଏଇ ରସେପ୍‌ସନ୍‌ରେ । ଅଳ୍ପ ବେଢ଼ଆ ଝଟକୁଛି ତା'ର ମାଆପଣିଆକୁ ଦେଖେଇ ହୋଇ ।

ଆଃ ! କେଡ଼େ ବଢ଼ିଆ କାମଟାଏ ନହେବ, ନିଜ ପାଇଁ ତଥା ସଂସାର ପାଇଁ, ଯଦି ମୁଁ ତା'ର ଚେହେରାକୁ ଖରାପ କରିଦିଏ । ମାନେ ତା'ର ଗର୍ବ ନଷ୍ଟ କରିଦିଏ । ଇସ୍ ! ସୁରମାର ଦେହ ଥରି ଉଠିଲା, ଯେମିତିକି ସେ ସତରେ କୋଉ ଗନ୍ଧିଆ ସାପଟାକୁ ଗୋଡ଼େଇ ଦଳିଦେବାକୁ ଯାଉଛି ।

କିନ୍ତୁ ହଠାତ୍ ତା'ର ମନେହେଲା ଯେ ସାପଟାକୁ ଗୋଡ଼ରେ ଦଳିଦେବା ଗୋଟାଏ ଗନ୍ଧିଆ କାମ, ଯାହା ସୁରମା ଭଳି ସୁରୁଚି ସମ୍ଭ୍ରାନ୍ତ ଲୋକମାନଙ୍କୁ ସୁହାଏ ନାହିଁ।

...ହଁ, ଇଏ ଗୋଟାଏ ଗନ୍ଧିଆ କାମ । ସାତ ସମୁଦ୍ରତଳେ କୋଉ ଫରୁଆ ଭିତରେ ରହିଥିବା କାହାର ଜୀବନ ନାଟିକାକୁ ଚିପ୍‌କିନା ଚପିଦେବା, ଯେମିତିକି ସିଏ ଅତର୍କିତରେ ଗୁହୁଁ ଗୁହୁଁ ଖତମ୍ ହୋଇଯିବ, ଆଉ ବଲବଲ ହୋଇ ଅନେଇଥିବ ତମ ମୁହଁକୁ । ଛିଃ ଛିଃ, ତୁ ମୋଠୁ ବ ହୀନ ବୋଲି କହୁଥିବ ତା'ର ମଲାମାଛ ଗୁହାଣିରେ ।

ତା'ଛଡ଼ା ଏଇ ପ୍ରତିଶୋଧର କାରଣ କ'ଣ ତୁଚ୍ଛା ଐତିହାସିକ ନୁହେଁ ? ଏଇକ୍ଷଣି ତାଙ୍କ ବିଷ କ'ଣ ସତରେ ଫଉଳା ହୋଇଯାଇଛି ଆମ ଜୀବନରେ, ଆମ ପରିବାରରେ, ଯେ ମୁଁ ତାକୁ ଏମିତି ଉତାର ଦେବାକୁ ବସିଛି ? କହୁଛି, ଶୁଣ ମାନୁ-ମାଉସୀ, ମୋର ବି ଗୋଟାଏ ବିଷଦାନ୍ତ ଅଛି, ଯାହା ଜଣା ନଥିବ ତମକୁ, ଆଉ ମୁଁ ତମକୁ ସେଇଥିରେ କାମୁଡ଼ିଦେବି ? ଧାତ୍ତ୍ ! ଶୁଣ୍ ରମା, ତୁ ମିଛୁଟାରେ ନିଜକୁ ଗୋଟାଏ ସଇତାନ୍ କରିବାକୁ ଗୁହୁଁଛୁ । ତୋର କୌଣସି ଦୁଃଖ ନାହିଁ ଏଇକ୍ଷଣି । ତାଙ୍କ ବିଷ କାଟ୍ କରିଥିଲା ନିଶ୍ଚୟ କେତେ ବର୍ଷ ଯାଏଁ । କିନ୍ତୁ କାଳ-କ୍ରମେ ସବୁ ଠିକ୍ ହୋଇଯାଇଛି । ଆପେ ଆପେ । ଶାଶୁଶ୍ୱଶୁର ଗଲେଣି । ତୁ ମଧ୍ୟ ତିନୋଟି ପିଲାଙ୍କ ମାଆ ହେଲୁଣି, ଆଉ ଘରବୁଢ଼ୀଟିଏ । ଏବଂ ପ୍ରସନ୍ନବାବୁ ତୋତେ ଅଦ୍ୟାବଧି ଭଲ ପାଆନ୍ତି, ଅବଶ୍ୟ ଭଲ ପାଆନ୍ତି । ଆଦର୍ଶ ପରିବାର ନହେଲେ ମଧ୍ୟ ସ୍ୟା'କୁ କ'ଣ କିଏ ଦୁଃଖୀ ପରିବାର ବୋଲି କହିବ ? ଆଉ ଗୋଟିଏ କଥା ବୁଝୁନୁ ? ଯେଉଁ ଅସ୍ତ୍ରଟିଏ ପାଇଛୁ ତୁ ତୋ ଶାଶୁଙ୍କଠାରୁ, ଯେଉଁଥିରେ ତୁ ତାଙ୍କୁ ଖତମ୍ କରିଦେବାକୁ ବସିଛୁ, ସେ ତାକୁ କାହିଁକି ଖର୍ଚ୍ଚି ଦେଲେ ତୋ ହାତରେ, ଯଦି ତାଙ୍କର ଏତେ ଆସ୍ଥା ଥିଲା ମାନୁମାଉସୀଙ୍କ ଉପରେ ? ନା, ସେ ବି ବୁଝି ନେଇଥିଲେ କଥାଟା ପ୍ରକୃତରେ କଅଣ, ଏବଂ ତାଙ୍କର ମନ ଗୁଡ଼ି ଯାଇଥିଲା ମାନୁମାଉସୀଙ୍କ ସାଥୀପଣିଆରୁ,

ଯେତେବେଳେ ସେ ଅତ୍ୟନ୍ତ ଗୋପନୀୟ ତଥ୍ୟଟିକୁ ବାଢ଼ିଦେଲେ ତୋ ଆଗରେ। ରାଣ ପକେଇଲେ ଆଉ କାହା ଆଗରେ ନ କହିବାକୁ। ହେଲେ କହିଲେ।

ମନେ ଅଛି। ମୁଁ ହାଲୁକାରେ କହିଲି, ମାଆପୁଅଙ୍କ ଆଚରଣକୁ ନେଇ ଗୋଟାଏ ସର୍ବସାଧାରଣ ମନ୍ତବ୍ୟ ଛାଡ଼ିଦେଲି ପରା, ଯେ ମାଳୁମାଉସୀ ତାଙ୍କ ଭେଣ୍ଡିଆ ପୁଅଟାକୁ ବେଶି ମୁଣ୍ଡରେ ବସଉଛନ୍ତି, ତାକୁ ବଢ଼ିବାକୁ ଦେଉନାହାନ୍ତି। ସେଇଥିଁ ସେ ହସି ପକେଇଲେ, ଆଉ କହିଲେ—'ଶୁଣ···'। ଏବଂ ମୁଁ ଶୁଣିଲି। ଜାଣିଲି ଯେ ସେ ନନ୍ଦନକୁ ତା' ପିଲାଦିନୁ ଗୋଟେଇ ,ଆଣିଛନ୍ତି। ମଉସା କୁଆଡ଼େ ତାକୁ ପ୍ରବର୍ତ୍ତାଇଲେ ସେଇ ଭଲକାମଟିଏ କରିବା ଲାଗି, ଏବଂ ସେ ଶେଷକୁ ରାଜି ହୋଇ ଗଲେ। ନନ୍ଦବାବୁ ପ୍ରଖ୍ୟାତ ଅଧ୍ୟାପକ ଅମୁକଙ୍କର ବଡ଼ ଝିଅର ପାପଗର୍ଭରୁ ଜାତ। ଅଧ୍ୟାପକ ଆମ ଶ୍ୱଶୁରଙ୍କୁ ପ୍ରବର୍ତ୍ତାଇଲେ, ଶ୍ୱଶୁର ନକୁଳ ମଉସାଙ୍କୁ ପ୍ରବର୍ତ୍ତାଇଲେ, ଏବଂ ନକୁଳ ମଉସା ତାଙ୍କ ସ୍ତ୍ରୀଙ୍କୁ। ଶାଶୁ ଦୁଃଖ କରି କହିଲେ ଏତିକ। ପୂର୍ବପରି ଦୟା ଦେଖେଇଲେ ମାଉସୀଙ୍କ ଉପରେ। କିନ୍ତୁ ସେଥିରେ ମଧ୍ୟ କ'ଣ ଗୋଟାଏ ଗ୍ରେଟଦେବାର ଭାବ ନଥିଲା, ଯେ ଦେଖେ, ମୁଁ ତୋ ଘରର ଫିଟେଇ ଦେଇଛି ମୋ ବୋହୂ ଆଗରେ, ଯେ ମୋର ବେଶୀ କଦର ?

ନା ମାଳୁମାଉସୀ, ତମେ ଉଚ୍ଛୁଳୁଥାଅ, ଝଟକୁଥାଅ, ବଳସୁଥାଅ ଏମିତି। ଦେଖଉଥାଅ ତମର ସର୍କସ୍। ମୁଁ ତମର କିଛି କରିବ ନାହିଁ। ଦୁନିଆଁ ଜାଣେ ତମେ କେମିତିକା ଲୋକ। ତମେ ବି ଜାଣ ସେକଥା। ହେଲେ ତଥାପି ତମେ ତମ ବଡ଼ପଣର ବାନା ଉଡ଼ଉଛ, ଆଉ ତାକୁ ଧରି ରଖିଛ ତମ ପୁଅ ଖଣ୍ଡକ ଯେ ନଅମାସ ଯାଏଁ ତମ ପେଟରେ ଥିଲା, ଆଉ ଖେଳୁଥିଲା ତମ ସାଙ୍ଗରେ।

ବଚନ ! ତମର ଉଦ୍‌ବେଲ ଚେହେରା। ଦେଖିଲାରୁ ହଠାତ୍ ମୋର କ'ଣ ମନେହେଉଛି ଜାଣିଛ, ମାଳୁମାଉସୀ ? ଯେ ଯାହା ଟୋକୀ ଦିନେ ହୋଇପାରି ନଥିଲ, ଆଜି ବୁଢ଼ୀ ଦିନେ ସେମିତି ଦେଖାଯାଉଛ ତମେ। ଏବେ ତମେ କୋଉ ଅଶ୍ଳୀଳ ସାପ ହୋଇ ନାହିଁ ମ ? କହିବାକୁ ଗଲେ ଆଖିଦୁରୁଶିଆ ବୁଢ଼ୀଟିଏ। ଥ୍ୟାଙ୍କସ୍ ଟୁ ପୁତ୍ରମଣି ନନ୍ଦୁବାବୁ···

ଏହିପରି ଭାବରେ ତାଙ୍କୁ ଅନେକ ଦିନୁ ଚିହ୍ନିଥିବା ରମାରାଣୀ ଫେରି ଆସିଲେ, ଦାଢ଼ ଉପରୁ। ଏବଂ ମାନମସ୍ତୀଙ୍କର ଗର୍ଭଧାରଣ କାଏମ୍ ରହିଲା।

ଫେରି ଗୁହାଳବେଳକୁ ସେ ଦେଖିଲେ ଯେ ନନ୍ଦନ ବି ପାଖରେ ଅଛି ସେଇଠି। ଏକୁଟିଆରେ ବୁଲୁଛି, ଆଉ ସିଗାରେଟ୍ ଫୁଙ୍କି ଚାଲିଛି, କ'ଣ କିଛି ଭାବି ହେଲାପରି। ସେଇଥିଁ ସେ ମନେ ମନେ କହିଲେ ମାଳୁମାଉସୀଙ୍କୁ—

ବୁଝିଲ୍ ମାଲୁମାଉସୀ ! ଭାବନାହିଁ ଯେ ମୁଁ ତମ ଉପରେ ଦୟା ଦେଖେଇଲି । ନା, ତା' ନୁହେଁ । ମୋର ଦୟା ହେଉଛି ଏଇ ପିଲଟା ଉପରେ । କଥାଟା ପ୍ରକଟ ହୋଇଗଲେ ତା'ର ଘୋର ଦଶା ହୁଅନ୍ତା…ବୟସ !

( ଦ୍ଵିତୀୟ ଥର )

ଦ୍ଵିତୀୟର ସମ୍ଭାବନା କ୍ଷଣସ୍ଥାୟୀ ହୋଇଥିଲେ ମଧ୍ୟ ତୀବ୍ର ଥିଲା । ଅତଏବ ତୀବ୍ର । ଯାହାକି ସ୍ୱାଭାବିକ, କାରଣ ତା'ର ରଚୟିତା ଥିଲା ଖୋଦ୍ ସେହି ଗର୍ଭଜାତ ଶିଶୁ, ଆଜିକାର ନନ୍ଦନ ମହାନ୍ତି ।

ନନ୍ଦବାବୁ ଫେରି ଆସିଲେଣି ଶହେଷ୍ଟନରୁ । ବାଟରେ ସେ ତାଙ୍କର ବଡ଼-ବଡ଼ ହେଉଥିବା ବୋଉ ସାଙ୍ଗରେ ପଦେ ହେଲେ କଥା ହୋଇ ନାହାନ୍ତି । ଖାଲି ମଝିରେ ମଝିରେ 'ହୁଁ ହାଁ' ମାରିବା ଛଡ଼ା । ଏବଂ ବର୍ତ୍ତମାନ ମଧ୍ୟ ସେଇଆ । ଝିଅପିଆ ସରିଗଲେଣି, ବୋଉ ଗଲେଣି ତା' ଶୋଇବା ଘରକୁ, ଆଉ ସେ ଅଛନ୍ତି ନିଜ ଶୋଇବା ଘରେ, ସ୍ୱପତ୍ନୀଙ୍କ ସହ । ପିଲା ଦୁ'ଜଣ ଶୋଇଗଲେଣି । ଏବଂ ମୁହଁ ଫୁଲେଇ ଥିବା ପତ୍ନୀ କେତେ କ'ଣ କହିଯାଉଛି ତା' ଶାଶୁଙ୍କ ବିରୁଦ୍ଧରେ । ଆଜି କେମିତି ଗୋଟାଏ ବାହାନା କରି ତାକୁ ଶହେଷ୍ଟନକୁ ନିଆ ଗଲା ନାହିଁ, ଏବଂ ତମେ ସ୍ୱାମୀଟିଏ ତାକୁ କେମିତି ମାନିନେଲ ସୁନାପୁଅ ପରି, ସେଇଠୁଁ ଆରମ୍ଭ କରି ସମସ୍ତ ଶାଶୁଗତ ଇତିହାସ, ଯାହାକି ତା'ର ଦାମ୍ପତ୍ୟ ଜୀବନକୁ 'ନଷ୍ଟ' କରି ଦେଇଛି । 'ନଷ୍ଟ' ଶବ୍ଦଟାକୁ ସେ ବାରମ୍ବାର ଉଚ୍ଚାରଣ କଲା, ତା'ର ସ୍ୱାମୀଙ୍କୁ ଚିଡ଼ାଇବା ଲାଗି । ଶେଷକୁ ଇଂରାଜୀରେ ବି କହିଲା—ସି ହ୍ୟାଜ୍ କିଲ୍ଡ୍ ମି, ସେ ମୋତେ ଜୀଇଁମରି ମାରି ଦେଇଛନ୍ତି, ମୁଁ ସତ କହୁଛି !

କିନ୍ତୁ ତଥାପି ନନ୍ଦବାବୁ ଖଟ ଧାରରେ ବସି ରହି ଖାଲି ମୁଣ୍ଡ ହଲାଉଥିଲେ । ମୁଣ୍ଡବାଳରେ ହାତ ଚଳାଉଥିଲେ । ବେଳେବେଳେ ଗୋଟାଏ ଲମ୍ବା ନିଃଶ୍ୱାସ ଛାଡ଼ୁଥିଲେ । କିନ୍ତୁ ପଦେକଥା ତାଙ୍କ ମୁହଁରୁ ବାହାରୁ ନଥିଲା ।…ହଁ, ମୁଁ ଜାଣିଛି, ଜାଣିଛି । ତମେ ତା'ର ଶିରୀ ଦେଖି ପାର ନାହିଁ, କି ସେ ତମର ସୁଖ ଦେଖି ପାରେ ନାହିଁ । ଦୁନିଆଁ ଆଖିରେ ସେ ମହାଗର୍ବୀ କଳହୁଡ଼ୀ ଚଣ୍ଡୀଟିଏ । ମୁଁ ତା'ର ସ୍ପଷ୍ଟ ପରିଚୟ ପାଇଛି, ପ୍ରତ୍ୟକ୍ଷରେ ତଥା ପରୋକ୍ଷରେ । ଏମିତିକି ଜଣେ ଜଣେ ଥଟ୍ଟା କରି କୁହନ୍ତି—'ନହେଲେ କି ସେ କଟକଚଣ୍ଡୀଙ୍କୁ ଡାକୁଥାଆନ୍ତେ ଉଚ୍ଛୁଣୁ ବସୁ ।' ହଁ, ମୁଁ ଜାଣିଛି ସେ କଥା, ବଟ୍ ଆଇ ଡୋଣ୍ଟ୍ କେୟାର୍ ! ବୋଉ ମୋତେ ଭଲ ପାଏ । ପୂର୍ଣ୍ଣଚ୍ଛେଦ ।

କିନ୍ତୁ କଥା ହେଉଛି…କଥା ହେଉଛି…ମୁଁ କ'ଣ କେବେହେଲେ ଜାଣିବି ନାହିଁ ? ଜାଣିବି ନାହିଁ ମୁଁ ପ୍ରକୃତରେ କାହାର ପୁଅ ? କୋଉ ମାଆ ମୋତେ

ଫୋପାଡ଼ି ଦେଇ ଗଲା, ଆଉ କୋଉ ଚଣ୍ଡାଳ ବାପା ମୋତେ ତିଆରି କଲା ତା' ପେଟ ଭିତରେ, ହେଲେ ଆଡ଼େଇ ହୋଇଗଲା ଚୂପ୍‌କାମ ?

ଲୋକେ ଜାଣିବାକୁ ମୁଁ ମାନ୍ୟମନ୍ତ୍ରୀ ମହାଶୟଙ୍କ ଗେଲବସର ପୁଅ । ମୁଁ ବି ଜାଣିଥିଲି ସେଇଆ । କିନ୍ତୁ ପାଞ୍ଚବର୍ଷ ତଳେ ଗୋଟାଏ ଜର୍ମକମାର ଦଲିଲ୍ ଖୋଜୁ ଖୋଜୁ ମୁଁ ଯୋଉ ଚିଠିଖଣ୍ଡିଏ ଦେଖିଲି ବାପାଙ୍କ ହାତବାକ୍ସରେ, ଆଉ ତା' ସବା ଉପରେ ଯେଉଁ ବଙ୍କା ଅକ୍ଷରର ଚିଠିଖଣ୍ଡିକ ମୋ ଆଖିରେ ପଡ଼ିଲା, ତା'ର ସାରକଥା ଆଉ ଦୁର୍ବୋଧ ନଥିଲା ମୋ ପାଇଁ । ଏବଂ ତା'ର ସେଇ କେଇଟା ଲାଇନ୍ ମୁଁ କ'ଣ କେବେହେଲେ ଭୁଲିପାରିବି ?

"...ହଉ ହେଲା, ମୁଁ ପାଳିବି ସେ ପିଲାଟାକୁ । କିନ୍ତୁ ସେ ଖାଲି ମୋର ହେବ, ବୁଝିଲ ? ମୁଁ ଜାଣିଛି ଯେ ତମେ ମାତୃମୂର୍ତ୍ତି, ଅନ୍ନପୂର୍ଣ୍ଣା, ତମେ କେବେହେଲେ ମୋତେ ଗୋଟାଏ ପିଲା ଦେଇପାରିବ ନାହିଁ । ହ୍ୟାଁ, ମୋର ସଂସାରଟା ବି ଅନ୍ନପୂର୍ଣ୍ଣା, ମୋତ କେବେହେଲେ ସୁଖ ଦେଇ ନାହିଁ । କିନ୍ତୁ କୋଉ ବେଦଧିଙ୍ଗର ଏଇ ପୁଅଖଣ୍ଡିକ ହିଁ ସୁଖ ଆଣିଦେବ ମୋତେ । କାହିଁକନା ସେ ହେବ ମୋର । ଖାଲି ମୋର-ମୋର-ମୋଅର !... "

ସେଦିନ ମୋ ମୁଣ୍ଡ ଘୁରେଇ ଯାଇଥିଲା । ମୁଁ ରାଗିଥିଲି ମୋର ପାଷଣ୍ଡ ବାପାମାଆଙ୍କ ଉପରେ । ଆଉ ତୋ ଉପରେ ବୋଉ, ତୋ ଉପରେ । ଯେ ତୁ କାହିଁକି ଏମିତି କାନ୍ଧୁଡ଼ି ଧରିଛୁ ମୋତେ । ହେଲେ ମୁଁ କିଛି କରି ପାରିଲି ନାହିଁ । କାହିଁକନା ମୁଁ ଗୋଟାଏ ଛେଳୁଆ ।

ତୁ ଆଜି କେଡ଼େ ଦମ୍ଭରେ କହିଲୁ ସେମାନଙ୍କ ଆଗରେ ଯେ ତୁ ମୋତେ ଗର୍ଭରେ ଧରିଥିଲୁ, ଆଉ ମୁଁ ତୋ ପେଟକୁ ଠେଲିଥିଲି ମୋ ମୁଣ୍ଡରେ । ଓ୍ୱାଣ୍ଡର୍‌ଫୁଲ୍ ! ସେତେବେଳେ ମୋତେ ହସ ମାଡ଼ିଲା ତୋ'ର ବହପ ଦେଖି । କିନ୍ତୁ ଦୁଃଖ ଆସିଲା, ତା' ପରେ ପରେ । ହଁ, ମୁଁ ତୋତେ ଅପଦସ୍ଥ କରିବାକୁ ଚାହେଁ ନାହିଁ, କି ଦୁନିଆଁକୁ ଜଣାଇବାକୁ ଚାହେଁ ନାହିଁ ଯେ ମୁଁ କୋଉ ବେଦଧିଙ୍ଗର ପିଲା । ତା' ବୋଲି ମୁଁ କ'ଣ ମୋ ଗେହ୍ଲା ବୋଉକୁ ଗୋପନରେ ପଚାରିପାରିବି ନାହିଁ, ମୁଁ ପ୍ରକୃତରେ କାହା ପୁଅ ? ଆଉ ତା' ମୁଣ୍ଡ ଛୁଇଁ କହିବୁ ନାହିଁ, ଯେ ମୁଁ ଏକଥା କହିବି ନାହିଁ ଆଉ କାହାକୁ, ସିକ୍ରେଟ୍‌ଟା ଖାଲି ରହିବ ଆମ ଦି'ଜଣଙ୍କ ଭିତରେ ?

ନା, ଆଉ ନୁହେଁ । ମୁଁ ବି ମଣିଷ । ମୋର ଗୋଟାଏ ଆତ୍ମସମ୍ମାନ ଅଛି । ଏବଂ ଅଧିକାର ଅଛି ଜାଣିବା ପାଇଁ ମୁଁ କାହାଠୁ ଜନ୍ମ ହୋଇଛି ।

ଏହିପରି ଖବରରେ ଦୀର୍ଘାୟୁ ସଙ୍ଗୀନ୍ ମୁହୂର୍ତ୍ତି ଆସିଥିଲା ସେଦିନ, ଗର୍ଭଧାରିଣୀ ମାନମୟୀଙ୍କ ପାଇଁ । ନନ୍ଦବାବୁ ବଙ୍କପରକର ହୋଇ ଉଠି ଆସିଥିଲେ ତାଙ୍କ ଶୋଇବା ଘରୁ । ଏବଂ ସ୍ଥିର କରିଥିଲେ ସେ ବୋଉକୁ ପଚାରିବେ ଆଜି, ଛାଡ଼ିବେ ନାହିଁ । ନିଦରେ ଶୋଇଥିଲେ ବି ଉଠେଇବେ ତାକୁ ଏବଂ ସିଧାସଳଖ ପ୍ରଶ୍ନ କରିବେ —ମୁଁ ଅବଶ୍ୟ ତୋ ପୁଅ, ଖାଲି ତୋର, କିନ୍ତୁ କହି ମୁଁ ପ୍ରକୃତରେ କିଏ ?

କିନ୍ତୁ ସେ ପହଁଞ୍ଚି ଦେଖିଲେ ଯେ ବୋଉ କେବଳ ଶୋଇ ଯାଇ ନାହିଁ, ସେ କ'ଣ ସ୍ୱପ୍ନ ଦେଖୁଛି । ଏବଂ ମୁରୁକି ମୁରୁକି ହସୁଛି ।

ସେଇଠୁ ନନ୍ଦବାବୁଙ୍କ ଓଠରେ ବି ଯେଉଁ ହସ ଫୁଟି ଉଠିଲା ତା'ର ତୁଳନା ନାହିଁ । ଏବଂ ସେ କହିଲେ ମନେ ମନେ—ହଁ ବୋଉ, ତୁ ଖାଲି ମୋର—ମୋର—ମୋଅର । ଆଉ କାହାରି ନୁହେଁ । ହେଲା ଏବେ ମୁଁ ଛୋଟୁଆ । କିନ୍ତୁ କୋଉ ପୁଅ ଏମିତିକା ଷୋଳଅଣା ମାଅ ଟାଏ ପାଇଛି, କହିଲ ?

# ଗର୍ଭଧାରିଣୀ

ଆତ୍ମପ୍ରତାରଣା । ତାହାହିଁ ମଣିଷର ସବୁଠାରୁ ବଡ଼ ଅସ୍ତ୍ର ବଞ୍ଚି ରହିବା ପାଇଁ, ଅର୍ଥାତ୍ ସଂସାରରେ ମୁଣ୍ଡ ଟେକି ଚାଲିବା ପାଇଁ, ଏ ବିଷୟରେ ବ୍ୟାଖ୍ୟାବିନ୍ୟାସ ଅନାବଶ୍ୟକ । କିନ୍ତୁ ସାଧାରଣତଃ ସେଥିର ଗୋଟାଏ ସୀମା ଥାଏ ନିଜ ମନ ଭିତରେ । ଯେ ମୁଁ ଜାଣିଶୁଣି ଏମିତି କରୁଛି, କଥାଟା ମିଛ ନ ହେଲେ ବି ପୂରାପୂରି ସତ ନୁହେଁ, କିନ୍ତୁ ଏହାହିଁ କରଣୀୟ । ଏହି 'ମେକ୍-ବିଲିଭ୍', ମିଛିମିଛିକା ଖେଳର ଧାରଣାକୁ ନେଇ ସେ ନିଜକୁ କିଛିଟା ସଂଯତ କରି ରଖେ । କାଳେ କୋଉ ମେଣ୍ଢା ଭିତରୁ ଆସିବ ଗଧିଆ ଚମ ଭିତରୁ, ତାହା ଯେତେ ସାମାନ୍ୟ ହେଉ ପଛେ । କିନ୍ତୁ ସୁଖର ବିଷୟ (ଯାହା ଦୁର୍ଲଭ କିନ୍ତୁ ବାସ୍ତବ, ତାହାହିଁ ତ ଗୋଟାଏ ଚ୍ୟାଲେଞ୍ଜ୍ ଆଣିଦିଏ ଲେଖକ ପାଇଁ ଏବଂ ତାହାହିଁ ତ ତା'ର ସୁଖ !) ତାଙ୍କ ଭିତରୁ ଜଣେ ଜଣେ ଆବିର୍ଭୂତ ହୁଅନ୍ତି, ଯେଉଁମାନେ ଏଇ ସୀମା ବିଷୟରେ ସଂପୂର୍ଣ୍ଣ ଅନଭିଜ୍ଞ ବୋଲି ମନେ ହୁଏ । କିନ୍ତୁ ମଜାକଥା ହେଉଛି ଯେ ଏଭଳି ନିର୍ଭୟ ସ୍ତ୍ରୀ ତାଙ୍କ ଆସ୍ପର୍ଦ୍ଧା, ତାଙ୍କ ଅଭିନୟର ପଟୁତ୍ୱ, ଯେ ତାଙ୍କୁ ଧରି ପକେଇ ଦେବା ପାଇଁ ସତ ବଳିବ ନାହିଁ ତମର । ସତେକି ଏହି କଳାତ୍ମକ ମହିମାକୁ ତଳେ ପକାଇବାର ନୁହେଁ !

ସେହେତୁ ମୋର କହିବା କଥାଯେ ମାନମୟୀ ମହାନ୍ତି ଓରଫ୍ ମାନୁମାଉସୀ ଯେଉଁ ଆସନ୍ନ ଗର୍ଭପାତରୁ ବର୍ତ୍ତି ଗଲେ, ଗୋଟିଏ ଦିନ ଭିତରେ ଦି' ଦି'ଥର, ସେଥିର ବାହାଦୁରୀ ତାଙ୍କ ନିଜର, କେଉଁ ରକ୍ଷାକର୍ତ୍ତାର ନୁହେଁ । ହଁ, ରମାଦେବୀ ଉଦାରତା ଦେଖାଇଲେ, କହିଲେ ଗୁଡ଼ ମୁଁ ଏଇଘଣି ସୁଖରେ ଅଛି ମୋ ସଂସାରରେ, କାହିଁକି କୋଉ ପ୍ରତିଶୋଧ ନେବି ଏଇ ସାପଟା ଉପରେ, ଯେ ବିଷଧର ହେଲେ ମଧ୍ୟ ଗଧିଆ । ଏବଂ ନନ୍ଦବାବୁ

ଏକ ଅପୂର୍ବ ଶ୍ଳେଷରେ ଅଭିଭୂତ ହୋଇ ମନେ କଲେ ଯେ ନିଜ ମାଆ ନ ହେଲେ ମଧ୍ୟ ସେଇ ମୋତେ ତା' ଗର୍ଭରେ ଧରିଛି ବୋଲି ମାନିବାକୁ ପଡ଼ିବ । ତେଣୁ ମାରି ଗୋଳି ମୋ ସତ ବାପାମାଆଙ୍କୁ, ସେଇ ହେଉଛି ମୋ ଷୋଳଅଣା ମାଆ ମୁଁ ତା' ମନରେ କଷ୍ଟ ଦେଇ ପାରିବି ନାହିଁ । ଦିନେହେଁ ମନେ ମନେ ତାଙ୍କ ପ୍ରତି ଦୟା ଦେଖାଇଲେ, ତାଙ୍କୁ କ୍ଷମା କରିଦେଲେ । କିନ୍ତୁ ମୋର ମନେ ହୁଏ ଯେ କଥାଟା ଠିକ୍ ତା' ନୁହେଁ । ସେମାନେ ହାରିଗଲେ । ତାଙ୍କ ଅଟକି ଯିବାର ସଫେଇରେ ମିଳିଥିଲା ନାହିଁ । କିନ୍ତୁ ସେଥିର ମୂଳ କାରଣ ହେଉଛି ଯେ ତାଙ୍କ ମୁଣ୍ଡ ନଇଁଗଲା ତାଙ୍କ ମାତୃପ୍ରତିମାର 'ବଡ଼ପଣ' ଆଗରେ, ଯଦିଓ ତାହା ହୋଇପାରେ ଏକ ବିରାଟ ମିଥ୍ୟାର ଅଭିନୟ । କିଏ ଭଲା ତା'ର ଅବମାନନା କରିବ ? କିଏ ଭଲା ହତାଦର କରିପାରିବ ଏଭଳି ଏକ ମହା ବିସ୍ମୟକର ବ୍ୟକ୍ତିତ୍ୱର ?

ଆଜି ନୁହେଁ, ଏହି ବ୍ୟକ୍ତିତ୍ୱ ବାରମ୍ବାର ଗର୍ଜି ଉଠିଛି ତାଙ୍କ ସମାଜ ସଂସାର ଉପରେ, ଏବଂ କ୍ୱଚିତ୍ କେହି ତା'ର ପ୍ରତିରୋଧ କରି ପାରିଛି । ନାରୀସୁଲଭ କମନୀୟତା ଟିକିଏ ହେଲେ ନାହିଁ ତାଙ୍କ ଚେହେରାରେ । ହେଲେ ତାହା କପରି କେଉଁ ସୌନ୍ଦର୍ଯ୍ୟ ବୋଲି ମନେ ହେଲା ନକୁଳବାବୁଙ୍କୁ ? କେଉଁ ଭଲା ନାରୀତ୍ୱର (କେଉଁ ଶକ୍ତିରୂପିଣୀର ? ଚଞ୍ଚଳାର ? ମୁଖରାର ?) ଅଭିନୟ ଏମିତି ଆକୃଷ୍ଟ କଲା ସେହି ବେକାର ଅଳସୁଆ ଭଦ୍ରଲୋକଙ୍କୁ, ଯେ ସେ ତାଙ୍କୁ ବାହା ନ ହୋଇ ରହି ପାରିଲେ ନାହିଁ ? ଯାହାହେଉ ମାନମୟୀଙ୍କୁ ଗୋଟାଏ ସ୍ଥିତି ଏବଂ ସ୍ୱାମୀ ମିଳିଗଲା । କିନ୍ତୁ ଦୁଃଖର ବିଷୟ ସ୍ୱାମୀ ବେଶୀଦିନ ତିଷ୍ଠି ରହିପାରିଲେ ନାହିଁ ତାଙ୍କ ଜୀବନରେ, ତେଣୁ ସ୍ଥିତି ପୁଣି ଶୋଚନୀୟ ହୋଇଉଠିଲା । ହେଲେ, ମାନମୟୀ ହାରିଯିବା ଲୋକ ନୁହଁନ୍ତି । ସ୍ୱାମୀଙ୍କ ଛଡ଼ା ତାଙ୍କର କ'ଣ ଆଉ କେହି ନିଜ ଲୋକ ନାହାଁନ୍ତି ? ରମାଙ୍କ ଶାଶୁ-ଶ୍ୱଶୁର ତାଙ୍କର ଆଳଆ ଲେଖାରେ ବାଳଆ ବନ୍ଧୁ ହୁଅନ୍ତୁ ବା ନହୁଅନ୍ତୁ, ମାନମୟୀ ସ୍ଥିର କଲେ ଯେ ସେମାନେ ତାଙ୍କ ନିଜ ଲୋକ । ଏବଂ ତାଙ୍କ ବ୍ୟକ୍ତିତ୍ୱ ସେହି ଭାବରେ ପହଞ୍ଚିଲା ତାଙ୍କ ପାଖରେ, ନିଜ ଲୋକର ଦାବି କଲା ପରି । ଅଗତ୍ୟା 'ଅପା-ଭାଇ' ଯାହା କରିବାର କଲେ—ତାଙ୍କ ବିପଦରେ ପଡ଼ିଥିବା ଭଉଣୀ ପାଇଁ । ସନ୍ତାନହୀନତା ମଧ୍ୟ ତାଙ୍କ ବ୍ୟକ୍ତିତ୍ୱକୁ ସାନ କରି ଦେଇ

ପାରିଲେ ନାହିଁ । ସ୍ୱାମୀଙ୍କ ପାଖକୁ ଲେଖା ହୋଇଥିବା ଶେଷର ସେଇ କେଇଟା ଲାଇନ୍—"ମୁଁ ଜାଣିଛି ତମେ ମାନସ୍ୱୀ, ଅଣ-ପୁରୁଷା, ତମେ କେବେହେଲେ ଗିଲ୍ଟିଏ ଦେଇ ପାରିବ ନାହିଁ ମୋତେ..." ଗର୍ବସ୍ୱରରେ ଘୋଷଣା କରି ପାରିଲି ଯେ ନା ସ୍ୱାମୀ ନା ସଂସାର ତାଙ୍କ ବ୍ୟକ୍ତିତ୍ୱର ସମକକ୍ଷ ହୋଇ ପାରିଛି ତାଙ୍କୁ ସୁଖ ଦେବା ପାଇଁ । କିନ୍ତୁ କିଛି ଛିଡ଼ି ନାହିଁ । ଯେଉଁ 'ବେଧେଇ'ର ପିଲାକୁ ପୁଅ କରି ଆଣିବା ପାଇଁ କହୁଛ, ସେ ପୁରାପୁରି ତା' ମାଆର ହେବ । 'ଖାଲି ମୋର-ମୋର-ମୋଅର !' ଏପରିକି ସେ ତାକୁ ଗର୍ଭରେ ଧରି ପାରିବେ ନଅମାସ ଯାଏଁ ଏବଂ ଟୋକାଟା କେଜାଣି କେତେ ମୁଣ୍ଡିଆ ମାରିବ ତାଙ୍କ ପେଟକୁ । ସବୁ ମିଛକୁ ସତ କରି ପାରିବେ ଏଇ ମାନସ୍ୱୀ ମହାନ୍ତି, ଏବଂ ସବାର୍ ହୋଇ ପାରିବେ ସଂସାର ଉପରେ ।

ନନ୍ଦୁର ମାଆ, ରମାର ମାଲୁମାଉସୀ, ବୁନିଆଁ ଯାକର ମାଲୁମାଉସୀ, ସତ୍ୟେନ୍ଦ୍ର ମହାପାତ୍ର ଓରଫ୍ ସତୁଭାଇଙ୍କ ଭଉଣୀ ସେ ଯାହାର ଚୁଟି ଟାଣୁଥିଲେ ପିଲାଦିନେ...କୋଉ ମିଛଟା ସତ ନ ହୋଇ ରହିପାରିବ ତାଙ୍କ ପାଇଁ ? ବାକି ତମେ ସମସ୍ତେ ମଧ୍ୟ ମୋ ନିଜ ଲୋକ, ଯେଉଁମାନଙ୍କ ସାଙ୍ଗରେ ମୁଁ କାରବାର ହେଉଛି—ବୁଝିଲ ? ସେହେତୁ ତମେମାନେ ମୋତେ ଭଲ ପାଇବ, ଆଦର କରିବ, ଖାତିର୍ କରିବ, ଯାହାର ଯେମିତି କରିବା କଥା । ନହେଲେ ତମରି ଦୁଃଖ । ଚମତ୍କାର ! କୋଟି କୋଟି ନମସ୍କାର ତମକୁ, ମାଲୁମାଉସୀ ! ତମ ବ୍ୟକ୍ତିତ୍ୱର ଏଇ ବିରାଟ ବୁଲ୍‌ଫୁଲ୍ ବେଲୁନ୍ ଯେ କେବେହେଲେ 'ଫୋ'କିନା ଫାଟିଯିବ ନାହିଁ, ତା' କହି ହେବ ନାହିଁ । କିନ୍ତୁ କେମିତି କେଜାଣି ମନେ ହୁଏ ଯେ ବେଲୁନ୍ ଖଣ୍ଡିକ ପୁଣି ଫେରି ଆସିବ ତା'ର ପୂର୍ବ ଅବସ୍ଥାକୁ । ତମର ବ୍ୟକ୍ତିତ୍ୱ କେବେହେଲେ ହାର୍ ମାନିବ ନାହିଁ ଏଇ 'ଅଣପୁରୁଷା' ସଂସାରଠାରୁ ।

କିନ୍ତୁ ଗୋଟାଏ ରହସ୍ୟର ଭେଦ ମୁଁ ପାଉନାହିଁ ଆଜି ଯାଏଁ । ତାଙ୍କର ଆତ୍ମପ୍ରତାରଣା କି ଆତ୍ମବିଶ୍ୱାସ ଆକାଶ ଛୁଇଁପାରେ, ଏଥିରେ ସନ୍ଦେହ ନାହିଁ, କିନ୍ତୁ ତଥାପି ବୁଝି ହେଉ ନାହିଁ ଯେ ସେ ଅଯଥାରେ କାହିଁକି ଏମିତି ଗୋଟାଏ ଛଳନା କଲେ ସେଦିନ, ଯେ ନନ୍ଦୁ ତାଙ୍କ ପେଟକୁ ମୁଣ୍ଡିଆ ମାରୁଥିଲା ?

ସେ ନନ୍ଦୁର ମାଆ, ଏ ବିଷୟରେ ତ କାହାର ସନ୍ଦେହ ନ ଥିଲା, ତାଙ୍କ ଜାଣିବାରେ ନନ୍ଦୁର ମଧ୍ୟ ନ ଥିଲା, ତେଣୁ ସେ କାହିଁକି ଏଭଳି ଏକ ନିବିଡ଼ ଅନ୍ତରଙ୍ଗ ଅନୁଭବର ଆବାହନ କଲେ, ଶପେପ୍ସନ୍‌ର ଝିଅବୋହୂଙ୍କ ମଝିରେ ? ମାନୁମାଉସୀଙ୍କୁ ମୁଁ ଚିହ୍ନିଛି । ତଥାପି ସେ ଏମିତି କହିବେ ବୋଲି ମୁଁ ଭାବି ନ ଥିଲି । ନିତାନ୍ତ ବିଶ୍ୱସ୍ତ ସୂତ୍ରରୁ ଜାଣିଲା ପରେ ଯାଇଁ ମୁଁ ତାକୁ ବିଶ୍ୱାସ କଲି । ଏବଂ ଆଜି ମୋର ମନେ ହେଉଛି ଯେ ସେ ଏମିତି କହିଲେ ତା'ର କାରଣ କେବଳ ଏଇ ଯେ ସେ ପ୍ରକୃତରେ ସେଇ ତୀବ୍ର-ମଧୁର ଯନ୍ତ୍ରଣାର ଅନୁଭବକୁ ଭୋଗିବାକୁ, ଲଭିବାକୁ ଚାହୁଁ ଥିଲେ । ବ୍ୟକ୍ତିତ୍ୱର ବଡ଼ପଣ ନୁହେଁ, ମାତୃତ୍ୱର ଅପ୍ରତିହତ କାମନାହିଁ ଏଠି କଥା କହୁଛି, ଆତୁର ହୋଇଉଠୁଛି । କିଏ ଭଲ ବୁଝିବ ଏଇ ମୂର୍ତ୍ତି ଆମର ଯନ୍ତ୍ରଣାର ଉଲ୍ଲାସ, ଜଣେ ନାରୀ ଛଡ଼ା, ସେ କାଳୀ ଅସୁନ୍ଦରୀ ହେଉ, ବିଷଧର ସର୍ପଟିଏ ହେଉ, ଏପରିକି ବନ୍ଧ୍ୟା ?

